# ଯଶୋଦେହେ ଆୟୁଷ୍ମାନ୍

## ଚତୁର୍ଥ ଭାଗ

[ ବିଂଶ ଶତାବ୍ଦୀର ମଧ୍ୟଭାଗରୁ ଶେଷ ପର୍ଯ୍ୟନ୍ତ
ଓଡ଼ିଶାର ସାରସ୍ୱତ ସାଧକମାନଙ୍କର ଜୀବନଚରିତ ]

ଡକ୍ଟର ପ୍ରଫୁଲ୍ଲ କୁମାର ପଟ୍ଟନାୟକ

ବିଦ୍ୟାପୁରୀ

JASHODEHE AYUSHMAN
Part - IV
Dr. Prafulla Kumar Pattnaik

Published by
VIDYAPURI
Balubazar, Cuttack 753 002

ISBN 978-81-7411-932-2



ପ୍ରଥମ ପ୍ରକାଶ
ଏପ୍ରିଲ ୨୦୧୪

ପ୍ରକାଶକ
ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩ ୦୦୨

ଲିପି ସଂଯୋଜନ
ବିଦ୍ୟାଶ୍ରୀ ଡିଟିପି ସେଣ୍ଟର
ଆଲାମଚାନ୍ଦବଜାର, କଟକ ୭୫୩ ୦୦୨

ମୁଦ୍ରଣ
ସଂଗୀତା ପ୍ରିଣ୍ଟର୍ସ, କଟକ

ମୂଲ୍ୟ ଟ ୫୫୦-୦୦

# ସଂସ୍କୃତିର ସ୍ୱାଭିମାନ

ବର୍ଷୀୟାନ୍ ଐତିହାସିକ ଡକ୍ଟର ପ୍ରଫୁଲ୍ଲ କୁମାର ପଟ୍ଟନାୟକ ହେଉଛନ୍ତି ଆଶାର ନବଦିଗନ୍ତ । ଅଶେଷ କଷ୍ଟ ସ୍ୱୀକାର କରି ସେ ଓଡ଼ିଶାର କୀର୍ତ୍ତିମାନ୍ ସନ୍ତାନମାନଙ୍କର କୃତି ଓ ଜୀବନକୁ ନେଇ ତଥ୍ୟଭିତ୍ତିକ ତିନି ଖଣ୍ଡି ବିଶାଳ ପୁସ୍ତକ 'ଯଶୋଦେହେ ଆୟୁଷ୍ମାନ୍' ଲେଖି ପ୍ରକାଶ କରିସାରିଲେଣି । ସେ ଭିତରେ ଅଛନ୍ତି ଓଡ଼ିଶାର ଅନେକ ବରପୁତ୍ର ଏବଂ ବରପୁତ୍ରୀ । ପ୍ରଥମ ଭାଗ ୮୨୪ ପୃଷ୍ଠା, ଦ୍ୱିତୀୟ ଭାଗ ୯୨୮ ପୃଷ୍ଠା ଏବଂ ତୃତୀୟ ଭାଗ ୭୬୦ ପୃଷ୍ଠା । ସମୁଦାୟ ୨୫୧୨ ପୃଷ୍ଠାର ଉଚ୍ଚମାନର ଗବେଷଣାଲବ୍ଧ ଓଡ଼ିଶାର ତିନି ଖଣ୍ଡ ସାଂସ୍କୃତିକ ଇତିହାସ । ପୁସ୍ତକ ତିନିଟିର ଗୁଣାତ୍ମକ ମାନ ବିଚାର କଲେ ଯେକୌଣସି ସ୍ୱାଭିମାନୀ ଓଡ଼ିଆର ହୃଦୟ ଗର୍ବରେ ଫୁଲିଉଠିବା ସହ ଆତ୍ମା ପରିତୃପ୍ତ ହୁଏ । ଏହା କିପରି ସମ୍ଭବ କରିପାରିଲେ ଡକ୍ଟର ପଟ୍ଟନାୟକ ! ଐତିହାସିକ ଗବେଷଣାର ଏହା ଚମତ୍କାରିତା ବୋଲି ମୋର ହୃଦ୍‌ବୋଧ ହୁଏ । ଏହି ପୁସ୍ତକ ସମୂହ ହେଉଛି ଡକ୍ଟର ପଟ୍ଟନାୟକଙ୍କର ତଥା ଆମ ସମସ୍ତଙ୍କ ସଂସ୍କୃତି-ସ୍ୱାଭିମାନର ଜୟସ୍ତମ୍ଭ ।

ଏବେ 'ଯଶୋଦେହେ ଆୟୁଷ୍ମାନ୍'ର ଚତୁର୍ଥ ଭାଗ ଖୁବ୍ ଶୀଘ୍ର ପ୍ରକାଶ ପାଇବାକୁ ଯାଉଛି । ଏଥିରେ ଅଛନ୍ତି ନମସ୍ୟ ସାହିତ୍ୟିକ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି, ଔପନ୍ୟାସିକ କାହ୍ନୁଚରଣ ମହାନ୍ତି, ଗୋପୀନାଥ ମହାନ୍ତି, ସୁରେନ୍ଦ୍ର ମହାନ୍ତି, ରାଜକିଶୋର ପଟ୍ଟନାୟକ, ବସନ୍ତକୁମାରୀ ପଟ୍ଟନାୟକ, ଗାଳ୍ପିକ ଅନନ୍ତ ପ୍ରସାଦ ପଣ୍ଡା, ରାଜକିଶୋର ରାୟ, ଅଖିଳ ମୋହନ ପଟ୍ଟନାୟକ, କବି ସଚ୍ଚି ରାଉତରାୟ, ଗୋଦାବରୀଶ ମହାପାତ୍ର, ରାଧାମୋହନ ଗଡ଼ନାୟକ, ଅନନ୍ତ ପଟ୍ଟନାୟକ, ନାଟ୍ୟକାର କାଳୀଚରଣ ପଟ୍ଟନାୟକ, କୃଷ୍ଣପ୍ରସାଦ ବସୁ, ଗୋପାଳ ଛୋଟରାୟ ଓ ମନୋରଞ୍ଜନ ଦାସ ।

ଏହି ବିଶାଳ କାର୍ଯ୍ୟର ପ୍ରଶଂସା କରିବି କେବଳ । ମୂଲ୍ୟାୟନ କରିବା ମୋ ଶକ୍ତିର ବାହାରେ । ତାଙ୍କର ସମଗ୍ର କୃତି ପାଠ କରି ଦୁଇ ପଦ ମତାମତ ଲେଖି ଦେବାପାଇଁ ଏହି ଲେଖିକାଙ୍କୁ ପଟ୍ଟନାୟକ-ମହାଶୟ ଅନୁରୋଧ କରିଥିଲେ । ମୁଁ ଦୁଃଖିତା ଯେ ଅତିରିକ୍ତ କାର୍ଯ୍ୟବ୍ୟସ୍ତତା ଯୋଗୁଁ ମହାଶୟଙ୍କୁ ଅନେକ ଦିନ ଅପେକ୍ଷା କରିବାକୁ ହେଲା ଓ ସେ ଦୁଇ ଥର ମୋ ଘରକୁ ଆସି ଫେରିଯାଇଛନ୍ତି । କିନ୍ତୁ 'ନମ୍ରନ୍ତି ଫଳିନାଃ ବୃକ୍ଷା' ଆପ୍ତବାକ୍ୟକୁ ପ୍ରମାଣିତ କରି ସେ ପ୍ରତିଥର

ନିଜେ ନମ୍ର ହୋଇଯାଇ ପ୍ରସନ୍ନ ବଦନରେ ଫେରିଛନ୍ତି । ବିଦ୍ୱାନ୍ ହେବା ସହ ଏହିପରି ନମ୍ର ଓ କ୍ଷମାଶୀଳ ନ ହେଲେ କେହି ବ୍ରତନିଷ୍ଠ ରହିପାରେନା । ବିଳମ୍ବଜନିତ ତ୍ରୁଟି ଯୋଗୁଁ ମୁଁ ମହାଶୟଙ୍କ ପାଖରେ କ୍ଷମା ମାଗୁଛି । ୧ମ, ୨ୟ ଓ ୩ୟ ଭାଗ ତିନୋଟିଯାକ ପୁସ୍ତକ ମତେ ଉପହାରସ୍ୱରୂପ ପ୍ରଦାନ କରି ମହାଶୟ ମୋତେ ଋଣୀ କରିଛନ୍ତି । ବହି ତିନୋଟି ଯେ ବ୍ୟକ୍ତିଗତ ପାଠାଗାରର ଅମୂଲ୍ୟ ସମ୍ପଦ ହୋଇ ରହିବ । ଏହି ଜାତୀୟ କାର୍ଯ୍ୟ ପୁରସ୍କାର ଓ ମାନପତ୍ରର ବହୁ ଊର୍ଦ୍ଧ୍ୱରେ । ଶ୍ରୀ ପଟ୍ଟନାୟକ ଯଶ, ଖ୍ୟାତି ଓ ପୁରସ୍କାର ଆଶାରେ ଏ କାର୍ଯ୍ୟ କରି ନ ଥିଲେ ମଧ୍ୟ ଓଡ଼ିଶା ସାହିତ୍ୟ, ସଂସ୍କୃତି ଏକାଡେମୀ ଓ ସଂସ୍କୃତି ଅନୁଷ୍ଠାନ ଶ୍ରୀ ପଟ୍ଟନାୟକଙ୍କୁ ଉପଯୁକ୍ତ ସମ୍ମାନ ଓ ସ୍ୱୀକୃତି ପ୍ରଦାନ କରି ପୂଜ୍ୟପୂଜା ପରମ୍ପରାକୁ ବଜାୟ ରଖିବେ ବୋଲି ଆଶା କରେ । ଏହି ଚାରି ଗୋଟି ପୁସ୍ତକ ସାହିତ୍ୟ, ସମାଜତତ୍ତ୍ୱ, ଇତିହାସ ଏବଂ ୱିମେନ ଷ୍ଟଡିଜ୍ ବିଭାଗର ଛାତ୍ର, ଅଧ୍ୟାପକ ଓ ଗବେଷକମାନଙ୍କପାଇଁ ଅତ୍ୟନ୍ତ ଉପାଦେୟ ପୁସ୍ତକ ଭାବରେ ଆଦୃତ ହେବ । ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା ଶ୍ରୀଯୁକ୍ତ ପଟ୍ଟନାୟକ ଦୀର୍ଘାୟୁ ହୁଅନ୍ତୁ ଏବଂ ଏହିପରି କର୍ମରତ ରହି ଉତ୍କଳ ଜନନୀର ନିରଳସ ସେବା କରୁଥାନ୍ତୁ । ଏହି ଚାରି ଖଣ୍ଡ ପୁସ୍ତକର ପ୍ରକାଶକ ଶ୍ରୀଯୁକ୍ତ ପୀତାମ୍ବର ମିଶ୍ର, ବିଦ୍ୟାପୁରୀ, କଟକଙ୍କୁ ସାଧୁବାଦ ଜଣାଉଛି ।

**ପ୍ରତିଭା ରାୟ**

୩୦.୦୪.୨୦୧୩
ଆଖ୍ୟାୟିକା
୨୬ ଗଜପତି ନଗର, ଭୁବନେଶ୍ୱର

# ପ୍ରାଗ୍‌ଭାଷ

'ଯଶୋଦେହେ ଆୟୁଷ୍ମାନ୍' ଗ୍ରନ୍ଥର ପ୍ରଥମ ଭାଗରେ ପ୍ରାଗୈତିହାସିକ ଯୁଗରୁ ଉନବିଂଶ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ସମୟ ମଧ୍ୟରେ ଓଡ଼ିଶାର ମହାନ୍ ସନ୍ତାନମାନଙ୍କର ଚିନ୍ତା, କର୍ମ ଓ କୃତି ଉପରେ ଆଲୋକପାତ କରାଯାଇଛି । ଏହାର ଦ୍ୱିତୀୟ ଭାଗରେ ବିଂଶ ଶତାବ୍ଦୀର ପ୍ରାରମ୍ଭରୁ ମଧ୍ୟଭାଗ ପର୍ଯ୍ୟନ୍ତ ବହୁ କୀର୍ତ୍ତିମାନ୍ ବ୍ୟକ୍ତିତ୍ୱର ଜୀବନଚରିତ ଲିପିବଦ୍ଧ ହୋଇଅଛି । ଏହାର ତୃତୀୟ ଭାଗରେ ସେହି ବିଂଶ ଶତାବ୍ଦୀର ମଧ୍ୟଭାଗରୁ ଶେଷ ପର୍ଯ୍ୟନ୍ତ ପ୍ରଖ୍ୟାତ ଜନନାୟକମାନଙ୍କର ଜୀବନୀ ସ୍ଥାନିତ ହୋଇଅଛି । ଏହାର ଚତୁର୍ଥ ଭାଗରେ ଦୀପ୍ତିମାନ୍ ସାରସ୍ୱତ ସାଧକମାନଙ୍କର ଜୀବନଚରିତ ତଥା ସେମାନଙ୍କର କୃତିଗୁଡ଼ିକ ଆଲୋଚନା କରାଯାଇଛି ।

ସାହିତ୍ୟରେ ଉପନ୍ୟାସ ସବୁଠାରୁ ପ୍ରଭାବଶାଳୀ ବୋଲି ବିବେଚିତ ହୋଇଥାଏ । ଗୋଟାଏ ଗୋଟାଏ ଶକ୍ତିଶାଳୀ ଉପନ୍ୟାସ ଦେଶ ଓ ସମାଜର ଆଭିମୁଖ୍ୟ ବଦଳାଇବାରେ ସାହାଯ୍ୟ କରିଥାଏ । ସମାଜସଂସ୍କାର କ୍ଷେତ୍ରରେ ଉପନ୍ୟାସର ଦାନ ମଧ୍ୟ କିଛି କମ୍ ନୁହେଁ । ଓଡ଼ିଆ ସାହିତ୍ୟରେ ନାନା ଘଟଣା ଓ ଦୁର୍ଘଟଣା ସତ୍ତ୍ୱେ ସ୍ୱାଧୀନତା ପରବର୍ତ୍ତୀ କାଳରେ ଓଡ଼ିଆ ଉପନ୍ୟାସ ତା'ର ସ୍ୱାତନ୍ତ୍ର୍ୟ ଓ ବ୍ୟକ୍ତିତ୍ୱ ପ୍ରତିଷ୍ଠା କରିବାରେ ଯେ ସକ୍ଷମ ହୋଇଚି, ଏହା ନିଃସନ୍ଦେହ । ଆନ୍ତର୍ଜାତିକ ଭାବଧାରା ସହିତ ତାଳଦେଇ ନୂତନ ଅଭିରୁଚିର ପରୀକ୍ଷାନିରୀକ୍ଷା କରିଚାଲିଛି । ସମଭାବରେ ଭାରତର ପ୍ରାନ୍ତୀୟ ସାହିତ୍ୟରେ ଯେଉଁ ପ୍ରତିଧ୍ୱନି ଶୁଣିବାକୁ ମିଳିଛି ବା ମିଳୁଛି ତାହାକୁ ମଧ୍ୟ ଓଡ଼ିଆ ସାହିତ୍ୟ ଏଡ଼ି ଦେଇପାରି ନାହିଁ । ଏହା ଅବଶ୍ୟ ସତ୍ୟ ଯେ ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ କ୍ଲାସିକ୍ ଉପନ୍ୟାସ ଆଙ୍ଗୁଠିରେ ଗଣି ହେବ । ଏଥିପାଇଁ ଆମର ସାମାଜିକ ଜୀବନର ସୀମିତ ଓ ସଙ୍କୁଚିତ ପରିବେଷ୍ଟନୀ ବହୁ ପରିମାଣରେ ଦାୟୀ ଅଟେ । ବୈପ୍ଳବିକ ପରିବର୍ତ୍ତନପାଇଁ ଯେଉଁ ଘାତ-ପ୍ରତିଘାତ, ପ୍ରତିକ୍ରିୟା ଓ ପ୍ରେରଣା ଅନୁଭୂତ ହେବାର କଥା, ତାହାର ଅଭାବ ବିଶେଷ ରହିଥିବା ଉପଲବ୍ଧି କରାଯାଏ । ତଥାପି ଗୁଣାତ୍ମକ ଦୃଷ୍ଟିରୁ ଓଡ଼ିଆ ଉପନ୍ୟାସ ଯେ ଏହି ସମୟ ଭିତରେ ଯଥେଷ୍ଟ ଅଗ୍ରଗତି କରିଛି, ଏକଥା ସ୍ୱୀକାର କରିବାକୁ ହେବ । ବିଶେଷତଃ, କାହ୍ନୁଚରଣ, ଗୋପୀନାଥ, ସୁରେନ୍ଦ୍ର ମହାନ୍ତି ବା ରାଜକିଶୋରଙ୍କ ଭଳି

ଔପନ୍ୟାସିକ ଗତାନୁଗତିକ ପ୍ରେମ, ବିରହ ବା ସାମାଜିକ ଓ ଆର୍ଥନୀତିକ ସଂଘର୍ଷ ମଧ୍ୟରେ ସୀମାବଦ୍ଧ ରହି ନାହାନ୍ତି । ମାନବ ମନର ବୈଜ୍ଞାନିକ ବିଶ୍ଳେଷଣ ପ୍ରଧାନ ବିଭବ ହୋଇଅଛି । ବିଶେଷତଃ, ସ୍ୱାଧୀନତା ପରବର୍ତ୍ତୀ ଲେଖାମାନଙ୍କରେ ଯୁଗ ସଙ୍କେତର ଆବାହନୀ ସଙ୍ଗେ ସଙ୍ଗେ କଳାଗତ ଅନୁପ୍ରେରଣା ଓଡ଼ିଆ ଉପନ୍ୟାସ ସାହିତ୍ୟକୁ ଚିରନ୍ତନ ସୌନ୍ଦର୍ଯ୍ୟରେ ମଣ୍ଡିତ କରିଅଛି ।

ସେହିପରି ସ୍ୱାଧୀନତା ପରବର୍ତ୍ତୀ କ୍ଷୁଦ୍ର ଗଳ୍ପରେ କଳାଗତ ବହୁ ଅଗ୍ରଗତି ହୋଇଛି । ସଂକ୍ଷିପ୍ତ ପରିସର, ସୀମିତ କାଳ, ନିର୍ଦ୍ଦିଷ୍ଟ ଘଟଣା, ସ୍ପଷ୍ଟ ଭାବବସ୍ତୁ ଭିତରେ ଜୀବନକୁ ନିଖୁଣ ଭାବରେ ଚିତ୍ରଣ କରିବାର ଦକ୍ଷତା ଗାଳ୍ପିକମାନଙ୍କର ବେଶି ଦେଖାଦେଇଛି । ତାହା ପୁଣି ଅତୀବ ମର୍ମସ୍ପର୍ଶୀ ହୋଇଥିବା ଲକ୍ଷ୍ୟ କରାଯାଏ । ଯେଉଁମାନେ ସମାଜରେ ଘୃଣା, ଲାଞ୍ଛନା, ଶୋଷଣର ଶିକାର ହେଉଛନ୍ତି ସେମାନଙ୍କ ବିଶ୍ୱସ୍ତ ଜୀବନଚିତ୍ର ପାଠକ ନିକଟରେ ଉପସ୍ଥାପିତ କରିଛନ୍ତି । କେବଳ ନିମ୍ନ ସମାଜର ଅବହେଳିତ ଗୋଷ୍ଠୀ ନୁହେଁ, ମଧ୍ୟବିତ୍ତ ବା ତା' ଠାରୁ ଉଚ୍ଚ ସଭ୍ୟ, ଶିକ୍ଷିତ ତଥା ପ୍ରତିଷ୍ଠିତ ମଣିଷମାନଙ୍କର ଛଦ୍ମାବରଣ ତଳେ ଲୁଚି ରହିଥିବା ପୈଶାଚିକ କର୍ମରେ ଲିପ୍ତ ଥିବା ନଗ୍ନରୂପକୁ ଦେଖାଇ ଦେଇଛନ୍ତି କେତେକ ଗଳ୍ପରେ । ସମାଜର ଏହି ଜୀବନର ନିଃସଙ୍ଗତା, ବ୍ୟର୍ଥତା ଓ ଅନ୍ତର୍ଦାହର ଚିତ୍ର ମଧ୍ୟ ଉଚ୍ଛଳିତଭାବେ ସ୍ଥାନ ପାଇଛି । ପୁଣି ପରମ୍ପରା ପୃଷ୍ଠଭୂମିରେ ଅଖିଳମୋହନଙ୍କ କୃତିଗୁଡ଼ିକ ଯେଉଁ ନୂତନ ଦିଗନ୍ତ ଉନ୍ମୋଚନ କରିଛି, ତାହା ବାସ୍ତବିକ ମନରେ ବିସ୍ମୟ ସୃଷ୍ଟି କରେ ।

କବିତା କ୍ଷେତ୍ରରେ ଯୁଗାନ୍ତକାରୀ ପରିବର୍ତ୍ତନ ଆସିଛି । ଆଧୁନିକ ଓଡ଼ିଆ କବିତାକୁ ପ୍ରଗତିଶୀଳ ଚିନ୍ତା ଚେତନାଦ୍ୱାରା ଶାଣିତ କରି ତା'ର ଆଙ୍ଗିକରେ ନୂତନତାର ସଞ୍ଚାର ଘଟାଇବା ଦିଗରେ କବିମାନେ ଲାଗି ପଡ଼ିଛନ୍ତି । ବିପ୍ଳବ ଓ ଅଙ୍ଗୀକାର ସହିତ ସ୍ୱପ୍ନକୁ ଗୋଟିଏ ସୂତ୍ରରେ ଗୁନ୍ଥିବା କବିଙ୍କର କାବ୍ୟାଦର୍ଶ ହୋଇଛି । ପୁଣି କବି ସମଗ୍ର ବିଶ୍ୱର ଅଗଣିତ ସର୍ବହରାମାନଙ୍କପାଇଁ ପାଠ କରିଛନ୍ତି ମୁକ୍ତିର ସନନ୍ଦ । ସମାଜ ବୁକୁରେ ରାକ୍ଷୁଡି କରୁଥିବା ଦୁଷ୍ଟ ଶକ୍ତିଗୁଡ଼ିକର ବିନାଶପାଇଁ ସେମାନେ କେବଳ ଆହ୍ୱାନଗୀତି ଗାଇ ନାହାନ୍ତି, ସୃଜନର ବେଣୁ ବି ବାଦନ କରିଛନ୍ତି ଅପୂର୍ବ ଛନ୍ଦରେ । ମାର୍କ୍ସବାଦୀ ବିଚାରଧାରାକୁ ସେମାନେ ପ୍ରୋପାଗଣ୍ଡା ସର୍ବସ୍ୱ ଭାବରେ ବିଚାରି ନାହାନ୍ତି, ସୌନ୍ଦର୍ଯ୍ୟ ସୃଷ୍ଟି ନେଇ ଓ ସମ୍ବେଦନଶୀଳ ମାନବବାଦୀ ଚିନ୍ତାଧାରା ନେଇ ତାହା ପ୍ରକାଶ ପାଇଛି ତାଙ୍କର ସୃଷ୍ଟି ସମ୍ଭାରରେ ।

ଉପନ୍ୟାସ ହେଉ, ଗଳ୍ପ ହେଉ ବା କବିତା କ୍ଷେତ୍ରରେ ହେଉ ସମସ୍ତ ଯଶସ୍ୱୀ ବ୍ୟକ୍ତିଙ୍କୁ ଯେ ମୁଁ ସ୍ଥାନ ଦେଇଛି, ଏହା କହିବା ଧୃଷ୍ଟତା ମାତ୍ର । କେତେ ପରଲୋକଗତ ପ୍ରତିଭାଧର ବ୍ୟକ୍ତି ହୁଏତ ବାଦ୍ ପଡ଼ିଛନ୍ତି । ସେପାଇଁ ବାଦବିସମ୍ବାଦର ସମ୍ଭାବନାକୁ

ମଧ୍ୟ ଏଡ଼ାଇ ଦେଇ ହେବ ନାହିଁ । ତେବେ 'ଯଶୋଦେହେ ଆୟୁଷ୍ମାନ୍' ଗ୍ରନ୍ଥର ପ୍ରଥମ ଭାଗ ପୁନର୍ମୁଦ୍ରଣ ହୋଇସାରିଲାଣି । ସେଥିରେ ବାଦ୍ ପଡ଼ିଥିବା କେତେକ ଦୀପ୍ତିମାନ୍ ବ୍ୟକ୍ତିତ୍ୱଙ୍କୁ ସ୍ଥାନିତ କଲାଭଳି ଭବିଷ୍ୟତ୍‌ରେ ଏହି ଭାଗର ପୁନର୍ମୁଦ୍ରଣ ହେଲେ ସେ ସବୁ ତ୍ରୁଟିବିଚ୍ୟୁତି ଦୂର କରାଯାଇପାରିବ ବୋଲି ମୋର ବିଶ୍ୱାସ ।

ପୂର୍ବଭଳି କହି ରଖେ ଯେ ଏହି ଭାଗରେ ଆଲୋଚିତ ଔପନ୍ୟାସିକ ବା କବିମାନଙ୍କ କୃତି ଉପରେ ରାଶି ରାଶି ସମାଲୋଚନାମୂଳକ ଗ୍ରନ୍ଥ, ପ୍ରବନ୍ଧମାନ ପ୍ରକାଶ ପାଇଛି । ସେସବୁ ସ୍ୱାଭାବିକଭାବେ ମୁଁ ବିଚାରକୁ ନେଇଛି । ବହୁ ଆଲୋଚକ ଓ ଗବେଷକମାନଙ୍କର ମତାମତ ଏଥିରେ ଉଦ୍ଧୃତ ହୋଇଅଛି । କେତେକ ସ୍ଥାନରେ ସେମାନଙ୍କର ମତାମତ ଉଦ୍ଧୃତ ନ ହେଲେ ମଧ୍ୟ ସେଗୁଡ଼ିକର ଭାବ ଏପରିକି ଭାଷା ଏଥିରେ ଉପସ୍ଥାପିତ କରାଯାଇଛି । ପ୍ରାୟ ସମସ୍ତ ପ୍ରତିଭାଧରଙ୍କ ମୂଲ୍ୟାୟନ ମଧ୍ୟ କରିଛି । ସେହି ମୂଲ୍ୟାୟନ ମଧ୍ୟ ଅଭ୍ରାନ୍ତ ବା ସର୍ବଶେଷ ବୋଲି କହିହେବ ନାହିଁ । ସେହି ଆଲୋଚନାର ଧାରା ଯେ ଅବ୍ୟାହତ ରହିବ, ଏହି ଆଶା ଓ ବିଶ୍ୱାସ ମୋର ଅଛି ।

ଖୋର୍ଦ୍ଧା ମହିଳା ମହାବିଦ୍ୟାଳୟ ଓଡ଼ିଆ ବିଭାଗର ମୁଖ୍ୟ ଅଧ୍ୟାପିକା ଡଃ ଗୀତା ରାୟ ମଧ୍ୟ ପୂର୍ବ ଭଳି ଏହି ଭାଗର ପାଣ୍ଡୁଲିପି ବହୁ ଶ୍ରମ ସ୍ୱୀକାର କରି ଆମୂଳଚୂଳ ପଢ଼ି ଆବଶ୍ୟକ ସ୍ଥଳେ ସୁଚିନ୍ତିତ ମତାମତ ଦେଇ ଏହାକୁ ସର୍ବାଙ୍ଗ ସୁନ୍ଦର କରିଛନ୍ତି । ଏହି ଅବସରରେ ମୁଁ ମୋର ହାର୍ଦ୍ଦିକ କୃତଜ୍ଞତା ଜଣାଉଛି ।

ମୁଦ୍ରଣ ପରିପାଟୀରେ ବିଦ୍ୟାପୁରୀ ପ୍ରତିଷ୍ଠାନରେ କାର୍ଯ୍ୟରତ ଶ୍ରୀ କୈଳାସଚନ୍ଦ୍ର ବାରିକ ଗ୍ରନ୍ଥକୁ ତ୍ରୁଟିଶୂନ୍ୟ କରିବା ଦିଗରେ ଆପ୍ରାଣ ଉଦ୍ୟମ କରିଥିବା ମତେ ଅଭିଭୂତ କରିଛି । ତାଙ୍କର ନିଷ୍ଠା ଓ ଉତ୍ସାହ ଅତୀବ ପ୍ରଶଂସନୀୟ । ଶ୍ରୀମତୀ ସନ୍ଧ୍ୟାରାଣୀ ଜେନା ଓ ଶ୍ରୀମତୀ ଜ୍ୟୋତିର୍ମୟୀ ଦାଶ ଗ୍ରନ୍ଥଟିର ଲିପି ସଂଯୋଜନାରେ ସହାୟତା କରିଥିବାରୁ ବିଶେଷ କୃତଜ୍ଞତା ଜଣାଉଛି ।

ଶେଷରେ 'ବିଦ୍ୟାପୁରୀ'ର ସ୍ୱତ୍ୱାଧିକାରୀ ପୀତାମ୍ବର ମିଶ୍ର, ଯାହାଙ୍କ ବିନା ଗ୍ରନ୍ଥଟି ଦୁନିଆର ଆଲୋକ ଦେଖାରୁ ବଞ୍ଚିତ ହୋଇଥାନ୍ତା – ସେହି ମହାଶୟଙ୍କୁ ଅଶେଷ ଧନ୍ୟବାଦ ଓ କୃତଜ୍ଞତା ।

'ଯଶୋଦେହେ ଆୟୁଷ୍ମାନ୍' ଭଳି ବିରାଟ ଗ୍ରନ୍ଥର ରଚନା ଦିଗରେ ଯେଉଁ ଦୁଃସାହସ ସଞ୍ଚୟ କରିଛି ତାହା ପ୍ରିୟ ପାଠକମାନଙ୍କର ପ୍ରେରଣା ଓ ପ୍ରୋତ୍ସାହନରୁ । ଏହି ଅବସରରେ ସମସ୍ତଙ୍କୁ ସଶ୍ରଦ୍ଧ ପ୍ରଣିପାତ ।

**ଲେଖକ**

**ଖୋରଧା**
**ବିଷୁବ ସଂକ୍ରାନ୍ତି**
**୨୦୧୪**

# ସୂଚୀପତ୍ର



□□□



## ସାହିତ୍ୟବଲ୍ଲଭ
# ଆର୍ତ୍ତବଲ୍ଲଭ ମହାନ୍ତି
## [୧୮୮୭-୧୯୬୩]

ମୌଳିକ ସୃଷ୍ଟି, ଉନ୍ନତ ସମାଲୋଚନା ଓ ଗଭୀର ଗବେଷଣା-ଏସବୁ ଉପରେ ଯେକୌଣସି ଜାତିର ସାହିତ୍ୟ ପ୍ରତିଷ୍ଠିତ । ଯେଉଁ ଜ୍ଞାନୀ, ପଣ୍ଡିତ ଓ ଉଚ୍ଚଶିକ୍ଷିତ ସାହିତ୍ୟିକଙ୍କ ସତତ ଅଧ୍ୟବସାୟ ଫଳରେ ଓଡ଼ିଆ ଜାତିର ଗବେଷଣା ଓ ସମାଲୋଚନା ବିକାଶ ଲାଭ କରିଅଛି, ସେମାନଙ୍କ ମଧ୍ୟରେ ଆର୍ତ୍ତବଲ୍ଲଭଙ୍କ ସ୍ଥାନ ଖୁବ୍ ଉଚ୍ଚରେ । ଜଣେ ସାଧକ, ଗବେଷକ, କାବ୍ୟକାର, ସମାଲୋଚକ ଓ ଲୁପ୍ତ ରତ୍ନ ଉଦ୍ଧାରକ ଭାବେ ଆର୍ତ୍ତବଲ୍ଲଭ ଓଡ଼ିଆ ସାହିତ୍ୟରେ ଯୁଗାନ୍ତକାରୀ ସ୍ରଷ୍ଟା ଭାବେ ଉଭା ହୋଇଛନ୍ତି । ବ୍ୟକ୍ତିବିଶେଷ ହେଲେ ମଧ୍ୟ ଏକ ଅନୁଷ୍ଠାନ ମାଧ୍ୟମରେ ସେ ଯେପରି ଅନନ୍ତ ଅଧ୍ୟବସାୟର ପରିଚୟ ଦେଇଛନ୍ତି, ସେହି ଅନୁଷ୍ଠାନ ହିଁ ତାଙ୍କୁ ଏକ ସ୍ୱତନ୍ତ୍ର ଅନୁଷ୍ଠାନରେ ପରିଣତ କରିଦେଇଛି ।

### ଜନ୍ମ ଓ ବଂଶ ପରିଚୟ

ଆର୍ତ୍ତବଲ୍ଲଭ କଟକ ଜିଲ୍ଲା ପାଟକୁରା ଥାନାର ନାଗଣପୁର ଗ୍ରାମରେ ଏକ ଉଚ୍ଚ ମଧ୍ୟବିତ୍ତ ପରିବାରରେ ୧୮୮୭ ମସିହା ଶ୍ରାବଣ କୃଷ୍ଣପକ୍ଷ ଏକାଦଶୀ ଶନିବାର ଦିନ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପୂର୍ବପୁରୁଷଙ୍କ ଆଦି ବାସସ୍ଥାନ ଥିଲା ସାମ୍ପ୍ରତିକ ଖୋର୍ଦ୍ଧା ଜିଲ୍ଲାରେ । ବଂଶବୃଦ୍ଧି ଘଟିବାରୁ ସେମାନେ ସେଠାରୁ ଚାଲିଯାଇ କେନ୍ଦ୍ରାପଡ଼ା ଜିଲ୍ଲାର ପାଟକୁରା ଥାନା ଅନ୍ତର୍ଗତ ନାଗଣପୁର ଗ୍ରାମରେ ଶୁକ-ପରୀକ୍ଷିତ ଗାଦି ପାଖରେ ଗୃହ

ନିର୍ମାଣ କରି ରହିଲେ । ଆର୍ତ୍ତବଲ୍ଲଭଙ୍କ ପିତାମହ ହରି ମହାନ୍ତି ଓ ତାଙ୍କ ଭାଇ କୃଷ୍ଣ ମହାନ୍ତି ଅତ୍ୟନ୍ତ ଧର୍ମପରାୟଣ ବ୍ୟକ୍ତି ଥିଲେ । ଦୁଇ ଭାଇ ଦୁଇଟି ଠାକୁରବାଡ଼ି ବସାଇଥିଲେ ଓ ଠାକୁରଙ୍କ ନାମରେ ଜମିବାଡ଼ି ଖଞ୍ଜିଥିଲେ । ହରି ମହାନ୍ତିଙ୍କର ପୁତ୍ର ଥିଲେ ବାନାମ୍ବର ମହାନ୍ତି । ସେ କନିକା ରାଜାଙ୍କ ମ୍ୟାନେଜର ଭାବେ କାମ କରୁଥିଲେ । ସେ ବିଶ୍ୱସ୍ତତାର ସହ ନିଜର ଦାୟିତ୍ୱ ତୁଲାଉଥିଲେ । ଆର୍ତ୍ତବଲ୍ଲଭ ଥିଲେ ତାଙ୍କରି ପୁତ୍ର ।

## ଶିକ୍ଷା

ଆର୍ତ୍ତବଲ୍ଲଭଙ୍କ ବିଦ୍ୟାରମ୍ଭ ହେଲା ପାଞ୍ଚ ବର୍ଷ ବୟସରେ । ସେ କଟକର କନିକା କୋଠିରେ ରହୁଥିଲେ । ଜଣେ ଅବଧାନଙ୍କ ତତ୍ତ୍ୱାବଧାନରେ ତାଙ୍କର ଶିକ୍ଷାରମ୍ଭ ହେଲା । ପିତା ବାନାମ୍ବରଙ୍କର ଭବିଷ୍ୟତ୍ ଦୃଷ୍ଟି ଥିଲା । ସେ ଇଂରାଜୀ ପାଠର ମର୍ଯ୍ୟାଦା ବୁଝିଥିଲେ. । ପୁଅକୁ ଉଚ୍ଚ ଶିକ୍ଷା ଦେବାପାଇଁ ତାଙ୍କର ଅଭିପ୍ରାୟ ଥିଲା । ସେ ପୁଅକୁ ରୋମାନ୍ କ୍ୟାଥଲିକ୍ ସ୍କୁଲରେ ପଢ଼ାଇଲେ । ମାଇନର ପାଠ ଶେଷ କରି ଆର୍ତ୍ତବଲ୍ଲଭ କଟକ ମିସନ ସ୍କୁଲରେ ମାଟ୍ରିକ୍ ପଢ଼ିଲେ । ମ୍ୟାଟ୍ରିକ୍ୟୁଲେସନ୍ ପାସ୍ କରିବା ପୂର୍ବରୁ ପିତା ବାନାମ୍ବରଙ୍କର ସେପାରିରୁ ଡକରା ଆସିଲା । ମୃତ୍ୟୁ ପୂର୍ବରୁ ସେ ପୁଅକୁ କହିଥିଲେ — ''ମୁଁ ମଲାପରେ ରାଜା ନିଶ୍ଚେ ତୋତେ ତାଙ୍କ ପାଖରେ ଚାକିରି କରିବାକୁ ଡାକିବେ । କିନ୍ତୁ ତୁ କେବେହେଲେ ରାଜାଙ୍କ ପାଖରେ ଚାକିରି କରିବୁ ନାହିଁ । ତୋ ଜାତକରେ ଅଛି ତୁ ବହୁତ ପାଠ ପଢ଼ିବୁ । ସୁନାମ ଅର୍ଜନ କରିବୁ ।''

ଆର୍ତ୍ତବଲ୍ଲଭ ପିତାଙ୍କ ନିର୍ଦ୍ଦେଶକୁ ଅକ୍ଷରେ ଅକ୍ଷରେ ପାଳିଥିଲେ ।

ମାଟ୍ରିକ୍ ପାସ୍ କଲାପରେ ଆର୍ତ୍ତବଲ୍ଲଭ କଲିକତାରେ ଆଇ.ଏ. ଶ୍ରେଣୀରେ ନାମ ଲେଖାଇଲେ । ଆଇ.ଏ. ପାସ୍ କରି ସେ ରେଭେନ୍ସା କଲେଜରେ ସଂସ୍କୃତରେ ଅନର୍ସ ନେଇ ପଢ଼ିଲେ ।

ଛାତ୍ରାବସ୍ଥାରେ ଆର୍ତ୍ତବଲ୍ଲଭ ଜଣେ ଭଲ ଖେଳୁଆଡ୍ ଥିଲେ । ପାଠପଢ଼ା ଅପେକ୍ଷା ସେ ଖେଳାଖେଳିରେ ଅଧିକ ସମୟ ଦେଉଥିଲେ । ବି.ଏ. ପରୀକ୍ଷାର ଦୁଇ ମାସ ପୂର୍ବରୁ ତାଙ୍କର ଗୁରୁ କାଶୀନାଥ ଦାସ ତାଙ୍କୁ ଚେତାଇ ଦେଇଥିଲେ ଯେ ସେ ପଢ଼ାରେ ମନ ନ ଦେଲେ ନିଶ୍ଚୟ ଫେଲ୍ ହୋଇଯିବେ । ଆର୍ତ୍ତବଲ୍ଲଭ ଜିଦ୍‌ଖୋର ଥିଲେ । ସେ ବହିପତ୍ର କିଣାକିଣି କରି ଦିନକୁ ୧୪ ଘଣ୍ଟା ପର୍ଯ୍ୟନ୍ତ ପରିଶ୍ରମ କଲେ ଓ ଅନର୍ସ ପରୀକ୍ଷାରେ ଭଲ ଫଳ ଦେଖାଇଲେ । ବୃତ୍ତି ଲାଭ କରି ସେ କଲିକତା ଭବାନୀପୁରର ଏଲ୍.ଏମ୍.ଏସ୍. କଲେଜରେ ସଂସ୍କୃତରେ ଏମ୍.ଏ. ପଢ଼ିଲେ । ସେ ପରୀକ୍ଷାରେ ଅବଶ୍ୟ ଉତ୍ତୀର୍ଣ୍ଣ ହେଲେ; ମାତ୍ର ପରୀକ୍ଷା ପୂର୍ବରୁ ଅସୁସ୍ଥ ହୋଇପଡ଼ିବାରୁ ଉଚ୍ଚ ସ୍ଥାନ ପାଇପାରି ନ ଥିଲେ ।

## ଅଧ୍ୟାପକ ଭାବେ ନିଯୁକ୍ତି

କଲିକତାରୁ ସଂସ୍କୃତରେ ଉପାଧ୍ୟୁତ୍ତର ଡିଗ୍ରୀ ଲାଭ କରି ଆର୍ତ୍ତବଲ୍ଲଭ କଟକ ଆସିଲେ ୧୯୧୪ ମସିହାରେ । ସେତେବେଳେ ଶିକ୍ଷାବିଭାଗର ଡିରେକ୍ଟର ଥିଲେ

ଜି. ଇ. ଫକ୍ସ ସାହେବ । ରେଭେନ୍‌ସା କଲେଜର ଅଧ୍ୟକ୍ଷ ଥିଲେ ମଧ୍ୟ ଜଣେ ସାହେବ । ଫକ୍‌ସ ସାହେବ ରେଭେନ୍‌ସା କଲେଜର ଅଧ୍ୟକ୍ଷଙ୍କ ସଙ୍ଗେ ପରାମର୍ଶ କରି ଆର୍ତ୍ତବଲ୍ଲଭଙ୍କୁ ଡକାଇ ସଂସ୍କୃତ ଅଧ୍ୟାପକ ଚାକିରି ଦେଲେ । ସାହେବମାନେ ଗୁଣୀର ଗୁଣକୁ ଆଦର କରୁଥିଲେ ଓ ସମ୍ମାନ ଦେଉଥିଲେ । ସେ ଆର୍ତ୍ତବଲ୍ଲଭଙ୍କ ଅନ୍ତର୍ନିହିତ ପ୍ରତିଭାର ପରିଚୟ ପାଇଥିଲେ ।

ଆର୍ତ୍ତବଲ୍ଲଭ ରେଭେନ୍‌ସା କଲେଜରେ ୧୯୧୪ ସାଲ ଅକ୍ଟୋବର ମାସ ୨୨ ତାରିଖରେ ଅଧ୍ୟାପକ ଭାବେ ଯୋଗ ଦେଲେ ।

ଆର୍ତ୍ତବଲ୍ଲଭ ବେଶଭୂଷାରେ ନିରାଡ଼ମ୍ବର ଥିଲେ । ସେ ସମୟରେ ଅଧ୍ୟାପକଙ୍କ ବେଶପୋଷାକ ବିଷୟରେ କଡ଼ା କଟକଣା ଥିଲା । ବହୁ ଅଧ୍ୟାପକ ମଧ୍ୟ ଏ କଟକଣାକୁ ମାନୁଥିଲେ । ମାତ୍ର ଆର୍ତ୍ତବଲ୍ଲଭଙ୍କର ପରିଧେୟ ଥିଲା ଖଣ୍ଡିଏ ଧୋତି, ଗୋଟିଏ ପଞ୍ଜାବି ଓ ବେକରେ ଗୁଡ଼ା ହୋଇଥିବା ଖଣ୍ଡିଏ ଚାଦର । ଶେଷ ଜୀବନ ପର୍ଯ୍ୟନ୍ତ ଏହା ତାଙ୍କର ପରିଧେୟ ହୋଇ ରହିଥିଲା ।

ଆର୍ତ୍ତବଲ୍ଲଭ ଛାତ୍ରବତ୍ସଳ ଥିଲେ । ସେ ଛାତ୍ରମାନଙ୍କୁ ପୁତ୍ରବତ୍ ସ୍ନେହ କରୁଥିଲେ । ସେ କାହାକୁ କେବେବେଳେ ତୁମେ ବା ଆପଣ କହୁ ନ ଥିଲେ । ସମସ୍ତଙ୍କୁ 'ତୁ' ବୋଲି କହି ଆପଣାର କରିନେଉଥିଲେ ।

ଆର୍ତ୍ତବଲ୍ଲଭ ପ୍ରସ୍ତୁତ ନ ହୋଇ କେବେ ଶ୍ରେଣୀକୁ ଯାଉ ନ ଥିଲେ । କେତେ ପଢ଼ାଇବେ, କିପରି ପଢ଼ାଇବେ, କେଉଁ ପରିପ୍ରେକ୍ଷୀରେ କେଉଁ ଉଦାହରଣ ଦେବେ – ସବୁ କଥା ଆଗରୁ ଚିନ୍ତା କରି ଶ୍ରେଣୀକୁ ଯାଉଥିଲେ ।

ଆର୍ତ୍ତବଲ୍ଲଭଙ୍କର ଜଣେ ଛାତ୍ର ତଥା ଓଡ଼ିଶାର ତିନି ଥର ହୋଇଥିବା ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ସାର୍‌ଙ୍କର ଅଧ୍ୟାପନା ଶୈଳୀର ଗୋଟିଏ ଉଦାହରଣ ଦେଇଛନ୍ତି । ଦିନେ ସଂସ୍କୃତ ଟିଉଟୋରିଆଲ୍ ଶ୍ରେଣୀରେ ରଘୁବଂଶ ବୁଝାଉଥିଲେ । ତ୍ରୟୋଦଶ ସର୍ଗର ପ୍ରଥମ ଶ୍ଳୋକଟି ବୁଝାଇବାକୁ ଗୋଟିଏ ପିରିୟଡ୍ ଅର୍ଥାତ୍ ୪୫ ମିନିଟ୍ ଚାଲିଗଲା । କାହିଁକି ସେଠାରେ ଜାୟା ହେଲା, ଦାରା, ଭାର୍ଯ୍ୟା, କାନ୍ତା ବା ପତ୍ନୀ ହେଲା ନାହିଁ ତାହା ବୁଝାଇବାକୁ ଯାଇ ସଂସ୍କୃତ ସାହିତ୍ୟ ପ୍ରତି ଯେଉଁ ଆକର୍ଷଣ ସୃଷ୍ଟି କଲେ, ତାହା କୌଣସି ବକ୍ତୃତାଦ୍ୱାରା ହୋଇ ନ ଥାନ୍ତା ବୋଲି ଶ୍ରୀଯୁକ୍ତ ପଟ୍ଟନାୟକ ଉଲ୍ଲେଖ କରିଛନ୍ତି ।

ଯେତେବେଳେ ଆର୍ତ୍ତବଲ୍ଲଭ ପଢ଼ାଉଥିଲେ, ଆଖି ବୁଜି ପଢ଼ାଉଥିଲେ । ଦୀର୍ଘ କାଳ ପଲକପାତ ଭିତରେ ସେ ଜ୍ଞାନ ସିନ୍ଧୁ ମନ୍ଥନ କରୁଥାନ୍ତି ଯେପରି ! ସେତେବେଳେ ସେ ପ୍ରାୟ ସମାଧିସ୍ଥ ଥାଆନ୍ତି । ସେ ହସନ୍ତି, କାନ୍ଦନ୍ତି, ନୃତ୍ୟ କରନ୍ତି । ଥରେ ଥରେ ନିର୍ବାକ୍ ରହିଯାଆନ୍ତି । ବାକ୍‌ସ୍ଫୂର୍ତ୍ତି ହୁଏନି । ଆଖି ବି ଛଳ ଛଳ ହୋଇଉଠେ । ଜାତିର ଗୌରବ ସ୍ମରଣ କଲାବେଳେ ସେ ବି ନୟନ ପୋଛନ୍ତି ।

ଆର୍ତ୍ତବଲ୍ଲଭ ମେଧାବୀ ଛାତ୍ରଙ୍କୁ ମୁକ୍ତହସ୍ତରେ ବେଶୀ ନମ୍ବର ଦେଉଥିଲେ । ତାଙ୍କ ଛାତ୍ର ମେଧାବୀ ପ୍ରାଣନାଥ ମହାନ୍ତି (ପରବର୍ତ୍ତୀକାଳରେ ଆଇ. ଏ. ଏସ୍.)ଙ୍କଠାରୁ

ଜଣାଯାଏ ଯେ ସେ ମାଟ୍ରିକ୍ ପରୀକ୍ଷାରେ ଆର୍ତ୍ତବଲ୍ଲଭଙ୍କ ହାତରୁ ଶତକଡ଼ା ଅଠାନବେ ନମ୍ବର ପାଇଥିଲେ ।

ଆର୍ତ୍ତବଲ୍ଲଭ ସ୍ନେହୀ ଥିଲେ । ସେ ଛାତ୍ରମାନଙ୍କୁ ଆନ୍ତରିକତା ସହ ଭଲ ପାଉଥିଲେ । ଛାତ୍ରମାନଙ୍କ ବିରୋଧରେ ସେ ଦିନେ ହେଲେ ଅଧ୍ୟକ୍ଷଙ୍କ ପାଖେ ଅଭିଯୋଗ କରି ନାହାନ୍ତି । ଜୋରିମାନା ବା ଦଣ୍ଡ ଦିଆଇ ନାହାନ୍ତି । ଆର୍ତ୍ତବଲ୍ଲଭଙ୍କ ସ୍ନେହ ଓ ସମସ୍ତଙ୍କୁ ଭଲପାଇବା ଗୁଣ ଦେଖି ଜଣେ ଅଧ୍ୟକ୍ଷ ଟି. ସି. ଓରଗିଲେ କହିଥିଲେ – ''ଆର୍ତ୍ତବଲ୍ଲଭ ! ତୁମେ ମୋ'ଠାରୁ ଜଣେ ଆହୁରି ଭଲ ଖ୍ରୀଷ୍ଟିୟାନ୍ ।'' ଏପରି ପ୍ରଶଂସା ସେ କାଳରେ ଥିଲା ଦୁର୍ଲଭ ।

## ପ୍ରସ୍ତୁତି

ଆର୍ତ୍ତବଲ୍ଲଭ ଅଧ୍ୟାପନା କାର୍ଯ୍ୟ ଆରମ୍ଭ କଲାପରେ ଅନୁଭବ କଲେ ଯେ ଓଡ଼ିଆ, ସଂସ୍କୃତ, ପାଲୀ ତଥା ଇଂରାଜୀ ଭାଷାରେ ଗଭୀର ପ୍ରବେଶ ନ ଥିଲେ ଅଧ୍ୟାପନା କାର୍ଯ୍ୟ ସଫଳତା ସହ କରିହେବ ନାହିଁ । ବଙ୍ଗଳା ଭାଷାରେ ଆର୍ତ୍ତବଲ୍ଲଭଙ୍କ ଉତ୍ତମ ଜ୍ଞାନ ଥିଲା । ବେଦ, ଉପନିଷଦ, ବ୍ୟାକରଣ ପଢ଼ିବାରେ ସେ ଆଗ୍ରହୀ ହେଲେ । ଫଳରେ ସଂସ୍କୃତ ସାହିତ୍ୟରେ ପ୍ରଗାଢ଼ ଜ୍ଞାନ ଅର୍ଜନ କଲେ । ୧୯୨୧ ସାଲରେ ରେଭେନ୍ସା କଲେଜ ଚାଉଳିଆଗଞ୍ଜକୁ ଉଠିଗଲା । ସେ ୧୯୧୪ରୁ ୧୯୨୧ ମସିହା ଏହି ସାତ ବର୍ଷ କାଳ ରାସବିହାରୀ ମଠର ପୃଷ୍ଠପୋଷକ ରାଧାକୃଷ୍ଣ ଦାସଙ୍କ ସଂସ୍ପର୍ଶରେ ଆସି ବହୁବିଧ ବୈଷ୍ଣବ ଶାସ୍ତ୍ର ଓ ବହୁ ଧର୍ମଗ୍ରନ୍ଥମାନ ପଢ଼ିଲେ । ପରବର୍ତ୍ତୀକାଳରେ ପ୍ରାଚୀନ ସାହିତ୍ୟ ବିଷୟରେ ଆଲୋଚନା କରିବାକୁ ଏହା ଆର୍ତ୍ତବଲ୍ଲଭଙ୍କୁ ବହୁ ଭାବରେ ସହାୟକ ହେଲା ।

ଆର୍ତ୍ତବଲ୍ଲଭ ପୂର୍ବ ଛାତ୍ରାବାସର ତତ୍ତ୍ୱାବଧାରକ ଥାଆନ୍ତି । ସେ ଉପର ମହଲାରେ ରହୁଥିଲେ । ତଳ ମହଲାରେ ରହୁଥିଲେ ସହକାରୀ ତତ୍ତ୍ୱାବଧାରକ – ରସାୟନ ବିଭାଗର ଅଧ୍ୟାପକ ଗୁରୁଚରଣ ମହାନ୍ତି । ସେତେବେଳେ ଛାତ୍ରାବାସରେ ବିଜୁଳିବତି ନ ଥାଏ । ସନ୍ଧ୍ୟା ହେଲେ ଗୋଟିଏ ବଡ଼ ଲଣ୍ଠନ ଆଲୋକରେ ପଢ଼ାପଢ଼ି ହୁଏ । ଗୁରୁଚରଣ ଖେଳାଖେଳି କରୁ ନ ଥିଲେ । ସନ୍ଧ୍ୟା ହୋଇଗଲେ ବଡ଼ ଲଣ୍ଠନ ଆଲୁଅରେ ପଢ଼ାପଢ଼ି କରୁଥିଲେ ।

ଦିନେ ଆର୍ତ୍ତବଲ୍ଲଭ ସନ୍ଧ୍ୟା ପରେ ଛାତ୍ରାବାସର ଉପରମହଲାକୁ ଯାଉଥିଲାବେଳେ ଶୁଣିପାରିଲେ ଯେ ଅଧ୍ୟାପକ ଗୁରୁଚରଣ ସ୍ୱରଧରି 'ବିଦଗ୍ଧ ଚିନ୍ତାମଣି'ର ଛାନ୍ଦ ବୋଲୁଛନ୍ତି । ଆର୍ତ୍ତବଲ୍ଲଭ ତାଙ୍କ ଘର ଭିତରକୁ ପଶିଯାଇ ପଚାରିଲେ – 'ବୁଝୁଛ ନା ଖାଲି ବୋଲୁଛ ?'

ଗୁରୁଚରଣ ଉତ୍ତର ଦେଲେ – ''ବୁଝେ ବା ନ ବୁଝେ, ମତେ ଭଲ ଲାଗୁଛି ବୋଲି ମୁଁ ବୋଲୁଛି ।''

ଆର୍ତ୍ତବଲ୍ଲଭ ଅତ୍ୟନ୍ତ ସ୍ନେହ କୋମଳ ସ୍ୱରରେ କହିଲେ – ''ଆରେ ବୁଝିଲେ ଆହୁରି କେତେ ଭଲ ଲାଗନ୍ତା ।''

ଦୁଇଜଣଯାକ ସେଇଠି ବସି ସ୍ଥିର କଲେ ଯେ 'ବିଦଗ୍ଧ ଚିନ୍ତାମଣି' ଟୀକା ଲେଖିବାକୁ ହେବ ।

ଗୁରୁଚରଣ 'ବିଦଗ୍ଧ ଚିନ୍ତାମଣି'ର ଯେଉଁ ବହି ଖଣ୍ଡିକ ପଢୁଥିଲେ ସେ ଖଣ୍ଡିକ ତାଙ୍କ ସହଧର୍ମିଣୀ ବିବାହ ବେଳେ ବାପଘରୁ ଆଣିଥିଲେ । ସେଥିରେ କେବଳ କାବ୍ୟ ଥିଲା । ଟୀକା-ଟିପ୍ପଣୀ ନ ଥିଲା । ଗୁରୁଚରଣ ସେହି ବହିର ପ୍ରତି ପୃଷ୍ଠାରେ ଖଣ୍ଡିଏ ଲେଖାଏଁ କାଗଜ ଯୋଡ଼ି ଦିନେ ଆର୍ତ୍ତବଲ୍ଲଭଙ୍କୁ ବଢ଼ାଇଦେଲେ ଓ କହିଲେ – ''ଏଣିକି ଟୀକା ଲେଖିବା କାର୍ଯ୍ୟ ଆପଣଙ୍କର ।''

ପ୍ରତିଦିନ ଦୁଇଜଣଯାକ ବସିଲେ । ଟୀକା ଲେଖା ଚାଲିଲା । ଭଣଜା-ବିନୋଦ କାନୁନଗୋଙ୍କୁ ଆଉ ଚାରି ଜଣଙ୍କୁ ଡାକି ଆଣିବାକୁ ପଠାନ୍ତି । ସେମାନେ ହେଲେ ଅଧ୍ୟାପକ ଲକ୍ଷ୍ମୀକାନ୍ତ ଚୌଧୁରୀ, ଛାତ୍ର ଅମରବଲ୍ଲଭ ଦେ, ଜଗଦାନନ୍ଦ ମହାନ୍ତି ଓ ବିଚ୍ଛନ୍ଦଚରଣ ପଟ୍ଟନାୟକ । ସେମାନେ ହେଲେ ଟୀକା ଲେଖିବା ବେଳର ନିତ୍ୟସଙ୍ଗୀ ।

ଆର୍ତ୍ତବଲ୍ଲଭ ଓ ଅନ୍ୟମାନେ ଅତି ନିଷ୍ଠାର ସହିତ ଟୀକା ଲେଖିବାରେ ଲାଗିଲେ । ସେମାନେ ଯେ ଏ ଦିଗରେ ମନଃପ୍ରାଣ ଢାଳିଦେଲେ, ଏହା ବେଶ୍ ଅନୁମାନ କରାଯାଇପାରେ । ପ୍ରାୟ ଚାରୋଟି ଛାନ୍ଦର ଟୀକା ଶେଷ ହେଲା । ହଠାତ୍ ଦିନେ ଲେଖା ମଝିରେ କଲମ ରଖି ଆର୍ତ୍ତବଲ୍ଲଭ କହିଲେ – ''ଆଉ ଟୀକା କାମ ଆଗେଇ ପାରିବ ନାହିଁ । ଛାପା ବହିରେ ବହୁତ ଭୁଲ ଅଛି ବୋଲି ମୋର ମନେ ହେଉଛି । କେତେକ ସ୍ଥାନରେ ଅର୍ଥ ବୋଧଗମ୍ୟ ହେଉ ନାହିଁ । × × × ଓଡ଼ିଆ ପୁଅ ଅଭିମନ୍ୟୁ କେବେ ଏମିତି ଲେଖି ନାହିଁ ।''

ଟୀକା କରିବା କାମ ସେଦିନ ବନ୍ଦ ହେଲା । ଆର୍ତ୍ତବଲ୍ଲଭ ଥିଲେ ଭଗବତ୍‌ପ୍ରାଣ ବ୍ୟକ୍ତି । ସେହିଦିନ ରାତି ପାହାନ୍ତାରେ ସେ ସ୍ୱପ୍ନ ଦେଖିଲେ ଯେ ସତେ ଯେପରି କି କେହି ତାଙ୍କୁ କହି ଦେଉଛନ୍ତି – ''ଓଡ଼ିଶାରେ ଚାରିଆଡ଼େ ପୋଥି ପଡ଼ିରହିଛି । ଖୋଜି ବାହାର କର । ଶୁଦ୍ଧ ପାଠ ମିଳିଯିବ ।''

ସକାଳେ ଆର୍ତ୍ତବଲ୍ଲଭ ଗୁରୁଚରଣଙ୍କୁ ସ୍ୱପ୍ନବୃତ୍ତାନ୍ତ ଜଣାଇଲେ । ପୋଥି ସଂଗ୍ରହ ହେବ ବୋଲି ସ୍ଥିର ହେଲା । ଯାଜପୁରର ଏସ୍. ଡି. ଓ. ଥିଲେ ରାଧାଚରଣ ଦାସ । ପୁରୀର କଲେକ୍ଟର ଥାଆନ୍ତି ଦୟାନିଧି ଦାସ । ସେହି ଦୁଇ ଜଣଙ୍କ ଉଦ୍ୟମରେ ପୋଥି କେତେ ଖଣ୍ଡ ଆସିଲା । ନେମାଳର ଅଚ୍ୟୁତାନନ୍ଦଙ୍କ ଗାଦିରୁ ପୋଥି ସଂଗ୍ରହ କରିବାପାଇଁ ଲୋକ ଗଲେ । ସେହି ପୋଥି ମିଳାଇ ଶୁଦ୍ଧ ସଂସ୍କରଣ ପ୍ରସ୍ତୁତ କରିବାରେ ଆର୍ତ୍ତବଲ୍ଲଭ ଓ ଗୁରୁଚରଣ ଲାଗିଗଲେ । ସେହି ସମୟରେ ଦୈବ ଯୋଗକୁ କଲିକତାରୁ ଭାସ୍କରଚନ୍ଦ୍ର ମହାପାତ୍ର ଆସି ତାଙ୍କ ପାଖେ ପହଞ୍ଚିଲେ । ସେ ଲକ୍ଷ୍ମୀକାନ୍ତ ଚୌଧୁରୀଙ୍କ ଭିଣୋଇ ଥିଲେ । ସେ ଏହି ପୋଥି ସଂଗ୍ରହ କାର୍ଯ୍ୟ ଦେଖି ଅତି ମାତ୍ରାରେ ଖୁସି ହୋଇଗଲେ । କଲିକତାକୁ ଫେରି ସେ ଏହି କାର୍ଯ୍ୟ ପାଇଁ ୧୫୦୦ ଟଙ୍କା ପଠାଇଦେଲେ । ଏହି ଟଙ୍କା

ମିଳିବା ପରେ ଆନନ୍ଦ ଉଲ୍ଲାସ ଖେଳିଗଲା । ପ୍ରାଚୀନ ସାହିତ୍ୟ ଆଲୋଚନାପାଇଁ ଗୋଟାଏ ସମିତି ଗଢ଼ା ଯିବାର ସ୍ଥିର ହେଲା, ନାମ ଦିଆଗଲା – 'ପ୍ରାଚୀ ସମିତି' ।

୧୯୨୪ ମସିହାରେ 'ପ୍ରାଚୀ ସମିତି' ଆରମ୍ଭ ହୋଇଥିଲେହେଁ ତାହା ବିଧିବଦ୍ଧ ରେଜିଷ୍ଟାର୍ଡ଼ ଅନୁଷ୍ଠାନ ଭାବରେ ୧୯୨୯ ମସିହାରେ ସ୍ୱୀକୃତି ଲାଭ କଲା । ସମିତିର ଉଦ୍ଦେଶ୍ୟ ହେଲା ଓଡ଼ିଆ ସାହିତ୍ୟର ଉନ୍ନତି ଓ ପରିପୁଷ୍ଟ ସାଧନ । ଓଡ଼ିଆ ଭାଷାରେ ହାତଲେଖା ପୋଥି, ପୁସ୍ତକ ଓ ମୌଳିକ ରଚନାର ସଂଗ୍ରହ, ସଙ୍କଳନ ଓ ସମ୍ପାଦନ ଏହାର କାର୍ଯ୍ୟ ହେଲା । ଇତିହାସ, ଦର୍ଶନ, ବ୍ୟବସ୍ଥା, ଆୟୁର୍ବେଦ ଓ ବିଜ୍ଞାନ ସମ୍ବନ୍ଧୀୟ ଲେଖାର ଅନୁସନ୍ଧାନ ଓ ଯଥାକାଳରେ ତାହାର ଫଳାଫଳ ପ୍ରଚାର କରିବା ମଧ୍ୟ ଏହାର କାର୍ଯ୍ୟ ହେଲା । ସଂସ୍କୃତ, ପାଲୀ, ହିନ୍ଦୀ ଓ ବଙ୍ଗଳା ଭାଷାରେ ଲିଖିତ ସମସ୍ତ ଅପ୍ରକାଶିତ ପାଣ୍ଡୁଲିପିମାନଙ୍କର ସମ୍ପାଦନା ଓ ପ୍ରକାଶନ ମଧ୍ୟ ଏହାର ଲକ୍ଷ୍ୟ ହେଲା ।

'ପ୍ରାଚୀ ସମିତି' ପାଇଁ ଗୋଟିଏ ପରିଚାଳନା ବୋର୍ଡ଼ ଗଢ଼ାଗଲା । ସେ ପରିଚାଳନା ସମିତିରେ ରହିଲେ ରାୟବାହାଦୁର ଲକ୍ଷ୍ମୀଧର ମହାନ୍ତି (ସଭାପତି), ସାମନ୍ତ ମଦନମୋହନ ନରେନ୍ଦ୍ର ମହାପାତ୍ର (ସହକାରୀ ସଭାପତି), ଭୂୟାଁ ଭାସ୍କର ଚନ୍ଦ୍ର ମହାପାତ୍ର, ଚିନ୍ତାମଣି ତ୍ରିପାଠୀ, ଆର୍ତ୍ତବଲ୍ଲଭ ମହାନ୍ତି, ଗୁରୁଚରଣ ମହାନ୍ତି, ଲକ୍ଷ୍ମୀଧର ଚୌଧୁରୀ, ବିଚିତ୍ରାନନ୍ଦ ଦାସ, କରୁଣାକର କର, ଜଗଦାନନ୍ଦ ମହାନ୍ତି ଓ ବିଚ୍ଛନ୍ଦଚରଣ ପଟ୍ଟନାୟକ ପ୍ରଭୃତି । ସମିତିର ପ୍ରଧାନ ପୃଷ୍ଠପୋଷକ ଥିଲେ ଲକ୍ଷ୍ମୀକାନ୍ତ ଚୌଧୁରୀଙ୍କ ଭିଣୋଇ ଜମିଦାର ଭାସ୍କର ଚନ୍ଦ୍ର ଭୂୟାଁ ମହାପାତ୍ର ।

ଆର୍ତ୍ତବଲ୍ଲଭ ସର୍ବାନ୍ତକରଣରେ ପ୍ରାଚୀନ ସାହିତ୍ୟର ପ୍ରତିଷ୍ଠା ଓ ପ୍ରଚାରପାଇଁ ଉଦ୍ୟମ କରୁଥିଲେ । ଗ୍ରନ୍ଥଗୁଡ଼ିକ କେବଳ ସଙ୍କଳନ କଲେ ହେବ ନାହିଁ, ତା'ର ପ୍ରକାଶନ ମଧ୍ୟ ଆବଶ୍ୟକ । ସେହି ଆବଶ୍ୟକତା ପୂରଣପାଇଁ ଏକ ପ୍ରେସ୍ ପ୍ରତିଷ୍ଠା କରାଗଲା । ତା'ର ନାମ ହେଲା 'ପ୍ରାଚୀ ପ୍ରେସ୍' । ବିଚ୍ଛନ୍ଦଚରଣ ହେଲେ ପ୍ରାଚୀ ପ୍ରେସ୍‌ର ବ୍ୟବହର୍ତ୍ତା । ତାଙ୍କର ଏକ ମାତ୍ର ଲକ୍ଷ୍ୟ ହେଲା ଯେପରି ପ୍ରକାଶିତ ପୁସ୍ତକରେ କୌଣସି ତ୍ରୁଟି ନ ରହେ । ବିଚ୍ଛନ୍ଦଚରଣ ମଧ୍ୟ ନିର୍ଭୁଲ ମୁଦ୍ରଣପାଇଁ ସେ ସମୟରେ ସମସ୍ତଙ୍କର ପ୍ରଶଂସାଭାଜନ ହୋଇଥିଲେ ।

'ପ୍ରାଚୀ ସମିତି', 'ପ୍ରାଚୀ ପ୍ରେସ୍' ସହିତ 'ପ୍ରାଚୀ' ତ୍ରୈମାସିକ ପତ୍ରିକା ମଧ୍ୟ ପ୍ରକାଶ ପାଇଲା । ଓଡ଼ିଶା ବାହାରେ ଓଡ଼ିଆ ଭାଷା ଓ ସାହିତ୍ୟର ଗୌରବ ପ୍ରସାର କରିବା ଏହାର ହେଲା ଲକ୍ଷ୍ୟ । ଇଂରାଜୀ ଅନୁବାଦ ମାଧ୍ୟମରେ ପ୍ରାଚୀନ ଲେଖାସବୁ 'ପ୍ରାଚୀ'ରେ ପ୍ରକାଶିତ ହେବାକୁ ଲାଗିଲା । ବିଚ୍ଛନ୍ଦଚରଣ ଇଂରାଜୀରୁ ଓଡ଼ିଆ ଓ ଓଡ଼ିଆରୁ ଇଂରାଜୀକୁ ସାବଲୀଳ ଭାବରେ ଅନୁବାଦ କଲେ । ଆକ୍ଷରିକ ଅନୁବାଦ ନ କରି ତା'ର ମର୍ମାନୁବାଦ ଓ ଭାବାନୁବାଦ କରି ତାକୁ ମୌଳିକ ରଚନା ପର୍ଯ୍ୟାୟଭୁକ୍ତ କରାଇଲେ ବିଚ୍ଛନ୍ଦଚରଣ ।

ପୁସ୍ତକ ପ୍ରକାଶ ପରେ ତା'ର ବିକ୍ରୟପାଇଁ ଗୋଟିଏ ପୁସ୍ତକ ଦୋକାନ ଏକାନ୍ତ ଆବଶ୍ୟକ ହୋଇପଡ଼େ । ତେଣୁ କଟକର ଚାନ୍ଦିନୀଚୌକ ଭୋଳାମିଆଁ ବଜାରରେ 'ସମିତି' ତରଫରୁ 'ପ୍ରାଚୀ' ଷ୍ଟୋର ଖୋଲାଗଲା ।

**ସମାଲୋଚନା**

ପ୍ରାଚୀ ସମିତି ଆରମ୍ଭ ହେଲା ପରେ ଜଣେ ପତ୍ରିକା ସମ୍ପାଦକ ଏହି ସମ୍ପାଦନା କାର୍ଯ୍ୟକୁ ସମାଲୋଚନା କରି କହିଥିଲେ – ''ଏ ହେଉଛି ବିନା ସୂତ୍ରରେ ବସ୍ତ୍ର ବୟନର ବ୍ୟବସ୍ଥା ।''

ଆର୍ତ୍ତବଲ୍ଲଭ କିନ୍ତୁ ଏହି ସମାଲୋଚନାକୁ ଭ୍ରୂକ୍ଷେପ କରି ନ ଥିଲେ । ଈଶ୍ୱରଙ୍କଠାରେ ତାଙ୍କର ଅଗାଧ ବିଶ୍ୱାସ ଓ ପୂର୍ଣ୍ଣ ଆସ୍ଥା ଥିଲା । ସେ ସେହି ସମାଲୋଚନାଟି ପଢ଼ି କହିଲେ – ''ଗୋବିନ୍ଦଙ୍କର କୃପା ହେଲେ ଦୂବ ଦାରୁ ହୁଏ । ମୋର ବିଶ୍ୱାସ ଗୋବିନ୍ଦଙ୍କ କୃପାରୁ ବିନା ସୂତ୍ରରେ ବସ୍ତ୍ର ବୟନ ସମ୍ଭବପର ହେବ – ଆମର ପ୍ରାଚୀ ସମିତିର କାର୍ଯ୍ୟ ଦିନକୁ ଦିନ ଉନ୍ନତତର ହେବ ।''

ଆର୍ତ୍ତବଲ୍ଲଭଙ୍କର ସେହି ଗଭୀର ନିଷ୍ଠା କାର୍ଯ୍ୟରେ ପ୍ରମାଣିତ ହେଲା ।

**ପୋଥି ସଂଗ୍ରହ**

ପ୍ରାଚୀ ସମିତି ପକ୍ଷରୁ ଓଡ଼ିଶାର ବିଭିନ୍ନ ସ୍ଥାନରୁ ପୋଥି ସଂଗ୍ରହ କରାଗଲା । କେଉଁଠି ଖଣ୍ଡିଏ ପୋଥି ଥିବା ସମ୍ବାଦ ପାଇଲେ ଆର୍ତ୍ତବଲ୍ଲଭ ନିଜେ ଯାଇ ବା ଲୋକ ପଠାଇ ସେସବୁ ପୋଥି ଆଣୁଥିଲେ । ପୋଥି ପାଇବା ପର୍ଯ୍ୟନ୍ତ ସେ ବେଳେବେଳେ ମାସ ମାସ ଧରି ସେ ସ୍ଥାନରେ ରହିଯାଉଥିଲେ । କେଉଁଠି କେଉଁଠି ମାଗଣାରେ ପୋଥି ମିଳିଯାଉଥିଲା । ଆଉ କେଉଁଠି କେଉଁଠି ପୋଥି ମାଲିକକୁ ଅର୍ଥ ଦେବାକୁ ପଡୁଥିଲା । ବେଳେ ବେଳେ ତାହା ପାଇଁ ବହୁ ଅର୍ଥ ସେ ଦେଉଥିଲେ । ପୁରୁଣା ପୋଥି ଖଣ୍ଡେ ପାଇଲେ ଆର୍ତ୍ତବଲ୍ଲଭ ମଣିମୁକ୍ତା ପାଇଲା ପରି ମନେ କରୁଥିଲେ ।

**ସମ୍ପାଦନା**

ଆର୍ତ୍ତବଲ୍ଲଭ ପ୍ରାଚୀନ ପୋଥି ସମ୍ପାଦନାରେ ଯେଉଁ ପଦ୍ଧତି ଥୋଇ ଦେଇଯାଇଛନ୍ତି, ତାହା ପରବର୍ତ୍ତୀକାଳରେ ଅଧିକାଂଶ ସମ୍ପାଦନାକାରୀଙ୍କଦ୍ୱାରା ଗୃହୀତ ହୋଇଅଛି । ଏହି ପଦ୍ଧତିରେ ପାଞ୍ଚୋଟି ମୁଖ୍ୟ ବିଷୟ ଥିଲା । ସେଗୁଡ଼ିକ ହେଲା – (କ) ବିଶୁଦ୍ଧ ସଂସ୍କରଣ (ଖ) ସଙ୍କଳନ (ଗ) ସମ୍ପାଦନା (ଘ) ବହୁ ପାଠ (ଙ) ମୁଖବନ୍ଧ (ଚ) ଟୀକା ।

ଆର୍ତ୍ତବଲ୍ଲଭ ବିଶୁଦ୍ଧ ସଂସ୍କରଣପାଇଁ ବିଶୁଦ୍ଧ ପାଠ ଓ ବିଶୁଦ୍ଧ ପାଠ ପାଇଁ ବହୁ ପଠନର ଆବଶ୍ୟକତା ଅଛି ବୋଲି ମନେ କରୁଥିଲେ । ଭିନ୍ନ ଭିନ୍ନ ପାଠ ମଧ୍ୟରୁ ଯେଉଁ ପାଠଟି ସର୍ବାଧିକ ଶୁଦ୍ଧ ବୋଲି ତାଙ୍କର ହୃଦ୍‌ବୋଧ ହେଉଥିଲା, ତାହାକୁ ସେ ବିଶୁଦ୍ଧ ପାଠ ବା ପ୍ରମାଦଶୂନ୍ୟ ପାଠ ବୋଲି ଗ୍ରହଣ କରୁଥିଲେ । ସେ ମୁଖବନ୍ଧ ରଚନା ବେଳେ

ଟୀକା ବା ବ୍ୟାଖ୍ୟାକାର ଭାବେ ଅବତୀର୍ଣ୍ଣ ହୋଇଥିଲେ । ଏହି ଟୀକା ବା ବ୍ୟାଖ୍ୟା ଲେଖିବାର ଆବଶ୍ୟକତା ଅପରିହାର୍ଯ୍ୟ ବୋଲି ମନେ କରୁଥିଲେ । ନିଜେ ସଂସ୍କୃତ ବିଭାଗର ଅଧ୍ୟାପକ ଥିବାରୁ ଏହି କାର୍ଯ୍ୟଟି ତାଙ୍କ ପକ୍ଷେ ସହଜ ଓ ସମ୍ଭବ ହୋଇଥିଲା ।

ପ୍ରାଚୀ ସମିତି ଗ୍ରନ୍ଥମାଳାକୁ ଆଲୋଚକ ବଂଶୀଧର ମହାନ୍ତି ନିମ୍ନୋକ୍ତଭାବେ ବିଭକ୍ତ କରିଛନ୍ତି । ସେଗୁଡ଼ିକ ହେଲା – (କ) ପ୍ରାକ୍ ସାରଳା ସାହିତ୍ୟ (ଖ) ସାରଳା ସାହିତ୍ୟ (ଗ) ସାରଳା ପରବର୍ତ୍ତୀ ସାହିତ୍ୟ (ଘ) ପଞ୍ଚସଖା ସାହିତ୍ୟ (ଙ) ପ୍ରାକ୍ ଭଞ୍ଜ ସାହିତ୍ୟ (ଚ) ଭଞ୍ଜଯୁଗ ଓ ତା'ର ପରବର୍ତ୍ତୀ ସାହିତ୍ୟ (ଛ) ମହିମା ଧର୍ମ ସାହିତ୍ୟ (ଜ) ଅନ୍ୟାନ୍ୟ ପ୍ରକାଶନୀ । ଆଲୋଚକଙ୍କ ମତରେ ଆର୍ତ୍ତବଲ୍ଲଭଙ୍କ ସମ୍ପାଦିତ କୃତି ପ୍ରାଚୀନ ଓଡ଼ିଆ ସାହିତ୍ୟର ସୁଦୀର୍ଘ ଓ ବିରାଟ ପରିସରକୁ ଆବୃତ କରିଥିଲା ।

ଆର୍ତ୍ତବଲ୍ଲଭ ' Kavya Heritage of Odisha' ଶୀର୍ଷକ ସନ୍ଦର୍ଭରେ ଲେଖିଛନ୍ତି ଯେ ଖାରବେଳଙ୍କ ସମୟରୁ ସପ୍ତମ ଓ ଅଷ୍ଟମ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଆ ଭାଷାର କୌଣସି ସନ୍ଧାନ ମିଳେ ନାହିଁ । ଅଷ୍ଟମ ଶତାବ୍ଦୀରୁ ସିଦ୍ଧାଚାର୍ଯ୍ୟମାନଙ୍କର ଦୋହା ସାହିତ୍ୟ ଦେଖିବାକୁ ମିଳିଥାଏ । ସିଦ୍ଧାଚାର୍ଯ୍ୟମାନଙ୍କର ଦୋହାବଳୀ ହେଉଛି ପ୍ରାଚୀନତମ ଓଡ଼ିଆ ଭାଷା । ତାଙ୍କ ମତରେ ଅଷ୍ଟମ ଶତାବ୍ଦୀଠାରୁ ହିଁ ସହଜିଆ ସିଦ୍ଧାଚାର୍ଯ୍ୟଙ୍କ ମଧ୍ୟରେ ଦୁଇପାଦ, କାହ୍ନୁପାଦ, ଶବରୀପାଦ ଆଦି ଓଡ଼ିଆ ନିଜ ଭାଷାରେ ଚର୍ଯ୍ୟାଗୀତିକା ସବୁ ଲେଖିଯାଇଛନ୍ତି ।

ଆର୍ତ୍ତବଲ୍ଲଭ ହିଁ ସର୍ବପ୍ରଥମେ ବ୍ରଜବୋଲି ଭାଷା ସହିତ ଓଡ଼ିଆ ଭାଷାର ଘନିଷ୍ଠ ସମ୍ପର୍କ ନିରୂପଣ କରିଛନ୍ତି । ବ୍ରଜବୋଲି ଭାଷାରେ ରଚିତ ବହୁ କବିତା ସେ ଉପସ୍ଥାପିତ କରିଛନ୍ତି । ସେଗୁଡ଼ିକ ଓଡ଼ିଆ ରଚନା ବୋଲି ଜଣାପଡ଼େ ବୋଲି ଆଲୋଚକମାନେ ମତ ଦେଇଛନ୍ତି । ଆର୍ତ୍ତବଲ୍ଲଭ ପ୍ରାଚୀନ ଓଡ଼ିଆ ଗଦ୍ୟ ଓ ପଦ୍ୟର ଆଦର୍ଶ ଭାବେ କେତେକ ରଚନା ନିର୍ବାଚନ କରିଛନ୍ତି । ସେ ମଧ୍ୟ 'ପ୍ରାଚୀନ ଗଦ୍ୟ ପଦ୍ୟାଦର୍ଶ' ଗ୍ରନ୍ଥର ସଙ୍କଳନ ଓ ସମ୍ପାଦନା କରିଛନ୍ତି । ବ୍ରଜବୋଲି ସାହିତ୍ୟର ସର୍ବପ୍ରଥମ ଆଲୋଚକ ଭାବେ ଆର୍ତ୍ତବଲ୍ଲଭ ସ୍ୱୀକୃତି ଲାଭ କରିଛନ୍ତି ।

### ମାଦଳାପାଞ୍ଜି

ପ୍ରାଚୀ ସମିତିଦ୍ୱାରା ସର୍ବପ୍ରଥମେ ମାଦଳାପାଞ୍ଜିର ଏକ ସନ୍ତୋଷଜନକ ସମ୍ପାଦନା କରାଯାଇଛି । ମାଦଳାପାଞ୍ଜିରେ ବହୁ ଜନଶ୍ରୁତି ଓ ଲେଖନକାରଙ୍କ ମନଗଢ଼ା କାହାଣୀ ଅଛି । ମାଦଳାପାଞ୍ଜିର ଐତିହାସିକତା ଓ ସମୟ ନିରୂପଣ ନେଇ ବିଭିନ୍ନ ମତ ରହିଛି । ଆର୍ତ୍ତବଲ୍ଲଭ ଜଗନ୍ନାଥ ମନ୍ଦିର ସମ୍ବନ୍ଧୀୟ ବିବରଣୀ ଦେଉଳକରଣ ପ୍ରଭୃତିଙ୍କ ଗୃହରେ ରକ୍ଷିତ ମାଦଳାପାଞ୍ଜିର ବିଶେଷ ବିବରଣୀ ପ୍ରକାଶିତ କରାଇ ଓଡ଼ିଆ ଗଦ୍ୟସାହିତ୍ୟରେ

ଏକ ବଡ଼ ଅଭାବ ପୂରଣ କରିଛନ୍ତି । ସେ ଦ୍ୱାଦଶ ଶତାବ୍ଦୀରୁ ମାଦଳାପାଞ୍ଜି ଲେଖାର ଆରମ୍ଭ ବୋଲି ମତ ଦେଇଛନ୍ତି । ବିଭିନ୍ନ ଆଲୋଚକ ଓ ଐତିହାସିକ ମାଦଳାପାଞ୍ଜି ରଚନାର ଆରମ୍ଭ କାଳ ବିଭିନ୍ନ ଶତାବ୍ଦୀ ବୋଲି ଦର୍ଶାଇଛନ୍ତି । ହୁଏତ ଆର୍ତ୍ତବଲ୍ଲଭଙ୍କ କାଳ ନିର୍ଣ୍ଣୟ ଠିକ୍ ହୋଇ ନ ପାରେ, କିନ୍ତୁ ପ୍ରାଚୀନ ଓଡ଼ିଆ ଗଦ୍ୟସାହିତ୍ୟର ଅନ୍ୟତମ ନମୁନା ମାଦଳାପାଞ୍ଜିର ସମ୍ପାଦନା କରି ଓଡ଼ିଆ ସାହିତ୍ୟ ତଥା ଇତିହାସ ଜଗତକୁ ଯେ ସେ ସମୃଦ୍ଧ କରିଛନ୍ତି, ଏହା ସମସ୍ତେ ସ୍ୱୀକାର କରନ୍ତି ।

## ରୁଦ୍ର ସୁଧାନିଧି

ଆର୍ତ୍ତବଲ୍ଲଭଙ୍କ ଅନ୍ୟ ଏକ ଆବିଷ୍କାର ହେଉଛି 'ରୁଦ୍ର ସୁଧାନିଧି' । ଏଥିରେ କବି ଗଦ୍ୟ ରୀତିରେ କାବ୍ୟ ଲେଖିଛନ୍ତି । ଏହାକୁ ତେଣୁ ପଦ୍ୟାତ୍ମିକ ଗଦ୍ୟ କହିବା ଅଧିକ ଯୁକ୍ତିସଙ୍ଗତ ହେବ । ଆର୍ତ୍ତବଲ୍ଲଭଙ୍କ ଏହି ଆବିଷ୍କୃତ ଗ୍ରନ୍ଥଟି ଓଡ଼ିଆ ସାହିତ୍ୟର ଅମୂଲ୍ୟ ମଣି । ଏହାର ପ୍ରକାଶନ ଓ ସମ୍ପାଦନାରେ ଓଡ଼ିଶାରେ ଶୈବ ଧର୍ମ ତଥା ଅନ୍ୟାନ୍ୟ ଧର୍ମର ବହୁ ତତ୍ତ୍ୱ ସହିତ ଯୋଗଶାସ୍ତ୍ରର ବହୁ ରହସ୍ୟ ଉଦ୍‌ଘାଟିତ ହୋଇଛି ।

## ସାରଳା ମହାଭାରତ

କିନ୍ତୁ ଆର୍ତ୍ତବଲ୍ଲଭଙ୍କ ଅମର କୀର୍ତ୍ତି ହେଉଛି 'ସାରଳା ମହାଭାରତ' ସମ୍ପାଦନା । ସାରଳା ଦାସ ହେଉଛନ୍ତି ଓଡ଼ିଶାର ଆଦି କବି । ତାଙ୍କ ରଚିତ ମହାଭାରତ ଯେ ଓଡ଼ିଆ ଭାଷାର ସାହିତ୍ୟିକ ମୂଲ୍ୟରେ ସମୃଦ୍ଧ ସର୍ବପ୍ରଥମ ରଚନା, ଏହା ସମସ୍ତେ ଗ୍ରହଣ କରନ୍ତି । ସର୍ବପ୍ରଥମେ ଆର୍ତ୍ତବଲ୍ଲଭ ମହାଭାରତର ପାଣ୍ଡୁଲିପି ମାନ ବିଭିନ୍ନ ସ୍ଥାନରୁ ସଂଗ୍ରହ କରିଛନ୍ତି । ସେଗୁଡ଼ିକ ଅଧ୍ୟୟନ କରି ଉପଲବ୍ଧି କରିଛନ୍ତି ଯେ ସ୍ଥାନ, କାଳ ପାତ୍ର ଅନୁଯାୟୀ ଗ୍ରନ୍ଥର ବହୁ ରୂପ ରୂପାନ୍ତର ସୃଷ୍ଟି ହୋଇଛି । ଫଳରେ ସାରଳା ରଚନାର ମୌଳିକ ରୂପ ଜାଣି ହେଉ ନାହିଁ । ସେ ତେଣୁ ଓଡ଼ିଶାର କୋଣ ଅନୁକୋଣରୁ ସାରଳା ମହାଭାରତର ପୂର୍ଣ୍ଣାଙ୍ଗ, ଅପୂର୍ଣ୍ଣାଙ୍ଗ, ପ୍ରକ୍ଷିପ୍ତ, ଅସନ୍ନିତ ସବୁ ପ୍ରକାର ପାଣ୍ଡୁଲିପି ସଂଗ୍ରହ କରିଛନ୍ତି । ଏହାପରେ ସେ ସମ୍ପାଦନା କାର୍ଯ୍ୟ ଆରମ୍ଭ କରିଛନ୍ତି ।

ଆର୍ତ୍ତବଲ୍ଲଭ ସଂସ୍କୃତ ମହାଭାରତ ଓ ସାରଳା ମହାଭାରତର ତୁଳନାତ୍ମକ ଅଧ୍ୟୟନ କରି ମହାଭାରତର ମୌଳିକ ରୂପର ସନ୍ଧାନ ପାଇଛନ୍ତି । ସେ ଏହି ମହାଭାରତରୁ ବିଭିନ୍ନ ଶବ୍ଦ ସଂଗ୍ରହ କରି ବଙ୍ଗଳା, ଆସାମୀ, ମରାଠୀ, ଆଦି ଭାଷାର ଶବ୍ଦ ସହିତ ତୁଳନାତ୍ମକ ଅଧ୍ୟୟନ କରିଛନ୍ତି । ସଂସ୍କୃତ ମହାଭାରତଠାରୁ ସାରଳା ମହାଭାରତରେ ବ୍ୟତିକ୍ରମ ଏବଂ ଉଭୟ ଗ୍ରନ୍ଥ ମଧ୍ୟରେ ଥିବା ସାମଞ୍ଜସ୍ୟ ନିରୂପଣ କରିଛନ୍ତି । ସାରଳା ମହାଭାରତରେ ଥିବା ଲୋକକଥା ସମ୍ପର୍କରେ ସର୍ବପ୍ରଥମେ ଆଲୋଚନା କରିଛନ୍ତି । ଗ୍ରନ୍ଥର ଛନ୍ଦକୁ ସେ ଦାଣ୍ଡିବୃତ୍ତ ବୋଲି ପ୍ରଥମେ ମଧ୍ୟ କହିଛନ୍ତି ।

ଆର୍ତ୍ତବଲ୍ଲଭଙ୍କ ସାରଳା ମହାଭାରତ ସମ୍ପାଦନା ସମ୍ପର୍କରେ ବିଭିନ୍ନ ପ୍ରତିଷ୍ଠିତ ବ୍ୟକ୍ତିମାନେ ପ୍ରଶଂସାସୂଚକ ଅଭିମତ ପ୍ରଦାନ କରିଥିଲେ । ସେମାନଙ୍କ ମଧ୍ୟରେ

ବିଶିଷ୍ଟ ଔପନ୍ୟାସିକ ସୁରେନ୍ଦ୍ର ମହାନ୍ତି ଅନ୍ୟତମ । ସେ ଲେଖିଥିଲେ – "ସାରଳା ମହାଭାରତକୁ ଅନୁଶୀଳନ କରିବାରେ ତାଙ୍କର ଦୃଷ୍ଟିକୋଣଠାରୁ ମୋର ଦୃଷ୍ଟିକୋଣ ଅବଶ୍ୟ ସ୍ୱତନ୍ତ୍ର ଓ ପୃଥକ ଥିଲା । ତଥାପି ଏହି ପୁସ୍ତକରେ ସନ୍ନିବିଷ୍ଟ ସାରଳାଦାସଙ୍କ ସମ୍ପର୍କିତ ଆଲୋଚନା ଲେଖାରେ ମୁଁ ବହୁ ଭାବରେ ତାଙ୍କଠାରୁ ବହୁ ତଥ୍ୟ, ପରାମର୍ଶ ଓ ସୂଚନା ପାଇଅଛି । ସାରଳା ମହାଭାରତ ପୁଣି ସଂସ୍କୃତ ମହାଭାରତର ବିଭିନ୍ନ ଚରିତ୍ର, ପରିସ୍ଥିତି, ପଦ ଓ ଶ୍ଳୋକ ଯେ ଶେଷ ଅବସ୍ଥାରେ ସୁଦ୍ଧା ଯେପରି ସ୍ମରଣ ରଖି ପାରିଥିଲେ, ତାହା ଯଥାର୍ଥରେ ବିସ୍ମୟ ଉଦ୍ଦୀପକ ।"

ଆଉ ଜଣେ ବିଶିଷ୍ଟ ସାହିତ୍ୟିକ ଅଧ୍ୟାପକ ବଂଶୀଧର ମହାନ୍ତିଙ୍କ ମତରେ – "ମହାଭାରତ ଭଳି ଦେଶ ଓ ଜାତିର ବିରାଟ ଯଜ୍ଞ ସାଧନପାଇଁ ରୁଗ୍‌ଣ, ଜରାଜୀର୍ଣ୍ଣ ଜୀବନର ଶେଷ ରକ୍ତ ଟିକକ ଆହୁତି ସ୍ୱରୂପ ସେ ଢାଳି ଦେଇଛନ୍ତି – ଏହାହିଁ ମୋର ମନେ ହୁଏ ଆର୍ତ୍ତବଲ୍ଲଭଙ୍କର ଓଡ଼ିଆ ସାହିତ୍ୟ ଓ ଜାତିକୁ ଶ୍ରେଷ୍ଠ ଅବଦାନ ।"

**ସନ୍ଥ ସାହିତ୍ୟ : ବିଷ୍ଣୁ ଗର୍ଭ ପୁରାଣ, ନିର୍ଗୁଣ ମାହାତ୍ମ୍ୟ**

ଓଡ଼ିଶାର ଧର୍ମଧାରା ସମ୍ପର୍କୀୟ ଆଲୋଚନା ପ୍ରସଙ୍ଗରେ ଆର୍ତ୍ତବଲ୍ଲଭ ବହୁ ସନ୍ଥ ସାହିତ୍ୟ ଗ୍ରନ୍ଥ ଉପରେ ଆଲୋକପାତ କରିଛନ୍ତି । ତାଙ୍କଦ୍ୱାରା ଆଲୋଚିତ ସନ୍ଥ ସାହିତ୍ୟ ମଧ୍ୟରେ 'ବିଷ୍ଣୁଗର୍ଭ ପୁରାଣ' ଓ 'ନିର୍ଗୁଣ ମାହାତ୍ମ୍ୟ' ଗ୍ରନ୍ଥ ଦୁଇଟି ମୁଖ୍ୟ । ଏହି ଦୁଇଟି ଗ୍ରନ୍ଥକୁ ସେ ପଞ୍ଚସଖାଙ୍କ ପୂର୍ବ କାଳରେ ଅବସ୍ଥାପିତ କରିଛନ୍ତି । ଉଭୟ ଗ୍ରନ୍ଥର ରଚୟିତା ହେଉଛନ୍ତି ଚୈତନ୍ୟ ଦାସ । ବଙ୍ଗୀୟ ପ୍ରତ୍ନତାତ୍ତ୍ୱିକ ନଗେନ୍ଦ୍ରନାଥ ବସୁ ଚୈତନ୍ୟ ଦାସଙ୍କୁ ପଞ୍ଚସଖାଙ୍କ ପରବର୍ତ୍ତୀ କାଳର ମତ ଦେଇଥିବାବେଳେ ଆର୍ତ୍ତବଲ୍ଲଭ ଓଡ଼ିଶାକୁ ଶ୍ରୀଚୈତନ୍ୟଙ୍କ ଆଗମନ ପୂର୍ବରୁ ଚୈତନ୍ୟ ଦାସଙ୍କ ଆବିର୍ଭାବ ହୋଇସାରିଥିଲା ବୋଲି ମତ ଦେଇଛନ୍ତି । ଏହି ଦୁଇଟି ଗ୍ରନ୍ଥ ସମ୍ପାଦନ କଲାବେଳେ ବୌଦ୍ଧ ଧର୍ମ ଓ ହିନ୍ଦୁ ଧର୍ମ ମଧ୍ୟରେ ଥିବା ସମ୍ବନ୍ଧ ଉପରେ ଗଭୀର ତତ୍ତ୍ୱମୂଳକ ଆଲୋଚନା କରିଛନ୍ତି ।

**ଚଉତିଶା ସଙ୍କଳନ**

ସେହିପରି ପ୍ରାଚୀ ସମିତି ଓଡ଼ିଆ ଚଉତିଶା ସଂଗ୍ରହ ଓ ସମ୍ପାଦନା ଦାୟିତ୍ୱ ଗ୍ରହଣ କରିଥିଲା । ଓଡ଼ିଆ ସାହିତ୍ୟରେ ଚଉତିଶା ପରିମାଣ ଦୃଷ୍ଟିରୁ ବିଶାଳ, ଗୁଣାତ୍ମକ ଦୃଷ୍ଟିରୁ ମହତ୍ତ୍ୱପୂର୍ଣ୍ଣ ହୋଇଥିବାରୁ ପ୍ରାଚୀ ସମିତି ଆର୍ତ୍ତବଲ୍ଲଭଙ୍କ ନେତୃତ୍ୱରେ ଏ କାର୍ଯ୍ୟ ହାତକୁ ନେଇଥିଲା । ବତ୍ସା ଦାସଙ୍କ 'କଳସା ଚଉତିଶା'ର ଆଦି ଆବିଷ୍କାରକ ଥିଲେ ଆର୍ତ୍ତବଲ୍ଲଭ । ଏହାର ରଚନା କାଳ ପଞ୍ଚଦଶ ଶତାବ୍ଦୀର ପୂର୍ବବର୍ତ୍ତୀ ବୋଲି ଶ୍ରୀ ମହାନ୍ତି ଦର୍ଶାଇଛନ୍ତି । ବିଚ୍ଛନ୍ଦଚରଣ ପଟ୍ଟନାୟକ ପ୍ରାଚୀ ସମିତିର ସମ୍ପାଦକ ଥିଲାବେଳେ 'ଚଉତିଶା ମଧୁଚକ୍ର' ନାମରେ ଅଜସ୍ର ଚଉତିଶା ପାଞ୍ଚୋଟି ଭାଗରେ ପ୍ରକାଶ କରିଥିଲେ । ଷଷ୍ଠ ଖଣ୍ଡଟି ହେଉଛି କେବଳ ଭୀମ ଭୋଇଙ୍କ ଚଉତିଶା । ଏହାର ସଙ୍କଳନ ତଥା ସମ୍ପାଦନା ଦାୟିତ୍ୱ

ଆର୍ତ୍ତବଲ୍ଲଭ ବହନ କରିଥିଲେ । ଏଥିରେ ଥିବା ସୁଦୀର୍ଘ ମୁଖବନ୍ଧ ଭୀମ ଭୋଇଙ୍କ ସମ୍ପର୍କୀୟ ଆଲୋଚନା ମଧ୍ୟରେ ଶ୍ରେଷ୍ଠ ବୋଲି ସମସ୍ତେ ସ୍ୱୀକାର କରିଛନ୍ତି । ଏହାଛଡ଼ା ଆର୍ତ୍ତବଲ୍ଲଭ ଶତାଧିକ ଚଉତିଶାର ପାଣ୍ଡୁଲିପି ସଂଗ୍ରହ ଓ ସଂରକ୍ଷଣ କରିଛନ୍ତି ।

ପଞ୍ଚସଖା ସାହିତ୍ୟର ସମ୍ପାଦନା ଓ ଆଲୋଚନା ଭିତରେ ଆର୍ତ୍ତବଲ୍ଲଭ ତାଙ୍କ ପ୍ରତିଭାର ଯଥାର୍ଥ ପରିଚୟ ଦେଇଛନ୍ତି । ପଞ୍ଚସଖା ଏବଂ ସେମାନଙ୍କ ଅନୁଗାମୀ ସନ୍ଥମାନଙ୍କର ରଚନାକୁ ଆଲୋକକୁ ଆଣିବାରେ ସେ ହେଉଛନ୍ତି ଅଗ୍ରଣୀ । ତାଙ୍କଦ୍ୱାରା ସଂଗୃହୀତ ପଞ୍ଚସଖା ସାହିତ୍ୟ ଗ୍ରନ୍ଥ ହେଉଛି 'ଅଣାକାର ସଂହିତା', 'ବ୍ରହ୍ମ ସାଙ୍କୋଳି', 'ଗୁରୁଭକ୍ତି ଗୀତା', 'ପ୍ରେମଭକ୍ତି ବ୍ରହ୍ମଗୀତା', 'ଶିବ ସ୍ୱରୋଦୟ' 'ଜ୍ଞାନ ପରଚେ ଗୀତ', 'ବଟ ଅବକାଶ' ପ୍ରଭୃତି ।

ଆର୍ତ୍ତବଲ୍ଲଭ ପଞ୍ଚସଖା ସାହିତ୍ୟର ସମ୍ପାଦନା କରି ପ୍ରମାଣିତ କରିଛନ୍ତି ଯେ ପଞ୍ଚସଖା ଧର୍ମ ହେଉଛି ଓଡ଼ିଶାର ନିଜସ୍ୱ । ଓଡ଼ିଶାର ପ୍ରଚଳିତ ବୈଷ୍ଣବ ଧର୍ମ ଜ୍ଞାନମାର୍ଗାଶ୍ରୟୀ । ଏହି ଧର୍ମ ଉତ୍କଳୀୟ ବୈଷ୍ଣବ ଧର୍ମ ଓ ଏହାର ସାଧକମାନେ ଉତ୍କଳୀୟ ବା ଓଡ଼ିଶୀ ବୈଷ୍ଣବ । ପଞ୍ଚସଖା ସାହିତ୍ୟକୁ ଦୁର୍ଗମ, ଦୁର୍ବୋଧ୍ୟ, କ୍ଲିଷ୍ଟ, ସାହିତ୍ୟିକ ମୂଲ୍ୟ-ବର୍ଜିତ ପ୍ରଭୃତି କହି ଅନ୍ୟମାନେ ତାହା ମଧ୍ୟରେ ପ୍ରବେଶ କରିପାରି ନାହାନ୍ତି । କିନ୍ତୁ ଆର୍ତ୍ତବଲ୍ଲଭ ନାଥ ଧର୍ମ, ଗୌଡ଼ୀୟ ବୈଷ୍ଣବଧର୍ମ, ଭାରତୀୟ ମୂଳ ବୈଷ୍ଣବ ଧର୍ମ ଓ ମହିମାଧର୍ମର ତୁଳନାତ୍ମକ ଅଧ୍ୟୟନ କରି ବହୁ ନୂତନ ତଥ୍ୟ ଓ ତତ୍ତ୍ୱ ବ୍ୟାଖ୍ୟା କରିଛନ୍ତି ।

ପଞ୍ଚସଖା ଯୁଗୀୟ ଆଲୋଚନାରେ ଆର୍ତ୍ତବଲ୍ଲଭ ମୁଖ୍ୟତଃ ତଥ୍ୟ ଉପରେ ଗୁରୁତ୍ୱ ପ୍ରଦାନ କରିଛନ୍ତି । ଲେଖକମାନଙ୍କ ଜନ୍ମ ସମୟ, ଜୀବିତ କାଳ, ମହାପ୍ରୟାଣ ସମୟ ପ୍ରଭୃତି ପ୍ରଦାନ କରିଛନ୍ତି । ସେମାନଙ୍କ ସୃଷ୍ଟିର ଐତିହାସିକତା ପ୍ରଭୃତି ସାଂସ୍କୃତିକ ଏବଂ ସାହିତ୍ୟିକ ପଟ୍ଟଭୂମି, ସାହିତ୍ୟ କୃତିର ଗୁଣାତ୍ମକ ମୂଲ୍ୟ ପ୍ରଭୃତି ଆଲୋଚନା କରିଛନ୍ତି । କେତେକ ସ୍ଥାନରେ ସେ ନିଜ ମୌଳିକତାର ପରିଚୟ ମଧ୍ୟ ଦେଇଛନ୍ତି । ଉଦାହରଣସ୍ୱରୂପ, ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଅଚ୍ୟୁତାନନ୍ଦ ଦାସଙ୍କ ଆବିର୍ଭାବ କାଳ ୧୪୯୦ ଖ୍ରୀଷ୍ଟାବ୍ଦ କହିଥିଲାବେଳେ ଆର୍ତ୍ତବଲ୍ଲଭ ଦର୍ଶାଇଛନ୍ତି ଯେ ଅଚ୍ୟୁତାନନ୍ଦଙ୍କ ଜନ୍ମ ବର୍ଷ ହେଉଛି ୧୫୨୩ ଖ୍ରୀଷ୍ଟାବ୍ଦ । ତାଙ୍କର ତିରୋଧାନର ସମୟ ୧୬୧୦ ବୋଲି ମତ ଦେଇଛନ୍ତି । ଡଃ ବଂଶୀଧର ମହାନ୍ତି ଓ ଗବେଷକ ଚିତ୍ତରଂଜନ ଦାସ ଆର୍ତ୍ତବଲ୍ଲଭଙ୍କ କାଳ ନିରୂପଣକୁ ଗ୍ରହଣ କରିନେଇଛନ୍ତି ।

ପଞ୍ଚସଖା ମଧ୍ୟରେ ଯଶୋବନ୍ତ ଦାସ ହେଉଛନ୍ତି ଅନ୍ୟତମ ସଖା । ତାଙ୍କ ରଚିତ 'ପ୍ରେମଭକ୍ତି ବ୍ରହ୍ମଗୀତା'କୁ ଆର୍ତ୍ତବଲ୍ଲଭ ସମ୍ପାଦନା କରିଛନ୍ତି । ଓଡ଼ିଶାକୁ ଚୈତନ୍ୟଙ୍କ ଆଗମନ ପୂର୍ବରୁ ଓଡ଼ିଶାରେ ପ୍ରେମଭକ୍ତିର ତତ୍ତ୍ୱ ରହିଥିଲା ଓ ରାୟ ରାମାନନ୍ଦ ଏହାର ପ୍ରବର୍ତ୍ତକ ଥିଲେ ବୋଲି ଆର୍ତ୍ତବଲ୍ଲଭ ଦର୍ଶାଇଛନ୍ତି ।

ଶ୍ରୀଯୁକ୍ତ ମହାନ୍ତି ପଞ୍ଚସଖା ସାହିତ୍ୟ ସାଧନାରେ ଜୀବନର ବହୁ ସମୟ ଅତିବାହିତ କରିଥିଲେ । ସେ ମଧ୍ୟ ବଳରାମ ଦାସଙ୍କ ଦାଣ୍ଡି ରାମାୟଣ ଓ ଜଗନ୍ନାଥ ଦାସଙ୍କ

ଭାଗବତରେ ବିଶଦ ଆଲୋଚନା କରିବାର ପ୍ରୟାସୀ ଥିଲେ । ଏହା ତାଙ୍କ ଅପ୍ରକାଶିତ ପାଣ୍ଡୁଲିପି ସମୂହରୁ ଜଣାଯାଏ ।

**ରୀତିଯୁଗ ସାହିତ୍ୟ**

ରୀତିଯୁଗର ସାହିତ୍ୟ ମଧ୍ୟ ଆର୍ତ୍ତବଲ୍ଲଭଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ସେ ଲକ୍ଷ୍ୟ କରିଥିଲେ ଯେ ରୀତିଯୁଗୀୟ ସମକାଳୀନ ଯେକୌଣସି ଭାରତୀୟ ଭାଷାରେ ରଚିତ କାବ୍ୟଠାରୁ ଉନ୍ନତତର । କିନ୍ତୁ ସେସବୁ କାବ୍ୟରେ ଦେଖାଦେଇଥିବା ବିକୃତୀକରଣ, ଅପପାଠ, ଶବ୍ଦ ପରିବର୍ତ୍ତନ, ପଦଲୋପ, ପଦ ପ୍ରକ୍ଷେପ ତାଙ୍କ ମନରେ ଗଭୀର ଦୁଃଖ ଦେଇଥିଲା । ତେଣୁ ଶୁଦ୍ଧ ଓ ମୌଳିକ ପାଠ ନିର୍ଣ୍ଣୟପାଇଁ ସେ ସଙ୍କଳ୍ପବଦ୍ଧ ହେଲେ । ତା'ର ପ୍ରଚାରପାଇଁ ମୁଖବନ୍ଧ ଲେଖିବାପାଇଁ ସ୍ଥିର କଲେ ।

ଭଞ୍ଜ ଯୁଗ ବା ତା'ର କିଛି ପୂର୍ବରୁ ଯେଉଁ କାବ୍ୟଗୁଡ଼ିକ ରଚିତ ହୋଇଥିଲା, ସେଗୁଡ଼ିକ ମଧ୍ୟରେ ଅର୍ଜୁନ ଦାସଙ୍କ 'ରାମବିଭା', ଶିଶୁଶଙ୍କର ଦାସଙ୍କ 'ଉଷାଭିଳାଷ', ଦେବଦୁର୍ଲଭ ଦାସଙ୍କ 'ରହସ୍ୟ ମଞ୍ଜରୀ', କାର୍ତ୍ତିକ ଦାସଙ୍କ 'ରୁକ୍ମିଣୀବିଭା', ପ୍ରତାପ ରାୟଙ୍କ 'ଶଶିସେଣା' ପ୍ରଭୃତି ଉଲ୍ଲେଖଯୋଗ୍ୟ । ଏହାଛଡ଼ା ମଧୁସୂଦନ ରାୟଙ୍କ 'ନଳଚରିତ', ଶ୍ରୀଧର ଦାସଙ୍କ 'କାଞ୍ଚନଲତା', ବିଷ୍ଣୁଦାସଙ୍କ 'ପ୍ରେମଲୋଚନା', ରଘୁନାଥ ହରିଚନ୍ଦନଙ୍କ 'ଲୀଳାବତୀ', ଧନଞ୍ଜୟ ଭଞ୍ଜଙ୍କ 'ରଘୁନାଥ ବିଳାସ', 'ତ୍ରିପୁର ସୁନ୍ଦରୀ', 'ମଦନ ମଞ୍ଜରୀ', ଚାନ୍ଦ କବିଙ୍କ 'ଗୋପୀବନ୍ଦନ', ରାମଚନ୍ଦ୍ର ପଟ୍ଟନାୟକଙ୍କ 'ହୀରାବତୀ', ବୃନ୍ଦାବନ ଦାସଙ୍କ 'ରସବାରିଧି' ପ୍ରଭୃତି ଭଞ୍ଜ ଯୁଗର ପୂର୍ବ କାଳରେ ରଚିତ ହୋଇଥିଲା । ଆର୍ତ୍ତବଲ୍ଲଭ ସେସବୁ ଗ୍ରନ୍ଥଗୁଡ଼ିକୁ ଆବିଷ୍କାର କରିଥିଲେ । ଏଥି ମଧ୍ୟରୁ କେତେକ ସମ୍ପାଦନା ମଧ୍ୟ କରିଛନ୍ତି । ତାଙ୍କ ମତରେ 'ରାମବିଭା' ହେଉଛି ପ୍ରଥମ ଓଡ଼ିଆ ପୌରାଣିକ କାବ୍ୟ ଓ 'ହୀରାବତୀ' ହେଉଛି ପ୍ରଥମ କାଳ୍ପନିକ କାବ୍ୟ ।

**ଲାବଣ୍ୟବତୀ**

ଭଞ୍ଜ ଯୁଗର କବି ଉପେନ୍ଦ୍ର ଭଞ୍ଜଙ୍କ ରଚିତ 'ଲାବଣ୍ୟବତୀ'ର ସବିଶେଷ ଆଲୋଚନା ଆର୍ତ୍ତବଲ୍ଲଭ କରିଛନ୍ତି । ବଙ୍ଗଳାର ବିଜୟଚନ୍ଦ୍ର ମଜୁମଦାର ଭଞ୍ଜ ସାହିତ୍ୟରେ ବହୁ ଦୋଷତ୍ରୁଟି ଦେଖାଇଥିଲେ । ଆର୍ତ୍ତବଲ୍ଲଭ ଏହାର ଦୃଢ଼ ପ୍ରତିବାଦ କରିଥିଲେ । ସେ ପ୍ରମାଣ କରି କହିଥିଲେ ଯେ କୌଣସି ସଂସ୍କୃତ କାବ୍ୟ ସହିତ ଭଞ୍ଜଙ୍କ କାବ୍ୟ ତୁଳନୀୟ । ସଂସ୍କୃତ ମହାକାବ୍ୟରେ ଶତ ଶତ ଦୋଷ ଥିଲାବେଳେ ଉପେନ୍ଦ୍ରଙ୍କ ସାମାନ୍ୟ ଦୋଷଗୁଡ଼ିକୁ ସେପରି ଦର୍ଶାଇବା ତିଳକୁ ତାଳ କରିବା ସଙ୍ଗେ ସମାନ ।

ଆର୍ତ୍ତବଲ୍ଲଭ 'ଲାବଣ୍ୟବତୀ' କାବ୍ୟର ଦୀର୍ଘ ମୁଖବନ୍ଧ ଲେଖିଛନ୍ତି । ଏହା ତାଙ୍କର ପାଣ୍ଡିତ୍ୟ ଓ ବହୁଶାସ୍ତ୍ରଦର୍ଶିତାର ନିଦର୍ଶନ । ଆଳଙ୍କାରିକମାନଙ୍କର ମତଗୁଡ଼ିକ ପ୍ରତିପାଦନ କରି କାବ୍ୟର ସ୍ୱରୂପ ଓ କାବ୍ୟର ପ୍ରୟୋଜନ ସମ୍ବନ୍ଧରେ ସେ ସବିଶେଷ ଆଲୋଚନା କରିଛନ୍ତି । ଅଳଙ୍କାର ଶାସ୍ତ୍ରର ଏକ କ୍ଷୁଦ୍ର ସଂସ୍କରଣ ହେଉଛି ଲାବଣ୍ୟବତୀର ମୁଖବନ୍ଧ ।

ଅର୍ଥାଳଙ୍କାର ଓ ଶବ୍ଦାଳଙ୍କାରର ପ୍ରୟୋଗ ଯେପରି ଉପେନ୍ଦ୍ରଙ୍କ ଏହି କାବ୍ୟରେ କରାଯାଇଛି, ତାହା ଅନ୍ୟାନ୍ୟ ସଂସ୍କୃତ ତଥା ପ୍ରାକୃତ କାବ୍ୟମାନଙ୍କରେ ଦେଖାଯାଏ ନାହିଁ ବୋଲି ସେ ମତ ଦେଇଛନ୍ତି । ଲାବଣ୍ୟବତୀର ପ୍ରତ୍ୟେକ ଛାନ୍ଦରେ କଥାବସ୍ତୁର ସଂକ୍ଷିପ୍ତ ସୂଚନା ଦେଇ ବିଷୟ ପ୍ରବେଶ ଓ ଅଳଙ୍କାର ଶାସ୍ତ୍ରର ବିସ୍ତୃତ ବିଚାରକୁ ସଂକ୍ଷେପରେ ସାରଗର୍ଭକ ଭାବରେ ଉପସ୍ଥାପିତ କରି ଆର୍ତ୍ତବଲ୍ଲଭ ଲାବଣ୍ୟବତୀ କାବ୍ୟର ପ୍ରବେଶଦ୍ୱାରକୁ ପ୍ରଶସ୍ତ ଓ ସହଜ କରିଦେଇଛନ୍ତି ।

### ରସକଲ୍ଲୋଳ

ଆର୍ତ୍ତବଲ୍ଲଭ କବି ଦୀନକୃଷ୍ଣ ଦାସଙ୍କ ଜୀବନୀ ଓ ତାଙ୍କ ରଚନାର ପରିଚୟ ଦେଇଛନ୍ତି । ଏଥି ସହିତ ପ୍ରାଚୀ ସମିତିଦ୍ୱାରା ପ୍ରକାଶିତ 'ରସକଲ୍ଲୋଳ' ମୁଖବନ୍ଧରେ ଓ 'ଜଗମୋହନ ଛାନ୍ଦ'ର ମୁଖବନ୍ଧରେ ଦୀନକୃଷ୍ଣଙ୍କ ସମ୍ବନ୍ଧରେ ନିଜର ଦୃଢ଼ମତ ଉପସ୍ଥାପନ କରିଛନ୍ତି । ତାଙ୍କ ମତରେ ଉଭୟ ରଚନାର ରଚୟିତା ଦୀନକୃଷ୍ଣ ଏକ ଓ ଅଭିନ୍ନ । ତାଙ୍କର ପୂର୍ବବର୍ତ୍ତୀ ସମାଲୋଚକ ଶ୍ୟାମସୁନ୍ଦର ରାଜଗୁରୁ ଦର୍ଶାଇଥିଲେ ଯେ ରସକଲ୍ଲୋଳର ଦୀନକୃଷ୍ଣ ଓ ରସବିନୋଦର ଦୀନକୃଷ୍ଣ ଭିନ୍ନ ଭିନ୍ନ ବ୍ୟକ୍ତି । ଆର୍ତ୍ତବଲ୍ଲଭ କିନ୍ତୁ ବହୁ ଶ୍ରମ ସ୍ୱୀକାର କରି ଦୀନକୃଷ୍ଣଙ୍କ ପ୍ରକାଶିତ ଗ୍ରନ୍ଥମାନ ତନ୍ନ ତନ୍ନ ପାଠ କରି ଅଭ୍ୟନ୍ତର ତଥା ଆନୁଷଙ୍ଗିକ ପ୍ରମାଣ ବଳରେ ଉଭୟ ଗ୍ରନ୍ଥର ରଚୟିତାଙ୍କୁ ଏକ ବୋଲି ଦର୍ଶାଇଛନ୍ତି । ଦୀନକୃଷ୍ଣଙ୍କୁ ଇଟାଲୀ କବି ଦାନ୍ତେଙ୍କ ସହିତ ତୁଳନା କରି ଦୁଇ କବିଙ୍କ ଜୀବନଚର୍ଯ୍ୟା ଓ କାବ୍ୟସାଧନା ମଧ୍ୟରେ ସାମଞ୍ଜସ୍ୟ ଦେଖାଇଛନ୍ତି । ଏ ସମସ୍ତ ବିଚାରପାଇଁ ଆର୍ତ୍ତବଲ୍ଲଭଙ୍କୁ ବହୁ ଗ୍ରନ୍ଥ ଅଧ୍ୟୟନ କରି ତୁଳନା କରିବାକୁ ପଡ଼ିଛି ।

### ମଥୁରାମଙ୍ଗଳ

'ମଥୁରା ମଙ୍ଗଳ' କାବ୍ୟର ସମ୍ପାଦନା ଆର୍ତ୍ତବଲ୍ଲଭଙ୍କ ଅନ୍ୟତମ କୃତି । ଏହାର କବି ଭକ୍ତଚରଣ ଦାସଙ୍କୁ ଯେ 'ଓଡ଼ିଶୀ' ବା ଜ୍ଞାନମିଶ୍ରା ଭକ୍ତିର ଉପାସକ ବୋଲି କହିଛନ୍ତି ।

### ବିଦଗ୍ଧ ଚିନ୍ତାମଣି

ଆର୍ତ୍ତବଲ୍ଲଭ ମଧ୍ୟ 'ବିଦଗ୍ଧ ଚିନ୍ତାମଣି' କାବ୍ୟର ସମ୍ପାଦନା କରିଛନ୍ତି ।

ରେଭେନ୍‌ସା କଲେଜର ରସାୟନ ବିଭାଗର ଅଧ୍ୟାପକ ଗୁରୁଚରଣ, ତାଙ୍କ ଛାତ୍ର ଜଗଦାନନ୍ଦ ମହାନ୍ତିଙ୍କ ଅନୁରୋଧକ୍ରମେ 'ବିଦଗ୍ଧ ଚିନ୍ତାମଣି' କାବ୍ୟର ସମ୍ପାଦନାରେ ସେ ପ୍ରବୃତ୍ତ ହେଲେ ବୋଲି ପୂର୍ବରୁ ବର୍ଣ୍ଣିତ ।

'ବିଦଗ୍ଧ ଚିନ୍ତାମଣି' ଏକ ବିଶାଳ ଗ୍ରନ୍ଥ । ଶବ୍ଦ ପାଣ୍ଡିତ୍ୟ, ବହୁଶାସ୍ତ୍ରରୁ ଆହରଣ, ରଚନାଶୈଳୀ ଓ ଧର୍ମତତ୍ତ୍ୱ ଦୃଷ୍ଟିରୁ ଏହା ସହଜବୋଧ୍ୟ ନ ଥିଲା । ତେଣୁ ଶ୍ରମ, ସମୟ ଓ ଅର୍ଥ ବ୍ୟୟ କରି ଆର୍ତ୍ତବଲ୍ଲଭ ଏହି ଦୁରୂହ କାର୍ଯ୍ୟରେ ହାତ ଦେଲେ । ପ୍ରଥମେ ସେ ବିଭିନ୍ନ ସ୍ଥାନରୁ ପୋଥି ସଂଗ୍ରହ, ଶୁଦ୍ଧ ପାଠ ନିର୍ଣ୍ଣୟ ଦିଗରେ ଲାଗିପଡ଼ିଲେ । ବହୁ ଚେଷ୍ଟା

ପରେ ସେ ନଅ ଖଣ୍ଡ ପୋଥି ସଂଗ୍ରହ କଲେ । ଏହାପରେ ଶୁଦ୍ଧ ପାଠ ନିର୍ଣ୍ଣୟ କରିବା କଷ୍ଟସାଧ ହୋଇ ନ ଥିଲା ।

ଆର୍ତ୍ତବଲ୍ଲଭ ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କଦ୍ୱାରା ଆବିଷ୍କୃତ ଅଭିମନ୍ୟୁଙ୍କ ଜୀବନ ଚରିତକୁ ଗ୍ରହଣ କରିନେଲେ । ତଦନୁଯାୟୀ କବିଙ୍କ ଜନ୍ମ ସମୟ ୧୭୫୭ ଓ ମୃତ୍ୟୁ ସମୟ ୧୮୦୭ ବୋଲି ଧାର୍ଯ୍ୟ କଲେ ।

'ବିଦଗ୍ଧ ଚିନ୍ତାମଣି' ଗ୍ରନ୍ଥକୁ ତନ୍ନ ତନ୍ନ କରି ପାଠ କରି ଆର୍ତ୍ତବଲ୍ଲଭ ଏହି ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ଯେ ଅଭିମନ୍ୟୁ ସମସ୍ତ ଶାସ୍ତ୍ରରେ ପାରଦର୍ଶିତା ଲାଭ କରିଥିଲେ । ଏଥି ସଙ୍ଗେ ସଙ୍ଗେ ଯୁଦ୍ଧବିଦ୍ୟା, କଳାବିଦ୍ୟା ଆଦିରେ ନିପୁଣ ଥିଲେ । ବିଶେଷତଃ, ପ୍ରଥମ ଛାନ୍ଦରେ ପ୍ରଦର୍ଶିତ ପାଣ୍ଡିତ୍ୟ, ଭାବମୟତା, ରଚନା ପାଟବ, ପ୍ରାଞ୍ଜଳ ଭାଷା, ଗାମ୍ଭୀର୍ଯ୍ୟ, ମାଧୁର୍ଯ୍ୟାଦି ଉତ୍କୃଷ୍ଟ କାବ୍ୟ ଲକ୍ଷଣମାନ ଯେଉଁ ପ୍ରକାଶ ପାଇଛି, ତାହା ଊନବିଂଶ ବର୍ଷ ବୟସ୍କ ଯୁବକ ପକ୍ଷେ ସମ୍ଭବ ନୁହେଁ । ଏହାହିଁ ତାଙ୍କ ପ୍ରତିଭାର କୋଟୀ ନିର୍ଦ୍ଧାରଣ କରେ ବୋଲି ଆର୍ତ୍ତବଲ୍ଲଭ ମତ ଦେଇଛନ୍ତି ।

କେହି କେହି ଆଲୋଚକ ବିଦଗ୍ଧ ଚିନ୍ତାମଣି ରୂପ ଗୋସ୍ୱାମୀଙ୍କ ସଂସ୍କୃତ 'ବିଦଗ୍ଧ ମାଧବ' ନାଟକ ଅନୁକରଣରେ ଲିଖିତ ବୋଲି କହିଥାନ୍ତି । ମାତ୍ର ଆର୍ତ୍ତବଲ୍ଲଭଙ୍କ ମତରେ ଏହା ସମ୍ପୂର୍ଣ୍ଣ ସତ୍ୟ ନୁହେଁ । ଅଭିମନ୍ୟୁ 'ବିଦଗ୍ଧ ମାଧବ' ଛଡ଼ା 'ଲଳିତ ମାଧବ', 'ଉଜ୍ଜ୍ୱଳ ନୀଳମଣି' ପ୍ରଭୃତି ବୈଷ୍ଣବ ଗ୍ରନ୍ଥ (ସଂସ୍କୃତ), ସାଧୁଚରଣଙ୍କ 'ଯୁଗଳ ରସାମୃତ ଲହରୀ', 'ଚୌର ଚିନ୍ତାମଣି' ଆଦି ବୈଷ୍ଣବ ଗ୍ରନ୍ଥ (ଓଡ଼ିଆ) ଗ୍ରନ୍ଥମାନଙ୍କ ଅବଲମ୍ବନରେ ବିଦଗ୍ଧ ଚିନ୍ତାମଣିର ଆନୁଷଙ୍ଗିକ ବିଷୟ ଗ୍ରହଣ କରିଛନ୍ତି । ତେବେ ଏ ସବୁର ଉର୍ଦ୍ଧ୍ୱରେ ନିଜର ଅଗାଧ ପାଣ୍ଡିତ୍ୟ ଓ ଅସାମାନ୍ୟ ପ୍ରତିଭା ବଳରେ ସେ ଏକ ଅପୂର୍ବ ଅଭିନବ ଓ ମନୋହର ଭକ୍ତି ରସାତ୍ମକ କାବ୍ୟ ସୌଧ ନିର୍ମାଣ କରିଛନ୍ତି ବୋଲି ଆର୍ତ୍ତବଲ୍ଲଭ ମତ ଦେଇଛନ୍ତି ।

ବିଦଗ୍ଧ ଚିନ୍ତାମଣିର ଦ୍ୱିତୀୟ ମୁଦ୍ରଣର ମୁଖବନ୍ଧରେ ଆର୍ତ୍ତବଲ୍ଲଭ ନମ୍ରତାର ସହ ଲେଖିଛନ୍ତି – ''ଏହି ଟୀକା ଲେଖିବାରେ ପଣ୍ଡିତ ଶ୍ରୀ ଭୁବନେଶ୍ୱର ରଥ ମହୋଦୟ ପ୍ରଧାନ ସାହାଯ୍ୟକାରୀ ଅଟନ୍ତି । ମୋର ପ୍ରିୟ ଛାତ୍ର ସଂସ୍କୃତ କଲେଜରେ ପ୍ରିନ୍‌ସିପାଲ ପଣ୍ଡିତ ଶ୍ରୀ କରୁଣାକର କର ମଧ୍ୟ ଏ ବିଷୟରେ ଯଥେଷ୍ଟ ସହାୟତା ପ୍ରଦାନ କରିଛନ୍ତି । ଏ ଅତୀବ କଠିନ ଗ୍ରନ୍ଥ । ଏହାର ଟୀକା ପ୍ରମାଦଶୂନ୍ୟ କହିବା ଧୃଷ୍ଟତାମାତ୍ର !''

ବିଶିଷ୍ଟ ଆଲୋଚକ ବାସୁଦେବ ସାହୁ କହିଛନ୍ତି, ''ବିଦଗ୍ଧ ଚିନ୍ତାମଣି ଉପରେ ଏ ପର୍ଯ୍ୟନ୍ତ ଯେତେ ସମ୍ପାଦନା ହୋଇଛି, ଆର୍ତ୍ତବଲ୍ଲଭଙ୍କ ସମ୍ପାଦନା ତନ୍ମଧ୍ୟରେ ଶ୍ରେଷ୍ଠ ଓ ତାଙ୍କ କାବ୍ୟ ଉପରେ ଯେତେ ସମ୍ପାଦନା ହୋଇଛି, ××× ଆର୍ତ୍ତବଲ୍ଲଭଙ୍କ ଆଲୋଚନା ତା' ମଧ୍ୟରେ ମୌଳିକ ଓ ଶ୍ରେଷ୍ଠ ।''

ତେବେ ଆର୍ତ୍ତବଲ୍ଲଭଙ୍କ ଆଲୋଚନାଦ୍ୱାରା ପ୍ରାଚୀନ ଓଡ଼ିଆ ସାହିତ୍ୟ ଯେ ସମୃଦ୍ଧ ହୋଇଛି, ଏହା କହିବା ବାହୁଲ୍ୟମାତ୍ର ।

**ଅଲେଖ ଧର୍ମ ଓ ସାହିତ୍ୟ**

ପ୍ରାଚୀ ସମିତିର ଅନ୍ୟ ଏକ ଅବଦାନ ହେଉଛି ଅଲେଖ ଧର୍ମ ଓ ସାହିତ୍ୟ । ଏହି ଧର୍ମ ମହିମା ଧର୍ମ ଭାବେ ଓଡ଼ିଶାରେ ବିଦିତ ।

ଆର୍ତ୍ତବଲ୍ଲଭ ମହିମା ଧର୍ମର ପ୍ରଧାନ ପୃଷ୍ଠପୋଷକ ଅଟନ୍ତି । ସେ ମହିମା ଗୋସାଇଁଙ୍କର ପ୍ରଧାନ ଶିଷ୍ୟ ଭୀମଭୋଇଙ୍କ ଗ୍ରନ୍ଥମାନଙ୍କୁ ଲୋକଲୋଚନକୁ ଆଣିଛନ୍ତି । ବୌଦ ଅଞ୍ଚଳରୁ ସେ 'ଅଲେଖସ୍ୱାମୀଙ୍କ ଜନ୍ମ' ଶୀର୍ଷକ ଏକ ଅପ୍ରକାଶିତ ଗ୍ରନ୍ଥ ପାଇଥିଲେ । କେବଳ ବୌଦ ନୁହେଁ, ସୋନପୁର ଓ ସମ୍ବଲପୁର ଅଞ୍ଚଳରୁ ବହୁ ତାଳପତ୍ର ପୋଥି ସଂଗ୍ରହ କରିଥିଲେ । ଆର୍ତ୍ତବଲ୍ଲଭ ସେହି ତାଳପତ୍ର ପୋଥିଗୁଡ଼ିକ ଆଧାରରେ ଭୀମ ଭୋଇଙ୍କ ଜୀବନୀ ଓ ସାହିତ୍ୟ ସମ୍ପର୍କରେ ବିସ୍ତୃତ ବିବରଣୀ ପ୍ରଦାନ କରିଛନ୍ତି । ମହିମାଧର୍ମ ସମ୍ପର୍କୀୟ ଗ୍ରନ୍ଥ, ଯଥା – 'ସ୍ତୁତି ଚିନ୍ତାମଣି, 'ସ୍ତୁତି ନିଷେଧ ଗୀତା', 'ବ୍ରହ୍ମ ନିରୂପଣ ଗୀତା' ଓ 'ଶତାଧିକ ଭଜନମାଳା' ଗ୍ରନ୍ଥ ପ୍ରକାଶ ମାଧମରେ ଭୀମ ଭୋଇଙ୍କ ରଚନା ଲୋକଲୋଚନକୁ ଆଣିଛନ୍ତି । 'ଚଉତିଶା ମଧୁଚକ୍ର'ର ବିଭିନ୍ନ ଖଣ୍ଡରେ ପ୍ରାୟ ଛଅ ଶହ ଚଉତିଶା ସ୍ଥାନ ପାଇଛି ।

ଆର୍ତ୍ତବଲ୍ଲଭ ମଧ ଭୀମ ଭୋଇଙ୍କ ଶିଷ୍ୟମାନଙ୍କ ରଚିତ ଗ୍ରନ୍ଥମାନଙ୍କର ଶୁଦ୍ଧ ସମ୍ପାଦନା ଓ ପ୍ରକାଶନ କରି ମହିମା ଧର୍ମର ସବିଶେଷ ତଥ୍ୟ ପ୍ରଦାନ କରିଛନ୍ତି । ତାଙ୍କ ମତରେ ଭୀମ ଭୋଇ ଜାତିରେ କନ୍ଧ ଓ ଜନ୍ମରୁ ଅନ୍ଧ ଥିଲେ ।

ଆର୍ତ୍ତବଲ୍ଲଭ ମହିମା ଧର୍ମ ବିଶ୍ଳେଷଣ କଲାବେଳେ ମହିମାଧର୍ମର ବୈଷ୍ଣବଧର୍ମ ସହିତ ସମ୍ପର୍କ ମଧ ଆଲୋଚନା କରିଛନ୍ତି । ସେ ଭୀମ ଭୋଇଙ୍କୁ ରାଧାଙ୍କ ଅବତାର ବୋଲି କହିଛନ୍ତି । ଫଳରେ ଆର୍ତ୍ତବଲ୍ଲଭଙ୍କୁ ପରବର୍ତ୍ତୀକାଳରେ କଟୁ ସମାଲୋଚନାର ସମ୍ମୁଖୀନ ହେବାକୁ ପଡ଼ିଛି ।

ମହିମା ଧର୍ମ ଓ ସାହିତ୍ୟକୁ ଆର୍ତ୍ତବଲ୍ଲଭଙ୍କର ଯେ ଅଶେଷ ଦାନ ରହିଛି, ଏହା ସମସ୍ତେ ସ୍ୱୀକାର କରନ୍ତି ।

ଆର୍ତ୍ତବଲ୍ଲଭଙ୍କ ଉଦ୍ୟମରେ ପ୍ରାଚୀ ସମିତି ଅନ୍ୟାନ୍ୟ କେତେକ ଗ୍ରନ୍ଥ ପ୍ରକାଶ କରିଅଛି । ତନ୍ମଧ୍ୟରେ 'ଖାଡ଼ଙ୍ଗା ଭାଗବତ' (୧୧ସ୍କନ୍ଦ) ଅନ୍ୟତମ । ଦୀନବନ୍ଧୁ ଖାଡ଼ଙ୍ଗାଙ୍କର ଭାଗବତ ଓଡ଼ିଶାର ବାଙ୍କୀ ରଣପୁର ଅଞ୍ଚଳରେ ଲୋକପ୍ରିୟତା ହାସଲ କରିଥିଲା । ଏହାଛଡ଼ା ପ୍ରାଚୀ ସମିତି, 'ନାରାୟଣ ଶତକମ୍' ନାମକ ଏକ ବିଖ୍ୟାତ ସଂସ୍କୃତ ଗ୍ରନ୍ଥ ପ୍ରକାଶ କରିଛନ୍ତି । ଏହାର ଲେଖକ ବିଦ୍ୟାଧର ପୁରୋହିତ ।

## ପ୍ରାଚୀ ସମିତି ଅବଦାନ

ପ୍ରାଚୀ ସମିତିଦ୍ୱାରା ପ୍ରକାଶିତ ଗ୍ରନ୍ଥଗୁଡ଼ିକୁ ନେଇ ଗଛିତ ହୋଇଥିଲା 'ପ୍ରାଚୀ ଗ୍ରନ୍ଥମାଳା' । ଗ୍ରନ୍ଥମାଳାର ସର୍ବମୋଟ ପୁସ୍ତକ ସଂଖ୍ୟା ହେଉଛି ୫୪ । ସେଗୁଡ଼ିକର ସମ୍ପାଦନା ଓ ସେଗୁଡ଼ିକ ଉପରେ ମୁଖବନ୍ଧ ରଚନା ହିଁ ଆର୍ତ୍ତବଲ୍ଲଭଙ୍କର ଅମୂଲ୍ୟ ଅବଦାନ । ପ୍ରକାଶ ପାଇଥିବା ପ୍ରଧାନ ଗ୍ରନ୍ଥଗୁଡ଼ିକ ହେଉଛି 'ବିଦଗ୍ଧ ଚିନ୍ତାମଣି', 'ରହସ୍ୟ ମଞ୍ଜରୀ', 'ସ୍ତୁତି ଚିନ୍ତାମଣି', 'ବ୍ରହ୍ମ ନିରୂପଣ ଗୀତା', 'ଭୀମ ଭୋଇଙ୍କ ଭଜନମାଳା', 'ବ୍ରହ୍ମ ସାଙ୍କୋଳି', 'ଅଣାକାର ସଂହିତା', 'ପ୍ରେମ ପଞ୍ଚାମୃତ', 'ରସକଲ୍ଲୋଳ', 'ନିର୍ଗୁଣ ମାହାତ୍ମ୍ୟ', 'ପୂର୍ଣ୍ଣତମ ଚନ୍ଦ୍ରୋଦୟ', 'ବିଷ୍ଣୁଗର୍ଭ ପୁରାଣ', 'ମଥୁରା ମଙ୍ଗଳ', 'ଶିବ ସ୍ୱରୋଦୟ', 'ପ୍ରେମଭକ୍ତି ବ୍ରହ୍ମଗୀତା', 'ଗୁରୁଭକ୍ତି ଗୀତା', 'ଉଷାଭିଳାଷ', 'ନଳ ଚରିତ', 'ଶଶିଶେଣା', ରୁକ୍ମିଣୀ ବିଭା', 'ବଟ ଅବକାଶ', 'ଚଉତିଶା', 'ମଧୁଚକ୍ର', 'ଖାଡ଼ଙ୍ଗା ଭାଗବତ', 'ପ୍ରାଚୀନ ପଦ୍ୟ ଗଦ୍ୟାଦର୍ଶ', 'ନାରାୟଣ ଶତକ' ଓ 'ଶ୍ରୀଚୈତନ୍ୟ ଭାଗବତ' ।

## ସମ୍ମାନ ଓ ସମ୍ବର୍ଦ୍ଧନା

ଆର୍ତ୍ତବଲ୍ଲଭ ସମ୍ମାନ ପାଇବାପାଇଁ ଆଗ୍ରହୀ ନ ଥିଲେ । ତାହାପାଇଁ ସେ କେବେ କୌଣସି ଉଦ୍ୟମ କରି ନାହାନ୍ତି । ତେବେ ସେ ଅଜସ୍ର ସମ୍ମାନର ଅଧିକାରୀ ଥିଲେ ।

୧୯୩୨ ମସିହାରେ ଆର୍ତ୍ତବଲ୍ଲଭଙ୍କୁ ବ୍ରିଟିଶ ସରକାର ରାୟସାହେବ ଉପାଧି ପ୍ରଦାନ କରିଥିଲେ । ସେ ଏଥିପାଇଁ ରେଭେନ୍ସା କଲେଜର ଅଧକ୍ଷ ଡ୍ୟୁକ୍ ସାହେବଙ୍କଦ୍ୱାରା ପ୍ରଶଂସିତ ହୋଇଥିଲେ । ଉତ୍କଳ ଗୌରବ ମଧୁସୂଦନ ମଧ ଆର୍ତ୍ତବଲ୍ଲଭଙ୍କୁ ବଧେଇ ଜଣେଇ ଏକ ପତ୍ର ଲେଖିଥିଲେ । ତାହା ଏଭଳି ଥିଲା –

ପ୍ରିୟ ରାୟସାହେବ,

ପ୍ରାଚୀନ ସାହିତ୍ୟର ପୁନରୁଦ୍ଧାର ଦିଗରେ ମୂଲ୍ୟବାନ୍ ସମୟ ଦେଇଥିବାରୁ ବାସ୍ତବରେ ଆପଣ ଅଭିନନ୍ଦନୀୟ । ଅବଶ୍ୟ ଆପଣଙ୍କୁ ଯେଉଁ ସମ୍ମାନ ମିଳିଛି, ତାହା ପୂର୍ବରୁ ମିଳିବାର ଥିଲା । ତେବେ ଆପଣ ଏବେ ଯୁବକ ଓ ମୋର ଆଶା ଓ ବିଶ୍ୱାସ ଆପଣଙ୍କୁ ଏହାଠାରୁ ଉଚ୍ଚତର ସମ୍ମାନ କେବଳ ସରକାରଙ୍କଠାରୁ ନୁହେଁ, ଜାତିଠାରୁ ମିଳିବ । ଜାତି ଓ ଦେଶପାଇଁ ଆପଣଙ୍କ ଅବଦାନ ଆପଣଙ୍କୁ ଅମର କରି ରଖିବ ।

ଆପଣଙ୍କର ଗୁଣମୁଗ୍ଧ
ମଧୁସୂଦନ ଦାସ

୧୯୪୩ ମସିହାରେ ରେଭେନ୍ସା କଲେଜର ଅଧକ୍ଷ ଆର୍ତ୍ତବଲ୍ଲଭଙ୍କ ନାମ ରାୟବାହାଦୁର ଉପାଧି ପାଇଁ ସୁପାରିସ କରି ଲେଖିଲେ – "ସମ୍ଭବତଃ ସେ (ଆର୍ତ୍ତବଲ୍ଲଭ) ବର୍ତ୍ତମାନ ଅଗ୍ରଣୀ ଗବେଷକ ଓ ପଣ୍ଡିତ ।"

ଏହି ସୁପାରିସ ଫଳରେ ଆର୍ତ୍ତବଲ୍ଲଭ 'ରାୟବାହାଦୁର' ଉପାଧିରେ ସମ୍ମାନିତ ହୋଇଥିଲେ ।

ଏହା ବ୍ୟତୀତ ଆନ୍ଧ୍ର ଗବେଷଣା ସମିତି ଆର୍ତ୍ତବଲ୍ଲଭଙ୍କୁ 'ବିଦ୍ୟାଭୂଷଣ', ୧୯୫୫ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟ ତାଙ୍କୁ ଡି.ଲିଟ୍. ଓ ୧୯୫୮ ମସିହାରେ ତାଙ୍କୁ ରାଷ୍ଟ୍ରୀୟ ସମ୍ମାନ 'ପଦ୍ମଶ୍ରୀ' ଉପାଧିରେ ଭୂଷିତ କରାଯାଇଥିଲା । ଓଡ଼ିଶା ସାହିତ୍ୟ ଏକାଡେମୀ ମଧ୍ୟ ଆର୍ତ୍ତବଲ୍ଲଭଙ୍କୁ ବିଶିଷ୍ଟ ସାହିତ୍ୟିକ ଭାବେ ଉପଢ଼ୌକନ ସହ ସମ୍ମାନିତ କରିଥିଲା ।

ଆର୍ତ୍ତବଲ୍ଲଭ ନିଜ଼ର ପାଣ୍ଡିତ୍ୟ ଓ ଅଧ୍ୟବସାୟ ଯୋଗୁଁ କେବଳ ଉତ୍କଳ ବା ଭାରତରେ ନୁହେଁ, ଭାରତ ବାହାରେ ମଧ୍ୟ ଖ୍ୟାତି ଅର୍ଜନ କରିଥିଲେ । ସିଂହଳର ଜଣେ ସାହେବ ତାଙ୍କର ଜଣେ ବଡ଼ ପ୍ରଶଂସକ ଥିଲେ ।

## 'ପ୍ରାଚୀ'ର ବିଲୟ

ଆର୍ତ୍ତବଲ୍ଲଭ ନିଜର ସ୍ୱପ୍ନ ଓ ପରିକଳ୍ପନାକୁ ରୂପ ଦେବା ପାଇଁ ପ୍ରାଚୀ ସମିତି ଗଢ଼ିଥିଲେ । ତା'ରି ମାଧ୍ୟମରେ ପୁସ୍ତକ ପ୍ରକାଶ କରାଯାଉଥିଲା । ପ୍ରାଚୀ ସମିତି ଏକ ସାଧାରଣ ସାଂସ୍କୃତିକ ଅନୁଷ୍ଠାନ ନ ଥିଲା । ଏହା ଏକ ମୌଳିକ ଗବେଷଣାଗାରରେ ପରିଣତ ହୋଇଥିଲା । ବିଭିନ୍ନ ସ୍ଥାନରୁ ପୋଥି ସଂଗ୍ରହ, ତୁଳନାତ୍ମକ ଭିତ୍ତିରେ ବିଭିନ୍ନ ଗ୍ରନ୍ଥରୁ ଶୁଦ୍ଧ ପାଠ ଉତ୍ତୋଳନ, ପୁସ୍ତକ ପ୍ରକାଶପାଇଁ ସ୍ୱତନ୍ତ୍ର ମୁଦ୍ରାଯନ୍ତ୍ର ପ୍ରତିଷ୍ଠା, ଶେଷରେ ପୁସ୍ତକ ବିକ୍ରି ପାଇଁ ଦୋକାନ ପ୍ରତିଷ୍ଠା – ଏହିଁ ଚାରି ଗୋଟି ଆଭିମୁଖ୍ୟ ଆର୍ତ୍ତବଲ୍ଲଭଙ୍କର ଥିଲା । ଏହା ନିଶ୍ଚିତଭାବେ ସାଧନା ସାପେକ୍ଷ ଓ ବ୍ୟୟବହୁଳ ଥିଲା । ପୋଥି ସଂଗ୍ରହ ଓ ତୁଳନାତ୍ମକ ଭିତ୍ତିରେ ଶୁଦ୍ଧ ପାଠ ସଙ୍କଳନ ଦିଗରେ ଆର୍ତ୍ତବଲ୍ଲଭ ବହୁ ବ୍ୟକ୍ତିଙ୍କର ସାହାଯ୍ୟ ଓ ସହାନୁଭୂତି ପାଇଥିଲେ । କିନ୍ତୁ ପୁସ୍ତକ ପ୍ରକାଶନରେ ବ୍ୟୟ ବହନ ଓ ପ୍ରେସ ଓ ଦୋକାନ ପରିଚାଳନାର ଗୁରୁ ଦାୟିତ୍ୱ ତୁଲାଇବାର ସେ ସଫଳତା ଲାଭ କରିପାରି ନ ଥିଲେ । ଫଳରେ ମାତ୍ର ଦଶଟି ବର୍ଷ ମଧ୍ୟରେ 'ପ୍ରାଚୀ ସମିତି', ପ୍ରେସ ଓ ଷ୍ଟଲର୍ ତିରୋଧାନ ଘଟିଥିଲା ।

ଆଲୋଚକ ନଟବର ସାମନ୍ତରାଙ୍କ ଭାଷାରେ – ''ଆର୍ତ୍ତବଲ୍ଲଭ ଓ ତାଙ୍କ ପରିକଳ୍ପିତ ସ୍ୱପ୍ନ 'ପ୍ରାଚୀ' ଦିନେ ଏହି ଓଡ଼ିଶା ରାଜ୍ୟକୁ ଆସିଥିଲା । ସମୟରେ ଏମାନେ ଚାଲିଯାଇଛନ୍ତି । କିନ୍ତୁ ଆର୍ତ୍ତବଲ୍ଲଭଙ୍କ ଉତ୍ତୁଙ୍ଗ ପରିକଳ୍ପନା ଏବଂ 'ପ୍ରାଚୀ'ର ସମୁଜ୍ଜ୍ୱଳ ଆଦର୍ଶ ଓ ଆଭିମୁଖ୍ୟ ଆଜି ବି ଏହି ଜାତିର ମାନସ ନୟନରେ ଉଦ୍ଭାସିତ ହୋଇଉଠୁଛି – ସେହି ହେଉଛି ଓଡ଼ିଆ ସାହିତ୍ୟକୁ ଆର୍ତ୍ତବଲ୍ଲଭଙ୍କ ଅବଦାନର ସର୍ବଶ୍ରେଷ୍ଠ ଅନ୍ତର୍ବାଣୀ ।''

## ବିଶେଷ ଗୁଣ

ଆର୍ତ୍ତବଲ୍ଲଭଙ୍କର ଥିଲା ଗଭୀର ଉତ୍କଳୀୟତାବୋଧ । ସେ ଉତ୍କଳୀୟ ବେଶଭୂଷା – ଧୋତି ପଞ୍ଜାବି ଓ ଦେହରେ ଖଣ୍ଡେ ଚାଦର ପରିଧାନ କରୁଥିଲେ ଓ ଉତ୍କଳୀୟ ସଂସ୍କୃତି ପ୍ରୀତି ପ୍ରଦର୍ଶନ କରୁଥିଲେ । ଏପରିକି ଇଂରେଜମାନଙ୍କ ଶାସନ କାଳରେ ମଧ୍ୟ ସେ ଇଂରେଜମାନଙ୍କ ପ୍ରିୟଭାଜନ ହେବାକୁ ଉଦ୍ୟମ କରୁ ନ ଥିଲେ ।

## କ୍ରୀଡ଼ା ପ୍ରେମ

ଛାତ୍ର ଜୀବନରୁ ଆର୍ତ୍ତବଲ୍ଲଭଙ୍କର କ୍ରୀଡ଼ା ପ୍ରତି ଥିଲା ଅଦମ୍ୟ ମୋହ । ଫୁଟବଲ, ହକି, କ୍ରିକେଟ୍, ଟେନିସ୍ – ସବୁ ଖେଳରେ ସେ ପାରଙ୍ଗମ ଥିଲେ । କଲିକତାରେ ପଢୁଥିଲାବେଳେ ସେ ଫୁଟବଲ ଖେଳରେ ସୁନାମ ଅର୍ଜନ କରିଥିଲେ । କ୍ରିକେଟ୍ ଖେଳରେ ମଧ୍ୟ ତାଙ୍କର ଦକ୍ଷତା ଥିଲା । ପରିଣତ ବୟସରେ ମଧ୍ୟ କ୍ରୀଡ଼ା ପ୍ରତି ତାଙ୍କର ଦୁର୍ବଳତା ଥିଲା । ୧୯୪୭ ମସିହା ଅଗଷ୍ଟ ମାସ ୧୬ ତାରିଖରେ ରେଭେନ୍ସା କଲେଜର ଖେଳପଡ଼ିଆରେ ଯେଉଁ କୌତୁକିଆ ଫୁଟବଲ ମ୍ୟାଚ ଆୟୋଜିତ ହୋଇଥିଲା, ସେଥିରେ ବୃଦ୍ଧ ଆର୍ତ୍ତବଲ୍ଲଭ ହାଫ୍ ପ୍ୟାଣ୍ଟ ପିନ୍ଧି ଖେଳିଲାବେଳେ ଦର୍ଶକମାନେ ଆନନ୍ଦରେ ଉତ୍‌ଫୁଲ୍ଲ ହୋଇଉଠିଥିଲେ ।

## ସଙ୍ଗୀତ ପ୍ରୀତି

ଆର୍ତ୍ତବଲ୍ଲଭଙ୍କ ସ .ୀତ ପ୍ରୀତି ଥିଲା । ପାଟଣା ବିଶ୍ୱବିଦ୍ୟାଳୟ ସହିତ ସମ୍ପୃକ୍ତ ଥିଲାବେଳେ ସେ କଲିକତା, ଏହ୍ଲାବାଦ ପ୍ରଭୃତି ସ୍ଥାନକୁ ଯାଉଥିଲେ । ସେଠାରେ ହେଉଥିବା ସଙ୍ଗୀତ ସମ୍ମିଳନୀମାନଙ୍କରେ ଯୋଗ ଦେଉଥିଲେ । ସେହିଦିନଠାରୁ ଶାସ୍ତ୍ରୀୟ ସଙ୍ଗୀତ ପ୍ରତି ତାଙ୍କର ଆସକ୍ତି ବଢ଼ିଲା । ଓଡ଼ିଶାରେ ଶାସ୍ତ୍ରୀୟ ସଙ୍ଗୀତ ଶିକ୍ଷା ବିକାଶପାଇଁ ସେ ଉଦ୍ୟମ କଲେ । ଏଥିପାଇଁ ସେ ମଧୁପୁରର ପଟ୍ଟାୟତ ସାହେବଙ୍କ ସାହାଯ୍ୟ ନେଲେ । ସେ ତାଙ୍କ କନ୍ୟା ବୀଣାପାଣିଙ୍କୁ ଶାସ୍ତ୍ରୀୟ ଶିକ୍ଷା ଦେବାପାଇଁ ବ୍ୟବସ୍ଥା କଲେ । ସେଥିପାଇଁ ସେ ଶ୍ରୀଯୁକ୍ତ ଶ୍ୟାମସୁନ୍ଦର ଧୀର ଓ କାନୁ ଗୋପାଳଙ୍କୁ ଗୁରୁଭାବେ ନିଯୁକ୍ତ କଲେ । ମାତ୍ର ନଅ ବର୍ଷ ବୟସରେ ବୀଣାପାଣି ନିଖିଳ ବଙ୍ଗୀୟ ସଙ୍ଗୀତ ସମ୍ମିଳନୀରେ ଯୋଗ ଦେଇ ଉଭୟ ଯନ୍ତ୍ର ଓ କଣ୍ଠ ସଙ୍ଗୀତ ପରିବେଷଣ କରି ଶ୍ରୋତୃମଣ୍ଡଳୀଙ୍କୁ ମୁଗ୍ଧ କରିଦେଇଥିଲେ । ବୀଣାପାଣି ପିତାଙ୍କ ସ୍ୱପ୍ନକୁ ସାକାର କରି ପାଟଣା, ଏହ୍ଲାବାଦ ଓ କଲିକତା ପ୍ରଭୃତି ସ୍ଥାନରେ ସଙ୍ଗୀତ ସମ୍ମିଳନୀରେ ଯୋଗ ଦେଇ ଖ୍ୟାତି ଅର୍ଜନ କରିଛନ୍ତି । ଓଡ଼ିଶୀ ସଙ୍ଗୀତ, ଓଡ଼ିଶୀ କଳା ଓ ଓଡ଼ିଶୀ ନୃତ୍ୟ ବିଷୟରେ ଆର୍ତ୍ତବଲ୍ଲଭଙ୍କର ଅସାଧାରଣ ଜ୍ଞାନ ଥିଲା । ନିଜେ ମଧ୍ୟ ସଙ୍ଗୀତ ରଚନାରେ ଆଗ୍ରହୀ ଥିଲେ । ଗୀତ ଲେଖିବାରେ ଆନନ୍ଦ ପାଉଥିଲେ – ଯଦିଓ ଭଲ ବୋଲିପାରୁ ନ ଥିଲେ । ସେ ଥିଏଟରରେ ଅଭିନୟ ମଧ୍ୟ କରୁଥିଲେ ଓ ସେଥିରେ ବେଳେବେଳେ ଛାନ୍ଦ ବୋଲି ଦେଉଥିଲେ । ରେଭେନ୍‌ସା କଲେଜରେ ହୋଇଥିବା 'କାଞ୍ଚିକାବେରୀ' ନାଟକରେ ସେ ଗଉଡ଼ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ ।

## ଧର୍ମପ୍ରାଣତା

ଆର୍ତ୍ତବଲ୍ଲଭ ଈଶ୍ୱରବିଶ୍ୱାସୀ ଥିଲେ । ବାଲ୍ୟକାଳରୁ ବାପା ଜେଜେବାପାଙ୍କ ଈଶ୍ୱରବିଶ୍ୱାସ ତାଙ୍କୁ ଭଗବତ୍‌ପ୍ରାଣ କରିଥିଲା । ଗ୍ରାମ ଦେବତା ଗୋବିନ୍ଦଜୀଙ୍କଠାରେ ତାଙ୍କର ଅଚଳାଚଳ ଭକ୍ତି ଥିଲା । ସେ କଟକଚଣ୍ଡୀ ମନ୍ଦିର, କାଳୀ ମନ୍ଦିର, ଲାଲାମଠ ପ୍ରଭୃତିର ଟ୍ରଷ୍ଟି ଥିଲେ ।

ଆର୍ତ୍ତବଲ୍ଲଭ ସଂସାର ଧର୍ମ ଗ୍ରହଣ କରିଥିଲେ ସତ, କିନ୍ତୁ ସେ ଥିଲେ ଜଣେ ଆତ୍ମମୁକ୍ତ ପୁରୁଷ । ତାଙ୍କ ସାକାର ଶରୀରରେ ଅନାସକ୍ତ ନିରାକାରତ୍ୱ ବିରାଜମାନ କରୁଥିଲା । ଧର୍ମ, ନୀତି ଓ ସାହିତ୍ୟ – ଏହି ତିନୋଟି ପ୍ରସଙ୍ଗରେ ସେ ଚିରଦିନ ଆସ୍ଥାବାନ୍ ଥିଲେ । ସରଳ ନିରାଡ଼ମ୍ବର ଜୀବନଯାପନ ଓ ଉନ୍ନତ ଚିନ୍ତା – ଏହି ଭାବ ତାଙ୍କଠାରେ ସଦାସର୍ବଦା ଜାଗରୂକ ଥିଲା । ଆର୍ତ୍ତବଲ୍ଲଭ କର୍ମଯୋଗୀ ଥିଲେ । ନିରବଚ୍ଛିନ୍ନ ସାହିତ୍ୟ ସାଧନା ଥିଲା ତାଙ୍କ ଜୀବନର ଏକମାତ୍ର ବ୍ରତ । ବର୍ଷ ବର୍ଷ ଧରି ଶାରୀରିକ ପୀଡ଼ାରେ ଆକ୍ରାନ୍ତ ହୋଇ ମଧ୍ୟ ସେ ସେଥିପ୍ରତି ଭ୍ରୂକ୍ଷେପ କରୁ ନ ଥିଲେ । ଦୀର୍ଘ ଦିନ ଧରି ଅବିରତ ପରିଶ୍ରମ କରିବା ଫଳରେ ତାଙ୍କ ଶରୀର ଭାଙ୍ଗିପଡ଼ିଲା । ମୃତ୍ୟୁର ଦଶ ଦିନ ପୂର୍ବରୁ ସେ ଉତ୍କଳ ସାହିତ୍ୟ ସମାଜର ସାରଳା ଦାସଙ୍କ ଉପରେ ହେଉଥିବା ଏକ ସଭାରେ ସଭାପତିତ୍ୱ କରୁଥିଲେ । ଦୀର୍ଘ ଏକ ଘଣ୍ଟାରୁ ଊର୍ଦ୍ଧ୍ୱ କାଳ ଭାଷଣ ଦେଇ ଶ୍ରୋତୃବର୍ଗଙ୍କୁ ଅଭିଭୂତ କରିପକାଇଲେ । ସଭା ପରେ କବି ସଚ୍ଚିରାଉତରା ତାଙ୍କୁ ଗାଡ଼ିରେ ନେଇ ଘରେ ପହଞ୍ଚାଇଦେଲେ । ବାଟରେ ଶ୍ରୀ ରାଉତରା ଆର୍ତ୍ତବଲ୍ଲଭଙ୍କ ଅସୁସ୍ଥତା କଥା ଶୁଣି ବ୍ୟସ୍ତ ହେଲେ । ଏପରି ଅସୁସ୍ଥ ଶରୀରରେ ସଭାକୁ ଆସିବା ଠିକ୍ ହୋଇ ନାହିଁ ବୋଲି ମତ ବ୍ୟକ୍ତ କଲେ । ଆର୍ତ୍ତବାବୁ ହସି ହସି କହିଲେ – ''ହଁ ମ, ଯାହା ହବାର ଥିବ ହେବ । ଏଥିଲାଗି ଆଗରୁ କତରା ଘୋଡ଼ି ହୋଇ ଶୋଇବି କାହିଁକି ?''

ଶରୀର ଆଉ ସୁସ୍ଥ ହୋଇ ନ ଥିଲା । ତିନି ଦିନ ପରେ ତାଙ୍କୁ ହାସପାତାଳକୁ ନିଆଗଲା । ଡଃ ଗିରିଜାଶଙ୍କର ଦାସ ମହାପାତ୍ର ତାଙ୍କର ଅପରେସନ୍ କଲେ । ତା' ପୂର୍ବରୁ ସେ ଭଣ୍ଡାରିକୁ ଡକାଇ କ୍ଷୌରକର୍ମ କଲେ । ଦେହ ହାତ ପୋଛିଦେବାକୁ କହିଲେ । ପତ୍ନୀଙ୍କ ଆଡ଼କୁ ଅନାଇ କହିଲେ – ''ବେଳ ଆସିଗଲା, ଏଥର ବିଶ୍ରାମ ନେବି ।'' ସତେ ଯେପରି ଆର୍ତ୍ତବଲ୍ଲଭ ମୃତ୍ୟୁର ପଦଧ୍ୱନି ଶୁଣିପାରିଥିଲେ ! ଆର୍ତ୍ତବଲ୍ଲଭଙ୍କୁ ବଞ୍ଚାଇବାପାଇଁ ଚିକିତ୍ସକମାନଙ୍କର ସକଳ ଚେଷ୍ଟା ବ୍ୟର୍ଥ ହେଲା । ପୁତ୍ରତୁଲ୍ୟ ଭଣଜା ବିନୋଦ କାନୁନଗୋଙ୍କ ହାତରେ ମୁଣ୍ଡ ଦେଇ ଇଷ୍ଟଦେବ ଗୋବିନ୍ଦଜୀଙ୍କୁ ଡାକି ଡାକି ସେ ଶେଷ ନିଶ୍ୱାସ ତ୍ୟାଗ କଲେ ।

ସେ ଦିନ ଥିଲା ୧୯୬୩ ମସିହା ସେପ୍ଟେମ୍ବର ମାସ ୩୦ ତାରିଖ । ସତୀଚଉରାରେ ଆର୍ତ୍ତବଲ୍ଲଭଙ୍କ ଶେଷ କୃତ୍ୟ ସମ୍ପନ୍ନ ହେଲା । କେବଳ ଓଡ଼ିଶାରେ ନୁହେଁ, ଓଡ଼ିଶା ବାହାରେ ମଧ୍ୟ ବହୁ ଗୁଣମୁଗ୍ଧ ବ୍ୟକ୍ତିଙ୍କ ଆଖିରୁ ଲୁହ ଝରିଥିଲା ।

ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଭାଷାତତ୍ତ୍ୱବିତ୍ ଡଃ ସୁନୀଲ କୁମାର ଚାଟାର୍ଜୀ ଆର୍ତ୍ତବଲ୍ଲଭଙ୍କୁ ଶେଷ ସମ୍ମାନ ଜଣାଇ ଲେଖିଥିଲେ – ''ଆର୍ତ୍ତବଲ୍ଲଭ ସଂସ୍କୃତ ଓ ଓଡ଼ିଆ ବିଭାଗର ପ୍ରଫେସର ଭାବରେ ଯେ ଯଶ ପ୍ରତିଷ୍ଠା କରିଯାଇଛନ୍ତି ତାହା ନୁହେଁ, ଅଧିକ ସେ ଜଣେ ସାହିତ୍ୟପ୍ରେମୀ ଓ ବିଦ୍ୱାନ୍ ବ୍ୟକ୍ତିରୂପେ ସାରା ଭାରତରେ ସୁପରିଚିତ । × × × × ନିରାଡ଼ମ୍ବର ଓ ନିରହଙ୍କାର ଏ ଜୀବନର ପ୍ରଭାବ ସୁଦୂରପ୍ରସାରୀ । ଏହି କର୍ମଦ୍ୱାରା 'ବର୍ତ୍ତମାନ'କୁ ପ୍ରେରଣାପ୍ରଦ ସ୍ମୃତିଦ୍ୱାରା ଭବିଷ୍ୟତ୍‌କୁ ସମୃଦ୍ଧ କରୁଅଛି ଓ କରୁଥିବ ।''

ଓଡ଼ିଶାର ବିଶିଷ୍ଟ କବି ଓ ସାହିତ୍ୟିକ ଡଃ ମାୟାଧର ମାନସିଂହ ଶ୍ରଦ୍ଧାଞ୍ଜଳି ଅର୍ପଣପୂର୍ବକ ଲେଖିଥିଲେ – ''ସେହି ଯୋଗୁଁ ହିଁ ଆର୍ତ୍ତବଲ୍ଲଭ ସାଧାରଣ ହୋଇ ମଧ୍ୟ ଜାତି ଆଗରେ ଆଜି ଅସାଧାରଣ × × × × ତାଙ୍କର ସାଧନାମୟ ଜୀବନ ପ୍ରମାଣ କରିଦେଇଗଲା ଯେ ଅକିଞ୍ଚନ ବି ଜାତିକୁ ଇଚ୍ଛା କଲେ ମଣିକାଞ୍ଚନ ଉପହାର ଦେଇଯାଇପାରେ । ଆର୍ତ୍ତବଲ୍ଲଭଙ୍କ ସେହି ସାଧନାର ଦୀପ ଶିଖା ଉତ୍କଳଦେଶରେ ଅନିର୍ବାଣ ରହି ସମଗ୍ର ଜାତିକୁ କାଳ କାଳ ଆଶା ଓ ଉସାହ ଯୋଗାଉ ଥାଉ ।''

ପ୍ରଖ୍ୟାତ ଔପନ୍ୟାସିକ କାଳିନ୍ଦୀଚରଣ ପାଣିଗ୍ରାହୀ ଶୋକବାର୍ତ୍ତାରେ ଲେଖିଥିଲେ – ''ଉତ୍କଳ ସାହିତ୍ୟାକାଶର ଏକ ଉଜ୍ଜ୍ୱଳତମ ଜ୍ୟୋତିଷ୍କ ଆଜି ଅସ୍ତମିତ । ଓଡ଼ିଆ ସାହିତ୍ୟର ନିରବଚ୍ଛିନ୍ନ ସାଧନା, ଓଡ଼ିଶାର ଲେଖକ ଲେଖିକାଙ୍କର ପରମପୂଜ୍ୟ ଗୁରୁଦେବ ଡଃ ଆର୍ତ୍ତବଲ୍ଲଭ ମହାନ୍ତି ଆଉ ଇହଜଗତରେ ନାହାନ୍ତି । ଏ ରାଜ୍ୟର ପୁରପଲ୍ଲୀରେ ସେହି ସରଳ, ସୁଦୀର୍ଘ, କୃଶ, କର୍ମଠ ଶରୀର ଚିରଦିନପାଇଁ ଅଦୃଶ୍ୟ ରହିଗଲା । ଏତେ ଆଶା, ଏତେ ପୁଣି ଓଡ଼ିଆ ସାହିତ୍ୟ ଓ ସଂସ୍କୃତି ଉପରେ ଏତେ ଦମ୍ଭ ଓ ଗର୍ବ, ଏତେ ଉତ୍ତେଜନା ଓ ସ୍ପନ୍ଦନ, ଏତେ ବିଶ୍ୱାସ ଓ ଦୃଢ଼ତାର ଦୃଷ୍ଟାନ୍ତ ଅନ୍ୟତ୍ର ବିରଳ ।''

## ମୂଲ୍ୟାୟନ

ସାଧକ ଆର୍ତ୍ତବଲ୍ଲଭ ସାଧାରଣ ହେଲେହେଁ ନିଜର ଅନ୍ତର୍ନିହିତ ଶକ୍ତିରେ ଜାତି ଆଗରେ ହୋଇଛନ୍ତି ଅସାଧାରଣ । ପ୍ରାଚୀନ ଓଡ଼ିଆ ସାହିତ୍ୟକୁ ଦୃଢ଼ ଭାବରେ ପ୍ରତିଷ୍ଠା କରିବାକୁ ବଦ୍ଧପରିକର ହୋଇଛନ୍ତି । ଲାଗିପଡ଼ିଛନ୍ତି ସେହି ପ୍ରାଚୀନ ସାହିତ୍ୟର ସଂସ୍କାର ଓ ପ୍ରଚାର କାର୍ଯ୍ୟରେ । ଦୁର୍ଗମ ଓଡ଼ିଆ ସାହିତ୍ୟର ପଥହୀନ ଜଙ୍ଗଲ ମଧ୍ୟରେ ରାଜପଥ ନିର୍ମାଣ ଆରମ୍ଭ କରିଛନ୍ତି । ଓଡ଼ିଶାର ଭକ୍ତକବିମାନଙ୍କର କାବ୍ୟକବିତାବଳୀ ଆଲୋଚନା କରି ସେମାନଙ୍କ ଚିନ୍ତାର ସ୍ୱାଧୀନତା ଓ ମୌଳିକତା ପ୍ରକଟିତ କରିଛନ୍ତି । ତୁଳନାତ୍ମକ ଆଲୋଚନା ସମ୍ବଳିତ ଭକ୍ତିତତ୍ତ୍ୱ ବିଷୟକ ନାନା ପ୍ରବନ୍ଧ ଲେଖି ପ୍ରାଚୀନ ଜନପ୍ରିୟ କାବ୍ୟମାନଙ୍କର ମୁଖବନ୍ଧ ରୂପେ ସେସବୁକୁ ସମାବେଶିତ କରିଛନ୍ତି । ଅବହେଳିତ ଓଡ଼ିଆ ଭାଷାକୁ ବିଶ୍ୱବିଦ୍ୟାଳୟ ସ୍ତରରେ ସମ୍ମାନ-ମଣ୍ଡିତ କରିବାକୁ ନିଜ ଜୀବନର ଦୀର୍ଘ ସମୟ କଟେଇ ଦେଇଛନ୍ତି । କେବଳ ସେତିକି ନୁହେଁ, ସର୍ବଭାରତୀୟ ସ୍ତରରେ ପ୍ରାଚୀନ ଓଡ଼ିଆ ସାହିତ୍ୟକୁ ସମୁନ୍ନତ କରି ଥୋଇବାପାଇଁ ଆଳଙ୍କାରିକ ଭିତ୍ତିରେ ଚର୍ଚ୍ଚାର ଉଦ୍‌ଯୋଗ କରିଛନ୍ତି ।

ଓଡ଼ିଆ ସାହିତ୍ୟରେ ଆର୍ତ୍ତବଲ୍ଲଭ ଥିଲେ ଜଣେ ବିଧିପ୍ରେରିତ ପୁରୁଷ – ତାଙ୍କର ସ୍ପର୍ଶରେ ପୁନର୍ଜନ୍ମ ଲାଭ କରିବାପାଇଁ ଯୁଗ ଯୁଗ ଧରି ଅଭିଶପ୍ତ ପାଷାଣୀ ପରି ଓଡ଼ିଆ ଜାତିର ଅହଲ୍ୟା – ତା'ର ପ୍ରାଚୀନ ସାହିତ୍ୟ ଯେପରି ଅପେକ୍ଷା କରି ରହିଥିଲା !!

❑❑❑



# ଅପ୍ରତିଦ୍ୱନ୍ଦ୍ୱୀ କଥାକାର
# କାହ୍ନୁଚରଣ ମହାନ୍ତି
## [୧୯୦୬-୧୯୯୪]

ଫକୀରମୋହନଙ୍କ ପରେ ଓଡ଼ିଆ ଉପନ୍ୟାସକୁ ଉଭୟ ଗୁଣାତ୍ମକ ଓ ପରିମାଣାତ୍ମକ ଦୃଷ୍ଟିରୁ ଈର୍ଷଣୀୟ ବିନ୍ଦୁରେ ଯେ ପହଞ୍ଚାଇ ପାରିଛନ୍ତି, ସେ ହେଉଛନ୍ତି କଥାଶିଳ୍ପର ଅପୂର୍ବ ଯାଦୁକର କାହ୍ନୁଚରଣ ମହାନ୍ତି । ଦିନ ଥିଲା ଯେତେବେଳେ ଓଡ଼ିଆ ଉପନ୍ୟାସ କହିଲେ 'କାହ୍ନୁଚରଣ' ଓ 'କାହ୍ନୁଚରଣ' କହିଲେ ଓଡ଼ିଆ ଉପନ୍ୟାସକୁ ବୁଝାଉଥିଲା । ତାଙ୍କ ଉପନ୍ୟାସଗୁଡ଼ିକ ଅନ୍ତଃପୁରର ଯୋଷାଙ୍କଠାରୁ ଆରମ୍ଭ କରି ଶ୍ୟାମଳ କେଦାର ମାଳାର ଚଷା ପର୍ଯ୍ୟନ୍ତ ତାକୁ ଚିହ୍ନାଇଛି । ସମସ୍ତଙ୍କ ଚିତ୍ତରେ ଗଭୀର ସମ୍ମୋହିନୀ ପ୍ରଭାବ ସୃଷ୍ଟି କରିବାରେ ତାଙ୍କର ଶିଳ୍ପ ସାମର୍ଥ୍ୟ ଅବିସମ୍ବାଦିତ । ଓଡ଼ିଆ ଉପନ୍ୟାସ ସୃଷ୍ଟି ଆକାଶରେ କାହ୍ନୁଚରଣ ହିଁ ଉଜ୍ଜ୍ୱଳ ଜ୍ୟୋତିଷ୍କ, ବର୍ଣ୍ଣାଢ୍ୟ, ବିଭାବନ୍ତ, ବିଚିତ୍ର ଓ ବିସ୍ମୟକର ।

### ଜନ୍ମ ଓ ଶିକ୍ଷା

କାହ୍ନୁଚରଣଙ୍କ ଜନ୍ମ ହେଉଛି ୧୯୦୬ ମସିହା ଜନ୍ମାଷ୍ଟମୀ ଦିନ । ସ୍ଥାନ ହେଉଛି ସୋନପୁରଗଡ଼ । ତାଙ୍କ ପିତା ସୂର୍ଯ୍ୟମଣି ମହାନ୍ତି ସେଠି ଚାକିରି କରୁଥିଲେ । ବଡ଼ଭାଇ ଯଦୁନାଥ (ଡାକ ନାମ ଧୂଳ)ଙ୍କ ଉପରେ ପାଞ୍ଚୋଟି ପୁଅ ବୋଉ କୋଳକୁ ଆସି ବାହୁଡ଼ି ଯାଇଥିଲେ । ଯମ ଅଇଁଠା ବୋଲି ବୋଉ ତାଙ୍କୁ ଚମାରୁଣୀକୁ ବିକ୍ରି କରିଦେଇଥିଲେ । ତାଙ୍କୁ ଧୂଳିଆ ବୋଲି ଡକାଯାଉଥିଲା । ତଳ ପୁଅର ନାମ ଦିଆଗଲା କାହ୍ନୁଚରଣ । ତାଙ୍କ ନାମ ହେଲା କହ୍ନେଇ ।

ଟିକେ ବଡ଼ ହେଲା ପରେ ତାଙ୍କୁ ସାଙ୍ଗ ପିଲାଏ 'କହ୍ନେଇ ସାମଲ ପିକା ଦଲାଲ' କହି ଚିଡ଼ାଉଥିଲେ । କହ୍ନେଇ ନାମରେ ଜଣେ ପାଣ ନାଗବାଲି ଗ୍ରାମରେ ଥିଲେ । ସେ ଥିଲେ ସଚ୍ଚୋଟ । ପଞ୍ଚାୟତ ସଭାକୁ ତାଙ୍କୁ ନିଶାପ କରିବାକୁ ଡକାଯାଉଥିଲା । ସେ ଲମ୍ୱା ପିକା ଟାଣୁଥିଲେ । ଗାଁ ଦାଣ୍ଡରେ ଧୂଳି ଉପରେ ଦୂରେଇ ବସି ସବୁ ମନକର୍ଣ୍ଣ ଦେଇ ଶୁଣୁଥିଲେ । କହ୍ନେଇ ସାମଲ ସହିତ ତାଙ୍କୁ ସମାନ କରାଯାଉଥିବାରୁ କାହ୍ନୁଚରଣ ଭାରି ଚିଡୁଥିଲେ । ଆଉ ବେଳେ ବେଳେ କାନ୍ଦୁଥିଲେ ।

ବାପା ସୂର୍ଯ୍ୟମଣି ମହାନ୍ତି ସୋନପୁରରେ ସୁପରଭାଇଜର ଭାବେ କାମ କରୁଥିଲେ । କାହ୍ନୁଚରଣଙ୍କୁ ଦେଢ଼ ବର୍ଷ ହୋଇଥାଏ । ସେ ଚାକିରିରୁ ଇସ୍ତଫା ଦେଲେ । ତା'ର କାରଣ ରାଜାଙ୍କର ଦେୱାନଙ୍କ ସଙ୍ଗେ ବାପାଙ୍କର ମନୋମାଳିନ୍ୟ ହେଲା । ରାଜା ଦେୱାନଙ୍କ ପକ୍ଷ ନେଲେ । କହିଲେ ଦେୱାନଙ୍କ ସହ ଏପରି ବ୍ୟବହାର କରିବା ଠିକ୍ ହୋଇ ନାହିଁ । ତା'ର ପ୍ରତିବାଦରେ ବାପା ଚାକିରି ଛାଡ଼ି ନିଜ ଗାଁ ନାଗବାଲିକୁ ଫେରିଆସିଲେ ।

ନାଗବାଲି ଚାହାଳିରେ କାହ୍ନୁଚରଣଙ୍କ ଶିକ୍ଷା ଆରମ୍ଭ ହେଲା । ସେତେବେଳେ ଗାଁ-ଗହଳରେ ପ୍ରାଇମେରୀ ଶିକ୍ଷାର ବ୍ୟବସ୍ଥା ନ ଥିଲା । ତେବେ ସେ ସେଠାରେ ରହି ପଢ଼ିଲେ । ଗାଁ ଚାଟଶାଳୀରୁ ପଢ଼ା ସରିଲା ବେଳକୁ ତାଙ୍କୁ ନଅ ବର୍ଷ ହୋଇଥାଏ । ସେ ଓ ତାଙ୍କ ବଡ଼ଭାଇ ଯଦୁନାଥ ସୋନପୁରଗଡ଼କୁ ଉଚ୍ଚ ଶିକ୍ଷାପାଇଁ ଗଲେ । ସୋନପୁରରେ ବାପା ପୁଣି ଯାଇ ସେଠାରେ ରହୁଥାନ୍ତି । ପି.ଡବ୍ଲ୍ୟୁ.ଡି. ଓଭରସିଅର ଭାବେ କାମ ବି କରୁଥାନ୍ତି । ଦରମା ଅବଶ୍ୟ ଥିଲା ମାସକୁ ପଚାଶ ଟଙ୍କା । ତେବେ ଶସ୍ତା କାଳ । ଚାଉଳ ଟଙ୍କାରେ ଷୋଳ ତାମ୍ବ ଅର୍ଥାତ୍ ଏକ ମହଣ ମିଳୁଥିଲା । ସେଇ ଅନୁପାତରେ ଅନ୍ୟାନ୍ୟ ଜିନିଷର ଦର ମଧ୍ୟ ଶସ୍ତା ଥିଲା । ଭଲରେ ସେଠାରେ ପରିବାରଟି ଚଳିଯାଉଥିଲେ ।

ମାଇନର କ୍ଲାସରେ ପଢୁଥିଲାବେଳେ ଗୋଟାଏ ଘଟଣା କାହ୍ନୁଚରଣଙ୍କ ଜୀବନରେ ସ୍ମରଣୀୟ ହୋଇ ରହିଗଲା । ସୋନପୁରର ସର୍ଜନ ଥିଲେ ଅଭୟ ଭୂଷଣ ଚାଟାର୍ଜୀ । ତାଙ୍କର ପୁତ୍ର ସଙ୍ଗେ କାହ୍ନୁଚରଣଙ୍କ ବନ୍ଧୁତା ଥିଲା । ପ୍ରାୟ ସର୍ବଦା ତାଙ୍କ ଘରକୁ ଯାଉଥିଲେ ଓ ସେଠାରେ ବସାଉଠା କରୁଥିଲେ । ତାଙ୍କ ପତ୍ନୀ ଅତ୍ୟନ୍ତ ସ୍ନେହପରାୟଣା ଥିଲେ । ସେ କାହ୍ନୁଚରଣଙ୍କୁ ଖୁବ୍ ଭଲ ପାଉଥିଲେ। ତାଙ୍କର ଗୋଟିଏ ସାନ ପୁଅ ଥିଲା । ସେ ଦିନେ ବଙ୍ଗଳା ବହି ପଢୁଥିଲା । କାହ୍ନୁଚରଣ ସେ ବହିକୁ ଦେଖିଲେ । ବଙ୍ଗଳା ଅକ୍ଷର ଓ ଓଡ଼ିଆ ଅକ୍ଷର ଭିତରେ ପ୍ରଭେଦ ନ ଥିବା ତାଙ୍କୁ ଲାଗିଲା । ସେ ବଙ୍ଗଳା ବହି ପଢ଼ିବାକୁ ଆରମ୍ଭ କଲେ ।

ଅଭୟବାବୁଙ୍କ ବଡ଼ ଝିଅ ହିମାନୀ ଥରେ ଛୁଟିରେ ସୋନପୁର ଆସିଥିଲେ । ସେ କଲିକତା ବେଥୁନ କଲେଜର ଛାତ୍ରୀ ଥିଲେ । କାହ୍ନୁଚରଣଙ୍କୁ ଦେଖି ସେ କିଏ ବୋଲି ପଚାରିଲେ । କାହ୍ନୁଚରଣଙ୍କ ସାଙ୍ଗଟି ତାଙ୍କ ନାଁ ଓ ସେ ଓଡ଼ିଆ ପିଲା ବୋଲି କହିଲେ । ହିମାନୀ ସଙ୍ଗେ ସଙ୍ଗେ ବଙ୍ଗଳାରେ କହିଲେ –

'ଉଡ଼େ ଛେଲେ କି ଭାଲୋ ହତେ ପାରେ ।' କାହ୍ନୁଚରଣଙ୍କ ମନରେ ଏହା ଖୁବ୍ ଆଘାତ ଦେଲା ଓ ସଙ୍ଗେ ସଙ୍ଗେ ଠିକ୍ କଲେ ଯେ ସେ ଆଉ ବଙ୍ଗଳା ପଢ଼ିବେ ନାହିଁ । ଘରେ ଆସି ବାପାଙ୍କୁ କହିଲେ ସେ କିଛି ଓଡ଼ିଆ ବହି ପଢ଼ିବାକୁ ଚାହୁଁଛନ୍ତି । ବାପା ତାଙ୍କର ବହି ପଢ଼ିବା ଦେଖି ଖୁବ୍ ଖୁସି ହେଲେ ଓ କଟକରୁ ବହି ମଗାଇବାପାଇଁ ପତ୍ର ଦେଲେ । କଟକରୁ ମଧ୍ୟ ଦି' ଖଣ୍ଡ ବହି ଆସିଲା । ମାତ୍ର ଦି'ଖଣ୍ଡ ବହି ବହୁତ ଦିନ ପରେ ପାଇଲେ । ବହି ଦୁଇଟିର ନାମ ଥିଲା 'ବୁଢ଼ା ବଚା' ଓ 'ଦମାଲୁ ଚରିତ' । ଲେଖକଙ୍କର ନାମ ତାଙ୍କର ମନେ ରହି ନ ଥିଲା ।

ବାପା ସୂର୍ଯ୍ୟମଣି ମହାନ୍ତି ଚାକିରିରୁ ଅବସର ନେଇ ଗ୍ରାମକୁ ଆସିଲେ । କାହ୍ନୁଚରଣ ମଧ୍ୟ ଗ୍ରାମରେ ରହି ପି.ଏମ୍. ଏକାଡେମୀ ସ୍କୁଲରେ ନାଁ ଲେଖାଇଲେ। ନାଗବାଲିରୁ କଟକ ୭ ମାଇଲ ବାଟ । ନଈ ପାରିହୋଇ ଯିବାକୁ ପଡୁଥିଲା ।

କାହ୍ନୁଚରଣ ସୋନପୁରରେ ପିତାଙ୍କ ପାଖେ ରହି ଷଷ୍ଠ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ିଥିଲେ । ୧୯୧୯ ମସିହାରେ ପାଟଣାରେ ବଡ଼ଭାଇ ରହିଲା ପରେ ସେ ସେଠାରେ ସପ୍ତମ ଶ୍ରେଣୀଠାରୁ ପଢ଼ା ଆରମ୍ଭ କଲେ । ମାତ୍ର ଅର୍ଥାଭାବରୁ ସେଠାରୁ ଗ୍ରାମକୁ ଫେରିଆସିଲେ । ପୁଣି କଟକ ପ୍ୟାରୀମୋହନ ଏକାଡେମୀରେ ଦଶମ ଶ୍ରେଣୀରେ ହଷ୍ଟେଲରେ ରହି ପଢ଼ିଲେ । ୧୯୨୪ ସାଲରେ ସେ ମାଟ୍ରିକ୍ୟୁଲେସନ ପରୀକ୍ଷାରେ ସେକେଣ୍ଡ ଡିଭିଜନରେ ପାସ୍ କଲେ ।

ମାଟ୍ରିକ୍ୟୁଲେସନ ପରେ କାହ୍ନୁଚରଣ ଆଉ ପଢ଼ିବେ ନାହିଁ ବୋଲି ସ୍ଥିର କଲେ। ତା'ର କାରଣ ବାପାଙ୍କ ଚାକିରି ନ ଥାଏ । ଅର୍ଥାଭାବ ବି ଲାଗି ରହିଥାଏ । ଏହି ସମୟରେ ବଡ଼ଭାଇ ପାଟଣାରୁ ଖବର ଦେଲେ । କାହ୍ନୁଚରଣ ପାଟଣା ଗଲେ ଓ ସେଠାରେ ନ୍ୟାସନାଲ କଲେଜରେ ଆଇ.ଏସ୍‌ସି. କ୍ଲାସରେ ନାମ ଲେଖାଇଲେ । ୧୯୨୬ ସାଲରେ ସେ ସେଠାରୁ ଆଇ.ଏସ୍‌ସି. ପାସ୍ କଲେ ।

ଆଇ.ଏସ୍‌ସି. ପରେ ପୂର୍ତ୍ତ ବିଭାଗରେ କାର୍ଯ୍ୟ କରୁଥିବା ପିତାଙ୍କର ପ୍ରଭାବରେ ଇଞ୍ଜିନିୟରିଂ ଶିକ୍ଷାଲାଭପାଇଁ ଇଞ୍ଜିନିୟରିଂ କଲେଜରେ ନାମ ଲେଖାଇଲେ । ମାତ୍ର ଭାଗଲପୁରରେ Field Camp ପାଇଁ ୨୦୦୦ଟଙ୍କା ଦେବାକୁ ପଡ଼ିଲା । କାହ୍ନୁଚରଣ ସେ ଅର୍ଥ ଯୋଗାଡ଼ କରିପାରିଲେ ନାହିଁ । ତାଙ୍କର ଇଞ୍ଜିନିୟରିଂ ପଢ଼ା ଶେଷ ହେଲା ।

କାହ୍ନୁଚରଣ ପୁଣି ଗ୍ରାମକୁ ଆସିଲେ । ରେଭେନ୍‌ସା କଲେଜରେ ବି.ଏ. ଶ୍ରେଣୀରେ ନାମ ଲେଖାଇଲେ । ଗାଁରେ ରହୁଥାନ୍ତି । ପ୍ରତିଦିନ ଗାଁରୁ କଟକ ଯାଉଥାନ୍ତି ଓ ଫେରୁଥାନ୍ତି । ଅବଶ୍ୟ ପାଦରେ ନୁହେଁ, ସାଇକେଲରେ । ପ୍ରତିଦିନ ବାର ମାଇଲ ସାଇକେଲରେ ଯିବା ଆସିବା କଲେ । ୧୯୨୯ ମସିହାରେ ସେ ବି. ଏ. ପାସ୍ କଲେ । ବି.ଏ. ପାସ୍ କରିବାପରେ ସେ ଆଇନ ପଢ଼ିବାପାଇଁ ଆଇନ କଲେଜରେ ନାଁ ଲେଖାଇଲେ । ମାତ୍ର ୧୯୩୦ ମସିହାରେ ଆଇନ କଲେଜ ଛାଡ଼ି କର୍ମ ଜଗତରେ ପ୍ରବେଶ କଲେ ।

କାହ୍ନୁଚରଣ ପ୍ରଥମେ ସରକାରୀ କିରାଣି ଭାବେ କାର୍ଯ୍ୟ ଆରମ୍ଭ କରିଥିଲେ । ୧୯୪୦ ମସିହାରେ ସେ ସବ୍‌ଡେପୁଟି ମାଜିଷ୍ଟ୍ରେଟ୍ ଓ ୧୯୪୬ ସାଲରେ ଡେପୁଟି ମାଜିଷ୍ଟ୍ରେଟ୍ ପଦକୁ ଉନ୍ନୀତ ହୋଇଥିଲେ ।

**କବିରୁ ଔପନ୍ୟାସିକ**

କାହ୍ନୁଚରଣଙ୍କର ବାଲ୍ୟକାଳରୁ ସାହିତ୍ୟ ପ୍ରତି ଅନୁରାଗ ଥିଲା । ସେ ପ୍ରଥମରୁ ହିଁ କବିତା ପ୍ରତି ଆକୃଷ୍ଟ ହେଲେ । ସେ ପ୍ୟାରୀମୋହନ ଏକାଡେମୀର ଦଶମ ଶ୍ରେଣୀର ଛାତ୍ର ଥିଲାବେଳେ ସାହିତ୍ୟ ରଚନାରେ ବ୍ରତୀ ଥିବା ଜଣାଯାଏ । ସେତେବେଳେ ସ୍କୁଲରୁ ତ୍ରୈମାସିକ ପତ୍ରିକା 'ସାହିତ୍ୟ ସୋପାନ' ବାହାରୁଥାଏ । ଥରେ ତାଙ୍କର କେତୋଟି କବିତା ପ୍ରକାଶ ପାଇଲା । ସେ ତେଣୁ କବି ହେବା ସ୍ୱପ୍ନ ଦେଖୁଥିଲେ । ଗୁଣୁ ଗୁଣୁ ହୋଇ ସେ ମନେ ମନେ କବିତା ରଚନା ମଧ୍ୟ କରୁଥିଲେ । କିନ୍ତୁ ପରବର୍ତ୍ତୀ ଛାତ୍ର ଜୀବନରେ ସେ ଉପଲବ୍ଧି କଲେ ଯେ କବି ହେବା ପ୍ରତିଭା ବା ଯୋଗ୍ୟତା ତାଙ୍କର ନାହିଁ । ସେ ଏହା ମଧ୍ୟ ସ୍ୱୀକାର କରିଛନ୍ତି –

''ଜ୍ଞାନର ପରିଧି ମୋର ସଂକୀର୍ଣ୍ଣ । ଏପରି ଧାରଣା ହେବାର ପ୍ରଧାନ କାରଣ ହେଲା ସେତେବେଳେ ମୁଁ ବୁଝିଥିଲି ଯେ ଉପେନ୍ଦ୍ର ଭଞ୍ଜ, ରାଧାନାଥ ବା ମଧୁସୂଦନଙ୍କ ପରି ସଂସ୍କୃତିଆ ଭାଷାରେ କବିତା ନ ଲେଖିଲେ କବିତା ହୋଇପାରେ ନାହିଁ । ଆହୁରି ମଧ୍ୟ ମୋର ଧାରଣା ହୋଇଥିଲା ଯେ ସାହିତ୍ୟ କେବଳ ଲେଖାହୁଏ ସ୍କୁଲ କଲେଜ, ମାଷ୍ଟର, ପ୍ରଫେସର ଓ ଛାତ୍ରମାନଙ୍କପାଇଁ । ଗାଁ-ଗହଳର ଲୋକମାନଙ୍କପାଇଁ ସାହିତ୍ୟ ଲେଖାହୁଏ ନାହିଁ । ସେତିକିବେଳେ ଫକୀରମୋହନଙ୍କ ଗଳ୍ପ ଉପନ୍ୟାସ ସଙ୍ଗେ ପରିଚୟ ହେଲା । ବାଃ ଗଦ୍ୟରେ ବି ଓଡ଼ିଆ ଭାଷାରେ ସାହିତ୍ୟ ସୃଷ୍ଟି କରାଯାଇପାରିବ ! ସଂସ୍କୃତ ସାହିତ୍ୟରେ ଜ୍ଞାନ ନ ଥିଲେ ବି ବାପ, ଦାଦି, ପିଉସା, ପିଉସୀ, ଭାଇ ଏବଂ ଖୁଡ଼ୀ, ମାଉସୀ, ଅପାମାନେ କଥାବାର୍ତ୍ତା ହୋଇ ଭାବ ପ୍ରକାଶ କରିପାରୁଛନ୍ତି । ସେ ଭାଷାରେ ଗଳ୍ପ ଉପନ୍ୟାସ ଲେଖି ହେବ ।''

କବିତାଲେଖାପାଇଁ କେବଳ ଭାଷା ଅସୁବିଧା ନ ଥିଲା । ଅନ୍ୟାନ୍ୟ ଅସୁବିଧା ବିଷୟରେ ସେ ଉଲ୍ଲେଖ କରିଛନ୍ତି –

''ମୁଁ କବିତା ଲେଖି ଅକ୍ଷର ଗଣି, ପାଦ ଓ ପଦ ମିଳାଇ ଉପଧା ପକାଇ ଏତେ ସମୟ ନଷ୍ଟ କରିବି କାହିଁକି ? ପୁଣି ପାଦ ମିଳାଇବାକୁ ଚେଷ୍ଟା କରି ଶବ୍ଦଟିମାନ ବାଛି ବାଛି ବସାଇଲାବେଳକୁ ଭାବ କେଉଁଠି ତଡ଼ି ହୋଇଯାଉଛି । ପ୍ରତିଭା ତ ନାହିଁ, ଜ୍ଞାନ ଓ ଦକ୍ଷତା ନାହିଁ, କାହିଁକି ଏ କସରତ୍, ବିଦାୟ ମା' କବିତା, ନମସ୍କାର କରୁଛି ।''

କାହ୍ନୁଚରଣଙ୍କ ଗଳ୍ପ ଉପନ୍ୟାସ ରଚନାର ଉତ୍ସ ରୂପେ ଗୋଟିଏ ଘଟଣାକୁ ନିଆଯାଇପାରେ । ଅଭ୍ୟୁଦୟ ସାହିତ୍ୟ ସମାଜର ଆନୁକୂଲ୍ୟରେ 'ଓଡ଼ିଆ ଉପନ୍ୟାସ ପରିଚୟ'

ନାମକ ଏକ ସମାଲୋଚନା ସଙ୍କଳନରେ ସେ ଏହା ବର୍ଣ୍ଣନା କରିଛନ୍ତି । ସେ ପ୍ରକାଶ କରିଛନ୍ତି ଯେ କଲେଜରେ ପାଠ ପଢୁଥିବା ସମୟରେ ଛାତ୍ରାବାସର ଜଣେ ସହପାଠୀ ବନ୍ଧୁଙ୍କଠାରୁ ଗୋଟିଏ ସତ୍ୟମୂଳକ ଘଟଣା ଶୁଣିଲେ । ଗଳ୍ପଟି ହେଉଛି, ଜଣେ ପୁଲିସ ସବ୍‌ଇନ୍‌ସପେକ୍ଟର ମୋଫସଲର କୌଣସି ଏକ ସ୍ଥାନରେ ନିଯୁକ୍ତ ଥିଲେ । ତାଙ୍କର ବଦଳି ହେଲା । ସେ ଯେଉଁଦିନ ସେ ସ୍ଥାନ ତ୍ୟାଗ କରି ନୂତନ କର୍ମକ୍ଷେତ୍ରକୁ ଯାଆନ୍ତି, ସେଦିନ ଭୀଷଣ ଝଡ଼ତୋଫାନ ହେଲା । ସେ ବଳଦଗାଡ଼ିରେ ପିଲାପିଲିଙ୍କୁ ନେଇ ରେଲଷ୍ଟେସନ ଅଭିମୁଖେ ଯାତ୍ରା କରୁଥାନ୍ତି । ପୂର୍ବରୁ ତାଙ୍କର ଝିଅଟି ଭୀଷଣ ରୋଗରେ ଶଯ୍ୟାଶାୟିନୀ ଥିଲା । ବଳଦଗାଡ଼ିରେ ଯାଉଥିଲାବେଳେ ତାଙ୍କର ହୃଦ୍‌ବୋଧ ହେଲା ଯେ ଝିଅର ମୃତ୍ୟୁ ହୋଇଯାଇଛି । ତାଙ୍କ ଆଗେ ଆଉ କୌଣସି ଉପାୟ ନ ଥିଲା । ସେ ରାସ୍ତାକଡ଼ର ଗୋଟିଏ କୁଡ଼ିଆ ଘରେ ଝିଅଟିର ଶବକୁ ପକାଇଦେଇ ନିଜ ଗନ୍ତବ୍ୟ ପଥରେ ଅଗ୍ରସର ହେଲେ । ସାଙ୍ଗରେ ସ୍ତ୍ରୀ ଓ ପୁତ୍ରଙ୍କୁ ନେଇ ସେ ଯାଇ ନୂତନ କର୍ମକ୍ଷେତ୍ରରେ ଯୋଗ ଦେଲେ ।

ସମୟର ରଥଚକ ଗଡ଼ି ଚାଲିଲା । ସେହି ପୁଲିସ ସବ୍‌ଇନ୍‌ସପେକ୍ଟର କ୍ରମେ କର୍ମକ୍ଷେତ୍ରରେ ଦକ୍ଷତା ଦେଖାଇ ଉଚ୍ଚପଦସ୍ଥ ପୁଲିସ ଅଫିସର ହେଲେ ଓ ତାଙ୍କର ପୁତ୍ରଟି ମଧ୍ୟ ପ୍ରାପ୍ତବୟସ୍କ ହେଲା । ପୁଅର ବିବାହପାଇଁ ମଧ୍ୟ ଉପଯୁକ୍ତ ପାତ୍ରୀ ଅନୁସନ୍ଧାନରେ ରହିଲେ । ଅତୀତରେ ଯେଉଁ ସ୍ଥାନରେ ଝିଅର ଶବକୁ ପକାଇଦେଇଯାଇଥିଲେ, ସେହି ଗ୍ରାମ ନିକଟବର୍ତ୍ତୀ ଏକ ଗ୍ରାମ୍‌ର ଜମିଦାରଙ୍କ କନ୍ୟା ସହିତ ବିବାହ ସ୍ଥିରୀକୃତ ହେଲା ।

ବିବାହ ଦିନ ବରପକ୍ଷ ଦଳ ସେ ଗ୍ରାମରେ ପହଞ୍ଚିଲେ । ଗାଁର ଲୋକମାନେ କିନ୍ତୁ ଚୁପ୍‌ଚାପ ହେଉଥିବା ଜମିଦାର ଜାଣିପାରିଲେ । ବିବାହ ପରେ ସତ୍ୟକଥାଟି ପ୍ରକାଶ ପାଇଲେ ଝିଅ-ଜ୍ୱାଇଁଙ୍କ ସମ୍ପର୍କ ତିକ୍ତ ହୋଇପାରେ ଭାବି ସତ୍ୟ କଥାଟି ଜମିଦାର ବରପିତାଙ୍କ ଆଗେ ପ୍ରକାଶ କରିଦେଲେ ।

ବରପିତାଙ୍କର, ଯେ କି ସେତେବେଳକାର ପୁଲିସ ସବ୍‌ଇନ୍‌ସପେକ୍ଟର ଥିଲେ, ଅତୀତ କଥା ମନେ ପଡ଼ିଛି । ତାଙ୍କର କନ୍ୟା ଯେ ଜୀବିତା ତାହା ଜାଣି ଅତ୍ୟନ୍ତ ଆନନ୍ଦିତ ହୋଇଛନ୍ତି । ନିଜ ପୁତ୍ରର ବିବାହ ତାଙ୍କ କନ୍ୟା ସଙ୍ଗେ ହୁଅନ୍ତା ବା କିପରି ? ବରଯାତ୍ରୀ ହୋଇ ଆସିଥିବା ଜଣେ ଯୁବକ ସହିତ ଜମିଦାରଙ୍କ କନ୍ୟାର ବିବାହ ହୋଇଛି ।

କାହ୍ନୁଚରଣ ନିଜ ସହପାଠୀଙ୍କଠୁ ଏହି ଘଟଣାଟି ଶୁଣି ଚକିତ ହୋଇପଡ଼ିଲେ । ସେ ଭାବିଲେ ଯେ ବାସ୍ତବ ଘଟଣାଟି ଯଦି ଏପରିଭାବେ ଅନ୍ତରକୁ ସ୍ପର୍ଶ କରିଦେଇପାରେ, ତେବେ କଳ୍ପନାରଞ୍ଜିତ ଗଳ୍ପ ପାଠକକୁ କିପରି ମୁଗ୍ଧ ନ କରିବ ? କାହ୍ନୁଚରଣ ଏଇଠୁ ଗଳ୍ପ, ଉପନ୍ୟାସ ରଚନା କରିବାର ପ୍ରେରଣା ପାଇଲେ ।

ଆଲୋଚକଙ୍କ ଭାଷାରେ – ''ଏହି ପ୍ରେରଣାର ପରିଣତିରୂପେ କାହ୍ନୁଚରଣ ଆଜି ଓଡ଼ିଆ ସାହିତ୍ୟରେ ଅପ୍ରତିଦ୍ୱନ୍ଦ୍ୱୀ କଥାଶିଳ୍ପୀ ।''

## ଗଳ୍ପ ଉପନ୍ୟାସ ରଚନା

କାହ୍ନୁଚରଣ ୧୯୨୩ ମସିହାରେ ସେହି ପ୍ୟାରୀମୋହନ ଏକାଡେମୀ ସ୍କୁଲର ଛାତ୍ର ଥିବାବେଳେ ଫକୀରମୋହନ ଓ ଚିନ୍ତାମଣି ମହାନ୍ତିଙ୍କ କେତେକ ଉପନ୍ୟାସ ପଢ଼ିଥିଲେ । ମାସିକ ପତ୍ରିକା 'ମୁକୁର' ଓ ଇଂରାଜୀ ଭାଷାରେ ଛୋଟ ବଡ଼ ଉପନ୍ୟାସ ମାନ ମଧ୍ୟ ସେ ଅଧ୍ୟୟନ କଲେ । ସେ କେତେକ ଗଳ୍ପ ଲେଖି ତା'ର ପ୍ରକାଶପାଇଁ ପତ୍ରିକା ସମ୍ପାଦକଙ୍କୁ ଦେଲେ । ମାତ୍ର ସମ୍ପାଦକ ମହାଶୟ ସେଗୁଡ଼ିକୁ ବାରମ୍ବାର ଫେରାଇଦେଲେ । ଏହା ତାଙ୍କ ମନକୁ ଘୋର ଆଘାତ ଦେଲା । ସେ ପାଞ୍ଚୋଟି ବଡ଼ ବଡ଼ ଗଳ୍ପକୁ ନେଇ 'ପଞ୍ଚଦଳ' ନାମକ ଏକ ପୁସ୍ତକ ପ୍ରକାଶ କରାଇଲେ । ଏହାପରେ ସେ ପଛକୁ ଚାହିଁ ନାହାନ୍ତି । ଉପନ୍ୟାସ ରଚନା ହୋଇଛି ତାଙ୍କ ଜୀବନର ବ୍ରତ ।

ଅଧ୍ୟାପକ ଜାନକୀବଲ୍ଲଭ ମହାନ୍ତି 'ଓଡ଼ିଆ ଉପନ୍ୟାସ ଓ ଶାନ୍ତି' ନାମକ ଆଲୋଚନା ପୁସ୍ତକରେ ପ୍ରକାଶ କରିଛନ୍ତି ଯେ କାହ୍ନୁଚରଣ ଆଇ.ଏସ୍‌ସି. ପାସ୍ କରିବା ବେଳକୁ 'ଉତ୍ସବେ ବ୍ୟସନ' ଓ 'ଇଷ୍ଟସିଦ୍ଧି' ନାମକ ଦୁଇଟି ଉପନ୍ୟାସ ରଚନା କରିସାରିଥିଲେ । ମାତ୍ର ସେ ଦୁଇଟି ଆତ୍ମପ୍ରକାଶ କରି ନ ଥିବା ଦୃଷ୍ଟିରୁ 'ବାଲିରାଜା' ତାଙ୍କର ପ୍ରଥମ ପ୍ରକାଶିତ ଉପନ୍ୟାସ ଭାବେ ଗ୍ରହଣ କରାଯାଇପାରେ ।

## ବାଲିରାଜା

ଏହା କାହ୍ନୁଚରଣଙ୍କ ଔପନ୍ୟାସିକ ପ୍ରତିଭାର ଆଦ୍ୟ ଝଲକ । ଏହି ଉପନ୍ୟାସର କଥାବସ୍ତୁପାଇଁ ସେ ଅତୀତକୁ ଫେରିଯାଇଛନ୍ତି । କଳିଙ୍ଗର ସାଧବମାନେ ଅତୀତରେ ସୁଦୂର ଜାଭା, ବାଲିଦ୍ୱୀପ, ବୋର୍ଣ୍ଣିଓ, ସୁମାତ୍ରା ପ୍ରଭୃତି ଯାଇ ବାଣିଜ୍ୟ ବ୍ୟବସାୟ କରୁଥିଲେ । ଏହି ଅତୀତର ଗୌରବମୟ ନୌବାଣିଜ୍ୟ, ହିନ୍ଦୁ ସଂସ୍କୃତି ଓ ଦର୍ଶନର ପ୍ରାଧାନ୍ୟ, ବୌଦ୍ଧ ଧର୍ମର ପ୍ରସାର ପ୍ରଭୃତିର ଉଜ୍ଜ୍ୱଳ ସ୍ମାରକ 'ବାଲିରାଜା' ଅତୀତ ଇତିହାସର କଙ୍କାଳ ଉପରେ ଲେଖକଙ୍କର କଳ୍ପନା ବିଳାସର ଏକ ସାର୍ଥକ ସୃଷ୍ଟି ।

ମାଲବ୍ୟ ଦ୍ୱୀପର ପ୍ରକୃତି କ୍ରୋଡ଼ରେ ଭଜନା ଓ ରୁପେଇର ସଂସାର । ରୁପେଇର ମୃତ୍ୟୁପରେ ଭଜନା ମଣିଆଁକୁ ନିଜ ଆଦର୍ଶରେ ଗଢ଼ିଛି । ଭଜନା ଚାହିଁଛି ଯେ ମଣିଆଁ ସମୁଦ୍ର ପହଁରା, ଘୋଡ଼ାଚଢ଼ା, ଆକାଶରେ ତାରା ଇତ୍ୟାଦି ଚିହ୍ନିବାରେ ଦକ୍ଷତା ଅର୍ଜନ କରିବ । ସମୁଦ୍ର ବକ୍ଷରେ ତା'ର ସାମ୍ରାଜ୍ୟ ବିସ୍ତାର କରିବା ସଙ୍ଗେ ସଙ୍ଗେ ଜଳଦସ୍ୟୁମାନଙ୍କ ଅତ୍ୟାଚାରରୁ ବଣିକମାନଙ୍କୁ ମୁକ୍ତ କରି ସମୁଦ୍ର ଯାତ୍ରାକୁ ନିରାପଦ କରିବ । ଭଜନାର ସ୍ୱପ୍ନ ସାର୍ଥକ ହୋଇଛି । ମଣିଆଁ ଜଳଦସ୍ୟୁମାନଙ୍କ କବଳରୁ ସୁଶୀଳାକୁ ଉଦ୍ଧାର କରିଛି । ପ୍ରକୃତି କୋଳରେ ସୁଶୀଳା ବଢ଼ି ଯୁବତୀ ହୋଇଛି । ସୁଶୀଳା ମଣିଆଁକୁ ପ୍ରାଣ ଦେଇ ଭଲପାଇଛି । ଗଳାରେ ବି ଫୁଲମାଳ ଲମ୍ବାଇ ସ୍ୱାମୀ ବୋଲି ଗ୍ରହଣ କରିଛି । ଦସ୍ୟୁ ନାରାୟଣ ସାଧବ ସୁଶୀଳାକୁ ଅପହରଣ କରିନେଇଛି ଆଉ ମଣିଆଁ ତାକୁ

ଉଦ୍ଧାର କରିବାକୁ ଯାଇ ନାରାୟଣ ସାଧବର ଆଣ୍ଡାମାନ ଦ୍ୱୀପରେ ଗୁପ୍ତ କାରାଗାରରେ ବନ୍ଦୀ ହୋଇଛି । ମଣିଆଁ ମୃତ୍ୟୁର ଭ୍ରମ ଦେଖାଇ ନାରାୟଣ ସାଧବ ସୁଶୀଳାକୁ ବିବାହ କରିଛି । ମଣିଆଁ କିନ୍ତୁ ଜୀବନ ସହିତ ସଂଗ୍ରାମ କରି କାରାଗାରରୁ ଖସିଯାଇ ସମୁଦ୍ର ବକ୍ଷକୁ ଲମ୍ଫ ଦେଇଛି । ପରେ ବାଲିଦ୍ୱୀପରେ ବନ୍ଦିନୀ ଚଞ୍ଚଳାକୁ ମୁକ୍ତ କରିଛି । ସେଠି ଆଦିବାସୀଙ୍କର ହୃଦୟ ଜୟ କରି ନିଜକୁ ବାଲିରାଜା ବୋଲି ଘୋଷଣା କରିଛି ।

ମଣିଆଁ ଆଣ୍ଡାମାନର ବନ୍ଦୀମାନଙ୍କୁ ମୁକ୍ତ କରି ତାମ୍ରଲିପ୍ତଠାରେ ଆୟୋଜିତ ସାଧବ ସଭାରେ ନାରାୟଣ ସାଧବର ପ୍ରକୃତ ପରିଚୟ ଦେବାକୁ ଆସିଛି । ନାରାୟଣ ସାଧବର ମଣିଆଁକୁ ହତ୍ୟା କରିବାର ଚକ୍ରାନ୍ତ ବ୍ୟର୍ଥ ହୋଇଛି । ଉତ୍କଳରାଜା ଲଳିତେନ୍ଦୁ କେଶରୀ ନାରାୟଣ ସାଧବଙ୍କୁ ପ୍ରାଣଦଣ୍ଡ ଆଦେଶ ଦେଇଛନ୍ତି ।

ଶେଷରେ ମଣିଆଁ ଓ ସୁଶୀଳାର ଭେଟ ହୋଇଛି । ବାଲିରାଜା ବେଶରେ ଦେଖି ସୁଶୀଳାର ଅନୁତାପ ହୋଇଛି । ସେ ଆତ୍ମହତ୍ୟା କରିଛି । ଚଞ୍ଚଳା ଓ ମଣିଆଁର ହୋଇଛି ମିଳନ ।

ପ୍ରଥମ ପ୍ରକାଶିତ ଉପନ୍ୟାସ 'ବାଲିରାଜା' ମାଧ୍ୟମରେ ହିଁ କାହ୍ନୁଚରଣ ଜଣେ ସଫଳ ସ୍ରଷ୍ଟା ଭାବେ ପରିଗଣିତ ହେଲେ । ସାହିତ୍ୟିକ ଗୋପାଳ ପ୍ରହରାଜଙ୍କ ମତରେ –

''ଯଥାର୍ଥରେ କାହ୍ନୁଚରଣ ହିଁ ନିଜେ ଥିଲେ ବାଲିରାଜା, ଯିଏ ବାଣିଜ୍ୟ କାରବାର କରି ଓଡ଼ିଶାକୁ ସମୃଦ୍ଧ କରାଇପାରିଛନ୍ତି ତାଙ୍କ ପ୍ରଥମ ଉପନ୍ୟାସ ବାଲିରାଜା ମାଧମରେ ।''

**ତଥାସ୍ତୁ**

କାହ୍ନୁଚରଣ ବହୁ ଧର୍ମ ପୁସ୍ତକ ବିଶେଷତଃ 'ନଚିକେତା ଉପାଖ୍ୟାନ' ଅଧ୍ୟୟନ କରିଥିଲେ । ସେଥିରେ ବର୍ଣ୍ଣିତ ଧର୍ମଭାବ, ଆଧ୍ୟାତ୍ମିକ ଚିନ୍ତାଧାରା ଓ ସନ୍ନ୍ୟାସ ଜୀବନର ପ୍ରତିଫଳନ ହୋଇଛି 'ତଥାସ୍ତୁ' ଉପନ୍ୟାସରେ ।

ବିପତ୍ନୀକ ରଘୁନାଥଙ୍କର ଏକମାତ୍ର ପୁଅ ନବୀନ । ବାଲ୍ୟାବସ୍ଥାରୁ ନବୀନର ଦୟା, ପରୋପକାର ମନୋବୃତ୍ତି ଲକ୍ଷ୍ୟ କରି ରଘୁନାଥ ଆନନ୍ଦିତ ହୁଅନ୍ତି । ବାଲ୍ୟବନ୍ଧୁ ସୁନ୍ଦର ବହିଦାରଙ୍କ ସ୍ତ୍ରୀ ସାବିତ୍ରୀ । ସୁନ୍ଦରଙ୍କ ମା'ଙ୍କ ଚକ୍ଷୁରେ ସାବିତ୍ରୀ ଅଲକ୍ଷଣୀ । ତାହାରିପାଇଁ ପୁତ୍ର ମୃତ । ବୃଦ୍ଧାଙ୍କର ଓ ଗାଁ ଲୋକଙ୍କ ଅପବାଦକୁ ସେ ସହ୍ୟ କରିଯାଉଥିଲେ । ଯଥା ସମୟରେ ତାଙ୍କର ଏକ କନ୍ୟା ଜାତ ହେଲା । ତା'ର ନାମ ଆଶା । ଯୁବରାଜଙ୍କ ଜନ୍ମୋତ୍ସବରେ ବାଳକ ନବୀନର ଭିକ୍ଷୁକମାନଙ୍କ ପ୍ରତି ଦୟା ଓ ତା'ର ଉଚ୍ଚ ଭଗବତ୍ ଦର୍ଶନ ରାଜାଙ୍କ ମନରେ ଅପୂର୍ବ ପରିବର୍ତ୍ତନ ଆଣିଛି । କାଳକ୍ରମେ ରଘୁନାଥ ରୁକ୍ମିଣୀଙ୍କୁ ବିବାହ କରନ୍ତି । ରୁକ୍ମିଣୀ ନବୀନକୁ ହତାଦର କରନ୍ତି । ଫଳତଃ ନବୀନ ବେଳକୁ ବେଳ ସମାଜଛଡ଼ା ହେବାକୁ ଲାଗିଛନ୍ତି । ରଘୁନାଥ ପୁଅର ପରିବର୍ତ୍ତନପାଇଁ ଆଶା ସହ ବିବାହ କରାଇଦେଇଛନ୍ତି । ମାତ୍ର ନବୀନ ସନ୍ନ୍ୟାସୀ ହୋଇ ଘର ଛାଡ଼ନ୍ତି ।

ଏଣେ ମହାରାଜା ପ୍ରଶାନ୍ତ ସିଂହ ସନ୍ୟାସୀ ହୋଇ ଚାଲିଯାଇଛନ୍ତି । ରାଜକୁମାର ସିଂହାସନରେ ବସିଛନ୍ତି । ସେ ସାଥୀମାନଙ୍କ ପ୍ରରୋଚନାରେ ରାଜ୍ୟରେ ଅତ୍ୟାଚାର ଚଳାନ୍ତି । ଯୁବତୀ ଆଶାର ସୌନ୍ଦର୍ଯ୍ୟରେ ଆକୃଷ୍ଟ ହୋଇ ଉପଭୋଗ କରିବାକୁ ବସନ୍ତି । ଆଶାକୁ ରାମଚନ୍ଦ୍ର ହରଣଚାଳ କରିନିଏ । ମାତ୍ର ବିଶ୍ୱସ୍ତ ଭୃତ୍ୟ ବିଶିଆ ଦ୍ୱାରା ସେ ଉଦ୍ଧାର ପାଇଛି । ରାମଚନ୍ଦ୍ରଙ୍କୁ ହତ୍ୟା କରାଯାଇଛି । ଘରକୁ ଫେରି ଆଶା ଦେଖିଛି ଯେ ରୁକ୍ମିଣୀ ମୃତା । ସାବିତ୍ରୀ ମଧ୍ୟ ମୃତା ଓ ରଘୁନାଥଙ୍କ ଘର ଦଗ୍ଧୀଭୂତ । ଆଶା ଦୁଃଖରେ ଆତ୍ମହତ୍ୟାପାଇଁ ନଦୀ ଗର୍ଭକୁ ଡେଇଁପଡ଼ିଛି । କିନ୍ତୁ ଦୈବକ୍ରମେ ବଞ୍ଚିଛି ଓ ଅରଣ୍ୟ ମଧ୍ୟରେ ସନ୍ୟାସୀ ନବୀନଙ୍କ ସନ୍ଧାନ ପାଇଛି । ଯୁବରାଜଙ୍କ ହାତରେ ବିଶିଆର ମୃତ୍ୟୁ ହୋଇଛି । କନ୍ଧମାନେ ଏଥିରେ ଉତ୍‌କ୍ଷିପ୍ତ ହୋଇ ଯୁବରାଜଙ୍କୁ ବନ୍ଦୀ କରିଛନ୍ତି । ବାବାଜି ହୋଇଥିବା ବୃଦ୍ଧ ମହାରାଜ ନିଜର କୁପୁତ୍ରପାଇଁ ଅନୁତାପ କରନ୍ତି । ନବୀନ ଓ ଆଶାପାଇଁ ହରିପୁରର ରାଜମୁକୁଟ ପଠାନ୍ତି । ନବୀନ ତାହା ଗ୍ରହଣ କରି ନାହାନ୍ତି । ସନ୍ୟାସୀ ଦମ୍ପତି ରାଜକୁମାରଙ୍କୁ କ୍ଷମା ଦେଇଛନ୍ତି ଓ ବୃଦ୍ଧରାଜାଙ୍କ ଠାରୁ ପାଇଥିବା ରତ୍ନହାରକୁ ରାଜକୁମାରଙ୍କୁ ଫେରାଇ ଦେଇଛନ୍ତି । ଏହା ଥିଲା ତାଙ୍କ ବିବେଚନାରେ ଶ୍ରେଷ୍ଠ ଦଣ୍ଡ । ରାଜକୁମାର ଯୋଡ଼ହସ୍ତରେ ସନ୍ୟାସୀ ଦମ୍ପତିଙ୍କ ଦଣ୍ଡାଦେଶକୁ ମାନିନେଇ ଚାହିଁଛନ୍ତି ମୁକ୍ତି । ସନ୍ୟାସୀ ଉର୍ଦ୍ଧ୍ୱହସ୍ତରେ କହିଛନ୍ତି 'ତଥାସ୍ତୁ' ।

**ପଳାତକ**

'ପଳାତକ' ଏକ ସାମାଜିକ ଉପନ୍ୟାସ । ଦାଦା ବିପ୍ରଚରଣଙ୍କ ଆଦର୍ଶରେ ସାଧୁଚରଣ ନିଜ ମନ ଓ ଚିନ୍ତାଧାରାକୁ ଶୃଙ୍ଖଳିତ କରନ୍ତି । ବିପ୍ରଚରଣ ଭାଇ ଓ ଭାଉଜଙ୍କୁ ଗଭୀର ସମ୍ମାନ ଓ ଭକ୍ତି କରନ୍ତି । ସର ଓ ସାଧୁଚରଣଙ୍କ ପ୍ରତି ସମସ୍ତ ସ୍ନେହ ଅଜାଡ଼ି ଦିଅନ୍ତି । ନିଜର ନିଷ୍କପଟ ମନ ନେଇ ବିପ୍ରଚରଣ ଦାରିଦ୍ର୍ୟ ସହିତ ସଂଗ୍ରାମ କରିଚାଲନ୍ତି । ସାଧୁର ମଙ୍ଗଳ ଦୃଷ୍ଟିରୁ ଆଉ ଟଙ୍କା ନ ପଠାଇବାପାଇଁ ତାଗିଦ୍ କରିଛନ୍ତି । ଅଭୟଚରଣ ସାଧୁଙ୍କୁ ନେଇ ରସାନନ୍ଦଙ୍କ ଘରେ ରଖାଇଛନ୍ତି । ବୃଦ୍ଧ ରସାନନ୍ଦଙ୍କ ପାଖରେ ଥାନ୍ତି ଯୁବତୀ କୋକିଳଦେଈ । ବିବାହିତା ହୋଇ ମଧ୍ୟ ରହିଛନ୍ତି କୁମାରୀ ହୋଇ । ନିରୋଳାରେ ଯୁବକ ସାଧୁଚରଣଙ୍କୁ ଦେଖି ତାଙ୍କପ୍ରତି ମନରେ ଦୁର୍ବଳତା ଆସିଛି । ଛାତି ଭିତରେ ନିଆଁ ଦାଉ ଦାଉ ହୋଇ ଜଳିଉଠିଛି । କିନ୍ତୁ ସାଧୁଚରଣଙ୍କର କୋକିଳଙ୍କ ପ୍ରତି କୌଣସି ଆବିଳତା ନାହିଁ । କୋକିଳଙ୍କ ଅସାବଧାନତା ହେତୁ ରସାନନ୍ଦଙ୍କ ମୃତ୍ୟୁ ହୋଇଛି । ଜଗନ୍ନାଥଙ୍କ ପାଶବିକ ପ୍ରବୃତ୍ତି ଆଗରେ କୋକିଳି ନିଜକୁ ସମର୍ପଣ କରି ନାହାନ୍ତି, ଅଜାଣତରେ ସାଧୁଚରଣଙ୍କ ଗୁଳିଚୋଟରେ ଜଗନ୍ନାଥ ଭୂଇଁରେ ଲୋଟିପଡ଼ନ୍ତି । ସାଧୁଚରଣ ଏହି ଅକସ୍ମାତ ଘଟଣାରେ ବିବ୍ରତ ହୋଇ ଆତ୍ମହତ୍ୟା କରିବାକୁ ଠିକ୍ କରନ୍ତି । ମାତ୍ର କୋକିଳଙ୍କ ପ୍ରବର୍ତ୍ତନାରେ ତାଙ୍କୁ ଧରି ହୁଅନ୍ତି ପଳାତକ । ବଙ୍ଗୀୟ ଭଦ୍ରମହିଳାଙ୍କ ଆଗରେ

କୋକିଳ ସାଧୁଚରଣଙ୍କୁ ସ୍ୱାମୀ ବୋଲି ଚିହ୍ନାଇଛନ୍ତି । ଏଥିରେ ସାଧୁଚରଣ ବିଚଳିତ ହୋଇପଡ଼ିଛନ୍ତି । କୋକିଳଙ୍କ ପ୍ରତି ତୀବ୍ର ଘୃଣା ସାଧୁଚରଣଙ୍କ ମନରେ ଜାତ ହୋଇଛି । ସେ ତାଙ୍କୁ ଏକୁଟିଆ ଛାଡ଼ି ଦେଇ ଗାଡ଼ିରୁ ଓହ୍ଲାଇ ଯାଇଛନ୍ତି ।

ଜମିଦାର ଦେବେନ୍ଦ୍ରଙ୍କୁ ରକ୍ତାକ୍ତ ଅବସ୍ଥାରେ ଉଦ୍ଧାର କରନ୍ତି ବିପ୍ରଚରଣ । ତାଙ୍କୁ ଛାଡ଼ନ୍ତି ଜମିଦାରଙ୍କ ଆଦର୍ଶ ପତ୍ନୀ ଶୈଳବାଳାଙ୍କ ପାଖରେ । ବିପ୍ରଚରଣଙ୍କର ଶୈଳବାଳାଙ୍କ ସହ ଆତ୍ମୀୟତା ହୁଏ । କୋକିଳ ମଧ୍ୟ ଏଥିମଧ୍ୟରେ କୁନ୍ଦଲତା ନାମ ଧାରଣ କରି ବେଶ୍ୟା ବୃତ୍ତି କରନ୍ତି । କୁନ୍ଦଲତାଙ୍କ ଦେବେନ୍ଦ୍ରଙ୍କ ସହ ସାକ୍ଷାତ ହୁଏ । କ୍ରମେ ଆତ୍ମୀୟତା ହୁଏ । କୁନ୍ଦଲତା ଆସନ୍ତି ଦେବେନ୍ଦ୍ରଙ୍କ ଘରକୁ । ସେଠାରେ ବିପ୍ରଚରଣଙ୍କ ସଙ୍ଗେ ଦେଖା ହୁଏ କୋକିଳଙ୍କର । ଦୁହିଁଙ୍କ ମଧ୍ୟରେ ଆନ୍ତରିକତା ଗଢ଼ିଉଠେ । ବିପ୍ରଚରଣ ଶେଷରେ କୁନ୍ଦଲତାଙ୍କୁ ବିବାହ କରନ୍ତି । ସେ ପତ୍ନୀଙ୍କୁ ନେଇ କାଶୀ ବୁଲିଯାନ୍ତି ।

କାଶୀରେ କୁନ୍ଦଲତା ସନ୍ୟାସୀ ସାଧୁଚରଣଙ୍କୁ ଚିହ୍ନି ପାରିଛନ୍ତି । ସାଧୁଚରଣ ମଧ୍ୟ କୋକିଳଙ୍କୁ ନେଇ ଅବଶିଷ୍ଟ ଜୀବନ ସୁଖରେ କଟାଇବାପାଇଁ ପ୍ରସ୍ତାବ ଦିଅନ୍ତି । ତେବେ ସରଳ ନିର୍ଦୋଷ ବିପ୍ରଚରଣଙ୍କ ମଙ୍ଗଳପାଇଁ କୋକିଳ ଏ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରନ୍ତି ଓ ସେ ସ୍ଥାନ ଛାଡ଼ି ଚାଲିଯିବାକୁ ଅନୁରୋଧ କରନ୍ତି । କୋକିଳଙ୍କ ପାଦତଳେ ମୁଣ୍ଡିଆ ମାରି ସାଧୁଚରଣ ଆତ୍ମହତ୍ୟା କରିବାକୁ ଗଙ୍ଗାକୂଳ ଆଡ଼କୁ ଚାଲିଯାଆନ୍ତି ।

ବିଧବା କୋକିଳଦେଈ କିପରି ପରିସ୍ଥିତିର ଚାପରେ କଲିକତାର ଏକ ବେଶ୍ୟା ଗୃହରେ ଆଶ୍ରୟ ନେଇଛନ୍ତି ତାହାହିଁ 'ପଳାତକ'ର ମୁଖ୍ୟ କଥାବସ୍ତୁ । ନାରୀ ଓ ପୁରୁଷର ଆଦିମ ପ୍ରବୃତ୍ତି ଓ ଦେହର ପ୍ରେମ ଏଥିରେ ସୁନ୍ଦର ଭାବରେ ପ୍ରକାଶ ପାଇଛି ।

## ନିଷ୍ପତ୍ତି

କାହ୍ନୁଚରଣଙ୍କ ଆଦ୍ୟ ଉପନ୍ୟାସଗୁଡ଼ିକ ସମାଜ-ସଂସ୍କାର-ମୂଳକ । ବାଲ୍ୟବିଧବା ବିରୋଧରେ ଓ ବିଧବା ବିବାହ ସପକ୍ଷରେ ସେ ରଚନା କରିଛନ୍ତି ଉପନ୍ୟାସ 'ନିଷ୍ପତ୍ତି' । ବିବାହ କ'ଣ ଜାଣିବା ପୂର୍ବରୁ ହାରାମଣି ହୁଏ ବିଧବା । ଯୌବନର ଜ୍ୱାଳା ଓ ଭବିଷ୍ୟତ୍‌ର ଶୂନ୍ୟତା ମଧ୍ୟରେ ହାହାକାର କରିଉଠେ ତା'ର ଜୀବନ । ନୈଷ୍ଠିକ ପିତାଙ୍କର ଆଦେଶ ଅନୁସାରେ ପୁରାଣ ଓ ବ୍ରହ୍ମଚର୍ଯ୍ୟ ଶିକ୍ଷାରେ ସମୟ ଅତିବାହିତ କଲେ ମଧ୍ୟ ଯୌବନ ଛାତି ତଳର କେଉଁ ଅନ୍ଧାରି ଗୁହାରେ ଲୁଚି ଲୁଚି ଆସି ପ୍ରେମର ସଙ୍ଗୀତ ଗାଏ । କାନରେ ତା'ର ବାଜେ କେଦାର ଗୌରୀଙ୍କର ଅମର ପ୍ରେମକାହାଣୀ । ବୈଧବ୍ୟ ଯନ୍ତ୍ରଣାରୁ ମୁକ୍ତିପାଇଁ ସେ ଭଗବାନ୍‌ଙ୍କ ନିକଟରେ ପ୍ରାର୍ଥନା କରିଛି । ଶେଷରେ ସେ ଛାତି ତଳର ବ୍ୟଥାର କାହାଣୀ ଖୋଲିଦେଇଛି – କବିତା ମାଧ୍ୟମରେ । ଆଦର୍ଶବାଦ ଯୁବକ ବ୍ରଜ ଦ୍ୱାରା ତା'ର କବିତା ପତ୍ରିକାରେ ପ୍ରକାଶ ପାଇଛି । ଏଥିପାଇଁ ଅବଶ୍ୟ ତା'ର ପିତା ମାତା ତାଙ୍କୁ ଭର୍ତ୍ସନା କରିଛନ୍ତି । ସେ ବିଧବା, ତେଣୁ ତପସ୍ୱିନୀ ଜୀବନ ଯାପନ କରିବାକୁ ବାଧ କରାଯାଇଛି । କବିତା ଲେଖିବାର ଅଧିକାର ତା'ର ନାହିଁ ବୋଲି

କୁହାଯାଇଛି । ହାରାମଣି ଆତ୍ମହତ୍ୟା କରିବାକୁ ପସନ୍ଦ କରି ନାହିଁ । ସେ ତା'ର କବିତା ଜରିଆରେ ବ୍ରାହ୍ମଣ ସମାଜର କୁସଂସ୍କାର ବିରୋଧରେ ନାରୀ ଜାତିକୁ ଆହ୍ୱାନ କରିଛି । ଶେଷରେ ପିତାମାତାଙ୍କ ମାନସିକ ଅଶାନ୍ତି ନ ବଢ଼ାଇ ଶ୍ୱଶୁରଘରକୁ ଯାଇଛି । ଯୁବତୀ ଶାଶୂ କିଶୋରୀ ଓ ଶ୍ରୀନାଥର ସେ ସେବା କରିଛି । ତେବେ ଶାଶୂ କିଶୋରୀ ଓ ନଷ୍ଟଚରିତ୍ର ସୁରେନ୍ଦ୍ରଙ୍କର ସମ୍ପର୍କ ତାଙ୍କୁ ରୁଚିକର ବୋଧ ହୋଇ ନାହିଁ । ଶେଷରେ ସେ ଘର ଛାଡ଼ିବାର ସିଦ୍ଧାନ୍ତ କରିଛି । ତେଣେ ବ୍ରଜ ହାରାମଣିଙ୍କୁ କେବେହେଲେ ଦେଖି ନ ଥିଲେ ବି ତା'ର କବି ପ୍ରତିଭାରେ ବିମୁଗ୍ଧ ହୋଇଛି । ହାରାମଣିପାଇଁ ତା'ର ଅନ୍ତର ବିଳପି ଉଠୁଛି । ଶେଷରେ ଉଭୟଙ୍କର ସାକ୍ଷାତ ହୋଇଛି ନିତାନ୍ତ ନାଟକୀୟ ଭାବେ ଟ୍ରେନ୍‌ରେ । ରାଧାଗୋବିନ୍ଦବାବୁଙ୍କ ପରିଚାଳିତ ନାରୀମଙ୍ଗଳ ସମିତିର ଦାୟିତ୍ୱ ନେଇଛି ହାରାମଣି । ରାଧାଗୋବିନ୍ଦବାବୁ ହାରାମଣି ଉପରେ କନ୍ୟାର ସବୁ ସ୍ନେହ ଢାଳି ଦେଇଛନ୍ତି । ଶେଷରେ ରାଧାଗୋବିନ୍ଦବାବୁଙ୍କ ଉଦ୍ୟମରେ ବ୍ରଜ ଓ ହାରାମଣିଙ୍କର ହୋଇଛି ବିବାହ ନିଷ୍ପତ୍ତି ।

ବାଳବିଧବାର କରୁଣ ଜୀବନ କାହାଣୀ, ନିଷ୍ଠୁର ହୃଦୟହୀନ ସମାଜର ଅବିଚାର ଓ ସମାଜ ସଂସ୍କାରକଙ୍କଦ୍ୱାରା ତାହାର କିପରି ସମାଧାନ ହୋଇଛି, ତାହାହିଁ ଲେଖକ 'ନିଷ୍ପତ୍ତି' ଉପନ୍ୟାସରେ ବର୍ଣ୍ଣନା କରିଛନ୍ତି ।

**ସ୍ୱପ୍ନ ନା ସତ୍ୟ**

'ସ୍ୱପ୍ନ ନା ସତ୍ୟ' ଉପନ୍ୟାସ ଢେଙ୍କାନାଳ ରାଜ-ଅତ୍ୟାଚାରକୁ କେନ୍ଦ୍ର କରି ରଚିତ ହୋଇଥିବା ଅନୁମାନ କରାଯାଏ ।

ଅବୁଝାମଣା ରାଜା ପ୍ରପଞ୍ଚ ସିଂହ ଓ ପାଳବିଣ୍ଡା ମନ୍ତ୍ରୀ ଫିସାଦଙ୍କର ଅତ୍ୟାଚାରରେ ସୁରଙ୍ଗ ରାଜ୍ୟ ଥରହର ହୋଇଉଠିଛି । ଏହି ଅନ୍ଧାରି ମୁଲକରେ ଆଲୋକ ଜାଳିବାପାଇଁ ଆହ୍ୱାନ ଦେଇଛନ୍ତି ବିଦ୍ରୋହୀ ବିଶ୍ୱାଳ ।

ରାଜା ପ୍ରପଞ୍ଚ ସିଂହଙ୍କର ଦୃଷ୍ଟି ପଡ଼ିଛି ହଳଧରଙ୍କର ଏକମାତ୍ର କନ୍ୟା ଗୋଲାପ ଉପରେ । ରାଜାଙ୍କର ପାଶବିକ ଲାଳସା ସୃଷ୍ଟି କରିଛି ତୀବ୍ର ପ୍ରତିକ୍ରିୟା । ବିକ୍ରମ ନିର୍ଭୀକ । ଅନ୍ଧାରି ଶାସନର ଅତ୍ୟାଚାର ବିରୋଧରେ ସେ ଖଡ୍ଗ ଉତ୍ତୋଳନ କରିଛନ୍ତି । ଚାରିଆଡ଼େ ଆରମ୍ଭ ହୋଇଛି ବିଦ୍ରୋହ । ଜଳିଉଠିଛି ପ୍ରତିହିଂସାର ବହ୍ନି । ସିପାହିମାନଙ୍କର ବନ୍ଧୁକ ଆଗରେ ଶହ ଶହ ମଣିଷ ଛାତି ପତାଇଛନ୍ତି । ଶେଷରେ ବନ୍ଧୁକ ମୁନରେ ଶାସନ କରିବା ଅସମ୍ଭବ ହୋଇଛି । ସିପାହିମାନେ ମଧ୍ୟ ଜନତା ସହିତ ମିଶିଛନ୍ତି । ଜନତା ଧସେଇ ପଶିଛନ୍ତି ରାଜପ୍ରାସାଦରେ । ଅନୁତାପାନଳରେ ପ୍ରପଞ୍ଚ ସିଂହ ଦଗ୍ଧ ହୋଇଛନ୍ତି । ସେ ଆତ୍ମାରାମଙ୍କ ଗୋଡ଼ତଳେ ମୁଣ୍ଡ ନୁଆଁଇଛନ୍ତି । ଅନ୍ଧାରି ମୁଲକରେ ଆଲୁଅ ଜଳିଛି । ସ୍ୱପ୍ନ ସତ୍ୟରେ ପରିଣତ ହୋଇଛି ।

## ଦୁନିଆର ଦାଉ

ବିନୋଦ ଓ ଅହିଲା ସୁଖର ସଂସାର କରନ୍ତି । ତା' ଦେଖି ଗ୍ରାମବାସୀମାନେ ଈର୍ଷାନ୍ୱିତ ହୋଇପଡ଼ନ୍ତି । ସେମାନଙ୍କୁ ସନ୍ତୁଷ୍ଟ କରିବାକୁ ବିନୋଦ ଋଣଗ୍ରସ୍ତ ହୁଏ ଓ ତା'ର ପରିଶୋଧପାଇଁ ଅହିଲା ଓ ଛୋଟ ଝିଅ ଶ୍ରୀମତୀକୁ ଛାଡ଼ି ବିଦେଶ ଯାଏ ।

ଗାଁର ମାମଲତକାର ନଟ ଚୌଧୁରୀ । ଗରିବର ସର୍ବନାଶ କରନ୍ତି । ଦିନସାରା ଅକ୍ଲାନ୍ତ ପରିଶ୍ରମ କରି ଅହିଲା ଦୁଇବେଳା ଖାଇବାକୁ ପାଇ ନାହିଁ । ଘର ଭାଙ୍ଗି ଯାଇଛି । ମୁଣ୍ଡ ଗୁଞ୍ଜିବାକୁ ସ୍ଥାନ ଟିକିଏ ପାଇନି । ପଡ଼ୋଶୀ ଶିରିଆ ଅହିଲାର ଦୁଃଖ ସହି ନ ପାରି କିଛି ଟଙ୍କା ଧାର ଦେଇଛି । ମାତ୍ର ତାହା ଚୌଧୁରୀ ଦେଇଥିବା କରଜର ସୁଧ ବାବଦକୁ ଯାଇଛି । ଚୌଧୁରୀ ଶିରିଆ ବିରୋଧରେ ଟଙ୍କା ଚୋରି ଅଭିଯୋଗ ଆଣନ୍ତି । ଶିରିଆର ଗାଈଗୋରୁ ନିଲାମ ହୋଇଛି ଓ ତା' ଉପରେ ଅମାନୁଷିକ ଅତ୍ୟାଚାର ହୋଇଛି । ଶିରିଆ ଓ ଅହିଲା ସମ୍ପର୍କରେ ମିଥ୍ୟା ଅପବାଦ ପ୍ରଚାର କରି ଚାଲନ୍ତି । ଅବହେଳାରେ ଶ୍ରୀମତୀର ମୃତ୍ୟୁ ହୁଏ । ଅହିଲାର ଆତ୍ମହତ୍ୟାର ମିଛ ଖବର ଚୌଧୁରୀଙ୍କ କୌଶଳରେ ବିନୋଦ ପାଖରେ ପହଞ୍ଚେ । ବିନୋଦର ମିଛ ମୃତ୍ୟୁ ଖବର ମଧ୍ୟ ଗାଁରେ ପହଞ୍ଚେ । ସ୍ୱାମୀ ବଞ୍ଚି ଥାଉ ଥାଉ ଅହିଲା ହୋଇଛି ବିଧବା – ଅସହାୟା, ଭିକାରୁଣୀ । ଆଉ କିଛି ଉପାୟ ନ ପାଇ ଅହିଲା ଚୌଧୁରୀଙ୍କ ଘରେ ଆଶ୍ରୟ ନେଇଛି । ଚୌଧୁରୀଙ୍କ ଲୋଲୁପ ଦୃଷ୍ଟି ପଡ଼ିଛି ଅହିଲା ଉପରେ । କିନ୍ତୁ ସେ ଚୌଧୁରୀଙ୍କ କାମନାର ଶିକାର ହୋଇ ନାହିଁ । ସେ ଭିକ୍ଷା ମାଗି ବୁଲିଛି । କଲିକତାରେ ବିନୋଦ ମଧ୍ୟ ଶିରିଆକୁ ଗୁରୁତରଭାବେ ମାଡ଼ ଦେଇ ଫେରାର ହୋଇଛି । ଚୌଧୁରୀଙ୍କ ଅତ୍ୟାଚାରରେ ବିନୋଦ, ଶିରିଆ ଓ ଅହିଲାଙ୍କ ସର୍ବନାଶ ହୋଇଛି । ସେମାନଙ୍କ ସୁଖର ସଂସାର ଜଳିପୋଡ଼ି ପାଉଁଶ ହୋଇଛି ।

ମଣିଷ ଉପରେ ମଣିଷର ଅତ୍ୟାଚାର ଯେ କେତେ ଭୟଙ୍କର ହୋଇପାରେ 'ଦୁନିଆର ଦାଉ' ତା'ର ଏକ ବାସ୍ତବ ଦୃଷ୍ଟାନ୍ତ ମାତ୍ର ।

## ହା ଅନ୍ନ

'ହା ଅନ୍ନ' କାହ୍ନୁଚରଣଙ୍କ ସ୍ରଷ୍ଟା ଜୀବନର ଏକ ଅମର ଆଲେଖ୍ୟ । ଓଡ଼ିଶାର ନ'ଅଙ୍କ ଦୁର୍ଭିକ୍ଷକୁ କେନ୍ଦ୍ର କରି ଏହି ଉପନ୍ୟାସର ପରିକଳ୍ପନା ।

୧୯୩୩ ମସିହାରେ ଲେଖକ କଟକର ସୁପରିଣ୍ଟେଣ୍ଡେଣ୍ଟ ଇଞ୍ଜିନିୟର ଅଫିସରେ କିରାଣି ଥିଲେ । ସମୟେ ସମୟେ ପୁରୁଣା ନଥିପତ୍ର ଖେଳାଇ ପଢୁଥିଲେ । ଦିନେ ପୁରୁଣା ନଥିପତ୍ର ଭିତରୁ ଗୋଟିଏ ଇଂରାଜୀ ହାତଲେଖା ଚିଠି ପାଇଲେ । ୧୮୬୭ ମସିହାରେ ସେ ପତ୍ରଟିକୁ ବାଲେଶ୍ୱରର ତତ୍କାଳୀନ କଲେକ୍ଟର ସେ ସମୟର ବନ୍ଧବାଡ଼ ସୁପରିଣ୍ଟେଣ୍ଡେଣ୍ଟଙ୍କ ପାଖକୁ ଲେଖିଥିଲେ । ସେହି ପତ୍ରରେ ଦୁର୍ଭିକ୍ଷର କରାଳ ଚିତ୍ର ପ୍ରଦାନ କରାଯାଇଥିଲା । ଦୁର୍ଭିକ୍ଷର ଭୟାବହ ଅବସ୍ଥାର ଚିତ୍ର ପଢ଼ି ତାଙ୍କ ଦେହ ଓ ମନ ଥରିଉଠିଲା । ଅଜାଣତରେ ଆଖିରୁ ଲୁହ ଝରିଗଲା । ପୁଣି ୧୯୧୫-୧୬ର ସୋନପୁରରେ ଦେଖିଥିବା ଦୁର୍ଭିକ୍ଷର ଚିତ୍ର ତାଙ୍କ ଆଖି ଆଗରେ ନାଚି ଉଠିଥିଲା ।

କାହ୍ନୁଚରଣ ଲେଖିଥିଲେ'ହା ଅନ୍ନ'ର ଷଷ୍ଠ ସଂସ୍କରଣର ମୁଖବନ୍ଧରେ - ''୧୯୧୫-୧୬ର ଦୃଶ୍ୟ ସତେକି ପ୍ରତି ପୃଷ୍ଠାରେ ପ୍ରତିଫଳିତ ହୋଇଥିଲା । ଯାହା ମୁଁ ଅନୁଭବ କରିଥିଲି, ଯାହା ମୋର ସ୍ନାୟୁ ଥରାଉଥିଲା, ରକ୍ତ ତତାଇଥିଲା, ଆଖିରେ ଲୁହ ଆଣିଥିଲା, ମୋତେ ଉନିଦ୍ର ଓ ଛଟପଟ କରିଥିଲା, ତାହାକୁ ମୁଁ ମୋର ସେ କାଳର ଭାଷାରେ ରୂପ ଦେବାକୁ ଚେଷ୍ଟା କରିଥିଲି । ମୋ ଭିତରେ କେଉଁ ଅଜଣା ପ୍ରେରଣା ମୋ କଲମକୁ ଆଗକୁ ଠେଲିଥିଲା । 'ହା ଅନ୍ନ' ରେ ତାହା ଲେଖିଥିଲି ।''

ନାୟିକା ଉମା ପିଲାଦିନରୁ ଦୁଃଖିନୀ, ପିତୃହରା ବାଳିକା । ଖୁଡ଼ୀଙ୍କର ଅସହ୍ୟ ଅତ୍ୟାଚାରକୁ ସହିଯାଏ ନିର୍ବିକାର ଭାବରେ । ଉମା ଓ ଜଗୁର ନିବିଡ଼ ସ୍ନେହ । କିନ୍ତୁ ଜଗୁକୁ ଭଲପାଇବା ମଧ୍ୟରେ ସୃଷ୍ଟି ହୁଏ ଆଭିଜାତ୍ୟ ଓ ଜାତିର ବ୍ୟବଧାନ । ଜଗୁ ଉମାକୁ ବିବାହ କରିବାକୁ ଚାହେଁ, ମାତ୍ର ଉମାର ବାପା ଏଥିରେ ଅମତ ହେବାରୁ ଜଗୁ ଘରଛାଡ଼ି ମାମୁ ଘରକୁ ଚାଲିଯାଏ । ଉମା ଜଗୁପାଇଁ ସବୁ ସମୟରେ ଚିନ୍ତା କରେ, ହେଲେ ମନର ମଣିଷକୁ ନ ପାଇ ବିରହରେ ଘାରି ହୁଏ । ଏପରି ଦୁର୍ଦ୍ଦିନରେ ତା' ଦାଦା ଓ ଖୁଡ଼ୀଙ୍କର ଅତ୍ୟାଚାର ଦିନକୁ ଦିନ ବଢ଼ି ଚାଲେ । ତା'ର ଅବହେଳିତା ବୋଉ ମୃତ୍ୟୁବରଣ କରେ ।

ଏଣେ ଚାଷୀର ତହଳ ବିକଳ ଆର୍ତ୍ତନାଦ ଇନ୍ଦ୍ର ରାଜାଙ୍କ ହୃଦୟ ଥରାଇ ପାରିଲା ନାହିଁ । ଚାରିଆଡ଼େ ପଡ଼ିଲା ହାହାକାର । ସୁନାର ଚାଷ ଜମି ଫାଟି ଆଁ କଲା । ବଙ୍ଗାଳୀ ଜମିଦାରମାନେ ସରଳ ଓଡ଼ିଆମାନଙ୍କର ରକ୍ତ ଶୋଷି ନେଲେ । ଓଡ଼ିଶାର ଧାନ ଅମାରଶୂନ୍ୟ ହେଲା । ଚାରିଆଡ଼େ ଶୁଭିଲା 'ହା ଅନ୍ନ'ର ଚିତ୍କାର । ମଣିଷ ହେଲା କାଙ୍ଗାଳ ।

ଦୁର୍ଭିକ୍ଷର ସର୍ବଗ୍ରାସୀ କରାଳ ପ୍ରକୃତି ଉମାକୁ ଘରୁ ବାହାର କରିଦେଇଛି । ସେ ମୋତି ମା' ସଙ୍ଗେ ବଞ୍ଚିବାପାଇଁ ସଂଗ୍ରାମ କରିଛି । ହେଲେ ଆଦର୍ଶକୁ ଭୁଲିପାରି ନାହିଁ । ଗୋଟିଏ ନିଃସହାୟା ବୃଦ୍ଧା ପାଖରୁ ମୋତି ମା' ଅନ୍ନଛତ୍ର ଟିକେଟ୍ ଚୋରାଇ ଆଣିବାକୁ ସେ ସମର୍ଥନ କରି ନାହିଁ । ଉମା ଶେଷରେ ମହନ୍ତ ସଦାନନ୍ଦଙ୍କ ପାଖେ ଆଶ୍ରୟ ନେଇଛି । ମନ ନ ହେଲେ ବି ତାଙ୍କୁ ଦେହ ଦେଇଛି । ପିତାଙ୍କର ମର୍ମନ୍ତୁଦ ମୃତ୍ୟୁ ପରେ ଜଗୁ ଭାଙ୍ଗି ପଡ଼ିଛି । ଉମାର ପଳାତକ ଜୀବନ ତାଙ୍କୁ ଗଭୀର ଆଘାତ ଦେଇଛି । ସେ ଉମାଙ୍କୁ ଖୋଜିବାକୁ ଯାଇ ସେଇ ମଠରେ ପହଞ୍ଚିଛି । ସେଇ ମଠରେ ମୁମୂର୍ଷୁ ରୋଗୀ ଓ ଶବମାନଙ୍କ ମଧ୍ୟରେ ଉମା ପ୍ରିୟ ଜଗୁକୁ ଚିହ୍ନିଛି । ଜଗୁର ହାତ ଦିଓଟି ମଧ୍ୟ ଲମ୍ବି ଯାଇଛି ଅତି ଆଦରର ଉମି ମୁହଁ ଆଡ଼କୁ ।

ବହୁ ସମାଲୋଚକଙ୍କ ମତରେ 'ହା ଅନ୍ନ' କାହ୍ନୁଚରଣଙ୍କ ପ୍ରତିଭାର ବଳିଷ୍ଠ ସ୍ୱାକ୍ଷର । କାରଣ ଏହା ସାମାଜିକ ବାସ୍ତବବାଦ ଭଳି ଏକ ନୂଆ ଧାରାର ପରିଚୟ ଦିଏ । ନ'ଅଙ୍କ ଦୁର୍ଭିକ୍ଷର ପଟ୍ଟଭୂମିରେ ଯେତେସବୁ ଉପନ୍ୟାସ ରଚିତ ହୋଇଛି, ତା' ମଧ୍ୟରେ

'ହା ଅନ୍ନ' ଏକ ସ୍ୱତନ୍ତ୍ର ଆସନ ଦାବି କରେ – କେବଳ ତା'ର ମାର୍ମିକ ଆବେଦନ ଆଉ କଳାପୂର୍ଣ୍ଣ ସଂଘଟନ ଯୋଗୁଁ । ଏହାର ଶିଳ୍ପ କଳା ମଧ୍ୟ ଅନନ୍ୟ ସାଧାରଣ ବୋଲି ସମସ୍ତେ ସ୍ୱୀକାର କରନ୍ତି ।

**ଝଡ଼ର ଶେଷ ଓଲଟ ପାଲଟ**

୧୯୩୪ ମସିହାଠାରୁ ୧୯୪୫ ମସିହା ଅର୍ଥାତ୍ 'ଶାସ୍ତି' ରଚନା ପର୍ଯ୍ୟନ୍ତ କାହ୍ନୁଚରଣ ଯେଉଁ କେତେଖଣ୍ଡ ଉପନ୍ୟାସ ରଚନା କରିଛନ୍ତି, ସେଗୁଡ଼ିକରେ ଅଧିକ ଭାବରେ ପ୍ରେମର ଚିତ୍ର ଦେଖିବାକୁ ମିଳେ । ଏହି ଉପନ୍ୟାସଗୁଡ଼ିକରେ ବିଭିନ୍ନ ସାମାଜିକ ସମସ୍ୟାର ଉପସ୍ଥାପନା ମଧ୍ୟ କରିଅଛନ୍ତି । 'ଝଡ଼ର ଶେଷ ଓଲଟ ପାଲଟ' ସେଥିମଧ୍ୟରୁ ଅନ୍ୟତମ ।

ତରୁଣ ବୃନ୍ଦାବନର କ୍ଷଣିକ ଉତ୍ତେଜନାର ଦୁର୍ବଳ ମୁହୂର୍ତ୍ତରେ ଦୁଃଖୀର ସବୁ କିଛି ଓଲଟ ପାଲଟ ହୋଇଯାଇଛି । ସେ ବୃନ୍ଦାବନକୁ ତିରସ୍କାର କରିବା ଆଗରୁ ପଶି ଆସିଛନ୍ତି ଘର ଭିତରକୁ ଶାଶୂ ଓ ଅନ୍ୟମାନେ । ଅପବାଦର ବୋଝ ଅଜାଡ଼ି ହୋଇପଡ଼ିଛି ତା' ଉପରେ । ଦୁଃଖ ଓ ନୈରାଶ୍ୟରେ ଫାଟିପଡ଼ିଛି ତା'ର ହୃଦୟ । ଶାଶୂ ନିଜର ଭୁଲ ବୁଝିବେ ଓ ସ୍ୱାମୀଙ୍କ ମନରେ ପରିବର୍ତ୍ତନ ଆସିବ – ଏହି ଆଶାରେ ସେ ପୁଅକୁ ବାପଘରେ ଛାଡ଼ି ଆସିଛି । ବୋଉର ମୃତ୍ୟୁପରେ ସେ ଘଟଣାକ୍ରମେ ବେଶ୍ୟାଘରେ ଆଶ୍ରୟ ନେଇଛି । ହେଲେ ଅନୁଶୋଚନାରେ ମନ ଭାଙ୍ଗି ପଡ଼ିଛି । ଶେଷରେ ଓକିଲବାବୁଙ୍କର ପାଶବିକ କାମନାର ଶିକାର ହୋଇଛି । ତା' ମନରେ ପ୍ରତିଶୋଧର ବହ୍ନି ଜଳିଉଠିଛି । ତାଙ୍କୁ ବିଷ ଦେବା ଅପରାଧରେ ଜେଲ ଯାଇଛି । ଶେଷରେ ଜେଲରୁ ଫେରି ହୋଇଛି ଶଶୀ ଭିକାରୁଣୀ । କିନ୍ତୁ ପ୍ରାଣର ଟୁନାକୁ ସେ ଭୁଲି ପାରିନି । ସେ ଫେରିଆସିଛି ଶ୍ୱଶୁର ଘରକୁ । ଅଚିହ୍ନା ଭାବରେ ରହି ସବୁ ଦେଖିଛି ଓ ଜାଣିଛି । ସ୍ୱାମୀଙ୍କର ମୃତ୍ୟୁପରେ ଶାଶୂ ଅସହାୟ ହୋଇ ପଡ଼ିଛନ୍ତି । ମାମୁ ଓ ମାଈଁଙ୍କର ଟୁନା ଉପରେ ଅତ୍ୟାଚାର ଦେଖି ମନ ଆହୁରି ବିକଳପି ଉଠୁଛି । ଶେଷରେ ମୋତି ଚିହ୍ନିପାରିଛି ତା'ର ଦୁଃଖୀ ସାଆନ୍ତାଣୀଙ୍କୁ । ଶାଶୂଙ୍କ ସେବାରେ ସେ ମନ ଦେଇଛି । ବୃନ୍ଦାବନଙ୍କ ଭଙ୍ଗା ସଂସାରକୁ ଯୋଡ଼ିବାକୁ ଉଦ୍ୟମ କରିଛି । ଅବାଟରେ ଯାଇଥିବା ବୃନ୍ଦାବନର ସ୍ତ୍ରୀଙ୍କୁ ଜୀବନକୁ ପୁଣି ସୁନ୍ଦର କରିବାପାଇଁ ଉପଦେଶ ଦେଇଛି । ଟୁନାର ଉଜ୍ଜ୍ୱଳ ଭବିଷ୍ୟତ୍ ଗଢ଼ିବାପାଇଁ ଆଗେଇ ଆସିଛି ।

କାହ୍ନୁଚରଣ ଏହି ଉପନ୍ୟାସରେ ସାମସମୟିକ ସମାଜକୁ ଗଭୀର ଭାବରେ ଅନୁଶୀଳନ କରିଛନ୍ତି ଓ ତାକୁହିଁ କେବଳ ଚରିତ୍ର ମାଧ୍ୟମରେ ସେଥିରେ ରୂପାୟିତ କରିଛନ୍ତି ।

**ପରକୀୟା**

'ଝଡ଼ର ଶେଷ ଓଲଟ ପାଲଟ'ର ପରବର୍ତ୍ତୀ ଭାଗ 'ପରକୀୟା' । ବିବାହିତ ଜୀବନରେ ପରକୀୟା ପ୍ରୀତି ଭଳି ଏକ ଜଟିଳ ସମସ୍ୟାର ସମାଧାନ ହୋଇଛି ଏହି ଉପନ୍ୟାସରେ ।

ଶଶୀ ବୃନ୍ଦାବନଙ୍କ ସ୍ତ୍ରୀ ସରସୀ ଓ ଗାଁର ଜନୈକ ଯୁବକ ଘନ ସହ ଯୌନ ସମ୍ପର୍କକୁ ଅନୁଭବ କରିଛି । ସରସୀ ବୃନ୍ଦାବନଙ୍କୁ ବିବାହ କରି ସୁଖୀ ହୋଇନି । ଫଳରେ ଘନ ସହ ସରସୀର ସମ୍ପର୍କ ଗଢ଼ିଉଠିଛି । ଶଶୀ ଏସବୁ ଦେଖିଛି ଓ ଶୁଣିଛି । କିନ୍ତୁ ଯେତେବେଳେ ଦେଖିଛି ସରସୀ ହାତରେ ବିଷପାତ୍ର ଓ ଘନ ବାହାରି ଯାଉଛି, ଶଶୀ ଘର ଭିତରକୁ ଯାଇଛି ଓ ଆତ୍ମହତ୍ୟା ଭଳି କର୍ମରୁ ନିବୃତ୍ତ ହେବାପାଇଁ କହିଛି । ଜୀବନଟା ଶସ୍ତା ନୁହେଁ; ବଞ୍ଚି ରହିବାହିଁ ସଂସାରରେ କଷ୍ଟ । ଆଉ ମରିବାଟା ଖୁବ୍ ସହଜ । ନାରୀ ପତିତା ହୋଇ ଜନ୍ମ ହୋଇ ନ ଥାଏ । ଦୁନିଆର ପାରିପାର୍ଶ୍ୱିକ ଘଟଣାରେ ସେ ପଥଭ୍ରଷ୍ଟା ହୁଏ । ଶଶୀର କଥା ଶୁଣି ସରସୀର ଚେତା ପଶିଛି । କୁଳବଧୂ ହୋଇ ସଂଯତ ହୋଇ ନ ଥିବାରୁ ନିଜକୁ ଦୋଷୀ ମଣିଛି । ଘନର ଉଦାର ହୃଦୟର ପରିଚୟ ମଧ୍ୟ ପାଇଛି । ମନ ଓ ହୃଦୟର ସବୁ ପବିତ୍ରତା ନେଇ ସ୍ୱାମୀଙ୍କୁ ନରକରୁ ଫେରାଇ ଆଣିବାକୁ ଦୃଢ଼ ସଂକଳ୍ପ କରିଛି । ଶଶୀ ମଧ୍ୟ ସରସୀର ଦୁଃଖ ଦୂର କରିବାକୁ ପ୍ରାଣପଣେ ଚେଷ୍ଟା କରିଛି । ବୃନ୍ଦାବନଙ୍କୁ ଭଲବାଟକୁ ଫେରାଇଆଣି ସରସୀକୁ ସାହାଯ୍ୟ କରିବାର ସଂକଳ୍ପ ମଧ୍ୟ ନେଇଛି । ସେ ସରସୀ ହାତରେ ସୁନା ଅଳଙ୍କାର ସମର୍ପି ଦେଇଛି । ଶେଷରେ ସରସୀ ମୁଣ୍ଡ ଲଗାଇଛି ଶଶୀର ପାଦତଳେ ।

**ଉଦ୍ଦଣ୍ଡୀ**

ଗାଁ-ଗହଳିରେ କାହାରି କଥାକୁ ନ ମାନି, ଘରର କାମ ଦାମ ଛାଡ଼ି ଦୁମ୍ ଦୁମ୍ ଚାଲି, ମୁହେଁ ମୁହେଁ ଜବାବ ଦେଉଥିବା ଝିଅକୁ ହିଁ ଗାଁ ଲୋକେ ଉଦ୍ଦଣ୍ଡୀ ନାମ ଦେଇଥାନ୍ତି । କାହ୍ନୁଚରଣ ସେହିଭଳି ଝିଅର ଜୀବନକାହାଣୀ ନେଇ ରଚନା କରିଛନ୍ତି 'ଉଦ୍ଦଣ୍ଡୀ' ଉପନ୍ୟାସ ।

ଷୋଳ ସତର ବର୍ଷର ସୁନ୍ଦର ସୁସ୍ଥ ସବଳ ଝିଅ ମିନତି । ପୁଣି ପାହାଡ଼ୀ ଝରଣା ପରି ସେ ଚଳଚଞ୍ଚଳ । ଭାଇ ରାଜୁ ଓ ତା' ସାଙ୍ଗ ବ୍ରଜ ସହିତ ଯୁକ୍ତି କରି କଥା କଥାକେ ଅଭିମାନ କରି ବସେ । ହେଲେ ବିଶାଳ ହୃଦୟର ଅଧିକାରିଣୀ ହେଉଛି ମିନତି ।

ଭାଇ ରାଜୁ ଓ ବ୍ରଜଙ୍କ ସହିତ କଜିଆ କରେ; କିନ୍ତୁ ଉଭୟଙ୍କ ପ୍ରତି ତା'ର ଅଗାଧ ସ୍ନେହ । ବ୍ରଜକୁ ସେ ଭଲ ପାଉଛି ଅତି ନିବିଡ଼ ଭାବରେ । ଭାଇଙ୍କ ଘରେ ଲୁଚି ଲୁଚି ବ୍ରଜର ଫଟଟାକୁ ସଫା କରିଛି, ଛାତିରେ ଲଗାଇଛି ।

ହେମ ସହିତ ରାଜୁର ଓ ଶାନ୍ତି ସହିତ ବ୍ରଜର ବିବାହ ପ୍ରସ୍ତାବ ପଡ଼େ । ବ୍ରଜର ମତାମତ ଜାଣିବାପାଇଁ ବ୍ରଜର ମାଆ ରୋହିଣୀ ମିନତି ଉପରେ ଦାୟିତ୍ୱ ଦିଅନ୍ତି । ବାପାଙ୍କର ମତାମତ ଉପରେ ତା'ର କିଛି କହିବାର ନାହିଁ ବୋଲି ବ୍ରଜ କହନ୍ତେ ମିନତି ମୁହଁର ସରସତା ହଜିଯାଇଛି । ତା'ର ଆଖି ଛଳଛଳ ହୋଇଉଠିଛି । ରୋହିଣୀ ଦୂରରେ ଥାଇ ସବୁ ଲକ୍ଷ୍ୟ କରିଛନ୍ତି । ସେ ବୁଝିଛନ୍ତି ମିନତି ହୃଦୟର ବ୍ୟଥା ।

ଶେଷରେ ରାଜୁର ମାଆ ସୁନୀତି ଓ ବ୍ରଜର ମାଆ ରୋହିଣୀ ଶାନ୍ତି ଓ ମିନତିଙ୍କୁ ବୋହୂ କରିନେଇଛନ୍ତି ।

ପ୍ରକୃତିଗତ ଦୃଷ୍ଟିରୁ ମିନତିକୁ ଉଦଣ୍ଡୀ ଆଖ୍ୟା ଦିଆଯାଇଛି । ମାତ୍ର ତା' ମଧ୍ୟରେ ଥିଲା ସକଳ ମାନବୀୟ ପ୍ରବୃତ୍ତି । ତା'ର ଚାରିତ୍ରିକ ଔଜ୍ଜ୍ୱଲ୍ୟ ପରସ୍ପରର ବିପରୀତ ଚେତନାରୁ ସୂଚିତ ହୁଏ ।

**ଅଦେଖା ହାତ**

'ଅଦେଖା ହାତ୍' ଉପନ୍ୟାସରେ ସାମାଜିକ ତାଡ଼ନାର ଚିତ୍ର ଏତେ ଜୀବନ୍ତ ଭାବରେ ଉପସ୍ଥାପିତ ଯେ ତାହା ଭାଗ୍ୟବାଦକୁ ସୂଚାଇଦିଏ । ଭାଗ୍ୟ ଓ ଭଗବାନ୍‌ଙ୍କର ଅଦୃଶ୍ୟ ହାତର ଇଙ୍ଗିତରେ ସବୁକଥା ଘଟେ ବୋଲି ମଣିଷ ବାଧ ହୁଏ ମାନିନେବାକୁ । ଏହା ଦାରିଦ୍ର୍ୟ ନିଷ୍ପେଷିତା ଗୀତାର କରୁଣ କାହାଣୀ ।

ଦୁଃଖ, ଦାରିଦ୍ର୍ୟ ଭିତରେ ମଧ୍ୟ ଗୀତା ଆଶାବାଦୀ ହୋଇଛି । ଦାମଭାଇକୁ ଭଲ ପାଇଛି । ଦାମଭାଇ ବି ତାକୁ ବିବାହ କରିବାକୁ ଶପଥ କରିଛି । କିନ୍ତୁ ପିତାଙ୍କ ଇଚ୍ଛା ତଥା ସମାଜର ତାଡ଼ନାରେ ଦାମ ଅନ୍ୟତ୍ର ବିବାହ କରିଛି । ବିବାହ କଲେ ମଧ୍ୟ ଗୀତା ପ୍ରତି ତା'ର ଆକର୍ଷଣ କମି ଯାଇନି । ଦାମଭାଇ ସହିତ ଗୀତାର ସମ୍ପର୍କକୁ ନେଇ ଦୁର୍ନାମ ରଟିଛି । ଗୀତା ଆଉ ଦାମଭାଇଙ୍କୁ ପ୍ରଶ୍ରୟ ଦେଇନି, ଅତୀତର ଦୁର୍ବଳତାପାଇଁ ଅନୁତାପ କରିଛି । ତଥାପି ଗୀତାକୁ ସୁଖୀ କରିବାକୁ ଦାମଭାଇ ବ୍ୟଗ୍ର ହୋଇପଡ଼ିଛି । ଗୀତା ମଧ୍ୟ ସମସ୍ତ ଅପବାଦ ସତ୍ତ୍ୱେ ଦାମଭାଇ ପ୍ରତି ସହାନୁଭୂତିଶୀଳ ହୋଇପଡ଼ିଛି । ବାପାଙ୍କ ମୃତ୍ୟୁ ପରେ ଦୁଃଖ ଦାରିଦ୍ର୍ୟରେ ଗୀତାର ଜୀବନ ହାହାକାର କରିଉଠିଛି । ଗୀତାକୁ ସୁଖୀ ରଖିବାପାଇଁ ଦାମ ନିଜର ସମସ୍ତ ସ୍ୱାର୍ଥ ତ୍ୟାଗ କରିବାକୁ ପ୍ରସ୍ତୁତ ହୋଇଛି । ତା' ମନରେ ଆବିଳତା ନାହିଁ କି କୁତ୍ସିତ ଆକର୍ଷଣ ନାହିଁ ।

ପ୍ରବୋଧବାବୁଙ୍କ ସହିତ ଗୀତାର ବିବାହ ପ୍ରସ୍ତାବ ପଡ଼ିଛି । ଅମୁଭାଇଙ୍କ ମେସ୍‌ରେ ପ୍ରବୋଧବାବୁଙ୍କ ସହ ଗୀତାର ଅଚାନକ ଦେଖା ହୋଇଛି । ଧବଳେଶ୍ୱର ପୀଠରେ ତାଙ୍କ ହାତର ସ୍ପର୍ଶ ଲାଭ କରିଛି । ମନେ ମନେ ତାକୁ ହିଁ ଗୀତା ପୂଜା କରିଛି । ଖଳ ଲୋକଙ୍କ ତୁଚ୍ଛା ଅପବାଦରେ ଗୀତା ଭାଙ୍ଗି ପଡ଼ିନି । ସର୍ବଂସହା ଧରିତ୍ରୀ ପରି ଅଟଳ ରହିଛି । ସବୁ ନିଜର ଭାଗ୍ୟର ଫଳ ବୋଲି ଧରିନେଇଛି । ଶେଷରେ ଗୁଲିଖିଆ ଜଟିଆ ସହିତ ତା'ର ହୋଇଛି ମହାପ୍ରସାଦ ନିର୍ବନ୍ଧ । ଗୀତା ଭଲ ଭାବରେ ଜାଣେ ଜଟିଆ ସହିତ ବିବାହ ହେଲେ ସେ ଶାନ୍ତି ପାଇବ ନାହିଁ । କିନ୍ତୁ ଗାଁର ଦୁର୍ନାମକୁ ଆଖି ଆଗରେ ରଖି ଆଉ ଦାମଭାଇର ସୁଖର ସଂସାରପାଇଁ ଆଖି ଲୁହରେ ସେ ରାଜି ହୋଇଛି । ତେବେ ଅତୀତର ଆଶା ପୁଣି ତା' ମନରେ ଚେଇଁଉଠିଛି । ବୋଉ ନାଁରେ ଗୀତା

ଲେଖିଛି ଚିଠି ପ୍ରବୋଧବାବୁଙ୍କ ପାଖକୁ । ପ୍ରବୋଧବାବୁ ଆସିବା ପୂର୍ବରୁ ଗୀତାର ବିବାହ ହୋଇଛି ମାଧବାବୁଙ୍କ ସାଙ୍ଗରେ ।

ନାରୀ ପ୍ରେମକୁ ଅବଲମ୍ବନ କରି ସଂସାରରେ ଯେଉଁ ଦୁଃଖର ଅସହନୀୟତା ଦେଖାଯାଏ, କାହ୍ନୁଚରଣ ତାହାକୁ ହିଁ ସଫଳଭାବେ ଏଥିରେ ଚିତ୍ରିତ କରିଛନ୍ତି ।

**ପ୍ରତୀକ୍ଷା**

'ପ୍ରତୀକ୍ଷା' ଉପନ୍ୟାସକୁ ପାଠ କଲେ ଜଣାଯାଏ ଯେ ଏଥିରେ ସମାଜର ଚିତ୍ର ପ୍ରଦର୍ଶିତ ହୋଇଥିଲେ ହେଁ ଐତିହାସିକ ଚେତନା ରହିଛି । ଆଲୋଚକଙ୍କ ଭାଷାରେ ''କଳିଙ୍ଗ ସମ୍ରାଟ୍ ବିଜୟ ମଲ୍ଲ ଓ ଜୟନ୍ତୀ ଚରିତ୍ରରେ ଇତିହାସର ସ୍ୱର ପ୍ରତିଧ୍ୱନିତ ।''

ବାଲ୍ୟକାଳରୁ ନିତାନ୍ତ ସ୍ୱାଧୀନ ଭାବରେ ନଈକୂଳ ଜଙ୍ଗଲରେ ବୁଲିଲାବେଳେ ଜୟନ୍ତୀ ଅର୍ଜୁନଭାଇ ଠାରୁ ଶୁଣିଛି ସୀତା, ସାବିତ୍ରୀଙ୍କର ଆଦର୍ଶ । ପିତାଙ୍କଠାରୁ ଶିଖିଛି ବୀରତ୍ୱ, ଧୈର୍ଯ୍ୟ ଓ ମାନସିକ ଦୃଢ଼ତା ଆଉ ମା'ଙ୍କ ଠାରୁ ନାରୀସୁଲଭ ଗୁଣ ଓ ସଂଯମର ଆଦର୍ଶ । ପାଗଳା ବାବାଙ୍କ ମଠରେ ସୈନିକମାନଙ୍କର ଅତ୍ୟାଚାରରୁ ବିଜୟ ମଲ୍ଲ ଜୟନ୍ତୀକୁ ଉଦ୍ଧାର କରନ୍ତି । ବିଜୟ ମଲ୍ଲଙ୍କ ବୀରତ୍ୱ, ତ୍ୟାଗ ଓ ନିର୍ମଳ ଚରିତ୍ର ଜୟନ୍ତୀର ହୃଦୟରେ ଗଭୀର ରେଖାପାତ କରେ । ଶେଷରେ ସେ ବିଜୟଙ୍କ ପାଦତଳେ ନିଜକୁ ସମର୍ପି ଦେଇଛି । ବାପାଙ୍କର ବିଜୟ ମଲ୍ଲଙ୍କ ହାତରେ ମୃତ୍ୟୁ ହୋଇଛି । ବୋଉ ଅଗ୍ନିରେ ଝାସ ଦିଅନ୍ତି । ଜୟନ୍ତୀ ହୁଏ ନିରାଶ୍ରୟା । ପୁତ୍ର ଜୟନ୍ତ ଓ ବାବାଜିଙ୍କୁ ସାଙ୍ଗରେ ଧରି ଜୟନ୍ତୀ ବିଜୟ ମଲ୍ଲଙ୍କ ସନ୍ଧାନରେ ଯାଆନ୍ତି । ବାବାଜିଙ୍କ ଠାରୁ ଖବର ପାଇ ବିଜୟ ମଲ୍ଲ ପହଞ୍ଚନ୍ତି ଜୟନ୍ତୀ ପାଖରେ । ଅବହେଳାପାଇଁ ନିଜକୁ ଶତ ଧିକ୍କାର କରିଛନ୍ତି ଓ ଜୟନ୍ତୀଙ୍କୁ କ୍ଷମା ଦେବାକୁ ଅନୁରୋଧ କରିଛନ୍ତି । ରାଜାଙ୍କ ଦଣ୍ଡକୁ ଭ୍ରୂକ୍ଷେପ ନ କରି ଜୟନ୍ତୀଙ୍କୁ ଧର୍ମପତ୍ନୀ ରୂପେ ଗ୍ରହଣ କରିବାର ସିଦ୍ଧାନ୍ତ ନିଅନ୍ତି ।

ବିଜୟଙ୍କ ଚାଲିଯିବାପରେ ଜୟନ୍ତୀଙ୍କର ଅନୁଶୋଚନା ଆସିଛି । ସ୍ୱାମୀ ବିଜୟ ମଲ୍ଲ ପ୍ରତାରକ ବା କାପୁରୁଷ ନୁହନ୍ତି । ସେ ମହାନ୍ ଓ ତାଙ୍କର ପ୍ରେମ ପବିତ୍ର । କିନ୍ତୁ ରାଜାଙ୍କ ନିଷ୍ଠୁର ଦଣ୍ଡାଦେଶ କଥା ମନେ ପଡ଼ିଛି । ହୃଦୟ ତାଙ୍କର ଥରିଉଠୁଛି । ଏଭଳି ସ୍ୱାମୀଙ୍କୁ ବିପଦରେ ନ ପକାଇବାକୁ ଦୃଢ଼ସଂକଳ୍ପ କରିଛନ୍ତି । ତ୍ୟାଗ ହିଁ ନାରୀର ଧର୍ମ । ସକାଳ ପର୍ଯ୍ୟନ୍ତ ଅପେକ୍ଷା ନ କରି ସ୍ୱାମୀଙ୍କ ଜୀବନ ଓ ସମ୍ମାନ ରକ୍ଷାପାଇଁ ନିଜ ଜୀବନର ସକଳ ଆକାଙ୍‌କ୍ଷା ଓ ସୁଖକୁ ଜଳାଞ୍ଜଳି ଦେଇଛନ୍ତି । ସେ ବାବାଜିଙ୍କୁ ଧରି ପାନ୍ଥଶାଳା ପରିତ୍ୟାଗ କରିଛନ୍ତି । ସ୍ୱାମୀଙ୍କ ସ୍ମୃତିକୁ ମନରେ ରଖି ଜୀବନ ବିତାଇଛନ୍ତି । ତାଙ୍କ ପ୍ରତୀକ୍ଷାର ଶେଷ ନାହିଁ । ତଥାପି ସେହି ପ୍ରତୀକ୍ଷାରେ ଆନନ୍ଦ ପାଇଛନ୍ତି ।

**ଭଲ ପାଇବାର ଶେଷ କଥା**

ପ୍ରେମ ସମ୍ପର୍କିତ ଭାବାବେଗ ହିଁ ଏହି ଉପନ୍ୟାସର ଭିତ୍ତିଭୂମି । ଏହା ଆତ୍ମକଥା ଓ ଅନୁଭୂତିର ବର୍ଣ୍ଣନା କ୍ରମରେ ରଚିତ ।

ବାଉରି ଘରର ଝିଅ ଫୁଲ ଓ ବ୍ରାହ୍ମଣ ଘରର ଯୁବକ ଗୁଣନନା ପରସ୍ପର ପ୍ରତି ଆକୃଷ୍ଟ ହୋଇଛନ୍ତି । କିନ୍ତୁ ଫୁଲର ମା' ଏହାକୁ ପସନ୍ଦ କରି ନାହିଁ । ସେ ଫୁଲକୁ ଆକଟିଛି । ତା'ର ଭବିଷ୍ୟତ୍ ଉପରେ ଚେତାଇ ଦେବାକୁ ଯାଇ କହିଛି – ''ଛି ଫୁଲ, ଯେତେହେଲେ ସେ ବ୍ରାହ୍ମଣ ଲୋ, ଛତିଶପାଟକର ରାଜା । ଗୋଡ଼ ଧୂଳି ମୁଣ୍ଡରେ ଦେଲେ କେତେ ଜନ୍ମର ପାପ କ୍ଷୟ ହୋଇଯାଏ । ଗୁଣ ସାଆନ୍ତେ କିଛି ବୁଝନ୍ତି ନାହିଁ । ଆମର ଆଡ଼େଇ ରହିବାର କଥା ।''

ଗୁଣ ସାଆନ୍ତ ବାଲ୍ୟବିବାହ କରିଥିଲେ । ଘରଯୋଗ୍ୟା ହେବାରୁ ବୀଣା ଦେବୀ ଶାଶୂ ଘରକୁ ଆସିବାକୁ ବସିଲେ । କିନ୍ତୁ ଗୁଣ ଫୁଲକୁ ବବାହ କରି ଧରି ପଳାଇବା ଚିନ୍ତାରେ ବିଭୋର ହୋଇପଡୁଥିଲେ । କହୁଥିଲେ – ''ଫୁଲ ! ମୁଁ ବାହାହୋଇଛି ସତ, କିନ୍ତୁ ନିଜ ଇଚ୍ଛାରେ ବାହା ହୋଇ ନାହିଁ । ସେତେବେଳେ ମୋର ଜ୍ଞାନ ନ ଥିଲା । × × × ତା'ର ରୂପ ମୁଁ ଦେଖି ନାହିଁ । କହ ତ, ମୁଁ ତାକୁ ଭଲ ପାଇବି କିପରି ?''

ଗୁଣ ସାଆନ୍ତଙ୍କୁ ଫୁଲ ବୁଝାଇଛି । ବିବାହିତା ସ୍ତ୍ରୀକୁ ଅବହେଳା ନ କରିବାକୁ ଲଗାଇଛି । ପରିସ୍ଥିତି ଚାପରେ ଗୁଣ ମତ ବଦଳାଇଛି । ବୀଣା ଦେବୀ ଘରକୁ ଆସିବାର ସ୍ଥିର ହୋଇଛି । ଫୁଲ ଖୁସିରେ ସାଆନ୍ତଙ୍କ ଘରକୁ କାନ୍ଥବାଡ଼ ଲିପିବାକୁ ଆଗେଇ ଆସିଛି । ଅଭିମାନରେ ଗୁଣନନା ମୁହଁ ବୁଲାଇ ନେଇଛନ୍ତି ।

ବୋହୂ ଆସିଲା ପରେ ଗୁଣନନା ଗାଁ ଛାଡ଼ି ଚାଲିଯାଇଛନ୍ତି । ସ୍ତ୍ରୀଙ୍କୁ ଆଦରି ପାରି ନାହାନ୍ତି । ଫୁଲ ପାଇଁ ତାଙ୍କ ମନ ବ୍ୟାକୁଳ ହୋଇଛି ।

ଗୁଣନନାଙ୍କ ବ୍ୟବହାର ବିଷୟରେ ସ୍ତ୍ରୀ ବୀଣା ଦେବୀ ଫୁଲ ଆଗେ କହନ୍ତି । ନିଜର ଦୁଃଖ ବଖାଣନ୍ତି । ଫୁଲ ବୀଣାଦେବୀଙ୍କ ମର୍ମ ବେଦନା ବୁଝିପାରିଛି । ଫୁଲ ଭାବିଛି – ''ମଣିଷ ଯଦି ବଞ୍ଚିବାକୁ ଚାହେଁ ତାକୁ କେତେ କଥା ଭୁଲିବାକୁ ପଡ଼ିବ ।''

ଶେଷରେ ସେ ଅନ୍ୟ କାହା ଘରର ବୋହୂ ହୋଇ ଯିବାକୁ ସ୍ଥିର କରିଛି । ଆଉ ସଂକଳ୍ପ କରିଛି – ଯେ ତା'ର ସ୍ୱାମୀକୁ ଅବହେଳା ବା ପ୍ରତାରଣା କରିବ ନାହିଁ । ତା' ସଙ୍ଗେ ଲୁଚୁକାଳି ଖେଳିବ ନାହିଁ । କାରଣ ତାହା ଅଧର୍ମ । ସେଇଟା ପାପ । ତା'ର ଶେଷ କଥା – ''× × × ତେଣୁ ଯାହାର ହାତ ଧରି ଯିବି, ତାକୁ ମନପ୍ରାଣ ଦେଇ ଭଲ ପାଇବି ।''

ଗୁଣ ସାଆନ୍ତେ ଫେରିଛନ୍ତି – ଫୁଲକୁ ନେଇ ବିଦେଶ ଚାଲିଯିବାକୁ । କିନ୍ତୁ ଫୁଲର ଆଦର୍ଶ ପାଖରେ ହାର ମାନିଛନ୍ତି । ବୀଣାଦେବୀଙ୍କୁ ଆପଣାର କରିବାକୁ ଫୁଲ ପୁଣି ବୁଝାଇଛି । ଗୁଣ ଫେରି ଯାଇଛନ୍ତି ବୀଣାଦେବୀଙ୍କ ପାଖକୁ ।

କୁଳର ପ୍ରଥା ଅନୁସାରେ ଫୁଲର ବାହାଘର ହୋଇଛି । ଶାଶୂଘରକୁ ଗଲାବେଳେ ମିଶ୍ର ଘର ଆମ୍ବତୋଟା ମୂଳରେ ଫୁଲ ଆଖିରୁ ଲୁହ ଝରିଛି । ସେହି ଲୁହରେ ଗଲାଦିନର ସବୁ ସ୍ମୃତି ଧୋଇ ହୋଇଯାଇଛି ।

ଲେଖକ ଏହି ଉପନ୍ୟାସରେ ବିଭିନ୍ନ ବର୍ଗର ସ୍ଥିତାବସ୍ଥାକୁ ହିଁ ସ୍ୱୀକୃତି ଦେଇଛନ୍ତି ।

**ଢୁଣ୍ଡବାଇଦ**

'ଢୁଣ୍ଡବାଇଦ'ଉପନ୍ୟାସଟି ଗୋଟିଏ ବିଧବା ନାରୀର ଜୀବନକୁ ନେଇ ସୃଷ୍ଟି । ଆମ ସମାଜରେ ବିଧବା ନାରୀଟିଏ ପାଇଁ ଅନେକ ବାରଣ, ଅନେକ କଟକଣା । ଗୋଟିଏ କଥାରେ କହିଲେ ତା'ପାଇଁ ପ୍ରତ୍ୟେକଟି କାର୍ଯ୍ୟର ଗୋଟିଏ ସୀମାରେଖା ଥାଏ । ତା'ର ପ୍ରତ୍ୟେକଟି କ୍ରିୟାକଳାପ ପଛରେ ଏହି କଟକଣା ତ ଥାଏ, ତା' ସହିତ ତା' ଜୀବନର ଚଳଣିକୁ ନେଇ ଢୁଣ୍ଡବାଇଦ ବାଜେ । ସେ ପୁଣି ସହସ୍ର କୋଶ ବ୍ୟାପିଯାଏ । ତା'ର ସଫଳ ରୂପାୟନ – 'ଢୁଣ୍ଡବାଇଦ' ।

ତୁଳସୀ ଆସିଲା ବୋହୂ ହୋଇ । ରୂପ ଗୁଣ ସବୁରେ ସୀତାଙ୍କ ପରି । ପୁଣି କୋଳକୁ ଆସିଲା ପୁଅ-ମନୁଆଁ । ତା'ର ସୁଖର ସଂସାର ହସିଉଠିଲା । କିନ୍ତୁ ତା' ସୁନାର ସଂସାର ନିମିଷକେ ଭାଙ୍ଗିଗଲା । ବାପ ଘରକୁ ଯାଇଥିଲାବେଳେ ହେଲା ସ୍ୱାମୀର ଅଚାନକ ମୃତ୍ୟୁ । ତୁଳସୀ ହେଲା ବିଧବା ।

ଢୁଣ୍ଡବାଇଦ ରଟେ – ତୁଳସୀ ଦିଅର ସାଙ୍ଗରେ ସଲାହୋଇ ସ୍ୱାମୀକୁ ମରେଇଲା । ଆଉ ସୁର ବି ଭାଉଜର ପ୍ରେମରେ ପଡ଼ି ଭାଇକୁ ତା' ନିଜ ବାଟରୁ ସଫା କରିଦେଲା । ଗାଁ ସାରା ଚହଳ ପଡ଼ିଗଲା । ହେଲେ ଦିଅର ସୁରର ମନରେ ନାହିଁ ଆବିଳତା । ସେ ଭାଉଜକୁ ଭକ୍ତି କରେ । ତା' ପାଦତଳେ ମୁଣ୍ଡ ଲଗାଏ । ପୁତୁରା ମନୁଆକୁ କୋଳକୁ ନିଏ । ତାକୁ ଗେଲ କରେ – ରକ୍ତର ସମ୍ପର୍କ ସେଠି । ମନୁଆ ବି ଦାଦା କୋଳରେ ଥାଇ ହସେ, ଖେଳେ । ସୁରର ପ୍ରତିଜ୍ଞା – ମନୁଆ ମଣିଷ ହେବ । ସେ ବି ନୂଆବୋଉର ସେବା କରିବ । ପୁଣି ହସଖୁସି ଘରକୁ ଫେରିଆସିବ ।

ତୁଳସୀ ଆଖି ଆଗରେ ଠିଆ ହୁଏ ସୁରର ସୁନ୍ଦର ମୂର୍ତ୍ତି । ତା'ର ଶ୍ରଦ୍ଧା ଭକ୍ତି, ସେବା, ତ୍ୟାଗ ଆଖି ଆଗରେ ଚକାଭଉଁରି ଖେଳେ । କିନ୍ତୁ ତା' କାନରେ ପଡ଼େ ଲୋକଙ୍କ କଥା । ସୁର ପ୍ରତି ସନ୍ଦେହ ଜାତ ହୁଏ । ସୁର – ସ୍ୱାମୀହନ୍ତା । ମନ ତା'ର ବିଷେଇ ଉଠେ । ପ୍ରତିହିଂସାପରାୟଣା ହୋଇ ତା'ଠାରୁ ଦୂରେଇ ଯାଏ । ବିଧବା ହେଲେ ବି ଯୌବନର ଉଦ୍ଦାମ କାମନାକୁ ସମ୍ଭାଳି ନ ପାରି ଟିମଭାଇଙ୍କ ବାହୁବନ୍ଧନରେ ନିଜକୁ ସମର୍ପି ଦିଏ । ପରାଜୟର ଗ୍ଲାନି ନେଇ ଫେରିଲାପରେ ତୁଳସୀ ଅନୁଭବ କରେ ଛାତି ଫୁଲାଇ ବାଟ ଚାଲିବାର ଅହଙ୍କାର ତା'ର ଭାଙ୍ଗି ଯାଇଛି । ମନର ସବୁ ଦ୍ୱନ୍ଦ୍ୱ ଚାଲିଯାଇଛି । ପ୍ରତିହିଂସା ଭାବ ତା'ର କଟିଯାଇଛି । ସେ ବଦଳିଯାଇଛି ।

ତୁଳସୀ ଫେରିଯାଇଛି ଗାଁ ମଶାଣି ଭୂଇଁକୁ । ବରଗଛ ମୂଳେ ସମସ୍ତେ ବସିଛନ୍ତି – ସୁର, ଛବି, ତୁଳସୀ ଆଉ ମନୁଆଁ । ତୁଳସୀ ବୁଝିଛି ସ୍ୱାମୀ ତା'ର ଦେହ ନୁହେଁ – ଆତ୍ମା । ସିଏ ଅଛନ୍ତି ତା' ଭିତରେ । ତୁଳସୀ ହାତରୁ କାଚ କାଢ଼ି ମଶାଣି ଭୂଇଁରେ ପକାଇ ଦେଇଛି ଆଉ ଗୋଟିଏ ହାତରେ ସୁର ଓ ଆର ହାତରେ ଛବିର ହାତ ମିଳାଇ

ଦେଇଛି । ସୁର ଡାକିଛନ୍ତି – 'ନୂଆଉ' । ଛବି ଡାକିଛି – ଅପା । ମନ ତା'ର ଉଲୁସି ଉଠୁଛି । ସବୁ ମଇଳା, ଆବର୍ଜନା ଧୋଇ ହୋଇଯାଇଛି ।

ଔପନ୍ୟାସିକ କାହ୍ନୁଚରଣ ତୁଳସୀର ଏହି ପରିବର୍ତ୍ତନରେ ଏକ ମହନୀୟତାର ପୁଟ ଦେଇଛନ୍ତି । ତୁଳସୀ ପୁଣି ପାଲଟିଛି ସତୀ, ସାଧ୍ୱୀ, ସୀତା, ପଛରେ ପଡ଼ିରହିଛି ନିର୍ଜୀବ ତୁଣ୍ଡବାଇଦ ।

କାହ୍ନୁଚରଣଙ୍କ ଉପନ୍ୟାସରେ ପ୍ରେମ, ପ୍ରଣୟର ଚିତ୍ର ଯେତିକି ବାସ୍ତବ ସେତିକି ଜୀବନ୍ତ । ଫ୍ରଏଡ୍‌ଙ୍କ ଚେତନାର ସ୍ୱର ତାଙ୍କ ଚରିତ୍ରମାନଙ୍କ ମଧ୍ୟରେ ଅନୁରଣିତ । ଚେତନ, ଅବଚେତନ ଏବଂ ଅଚେତନ ମନର ସୂକ୍ଷ୍ମ ବିଶ୍ଳେଷଣ ଓ ତା'ର ଉନ୍ମୁକ୍ତ ପରିପ୍ରକାଶ ହିଁ 'ତୁଣ୍ଡବାଇଦ' ଉପନ୍ୟାସକୁ ଅଭୂତପୂର୍ବ ସଫଳତା ଆଣି ଦେଇଥିଲା ।

**ଶାସ୍ତି**

'ହା ଅନ୍ନ' ଉପନ୍ୟାସ ରଚନାର ଦଶ ବର୍ଷ ପରେ କାହ୍ନୁଚରଣ ଲେଖିଲେ 'ଶାସ୍ତି' – ଯାହାକୁ 'ହାଅନ୍ନ' ଉପନ୍ୟାସର ପରବର୍ତ୍ତୀ ଖଣ୍ଡଭାବେ ଗ୍ରହଣ କରାଯାଇପାରେ । ଏଥିରେ ସେ ନ'ଅଙ୍କ ଦୁର୍ଭିକ୍ଷର ପରବର୍ତ୍ତୀ ଚିତ୍ର ଅଙ୍କନ କରିଛନ୍ତି ।

ଉପନ୍ୟାସର ନାୟକ – ସନେଇ । ତା' ପାଖରେ ଧନ ନ ଥିଲା ସିନା, ହେଲେ ମନରେ ପ୍ରଚୁର ବଳ ଥିଲା । ତାହାକୁହିଁ ସମ୍ବଳ କରି ଭାଗ୍ୟ ବିରୋଧରେ ଅଣ୍ଟାଭିଡ଼ି ବାହାରିଥିଲା । ପ୍ରଥମେ ତା'ର ବିରୋଧରେ ଗଲେ ବାପ ବନେଇ ପରିଡ଼ା । ତୁଚ୍ଛ ଜାତିଗତ କାରଣରୁ ଧୋବୀ ସହିତ ବିବାହ ସମ୍ପର୍କକୁ ଭାଙ୍ଗିଦେଲେ । ଦୁର୍ଭିକ୍ଷର କରାଳ ଦାଉରୁ ସେ ବର୍ତ୍ତିଗଲା ସିନା, ମାତ୍ର ସମାଜ ତାକୁ ବଞ୍ଚି ରହିବାକୁ ଦେଲା ନାହିଁ । ସେ ହେଲା ପତିତ, ଛତରଖିଆ । ସେ ଅନୁଭବ କଲା ବଞ୍ଚିରହିବା ତା' ପକ୍ଷେ ଏକ ଅଭିଶାପ ଆଉ ଏ ସମାଜରେ ଜନ୍ମ ହେବା ଏକ ପାପ । ଅନ୍ତରରେ ତା'ର ବିଦ୍ରୋହର ବହ୍ନି ଦିକ୍ ଦିକ୍ ହୋଇ ଜଳିଉଠିଛି ।

ଧୋବୀର ଧନରେ ସନେଇ ଜାତି ହୋଇଛି । ପୁଣି ସମାଜରେ ମିଶିଛି । ଛତରରୁ ଫେରିବାପରେ ତା'ର ଥିଲା ଧୋବୀ ପ୍ରତି ଆକର୍ଷଣ । ସେ ମଧ୍ୟ ବଞ୍ଚିଛି ଧୋବୀର ଗୋପନ ସାହାଯ୍ୟରେ । ସନେଇ ଧୋବୀକୁ କହିଛି – ''ମୁଁ ମାନେ ନାହିଁ ଧର୍ମ, ସମାଜ, ଜାତି ... କିନ୍ତୁ ମୁଁ ମାନେ ଜୀବନ, ନାରୀ ପୁରୁଷର ମିଳନ ।''

ସମାଜର ବନ୍ଧନ ଓ ନିଜ ମନର ଦ୍ୱନ୍ଦ୍ୱ ମଧ୍ୟରେ ଧୋବୀ ଛନ୍ଦି ହୋଇ ଯାଇଛି । ବିଶେଷରେ ଛତରରେ ମିଶିବା ପରେ କଇଁର ସନ୍ତାନର ଅବୈଧ ବାପା ହେବା ସନେଇ ପ୍ରତି ଥିବା ସମସ୍ତ ସୁକୁମାର ଧାରଣାକୁ କୁଠାରାଘାତ କରିଛି । ଲୋକକଥାକୁ ସତ୍ୟ ବୋଲି ଗ୍ରହଣ କରିବା ପରେ ଧୋବୀ ସନେଇ ପ୍ରତି ବିମୁଖ ହୋଇପଡ଼ିଛି । ସେ ବାହାହେବାକୁ ମନା କରିଛି ।

ଏହାପରେ ସନେଇର ମନରେ ସୃଷ୍ଟି ହୋଇଛି ବିଦ୍ରୋହର ଝଡ଼ । ଭ୍ରଷ୍ଟା ଚରିତ୍ର କଇଁକୁ ବିବାହ କରିଛି । ରହିମ୍ ଓ ମୋହନକକା, ପୁନି ଓ ମଧୁଆ ଭୋଇଙ୍କୁ ନେଇ ସୃଷ୍ଟି କରିଛି ଏକ ଶ୍ରେଣୀହୀନ ସମାଜ ।

ଧୋବୀର ଢେର୍ ଦିନର ଆଶାର କୁସୁମ ଝଡ଼ିପଡ଼ିଛି । ତା'ର ଆଘାତ ସହିବା ସମ୍ଭବ ହୋଇନି । ଧୋବୀ ପୁନିକୁ ପଠାଇଛି ସନେଇକୁ ବାଟକୁ ଆଣିବାପାଇଁ । ସେ ଆଶା କରିଥିଲା ଯେ ସନେଇ ତା'ର ସମାଜଗଢ଼ା କାମରୁ ବିରତ ହେବ । କଇଁ ହେବ ନିରାଶ୍ରିତ । ସେ ତା'ର ସ୍ଥାନ ଗ୍ରହଣ କରିବ । କିନ୍ତୁ ଯେଉଁଦିନ ସେ ସ୍ୱଚକ୍ଷୁରେ କଇଁ ଓ ସନେଇର ଦାମ୍ପତ୍ୟର ଦୃଶ୍ୟ ଦେଖିଛି ସେହି ମୁହୂର୍ତ୍ତରୁ ଜାଗିଉଠିଛି ଈର୍ଷା । ଏହା ପରଠାରୁ ସେ ସନେଇକୁ ଅକୃତଜ୍ଞ ବୋଲି ଧରି ନେଇ ସନେଇ ସହ ତା'ର ବିବାହରେ ବାପର ସମ୍ମତିକୁ ବିରୋଧ କରିଛି ।

ଧୋବୀ ଅଭିମାନ ଓ କ୍ରୋଧରେ ସନେଇକୁ ଅକୃତଜ୍ଞ ବୋଲି କହିଛି । ବାପାଙ୍କୁ କହିଛି ତା'ର ଶାସ୍ତି ଲୋଡ଼ା; ମାତ୍ର ପର ମୁହୂର୍ତ୍ତରେ ଦେବତାଙ୍କ ପାଖରେ କ୍ଷମା ମାଗିଛି । ସନେଇର ସଂସାର ଓ ଦାମ୍ପତ୍ୟର କୁଶଳ କାମନା କରିଛି ।

ସନେଇ ମଧ ବୁଝିପାରିଛି ଯେ ସେ ଯେଉଁ ଘର ଠିଆ କରିଛି, ଯେଉଁ କିଆରିରେ ସୁନାର ଫସଲ ଠିଆ କରିଛି, ତାହା ନିଜ ଟଙ୍କାରେ ନୁହେଁ; ଧୋବୀର ଟଙ୍କାରେ । ତେଣୁ ଧୋବୀ ମନରେ ଆଘାତ ଦେଇ ତା' ଟଙ୍କାରେ କିଣା ହୋଇଥିବା ଜମି, ତୋଳା ହୋଇଥିବା ଘରେ ରହିବାର ଅଧିକାର ତା'ର ନାହିଁ । ଅନ୍ୟର ଦୟା ଓ ଦାନରେ ତା'ର ସମାଜ ଗଠନ କରିବା ନିରର୍ଥକ ବୋଲି ମନେ କରି ସନେଇ ବିଷ୍ଣୁପୁର ଗ୍ରାମ ଛାଡ଼ି ଚାଲିଯାଇଛି । ଯିବା ଆଗରୁ ସେ ନିଜ ବିବାହିତା ପତ୍ନୀ କଇଁକୁ କହିଛି – ''ପୁଣି ଆମେ ବାଟକୁ ଫେରିଯିବା, ଦେହର ଝାଳ ନିଗାଡ଼ି ପୁଣି କେଉଁଠି ନୂଆ ସଂସାର ଗଢ଼ିବା ।''

ଧୋବୀ ବୁଝିଛି – ସନେଇ ଠିକ୍ କରିଛି । ସେ ବିଧର୍ମୀ, ଅଜାତି, ଅଛୁଆଁ, ପତିତ । ତଥାପି ସେ ବଡ଼ ମଣିଷ, ଅସୀମ ତା'ର ଧୈର୍ଯ୍ୟ, ବିରାଟ ତା'ର ମନ, ବିଚକ୍ଷଣ ତା'ର କର୍ତ୍ତବ୍ୟ ଜ୍ଞାନ । ସବୁ ଭୁଲ ତା'ର ।

ସେ ଆଖି ବୁଜି ନିଶ୍ଚଳ ଭାବରେ ପଡ଼ି ରହିଥିଲା – ସତେ ଯେପରି ଠାକୁରଙ୍କ ପାଖରେ ପ୍ରାର୍ଥନା କରୁଥିଲା – ''ମୋତେ ପଥର କର, ମୂକ, ଅଥର୍ବ, କଠିଣ କର ଭଗବାନ୍, ଠିକ୍ ତୁମରି ପରି ।''

ଧୋବୀ ଚରିତ୍ରର କାରୁଣ୍ୟ ଯେକୌଣସି ପାଠକର ପ୍ରାଣକୁ ସ୍ପର୍ଶ କରେ । ଆଲୋଚକଙ୍କ ଭାଷାରେ – ''କାହ୍ନୁଚରଣଙ୍କ ସୃଷ୍ଟିରେ ଧୋବୀ ଆମ ସମାଜ ନୀତିର ଏକ ମୌନ ପ୍ରତିବାଦ ।''

'ଶାସ୍ତି' ଉପନ୍ୟାସରେ କାହ୍ନୁଚରଣ ପ୍ରଚଳିତ ସମାଜ ବ୍ୟବସ୍ଥା ବିରୋଧରେ ନିଜର କଣ୍ଠସ୍ୱର ଉତ୍ତୋଳନ କରିଛନ୍ତି । ପୂର୍ବରୁ ସମାଜ ବ୍ୟବସ୍ଥା ବିରୋଧରେ ତାଙ୍କର

ଅସନ୍ତୋଷ ଇତସ୍ତତଃ ଭାବରେ ପ୍ରକଟିତ ହୋଇଥିଲେ ମଧ୍ୟ ନୂତନ ସମାଜ ଗଠନର ନିର୍ଦ୍ଦିଷ୍ଟ ରୂପ କୌଣସି ଉପନ୍ୟାସରେ ଦେଇ ନାହାନ୍ତି । 'ଶାସ୍ତି' ଉପନ୍ୟାସରେ ସେ ନୂତନ ସମାଜ ଗଠନର ରୂପ ସ୍ପଷ୍ଟ କରିଦେଇଛନ୍ତି । 'ହା ଅନ୍ନ' ଅପେକ୍ଷା 'ଶାସ୍ତି' ରଚନାରେ କାହ୍ନୁଚରଣ ଅଧିକ ମୌଳିକ ଏବଂ ସ୍ୱଚ୍ଛନ୍ଦ । ସମସ୍ୟାର ଚିତ୍ର ଅଙ୍କନ କରି ସେ କେବଳ ସନ୍ତୁଷ୍ଟ ହୋଇ ନାହାନ୍ତି, ତା'ର ସମାଧାନପାଇଁ ବ୍ୟଗ୍ର ହୋଇପଡ଼ିଛନ୍ତି । ସେହି ବ୍ୟଗ୍ର ଓ ବ୍ୟାକୁଳତା ମଧ୍ୟରୁ ସେ ଖୋଜି ପାଇଛନ୍ତି ଏକ ନୂତନ ଚେତନା – ସମାଜ ବିପ୍ଳବ ... ଏକ ଶ୍ରେଣୀହୀନ, ଶୋଷଣହୀନ ସମାଜ ସୃଷ୍ଟି । ବାସ୍ତବତା ଠାରୁ ଦୂରେଇଗଲେ ମଧ୍ୟ କାହ୍ନୁଚରଣ ଏହି 'ଶାସ୍ତି' ଉପନ୍ୟାସରେ ଆଦର୍ଶବାଦୀ ଔପନ୍ୟାସିକ ଭାବେ ପ୍ରତିଭାତ ହୁଅନ୍ତି ।

'ଶାସ୍ତି' ଉପନ୍ୟାସର ନାମକରଣ ମଧ୍ୟ କୌଣସି ନାୟକ ନାୟିକାଙ୍କ ନାମ ଉପରେ ପ୍ରତିଷ୍ଠିତ ନୁହେଁ । କୌଣସି ସ୍ଥାନର ମହନୀୟତା ପ୍ରକାଶ କରି ତା'ର ନାମାନୁସାରେ ଉପନ୍ୟାସଟିର ନାମକରଣ କରି ନାହାନ୍ତି । ଏକ ଅବିନାଶୀ ଚିନ୍ତାଧାରାର ଆଦର୍ଶ ଓ ବାସ୍ତବ ରୂପ ସୃଜିବାରେ କାହ୍ନୁଚରଣଙ୍କ ଦୃଷ୍ଟିଭଙ୍ଗୀରେ ସ୍ୱତନ୍ତ୍ରତା ରହିଛି । ଗୋଟିଏ ପଟେ ଆଦର୍ଶ ଓ ଅନ୍ୟ ପକ୍ଷରେ ବାସ୍ତବ ଜୀବନର ଯନ୍ତ୍ରଣା – ଏହାର ଦ୍ୱନ୍ଦ୍ୱକୁ ସୁନ୍ଦର ଭାବରେ ପ୍ରକାଶ କରିଛନ୍ତି । ତେଣୁ 'ଶାସ୍ତି' ହେଉଛି ଔପନ୍ୟାସିକ କାହ୍ନୁଚରଣଙ୍କ ଏକ ଯୁଗାନ୍ତକାରୀ ସୃଷ୍ଟି ।

ଔପନ୍ୟାସିକଙ୍କ ସଫଳତା ମୂଳରେ ଏହି 'ଶାସ୍ତି' ଉପନ୍ୟାସର ଭୂମିକା ବିଶେଷ ଭାବରେ ଉଲ୍ଲେଖଯୋଗ୍ୟ ବୋଲି ବହୁ ଆଲୋଚକ ମତ ଦେଇଛନ୍ତି ।

### ଏପାରି ସେପାରି

'ଏପାରି ସେପାରି' କାହ୍ନୁଚରଣଙ୍କ ଅନ୍ୟ ଏକ ଅମଳିନ କୃତି ।

କୁଜଙ୍ଗଗଡ଼ର ମାଟିରେ ସୁନା ଫଳାଉଥିଲା ସଦେଇ ସାହୁ । ସମୁଦ୍ରର ଲୁଣିପାଣି ମାଡ଼ି ଆସି ସୁଖର ସଂସାରକୁ ଭାଙ୍ଗିଦେଲା । ସେ ହେଲା ମୂଲିଆ । ବୁଢ଼ା ବୟସରେ ଚେମିକୁ ଆଣିଲା ଘରଣୀ କରି । କୋଳକୁ ଆସିଲେ ପେଚି ଆଉ ଚଇଁଆ ।

ମା'ର ମଲାପରେ ଚଇଁଆକୁ ପାଳି ମଣିଷ କଲା ପେଚି । ସଦେଇ ସାହୁ ପେଚିକୁ ବାହା କରିଦେଲେ ମଣିଆ ସଙ୍ଗେ । ଶାଶୂ ଘରେ ଦୁଇଟି ମାସ ରହି ପେଚି ବାପ ଘରକୁ ଫେରିଛି ।

ପେଚି ମା' ଛେଉଣ୍ଡ ଚଇଁଆକୁ ପାଳେ, ଖୁଆଇ ଦିଏ । କୋଳେଇ ଶୁଏ । ଦଣ୍ଡେ ନ ଦେଖିଲେ ବାୟାଣୀ ଭଳି ହୋଇଯାଏ । ଦିନେ ଷଣ୍ଢ ହାତରୁ ଚଇଁଆକୁ ରକ୍ଷା କରିବାକୁ ଯାଇ ପେଚି ହେଲା ଛୋଟୀ, ଅକର୍ମଣ୍ୟା । ତାକୁ ବୋହୂ କରି ନେବାକୁ ମଣିଆ ବାପା ମନା କରିଦେଲା । ସେ ବୋହୂ କରିନେଲା ଚମ୍ପାକୁ ।

ପେଚି ମନ ବିଳପି ଉଠିଲା । ଆଖିରୁ ଝରିଲା ଲୁହ ନୁହେଁ, ରକତ । ମନ ଡାକେ ମଣିଆକୁ ଅଭିଶାପ ଦେବାକୁ; ତେବେ ଅଭିଶାପ ଦେଇପାରେ ନାହିଁ । ମଣିଆ ତା'ରି ବର । ସେ ତା'ର ମନ୍ଦ ମନାସିବ ନାହିଁ । ମଣିଆର ସୁଖର ସଂସାର କାମନା କରି ସେ ଠାକୁରଙ୍କ ପାଖରେ ମୁଣ୍ଡ ନୁଆଁଏ । ଗୋଟିଏ କଥା ତା' ପାଟିରୁ ବାହାରେ – ''ଚମ୍ପା କାଚ ବଜ୍ର ହେଉ ।''

ଭାଇ ଚଇଁଆ ବଡ଼ ହୋଇ ବାହା ହୋଇଛି । ଘରେ ସ୍ତ୍ରୀ ସୁନା । ଯେଉଁ ଅପା ଜୀବନର ସମସ୍ତ ସୁଖ ଜଳାଞ୍ଜଳି ଦେଇ ଚଇଁଆକୁ ମଣିଷ କରିଥିଲା ସେ ତା'ର ଆଉ କେହି ନୁହେଁ । ସାତପର । ସ୍ତ୍ରୀ ସୁନା ବୁଦ୍ଧିରେ ପଡ଼ି ଚଇଁଆ ପେଚିକୁ ମାଡ଼ ମାରେ । ମାତ୍ର ତା' ହୋଇଛି ପେଚିପାଇଁ ଦେହସୁହା । ସାହି ପଡ଼ିଶାରେ କାହାରି ଆଗରେ ମାଡ଼ ଖାଇବା କଥା କୁହେ ନାହିଁ । ସାଇ ସାଇପେ ପଚାରିଲେ ବି ସେକଥା କାହା ଆଗରେ ପ୍ରକାଶ କରେ ନାହିଁ ।

ତା'ରି ଗୋଟିଏ କଥା – ''ଯେତେହେଲେ ଚଇଁଆ ପିଲାଟେ – ବଳେ ବୁଝିବ ।'' ପିଠିର ମାଡ଼ କ୍ରମେ ଅସହ୍ୟ ହୋଇଛି । ଶେଷରେ ପେଚି ଠିକ୍ କରିଛି ମଣିଆ ଘରକୁ ଯିବ ।

ମଣିଆର ଏଥିଭିତରେ କୋଳକୁ ତିନୋଟି ଛୁଆ ଆସି ବାହୁଡ଼ି ଯାଇଛନ୍ତି । ସେ ଭାବେ ପେଚିର ନିଶ୍ୱାସରେ ତା'ର ସଂସାର ଜଳିପୋଡ଼ି ଯାଉଛି । ତେଣୁ ପେଚି ଗଲାପରେ ମଣିଆ ଓ ଚମ୍ପା ତାକୁ ଆଦର କରି ପାଖକୁ ନେଇଛନ୍ତି । ପାଞ୍ଚ ପୁଅ ଯମକୁ ଦେଲାପରେ ମଣିଆ ଓ ଚମ୍ପା ହାଡ଼ିଆକୁ ଟେକି ଦେଇଛନ୍ତି ପେଚି କୋଳକୁ । ପେଚି ହୋଇଛି ଚମ୍ପାର ସବୁ ଛୁଆଙ୍କ ମା' ।

ରାତି ଅଧରେ ଚଇଁଆ ଡାକ ଛାଡ଼ିଛି ପେଚିକୁ ।

କ୍ଷୁଦ୍ର ହେଲେ ମଧ୍ୟ ଚରିତ୍ର ଚିତ୍ରଣ ଓ ରସସୃଷ୍ଟି ଦୃଷ୍ଟିରୁ ଏହା ସାର୍ଥକ ଓ ରସୋତ୍ତୀର୍ଣ୍ଣ । ଗୋଟିଏ ସ୍ୱାମୀ ଉପେକ୍ଷିତା ଏବଂ ଭାଇଭାଉଜଙ୍କଦ୍ୱାରା ନିର୍ଯାତିତା ବିକଳାଙ୍ଗ ଛୋଟୀ ପେଚିର କରୁଣ ବୃତ୍ତାନ୍ତ ଲେଖକ ଏଥିରେ ମର୍ମସ୍ପର୍ଶୀ ଭାବେ ବର୍ଣ୍ଣନା କରିଛନ୍ତି ।

**ବନ ଗହନର ତଳେ**

'ବନ ଗହନର ତଳେ' ଉପନ୍ୟାସଟି ଆଦିବାସୀଙ୍କ ଜୀବନଚର୍ଯ୍ୟାକୁ ନେଇ ରଚିତ । ସେହି ଆଦିବାସୀଙ୍କ ଜୀବନକୁ ନେଇ କାହ୍ନୁଚରଣଙ୍କ ଅନୁଜ ଗୋପୀନାଥ ମହାନ୍ତି 'ପରଜା', 'ଅମୃତର ସନ୍ତାନ' ପ୍ରଭୃତି ଉପନ୍ୟାସ ରଚନା କରି ପ୍ରସିଦ୍ଧି ଲାଭ କରିଥିଲେ । ସେହି ଜନଜାତିର ଚେତନା କାହ୍ନୁଚରଣଙ୍କୁ ବି ସ୍ପର୍ଶ କରିଥିଲା । ତା'ର ପ୍ରତିଶ୍ରୁତି ହେଉଛି 'ବନ ଗହନର ତଳେ' ।

ପୁଗି ଗାଁର ଜାନି କାଦ୍ରାକା ଭେଡ଼ିକାର ଝିଅ ସୁନା । ନାଇକ ମିଲିକା ନୋକାର ପୁଅ ମାଗତା । ସିପି ଗ୍ରାମର ମୃତ କନ୍ଧ ମେକା ଡେଙ୍ଗୁର ପୁଅ ଦାୟା । ସେମାନେ ସମସ୍ତେ

ଚଇତ ପର୍ବରେ ବିହ୍ୱଳ ହୋଇ ନାଚିଛନ୍ତି । ମାଗତା ଓ ବାୟା ସୁନାର ଦୁଇ ହାତକୁ ଧରି ନାଚିଛନ୍ତି । ସେଇ ପୁଗି ଗ୍ରାମର ମଲା କନ୍ଧ ଉଲ୍ଲକା ବାସୁର.ଝିଅ ଲତା । ସେ ମାଗତାକୁ ଡାକିଛି ତା' ସହିତ ନାଚିବାକୁ । ମାତ୍ର ମାଗତା ସୁନାକୁ କେବଳ ଚାହେଁ । ତା' ପାଇଁ ପାଗଳ ହୋଇଛି ।

ସୁନା କଳ କଳ ଝରଣା ପରି । ସୁନ୍ଦର, ହାସ୍ୟମୟୀ । ସେ ବାୟାକୁ ଚାହିଁଛି । ବାୟା ଗରିବ, ପୁଣି ତା'ର ଡୁମା ଉଚ୍ଚ ନୁହେଁ । ସେ ସୁନାକୁ ବୁଝାଇଛି । ଭଙ୍ଗା ଘରେ ତା'ର ରହିବା ଅପେକ୍ଷା ମାଗତା ହାତ ଧରି ସୁଖରେ ରହିବାକୁ ପ୍ରବର୍ତ୍ତାଇଛି । ସୁନା ବୁଝିନି । ତା'ର ଆଖି ଓଦା ହୋଇଛି । କହିଉଠିଛି – ''ପେଜ୍ ଦେବି ବାୟା । ମାଗତାର ଘରେ ନୁହଁ, ତୋରି ଖଣ୍ଡିଆ ଭଙ୍ଗା ଘରେ । ନିଜେ ରାନ୍ଧିବି, ଆଉ ତୋତେ ଆଗ ଦେବି । ଯାହା ବଳିବ ମୁଁ ଖାଇବି ।''

ମିନତି କରିଛି – ''ଲୁଗା ନ ମିଳିଲେ ପତର ମାଳ ଅଣ୍ଟାରେ ବାନ୍ଧିବା, ତେଲ ହଳଦି ନ ମିଳିଲେ ବଣର ରଙ୍ଗିଲା ମାଟି ଦେହରେ ବୋଳିବା । ଫଳମୂଳ, ଧାନ, କାନ୍ଦୁଲ ନ ମିଳିଲେ ତେନ୍ତୁଳି ମଞ୍ଜି ଚୂରି ଖାଇବା । ଆଉ ଲୋଡ଼ା କ'ଣରେ ?''

ସୁନାକୁ ବାହା ହେବାପାଇଁ ଝୋଲା ଟଙ୍କା ବାୟା ଯୋଗାଡ଼ କରିପାରି ନାହିଁ । ଖଳପ୍ରକୃତି ବୁଦ୍ଧି ଡମ୍ବର ଚକ୍ରାନ୍ତରେ ବାୟା ପାଖ ଗ୍ରାମର ବନମାଳୀ ଶୁଣ୍ଢିଘରୁ ଚୋରି କରି ଜେଲ ଯାଇଛି । ସୁନାକୁ ଜବରଦସ୍ତ ମାଗତା ଘରେ ଦିଆଯାଇଛି । ତେବେ ବାୟାପାଇଁ ତା'ର ପ୍ରାଣ ଅହରହ ବ୍ୟାକୁଳ ହୋଇଉଠିଛି । ବାପର ପ୍ରତିଶ୍ରୁତି ଅନୁଯାୟୀ ଲତା ମାଗତାକୁ ଅପେକ୍ଷା କରିଛି । କିଛି ଦିନ ପରେ ସୁନାର ଗୋଟିଏ ପୁଅ ହୋଇଛି ।

କ୍ରମେ ମାଗତାର ମନ ମଧ୍ୟ ସୁନାଠାରୁ ଦୂରେଇ ଯାଇଛି । ସାରକାପେଙ୍ଗୁ କନ୍ଧର ଝିଅ ପୁଲକୀକୁ ଆପଣାର କରିବାକୁ ଚାହିଁଛି ।

ଅଢ଼େଇ ବର୍ଷ ପରେ ବାୟା ଜେଲରୁ ଫେରିଛି – ପ୍ରତିଶୋଧ ନେବାର ଦୀକ୍ଷା ନେଇ । ସୁନା ନିଜର ଶିଶୁ ପୁତ୍ରକୁ ଲତାର କୋଳରେ ଦେଇ ବାୟା ପାଖକୁ ଚାଲି ଯାଇଛି ।

ଆଦିବାସୀଙ୍କର ଜୀବନ ଯାତ୍ରା, ବିବାହ ପ୍ରଣାଳୀ, ଖୋଲା ପ୍ରେମ, ନୀତିନିୟମ, ପର୍ବପର୍ବାଣି, ମହାଜନୀ କାରବାର – ଏସବୁକୁ ନେଇ ଉପନ୍ୟାସଟି ଋଦ୍ଧିମନ୍ତ ।

**ଅନ୍ତରାୟ**

'ଅନ୍ତରାୟ' ଏକ କ୍ଷୁଦ୍ର ଉପନ୍ୟାସ । ଏଥିରେ ବନ୍ଧୁତାର ପରାକାଷ୍ଠା ପ୍ରଦର୍ଶିତ ।

ରାମ ଓ ଦାମ ଦୁଇ ବନ୍ଧୁ । ପରସ୍ପରକୁ ଅନ୍ତର ଦେଇ ଭଲ ପାଆନ୍ତି । ଦୁଇ ବନ୍ଧୁ ଦାରିଦ୍ର୍ୟ ମଧ୍ୟରେ ସଂଗ୍ରାମ କରିଚାଲିଥିଲେ ଛାତ୍ର ଜୀବନରେ । ଦୁହେଁ ଦେଶ ପ୍ରେମରେ ମଧ୍ୟ ଉଦ୍‌ବୁଦ୍ଧ ହୋଇଥିଲେ । ଦେଶପାଇଁ ଜୀବନ ଉତ୍ସର୍ଗ କରିବାକୁ ରାମ

ଦୀକ୍ଷା ନେଇଥିଲା । କିନ୍ତୁ ଘଟଣାଚକ୍ରରେ ଦୁହେଁ କଟକ ସେକ୍ରେଟେରୀଏଟ୍‌ରେ ଚାକିରି କରନ୍ତି । କର୍ତ୍ତବ୍ୟନିଷ୍ଠ ରାମ ଅଫିସ୍‌ରେ ବଡ଼ବାବୁଙ୍କର ପ୍ରଶଂସାର ପାତ୍ର ହୁଏ । କିନ୍ତୁ ଦାମ ପାଇଁ ଆସିଛି କୈଫିୟିତ୍ ତଲବ । ରତି ସଙ୍ଗେ ଦାମର ବିବାହ ହୋଇଛି । ରାମ ରତିକୁ ସାନଭଉଣୀ ବୋଲି ମନେ କରେ । ରତି ରାମକୁ ଭାଇ ବୋଲି ଡାକେ । କିନ୍ତୁ ଏହି ଅବାଧ ମିଳାମିଶା ପାଖ ପଡ଼ିଶାଙ୍କଦ୍ୱାରା ଆଲୋଚିତ ହୁଏ । ଅଫିସ୍‌ରେ ମଧ୍ୟ ଆଲୋଚନା ଚାଲିଛି । ଦାମ ମନରେ ସନ୍ଦେହ କ୍ରମେ ଘନୀଭୂତ ହୁଏ । ରାମ ଶେଷରେ ନିଜକୁ ଦୂରେଇନେବାର ସଂକଳ୍ପ ନିଏ । ଅଫିସ୍‌ରେ ରାମର ପ୍ରଶଂସା ଓ ପ୍ରମୋଶନରେ ଦାମ ହୁଏ ଈର୍ଷାନ୍ୱିତ । ଦାମର ପରିବାରରେ ଯେପରି ଝଡ଼ ନ ଆସେ, ସେଥିପାଇଁ ରାମ ଚାକିରି ଛାଡ଼ି ଅନ୍ୟତ୍ର ଚାଲିଯାଇଛି । ରାମ ଚାକିରିର ଖାଲି ସ୍ଥାନରେ ଦାମର ପ୍ରମୋଶନ ହୋଇଛି ।

ଦାମ କିନ୍ତୁ ଆନନ୍ଦ ପାଇ ନାହିଁ । ଅନୁତାପାନଳରେ ସେ ଦଗ୍ଧ ହୋଇଛି। ଅନ୍ତରଙ୍ଗ ବନ୍ଧୁ ରାମପାଇଁ ପ୍ରାଣ ବ୍ୟାକୁଳ ହୋଇଉଠିଛି । ସେ ଭାବେ, ରାମ ତାକୁ ଉପହାସ କରି ଚାଲିଯାଇଛି । ଆଉ ତା' ନିଜର ସଂକୀର୍ଣ୍ଣତା ଓ ସ୍ୱାର୍ଥପରତା ହୋଇଛି ତାଙ୍କ ଜୀବନର 'ଅନ୍ତରାୟ' ।

**ଅଭିନେତ୍ରୀ**

'ଅଭିନେତ୍ରୀ' ଉପନ୍ୟାସଟି ପାରିବାରିକ ସମ୍ପର୍କକୁ ନେଇ ରଚିତ ।

ଜଗନ୍ନାଥ ହେଉଛନ୍ତି ଅଭିଜାତ ବହିଦାର ପରିବାରର । ତାଙ୍କର ଦୁଇଟି ପୁଅ – ଚନ୍ଦ୍ରଭୂଷଣ ଆଉ ବିଧୁଭୂଷଣ । ଘରକୁ ବୋହୂ କରି ଆଣିଲେ ପ୍ରୀତି ଦେବୀଙ୍କୁ । ସେ ସ୍ନେହ ଓ କରୁଣାର ମୂର୍ତ୍ତିମନ୍ତ ଦେବୀପ୍ରତିମା ସତେକି ! ମାତୃସୁଲଭ ସ୍ନେହରେ ସେ ବିଧୁଭୂଷଣକୁ ବଡ଼ାଇ ଆଣିଥିଲେ । ବିଧୁଭୂଷଣଙ୍କର ବନ୍ଧୁ ରାଜୀବଲୋଚନ । ତାଙ୍କର ଦୁଇ ଭଉଣୀ – ମାୟା ଓ ଛାୟା । ସମୟକ୍ରମେ ମାୟା ଘରକୁ ବୋହୂହୋଇ ଆସେ । ପ୍ରୀତି ଓ ମାୟା ନିଜ ଭଉଣୀ ପରି ଚଳନ୍ତି । ପ୍ରୀତିଙ୍କର ମଧ୍ୟ ପୁତ୍ରଟିଏ ହେଲା । ନାମ ଦିଆଗଲା ରମୁ । ପରିବାରରେ ଶାନ୍ତି ବିରାଜୁଥିଲା ।

ମାତ୍ର ସୁଖର ସଂସାରରେ କଳାବାଦଲ ଘୋଟି ଆସିଛି । ବିଧୁଭୂଷଣଙ୍କର ହେଲା ଅକାଳ ମୃତ୍ୟୁ । ମାୟା ହେଲା ସେମାନଙ୍କର ଘୃଣାର ପାତ୍ର । ଭାଇ ରାଜୀବଲୋଚନ ନିଜର ବିଧବା ଭଉଣୀକୁ ଘରକୁ ନେଇଯାଆନ୍ତି ।

ମାୟା ଓ ଛାୟା ପୁଣି ଏକାଠି ହୁଅନ୍ତି । ଅଧ୍ୟାପକ ଗଗନଙ୍କର ଛାୟା ସଙ୍ଗେ ବିବାହ ପ୍ରସ୍ତାବ ପଡ଼େ । ମାତ୍ର ସେ ମାୟାକୁ ବିବାହ କରିବାପାଇଁ ଚାହାନ୍ତି । କିନ୍ତୁ ମାୟା ସେ ପ୍ରସ୍ତାବକୁ ସହଜରେ ଗ୍ରହଣ କରିପାରେ ନାହିଁ । ଭାବେ ତାଙ୍କର ବିଧବା ପ୍ରତି ଏଇଟା ଗୋଟେ ସହାନୁଭୂତି, ଦୟା । ସେ ଦୁଃଖରେ ରହିବାକୁ ଚାହିଁଛି । ଟ୍ରଙ୍କ୍ ଖୋଲି

ବିଧୁଭୂଷଣଙ୍କ ଫଟୋ ଛାତିରେ ଜାକି ଲୁହ ଗଡ଼ାଇଛି । ପୁରୀରେ ଥିଲାବେଳେ ସମସ୍ତଙ୍କୁ କନ୍ଦାଇ ଛାୟା ଚାଲିଯାଇଛି । ମାୟା ଓ ଛାୟା ଉଭୟଙ୍କର ସାଦୃଶ୍ୟ ଥିଲା । ଛାୟାର ମୃତ୍ୟୁ ପରେ ମାୟା ଛାୟା ନାମରେ ପରିଚିତ ହୋଇଛି ।

ଛାୟା ରୂପୀ ମାୟାକୁ ବିବାହ କରନ୍ତି ଅଧ୍ୟାପକ ଗଗନ । ମାୟା ନିଜ ପରିଚୟ ଗୁପ୍ତ ରଖିଛି । ସେ ଯେ ଛାୟା ନୁହେଁ ମାୟା – ଏହା କହିବାକୁ ସେ ଗଗନବାବୁଙ୍କ ପାଖେ ନିଜକୁ ପ୍ରସ୍ତୁତ କରିପାରି ନାହିଁ । ତିନି ବର୍ଷ ଧରି ଅଭିନୟ କରିଚାଲିଛି ।

ପ୍ରୀତିଦେବୀ ମଧ୍ୟ ଦିଅର ବିଧୁଭୂଷଣ ଓ ମାୟାଙ୍କ ମୃତ୍ୟୁରେ ପାଗଳ ହୋଇପଡ଼ନ୍ତି । ପାଗଳିନୀ ପ୍ରୀତିଦେବୀଙ୍କୁ ନେଇ ଚନ୍ଦ୍ରଭୂଷଣ ତୀର୍ଥ କରି ଯାଆନ୍ତି । ସେଇଠି ଭେଟ ହୁଏ ଛାୟାରୂପୀ ମାୟା ସହିତ । ଗଗନବାବୁ ମଧ୍ୟ ଚନ୍ଦ୍ରଭୂଷଣଙ୍କୁ ଘରକୁ ନିମନ୍ତ୍ରଣ କରନ୍ତି । ପ୍ରୀତିଦେବୀ ଚିହ୍ନି ପାରିଛନ୍ତି ଯେ ସେ ଛାୟା ନୁହେଁ ମାୟା । ଦିଅର ବିଧୁଭୂଷଣଙ୍କର ପତ୍ନୀ । ମାୟା ମଧ୍ୟ ନୀରବରେ ସ୍ୱୀକାର କରିଛି । ତୁଣ୍ଡରୁ ବାହାରିପଡ଼ିଛି, 'ଅପା ! ହତଭାଗିନୀ ମୁଁ ।' ତୃପ୍ତିର ଆନନ୍ଦରେ ଉଛୁଳି ଉଠିଛି ପ୍ରୀତିଦେବୀଙ୍କ ଆଖି । ମାୟାକୁ କୋଳକୁ ଟାଣି ନେଇଛନ୍ତି । ସେ ଅନୁଭବ କରିଛନ୍ତି ଯେ ବିଧୁଭୂଷଣ ଓ ମାୟା ପୁଣି ଫେରିଆସିଛନ୍ତି । ଦୀପ୍ତି ବନାମ ମାୟାଦେବୀ ରମୁକୁ କୋଳକୁ ନିଅନ୍ତି । ସେଇଠି ହୋଇଛି ଉପନ୍ୟାସର ସମାପ୍ତି ।

ଲେଖକ ପ୍ରୀତି ଓ ମାୟା ଉଭୟ ଚରିତ୍ରକୁ ବେଶ୍ ନାଟକୀୟ ଢଙ୍ଗରେ ଚିତ୍ରଣ କରିଛନ୍ତି । ଏହି ଦୁଇ ନାରୀଙ୍କ ମନସ୍ତତ୍ତ୍ୱ, ବିଧବା ବିବାହ ଓ ମାନବିକ ସମ୍ପର୍କର ମାଧୁର୍ଯ୍ୟକୁ ଅତି ସୁନ୍ଦର ଭାବରେ ପରିବେଷଣ କରିଛନ୍ତି । ପୁଣି ବିଧବା ବିବାହ ଭଳି ଏକ ସ୍ପର୍ଶକାତର ସମସ୍ୟାକୁ ନିଜର ଉଦାରତା, ସମ୍ବେଦନଶୀଳତା ଓ ଦରଦୀ ମନୋଭାବ ନେଇ ଆଲେଖ୍ୟ ବାଢ଼ିଛନ୍ତି । ସାଧାରଣ ନାରୀ କାହ୍ନୁଚରଣଙ୍କ ଉପନ୍ୟାସରେ ପାଲଟିଛି ଅସାଧାରଣ । ଏହାହିଁ ତାଙ୍କର ବୈଶିଷ୍ଟ୍ୟ ।

### ଭୁଲି ହୁଏନା

'ଭୁଲି ହୁଏନା' ଉପନ୍ୟାସରେ ରତନୀ ଏକ ଅପାସୋରା ଚରିତ୍ର । ରତନୀର ସ୍ୱାମୀ ଥିଲା ଯୋଗିଆ । ସେ ରେଙ୍ଗୁନ ଯାଇ ଆଉ ଫେରି ନାହିଁ । ରତନୀ ଏଠି ସେଠି କାମ କରି ଚଳେ । ନିକଟରେ ଏକ ଡାକବଙ୍ଗଳା । ଇତିହାସ ଗବେଷକ ତଥା ଅଧ୍ୟାପକ ଜୀବନ ଗବେଷଣାପାଇଁ ସେହି ଡାକବଙ୍ଗଳାକୁ ଆସିଛନ୍ତି । ସେଠାରେ ଦାରିଦ୍ର୍ୟ ନିଷ୍ପେଷିତା, ନିର୍ଯାତିତା ରତନୀକୁ ଦେଖିଛନ୍ତି । ସଭ୍ୟତା ଓ ସଂସ୍କୃତିର ସଂଘର୍ଷରେ ଜୀବନ ହାରି ଯାଇଛନ୍ତି । ଡାକବଙ୍ଗଳାର ନିର୍ଜନତା ମଧ୍ୟରେ ତାଙ୍କ ମନର ପଶୁ ଭୟଙ୍କର ରୂପ ନେଇଛି ।

ଜୀବନ ବିବାହ କରିଛନ୍ତି । ଝିଅ ବି କୋଳକୁ ଆସିଛି । ଚାରି ବର୍ଷ ପରେ ଜୀବନ ଶିକ୍ଷିତା ସ୍ତ୍ରୀ ସୁକୃତି ଓ ରୋଗଣୀ ଝିଅ ଅଳକାକୁ ନେଇ ପୁଣି

ସେଇ ଡାକବଙ୍ଗଳାକୁ ଆସିଛନ୍ତି । ରତନୀ ସେତେବେଳେକୁ ସମାଜଚ୍ୟୁତା, ନିଃସହାୟା । ନିଜର ସନ୍ତାନ ଅରକ୍ଷିତକୁ କୋଳରେ ଧରି ଭୋକ ଉପାସରେ ପେଜ ତୋରାଣି ପିଇ ଜୀବନ ବିତାଉଛି । ରତନୀର କରୁଣ କାହାଣୀ ସୁକୃତି ଶୁଣିଛନ୍ତି । ପୁରୁଷ ଜାତିର ସ୍ୱେଚ୍ଛାଚାରିତା ବିରୋଧରେ ତାଙ୍କ ମନ ବିଦ୍ରୋହ କରି ଉଠିଛି । ଅରକ୍ଷିତକୁ ପୁଅ କରି ନେବାକୁ କହିଛନ୍ତି । କିନ୍ତୁ ରତନୀ ରାଜି ହୋଇ ନାହିଁ । ଜୀବନ ବି ରତନୀର ଅସହାୟତା ଉପଲବ୍ଧି କରିଛନ୍ତି । ପ୍ରାଣ ତାଙ୍କର ହାହାକାର କରିଉଠିଛି । ନିଜକୁ ଅପରାଧୀ ମଣିଛନ୍ତି । ପ୍ରକାଶ ନ କଲେ ବି ନିଜ ପାଖରେ ସ୍ୱୀକାର କରିଛନ୍ତି ରତନୀ ତାଙ୍କର ସ୍ତ୍ରୀ ଆଉ ଅରକ୍ଷିତ ତାଙ୍କର ସନ୍ତାନ । ଆଉ ରତନୀ ! ଅରକ୍ଷିତପାଇଁ କଳଙ୍କ ପସରା ମୁଣ୍ଡରେ ବୋହି ଦ୍ୱାର ଦ୍ୱାର ବୁଲି ଭିକ୍ଷା ମାଗି ବୁଲିଛି । ସେ ଆଶା କରି ବସିଛି – "ଅରକ୍ଷିତର ବାପା ଦିନେ ନା ଦିନେ ତା' ପାଖକୁ ଆସିବେ ।"

ଶେଷରେ ଯୋଗିଆ ତା'ର ସବୁ ଦୋଷପାଇଁ କ୍ଷମା ମାଗିନେଇଛି । ସବୁ ଯତ୍ନ ଓ ସ୍ନେହ ଦେଇ ବଢ଼ାଇଥିବା ଅରକ୍ଷିତକୁ ରତନୀ ଯୋଗିଆ ହାତରେ ସମର୍ପି ଦେଇଛି । ରତନୀ ଓ ଯୋଗିଆର ସଂସାର ପୁଣି ହସିଉଠିଛି ।

ଜୀବନ ଡାକବଙ୍ଗଳାରୁ ପତ୍ନୀ ସୁକୃତି ଓ ଅଳକାକୁ ନେଇ ଚାଲିଯାଇଛନ୍ତି । ହେଲେ ରତନୀ ଓ ତା'ର ପୁଅ ଅରକ୍ଷିତକୁ ଭୁଲିପାରି ନାହାନ୍ତି । ସେମାନେ ସବୁଦିନ ପାଇଁ ଅଭୁଲା ସ୍ମୃତି ହୋଇ ରହିଯାଇଛନ୍ତି ।

**ଝଞ୍ଜା**

ଜୀବନର ଗତି ପିଚ୍ଛିଳ । ଜୀବନ ରାସ୍ତା ଉପରେ ବେଳେ ବେଳେ ନଇଁଆସେ ଝଡ଼, ଝଞ୍ଜା ଆଉ ଅନ୍ଧାର । ଜୀବନର ଆଲୋକ ଲିଭିଯାଏ ଆଉ ଅନ୍ଧକାରର ଛାଇ ଲମ୍ବିଆସେ ଜୀବନର ମଧ୍ୟଭାଗକୁ । ପ୍ରାୟ ସମସ୍ତେ କେବେ ନା କେବେ ଜୀବନ ଝଞ୍ଜାର ସମ୍ମୁଖୀନ ହୋଇଛନ୍ତି । କିଏ ବା ତାହାକୁ ସାହସର ସହିତ ମୁକାବିଲା କରିଛି । ଆଉ କିଏ ହାରି ବି ଯାଇଛି । ଆଉ ଜୀବନର କର୍ମସ୍ଥଳକୁ ଛାଡ଼ି ଚାଲିଯାଇଛି ଦୂରକୁ, ବହୁତ ଦୂରକୁ ।

ଜୀବନର ଏହି ଝଡ଼ ଝଞ୍ଜାର ସଫଳ ଚିତ୍ର – କାହ୍ନୁଚରଣଙ୍କ ଅନବଦ୍ୟ ସୃଷ୍ଟି – 'ଝଞ୍ଜା' ।

ବିଞ୍ଝିପୁର ଜମିଦାର ପରଶୁରାମବାବୁ ଥିଲେ ସାମନ୍ତବାଦୀ । ପତ୍ନୀବିୟୋଗ ପରେ ଅତିକ୍ରାନ୍ତ ବୟସରେ ନିଜର କନ୍ୟାବୟସ୍କା ପାର୍ବତୀଙ୍କୁ ବିବାହ କରିଛନ୍ତି । ପରଶୁରାମବାବୁଙ୍କ ପ୍ରଥମ ପତ୍ନୀଙ୍କ କନ୍ୟା କ୍ଷଣପ୍ରଭା । ସେ ମଧ୍ୟ ଉଚ୍ଚଶିକ୍ଷିତା । ପିତା ଚାହିଁଥିଲେ କ୍ଷଣପ୍ରଭାକୁ ବିବାହ ଦେବେ କଟକର ଧନୀ ସଂଭ୍ରାନ୍ତ ଦୁଷ୍ମନ୍ତଙ୍କ ସହିତ ।

ମାତ୍ର କ୍ଷଣପ୍ରଭା ଭଲ ପାଆନ୍ତି ଉଚ୍ଚଶିକ୍ଷିତ ଯୁବକ ତୁଷାରକାନ୍ତିଙ୍କୁ । ଆଉ ବାବାଙ୍କ ଇଚ୍ଛା ବିରୋଧରେ ତୁଷାରକାନ୍ତିକୁ ବିବାହ କରିଛନ୍ତି ।

ବିବାହର ଆନନ୍ଦ, ମିଳନର ଆନନ୍ଦ ବେଶି ଦିନପାଇଁ ନ ଥିଲା କ୍ଷଣପ୍ରଭାଙ୍କ ଜୀବନରେ । ଚାରିଆଡ଼େ ଉକ୍ରଟ ଦାରିଦ୍ର୍ୟ । ତା'ରି ଉପରେ ମାଡ଼ି ଆସିଛି ଝଞ୍ଜା । ମାରାତ୍ମକ ବସନ୍ତ ରୋଗରେ ତୁଷାରକାନ୍ତିଙ୍କ ମୁଖ ହୋଇଯାଏ କୁତ୍ସିତ, କଦାକାର । ପୁଣି ଟିଉସନରୁ ଫେରିଲାବେଳେ ଦୁଷ୍ମନ୍ତଙ୍କର ମଟର ଦୁର୍ଘଟଣାରେ କ୍ଷତବିକ୍ଷତ ହୁଅନ୍ତି ତୁଷାରକାନ୍ତି । ସକଳ ଅଭାବ ଅନଟନ ଓ ଦାରିଦ୍ର୍ୟ ଭିତରେ କ୍ଷଣପ୍ରଭା ଶାଶୂ, ନଣନ୍ଦ ଓ ଅନ୍ଧ ସ୍ୱାମୀଙ୍କ ଯତ୍ନ ନିଅନ୍ତି ।

ତେଣେ ଝନ୍‌ଜା ସୃଷ୍ଟି ହୋଇଛି ଦୁଷ୍ମନ୍ତଙ୍କ ମନରେ । ମଣିଷ ଜୀବନରେ ଜଣଙ୍କୁ ଭଲ ପାଏ । କ୍ଷଣପ୍ରଭା ବାହା ହୋଇଗଲାପରେ ସେ ରହିଛନ୍ତି ଅବିବାହିତ । ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରନ୍ତି ଦୁଃଖୀମାନଙ୍କ ସେବାରେ ।

ନାରୀତ୍ୱର ସ୍ୱାଭିମାନରେ କ୍ଷଣପ୍ରଭା ହୋଇଛନ୍ତି ଦୀପ୍ତିମୟୀ । ପିତାଙ୍କ ନିକଟରେ ସାହାଯ୍ୟପାଇଁ ଛିଡ଼ା ହୋଇ ନାହାନ୍ତି । କ୍ଷଣପ୍ରଭା ଚାକିରିପାଇଁ ଯାଇଛନ୍ତି – ତୁଷାରଙ୍କର କଥା ନ ମାନି । କିନ୍ତୁ ଚାକିରି ପାଇ ନାହାନ୍ତି । କାନର ଦୁଲ୍ ବିକି ବଜାର ସଉଦା କରି ଘରକୁ ଫେରିଛନ୍ତି । ଖାଲି ହାତ, ଖାଲି ମନରେ ତୁଷାର ଘରକୁ ଫେରିଛନ୍ତି । ଦୁଷ୍ମନ୍ତ ପୁଣି ଆଗେଇ ଆସିଛନ୍ତି । ଅରକ୍ଷ ନିବାସ ଦୀନ ଦୁଃଖୀ ଦରିଦ୍ରମାନଙ୍କପାଇଁ ଗଢ଼ିବେ ବୋଲି କହିଛନ୍ତି । ସେଥିପାଇଁ ବିପୁଳ ସମ୍ପତ୍ତି ମଧ ଦାନ କରିବେ ବୋଲି କହିଛନ୍ତି । ତୁଷାର ଓ କ୍ଷଣପ୍ରଭା ଅରକ୍ଷ ନିବାସର ପରିଚାଳନାର ଦାୟିତ୍ୱ ନେବା ସେ ଚାହିଁଛନ୍ତି ।

ଦୁଷ୍ମନ୍ତଙ୍କ ଭଉଣୀ ହେମ ଚାହାନ୍ତି – ଦୁଷ୍ମନ୍ତ କ୍ଷଣପ୍ରଭାକୁ ଭୁଲିଯାଉ, ବିବାହ କରୁ ଓ ନିଜର ଘରସଂସାର କରୁ । ହେମଙ୍କ ମତରେ ଦୁଷ୍ମନ୍ତ ଯେଉଁସବୁ ଖର୍ଚ୍ଚ କରୁଛନ୍ତି ସେସବୁ ବେପରୁଆ ଖର୍ଚ୍ଚ । ହେମ ମା' ସୁକାନ୍ତିଙ୍କୁ ବୁଝାଇଛନ୍ତି । ଚେଷ୍ଟା କରିଛନ୍ତି ସୁକାନ୍ତିଙ୍କ ମନ ବିଷାକ୍ତ କରିଦେବାକୁ କ୍ଷଣପ୍ରଭାଙ୍କ ବିଷୟରେ । କିନ୍ତୁ ସୁକାନ୍ତିଙ୍କ ମନରେ କ୍ଷଣପ୍ରଭାଙ୍କପାଇଁ ପୂରିରହିଛି ଅଶେଷ ମମତା । ସୁକାନ୍ତି ନିଜେ ନେଇଆସିଛନ୍ତି କ୍ଷଣପ୍ରଭାଙ୍କୁ ନିଜ ଘରକୁ । ଦୁଷ୍ମନ୍ତଙ୍କ ଘର ହୋଇଛି ତୁଷାରଙ୍କ ପରିବାରଙ୍କ ଆଶ୍ରୟସ୍ଥଳ ।

ଅରକ୍ଷ ନିବାସ ଗଢ଼ା ହୋଇଛି । ମାତ୍ର ଚଳାଇବାପାଇଁ ଟଙ୍କା ଦରକାର । ଦୁଷ୍ମନ୍ତଙ୍କର ମତ ହୋଇଛି କ୍ଷଣପ୍ରଭା ନିଜେ ଯାଇ ଅରକ୍ଷ ନିବାସପାଇଁ ହାତପାତି ଟଙ୍କା ମାଗିବେ । ତୁଷାରଙ୍କର ମଧ ସେହି ମତ – ନାରୀର ଆବେଦନ କେବେ ବିଫଳ ହୁଏ ନାହିଁ । କ୍ଷଣପ୍ରଭାଙ୍କ ଜୀବନରେ ଆରମ୍ଭ ହୁଏ ନୂତନ ଝଞ୍ଜା । କ୍ଷଣପ୍ରଭା ଶେଷରେ ଚାନ୍ଦା ଆଦାୟ କରନ୍ତି ଧନକୁବେର ଶିଳ୍ପପତି ଓ ବଡ଼ ବଡ଼ ବ୍ୟବସାୟୀଙ୍କଠାରୁ – ତାଙ୍କର ନାରୀତ୍ୱର ଆକର୍ଷଣ ବିନିମୟରେ । ପତ୍ରପତ୍ରିକାରେ ବୀଭତ୍ସ ପ୍ରଚାର ଚାଲେ

କ୍ଷଣପ୍ରଭାଙ୍କ ବିରୋଧରେ । କ୍ଷଣପ୍ରଭା ବିବ୍ରତ ଓ ବ୍ୟସ୍ତ ହୋଇପଡ଼ନ୍ତି । ସେ ଚାହାନ୍ତି ଏ ପ୍ରକାର ଜୀବନରୁ ମୁକ୍ତି । ଅନୁନୟ କରି ତୁଷାରଙ୍କୁ କହନ୍ତି – ସିଏ ରାଜପ୍ରାସାଦ ଚାହିଁ ନ ଥିଲେ, ଚାହିଁଥିଲେ ତୁଷାରଙ୍କୁ । ସିଏ ଚାଲିଯିବାକୁ ଚାହାନ୍ତି ବହୁତ ଦୂରକୁ ତୁଷାରଙ୍କ ସାଙ୍ଗେ । କିନ୍ତୁ ଅରକ୍ଷ ନିବାସପାଇଁ ଦରକାର ଟଙ୍କା । ଅଭିନୟ କରି ଟଙ୍କା ଆଣିବାକୁ ତୁଷାର ଅନୁନୟ, ପ୍ରାର୍ଥନା କରନ୍ତି ।

ଜମିଦାର ପରଶୁରାମବାବୁ ଦ୍ୱିତୀୟା ସ୍ତ୍ରୀଙ୍କ ବ୍ୟବହାର ଓ ଅନ୍ୟ ପୁରୁଷ ସହିତ ସମ୍ପର୍କ ଯୋଗୁଁ ଅତିଷ୍ଠ ହୋଇ ଗାଁକୁ ଚାଲି ଯାଇଛନ୍ତି । ପାର୍ବତୀର ମଧ୍ୟ ପୁତ୍ର ବିୟୋଗ ପରେ ମୋହଭଙ୍ଗ ହୋଇଛି । ସେ ଖୋଲିଛନ୍ତି ଅନାଥ ଶିଶୁସଦନ । ପରଶୁରାମବାବୁ ମଧ୍ୟ ନିଜକୁ ଜମିଦାର ବୋଲି ମନେ କରି ନାହାନ୍ତି । ଗାଁ ଲୋକଙ୍କ ହାତରେ ଟେକିଦେଇଛନ୍ତି ଜମିଦାରୀ । ଘୋଷଣା କରନ୍ତି – ''ଆସନ୍ତୁ ସମସ୍ତଙ୍କ ଜମି ଏକାଠି ମିଶାଇବା, ଏକାଠି ଚାଷ କରିବା, ଯାହା ପାଇବା ଜମିର ଅଂଶ ମୁତାବକ ବାଣ୍ଟିନେବା । ହିଂସା ଓ ଦ୍ୱେଷ ରହିବ ନାହିଁ । ଯିଏ ଯେଉଁ କାର୍ଯ୍ୟ ପାରିବ, ସେଇ କାର୍ଯ୍ୟ କରିବ । × × × ନୂଆ ଉଦ୍ୟମରେ ଲାଗିପଡ଼ିବା, ନୂଆ ଦୁନିଆ ଗଢ଼ିବା – ଯେଉଁ ଦୁନିଆରେ ସମସ୍ତେ ରହିବେ ସୁଖରେ, ଆନନ୍ଦରେ, ସମସ୍ତେ ହେବେ ବଡ଼ ।''

ଦୁଷ୍ମନ୍ତ କ୍ଷଣପ୍ରଭାଙ୍କ ସ୍ମୃତିକୁ ପାଥେୟ କରିଚାଲିଛନ୍ତି । ଶେଷରେ ଚାଲିଯାଇଛନ୍ତି କୋରାପୁଟର ଆଦିବାସୀ ଅଞ୍ଚଳକୁ – 'ମଣିଷର ସେବା କରିବାପାଇଁ' ।

କ୍ଷଣପ୍ରଭା ମଧ୍ୟ ଅରକ୍ଷ ନିବାସ ଛାଡ଼ି ଦୂରକୁ ଚାଲିଯାଇଛନ୍ତି । ତୁଷାରକାନ୍ତି ହରାଇଛନ୍ତି ତାଙ୍କର ଶେଷ ଆଶ୍ରୟ । ଜୀବନର ଶେଷ ଆଲୋକ ହଜିଯାଇଛି ସବୁଦିନପାଇଁ ।

'ଝଞ୍ଜା'ର ରଚନାକାଳ ହେଉଛି ୧୯୪୮ ମସିହା । ଗାନ୍ଧିଜୀଙ୍କର ମର୍ମନ୍ତୁଦ ମୃତ୍ୟୁ ମଧ୍ୟ ସେହି ବର୍ଷ । ଗାନ୍ଧିଜୀଙ୍କ ରଚନାତ୍ମକ କାର୍ଯ୍ୟ ହୋଇଯାଇଛି 'ଝଞ୍ଜା' ଉପନ୍ୟାସର ବାଣୀମନ୍ତ୍ର । ଗାନ୍ଧିଜୀଙ୍କ 'ଗାଁକୁ ଚାଲ' ଡାକରା ଏହି ଉପନ୍ୟାସର ମର୍ମଧ୍ୱନି ବୋଲି ଆଲୋଚକ ବୈଷ୍ଣବ ସାମଲ ମତ ଦେଇଛନ୍ତି ।

### ମିଳନର ଛନ୍ଦ

ନାରୀର ଶେଷ ପରିଣତି ଯେ ମାତୃତ୍ୱ, ଏହା ପ୍ରତିପାଦିତ ହୋଇଛି 'ମିଳନର ଛନ୍ଦ' ଉପନ୍ୟାସରେ ।

ସହରର ଜଣେ ମାନ୍ୟଗଣ୍ୟ ବ୍ୟକ୍ତି ରଜନୀବାବୁଙ୍କର କନ୍ୟା ରଶ୍ମି । ସେ ତନ୍ୱୀ ଓ ସୁନ୍ଦରୀ । ବିବାହ ବୟସ ହେବାରୁ ପିତାମାତା ତା'ର ବିବାହପାଇଁ ବ୍ୟଗ୍ର

ହୋଇପଡ଼ିଛନ୍ତି । ମାତ୍ର ରଶ୍ମି ସହପାଠିନୀ ଦାମିନୀର ପେଟ ଚିରାହୋଇ ସାତ ମାସର ମଲା ପିଲା ବାହାରିଲା ପରେ ତା'ର ମର୍ମନ୍ତୁଦ ମୃତ୍ୟୁକୁ ଦେଖିଛି । ସ୍ୱାମୀ ଅବହେଳିତା ବନ୍ଧୁ ରୋହିଣୀ ଜୀବନର କରୁଣ କାହାଣୀ ଶୁଣିଛି । ବିବାହ ଓ ମାତୃତ୍ୱପାଇଁ ତା'ର ସୃଷ୍ଟି ହୋଇଛି ବିତୃଷ୍ଣା । ସେ ଶପଥ୍ କରିଛି ଯେ ବିବାହ କରି ନିଜର ସ୍ୱାଧୀନତାକୁ ଜଳାଞ୍ଜଳି ଦେଇପାରିବ ନାହିଁ । ଫଳରେ ତା'ର ସାନଭଉଣୀ ବିବାହ କରିଛି ।

ରଶ୍ମି ଏମ୍.ଏ. ପରୀକ୍ଷାରେ ଦ୍ୱିତୀୟ ସ୍ଥାନ ଅଧିକାର କରିଛି । ଅଧ୍ୟାପିକା ମଧ ହୋଇଛି । କ୍ରମଶଃ ସେ ଅନୁଭବ କରିଛି ତା' ଦେହରେ ରକ୍ତମାଂସର ଅଗ୍ନିଶିଖା । ସାନଭଉଣୀ ସ୍ନିଗ୍‌ଧାର ପୁଅକୁ ଗେଲ କଲାବେଳେ ସେ ଅନୁଭବ କରିଛି ମସ୍ତବଡ଼ ଅଭାବ । ତା'ର ସୁଷୁପ୍ତ ମାତୃତ୍ୱ ଜାଗିଉଠିଛି । ତା'ର ବିବାହ ନ କରିବା ଭୀଷ୍ମ ଶପଥ ଚୂର୍‌ମାର ହୋଇଛି । ମାତୃତ୍ୱ ଲାଭ କରିବାକୁ ପ୍ରାଣ ଆକୁଳ ହୋଇଛି । ଦର୍ଶନ ଅଧ୍ୟାପକ ବୀରେନ୍ଦ୍ରଙ୍କ ଆଗରେ ତା'ର ମୁଖା ଖୋଲିଯାଇଛି –'ତଥାପି ଜୀବନ ସୁନ୍ଦର, ସତ୍ୟ, ଚିରନ୍ତନ ।'

ଶେଷରେ ରଶ୍ମି ବିବାହ କରିଛି ପ୍ରୌଢ଼ ବୀରେନ୍ଦ୍ରଙ୍କୁ । ତାହା ଏକ ବିଚିତ୍ର ଆଦର୍ଶ ଥିଲା । ସ୍ୱାମୀ ସ୍ତ୍ରୀର ସମ୍ପର୍କ କେବଳ ବନ୍ଧୁତାରେ ଆବଦ୍ଧ ରହିବ । ରହିବ ପରସ୍ପର ପ୍ରତି ସ୍ନେହ ଓ ସହାନୁଭୂତି । ସନ୍ତାନ କାମନା ନ ଥିବ ସେ ବିବାହରେ । ଦେହର ମିଳନକୁ ତୁଚ୍ଛ କରି ମନର ମିଳନକୁ ଆଦର୍ଶ କରିବା ଉଭୟଙ୍କୁ ଅନୁପ୍ରାଣିତ କରିଛି । ମାତ୍ର ବିବାହର ବର୍ଷକ ପରେ ରଶ୍ମି ହୋଇଛି ସନ୍ତାନର ଜନନୀ ।

'ମିଳନର ଛନ୍ଦ' ଉପନ୍ୟାସରେ ଲେଖକ ଜୀବନର ସତ୍ୟ ଉଦ୍‌ଘାଟନ କରିଛନ୍ତି ରଶ୍ମି ଚରିତ୍ର ମାଧ୍ୟମରେ । ଅବିବାହିତା ରଶ୍ମି ପ୍ରାଣର ଆବେଗ, ଆକୁଳତା ଛଳରେ ନାରୀ ମନସ୍ତତ୍ତ୍ୱର ରହସ୍ୟମୟ ଜୀବନଧାରା ଉତ୍‌କୀର୍ଣ୍ଣ ହୋଇଛି । ଜୀବନଟା ଖାଲି ଏକ ପରାଜୟ ବା ଦୁର୍ବଳତାର ଧାରା । ତଥାପି ସେ ଜୀବନ ସୁନ୍ଦର । ଜୀବନ ସତ୍ୟ, ଚିରନ୍ତନ । କଥାକାରଙ୍କ ଦୃଷ୍ଟିରେ ଯାହା ଜୀବନପାଇଁ କାମ୍ୟ, ବାଞ୍ଛନୀୟ, ତାହାହିଁ ସତ୍ୟ । ସେଠି କୌଣସି ମିଥ୍ୟାଚାର ବା କପଟାଚାରର ସ୍ଥାନ ନାହିଁ । ଏହି ଜୀବନସତ୍ୟକୁ ନିଷ୍ପାପର ଭାବରେ କଳାରୂପ ଦେଇଛନ୍ତି କାହ୍ନୁଚରଣ ।

**ଶର୍ବରୀ**

'ଶର୍ବରୀ'ର ମୁଖବନ୍ଧରେ ଲେଖକ କହିଛନ୍ତି – ''ଶର୍ବରୀ ମଣିଷ ଜାତିର ସଭ୍ୟତାର କ୍ରମବିକାଶର କଥା ।'' ଏଥିରୁ ସ୍ପଷ୍ଟ ଜଣାଯାଏ ଯେ ମାନବଜାତିର ବିବର୍ତ୍ତନର ଇତିହାସ ଏହାର ବିଷୟବସ୍ତୁ । ଲେଖକ ଏଥିରେ କୋଡ଼ିଏ ହଜାର ବର୍ଷ ତଳର ଇତିହାସରୁ ଆରମ୍ଭ କରି ମାନବ ସୃଷ୍ଟିର ବିଭିନ୍ନ ବଳୟକୁ ଦୃଷ୍ଟିପାତ କରିଛନ୍ତି ।

'ଶର୍ବରୀ'ର ମୁଖବନ୍ଧରେ ଲେଖକ ପୁଣି କହିଛନ୍ତି – ''ମଣିଷ କେବେ ସୃଷ୍ଟି ହେଲା, ଆଜିଯାଏଁ କେହି ସ୍ଥିର କରିପାରି ନାହାନ୍ତି । ସେ କେଉଁ ଅଜଣା ସ୍ୱର୍ଗରୁ ପ୍ରଥମେ ଖସିପଡ଼ିଥିଲା କି, କୀଟପତଙ୍ଗରୁ ବଢ଼ି, କ୍ରମବିବର୍ତ୍ତନରେ ମାଙ୍କଡ଼ ହୋଇ, ପୁଣି ଲାଙ୍ଗୁଡ଼ ଛାଡ଼ି ମଣିଷ ହେଲା, ଏକଥା ବି କେହି ସ୍ଥିର କରିପାରୁ ନାହାନ୍ତି । ଆଜିକାଲିର ସଭ୍ୟ ମଣିଷ ଦିନକରେ ସଭ୍ୟ ହୋଇ ନାହିଁ, ସଭ୍ୟତାର ଆରମ୍ଭ ଆଗେଇବ କି ପଛେଇବ ଜାଣି ହେଉ ନାହିଁ । ପୁଣି ସଭ୍ୟତା ବା ସଂସ୍କୃତିର କୌଣସି ମାପକାଠି ବି ନାହିଁ ।''

ଲେଖକ ଉପନ୍ୟାସରେ ମାନବଜାତିର ବିବର୍ତ୍ତନର ଚିତ୍ର ଦେଇଛନ୍ତି । ଆଦିମ ମଣିଷ ପ୍ରଥମେ ପଶୁ ଜୀବନ ଯାପନ କରୁଥିଲା । ଜଙ୍ଗଲ ଥିଲା ତା'ର ଆଶ୍ରୟସ୍ଥଳୀ । ଖରା ବର୍ଷାରୁ ରକ୍ଷା ପାଇବାପାଇଁ ସେ ଆଶ୍ରୟ ନେଉଥିଲା ପଥର ଖୋଲରେ । କ୍ରମେ କୃଷି ଓ ପଶୁପାଳନ ଶିଖିଲା । ସେ ଅଗ୍ନିର ଆବିଷ୍କାର କଲା । ଫଳମୂଳ ମାଂସ ସିଝାଇ ଖାଇଲା । ଶିକାରପାଇଁ ବ୍ୟବହାର କଲା ପଥରଖଣ୍ଡ । ପୁରାତନ ପ୍ରସ୍ତର ଯୁଗ ଆରମ୍ଭ ହେଲା । ତା'ପରେ ନୂତନ ପ୍ରସ୍ତର ଯୁଗ । ମନୁଷ୍ୟ ଗୋଷ୍ଠୀବଦ୍ଧ ଜୀବନଯାପନ କରୁଥିଲା । ଜୀବନ କ୍ରମଶଃ ଜଟିଳ ହେଲା । ଯାଯାବର ଜୀବନ ଛାଡ଼ି ସେ ଘର ତିଆରି କଲା । ଦଳ ଦଳ ମଧ୍ୟରେ ସଂଘର୍ଷର ସୂତ୍ରପାତ ହେଲା । ଦଳପତି ଗଢ଼ିଲା ନୂଆ ନୂଆ ନିୟମ । ପ୍ରଥମେ ନାରୀ ଥିଲା ଗୋଷ୍ଠୀର, ଦଳର। କିନ୍ତୁ ସଭ୍ୟତାର ବିକାଶପାଇଁ ସେ ତ୍ୟାଗ କଲା ବହୁ ସ୍ୱାମିତ୍ୱ । ଏକପତିବ୍ରତ ପାଳନ କଲା । ପରେ ଜନ୍ମ ହେଲା ସଭ୍ୟ ମଣିଷ ।

ଲେଖକ ରାତ୍ରିର ସ୍ୱପ୍ନ ମାଧ୍ୟମରେ ଓ ପ୍ରତିନିଧି ସ୍ଥାନୀୟ ଚରିତ୍ରମାନଙ୍କ ସାହାଯ୍ୟରେ ପ୍ରାଗୈତିହାସିକ ଯୁଗରୁ ମାନବ ସମାଜର ବିକାଶଧାରା ଚିତ୍ରଣ କରିବା ଉଦ୍ଦେଶ୍ୟରେ ଏହି ଉପନ୍ୟାସଟି ପରିକଳ୍ପନା କରିଛନ୍ତି ।

ଆଲୋଚକଙ୍କ ମତରେ 'ଶର୍ବରୀ' ରଚନା କାହ୍ନୁଚରଣଙ୍କର ଏକ ନୂତନ ପରୀକ୍ଷା ।

**ପରୀ**

କାହ୍ନୁଚରଣଙ୍କ ସୃଷ୍ଟିରେ ନାରୀ ସହନଶୀଳତାର କଲ୍ୟାଣ ସ୍ନିଗ୍ଧ କୋମଳ ରୂପ । ସବୁରି ମଙ୍ଗଳପାଇଁ ସେ ନିଜର ସମସ୍ତ ସୁଖ ଓ ଆନନ୍ଦକୁ ହସି ହସି ଜଳାଞ୍ଜଳି ଦେଇପାରେ । ସେ ତ୍ୟାଗର ପ୍ରତିଭୂ । ଏହିଭଳି ନାରୀ ପରୀ ଚରିତ୍ର ଚିତ୍ରଣ କରିଛନ୍ତି ଔପନ୍ୟାସିକ 'ପରୀ' ଉପନ୍ୟାସରେ ।

ଅଜ୍ଞାତକୁଳଶୀଳା, ପିତୃମାତୃପରିଚୟହୀନା ପରୀ । ମା' ତା'ର ଛତରଖାଇ । ଏକ ମେଘ ଅନ୍ଧାର ରାତିରେ ତା' ମା' ତାକୁ ଛାଡ଼ି ଚାଲିଯାଇଛି ଶଙ୍କର ସହିତ । ସେ ଆସିବାପରେ ଗୃହକର୍ତ୍ତ୍ରୀ ମଙ୍ଗଳାଙ୍କର ମୃତ୍ୟୁ ହୁଏ । ପରେ ପରେ ଗୃହକର୍ତ୍ତା ବି

ମୃତ୍ୟୁମୁଖରେ ପଡ଼ନ୍ତି । ଦାଦା ଓ ଖୁଡ଼ୀ ସୁମତିଙ୍କ ଦ୍ୱାରା ପରୀ ପାଳିତ ହୁଏ । ଖୁଡ଼ୀଙ୍କର ସବୁ ମାଡ଼, ଗାଳି ଏପରିକି ତାଙ୍କ ପ୍ରହାରରେ ଦେହରୁ ରକ୍ତ ଓ ଆଖିରୁ ଲୁହ ଝରିଛି । ହେଲେ ନିଜର ସର୍ବସହଣୀ ଗୁଣରେ କାହାରିକୁ ଘୃଣା କରିନି । କାହାକୁ କରଛଡ଼ା ବି ଦେଇନି । ସେ ନିର୍ବିକାର ଭାବରେ ସମସ୍ତଙ୍କର ସେବା କରିଚାଲିଛି । ମକର ମଧ ପିତାର ସ୍ନେହ ତା' ଉପରେ ଢାଳି ଦେଇଛନ୍ତି । ଦିନ ଥିଲା ଭାଇ କୁବେର ତାକୁ ଘୃଣା କରୁଥିଲା । କିନ୍ତୁ ସେଇ କୁବେର ମନ ଭିତରେ ଚାହିଁଛି ବାହାହେବାକୁ । କିନ୍ତୁ ସେ କୁବେରଭାଇକୁ ବୁଝାଇଛି ବଂଶର ଇଜ୍ଜତ ରକ୍ଷା, ମାନ ରକ୍ଷାପାଇଁ । ସେ ଚାହିଁଛି ତା'ର କୁବେରଭାଇ ଅନ୍ୟଠି ବିବାହ କରୁ । ଆଉ ସେ ଗୋଟିଏ ମଳିମୁଣ୍ଡିଆ ମୂଲିଆର ହାତଧରି ସଂସାର କରିବ । ଦିନ ଗଡ଼ି ଯାଇଛି । କୁବେର ଓ ପରୀ ପରସ୍ପର ନିକଟତର ହୋଇଛନ୍ତି । ଦୁର୍ବଳତା ସେମାନଙ୍କୁ ସ୍ପର୍ଶ କରିଛି । ମାତ୍ର ଦାଣ୍ଡରୁ ଧାଇଁ ଆସିଥିବା ପରୀ ସତର୍କ ରହିଛି । ଚାକିରି ନ କରି କୁବେର ଯେ ଖାସ୍ ତା'ପାଇଁ ବଞ୍ଚିରହିଛି – ଏକଥା ପରୀ ଜାଣିଛି । ତଥାପି ସେଥିକି ତା'ର ଭ୍ରୂକ୍ଷେପ ନାହିଁ । ସେ ନିଜର କର୍ତ୍ତବ୍ୟ କରି ଲାଗିଛି । ସେବାର ଆଲୋକବର୍ତ୍ତିକା ଧରି ଚାଲିଛି । ସେ ତା'ର ଭାଇ କୁବେରକୁ କଳଙ୍କିତ କରିବାକୁ ଦେଇନି । ତା'ର ସରଳ, ନିଷ୍କପଟ ଆଉ ତେଜୀୟାନ୍ ଚକ୍ଷୁର ଦୀପ୍ତିରେ ପୋଡ଼ି ଜଳି ଯାଇଛି କୁବେର ମନର ସବୁ ଆବିଳତା । ସେ ପରୀର ଉପଦେଶ ଗ୍ରହଣ କରିଛି । ଦୁଲାଳୀ ଆସିଛି ତା'ର ସ୍ତ୍ରୀ ହୋଇ । କିନ୍ତୁ ଗୋଟିଏ ଭଲ ପରିବାରରେ ତା'ର ସୁନାନାକୀ ଭଉଣୀ ବାହାହେବ – ଏହା ସେ ଜଣାଇ ଦେଇଛି ।

'ପରୀ' ଉପନ୍ୟାସରେ ମାନିବକତାର ଔଜ୍ଜ୍ୱଲ୍ୟ ପ୍ରଦର୍ଶିତ । ନିଃସ୍ୱାର୍ଥପର ସେବା ଦିନେ ହୃଦୟକୁ ଜୟ କରେ । ସାମୟିକ ଲୋକାପବାଦ ଭ୍ରୂକୁଞ୍ଚନ ଦିନେ ନା ଦିନେ ବିଳୟ ଲଭେ । ଏହା ପ୍ରତିପାଦିତ କରିଛନ୍ତି ଲେଖକ ଏଥିରେ ।

ଆଲୋଚକଙ୍କ ମତରେ, ଲେଖକ ତ୍ୟାଗର ପ୍ରତିମୂର୍ତ୍ତି ଆଲୋକଧାରିଣୀ ନାରୀ ନାଇଟିଙ୍ଗଲଙ୍କ ଜୀବନାଦର୍ଶକୁ ସ୍ମରଣ କରି ଗ୍ରାମ୍ୟ ପରିବେଶରେ 'ପରୀ'କୁ ଚିତ୍ରଣ କରିଛନ୍ତି ।

## କା

'କା' ଉପନ୍ୟାସରେ ସନ୍ତାନହୀନା ନାରୀ ହୃଦୟର କାରୁଣ୍ୟ ପ୍ରକଟିତ ।

ପିତୃହରା ସୁନନ୍ଦ ସର୍ବଗୁଣସମ୍ପନ୍ନ । ସେ ନନ୍ଦିକାକୁ ବିବାହ କରେ । ନନ୍ଦିକା ତା'ର ବ୍ୟବହାରଦ୍ୱାରା ସମସ୍ତଙ୍କୁ ଆପଣାର କରିପାରିଛି । କିନ୍ତୁ ଅନେକ ଦିନ ବିତିଗଲେ ମଧ ସେ ସନ୍ତାନବତୀ ହୋଇପାରି ନାହିଁ । ଫଳରେ ସେ ସମସ୍ତଙ୍କର ବିଶେଷତଃ ଗ୍ରାମ୍ୟ ସ୍ତ୍ରୀଲୋକଙ୍କ ସମାଲୋଚନାର ପାତ୍ରୀ ହୋଇଛି ।

ସନ୍ତାନହୀନା ହୋଇ ନନ୍ଦିକା କେତେ କାଳ କଟାଇଛି । ଆଉ ଯେ ସେ ମାତୃତ୍ୱ ଲାଭ କରିବ ନାହିଁ ସେହି ସିଦ୍ଧାନ୍ତରେ ଉପନୀତ ହୋଇଛି । ତେଣୁ ବଂଶରକ୍ଷାପାଇଁ ନିଜ ସ୍ୱାର୍ଥ ଜଳାଞ୍ଜଳି ଦେଇଛି । ସୁନନ୍ଦକୁ ଆଉଥରେ ବିବାହ କରିବାପାଇଁ ପ୍ରବର୍ତ୍ତାଇଛି । ବହୁ ଯୁକ୍ତିତର୍କ ପରେ ଲଳିତାନାମ୍ନୀ ଏକ ତରୁଣୀକୁ ସୁନନ୍ଦ ବିବାହ କରିଛି । ନନ୍ଦିକା ଲଳିତାକୁ 'କା' ଓ ଲଳିତା ନନ୍ଦିକାକୁ 'ସା' ଡାକିଛି । ନନ୍ଦିକାର ଲଳିତା ପ୍ରତି ଅନାବିଳ ସ୍ନେହ ରହିଛି । ମାତ୍ର ଲଳିତା ନନ୍ଦିକାକୁ ଦେଖିଲେ ସହ୍ୟ କରିପାରେ ନାହିଁ । ଦୀର୍ଘ ଦିନର ପ୍ରତୀକ୍ଷା ପରେ ନନ୍ଦିକା ହୋଇଛି ଅନ୍ତଃସତ୍ତ୍ୱା । ଏହା ଜାଣି ଲଳିତାର ମନ ବିଷାକ୍ତ ହୋଇଉଠିଛି ଓ ଏକ ବାହାନାର ଆଶ୍ରୟ ନେଇ ସୁନନ୍ଦ ପାଖକୁ ଚାଲିଯାଇଛି । ଗାଁରେ ନନ୍ଦିକା ଓ ଶାଶୂ ଅଭୟା ପଡ଼ି ରହିଛନ୍ତି । ଏମାନଙ୍କ ତତ୍ତ୍ୱ ନେବାପାଇଁ ସୁନନ୍ଦ ମଧ୍ୟ ଗାଁକୁ କିଛି ଦିନ ଆସି ନାହିଁ । କିଛି ଦିନ ପରେ ଅଭୟା ଓ ନନ୍ଦିକା କଟକରେ ପହଞ୍ଚିଛନ୍ତି । ନନ୍ଦିକା କଟକରେ ପୁତ୍ରସନ୍ତାନଟିକୁ ଜନ୍ମ ଦେଇ ଆଖି ବୁଜିଛି । ଲଳିତା ଓ ସୁନନ୍ଦ ହତାଶାରେ ଚାହିଁ ରହିଛନ୍ତି । ଏଇଠି ଉପନ୍ୟାସର ପରିସମାପ୍ତି ଘଟିଛି ।

'କା' ଉପନ୍ୟାସଟି କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କଲା । ଏହାପରେ ଏହି ଉପନ୍ୟାସର ମୌଳିକତା ନେଇ ନାନା ଝଡ଼ ଝଞ୍ଜା ସୃଷ୍ଟି ହେଲା ।

କେତେକ ଆଲୋଚକଙ୍କ ମତରେ 'କା'ରେ କଳାତ୍ମକ ସିଦ୍ଧି ନାହିଁ । ଏହା ମଧ୍ୟ ସଫଳ ମନୋବୈଜ୍ଞାନିକ ଉପନ୍ୟାସ ନୁହେଁ । ଏଥିରେ ଆଧୁନିକ ଜନଜୀବନର ଦୋଷ-ଦୁର୍ବଳତା ଦେଖିବାକୁ ମିଳେ ନାହିଁ । ଓଡ଼ିଆ ଘରର ସଂସ୍କୃତିର ଚିତ୍ର ମଧ୍ୟ ନାହିଁ । ସେହିପରି ଅବିସ୍ମରଣୀୟ ପାତ୍ର ବା ଚରିତ୍ର ନାହାନ୍ତି । ଯାହା ଅଛି ତାହା ହେଲା ମଧ୍ୟମ ଧରଣର ପ୍ରଚେଷ୍ଟା ।

ମାତ୍ର ଏ ମନ୍ତବ୍ୟ କେତେଦୂର ସମୀଚୀନ, ତାହା ବିଚାର କରିବାର କଥା । ଏଥିରେ ନନ୍ଦିକା ହୃଦୟର ଆବେଗ ପରିସ୍ଫୁଟ । ନାନା ମାନସିକ ଦ୍ୱନ୍ଦ୍ୱ ମଧ୍ୟରେ ତା'ର ରୂପାୟନ ଘଟିଛି । ଓଡ଼ିଆ ଘରର ଚାଲିଚଳଣି, ରୀତିନୀତି ପ୍ରତି ଔପନ୍ୟାସିକଙ୍କର ଗଭୀର ଶ୍ରଦ୍ଧା ମଧ୍ୟ ରହିଛି ।

ଉପନ୍ୟାସରେ ଦାର୍ଶନିକ ଅନୁଚିନ୍ତା ମଧ୍ୟ ଏକ ବିସ୍ମୟ । ଉତ୍କଳରେ 'କା'ର ଅନୁଚିନ୍ତା ବହୁଦିନର । ବାଳକମାନଙ୍କ କ୍ରୀଡ଼ାରେ ଏହି 'କା' ଭାବନା ପ୍ରଚଳିତ ହୋଇ ଆସୁଛି । ମାତ୍ର ସାଂସାରିକ ଜୀବନର ଜୟଯାତ୍ରାପାଇଁ ଏହି ଉପନ୍ୟାସରେ 'କା'ର ବ୍ୟବହାର ଚମକପ୍ରଦ ନିଶ୍ଚୟ । ନନ୍ଦିକା ତା' ମାତୃତ୍ୱର ପ୍ରତିନିଧିପାଇଁ ଲଳିତାକୁ ଏହି ଭୂମିକାରେ ଅବତୀର୍ଣ୍ଣ କରାଇଛି । 'କା'ର ଗୁରୁତ୍ୱକୁ ବଜାୟ ରଖିବାପାଇଁ ନନ୍ଦିକା ଧରାପୃଷ୍ଠରୁ ବିଦାୟ ନେଇଛି ।

କାହ୍ନୁଚରଣ 'କା' ଭଳି ଏକ ଆଧ୍ୟାତ୍ମିକ ବିଷୟକୁ ଉପନ୍ୟାସରେ ପ୍ରୟୋଗ କରି ଯଶସ୍ୱୀ ହୋଇଛନ୍ତି ନିଶ୍ଚୟ ।

**ବଜ୍ରବାହୁ**

'ବଜ୍ରବାହୁ' ଉପନ୍ୟାସରେ କାହ୍ନୁଚରଣ ସିଧାସଳଖ ମହାତ୍ମାଗାନ୍ଧୀଙ୍କ ଦର୍ଶନ ଓ ଚିନ୍ତାଧାରା ଉପସ୍ଥାପନା କରିଛନ୍ତି । ଅହିଂସା, ଆର୍ଥନୀତିକ ସମବଣ୍ଟନ ମଧ୍ୟରେ ଏକ ଶ୍ରେଣୀ-ଜାତିଭେଦହୀନ ସମାଜ ଗଠନପାଇଁ ପ୍ରୟାସ କରିଛନ୍ତି । ସ୍ୱାଧୀନତା ପରେ କଂଗ୍ରେସ ଭଳି କମ୍ୟୁନିଷ୍ଟମାନେ ସାମ୍ୟବାଦର ଧ୍ୱନି ଧରି ଧନୀ ଓ ଗରିବଙ୍କ ମଧ୍ୟରୁ ପାର୍ଥକ୍ୟ ଦୂର କରିବାକୁ ଚେଷ୍ଟା କରିଛନ୍ତି । କାହ୍ନୁଚରଣ କୌଣସି ଦଳର ସମର୍ଥକ ନ ଥିଲେ । ଏକ ସୁସ୍ଥ ସମାଜ ଗଠନପାଇଁ ଯାହା ଆଦର୍ଶସ୍ଥାନୀୟ ମନେ ହେଉଥିଲା, ତାକୁ ସେ ଗ୍ରହଣ କରିଥିବା ଲକ୍ଷ୍ୟ କରାଯାଏ ।

ରଣଗଡ଼ର ଜମିଦାର ଅଭିନବ ରଣସିଂହଙ୍କ ପୁତ୍ର ସୁବ୍ରତ ବଜ୍ରବାହୁ ଉପନ୍ୟାସର ନାୟକ । ତା'ର କଲେଜ ସାଥୀ ଆହୁତି ନାୟିକା । କଲେଜ ରଙ୍ଗମଞ୍ଚରେ ନଳରାଜା ଭୂମିକାରେ ସୁବ୍ରତ ଓ ଦମୟନ୍ତୀ ଭୂମିକାରେ ଆହୁତିଙ୍କର ସାକ୍ଷାତ୍ ହୋଇଛି । ବଜ୍ରବାହୁର ବ୍ୟକ୍ତିତ୍ୱ ଓ ପ୍ରତିଭା ପାଖରେ ଆହୁତି ନିଜକୁ ସମର୍ପି ଦେଇଛି । ବହୁ ଯୁବବନ୍ଧୁ ଚାହିଁଛନ୍ତି ଆହୁତିର ସାନ୍ନିଧ୍ୟ । ତା' ରୂପ ଓ ଯୌବନର ଅଗ୍ନିରେ ଝାସ ଦେବାପାଇଁ ବସିଛନ୍ତି । ମାତ୍ର ସମସ୍ତେ ହାରିଯାଇଛନ୍ତି । ଆହୁତି ସୁବ୍ରତର ପୂଜା କରିଚାଲିଛି ।

ସୁବ୍ରତର ପିତା ରଣସିଂହ ପୁଅର ବାହାଘରପାଇଁ ଯୌତୁକ ନିଶାରେ ଧାଇଁଛନ୍ତି । ସୁବ୍ରତ ଜମିଦାର ଘରର ପୁତ୍ର ଓ ବିଶ୍ୱବିଦ୍ୟାଳୟର ଉପାଧିଧାରୀ ହେଲେ ମଧ୍ୟ ଚାକିରି ପାଇ ନାହିଁ । ସେ ଗାନ୍ଧୀ ଓ ଅରବିନ୍ଦଙ୍କ ଦର୍ଶନରେ ଉଦ୍‌ବୁଦ୍ଧ ହୋଇଛି । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସେ ସମସ୍ତଙ୍କ ସହ ମିଶିଛି । ସେ ଚାହିଁଛି ଦେଶ ସମୃଦ୍ଧ ହେବ । ସମସ୍ତେ ଭଲରେ ରହିବେ । ମଣିଷର ଅଧିକାର ନେଇ ବଞ୍ଚିବେ ।

ସୁବ୍ରତ ଭଳି ସଂକଳ୍ପ ନେଇଛି ତା'ର ବନ୍ଧୁ ଜେଲଫେରନ୍ତା ଏକ ପତ୍ରିକାର ସମ୍ପାଦକ ଧନଞ୍ଜୟ । ସେ ପତ୍ରିକା ମାଧ୍ୟମରେ ବିପ୍ଳବପାଇଁ ଆହ୍ୱାନ ଦେଇଛି ।

ସୁବ୍ରତ ମୂଲିଆ ହୋଇ ଅଶିକ୍ଷିତ ଆଦିବାସୀଙ୍କ ସହିତ ମିଶିଛି । ଦେହର ଶ୍ରମ ଦେଇ ସେମାନଙ୍କର ନିକଟତର ହୋଇଛି । ଭଲ ପରାମର୍ଶ ଦେଇ ସମସ୍ତଙ୍କ ହୃଦୟ ଜୟ କରିଛି । ସୁବ୍ରତର ଭାଇ ସୁରତ ରଣସିଂହ ମଧ୍ୟ ଗ୍ରାମବାସୀମାନଙ୍କ ମନରେ କୁହୁକ ଲଗେଇ ଦେଇଛନ୍ତି । ସେମାନଙ୍କ ମନରେ ସୃଷ୍ଟି ହୋଇଛି ନୂଆ ଉତ୍ସାହ ଓ ଉନ୍ମାଦନା । ଅନାବାଦୀ ଜମି ଶସ୍ୟଶ୍ୟାମଳା ହୋଇଛି । ମାଛ ଚାଷ ହୋଇଛି । ନୂଆ ପ୍ରଣାଳୀରେ ଫସଲ ଉତ୍ପାଦନର ବ୍ୟବସ୍ଥା ହୋଇଛି । ଆହୁତି ରଣଗଡ଼ ଆସିଛି । ସେ ସମସ୍ତଙ୍କୁ

ଆପଣାର କରିଛି । ତା'ର ସେବାରେ ସ୍ୱୟଂ ରଣସିଂହ ମଧ୍ୟ ତରଳି ଯାଇଛନ୍ତି । ଭାରତୀ, ମମତା ରଣସିଂହ ପ୍ରଭୃତି ଆହୁତିର ସେବା, ତ୍ୟାଗ ଓ ମମତାର ଡୋରିରେ ବାନ୍ଧି ହୋଇଯାଇଛନ୍ତି ।

ସୁବ୍ରତ ଛଅ ବର୍ଷ ପରେ ରଣଗଡ଼ ଫେରିଛି । ରଣଗଡ଼ର ଅନୁର୍ବର ଅରମା ଜମିରୁ ସୁନା ଫଳିଛି । ରତ୍ନପୁର ମଧ୍ୟ ରତ୍ନପୁର ପାଲଟିଛି । ନୂଆ ରାସ୍ତା, କୋଠଚାଷ, ସମବାୟ ସମିତି ସବୁ ହୋଇଛି । ସ୍କୁଲ, ଡାକ୍ତରଖାନା, ପୋଷ୍ଟଅଫିସ ଖୋଲିଛି । ପାନୀୟଜଳ ବ୍ୟବସ୍ଥା, ପଶୁଚିକିତ୍ସା ବ୍ୟବସ୍ଥା ମଧ୍ୟ ହୋଇଛି । ରଣଗଡ଼ ବଦଳି ଯାଇଛି । ରଣସିଂହ ଓ ମମତା ମଧ୍ୟ ବଦଳି ଯାଇଛନ୍ତି । ଗାଁର ସମସ୍ତଙ୍କୁ ପୁଅ ଝିଅ ଭଳି ଦେଖୁଛନ୍ତି । ଆହୁତି ମଧ୍ୟ ମମତାଙ୍କର କୋଳକୁ ଆସିଛି । ବୋହୂ ହୋଇ ନବଭାରତ ଗଠନରେ ସମସ୍ତେ ସୈନିକ ସାଜିଛନ୍ତି । ନୂତନ ରାଷ୍ଟ୍ର ନିର୍ମାଣ ସ୍ୱପ୍ନ ହଜିଯାଇଛି । ଭାରତର ରାଜନୀତି କଳୁଷିତ ହୋଇପଡ଼ିଛି । ରାଜନୀତିକ ତଥା ସାମାଜିକ ଜୀବନର ନୀତି, ଆଦର୍ଶ ଓ ପରାକାଷ୍ଠା ବିପର୍ଯ୍ୟସ୍ତ ହୋଇପଡ଼ିଛି । ଲେଖକ ଚକ୍ରଧର ଚରିତ୍ର ମାଧ୍ୟମରେ ଏହାର ପ୍ରତ୍ୟକ୍ଷ ଓ ପରୋକ୍ଷ ସୂଚନା ଦେଇଛନ୍ତି ।

ଉପନ୍ୟାସଟିରେ ପାରମ୍ପରିକ କଥାବସ୍ତୁଠାରୁ କାହ୍ନୁଚରଣ ଦୂରେଇଗଲେ ମଧ୍ୟ ଯେଉଁ ନୂତନ ଦିଗନ୍ତର ବାସ୍ତବାଲେଖ୍ୟ ସୃଷ୍ଟି କରିଛନ୍ତି, ତାହା ଓଡ଼ିଆ ଉପନ୍ୟାସକୁ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଦେଇଛି, ଏଥିରେ ସନ୍ଦେହ ନାହିଁ ।

### ଢେଉଢେଉକା

ସୁକାନ୍ତ ନିଜ ଶିଙ୍ଗରେ ମାଟି ଖୋଳି ମଣିଷ ହୋଇଛନ୍ତି । ସେ ହୋଇଛନ୍ତି ଜଣେ ପ୍ରତିଷ୍ଠିତ ଇଞ୍ଜିନିୟର । ଚାକିରି ଜୀବନରେ ମଧ୍ୟ କର୍ମନିଷ୍ଠ । ତା'ର ପତ୍ନୀ ରମା । ଇଞ୍ଜିନିୟର ପତ୍ନୀ ହିସାବରେ ତା'ର ମନରେ ଗର୍ବ କି ଅହଙ୍କାର ନାହିଁ । ଘରଦ୍ୱାର ଓଳାଇବା ଠାରୁ ବାସନ ମାଜିବା ପର୍ଯ୍ୟନ୍ତ ସବୁ କାମ ନିଜ ହାତରେ କରନ୍ତି । ବିବାହିତ ଜୀବନ ତାଙ୍କର ସୁଖକର ହୋଇଥିଲା । ଅବଶ୍ୟ ବେଳେ ବେଳେ ରାଗ ରୋଷ ଦେଖାଦିଏ । ରମା ହୁଏ କ୍ଷୁବ୍‌ଧ । ମାତ୍ର ପରେ ପାଣିଫୋଟକା ପରି ତାହା କୁଆଡ଼େ ମିଳାଇଯାଏ । ସୁକାନ୍ତ ନିଜର ଦୋଷ ମାନିନିଅନ୍ତି । ରମାଙ୍କର ମୁହଁରେ ପୁଣି ହସ ଫୁଟାଇ ସୁକାନ୍ତ କହନ୍ତି – ''ସଂସାରରେ ଆଉ କିଏ ଅଛି କହ ତ ରମା, ଯିଏ ମୋର ସବୁ ଦୁର୍ବଳତାକୁ ହଜମ କରି, ମାନ୍-ଅଭିମାନକୁ ସବୁ ପଛରେ ପକାଇ ହସିହସିକା ଆଗକୁ ଆସିବ ? ଥରଟିଏ ମନକିଣା ଚାହାଣିରେ ସବୁ ଦୋଷ କ୍ଷମା କରିବ .... ଆଉ କେହି ନାହିଁ । ଏକା ତମେ ।''

ସେଦିନ ତରକାରିର ଲୁଣ ବାଛି ଗର୍ଜନ କରି ଗ୍ଲାସ ପ୍ଲେଟ ଭାଙ୍ଗି ସୁକାନ୍ତ ଗସ୍ତରେ ବାହାରିଯାଇଛନ୍ତି । ରମା ମନରେ ଆକାଶ ପାତାଳ ଚିନ୍ତା ଆସିଛି । ସେ ଭାବିଛି ଯେ, ସେ ଅଶିକ୍ଷିତା, ତେଣୁ ସ୍ୱାମୀ ତା' ଉପରେ ଅଯଥା ରାଗୁଛନ୍ତି। ତେଣୁ ସେ ଆତ୍ମହତ୍ୟା କଲେ ଭଲ ହେବ । ସେ ଅନ୍ୟତ୍ର ବିବାହ କରିବେ ଓ ସୁଖରେ ରହିବେ । ମାତ୍ର ପରକ୍ଷଣରେ ସ୍ୱାମୀ ପିଅନକୁ ପଠାଇ ମନିବ୍ୟାଗ ଓ ନକ୍ସା ମଗାଇଛନ୍ତି । ସେ ବୁଝିଛି ତା' ହାତ ଅକ୍ଷର ନ ଦେଖିଲେ ସେ ପରତେ ଯିବେ ନାହିଁ । ସେ ମଧ ପିଅନ ହାତରେ ତାଗିଦା କରି କହିଛି – ବାବୁଙ୍କୁ କହିବ ହୁସିଆରିରେ ଯିବେ । ସେ ବୁଝିଛି ଯେ ସ୍ୱାମୀଙ୍କ ସ୍ନେହ କୃତ୍ରିମତାହୀନ । ଲୋକଦେଖାଣିଆ ବି ନୁହେଁ ।

ରମା ମନରେ ଅସ୍ଥିରତା ବଢ଼ିଚାଲିଛି । ଆଖି ଆଗରେ ନାଚିଯାଏ ବଣଜଙ୍ଗଲରେ ଗାଡ଼ି ଚଳାଉଥିବା, ଡାକବଙ୍ଗଳାରେ ମଶା କାମୁଡ଼ାରେ ଛଟପଟ ହେଉଥିବା ସୁକାନ୍ତର ଚିତ୍ର । ଦୁଃସ୍ୱପ୍ନ ଦେଖି ସେ ପୁଣି ଚିତ୍କାର କରିଉଠିଛି । ସର୍ବଶୁଭରେ ଫେରାଇ ଆଣିବାପାଇଁ ମା' ଜଗଜ୍ଜନନୀଙ୍କ ପାଖରେ ମାନସିକ କରିଛି ।

ମାତ୍ର ଚାରି ଦିନ ଅପେକ୍ଷା କଲାପରେ ରମା ଅସୁସ୍ଥ ହୋଇପଡ଼ିଛି । ରମାପାଇଁ ସୁକାନ୍ତଙ୍କ ମନର ବ୍ୟାକୁଳତା ବଢ଼ିଚାଲିଛି । ରମାର ନିର୍ମଳ ପ୍ରେମ ମନେ ପଡ଼ି ତାଙ୍କୁ ବ୍ୟଥାତୁର କରିଛି ।

ଶେଷରେ ବର୍ଷା-ତୋଫାନ ରାତିରେ ଜିପ୍ ଗାଡ଼ି ଘରକୁ ଫେରିଛି । ରମା ଜିପ୍ ହର୍ଣ୍ଣ ଶୁଣି ସମ୍ଭାଳିପାରି ନାହାନ୍ତି । ଆଗେଇ ଯାଇ ସ୍ୱାମୀଙ୍କ ଛାତିରେ ମୁହଁ ରଖିଛି । ଦୁହିଁଙ୍କ ମନର ସନ୍ଦେହ କଟିଯାଇଛି । ଆନନ୍ଦରେ ହୃଦୟ ଉଦ୍‌ବେଳିତ ହୋଇଉଠିଛି ।

'ଢେଉଢେଉକା' ଏକ ଚେତନାପ୍ରବାହମୂଳକ ଉପନ୍ୟାସ । କାହ୍ନୁଚରଣ ମନ ସମ୍ପର୍କରେ କହିଛନ୍ତି – ''ଦେହର ସୀମା ଅଛି, ମନର ସୀମା ନାହିଁ, କାଳ ଓ ବ୍ୟବଧାନ ମନର କେଉଁ କୋଣରେ ହଜିଯାଆନ୍ତି, ଲୁଚି ଛପି ଯାଆନ୍ତି । ଅନ୍ଧାର ରାତିରେ ଟର୍ଚ୍ଚ ଆଲୁଅ ବୁଲିଗଲା ପରି ମନର ଆଲୁଅ ବୁଲିଯାଏ । ଅତୀତକୁ ଆଲୋକିତ କରେ । ବର୍ତ୍ତମାନ ତ ଗତିଶୀଳ, ଦୈର୍ଘ୍ୟ ପ୍ରସ୍ଥ ବିହୀନ ରେଖାଟିଏ । ଅତୀତ ଓ ଭବିଷ୍ୟତ୍‌ର ମଝିଆମଝି ବେଳକାଳହୀନ ଅଭେଦ୍ୟ ପ୍ରାଚୀର ।'' ଖଣ୍ଡ ଖଣ୍ଡ ଚେତନାକୁ ଏକତ୍ର କରି ଲେଖକ ସାର୍ଥକ ଉପନ୍ୟାସଟିଏ ସୃଷ୍ଟି କରିଛନ୍ତି ।

**ବଗବଗୁଲୀ**

କାହ୍ନୁଚରଣଙ୍କ କଥାକଳ୍ପ ସବୁ ବିଭିନ୍ନ ପ୍ରୟୋଗବାଦୀ ପରୀକ୍ଷା-ନିରୀକ୍ଷାଦ୍ୱାରା ଚିହ୍ନିତ । 'ବଗବଗୁଲୀ' ତାଙ୍କର ନୂତନ ଦୃଷ୍ଟିଭଙ୍ଗୀର ଏକ ସଫଳ ପରୀକ୍ଷା ।

ଗାଁର ଚଳଣିକୁ ଡରି ଅସିତ ମନମୁତାବକ ପତ୍ନୀ ଅତସୀକୁ ପାଖରେ ପାଇପାରେନି । ଦଶହରା ଛୁଟିରେ ଅସିତ ଘରକୁ ଆସିପାରି ନାହିଁ । ଗାଁ-ଲୋକମାନଙ୍କ ପାଖରେ ପ୍ରଚାର ହୋଇଛି ଯେ ପୁଅ ବୋହୂକୁ ଭଲ ପାଉ ନାହିଁ । ଅସିତ ମଧ୍ୟ କର୍ମକ୍ଷେତ୍ରରେ ଥିବା କନ୍ଧଲଳନାମାନଙ୍କର ସରଳବିଶ୍ୱାସର ବହୁ ପ୍ରଶଂସା କରିବାର ଅତସୀ ଶୁଣିଛି । ଫଳରେ ତା' ମନରେ ସନ୍ଦେହ ସୃଷ୍ଟି ହୋଇଛି । ଛୁଟିରେ ଅସିତ ନ ଆସିବାରୁ ଅତସୀର ସନ୍ଦେହ ଦୃଢ଼ୀଭୂତ ହୋଇଛି । ମା' କିନ୍ତୁ ଏହାକୁ ବିଶ୍ୱାସ କରି ନାହାନ୍ତି । ବୋହୂ ଓ ଅଜିତକୁ ନେଇ ସେ ଯାଇଛନ୍ତି ଅସିତ ପାଖକୁ ।

ଘୁମୁସୁର ଉଦୟଗିରି ଡାକବଙ୍ଗଳାରେ ସ୍ନାନପୂର୍ଣ୍ଣମୀ ରାତ୍ରିରେ ଆରମ୍ଭ ହୁଏ 'ବଗବଗୁଲୀ'ଙ୍କର କାହାଣୀ ।

ସ୍ୱାମୀ-ସ୍ତ୍ରୀଙ୍କର ସ୍ୱାଭାବିକ କଥୋପକଥନ ମଧ୍ୟରେ ଲେଖକ ସୃଷ୍ଟି କରିପାରିଛନ୍ତି କୁସଂସ୍କାର ଓ ଅନ୍ଧବିଶ୍ୱାସହୀନ ଏକ ସୁସ୍ଥ ସମାଜ ଏବଂ ଏକ ସୁଖୀ ଦାମ୍ପତ୍ୟ ଜୀବନର ଚିତ୍ର । ତାଙ୍କର କଥାବାର୍ତ୍ତା ହାଣ୍ଡିଶାଳଠାରୁ ଭୂତପ୍ରେତର ଅନ୍ଧବିଶ୍ୱାସ, ଜନ୍ମନିୟନ୍ତ୍ରଣ ପର୍ଯ୍ୟନ୍ତ । ଅସିତର ସରଳ ତାତ୍ତ୍ୱିକ ବିଶ୍ଳେଷଣ ଆଗରେ ଅତସୀର ସବୁ ଯୁକ୍ତି ହାର ମାନିଛି । ତା'ର ମନରେ ଉଠୁଥିବା ଗୋଟିକ ପରେ ଗୋଟିଏ ସମସ୍ୟାର ସମାଧାନ ହୋଇଯାଇଛି । ରାତ୍ରିର ଅନ୍ଧାର ଅପସରି ଯିବାପୂର୍ବରୁ ତା' ମନର ଅନ୍ଧାର ଦୂର ହୋଇଯାଇଛି ।

ଆଲୋଚକଙ୍କ ମତରେ – ''ବଗବଗୁଲୀ କେବଳ ଅତସୀ ଓ ଅସିତର ସଂଳାପ ନୁହେଁ; ଏଇ ମାଟିର ଧରା ଉପରେ କୋଟି କୋଟି ସ୍ୱାମୀ-ସ୍ତ୍ରୀଙ୍କର ଚେତନ ଓ ଅବଚେତନ ମନର କାହାଣୀ ।''

କାହ୍ନୁଚରଣ ତାଙ୍କ ଦାମ୍ପତ୍ୟ ଜୀବନକୁ କେନ୍ଦ୍ରକରି ଏହି ଉପନ୍ୟାସ ରଚନା କରିଥିବା ଅନୁମାନ କରାଯାଏ । ସେ ଦିନେ ଦଣ୍ଡକାରଣ୍ୟ ଯାଇଥିଲେ । ପ୍ରବଳ ବର୍ଷା ହେତୁ ଘରକୁ ଫେରିବା ସମ୍ଭବ ହୋଇ ନାହିଁ । ତା' ପରଦିନ ଘରକୁ ଫେରିଛନ୍ତି । ସେହି ଗୋଟିଏ ଦିନର ବିଚ୍ଛେଦକୁ କେନ୍ଦ୍ର କରି ସେ ଉପନ୍ୟାସଟି ରଚନା କରିଥିବା ଜଣାଯାଏ ।

କାହ୍ନୁଚରଣଙ୍କ ଲେଖାରେ ସମାଜ-ଜୀବନର ନାନା ବର୍ଣ୍ଣ ଓ ନାନା ବିଭା ପ୍ରଦର୍ଶିତ । ସେ ବିଶେଷତଃ ମଧ୍ୟବିତ୍ତ ସମାଜର ଚିତ୍ର ପ୍ରଦାନରେ ଶତଜିହ୍ୱ । ଏଣୁ ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ କାହ୍ନୁଚରଣଙ୍କୁ ଏକ ସମାଜ-ସଚେତନ ଶିଳ୍ପୀ କୁହାଯାଇପାରେ ।

**ତମସା ତୀରେ**

କାହ୍ନୁଚରଣଙ୍କ ସର୍ବଶ୍ରେଷ୍ଠ କୃତି 'ତମସା ତୀରେ' ଏକ ସ୍ୱତନ୍ତ୍ର ସ୍ୱାକ୍ଷରରେ ଦୀପ୍ତିବନ୍ତ । ଏହାର ରଚନା କାଳ ୧୯୬୪–୬୬ ସାଲ ।

ଭାରତ ସ୍ୱାଧୀନତା ପାଇବାର ପରେ ଦେଖାଦିଏ ପୂର୍ବବଙ୍ଗରେ ମୁସଲମାନମାନଙ୍କର ଲୋମହର୍ଷଣକାରୀ ଅତ୍ୟାଚାର, ନଗ୍ନ ବୀଭତ୍ସଲୀଳା ଓ ବାସ୍ତୁହରା ଶରଣାର୍ଥୀମାନଙ୍କର ଥଇଥାନ । ଦଣ୍ଡକାରଣ୍ୟ ଯୋଜନାର ଭିତ୍ତିଭୂମି ଉପରେ ଏ ଉପନ୍ୟାସର ପରିକଳ୍ପନା ।

ଅମିୟ ମଣ୍ଡଳର ଜନନୀ-ପ୍ରତିମ ଭାଉଜ ଥିଲେ ଅନିମା । ଏକମାତ୍ର କନ୍ୟା ଅମିତା । ଅମିୟ ଓ ଅମିତା ଉଭୟେ ଥିଲେ ତାଙ୍କ ଆଗରେ ସମାନ । ଏମାନଙ୍କ ଟେଣ୍ଟ ପାଖରେ ରହନ୍ତି ସାଧନ ସନ୍ୟାସୀ । ଅନ୍ୟ ଏକ ତମ୍ବୁରେ କଳିହୁଡ଼ୀ ସ୍ତ୍ରୀ କମଳା । ଏଇ କମଳା ଅନେକ ସମୟରେ ଅନିମାଙ୍କୁ ମାନସିକ ଆଘାତ ଦିଅନ୍ତି । ଫଳରେ ଅତୀତର କଥା ଆଖି ଆଗରେ ନାଚିଉଠେ ।

ସ୍ୱାମୀ ଅଧର ମଣ୍ଡଳ । ଶିଶୁପୁତ୍ର ଅମିତାଭ । ସାମ୍ପ୍ରଦାୟିକ ଗଣ୍ଡଗୋଳ ପରେ ସେମାନେ ପାକିସ୍ତାନରୁ ପଳାଇ ଆସିବାବେଳେ ଅଧର ମଣ୍ଡଳ ଗୁଳିର ଆଘାତରେ ଉକ୍ରାନ୍ତ ହୋଇ ତଳେ ପଡ଼ିଥିଲେ । ଅନିମାଙ୍କୁ ଶିଶୁପୁତ୍ରର ଗୁରୁ ଦାୟିତ୍ୱ ନେବାକୁ କହିଥିଲେ । ଅନିମା ସେଇ ଅନ୍ଧାର ରାତ୍ରିରେ ସୀମା ପାର ହୋଇ ପଶ୍ଚିମବଙ୍ଗର ଏକ ରେଳ ଷ୍ଟେସନରେ ଆଶ୍ରୟ ନେଇଥିଲେ । ସାମାନ୍ୟ ନିଦ୍ରା ପରେ ସେ ଉଠି ଦେଖନ୍ତି କୋଳରେ ଅମିତାଭ ନାହିଁ; ଅଛି ଏକ କନ୍ୟା ଅମିତା । ନିଜର ପୁତ୍ରକୁ ଖୋଜୁ ଖୋଜୁ ସେ ପହଞ୍ଚିଛନ୍ତି ଏକ ଦୁର୍ବଳ ବାଳକ ପାଖରେ । ସ୍ତନ୍ୟପାନ କରାଇ ପୁତ୍ରକୁ କୋଳକୁ ନେଇଛନ୍ତି । ସେଇ ଅମିୟ ଦତ୍ତ ଅମିତାଭର ଭାଇ ନାମରେ ପରିଚିତ । ଯଦିଓ ସେ ତାଙ୍କର ନିଜର ନୁହନ୍ତି, ସେମାନେ ଅନିମାଙ୍କର ଅତି ଆପଣାର ହୋଇଛନ୍ତି ।

କଳିହୁଡ଼ୀ କମଳା, ବିପଥଗାମୀ ବିପିନ ଲିଡର, ସ୍ନେହଶୀଳା ବେଲାରାଣୀ – ସମସ୍ତେ କେତେ ପରାମର୍ଶ ଦେଇଛନ୍ତି । ମାତ୍ର କାହା କଥା ଅନିମା ଶୁଣି ନାହାନ୍ତି । ତାଙ୍କର ବିଶ୍ୱାସ ଅଧର ମଣ୍ଡଳ ଫେରିବେ । ପତିବ୍ରତା ଅନିମା ସବୁ ଆପଦ ବିପଦ ସହି ସ୍ୱାମୀଙ୍କୁ ଅପେକ୍ଷା କରିଛନ୍ତି । ସ୍ୱାମୀଙ୍କ କଥା ବାରମ୍ବାର ସ୍ମରଣ କରିଛନ୍ତି । ସ୍ୱାମୀଙ୍କ ଫେରିବାର ଆଶା ଓ ଭରସାରେ ସେ ବଞ୍ଚି ରହିଛନ୍ତି । ତାଙ୍କର ବିଶ୍ୱାସ ଦିନେ ନା ଦିନେ ସେ ଫେରିବେ ।

ଆଶାହିଁ ଜୀବନ । ବିଶ୍ୱାସହିଁ ଧୈର୍ଯ୍ୟ, ପ୍ରେମ ହିଁ ଆନନ୍ଦ । ଏଣୁ ସେହି ଆଶା ଓ ବିଶ୍ୱାସର ଦୁଇ ବାହୁର ଅଭୟ ବେଷ୍ଟନୀ ମଝିରେ ତାଙ୍କର ସୁଖ ଦୁଃଖର ଘରକରଣା ଲାଗିରହିଛି ।

ତପସ୍ୱିନୀ ପରି ଜୀବନ ଯାପନ କରିଛନ୍ତି ଅନିମା । ତାଙ୍କର ମନ ବଚନରେ ସ୍ୱାମୀଙ୍କର ପ୍ରତିଛବି ହିଁ ଲାଗିରହିଛି ।

ପରିଶେଷରେ ଅନିମା ପାଇଛନ୍ତି ହଜିଲା ଧନ-ଅମିତାଭଙ୍କୁ । ରକ୍ତର ଡାକ କାନରେ ବାଜିଛି । ଅମିତାଭ ପାଖକୁ ଦୌଡ଼ିଛନ୍ତି ଅନିମା ।

ଅମିୟ ମଣ୍ଡଳ ଜୀବନ ଇତିହାସ ଶୁଣି ଅଧମ ଚାଣ୍ଡାଳର ମୁଖା ଫିଙ୍ଗି ଦେଇଛନ୍ତି ଅଧର ମଣ୍ଡଳ । ରାତ୍ରିର ଅନ୍ଧାର ଭିତରେ ଆସିଛନ୍ତି ଅନିମାଙ୍କ ପାଖକୁ । ବାର ବର୍ଷ ବିଚ୍ଛେଦର ବ୍ୟଥାକୁ ଅନିମା ଅଜାଡ଼ି ଦେଇଛନ୍ତି ସ୍ୱାମୀଙ୍କ ପାଦତଳେ । ଦୁଃଖର ନିଶା ପାହିଛି ।

ଉଷାରାଣୀଙ୍କ ସହିତ ଅନିମାଙ୍କ ପ୍ରତିଷ୍ଠିତ ହୋଇଛି ଘନିଷ୍ଠ ସମ୍ବନ୍ଧ । ଉଭୟେ ପରସ୍ପରର ଆପଣାର ହୋଇଛନ୍ତି ।

ତମସା ନଦୀ ଓଡ଼ିଶାର ମାଲକାନଗିରି ଅଞ୍ଚଳରେ ପ୍ରବାହିତ । ଏକ ସତ୍ୟାନୁସନ୍ଧାନୀ ଉପନ୍ୟାସ ରଚନାପାଇଁ ଲେଖକ ସ୍ଥାନୀୟ ପରିବେଶ ଓ ଇତିହାସକୁ ଗ୍ରହଣ କରିଥିବା ଜଣାଯାଏ । ଏ ପ୍ରକାର ସମସ୍ୟାକୁ ଓଡ଼ିଆ ସାହିତ୍ୟରେ ପ୍ରଥମଥରପାଇଁ ଉପସ୍ଥାପିତ କରିଥିବାରୁ ଲେଖକ ବାସ୍ତବରେ ଧନ୍ୟବାଦାର୍ହ ।

ଉପନ୍ୟାସଟି ଏକ ସର୍ବଭାରତୀୟ ସମସ୍ୟା ଭିତରୁ ଆରମ୍ଭ ହୋଇ ପାରିବାରିକ ଜୀବନ ଭିତରେ ଶେଷ ହୋଇଛି । ସ୍ୱାଧୀନତା ପରବର୍ତ୍ତୀ ଯୋଜନାର ସଫଳତା, ସାମାଜିକ ବିକାଶ ଓ ବିପର୍ଯ୍ୟୟର ପ୍ରତିଛବି ଏଥିରେ ଅଙ୍କିତ ।

'ତମସା ତୀରେ'ରେ ଜୀବନ୍ତ ଚିତ୍ରଶାଳା ମନୋଲୋଭା ହୋଇଛି କାହ୍ନୁଚରଣଙ୍କ କାବ୍ୟିକ ବର୍ଣ୍ଣନାର ଛନ୍ଦାୟିତ ଶବ୍ଦଗୁମ୍ଫନରେ ।

**ତରଙ୍ଗର ତଳେ**

'ତରଙ୍ଗର ତଳେ' ଉପନ୍ୟାସଟି ୧୯୬୮ ମସିହାରେ ରଚିତ ହୋଇଥିଲା । ଏହା ଏକ କ୍ଷୁଦ୍ର ପ୍ରଣୟଭିତ୍ତିକ ଉପନ୍ୟାସ ।

ଏକ ଖାନ୍ଦାନ ପରିବାରର ଦୁଇ ବୋହୂ — ରାଜେଶ୍ୱରୀ ଆଉ ପ୍ରିୟମ୍ବଦା । ତାଙ୍କର ଏକମାତ୍ର ନଣନ୍ଦ ମନ୍ଦାକିନୀ । ବଡ଼ ଶ୍ୱଶୁରଙ୍କ ଦେହାନ୍ତ ବେଳେ ସେ ଦୁଇ ବର୍ଷର ହୋଇଥିଲା । ଗେହ୍ଲାରେ ତାଙ୍କୁ ମାନୀ ଡାକନ୍ତି ।

ମାନୀ ପିଲାଦିନେ ହୋଇଥିଲା ପାତଳା କନ କନ । ସୁନାଖଡ଼ିକା ପରି ଚେହେରା । ସୁଠାମ ନାକ । ମୁଣ୍ଡରେ ଗୋଛାଳିଆ ବାଳ । ସତେକି ବିଜୁଳି କନ୍ୟା ! ଧରିବାକୁ ହାତ ବଢ଼େଇଲେ ବିଜୁଳି ପରି ଛୁଟି ପଳାଏ । ଲୋକେ ବାରକଥା କହିଲେ । ଝିଅ ଜନମ ପାଇ ଅଣ୍ଡିରୀ ହେଲା । ଆକଟ ମାନିଲା ନାହିଁ । କୁହାର-ବୋଲର ହେଲା ନାହିଁ । ଭାଉଜମାନେ ମାନୀକୁ ଅଧିକ ଗେହ୍ଲା କରି ସତ୍ୟାନାଶ କରିଦେଲେ !

ମୀନାର ବଡ଼ଭାଉଜ ରାଜେଶ୍ୱରୀ । ତାଙ୍କର ଦୁଇ ଭାଇ ସୂର୍ଯ୍ୟକାନ୍ତ ଓ ଚନ୍ଦ୍ରକାନ୍ତ । ସୂର୍ଯ୍ୟକାନ୍ତ ବୟସରେ ବଡ଼ । ହାଇସ୍କୁଲରେ ଶିକ୍ଷକତା କରନ୍ତି । ଆଉ ସାନ ଭାଇ ଚନ୍ଦ୍ରକାନ୍ତ ! ବଡ଼ଭାଇଙ୍କର ଶତ ଚେଷ୍ଟା ସତ୍ତ୍ୱେ ଚନ୍ଦ୍ରକାନ୍ତ ମ୍ୟାଟ୍ରିକୁଲେସନ ପରୀକ୍ଷାରେ ଫେଲ୍ ହୋଇ ଘରର ଚାଷବାସ ବୁଝନ୍ତି ।

ଚନ୍ଦ୍ରକାନ୍ତଙ୍କୁ ଦେଖିଲେ କେହି କହିବେ ନାହିଁ ଯେ ଅପାଠୁଆ ବୋଲି । ସାବନାରଙ୍ଗର ସ୍ୱାସ୍ଥ୍ୟବାନ୍ ତରୁଣ । ହାରମୋନିଅମ ଧରି ଗୀତ ବୋଲନ୍ତି । ତବଲା ବି ବଜାନ୍ତି । କଣ୍ଠ ବି ସୁନ୍ଦର । ଚନ୍ଦ୍ରକାନ୍ତ ଭଉଣୀ ଘରକୁ ବେଳେ ବେଳେ ଆସନ୍ତି । ଦିନେ ଦି' ଦିନ ରହି ତାଙ୍କ ଘରକୁ ଫେରିଯାନ୍ତି ।

ମାନୀ ବି ବଡ଼ ହେଲା । ପାଠରେ ମନ ଦେଲା ନାହିଁ । ବୁଣାବୁଣି ବି ଶିଖିଲାନି । ତେବେ ଗୀତ ଶିଖିବାକୁ ରାଜି ହେଲା । ଚନ୍ଦ୍ରକାନ୍ତ ମାନୀକୁ ଗୀତ ଶିଖାଇବାକୁ ରାଜି ହେଲେ ।

ରାଜେଶ୍ୱରୀ ଭାଇ ଚନ୍ଦ୍ରକାନ୍ତଙ୍କ ପାଖକୁ ଚିଠି ଦିଅନ୍ତି । ମାନୀ ବି ଦିଏ ଚିଠି । ବେଳ ମିଳିଲେ ଚନ୍ଦ୍ରକାନ୍ତ ଦିନକପାଇଁ ଆସନ୍ତି । କିନ୍ତୁ ମାନୀ ସ୍ନେହରେ ବାନ୍ଧିହୋଇ ତିନି ଚାରି ଦିନ ଅଟକି ଯାଉଥିଲେ ।

ଦେଖୁ ଦେଖୁ ପାଞ୍ଚ ବରଷ କଟିଯାଇଛି ।

ମାନୀ ବଡ଼ ହୋଇଛି । ଆଖିଦୃଶିଆ ବି ହୋଇଗଲାଣି । ତା'ର ବିବାହ ଚିନ୍ତା ସମସ୍ତଙ୍କୁ ଘାରିଛି । କେତେ ପ୍ରସ୍ତାବ ପଡ଼ିଛି । ଶେଷରେ ଚନ୍ଦ୍ରକାନ୍ତ ଗୋଟିଏ ପ୍ରସ୍ତାବ ପକାଇଛନ୍ତି । ରନ୍ତିଲୋର ରଣବିକ୍ରମଙ୍କ ପୁଅ ରଣବୀର ସହିତ । ରଣବୀର ଇଞ୍ଜିନିୟର । ଚନ୍ଦ୍ରକାନ୍ତ ତାଙ୍କ ପାଖେ କାନ୍ତରାଟି କାମ କରୁଥିଲେ । ଜାତକ ବି ଶୁଝିଲା । ରଣବୀର ମଧ ମଙ୍ଗିଲେ । ମାନୀର ଫଟୋ ଚନ୍ଦ୍ରକାନ୍ତ ନେଇ ଦେଖାଇଲେ । ଫଟୋ ବି ପସନ୍ଦ ହେଲା । ଯୌତୁକ ଟଙ୍କା ବି ଛିଡ଼ିଲା । ସ୍ୱୀକାର ପଠାଇବାର ବନ୍ଦୋବସ୍ତ ହୋଇଛି ।

ମାନୀ କିନ୍ତୁ ଏ ବିବାହରେ ସୁଖୀ ହୋଇପାରିନି । ରାତି ଅଧରେ ଚନ୍ଦ୍ରକାନ୍ତଙ୍କୁ ସାକ୍ଷାତ୍ କରି ତା'ର ମନର କଥା କହିଛି । ଆଉ ବାହାଘର ଭାଙ୍ଗିଦେବାକୁ କହିଛି । ଚନ୍ଦ୍ରକାନ୍ତ ରାଜି ହୋଇ ନାହାନ୍ତି । ସେ ଅଧାପାଠୁଆ ଚରିତ୍ରହୀନ ଲଫଙ୍ଗା ଆଉ ଅପଦାର୍ଥ । ମାନୀର ଗୋଡ଼ତଳକୁ ବି ସରି ନୁହନ୍ତି । ରଣବୀରକୁ ବିବାହ କରିବାକୁ କହିଛି । ମାନୀ ତାଙ୍କର ଦୈହିକ ମିଳନ କଥା ମନେ ପକେଇଦେଇ କହିଚି ଯେ ସେ ବିବାହ ନ କଲେ ଜୀବନ ହାରିଦେବ ବୋଲି । ପ୍ରିୟମ୍ବଦା ଏକଥା ଶୁଣି ଥକ୍କା ହୋଇପଡ଼ିଛନ୍ତି । ତା'ପରେ ମାନୀକୁ ବୁଝାଇଛନ୍ତି । କୁଟୁମ୍ବକୁ ଲୋକହସା ନ କରାଇବାକୁ ମିନତି କରିଛନ୍ତି । ଶେଷରେ ମାନୀ ରାଜି ହୋଇଛି । ରଣବୀରଙ୍କୁ ବିବାହ କରି ନୂଆ ସଂସାର କରିଛି ।

କାହ୍ନୁଚରଣ ଏହି ଅର୍ଦ୍ଧଶିକ୍ଷିତା ନାରୀଚରିତ୍ରର ମନସ୍ତତ୍ତ୍ୱକୁ ଯଥାଯଥଭାବେ ଚିତ୍ରଣ କରିଛନ୍ତି ।

## ଅଙ୍ଗନା

କାହ୍ନୁଚରଣଙ୍କ ଉପନ୍ୟାସଗୁଡ଼ିକର ପୃଷ୍ଠଭୂମି ଅତ୍ୟନ୍ତ ବ୍ୟାପକ ଓ ବିସ୍ତୃତ । ତାଙ୍କ ପୂର୍ବରୁ ଅନ୍ୟକୌଣସି ଔପନ୍ୟାସିକ ଏଭଳି ବିସ୍ତୃତ ଦୃଷ୍ଟିନେଇ ଉପନ୍ୟାସ ରଚନା କରି ନାହାନ୍ତି । ପ୍ରାଗ୍ ଐତିହାସିକ ଯୁଗରୁ ଆଧୁନିକ ଯୁଗ ପର୍ଯ୍ୟନ୍ତ ତାଙ୍କ ଉପନ୍ୟାସର କାଳ ଅବଧି ବିସ୍ତୃତ । ଉପନ୍ୟାସ ରଚନା କ୍ଷେତ୍ରରେ ସେ ଯେଉଁ ପରୀକ୍ଷା-ନିରୀକ୍ଷା କରିଛନ୍ତି ତାହା ତାଙ୍କ ପୂର୍ବସୂରୀମାନଙ୍କ କ୍ଷେତ୍ରରେ କ୍ୱଚିତ୍ ଦେଖାଯାଏ ।

କାହ୍ନୁଚରଣ ମଧ୍ୟ ବିଜ୍ଞାନ ଆଭାଷିତ ଉପନ୍ୟାସ ରଚନା କରିଛନ୍ତି । ଏଥିରେ ବିଜ୍ଞାନ ସହିତ କଳ୍ପନାର ସମନ୍ୱୟ ଘଟିଛି । ତେବେ ବିଜ୍ଞାନ ସମ୍ବନ୍ଧୀୟ ତଥ୍ୟ ଉପରେ ଅଧିକ ଗୁରୁତ୍ୱ ଦିଆଯାଇଛି । ଏହା ଅବଶ୍ୟ ଅନେକଙ୍କୁ ଅସମ୍ଭବ କଳ୍ପନା ପରି ମନେ ହୁଏ ।

ଉପନ୍ୟାସଟି ଏକ ଅଦ୍ଭୁତ ଅଭିମାନକୁ ନେଇ ରଚିତ । ରକ୍ତ-ମାଂସ-ଶରୀରର କ୍ଷୁଧା ମଧ୍ୟ ଦୁର୍ବାର । ଏହି ବୁଭୁକ୍ଷା ଘେନି ବିଷକନ୍ୟା ଅଙ୍ଗନା ଚାହିଁଛି ବିନୟରଞ୍ଜନକୁ ଆପଣାର କରିବାକୁ । ମାତ୍ର ତା'ର ସେ କ୍ଷୁଧା ମେଣ୍ଟିନି ।

ଅଙ୍ଗନା ବିନୟରଞ୍ଜନକୁ ବୁଝାଇଛି ଯେ ସେ ଫୁଲ ତା' ବାପାଙ୍କ ସ୍ୱତନ୍ତ୍ର ସର୍ଜନା । ତାହା ତାଙ୍କର ତେଇଶ ବର୍ଷର ସାର୍ଥକ ସ୍ୱପ୍ନ । ତାଙ୍କର ଉଦ୍ଭିଦ ବିଜ୍ଞାନ ଗବେଷଣାର ଶେଷଫଳ । ସେହି ଫୁଲକୁ ସ୍ପର୍ଶ କଲେ ବା ନିକଟରୁ ତା'ର ମଧୁର ଗନ୍ଧ ଆଘ୍ରାଣ କଲେ ମୃତ୍ୟୁ ସୁନିଶ୍ଚିତ । ସିଆନାଇଡ ବିଷ ବା ବିଦ୍ୟୁତ୍ ସ୍ପର୍ଶଠାରୁ ସହସ୍ରଗୁଣ ଶକ୍ତିସମ୍ପନ୍ନ । ସେ ବିନୟରଞ୍ଜନକୁ କହିଛି –

''ତମକୁ ମରିବାକୁ ଦେବି ନାହିଁ ରଞ୍ଜନ ?''

ବୈଜ୍ଞାନିକ ଶୁଭ୍ରାଂଶୁ ଚିନ୍ତିତ – କିପରି ବନ୍ଧୁପୁତ୍ର ବିନୟରଞ୍ଜନକୁ ବଞ୍ଚାଇପାରିବେ ? ତା'ର ଧ୍ୱଂସ ହେଲେ ରଞ୍ଜନକୁ କି ସଫେଇ ଦେବେ ?

ବିନୟରଞ୍ଜନ ଓ ଅଙ୍ଗନା ଯୌନବୁଭୁକ୍ଷୁର ଅତୃପ୍ତ ଆତ୍ମା । ସେମାନଙ୍କ ମଧ୍ୟରେ ମନର ଆଳାପ ସମ୍ଭବ । କିନ୍ତୁ ଦେହ ଭିତରେ ଯୋଜନ ଯୋଜନର ବ୍ୟବଧାନ ।

ଆଲୋଚକଙ୍କ ମତରେ 'ଅଙ୍ଗନା' ଉପନ୍ୟାସକୁ ବୈଜ୍ଞାନିକ ଉପନ୍ୟାସ କହିବା ସମୀଚୀନ ନୁହେଁ । ଏଥିରେ ସ୍ଥଳବିଶେଷରେ ବିଜ୍ଞାନର ଆଭାଷ ଥିଲେ ହେଁ ଏଥିରେ ଦେହ ଓ ଦାହର ବର୍ଣ୍ଣନା ହିଁ ଅଧିକ ଉର୍ଜସ୍ୱଳ ।

## କହିବାକୁ ଲାଜ

'କହିବାକୁ ଲାଜ' ଏକ ପରିବାର-କୈନ୍ଦ୍ରିକ ଉପନ୍ୟାସ । ଏକ ମଧ୍ୟବିତ୍ତ ପରିବାରର କାହାଣୀ ଏଥିରେ ବର୍ଣ୍ଣିତ ।

ଆନନ୍ଦଙ୍କ ପତ୍ନୀ ହେଉଛନ୍ତି ଇନ୍ଦିରା । ତାଙ୍କର ଦୁଇ କନ୍ୟା – ଅନୁପା ଓ ନିରୁପା । ହଷ୍ଟେଲରେ ରହି ପାଠ ପଢ଼ିବାର ସାମର୍ଥ୍ୟ ନ ଥିବାରୁ ଆନନ୍ଦଙ୍କ ଭଗ୍ନୀ ଚନ୍ଦନାଙ୍କ ପୁଅ

ବିକ୍ରମ ମାମୁ ଘରେ ରହି ପଢ଼େ । ସେମାନଙ୍କୁ ନେଇ ଆନନ୍ଦ କଟକ ସହରରେ ରହନ୍ତି । ବିକ୍ରମ ମାମୁଙ୍କ ପିଲାମାନଙ୍କୁ ଦେଖାଶୁଣା କରେ ।

ଆନନ୍ଦ ସେପରି ସ୍ୱଚ୍ଛଳ ନ ଥିଲେ । ମାତ୍ର ବ୍ୟବସାୟୀ ବନ୍ଧୁ ହାଡ଼ିବନ୍ଧୁଙ୍କ ପଦାଙ୍କ ଅନୁସରଣ କରି କୋଟିପତି ହୋଇଛନ୍ତି । ବଡ଼ ଲୋକ ହେଲା ପରେ ଅହମିକା ବଢ଼ିଛି । ଆନନ୍ଦଙ୍କ ସ୍ତ୍ରୀ ଇନ୍ଦିରା ନିଜର ସାବତ ଶାଶୂ ଓ ନଣନ୍ଦମାନଙ୍କୁ ହେୟଜ୍ଞାନ କରିଛନ୍ତି । ଘୃଣା କରିଛନ୍ତି ।

ଉନ୍ନତିର ପ୍ରତି ସୋପାନରେ ବିକ୍ରମର ସାହାଯ୍ୟ ନେଇଛନ୍ତି ମାମୁ ଆନନ୍ଦ ଓ ଇନ୍ଦିରା । ମାତ୍ର କୃତଘ୍ନ ମାମୁ ଓ ମାଇଁ ତାହାକୁ ଭୁଲିଯାନ୍ତି । କିନ୍ତୁ ଏ ପରିବାର ପ୍ରତି ବିକ୍ରମର ଅତୁଳନୀୟ ଦାନର ପ୍ରତିଦାନ ଦେଇଛନ୍ତି ଆନନ୍ଦଙ୍କର ଜ୍ୟେଷ୍ଠାକନ୍ୟା ଅନୁପା ।

ଅନୁପାଙ୍କର ଆକର୍ଷଣ ବିକ୍ରମ ପ୍ରତି ଥିଲା ପ୍ରଥମରୁ । କ୍ରମେ ଅନୁପାର ବିକ୍ରମ ପ୍ରତି ଅନୁରାଗ ବଢ଼ିଲା । ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ତାହା ପ୍ରେମରେ ପରିଣତ ହେଲା । ଇନ୍ଦିରାଙ୍କର ଇଚ୍ଛା ନ ଥିଲା ଅନୁପା ବିକ୍ରମକୁ ବିବାହ କରୁ । ତାଙ୍କର ବିକ୍ରମ ପ୍ରତି ଘୃଣାଭାବ ଥିଲା । ସେ ଅଲିଅଳୀ ଜ୍ୟେଷ୍ଠା କନ୍ୟାପାଇଁ ବିବାହ ଠିକ୍ କଲେ ଧନୀ, ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ପୁତ୍ର ସଞ୍ଜୟ ସହିତ । ସଞ୍ଜୟ ଯେ ଚରିତ୍ରହୀନ ଏକଥା ଅନୁପା ଜାଣିଥିଲା ଓ ତା'ର ପ୍ରମାଣ ମଧ୍ୟ ପାଇଥିଲା ।

ବିକ୍ରମର ପିତା ବୀରକେଶରୀ । ସେ ବିକ୍ରମର ବିବାହ ପ୍ରସ୍ତାବ ଉଲୁପୀ ସଙ୍ଗେ ପକାଇଛନ୍ତି । କନ୍ୟା ପିତାଙ୍କ ଠାରୁ ଟଙ୍କା ମଧ୍ୟ ଆଣିଛନ୍ତି । ମାତ୍ର ବିକ୍ରମ ଉଚ୍ଚତର ଚାକିରି ଖୋଜୁଥିବା ଆଳରେ ସେ ବିବାହ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଦେଇଛି ।

ବିକ୍ରମ ଓ ଅନୁପାର ପ୍ରେମରେ କୌଣସି ଆବିଳତା ନ ଥିଲା । ତାହା ଥିଲା ପବିତ୍ର, ଶାଶ୍ୱତ ଆଉ ଜାଜ୍ୱଲ୍ୟମାନ । ବିବାହ ପୂର୍ବରୁ ଅନୁପା ବାଷ୍ପଜଡ଼ିତ କଣ୍ଠରେ ବିକ୍ରମକୁ କହିଛି – "ତୁମ ନିର୍ଦ୍ଦେଶକୁ ମୁଁ ଅନାଇଁ ରହିଲି । ହୁଏତ ଏ ଜନ୍ମରେ ଏଇ ଶେଷ ଦେଖା ହୋଇପାରେ ।"

ବିକ୍ରମ କହିଉଠିଛି – "ମୁଁ ଠିକ୍ ସମୟରେ ଜଣାଇବି । ଅନୁ ତୁ ପ୍ରସ୍ତୁତ ଥିବୁ । ମୋ ହୃଦୟର ଶୂନ୍ୟସ୍ଥାନ ପୂରଣ ନିମନ୍ତେ ମୁଁ ଯୁଗ ଯୁଗ ପ୍ରତୀକ୍ଷା କରିପାରେ ....।"

ବିକ୍ରମ ଦିପୋଟି ହୋଇସାରିଥିଲେ ମଧ୍ୟ ମାମୁ ମାଇଁ ତାକୁ ଭଲ ପାଇ ନାହାନ୍ତି । ଆଭିଜାତ୍ୟର ଖୋଳପାକୁ ଦୂରକୁ ଫିଙ୍ଗି ଘରୁ ଲୁଚି ଅନୁପା ନିଜର ଅତି ଆପଣାର ମଣିଷ ବିକ୍ରମ ପାଖକୁ ଚାଲିଯାଇଛି । କଳିଙ୍ଗ ହୋଟେଲରେ ବିକ୍ରମ ଓ ଅନୁପାର ଶୁଭ ପରିଣୟ ହୋଇଛି । ପିତା ବୀରକେଶରୀ ଅଭିମାନରେ ପୁତ୍ର ଓ ପୁତ୍ରବଧୂକୁ ଦୂରରୁ ଆଶୀର୍ବାଦ ଦେଇ ଚାଲିଯାଇଛନ୍ତି ।

ଆଲୋଚକଙ୍କ ଭାଷାରେ, ''କାହ୍ନୁଚରଣଙ୍କ ଅପୂର୍ବ ଭାଷା, ସଂଳାପଦ୍ୱାରା କେଦାରଗୌରୀ, ଲୈଲା-ମଜନୁଙ୍କ ପ୍ରେମ କାହାଣୀ ଭଳି 'କହିବାକୁ ଲାଜ' ରସୋତ୍ତୀର୍ଣ୍ଣ ତଥା କାଳଜୟୀ ହୋଇପାରିଛି ।''

**ନିର୍ବିଶଙ୍କ**

'ନିର୍ବିଶଙ୍କ' ପୁସ୍ତକର ମୁଖବନ୍ଧରେ କାହ୍ନୁଚରଣ ଲେଖିଛନ୍ତି ଯେ ସବୁ ଦେଶରେ ଓ ସବୁ ଭାଷାରେ ସାଧାରଣ ପାଠକର ଅବସର ସମୟରେ ପଠନପାଇଁ, କର୍ମକ୍ଳାନ୍ତ ଜୀବନର କ୍ଳାନ୍ତି ଅପନୋଦନ ଓ ମନୋରଞ୍ଜନପାଇଁ କେତେ ଜାତିର 'ପକେଟ୍ ବୁକ୍' ପ୍ରକାଶିତ ହେଉଛି । ଓଡ଼ିଆ ଭାଷାରେ ଏପରି ବହି ଧାରାବାହିକ ବା ସିରିଜ୍‌ରେ ପ୍ରକାଶ କରିବାର ଉଦ୍ୟମ ମଧ୍ୟ କେହି କେହି କଲେଣି । ବହିଗୁଡ଼ିକ ଆକାରରେ ଛୋଟ ହୋଇଥିବ, ଭଲ କାଗଜ ଉପରେ ସୁନ୍ଦର ଛାପା ହୋଇଥିବ, ରୂପ ସଜ୍ଜା ହୋଇଥିବ, ମନୋମୁଗ୍ଧକର ଅଥଚ ସୁ-ସଂଗତ, ମୂଲ୍ୟ ହୋଇଥିବ ଯଥାସମ୍ଭବ ଅଳ୍ପ – ଯେପରିକି ସାଧାରଣ – ଶ୍ରମଜୀବୀଟିଏ, ପଢ଼ିବାକୁ ଯାହାର ଆଗ୍ରହ, ଅନାୟାସରେ ସେ ମଧ୍ୟ କିଣିପାରିବ – ଏହି ଉଦ୍ଦେଶ୍ୟରେ 'ସାଥୀ ପ୍ରକାଶନ' ତାଙ୍କର ପକେଟ୍ ବୁକ୍ ସିରିଜରେ ଚାଳିଶ ଖଣ୍ଡ ଉପନ୍ୟାସ ପ୍ରକାଶ କରିବାକୁ ଦୃଢ଼ସଂକଳ୍ପ ହୋଇଛନ୍ତି । ସାମାଜିକ, ବୈଜ୍ଞାନିକ, ରହସ୍ୟ, ରୋମାଞ୍ଚ ପ୍ରଭୃତି ଉପନ୍ୟାସ ପ୍ରକାଶ କରିବା 'ସାଥୀ ପ୍ରକାଶନ'ର ସ୍ୱପ୍ନ । ଆଉ ସେହି ସ୍ୱପ୍ନ ସଫଳ କରିବାର ପ୍ରଥମ ପଦକ୍ଷେପ ହେଲା 'ନିର୍ବିଶଙ୍କ' । ଏହା ମଧ୍ୟ ହେଉଛି ପ୍ରକାଶନ ସିରିଜ୍‌ର ପ୍ରଥମ ପୁସ୍ତକ । ଏହାର ପ୍ରକାଶ କାଳ ହେଉଛି ୧୯୭୩ ମସିହା ।

ଭୋଦେଇ ଗାଆଁର ନାମଜାଦା ଭଦ୍ରଲୋକ ହେଉଛନ୍ତି ଧନେଶବାବୁ । ସେ ମଧ୍ୟ ଜଣେ ସମ୍ମାନାସ୍ପଦ ବ୍ୟକ୍ତି । ବିବାହର ପାଞ୍ଚ ବର୍ଷ ପରେ ଜନ୍ମ ହୋଇଥିଲା ତାଙ୍କର ପ୍ରଥମା କନ୍ୟା ବରଦା । ତା'ର ତିନି ବର୍ଷ ପରେ ପ୍ରମଦା ଜନ୍ମ ହୋଇଥିଲା । ତାଙ୍କର ପାଞ୍ଚଟି କନ୍ୟା ଓ ଦୁଇଟି ପୁଅ ଜନ୍ମ ହୋଇଥିଲେ । ଝିଅମାନଙ୍କ ବୋଝରୁ ମୁକ୍ତ ହେବାପାଇଁ ବଡ଼ ଝିଅ ବରଦାକୁ ସତର ବର୍ଷ ଚାଲିଥିଲାବେଳେ ଭଲ ଘର, ଭଲ ବର ଦେଖି ବାହା କରେଇଦେଲେ । ବଡ଼ ମଝିଆ ଝିଅ ବିନତି, ସାନ ମଝିଆ ଝିଅ ସୁମତି ଓ ସବା ସାନ ଝିଅ ନିୟତିକୁ ମଧ୍ୟ ଭଲରେ ବାହା କରାଇ ଦେଇଥିଲେ । ସେମାନେ ତାଙ୍କର ସୁଖ ଦୁଃଖର ସଂସାର କଲେ ।

ଧନେଶଙ୍କ ଦ୍ୱିତୀୟା କନ୍ୟା ଥିଲା ପ୍ରମଦା । ସେ ବାପ ମା'ଙ୍କର ଅଲିଅଳୀ ଝିଅ ଥିଲା । ତା'ର ବାପା, ବୋଉ, ଭାଇ ଭଉଣୀ ସମସ୍ତେ ତାକୁ ସ୍ନେହ କରୁଥିଲେ । ସେ ମଧ୍ୟ ଭଲ ପଢ଼ିଲା । ଶେଷକୁ ଡାକ୍ତରୀ ପାଠ ପଢ଼ିଲା । ଲକ୍ଷପତି

ବିଶ୍ୱନାଥବାବୁଙ୍କର ବଡ଼ ପୁଅ ପ୍ରବୀର କିଶୋର ସଙ୍ଗେ ତା'ର ବାହାଘର ପ୍ରସ୍ତାବ ପଡ଼ିଲା । କିନ୍ତୁ ପ୍ରମଦା ଜିଦ୍ ଧରି ବସିଲା ସେ ଡାକ୍ତରୀ ପାଠ ଶେଷ ହେବା ଯାଏଁ ବାହା ହେବ ନାହିଁ । ଧନେଶବାବୁ ତାକୁ ବୁଝାଇଲେ । ତା' ରୋଜଗାରକୁ ଚ୍ଚାଇଁ ଘର ଚାହିଁ ରହି ନାହାନ୍ତି, ପ୍ରବୀର କଟକରେ ବଡ଼ ବ୍ୟବସାୟୀ, ପୈତୃକ ସମ୍ପତ୍ତି ବି ବହୁତ ଅଛି ଇତ୍ୟାଦି କହିଥିଲେ ।

ପ୍ରମଦା ଚାକିରି କଲା । ତା'ର ଜିଦ୍ ସେ ଚାକିରି ଛାଡ଼ିବ ନାହିଁ । କାହାରି ହାତଟେକାରେ ରହିବ ନାହିଁ । ପ୍ରବୀର କିଶୋରଙ୍କ ବାପା ବିଶ୍ୱନାଥବାବୁ ଏଥିରେ ରାଜି ହେଲେ । ଶେଷରେ ବିବାହ ହେଲା । ବିବାହ ପୂର୍ବରୁ ପ୍ରମଦାର ମୁହଁ ମଳିନ ପଡ଼ିଥିବାର ପିତା ଧନେଶବାବୁ ଲକ୍ଷ୍ୟ କରିଥିଲେ । ମାତ୍ର ପ୍ରମଦା ମୁହଁ ଖୋଲି କିଛି କହି ନ ଥିଲା ।

ବିବାହ ପରେ ପାଞ୍ଚଟି ବର୍ଷ ଦାମ୍ପତ୍ୟଜୀବନ ଦୁହେଁ କଟାଇଥିଲେ । ଝିଅଟିଏ ବି ହୋଇଥିଲା । କିନ୍ତୁ ତାଙ୍କ ବିବାହ ସ୍ୱାଭାବିକ ବୈବାହିକ ଜୀବନ ନ ଥିଲା । ପ୍ରବୀରଙ୍କ ପତ୍ର ଅନୁଯାୟୀ ସେମାନେ ସ୍ୱାଭାବିକ ବୈବାହିକ ଜୀବନ ଅତିବାହିତ କରିବାର ଅଭିନୟ କରୁଥିଲେ । ସେ ସୁରାର ବି ଆଶ୍ରୟ ନେଉଥିଲେ । ତାଙ୍କ ବାପାଙ୍କ ମୃତ୍ୟୁରେ ଜୀବନ ଆହୁରି ଦୁଃସହ ହୋଇପଡ଼ିଥିଲା ।

ପ୍ରମଦା ମଧ୍ୟ ତା' ପିତାଙ୍କ ପାଖକୁ ଗୋଟିଏ ପତ୍ର ଲେଖି ସବୁ ଜଣାଇ ଦେଇଥିଲା । ସେ ଲେଖିଥିଲା ଯେ ପ୍ରବୀର କେବଳ ମଦ୍ୟପ ନୁହେଁ, ଦୁଃଶ୍ଚରିତ୍ର ମଧ୍ୟ ଥିଲେ । ତାଙ୍କର ବାପା ମା' ବିବାହ ପୂର୍ବରୁ ସବୁ ଜାଣିଥିଲେ । କିନ୍ତୁ ବିବାହ ପରେ ପୁଅର ନୈତିକ ଜୀବନର ପରିବର୍ତ୍ତନ ହୋଇଯିବ ଏହି ଆଶାରେ ସବୁ ସର୍ତ୍ତରେ ସମ୍ମତ ହୋଇ ତାକୁ ବୋହୂ କରିନେଇଥିଲେ । ପ୍ରମଦା ସ୍ୱାମୀଙ୍କର ସବୁ ବିଷୟ ଜାଣିବାପରେ ଚେଷ୍ଟା କରିଥିଲା ପ୍ରବୀରକୁ ଭଲ ବାଟକୁ ଆଣିବ ବୋଲି । ପ୍ରବୀର ଅବଶ୍ୟ ବାହାରକୁ ସ୍ନେହୀ, ମିଷ୍ଟଭାଷୀ, ସହାନୁଭୂତିଶୀଳ, ବଦାନ୍ୟ ପ୍ରଭୃତି ଭାବେ ପରିଚିତ ଥିଲେ; ମାତ୍ର ଭିତରେ ଥିଲେ ତା'ର ଠିକ୍ ଓଲଟା । ସେ ଚାହୁଁ ନ ଥିଲେ ତାଙ୍କର ବିଶାଳ ସମ୍ପତ୍ତିର ଉତ୍ତରାଧିକାରୀ ତାଙ୍କ ଝିଅ ଚ୍ଚାଇଁ ହୁଅନ୍ତୁ । ସେ ଚାହୁଁଥିଲେ ପୁତ୍ର ସନ୍ତାନଟିଏ । ମାତ୍ର ପୁତ୍ରସନ୍ତାନ ହେବାର ଆଶା ନ ଥିଲା । ତା'ର କାରଣ ପ୍ରବୀରଙ୍କୁ ଏକ ନାରକୀୟ ରୋଗ ଧରିଥିଲା । କୁସଙ୍ଗର ପରିଣାମ ଭୋଗ ସେ କରୁଥିଲେ । ତାକୁ (ପ୍ରମଦାକୁ) ମଧ୍ୟ ସେହି ରୋଗରେ ଭାଗୀ କରାଇଲେ । ଚିକିତ୍ସା ପରେ ଅବଶ୍ୟ ରୋଗମୁକ୍ତ ହେଲେ । ପ୍ରବୀର ମଧ୍ୟ ଅନୁତାପ କଲେ । ପ୍ରମଦା ଭାବିଲେ ଯେ ବୋଧହୁଏ ସେ ବାଟକୁ ଆସିଲେ । ମାତ୍ର ତା' ହେଲା ନାହିଁ । ଓଲଟି ଡକ୍ଟର ନିର୍ବିଶଙ୍କଙ୍କ ପାଖକୁ ତା'ର ଚରିତ୍ର ବିଷୟରେ ପତ୍ର

ଲେଖିଲେ । ଅନ୍ୟମାନଙ୍କ ଆଗରେ ତା'ର ଚରିତ୍ର ବିରୋଧରେ ପ୍ରଚାର ବି କଲେ । ବିନା ଦୋଷରେ କଳଙ୍କିନୀ ହୋଇ ଦୁନିଆ ଦାଣ୍ଡରେ ଆତଯାତ ନ ହେବାକୁ ପ୍ରମଦା ସ୍ଥିର କଲା । ସ୍ଥିର ମଧ୍ୟ କରିଥିଲା ଆତ୍ମହତ୍ୟା କରିବାକୁ । କିନ୍ତୁ ଦାଣ୍ଡ ଲଜ୍ଜା ତଥା ନିଷ୍କଳଙ୍କ ଶିଶୁ ମୁଣ୍ଡରେ କଳଙ୍କର ବୋଝ ଲଦି ନ ଦେବାକୁ ତାହା କଲା ନାହିଁ । ଶେଷ ସିଦ୍ଧାନ୍ତ ଗ୍ରହଣ କଲା – ବିବାହ ବିଚ୍ଛେଦପାଇଁ ଓ ଚିକିତ୍ସା ବିଜ୍ଞାନର ସେବିକା ହୋଇ ଜୀବନ ପଥରେ ଆଗେଇଯିବା ପାଇଁ । ବିବାହ ଛିନ୍ନ କରିବାପାଇଁ ନ୍ୟାୟାଧୀଶଙ୍କ ପାଖେ ମଧ୍ୟ ଆବେଦନ କଲା । ଶେଷରେ ବିବାହ ବିଚ୍ଛେଦ ହେଲା ।

ପ୍ରବୀର ମଧ୍ୟ ରମାକୁ ବିବାହ କଲେ । ପ୍ରମଦା ଝିଅ ଅଶୋକାକୁ ବାପାବୋଉଙ୍କ ପାଖେ ଛାଡ଼ି ଦେଇ ଆସିଲା । ଏହାପରେ ତା'ର ମାନସିକ ଅବସାଦ ବଢ଼ିଗଲା । କାମରେ ମଧ୍ୟ ମାରାତ୍ମକ ଭୁଲ ହେଲା । ଡକ୍ଟର ନିର୍ବିଶଙ୍କ ଡାକ୍ତରଖାନାରେ ତାଙ୍କୁ ଦୁଇ ଥର ବତାଇଦେଲେ । କାମରେ ତପସ୍ୟା ଲୋଡ଼ା ବୋଲି କୋମଳ ଭର୍ତ୍ସନା କଲେ । ସବୁ ପ୍ରକାରେ ସାହାଯ୍ୟ ଦେଲେ । ଅଧିକ ପାଠ ପାଇଁ ବିଲାତ ଯିବାପାଇଁ ବ୍ୟବସ୍ଥା ବି କଲେ । କୃତଜ୍ଞତାରେ ପ୍ରମଦାର ମୁଣ୍ଡ ନଇଁଗଲା । ନିର୍ବିଶଙ୍କ ପ୍ରମଦାର ଦୁଃଖପାଇଁ ସହାନୁଭୂତି ପ୍ରକାଶ କଲେ । ଶେଷରେ ତା'ର ପ୍ରତିଭାର ପ୍ରଶଂସା କରି ତା'ର ସମସ୍ତ ସୁଖ ଦୁଃଖର ଭାଗୀଦାର ହେବାକୁ ବିବାହ ପ୍ରସ୍ତାବ ଦେଲେ । ଅଶୋକାକୁ ଝିଅ କରି ସୁଖୀ ହେବେ ବୋଲି କହିଲେ । ଶେଷରେ ତାଙ୍କର ହୋଇଛି ଆଇନଗତ ବିବାହ । ଡକ୍ଟର ନିର୍ବିଶଙ୍କ ତା'ର ବିବାହିତ ସ୍ୱାମୀ ହୋଇସାରିଛନ୍ତି ବୋଲି ପ୍ରମଦା ତା'ର ବୋଉକୁ ଜଣାଇଦେଇଛି ।

ପ୍ରମଦା ମଧ୍ୟ ବିଲାତ ଗଲେ ଡକ୍ଟର ନିର୍ବିଶଙ୍କଙ୍କ ପ୍ରଥମା ସ୍ତ୍ରୀ ଶ୍ରୀମତୀ ମାର୍ଗାରେଟଙ୍କ ଘରେ ରହିବେ ବୋଲି ଜଣାଇଛି ।

ଧନେଶ ମଧ୍ୟ ଉପଲବ୍ଧି କରିଛନ୍ତି ଯେ ପ୍ରମଦା ଠିକ୍ କରିଛି । ନ ଜାଣିବା ଲୋକେ ଅଲାଜୁକୀ ବା କଳଙ୍କିନୀ କହନ୍ତୁ – ସେଥିପ୍ରତି ତାଙ୍କର ଭ୍ରୂକ୍ଷେପ ନାହିଁ ।

ଆଧୁନିକ ନାରୀର ସ୍ୱାତନ୍ତ୍ର୍ୟ ଅଛି । ସେ ପୁରାତନ ମୂଲ୍ୟବୋଧକୁ ଜାବୋଡ଼ି ଧରି ରହିବାକୁ ପସନ୍ଦ କରେ ନାହିଁ । ନିଜର ଇଚ୍ଛା ମୁତାବକ ସେ ତା'ର ଜୀବନ ଗଢ଼ିପାରେ । ଲେଖକଙ୍କ ଦୃଷ୍ଟିରେ ଯାହା ଜୀବନପାଇଁ କାମ୍ୟ ବା ବାଞ୍ଛନୀୟ ତାହାହିଁ ସତ୍ୟ । ସେଠି ମିଥ୍ୟାଚାର କି ଶିଷ୍ଟାଚାରର ସ୍ଥାନ ନାହିଁ । ଏହି ଜୀବନ ସତ୍ୟକୁ ନିଷ୍ଠାପର ଭାବରେ ରୂପ ପ୍ରଦାନ କରିଛନ୍ତି କଥାଶିଳ୍ପୀ କାହ୍ନୁଚରଣ ।

**କ୍ଷଣ କ୍ଷଣକେ ଆନ**

ପୃଥିବୀରେ ସବୁ ପରିବର୍ତ୍ତନଶୀଳ । ଆଜି ଯେ ରାଜେନ୍ଦ୍ରାସନେ କାଲି ସେ ଫକୀର । ଏକ ସମୃଦ୍ଧ ପରିବାର କାଳର କୁଟିଳ ଗତିରେ କିପରି ବିପର୍ଯ୍ୟସ୍ତ ହୋଇପଡ଼ିଛି, ତା'ର ଚିତ୍ର 'କ୍ଷଣ କ୍ଷଣକେ ଆନ' ଉପନ୍ୟାସରେ ଲେଖକ ଦେଇଛନ୍ତି ।

ମଣିକୁଦ ଗ୍ରାମର ଫଗୁ ଖୁଣ୍ଟିଆଙ୍କର ଏକମାତ୍ର ପୁତ୍ର ଝରିଆ । ଝରିଆ ପିଲାଟି ଦିନରୁ ଉଦ୍ଧତ, ଅମାନିଆ ହୋଇଛି । ଦାଣ୍ଡର କଳି ଘରକୁ ଆଣିଛି । ପୁଅକୁ ବୁଝାନ୍ତି ଫଗୁ । ଝରିଆ ବିଭା ହୋଇଛି କାର୍ତ୍ତିକଙ୍କର କନ୍ୟା ଟଭାକୁ । ଜ୍ୱାଇଁଙ୍କୁ ପାଇ ଖୁସି ହୋଇଥିଲେ କାର୍ତ୍ତିକ । ବୋହୂକୁ ପାଇ ଶାଶୂ ଶ୍ୱଶୁରଙ୍କର ବି ଗୋଡ଼ ତଳେ ପଡ଼ିନି ।

ହଇଜାରେ ଶାଶୂ ଶ୍ୱଶୁରଙ୍କ ଅକାଳମୃତ୍ୟୁ ହୋଇଛି । ଝରିଆ ମଦ ଗଞ୍ଜେଇ ଖାଇଛି । ସେ ଗାଁରେ ଭଣ୍ଡ ବାବାଜିଙ୍କର ଚେଲା ସାଜିଛି । ସୁନାଦେଈକୁ ଆପଣାର କରିଛି ।

ଟଭାର ମାନସିକ ଯନ୍ତ୍ରଣା ବଢ଼ିଛି । ମାଡ଼ ଗାଳି ଖାଇ କେତେ ବା ସହନ୍ତା ? ସେ ଅଭିମାନରେ ବାପ ଘରକୁ ଚାଲିଯାଇଛି । ମାତ୍ର ଝରିଆ ବଦଳି ନାହିଁ । ଟଭା ତା'ର ରୋଗଣା ପୁଅକୁ ଧରି ଫେରିଆସିଛି । ଝରିଆ ପାଖରେ ରହିଛି ।

ଗାଁରେ ଦେଖା ଦେଇଛନ୍ତି ଶିବବାବା । ଗାଁର ଲୋକଙ୍କୁ ଭୁଆଁ ବୁଲାଇ, ଆଖିରେ ଅନ୍ଧପୁଟୁଳି ବାନ୍ଧି ଧନ ଦଉଲତ ବୋହି ନେଇଛନ୍ତି । ଝିଅ-ବୋହୂମାନଙ୍କୁ ଉପଭୋଗ କରିବାକୁ ବି ପଛାଇ ନାହାନ୍ତି ।

ଶିବବାବା ନାମକୁ ମାତ୍ର ସନ୍ନ୍ୟାସୀ ବୋଲାଉଥିଲେ; ମାତ୍ର ସକଳ ପ୍ରକାର ଅପକର୍ମରେ ଲିପ୍ତ ରହୁଥିଲେ । କିନ୍ତୁ ତାଙ୍କୁ ବାଧା ଦେବାପାଇଁ କେହି ପ୍ରସ୍ତୁତ ନ ଥିଲେ । ଲୋକମାନେ ଅନ୍ଧବିଶ୍ୱାସରେ ଆଚ୍ଛନ୍ନ ହୋଇ ତାଙ୍କ କଥାରେ ଭାସି ଯାଉଥିଲେ । ବୁଝିବାକୁ ଚେଷ୍ଟା ବି କରୁ ନ ଥିଲେ କେଉଁଟା ଠିକ୍ ଆଉ କେଉଁଟା ଭୁଲ୍ । ଟଭା ବି ଶିବବାବାଙ୍କ ଚରିତ୍ରକୁ ବୁଝିପାରି ନ ଥିଲା ।

ଟଭା ଝରିଆକୁ ଠିକ୍ ବାଟକୁ ଫେରାଇ ଆଣିବାକୁ ଚେଷ୍ଟା କରିଛି । ଟଭାର ଇତିମଧ୍ୟରେ ପୁଅଟିଏ ହୋଇଛି । ତା'ର ନାମ ଅରକ୍ଷିତ । ସେଇ ହେଇଛି ତା'ର ସାନ୍ତ୍ୱନା ।

ଝରିଆ ଶେଷରେ ରୋଗାକ୍ରାନ୍ତ ହୋଇପଡ଼ିଛି । ଟଭା ବାୟାଣୀ ଆସି ଝରିଆର ସେବାଯତ୍ନ କରିଛି । ଅରକ୍ଷିତକୁ ପଛପଟ ଘରେ ଶୁଆଇଦେଇ ଝରିଆର ସେବାରେ ଲାଗିପଡ଼ିଛି । ପରବର୍ତ୍ତୀ ସମୟରେ ଝରିଆର ନିଦ ଭାଙ୍ଗିଛି । ଟଭାକୁ ଚିହ୍ନିପାରିଛି ଓ ପଚାରିଛି 'ତୁ ଏଠାକୁ ଆସିଲୁ କିପରି' ?

ଟଭା କବିରାଜ ଡକାଇଛି ଓ ଝରିଆ ଭଲ ହେବାପାଇଁ ଜଗନ୍ନାଥଙ୍କ ପାଖେ ଅଳି କରିଛି ।

**ମାୟାବର୍ତ୍ତ**

କାହ୍ନୁଚରଣ ତାଙ୍କର ଅର୍ଦ୍ଧଶତାଧିକ ଉପନ୍ୟାସରେ ସବୁଶ୍ରେଣୀର ମଣିଷର କଥା ଓ ବ୍ୟଥା ଚିତ୍ର ଦେଇ ଓଡ଼ିଶାର ସାମାଜିକ ଜୀବନର ଏକ ପୂର୍ଣ୍ଣରୂପ ପ୍ରଦାନ

କରିଛନ୍ତି । 'ମାୟାବର୍ତ୍ତ' ଉପନ୍ୟାସଟି ଏକ କାଠ କାରିଗରର ଦୁଃଖଦ ଜୀବନକୁ କେନ୍ଦ୍ରବିନ୍ଦୁ କରି ରଚିତ ।

ଅଖ୍ୟାତ ବିଜିକୁଦ ଗାଁର କାଠ କାରିଗର ଆନନ୍ଦ । ଘରେ ତା'ର ଶ୍ୱାସରୋଗୀ ବୁଢ଼ା ବାପ । ମା' ବାତ ରୋଗଣୀ । ବୋହୂ ହୋଇ ଆସିଥିଲା ସେବତୀ । ବାପ ବିନନ୍ଦ ! ଦିନେ ଭୀମ-ବଲୁଆ ଥିଲା । ଚାଷ କାମରେ ଧୁରନ୍ଧର ଥିଲା । କାଠ କାମରେ ତା'ର ସଉକ ଥିଲା । ଆଲୁଅ ଲଗାଇ ଘରେ କାଠ ଠୁକୁ ଠୁକୁ କରୁଥିଲା । ବରାଦ ମୁତାବକ ଟେବୁଲ, ଚଉକି, ପଲଙ୍କ ପ୍ରଭୃତି କରୁଥିଲା, ହେଲେ ଅଭାବ ମେଣ୍ଟୁ ନ ଥିଲା । ଦିନକୁ ଦିନ ସେ ଦୁର୍ବଳ ହୋଇପଡ଼ିଲା । ତା'ରି ପୁଅ ଆନନ୍ଦ । ପାଠ ମୁଣ୍ଡରେ ପଶିଲା ନାହିଁ । ଚାଷ କାମ ଛାଡ଼ି ରୋଗଣା ବାପର କୁହାରେ ଘରକାମରେ ବାପା ବୋଉକୁ ସାହାଯ୍ୟ କଲା । କୁଳବେଉସା ନ ହେଲେ ବି ବାପର ସଉକିଆ କାଠ କାମ ଶିଖିଲା । ଟିକିଏ ବୟସ ହେଲାରୁ ବାପ ବିନନ୍ଦକୁ ସେଥିରେ ସାହାଯ୍ୟ କଲା । ସୁଖେ ଦୁଃଖେ ଦିନ କଟିଲା । ଆନନ୍ଦକୁ କୋଡ଼ିଏ ଚାଲିଲା । ବିଲବାରି କାମ, ଘର ପାଇଟି ବି କରୁଥାଏ । ତଥାପି ବାପର ନିହଣ ମୁଗୁର ବାରିସିକୁ ହାତଛଡ଼ା କରି ନ ଥିଲା । କିଛି କାଠ କାମ ବି କଲା । ଘର କାମ କରିବାକୁ ଶେଷରେ ବିନନ୍ଦ ସେବତୀକୁ ବୋହୂ କରି ଆଣିଲା ।

ସେବତୀ ଘରେ ପାଦ ନ ଦେଉଣୁ ସମସ୍ତଙ୍କର ଦୁଃଖ ଗଲା । ସେବତୀ ଶାଶୂ ଶ୍ୱଶୁରଙ୍କ ସେବା କଲା । ହିସାବ ରଖିଲା । ରାତିରେ ପୁରାଣ ବି ଶୁଣେଇଲା । ପେଟରେ ବି ପିଲା ରହିଲା । ଝିଅଟିଏ ହେଲା । କ୍ରମେ ଅଭାବ ବଢ଼ିଲା । ଆନନ୍ଦ ଗାଁର ରଥ ମହାରଣାଙ୍କ ସଙ୍ଗେ କଲିକତା ଗଲା । ଜୀବନ ମୂର୍ଚ୍ଛା କାଠ କାରଖାନାରେ କାମ କଲା । ବାପ ନାମରେ ଘରକୁ ରୀତିମତ ଟଙ୍କା ପଠାଇଲା । ତିନି ଚାରି ମାସରେ ଚାରି ପାଞ୍ଚ ଦିନ ଛୁଟି ନେଇ ଆସେ । ପୁଣି କଲିକତା ଫେରିଯାଏ ।

ଗାଁରେ ହେଲା ଝଡ଼ତୋଫାନ । ଘରେ ପାଣି ପଶିଲା । ଚାହୁଁ ଚାହୁଁ ଅଗଣାରେ ନାକବୁଡ଼ ପାଣି ହେଲା । ଅକାତକାତ ପାଣିରେ ସେବତୀ ଭାସିଗଲା । ବାପ ମା' କୁଆଡ଼େ ଗଲେ କେହି ଜାଣିଲେନି ।

ଆନନ୍ଦ କଲିକତାରୁ ଆସିଲା । ଗାଁର ଚିହ୍ନବର୍ଣ୍ଣ ନ ଥିଲା । ବୁଝିବାକୁ ବାକି ରହିଲା ନାହିଁ ଯେ ତା'ର ସଂସାର ଭାସିଯାଇଛି । କେହି ବଞ୍ଚି ନାହାନ୍ତି । ଅଧା ବାଇଆ ହୋଇଯାଇଥିଲା ଆନନ୍ଦ ।

ବାପା ବୋଉ, ସ୍ତ୍ରୀ, ସେବତୀକୁ ଖୋଜୁ ଖୋଜୁ ଅନ୍ଧାର ଭିତରେ କେଉଁ ଡାଳ ତା' ଉପରେ ଭାଙ୍ଗି ପଡ଼ିଲା । ସେ ତଳେ ପଡ଼ିଲା । ପ୍ରଚୁର ରକ୍ତ କ୍ଷୟ ଯୋଗୁଁ ସେ ମୂର୍ଚ୍ଛିତ ହୋଇ ପଡ଼ିଲା । ପରଦିନ ଉଦ୍ଧାରକାରୀ ଦଳ ତା'ର ଦେହକୁ ଠାବ କରି ତାକୁ

ଡାକ୍ତରଖାନାକୁ ପଠାଇ ଦେଇଥିଲେ । ଆୟୁଷ ଥିଲା, ବଞ୍ଚିଗଲା । କିନ୍ତୁ ମୁହଁ ବିକୃତ ହୋଇଗଲା । ଅକ୍ଷମ ଦେହ ଧରି ସେ ହେଲା ଦାଣ୍ଡର ଭିକାରି ।

ଦୁଇ ମାସକାଳ ବାପା ବୋଉ ସେବତୀକୁ ଆନନ୍ଦ ଖୋଜିଲା । ପଚରା ଉଚୁରା କଲା । କେଉଁଠି ତା' କୁଟୁମ୍ବର କାହାରି ପତ୍ତା ପାଇଲା ନାହିଁ । ସେ ନିଶ୍ଚିତ ହେଲା ଯେ ସେମାନେ ମରିଯାଇଛନ୍ତି ।

ଦେହ ମିହନ୍ତ କରି ମଫସଲରେ କାମ କରି ପେଟ ପୋଷିବାକୁ ଆନନ୍ଦ ଥିଲା ଅକ୍ଷମ । କାଠ କାମରେ ପାରଙ୍ଗମ ବୋଲି କଲିକତାରେ ପ୍ରଶଂସା ପାଉଥିଲା । ସେଇ କାମରେ ହାତ ଦେଇ ପେଟ ପୋଷିବାକୁ ସେ କଲିକତା ଗଲା ।

କଲିକତାରେ ତା'ର ପୂର୍ବ ପରିଚିତ ଦୁଲାଳୀ ମୂଲିଆଣୀ ଘରେ ଆନନ୍ଦ ପହଞ୍ଚିଲା । ଦୁଲାଳୀ ତାକୁ ଆଶ୍ରୟ ଦେଲା । ପୁଣି ହରି ମିସ୍ତ୍ରୀକୁ କହି ତାଙ୍କ ପାଖରେ କାମ ଯୋଗାଡ଼ କରିଦେଲା । ସେ ହରି ମିସ୍ତ୍ରୀର ସହକର୍ମୀ ହୋଇ ରହିଲା । ଦୁଲାଳୀ ସଙ୍ଗେ ଘନିଷ୍ଠତା ବି ହେଲା । ଦୁଲାଳୀ 'ପୁଅ ଆଉ ଝିଅଟିଏ କେଉଁଠୁ ଆଣିଲା। ସେଇ ହେଲା ତାଙ୍କର ସଂସାର ।

ଆନନ୍ଦ ସେବତୀକୁ ଦେଖିବାର ଆଶା ଛାଡ଼ିଦେଇଥିଲା । କିନ୍ତୁ ସେବତୀ ପ୍ରଳୟ ଜଳରେ ବୁଡ଼ି ମରି ନ ଥିଲା । ସେ ଉଦ୍ଧାର ପାଇଥିଲା । ତାକୁ ଯେଉଁମାନେ ଉଦ୍ଧାର କରିଥିଲେ, ସେମାନେ ତାକୁ ଆଶ୍ରୟପ୍ରାର୍ଥୀ ଶିବିରରେ ଛାଡ଼ି ଦେଇଥିଲେ ।

ସେବତୀ ମରଣ ମୁହଁରୁ ବଞ୍ଚିଲା ସତ, କିନ୍ତୁ ଆରୋଗ୍ୟ ହେବାକୁ କେତେ ଦିନ ଲାଗିଗଲା । ଆରୋଗ୍ୟ ହେବା ପରେ ତାକୁ ବିଦା କରିଦେବାର ସ୍ଥିର ହେଲା । ସେଇ ଡାକ୍ତରଖାନାରେ ଆଉ ଗୋଟାଏ ବେଡ୍‌ରେ ସୁମତିଦେବୀ ଥିଲେ । ସେ ସୁସ୍ଥ ହେଲାପରେ ସେବତୀର ଆଶ୍ରୟଦାତ୍ରୀ ହେଲେ । ସୁମତିଦେବୀଙ୍କ ସ୍ୱାମୀ କଲିକତାରେ ଡାକ୍ତର ଥିଲେ । ସେବତୀ ସେଠାରେ ରହିଲା । ସୁମତିଦେବୀ ତାକୁ ପାଠ ପଢ଼ାଇଲେ । ଶିକ୍ଷିତା କଲେ । ସୁମତିଦେବୀ ଶେଷକୁ ରୋଗାକ୍ରାନ୍ତ ହେଲେ । ମୃତ୍ୟୁ ପୂର୍ବରୁ ସେବତୀକୁ ସ୍ୱାମୀ ଡାକ୍ତରଙ୍କ ସାଙ୍ଗେ ଛନ୍ଦି ଦେଲେ । ଅନିଚ୍ଛାସତ୍ତ୍ୱେ ସେବତୀ ରାଜି ହେଲା ଓ ହେଲା ଡାକ୍ତରବାବୁଙ୍କ ପତ୍ନୀ ।

ସେବତୀଦେବୀ ନିଜ ଗୃହ ନିର୍ମାଣପାଇଁ ହରି ମିସ୍ତ୍ରିକୁ ଲଗାଇଲେ । ଆନନ୍ଦ ସେଠି କାମ କରୁଥାଏ । ଆନନ୍ଦ ଚିହ୍ନିଲା ସେବତୀକୁ । ସେବତୀଦେବୀ ଚିହ୍ନିଲେ ପୂର୍ବ ସ୍ୱାମୀକୁ । କିନ୍ତୁ କେହି କାହାରିକୁ ଚିହ୍ନା ଦେବାକୁ ଉଚିତ ମନେ କରି ନାହାନ୍ତି । ସେବତୀଦେବୀ ଶେଷରେ ଆନନ୍ଦଙ୍କର ବାପା ବିନନ୍ଦ ଦେଇଥିବା ସୁନା ହାରଟିକୁ ଆନନ୍ଦର ଘରଣୀ ଦୁଲାଳୀପାଇଁ ପଠାଇ ଦେଇଛନ୍ତି ।

**ସତ୍ୟବତୀ**

ପୁରାଣର 'ସତ୍ୟବତୀ' ନାମକୁ ନେଇ କାହ୍ନୁଚରଣ ଏହି ଉପନ୍ୟାସ ରଚନା କରି ନାହାନ୍ତି । ସତ୍ୟବତୀ ମଧ୍ୟ ଉପନ୍ୟାସର ପ୍ରଧାନ ଚରିତ୍ର ନୁହନ୍ତି । ଉପନ୍ୟାସର ପ୍ରଧାନ ଚରିତ୍ରଭାବେ ଦେଖାଦେଇଛନ୍ତି ଅଦ୍ରିକା । ସେ ସତ୍ୟବତୀଙ୍କର ମାଆ । ଅଦ୍ରିକାକୁ କେନ୍ଦ୍ର କରି ଗଢ଼ିଉଠିଛି ଆର୍ଯ୍ୟପୁତ୍ର ବସୁ । ଅଦ୍ରିକା କହିଛନ୍ତି – "ମୁଁ ସେଧିରାଜ୍ୟର ଅଧିପତି, ବସୁରାଜାଙ୍କର ଉଦାର ବିଶାଳ ମନରେ ଟିକିଏ ସ୍ଥାନ ପାଇଛି । ସେତିକି ମୋ ପାଖରେ ଆକାଶର ଚନ୍ଦ୍ରମା ଲାଭ କଲାପରି ମଣିଛି । ମୁଁ ବନବାସିନୀ ନୁହେଁ, ସ୍ୱାଧୀନ ବନ୍ଧନହୀନା ଶବରକନ୍ୟାର ସରଳ ଜୀବନ ଅତିବାହିତ କରିବାକୁ ଚାହେଁ ମହାରାଜ । ପ୍ରକୃତରେ କନ୍ୟା, ପ୍ରେୟସୀ ଓ ମାତା ହେବାକୁ ଚାହେଁ ।"

'ସତ୍ୟବତୀ' ହେଉଛି ଜୀବନ ପ୍ରବାହର ପରିଣତି ।

**ତାରକା**

ବିନୋଦବାବୁଙ୍କର ଝିଅ ସୁକାନ୍ତି । ବି. ଏ. ପାସ୍ କଲାପରେ ସ୍କୁଲ ଇନ୍‌ସପେକ୍ଟର ଶ୍ରୀକାନ୍ତବାବୁଙ୍କ ପୁଅ ସୁଶାନ୍ତ ସହ ତା'ର ବିବାହ ସ୍ଥିର ହୋଇଛି । କିନ୍ତୁ ଶ୍ରୀକାନ୍ତବାବୁଙ୍କର ଦୁର୍ଘଟଣାରେ ମୃତ୍ୟୁ ହୁଏ । ସୁକାନ୍ତି ମଙ୍ଗୁଳା କନ୍ୟା ହୋଇଛି । ତାକୁ ଲୋକଙ୍କଠାରୁ ବାର କଥା ଶୁଣିବାକୁ ପଡ଼ିଛି । ଏମ୍. ଏ. ପାସ୍ କଲାପରେ ସୁକାନ୍ତି ପ୍ରଗତି ମହାବିଦ୍ୟାଳୟରେ ଅଧ୍ୟାପିକା ହୋଇଛି । ସେ ରାତି ଅଧରେ ନାଗ ଆଉ ବିଲୁଆଙ୍କ କବଳରୁ ଉଦ୍ଧାର କରିଛନ୍ତି ଗୋଟିଏ ଶିଶୁ କନ୍ୟା । ତାକୁ ପାଳିଛନ୍ତି । ନାଁ ରଖିଛନ୍ତି ତାରକା ।

ମହାବିଦ୍ୟାଳୟର ଅଧ୍ୟକ୍ଷା ଗାୟତ୍ରୀଦେବୀ । ସେ ସୁକାନ୍ତିଙ୍କର ଜୀବନ କାହାଣୀ ଜାଣିପାରିଛନ୍ତି । ତାରକାର ପିତୃତ୍ୱର ପରିଚୟ ଦେବାକୁ ସେ ସୁକାନ୍ତି ସହିତ ସୁଶାନ୍ତବାବୁଙ୍କ ସଙ୍ଗେ ବିବାହ ପ୍ରସ୍ତାବ ପକାଇଛନ୍ତି । ଯେଉଁ ତାରକାକୁ ସେ ପାଳି ଆଣିଛନ୍ତି ତାହାର ପିତୃତ୍ୱର ପରିଚୟ ଦେବାକୁ ପରିଣତ ବୟସରେ ସୁକାନ୍ତି ବିବାହ କରିଛନ୍ତି ସୁଶାନ୍ତବାବୁଙ୍କୁ ।

ଉପନ୍ୟାସରେ ସ୍ୱାମିତ୍ୱ ଅପେକ୍ଷା ପିତୃତ୍ୱର ଜୟଗାନ କରାଯାଇଛି ।

**ଇତିହ**

୧୯୪୨ ମସିହାରେ ଗଞ୍ଜାମର ପାଲୁରରେ ପ୍ରବଳ ବାତ୍ୟା ପ୍ରଳୟର ରୂପ ନେଇଥିଲା । ସେତେବେଳେ କାହ୍ନୁଚରଣ ଛତ୍ରପୁରରେ ଅବସ୍ଥାନ କରୁଥିଲେ । ପ୍ରକୃତିର ତାଣ୍ଡବଲୀଳା ସେ ନିଜ ଆଖିରେ ଦେଖିଥିଲେ । ୧୯୪୬ ମସିହାରେ ସିଭିଲ୍ ସପ୍ଲାଇଜ୍ ଅଫିସର ଥିଲାବେଳେ ବନ୍ୟା ପ୍ରପୀଡ଼ିତମାନଙ୍କୁ ରିଲିଫ୍ ଦେବାର ଅନୁଭୂତିର ଦୃଶ୍ୟରୁ 'ଇତିହ'ର ପରିକଳ୍ପନା ।'

'ଇତିହ' ଉପନ୍ୟାସର କଥାବସ୍ତୁର ସମୟ ମାତ୍ର ଗୋଟିଏ ଦିନ ଓ ଗୋଟିଏ ରାତି ।

'ଇତିହ' ଗଢ଼ି ଉଠିଛି ଦୁଇଟି ପରିବାର – ପଲେଇ ପରିବାର ଓ ମହାପାତ୍ର ପରିବାରର ତିକ୍ତ ସମ୍ପର୍କକୁ ନେଇ । ରଘୁ ମହାପାତ୍ରଙ୍କ ସହ ପଲେଇ ବଂଶର ଅଲିଅଳୀର ବିବାହ ପ୍ରସ୍ତାବ ଭାଙ୍ଗି ଯାଇଛି । ତା'ର ବିବାହ ହୋଇଛି ମୁକୁନ୍ଦପୁରର ଜେନା ପରିବାରରେ । ସାତୋଟି ବର୍ଷ କାଟିବା ପରେ ଅଲିଅଳୀ ହୋଇଛି ବିଧବା । ଫେରିଆସିଛି ତା'ର ନିଜ ଗ୍ରାମ ଭ୍ରମରପୁରକୁ । ତା'ର ଭାଇ ଶିବ ଗଞ୍ଜେଇ ଆଦି ନିଶାଦ୍ରବ୍ୟ ଖାଇ ସର୍ବସ୍ୱ ହରାଇ ବସିଛି । ତା'ର ପୁଅ ବାମନ ବଗିଚାର ମାଳୀ ହୋଇଛି । ଅପପ୍ରଚାର ହୋଇଛି ଯେ ବାମନର ମୃତ୍ୟୁ ହୋଇଯାଇଛି । ମାତ୍ର ଅଲିଅଳୀ ତାକୁ ବିଶ୍ୱାସ କରିନି । ତା'ର ବିଶ୍ୱାସ, ବାମନ ବଞ୍ଚିଛି ।

କୋଡ଼ିଏ ବର୍ଷ ପରେ ବାମନ ଝିଅ ଅନୁରାଧା ଓ ପୁଅ ଆନନ୍ଦକୁ ଧରି ଗ୍ରାମକୁ ଫେରିଛି । ଗାଁରେ ରଘୁ ମହାପାତ୍ରଙ୍କ ପୁଅ ଅଲେଖ ସହିତ ସମ୍ପର୍କ ଗଢ଼ିଉଠିଛି । ରଘୁ ମହାପାତ୍ର ତାଙ୍କ ପୁଅ ଅଲେଖର ବିବାହପାଇଁ ପ୍ରସ୍ତାବ ଆଣିଛନ୍ତି । ମାତ୍ର ବାମନ ରୋକଠୋକ୍ ମନା କରିଦେଇଛି । ଗୋକୁଳ ପାତ୍ରଙ୍କ ପୁଅ ନକୁଳି ସହ ଝିଅର ବିବାହ ଦେବାକୁ ପ୍ରସ୍ତାବ ଆଣିଛନ୍ତି । ବାମନ ଗାଁକୁ ଫେରିଲାବେଳେ ହୋଇଛି ଝଡ଼ ବର୍ଷାର ତାଣ୍ଡବଲୀଳା । ଅନୁରାଧାର ଛୋଟ ଦେହଟି ବରୁଣପୁରକୁ ଚାଲିଯାଇଛି । ସେମିତି ଅଲେଖ ବି ନାହିଁ । ସେ ବି କେତେ ଦୂରକୁ ଭାସି ଯାଇଛି । ପ୍ରେମ ଏଇଠି ରହିଅଛି ଅଧା । ଜାତି ଅଭିମାନର 'ଇତିହ' ଘଟିଛି ।

**ମନ ଜାଣେ ପାପ**

ତାଳଚେର ଗଡ଼ରେ ବ୍ରାହ୍ମଣୀ ନଦୀ କୂଳରେ ତା'ର ଜନ୍ମ । ନାମ ରଙ୍ଗବତୀ । କେତେବର୍ଷର ମରୁଡ଼ି ପରେ ହଇଜାରେ ରଙ୍ଗବତୀର ବାପ ମଲେ । ରଙ୍ଗବତୀକୁ ବିବାହ କରିଦିଆଗଲା ଧନୀ ବ୍ୟବସାୟୀ, ପାଞ୍ଚୋଟି ସନ୍ତାନର ଜନକ ତା'ର ମାମୁ ଲୋକନାଥ ସଙ୍ଗେ । କର୍ମଦୋଷରୁ ସେ ବାର ହୀନସ୍ତା ହେଲେ । ଜେଲ ଭୋଗିଲେ । ଶେଷରେ ଆମ୍ବ ତୋଟାର ଡାଳରେ ଦଉଡ଼ି ଲଗାଇ ଝୁଲିପଡ଼ିଲେ । ରଙ୍ଗବତୀ ଆସି ବୈରାଗୀବାବୁଙ୍କ ପାଖରେ ଆଶ୍ରା ନେଲା । ରଙ୍ଗବତୀର ଝିଅ ବିଜୁଳି । ତା'ର ପୁତୁରା ବୃନ୍ଦାବନ । ଭାଇ ଭଉଣୀ ପରି ଚଳୁଥିଲେ । ଏକାଠି ଖେଳୁଥିଲେ, ବୁଲୁଥିଲେ । ବଡ଼ ହେଲାରୁ ସେଇ ବୃନ୍ଦାବନ ବିଜୁଳିକୁ ବାହାହେବାକୁ ଲଗାଇଲା । ରଙ୍ଗବତୀ ରାଜି ହେଲା ନାହିଁ । ସେ ଚାହୁଁଥିଲା ବିଜୁଳିକୁ ବାହାଦେବାକୁ ଦିବ୍ୟଲୋଚନଙ୍କ ସଙ୍ଗେ । ସେ ଶିକ୍ଷିତ, ଉଦାର, ସହାନୁଭୂତିଶୀଳ ପୁଣି କର୍ମଠ । ସେ ଭାବିଥିଲା ଯେ ସେ ବିଜୁଳିକୁ ଦିବ୍ୟଲୋଚନ ସଙ୍ଗେ ବାହାଦେଇ ନିଃଶ୍ଚିନ୍ତ ହେବ । ଦିବ୍ୟଲୋଚନଙ୍କ

ସଙ୍ଗେ ଘନିଷ୍ଠତା ହୋଇଛି । ଦିବ୍ୟଲୋଚନର ସ୍ନେହରେ ରଙ୍ଗବତୀ ଓ ବିଜୁଳି କିଣି ହୋଇଯାଇଛନ୍ତି । ରଙ୍ଗବତୀ ମଧ ତାଙ୍କୁ ପୁଅ ପରି ସ୍ନେହ କରିଛି । ଦିବ୍ୟଲୋଚନଙ୍କୁ ବ୍ୱାଇଁ କରିବାକୁ ଚାହିଁଥିଲେ । ଦିବ୍ୟଲୋଚନ ବି ବିଜୁଳିର ସୁରକ୍ଷାପାଇଁ କଟକ ନେଇ ଯିବାକୁ ପ୍ରସ୍ତାବ ଦେଇଛନ୍ତି । ବିଜୁଳି ବି ସ୍ୱୀକୃତି ଦେଇଛି । ବିଶ୍ୱାସଘାତକ ଦିବ୍ୟଲୋଚନ କିନ୍ତୁ ବିଜୁଳିର ଅସହାୟତାର ସୁଯୋଗ ନେଇଛନ୍ତି । ଆଜି ବିଜୁଳି ନରକର ସାତତାଳ ପଙ୍କ ଭିତରକୁ ପଶିଛି ।

ମଣିଷ ମାତ୍ରକେ ଭୁଲ ହୁଏ । ଜାଣତରେ ହେଉ କିମ୍ବା ଅଜାଣତରେ ହେଉ ସମସ୍ତଙ୍କର ଭୁଲ ହୁଏ । ବିଜୁଳିର କ୍ଷଣିକ ଭୁଲ ଯୋଗୁଁ ସର୍ବନାଶ ହୋଇଛି । କୋଳରେ ଧରିଛି ଦିବ୍ୟଲୋଚନଙ୍କ ଶିଶୁପୁତ୍ରକୁ ।

ଦିବ୍ୟଲୋଚନ ବିରାଡ଼ି ବୈଷ୍ଣବ ସାଜିଛନ୍ତି । ପାଣିରେ ସର ପକାଇଲା କଥା କହି ବିଜୁଳିକୁ ଘରଣୀ କରିବାକୁ ଦୂର ମଫସଲ ଗାଁରୁ ତାକୁ ଓ ତା'ର ନିଃସହାୟ ମାଆକୁ ଫୁସୁଲେଇ କରି ଆଣି କଟକ ସହରରେ ରଖିଛନ୍ତି । ଯେମିତି ଜାଣିଛନ୍ତି ଯେ ତାଙ୍କର ଛୁଆ ବିଜୁଳି ପେଟରେ ଅଙ୍କୁରୁଛି, ଟଙ୍କା କେତୁଟା ଫୋପାଡ଼ି ଦେଇ ଖସି ପଳାଇଛନ୍ତି । ବିଜୁଳି ଶାରଙ୍ଗର ହାତ ଧରି ରହିଛି । ଶାରଙ୍ଗ ବି ତା'ର ଅତୀତ କଥା ପଚାରି ନାହିଁ ।

ବିଜୁଳି ପ୍ରସୂତିଭବନକୁ ଯାଇଛି — ଯେଉଁଠି ଜନ୍ମ ହୋଇଛି ତା'ର ଶିଶୁପୁତ୍ର । ଟିକି ପିଲାଟିର ତଣ୍ଟି ଚିପି ମାରି ଦେବାକୁ ଚାହିଁଛି; ହେଲେ ପାରି ନାହିଁ । କିନ୍ତୁ ସେଇ ପ୍ରସୂତି ଭବନରେ ଦିବ୍ୟଲୋଚନଙ୍କ ସ୍ତ୍ରୀ ବିଚିତ୍ରା ଅଚେତା ହୋଇ ପଡ଼ିଥିଲାବେଳେ ତାଙ୍କ ପେଟରୁ ଜନ୍ମ ହୋଇଥିବା ଶିଶୁକୁ ନେଇ ଆସିଚି । ନିଜ ଜନ୍ମ କଲା ପୁଅକୁ ବିଚିତ୍ରାଙ୍କ ପାଖେ ଶୁଆଇ ଦେଇଛି ।

ପରେ ଅବଶ୍ୟ ବିଜୁଳି ଏହି ଭୁଲପାଇଁ ଅନୁତାପ କରିଛି । ସ୍ୱାମୀ ଶାରଙ୍ଗକୁ ଲୁଚାଇ ଏହି କାମ କରିଥିବାରୁ ତା' ମନରେ ବେଳେ ବେଳେ ବିଶ୍ୱାସଘାତିନୀ ବୋଲି ଧାରଣା ଜନ୍ମିଛି । ଫଳରେ ସେ ଅନୁତାପରେ ଜର୍ଜରିତ ହୋଇ ଜଳି ପୋଡ଼ି ମରିଛି ।

ବିଜୁଳି ଜାଣେ ଯେ ସେ କେବଳ ଦିବ୍ୟଲୋଚନ ଉପରେ ପ୍ରତିଶୋଧ ନେବାପାଇଁ ତାଙ୍କ ପୁଅକୁ ଆଣିଥିଲା; ମାତ୍ର ସେ ପ୍ରତିଶୋଧ ନେଇ ନାହିଁ ବରଂ ତାକୁ ତା'ର ଜୀବନର ଗ୍ରନ୍ଥିରେ ବାନ୍ଧି ରଖି ଦିବ୍ୟଲୋଚନର ସ୍ମୃତିକୁ ମନେ ପକାଉଛି । ସତେ ଯେପରି ସେ ତାକୁ କେବେବି ଛାଡ଼ି ପାରିବ ନାହିଁ !

ବିଚିତ୍ରାଙ୍କ ଲୁହ ଦେଖି ମଧ ବିଜୁଳିର ଅନ୍ତରାତ୍ମା କାନ୍ଦିଉଠିଛି । ସେ ନିଜର କୃତକର୍ମପାଇଁ ଅନୁତାପ କରିଛି । ସେ ଭାବିଛି ପିଲା ବଦଳାଇ ସେ ଭୁଲ କରିଛି ।

ଗରିବ ହେଲେ ସୁଦ୍ଧା ସେ ପିଲା ତା'ର । ତେଣୁ ସେ ଯେଉଁ ପାପ କରିଛି ସେହି ପାପର କ୍ଷମା ନାହିଁ ।

ଏକ ଅନୁତପ୍ତା ମା'ର ମନସ୍ତତ୍ତ୍ୱକୁ ଅତି ଜୀବନ୍ତ ଭାବରେ ରୂପ ଦେଇଛନ୍ତି କାହ୍ନୁଚରଣ ।

**ତାପସୀ**

'ତାପସୀ' ଉପନ୍ୟାସରେ ଲେଖକ ସର୍ବାଧିକ ନିର୍ଯାତିତା, ଅତ୍ୟାଚାରିତା ନହୁଲୀର କରୁଣ କାହାଣୀ ଶୁଣାଇଛନ୍ତି ।

ରାଉତପାଟଣାର ପରଶୁ ଜେନା ମୂଲିଆ, ବେଠିଆ ଥିଲେ ରାଉତରା ବଂଶର । ପରେ ଭାଗଚାଷୀ ହେଲେ । ତାଙ୍କର ତେର ବର୍ଷର ଝିଅ ନହୁଲୀ ଆଉ ତା'ର ସାଙ୍ଗ ଚନ୍ଦୁରୀ ଗାଧୋଇଲାବେଳେ ପହଁରିବାକୁ ଚେଷ୍ଟା କରୁଥିଲେ । ପହଁରି ପହଁରି ଫୁଲ ତୋଳିଲାବେଳେ ଲଟାରେ ଗୋଡ଼ ଛନ୍ଦି ହୋଇଗଲା । ମରଦ ମାଇପେ ଜମା ହୋଇ ଖାଲି ହାଉ ହାଉ ହେଉଥିଲେ । ବିଜୁଳି ବେଗରେ ରାଉତରା ବଂଶର ଦୁଃଖନ ପାଣିକୁ କୁଦା ମାରି ଡେଇଁଚି ଆଉ ନହୁଲୀକୁ ପାଣିରୁ ଟାଣିଆଣିଛି । ସେହି ଦିନଠାରୁ ଦୁହେଁ ଦୁହିଁଙ୍କି ଭଲ ପାଇଛନ୍ତି ।

ପରଶୁ ଜେନା ଦୁଃଖନକୁ ଘରେ ଛାଡ଼ିଆସିଲାବେଳକୁ ସାପ କାମୁଡ଼ିଛି । ଦୁଃଖନ ଧାଇଁଯାଇଛି ବାରଙ୍ଗ – ଡାକ୍ତର ଡାକିବାକୁ । କିନ୍ତୁ କିଛି ଫଳ ହୋଇନି । ପରଶୁ ଜେନାଙ୍କ ଅକାଳ ମୃତ୍ୟୁ ହୋଇଛି ।

ନହୁଲୀ ବଡ଼ ହୋଇଛି । ତା'ର ବିବାହ ପ୍ରସଙ୍ଗ ପଡ଼ିଛି । ଗାଁର ବାହାପିଆ ଚୁଗୁଲିଆ ଜୟୀ ନାୟକ ଚଞ୍ଚକତା କରି ସାଆନ୍ତପାଟଣାର ଛତରା ବଜାରୀ ମଦୁଆ ଆନନ୍ଦଙ୍କ ସଙ୍ଗେ ପକାନ୍ତି । ତାଙ୍କର ପ୍ରଥମା ସ୍ତ୍ରୀ ମାଧୁରୀ ମଦୁଆ ସ୍ୱାମୀଙ୍କ ଅତ୍ୟାଚାର ସହି ନ ପାରି ଆତ୍ମଘାତିନୀ ହୋଇଥିଲେ । ଦୁଃଖନଭାଇ ସବୁ କଥା ଜାଣିଥିଲେ ମଧ୍ୟ ଏହି ପ୍ରସ୍ତାବର ବିରୋଧ କରି ନାହିଁ । ସବୁ କାମରେ ଯୋଗ ଦେଇ ଯେମିତି ଦୂରେଇ ରହିଛି । ବାହାଘର ହୋଇଛି ।

ଆନନ୍ଦ ବଡ଼ ଘରର ପୁଅ । ଛତରା ବଜାରୀଙ୍କ ସଙ୍ଗେ ମିଶନ୍ତି । ମଦ ତ ଖାଉଥିଲେ ; ପୁଣି ବାହାଘର ପରେ ବେଶି ବେଶି ଖାଇଲେ । ମଦ ଖାଇ ନହୁଲୀ ଉପରେ ଅଦଉତି କରନ୍ତି । ଛାଞ୍ଚୁଣି, ବାଡ଼ି, ଜୋତା– ଯାହା ତାଙ୍କ ହାବୁଡ଼ରେ ପଡ଼େ ତାହା ବାଦ୍ ଯାଏ ନାହିଁ । ନହୁଲୀ ସବୁ ସହେ । ସକାଳେ ଚାକରାଣୀ ଶୋଭା ମାଡ଼ ହୋଇଥିବା ସ୍ଥାନରେ ତେଲମାଲିସ କରେ ।

ନିତି ମଦ ଖାଇବାପାଇଁ ଟଙ୍କା ଦରକାର ହୁଏ । ନହୁଲୀକୁ ମାଗନ୍ତି । ଡରି ମରି ଦିଏ । ଗହଣାଗାଣ୍ଠି ବି ଛଡ଼ାଇ ନିଅନ୍ତି । ନ ଥିଲେ କି ନ ଦେଇ ପାରିଲେ ବିଧା ଚାପୁଡ଼ା, ଚୁଟି ଘୋଷରା ଚାଲେ । ତାକୁ ବି ସହିଛି ନହୁଲୀ ।

ନହୁଲୀର ପୁଅଟିଏ ବି ହୋଇଥିଲା । କିନ୍ତୁ ପିଚ୍ଛୁଳା ବାତରେ ତା'ର ମରଣ ହେଲା । ଯାହା ଡାକ୍ତରୀ ଖର୍ଚ୍ଚ ତ ହେଲା, ଡାକ୍ତର ଡାକିବା ବାହାନାରେ ମଦୁଆ ସ୍ୱାମୀ ଟଙ୍କା ନେଲେ । ତା'ର ହିସାବ ଦେଲେ ନାହିଁ ।

ନହୁଲୀର ସଉତୁଣୀ ମାଧୁରୀଦେବୀଙ୍କ ପୁଅ ଶୋଭନ । ତାକୁ ନହୁଲୀ ପୁଅ ପରି ପାଳୁଥିଲା । ତା' ବି ସ୍ୱାମୀ ସହିପାରୁ ନ ଥିଲେ । ଶୋଭନକୁ ତା' ପାଖରେ ଦେଖିଲେ ବଜ୍ରମୁଠା ନୁଆଁଉଥିଲେ ନହୁଲୀ ପିଠି ଉପରେ, ତେବେ ସବୁ ଦୁଃଖ ସହୁଥିଲା ସେ । ବୋଉ ପିଲାଦିନେ ଶିଖାଇଥିଲା – ପତି ପରମଗୁରୁ । ନହୁଲୀ ତାକୁ ଅମାନ୍ୟ କରିବ କିପରି ?

ମା' ଆକଟନ୍ତି । ତାକୁ ବି ସ୍ୱାମୀ ଶୁଣିଲେ ନାହିଁ । ଟଙ୍କା ନ ଦେବାରୁ ଦିନେ ଜୋତା ପିନ୍ଧା ପାଦରେ ଗୋଇଠା ମାରି ମା'ଙ୍କୁ ଅଚଳ କରିଦେଲେ । ସେହି ଅଚଳ ଶାଶୂ ବୁଢ଼ୀଙ୍କର ସବୁ ସେବା ଯତ୍ନ କଲା ନହୁଲୀ ।

ଶାଶୂଙ୍କ ଦୁଃଖରେ ନହୁଲୀ ଦୁଃଖିତ ହୋଇଛି । ସେ ଶାଶୂଙ୍କର ମନ ନେବ । ତାଙ୍କର ସେବା କରିବ । ସେ ହିଁ ଶାଶୂଙ୍କର ଏକମାତ୍ର ଆଶା । ଶାଶୂ ଶାନ୍ତି ନ ପାଇଲେ ସେ କେବେ ଶାନ୍ତି ପାଇବ ନାହିଁ ।

ନହୁଲୀ ସ୍ୱାମୀର ଅତ୍ୟାଚାର ସହିପାରିନି । ଅନେକ ସମୟରେ ଭାବିଛି – ସେ ମରିଗଲେ ସବୁ ଘଟଣାର ସମାଧାନ ହୋଇଯାଆନ୍ତା । ସେ ଭଲରୂପେ ଜାଣିସାରିଲାଣି ଯେ ତା'ର ସ୍ୱାମୀ ଏକ ସଇତାନ । ସେ ଯେତେ ସହିଲେ, ଯେତେ ସେବା କଲେ ତାଙ୍କର କୌଣସି ପରିବର୍ତ୍ତନ ହେବ ନାହିଁ । ମଦ ଓ ମଦୁଆ ସାଙ୍ଗମାନେ ତାଙ୍କୁ ବି ତା' ନିକଟକୁ ଛାଡ଼ିବେ ନାହିଁ । ଏମିତି ହୀନିମାନିଆ ହୋଇ ବଞ୍ଚିବା ଅପେକ୍ଷା ବରଂ ମରିଯିବା ଭଲ ।

ଶେଷକୁ ସ୍ୱାମୀ ମଦନିଶାରେ ମଦୁଆ ସାଙ୍ଗର ଆଖିକୁ ଛୁରି ଭୁଷି ଦେଇଛନ୍ତି । ଆନନ୍ଦଙ୍କୁ ହୋଇଛି ଅଠର ମାସ ଜେଲ । ସେ ଦୁଃଖ ବି ନହୁଲୀ ସହିଛି ।

ଗୋଟିଏ ବୋଲି ଭାଇ ଅଲେଖର ବାହାଘର ଠିକ୍ ହୋଇଛି । ନିଜେ ଦୁଃଖନ ଭାଇ ନିମନ୍ତ୍ରଣ କରିବାକୁ ଆସିଛି । ଦୁଃଖନ ମାଆ ଜେମାଦେଈ କହିଥିଲେ ଯେ ନହୁଲୀର ଆସିବାକୁ ସେ ଅନାଇଁ ବସିଛନ୍ତି । ଆସିଲେ ଆଉ ତା'ର ଶାଶୂ ଘରକୁ ଛାଡ଼ିବେ ନାହିଁ । ଦୁଃଖନ ସହିତ ତାକୁ ଛନ୍ଦି ଦେବେ । ଘରର ଧନସମ୍ପତ୍ତି ସବୁ ତା' ହାତେ ସମର୍ପି ଦେବେ ।

ନହୁଲୀ କିନ୍ତୁ ତା'ର କର୍ତ୍ତବ୍ୟ ସ୍ଥିର କରିସାରିଛି । ଶାଶୂ ବିଛଣାରୁ ଉଠୁ ନାହାନ୍ତି । ସେ ଗଲେ ତାଙ୍କର ସେବା କରିବ କିଏ ? ଶୋଭନ କଥା କିଏ ବୁଝିବ ? ସେ ଭାଇ ବାହାଘରକୁ ନ ଯିବାଲାଗି ସିଦ୍ଧାନ୍ତ କରିଛି । ଭାଇ ଅଲେଖର ସ୍ତ୍ରୀ ରୁକୁଣାପାଇଁ ସୁନା ହାରଟି ଭଣ୍ଡାରି ହାତରେ ପଠାଇ ଦେଇଛି ।

ଦୁଃଖେନ ମା' ଜେମାଦେଈଙ୍କ ବହୁଦିନର ଆଶା ନୁହେଁ ତ ସପନ ଭାଙ୍ଗିଯାଇଛି । ତାଙ୍କର ସରାଗ ଭାଙ୍ଗିଯାଇଛି । ସେ ତାଙ୍କ ବାପ ଘର ସିଂହପୁରକୁ ଫେରିଯିବାକୁ ସ୍ଥିର କରିଛନ୍ତି । ଏଇଠି ହୋଇଛି ଉପନ୍ୟାସର ପରିସମାପ୍ତି ।

ସାଧାରଣ ସ୍ତ୍ରୀ ନହୁଲୀ 'ତାପସୀ' ଉପନ୍ୟାସରେ ପାଲଟିଛି ଅସାଧାରଣ । ଜୀବନର ଘାତ-ପ୍ରତିଘାତ ସହିତ ତାଳ ଦେଇ ତା'ର ଚେତନ ଓ ଅବଚେତନ ମନରେ ସଂଘର୍ଷ ଆଗେଇ ଚାଲିଛି । ଭାଗ୍ୟର ନିଷ୍ଠୁର ପରିହାସକୁ ସେ ଏଡ଼ାଇ ଦେଇପାରିଛି । ସେ ପାଲଟିଯାଇଛି ଦୟା, କ୍ଷମା, ସେବା ଓ ତ୍ୟାଗର ଅବତାର ।

**ଲଲାଟ ଲିଖନ**

କାହ୍ନୁଚରଣଙ୍କ ନାରୀଚରିତ୍ରଗୁଡ଼ିକ ବହୁମୁଖୀ । ସେ ନାରୀକୁ କେବଳ କନ୍ୟା, ଭଗିନୀ, ପ୍ରେମିକା, ଜାୟା ବା ଜନନୀଭାବେ ନୁହେଁ, ନାରୀକୁ ସେବାଧର୍ମୀ କଲ୍ୟାଣମୟୀଭାବେ ଚିତ୍ରଣ କରିଛନ୍ତି ।

ହୀରାଗଡ଼ା ଗ୍ରାମର ଧଡ଼ି ବରାଳ ଜଣେ ଶଗଡ଼ିଆ । ତା'ର ଝିଅ କୋଇଲି । କୋଇଲି କିନ୍ତୁ ତା'ର ଜନ୍ମିତ ଝିଅ ନୁହେଁ । ଧଡ଼ି ବରାଳଙ୍କ ଝିଅକୁ ପିଲା ଦିନୁ ପିତ୍ତୁଳା ରୋଗ ଥିଲା । ସେ ମରିଗଲା ଭାବି ବାପ ତାକୁ ନେଇ ମଶାଣିପଦାରେ ପକାଇଦେଇଆସିଥିଲା । ତା'ର ସ୍ତ୍ରୀ ବେହେଲୀର ମୂର୍ଚ୍ଛା ଭାଙ୍ଗିଲା ରାତି ଅଧରେ । ନିଜ ଝିଅକୁ ଖୋଜିଲା । ମଶାଣି ଭୂଇଁକୁ ଧାଇଁଲା । ଗୋଟାଏ ଝିଅ କାନ୍ଦୁଥିଲା । ବାଇଆଣୀ ବେହେଲୀ ସେହି ଝିଅକୁ କୋଳରେ ଧରି ଫେରିଲା । ଆସି କହିଲା ବଟେଶ୍ୱରୀ ଠାକୁରାଣୀ ତା'ର ଝିଅକୁ ଜୀବନ୍ୟାସ ଦେଇଛନ୍ତି । ତା'ରି ନାଁ ଦେଇଛି କୋଇଲି ।

ବାସ୍ତବରେ ଧଡ଼ି ବରାଳଙ୍କ ଝିଅ ପିତ୍ତୁଳା ରୋଗରେ ମରିଥିଲା । ଜାଣତା ଲୋକେ ତାହା ନିର୍ଧାର୍ଯ୍ୟ କରିଥିଲେ । ଧଡ଼ି ବରାଳଙ୍କ ସ୍ତ୍ରୀ ବେହେଲୀ ବାଇଆଣୀ ଯାହାକୁ ଆଣିଥିଲା ସେ ହେଉଛି ହୀରାପଡ଼ା ଗାଁର ବିଘ୍ନରାଜବାବୁଙ୍କ ପ୍ରଥମା କନ୍ୟା ନିରୁପା – ଯାହାକୁ ବିଘ୍ନରାଜବାବୁଙ୍କ ପତ୍ନୀ ସରୋଜିନୀ ତାଙ୍କ ଭଉଣୀ ଆହ୍ଲାଦିନୀଙ୍କୁ ଝିଅ କରି ଦେଇଥିଲେ ଉତିଆଣି ବେଳରୁ । ଆଉ ମଟରଗାଡ଼ି ଦୁର୍ଘଟଣାରେ ଆହ୍ଲାଦିନୀ ଓ ତାଙ୍କ ସ୍ୱାମୀ ଛିଟିକି ପଡ଼ିଥିଲେ ରାସ୍ତା କରରେ । ମୂର୍ଚ୍ଛା ଯାଇଥିଲେ । ଡାକ୍ତରଖାନାରେ ଦୁଇ ଦିନ ପରେ ତାଙ୍କର ମୂର୍ଚ୍ଛା ଭାଙ୍ଗିଥିଲା । ଡ୍ରାଇଭର ବିଜୟ ଲହୁଲୁହାଣ ହୋଇ ମରିଥିଲା । ଆଉ ନିରୁପାର ଦେହ ମିଳି ନ ଥିଲା । ସେ ମଲା କି ହଜିଲା, କି ନିଶାଚରଙ୍କ ପାଟିରେ ଗଲା, କି କିଏ ଚୋରି କରି ନେଲା, ତା'ର ଖବର ମିଳି ନ ଥିଲା ।

ସେଇ କୋଇଲି ଧଡ଼ି ବରାଳଙ୍କ ଘରେ ରହି ବଡ଼ ହେଲା । ସ୍କୁଲରେ ପାଠ ପଢ଼ିଲା । ବିଘ୍ନରାଜବାବୁଙ୍କ ଝିଅ ଅନୁପା ସେଇ ସ୍କୁଲରେ ପଢୁଥିଲା । ଦୁହେଁ ବାନ୍ଧବୀ

ହେଲେ । ଦୁହିଁଙ୍କ ଚେହେରାରେ ବି ସାଦୃଶ୍ୟ ଥିଲା । କୋଇଲି ଅନୁପାର ଅନୁରୋଧ ରକ୍ଷା କରି ତାଙ୍କ ଘରକୁ ଯାଇଥିଲା । କୋଇଲି ଓ ଅନୁପାର ଚେହେରା ସାଦୃଶ୍ୟ ଦେଖି ଅନୁପା ବୋଉଙ୍କର ସନ୍ଦେହ ଜାତ ହେଲା । ପରେ କୋଇଲି ଯେ ତାଙ୍କର ବଡ଼ ଝିଅ ନିରୁପା – ଏଥିରେ ତାଙ୍କର ସନ୍ଦେହ ରହିଲା ନାହିଁ । କୋଇଲି ବି ତା'ର ବୃତ୍ତାନ୍ତ ଶୁଣିଲା । ସରୋଜିନୀ ଯେ ତା'ର ପ୍ରକୃତ ମା' – ଏଥିରେ ତା'ର ବିଶ୍ୱାସ ଆସିଲା ।

କୋଇଲି ତା'ର ପ୍ରକୃତ ମା'ର ପରିଚୟ ପାଇଚି । ପରେ ଅଭିମାନରେ ଫୁଲିଉଠିଛି । ସେ ଭାବିଛି ବୋଧହୁଏ ଦୁଇଟି ଯାଆଁଳା ଝିଅ ଜନ୍ମ ହେବାରୁ ମା' ସରୋଜିନୀ ତାକୁ ଭଉଣୀକୁ ଝିଅ କରି ଦେଇଥିଲେ । ଯେତେବେଳେ କାର୍ ଦୁର୍ଘଟଣା ଘଟିଲା, କଷ୍ଟ ସିନା ପାଇଲେ । କିନ୍ତୁ ତାଙ୍କର ମା' ହୃଦୟର ବ୍ୟାକୁଳତା ନ ଥିଲା । ସେହି ଚିନ୍ତା ତା' ମୁଣ୍ଡରେ ଶେଷ ପର୍ଯ୍ୟନ୍ତ ରହିଲା । ସେ ତେଣୁ ନିଜ ପିତାମାତାଙ୍କ ଐଶ୍ୱର୍ଯ୍ୟ ପ୍ରତି ଧ୍ୟାନ ନ ଦେଇ ନିଜ ପାଳିତ ପିତାଙ୍କ ଦରିଦ୍ର କୁଟୀରରେ ରହିବାକୁ ପସନ୍ଦ କରିଛି ।

କୋଇଲି ମଧ୍ୟ ରବୀନ୍ଦ୍ର ସହ ବିବାହ ପ୍ରସ୍ତାବରେ ରାଜି ହୋଇନି । ଡାକ୍ତରୀ ପାସ୍ କଲାପରେ ସେ ବିଷୟ ଉଠିପାରେ ବୋଲି ସବୁବେଳେ ଉତ୍ତର ଦେଇଛି । ଶେଷରେ ଉମାବାବୁ ଓକିଲଙ୍କ ପୁଅ ରମାକାନ୍ତ ସଙ୍ଗେ ଅନୁପା ବାହାଘର ବିଷୟରେ ବିଘ୍ନରାଜ ପକ୍‌କା ଜବାବ ଦେଇଛନ୍ତି । ଗୋଟିଏ ପୁଅ ବିଜୟପାଇଁ ସରୋଜିନୀ ଚମ୍ପାବତୀକୁ ବାଛିଛନ୍ତି । ସାତ ବର୍ଷ ପରେ ବଡ଼ ଝିଅ କୋଇଲିକୁ ରବୀନ୍ଦ୍ର ସଙ୍ଗେ ବାହାଘର ହେବାପାଇଁ ସ୍ଥିର ହୋଇଛି ।

ଉପନ୍ୟାସରେ କୋଇଲିକୁ ଦେଖି ସରୋଜିନୀଙ୍କର ମନସ୍ତତ୍ତ୍ୱ ଅତି ସୁନ୍ଦର ଭାବରେ ବିଶ୍ଳେଷଣ ଲେଖକ କରିଛନ୍ତି ।

## ମେଲାଣି ମାଗୁଣି

୧୯୮୩-୮୪ ମସିହା ଆଡ଼କୁ ସମ୍ଭବତଃ କାହ୍ନୁଚରଣ ଉପନ୍ୟାସ ରଚନା କ୍ଷେତ୍ରରୁ ଅପସରି ଯିବାକୁ ଚାହିଁଥିଲେ । ତେଣୁ ସେ ଉପନ୍ୟାସର ନାମ ରଖିଥିଲେ 'ମେଲାଣି ମାଗୁଣି' । ତାହା ତାଙ୍କର ଶେଷ ଉପନ୍ୟାସ ବୋଲି ସର୍ବସାଧାରଣରେ ପ୍ରକାଶ କରିଥିଲେ । ସେହି ଉପନ୍ୟାସ ମାଧ୍ୟମରେ ସେ ପାଠକମାନଙ୍କଠାରୁ ମେଲାଣି ନେବାକୁ ବସିଥିବା ଅନୁମାନ କରାଯାଏ ।

ନଈକୂଳିଆ ଗ୍ରାମ ହେଉଛି ମଲ୍ଲୀପୁର । ଗ୍ରାମର ପଞ୍ଚମାନଙ୍କ ମଧ୍ୟରେ ଆଗୁଆ ଥିଲେ ବେଣୁଧର । ତାଙ୍କର ଘରଣୀ ଥିଲେ ଦୁର୍ଲଭା । ତାଙ୍କର ଗୋଟିଏ ବୋଲି ପୁଅ – ଆକୁଳାନନ୍ଦ ।

ହେଡ୍‌ମାଷ୍ଟ୍ରେ ଗୋକୁଳି ଷଡ଼ଙ୍ଗୀଙ୍କର କଥା ମାନି ବେଣୁଧର ଆକୁଳିକୁ ପାଠ ପଢ଼ାଇଲେ । ସେ ମାଟ୍ରିକ୍ୟୁଲେସନ ପାସ୍ କଲା । ପୁଣି କଲେଜରେ ପଢ଼ିଲା । କିନ୍ତୁ ପାଠ ପରିବର୍ତ୍ତେ ସେ ଖେଳରେ ବେଶି ମନ ଦେଲା । ଆକୁଳିକୁ କୋଡ଼ିଏ ପୂରି ଏକୋଇଶ ଚାଲିଲା । ତା'ର ପ୍ରତିବାଦସତ୍ତ୍ୱେ ତାକୁ ବିଭା କରାଇ ଦୁର୍ଲଭା ବୋହୂ କରି ଆଣିଲେ ସୁନାପ୍ରତିମା ସେବତୀକୁ ।

ଆକୁଳି ପଢ଼ାରେ ଭଲ ନ କଲେ ମଧ୍ୟ ବି.ଏ. ପାସ୍ କଲା । ବେଣୁଧର ମଧ୍ୟ ରୋଗରେ ପଡ଼ି ମଲେ । ଦୁର୍ଲଭା ବିଧବା ହେଲେ ବି ପତିଙ୍କୁ ଭୁଲିପାରି ନ ଥିଲେ । ପରିସ୍ଥିତି ସହିତ ଯେତେ ଖାପ ଖୁଆଇ ଚଳିଲେ ମଧ୍ୟ ମନର କେଉଁ କୋଣରେ ପତିଙ୍କ ସ୍ମୃତି ଜାଗି ଉଠୁଥିଲା ।

ଦୁର୍ଲଭା ନିଜର ବୈଧବ୍ୟକୁ ଠାକୁରଙ୍କର ଅଭିଶାପ ବୋଲି ଭାବିଛନ୍ତି । ସେଥିପାଇଁ ସେ ଅଭିମାନ କରି କହିଛନ୍ତି – ''କାହିଁକି ନାରୀର ମନ ସେ ବୁଝେ ନାହିଁ ? ତାଙ୍କର କିଛି ଦୋଷ ନ ଥିଲେ ବି କାହିଁକି ସେ ତାଙ୍କୁ ଦଣ୍ଡ ଦେଲେ ?

ଆକୁଳି କଟକ ଯାଇଛି ଚାକିରିପାଇଁ । ଶେଷରେ ଗନ୍ଧର୍ବ ବେହେରାଙ୍କ ସହକାରୀ ହୋଇଛି । ଘରକୁ ନିୟମିତ ଟଙ୍କା ଦେଉଛି । ଭଲରେ ସମସ୍ତେ ଚଳିଛନ୍ତି ।

ଆକୁଳିର ନିକଟ୍‌ତର ହୋଇଛି ଗନ୍ଧର୍ବଙ୍କ କନ୍ୟା ରତ୍ନା ।

ପତ୍ନୀ ସେବତୀ ରୋଗାକ୍ରାନ୍ତ ହୋଇଛି । ତା'ର ତଳିପେଟର ଯନ୍ତ୍ରଣା ବଢ଼ିଛି । ଆକୁଳି ବ୍ୟସ୍ତ ହୋଇପଡ଼ିଛି । କଟକ ଆଣି ଚିକିତ୍ସା କରିବାକୁ ରତ୍ନା ପ୍ରସ୍ତାବ ଦେଇଛି । ତା'ର ପ୍ରସ୍ତାବ ମଧ୍ୟ ସମସ୍ତେ ଗ୍ରହଣ କରିଛନ୍ତି । ସେବତୀ ଓ ପୁଅ ବିକଳା ପ୍ରଭୃତି କଟକ ଆସିଛନ୍ତି । ବଡ଼ଡାକ୍ତର ସେବତୀକୁ ଦେଖିଛନ୍ତି । ଚିକିତ୍ସା ଚାଲିଛି । କିନ୍ତୁ ସବୁ ବିଫଳ ହୋଇଛି । ତା'ର ପେଟ ଅପରେଶନ ହୋଇଛି । ମାତ୍ର ତାହା ଦୁରାରୋଗ୍ୟ କ୍ୟାନ୍‌ସର ବୋଲି ଜଣାପଡ଼ିଛି । ସେବତୀ ତା'ର ଶେଷ ସମୟ ଆସିବା କଥା ଜାଣିପାରିଛି । ମୃତ୍ୟୁପୂର୍ବରୁ ସେବତୀ ଗୋଟିଏ ମାଗୁଣି ଥିବା କଥା କହିଛି । ନୂଆ ମାଆ ପାଇଲେ ପୁଅ ବିକଳା ତାକୁ ଭୁଲିଯିବ ଓ ବୃଦ୍ଧା ରୁଗ୍‌ଣା ଅପାରଗ ଶାଶୂ ମଧ୍ୟ ଶାନ୍ତି ପାଇବେ ବୋଲି କହିଛି । ମୋତିମାଳା ତା'ର କଥା ରଖିବେ ବୋଲି ପ୍ରତିଶ୍ରୁତି ଦେଇଛନ୍ତି ।

ସେବତୀର ପ୍ରାଣପକ୍ଷୀ ଉଡ଼ିଯାଇଛି । ଆକୁଳାନନ୍ଦ ସଜଳ ନେତ୍ରରେ ସେବତୀର ପ୍ରାଣହୀନ ମୁହଁକୁ ଚାହିଁ କହିଛି – ''ତମେ ନିଶ୍ଚିତରେ ସ୍ୱର୍ଗକୁ ଯାଅ ସେବତୀ, ତମେ ଛାଡ଼ି ଯାଇଥିବା ସଂସାର ତା'ର ନିଜ କଥା ବୁଝିବ ।''

## ପାବିନୀ

କାହ୍ନୁଚରଣଙ୍କ ପରବର୍ତ୍ତୀ ଉପନ୍ୟାସ 'ପାବିନୀ' ୧୯୮୪ ମସିହାରେ ପ୍ରକାଶ ପାଇଥିଲା । କାହ୍ନୁଚରଣ କହିଥିଲେ – ''ପାବିନୀ ମୋର ଶେଷ ଉପନ୍ୟାସ ।'' ସମ୍ଭବତଃ ସେ ଆଉ ଉପନ୍ୟାସ ରଚନା ନ କରିବାକୁ ସ୍ଥିର କରିଥିଲେ ।

କୈବର୍ତ୍ତ ପରିବାରର ନକୁଳି ଆଉ ମାଣିକ । ନିଜ ବୃତ୍ତି ଅନୁଯାୟୀ ନଦୀକୁ ମାଛ ମାରିବାକୁ ଯାଇଛନ୍ତି । ଶିଶୁଟିଏ କୋକେଇରେ ବନ୍ଧା ହୋଇଥିବାର ଦେଖିଛନ୍ତି । ସାପଟିଏ ଫଣା ମେଲାଇ ଜଗିଥିବା ମଧ୍ୟ ଦେଖନ୍ତି । ସେମାନେ ନିଃସନ୍ତାନ ହୋଇଥିବାରୁ ଶିଶୁକନ୍ୟାକୁ ଆଣି ପାଳିଛନ୍ତି । ନାମ ଦିଅନ୍ତି — ହାରାମଣି ।

ହାରାମଣିର ଶିଶୁବେଳର ନାମ ଥିଲା ପାବିନୀ । ଭାଇ ଶିବୁକୁମାର ସଙ୍ଗେ ନଈ ବଢ଼ି ଦେଖିବାକୁ ଯାଇଥିଲା । ମାତ୍ର ବାଟରେ ସର୍ପାଘାତରେ ଅଚେତ ହୋଇପଡ଼ିଲା । ତାକୁ ଗଙ୍ଗା ଗର୍ଭକୁ ଗ୍ରାମବାସୀଙ୍କ ସମ୍ମୁଖରେ ଭସାଇ ଦିଆଯାଇଥିଲା ।

ପାବିନୀର ପିଲା ଦିନର ଫଟୋରୁ ମଙ୍ଗଳା ଦେବୀ ହାରାମଣିର ପରିଚୟ ପାଇଛନ୍ତି । ତା'ର ମୁଣ୍ଡରେ ଚାନ୍ଦିନୀ ଉପରୁ ପଡ଼ି କ୍ଷତ ଜାଗାଟି ମଧ୍ୟ ଆବିଷ୍କାର କରିଛନ୍ତି । ହାରାମଣି ଯେ ପିଲାଦିନର ପାବିନୀ ଏଥିରେ ତାଙ୍କର ସନ୍ଦେହ ରହିନି । ସେ ନକୁଳି ଆଉ ମାଣିକକୁ ହାରାମଣିଙ୍କୁ ମାଗିଛନ୍ତି । ଶିବ କୁମାରଙ୍କ ସହ ହାରାମଣିର ବିବାହ ହୋଇଛି ।

## ଯକ୍ଷ

କାହ୍ନୁଚରଣ ପୁସ୍ତକର ମୁଖବନ୍ଧରେ କହିଥିଲେ – ''ପାବିନୀ ମୋର ଶେଷ ଉପନ୍ୟାସ ; ମାତ୍ର କେତେ ବର୍ଷ ବଞ୍ଚିବାକୁ ପଡ଼ିଲା । ଆଖିରେ ପରଳ ମାଡ଼ି ଗଲାଣି । ସମୟ କାଟିବାପାଇଁ 'ଯକ୍ଷ' ନାମରେ ଉପନ୍ୟାସଟି ଲେଖିଲି ।''

ବିମଳ ଶର୍ମାଙ୍କର ଏକମାତ୍ର ଅଲିଅଳୀ କନ୍ୟା ପାର୍ବତୀ । ସେ ବିବାହ କରିଥିଲା ପଣ୍ଡିତ ଦୟାସାଗରଙ୍କ ପୁଅ କରୁଣାକରକୁ । ମାତ୍ର ଅଳପ ଦିନ ପରେ ବିଧବା ହୋଇ ଫେରିଆସିଛି ଗାଁକୁ । ପାର୍ବତୀ କୁବେର ବେହେରା ଘରେ କାମ କରି ପେଟ ପୋଷିଛି । କୁବେର ବହୁ ଧନସମ୍ପତ୍ତିର ମାଲିକ । ତାଙ୍କ ଆଉ ଜନ୍ମ ହୋଇଛନ୍ତି ଦୁଇ ଝିଅ ବିଦ୍ୟାଧରୀ ଓ ବିଦ୍ୟାଧରୀ । ପାଞ୍ଚ ବର୍ଷ ପରେ ପୁଅଟିଏ ଜନ୍ମହୋଇ ମୃତ୍ୟୁମୁଖରେ ପଡ଼ିଛି ।

କୁବେର ବେହେରା ଗଞ୍ଜେଇ ଖାଇ ମତ୍ତ ହୋଇଛନ୍ତି । ପାର୍ବତୀର ପରାମର୍ଶରେ ପ୍ରଥମ କନ୍ୟା ବିଦ୍ୟାଧରୀଙ୍କୁ ବିବାହ ଦେଇଛନ୍ତି । ସାନ ଝିଅ ବିଦ୍ୟାଧରୀ ବିବାହ କରିବାକୁ ଚାହିଁ ନାହିଁ । ସେ ପାର୍ବତୀ ବିଦ୍ୟାଳୟ ସ୍ଥାପନ କରିଛି । ବାପାଙ୍କ ସେବାଯତ୍ନ କରିଛି । ଯାହାର ଯାହା ସମ୍ପତ୍ତି ତାହାକୁ ବାଣ୍ଟି ଦେଇଛି । ପଞ୍ଚାବନ ବର୍ଷ ବୟସର କୁବେର ବେହେରା ଘରର ସମସ୍ତ ଧନ, ଗହଣାଗାଣ୍ଠିକୁ ସିନ୍ଦୁକରେ ରଖି ଲୁହା କୋଲପ ପକାଇ ମୃତ୍ୟୁ ମୁଖରେ ପଡ଼ିଛନ୍ତି ।

ତାଙ୍କର ଶେଷ କଥା – ''ତମର ସବୁ ସମ୍ପତ୍ତି ଏଇ ସିନ୍ଦୁକରେ ଅଛି, ମୁଁ କେବଳ ଯକ୍ଷ ଥିଲି ।'' 'ଯକ୍ଷ' ଥିଲା ତାଙ୍କର ଶେଷ ଉପନ୍ୟାସ ।

**ଗଳ୍ପ**

କାହ୍ନୁଚରଣ ମଧ୍ୟ ବହୁ ଗଳ୍ପ ରଚନା କରିଛନ୍ତି । ସମାଜପ୍ରତି ଅଙ୍ଗୀକାରବଦ୍ଧତା ହେଉଛି ତାଙ୍କ ଗଳ୍ପର ଅନ୍ତଃସ୍ୱର । ସମାଜର ଚିରାଚରିତ ପ୍ରଥା ବିରୋଧରେ ତାଙ୍କର ଗଳ୍ପଗୁଡ଼ିକ ରଚିତ । ଜୀବନ ଓ ସମାଜକୁ ସେ ଯେମିତି ଦେଖିଛନ୍ତି, ସେମିତି ବର୍ଣ୍ଣନା କରିଛନ୍ତି ଗଳ୍ପରେ । ଏଣୁ ତାଙ୍କର ଗଳ୍ପଗୁଡ଼ିକ ବର୍ଣ୍ଣନାଧର୍ମୀ ଓ ଗଳ୍ପର ପରିଣତି ବିୟୋଗାନ୍ତକ ।

'ଆକାଶ କଇଁଆ' ଏକ ଆବେଗଭରା ଗଳ୍ପ । ଏଥିରେ ପିତୃମାତୃହୀନ ଗନ୍ଧର୍ବର ଭଉଣୀ ଚାନ୍ଦପାଇଁ ଲେଖକ ସମ୍ବେଦନଶୀଳ ହୋଇପଡ଼ିଛନ୍ତି । ଜଗଦୀଶବାବୁଙ୍କ ବଡ଼ କୋଠାଘର ନିକଟରେ ଗରିବ ଗନ୍ଧର୍ବର ଭଙ୍ଗା କୁଡ଼ିଆଟିଏ । ବଡ଼ କୋଠାଘରେ ରହନ୍ତି ଜଗଦୀଶବାବୁ ଆଉ ତାଙ୍କ ପୁଅ ଅନନ୍ତ । ଆଉ ଭଙ୍ଗାକୁଡ଼ିଆରେ ରହେ ଚାନ୍ଦ । ସାତ ଛିଣ୍ଡା ଶାଢ଼ି ଭିତରୁ ଚାନ୍ଦ ରୂପର ଶୋଭା ଫୁଟିଉଠେ । ଚାରି ଆଖିର ମିଳନ ହୁଏ ପ୍ରତିଦିନ, ଅନେକଥର । ଦୁଇଟା ମନ ଟାଣି ହୋଇଉଠିଛି । ଆତ୍ମା ଚାହିଁଛି ମିଳନ । ବାଧା ଦେଇଛି ସମାଜ । କାହିଁ ଅନନ୍ତ ଆଉ କାହିଁ ଚାନ୍ଦ ? ଆକାଶ କଇଁଆ ଚିଲିକା ମାଛ !

'କୁଆରଭଙ୍ଗା' ସେହିଭଳି ଆଉ ଏକ ଗଳ୍ପ । ଏଥିରେ ଧନୀର କନ୍ୟା ସନ୍ଧ୍ୟା ଓ ଦରିଦ୍ର ଗୃହସ୍ଥର ପୁତ୍ର ପ୍ରଭାତ ମଧ୍ୟରେ ପ୍ରେମ ସମ୍ପର୍କ ଗଢ଼ିଉଠିଛି । କିନ୍ତୁ ଧନୀ ଦରିଦ୍ରର ବ୍ୟବଧାନ ଯୋଗୁଁ ସେ ସମ୍ପର୍କ ଛିନ୍ନ ହୋଇଯାଇଛି । ପ୍ରଭାତ ସମାଜ ବିରୋଧରେ ବିଦ୍ରୋହ କରିଉଠିଛି ।

'ଆକାଶ କଇଁଆ', 'ଅବୋଧ', 'ଦ୍ୱନ୍ଦ୍ୱ', 'କୁଆରଭଙ୍ଗା' ପ୍ରଭୃତି ଗଳ୍ପରେ ଦୁଇଟି ଯନ୍ତ୍ରଣା ଜର୍ଜରିତ ହୃଦୟର କଥା ଲେଖକ କହିଛନ୍ତି ।

ସାମାଜିକ ସମସ୍ୟା ଉପରେ କାହ୍ନୁଚରଣ ବହୁ ଗଳ୍ପ ରଚନା କରିଛନ୍ତି । 'ବିଦିଆ'ଏକ ଗ୍ରାମ୍ୟ ଜୀବନର ସୁନ୍ଦର ଗଳ୍ପ । ମାଲିକ ବନେଇକୁ ବିଦିଆ କାଖେଇ କୁଣ୍ଢେଇ ମଣିଷ କରିଥିଲା । ସେ ଘରର ଚାକର ନ ଥିଲା । ସେ ଥିଲା ଘରର ଜଣେ । ଘରର ହିତାକାଙ୍‌କ୍ଷୀ । ବନେଇ ତେଣୁ ବିଶ୍ୱାସୀ ବିଦିଆକୁ କିଛି ଜମି ଦାନ କରିଦେବାକୁ ଇଚ୍ଛା ପୋଷଣ କରିଥିଲେ । ବନେଇଙ୍କ ମୃତ୍ୟୁ ପରେ ତାଙ୍କ ଦୁଇ ପୁଅ ଅଲଗା ହେଲେ । ଘର ମଧ୍ୟରେ ବାଡ଼ ବସିବାକୁ ଯାଉଥିଲା । ହେଲେ ବିଦିଆ ଦେହରେ ତାହା ଗଲା ନାହିଁ । ବୁଢ଼ା ବୟସରେ ବି ଦୁଇ ଭାଇଙ୍କୁ ଏକାଠି କରିଦେବାକୁ

ଗଲାବେଳେ ଅତିଶୟ ଉତ୍ତେଜନାବଶତଃ ତା'ର ମୃତ୍ୟୁ ହୋଇଛି । ସେହିପରି 'ରାମୁଲୁ' ଗଳ୍ପରେ ଲେଖକ ନିଃସହାୟ ରାମୁଲୁ ପ୍ରତି ସମବେଦନା ଝରାଇଛନ୍ତି । ବୁଢ଼ୁବାୟା ପ୍ରତି ତାଙ୍କର ଦରଦ ସ୍ପଷ୍ଟ ହୋଇଛି ।

'ମୁଣ୍ଡି ସାହାଡ଼ା', 'ବାସୁଳେଇ କୋପ' ଓ 'ପ୍ରେତର ବିଳାପ' ପ୍ରଭୃତି ଗଳ୍ପ ଅନ୍ଧବିଶ୍ୱାସ ଉପରେ ପର୍ଯ୍ୟବସିତ ।

'ବୁଲା' ଓ 'ଗପ ନୁହେଁ' ଦୁଇଟି ମାନବେତର ଚରିତ୍ର ପ୍ରଧାନ ଗଳ୍ପ ।

କାହ୍ନୁଚରଣଙ୍କ ସମ୍ବେଦନଶୀଳ ମନୋବୃତ୍ତି କେବଳ ମଣିଷ ଚରିତ୍ର ଭିତରେ ସୀମିତ ରହି ନାହିଁ । ତାହା ଜୀବଜନ୍ତୁଙ୍କ ପ୍ରତି ମଧ୍ୟ ପ୍ରକାଶିତ ହୋଇଛି । 'ବୁଲା' ଗୋଟିଏ କୁକୁର । ଛାର ପଶୁଟିଏ । ଅଥଚ କେତେ ହୀନିମାନିଆ ତା' ଜୀବନ ! ମଣିଷମାନେ ମଜା କରିବାକୁ ତା' ଉପରକୁ ଟେକା ଫୋପାଡ଼ନ୍ତି । କେତେବେଳେ ପୋଷନ୍ତି ବି । ତେବେ ତାହାକୁ ହନ୍ତସନ୍ତ କରିବାକୁ ଲୋକଙ୍କ ଅଭାବ ନାହିଁ । ଟେକାମାଡ଼ ଖାଇ ଖାଇ ଶେଷରେ ବୁଲା ହେଲା ପାଗଳ । ଆଉ ବାଛି ବାଛି କାମୁଡ଼ିଛି ମଣିଷଙ୍କୁ ।

'କାଲି ଆଉ ଆଜି' ଏକ ସମାଜଭିତ୍ତିକ ଗଳ୍ପ । ଆଭିଜାତ୍ୟପୂର୍ଣ୍ଣ ଘରର ମାୟା ଥିଲା ରୂପସୀ । ଓକିଲ ସତ୍ୟପ୍ରିୟ, ପ୍ରଫେସର ରମାନାଥ, ସଙ୍ଗୀତଜ୍ଞ ଗତିକୃଷ୍ଣଙ୍କ ଥିଲା ପ୍ରିୟ । ତା' ସଙ୍ଗଲାଭ ଚାହୁଁଥିଲେ ସମସ୍ତେ । ତାହା ପାଖରେ ବସିବାକୁ, ତାହାର ଟିକେ ହସ ଦେଖିବାକୁ, ତାହାର କଥା ଶୁଣିବାକୁ ବେଳ ଅବେଳ ନ ମାନି ଲୋକେ ଧାଇଁ ଆସୁଥିଲେ । କିନ୍ତୁ ଦେହରେ କି ଏକ ଦୁଃସାଧ୍ୟ ରୋଗ ହେବା ପରେ ସେ ଦୁର୍ବଳ ହୋଇପଡ଼ିଛି । ବନ୍ଧୁବାନ୍ଧବ ସମସ୍ତେ ଦୂରେଇ ଯାଇଛନ୍ତି । ତା' ଆଖିରୁ ଲୁହ ଝରିଛି । କାଲି ଆଉ ଆଜି ଭିତରେ କେତେ ଫରକ । କାହ୍ନୁଚରଣ ଜୀବନର ବାସ୍ତବତାକୁ ଅତି ସୁନ୍ଦର ଭାବେ ପରିସ୍ଫୁଟ କରିଛନ୍ତି ।

'କ୍ଷଣିକ' ଆଉ ଏକ ସୁନ୍ଦର ସୃଷ୍ଟି । ବସ୍‌ଟି ହଠାତ୍ ଖରାପ ହୋଇଯିବା ପରେ ପଲ୍ଲୀଗ୍ରାମ ନିକଟରେ ଅଟକିଛି । ଗାଳ୍ପିକ ଦୂରରେ ଗଛ ମୂଳରୁ ଦେଖିଛନ୍ତି ଗାଧୋଉଥିବା ଏକ ପଲ୍ଲୀ ବଧୂକୁ । ତା'ର ସୌନ୍ଦର୍ଯ୍ୟରେ ସେ ବିମୋହିତ ହୋଇଛନ୍ତି । ବଧୂର ପାଖରେ ତା'ର ନଣନ୍ଦ । ଓଠ ପାଖୁଡ଼ାରେ ଚମକି ଉଠିଛି ହସ ଆଉ ବଧୂଟି କହିଉଠିଛି – ''ରହମ, ଏ ଗାଡ଼ିଟା ଯାଉ । ମଣିଷ ଗୁଡ଼ା ପରା...'' । ବଧୂଟିର ଭୀତିଜନିତ ଆଖି ପଡ଼ିଛି ଗାଳ୍ପିକଙ୍କ ଉପରେ । ତାହା ମିଶିଯାଇଛି ଗାଳ୍ପିକଙ୍କ ପିପାସାକୁଳ ଆଖି ସଙ୍ଗେ । ସଙ୍ଗେ ସଙ୍ଗେ ବଧୂଟି ତା'ର ଆଖି ତଳକୁ କରିଛି । କିନ୍ତୁ ସେହି ଚାହାଣି ସୃଷ୍ଟି କରିଛି ଗାଳ୍ପିକଙ୍କ ମନରେ ଶିହରଣ ।

ସଜଡ଼ା ହେଲା ପରେ ବସ୍‌ଟି ଯିବାକୁ ବାହାରିଚି । ତନ୍ଦ୍ରାଭଙ୍ଗ ପରେ ଗାନ୍ଧିକ ବସ୍‌କୁ ଫେରିଛନ୍ତି ଓ ଗନ୍ତବ୍ୟସ୍ଥଳକୁ ଯାଇଛନ୍ତି । ସେହି ରାସ୍ତାରେ ପୁଣି ଗାନ୍ଧିକ ବସ୍‌ରେ ଯାଇଛନ୍ତି । ମନେ ମନେ ସେହି ନିର୍ଦ୍ଦିଷ୍ଟ ସ୍ଥାନରେ ତରୁଣୀକୁ ଖୋଜନ୍ତି । କିନ୍ତୁ ତାଙ୍କ ଆଖିରେ କେହି ପଡ଼ନ୍ତି ନାହିଁ । ଗାନ୍ଧିକଙ୍କ ମନ ଦୁଃଖରେ ଭରିଯାଏ ।

କାହ୍ନୁଚରଣଙ୍କ ପ୍ରକାଶିତ ଗଳ୍ପ ସଙ୍କଳନଗୁଡ଼ିକ ହେଲା 'ନାଆଁଟି ତା'ର ଚମ୍ପା', 'ସମାପିକା' ଓ 'ଚୋରା ଚାହାଣି' ।

## ଚଳଚ୍ଚିତ୍ର ମର୍ଯ୍ୟାଦା

କାହ୍ନୁଚରଣଙ୍କ ଯେଉଁ ଉପନ୍ୟାସଗୁଡ଼ିକର ଚଳଚ୍ଚିତ୍ର ନିର୍ମାଣ କରାଯାଇଛି । ସେଗୁଡ଼ିକ ହେଲା 'ତୁଣ୍ଡବାଇଦ', 'ଅଭିନେତ୍ରୀ' ଓ 'ଶାସ୍ତି' । ସେଗୁଡ଼ିକ ମଧ ଦର୍ଶକମାନଙ୍କଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଥିଲା ।

କଟକ ଦୂରଦର୍ଶନରେ ବହୁବାର ପ୍ରସାରଣ ହୋଇଥିଲା ତାଙ୍କର ଉପନ୍ୟାସ 'ଭୁଲି ହୁଏନା' ଓ 'ହା ଅନ୍ନ'ର ନାଟ୍ୟରୂପ । 'ଝଞ୍ଜା' ଉପନ୍ୟାସର ଓଡ଼ିଆ ଓ ହିନ୍ଦୀଭାଷାରେ ଟେଲିଫିଲ୍ମ, 'ବଜ୍ରବାହୁ' ଓ 'କା' ର ଓଡ଼ିଆରେ ଟେଲିଫିଲ୍ମ ମଧ ନିର୍ମିତ ହୋଇଥିଲା । କାହ୍ନୁଚରଣଙ୍କ ବହୁ ଉପନ୍ୟାସ ମଧ ଅନୁବାଦିତ ହୋଇଛି । ସେଗୁଡ଼ିକ ହେଲା 'ଶାସ୍ତି', 'କା', 'ହା ଅନ୍ନ' ଓ କ୍ଷୁଦ୍ର ଗଳ୍ପ 'ମୁଣ୍ଡି ସାହାଡ଼ା' । 'ଶାସ୍ତି'ର ଅନୁବାଦ ହିନ୍ଦୀ, ବଙ୍ଗଳା, ତେଲୁଗୁ, ମରାଠୀ ଓ ଇଂରାଜୀ ଭାଷାରେ, 'ହା ଅନ୍ନ' ଓ 'କା'ର ଅନୁବାଦ ଇଂରାଜୀ ଭାଷାରେ ହୋଇଅଛି । 'ହା ଅନ୍ନ'ର ଇଂରାଜୀ ଅନୁବାଦ କରିଛନ୍ତି ମନୋଜ ଦାସ । ସେହିପରି କ୍ଷୁଦ୍ର ଗଳ୍ପ 'ମୁଣ୍ଡି ସାହାଡ଼ା'ର ଇଂରାଜୀ ଅନୁବାଦ କରିଛନ୍ତି କିଶୋରୀ ଦାସ ।

'କା' ୧୯୫୯ ମସିହାରେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ ହୋଇଥିଲା ।

## ଚାକିରି ଜୀବନ

କାହ୍ନୁଚରଣ ୧୯୪୦ ମସିହାରେ ସବ୍‌ଡେପୁଟୀ, ୧୯୪୬ ମସିହାରେ ଦ୍ୱିତୀୟ ଶ୍ରେଣୀ କର୍ମଚାରୀ ଓ ପରେ ପ୍ରଥମ ଶ୍ରେଣୀକୁ ଉନ୍ନୀତ ହୋଇଥିଲେ । ୧୯୬୪ ମସିହାରେ ସେ ଚାକିରିରୁ ଅବସର ଗ୍ରହଣ କଲେ । ଏହି ଦୀର୍ଘ ୩୪ ବର୍ଷ ମଧରେ ସେ ପ୍ରାୟ ଓଡ଼ିଶାର ସମସ୍ତ ଜିଲ୍ଲା ଓ ବିଭିନ୍ନ ଅଞ୍ଚଳରେ ଭ୍ରମଣ କରିବାର ସୁଯୋଗ ପାଇଥିଲେ ।

ଅବସର ଗ୍ରହଣ କରି ୧୯୬୬-୬୭ ପ୍ରାୟ ଦେଢ଼ ବର୍ଷ ଓଡ଼ିଶା ସାହିତ୍ୟ ଏକାଡେମୀର ସେକ୍ରେଟାରୀ ଭାବେ କାର୍ଯ୍ୟ କରିଥିଲେ ।

## ଦେହାନ୍ତ

ଆଜୀବନ ଦୁଃଖ ସୁଖର ସାଥୀ ପତ୍ନୀ ହେମନ୍ତ କୁମାରୀ ଦେବୀଙ୍କର ୧୯୮୫ ମସିହାରେ ପରଲୋକ ହେଲା । ପତ୍ନୀଙ୍କ ମୃତ୍ୟୁରେ ତାଙ୍କ ଅନ୍ତରାତ୍ମା ବିଳପି ଉଠିଲା । ଆଗରୁ ତ ସେ ମଧୁମେହ ରୋଗରେ ପୀଡ଼ିତ ଥିଲେ । ପତ୍ନୀଙ୍କ ଅବର୍ତ୍ତମାନରେ ତାହାର ପ୍ରକୋପ ବୃଦ୍ଧି ପାଇଲା । ମାନସିକ ଅବକ୍ଷୟ ମଧ ଆରମ୍ଭ ହୋଇଗଲା । କ୍ରମେ ଲେଖାଲେଖି କରିବାର ଶକ୍ତି ମଧ ହରାଇଲେ । ସେହି ସମୟରେ ରୋଷଘରେ କାର୍ଯ୍ୟବ୍ୟସ୍ତ ଥିବା ଜ୍ୟେଷ୍ଠା ବଧୂଙ୍କ ପାଖକୁ ଯାଇ ଛଳ ଛଳ ଆଖିରେ କହି ଉଠୁଥିଲେ –''ବୋହୂ ! ମୁଁ ଆଉ ଲେଖି ପାରୁନି । କରିବି କ'ଣ ?''

ବୋହୂ ବୁଝାଉଥିଲେ – ''ବାପା, ଯେତିକି ଲେଖିଯାଇଛ ସେତିକି ଯଥେଷ୍ଟ । ସେହି ହେଉଛି ଜାତିର ସମ୍ପଦ । ଆଉ ଅଧିକା ନ ଲେଖିଲ ନାହିଁ ... ।''

ଶେଷରେ ୧୯୯୪ ମସିହା ଅପ୍ରେଲ ମାସରେ ଅଠାଅଶୀ ବର୍ଷ ବୟସରେ କାହ୍ନୁଚରଣ କଟକ ରାଜାବଗିଚା ଗୃହରେ ଶେଷ ନିଶ୍ୱାସ ତ୍ୟାଗ କଲେ ।

## ସମାଲୋଚନା

କାହ୍ନୁଚରଣ ଓଡ଼ିଆ ସାହିତ୍ୟର ମହାନ୍ ସ୍ରଷ୍ଟା ଭାବେ ପ୍ରତିଷ୍ଠିତ ହେବା ସତ୍ତ୍ୱେ ସେ ସମାଲୋଚନାରୁ ମୁକ୍ତ ନୁହନ୍ତି । ଆଲୋଚକ ବ୍ରଜମୋହନ ମହାନ୍ତି ତାଙ୍କର 'ଓଡ଼ିଆ ସାହିତ୍ୟର ଆଧୁନିକ ଯୁଗ' ପୁସ୍ତକର ଦ୍ୱିତୀୟ ଭାଗରେ 'ହା ଅନ୍ନ' ଉପନ୍ୟାସ ବିଷୟରେ ଆଲୋଚନା କରିଛନ୍ତି । ତାଙ୍କ ମତରେ କାହ୍ନୁଚରଣଙ୍କ ଜାତୀୟତା ପ୍ରୀତି ଥିଲେ ମଧ ଚାକିରି ଦୃଷ୍ଟିରୁ ଇଂରେଜ ଶାସନ ବିରୋଧରେ ଲେଖିବାପାଇଁ ସାହସ କରିପାରି ନାହାନ୍ତି । ତାଙ୍କର ସାହିତ୍ୟ ସୃଷ୍ଟି ୧୯୨୪ ମସିହାରୁ ଆରମ୍ଭ ହୋଇ ୧୯୮୫ ମସିହା ପର୍ଯ୍ୟନ୍ତ ବିସ୍ତୃତ ହୋଇଛି । ମାତ୍ର ଏହି ସମୟ ମଧରେ କୌଣସି ଉପନ୍ୟାସରେ ସ୍ୱାଧୀନତା ଆନ୍ଦୋଳନ ବିଷୟରେ ପଦେ ସୁଦ୍ଧା ଲେଖି ନାହାନ୍ତି । ଏତେ ବଡ଼ ଘଟଣା ଉପରେ ନିଜର ସ୍ୱାଧୀନ ମତ ବ୍ୟକ୍ତ କରିବାର ଆବଶ୍ୟକତା ଥିଲା । ସୁତରାଂ ଏ ଦିଗରେ ସେ ପଛରେ ପଡ଼ିଯାଇଛନ୍ତି ବୋଲି ସ୍ୱୀକାର କରିବାକୁ ହେବ । ସେହି ଦୃଷ୍ଟିରୁ ତାଙ୍କୁ ସମାଲୋଚନା କରିବାର ଆବଶ୍ୟକତା ଅଛି ବୋଲି ସେ ମତ ଦେଇଛନ୍ତି ।

ଆଲୋଚକଙ୍କର ଏହି ମତ କେତେ ଦୂର ଠିକ୍, ତାହାହିଁ ବିଚାର କରିବାର କଥା । ସ୍ୱାଧୀନତା ଆନ୍ଦୋଳନ ଯେ କାହ୍ନୁଚରଣଙ୍କ ଉପରେ ପ୍ରଭାବ ପକାଇ ନ ଥିବ, ତାହା କହିହେବ ନାହିଁ । ମାତ୍ର ତାହା ଉପରେ ନ ଲେଖିବା ଯେ ଦୋଷାବହ – ଏହା କହିବା ମଧ ଅସଂଗତ । କାହ୍ନୁଚରଣ ଜଣେ ଅତି ଉଚ୍ଚକୋଟୀର କଳାକାର – ଏଥିରେ ଦ୍ୱିମତ ନାହିଁ । ସାହିତ୍ୟ କଳା ଦିଗ ପ୍ରତି ସେ ସର୍ବଦା ଦୃଷ୍ଟି ଦେଇଛନ୍ତି ।

କୌଣସି ଆନ୍ଦୋଳନ ବା ବିପ୍ଳବକୁ କେନ୍ଦ୍ର କରି ସାହିତ୍ୟ ସୃଷ୍ଟି ନ କରିବା ଆଦୌ ଦୋଷାବହ ହୋଇ ନ ପାରେ । କେବଳ ରାଜନୀତି ବା ସ୍ଲୋଗାନ ଉପରେ ନିର୍ଭର କରି ଉଚ୍ଚାଙ୍ଗ ସାହିତ୍ୟ ମଧ୍ୟ ସୃଷ୍ଟି କରାଯାଇପାରେ ନାହିଁ । ତାହା ପ୍ରଚାର-ସର୍ବସ୍ୱ ହୋଇପଡ଼ିବାର ସମ୍ଭାବନା ଥାଏ । କାହ୍ନୁଚରଣଙ୍କ ରଚନାରେ ସମୟର ପ୍ରାଣସ୍ପନ୍ଦନ ନିଶ୍ଚିତଭାବେ ପ୍ରକାଶ ପାଇଅଛି । 'ହା ଅନ୍ନ' ଓ 'ଶାସ୍ତି'ରେ ଜାତିର ଦାରୁଣ ବିପର୍ଯ୍ୟୟକୁ ରୂପାୟନ କରିଛନ୍ତି । ଜାତିର ଅତୀତ ଗୌରବ ଗାଥା ଗାଇଛନ୍ତି । 'ବଜ୍ରବାହୁ' ଉପନ୍ୟାସରେ ଏ ଜାତିର ପ୍ରଗତିର ସ୍ୱପ୍ନ ଦେଖିଛନ୍ତି ।

କାହ୍ନୁଚରଣଙ୍କ ଉପନ୍ୟାସରେ ବୌଦ୍ଧିକତାର ଅଭାବ ବୋଲି କେହି କେହି ମତ ଦେଇଥାନ୍ତି । ଏହା ଅବଶ୍ୟ ସତ୍ୟ ଯେ ଅନୁଜ ଗୋପୀନାଥ ମହାନ୍ତିଙ୍କ ଉପନ୍ୟାସଗୁଡ଼ିକ ଅଧିକ ଜଟିଳ, ଦାର୍ଶନିକ ଏବଂ ବୌଦ୍ଧିକ । ସେଇଥିପାଇଁ ଗାଁଗହଳରେ ଦରପାଠୁଆ, ଅପାଠୁଆ, ସାଧାରଣ ମଣିଷ ତାଙ୍କ ଉପନ୍ୟାସର କେତେ ମୁଣ୍ଡ! ଠିକ୍ ଭାବେ ବୁଝେ, ଯେପରି ବୁଝେ କାହ୍ନୁଚରଣଙ୍କ ଉପନ୍ୟାସଗୁଡ଼ିକୁ ? ଏ ସମ୍ପର୍କରେ କାହ୍ନୁଚରଣ ସ୍ପଷ୍ଟ ଉଲ୍ଲେଖ କରିଛନ୍ତି –

''ମୋର ବହୁ ଲୋକପ୍ରିୟ ଉପନ୍ୟାସ ଓ ଗଳ୍ପଗୁଡ଼ିକ ଭିତରେ ବୌଦ୍ଧିକତା ଖଞ୍ଜିବାର ଉପାୟ ମୁଁ ଦେଖିପାରୁ ନାହିଁ । ଏବେବି ମୋର କଲମ ଜାଗ୍ରତ ଅଛି । ଯଦି ବୌଦ୍ଧିକତା ପଦାର୍ଥଟି କ'ଣ ମୁଁ ଜାଣିପାରନ୍ତି ଓ କେହି ସମାଲୋଚକ ଦୟାକରି ମୋତେ ଜଣାଇଦିଅନ୍ତି କିପରି ସେହି ଅମୂଲ୍ୟ ରସ କି ତତ୍ତ୍ୱ କି ଆଉ କଅଣକୁ ଲେଖିଲେ ଖୁନ୍ଦିବାକୁ ବା ଖଞ୍ଜିବାକୁ ହେବ, ତେବେ ମୁଁ ତାଙ୍କରି କୃତିର ଦୃଷ୍ଟାନ୍ତକୁ ଆଗରେ ଥୋଇ ମୋର ଭବିଷ୍ୟତ୍ ଲେଖାକୁ ବୌଦ୍ଧିକତାପୂର୍ଣ୍ଣ କରନ୍ତି । ଶୀଘ୍ର, କାରଣ ମୋର ଭବିଷ୍ୟତ୍‌ଟା ଆଉ ବେଶି ଦିନ ନୁହେଁ ।''

କାହ୍ନୁଚରଣଙ୍କ କଥାସାହିତ୍ୟ ସାର୍ବଜନୀନ ଆବେଦନରେ ପ୍ରାଣମୟ, ରସାଳ ଓ ଉଜ୍ଜ୍ୱଳ । ବୌଦ୍ଧିକ ଚେତନା ନୁହେଁ, ଜୀବନର ସ୍ୱାଭାବିକ ପ୍ରକାଶରେ ଶୈଳୀର ପ୍ରବାହଧର୍ମିତା ପାଠକର ଶ୍ରଦ୍ଧାର ମୁଖ୍ୟ କାରଣ ହୋଇଥାଏ ।

## ମୂଲ୍ୟାୟନ

ଓଡ଼ିଆ ସାହିତ୍ୟରେ କାହ୍ନୁଚରଣ ଜଣେ କିମ୍ବଦନ୍ତୀର ନାୟକ ବୋଲି ମନେ ହୁଅନ୍ତି । ସେ ଜନପ୍ରିୟତାର ଉତ୍ତୁଙ୍ଗ ଶିଖରକୁ ଯେ ସ୍ପର୍ଶ କରିଛନ୍ତି, ଏହା ସମସ୍ତେ ସ୍ୱୀକାର କରନ୍ତି । ପ୍ରଶ୍ନ ଉଠେ, କାହ୍ନୁଚରଣ ଏତେ ଜନପ୍ରିୟ ହେଲେ କିପରି ? ଏଇ ପାଇବା ପଛରେ କାହ୍ନୁଚରଣଙ୍କର କେଉଁ ଗୁଣଗୁଡ଼ିକର ଭୂମିକା ବିଶେଷ ଉଲ୍ଲେଖଯୋଗ୍ୟ ? କିପରି ଏହା ସକଳ ସ୍ତରର ଓଡ଼ିଆ ପାଠକ – ପ୍ରବୀଣ ରକ୍ଷଣଶୀଳଠାରୁ ପ୍ରଗତିବାଦୀ

ତରୁଣ, ନାରୀ, ପୁରୁଷ, ଅର୍ଦ୍ଧଶିକ୍ଷିତଠାରୁ ଉଚ୍ଚଶିକ୍ଷିତ, ଅଭିଜାତ, ଅନଭିଜାତ – ସମସ୍ତଙ୍କ ମନ ଓ ପ୍ରାଣକୁ ଛୁଇଁପାରିଲା ?

ଏହାର ଯଦି କୌଣସି କାରଣ ଥାଏ, ତାହାହେଲେ ଗୋଟିଏ କଥାରେ କହିଲେ ସେ ଥିଲେ ଖାଣ୍ଟି ଓଡ଼ିଆ । ଓଡ଼ିଆ ଘରର ଚାଲିଚଳଣି, ରୀତିନୀତି, ହସ-କାନ୍ଦ, ସୁଖ-ଦୁଃଖ, ସ୍ନେହ-ମମତା, ବନ୍ଧନ, ଗର୍ବ, ଅହଂକାର, ଅହମିକା ସବୁକୁ ନିଜର କରିନେଇଥିଲେ । ଓଡ଼ିଆଙ୍କ ଐତିହ୍ୟ, ଗୌରବ ସହିତ ସେ ପରିଚିତ ଥିଲେ । ଓଡ଼ିଶାର ରାଜାରାଜୁଡ଼ା ଶାସନଠାରୁ ଆରମ୍ଭ କରି ଅତ୍ୟାଧୁନିକ ଯୁଗ ପର୍ଯ୍ୟନ୍ତ ପ୍ରତ୍ୟେକଟି ସହିତ ସେ ଯେପରି ବ୍ୟକ୍ତିଗତ ଓ ଓତପ୍ରୋତ ଭାବେ ଜଡ଼ିତ ହୋଇଯାଇଥିଲେ !

କାହ୍ନୁଚରଣ ଥିଲେ ଓଡ଼ିଆର ଦରଦୀ ବନ୍ଧୁ । ଓଡ଼ିଆ ଜୀବନ ପ୍ରତି, ବିଶେଷ ଭାବରେ ନିରୁପାୟ, ଅସହାୟ ଓ ବେଦନାମଳିନ ଓଡ଼ିଆ ନରନାରୀଙ୍କ ଜୀବନ ପ୍ରତି ତାଙ୍କ ହୃଦୟରେ ଥିଲା ସ୍ୱତଃସ୍ଫୂର୍ତ୍ତ ଭଲ ପାଇବା । ଏଇ ଅକୃତ୍ରିମ ଭଲ ପାଇବା ଶକ୍ତିରେ ସେ ପାଠକ ହୃଦୟରେ ଅଫୁରନ୍ତ ପ୍ରେମକୁ ଆକର୍ଷଣ କରିପାରିଛନ୍ତି । ପୁଣି ପୁରୁଷ-ପ୍ରାଧାନ୍ୟ ସମାଜରେ କାହ୍ନୁଚରଣ ନାରୀ ମନର ଗୋପନ କଥା, ବ୍ୟଥା ଓ ବେଦନାକୁ ଗଭୀର ଭାବରେ ଉପଲବ୍ଧି କରିପାରିଛନ୍ତି ଓ ସେମାନଙ୍କ ପ୍ରତି ନିଷ୍ଠୁର ହୃଦୟହୀନତାର ଜୀବନ୍ତ ମର୍ମସ୍ପର୍ଶୀ ଚିତ୍ର ଅଙ୍କନ କରି ଓଡ଼ିଆ ପାଠକର କୋମଳ ହୃଦୟକୁ ବେଦନାସିକ୍ତ କରିପକାଇଛନ୍ତି । ସେଇଠାରେ କାହ୍ନୁଚରଣ ଓ ପାଠକ ଏକାନ୍ତ ଆପଣାର ହୋଇପଡ଼ିଛନ୍ତି ।

କାହ୍ନୁଚରଣଙ୍କ ସୃଷ୍ଟିର କଞ୍ଚା ମାଲ ଓଡ଼ିଆ ମାଟିରୁ ଖୋଜିଛନ୍ତି ଓ ପାଇଛନ୍ତି । ତାଙ୍କର ପ୍ରାୟ ପ୍ରତ୍ୟେକ ଉପନ୍ୟାସର ପୃଷ୍ଠଭୂମି ହେଉଛି ଓଡ଼ିଶାର ଅଖ୍ୟାତ ପଲ୍ଲୀ ଯେଉଁଠିକି ସକାଳୁ ସୂର୍ଯ୍ୟ ଉଏଁ, ବଣ ବୁଦାରେ ମାଳତୀ ଫୁଲ ଫୁଟି ଝଡ଼ିଯାଏ, ଗାଁର ଯୁବକ ଗାଁ ପୋଖରୀରେ ପହଁରି ପହଁରି ନାଲି କଇଁ ତୋଳେ ଆଉ କିଶୋରୀ ଖୁଦୁରୁକୁଣୀ ଓଷା କରି ମାଆ ମଙ୍ଗଳାଙ୍କୁ ପୂଜା କରେ । ଲେଖକଙ୍କର ମନେପଡ଼େ ପୌଷର ସଞ୍ଜ, ଶରତ କାଳର କାଶତଣ୍ଡୀ ଭରା ନଈପଠା, ଗ୍ରାମଦେବତୀ ପାଖେ ଜନ୍ତାଳ । ପୁଣି ମନେପଡ଼େ ବୋଉର ହାତରନ୍ଧା ଖଡ଼ା ବଡ଼ି ବେସର, ଗୋବରଲିପା ମାଟି ପିଣ୍ଡା ସହିତ ଆଷାଢ଼ର ପହିଲି ବର୍ଷାରେ ମାଟିର ବାସ୍ନା । କାହ୍ନୁଚରଣ ଏସବୁକୁ ଅତି ଅନ୍ତରଙ୍ଗ ଭାବେ ତାଙ୍କ ଉପନ୍ୟାସରେ ପ୍ରଥମ କରି ପରଷିଛନ୍ତି ।

କାହ୍ନୁଚରଣଙ୍କ ଉପନ୍ୟାସ ପାଠକର ଅତି ପ୍ରିୟ ଓ ଅନ୍ତରଙ୍ଗ ହେବାର ଆଉ ଏକ କାରଣ ଅଛି । ତାହା ହେଲା ତାଙ୍କ ଉପନ୍ୟାସରେ ଆବେଗିକ ଭାଷାଶୈଳୀର ପ୍ରୟୋଗ । ଫକୀରମୋହନଙ୍କ କର୍କଶ ଭାଷା ପ୍ରୟୋଗଠାରୁ କାହ୍ନୁଚରଣ ବହୁ ଦୂରରେ ରହି ଗ୍ରାମ୍ୟ ଭାଷାକୁ ଅତି ନିଚ୍ଛକ ଓ ଅନ୍ତରଙ୍ଗ ଭାବରେ ପ୍ରୟୋଗ କରିଛନ୍ତି । ସମଗ୍ର ଓଡ଼ିଶା ଥିଲା ତାଙ୍କର କର୍ମଭୂମି । ନିଜ ଗାଁ ନାଗବାଲି ଠାରୁ ଆରମ୍ଭ

କରି କୋରାପୁଟର ଆଦିବାସୀ ଗାଁ ପର୍ଯ୍ୟନ୍ତ ସବୁଠାରେ ଲୋକେ ବୁଝି ପାରିଲା ଭଳି ଭାଷାରେ ଉପନ୍ୟାସ ରଚନା କରିଛନ୍ତି ।

କାହ୍ନୁଚରଣଙ୍କ ଉପନ୍ୟାସରେ ପ୍ରେମ, ପ୍ରଣୟର ଚିତ୍ର ଯେତିକି ବାସ୍ତବ ସେତିକି ଜୀବନ୍ତ । ମନସ୍ତତ୍ତ୍ୱବିତ୍ ଫ୍ରଏଡ୍‌ଙ୍କ ଚେତନାର ସ୍ୱର ତାଙ୍କ ଚରିତ୍ରମାନଙ୍କ ମଧ୍ୟରେ ଅନୁରଣିତ । ଚେତନ, ଅବଚେତନ ଓ ଅଚେତନ ମନର ସୂକ୍ଷ୍ମ ବିଶ୍ଳେଷଣ ଏବଂ ତା'ର ଉନ୍ମୁକ୍ତ ପରିପ୍ରକାଶ ହିଁ କାହ୍ନୁଚରଣଙ୍କୁ ବିରାଟ ସଫଳତା ଦେଇଛି । ତେବେ ନରନାରୀଙ୍କ ଯୌନ-ଆକାଂକ୍ଷାର ବାସ୍ତବ ଚିତ୍ର ଦେବାରେ ସେ ହେଳା କରି ନାହାନ୍ତି । ନୀତିବାଦୀ ହେବାର ଅଭିନୟ କରି ନାହାନ୍ତି । କିନ୍ତୁ ସେସବୁ ଚିତ୍ରକୁ ଖୁବ୍ ସଂଯତ, ଶୃଙ୍ଖଳିତ ଓ ମାର୍ଜିତ ରୂପ ଦେବାରେ ସେ ହୋଇଛନ୍ତି ସଫଳ ଓ ସମର୍ଥ ।

ଲେଖକ ମଧ୍ୟ ଥିଲେ ସଂସ୍କାରପ୍ରାଣ । ଓଡ଼ିଆ ସାହିତ୍ୟରେ ଫକୀରମୋହନ ଯେଉଁ ସ୍ୱପ୍ନ ଦେଖିଥିଲେ ତାଙ୍କର ସେ ସମସ୍ତ ସ୍ୱପ୍ନକୁ ସତ୍ୟରେ ପରିଣତ କରିଛନ୍ତି କାହ୍ନୁଚରଣ । ସ୍ୱାଧୀନତା ଆନ୍ଦୋଳନ ବିଷୟରେ ସରକାରୀ ଚାକିରିରେ ଥିବା ଦୃଷ୍ଟିରୁ ନୀରବ ରହିଥିଲେ ହେଁ ଜାତିର ଗଠନପାଇଁ, ସମାଜର ସୌଷ୍ଠବାନ୍ୱିତ ଅଭିବୃଦ୍ଧିପାଇଁ ତାଙ୍କର ଲେଖନୀ ଚଳଚଞ୍ଚଳ ହୋଇଉଠିଛି । ସ୍ୱାଧୀନତା ପରେ ଓଡ଼ିଆ ଜାତିକୁ ନୂଆ ରୂପରେ ଗଢ଼ିବାପାଇଁ ତତ୍ପରତା ପ୍ରକାଶ କରିଛନ୍ତି । ସେ ସତେ ଯେପରି ସ୍ୱପ୍ନ ଦେଖିଛନ୍ତି ଏକ ଆଗାମୀ ଦିନର ! ମତବାଦ ଦୃଷ୍ଟିରୁ କାହ୍ନୁଚରଣ ସମାଜବାଦୀ ବାସ୍ତବତାର ସ୍ୱପ୍ନ ଦେଖିଲେ ହେଁ ସେ ହୋଇଯାଇଛନ୍ତି ସାମାଜିକ ବାସ୍ତବବାଦର ଅପୂର୍ବ ରୂପକାର । ବୈଷମ୍ୟ ଓ ନିର୍ଯାତନାପୂର୍ଣ୍ଣ ସମାଜରେ ନୂତନ ମଣିଷ ଓ ସୁସ୍ଥ ସମାଜ ଗଢ଼ିବାପାଇଁ ସେ ଦେଇଛନ୍ତି ବଜ୍ର ଆହ୍ୱାନ ।

ଆନ୍ତର୍ଜାତିକ ସ୍ତରରେ ଯେଉଁସବୁ ମତବାଦ, ସମାଜତାତ୍ତ୍ୱିକ ବିଚାର-ବିମର୍ଶ, ବୈଜ୍ଞାନିକ ଉଦ୍ଭାବନ, ଯୁକ୍ତିବାଦ, ମନସ୍ତାତ୍ତ୍ୱିକ ବିଶ୍ଳେଷଣ, ମଣିଷ ମନର ରହସ୍ୟ ଉନ୍ମୋଚନ, ଅସ୍ତିତ୍ୱବାଦୀ ଚେତନା, ଭାରତୀୟ ପରିପ୍ରେକ୍ଷୀରେ ଯେଉଁସବୁ ସଂଘାତ ଦେଖାଦେବାର ନୂତନ ସୃଷ୍ଟିର ଉତ୍ସ ହୋଇଥିଲା ତାହାକୁ କାହ୍ନୁଚରଣ ନିଜ ଉପନ୍ୟାସମାନଙ୍କରେ ପ୍ରକାଶ କରି ଉତ୍ତରପୁରୁଷଙ୍କପାଇଁ ପ୍ରେରଣାଦାୟକ ହୋଇ ରହିଛନ୍ତି ।

ମାନବବାଦୀ ସ୍ରଷ୍ଟା କାହ୍ନୁଚରଣଙ୍କ ଉପନ୍ୟାସଗୁଡ଼ିକ ସଂସ୍କାରଧର୍ମୀ । ସଂସ୍କାରର ମୂଳ ପ୍ରେରଣା ପୁଣି ହୋଇଛନ୍ତି ନାରୀ । ତାଙ୍କର ନାରୀଚରିତ୍ର ଚିତ୍ରଶାଳାରେ ପ୍ରତ୍ୟେକଟି କଳାକୃତି, ପ୍ରତ୍ୟେକଟି ଚରିତ୍ର ଅସାଧାରଣ, ଅନନ୍ୟ ଓ ନିଜସ୍ୱ ଦୀପ୍ତିରେ ଉଦ୍ଭାସିତ । ଓଡ଼ିଆ କଥା-ସାହିତ୍ୟରେ ତାଙ୍କ ପରି ଆଉ କେହି ନାରୀର ବିବିଧରୂପ, ତା'ର ବିକାଶ, ତା'ର ସ୍ୱପ୍ନ ଓ ସମ୍ଭାବନାକୁ ଏପରି ମନୋଜ୍ଞ କଳାରୂପ ଦେଇପାରି ନାହାନ୍ତି ।

କାହ୍ନୁଚରଣଙ୍କ ଅସାଧାରଣ ସୃଜନ ପ୍ରତିଭାକୁ ସମ୍ମାନ ଜଣାଇବା ସଙ୍ଗେ ସଙ୍ଗେ ଏହା ମଧ୍ୟ ସ୍ୱୀକାର କରିବାକୁ ପଡ଼ିବ ଯେ ତାଙ୍କ ଉପନ୍ୟାସରେ ଚରିତ୍ର ସୃଷ୍ଟି କ୍ଷେତ୍ରରେ ବୈଚିତ୍ର୍ୟର ଅଭାବ ପରିଲକ୍ଷିତ ହୁଏ । ତାଙ୍କ ପ୍ରେମପ୍ରଧାନ ଅଧିକାଂଶ ଉପନ୍ୟାସର ନାରୀଚରିତ୍ରଗୁଡ଼ିକ ଏକାଭଳି ଜଣାଯାନ୍ତି । ଦୁର୍ବୃତ୍ତମାନଙ୍କର ଚରିତ୍ର ଲେଖକଙ୍କ ଉପନ୍ୟାସଗୁଡ଼ିକରେ ପ୍ରାୟ ଦେଖାଯାଆନ୍ତି ନାହିଁ । ବ୍ୟଙ୍ଗ, ବିଦ୍ରୂପ ବା ହାସ୍ୟରସ ମାଧ୍ୟମରେ ଉପନ୍ୟାସଗୁଡ଼ିକୁ ସକ୍ରିୟ କରାଇବାରେ ଲେଖକ ମଧ୍ୟ ଯତ୍ନଶୀଳ ହୋଇ ନାହାନ୍ତି ।

କାହ୍ନୁଚରଣଙ୍କ ଉପନ୍ୟାସଗୁଡ଼ିକ ଓଡ଼ିଆ ସାହିତ୍ୟର ପାଠକଗୋଷ୍ଠୀକୁ ସମ୍ପ୍ରସାରିତ କରିଛି । ତାଙ୍କ ରଚିତ ପୁସ୍ତକଗୁଡ଼ିକ ବୀତସ୍ପୃହ ଉତ୍କଳୀୟମାନଙ୍କ ମଧ୍ୟରେ ପଠନର ସ୍ପୃହା ବଢ଼ାଇଛି । ଗୋଟିଏ ବାକ୍ୟରେ କହିଲେ ସେ ଓଡ଼ିଆ କଥାସାହିତ୍ୟକୁ ଲୋକାଭିମୁଖୀ କରାଇପାରିଛନ୍ତି । ଏ ସଂକ୍ରାନ୍ତରେ ସୁଦୂର ଆମେରିକାରୁ ଅନୁଜ ଗୋପୀନାଥ ମହାନ୍ତି – ଯେ କି ଓଡ଼ିଆ ଉପନ୍ୟାସ ଜଗତର ସମ୍ରାଟ୍ ବୋଲି ପରିଚିତ – ଜ୍ୟେଷ୍ଠ ଭାଇଙ୍କୁ ଜନ୍ମଦିନର ଶୁଭେଚ୍ଛା ଜଣାଇ ଯେଉଁ ପତ୍ର ଲେଖିଥିଲେ ତାହାହିଁ ବାସ୍ତବ ଚିତ୍ର ପ୍ରଦାନ କରେ ।

ସେ ଲେଖିଥିଲେ - ''ଆପଣଙ୍କ ବହି ଓଡ଼ିଶାର ଘରେ ଘରେ କିଏ ନ ପଢ଼ିଛି ? କିଏ ନ ଖୋଜେ? କାଲିଫର୍ଣ୍ଣିଆର ପୃଥିବୀ ପ୍ରସିଦ୍ଧ ବର୍କଲେ ୟୁନିଭରସିଟି ଲାଇବ୍ରେରୀରେ, ଶାନ୍ତାକ୍ରୁଜ ଲାଇବ୍ରେରୀ ଦେଖି ଆସିଲି ଆପଣଙ୍କ ସବୁ ଉପନ୍ୟାସ ଅଛି । ସେମିତି ଅନ୍ୟତ୍ର ଥିବ ... ।''

ସୁତରାଂ କାହ୍ନୁଚରଣହିଁ ଓଡ଼ିଆ ସାହିତ୍ୟର ଅପ୍ରତିଦ୍ୱନ୍ଦ୍ୱୀ ଔପନ୍ୟାସିକ । ପଚାଶରୁ ଊର୍ଦ୍ଧ୍ୱ ଉପନ୍ୟାସର ସ୍ରଷ୍ଟା, ସେ ମଧ୍ୟ ଶ୍ରେଷ୍ଠ ଲୋକପ୍ରିୟ କଥାଶିଳ୍ପୀ । ଆଉ ଯେତେ ସ୍ରଷ୍ଟା ନିଜ ସୃଷ୍ଟିକୁ ଯେତେ ଊର୍ଦ୍ଧ୍ୱକୁ ଟେକି ଧରିଲେ ମଧ୍ୟ ସେମାନେ କାହ୍ନୁଚରଣଙ୍କ ଶ୍ରଦ୍ଧା ଓ ଜନପ୍ରିୟତାକୁ ମ୍ଳାନ କରିପାରି ନାହାନ୍ତି । ବରଂ ତୁଳନାର ଆଲୋକରେ କାହ୍ନୁଚରଣଙ୍କ ସୃଷ୍ଟି ପରମ୍ପରାକୁ ବିଚାର କଲେ ସ୍ପଷ୍ଟ ହୃଦ୍‌ବୋଧ ହେବ ଯେ କାହ୍ନୁଚରଣ ହିଁ ବିଂଶ ଶତାବ୍ଦୀର ଓଡ଼ିଆ ସାହିତ୍ୟର ଶ୍ରେଷ୍ଠ ଅନତିକ୍ରମ୍ୟ ମହାନାୟକ ଓ ତାଙ୍କ ସୃଷ୍ଟିସମ୍ଭାର ଓଡ଼ିଆ ଭାଷାର ଏକ ଗଦ୍ୟ ମହାକାବ୍ୟ ।

❑❑❑



## ଓଡ଼ିଆ କଥା-ସାହିତ୍ୟର ସମ୍ରାଟ୍

# ଗୋପୀନାଥ ମହାନ୍ତି

## [୧୯୧୪-୧୯୯୧]

ଓଡ଼ିଆ ଉପନ୍ୟାସର ଇତିହାସରେ ଗୋପୀନାଥ ମହାନ୍ତି ଜଣେ ଅସାମାନ୍ୟ ସ୍ରଷ୍ଟା । ଓଡ଼ିଆ ଭାଷା ଓ ସାହିତ୍ୟର ଅଭିବୃଦ୍ଧି ସାଧନରେ ତଥା ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ ଚିତ୍ରପଟ ଅଙ୍କନରେ ସେ ଯେତେ ଊର୍ଦ୍ଧ୍ୱକୁ ଉଠିପାରିଛନ୍ତି, ତାହା କଳନା କରି ହୁଏ ନାହିଁ । ଫକୀରମୋହନଙ୍କ ପରେ ଜଣେ ସଫଳ ଔପନ୍ୟାସିକ ଭାବରେ କେବଳ ଓଡ଼ିଆ କଥାସାହିତ୍ୟରେ ନୁହେଁ ସମଗ୍ର ଭାରତୀୟ ସାହିତ୍ୟରେ ତାଙ୍କର କୀର୍ତ୍ତି ଓ ଖ୍ୟାତି ପରିବ୍ୟାପ୍ତ ହୋଇଛି ।

### ଜନ୍ମ

କଟକରୁ ଏଗାର ମାଇଲ ଦୂର ଦେବୀ ନଈର ଶାଖା ସିତୁଆ ନଈକୂଳରେ ଅବସ୍ଥିତ ନାଗବାଲି ଗ୍ରାମରେ ୧୯୧୪ ମସିହା ଅପ୍ରେଲ ମାସ ୨୦ ତାରିଖ ବୈଶାଖ କୃଷ୍ଣପକ୍ଷ ଦିନ ଗୋପୀନାଥ ଜନ୍ମଗ୍ରହଣ କରିଥିଲେ । ସେ ଅନେକ କାଳ ପର୍ଯ୍ୟନ୍ତ ମାତା ଦୁର୍ଗାଦେବୀଙ୍କ ହେପାଜତରେ ବଢ଼ିଲେ । ତାଙ୍କର ପିତା ସୂର୍ଯ୍ୟମଣି ମହାନ୍ତି ସୁଦୂର ସୋନପୁରରେ ଅବସ୍ଥାନ କରୁଥିଲେ । ବଡ଼ଭାଇ ଗିରିଧାରୀ ମହାନ୍ତି ଅନ୍ନସଂସ୍ଥାନପାଇଁ ପହଞ୍ଚିଥିଲେ ବିହାରର ପାଟଣା ସହରରେ । ଆଉ ଦୁଇ ଭାଇ କାହ୍ନୁଚରଣ ଓ ଯଦୁନାଥ କଟକରେ ଅଧ୍ୟୟନରତ ଥିଲେ । ଫଳରେ ଗୋପୀନାଥଙ୍କ

ପ୍ରତ୍ୟକ୍ଷ ତତ୍ତ୍ୱାବଧାନ ପଡ଼ିଥିଲା ବୋଉଙ୍କ ଉପରେ । ଆର୍ଥିକ ଦୁରବସ୍ଥା ଯୋଗୁଁ ଗୋପୀନାଥଙ୍କ ପାଠପଢ଼ାର ପ୍ରଶ୍ନ ଉଠି ନ ଥିଲା । ନ ବର୍ଷ ଚାଲିଲାବେଳକୁ ତାଙ୍କର ପାଠ ପଢ଼ାରେ ମନ ନ ଥିଲା । ଗାଁ ଟୋକାଙ୍କ ସଙ୍ଗେ ସକାଳୁ ସଞ୍ଜ ଯାଏଁ ଦାଣ୍ଡିଆ ମାରି ବୁଲୁଥିଲେ । ମନରେ ଥାଏ ଆନନ୍ଦ, ଆଉ ବହୁତ ଖୁସି ।

ଅବଧାନଙ୍କ ପାଖରେ ବିଦ୍ୟାରମ୍ଭ କଲାବେଳକୁ ପିତା ଚାକିରି ଛାଡ଼ି ଘରକୁ ଫେରିଥାନ୍ତି । ସେ ବି ସାନପୁଅର ଶିକ୍ଷା ଉପରେ ସେତେ ଗୁରୁତ୍ୱ ଦେଇ ନ ଥିଲେ । ଦିନେ ବଡ଼ଭାଇ କାହ୍ନୁଚରଣ କଟକରୁ ଆସିଲେ । ଉଦୁଉଦିଆ ଖରାରେ ଗାଁ ଟୋକାଙ୍କ ସଙ୍ଗେ ଧେଙ୍ଗଡ଼ ଗୋପୀନାଥ ବୁଲୁଥିବାର ଦେଖି ତାଙ୍କୁ ନିସ୍ତୁକ ମାଡ଼ ଦେଲେ । ବାପାଙ୍କ ପାଖକୁ ଟାଣି ଟାଣି ଆଣି କହିଚାଲିଲେ –

''ଏଟା ନଷ୍ଟ ହୋଇଗଲା ବାପା ।''

ପିତା ସୂର୍ଯ୍ୟମଣିବାବୁ କୋଳପୋଛା ପୁଅକୁ କିଛିକ୍ଷଣ ଚାହିଁଲେ । ତା'ପରେ ଦୀର୍ଘନିଶ୍ୱାସ ପକାଇ କହିଲେ –

''ତାକୁ ଛାଡ଼ିଦେ; ମାରି କି ଲାଭ ? ସେ ପାଠ ନ ପଢୁ । ସେ ହଳ କରିବ, ମାଟି ହାଣିବ । ସକାଳୁ କଂସାଏ ପଖାଳ ଆଉ ଶାଗ ମେଞ୍ଚାଏ ଓ ଲୁଣ ଦି'ଟା ଖାଇ ବିଲକୁ ଯିବ । ଖରାବେଳକୁ ଲେଉଟିଲେ ଭାଉଜମାନେ ମୂଲିଆଙ୍କୁ ଦେଲାପରି କଂସାଏ ପଖାଳ, ଶାଗ ମେଞ୍ଚାଏ, ଲୁଣ ଦି'ଟା ଆଗରେ ଥୋଇଦେବେ । ... ସେ ସେଇ କାମ କରିବ ।''

ବାପାଙ୍କ କଥାଗୁଡ଼ା ବାଳକ ଗୋପୀନାଥଙ୍କ ଦେହରେ ନିଆଁଖୁଣ୍ଟା ପରି ଗଳିଗଲା । ମନ ଭାରି ଖରାପ ହେଲା । କିଛି ଭଲ ଲାଗିଲା ନାହିଁ । ମନେ ମନେ ବହୁ ଚିନ୍ତା କଲେ । ଦିନେ ନିରାଟ ଖରାବେଳେ କାହାରିକୁ କିଛି ନ କହି ଏକୁଟିଆ କଟକ ଗଲେ । ଯଦୁ ଭାଇ, କାହ୍ନୁଭାଇ କଟକ ସାମନ୍ତ ହଷ୍ଟେଲରେ ରହି ପ୍ୟାରୀମୋହନ ଏକାଡେମୀରେ ପଢୁଥାନ୍ତି । ସାନଭାଇକୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ଦି'ଦିନ ମଧ୍ୟ ସେ କଟକରେ ରହିଲେ । ମାଷ୍ଟ୍ରଙ୍କୁ କହି କ୍ଲାସରେ ମଧ୍ୟ ବସିଲେ । କିନ୍ତୁ ଗୋପୀନାଥଙ୍କ ପଢ଼ା ଖର୍ଚ୍ଚ ତୁଲାଇବାକୁ ଭାଇମାନେ ରାଜିହେଲେ ନାହିଁ । ସମ୍ବଳ ମଧ୍ୟ ନ ଥିଲା । ବାଧହୋଇ ଗୋପୀନାଥ ଫେରିଆସିଲେ ଗାଁର ଦୁଧ ବିକି ଯାଇଥିବା ଗଉଡ଼ଙ୍କ ସାଙ୍ଗେ ।

ମୁହଁ ସଞ୍ଜବେଳେ ସାଢ଼େ ପାଞ୍ଚକୋଶ ବାଟ ପାଦରେ ଚାଲି ଭଙ୍ଗା ମନରେ ଘରେ ପହଞ୍ଚିଲେ ଗୋପୀନାଥ । ବାପା ଦାଣ୍ଡଦୁଆରେ ବସିଥିଲେ । ବାପା ସବୁ ବୁଝି ପାରିଲେ । ଛାତି ଭିତରେ କୋହ ଉଠିଲା । ସିଧାସଳଖ ପୁଅ ମୁହଁକୁ ଚାହିଁ କଥା ପଦେ ମଧ୍ୟ ପଚାରି ପାରିଲେ ନାହିଁ । ଦୀର୍ଘ ନିଶ୍ୱାସ ଛାଡ଼ି ଗମ୍ଭୀର ହୋଇ ଦାଣ୍ଡ ପିଣ୍ଡାରେ ବସିରହିଲେ – ଅନେକ ରାତି ଯାଏଁ ।

ତା' ପରଦିନ ବଡ଼ି ଭୋରରୁ ବାପା କଟକ ବାହାରିଲେ ଚାକିରି ଖୋଜି । ବୟସ ସେତେବେଳକୁ ତାଙ୍କୁ ଅଣଷଠି । ଭଗ୍ନ ସ୍ୱାସ୍ଥ୍ୟ ମଧ୍ୟ । ମନରେ ତଥାପି ଗୋଟାଏ ସଙ୍କଳ୍ପ – ଯେମିତି ହେଲେ ପୁଅ ପାଠ ପଢ଼ିବ । ଦୈବକ୍ରମେ କଟକରେ ତାଙ୍କର ଦର୍ପଣୀ ଇଷ୍ଟେଟର ଦେଓ୍ୱାନ କୃଷ୍ଣ ନନ୍ଦଙ୍କ ସଙ୍ଗେ ଦେଖା ହେଲା । ଚାକିରି ବି ମିଳିଗଲା । ମହାବିନାୟକ ମନ୍ଦିରର ମରାମତି କାମ ପାଇଁ ଓଭରସିଅର ଭାବେ ସେ ନିଯୁକ୍ତ ହେଲେ । ବାପା ପୁଅକୁ ନେଇ ଦର୍ପଣୀ ଗଲେ । ସେଇଠି ଗୋପୀନାଥଙ୍କ ଅଙ୍କ ଓ ସାହିତ୍ୟ ପାଠପଢ଼ାର ମୂଳଦୁଆ ପଡ଼ିଲା ।

ବାପା କିନ୍ତୁ ଦର୍ପଣୀରେ ବେଶି ଦିନ ରହିଲେ ନାହିଁ । ସେ ଥିଲେ ସ୍ୱାଧୀନଚେତା । ଅନ୍ୟର ବଶ୍ୟତା ସ୍ୱୀକାର କରିବା ତାଙ୍କ ପକ୍ଷେ କଷ୍ଟସାଧ୍ୟ ଥିଲା । ସେ କେଇମାସ ସେଠାରେ ରହିଲାପରେ ପୁତ୍ରକୁ ଘରକୁ ପଠାଇଦେଇ ଚାକିରି ଛାଡ଼ି ପୁରୀ ଗଲେ ।

ପୁରୀରେ ସୂର୍ଯ୍ୟମଣିବାବୁଙ୍କର ସୋନପୁର ରାଜାଙ୍କ ସହିତ ସାକ୍ଷାତ୍ ହେଲା । ସେଇଠି ସେ ପୂର୍ବରୁ ଚାକିରି କରୁଥିଲେ । ପୁନର୍ବାର ସେ ୧୯୨୩ ମସିହାରେ ସେଠାକାର ବାରିକମିସ୍ତ୍ରୀ ବିଭାଗର ମୁଖ୍ୟ ଓଭରସିଅର ଭାବେ ନିଯୁକ୍ତି ପାଇଲେ । ସେ ପୁତ୍ରକୁ ସଙ୍ଗରେ ନେଇ ପୁଣି ସୋନପୁର ଯିବାକୁ ସ୍ଥିର କଲେ ।

ସୋନପୁର ଯିବା ପୂର୍ବରୁ ପିତା ଓ ପୁତ୍ର ଉଭୟେ ପୁରୀ ଯାଇ ଜଗନ୍ନାଥଙ୍କ ଦର୍ଶନ କଲେ । ଏହାପରେ ସମୁଦ୍ର କୂଳକୁ ଗଲେ । ବେଳାଭୂମିରେ ଉଭୟେ ସମୁଦ୍ରର ଉତ୍ତାଳ ତରଙ୍ଗମାଳାକୁ ଚାହିଁ ରହିଥିଲେ । ହଠାତ୍ ଗୋଟିଏ ବଡ଼ ଲହରୀ ଦୁହିଁଙ୍କ ପାଦ ଛୁଇଁ ଚାଲିଗଲା । ରହିଗଲା ଗୋଟିଏ ଚକଚକିଆ ହଳଦି ରଙ୍ଗର କୋହେନୂର ପେନ୍‌ସିଲଟିଏ । ସୂର୍ଯ୍ୟମଣିବାବୁ ପେନ୍‌ସିଲଟି ଗୋଟାଇ ନେଲେ ଓ ପୁଅ ହାତକୁ ବଢ଼େଇଦେଇ କହିଲେ –

''ନେ, ଏଥର ତୋର ଅସଲ ବିଦ୍ୟାରମ୍ଭ ହେଲା । ସାଗର ଦେବତା ଏ ପେନ୍‌ସିଲଟି ତତେ ଉପହାର ଦେଇଛନ୍ତି ।''

**ଉଚ୍ଚ ବିଦ୍ୟାଳୟ ଶିକ୍ଷା**

ବାପାଙ୍କ ସାଙ୍ଗରେ ଗୋପୀନାଥ ସୋନପୁର ଗଲେ । ସୋନପୁର ହାଇ ଇଂଲିଶ ସ୍କୁଲରେ ନାମ ଲେଖାଇବାକୁ ବାପା ଚାହିଁଲେ । ମାତ୍ର ଶିକ୍ଷାଗତ କୌଣସି ପ୍ରମାଣପତ୍ର ଗୋପୀନାଥଙ୍କର ନ ଥିଲା । ସେହି ସ୍କୁଲର ଆସିଷ୍ଟାଣ୍ଟ ହେଡ୍‌ମାଷ୍ଟର ନରେନ୍ଦ୍ରନାଥ ରାୟ ନ' ବର୍ଷ ବୟସ୍କ ଗୋପୀନାଥଙ୍କୁ ନାମ ଲେଖାଇବା ପୂର୍ବରୁ ପରୀକ୍ଷା କରି ଦେଖିଲେ ଯେ ସେ ଇଂରାଜୀରେ ସପ୍ତମ, ଅଙ୍କରେ ଷଷ୍ଠ ଓ ସାହିତ୍ୟରେ ପଞ୍ଚମ ଶ୍ରେଣୀପାଇଁ ଉପଯୁକ୍ତ । ଏକ ମଧ୍ୟମ ପନ୍ଥା ଗ୍ରହଣପୂର୍ବକ ଗୋପୀନାଥଙ୍କୁ ଷଷ୍ଠ ଶ୍ରେଣୀରେ ନାମ ଲେଖାଇବାପାଇଁ ସେ ପରାମର୍ଶ

ଦେଲେ । କିନ୍ତୁ ବାପା ମୂଳଦୁଆ ଟାଣ ହେବାପାଇଁ ପଞ୍ଚମ ଶ୍ରେଣୀରେ ପୁଅର ନାମ ଲେଖାଇବାକୁ ଜିଦ୍ ଧରିଲେ । ଶେଷରେ ତାହାହିଁ ହେଲା । ସୋନପୁର ହାଇସ୍କୁଲରେ ପଞ୍ଚମ ଶ୍ରେଣୀରେ ବାଳକ ଗୋପୀନାଥଙ୍କ ନାମ ଲେଖାହେଲା ।

ସୋନପୁର ସ୍କୁଲରେ ଶିକ୍ଷାର ମାନ ଖୁବ୍ ଉଚ୍ଚ ଥିଲା । ଆଦିତ୍ୟ ଗୁରୁ, କପିଳମାଷ୍ଟ୍ରେ ପ୍ରଭୃତି ଶିକ୍ଷକମାନେ ସେଠାରେ ଶିକ୍ଷାଦାନ କରୁଥିଲେ । ସେମାନେ ମଧ୍ୟ ଗୋପୀନାଥଙ୍କ ଶିକ୍ଷା ପ୍ରତି ଦୃଷ୍ଟି ଦେଲେ । ପାଠପଢ଼ା ସାଙ୍ଗକୁ ଗୋପୀନାଥ ଘୋଡ଼ା ଚଢ଼ା ବି ଶିଖିଲେ । ବାପା ଘୋଡ଼ାରେ ଚଢ଼ି କାମ ଦେଖିବାକୁ ଯାଉଥିଲେ । ପୁଅ ପାଇଁ ଘୋଡ଼ାଟିଏ ବି ରଖିଲେ । ବାପାଙ୍କୁ ସୋନପୁରରେ ଗୋଟିଏ ବଡ଼ ବସାଘର ମିଳିଥିଲା ରହିବାକୁ । ବାପ ପୁଅ ସେଥିରେ ରହିଲେ । ବାପାଙ୍କ ଅନୁରୋଧରେ ନରେନ୍ଦ୍ରନାଥ ରାୟ ସପରିବାର ସେଠାରେ ଆସି ରହିଲେ । ସଞ୍ଜ ହେଲେ ନରେନ୍ଦ୍ରବାବୁ ବଂଶୀ ବଜାଉଥିଲେ । ଗୋପୀନାଥ ତାଙ୍କଠାରୁ ବଂଶୀ ବଜାଇବା ଶିଖିଲେ । ପରିଣତ ବୟସରେ ଗୋପୀନାଥବାବୁ ଅଳସ ଅବକାଶରେ ବଂଶୀ ବଜାଉଥିବା ଦେଖିବାକୁ ମିଳୁଥିଲା ।

ନରେନ୍ଦ୍ର ରାୟ ଅମାୟିକ ଲୋକ ଥିଲେ । ତାଙ୍କ ପରିବାରରେ ଗୋପୀନାଥ ପୂରାପୂରି ମିଶିଗଲେ । ଗୋପୀନାଥଙ୍କ ପରିଚୟ ହେଲା ନରେନ୍ଦ୍ର ରାୟଙ୍କ କନ୍ୟା ଶାନ୍ତି ସଙ୍ଗେ । ଶାନ୍ତି ବୟସରେ ଗୋପୀନାଥଙ୍କଠୁଁ ପାଞ୍ଚ ବର୍ଷ ବଡ଼ ଥିଲେ । ତଥାପି ଉଭୟଙ୍କ ମଧ୍ୟରେ ଘନିଷ୍ଠତା ହେଲା ।

ଶାନ୍ତି ବହୁ ବଙ୍ଗଳା ବହି ପଢୁଥିଲା । ବଙ୍କିମଚନ୍ଦ୍ର, ଶରତଚନ୍ଦ୍ରେ, ରବୀନ୍ଦ୍ରନାଥ ପ୍ରଭୃତିଙ୍କ ଉପନ୍ୟାସ ତା'ର ପ୍ରିୟ ଥିଲା । ଦିନେ ଶାନ୍ତି ପରିହାସରେ ଗୋପୀନାଥଙ୍କୁ ପଚାରିଲା – ''ତୁମ୍ଭ ଓଡ଼ିଆରେ ଏମିତି ଉପନ୍ୟାସ ବହି ଅଛି ?''

ଗୋପୀନାଥ ଉପନ୍ୟାସ ପଢ଼ି ନ ଥିଲେ । ସେ କିଛି ଉତ୍ତର ଦେଇ ନ ପାରି ବାପାଙ୍କୁ ଜଣାଇଲେ । ବାପା ଉତ୍ତର ଦେଲେ –''ଓଡ଼ିଆରେ ବହି ନାହିଁ, କିଏ କହିଲା ?''

କଟକ ଟ୍ରେଡିଂ କମ୍ପାନୀ ପାଖକୁ ଚିଠି ଲେଖି ବାପା ଗୋଛାଏ ଉପନ୍ୟାସ ବହି ମଗାଇଲେ । ଯଥା ସମୟରେ ପାର୍ସଲ ଘରେ ପହଞ୍ଚିଲା । ଗୋଛାକ ଯାକ ବହି ଧରି ଗୋପୀନାଥ ଦୌଡ଼ି ଦୌଡ଼ି ଗଲେ ଶାନ୍ତି ପାଖକୁ । ସେଥିରେ ଥିଲା ଫକୀରମୋହନଙ୍କ 'ଛ' ମାଣ ଆଠ ଗୁଣ୍ଠ', ଚିନ୍ତାମଣି ମହାନ୍ତିଙ୍କ 'ବୁଲା ଫକୀର', କୁନ୍ତଳାକୁମାରୀଙ୍କର 'କାଳି ବୋହୂ' ପ୍ରଭୃତି । ଶାନ୍ତିକୁ ଦେଖାଇଲେ ସେଗୁଡ଼ାକ । ଶାନ୍ତି ସେଗୁଡ଼ିକୁ ଦେଖି ପୁଣି ପଚାରିଲା – ''ଏ ତ ସବୁ ପତଳା ବହି ; ଓଡ଼ିଆରେ କ'ଣ ମୋଟା ବହି ଅଛି ?''

ଗୋପୀନାଥ ପୁଣି ବାପାଙ୍କୁ ଯାଇ ପଚାରିଲେ । ବାପା ଆଶ୍ୱାସନା ଦେଇ କହିଲେ – ''ଅଛି ! ଆମର ମୋଟା ମୋଟା ଛାନ୍ଦ, ପୁରାଣ ଅଛି । ଆଉ ଯାହା ନାହିଁ, ତୁମ୍ଭେମାନେ ସବୁ ଲେଖିବ । ଏଥିପାଇଁ ଚିନ୍ତା କ'ଣ ?''

ବାପାଙ୍କ କଥାଗୁଡ଼ାକ ବାଳକ ଗୋପୀନାଥଙ୍କ ମନରେ ସବୁଦିନପାଇଁ ରହିଗଲା । ମନରେ କଲେ ଦୃଢ଼ ସଙ୍କଳ୍ପ – ସେମିତି ମୋଟା ମୋଟା ବହି ଲେଖିବେ ।

ଆଉ ଲେଖିଲେ ମଧ । ହେଲେ ବହୁ ମୋଟା ମୋଟା ବହିର ସ୍ରଷ୍ଟା ।

**ପାଟଣାରେ ଶିକ୍ଷା**

୧୯୨୪ ମସିହାରେ ଗୋପୀନାଥ ସୋନପୁର ଛାଡ଼ି ପାଟଣା ପଢ଼ିବାକୁ ଗଲେ । ପାଟଣା ହାଇସ୍କୁଲର ବଙ୍ଗଳା ସେକ୍‌ସନ୍‌ରେ ତାଙ୍କର ନାମ ଲେଖା ହେଲା । ସେତେବେଳେ କଲିକତାରୁ ବିଶିଷ୍ଟ ବ୍ୟକ୍ତିମାନେ ପାଟଣା ଆସୁଥିଲେ । ସାହିତ୍ୟ ଓ ସଂସ୍କୃତି ସମ୍ବନ୍ଧରେ ଭାଷଣ ଦେଉଥିଲେ । ସ୍ୱାମୀ ବିବେକାନନ୍ଦ, ପ୍ରଖ୍ୟାତ ଔପନ୍ୟାସିକ ଶରତଚନ୍ଦ୍ର ପ୍ରଭୃତିଙ୍କ ଭାଷଣ ଶୁଣିବାର ସୁଯୋଗ ଗୋପୀନାଥ ପାଇଲେ । ବଡ଼ଭାଇ କାହ୍ନୁଚରଣ ପାଟଣାରେ ରହୁଥିଲେ । ସେ ହିନ୍ଦୀଭାଷାରେ ପାରଙ୍ଗମ ହୋଇଥାନ୍ତି । ମଉସା ନିଶାମଣି ମହାନ୍ତି ମଧ ପାଟଣାରେ ଚାକିରି କରୁଥାନ୍ତି । ଗୋପୀନାଥ ପାଟଣାରେ ଥିଲାବେଳେ ବହୁ ଇଂରାଜୀ ପୁସ୍ତକ ପଢ଼ିଲେ । ବଙ୍ଗଳା ଓ ହିନ୍ଦୀ ଭାଷାରେ ଲିଖିତ ପୁସ୍ତକମାନ ମଧ ଅଧ୍ୟୟନ କଲେ ।

ପାଟଣା ହାଇସ୍କୁଲରେ ଥରେ ଓଡ଼ିଆ ପ୍ରବନ୍ଧ ପ୍ରତିଯୋଗିତା ହେଲା । ସ୍କୁଲରେ ବହୁ ଓଡ଼ିଆ ଛାତ୍ର ଥିଲେ । ଜଣେ ଓଡ଼ିଆ ଶିକ୍ଷକ ବି ଥିଲେ । ତାଙ୍କ ନାମ ଅଧିରାଜ ମୋହନ ସେନାପତି । ବହୁ ଓଡ଼ିଆ ଛାତ୍ର ସେ ପ୍ରତିଯୋଗିତାରେ ଭାଗ ନେଲେ । ଗୋପୀନାଥ କିନ୍ତୁ ପ୍ରଥମ ହୋଇ ପୁରସ୍କୃତ ହେଲେ । ଏହାପରେ ଗୋପୀନାଥ ଓଡ଼ିଆ ସାହିତ୍ୟ ପ୍ରତି ଆକୃଷ୍ଟ ହେଲେ । ଓଡ଼ିଆ ସାହିତ୍ୟ ଆଲୋଚନା, ତର୍କ ଓ ଲେଖାପଢ଼ା ଦିଗରେ ମନୋନିବେଶ କଲେ ।

**ଉଚ୍ଚ ଶିକ୍ଷା**

୧୯୩୦ ମସିହରେ ଗୋପୀନାଥ ପାଟଣା ବିଶ୍ୱବିଦ୍ୟାଳୟରୁ ଦ୍ୱିତୀୟ ସ୍ଥାନ ଅଧିକାର କରି ମାଟ୍ରିକ୍ୟୁଲେସନ ପାସ୍ କଲେ । ଏଥି ମଧରେ ବଡ଼ ଦୁଇ ଭାଇ ଯଦୁନାଥ ଓ କାହ୍ନୁଚରଣ ଚାକିରିରେ ଯୋଗ ଦେଇଥାନ୍ତି । ଫଳରେ ପରିବାରରେ ଦେଖାଦେଇଥିବା ଅଭାବ କିଛି ପରିମାଣରେ ଲାଘବ ହୋଇଥାଏ। ଗୋପୀନାଥ ମଧ ବୃତ୍ତି ପାଇବାକୁ ଯୋଗ୍ୟ ହୋଇଥାନ୍ତି । ତଥାପି ସ୍ନେହମୟୀ ମାତାଙ୍କ ଇଚ୍ଛାନୁଯାୟୀ ଗୋପୀନାଥ କଟକର ରେଭେନ୍‌ସା କଲେଜରେ ନାମ ଲେଖାଇଲେ । ସେ ଇଷ୍ଟ ହଷ୍ଟେଲରେ ରହିଲେ ।

ଗୋପୀନାଥ 'ଆମ କଲେଜର ଶତବାର୍ଷିକୀ' ଶୀର୍ଷକ ପ୍ରବନ୍ଧରେ ଲେଖିଛନ୍ତି – ''ହଷ୍ଟେଲ ଜୀବନ ଓ ପଦାରେ ରହିଥିବା ଛାତ୍ରଙ୍କ ଜୀବନ ସହିତ ଘନିଷ୍ଠ ସମ୍ପର୍କ ଥିଲା । ଅସଂଖ୍ୟ ବନ୍ଧୁ, ଅନେକ ସୁଖର ସ୍ମୃତି, ଅନେକ ପ୍ରକାର

ଅନୁଭୂତି । ଓଡ଼ିଆରେ ଲେଖାଲେଖି କରିବା ଦିଗରେ ଗୁରୁତ୍ୱ ଦେଲି ମୋ ଜୀବନରେ । ଡିବେଟିଂ, ସାହିତ୍ୟ, ଗପ, ଖେଳ, ବୁଲା ଛଡ଼ା ଏହା ଉପରେ ଝୁଙ୍କ ଥିଲା । ''

ସେତେବେଳେ ଓଡ଼ିଆ ସାହିତ୍ୟ, ସଂସ୍କୃତି ଓ ରାଜନୀତିର ପ୍ରାଣକେନ୍ଦ୍ର କଟକ ଥିଲା । ସାହିତ୍ୟ କ୍ଷେତ୍ରରେ ସବୁଜ ଗୋଷ୍ଠୀ ଆଲୋଡ଼ନ ସୃଷ୍ଟି କରିଥିଲେ । ଏହି ସବୁଜ ଗୋଷ୍ଠୀର ସାହିତ୍ୟିକମାନେ ରୋମାଣ୍ଟିସିଜ୍‌ମ ଉପରେ ହିଁ ଲେଖାଲେଖି କରୁଥିଲେ । ବଙ୍ଗଳା ପାଣି ପବନର ଅନୁକରଣରେ ଏହା କରୁଥିଲେ ମଧ୍ୟ ଏହା ବାବୁ-ବୁଦ୍ଧିଜୀବୀମାନଙ୍କଦ୍ୱାରା ଆଦୃତ ହେଉଥିଲା । ଅନ୍ୟ ପକ୍ଷରେ ବିଶ୍ୱନାଥ କରଙ୍କ 'ଓଡ଼ିଆ ସାହିତ୍ୟ' ମଧ୍ୟ ପ୍ରକାଶ ପାଉଥିଲା । 'ସତ୍ୟ ସମାଚାର' ନାମକ ଅନ୍ୟ ଏକ ପତ୍ରିକା ମଧ୍ୟ ବାହାରୁଥିଲା । ସ୍ଥିତାବସ୍ଥା ରକ୍ଷା ଏହାର ଲକ୍ଷ୍ୟ ଥିଲା । ତେଣୁ ସରକାରଙ୍କୁ ସୁହାଇଲା ଭଳି ଲେଖାମାନ ଏଥିରେ ପ୍ରକାଶିତ ହେଉଥିଲା । ତରୁଣ ଗୋପୀନାଥ ଏଇ ଦୁଇଟି ଗୋଷ୍ଠୀର ଭୂମିକାକୁ ଲକ୍ଷ୍ୟ କରିଥିଲେ । ତାଙ୍କର ସାହିତ୍ୟ ମାନସ ଏକପ୍ରକାର ବିଦ୍ରୋହୀ ହୋଇ ଉଠିଲା । ସମାଜବାଦୀ ଚିନ୍ତାଧାରାରେ ଗଢ଼ି ଉଠୁଥିବା 'ଆଧୁନିକ ଗୋଷ୍ଠୀ' ସହିତ ସେ ସମ୍ପୃକ୍ତ ହେଲେ ।

ମାର୍କ୍ସବାଦୀ ଚିନ୍ତାଧାରାରେ ଅନୁପ୍ରାଣିତ ହୋଇ ସେତେବେଳେ ବହୁ ଛାତ୍ର, ଯୁବକ ଏହି ଆଧୁନିକ ଗୋଷ୍ଠୀରେ ସାମିଲ ହୋଇଥିଲେ । ସେମାନଙ୍କ ମଧ୍ୟରେ ଥିଲେ ଭଗବତୀଚରଣ ପାଣିଗ୍ରାହୀ, ବିଶ୍ୱନାଥ ପଶାୟତ, କାଳିନ୍ଦୀଚରଣ ପାଣିଗ୍ରାହୀ, ଅଶୋକ ରାଓ ଓ ଅନନ୍ତ ପଟ୍ଟନାୟକ ପ୍ରଭୃତି ।

ଗୋପୀନାଥ କବି ଅନନ୍ତ ପଟ୍ଟନାୟକଙ୍କ ସ୍ତାବକ ଥିଲେ କହିଲେ ଚଳେ । ଏକ ସାକ୍ଷାତ୍‌କାରରେ ଥରେ ସେ ମନେ ପକାଇ କହିଥିଲେ – 'ଜାଣିଚ କବି ଅନନ୍ତ ପଟ୍ଟନାୟକଙ୍କୁ ? ତାଙ୍କ କବିତା ପଢ଼ିଚ ନା ? ସେତେବେଳେ ସେ ଥିଲେ ମହାବିପ୍ଳବୀ । ଢେଙ୍କାନାଳରେ ଅକଥନୀୟ ଅନ୍ଧାରି ଅତ୍ୟାଚାର ସେ ଭୋଗିଛନ୍ତି । ଖୁବ୍ ପଢ଼ାପଢ଼ି କରନ୍ତି । ... ମଝିରେ ମଝିରେ କଟକରେ ସଭା-ସମିତି ହୁଏ । ଓଜସ୍ୱିନୀ ଭାଷାରେ ଭାଷଣ ଦିଅନ୍ତି । ଆମେ ଉଦ୍‌ବୋଧିତ ହେଉ ... ।''

ଆଧୁନିକ ଗୋଷ୍ଠୀ କ୍ରମେ ଶକ୍ତିଶାଳୀ ହୋଇଉଠିଲେ । ବାଳକୃଷ୍ଣ କରଙ୍କ ସମ୍ପାଦନାରେ 'ସହକାର' ପ୍ରକାଶ ପାଇଲା । 'ସହକାର' ଏହି ଆଧୁନିକ ଗୋଷ୍ଠୀକୁ ଉତ୍ସାହିତ କରୁଥିଲା । 'ଯୁଗବାର୍ତ୍ତା' ମଧ୍ୟ ଏହି ଆଭିମୁଖ୍ୟ ବହନ କରି ପ୍ରକାଶ ପାଇଲା । ଗୋପୀନାଥଙ୍କର ମଧ୍ୟ ପତ୍ରପତ୍ରିକାରେ ଲେଖାମାନ ବାହାରିଲା । ତାଙ୍କର କେତୋଟି ଗଳ୍ପ 'ଡଁ', 'ଭାଗା', 'ଉପାସୀ' ଓ 'ବାୟାକକ' ସମାଜର ନିମ୍ନଶ୍ରେଣୀର ଲୋକଙ୍କ ଜୀବନକୁ ନେଇ ରଚିତ ହୋଇଥିଲା । ୧୯୩୦ ମସିହାରୁ ୧୯୩୬ ମସିହା

ପର୍ଯ୍ୟନ୍ତ ଗୋପୀନାଥ ରେଭେନ୍‌ସା କଲେଜର ଛାତ୍ର ଥିଲେ । ଏହି ସମୟ ମଧ୍ୟରେ ସେ ତାଙ୍କର ଲେଖନୀ ମୁନକୁ ଶାଣିତ କରିନେଇଥିଲେ ।

ସେତେବେଳେ ମଧ୍ୟ ଲେଖକ ଗୋଷ୍ଠୀ ମଧ୍ୟରେ ବୌଦ୍ଧିକ ସଂଗ୍ରାମ ଚାଲିଥାଏ । ପରସ୍ପରର ସାହିତ୍ୟ ପ୍ରତି ସମସ୍ତେ ସଜାଗ ଦୃଷ୍ଟି ରଖିଥାନ୍ତି । ସୁବିଧା ଦେଖି ପତ୍ରପତ୍ରିକା ମାଧ୍ୟମରେ ସଂଗ୍ରାମରେ ଅବତୀର୍ଣ୍ଣ ହୋଇଥାନ୍ତି । କଲିକତାରେ ରହି ବଙ୍ଗଳା ଢାଞ୍ଚାରେ ଲେଖୁଥିବା ଜଣେ ଖ୍ୟାତନାମା କବିଙ୍କୁ ଲକ୍ଷ୍ୟ କରି ଗୋପୀନାଥ ଏକ ବ୍ୟଙ୍ଗ କବିତା ଲେଖିଲେ –

''ଏଇ ହାବୁଡ଼ାର ପୋଲେ ପୋଲେ
ଓଡ଼ିଆ ମାଆର କୋଡ଼ପୋଛା ପୁଅ
ବୋଝ ବୋହି ଯଦି ବାଟ ଚାଲେ,
ବାବୁର ଗାଡ଼ି, ମଟର ଗାଡ଼ି
ଦିଦିମଣି ଥିବ ବାଟ ଚାହିଁ
କିଗୋ ଠାକୁର ଭୁଲିଗଲ କି
ଭାଗବତ ପଦେ ଜଣା ନାହିଁ ।''

୧୯୩୪ ମସିହାରେ ରେଭେନ୍‌ସା କଲେଜରୁ ଇଂରାଜୀ ସାହିତ୍ୟରେ ଦ୍ୱିତୀୟ ଶ୍ରେଣୀରେ ଅନର୍ସ ସହ ପ୍ରଥମ ହୋଇ ଗୋପୀନାଥ ବି.ଏ. ପାସ୍ କଲେ । ଏହାପରେ ଗୋପୀନାଥ ସେହି ଇଂରାଜୀ ସାହିତ୍ୟରେ ଏମ୍.ଏ. ଅଧ୍ୟୟନ କଲେ । ଇଂରାଜୀ ସାହିତ୍ୟ ଅଧ୍ୟୟନ କରି ଏକ ଉନ୍ନତ ଭାଷା ମାଧ୍ୟମରେ ବିଭିନ୍ନ ଭାଷାର ପୁସ୍ତକ ସହିତ ପରିଚିତ ହେବାର ସୁଯୋଗ ପାଇଲେ । କେବଳ ନୂଆ ନୂଆ ଭାବ ନୁହେଁ, ନୂଆ ନୂଆ ଚିନ୍ତା ଉପସ୍ଥାପନା କରିବାର ମାର୍ଗ ସେ ଇଂରାଜୀ ସାହିତ୍ୟରୁ ଶିକ୍ଷା କଲେ । ଇଂରାଜୀ ସାହିତ୍ୟରେ ବିଂଶ ଶତାବ୍ଦୀର ଦ୍ୱିତୀୟ, ତୃତୀୟ ଦଶକ ଆଡ଼କୁ ରିଚାର୍ଡ଼ସନ୍, ଭର୍ଜିନିଆ ଉଲ୍‌ଫ, ଲେଭିସ୍ ଚେଷ୍ଟରସନ୍, ବେଲକ, ଲିଣ୍ଡ ପ୍ରଭୃତି ଏକ ନୂତନ ଶୈଳୀ ସୃଷ୍ଟି କରିଥିଲେ । ଅତି ଉନ୍ନତ ଓ ବୌଦ୍ଧିକ ଚିନ୍ତା ସମନ୍ୱିତ ବିଷୟ ସବୁ ଅତି ସରଳ ଭାବରେ, ସହଜ ଭାଷାରେ ଉପସ୍ଥାପନା କରିବା ଥିଲା ଏହି ସାହିତ୍ୟିକମାନଙ୍କ ଲକ୍ଷ୍ୟ । ସେହି ଅନୁକରଣରେ ଗୋପୀନାଥ ଗତାନୁଗତିକ ସଂସ୍କୃତିଆ ଭାଷା ଓ ପ୍ରୟୋଗ ପରିହାର କରିବାକୁ ସ୍ଥିର କଲେ । ଜୀଅନ୍ତା, କଞ୍ଚା ଓ କଥିତ ଭାଷାରେ ତାତ୍ତ୍ୱିକ ବିଶ୍ଳେଷଣ କରିବାହିଁ ହେଲା ଗୋପୀନାଥଙ୍କ ଲକ୍ଷ୍ୟ । ଏମ୍.ଏ. ପଢ଼ିଲାବେଳେ ଗୋପୀନାଥ ଧାରାବାହିକ ଭାବେ 'ସହକାର', 'ନବଭାରତ' ପ୍ରଭୃତି ପତ୍ରିକାଗୁଡ଼ିକରେ ଓଡ଼ିଆରେ ଏତାଦୃଶ ଶୈଳୀରେ ସାହିତ୍ୟ ଲେଖି ଏକ ନୂତନ ଚେତନା ସୃଷ୍ଟି କଲେ ।

ଗୋପୀନାଥ ତାଙ୍କ ଦୃଷ୍ଟିଭଙ୍ଗୀ ସତରଟି ପ୍ରବନ୍ଧରେ ସ୍ପଷ୍ଟ କରିଦେଲେ । ସେଗୁଡ଼ିକ ସେ ସମୟର ପ୍ରଖ୍ୟାତ ସାହିତ୍ୟ ପତ୍ରିକା 'ସହକାର'ରେ ପ୍ରକାଶ ପାଇଲା । ପ୍ରତ୍ୟେକଟି

ପ୍ରବନ୍ଧ ସାହିତ୍ତ୍ୟିକ ତତ୍ତ୍ୱମୂଳକ ଆଲୋଚନାରେ ସମୃଦ୍ଧ ଥିଲା । ପରବର୍ତ୍ତୀ କାଳରେ ପୁସ୍ତକାକାରରେ ପ୍ରକାଶିତ 'କଳାଶକ୍ତି'ରେ ସେହି ପ୍ରବନ୍ଧଗୁଡ଼ିକ ସନ୍ନିବେଶିତ ହେଲା ।

### ଚାକିରିପାଇଁ ପ୍ରସ୍ତୁତି

ରେଭେନ୍‌ସା କଲେଜରୁ ଇଂରେଜୀ ସାହିତ୍ୟରେ ଗୋପୀନାଥ ପ୍ରଥମ ଶ୍ରେଣୀରେ ଏମ୍.ଏ. ପାସ୍ କଲେ । ଓଡ଼ିଶାରେ ସେତେବେଳେ ଶିକ୍ଷିତ ବ୍ୟକ୍ତିଙ୍କ ସଂଖ୍ୟା କମ୍ ଥିଲା । ବିଶ୍ୱବିଦ୍ୟାଳୟରୁ ଉଚ୍ଚତମ ଡିଗ୍ରୀ ଧାରଣ କରିଥିବା ଗୋପୀନାଥଙ୍କ ତତ୍କାଳୀନ ସର୍ବୋଚ୍ଚ ମାନ୍ୟତାଲାଭ କରିଥିବା ଆଇ.ସି.ଏସ୍. ଚାକିରିପାଇଁ ମନ ହେବା ସ୍ୱାଭାବିକ । ଏହା ମୂଳରେ ଥିଲା ପୁରୀର ବଦାନ୍ୟ ଜଗତ୍‌ବଲ୍ଲଭ ଦାସଙ୍କ ପ୍ରଚୋଦନା । ପାଟଣା ହାଇସ୍କୁଲରେ ପଢୁଥିଲାବେଳେ ଗୋପୀନାଥଙ୍କର ଜଗତ୍‌ବାବୁଙ୍କ ସହିତ ସମ୍ପର୍କ ସ୍ଥାପିତ ହୋଇଥିଲା । ଗୋପୀନାଥଙ୍କ ଉଜ୍ଜ୍ୱଳ ଭବିଷ୍ୟତ୍‌ର ସୂଚନା ପାଇ ଜଗତ୍‌ବଲ୍ଲଭବାବୁ ତାଙ୍କୁ ଆଇ.ସି.ଏସ୍. ହେବାପାଇଁ ଉତ୍ସାହିତ କରିଆସୁଥିଲେ । ୧୯୩୭ ମସିହା ଜାନୁଆରୀରେ ଗୋପୀନାଥ ପ୍ରଥମଥର ଆଇ.ସି.ଏସ୍. ପରୀକ୍ଷା ଦେଲାବେଳେ ପୋଷାକ ଓ ରାସ୍ତା ଖର୍ଚ୍ଚ ପାଇଁ ଏକ ଶତ ଟଙ୍କା ମଧ୍ୟ ଦେଇଥିଲେ । ଆଇ.ସି.ଏସ୍. ପରୀକ୍ଷା ଦିଲ୍ଲୀରେ ହେଉଥିଲା । ଦିଲ୍ଲୀ ଯିବା, ରହିବା ଓ ପୋଷାକ କିଣିବାପାଇଁ ଅର୍ଥର ଅଭାବ ଥିଲା । ଗୋପୀନାଥ ଏଥିରେ ବିଚଳିତ ହୋଇପଡ଼ିବା ସ୍ୱାଭାବିକ । ଦ୍ୱିତୀୟରେ, ଦୁର୍ବଳ ସ୍ୱାସ୍ଥ୍ୟ ମଧ୍ୟ ପରୀକ୍ଷାରେ ଅକୃତକାର୍ଯ୍ୟ ହେବାର ଆଉ ଏକ କାରଣ ଥିଲା । ପରୀକ୍ଷାରେ ସାକ୍ଷାତ୍‌କାର ବ୍ୟବସ୍ଥା ରହିଥିଲା । ତାଙ୍କର ସ୍ୱାସ୍ଥ୍ୟ ମଧ୍ୟ ଭଲ ନ ଥିଲା। ତାଙ୍କର ଛାତିର ଚଉଡ଼ା ଥିଲା ମାତ୍ର ୨୯ ଇଞ୍ଚ । ଓଜନ ଥିଲା ୮୭ ପାଉଣ୍ଡ । ସେ ଯାହାହେଉ, ସେ ଏଥିରେ ଭାଙ୍ଗି ପଡ଼ି ନ ଥିଲେ । ପୁଣି ନୂଆ ଉତ୍ସାହ ଓ ଉଦ୍ଦୀପନାରେ ସେ ବର୍ଷେ ଅଧ୍ୟୟନ କଲେ । ବିଭିନ୍ନ ଜାଗାରେ ଟିଉସନ କରି ଅର୍ଥ ସଞ୍ଚୟ କରିବାରେ ଲାଗିଲେ । ଦୁର୍ଯୋଗକୁ ସରକାର ମଧ୍ୟ ମଝିରେ ପରୀକ୍ଷା ନିୟମ ପରିବର୍ତ୍ତନ କଲେ । ପରୀକ୍ଷା ଫି ବାବଦ ଏକ ଶତ ଟଙ୍କା ଅଗ୍ରିମ ବାନ୍ଧିବାକୁ ପଡ଼ିଲା । କୌଣସି ଉପାୟରେ ଅକ୍ଟୋବର ମାସ ଆଡ଼କୁ ତାହା ଯୋଗାଡ଼ କଲେ । ପରୀକ୍ଷା ଫି ମଧ୍ୟ ଦାଖଲ କଲେ । ଡିସେମ୍ବର ମାସରେ ଦିଲ୍ଲୀ ଯିବା କଥା । କିନ୍ତୁ ଏଥିପାଇଁ ଯେଉଁ ଅର୍ଥ ଆବଶ୍ୟକ ଥିଲା, ତାହା ଯୋଗାଡ଼ କରିପାରିଲେ ନାହିଁ । ଜଗତ୍‌ବାବୁ ତାହା ମଧ୍ୟ ଦେଲେ ନାହିଁ । ପରିବାରର ଅନ୍ୟ କେହି ତାହା ବହନ କଲେ ନାହିଁ । ଫଳରେ ଆଇ.ସି.ଏସ୍. ପରୀକ୍ଷା ଦେବା ଗୋପୀନାଥଙ୍କ ପକ୍ଷେ ସମ୍ଭବ ହେଲା ନାହିଁ । ତାଙ୍କର ସମସ୍ତ ଆଶା-ଆକାଂକ୍ଷା ଚୂରମାର ହୋଇଗଲା । ତାଙ୍କର ମନୋବଳ ଭାଙ୍ଗିଗଲା । ସେ ହତାଶ ହୋଇପଡ଼ିଲେ ।

କିଛିଦିନ ପରେ ଗୋପୀନାଥ ନୂଆ ସଂକଳ୍ପ ନେଲେ । ଅନ୍ତତଃ ଆଲାଏଡ୍ ସର୍ଭିସେସ୍ ପରୀକ୍ଷା ଦେବାପାଇଁ ସ୍ଥିର କଲେ । ଏଥିପାଇଁ ପଢ଼ାପଢ଼ି ଆରମ୍ଭ ମଧ୍ୟ

କରିଦେଲେ । ମାତ୍ର ବେକାର ହୋଇ ବସିରହିବା ତାଙ୍କ ପକ୍ଷେ କଷ୍ଟକର ହୋଇ ପଡ଼ିଲା । ଗଭୀର ହତାଶାରେ ତାଙ୍କ ସମୟ ଅତିବାହିତ ହେବାକୁ ଲାଗିଲା ।

ଚାକିରି ନ ମିଳିବାରୁ ଗୋପୀନାଥ ଟିଉସନ କରି ଚଳିବାକୁ ଆରମ୍ଭ କଲେ । ପିଲାଙ୍କୁ ପାଠ ପଢ଼ାଇବା ସହିତ ପାଠ୍ୟପୁସ୍ତକ ରଚନା କରିବା ଓ ସେଥିରୁ ମିଳୁଥିବା ଅର୍ଥ ଦ୍ୱାରା ଜୀବନ ଧାରଣ କରିବାକୁ ଯୋଜନା କଲେ । ସେ କେତେକ ପୁସ୍ତକ ପ୍ରକାଶକଙ୍କ ଦ୍ୱାରସ୍ଥ ହେଲେ । 'ସାରସ୍ୱତ ପୁସ୍ତକ ଭଣ୍ଡାର' ମଧ୍ୟ ତାଙ୍କୁ ଭୌଗୋଳିକ କାହାଣୀ (୧ମ ଓ ୨ୟ ଭାଗ) ରଚନା କରିବାକୁ କହିଲେ । ସେ ଦୁଇ ଭାଗ ରଚନା ମଧ୍ୟ କଲେ । ମାତ୍ର ତାହା ସ୍କୁଲର ପାଠ୍ୟପୁସ୍ତକ ଭାବେ ଗୃହୀତ ହେଲା ନାହିଁ । ତାଙ୍କର ସେ ଆଶା ମଧ୍ୟ ଭୁଶୁଡ଼ି ପଡ଼ିଲା । ବଞ୍ଚିବାର ଅନ୍ୟ କୌଣସି ସମ୍ମାନଜନକ ପନ୍ଥା ତାଙ୍କ ପାଖେ ରହିଲା ନାହିଁ ।

ଗୋପୀନାଥ ଦିନେ ଗିରିଧାରୀଭାଇଙ୍କ ବସାରୁ କାହ୍ନୁଭାଇଙ୍କ କାଳିଗଳି ବସାକୁ ଆସୁଥିଲେ । ବାଟରେ ନିମାଇଁ ଚରଣ ଦାସଙ୍କ ସଙ୍ଗେ ତାଙ୍କର ଭେଟ ହେଲା । ସେ 'Words and Phrases' ଭଳି କେତେ ଖଣ୍ଡ ପୁସ୍ତକ ଲେଖି କିଛି ଖ୍ୟାତି ଅର୍ଜନ କରିଥାନ୍ତି । ସେ ବଡ଼ ଚାକିରି ଆଶା ଛାଡ଼ି ସାନ ଚାକିରି ଆଗ କରି ଚଳିବାକୁ ପରାମର୍ଶ ଦେଲେ । 'ଶାଗ ପଖାଳ ଥିଲେ ପରେ ଅନାୟାସରେ ମାଛ ଭାତ ଯୋଗାଡ଼ କରିହେବ' – ଏହି ଥିଲା ତାଙ୍କର ମତ । ନିମାଇଁବାବୁ ଗୋପୀନାଥଙ୍କୁ ଗିରିଧାରୀଭାଇଙ୍କ ପାଖକୁ ପଠାଇଦେଲେ – ଓଡ଼ିଶା ଶାସନ ବିଭାଗରେ ଚାକିରି ଖଣ୍ଡେ ପାଇଁ ଦରଖାସ୍ତ ଦେବାକୁ । ପ୍ରଥମେ ଅନିଚ୍ଛା ପ୍ରକାଶ କଲେ ମଧ୍ୟ ଶେଷରେ ଗୋପୀନାଥ ଦରଖାସ୍ତ ଦେଲେ । ସବ୍‌ଡିପୋଟି ଚାକିରି ମଧ୍ୟ ତାଙ୍କୁ ମିଳିଗଲା । ୧୯୩୮ ମସିହା ସେପ୍ଟେମ୍ବର ମାସ ୧୦ ତାରିଖରେ ସେ ସବ୍‌ଡିପୋଟି ଚାକିରିରେ ଯୋଗ ଦେଲେ । ମାସିକ ଦରମା ସେତେବେଳେ ଶହେ ଟଙ୍କା ଥିଲା । ତାଙ୍କର ପ୍ରଥମ କର୍ମସ୍ଥଳୀ ହେଲା ଯାଜପୁର । ସେତେବେଳେ ସେ ଅଞ୍ଚଳରେ ପ୍ରବଳ ନଈ ବଢ଼ି ଆଉ ସରକାରୀ କାମର ଚାପରୁ ନିଷ୍କୃତି ଲାଭ କରି ଆଇ.ଏ.ଏସ୍ ପରୀକ୍ଷା ଦେବା ବି ଆଉ ସମ୍ଭବପର ହେଲା ନାହିଁ । ଆଲୋଚକ ସିଂହଙ୍କ ଭାଷାରେ – "ସେ ଝୁଙ୍କ ନଈ ବଢ଼ିରେ ଭାସିଗଲା ।"

ଆରମ୍ଭ ହେଲା ଗୋପୀନାଥଙ୍କ ଚାକିରି ଜୀବନ । ଆଉ ତା' ସହିତ ଆରମ୍ଭ ହେଲା ସାହିତ୍ୟ ସେବା ।

### ନିର୍ଦ୍ଦିଷ୍ଟ ଆଭିମୁଖ୍ୟ

ସାହିତ୍ୟ ଜଗତରେ ଅବତରଣ କରିବା ପୂର୍ବରୁ ଗୋପୀନାଥଙ୍କ ଏକ ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ଥିଲା । ତାହା ହେଲା ଓଡ଼ିଆ ଭାଷା କିପରି ଉଚ୍ଚ, କିପରି ସମୃଦ୍ଧ ହେବ । ବଙ୍ଗଳା ସାହିତ୍ୟ ସେତେବେଳେ 'ଦାଉ ଦାଉ' ହୋଇ ଜଳୁଥାଏ । ଆଉ ରବୀନ୍ଦ୍ରନାଥ

କବିସୂର୍ଯ୍ୟ ପରି ଝଟକୁଥାନ୍ତି । ଅନ୍ୟାନ୍ୟ ବଙ୍ଗଳା ଲେଖକମାନଙ୍କ ଲେଖା ବି ସେ ମନୋଯୋଗ ଦେଇ ପଢ଼ୁଥାନ୍ତି । ଇଂରାଜୀ ସାହିତ୍ୟ ପଢ଼ି ତା' ମାଧ୍ୟମରେ ପୃଥିବୀର ଅନ୍ୟାନ୍ୟ ଦେଶର ସାହିତ୍ୟ ପ୍ରତି ଦୃଷ୍ଟି ରଖିଥାନ୍ତି । ତାଙ୍କର ଧାରଣା ହେଲା ଯେ ଅନ୍ୟଠି କେତେ କାମ ହେଲାଣି, ଓଡ଼ିଆ ସାହିତ୍ୟ ସେମିତି ପଛରେ ପଡ଼ିରହିଛି । ଓଡ଼ିଶାର ସାହିତ୍ୟିକମାନଙ୍କ ମଧ୍ୟରୁ କେହି କେହି ଅନ୍ୟର ସାହିତ୍ୟ ଅନୁକରଣ କରିବାରେ ଲାଗିପଡ଼ିଥାନ୍ତି; କେହି କେହି ଭାଷାନ୍ତର କରି ନିଜସ୍ୱ ବୋଲି ପ୍ରକାଶ କରୁଥାନ୍ତି । ଓଡ଼ିଶାର ଇଜ୍ଜତ ତଳେ ପଡ଼ିଗଲା ପରି ଗୋପୀନାଥଙ୍କୁ ବୋଧ ହେଉଥାଏ । ବାରମ୍ବାର ତାଙ୍କ ମନକୁ ଆସୁଥାଏ – ''କିପରି ଓଡ଼ିଆ ସାହିତ୍ୟରେ ଓଡ଼ିଆର ନିଜସ୍ୱ ରହିବ, ମୌଳିକତା ଥିବ ଅଥଚ ଫୁଟି ଉଠୁଥିବ ନୂଆ ଚେତନା, ନୂଆ ଭାବ । ଭାବ ବି ନିଜର ହୋଇଥିବ । ତାହା ସଂସ୍କୃତ ନୁହେଁ, ଜୀଅନ୍ତା ଭାଷା ହେବ । ଆଉ ସାହିତ୍ୟରେ ପ୍ରକାଶ ପାଉଥିବ ଏ ରାଜ୍ୟର ମଣିଷଙ୍କ ବାସ୍ତବ ସ୍ୱରୂପ । ତା'ରି ସମସ୍ୟା ହୋଇଥିବ ଉପଜୀବ୍ୟ । ଆଉ ପୁରୁଣା ମୂଲ୍ୟ ସବୁ ନୂଆ ହୋଇ ପରଖ ହେବ ... ।''

### କବିତା ରଚନା

ସାହିତ୍ୟର ଆଦିମତମ ଝଙ୍କାର ପଦ୍ୟରେ ସୃଷ୍ଟି ହୋଇଥିଲା ଭଳି ଗୋପୀନାଥ ସର୍ବପ୍ରଥମେ କବିତା ରଚନା କରିଥିଲେ । ୧୯୩୦ ମସିହା ବେଳକୁ ହାତଲେଖା ପତ୍ରପତ୍ରିକାରେ ଛୋଟ ଛୋଟ ପ୍ରେରଣାଦାୟକ କବିତା ରଚନା କରୁଥିଲେ ବୋଲି ସେ ଏକ ସାକ୍ଷାତ୍କାରରେ କହିଥିଲେ । 'କିରାଣି' ସେହିଭଳି ଏକ କବିତା । ଏହା 'ସହକାର' ୧୮ଶ ଭାଗ ୭ମ ସଂଖ୍ୟାର ପ୍ରକାଶ ପାଇଥିଲା । ତା'ର ଦୁଇଟି ପଂକ୍ତି–

''କହୁନ କାହିଁକି କଥା
ଟେବୁଲ ଫାଇଲ ଦୁଆତ କଲମ
କହୁନ କାହିଁକି କଥା
ଜୀବନ ତମର ନାଇଁ ?
ଜୀବନ ଗୋଟାକ ମଣିଷ ଧରିଲା
ଯାହାକୁ ଛାତିକି ଛାତି
ଜୀବନ ତାହାର ନାଇଁ ।''

କିରାଣି ଜୀବନର ଆବେଗ, ଜୀବନ ପ୍ରତି ଦୃଷ୍ଟିକୋଣ ଓ ଚେତନାସବୁର ଏହା ଏକ ବଳିଷ୍ଠ ଅଭିବ୍ୟକ୍ତି ।

ଗୋପୀନାଥ କିନ୍ତୁ ପ୍ରବନ୍ଧ ରଚନାରେ ନିଜର ଦକ୍ଷତା ପ୍ରଦର୍ଶନ କଲେ । 'କଳାଶକ୍ତି'ରେ ସେ ଏହା ଉଲ୍ଲେଖ କରିଛନ୍ତି – ''ବିଂଶ ଶତାବ୍ଦୀରେ ବିଶେଷତଃ ମହାଯୁଦ୍ଧ ପରେ ଇଂରେଜୀରେ ଆଧୁନିକ ପ୍ରବନ୍ଧର ବହୁଳ ଅଭିବୃଦ୍ଧି ଘଟିଥିଲା ।

ସେ ସବୁ ପ୍ରବନ୍ଧମାନଙ୍କ ଦୃଷ୍ଟି ଅତି ଗଭୀର । ବିଶ୍ଳେଷଣ ଅତି ଉନ୍ନତ ଓ ବୌଦ୍ଧିକ, କିନ୍ତୁ ତହିଁରେ ଢମ ନ ଥାଏ । ଆଡ଼ମ୍ବର ନ ଥାଏ । ଗୁରୁ ଗମ୍ଭୀର ଠାଣି ନ ଥାଏ । × × × ଅନ୍ତରଙ୍ଗ ବନ୍ଧୁଟିଏ ଅନାବଶ୍ୟକ କଥା ଗପିଲା ପରି ସେଭଳି ପ୍ରବନ୍ଧ କଥା ଗପିଯାଏ । ହସି ହସାଇ କାନ୍ଦି କନ୍ଦାଇ ତାହାରି ଭିତରୁ ଆଗେ ଆଗେ ବାହାରିପଡ଼େ ପଗଡ଼େ ପଗଡ଼େ ପ୍ରବନ୍ଧଟିଏ । ଲେଖକ ପାଠକ ଏକ ସଙ୍ଗେ ତତ୍ତ୍ୱ ଖୋଜନ୍ତି ....''

ଗୋପୀନାଥ ପୁଣି ଲେଖିଛନ୍ତି – ''ଓଡ଼ିଆରେ ସେଭଳି ତାତ୍ତ୍ୱିକ ବିଷୟକୁ × × × ସରସ ସରଳ ଉପାୟରେ ଆଲୋଚନା କରିବାକୁ ମନ ହେବାରୁ ତା' ପାଇଁ ନୂଆ ଶୈଳୀ ଖଞ୍ଜି ଏ ପ୍ରବନ୍ଧଗୁଡ଼ିକୁ ଲେଖିଥିଲି ।'' ଏହିଭଳି ଶୈଳୀର ସମାଲୋଚନା ପ୍ରବନ୍ଧଗୁଡ଼ିକ ହେଉଛି 'ବାୟାକକ', 'ପଥରଚକି', 'ତା ଧିକ ନା' ଓ 'କାରୁଣ୍ୟ' ଇତ୍ୟାଦି । ଏଗୁଡ଼ିକ 'ସହକାର' ପତ୍ରିକାରେ ପ୍ରକାଶ ପାଇଥିଲା । କିଛି ଲୋକପ୍ରିୟତା ମଧ୍ଯ ଅର୍ଜନ କରିଥିଲା ।

ଗୋପୀନାଥ ଓ ଔପନ୍ୟାସିକ ରାଜକିଶୋର ପଟ୍ଟନାୟକ 'ଭଲ ପାଇବାର ଶେଷ କଥା' (Aspects of Love in Life and Literature) ନାମକ ରଚନା 'ନବଭାରତ'ରେ ପ୍ରକାଶ କରିଥିଲେ । କିନ୍ତୁ ଅଗ୍ରଜ କାହ୍ନୁଚରଣ ପରେ 'ଭଲ ପାଇବାର ଶେଷ କଥା' ନାମକ ଏକ ଉପନ୍ୟାସ ରଚନା କରିବାରୁ ସେ ପ୍ରବନ୍ଧଟି 'ପ୍ରେମର ନିୟତି' ନାମରେ ବହି ଆକାରରେ ପରବର୍ତ୍ତୀ କାଳରେ ପ୍ରକାଶ ପାଇଲା ।

**ଉପନ୍ୟାସ, ଗଳ୍ପ**

ଗୋପୀନାଥ ସାରସ୍ୱତ ସାଧନାର ପରିଣତ ଅବସ୍ଥାରେ ଗଳ୍ପ, ଉପନ୍ୟାସାଦି ରଚନା କଲେ ।

କର୍ମମୟ ଜୀବନର ପ୍ରାରମ୍ଭରେ ଗୋପୀନାଥ ଯାଜପୁରର ବନ୍ୟା ପ୍ରପୀଡ଼ିତ ଅଞ୍ଚଳ ବୁଲି ଜନଜୀବନର ଗୋଟିଏ ଦିଗ ଦେଖି ରଚନା କଲେ 'ପାଟପାଣି' । ତା'ର ଚାରି ବର୍ଷ ପରେ ୧୯୪୦ ମସିହା ବେଳକୁ ସେ କୋରାପୁଟ ସରକାରୀ ଆଦେଶ ପାଇ ଗଲେ । ସେତେବେଳେ ସେ ଅବହେଳିତ ଆଦିବାସୀମାନଙ୍କ ସହିତ ପ୍ରତ୍ୟକ୍ଷ ସମ୍ପର୍କ ସ୍ଥାପନର ସୁଯୋଗ ପାଇଲେ । ସେ ନିଜେ ଏହା ମଧ୍ୟ ସ୍ୱୀକାର କରିଛନ୍ତି –

''ଆଦିବାସୀଙ୍କ ଆଡ଼କୁ ମୋ ଅନ୍ତର ଓଟାରି ହୋଇଯାଇଥିଲା – ସେମାନଙ୍କର ବୈଚିତ୍ର୍ୟପାଇଁ ନୁହେଁ, ନିଜକୁ ମଣିଷ ହିସାବରେ ତାଙ୍କ ସହିତ ଅଭିନ୍ନ ଅନୁଭବ କରି ସହାନୁଭୂତିଦ୍ୱାରା । ସେମାନେ ସତେ କି ପାତରଅନ୍ତରେମୟ ସମାଜ ଭିତରେ ଶୋଷଣ, ଉତ୍ପୀଡ଼ନର ଶିକାରମାନଙ୍କ ମଧ୍ୟରେ ସବୁଠୁଁ ହୀନିମାନ । ଧନ, ସୁଖ, ସୁବିଧା କ୍ଷମତା ଆଦିରେ ବଳଶାଳୀ ଥୋଡ଼ା ଲୋକ ଅନ୍ୟମାନଙ୍କୁ ଶୋଷୁଛନ୍ତି, ବଢ଼ିବାକୁ ଦେଉ ନାହାନ୍ତି,

ଦୁଃଖ ଦେଖିଲେ ସହାନୁଭୂତି ପରିବର୍ତ୍ତେ ନିଷ୍ଠୁରତା ଓ ତାଚ୍ଛଲ୍ୟ । ମୋ ନିଜର ବିଶିଷ୍ଟ ଜୀବନ ଅଭିଜ୍ଞତା ମୂଳରୁ ମୋତେ ଏ ବିଷୟରେ ଅବହିତ କରାଇଥିଲା ।''

ଅନ୍ୟତ୍ର ଆଦିବାସୀମାନଙ୍କ ଉପରେ ମନ୍ତବ୍ୟ ଦେବାକୁ ଯାଇ ସେ କହିଛନ୍ତି – ''ସେମାନେ ପ୍ରକୃତିର ସନ୍ତାନ – ଶିଶୁପରି ସରଳ, ନିଷ୍କପଟ । ପ୍ରକୃତିର ସମସ୍ତ ଐଶ୍ୱର୍ଯ୍ୟ ସମ୍ପଦରୁ ସେମାନେ ବଞ୍ଚିତ । ସମାଜରେ ଅବହେଳିତ, ନିର୍ଯାତିତ, ଚାକିରି ଜୀବନ କାଳରୁ ଅର୍ଥାତ୍ ୧୯୩୪ରୁ ଆଦିବାସୀମାନଙ୍କ ସହିତ ମୋର ସମ୍ପର୍କ । ମୁଁ ସେମାନଙ୍କ ସହିତ ମିଶିଛି । ଏକାସାଙ୍ଗରେ ବସି ମାଣ୍ଡିଆ ଜାଉ, ସୁଆଁ ଜାଉ, ଆମ୍ୱଟାକୁଆ ଜାଉ ଖାଇଚି । ଚଟେଇ ପାରି ସୁଖ ଦୁଃଖ ହୋଇଛି । ସେମାନେ ମଦ ପିଅନ୍ତି, ମୁଁ ପିଇ ପାରି ନାହିଁ । ମୋର ଘୃଣା ହୋଇ ନାହିଁ ସେଥିପାଇଁ, ବରଂ ମୋ ଭଲ ପାଇବା ବଢ଼ିଛି – ପ୍ରତିଦାନରେ ପାଇଛି ମଧ୍ୟ ପ୍ରଚୁର ।''

ଚିର ଅବହେଳିତ ଏଇ ଆଦିବାସୀ ଗୋଷ୍ଠୀର ଜୀବନ ଜିଜ୍ଞାସା ଗୋପୀନାଥଙ୍କୁ ସାହିତ୍ୟ ସୃଷ୍ଟି ଦିଗରେ ଯେ ପ୍ରୋତ୍ସାହିତ କରିବ, ଏଥିରେ ବୈଚିତ୍ର୍ୟ କ'ଣ ଥାଇପାରେ ?

**ଦାଦିବୁଢ଼ା**

ଗୋପୀନାଥଙ୍କର ପ୍ରଥମ ଆଦିବାସୀମୂଳକ ଉପନ୍ୟାସ 'ଦାଦିବୁଢ଼ା' । ଏହା ୧୯୪୪ ମସିହାରେ ପ୍ରକାଶ ପାଇଥିଲା ।

'ଦାଦିବୁଢ଼ା'ରେ ପ୍ରଥମ କରି ଗୋପୀନାଥ ଆଦିବାସୀମାନଙ୍କର ଉତ୍‌ଥାନ, ପତନ, ଗତି ଓ ପରିବର୍ତ୍ତନ, ସଂସ୍କୃତି, ବିଶ୍ୱାସ ଓ ବିଚାରବୋଧକୁ ଉପସ୍ଥାପିତ କରିଛନ୍ତି ।

'ଦାଦି' କହିଲେ ଆଦିବାସୀ ଲୋକେ ବୁଝନ୍ତି ପିତାମହ ଓ ପ୍ରପିତାମହ । ଆଉ 'ଦାଦି' ସହିତ 'ବୁଢ଼ା' ମିଶିଗଲେ ପରଜା ଓ କନ୍ଧ ଦୁଇ ଭାଷା ଯାକ ମିଶିଯାଏ । କନ୍ଧ ଭାଷାରେ 'ବୁଢ଼ା' ଶବ୍ଦର ଅର୍ଥ 'ବାପର ବାପ' ।

ବଣୁଆ ଲୋକେ – ବୁଝେ ଯେ ତା'ର ଅନାଦି ପୂର୍ବପୁରୁଷ ଏଇ ଦାଦିବୁଢ଼ା । ସେ ପରଜା ସମ୍ପ୍ରଦାୟର ରକ୍ଷକ । ତା'ର ସୁଦୃଷ୍ଟି ପଡ଼ିଲେ ଆଦିବାସୀ ସମ୍ପ୍ରଦାୟର ଶାନ୍ତି ବିରାଜମାନ କରେ । ଦାଦିବୁଢ଼ାର କ୍ରୋଧରେ ଆଦିବାସୀ ଜୀବନରେ ଦୁର୍ଦ୍ଦିନ ଆସେ । ଦାଦିବୁଢ଼ା କୁହେ —

''ମୁଁ ଦାଦିବୁଢ଼ା । ତୁମ ସମସ୍ତଙ୍କୁ ସର୍ଜନା କରିଛି । ମତେ ତୁମେ ମାନୁ ନାହଁ । ସବୁ ଗାଁରେ ଦାଦିବୁଢ଼ାର ପୂଜା, ତୁମ ଗାଁରେ ନାହିଁ । ତୁମେ ମୋତେ କୁକୁଡ଼ା ଦେଲ ନାହିଁ । ଛେଳି ଦେଲ ନାହିଁ; ପାଣି ଦେଲ ନାହିଁ । ଭୋକ ଉପାସରେ ଦରମରା ହୋଇ ମୁଁ ଡୁଙ୍ଗରେ ଡୁଙ୍ଗରେ ବୁଲି ବୁଲି ମରୁଛି । ଶେଷ ତାଗିଦ ଦେଲି, ଆଉ ତିନି ଦିନ ଅନେଇଚି, ତା'ପରେ ଖାଇବି, ଖାଇବି, ଖାଇବି ।''

ଆଦିବାସୀଙ୍କୁ ଗୁରୁମାଇର ତାଗିଦ୍ ଫଳରେ ଆଦିବାସୀ ହୃଦୟରେ ଶଙ୍କା ଆସିଛି । ନିଜ ଧର୍ମ ପ୍ରତି ଅବମାନନା କରିଛି ବୋଲି ତା' ହୃଦୟରେ ଛନକା ପଶିଛି । ତେଣୁ ଆଦିବାସୀ ସମାଜରେ ଭିଡ଼ ଜମିଛି । ଡମ ଢୋଲରେ ଦାଣ୍ଡ ଫାଟି ପଡ଼ିଛି । ବୋଦା ଛେଳି କୁକୁଡ଼ା ବଳି ପଡ଼ିଛି । ଦାଦିବୁଢ଼ାର ମୁହଁ ରକ୍ତରେ ଲୁଡ଼ୁବୁଡ଼ୁ ହୋଇଛି । ଗୁରୁମାଇକୁ କିମିଆଁ ଲାଗିଛି । କୁଦା ମାରି ଛୋଟ ମୁଣ୍ଡିଆ ଉପରକୁ ଉଠିଯାଇଛି । ବୁଢ଼ା ଖଜୁରି ଗଛକୁ ଦୁଇ ହାତରେ କୁଣ୍ଢେଇ ପକେଇଛି । ଦିଶାରୀ ବୁଢ଼ା ଗଛକୁ ଆଙ୍ଗୁଠି ଦେଖାଇ କହିଛି – ଆଜିଠୁ ଏ ହେଉଛି ଦାଦିବୁଢ଼ା ।

ଏହାପରେ ଦାଦିବୁଢ଼ାର ପ୍ରତିଷ୍ଠା ହୁଏ । ଖଜୁରି ଗଛର ମୁଣ୍ଡ ହଣାଯାଇ ସାତବେଣ୍ଟିଆ କରିଦିଆଯାଏ । ଦେହରେ ରଙ୍ଗ ବୋଳାଯାଇ ମୁଣ୍ଡରେ ଧୋବ କନାଖଣ୍ଡେ ବାନ୍ଧି ଦିଆଯାଏ । ଦାଦିବୁଢ଼ା ହୁଏ ଆଦିବାସୀ ଅଞ୍ଚଳର ଜଗୁଆଳ । ସେ ବି ହୁଏ ଗାଁର ମୁରବି । ଗାଁର ହାନିଲାଭର ବିଚାରକ । ଆଦିବାସୀ ସମାଜରେ ଯେଉଁଠି ଯାହା ଘଟଣା ଅଘଟଣ ଘଟିଯାଏ, ଏହିସବୁ ଦାଦିବୁଢ଼ା ଯୋଗୁଁ ହୁଏ ବୋଲି ଆଦିବାସୀ ବିଶ୍ୱାସ କରେ । ଦାଦି ବୁଢ଼ା ପାଖରେ ଧାଂଡ଼ା ଧାଂଡ଼ୀ ମାନସିକ କରନ୍ତି । ବିବାହରେ ସାକ୍ଷୀ ବି ହୁଏ । ପୁଣି ବିପତ୍ତି ପଡ଼ିଲେ ସେ ଆଦିବାସୀ ସମାଜକୁ ରକ୍ଷା କରେ ।

ଗାଁର ମୁଖିଆ ରାମ ନାଇକ । ନିଜ ପୁଅ ଠେଙ୍ଗାଜାନିକୁ ଜାତିର ଝିଅ ସାରିଆଦାନ୍ ସହିତ ବିବାହ ଦେବାକୁ ସଂକଳ୍ପ କରିଥିଲା । ଠେଙ୍ଗାଜାନି କିନ୍ତୁ ଖ୍ରୀଷ୍ଟିୟାନ ସାହିର ସନ୍ତୋଷକୁମାରୀ ସହିତ ଆସାମ ଚାଲିଯାଇଛି । ରାମ ନାଇକ ଭାଙ୍ଗିପଡ଼ିଛି । ଆଦିବାସୀ ସମାଜରେ ଧାରଣା ଜନ୍ମିଛି ପରଜା ଧାଂଡ଼ା ଠେଙ୍ଗାଜାନି ଖ୍ରୀଷ୍ଟିୟାନ ଧାଂଡ଼ୀ ସନ୍ତୋଷକୁମାରୀକୁ ନେଇ ପଳାଇଯିବା ଘଟଣା ଗୋଟିଏ ବିପଦର ସୂଚନା । ସେମାନଙ୍କ ଦୃଷ୍ଟିରେ ଠେଙ୍ଗାଜାନି ଖରାପଲୋକର ଡୁମା । ରାମନାଇକ ନିଜ ପୁଅପାଇଁ ଦାଦିବୁଢ଼ା ପାଖରେ ମୁଣ୍ଡପୋତି କାନ୍ଦିଛି । ନିଜର ଦୁଃଖ ଜଣାଇଛି ।

ଲେଖକଙ୍କ ଭାଷାରେ – ''ଦାଦିବୁଢ଼ା, ତୋ ମନରେ ଏଇଆ ଥିଲା ଦାଦିବୁଢ଼ା – କି ଦୋଷ କରିଥିଲି ମୁଁ ତୋର । ମୋର ସର୍ବନାଶ କଲୁ । ଯଦି [illegible] ତୁ ଠେଙ୍ଗାଟା ମୋର ଖରାପ ଡୁମା, ଗୋଟିଏ ଭଲ ଡୁମା ପଠାଇଲୁ ନାହିଁ କାହିଁକି ଦାଦିବୁଢ଼ା ? ପାଳିଲି, ବଢ଼େଇଲି, ଦୂରଦେଶକୁ ବିଦା କରିଦେଲୁରେ ଦାଦିବୁଢ଼ା – ମୋର ଖାଇବା ଭାତରେ ଧୂଳି ଦେଲୁ – ।''

ରାମନାଇକ ଭେଁ କିନା କାନ୍ଦି ପକେଇ ଦାଦିବୁଢ଼ା ଗୋଡ଼ ତଳେ ଗଡ଼ିଲା । ସାତବେଣ୍ଟିଆ ଖଜୁରି ଗଛର ଥୁଣ୍ଟା ପାରା କୁକୁଡ଼ା ରକ୍ତରେ ରଞ୍ଜିତ ହୋଇ ଗନ୍ଧା ମଦରେ ବୁଡ଼ି ଠିଆ ହୋଇ ରହିଥାଏ । – ହଲ୍ ନାହିଁ, ଚଲ୍ ନାହିଁ ।

ଦିଶାରୀ ଦାଦିବୁଢ଼ାର ନିର୍ଦ୍ଦେଶରେ ଗାଁର ନ୍ୟାୟ ଅନ୍ୟାୟ ବିଚାର କରିଛି । ରାମ ନାଇକ ପ୍ରାୟଶ୍ଚିତ୍ତ କରିଛି, ଭୋଜିଭାତ ଦେଇ ଜାତି ହୋଇଛି । ହଠାତ୍ ଆଗ ଦିଶାରୀ

ମଲା । ତା ପରେ ଦଶ ବାର ଜଣ ଗାଁ ଲୋକ ମଲେ । ଗାଁରେ ଅମଙ୍ଗଳ ପଡ଼ିଲା । ବହୁତ ମଦ ବହୁତ କୁକୁଡ଼ା ଠାକୁରଙ୍କୁ ଦିଆହେଲା । କିଛି ଲାଭ ହେଲା ନାହିଁ । ନୂଆ ଦିଶାରୀ ଯେତେ ଚେଷ୍ଟା କଲା ବାଘକୁ ରୋକି ପାରିଲାନି । ପଚିଶ ତିରିଶ ମଲେ । ଗାଁ ଶୂନ୍‌ଶାନ୍ ହେଲା ।

ଗୁରୁମାଈକୁ କାଳିଶି ଲାଗିଲା । ସେ ନାଚି ନାଚି ପାଗଳ ହୋଇ କହିଲା – "ମୁଁ ସବୁଠୁ ବଡ଼ ଠାକୁର ଦାଦିବୁଢ଼ା । କି ପାଇଁ କିସ୍ ମୁଁ କରେ ମତେ ପଚାରନି । ସେଟା ମତେ ଏକା ଜଣା । ଏ ପାଖରେ ବେଶୀ ବାଘ – ତୁମେମାନେ ଏତକ ରହିଗଲ । ତମେ ଏସବୁ ଗାଁ ଭାଙ୍ଗିଦେଇ ଚାଲିଯାଅ । ନଇଲେ ତମର ଭଲ ହେବ ନାହିଁ ।"

ଆଦିବାସୀ ସମାଜ ସେ ଗାଁ ଛାଡ଼ି ଅନ୍ୟସ୍ଥାନକୁ ଉଠି ଯାଇଛି । ପଛରେ ପଡ଼ି ରହିଛି ପୁରୁଣା ଗାଁ, ଥୁଣ୍ଟା ଖଜୁରି ଗଛ, ଉଇହୁଙ୍କା । ପୁରୁଣା ଗାଁ ଭାଙ୍ଗିଯାଇଛି । ଧୀରେ ଧୀରେ ଚାଳ ସବୁ ମାଟିରେ ଲାଗିଛି । କାନ୍ଥରେ ବାଡ଼ରେ ଉଇଧାର ଲାଗିଯାଇଛି । କାନ୍ଥ ସବୁ ଭଙ୍ଗା ଯାଇ ମାଟିଗଦା ହୋଇଛି । ଚତୁର୍ଦ୍ଦିଗରୁ ଜଙ୍ଗଲ ମାଡ଼ି ଆସିଛି । ଗାଁ ଲୁଚିଯାଇଛି ।

'ଦାଦିବୁଢ଼ା'ରେ ଗୋପୀନାଥ ଆଦିବାସୀମାନଙ୍କର ସାମାଜିକ, ସାଂସ୍କୃତିକ ଓ ଆର୍ଥନୀତିକ ଜୀବନ ମାଧମରେ ନିଜର ଅପୂର୍ବ କଳାକୌଶଳର ପରିଚୟ ପ୍ରଦାନ କରିଛନ୍ତି । ଆଦିବାସୀମାନଙ୍କ ଜୀବନ ଚରିତ୍ର ଭାଷା, ଅନ୍ଧବିଶ୍ୱାସ ପ୍ରଭୃତିକୁ ବିଶ୍ୱଜନୀନ ଓ ସର୍ବକାଳୀନ କରାଇପାରିଛନ୍ତି ।

**ପରଜା**

ଆଦିବାସୀମାନଙ୍କ ସାମାଜିକ ତଥା ସାଂସ୍କୃତିକ ଦସ୍ତାବିଜ ହୋଇଥିବା ଉପନ୍ୟାସଗୁଡ଼ିକ ମଧ୍ୟରେ 'ପରଜା' ଏକ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ । କୋରାପୁଟ ଜିଲ୍ଲା ସର୍ଷୁପଦର ଗାଁର ପରଜା ସାହିର ଶୁକ୍ରୁଜାନି ପରିବାରର ବୁକୁଫଟା ବିକଳ-ବିଳାପ କରୁଣ ଗୀତିକା ଏଥିରେ ରୂପାୟିତ ହୋଇଛି । ଦ୍ୱିତୀୟ ବିଶ୍ୱଯୁଦ୍ଧର ପରବର୍ତ୍ତୀ କାଳରେ ଏହା ରଚିତ ହୋଇଥିଲା । କବିତ୍ୱପୂର୍ଣ୍ଣ ଅଭିବ୍ୟକ୍ତି ଏହାର ବୈଶିଷ୍ଟ୍ୟ ।

ସର୍ଷୁପଦର ଗାଁର ଶୁକ୍ରୁଜାନି । ସେ ପଚାଶ ବର୍ଷର ବୃଦ୍ଧ । ତା'ର ଦୁଇ ପୁଅ ମାଣ୍ଡିଆ ଓ ଟିକ୍ରା । ଦୁଇ ଝିଅ ଜିଲି ଆଉ ବିଲି । ଏମାନଙ୍କୁ ନେଇ ତା'ର ସଂସାର । ସ୍ତ୍ରୀ ସମ୍ବାରୀ ବହୁ ଦିନୁ ବାଘ ମୁହଁରେ ପଡ଼ି ପ୍ରାଣ ଛାଡ଼ିଛି । ସ୍ତ୍ରୀର ମୃତ୍ୟୁକୁ ଭୁଲିଯାଏ ପୁଅ ଝିଅଙ୍କ ମୁହଁ ଚାହିଁ । ତା'ର ମାତ୍ର ମାଣେ ହେବ ଜମି, ଆଉ ବଖରାଏ ଦୁଇ ବଖରା ଘର । ତା'ର କେତେ ସ୍ୱପ୍ନ – ପୁଅ ଝିଅଙ୍କୁ ବାହା କରିବ, ଜମି କରିବ, ନୂଆଘର ବି କରିବ । କିନ୍ତୁ ସେ ସ୍ୱପ୍ନ ଭାଙ୍ଗିଯାଏ । ତା'ର ପରିବାର ଉପରେ ଦୃଷ୍ଟି ପଡ଼େ ଏକ ଅଶୁଭ ଗ୍ରହର । ସେହି ଅଶୁଭ ଗ୍ରହ ହେଉଛି ଜଙ୍ଗଲ ଜମାନ । ଝିଅ ଜିଲି ଉପରେ ତା'ର ଲୋଲୁପ ଦୃଷ୍ଟି ପଡ଼ିଛି । କିଛି ଜମି ପାଇବା ଲୋଭରେ ଶୁକ୍ରୁଜାନି ତା' ନିକଟକୁ ଜିଲିକୁ ପଠାଇପାରେ ନାହିଁ । ଜଙ୍ଗଲ ଜମାନ ପ୍ରତିଶୋଧ ନିଏ । ଶୁକ୍ରୁଜାନି ଜଙ୍ଗଲରୁ କାଠ କାଟିବା ସମୟରେ

ଧରା ହୁଏ । ତା' ଉପରେ ପଚାଶ ଟଙ୍କା ଜୋରିମାନା କରାଇଦିଏ । ଜୋରିମାନା ନ ଦେଲେ ଜେଲ ଯିବାକୁ ହେବ ।

ଶୁକ୍ରୁ ଘରକୁ ଫେରେ । ଅନ୍ଧାର ଘରେ ବାପ, ପୁଅ, ଝିଅ ସମସ୍ତେ ବସି ବେକ ଧରାଧରି ହୋଇ କାନ୍ଦନ୍ତି । ଜୋରିମାନା ଟଙ୍କା ଦେବାପାଇଁ ଥୋଟାଗୁଡ଼ା ଗାଁର ସାହୁକାର ରାମ ବିଶୋଇ ଠାରୁ ଟଙ୍କା କରଜ ଆଣନ୍ତି । କରଜ ପରିଶୋଧ କରିବାପାଇଁ ପ୍ରଥମେ ଶୁକ୍ରୁଜାନି ଓ ସାନପୁଅ ଟିକ୍ରାରାମ ସାହୁକାରର ଗୋତି (ହଳିଆ) ହୁଅନ୍ତି ।

ଘରେ ରହନ୍ତି ବଡ଼ ପୁଅ ମାଣ୍ଡିଆ ଓ ଦୁଇ ଝିଅ ଜିଲି ଆଉ ବିଲି । ମାଣ୍ଡିଆ ଭଲ ପାଏ କାଜୋଡ଼ିକୁ । ଅଧିକ ପଇସା ରୋଜଗାର କରି ବାପ ଭାଇଙ୍କୁ ଗୋତିମୁକ୍ତ କରିବା ଓ ଝୋଲାଟଙ୍କା ଦେଇ କାଜୋଡ଼ିକୁ ବିବାହ କରିବାକୁ ଅଣ୍ଟାଭିଡ଼େ । ସେ ମଦ ରାନ୍ଧି ବିକ୍ରୟ କରେ । କିଛି ପଇସା ମଧ୍ୟ ଉପାର୍ଜନ କରେ । ମାତ୍ର ଗାଁର କେତେ ଲୋକ ତା' ସହି ପାରନ୍ତି ନାହିଁ । ସେମାନେ ଚକ୍ରାନ୍ତ କରନ୍ତି ଓ ମାଣ୍ଡିଆ ଅଧିକାରୀଦ୍ୱାରା ଧରାପଡ଼େ । ବେଆଇନ ମଦ ବିକ୍ରି ଅଭିଯୋଗରେ ତା' ଉପରେ ହୁଏ ପଚାଶ ଟଙ୍କା ଜୋରିମାନା । ଜୋରିମାନା ଦେବାପାଇଁ ମାଣ୍ଡିଆ ମଧ୍ୟ ରାମ ସାହୁକାରର ଗୋତି ହୁଏ । ଶୁକ୍ରୁଜାନିର ପରିବାର ଘୋର ଦୁର୍ଦ୍ଦିନର ସମ୍ମୁଖୀନ ହୁଅନ୍ତି । କାଜୋଡ଼ି ମଧ୍ୟ ମାଣ୍ଡିଆ ଆଶା ଛାଡ଼େ । ବାହା ହୋଇପଡ଼େ ବାଗ୍‌ଲାକୁ ।

ଘରେ ଦୁଇ ଭଉଣୀ – ଜିଲି ଓ ବିଲି । ଖାଇବାକୁ ନ ପାଇ ଘର ଛାଡ଼ନ୍ତି । କୁଲି କାମ କରି ପେଟ ପୋଷନ୍ତି । ସେମାନଙ୍କ ଜୀବନର ଅଧଃପତନ ସେହିଠାରୁ ଆରମ୍ଭ ହୋଇଛି । ଟୋକା ଗୁମାସ୍ତାର ପାପ ପ୍ରଣୟରେ ଲିପ୍ତ ହୋଇଛନ୍ତି ଜିଲି ଓ ବିଲି ।

ଶୁକ୍ରୁ ଏ ଖବର ଯଥା ସମୟରେ ପାଇଛି । ରାମ ସାହୁକାରକୁ ଜମି ବନ୍ଧା ଦେଇଛି । ଗୋତିରୁ ମୁକୁଳି ସର୍ଷୁପଦର ଗାଁକୁ ଫେରିଆସିଛି । ଦୁଇ ଝିଅଙ୍କୁ କୁଲିଗିରିରୁ ମୁକ୍ତ କରିଛି । ଗାଁ ନାଇକଠାରୁ କିଛି ଅନାବାଦୀ ଜମି ଆଣି ତାକୁ ଚାଷୋପଯୋଗୀ କରିଛି । ତାକୁ ଏଥିରେ ସାହାଯ୍ୟ କରେ ଡୁମାଗୁଡ଼ା ଗାଁର ନନ୍ଦିବାଲି । ସେ ଶୁକ୍ରୁଜାନିର ସାନ ଝିଅ ବିଲିକୁ ବିବାହ କରେ ଓ ଝୋଲା ଟଙ୍କା ବାବଦରେ ଶୁକ୍ରୁଘରେ ଗୋତି ହୋଇ ଖଟେ ।

ସାନ ଭଉଣୀ ବିଲିର ବିବାହ ପରେ ଜିଲି ଅନ୍ତର ଶୂନ୍ୟତାରେ ଭରିଉଠେ । ଏହି ସମୟରେ ସର୍ଷୁପଦର ଗାଁକୁ ଆସେ ରାମ ସାଉକାର । ସେ ଶୁକ୍ରୁଜାନିର ଜମିରେ କରେ କମଳା ତୋଟାର ସ୍ଥାୟୀ ଯୋଜନା ।

ରାମ ସାଉକାର ମଧ୍ୟ ରୂପସୀ ଜିଲିକୁ ପାଇବାକୁ ଚେଷ୍ଟା କରିଛି । ମଧୁ ଘାଷିର ସହାୟତାରେ ଜିଲିକୁ ଉପଭୋଗ କରିଛି । ଜିଲି ମଧ୍ୟ ଏକୁଟିଆ ଜୀବନ ଭିତରେ ଗୋଟିଏ ସ୍ଥିତିବାନ୍ ଖୁମ୍ବପରି ଧରି ନେବାକୁ ଆଦରି ନେଇଛି ।

ଶୁକ୍ରୁ ଏହାକୁ ପସନ୍ଦ କରି ନାହିଁ । ବରଂ ଅପମାନରୁ ରକ୍ଷା ପାଇବାପାଇଁ ଜିଲିକୁ ବାହାର କରିଦେଇଛି । ସାହୁକାର ଜିଲିକୁ ନେଇ ତା'ର କଦମଝୋଲାରେ ରଖିଛି । ଜିଲି ହୋଇଛି ତା'ର ରକ୍ଷିତା ।

ବାପ ପୁଅ ତିନିହେଁ ଜିଲିର ଏହି କାର୍ଯ୍ୟରେ ଭାଙ୍ଗି ପଡ଼ନ୍ତି । ମାଣ୍ଡିଆ ଓ ଟିଙ୍କ୍ରା ସାହୁକାରର ଗୋରୁପଲ ନେଇ ନିଘଞ୍ଚ ବଣରେ ଚରାଇଲାବେଳେ ଲୁଚି ଲୁଚି ମଦ ରାନ୍ଧିଛନ୍ତି । ପଇସା ଠୁଳ କରି ସାହୁକାରର ସୁଧମୂଳ ପରିଶୋଧ କରି ସାହୁଘର ଠାରୁ ଜମି ଫେରାଇନେବାପାଇଁ ଲାଗିପଡ଼ନ୍ତି । ଶେଷରେ ବାପ ପୁଅ ତିନିହେଁ ସାହୁକାର ପାଖରେ ପହଞ୍ଚି ଟଙ୍କା ନେଇ ଜମି ଫେରାଇ ଦେବାକୁ ମିନତି କରନ୍ତି । ମାତ୍ର ସାହୁକାର ତିରିଶ ବର୍ଷପାଇଁ ଜମି ବନ୍ଧା ରଖିଛି ବୋଲି କହେ । ଅନ୍ୟ ଉପାୟ ନ ଦେଖି ଶୁକ୍ରୁ ଅଦାଲତର ଆଶ୍ରୟ ନିଏ । ମାତ୍ର ସାହୁକାର ଠାରୁ ଲାଞ୍ଚ ନେଇ 'ଲେଖୁ' ଶୁକ୍ରୁକୁ ଭୁଲ ତାରିଖ କହେ । ଠିକ୍ ତାରିଖରେ ଉପସ୍ଥିତ ହୋଇ ନ ପାରିବା ଫଳରେ ସାହୁକାରର ଏକତରଫା ଜିତାପଟ ହୁଏ ।

ପୁଣିଥରେ ବାପ ପୁଅ ତିନି ଜଣ ଜମି ଫେରାଇଆଣିବା ଆଶାରେ ସାହୁକାର ପାଖକୁ ଯାଆନ୍ତି – ତା'ର କଦମଝୋଲା ଗାଁକୁ । ସାହୁକାରର ଗୋଡ଼ ଧରି ଆକୁଳ ମିନତି କରନ୍ତି । ମାତ୍ର ଜମି ଫେରାଇଦେବା ବଦଳରେ ସାହୁକାର ସେମାନଙ୍କ ମୁଣ୍ଡରେ ମାରିଛି ଗୋଇଠା । ଧମକ ଦେଇଛି । ତଳିତଳାନ୍ତ କରିଦେବାକୁ ଶପଥ ନେଇଛି । କହିଛି – 'ହଁ ଜିଲି । ଆଉ ଗୋଟିଏ ବିଲି ଅଛି ପରା ! ତାକୁ ବି ଆଣି ମତେ ଦେଇଯାଅ । ଜମି ନେଲି, ଗୋଟିଏ ଭଉଣୀକୁ ନେଲି । ଆହୁରି ଗୋଟିଏ ଭଉଣୀକୁ ନେବି, ଆଉ ଯେତେ ଯେତେ ବିଭା ହେବ ସମସ୍ତଙ୍କୁ ନେବି । ଦାବା ଦରବାର ଲଗେଇ ଦେଇ କୋର୍ଟରୁ କୋର୍ଟ ରାଜ୍ୟଯାକ ବୁଲେଇବି, ଗୋଡି ଖଟେଇ ଜୀବନଯାକ ନାକକୁ ତଳେ ଘୋଷାରୁଥିବି, ତେବେ ଯାଇ ମୋ ନାଁ ରାମଚନ୍ଦ୍ର ସାହୁକାର ।'

ସାହୁକାରର ଏ ଅପମାନକୁ ବଣୁଆ ଜାତି ମୁଣ୍ଡପାତି ସହିପାରି ନାହିଁ । ବଣର ଜନ୍ତୁ ପରି ଗର୍ଜନ ଛାଡ଼ି ମାଣ୍ଡିଆ ଜାନି ଆଗକୁ ଚମକି ଯାଇଛି ଆଉ କହିଛି – ''ଅଧର୍ମ କରି ଭୂମି ନେଲୁ ସିନା ସାହୁକାର, ଭୋଗ କରିପାରିବୁ ନାହିଁ, ଭୋଗ କରିପାରିବୁ ନାହିଁ ।''

ମାଣ୍ଡିଆର ଟାଙ୍ଗିଆ ଚୋଟରେ ସାହୁକାର ଭୂମିରେ ଟଳିପଡ଼ିଛି । ବାପ ପୁଅ ତିନିହେଁ ମିଶିଛନ୍ତି । ପିଚକାରି ମାରିଲାପରି ରକ୍ତ ବାହାରି ପରଜାଙ୍କ ମୁହଁରେ ଓ ଆଖିରେ ନେସି ହୋଇଛି । କେତେବେଳକେ ତାଙ୍କର ହୋସ୍ ଆସିଛି । ଦେହର ରକ୍ତ, ହାତର ଟାଙ୍ଗିଆ ରକ୍ତରେ ଜୁଡୁବୁଡୁ । ବାପା ପୁଅ ତିନିହେଁ କୁଣ୍ଢାକୁଣ୍ଢି ହୋଇ କାନ୍ଦିଛନ୍ତି । ରକ୍ତ ଲୁହ ମିଶି ଏକାକାର ହୋଇଯାଇଛି ।

ପରେ ବାପ ପୁଅ ତିନିହେଁ ଲକ୍ଷ୍ମୀପୁର ଥାନାରେ ହାଜର ହୋଇ କହିଛନ୍ତି – ''ଆମ୍ଭେ ମଣିଷ ମାରିଛୁ, ଆମକୁ ଯେଉଁ ଦଣ୍ଡ ଅଛି ଦିଅ ।''

'ପରଜା' ହେଉଛି ଆଦିବାସୀ ଜୀବନର ମହାକାବ୍ୟ । ଶୁକ୍ରୁଜାନିର ପାରିବାରିକ ଜୀବନର କରୁଣ କାହାଣୀ ହୋଇଛି ଏ ଉପନ୍ୟାସର ଉପଜୀବ୍ୟ । ଏଥି ସହିତ

ଆଦିବାସୀ ଜୀବନଧାରାର ଚିତ୍ତାକର୍ଷକ ବର୍ଣ୍ଣନା ଏଥିରୁ ମିଳେ । ପରଜା ଜାତିର ଆଶା-ଆକାଂକ୍ଷା, ବିଶ୍ୱାସ-ଅବିଶ୍ୱାସ, ରୀତି-ନୀତି, ପୋଷାକ-ପରିଚ୍ଛଦ, ଚାଲିଚଳଣ, ନୃତ୍ୟଗୀତ, ପର୍ବପର୍ବାଣି ଓ ବିବାହ-ବନ୍ଧନ ସବୁ କିଛି ଏଥିରେ ଉପଲବ୍ଧ । ଅବହେଳିତ ପରଜା ଜାତିର ଲୁହ ଓ ଲହୁର ମାର୍ମିକ ସୂଚୀପତ୍ର ରୂପେ ଏହା ଓଡ଼ିଆ ଉପନ୍ୟାସ ଜଗତରେ ଅତ୍ୟୁଚ୍ଚ ଆସନର ଅଧିକାରୀ ହୋଇ ରହିଅଛି ।

**ହରିଜନ**

ସହରତଳି ଅଞ୍ଚଳରେ ବସବାସ କରୁଥିବା ଅଛୁଆ ହରିଜନମାନଙ୍କୁ ନେଇ ଗୋପୀନାଥ ରଚନା କରିଛନ୍ତି 'ହରିଜନ' ଉପନ୍ୟାସ । ସମାଜ ଦୃଷ୍ଟିରେ ସହରତଳି ଅଞ୍ଚଳରେ ଏହି ମଣିଷମାନେ ପ୍ରଗତିଶୀଳ ସମାଜରେ ବିଷବ୍ରଣ ସଦୃଶ । କିନ୍ତୁ ସେହି ମେହେନ୍ତରମାନଙ୍କ ପ୍ରତି ସହରର ଅଭିଜାତ ଶ୍ରେଣୀର ଲୋକେ ଶୋଷଣ ଓ ଉପଭୋଗ ଲାଳସାକୁ ଔପନ୍ୟାସିକ ଏଥିରେ ବର୍ଣ୍ଣନା କରିଛନ୍ତି ।

ନାକଧରାପୁର ମେହେନ୍ତର ବସ୍ତି ଅଞ୍ଚଳରେ ବସବାସ କରୁଥିବା ମେହେନ୍ତର ଓ ମେହେନ୍ତରାଣୀମାନଙ୍କର ଜୀବନ ସମସ୍ୟା ଏହି ଉପନ୍ୟାସର ମୁଖ୍ୟ ବିଷୟବସ୍ତୁ ।

ମେହେନ୍ତର ବସ୍ତିର ଉପକଣ୍ଠରେ ଥିଲା ଧନାଢ଼୍ୟ ଅବିନାଶବାବୁଙ୍କ ଦ୍ୱିତଳ ପ୍ରାସାଦ । ଅବିନାଶବାବୁ ଓ ତାଙ୍କ ପରିବାରବର୍ଗଙ୍କୁ ହରିଜନ ବସ୍ତି ହୋଇଛି ଦୃଷ୍ଟିକଣ୍ଟ । ସେ ଛଳେ ବଳେ କୌଶଳେ ବସ୍ତିକୁ ଉଠାଇବାକୁ ଷଡ଼୍‌ଯନ୍ତ୍ର କରିଛନ୍ତି ।

ବସ୍ତିର ବାସିନ୍ଦା ଜେମା ମେହେନ୍ତରାଣୀ । ସେ ଅନ୍ୟାନ୍ୟ ମେହେନ୍ତରାଣୀମାନଙ୍କ ଭଳି ମଇଳା କାଢ଼ିବାର ଅସନା ବାଟଠୁ ଅବାଟରେ ଯିବାକୁ ମନ ବଳାଇଛି । ସେ ନିଜକୁ ସମର୍ପି ଦେଇଛି ଅବିନାଶବାବୁଙ୍କ ପାଖରେ । ଜନ୍ମ ହୋଇଛି ଗୋଟିଏ ଝିଅ – ପୁନି । ସହରତଳି ଅଞ୍ଚଳରେ ପୂତିଗନ୍ଧ ମଧ୍ୟରେ ପୁନି ସତେ ଯେପରି ସଜଫୁଟା ପଦ୍ମଫୁଲଟିଏ !

ସମାଜ ଜେମାର ଅବୈଧ ପ୍ରଣୟକୁ ଗ୍ରହଣ କରି ନାହିଁ । ତେବେ ଜେମା ମନରେ ବିରାଟ ଆଶା । ତା'ର ଚିନ୍ତା ଓ ଚେତନା ମଧ୍ୟରେ ଗୋଟିଏ କଥା – ପୁନି ବଡ଼ ଘରର ଝିଅ । ତାକୁ ତେଣୁ ପଚାସଢ଼ା ଗଳି ଭିତରକୁ ଛାଡ଼ି ଦିଆଯାଇ ନ ପାରେ ।

ପରିସ୍ଥିତିରେ ପଡ଼ି କିନ୍ତୁ କିଶୋରୀ ପୁନି କୁଳୋଚିତ ବୃତ୍ତିରେ ହାତ ଦେଇଛି । କିନ୍ତୁ କୁଳୋଚିତ ବେଉସାର ପ୍ରଥମ ସ୍ପର୍ଶରେ ତା' ମନରେ ଘୃଣା ପ୍ରକାଶ ପାଇଛି । ତା'ର ସମସ୍ତ ଆନନ୍ଦ ଉଲ୍ଲାସ ଉଭେଇ ଯାଇଛି ।

ଗୋପୀନାଥଙ୍କ ଭାଷାରେ – ''ମାଟି ଘଟ ତା'ର ଅପବିତ୍ର ହୋଇଛି । ପାଣିରେ ହାତ ଧୋଇ ପଥରରେ ମାଜି ମାଜି ମଧ୍ୟ ହାତ ସଫା ହେଉନି – ମନ ଭିତରୁ ପଚା ଅସନାଗଳି ଉକୁଟି ଉଠୁଛି । 'ନା' ଗାଡ଼ିଆଯାକ ପାଣି ସରିଯିବ ପଛେ, ଜମା ଯିବ ନାହିଁ – ଜମା ଭଲ ହେବ ନାହିଁ – ନରକର ଜୀଅନ୍ତା ବିଭୀଷିକା ।''

କ୍ରମେ ପୁନି ଦେହରେ ଯୌବନ ଓହ୍ଲେଇଛି । ଦେହରେ ଯୌବନର ନିଶା ଘାରିଛି । ସାଇପଡ଼ିଶାର ରଙ୍ଗ, ଟଭା, କଜଳମତୀ ପ୍ରଭୃତିଙ୍କର ଚଳଣି ତା' ଜୀବନରେ ଆଶା ସଞ୍ଚାର କରିଛି । ନିଜର ପରିସ୍ଥିତି ଓ ଅବସ୍ଥାକୁ ଭୁଲି ଯିବାପାଇଁ ସେ ଅନ୍ୟମାନଙ୍କ ପରି ପିଙ୍କା ଖାଇଛି, ଶସ୍ତା ବାସନା ତେଲ ଲଗାଇଛି । କାମନା ବହ୍ନିରେ ଝାସ ଦେବାପାଇଁ ସନିଆ ଓ ମିସ୍ତ୍ରୀ ପ୍ରଭୃତିଙ୍କୁ ସାଉଁଟିଛି ।

ସନିଆ ତା'ର ଖେଳସାଥୀ । କିନ୍ତୁ ହୁଣ୍ଡାଟାଏ । ପିଲାଦିନର ଧୂଳି ଖେଳ ଠାରୁ ଯୌବନରେ ଗୋଡ଼ ଦେଲା ପର୍ଯ୍ୟନ୍ତ ସେ ପୁନିକୁ ଅତି ଆପଣାର ମଣିଥିଲା । ମମତାବୋଳା ଚାହାଣିରେ ଦେଖି ଆସିଥିଲା । କିନ୍ତୁ ତା'ର ମା' ଜେମା ତାକୁ ଛୋଟ ଲୋକ ରୂପେ ଗଣିଛି । ପୁନି ବି ତାକୁ ପ୍ରତ୍ୟାଖ୍ୟାନ କରିଛି ।

ଅଳିଆ ସଫା କରିବା ଆଳରେ ପୁନି ସହ ଅଘୋରବାବୁଙ୍କର ଆନ୍ତରିକତା ଗଢ଼ିଉଠେ । ସନିଆକୁ ଶସ୍ତା ସୋହାଗ ଦେଖାଇ ତା'ର ଚୋରି ଧନରେ ଭଲ ଲୁଗା, ଅତର ଦେହରେ ମାଖିଛି । ଶେଷରେ ଅଘୋରବାବୁଙ୍କ ସହିତ ଅବୈଧ ଗୁପ୍ତ ସମ୍ଭୋଗରେ ଲିପ୍ତ ରହିଛି । ଗାଁ ଦଣ୍ଡାର ମଶାଣିରେ ଅତି ଅନ୍ଧାରରେ ବି ଅଭିସାରିକା ବେଶରେ ନିଜକୁ ସଜାଇଛି । ମଶାଣି ହୋଇଛି ଯୌବନର ତୀର୍ଥ ।

ସନିଆ ଚୋରି କରି ଧରା ପଡ଼ିଛି । ପୁଲିସ ଠାରୁ ମାଡ଼ ଖାଇଛି । କିନ୍ତୁ ଯେଉଁ ପୁନି ପାଇଁ ଚୋରି କରିଛି ସେ ପୋଲିସ ଆଗରେ ମୁହଁ ଖୋଲିନି ।

ଅବିନାଶବାବୁଙ୍କ ହୀନଚକ୍ରାନ୍ତ ଫଳବତୀ ହୋଇଛି । ନାକଧରାପୁର ମେହେନ୍ତର ବସ୍ତିକୁ ନିଜର କରି ସେ କିଣି ନେଇଛନ୍ତି । ହରିଜନମାନେ ଏକାଠି ହୋଇ ସଭା କରିଛନ୍ତି । ତେବେ ସେମାନଙ୍କ ଆକୁଳ ନିବେଦନ, ସଭା ସମିତି ସବୁ ହାର ମାନିଛି । ରାତି ଅଧରେ ପାଣି ଗଳୁଥିବା ଦଦରା ଚାଳଗୁଡ଼ିକରେ ନିଆଁ ଲଗାଇ ଦିଆଯାଇଛି । ବାଧ ହୋଇଛନ୍ତି ସେମାନେ ଅନ୍ୟ ସ୍ଥାନକୁ ଚାଲିଯିବାପାଇଁ । ସେଠି ପରିକଳ୍ପନା କରାଯାଇଛି ଗୋଟିଏ ବିରାଟ ଶିଳ୍ପ ଅନୁଷ୍ଠାନ ।

ଚରମ ଦୁର୍ଦ୍ଦିନରେ ପୁନି ଆସିଥିଲା ଅଘୋରବାବୁଙ୍କ ପାଖକୁ କିଛି ସାହାଯ୍ୟପାଇଁ ଅଳି କରିବାକୁ । ପ୍ରତୀକ୍ଷା କରିଛି । ମାତ୍ର ସାକ୍ଷାତ୍ ହୋଇନି । କ୍ଷୋଭ ଓ ହତାଶା ମଧ୍ୟରେ ସେ ମନର କଥା ବ୍ୟକ୍ତ କରିଛି –

''କାହିଁକି ଆଉ ! ପୁଣି ଶେଷ ଥରକ – ଆସନ୍ତା ନାହିଁ ଟିକିଏ – ଶୁଣିଯାନ୍ତା ଖାଲି ପଦିଏ କଥା – ଶେଷ କଥା – ମୁଁ ଅଛୁଆଁ ନୁହେଁ, ଅଛୁଆଁ ତୁ । ମୁଁ ଖାଲି ଦରିଦ୍ର ... ଆଉ ତୁ ? ଚାହିଁଲେ ପାପ ଲାଗେ । ଛୁଇଁଲେ ଛୁଆଁତା ...।''

'ହରିଜନ' ଉପନ୍ୟାସ ବର୍ଣ୍ଣିତ ମେହେନ୍ତର ସମାଜର ଦୁଃଖ ଓ ଯନ୍ତ୍ରଣାବୋଧ ସମଗ୍ର ଉପନ୍ୟାସକୁ କରିଛି ବିୟୋଗାତ୍ମକ । ଏଥିରେ ତତ୍‌କାଳୀନ ସମାଜର ସାମାଜିକ,

ଆର୍ଥନୀତିକ, ରାଜନୀତିକ ତଥା ପ୍ରଶାସନିକ ବ୍ୟବସ୍ଥାର ବାସ୍ତବରୂପ ଗୋପୀନାଥ ଯେପରି ସ୍ପଷ୍ଟ ଓ ନିର୍ଭୀକ ଭାବରେ ପ୍ରଦାନ କରିଛନ୍ତି, ତାହା ସମକାଳୀନ ଭାରତୀୟ ଉପନ୍ୟାସ ସାହିତ୍ୟ ଜଗତରେ ଦେଖିବାକୁ ମିଳେ ନାହିଁ ।

## ଅମୃତର ସନ୍ତାନ

'ପରଜା' ଉପନ୍ୟାସ ପରେ 'ଅମୃତର ସନ୍ତାନ' ଉପନ୍ୟାସର ଆତ୍ମପ୍ରକାଶ । ଏହି ଉପନ୍ୟାସରେ ଆଦିବାସୀ ଜୀବନ ସଂଗ୍ରାମ ନାହିଁ ବା ଜୀବନ ଯନ୍ତ୍ରଣାର ତୀବ୍ର ସ୍ୱର ନାହିଁ । ଅଛି ଜୀବନବୋଧର ବିପୁଳ ସମ୍ଭାବନା । ଏଠି ଆଦିବାସୀ ମଣିଷ ଜୀବନର ସବୁ ଦୁଃଖ-ଯନ୍ତ୍ରଣାକୁ ଫାଙ୍କି ଦେଇ ନୂତନ ପୃଥିବୀର ସ୍ୱପ୍ନ ଦେଖିଛି ।

ମିଣିଆପାୟୁ ଗ୍ରାମର ସରବୁ ସାଓଁତାର ଦୁଃଖଦ କାହାଣୀ ହେଉଛି ଏଇ ଉପନ୍ୟାସର ବିଷୟବସ୍ତୁ । ତା'ର ପରିବାର କହିଲେ ଭାଇ ଲେଞ୍ଜୁକନ୍ଧ, ପୁଅ ଦିଉଡୁ, ବୋହୂ ପୁୟୁ ଓ ଝିଅ ପୁବୁଲି । ଉପନ୍ୟାସର ଆରମ୍ଭରେ ସରବୁ ସାଓଁତାର ବିୟୋଗ ବର୍ଣ୍ଣିତ । କିନ୍ତୁ ହସ ଖୁସି ଭିତରେ ଏ ପରିବାର ଆଶା ବାନ୍ଧିଛି ଚାରି ହଜାର ଫୁଟ ଉଚ୍ଚ ପାହାଡ଼ ଉପରେ ।

ଜୀବନର ପ୍ରତୀକ ଭାବରେ ପୁୟୁ ଉଚ୍ଚ ପର୍ବତର ପଥର ଚଟାଣରେ ଏକା ଏକା ଶିଶୁପୁତ୍ରକୁ ଭୂମିଷ୍ଠ କଲାବେଳେ ମରଣ ସଙ୍ଗେ ଯୁଦ୍ଧକରି କ୍ଷତବିକ୍ଷତ ହୋଇଛି । ଶାଳ ଗଜାକୁ ଦାନ୍ତରେ କାମୁଡ଼ି ଧରି ଦୁଃଖ ପାଇଛି । ହେଲେ ପରେ ପରେ ସବୁ ଦୁଃଖ ଏଇ ମାଆ ହେବାର ଗୌରବରେ ହଜାଇ ଦେଇଛି । ସେ ଆଗେଇ ଆସିଛି ନୂଆ ଜୀବନର ବାର୍ତ୍ତା ନେଇ ।

ନୂତନ ସୂର୍ଯ୍ୟର ଆଲୁଅରେ ପରିବାରଟି ଝଲମଲ ହୋଇଉଠି ନାହିଁ । ଉପନ୍ୟାସର ନାୟକ ଦିଉଡୁ । ବାପ ମଲାପରେ ଦିଉଡୁ ସାଓଁତା ହେଲା । ତା'ର କିନ୍ତୁ ପାରିବାରିକ ଜୀବନ ଘୁଣ ଧରିଛି । ମନ ତା'ର ପୁୟୁଠାରେ ବାନ୍ଧି ହୋଇ ରହି ନାହିଁ । ନୂଆ ସୁଆଦ ଚାଖିବାପାଇଁ ଡହଳ ବିକଳ ହୋଇଛି । ପୁୟୁର ଶୁଖିଲା ସେମେଟା ମୁହଁ ତାକୁ ବିଷ ଭଳି ଲାଗିଛି । ପୁୟୁ ବୁଝିଛି ସ୍ୱାମୀର ମନ କଥା । ଅଭିମାନଭରା କଣ୍ଠରେ ପ୍ରକାଶ କରିଛି –

''ମନ ହେଉଛି ଆଉ କେଉଁଠୁ ସୁନାମୁହାଁ କନ୍ୟା ଆଣି ବିଭା ହେଉନ; ମୁଁ କ'ଣ ମନା କରୁଛି ନା ମୁଁ ତୁମ ବାଟରେ ବସିଛି । ତୁମେ ଭେଣ୍ଡିଆ ଅଛ, ମୁଁ ସିନା ବୁଢ଼ୀ ହେଲିଣି, ଶୁଖିଲା ମୁହଁ ଆଉ ଅଙ୍ଗାର ତୁମର କି ଦରକାର, କିଏ ତୁମକୁ ଡାକିଛି ସେଗୁଡ଼ାକ ଅନେଇ ମନ ଖରାପ କରିବାକୁ ।''

ଦିଉଡୁର ପାରିବାରିକ ଜୀବନ ଛିନ୍ନଭିନ୍ନ ହୋଇଯାଇଛି । ବନ୍ଦିକାର ଗାଁର ପିଓଟି ପ୍ରତି ସେ ଆସକ୍ତ ହୋଇଛି । ଫଳରେ ତା'ର ଦାମ୍ପତ୍ୟ ଜୀବନ ବିଷମୟ ହୋଇ ଉଠିଛି । ଦିନେ ରାତିରେ ନିଜ ସ୍ତ୍ରୀ ପୁୟୁକୁ ଛାଡ଼ି ଗାଁର ବୁଢ଼ା ବାରିକକୁ ସାଙ୍ଗରେ ଧରି

ଲୁଚି ବନ୍ଧିକାର ଚାଲିଯାଇଛି । ଏଣେ ମିଣିଆପାୟୁ ଗାଁରେ ସେ ଦିନ ରାତିରେ ପୁୟୁ ଦିଉତ୍ତୁକୁ ନ ଦେଖି ବିବ୍ରତ ହୋଇପଡ଼ିଛି । ମନ ତା'ର କେତେ ପାପ ଛୁଏଁ । ସେ ବିଶ୍ୱାସ କରିପାରେନା ଦିଉତ୍ତୁ ତାକୁ ଛାଡ଼ି କୁଆଡ଼େ ଚାଲି ଯାଇଥିବ ।

ଦାମ୍ପତ୍ୟ ଜୀବନର ପହିଲି ମଧୁମଖା ସ୍ମୃତି କେତେଗୁଡ଼ାଏ ତା' ମନରେ ଜାଗି ଉଠେ । ଏମିତି ବି ସେତେବେଳେ କିଛି ନ କହି ସରବୁ ସାଓଁତାର ପୁଅ ଧନୁ ଟାଣି ଉଠି ଚାଲିଯାଏ, ତା'ପରେ ପୁୟୁକୁ ଆଶ୍ଚର୍ଯ୍ୟ କରି ଦେଇ ଗୋଟାଏ କୁଟ୍ରା କି ଗୋଟାଏ ମୟୂର ମାରି ତା' ଆଗରେ ଶୁଆଇଦିଏ ... ଘର ବାରଣ୍ଡାର ଏଇ ଟିକି ଟିକି ଖେଳ କାମ କଲାବେଳେ ପୁୟୁର ମନେ ପଡ଼ି ଯାଉଛି, ହାତ ଅଳସେଇ ହେଉଛି । ଆଜି ବି ସେହିପରି; କିନ୍ତୁ ସେ ଦିଉତ୍ତୁ ଆଜି ନାହିଁ । ଦିଉତ୍ତୁ ରାତି ଅଧିଆ ଯାଇଛି ଓ ଉଦୁଲିଆ ବାହା ହୋଇଛି ପିଓଟିକୁ । ବିବାହ ହୋଇ ରାତି ପାହାନ୍ତିରେ ଆସିଛି ଗାଁକୁ । ପୁୟୁ ଆଖିରେ ନିଦ ନାହିଁ । ବନ୍ଧିକାର ଗାଁର ପିଓଟିକୁ ସାଙ୍ଗରେ ଧରି ଦିଉତ୍ତୁ ତା' ଘର ଭିତରକୁ ପଶିଛି । ମନରେ ଛାଇ ହୋଇଥିବା ଆଶଙ୍କା ଓ ବିସ୍ମୟ ଆଖିର ଲୁହ ହୋଇ ବହି ଆସିଛି ।

ଦ୍ୱିତୀୟ ପତ୍ନୀର ଗୌରବ ନେଇ ପିଓଟି ଭବିଷ୍ୟତ୍ ଦାମ୍ପତ୍ୟ ଜୀବନର ସ୍ୱପ୍ନ ଦେଖୁଥାଏ । ପୁୟୁ ଆଖିରୁ ଲୁହ ଝରି ଆସୁଥାଏ ଅବାରିତ ଭାବରେ । ପାଖରେ ପ୍ରଣୟ, ସ୍ମୃତି ଓ ମମତା ବୋଲାବୋଲି ଛୋଟ ପୁଅ ଶୋଇଥାଏ । ତାକୁ ଚାହିଁ ମନରେ ତାହା କେତେ କଥା ଉଙ୍କି ମାରୁଥାଏ –

''ଏଇ ଗୋଟିଏ ସାନ ମାଂସପିଣ୍ଡୁଳା, ଧୀରେ ଧୀରେ ବଢ଼ିଉଠୁଛି । ଦିନେ ସେ ମଣିଷ ହେବ । ତେଣିକି ତା'ର ଘରସଂସାର ...'' ଟିକି ଦେହରେ ଆଉଁସୁ ଆଉଁସୁ କେତେ ସ୍ୱପ୍ନ ଭାସିଯାଏ । ଏହାରି ଗଢ଼େଇ ପିଣ୍ଡରେ କେତେ ସ୍ୱପ୍ନ ବୋଲାବୋଲି ଅତୀତର କେତେ ସୁଖର ଦୁଃଖର ଘରକରଣାର ପରଶ । ପାଣି ପବନର ଛିଟା ପରି ସେଠି ଘରର ସ୍ମୃତି । ଆଜି ସେ ଘର ଭାଙ୍ଗି ଆସୁଛି ।''

ଦିଉତ୍ତୁର ଦ୍ୱିତୀୟ ପତ୍ନୀ ଆସିବା ପରେ ସ୍ୱାମୀ ଗୃହରେ ତା'ର ଆଉ ରହିବାର ସାମାନ୍ୟତମ ଆବଶ୍ୟକତା ଥିବାର ସେ ଅନୁଭବ କରି ନାହିଁ ।

ଲେଖକଙ୍କ ଭାଷାରେ – ''କନ୍ଧର ପଦେ କଥା, ମୋର ତମଠି ମନ ନାହିଁ । ତା'ପରେ ଆଉ କ'ଣ ରହିଲା ? କି ସ୍ୱାର୍ଥ ତା'ର ଏ ଗାଁରେ ?''ପୁୟୁ ତା'ର ସ୍ୱାତନ୍ତ୍ର୍ୟ ଖୋଜି ଚାଲିଛି । ମନରେ ଆସିଛି – ''ଟିପି ଚଢ଼େଇର ବସା ଅଛି । ପିମ୍ପୁଡ଼ିର ଅଛି ଆହାର । ତାକୁ ରହିବାକୁ ଥାନ ନାହିଁ ? ××× ବର୍ତ୍ତନୀର କୋଡ଼ରେ ସବୁରି ଡିଅ ଅଛି । କାହିଁର ଚିନ୍ତା ! ଏଇ ଦି'ଦିନିଆ, ଉନ୍ନତ, ତା'ପରେ ପୁଣି ପରିବର୍ତ୍ତନ; ଏତିକିବେଳ କଟେଇ ହେବ ନାହିଁ ? ଉଦିଆନ ସୂର୍ଯ୍ୟକୁ ଚାହିଁ ନିଠେଇ ମନେ ମନେ କହିଲାଗିଛି – ''ଜୀବନରେ ସୁଆଦ ଅଛି । ମରଣ ନାହିଁ, ଦୁଃଖ ନାହିଁ ।''

ଜୀବନର ସମସ୍ତ ଅଭାବ, ଅସୁବିଧା କଷଣ, ପେଷଣ ସତ୍ତ୍ୱେ ଉପର୍ଯ୍ୟୁକ୍ତ ବାକ୍ୟଟି ହିଁ 'ଅମୃତର ସନ୍ତାନ' ଶେଷ ବାଣୀ, ଚରମ ସନ୍ଦେଶ !''

ଏକ କନ୍ଧ ପରିବାରର ଅଶ୍ଳୀଳ କାହାଣୀକୁ ଉପଜୀବ୍ୟ କରି ଗଢ଼ିଉଠିଛି 'ଅମୃତର ସନ୍ତାନ' ଉପନ୍ୟାସ । ପୁୟୁ ହୃଦୟର ଥରିଲା ବିଳାପ ଉପନ୍ୟାସର ପ୍ରତି ପୃଷ୍ଠାରେ ପ୍ରତିଧ୍ୱନିତ ହୋଇଉଠିଛି । ସେହିପରି ଦିଉଡୁର ଭଉଣୀ ପୁବୁଲି ଜନ୍ମସ୍ଥାନଠାରୁ ବିଦାୟ ନେଇଆସିଲାବେଳେ ଯେଉଁ କାରୁଣ୍ୟ ସୃଷ୍ଟି ହୋଇଛି, ତାହା ଭାଷାରେ ପ୍ରକାଶ କରି ହୁଏନା । ସରବୁ ସାଓଁତାର ଭାଇ ଲେଞ୍ଜୁ କନ୍ଧ ବଡ଼ଭାଇ ମୃତ୍ୟୁ ପରେ ନିତାନ୍ତ ଅସହାୟ ମନେ କରିଛି । ପୁତୁରା ଦିଉଡୁର ଆଚାର-ବ୍ୟବହାର ସହ୍ୟ କରିପାରି ନାହିଁ । ଥୁଣ୍ଡା ଲଣ୍ଡା ଜୀବନ ନେଇ ଜୀବନକୁ ତଉଲିବା ବେଳେ ସେ ଅନୁଭବ କରିଛି ସେ ଅଲୋଡ଼ା ଅଖୋଜା । ଲେଖକଙ୍କ ଭାଷାରେ –

''କିଏ ଅଛି ତା'ର, କିଏ ଅଛି ? ଆପଣା ବୟସର ବିଫଳତା ଆପେ ଆପେ ଆଣେ କାନ୍ଦୁରା ଚିନ୍ତା ; ନିଜ ଉପରେ କୃପା ହୁଏ ... ।''

ବାରିକଘରର ବୋହୂର ସେମିତି ହା-ହୁତାଶୟ ଜୀବନ । ତା'ର ଦେହ ଅଛି, ମନ ଅଛି । ଯୌବନ ଟୁଳ ଟୁଳ । ଏତେ ଥାଇ ମଧ୍ୟ ସେ ଶୋଷରେ ମରେ, ପାଣିପାଇଁ ହାତ ବଢ଼ାଏ । ××× ଅପାରଗ ସ୍ୱାମୀର ତାଡ଼ନାରେ ସନ୍ତୁଳି ହୁଏ । ××× ପୁଣି ଅଣପୁରୁଷା ସ୍ୱାମୀ ବାଳମୁଣ୍ଡା ଆଡ଼କୁ ଅନାଏଁ ; ଦୀର୍ଘଶ୍ୱାସ ପକାଏ, ଭାବେ ତା'ର ସ୍ୱପ୍ନର ପୁରୁଷ ଆସିବ । ଫଟା କପାଳ ଯୋଡ଼ି ହେବ । ପୋଡ଼ା ଜୀବନର ବୋଝ ମୁଣ୍ଡେଇ ବିକଳ ହୋଇ ସୋନା ଦେଈ କେବଳ ଆଶାରେ ହିଁ ବଞ୍ଚେ ...।

'ଅମୃତର ସନ୍ତାନ' ପାଇଁ ଗୋପୀନାଥ ୧୯୫୫ ମସିହାରେ କେନ୍ଦ୍ର ସାହିତ୍ୟ ଏକାଡେମୀଦ୍ୱାରା ପୁରସ୍କୃତ ହୋଇଥିଲେ ।

'ଅମୃତର ସନ୍ତାନ' ସମ୍ପର୍କରେ 'Indian Literary Review'ରେ ଡଃ ସୀତାକାନ୍ତ ମହାପାତ୍ର ଏକ ଛୋଟ ନିବନ୍ଧରେ କହିଛନ୍ତି ଯେ 'ଅମୃତର ସନ୍ତାନ' ହେଉଛି ଗୋଟିଏ ଏପିକ୍ ବା ମହାକାବ୍ୟ । ଏଥିରେ ପାଠକ ଲୁହର ଝରଣା ଭିତରେ ପାଏ ଆନନ୍ଦର ସ୍ୱାଦ (the taste of happiness as tears trickle into the mouth) । ଉପନ୍ୟାସଟିକୁ ଗଦ୍ୟକାବ୍ୟ କହିବା ସଙ୍ଗତ । ଲେଖକ ଏଇଠି ଶବ୍ଦରେ ଶବ୍ଦରେ ଛବିଗୁଡ଼ିଏ ଆଙ୍କିଛନ୍ତି । ତା' ସଙ୍ଗରେ ଭରିରହିଛି ବିପୁଳ ନାନ୍ଦନିକତା ।

୧୯୮୯ ମସିହାରେ କେନ୍ଦ୍ର ସାହିତ୍ୟ ଏକାଡେମୀ ଏକ ସାକ୍ଷାତ୍କାର କାର୍ଯ୍ୟକ୍ରମରେ ଗୋପୀନାଥଙ୍କୁ ଅଭିନନ୍ଦିତ କରି ଯେଉଁ ଫୋଲ୍ଡରଟି ଛାପିଥିଲେ ସେଥିରେ 'ଅମୃତର ସନ୍ତାନ'କୁ ସ୍ୱାଧୀନତା ପର ଓଡ଼ିଶାର ସର୍ବଶ୍ରେଷ୍ଠ କୃତି ବୋଲି ଉଲ୍ଲେଖ କରିଥିଲେ ।

ଆଲୋଚକଙ୍କ ଭାଷାରେ – 'ଅମୃତର ସନ୍ତାନ'ର ଅମୃତ ଅନୁଭବ ଆବେଦନ ଓ ଜୀବନର ଚିରନ୍ତନତା ଅଧିକ ମନଛୁଆଁ ।

## ମନ ଗହୀରର ଚାଷ

ଏହା ଲେଖକଙ୍କ ଆଦ୍ୟତମ ଉପନ୍ୟାସ । ୧୯୪୦ ମସିହାରେ ଏହା ପ୍ରକାଶିତ ହୋଇଥିଲା । ଏହି ଉପନ୍ୟାସଟି ରଚିତ ହେଲା ବେଳକୁ ଗୋପୀନାଥଙ୍କୁ ମାତ୍ର ପଚିଶ ବର୍ଷ । ଯୁବସୁଲଭ ମନର ଅସୁମାରି ସ୍ୱପ୍ନ, ଆଶା, ଆକାଂକ୍ଷା, ପ୍ରେମ, ପ୍ରଣୟ, ପରିଣୟ ପ୍ରଭୃତି ଚେତନାରେ ଉପନ୍ୟାସଟି ଉର୍ଜସ୍ୱଳ ।

ମୁଖ୍ୟ ଚରିତ୍ର ରାଧେଶ୍ୟାମ । ଆଠ, ନଅ ବର୍ଷ ହୋଇଥାଏ । ସେ ତାଙ୍କ ଦାଦିପୁଅ ଭାଇଙ୍କ ବିବାହବେଳେ ବର ସଙ୍ଗେ ମାର୍କୁଣ୍ଡି ହୋଇ ସବାରିରେ ବସି ଯାଇଛି । କନ୍ୟା ଘରେ ଦେଖା ହୋଇଥିଲା ଗୋଟିଏ କୁନି ଝିଅ ସଙ୍ଗେ । ଦୁଇ ଜଣଙ୍କର ବନ୍ଧୁତା ହୋଇଛି । ସବାରି ଭିତରେ ପଶି କବାଟ ବନ୍ଦ କରି ବର-କନିଆ ସାଜିଥିଲେ । ଖେଳ ଭିତରେ ଗେଲ କରା କରି ମଧ ହୋଇଥିଲେ ।

କୈଶୋର ସମୟରେ ରାଧେଶ୍ୟାମଙ୍କ ଆକର୍ଷଣ ଥିଲା ସହପାଠିନୀ ରମା । ତା'ର ହାତପାପୁଲିକୁ ରାଧେଶ୍ୟାମ ଥରେ ମୁଠା ଭିତରେ ଧରିଥିଲା ।

ସ୍କୁଲ ଜୀବନ ପରେ ଆସିଲା କଲେଜ ଜୀବନ । ଛୁଟି ହେଲେ ଭାଉଜଙ୍କ ବାପଘରେ ଯାଇ ହାଜର ହେଉଥିଲା । ରେଣୁକା ସହିତ ତାସ ଖେଳ ବି ହେଉଥିଲା । ଥଟ୍ଟା ତାମସାର ସୁଅ ଛୁଟୁଥିଲା । ଛୁଟି ଶେଷରେ ବାହୁଡ଼ିଲାବେଳେ ମୁହଁ ଲୁଚେଇ ସେ କାନ୍ଦୁଥିଲା ।

ବି. ଏ. ପରୀକ୍ଷାର ଫଳ ବାହାରି ନ ଥାଏ । କାନୁନଗୋ ବଂଶର ଝିଅ କାଞ୍ଚନମାଳା ସହିତ ବିବାହ ପ୍ରସ୍ତାବ ଆସିଲା । ଜାଗର ଅମାବାସ୍ୟା ଦିନ ମନ୍ଦିର ପ୍ରାଙ୍ଗଣରେ କନ୍ୟା ଦେଖା ବି ହେଲା । ରାଧୁ କିନ୍ତୁ ଏତେ ଶୀଘ୍ର ବାହାହେବାକୁ ରାଜି ହେଲା ନାହିଁ ।

କଟକ ରହଣି ସମୟରେ ରାଧୁ ସମ୍ପର୍କ ଯୋଡ଼ିଛି ନଳିନାକ୍ଷଙ୍କ ଘର ସହିତ । ରାଧୁର ଦୁର୍ବଳତା ଥିଲା ନଳିନାକ୍ଷବାବୁଙ୍କ ସାନଝିଅ ଛବି ସହିତ । ଦୁହେଁ ମଧ ନିବିଡ଼ ସାନିଧ ଚାହୁଁଥାନ୍ତି । ମାତ୍ର ଛବିର ରାଧୁର ଅନ୍ୟଜଣେ ସାଙ୍ଗ କିଶୋର ସହିତ ବିବାଦ ହୋଇଛି । ମାନସିକ ଗ୍ଲାନିରେ ବାହାଘରର ଦୁଇଦିନପରେ ରାଧେଶ୍ୟାମ ବସା ବଦଳାଇ ଅନ୍ୟତ୍ର ଚାଲିଯାଇଛି । ପଣ କରିଛି – 'ଅବିବାହିତ ରହିବ' ।

ବହୁତ ଦିନ ପରେ ରାଧୁର ବିବାହ ପ୍ରସ୍ତାବ ବାପମା'ଙ୍କ ପାଖରୁ ଆସିଛି ରେଣୁକା ବିଷୟରେ । ଭାଉଜ ମଧ ଚିଠି ଦେଇଥିଲେ ମତାମତ ଜାଣିବାପାଇଁ । ରାଧେଶ୍ୟାମ ବିନା ଦ୍ୱିଧାରେ ରାଜି ହୋଇଛି । ବିବାହ ହୋଇଛି ରେଣୁକା ସହିତ ।

ମଣିଷ ମନ ବଡ଼ ବିଚିତ୍ର । ପ୍ରାପ୍ତ ବସ୍ତୁର ମୋହରେ ଅପ୍ରାପ୍ତ ବସ୍ତୁର ରଙ୍ଗ ଫିକା ପଡ଼ିଥାଏ । ମନର ଏହି ରହସ୍ୟମୟ କଥାଟି ରାଧୁ ଚରିତ୍ର ମାଧମରେ ଲେଖକ ପ୍ରକାଶ କରିଛନ୍ତି – ''ଆକାଶ, ଆଦର୍ଶ, ତା' ପଛରେ ଗୋଡ଼ାଇବା ଖାଲି ସାର ହୁଏ । ସେ ଧରା ଦିଏ ନାହିଁ, ଶୋଷ ବଢ଼ାଏ ।''

"ଏଇ ରେଣୁକା ମୋର, ଯାର ଦେହ ଗୋଟାକ ମୋର,
ଯାର ମଣିଷପଣିଆ କେବଳ ମୋର ଏକୁଟିଆ ।"

ପୁଣି ରାଧେଶ୍ୟାମ ମାଧମରେ ଲେଖକ କହିଛନ୍ତି – "ତେବେ ମୁଁ ପାଣି ଅପେକ୍ଷା ଶୋଷକୁ ଭଲ ପାଉଥିଲି । ମୋର ମନେ ନାହିଁ ।"

ଏ ଗାଥା ଲେଖକଙ୍କର ସମ୍ପୂର୍ଣ୍ଣ ନିଜସ୍ୱ କାହାଣୀ ବୋଲି ମନେ ହୁଏ ।

**ଶରତବାବୁଙ୍କ ଗଳି**

ଆଦିବାସୀ ଜୀବନଭିତ୍ତିକ ଉପନ୍ୟାସଗୁଡ଼ିକର ସୃଷ୍ଟି ପରେ ଗୋପୀନାଥ ଦୃଷ୍ଟି ପକାଇଛନ୍ତି ସହର ଭିତରକୁ । ରଚନା କରିଛନ୍ତି ସହର ଜୀବନ ଉପରେ ଆଧାରିତ କେତେ ଖଣ୍ଡ ଉପନ୍ୟାସ ।

୧୯୪୯ ମସିହାରେ ଗୋପୀନାଥ ଆସ୍କାରେ ଥିଲାବେଳେ ଏହି କ୍ଷୁଦ୍ର ଉପନ୍ୟାସଟି ରଚନା କରିଥିଲେ । ଏଥିରେ ସେ ଆଧୁନିକ ସହରୀ ମଣିଷର ଜୀବନ ଚିତ୍ର ଅଙ୍କନ କରିଛନ୍ତି ।

ଗୋଟିଏ ସହରରେ ଅନେକ ଗଳି କନ୍ଦି ଥାଏ । ସେ ଗଳି କନ୍ଦିର ନାମକରଣ ମଧ କୌଣସି ଘଟଣାବହୁଳ ସ୍ମୃତିକୁ ଧରି ହୋଇଥାଏ । ଶରତବାବୁଙ୍କ ଗଳି ବାସ୍ତବବାଦୀ ଶରତବାବୁଙ୍କ ନାମରେ ନାମିତ ହୋଇଥିଲା । ସେହି ଗଳିର ଦୁଇପଟେ ଡାକ୍ତରବାବୁ, ପଶୁଡାକ୍ତରବାବୁ, ହେଲ୍‌ଥ/ଇନ୍‌ସପେକ୍ଟର, କିଶୋରବାବୁ, ସୁଧାଂଶୁବାବୁ ଲେଖକ ପ୍ରଭୃତି ଘର କରି ରହିଥାଆନ୍ତି । ଏହି ଗଳିରେ ଥରେ ଗୋଟିଏ ସାଧାରଣ ଘଟଣା ଘଟିଲା । ହେଲ୍‌ଥ ଇନ୍‌ସପେକ୍ଟରବାବୁ ଆରମ୍ଭ କଲେ ଯେ ଜହ୍ନ ରାତିରେ କିଏ ଟେକା ପକାଉଚି । ଗଳିର ମୁଖିଆ ବ୍ୟକ୍ତିମାନେ ଚୋର ଅନୁସନ୍ଧାନରେ ବାହାରି ପଡ଼ିଲେ । ଅନ୍ଧବିଶ୍ୱାସୀ ପ୍ରସନ୍ନବାବୁ ଭୂତ ପ୍ରେତ ଘଉଡ଼ାଇବାପାଇଁ ପୂଜା ପାଠ ଆରମ୍ଭ କରିଦେଲେ । ଅନ୍ୟମାନେ ମଧ ଏହାକୁ ସମର୍ଥନ କଲେ । ମାତ୍ର ବହୁଲୋକ ଏହାକୁ ବିଶ୍ୱାସ କରିପାରିଲେ ନାହିଁ । ସେମାନେ ଏହାକୁ କୌଣସି ବ୍ୟକ୍ତିବିଶେଷଙ୍କର କାର୍ଯ୍ୟ ବୋଲି ମତଦେଲେ ଓ ତାହାର ଅନୁସନ୍ଧାନ କରିବାକୁ ବାହାରିଲେ । ଜଣେ ପଶୁଡାକ୍ତର ଚୋର ଆକ୍ରମଣରୁ ନିଜକୁ ରକ୍ଷା କରିବାପାଇଁ ଏକ ଅଦ୍ଭୁତ ଉପାୟ ପାଞ୍ଚିଲେ । ସେ ଏକ ପତଳା ଲୁହା କରେଇକୁ ମୁଣ୍ଡରେ ବାନ୍ଧିଲେ । କାମିଜ ପିନ୍ଧି ତା' ଉପରେ କୋର୍ଟ ଓ ଘରେ ଥିବା ବର୍ଷାତି କୋର୍ଟ ପିନ୍ଧିଲେ । ହାତରେ ଏସିଡ୍‌ଭରା ସିରିଞ୍ଜ୍ ଧରି ଚୋର ଧରିବାକୁ ବାହାରିଲେ । ଦୁର୍ଭାଗ୍ୟବଶତଃ ଅନ୍ୟମାନେ ପଶୁଡାକ୍ତରଙ୍କୁ ଚୋର ଭାବି ଆକ୍ରମଣ କଲେ । ଫଳରେ ସେ ଆହତ ହୋଇ ଘରେ ଶଯ୍ୟାଶାୟୀ ହୋଇ ରହିଲେ ।

ହାସ୍ୟକର ପରିସ୍ଥିତିରେ ଉପନ୍ୟାସଟିର ପରିସମାପ୍ତି ଘଟିଛି ।

ଉପନ୍ୟାସର କାହାଣୀ ଅତି ଦୁର୍ବଳ । ବହୁ ସମାଲୋଚକ ଉପନ୍ୟାସକୁ କ୍ଷୀଣ ଓ ଦୁର୍ବଳ ବୋଲି କହିଛନ୍ତି । ଉପନ୍ୟାସଟି ଘଟଣା-ପ୍ରଧାନ ନ ହୋଇଥିଲେ ମଧ୍ୟ ମନସ୍ତାତ୍ତ୍ୱିକ ବିଶ୍ଳେଷଣର ପରୀକ୍ଷାଗାର ଭାବେ ଗ୍ରହଣ କରାଯାଇପାରେ । ମଣିଷ ମନରେ ପ୍ରତି ମୁହୂର୍ତ୍ତରେ ଉପୁଜିଥିବା ବିଭିନ୍ନ ଭାବାନୁଷଙ୍ଗ ଏହାର ମୁଖ୍ୟ ପ୍ରତିପାଦ୍ୟ ବିଷୟ ।

**ରାହୁର ଛାୟା**

ପୋଲିସ ଅଫିସର୍ ଚନ୍ଦ୍ରିକାବାବୁଙ୍କର ଝିଅ ସତୀ । ଉଚ୍ଚଶିକ୍ଷିତା – ଏମ୍.ଏ. ପାସ୍ କରିଛି । ଭାଇ ବଦ୍ରିକା । ଅସବର୍ଣ୍ଣ ବିବାହ କରି ଘର ଛାଡ଼ି ଅଭିପାନରାର ଘରଜ୍ୱାଇଁ ହୋଇ ସହରରେ ଓକିଲାତି କରନ୍ତି । ଚନ୍ଦ୍ରିକାବାବୁ ନିଃସହାୟ ଭାବେ ଶେଷ ନିଶ୍ୱାସ ତ୍ୟାଗ କରିଛନ୍ତି । ମା' ବାହୁନି ଉଠିଛନ୍ତି । ସତୀ 'ବାପା' 'ବାପା' କହି ଚିତ୍କାର କରିଛି । କାନ୍ଦଣା ଶୁଣି ପଡ଼ୋଶୀ ସମୀର ଘର ଭିତରକୁ ଆସନ୍ତି । ସେ ସତୀକୁ ଦୁଇ ହାତରେ କୁଣ୍ଡେଇ ଖଟ ଉପରେ ଶୁଆଇ ଦେଇଛନ୍ତି । ଆଉ ବୟସ୍କ ସମୀର ରାହୁଗ୍ରାସ କରିବାକୁ ଆଗେଇ ଆସିଛନ୍ତି । ସତୀର ଯୌବନ ତାତି ଉଠିଛି । ସେ ଘୃଣା କରିନି । ସେହି ରାତି ପରେ ସତୀର ନୂଆ ଅବସ୍ଥିତିର ଚୋରା କବାଟ ଖୋଲିଯାଇଛି ।

ସତୀର ମା' ପୁଷ୍ପମୟୀ ଗାଁର ଘରେ ଯାଇ ରହିବାକୁ ପସନ୍ଦ କରିଛନ୍ତି । ସତୀ ବସାଘର ବଦଳାଇ ଅନ୍ୟତ୍ର ଘରଭଡ଼ା ନେଇ ରହିଛି । ସମୀର ମଧ୍ୟ ସତୀର ପିଛା ଛାଡ଼ି ନାହାନ୍ତି । ସେ ତାଙ୍କର ଅଧିକାର ଅଧିକ ସାବ୍ୟସ୍ତ କରିବାରେ ଲାଗି ପଡ଼ିଛନ୍ତି । ତା'ରି ବାଧ୍ୟବାଧକତାରେ ସତୀ ତାଙ୍କ ସହିତ ବିଭିନ୍ନ ସ୍ଥାନକୁ ପର୍ଯ୍ୟଟନରେ ଯାଇଛି । ପୁରୀରେ ସମୀର ଚୁପ୍‌ଚାପ୍ ସିଭିଲ ମ୍ୟାରେଜପାଇଁ ପ୍ରସ୍ତାବ ଦେଇଛନ୍ତି । ପତ୍ନୀ ଓ ତିନୋଟି ସନ୍ତାନ ଥିବା ସମୀରଙ୍କର ଏ ପ୍ରସ୍ତାବକୁ ସତୀ ପ୍ରତ୍ୟାଖ୍ୟାନ କରିଛି ।

ପୁରୀରୁ ଫେରି ସତୀ ରେଡ଼ିଓରେ ଖଣ୍ଡେ ଚାକିରି ପାଇଛି । ସେ ଚାକିରି ଛାଡ଼ିବାର ପ୍ରାୟ ୬ ମାସ ପରେ ଗୋଟିଏ ଗଡ଼ଜାତ ସ୍କୁଲରେ ଶିକ୍ଷୟିତ୍ରୀ ଚାକିରି ପାଇ ସମୀରଙ୍କୁ ଛାଡ଼ି ଚାଲିଯାଇଛି । କିନ୍ତୁ ରାହୁର ଛାଇଠାରୁ ନିଜକୁ ଦୂରେଇଦେଇପାରିନି । ଖବରକାଗଜରେ ତା' ନାଁରେ କୁହାରଟିଛି । ଆଠ ଥର ତା' ନାଁରେ ଅଭିଯୋଗ ପତ୍ର ସବୁ ଅଧିକାରୀଙ୍କ ହସ୍ତଗତ ହୋଇଛି । ନବମ ଦରଖାସ୍ତଟି ବେନାମୀ ଅଭିଯୋଗକାରୀର –

''ଶ୍ରୀମତୀ ସତୀଦେବୀ, ଶିକ୍ଷୟିତ୍ରୀ ହେବାକୁ ତାଙ୍କର ଚରିତ୍ର ନିରାପଦ ତ ! ନା ଖାଲି ଏମ୍. ଏ ପାସ୍ କରିଛନ୍ତି ବୋଲି ? ... × × × ଶୀଘ୍ର ତାଙ୍କୁ ବିଦା କଲେ କ୍ଷତି ଅଛି କାହାର ?''

ସତୀର ସ୍କୁଲ ପରିସରକୁ ସମୀର୍ ଯାଇଛନ୍ତି କି ନାହିଁ ତାହା ଜଣା ନ ଥିଲେ ମଧ୍ୟ ଗଡ଼ଜାତ ସ୍କୁଲରେ ଅପବାଦ ରଟିବା ମୂଳରେ ସେ ଯେ ଥିଲେ, ଏହା ନିଃସନ୍ଦେହ । ସେହି ସ୍କୁଲରେ ସାଢ଼େ ତିନି ବର୍ଷ କଟେଇ ଇସ୍ତଫା ଦେଇ ସତୀ ନିଜ ସହରକୁ ଫେରିଆସିଛି ।

ବିଖଣ୍ଡିତ ଜୀବନର ଅତୀତର କଥା ମନେ ପକାଇ ସତୀ ଯେତେବେଳେ ଗାଁକୁ ଫେରୁଥାଏ, ଟ୍ରେନ୍‌ରେ ଦେଖାହୋଇଛି ଇନ୍‌ସୁରାନ୍‌ସ ଏଜେଣ୍ଟ ନବେନ୍ଦୁ ସହିତ । ପ୍ରଥମ ଦର୍ଶନରେ ନବେନ୍ଦୁ ତା' ପ୍ରତି ଆକୃଷ୍ଟ ହୁଏ । ସବୁ କ୍ଷେତ୍ରରେ ସେ ସବୁପ୍ରକାର ସାହାଯ୍ୟ କରିବାକୁ ବ୍ୟାକୁଳ ହୋଇଉଠେ । ଯାତ୍ରା ଶେଷରେ ନବେନ୍ଦୁ ଠାରୁ ବିଦାୟ ନେଇ ସତୀ ସମୀର୍‌ବାବୁଙ୍କ ଘରକୁ ଫେରିଆସେ ।

ଠିକଣା ଖୋଜି ଖୋଜି ଏକଦା ରେଳ ସହଯାତ୍ରୀ ନବେନ୍ଦୁ ସମୀର୍‌ଙ୍କ ଘରେ ପହଞ୍ଚିଛି । ସତୀ ସହିତ ସମୀର୍‌ଙ୍କ ଉପସ୍ଥିତି ଦେଖି ସେ ଆହତ ହୋଇଛି । ସମୀର୍ ତା'ର ବନ୍ଧୁ ବୋଲି ସତୀ ନବେନ୍ଦୁକୁ ଚିହ୍ନାଇଛି । ନବେନ୍ଦୁର ମନ କିନ୍ତୁ ବୁଝିନି । ପ୍ରେମିକା ଇରାର ତାଗିଦ ହେତୁ ସତୀ ସହିତ ସମ୍ପର୍କକୁ ଦୀର୍ଘତର ନ କରି ଗାଡ଼ିରେ ବସି ଫେରିଯାଇଛି ଇରା ପାଖକୁ ।

ସତୀର ବିଷଣ୍ଣ ମନକୁ ଠଉରେଇ ସମୀର୍ ସ୍ଥାନ ପରିବର୍ତ୍ତନ ବା ସମୁଦ୍ରକୂଳରେ କିଛି ଦିନ ରହିବାପାଇଁ ପ୍ରସ୍ତାବ ଦେଇଛନ୍ତି । ସତୀର ପ୍ରସ୍ତାବକ୍ରମେ ସମୀର୍ ସାଥିରେ କୋଣାର୍କ ଯାଆନ୍ତି କିଛି ଦିନ ବିଶ୍ରାମ କରିବାକୁ ।

ପୁରୀ କୋଣାର୍କର ମଝି ସ୍ଥାନ । ଏହି ଅପରିଚିତ ବାଲିକୁଦ ଉପରେ ଆଲୁରା ବେଶରେ ସତୀ ପ୍ରାଣ ପୁଲକି ଉଠିଛି । ସତୀର ଦେଖା ହୋଇଛି ବିଭୂତିଭୂଷଣ ସହିତ । ବୟସ ବାଇଶ କି ତେଇଶ ହେବ । ସତୀ ପ୍ରଥମେ ବିଭୂତିର ଛନଛନିଆ ତାରୁଣ୍ୟ ଦେଖି ତାକୁ ଆତ୍ମସାତ୍ କରିବାକୁ ଚାହିଁଥିଲା । କିନ୍ତୁ ତା'ର ତରଳ ବୟସ ଓ ଛାତ୍ରାବସ୍ଥା କଥା ଚିନ୍ତା କରି ପିଲାଟେ ବୋଲି ମନେ କଲା । ସତୀ ତା' ଠାରୁ ଦୂରରେ ରହିବାକୁ ଦୌଡ଼ି ପଳାଇଲା । ବିଭୂତି କିନ୍ତୁ ତା' ପଛେ ପଛେ ଦୌଡ଼ିବା ଦେଖି ସତୀ ବିସ୍ମିତ ହେଲା । 'ଆରେ ଛାତ୍ରଟି ଜଣେ ପୁରୁଷ' – ତା' ପାଟିରୁ ବାହାରି ଆସିଲା ।

ବିଭୂତି ତାକୁ ଧରିପକାଇଲାବେଳକୁ ସତୀ ବିଭୂତିର ହାତ ଛିଞ୍ଚାଡ଼ି ଦେଇଛି । ବିଭୂତିର ବିବାହ ପ୍ରସ୍ତାବକୁ ଆଡ଼େଇ ଦେଇ କହିଉଠିଛି –

''ଶୁଣ ତମେ ମୋ'ଠୁ ଚଉଦ ବର୍ଷ ସାନ । ... କଳଙ୍କିନୀ ସତୀର ନାଁ ଶୁଣିଛ ? ସତୀ ଆଉ ସମୀର୍ ...କଳଙ୍କିନୀ ସତୀ ଆଉ ତୁମେ ନିଷ୍ପାପ ଯାଅ, ଯାଅ, ଯାଅ ।''

ଏ ଘଟଣାର ପରଦିନ ସତୀ ସମୀରଙ୍କୁ ବାଧ୍ୟ କରି ତାଙ୍କ ସହିତ ସହରକୁ ଫେରିଯାଇଛି ।

ସତୀର ଏହା ପରେ ଅଦ୍ଭୁତ ପରିବର୍ତ୍ତନ ହୋଇଛି । ପୋଷାକ, ପ୍ରସାଧନ ଓ ସାଜସଜ୍ଜା ପ୍ରତି ଅଧିକ ଦୃଷ୍ଟି ଦେଇଛି । ସମୀର ପଚାରିଲେ ସେ କହେ ଲାଇବ୍ରେରୀ ବା କ୍ଲବକୁ ଯାଉଛି ବୋଲି ।

ଉପନ୍ୟାସର ଶେଷ ଦୃଶ୍ୟ ହେଉଛି ସତୀର ଶ୍ୟାମଳ ଯୁଦ୍ଧଫେରନ୍ତା କ୍ୟାପ୍‌ଟେନ୍ ରବିନ୍ ଦେଙ୍କ ସହିତ ସାକ୍ଷାତ୍ । ଦେଙ୍କ ଅପ୍ରତ୍ୟାଶିତ ପ୍ରଶ୍ନ – ''ଓ୍ୱିଲ ୟୁ ମ୍ୟାରି ମି ?''

ସତୀ ମଧ୍ୟ ଉତ୍ତର ଦେଇଛି 'ହ୍ୱାଇ ନଟ୍ ? ମୁଁ ରାଜି !''

ତା'ପରଦିନ ଦେ ଆଗେଇ ଆସିଛନ୍ତି ସତୀକୁ ନେବାକୁ । ତାଙ୍କ ପଛେ ପଛେ ତେପନ ବର୍ଷ ବୟସ୍କ ଶେତାମୁହାଁ ସମୀର ଢଳି ଢଳି ଆସିଛନ୍ତି । ରାହୁଗ୍ରାସରୁ ସତୀ ସର୍ବମୋକ୍ଷ ହୋଇ ନୂଆ ଜୀବନ ଗଢ଼ିବାରେ ଆଗେଇଯାଇଛି ।

'ରାହୁର ଛାୟା' ଏକ ଅନ୍ତଃସଂଳାପଧର୍ମୀ ଉପନ୍ୟାସ । ଏହି ଉପନ୍ୟାସର ଚରିତ୍ରଗୁଡ଼ିକୁ ଲେଖକ ବୋଧେ ନିଜ ଜାଣିଥିବା ବା ବିଭିନ୍ନ କ୍ଷେତ୍ରରୁ ସଂଗ୍ରହ କରିଥିବା ଅନୁମାନ କରାଯାଏ । ମନନଶୀଳତା, ଅନ୍ତର୍ଦ୍ୱନ୍ଦ୍ୱ ଓ ଚେତନା ପ୍ରଭାବର ପ୍ରାଚୁର୍ଯ୍ୟତା ଛତ୍ରେ ଛତ୍ରେ ଦେଖିବାକୁ ମିଳେ । ଏହା ନାୟିକାର ଡାଏରୀ ବା ଆତ୍ମଜୀବନୀ କହିଲେ ଅତ୍ୟୁକ୍ତି ହେବ ନାହିଁ ।

**ଦୁଇ ପତ୍ର**

ଏହା ଏକ କ୍ଷୁଦ୍ର ଉପନ୍ୟାସ । ବିନୋବାଜୀଙ୍କର ଯଜ୍ଞ ଆନ୍ଦୋଳନ ଦେଶରେ ଚାଲିଥାଏ । ନାୟକ ଅଜିତ୍ ଏକ ସମ୍ବାଦପତ୍ରରେ ସ୍ୱଳ୍ପ ବେତନଭୋଗୀ ସମ୍ପାଦକ । ଭଲ ଚାକିରିଟିଏ ନ ପାଇ ଓ ଓକିଲାତିରେ ସଫଳ ନ ହୋଇ ବରିନେଇଛି ଏହି ସମ୍ବାଦପତ୍ରକୁ । ତା'ର ସ୍ପଷ୍ଟ ନିର୍ଭୀକ ଚିନ୍ତାଧାରାକୁ ମଧ୍ୟ ସମସ୍ତେ ପ୍ରଶଂସା କରନ୍ତି ।

ସମ୍ପାଦକ ଅଜିତ୍‌କୁ ବିନୋବାଜୀଙ୍କ ବାର୍ତ୍ତା ବିଶେଷ ଭାବରେ ଅନୁପ୍ରାଣିତ କରିଛି । ଯେଉଁମାନେ ଭୂମିଦାନ କରୁଛନ୍ତି ସେମାନଙ୍କର ମହାନତାକୁ ତା' ଖବରକାଗଜରେ ଛାପିଛି । ସମସ୍ତେ ଏହି ମହତ୍ କାର୍ଯ୍ୟରେ ସାମିଲ ହେବାକୁ ସେ ସମ୍ବାଦପତ୍ରରେ ନିବେଦନ କରିଛି ମଧ୍ୟ ।

ଅଜିତ୍ ହେମାଳପୁର ଗ୍ରାମର ଭଜଗୋବିନ୍ଦ ମିଶ୍ରଙ୍କ ଠାରୁ ନିମନ୍ତ୍ରଣ ପାଇଛି । ସେ ସେଥିରେ ଅଜିତ୍‌ଙ୍କୁ ହେମାଳପୁର ଗାଁକୁ ଆସିବାକୁ ଅନୁରୋଧ କରିଛନ୍ତି । ସେ ତାଙ୍କର ସର୍ବସ୍ୱ ଭୂଦାନ ଆନ୍ଦୋଳନରେ ଦେବାପାଇଁ ପ୍ରସ୍ତାବ ମଧ୍ୟ ଦେଇଛନ୍ତି । ଅଜିତ୍ ବହୁ ଶ୍ରମ ସ୍ୱୀକାର କରି ହେମାଳପୁର ଗ୍ରାମକୁ ଯାଇ ଭଜଗୋବିନ୍ଦବାବୁଙ୍କୁ ଭେଟିଛି । ଭଜଗୋବିନ୍ଦବାବୁ ନିର୍ଦ୍ଧାରିତ ଫର୍ମରେ ସ୍ୱାକ୍ଷର କରି ସମସ୍ତ ସମ୍ପତ୍ତି ଭୂଦାନ ଆନ୍ଦୋଳନକୁ ଦାନ କଲେ ବୋଲି ଘୋଷଣା କରିଛନ୍ତି । ଅଜିତ୍ ଏଥିରେ ଉଲ୍ଲସିତ ହୋଇଉଠିଛି ।

ସମ୍ପାଦକ ଅଜିତ୍‌ଙ୍କର ଭଜଗୋବିନ୍ଦବାବୁଙ୍କ ପତ୍ନୀ ଜଗଜ୍ୟୋତି ଦେବୀଙ୍କ ସଙ୍ଗେ ଭେଟ ହୋଇଛି । ସେ ଚାରି ଜଣ ନାରୀକର୍ମୀଙ୍କ ସହିତ ତାଙ୍କ ଅଞ୍ଚଳର ରାସ୍ତାଘାଟର ଦୁର୍ଦ୍ଦଶା, ମଶାର ପ୍ରାଦୁର୍ଭାବ ପ୍ରଭୃତି ଖବରକାଗଜରେ ଛାପି ସରକାରଙ୍କ ଦୃଷ୍ଟିକୁ

ଆଣିବାକୁ ନିବେଦନ କରିଛନ୍ତି । ଆଲୋଚନା ବେଳେ ସ୍ୱାମୀ ଯେଉଁ ମହାନୁଭବତା ଦେଖାଇଛନ୍ତି, ତାହା ତାଙ୍କର ପାଗଳାମି ବୋଲି କହିଛନ୍ତି । ସବୁ ଜମି ତାଙ୍କ ନାମରେ ଅଛି ବୋଲି ଜଣାଇ ସେ କହିଛନ୍ତି ଭୂମିଦାନରେ ତାଙ୍କର ବିଶ୍ୱାସ ନାହିଁ । ଦାନ ସୂତ୍ରରେ ସେ କିଛି ଦେଇପାରିବେ ନାହିଁ ବୋଲି ସ୍ପଷ୍ଟ ଭାବେ ଶୁଣାଇ ଦେଇଛନ୍ତି ।

ଅଜିତ୍‌ର ମୋହଭଙ୍ଗ ଅବଶ୍ୟ ହୋଇନି । ଭୂଦାନକର୍ମୀପାଇଁ ଏ ଅଘଟନ ଶେଷ ନୁହେଁ କହି ନିଜକୁ ପ୍ରବୋଧନା ଦେଇଛି ।

ଅଜିତ୍ ଫେରିବାବାଟରେ ଢିଙ୍କି ପାହାର ଶବ୍ଦ ଶୁଣି କେଉଟ ସାହିରେ ପହଞ୍ଚିଛି । ସକାଳେ ଚୁଡ଼ା ଦିଓଟି ଖାଇ ଯାଇଥିଲା । ପ୍ରଚଣ୍ଡ ଭୋକ । ସପନା ମା' କେଉଟୁଣୀ ବୁଢ଼ୀର ଅଯାଚିତଭାବେ ଚୁଡ଼ା ଗୁଡ଼ ଦେବା ତାକୁ ଅଭିଭୂତ କରିଛି । ଅଜିତ୍ ସେମାନଙ୍କ ସଙ୍ଗେ ଭୂଦାନ ଯଜ୍ଞ ବିଷୟରେ ଆଲୋଚନା କରିଛି । ସେମାନେ ଶୁଣିଛନ୍ତି ଆଗ୍ରହରେ ଆଉ ସରଳ ବିଶ୍ୱାସରେ । ଲୋକଙ୍କ ମନ ଓ ହୃଦୟକୁ ବିନୋବାଜୀଙ୍କ ଭୂଦାନବାଣୀ ସ୍ପର୍ଶ କରିଛି । ସେମାନେ ଭୂଦାନ ଯଜ୍ଞରେ ସାମିଲ ହେବାପାଇଁ ବ୍ୟାକୁଳ ହୋଇଉଠିଛନ୍ତି । ବୁରୁନ୍ଦା କେଉଟ ତା'ର ଆଠ ଗୁଣ୍ଠ ଘର କିମ୍ବା ଜମି ଦାନ କରିଛି । ତା' ପଛେ ପଛେ ତା' ପୁତୁରା ପାଞ୍ଚ ମାଣ ଦେଇଛି । ଆଉ ବି କେତେଜଣ ବାହାରି ପଡ଼ିଛନ୍ତି । ଚାହୁଁ ଚାହୁଁ ଚାରିଘରଯାକ କେଉଟ ତାଙ୍କର ସବୁଯାକ ଜମି ଭୂଦାନକୁ ଦେଇଦେଇଛନ୍ତି ।

କେଉଟମାନଙ୍କର ଅଭୂତପୂର୍ବ ତ୍ୟାଗରେ ଅଜିତ୍ ଅଭିଭୂତ ହୋଇପଡ଼ିଛି । ସେ ତା'ର ସମ୍ପାଦକୀୟ ନିରାପଦ ସ୍ଥିତିକୁ ଉତ୍ସର୍ଗ କରି ଭୂଦାନକର୍ମୀ ସାଜିଛି ।

ଆଲୋଚକଙ୍କ ଭାଷାରେ – ''ଦୁଇ ପତ୍ର ଉପନ୍ୟାସର ପ୍ରଥମ ପତ୍ରଟି କ୍ରମଶଃ ସବୁଜିମା ହଜେଇ ନିଷ୍ପ୍ରଭ ହୋଇ ଝଡ଼ିପଡ଼ିଛି । ... ଆଉ ବୃନ୍ତଚ୍ୟୁତ ହୋଇ ନ ଥିବା ଦ୍ୱିତୀୟ ପତ୍ରଟି ମାନବୀୟ ସବୁଜିମାରେ ଚିରହରିତ୍ ଓ ପ୍ରାଣ-ସ୍ପନ୍ଦନରେ ହିଲ୍ଲୋଳିତ ହୋଇଛି ।''

### ସପନ ମାଟି

୧୯୪୮ ମସିହାରେ ଗୋପୀନାଥ ଆସ୍କାରେ ଥିଲାବେଳେ ଏହାକୁ ରଚନା କରିଥିଲେ । ସମାଜରେ ଶ୍ରେଣୀସଂଘର୍ଷ, ଗଣତାନ୍ତ୍ରିକ ମୂଲ୍ୟବୋଧର ଅବକ୍ଷୟ, ନେତାମାନଙ୍କର ପ୍ରତାରଣା, ହିଂସାତ୍ମକ କାର୍ଯ୍ୟକଳାପ ପ୍ରଭୃତି ନେଇ ଏହି ଉପନ୍ୟାସ ରଚିତ । ଲେଖକଙ୍କ ଜୀବନାଦର୍ଶ ମଧ୍ୟ ଏଥିରେ ପ୍ରତିଫଳିତ ହୋଇଛି ।

ସରଳ, ନିରୀହ ଓ ମେଧାବୀ ଛାତ୍ର ଯାଦବ ପ୍ରଧାନ । ସେ ପୁଣି ଆଦର୍ଶବାଦୀ ଓ ପୁଞ୍ଜିବାଦର ବିରୋଧ କରେ । ସେ କଳ ମାଲିକ କେ. ସି. ଦାସଙ୍କ ଝିଅ ସୁପ୍ରଭାକୁ ଭେଟିଛି । ସୁପ୍ରଭା ଏହାକୁ ପରମ ସୌଭାଗ୍ୟ ମନେ କରିଛି । ତା'ର ଅନୁରୋଧରେ ଯାଦବ ସୁପ୍ରଭା ଘରକୁ ଯାଇଛି । କ୍ରମେ ସାନ୍ନିଧ୍ୟ ଗଢ଼ିଉଠିଛି । ସେ ସମ୍ପର୍କ ପୁଣି ନିବିଡ଼

ହୋଇଛି । ଫଳରେ ଯାଦବର ଜୀବନରେ ଆସେ ଅନେକ ପରିବର୍ତ୍ତନ । ସହପାଠୀଙ୍କ ସମାଲୋଚନା ଫଳରେ ସେ ବନ୍ଧୁମାନଙ୍କଠାରୁ ବିଦାୟ ନେଇ ଚାଲିଆସେ ତା'ର ଦୂର ସମ୍ପର୍କୀୟ ମଉସାଙ୍କ ଘରକୁ ।

ମଉସାଙ୍କ ଘରେ କଲେଜ ଛାତ୍ରୀ ଛନ୍ଦା ସହିତ ଯାଦବର ବନ୍ଧୁତା ଗଢ଼ିଉଠେ । ଛନ୍ଦା ୪୨ ନଂ ଦଳ ଭଳି ଏକ ବିଜାତୀୟ ଦଳର ସହକର୍ମିଣୀ । ଛନ୍ଦାର ବନ୍ଧୁ ଶୁଭ୍ରା ଏହି ଦଳର ନେତ୍ରୀ । ପୁଞ୍ଜିବାଦ ବିରୋଧରେ ଲଢ଼ାଇ କରିବାକୁ ସେମାନେ ବିଦେଶରୁ ଟଙ୍କା ପାଇଥାନ୍ତି । କର୍ମପନ୍ଥା ମଧ୍ୟ ଅଗଣତାନ୍ତ୍ରିକ ହୋଇଥିବାରୁ ଯାଦବ ସେହି ଦଳରେ ଯୋଗ ଦେଇ ନାହିଁ ।

୪୨ ନମ୍ବର ଦଳର ଆହ୍ୱାନକ୍ରମେ କଲେଜରେ ଧର୍ମଘଟ ହୁଏ । ସୁପ୍ରଭା ସେଥିରେ ଯୋଗ ନ ଦେବାରୁ ମଦନ ତାକୁ ଆକ୍ରମଣ କରିଛି । ଯାଦବ ପ୍ରଧାନ ଏ ପ୍ରକାର କାର୍ଯ୍ୟକୁ ସମର୍ଥନ କରି ନାହିଁ । ସେ ନିଜ ତତ୍ତ୍ୱାବଧାନରେ ସୁପ୍ରଭାକୁ ଆଣି ତାଙ୍କ ଘରେ ଛାଡ଼ିଦେଇଯାଇଛି । ଫଳରେ ସେମାନଙ୍କ ମଧ୍ୟରେ ସମ୍ପର୍କ ଗାଢ଼ ହୋଇଛି । ପୁଞ୍ଜିପତି କେ.ସି. ଦାସ ମଧ୍ୟ ବିପ୍ଳବୀ ଦଳର ମୂଳପୋଛ ପାଇଁ ଯାଦବକୁ ପ୍ରବର୍ତ୍ତାନ୍ତି । ଅର୍ଥ ସାହାଯ୍ୟର ପ୍ରଲୋଭନ ମଧ୍ୟ ଦେଖାନ୍ତି ।

ଛନ୍ଦା କିନ୍ତୁ ଯାଦବର ପୁଞ୍ଜିପତିର ଆନୁଗତ୍ୟ ସ୍ୱୀକାରକୁ ସ୍ୱାଗତ କରି ନାହିଁ । ଯାଦବ ତାଙ୍କୁ ବୁଝାଇବାକୁ ଚେଷ୍ଟା କରିଛି । ମାତ୍ର ଛନ୍ଦାର ଅଭିମାନ ଓ ବିଦ୍ରୂପରେ ସେ ଆହତ ହୁଏ । ଛନ୍ଦା ଘର ଛାଡ଼ି ତା'ର ବନ୍ଧୁ ଘରକୁ ଚାଲିଯାଇଛି । ପୁଲିସର ଧରପଗଡ଼ରେ ଅଧିକାଂଶ ସନ୍ତ୍ରାସବାଦୀ ଦଳର ସଭ୍ୟ ଗିରଫ ହୁଅନ୍ତି ।

ଡାକ୍ତରଖାନାରେ ଯାଦବର ବନ୍ଧୁ ଜୀବନ ମହାନ୍ତି ଗରିବଙ୍କପାଇଁ ରକ୍ତଦେଇ ଗିରଫ ହୁଅନ୍ତି । ଯାଦବର ମନରେ ଭୟଙ୍କର ଆଲୋଡ଼ନ ସୃଷ୍ଟି ହୁଏ । ତାକୁ ମିଶାଇ 'ବୟାଳିଶ ନମ୍ବର' ଦଳର ସତାଅଶୀ ଜଣ ଗିରଫ ହୋଇସାରିଥାନ୍ତି । ଆଉ କେତେକ ନାରୀ ବେଶ ଧରି ଗୋପନରେ ବୁଲୁଥାନ୍ତି । ଦଳର ନେତ୍ରୀ ଶୁଭ୍ରା ରାତି ଅଧରେ ପୁରୁଷ ବେଶରେ ଛନ୍ଦା ଘରକୁ ଆସିଛି । ଦୂର ବିଦେଶରୁ ଡକରା ଆସିଲାଣି କହି ଚାଲିଯାଇଛି । ପୁଲିସ ମଧ୍ୟ ରାତି ଆଠଟା ବେଳେ ଯାଦବ ରହୁଥିବା ମେସ୍‌କୁ ଆସି ତଲାସି ନେଇଛି ।

ଶେଷରେ ଯାଦବ ପ୍ରଧାନ ପୁଣି ୪୨ ନମ୍ବର ଦଳରେ ଯୋଗ ଦେଇଛି । କଲେଜରେ ଯେତେବେଳେ ପୁଣି ଧର୍ମଘଟ ହୋଇଛି ସେ ନିଜକୁ ସମ୍ଭାଳି ରଖିପାରି ନାହିଁ । ସେ ପୁଣି ବକ୍ତୃତା ଆରମ୍ଭ କରିଛି । ବିରୋଧୀ ଦଳର ଯୁକ୍ତିତର୍କକୁ କାଟି ସେ ପରିଶେଷରେ ପ୍ରଶ୍ନ କରିଛି ଛାତ୍ର ସମାଜକୁ –

''ଦାୟିତ୍ୱ ନେବାପାଇଁ ପ୍ରସ୍ତୁତ ହେବା ଯେଉଁ ଛାତ୍ରାବସ୍ଥାର ଉଦ୍ଦେଶ୍ୟ, ସେ ଦାୟିତ୍ୱହୀନ ସମାଲୋଚନାରେ ଭାସିଯିବ କାହିଁକି ? ପରିବର୍ତ୍ତନ କେବଳ ସମବେତ

ସଙ୍ଗଠନରେ ହେବ ବୋଲି ବୁଝାଇଛି । ହିଂସା ପରିହାର କରିବାକୁ ମଧ କହିଛି । ତାହା ମହାତ୍ମା ଗାନ୍ଧୀଙ୍କ ନୀତିର ନୂଆ ଅର୍ଥ ଭଳି ଲାଗିଛି ।''

ଯାଦବର ବକ୍ତୃତାର ପ୍ରଭାବ ପଡ଼ିଛି ସରକାରଙ୍କ ଉପରେ । ଛାତ୍ରନେତାଙ୍କ ସହାୟତାରେ ଦେଶର ସମସ୍ୟା ସମାଧାନ ହୋଇପାରିବ – ଏ ବିଶ୍ୱାସ ସମସ୍ତଙ୍କର ଆସିଛି ।

ଅହିଂସାର ବିଜୟରେ ସାମୂହିକ ଶାନ୍ତି ଓ ପ୍ରଗତି ସମ୍ଭବ ବୋଲି ଲେଖକ ସୂଚାଇଛନ୍ତି । ମନରେ ତାଙ୍କର ଅସୁମାରି ସ୍ୱପ୍ନ – ଏହି ରକ୍ତାକ୍ତ ମାଟି ସପନର ସୁନା ମାଟିରେ ପରିଣତ ହେବ ?

**ଦାନାପାଣି**

'ଦାନାପାଣି' ନିମ୍ନମଧ୍ୟବିତ୍ତ ଚାକିରିଆର ଜୀବନ ସଂଗ୍ରାମକୁ ନେଇ ରଚିତ । ଆଧୁନିକ ମଣିଷ ଜୀବନ ସଂଗ୍ରାମରେ ବ୍ୟସ୍ତ ରହିଛି । ସେ ତା'ର ପଦୋନ୍ନତିପାଇଁ ଅନ୍ୟ ନିକଟରେ କିପରି ନିଜର ସର୍ବସ୍ୱ ସମର୍ପି ଦେଇଛି, ତା'ର ସୁନ୍ଦର ଆଲେଖ୍ୟ ହେଉଛି 'ଦାନାପାଣି' । ୧୯୫୩ ମସିହାରେ ଏହା ପ୍ରକାଶ ପାଇଥିଲା ।

ଉପନ୍ୟାସର ନାୟକ ବଳି ଦତ୍ତ । ସେ ଏକ ବ୍ୟବସାୟୀ କମ୍ପାନୀର ତରୁଣ କର୍ମଚାରୀ । ତା'ର ତରୁଣ ଆଖିରେ ଅନେକ ରଙ୍ଗିନ ସ୍ୱପ୍ନ । ସେ ସ୍ୱପ୍ନକୁ ଚରିତାର୍ଥ କରିବାପାଇଁ ଓ ତା'ର ଆଶାକୁ ରୂପରେଖ ଦେବାପାଇଁ ତା' ଚାକିରି ଜୀବନରେ ବହୁ ଉପାୟ ଅବଲମ୍ବନ କରିଛି । କମ୍ପାନୀର ବଡ଼ ସାହେବଙ୍କର ନିକଟତର ହେବାପାଇଁ ସେ ମେମ୍‌ସାହେବଙ୍କ ପାଖରେ ପହଞ୍ଚିଛି । ମେମ୍ ସାହେବଙ୍କ ନିର୍ଦ୍ଦେଶରେ ତାଙ୍କ ଗୋଲାପ ବଗିଚାପାଇଁ ନିର୍ଜନ ଖରାବେଳେ ଭାରୁଆ ସାଥିରେ ଘୁଷୁରି ମଳ ଧରି ଚାଲିଛି । ଏଥିରେ ତା' ମନରେ ଟିକିଏ ଦ୍ୱିଧା ବା ସଙ୍କୋଚ ନାହିଁ । ଜୀବିକାପାଇଁ ଖରାରେ ସିଝିଛି । ସକାଳେ ଖାଇଥିବା କେତେ ଯୁଗର ପଖାଳ ଗଣ୍ଡିକ ଗଲାଣି ପାଣି ହୋଇ । କୋତରା ରୁମାଲ କାଢ଼ି ଯେତେ ଝାଳ ପୋଛିଲେ ବି ଝାଳ ବୋହୁଛି ଦର ଦର । ଅସନା ପଲ୍ଲୀର ଗନ୍ଧକୁଢ଼ ତନଖି ଘୁଷୁରି ମଳ ସଂଗ୍ରହ କରି ସେ ଚାଲିଛି । ଏତେ ପରିଶ୍ରମରେ ବି ଗୋଟିଏ ବିଜୟର ଆଶା ।

ସେଇ ବିଜୟ ଆଶାରେ ବଳି ଦତ୍ତ ଜୀବନବ୍ୟାପୀ ସଂଗ୍ରାମ କରିଛି । ସେଥିପାଇଁ ସେ ଆଦର୍ଶକୁ ପଛରେ ପକାଇ ଦେଇଛି । ସେ ଆବିଳତାର ପାହାଚ ପରେ ପାହାଚ ଚଢ଼ି ଯାଇଛି । ଖାଲି ଗୋଟାଏ କଥା – ସେ କମ୍ପାନୀର ବଡ଼ ସାହେବ ହେବ । ଡାଲିପାଣି ଓ ବାମ୍ଫ ବାହାରୁଥିବା ଆଳୁ ସିଝା ଖାଇ ଅଫିସକୁ ଆସିଛି । ଅଫିସର ଗଦା ଗଦା ଫାଇଲ ଭିତରେ ବୁଡ଼ି ରହି ନିଜର ଭୋକ ଶୋଷ ଭୁଲିଛି ।

ସେତିକି ନୁହେଁ, ନିଜର ସ୍ତ୍ରୀ ସରୋଜିନୀକୁ ବଳି ଦତ୍ତ ସଜାଇଛି । ତାକୁ ଇଂରାଜୀ ପଢ଼ାଇଛି । ତା' ସ୍ତ୍ରୀ ଦେହର ଓ ମନର ଦୁଃଖ ବୁଝି ନାହିଁ । କମ୍ପାନୀର ବଡ଼ ସାହେବଙ୍କ

ନିକଟକୁ ପଠାଇ ଦେଉଛି – ନିଜ ଭବିଷ୍ୟତ୍ ଜୀବନର ପଥ ପରିଷ୍କାରପାଇଁ । ସରୋଜିନୀ ପରପୁରୁଷ ସହିତ ମିଶି ଟେନିସ୍ ଖେଳିଛି । ଶେଷରେ ଅନ୍ତଃସତ୍ତ୍ୱା ହୋଇଛି ।

ବଳି ଦତ୍ତ ବି ସବୁ ସଫଳତା ପାଇଛି । କମ୍ପାନୀର ବହୁ କର୍ମଚାରୀଙ୍କୁ ପଛରେ ପକାଇ ସାହେବଙ୍କ କଲମଗାରରେ ହୋଇଛି ବଡ଼ ସାହେବ । ସେ ବଡ଼ କୋଠି ପାଇଛି । ଗାଡ଼ି ପାଇଛି । ମାତ୍ର ସବୁ ଥିବା ମଧ୍ୟରେ ବଳି ଦତ୍ତ ଜୀବନରେ ଆସିଛି ଗଭୀର ବ୍ୟଥା । ତାଙ୍କୁ ଚତୁର୍ଦ୍ଦିଗ ଖାଁ ଖାଁ ଲାଗିଛି । ନିଜର ବଡ଼ କୋଠିରେ ସ୍ତ୍ରୀ ସରୋଜିନୀଙ୍କୁ ନ ପାଇ ସେ ବିବ୍ରତ ହୋଇପଡ଼ିଛି । ହର୍ଷାଠାରୁ ସରୋଜିନୀ ସମ୍ପର୍କରେ ସବୁ କଥା ଶୁଣିଲାପରେ ବଳି ଦତ୍ତର ଆତ୍ମା ବିଳପି ଉଠିଛି । ତଳ ଓଠକୁ ଦାନ୍ତରେ କାମୁଡ଼ି ଧରି ସେ ବସି ରହିଛି । ଗୋପୀନାଥ ଅନବଦ୍ୟ ଭାବେ ବର୍ଣ୍ଣନା କରିଛନ୍ତି –

''ଓଃ କି ଯନ୍ତ୍ରଣା ! କାହିଁର ବଡ଼ ପଣ ? କାହିଁର ସାଫଲ୍ୟ ? କାହା ପାଇଁ ? କ'ଣ ସେ ପାଇଛି ? ମୁଣ୍ଡରେ ଦୁଇ ହାତ ଚାପି ଧରି ଅନ୍ଧାରକୁ ଅନେଇଛି, ଏଇ ତା'ର ପଥ, ତା'ର ଅନ୍ତ ନାହିଁ । ଏଇ ତା'ର ଜୀବନର ଅଛିଣ୍ଡା କାହାଣୀ । ଦାନାପାଣିର ମୂଳ ତଉଲରେ ସାଫଲ୍ୟ ଖୋଜୁ ଖୋଜୁ ଦିନ ରାତି କଟେଇଛି ... ।''

'ଦାନାପାଣି' ଅନ୍ୱେଷଣରେ ଦିନ ରାତି ଲାଗି ପଡ଼ିଥିବା ବଳିଦତ୍ତର ଜୀବନରେ ଆସିଛି ପ୍ରଥମ ଧକ୍କା । ଧକ୍କା ଖାଇ ଅନନ୍ୟୋପାୟ ହୋଇ ପୁଣି ସେଇ ଫାଇଲ ଗଦା ଭିତରେ ହଜିଯାଇଛି ।

'ଦାନାପାଣି' କେବଳ ବଳି ଦତ୍ତର ଦାନାପାଣି ବିଷୟ ନୁହେଁ । ଔପନ୍ୟାସିକ ଗୋପୀନାଥ ତତ୍କାଳୀନ ଚାକିରିଜୀବୀମାନଙ୍କର ଦାନାପାଣିର ଏକ ସାମଗ୍ରିକ ଚିତ୍ର ବଳିଦତ୍ତ ଚରିତ୍ର ମାଧ୍ୟମରେ ଅଙ୍କନ କରିପାରିଛନ୍ତି ଏହି ସୁନ୍ଦର ଉପନ୍ୟାସ ମାଧ୍ୟମରେ । 'ଦାନାପାଣି' ଗୋପୀନାଥଙ୍କ ଅନ୍ୟତମ ଶ୍ରେଷ୍ଠ ଉପନ୍ୟାସ ଭାବେ ଗଣ୍ୟ ।

ଆଲୋଚକ ଡଃ ନିଶାମଣି ସ୍ୱାଇଁଙ୍କ ଭାଷାରେ – '' 'ଦାନାପାଣି' ହିଁ ଔପନ୍ୟାସିକଙ୍କ ସୃଷ୍ଟି ଜଗତର ଶ୍ରେଷ୍ଠ ସୌନ୍ଦର୍ଯ୍ୟ ମଣ୍ଡିତ ସୁରଭିତ କୁସୁମ, ଯାହା ସ୍ରଷ୍ଟାଙ୍କ ମହତ୍ତ୍ୱକୁ ବହୁଭାବରେ ପରିବର୍ଦ୍ଧିତ କରିଥାଏ । ଆଧୁନିକ ଉପନ୍ୟାସ ସାହିତ୍ୟର ଅନ୍ୟତମ ପୁରୋଧା ଗୋପୀନାଥଙ୍କ 'ଦାନାପାଣି' ସାମ୍ପ୍ରତିକ ପ୍ରୟୋଗବାଦୀ ଜୀବନ ସମ୍ପର୍କରେ ଯେଉଁ ରୂପଚିତ୍ର ଅଙ୍କନ କରିଛି, ତାହା ଅନନ୍ୟ । ବିଂଶ ଶତକରେ ଉପନ୍ୟାସ ସୃଷ୍ଟି ଓ ପ୍ରଗତିର ରାଜଦାଣ୍ଡରେ ଏକ ମାଇଲ ଖୁଣ୍ଟ ହୋଇ ରହିବ – ଏହା ନିଃସନ୍ଦେହ ।''

**ଶିବ ଭାଇ**

ସ୍ୱାଧୀନତା ପରେ ନେତୃସ୍ଥାନୀୟ ବ୍ୟକ୍ତିମାନେ ଗଣ-ଜୀବନର ଉନ୍ନତିପାଇଁ ଓ ସବୁରି ହୃଦୟରେ ସମତା ଓ ସହୃଦୟତାର ଭାବଧାରା ବୁହାଇବାପାଇଁ ଉଦ୍ୟମ

କଲେ । ଫଳରେ ସର୍ବୋଦୟ ଆନ୍ଦୋଳନ ଜନ୍ମ ନେଲା । ଏହାର ନେତୃତ୍ୱ ନେଲେ ସନ୍ଥ ବିନୋବାଭାବେ ।

ରାୟଗଡ଼ାଠାରୁ ୧୪ ମାଇଲ ଉତ୍ତରକୁ ପଡ଼େ ଦୁମ୍ରିଗୁଡ଼ା । ଶିବ କନ୍ଧ ଗାଁର ମୁଣ୍ଡିଆଳ ନନ୍ଦ କନ୍ଧର ଜ୍ୱାଇଁ । ନନ୍ଦ କନ୍ଧର ଭେଣ୍ଡା ପୁଅ ବିଶ୍ୱନାଥ ଅକାଳମୃତ୍ୟୁ ବରଣ କରିଛି । ବଡ଼ ଝିଅ ମୁକ୍ତା ଶିବକୁ ବାହା ହୋଇଛି । ସାନ ଝିଅ ଚନ୍ଦ୍ରମା ଅବିବାହିତ ରହି ଗାଁ ପିଲାଙ୍କୁ ପାଠ ପଢ଼ାଇଛି ।

ବଣ ପାହାଡ଼ର ଗଳି କନ୍ଦିରେ ରହୁଥିବା ଚାଳିଶ ବର୍ଷର କନ୍ଧ ଶିବ ସର୍ବୋଦୟ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲା । ସେ ସରଳ, ନିଷ୍କପଟ ଆଉ ପିଲାଳିଆ । ଦିନ ରାତି ଜାତି ଓ ଦେଶର ଉନ୍ନତିପାଇଁ ତା'ର ଚିନ୍ତା । ଦୁମ୍ରିଗୁଡ଼ାରେ ଯେତେବେଳେ କନ୍ଧମାନେ ନିଦରେ ଶୋଇରହିଥିଲେ, ଆଗ ନିଦ ଭାଙ୍ଗିଥିଲା ଶିବର । ସେ ଲାଗିଥିଲା ଏ ସଂସାରଟିକୁ ସୁନ୍ଦର କରିବାକୁ ।

ଶିବ ଥିଲା ନିଃସନ୍ତାନ । ସ୍ତ୍ରୀ ମୁକ୍ତା ଜିଦ୍ ଧରିଛି ତା'ର ସ୍ୱାମୀ ଦ୍ୱିତୀୟ ପତ୍ନୀ ଗ୍ରହଣ କରୁ । ସେଥିପାଇଁ ପନ୍ଦର ବର୍ଷର ଝିଅ ପାର୍ବତୀକୁ ଆଣି ଘରେ ଆଶ୍ରୟ ଦେଇଛି । ତା'ର ମନରେ ହିଂସା ନା କପଟତା ନାହିଁ ।

''ବିକାର ସିନା ପାପରୁ ଆସେ । ଏ ମନରେ ପାପ ନାହିଁ କି ବିକାର ନାହିଁ । ଝରଣା ପାଣି ପରି ମୁକ୍ତ ଆଉ ପରିଷ୍କାର ।''

ପୁନର୍ବିବାହ କଥା ଶୁଣି ଶିବ ଦୂରେଇ ଯାଇଛି । ନାରୀକର୍ମୀ ହେଉଛନ୍ତି ନାମହୀନା ଅପା । ପନ୍ଦର ବର୍ଷରେ ବାହାହୋଇ ସ୍ୱାମୀସୁଖ ମାତ୍ର ଛଅ ମାସ ପାଇଲାପରେ ବିଧବା ହୋଇଥିଲେ । ବରୀଠାରେ ଥିବା ଆଶ୍ରମର ପ୍ରଶିକ୍ଷଣ ପାଇ ଏହି ମାଳ ଅଞ୍ଚଳକୁ କର୍ମଭୂମି ରୂପେ ବାଛି ନେଇଥିଲେ । ସେ ଦୁର୍ଗମ ଅଞ୍ଚଳରେ ଥିବା ଆଶ୍ରମମାନଙ୍କରେ ରହି ନିରୀହ, ସରଳ, ଶୋଷିତ ଲୋକଙ୍କ ହାନିଲାଭ ବୁଝୁଥିଲେ । ଦୁମ୍ରିଗୁଡ଼ା ଆଶ୍ରମରେ ଶିବଭାଇ ଅପାଙ୍କ ସହକର୍ମୀ ଥିଲେ ।

ଦିନେ ଦ୍ୱିପହର ବେଳେ ମାଙ୍କଡ଼ପଲ ଶିବଭାଇର କାନ୍ଦୁଲ କ୍ଷେତରେ ଉତ୍ପାତ ଆରମ୍ଭ କଲେ । ଶିବ ଏକଥା ଶୁଣି ଭଣଜାକୁ ନେଇ ଚାଲିଗଲା ମାଙ୍କଡ଼ ହୁରୁଡ଼େଇବାକୁ । ଶିବ ଗହୀର କ୍ଷେତ ଭିତରେ ଥିଲାବେଳେ ବାଘ ହାବୁଡ଼ରେ ପଡ଼ି ଶେଷ ନିଶ୍ୱାସ ଛାଡ଼ିଛି ।

ଅପା ଶିବଭାଇର ମୃତ୍ୟୁ ଖବର ପାଇ ଦୁମ୍ରିଗୁଡ଼ାରେ ପହଞ୍ଚିଛନ୍ତି । ବାଟେ ବାଟେ ରହିରହିକା ଦିଶିଯାଉଛି ତା'ର ମୁହଁ । ତା'ରି ହସ । ଜୀବନର ଅସାରତା କଥା ଭାବିଛନ୍ତି – ''ଦୁଃଖ ଭୁଲିହେବ, ଶିବଭାଇ ଭୁଲିହେବ ନାହିଁ ।''

ମନକୁ କେତେ ପ୍ରଶ୍ନ ଆସିଛି – ''କାହିଁକି ଗଜା ଭେଣ୍ଡିଆ ଅଧା ବୟସରେ ଟଳି ପଡ଼େ ? କାହିଁକି ? ଏସବୁ କାହିଁକିର ଉତ୍ତର ସେ ପାଇ ନାହାନ୍ତି । କେବଳ ଶାନ୍ତି ନୀଡ଼ଟି ଭିତରୁ ନିରୀହ କାପ୍ତାଟି କହୁଛି – ''କିଏ ମାରି ଖାଇଦେଇଛି, ସେ ନାହିଁ ।''

ସେମିତି ଜଗନ୍ନାଥଭାଇ ଗାଁକୁ ଗାଁ ବୁଲୁଥିବାବେଳେ ଶିବଭାଇର ନିଃସ୍ୱାର୍ଥ ଜନସେବା କଥା ଭାବିଛନ୍ତି ।

ବାଘ ଖାଇବା ଶୁଣି ସେ ସ୍ତବ୍ଧ ହୋଇପଡ଼ିଛନ୍ତି । ପାଟିରୁ ବାହାରିପଡ଼ିଛି– 'ଶିବଭାଇ ପବିତ୍ର ଆତ୍ମାକୁ କେହି ଖାଇପାରିବେ ନାହିଁ । ଆତ୍ମା ଅମର, ଭଲ କାମର କୀର୍ତ୍ତି ଅମର ।''

ଏହାପରେ ଅପା ଶିବଭାଇର ଦେହ ଖୋଜିବାକୁ ସମସ୍ତଙ୍କୁ କହିଛନ୍ତି । ବାଘର ପାଦ ଚିହ୍ନର ଲକ୍ଷ୍ୟ କରି କାନ୍ଦୁଲ ଚାଷ ହୋଇଥିବା ପାହାଡ଼କୁ ଯାଇଛନ୍ତି । ସେଠି ରକ୍ତ ପଡ଼ିଥିବା ଦେଖିଛନ୍ତି । ଶିବର ସ୍ତ୍ରୀ ମୁକ୍ତା କାନ୍ଦିଉଠିଛି । ସମସ୍ତେ ଏକାଠି ମିଶି କାନ୍ଦିଛନ୍ତି ।

**ଅପହଞ୍ଚ**

'ଅପହଞ୍ଚ' ଗୋପୀନାଥଙ୍କର ଦ୍ୱାଦଶ ଉପନ୍ୟାସ । ଶିକ୍ଷିତ ଆଦିବାସୀ କନ୍ଧର ଜୀବନଚିତ୍ର ହିଁ ଏହାର କଥାବସ୍ତୁ ।

ମେଲ୍‌କାବାଡ଼ିର ବୀମା କନ୍ଧର ପୁଅ ହେଉଛି ଟିମା । ପିଲାଦିନେ ଅନ୍ୟ କନ୍ଧ ପିଲାଙ୍କ ପରି ବଣ ଜଙ୍ଗଲରେ ନ ବୁଲି ମିରିଚଶିଙ୍ଗାର ସରକାରୀ ଚାହାଳିକୁ ଯାଇଛି । ଯେଉଁଦିନ ଗାଁ ଦାଣ୍ଡରେ ଏକ ଡାଙ୍ଗରେ 'ବାପା' 'ବୋଉ' ଲେଖି ଦେଇଛି, ଗାଁର କନ୍ଧ ଲୋକମାନଙ୍କ ମଧ୍ୟରେ ଆନନ୍ଦ ଉଲ୍ଲାସ ଖେଳିଯାଇଛି ।

କ୍ରମେ ମିରିଚଶିଙ୍ଗା ପାଠ ଶେଷ କରି ଟିମା ବଡ଼ ସ୍କୁଲରେ ନାଁ ଲେଖାଇଛି । ବିଦ୍ୟାଳୟର ଶିକ୍ଷକ ଟିମା କନ୍ଧକୁ ଦୋରା ଉପାଧି ଦେଇ କେ ଟିମାୟା ଦୋରା କରିଦେଇଛନ୍ତି । କିନ୍ତୁ ଟିମାର ନାଁ କେବଳ ପରିବର୍ତ୍ତନ ହୋଇ ନ ଥିଲା, ବେଶଭୂଷା, ଚାଲିଚଳଣ ସବୁଥିରେ ହେଲା ପରିବର୍ତ୍ତନ । ସେ ନିଜ ଗାଁର ଦାରିଦ୍ର୍ୟ-ଗ୍ରସ୍ତ ରୂପକୁ ଆପଣାର କରିପାରିନି । ବରଂ ନିଜକୁ କୁଣିଆ ବୋଲି ଭାବିଛି । ସାଙ୍ଗମାନଙ୍କ ପରିବେଶରେ ଥିଲେ ଅଧିକ ସୁଖରେ ରହନ୍ତାବୋଲି ବିଚାର କରିଛି । କିନ୍ତୁ ସରଳ ବିଶ୍ୱାସୀ କନ୍ଧ ସମାଜ ତାଙ୍କୁ ଭିନ୍ନ ଭାବେ ଗ୍ରହଣ କରିଛି ।

ଉଣେଇଶ ବର୍ଷ ବୟସରେ ଟିମା ମାଟ୍ରିକ ପରୀକ୍ଷାରେ ପାସ୍ କଲା । କନ୍ଧ ହୋଇଥିବାରୁ ସେ ଲେଲିବାଡ଼ି ସରକାରୀ ଅଫିସରେ ଚାକିରିଟିଏ ପାଇଲା । କ୍ରମେ ତା'ର ସାମାଜିକ ପ୍ରତିଷ୍ଠା ବଢ଼ିଲା । ତେଲୁଗୁଭାଷୀ ଦୋରା ପରିବାରର ଧୂଆଁପତ୍ର ବ୍ୟବସାୟୀ ନରସିଂହ ଦୋରାଙ୍କ କନ୍ୟା ରଜନୀକୁ ବିବାହ କଲା । ଯୌତୁକ ବାବଦରେ ପାଇଥିବା ଟଙ୍କାକୁ ବାପା ବୀମା କନ୍ଧକୁ ଦେଇଛି । ଏହାପରେ ଟିମା ନିଜ ସ୍ଥିତିରେ

ପରିବର୍ତ୍ତନ ଆଣିବାକୁ ଚେଷ୍ଟା କରିଛି । ସେ ସେହି ଟଙ୍କାକୁ ଉଚ୍ଚ ସୁଧରେ କରଜ ଲଗାଇ ପ୍ରଚୁର ସମ୍ପତ୍ତି ଠୁଳ କରିଛି । କୋଠାଘର ତଥା ପ୍ରଭୃତ ଧନସମ୍ପତ୍ତି କରି ଟିମା ନିଜ ସମାଜରୁ ଦୂରେଇ ଯାଇଛି । ଟିମା ମଧ୍ୟ ଶ୍ୱଶୁର ଘରେ ରହିବା ସାଙ୍ଗେ ସାଙ୍ଗେ ସାହୁକାର ସାଜି ଶୋଷଣ କରିଛି – ନିଜ ଗୋଷ୍ଠୀକୁ । କନ୍ଧମାନେ ଟିମା ଉପରେ ଭରସା ରଖିଥିଲେ । ସେମାନଙ୍କର ସ୍ୱପ୍ନ ଭାଙ୍ଗିଯାଇଛି ।

କ୍ରମେ ଟିମାର ଚାକିରି ପ୍ରତି ମୋହ କମିଆସିଛି । ଉପରିସ୍ଥ କର୍ମଚାରୀଙ୍କୁ ଟାଣ ଟାଣ ଦଶ ପଦ କହି ଚାକିରିରୁ ବିଦାୟ ନେଇଛି ।

ଟିମା କ୍ରମେ କେ.ଟି. ଦୋରା ଭାବରେ ପରିଚିତ ହୋଇଛି । ସେ ଚାହିଁଛନ୍ତି ସଭ୍ୟ ହେବେ । ସଭ୍ୟ ଜଗତର ବଡ଼ ବଡ଼ ସମ୍ବାଦପତ୍ରରେ ତାଙ୍କ ଫଟୋ ପ୍ରକାଶ ପାଇବ । ତାଙ୍କ ଗାଁରେ ଆଲୁଅ ଜଳିବ, ଲୁହା କାରଖାନା ହେବ; ଗଢ଼ିଉଠିବ ଗୋଟିଏ ନୂଆ ସହର । ସେଠାରେ ମେଲ୍‌କାବାଡ଼ିର ଗନ୍ଧ ନ ଥିବ ବା ଅଧା ଲଙ୍ଗଳା ବ୍ୟକ୍ତିବିଶେଷ ନ ଥିବେ । ସରକାର ମଧ୍ୟ କେ. ଟି ଦୋରାଙ୍କୁ ଜଣେ ଶିକ୍ଷିତ, ସଚେତନ ବଳିଷ୍ଠ ପ୍ରତିନିଧି ଭାବେ ଗ୍ରହଣ କରନ୍ତି । ସେ ମଧ୍ୟ ଏହି ସୁବିଧାର ସୁଯୋଗ ନେଇ ସହରର ବୀର ଲକ୍ଷ୍ମଣ ସ୍ୱାମୀ, ଭେଙ୍କଟ ଜଗନ୍ନାଥ ସ୍ୱାମୀ, ପ୍ରୀତମ ସିଂ, ଝୋପଡିୱାଲା, ନିୟାମତ ହୋସେନ ପ୍ରଭୃତିଙ୍କୁ ନିଜ ଅଞ୍ଚଳରେ ଶୋଷଣର ଜାଲ ମେଲିବାକୁ ସୁବିଧା କରେଇ ଦେଇଛି । ନିଜେ ମଧ୍ୟ ମଦ ପିଇ, ଦେହରେ ଅତର ଛିଞ୍ଚି, ମୁହଁରେ ସିଗାରେଟ ଲଗାଇ ନିଭା ଦେବୀଙ୍କ ସହିତ ସାନ୍ନିଧ୍ୟ ଲାଭ କରି ନିଜକୁ କୃତକୃତ୍ୟ ମନେ କରିଛି ।

ଟିମାର ଶ୍ୱଶୁର ନରସିଂହ ଦୋରା କିନ୍ତୁ ସହରରୁ ଗାଁକୁ ଆସିବାକୁ ପରାମର୍ଶ ଦେଇଛନ୍ତି । ଟିମା ଶେଷରେ ଲେଲିବାଡ଼ି ଫେରିଛି । ଆଶା ଭରସାକୁ ଧୂଳିସାତ୍ କରି ଶିକ୍ଷିତ ଯୁବକ ଟିମା ଯେପରି ସେମାନଙ୍କୁ ଭୁଲିଛି. ଗାଁ ଲୋକେ ମଧ୍ୟ ସେହିପରି ତାକୁ ପାସୋରି ଦେଇଛନ୍ତି ।

ଟିମା ନିର୍ବାଚନ ଲଢ଼େଇରେ ଅଂଶ ଗ୍ରହଣ କରିଛି । ଲୋକଙ୍କ ଭିତରେ ନିଜ କଳ୍ପନାର ଦୁନିଆ ସମ୍ପର୍କରେ ଭାଷଣ ଦେଇଛି । ଅନେକ ବଡ଼ ବଡ଼ ଯୋଜନା ଓ କଳ-କାରଖାନାର ସ୍ୱପ୍ନ ଦେଖାଇଛି । ସେମାନେ କିପରି ବେଶି ମୂଲପାତି କାମଧନ୍ଦା ପାଇବେ, ସେ ଆଶା ଦେଇଛି । କିନ୍ତୁ ପାଣ୍ଡୁକନ୍ଧ, ଶୋଘେନା କନ୍ଧ, ଗୟାଁ କନ୍ଧ ପରି ବୁଢ଼ାମାନଙ୍କ ହୃଦ୍‌ବୋଧ ହୋଇ ନାହିଁ । ଏହି ସରଳ ମଣିଷଙ୍କ ମନରେ ତା'ର ଏହି ମୂଲ୍ୟହୀନ ପତିଆରା ଯୁଗପତ୍ ଘୃଣା ଓ କ୍ରୋଧ ଜାତ କରିଛି । ତା'ର ବିରୋଧରେ ପ୍ରତିଦ୍ୱନ୍ଦ୍ୱିତା କରୁଥିବା ଭୂୟାକା ହାର୍ଗୁଣା ନିର୍ବାଚନରେ ଜୟଯୁକ୍ତ ହୋଇଛି ।

ଟିମାର ଦୟନୀୟ ପରାଜୟ ହିଁ ତାକୁ ବାସ୍ତବମୁଖୀ କରିଛି । ଅତୀତରେ ଯେଉଁ ସହରୀ ବନ୍ଧୁମାନେ ତା' ପାଇଁ ସ୍ନେହ ଓ ଦରଦର ପସରା ଖୋଲି ଦେଇଥିଲେ,

ସେମାନେ ତାକୁ ଅକାମୀ ମନେ କରିଛନ୍ତି । ତା'ର ବନ୍ଧୁ ପ୍ରୀତମ ସିଂହ, ଦୀପଚାନ୍ଦ ପ୍ରଭୃତି କେହି ତା' ପ୍ରତି ସମ୍ବେଦନଶୀଳ ହୋଇ ନାହାନ୍ତି । ନିଭା ଦେବୀଙ୍କ ପାଖକୁ ଯିବାକୁ ଆଉ ସାହସ ସଞ୍ଚୟ କରିପାରି ନାହିଁ । ଶ୍ୱଶୁର ମଧ୍ୟ ଆର୍ଥିକ ସାହାଯ୍ୟ ଦେବାପାଇଁ ଅକ୍ଷମତା ପ୍ରକାଶ କରିଛନ୍ତି । ବିଫଳତା ମଧ୍ୟରେ ସେ ଦେଖିଛି ନିଜର ସମାଜକୁ । ନିଜ ବାପା ବୀମା କନ୍ଧକୁ ଗାଁ ଲୋକଙ୍କ ଜମିବାଡ଼ି ଫେରାଇ ଦେବାକୁ କହିଛି । ପୁଣି କହିଛି ଲୋକଙ୍କୁ – ''ଆମ ସମସ୍ତଙ୍କର ସବୁ ଜମି ଏକାଠି ମିଶେଇଦେବା, ସମସ୍ତେ ଆମେ କାମ କରିବା, ସମସ୍ତେ ବାଣ୍ଟିବା ଆଉ ଖାଇବା ।''

କନ୍ଧ ପଲ୍ଲୀରେ ଟିମାର ଏହି ଉଦ୍‌ବୋଧନ ନବ ଜୀବନର ଶିହରଣ ଖେଳାଇ ଦେଇଛି । ଅପହଞ୍ଚ ଯାହା ସୁଲଭ ପ୍ରାପ୍ୟ ନୁହେଁ, ଟିମା ପରିଶେଷରେ ପାଇବାକୁ ସକ୍ଷମ ହୋଇଛି ।

ଲେଖକ ଟିମାର ଉତ୍‌ଥାନ ପତନ ଓ ତା'ର ମାନସିକ ପରିବର୍ତ୍ତନରେ ଏକ ନୂଆ ଛଳନାହୀନ ସମାଜ ଗଠନର ସୂଚନା ଦେଇଛନ୍ତି । ଏହି ଉପନ୍ୟାସ ଭିତରେ ଲେଖକ ସମାଜ-ସଂସ୍କାରକ ଭାବେ ଆତ୍ମପ୍ରକାଶ କରିଛନ୍ତି ।

**ଲୟବିଲୟ**

'ଲୟବିଲୟ' ଉପନ୍ୟାସରେ ଗୋପୀନାଥ କୌଣସି ନିର୍ଦ୍ଦିଷ୍ଟ କାହାଣୀ ସଂଯୋଜନା କରି ନାହାନ୍ତି । କଲିକତା ଶିଳ୍ପ ନଗରୀର ପାରାଭାଡ଼ି ମଧ୍ୟରେ ଅଣନିଃଶ୍ୱାସୀ ହୋଇ ଜୀବନ ବିତାଉଥିବା ତରୁଣ ରାୟ ପରିବାରକୁ ଧରି ତିନି ଦିନ ପାଇଁ ପୁରୀ ଆସିବାକୁ ବର୍ଣ୍ଣନା କରିଛନ୍ତି ।

କଲିକତା ଶିଳ୍ପ ନଗରୀରେ ତରୁଣ ରାୟ ଶ୍ୱାସରୁଦ୍ଧ ହୋଇପଡ଼ିଛନ୍ତି । ସେଥିରୁ ସାମୟିକ ମୁକ୍ତି ପାଇବାପାଇଁ ପୁରୀର ଶ୍ରୀଜଗନ୍ନାଥ ଓ ସମୁଦ୍ର କୂଳ ପରିଭ୍ରମଣପାଇଁ ପତ୍ନୀ କାନ୍ତିମୟୀ ଓ ଝିଅ ଛଳନାକୁ ଧରି ଆସିଛନ୍ତି ।

ଷ୍ଟେସନରେ ପହଞ୍ଚିଲା ପରେ ଗାଡ଼ି ଭିତରକୁ ପୁରୀପଣ୍ଡାମାନେ ତାଙ୍କ ଘରକୁ ନେବାପାଇଁ ଆଗେଇ ଆସିଛନ୍ତି । ତରୁଣ ରାୟ କାହାରିକୁ ସୁଯୋଗ ନ ଦେଇ ରିକ୍ସାରେ ବସିଛନ୍ତି । ସମୁଦ୍ରକୂଳିଆ ଏକ ହୋଟେଲରେ ଜିନିଷପତ୍ର ରଖି ସମୁଦ୍ରକୂଳକୁ ଆସିଛନ୍ତି ।

ପାହାଡ଼ ଜଙ୍ଗଲ ବର୍ଣ୍ଣନାରେ ଗୋପୀନାଥ ଯେପରି ଚମକ ସୃଷ୍ଟି କରିଥିଲେ, ସମୁଦ୍ର ବର୍ଣ୍ଣନାରେ ବି ବିସ୍ମୟ ସୃଷ୍ଟି କରିଛନ୍ତି । କେତେବେଳେ ନିଜ କଣ୍ଠରେ କେତେବେଳେ ତରୁଣ ରାୟର କଣ୍ଠରେ ଆଉ କେତେବେଳେ କାନ୍ତିମୟୀ ବା ଛଳନା କଣ୍ଠରେ ସମୁଦ୍ରର ସଙ୍ଗୀତ ଗାଇଛନ୍ତି ।

ତରୁଣ ରାୟ ସମୁଦ୍ରକୁ ତନ୍ମୟ ହୋଇ ଚାହିଁ ରହିଛନ୍ତି । ''ସଜ ଦୁଧ ପରି ଫେଣ ଛଳଛଳେଇ ଉଠୁଛି । ସାଇଁ ସାଇଁ ଶବ୍ଦ ସାଙ୍ଗେ ଜିଭ ଲହ ଲହ କରି ବାଲି ଉପରକୁ

ମାଡ଼ିଯାଉଛି । ପୁଣି ଲେଉଟି ଚାଲିଯାଉଛି, ପାଣିଚିଆ ବାଲିରେ ରହିଯାଉଛି ମୁହଁ ଦେଖା ଦର୍ପଣ ଓ ଆଉ କେତେ କ'ଣ ।

ଛଳନାର ବରାଦ ଅନୁଯାୟୀ ସ୍ତ୍ରୀ ଓ କନ୍ୟାକୁ ନେଇ ବଡ଼ଦେଉଳକୁ ତରୁଣ ରାୟ ଯାଇଛନ୍ତି । ସମସ୍ତେ ଜଗନ୍ନାଥଙ୍କୁ ଦର୍ଶନ କରି ହୋଟେଲକୁ ଫେରି ଆସିଛନ୍ତି । ତା'ପର ଦିନ ସକାଳେ ସୂର୍ଯ୍ୟୋଦୟ ଦେଖିବାକୁ ବାହାରିଛନ୍ତି । ଛଳନା ସମୁଦ୍ର ସ୍ନାନ କରିଛି । ତା'ପର ଦିନ ବେଳ ବୁଡ଼ିଲା ବେଳକୁ ପୁଣି ତରୁଣ ରାୟ ପରିବାର ସହିତ ସମୁଦ୍ର କୂଳକୁ ଯାଇଛନ୍ତି । ହଠାତ୍ ବେଳାଭୂମିରେ ଦେଖାହୋଇଛି ଅଇଁଠୁ ସାମନ୍ତସିଂହାରଙ୍କ ସଙ୍ଗେ । କାନ୍ତିମୟୀ, ଛଳନା ଓ ଅଇଁଠୁ ପଶ୍ଚିମ ଆଡ଼କୁ ମୁହଁ କରି ସମୁଦ୍ର କୂଳେ କୂଳେ ଯାଇଛନ୍ତି । ତରୁଣ ରାୟ ସେମାନଙ୍କ ସଙ୍ଗେ ନ ଯାଇ ପୂର୍ବକୁ ମୁହଁ କରି ଏକୁଟିଆ ଚାଲିଛନ୍ତି । କାନ୍ତିମୟୀ ବି ପଛରେ ପଡ଼ିଯାଇଛନ୍ତି । ଅଇଁଠୁ, ଛଳନା ଗପି ଗପି ଚାଲିଛନ୍ତି । କାନ୍ତିମୟୀ ସ୍ୱପ୍ନ ଦେଖୁଥାନ୍ତି ଅଇଁଠୁକୁ ଜ୍ୱାଇଁ କରିବାପାଇଁ । ଛଳନା ମନ ଭିତରେ ଛପିଲା ଉତ୍ତେଜନା, ଆଖିରେ ମାୟା ଅଞ୍ଜନ । ତା' ଆଗରେ ଅଇଁଠୁ କାଉଁରୀ ଦେଶର ରାଜପୁତ୍ର । ଅଇଁଠୁ କିନ୍ତୁ ଛଳନାର ମାଦକ ସାନ୍ନିଧରେ ମତୁଆଲା ହୋଇ ନାହିଁ । ସେ ସଂଯମ ରକ୍ଷା କରିଛି । ସେମାନେ ହୋଟେଲକୁ ଫେରିଆସିଛନ୍ତି ।

ପୁରୀରୁ ବାହୁଡ଼ାଣି ଦିନ ତରୁଣ ରାୟ, କାନ୍ତିମୟୀ ପ୍ରଭୃତି ସନ୍ଧ୍ୟାବେଳେ ପୁଣି ସମୁଦ୍ରକୂଳକୁ ଯାଇଛନ୍ତି । ତରୁଣ ରାୟ ନିଜକୁ ପଚାରିଛନ୍ତି, 'ମୁଁ କିଏ ' ? ସେ ତା'ର ଉତ୍ତର ବି ପାଇଛନ୍ତି –

''ସେ ଆଉ ଦୁର୍ବଳଦେହ ଧ୍ୱଜଭଙ୍ଗା ଦରିଦ୍ର ମଣିଷ ନୁହନ୍ତି ।
ସେ ସଦା ମୁକ୍ତ । ସ୍ୱଭାବମୟ ଅବିନାଶୀ ଆତ୍ମା ।''

କାନ୍ତିମୟୀ ଝିଅର ମୁଣ୍ଡ ବାନ୍ଧି ଦେଇସାରି ସମୁଦ୍ର ଆଡ଼କୁ ତୁନି ହୋଇ ବସିଛନ୍ତି । ଅଇଁଠୁ ସାମନ୍ତସିଂହାରଙ୍କ ସ୍ମୃତି ମନରେ ଉଠିଛି ।

''କେତେ ଭଲ ହୋଇଥାଆନ୍ତା ଯଦି ଛଳନାକୁ ତାକୁ ବିଭା ଦେଇପାରିଥାନ୍ତେ ।''

ଛଳନା ମୁଣ୍ଡ ବାନ୍ଧି ସମୁଦ୍ରବାଲିକୁ ଯାଇଛି – ଅଇଁଠୁର ଆକସ୍ମିକ ଆସିବାକୁ ଆଶା କରି । ମାତ୍ର ସାମନ୍ତସିଂହାର ଦିଶୁ ନ ଥିଲା । ଛଳନାର ଆଶା ମଉଳାଣି ପଡ଼ିଯାଇଛି ।

ଶେଷଥର ପାଇଁ ସମସ୍ତେ ଜଗନ୍ନାଥଙ୍କ ସନ୍ଧ୍ୟା ଆଳତି ଦେଖିଛନ୍ତି । ଜଗନ୍ନାଥଙ୍କୁ ସମସ୍ତେ ଲୟଯୋଗରେ ଚାହିଁ ରହିଛନ୍ତି । ଘରକୁ ଫେରି ଷ୍ଟେସନକୁ ଯାଇ ଗାଡ଼ି ଚଢ଼ିଛନ୍ତି । ପୁରୀ ଶ୍ରୀମନ୍ଦିର ଦୃଶ୍ୟପଟରୁ ଉଭେଇ ଯାଇଛି । ଦିଶୁଥିଲା ଗୋଲ ହୋଇ ଆକାଶ, ତା' ଭିତରେ ମନ୍ଦିର ଚୂଡ଼ା, ସେଇ ନୀଳଚକ୍ର ଆଉ ସେହି ନାଲି ପତାକା ।

'ଲୟବିଲୟ'ରେ ସମୁଦ୍ରର ବର୍ଣ୍ଣନା ଯେପରି ଗୋପୀନାଥ କରିଛନ୍ତି – ସୂର୍ଯ୍ୟୋଦୟରୁ ସୂର୍ଯ୍ୟାସ୍ତ, ସୂର୍ଯ୍ୟାସ୍ତରୁ ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ – ତା'ର ତୁଳନା ନାହିଁ ।

ଆଲୋଚକଙ୍କ ଭାଷାରେ – "ସମୁଦ୍ରର ଏଭଳି ବର୍ଣ୍ଣନା ବିଶ୍ୱ ସାହିତ୍ୟରେ ବିରଳ । ସେକ୍ସପିଅର, କୋଲରିଜ, ସେଲୀ, ଏପରିକି ହେମିଙ୍ଗୱେ ପ୍ରଭୃତିଙ୍କୁ ସମୁଦ୍ର ସେପରି ଛୁଇଁନି, ଯେଉଁଭଳି ଛୁଇଁଛି ଗୋପୀନାଥଙ୍କୁ । ଏଇ ଉପନ୍ୟାସ ଓଡ଼ିଆ ସାହିତ୍ୟକୁ ତଥା ଓଡ଼ିଆ ଜାତିର ସ୍ୱାଭିମାନକୁ ମହିମାମଣ୍ଡିତ କରିଛି ।"

## ତନ୍ତ୍ରିକାର

୧୯୬୨ ମସିହାରେ ଚୀନ ହଠାତ୍ ସୀମା ବିବାଦ ସୃଷ୍ଟି କରି ଭାରତ ଆକ୍ରମଣ କଲା । ଏହି ଯୁଦ୍ଧ ପରିପ୍ରେକ୍ଷୀରେ 'ତନ୍ତ୍ରିକାର' ଉପନ୍ୟାସଟି ରଚିତ ।

ଓଡ଼ିଶାର ଏକ ଅଖ୍ୟାତ ପଲ୍ଲୀ ଡାମରା । ଡାମରା ସହିତ କୁଆ ବା କାଉ ପ୍ରାୟ ଯୋଡ଼ି ହୋଇଯାଏ । ଲେଖକ ତେଣୁ ପ୍ରଥମେ ସୂଚାଇଛନ୍ତି 'ଡାମରା କାଉ ନୁହେଁ, ଗୋଟିଏ ଗାଁ । ପୂର୍ବେ ଏହି ଗାଁର ପଣ୍ଡିତମାନେ ଡାମର ତନ୍ତ୍ର ଚର୍ଚ୍ଚା ଓ ସାଧନାରେ ପାରଙ୍ଗମ ଥିଲେ । ତେଣୁ ସେହି ଗାଁଟି 'ଡାମରା' ନାମରେ ନିଜର ପରିଚିତି ବହନ କରିଛି ।

ଯୁଦ୍ଧ ଯୋଗୁଁ ଗାଁରେ କୋକୁଆଭୟ ସୃଷ୍ଟି ହୋଇଛି । ସବୁଠି ଆଲୋଚନା – ରସା ସାହୁ ଗୁଡ଼ିଆର ଡାଲି ଚାଉଳ ଦୋକାନରେ, ଅନ୍ତର୍ଯାମୀ ରଥର ପାନଦୋକାନରେ, ଗାଁର ଆଖଡ଼ା ଘରେ ଆଉ ସୁନାକର ମିଶ୍ରଙ୍କ ମେଲାରେ । ଗାଁର ଅବଧାନେ ଅଦେଇ ନାହାକକୁ ଯେ ଦେଖିଲେ ଭର୍ତ୍ସନା କଲେ । "କାହିଁ ସେ ତ କେବେ ଖଡ଼ି ପକେଇ ଏମିତି ଯୁଦ୍ଧର ପୂର୍ବ ସୂଚନା ଦେଇ ନ ଥିଲେ !"

ସୈନିକଭାବେ ଯୋଗଦେବାପାଇଁ ଗାଁର ଯୁବକମାନେ ଆଗେଇ ଆସିଛନ୍ତି । କମାର ମଦନ ଓଝା ମାରଣାସ୍ତ୍ର ତିଆରି କରି ଯୁଦ୍ଧକୁ ଦେବାପାଇଁ ଆଗ୍ରହୀ ହୋଇଛି । ସେହି ଗାଁରେ ଥାନ୍ତି ତନ୍ତ୍ରିକାର । ପୁଣି ଗାରେଡ଼ି ଜାଣିଥିବା କୃଷ୍ଣ ମିଶ୍ର । ଭାରତକୁ ବିଜୟୀ କରିବାପାଇଁ ସେ ଡାମରତନ୍ତ୍ରର ଆଶ୍ରୟ ନେଇଛନ୍ତି । ତାଙ୍କ ସ୍ତ୍ରୀ ନିର୍ମଳା ମଧ ଶତ୍ରୁର ମୁକାବିଲା କରିବାକୁ ଚେଇଁ ଉଠିଛନ୍ତି । ସେ ସୈନ୍ୟମାନଙ୍କପାଇଁ ସ୍ୱେଟର ବୁଣିଛନ୍ତି । ଲେଖକ ବିଭିନ୍ନ ଚରିତ୍ର, ଯଥା – ଦଧି, ନଟ, ଖଡୁ ସୋଇଁ, କୃଷ୍ଣ ମିଶ୍ରଙ୍କ ମାଧମରେ ଦେଶପାଇଁ ଆତ୍ମୋତ୍ସର୍ଗ କରିବାକୁ ଆହ୍ୱାନ ଦେଇଛନ୍ତି । ଯୁଦ୍ଧପାଇଁ ଚାନ୍ଦା ଓ ମୂଲ୍ୟବାନ୍ ଅଳଙ୍କାର ସଂଗୃହୀତ ହୋଇଛି । ମିଶ୍ରଙ୍କ ସାନଝିଅ ସ୍କୁଲରେ ତା' କାନଫାଶିଆକୁ ଯୁଦ୍ଧଫଣ୍ଡକୁ ଦାନ କରିଛି । ଡାମରା ଗାଁର ତନ୍ତ୍ରିକାର କୃଷ୍ଣ ମିଶ୍ର ମଧ ଯୋଗସାଧନା ଆରମ୍ଭ କରିଛନ୍ତି । ଅତୀନ୍ଦ୍ରିୟ ଚେତନାରେ ଅନାହତ ଧ୍ୱନି ମାଧମରେ ଶତ୍ରୁଶକ୍ତିର ପ୍ରତିରୋଧ କରିବାପାଇଁ ଯୋଗାସୀନ ହୋଇଛନ୍ତି । ଜଗନ୍ନାଥଙ୍କ ପାଖେ

ଗୋପାଳମନ୍ତ୍ରରେ ପୂଜା ହୋଇଛି । କବାଟ କିଳା ହୋଇ ଗୁପ୍ତ ମନ୍ତ୍ରରେ ନୈବେଦ୍ୟ ଦିଆହୋଇଛି ।

ତନ୍ତ୍ର, ମନ୍ତ୍ର, ଯନ୍ତ୍ରର ଅଲୌକିକ ଶକ୍ତି ବଳରେ ଅତୀତରେ ବହୁ କିଛି ଅସମ୍ଭବ ସମ୍ଭବ ହେଉଥିଲା । ଉପନ୍ୟାସର ମୁଖ୍ୟ ଚରିତ୍ର ତାନ୍ତ୍ରିକ କୃଷ୍ଣ ମିଶ୍ରଙ୍କର ଏହି ଯୋଗ ଓ ତନ୍ତ୍ରାଭ୍ୟାସ ଓ ଏଥି ସହିତ ତାନ୍ତ୍ରିକ ଉପଚାରରେ ଉପାସନା ମାଧ୍ୟମରେ ଜାତୀୟ ବିପତ୍ତିର ନିବାରଣ ଉପନ୍ୟାସର ନାମକରଣର ଯାଥାର୍ଥ୍ୟ ପ୍ରତିପାଦନ କରେ ।

ଆଲୋଚକ ବ୍ରହ୍ମାନନ୍ଦ ସିଂହଙ୍କ ମତରେ 'ତନ୍ତ୍ରିକାର' ଏକ ସାମୟିକ, ଉଦ୍ଦେଶ୍ୟମୂଳକ ଓ ପ୍ରଚାରମୂଳକ ସାହିତ୍ୟ । ଜାତୀୟତା ଜାଗରୂକ କରିବାରେ ଏହା ସାହାଯ୍ୟ କରିପାରେ, କିନ୍ତୁ ଏହା ସର୍ବକାଳୀନ ଉଚ୍ଚାଙ୍ଗ ସାହିତ୍ୟ ଭାବେ ଗଣ୍ୟ ହୋଇ ନ ପାରେ । ଆଲୋଚକ ଡଃ ଅଜୟ ତ୍ରିପାଠୀ ଏଥି ସହିତ ଏକମତ ହୋଇ ନାହାନ୍ତି । ସେ କହିଛନ୍ତି ଯେ ଅନ୍ତର୍ନିହିତ ଚେତନାରେ ଲୁକ୍କାୟିତ ଭାବରେ ଲେଖକ ଯେଉଁ ସତ୍ୟକୁ ପ୍ରତିଷ୍ଠିତ କରିଛନ୍ତି, ତାହାର ମୃତ୍ୟୁ ନାହିଁ । ତାହା ନିଶ୍ଚିତ ଭାବରେ ଚିରନ୍ତନ । ସମାଜରେ ପରିବର୍ତ୍ତନ ଆସିପାରେ, ତା' ମଧ୍ୟରେ ଲୁଚି ରହିଥିବା ସମାଜତତ୍ତ୍ୱର ମୌଳିକତା କିନ୍ତୁ ଅପରିବର୍ତ୍ତନୀୟ ।

**ମାଟିମଟାଳ**

'ମାଟିମଟାଳ' ଲେଖକଙ୍କ ଏକ ବିପୁଳକାୟ ସୃଷ୍ଟି । ଓଡ଼ିଆରେ ବିସ୍ତୃତ ଉପନ୍ୟାସମାନଙ୍କ ମଧ୍ୟରେ ଏହା ବିସ୍ତୃତତମ । ଲେଖାର ମୂଳରେ ରହିଛି ମାଟିର ମୋହ । ଉପନ୍ୟାସରେ ବର୍ଣ୍ଣିତ ହୋଇଛି ମାଟିର ମଟାଳ ପଣ ଓ ମାନବଚେତନାର ଗଭୀର ଅନ୍ତସ୍ତଳ । ନାୟକର ଚରିତ୍ର ଭିତରେ ରହିଛି ମାଟିର ମୋହ, ମାଟି ପ୍ରତି ଅନୁରାଗ ଆଉ ମାଟିର ମଣିଷ ପ୍ରତି ଗଭୀର ଦରଦ ।

ଉପନ୍ୟାସର ନାୟକ ରବି । କନ୍ଧମୂଳ ଗାଁର ବଟ ମହାନ୍ତିଙ୍କର ପୁଅ ସେ । ଅଢ଼େଇ ବର୍ଷ ହେଲା ବି.ଏ. ପାସ୍ କରି ଗାଁରେ ରହିଛି । ଚାକିରି କରିବାକୁ ଆଗ୍ରହ ନାହିଁ । ବାପମା'ଙ୍କର ବାଧ୍ୟବାଧକତାରେ ୭୫ ଟଙ୍କା ଦରମାରେ ଚାକିରି କରିବାକୁ ଶ୍ରୀପଞ୍ଚମୀ ଦିନ ଘରୁ ବାହାରିଛି । ତେବେ ମନରେ ଆନନ୍ଦ ନାହିଁ ।

ରବି ସହରରେ ଦେଖିଛି ହାଉଯାଉ ଲୋକ, ବିଜୁଳି ଆଲୋକ, ମଟର, ଟ୍ରକ, ଜିପ୍ ଗାଡ଼ି । ସବୁ ତ ଅଛି – ହେଲେ ନାହିଁ ଗାଁ ଦୁଠ, ମଶାଣିପଦା, ସାହାଡ଼ା ଗଛ, କ୍ଷେତ, ବିଲ । ସେସବୁ ରବିକୁ ଫେରି ଆସିବାକୁ ଇଙ୍ଗିତ ଦେଇଛି । ରବି ଅଣନିଃଶ୍ୱାସୀ ହୋଇପଡ଼ିଛି । ଚାକିରି ନ କରି ଗାଁକୁ ଫେରିଆସିଛି ।

ଗାଁକୁ ଫେରି ଆସିଲାବେଳେ ବାଟରେ ପାଟେଳି ଗାଁର ଜମିଦାରଙ୍କ ଘର ପଡ଼ିଛି । ଜମିଦାରଙ୍କ ଝିଅ ଛବି ମାଙ୍କଡ଼ମାନଙ୍କଦ୍ୱାରା ଆକ୍ରାନ୍ତ ହେଲାବେଳେ

ରବି ଅଟକିଯାଇ ତାକୁ ରକ୍ଷା କରିଛି । ଲୁଗାରୁ ଫାଳେ ଚିରି ଖଣ୍ଡିଆ ଗୋଡ଼ରେ ଲଗାଇ ଦେଇଛି । ରବି ଛବିର ମା'ଙ୍କଦ୍ୱାରା ଆହୂତ ହୋଇ ତାଙ୍କ ଘରକୁ ଯାଇଛି । ଛବି ତାହାର ସମ୍ମୁଖକୁ ଆସିବାକୁ ସାହସ କରିନି । ତେବେ ବିଜୁଳିର ଝଲକ ପରି ସେହି ଜହ୍ନି ଫୁଲର ହାତ ଗୋଡ଼ ଚମକିଉଠି ଲହଡ଼ି ପରି ମୁହୂର୍ତ୍ତକ ମଧ୍ୟରେ କେଉଁଠି ଲୁଚିଯାଇଛି । ତା' ସଙ୍ଗେ ଆଞ୍ଜୁଳାଏ ହସ ବି ବିଞ୍ଚି ହୋଇ ପଡ଼ିଛି । ସଞ୍ଜ ରତ ରତ ବେଳେ ରବି ଗାଁକୁ ଫେରିଆସିଛି ।

ରବି ବାପାକୁ ଚାକିରି ନ କରିବାର କାରଣ କହିଛି । ସେ ଗାଁରେ ରହି ଗୃହର ଉନ୍ନତିପାଇଁ ମନ ଦେବାକୁ ମଧ୍ୟ କହିଛି ।

ରବି ଗାଁରେ ଉନ୍ନୟନ କାମରେ ମନ ଦେଇଛି । ଏ ମଧ୍ୟରେ ଗୋଟିଏ ବର୍ଷ ଅତିବାହିତ ହୋଇଯାଇଛି । ଗାଁର ଗାଈ-ଗୋରୁମାନେ ଫାଟୁଆ ରୋଗରେ ଆକ୍ରାନ୍ତ ହୋଇଛନ୍ତି । ରବି ପୁଣି ଥରେ ଔଷଧପାଇଁ ସହରକୁ ଯାଇଛି ଓ ଫେରନ୍ତି ବାଟରେ ସିନ୍ଧୁ ଚୌଧୁରୀଙ୍କ ଘରକୁ ଆସିଛି । ପରିସ୍ଥିତିରେ ପଡ଼ି ରବି ସେ ଦିନ ସିନ୍ଧୁ ଚୌଧୁରୀ ଘରେ ରହିବାକୁ ବାଧ ହୋଇଛି । ତେବେ ଛବି ସଙ୍ଗେ ତା'ର ସାକ୍ଷାତ୍ ହୋଇନି । ପାହାନ୍ତାରୁ ଉଠି ସେ ଘରକୁ ଫେରିଛି ।

ଛବି ସଙ୍ଗେ ରବିର ବିବାହ ପ୍ରସ୍ତାବ ଛବି ମା' ସ୍ୱାମୀ ସିନ୍ଧୁ ଚୌଧୁରୀଙ୍କ ଆଗରେ ବାଢ଼ିଛନ୍ତି । କିନ୍ତୁ ଆଭିଜାତ୍ୟ ଓ ବଡ଼ିମାରେ ଫୁଲିଥିବା ବଟ ମହାନ୍ତି ଏହାକୁ ପ୍ରତ୍ୟାଖ୍ୟାନ କରିଦେଇଛନ୍ତି । ସିନ୍ଧୁ ଚୌଧୁରୀଙ୍କ ଘରୁ ବିବାହ ପ୍ରସ୍ତାବ ନେଇ ଆସିଥିବା ମଧ୍ୟସ୍ଥ ନିରାଶ ହୋଇ ଫେରିଯାଇଛି ।

ବଡ଼ ସହରର ଭାଲୁ ପଟ୍ଟନାୟକଙ୍କ ଝିଅ ବିଷୟରେ ବାପା ପକାଇଥିବା ବିବାହ ପ୍ରସ୍ତାବକୁ ରବି ମୁହେଁ ମୁହେଁ ମନା କରିଦେଇଛି । ଯଦି ବାହା ହୁଏ ତେବେ ପାଟେଳି ଗାଁର ସିନ୍ଧୁ ଚୌଧୁରୀଙ୍କ ଝିଅକୁ ବାହା ହେବ ବୋଲି ଶୁଣେଇ ଦେଇଛି । ବଟ ମହାନ୍ତି ରବିକୁ କୁଳାଙ୍ଗାର, ପୋଡ଼ାମୁହାଁ ବୋଲି ଭର୍ତ୍ସନା କରିଛନ୍ତି । ରବି ଲୁଗାପଟା ଓ ବହିପତ୍ର ଏକାଠି ପୁଟୁଳି କରି ତାଙ୍କ ଜମିଦାରିରେ ଥିବା ଫୁଲଶରା ଗାଁକୁ ଚାଲିଯାଇଛି ।

ରବି ଫୁଲଶରା ଗାଁରେ ନୂଆ କଥା କରିଛି । ଲୋକମାନଙ୍କର ଜମି ଥିଲା, ହିଡ଼ ଥିଲା, ବାଡ଼ ଥିଲା । ସାଧୁ ଜେନା, ଗଙ୍ଗା ଗୁଡ଼ିଆ, ଉମା ପଶାଏତ୍, ରଘୁଆ ଭଣ୍ଡାରି – ସମସ୍ତଙ୍କର ଜମି ଗୋଟିଏ ଚକଡ଼ା କରିଦେଲା । ଗୋଟିଏ ବଡ଼ ଅଞ୍ଚଳ ହେଲା । ରବି ଜାତିଭେଦ, ଶ୍ରେଣୀପାର୍ଥକ୍ୟ ଓ ସବୁପ୍ରକାର ବୈଷମ୍ୟକୁ ଫିଙ୍ଗିଦେଲା । ସ୍ୱର୍ଣ୍ଣଯୁଗର ସ୍ୱପ୍ନକୁ ସେ ବାସ୍ତବ ରୂପ ଦେଲା ।

ଫଗୁଣ ମାସ । ଗାଁ ପାଖ ସୁଭଦ୍ରାପୁର ମେଳଣ ପାଖେଇ ଆସିଛି । ଠାକୁରମାନେ ଗାଁର ପ୍ରତିନିଧିତ୍ୱ କରି ମେଳଣ ପଡ଼ିଆକୁ ଆସନ୍ତି । ପାଟେଳି ଗ୍ରାମରେ ଦୁଇ ଦଳ

ଏଥି ମଧ୍ୟରେ ସୃଷ୍ଟି ହୋଇଛି । ଫଳରେ ଏଥର ନୂଆ ଓ ପୁରୁଣା ବିମାନ ସୁଭଦ୍ରାପୁର ମେଳନରେ ଯୋଗ ଦେବାକୁ ଯାଇଁଛନ୍ତି । କିଏ ଆଗ ଯିବ ନେଇ ଲୋକେ ବାଡ଼ିଆବାଡ଼ି ଆରମ୍ଭ କରିଦେଇଛନ୍ତି । ରବି ଏହା ଦେଖି ଧୈର୍ଯ୍ୟ ଧରି ରହିପାରି ନାହିଁ । ବୁଝାଶୁଝା କରିବାକୁ ତା' ଭିତରକୁ ପଶିଛି । ଲହୁଲୁହାଣ ହୋଇ ଅଚେତ ହୋଇ ରବି ତଳେ ପଡ଼ିଛି । ଗାଁର ଅପର୍ତ୍ତି ପ୍ରଧାନ ଦୁଃଖ କଲା । ସେ ଭାବିଲା, ଏଇ ଅଚିହ୍ନା ଲୋକଟି ବୋଧେ ମରିଗଲା ।

ଆହତ, ଅଚେତ ରବିକୁ ଗାଁଲୋକେ ଗାଁରେ ଥିବା ସ୍କୁଲକୁ ନେଇଯାଇଛନ୍ତି । ରବିର ଚେତା ଫେରିଚି । ପୁଲିସ ଆସିଛି, କିନ୍ତୁ ରବି କାହା ନାଁରେ ଏତଲା ଦେବାକୁ ରାଜି ହୋଇ ନାହିଁ ।

ମେଳଣ ବାସି ଦିନ ଏଇ ଦୁର୍ଘଟଣା ଗାଁ-ଗହଳିରେ ରାଷ୍ଟ୍ର ହୋଇଛି । ମାଇପି ତୁଣ୍ଡରେ ବଟ ମହାନ୍ତିଙ୍କ ପୁଅ ମରିଯାଇଛି ବୋଲି ପ୍ରତିଧ୍ୱନିତ ହୋଇଛି । ରବିର ମରିବା ଶୁଣି ଛବି ଆଖିରୁ ନୀରବରେ ଦି' ଠୋପା ଲୁହ ବୋହିଯାଇଛି । ସିନ୍ଧୁ ଚୌଧୁରୀଙ୍କ ପାଟିରୁ ବାହାରିପଡ଼ିଛି – ''ଆଃ ମଣିଷଟାଏ ତ ! ... ଏତେ ଦିନକେ ଏ ଖଣ୍ଡରୁ ଜଣେ ମଣିଷ ବାହାରିଚି । ସେ ପରଙ୍କପାଇଁ କାମ କରୁଛି । ବାଦଛେଦ ତୁଟେଇ ଗାଁକୁ କରୁଛି ଗୋଟାଏ ଘର ।''

ଫୁଲଶରା ଗାଁରେ ଜୀବନ ମଧୁମୟ ହୋଇଉଠିଛି । ଏକ ଦେହ ଏକ ମନ ନେଇ ଗ୍ରାମବାସୀମାନେ ନୂତନ କର୍ମ ପ୍ରେରଣାରେ ମାତି ଉଠିଛନ୍ତି ।

ଛବି ମଧ୍ୟ ରବିର ଆଦର୍ଶରେ ଅନୁପ୍ରାଣିତା ହୋଇଛି । ଘର ଘର ହୋଇ ଦୁଃଖୀ ରଙ୍କୀଙ୍କର ସେବା କରିଚାଲିଛି ନିଜ ଗାଁରେ । ବେମାର ସ୍ତ୍ରୀଲୋକଙ୍କର ସେବା କରିଛି । କେଉଁ ଗରିବ ସ୍ତ୍ରୀକୁ ଛିଣ୍ଡା ଦରବା ଖଣ୍ଡେ, କେବେ ଗଣ୍ଡିଏ ଚାଉଳ ବା ଅନ୍ୟ କିଛି ସାହାଯ୍ୟ ଦେଇଛି । ଗାଁରେ ହୋଇଛନ୍ତି ସମସ୍ତେ ତା'ର କୁଟୁମ୍ବ । ତା'ର ପ୍ରେମ ବା ଆସକ୍ତି ଆଉ ବ୍ୟକ୍ତିକୈନ୍ଦ୍ରିକ ହୋଇ ରହି ନାହିଁ । ସେ ପଦାକୁ ଗୋଡ଼ କାଢ଼ିଛି । ସାଥିରେ ତା'ର ନିଜ ଆଦର୍ଶରେ ଗଢ଼ା ନାରୀବାହିନୀ ।

ଏହାପରେ ଲେଖକ ପ୍ରଳୟଙ୍କରୀ ବନ୍ୟାର ଅବତାରଣା କରିଛନ୍ତି । ନାୟକ ରବି ଏ ଦୁର୍ଦ୍ଦିନରେ ଜୀବନକୁ ପାଣି ଛଡ଼େଇ ନାହାରେ ଫୁଲଶରାରୁ ଚାଉଳ, ଚୁଡ଼ା, ଗୁଡ଼, କିରାସିନି, ଲୁଣ, ପାନ,ଗୁଆ, ଗୁଣ୍ଡି, ଆଠ ଦଶ ହାତିଆ କପଡ଼ା ପ୍ରଭୃତି ନେଇ ସହକର୍ମୀଙ୍କ ସହିତ ବୁଡ଼ି ଅଞ୍ଚଳକୁ ଯାଇଛି । ଜୀବନ ପ୍ରତି ଭ୍ରୂକ୍ଷେପ ନାହିଁ । ରାତିରେ ଉରି ଗ୍ରାମରେ ସେମାନେ ବିଶ୍ରାମ ନେଇଛନ୍ତି । ତାଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇଛନ୍ତି ଗ୍ରାମବାସୀମାନେ । ପରଦିନ ଉରି ଗାଁରୁ ଡଙ୍ଗା ଚାଲିଛି ଫୁଲଶରା ଆଡ଼କୁ । ବନ୍ୟାର କରାଳ ଗ୍ରାସରେ କେତେ ଧନଜୀବନ ଲୀନ ହୋଇଯାଇଛି । ପ୍ରାଣ ବିକଳରେ କିଏ ନଡ଼ିଆ ଗଛ ଉପରେ, କିଏ ବରଗଛରେ, କିଏ କାଠ ଭେଳାରେ ବା କିଏ ହାଣ୍ଡିମାନ ଭେଳାରେ ପ୍ରାଣରକ୍ଷାପାଇଁ ଉଦ୍ୟମ କରିଛି । ବନ୍ୟା ବର୍ଣ୍ଣନା ଅତି ନିଖୁଣ ଓ ବାସ୍ତବ ହୋଇଛି ।

ଛବି ମଧ୍ୟ ପାଟେଳି ଗ୍ରାମରେ ବନ୍ୟା ପ୍ରପୀଡ଼ିତ ଲୋକଙ୍କର ସେବା କରି ଚାଲିଛି । ସେ ଜମିଦାର ଘରର ଆଭିଜାତ୍ୟକୁ ପରିହାର କରି ପାଲୁଣୀ ବୋହୂକୁ ନିଜ ଘରେ ଆଶ୍ରୟ ଦେଇଛି । ଛବିର ତ୍ୟାଗ ଓ ପରୋପକାରିତାରେ ସିନ୍ଧୁ ଚୌଧୁରୀ ଓ ତାଙ୍କର ପତ୍ନୀ ମଧ୍ୟ ପ୍ରଭାବିତ ହୋଇଛନ୍ତି । ସେମାନେ ବନ୍ୟା ଦୁର୍ଗତଙ୍କୁ ସାହାଯ୍ୟ କରିବାକୁ ଆଗେଇ ଆସିଛନ୍ତି । ଝିଅ ସାଙ୍ଗରେ ଡଙ୍ଗାରେ ବସି ଯାଇଛନ୍ତି ଜୀବନକୁ ପାଣି ଛଡ଼େଇ ।

ବକ୍ରେଶ୍ୱରଙ୍କ ମନ୍ଦିର ପଠାରେ ଦୁଇଟି ଡଙ୍ଗା ରାତ୍ରିଯାପନପାଇଁ ଏକାଠି ହୋଇଛି । ରବି ଓ ଛବି ଏକାଠି ମିଳିତ ହୋଇଛନ୍ତି । କିନ୍ତୁ ରକ୍ତ ମାଂସର ଚପଳ ଆବେଗ ନେଇ ସେମାନେ ଏକାଠି ହୋଇ ନାହାନ୍ତି । ରବି କଥାବାର୍ତ୍ତା ଭିତରେ ଛବିକୁ ଫୁଲଶରା ଯିବାପାଇଁ ଅନୁରୋଧ କରିଛି ଓ ସେଠା ସଙ୍ଗଠନରେ ଯୋଗ ଦେବାପାଇଁ କହିଛି । ଛବି ବିଚିତ୍ରଭାବେ ହସିଉଠି କହିଚି – ''କେବେ ଯଦି ମୋ ଦେଇ କିଛି କାମ ହେବ, ଫୁଲଶରା ଯିବି ।''

ରବି ତା' ଡଙ୍ଗାରେ ଫୁଲଶରା ଓ ଛବି ଅନ୍ୟ ଡଙ୍ଗାରେ ତା' ବାପା ସିନ୍ଧୁ ଚୌଧୁରୀ ସହିତ ପାଟେଳି ଗାଁକୁ ଫେରିଯାଇଛନ୍ତି ।

ପାଟେଳି ଗ୍ରାମରେ ରବିର ସଭା କାର୍ଯ୍ୟକ୍ରମ ଥାଏ । ଗାଁରେ ରାତିରେ ରହିବା ବ୍ୟବସ୍ଥା ବି ଥିଲା । ରବି ସେହି ସନ୍ଧ୍ୟାବେଳର ସଭାରେ ନାରୀକର୍ମୀମାନଙ୍କ ସହିତ ଯୋଗଦେବାକୁ ସିନ୍ଧୁ ଚୌଧୁରୀକୁ ବହୁତ କରି କହିଯାଇଛି । ସିନ୍ଧୁ ଚୌଧୁରୀ ଛବି ବୋଉଙ୍କ କାନ୍ଧ ଉପରେ ହାତ ରଖି କହିଛନ୍ତି – ''ନ ହେଲେ କହିଲ, ରବି ଛଡ଼ା ଛବି ନାଖି ଅନ୍ୟ କେହି ବର ଅଛି ?''

ପାଟେଳି ଗାଁରେ ସନ୍ଧ୍ୟା ସଭାରେ ରବି ଛବିକୁ ତୃତୀୟଥର ପାଇଁ ଦେଖିଛି । ରବି କୋଠଚାଷ, ସମବାୟ ଜୀବନ ସମ୍ପର୍କରେ ଆଲୋଚନା କରିଛି ।

ଛବି ପୁଣି କାମରେ ଯୋଗ ଦେଇଛି । ମହିଳା ସମିତି ଗଢ଼ି ମୈତ୍ରୀର ବାର୍ତ୍ତା ଧରି ଆଗେଇ ଆସିଛି । ଗାଁକୁ ଗାଁ ବୁଲିଛି । ଏକ ଛକ ମୋଡ଼ରେ ଠିଆ ହୋଇ ତା' ସାଥିକୁ ପଚାରିଛି – ''...କହନ୍ତି ଏଇ ବାଟ ପଡ଼ିଛି ଫୁଲଶରାକୁ । କେତେ ବାଟ ?''

ଛବି ଚାହିଁଛି । ବାହା ହୋଇଥିବା ନୂଆ ବୋହୂଟିଏ ସେହି ଗାଁକୁ ସବାରିରେ ଯାଉଛି । ଆଗରେ ପୋଖରୀ କୂଳରେ ଧଳା ଗାଈଟିଏ ଚରୁଥାଏ । ମୁଣ୍ଡ ଉପର ଦେଇ ଗୀତ ବନ୍ଦ କରି କାପ୍ତାଟିଏ ଉଡ଼ିଗଲା । ଛବି ନଇଁପଡ଼ି ବଉଳଫୁଲ ଗୁଡ଼ିଏ ଗୋଟେଇ ନେଇ ଆଞ୍ଜୁଳାରେ ଧରି ଠିଆ ହେଲା । ତା' ମୁହଁରେ ହସଟିଏ ଫୁଟି ମାଣ୍ଡେଇ ଗଲା । ମନେ ମନେ ସେ ଦେଖୁଥିଲା ରବିକୁ ।

ଏଇଠାରେ ଉପନ୍ୟାସର ସମାପ୍ତି ହୋଇଛି ।

'ମାଟିମଟାଳ' ଉପନ୍ୟାସରେ ଲେଖକ ନୂତନ ସମାଜ ଗଠନପାଇଁ ଏକ ଜବରଦସ୍ତ ଆହ୍ୱାନ ଦେଇଛନ୍ତି । ନୂତନ ଭାରତ ଗଠନ କରିବାପାଇଁ ପ୍ରୟାସୀ ହୋଇଛନ୍ତି । ନୂତନ ସ୍ୱପ୍ନରେ ମତୁଆଲା ହୋଇଛନ୍ତି । ସମସ୍ତଙ୍କୁ ଆପଣାର କରିଛନ୍ତି । ସମସ୍ତଙ୍କୁ ସମାନ ସୁବିଧା ଦେଇଛନ୍ତି । ଗ୍ରାମ ଜୀବନରେ ସେ ଜୀବନ ସଂଘର୍ଷକୁ ସ୍ୱୀକାର କରି ନାହାନ୍ତି । ସରଳ ଗ୍ରାମଜୀବନ ସହିତ ଏକାକାର ହୋଇ ତାଙ୍କରି ପାଦରେ ପାଦ ମିଳାଇ ବାଟ ଚାଲିବାକୁ ଉଦ୍‌ବୋଧନ ଦେଇଛନ୍ତି ।

ଚରିତ୍ରମାନଙ୍କର ନାମକରଣ ମଧ୍ୟ ଠିକ୍ ପଲ୍ଲୀ ଜୀବନକୁ କେନ୍ଦ୍ର କରି ଗଢ଼ିଉଠିଛି । ରୋହିନାଥ, ଦଧିବାଉଡ଼, ବଇ ମଳିକ, ଧୋବେଇ ମିଶ୍ର, ନନ୍ଦ ବୁଢ଼ା, ଚକ୍ରପାଣି, ଶୁକୁଟା, ପରିଆ, କିଶୋର ଓଝା, ବିକା ମୁଦୁଲି ପ୍ରଭୃତି । ନାରୀ ଚରିତ୍ରମାନଙ୍କ ମଧ୍ୟରେ ଦୁଲି, ଗଙ୍ଗା, ଜଗୁଆମା, ଗେହ୍ଲୀବୋଉ, ଚମ୍ପୀ, ଜେମୀ ବୁଢ଼ୀ ପ୍ରଭୃତି ଅବତାରଣା କରାଇବାଦ୍ୱାରା ପଲ୍ଲୀ ପରିବେଶ ସୃଷ୍ଟି ହୋଇଛି ।

ପଲ୍ଲୀ ପ୍ରକୃତି ଚିତ୍ରଣ ମଧ୍ୟ ଅତ୍ୟନ୍ତ ଜୀବନ୍ତ ଓ ମର୍ମସ୍ପର୍ଶୀ । ପଲ୍ଲୀର ପ୍ରତି ଧୂଳିକଣାରେ ସେ ପ୍ରବହମାନ ଜୀବନର ଶାଶ୍ୱତିମା ଦେଖିପାରିଛନ୍ତି । ତାଙ୍କ ଆଖିରେ ଲଣ୍ଡା ବରଗଛ, ପୋଖରୀ ପାଣି, ଆକାଶର ଚଢ଼େଇ ସମସ୍ତେ ଜୀବନ ସଙ୍ଗୀତ ଗାଇ ଗାଇ ଚାଲିଛନ୍ତି ।

ଗାଁର ସୀମା ସମ୍ପର୍କରେ ଲେଖକଙ୍କ ଆବେଗମୟତା ମଧ୍ୟ ସ୍ପଷ୍ଟ । ''ଏଇଠୁ ଗାଁର ଆରମ୍ଭ, ଏଇ ମୁହାଁ ଲେଉଟନ୍ତି ଗାଁର ଗୋରୁପଲ, ଫେରନ୍ତି ଗ୍ରାମ ଲୋକ । ଏଠି ବୋଝ ବାହୁଙ୍ଗି ଥୋଇ ଟିକିଏ ହାଲିଆ ମାରନ୍ତି । ଆଉ ଏଇଠୁ ଗାଁର ଶେଷ । ଏଇ ଯାକେ ବୋହୂ ସବାରି କରେ କରେ ଧାଇଁ ଆସନ୍ତି ତା'ର ବନ୍ଧୁ-ସ୍ୱଜନମାନେ । ତା'ପରେ ସବାରି ବାଙ୍କ ବୁଲେ, ଆଉ ଦିଶେ ନାହିଁ । ଛାତିକୁ ପଥର କରି ସେ (ଝିଅ) କଇଁ ବନ୍ଦ କରେ । ଦାନ୍ତ ଚିପି ଦୀର୍ଘଶ୍ୱାସ ପକାଇ ହେତୁ କରେ – ତା'ର ଗୋଟିଏ ଜୀବନ ସରିଲା, ଏଣିକି ପର ଗାଁ ତା'ର ଘର ...''

ଗାଁର ଏ ପ୍ରକାର ବର୍ଣ୍ଣନା ଓଡ଼ିଆ ଉପନ୍ୟାସ ସାହିତ୍ୟରେ ବିରଳ ।

'ମାଟିମଟାଳ' ଉପନ୍ୟାସକୁ ଯଥାର୍ଥରେ Pastoral Epic ବା ଗ୍ରାମ୍ୟ ମହାକାବ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ ।

'ମାଟିମଟାଳ' ମୋର ଶ୍ରେଷ୍ଠ କୃତି ।' ଗୋପୀନାଥ ନିଜେ ଏହା କହିଛନ୍ତି । କବି ସୀତାକାନ୍ତଙ୍କ ମତରେ 'ମାଟିମଟାଳ'ରୁ ମାଟିର ସୁଗନ୍ଧ ବେଶ୍ ବାରି ହୁଏ ।

ମହାତ୍ମା ଗାନ୍ଧୀଙ୍କର 'Back to Village' ଅର୍ଥାତ୍ 'ଗାଁକୁ ଫେରିଚାଲ' । ଆହ୍ୱାନ ପରି 'ମାଟି ମଟାଳ'ରେ ରହିଛି ଗାଁକୁ ଫେରିଚାଲର ମହତୀ ବାର୍ତ୍ତା ।

**ପାହାନ୍ତା**

'ପାହାନ୍ତା' ଏକ ସଙ୍କେତଧର୍ମୀ ଉପନ୍ୟାସ । 'ନବରବି' ନାମକ ଏକ ମାସିକ ପତ୍ରିକାରେ ୧୯୭୫ ମସିହା ପୂଜା ସଂଖ୍ୟାରେ ପ୍ରଥମେ ପ୍ରକାଶ ପାଇଥିଲା ।

୧୯୭୧ ସାଲ ମାର୍ଚ୍ଚ ମାସ ୨୫ ତାରିଖରେ ପାକିସ୍ଥାନ ସୈନ୍ୟମାନେ ବାଙ୍ଗଲାଦେଶରେ ଗଣହତ୍ୟା ଚଳାଇଲେ । ସେମାନେ ଢାକା ବିଶ୍ୱବିଦ୍ୟାଳୟ, ସହରର ନାମବଜାର, ଛକ, ସାଇ, ପଲ୍ଲୀ ଚାରିକର ଘେରାଉ କରି ଆଖିବୁଜି ଚଳାଇଲେ ତୋପ ବନ୍ଧୁକରୁ ଗୁଳି ଚଳାଇଲେ । ଘରେ ଘରେ ପଶି ଲୋକଙ୍କୁ ଘୋଷାରି ଆଣି ମାରି ପକାଇଲେ । ଘରେ ନିଆଁ ଲଗାଇଦେଲେ । କେତେ ଘର ଧ୍ୱଂସ ହୋଇଗଲା, କେତେ ଲୋକ ମଲେ ତା'ର ହିସାବ ନାହିଁ ।

ମେଧାବୀ ଛାତ୍ର ଅମିନ ଖାଁ ଢାକା ବିଶ୍ୱବିଦ୍ୟାଳୟରୁ କୃତିତ୍ୱର ସହ ଏମ୍.ଏ. ପାସ୍ କଲାପରେ ଏକ ଛାତ୍ରାବାସର ଗ୍ରନ୍ଥାଗାରିକ ଭାବରେ କାର୍ଯ୍ୟ କରୁଥିଲା । ସେ କୃତୀ ଛାତ୍ରୀ ହୁସ୍ନେକୁ ବିବାହ କରିଥିଲା । ପାରିବାରିକ ଜୀବନରେ ପୂର୍ଣ୍ଣତା ଲାଭ କରିଥିଲା । କୋଳକୁ ଆସିଛି ପୁତ୍ର-ଜୁଲଫିକର ଖାଁ । କିନ୍ତୁ ସବୁ କିଛି ଓଲଟପାଲଟ ହୋଇଯାଇଛି । ଆଖି ଆଗରେ ସ୍ତ୍ରୀ ଧର୍ଷିତା ହୋଇ ଚିରଦିନପାଇଁ ମାଟି କାମୁଡ଼ି ପଡ଼ିଛି । ଜୁଲଫିକର ମା' କୋଳରୁ ଛିଟିକି ପଡ଼ିଛି ଆଉ ଗୋଟାଏ ଜାଗାରେ । ମୃତ୍ୟୁର ଏହି ବିଭୀଷିକା ମଧ୍ୟରୁ କୌଣସି ଉପାୟରେ ଅମିନ୍ ଖାଁ ଖସିଆସିଛି । ପାକିସ୍ଥାନ ଓ ଭାରତ ସୀମାରେ ଉପୁଡ଼ି ପଡ଼ିଥିବା ଏକ ବିରାଟ ଶିମୁଳି ଗଛର କୋରଡ଼ ଭିତରେ ରହି ଜୀବନ ରକ୍ଷା କରିପାରିଛି । କଟା ଶିମୁଳି ଗଛର କୋରଡ଼ରେ ଏକାଦିକ୍ରମେ ଦି' ରାତି ରହିଛି । ସେଠି ତା'ର ସହଚର ହୋଇଛନ୍ତି ବୁଢ଼ିଆଣୀ, ସାପ, ଗୋଧି, ଓଧ ପ୍ରଭୃତି । ସେହି କୋରଡ଼ର ଗୋଟିଏ ପାଖରେ ବସିରହି ଅମିନ୍ ଭାବିଛି ମଣିଷ ସୃଷ୍ଟିରେ ଏ ପର୍ଯ୍ୟନ୍ତ ଚାଲି ଆସିଥିବା ସମୟର ଉତ୍ଥାନ ପତନ । ପାଣି ଜନ୍ତୁ ଠାରୁ ଆରମ୍ଭ କରି ମାଙ୍କଡ଼, ଅର୍ଦ୍ଧମଣିଷ, ତାମସିକ ମଣିଷ, ବନ୍ୟ ମଣିଷ, ସମାଜ ମଣିଷ ପର୍ଯ୍ୟନ୍ତ ସବୁକିଛି ତା' ଚେତନାରେ ସଞ୍ଚରିଯାଇଛି । ଲେଖକ ଏଥିମଧ୍ୟରେ ବିବର୍ତ୍ତନବାଦର ଏକ ସ୍ୱଷ୍ଟ ଚିତ୍ର ଦେଇଛନ୍ତି । ଶେଷରେ ନାଲି ଚହଟି ଆସୁଥିବା ନୂଆ ପାହାନ୍ତାରେ ସେ ନିଜର ସ୍ଥିତି ଜାଣିପାରିଛି । ସେ ଅଛି ଓ ସେ ବଞ୍ଚିବାକୁ ଚାହେଁ – ଏହି ଭାବ ତା'ର ମନରେ ଦୃଢ଼ ହୋଇଛି । ମନରେ ତା'ର ଦୃଢ଼ ଆଶା – ସେ ନିଜର ଜନ୍ମଭୂମିକୁ ସ୍ୱାଧୀନ କରିବ ଓ ଗଠନ କରିବ ଏକ ନୂତନ ସମାଜ । ଦେଖିବ ନୂଆ ସୂର୍ଯ୍ୟୋଦୟ ।

'ପାହାନ୍ତା' ଉପନ୍ୟାସରେ ଲେଖକ ସ୍ଥିତିବାଦରୁ ରହସ୍ୟବାଦ, ଇନ୍ଦ୍ରିୟରୁ ଅତୀନ୍ଦ୍ରିୟ ଚେତନା ଓ ଦେହରୁ ଦେହାତୀତର ଉନ୍ମେଷ ଦର୍ଶାଇଛନ୍ତି । ଯୁଦ୍ଧର ସଂଗ୍ରାମ ଭିତରୁ ବଞ୍ଚିବାକୁ ଚାହୁଁଥିବା ମଣିଷ ଭିତରେ ବହୁ ବିଚିତ୍ର ଉପଲବ୍ଧି ଓ ଜୀବନ ଚେତନାକୁ ମୂର୍ତ୍ତିମନ୍ତ କରିଛନ୍ତି ।

## ଅନଳନଳ

ଏହା ଏକ କ୍ଷୁଦ୍ର ଉପନ୍ୟାସ । ଏହା 'ନବରବି'ରେ ପ୍ରଥମେ ପ୍ରକାଶ ପାଇଥିଲା ।

ଏହାର ମୁଖ୍ୟ ଚରିତ୍ର ସୁନ୍ଦରୀ । ସେ ଭାରତବର୍ଷର ଯୁବତୀ । ସହରରେ ତା'ର ଘର । ବାପା ବିପ୍ରଚରଣ ଡାକ କିରାଣି ଥିଲେ । ପରେ ପଦୋନ୍ନତି ପାଇ ପୋଷ୍ଟମାଷ୍ଟର ହୋଇଛନ୍ତି । ଦୁଇ ଭାଇ ତା'ର ଇଞ୍ଜିନିୟର ।

କେଉଁ ଦୂରସମ୍ପର୍କୀୟ ଭାଇ ନୀହାର ଦି' ମାସ ହେଲା ସୁନ୍ଦରୀର ପିଛା ଧରିଥିଲା । ସିନେମା ପତ୍ରିକା, ଚକୋଲେଟ ବାକ୍ସ ପ୍ରଭୃତି ଉପହାର ଦେଇଥିଲା । ସେ କିନ୍ତୁ ସୁନ୍ଦରୀର ଅପହଞ୍ଚ ଜାଣିପାରି ତା'ଠୁଁ ଦୂରେଇଗଲା ।

ସୁନ୍ଦରୀ ସବୁଦିନ ଠାକୁରଙ୍କୁ ପ୍ରାର୍ଥନା କରି ମାଗୁଥିଲା ''ଏଇ ଜୀବନ ...ଏଇ ସୁନ୍ଦର ଜୀବନ ମୋର ରହିଥାଉ ସବୁଦିନେ ।''

ସୁନ୍ଦରୀର ବିବାହ ହୋଇଛି ଜଗଦୀଶ ସହିତ । ସେ ପୋଲିସ ସବ୍‌ଇନ୍‌ସପେକ୍ଟର । ବିବାହ ପରେ ସୁନ୍ଦରୀ ସୁନ୍ଦର ଭବିଷ୍ୟତ୍‌ର ସୁନେଲୀ ସ୍ୱପ୍ନ ଦେଖିଥିଲା । ବାହା ପାଣି ଲାଗି ସ୍ୱାସ୍ଥ୍ୟବତୀ ହେଲା । କିଛି ଦିନ ପରେ ଗର୍ଭବତୀ ହେଲା । ଦୁଇ ତିନି ବର୍ଷ ବ୍ୟବଧାନରେ ତିନୋଟି ପୁତ୍ର ସନ୍ତାନର ଜନନୀ ମଧ ହୋଇଛି । ଏପରିକି ଆହୁରି ଚାରୋଟି ପୁଅ ଓ ଗୋଟିଏ ଝିଅ କାମନା କରିଛି ।

ସ୍ୱାମୀ ଜଗଦୀଶ କର୍ମକ୍ଷେତ୍ରରେ ବାଲେଶ୍ୱର ଓ ପରେ ସମ୍ବଲପୁରକୁ ବଦଳି ହୋଇଛନ୍ତି । ଶେଷରେ କୋରାପୁଟରେ ଯୋଗ ଦେଇଛନ୍ତି । ବିଷମକଟକରେ ସୁନ୍ଦରୀ ତିନୋଟି ପୁଅ ଓ ସ୍ୱାମୀ ସହିତ ରହିଛି ।

ଏହାପରେ ସୁନ୍ଦରୀର ଜୀବନ ଆକାଶରେ ଦେଖାଦେଇଛି କଳାବାଦଲ । ସ୍ୱାମୀ ଜଗଦୀଶ ହଠାତ୍ ମସ୍ତିଷ୍କ ମ୍ୟାଲେରିଆରେ ମୃତ୍ୟୁବରଣ କରନ୍ତି । ସୁନ୍ଦରୀ ରାଇଟର ରାମ ରଥ ଓ ସାହାଯ୍ୟକାରିଣୀ ଧଳମା ସାଙ୍ଗରେ ତିନୋଟି ଅନାଥ ଶିଶୁଙ୍କୁ ଧରି ବିଷମକଟକ ବସାଘର ଛାଡ଼ି ଶ୍ୱଶୁରଘରକୁ ଫେରିଆସିଛି । କିନ୍ତୁ ଶାଶୂଘରର ଲୋକଙ୍କ ବ୍ୟବହାରରେ ଅତିଷ୍ଠ ହୋଇପଡ଼ିଛି । ସୁନ୍ଦରୀର ଗହଣାଗାଣ୍ଠି, ସ୍ୱାମୀଙ୍କର ସଞ୍ଚିତ ଧନ, ପ୍ରୋଭିଡେଣ୍ଟଫଣ୍ଡ, ଇନ୍‌ସ୍ୟୁରାନ୍ସ ଟଙ୍କା ହାତେଇବାକୁ ସେମାନେ ଚେଷ୍ଟା କରିଛନ୍ତି ।

ସୁନ୍ଦରୀ ପରିଷ୍କାର ମନା କରିଦେଇଛି – ''ସେ କଥା ହେବ ନାହିଁ ଆମା, ନଥା ମୋ ସଙ୍ଗେ ଲାଗିଛ ।''

ଫଳରେ ସ୍ୱାମୀର ଆପଣାର ଲୋକେ ହିଂସ୍ର ହୋଇଉଠିଛନ୍ତି । ଦେଢ଼ଶୁରଙ୍କଠାରୁ ଭର୍ତ୍ସନାପାଇ ସ୍ୱାମୀଙ୍କ ଶୁଦ୍ଧିକ୍ରିୟା ସମ୍ପନ୍ନକୁ ଅପେକ୍ଷା ନ କରି ସୁନ୍ଦରୀ ଶଗଡ଼ରେ ବାପଘରକୁ ଚାଲିଆସିଛି ।

ବାପା ବିପ୍ରବାବୁ ପୋଷ୍ଟମାଷ୍ଟର ଥାଆନ୍ତି । ଘରେ କାନ୍ଦବୋବାଳି ପଡ଼ିଛି । ସୁନ୍ଦରୀ ବାପଘରେ ସମସ୍ତଙ୍କ ସ୍ନେହ ଆଦର ପାଇଛି । ବାପା ଓ ଦୁଇ ଭାଇଙ୍କ ସମ୍ମତିକ୍ରମେ ସୁନ୍ଦରୀ ନର୍ସିଂଟ୍ରେନିଂରେ ଯୋଗ ଦେଇଛି ।

ସୁନ୍ଦରୀ ମଝିରେ ମଝିରେ ଘରକୁ ଆସେ । ବର୍ଷାଦିନର ମେଘ ଅନ୍ଧାର ରାତିରେ ସେ ଘରେ ନ ଥିଲାବେଳେ ତା'ର ବଡ଼ ପୁଅ ମୋହନ ହଇଜାରେ ମୃତ୍ୟୁବରଣ କରେ । ସୁନ୍ଦରୀ ଭାଙ୍ଗିପଡ଼େ । ଚାରି ମାସ ପରେ ସୁନ୍ଦରୀ ପୁଣି ନର୍ସିଂ ଟ୍ରେନିଂରେ ଯୋଗ ଦିଏ । ଯେଉଁ ବ୍ୟକ୍ତିକୁ ଛାଡ଼ି ବଞ୍ଚିବା ଅସମ୍ଭବ ମନେ କରେ, ସେ ସବୁ ହରାଇଲେ ମଧ୍ୟ ମଣିଷ ବଞ୍ଚେ । ଜୀବନ ପୁଣି ସହଜ ହୋଇଆସିବା ବେଳକୁ ଦ୍ୱିତୀୟ ପୁଅର ମୃତ୍ୟୁ ଓ ପିତା ବିପ୍ରବାବୁଙ୍କ ମୃତ୍ୟୁ ହୁଏ । ସୁନ୍ଦରୀ ଅଚେତନପ୍ରାୟ ତିନି ମାସ ଭାଇ ଘରେ କଟାଇଛି । ସେ ଅବଶ୍ୟ ମନେ ମନେ ନିଜର ମୃତ୍ୟୁ କାମନା କରିଛି । ଆପଣା ହାତରେ କେମିତି ଲୋକେ ପ୍ରାଣ ଦିଅନ୍ତି, ତା'ର ନାନା ଉପାୟ ବିଷୟରେ ତା'ର ଜ୍ଞାନ ବି ଥିଲା । ତଥାପି ସେ ମରିପାରିଲା ନାହିଁ । ଆତ୍ମହତ୍ୟା କରିବାକୁ ମନ ଡାକିଲା ନାହିଁ ।

ସୁନ୍ଦରୀ ସାନପୁଅ ରମେଶକୁ ଧରି ଭିନ୍ନ ସହରର ଡାକ୍ତରଖାନାକୁ ବଦଳି ହୋଇଯାଇଛି । ଗୋଟିଏ ବସାଘର ସେମାନେ ନେଇଛନ୍ତି । ସୁନ୍ଦରୀ କର୍ମଠ ହୋଇପାରିନି । ଡାକ୍ତରମାନେ ଅପଦାର୍ଥ, ନିର୍ବୁଦ୍ଧିଆ କହିଛନ୍ତି । ମାତ୍ର ତା'ର ସେଥିପ୍ରତି ଭୃକ୍ଷେପ ନାହିଁ । ଆପଣା ବାଗରେ କାମ କରେ । ଯେଉଁଦିନ ଡିଉଟି ନ ଥାଏ, ଟେବୁଲ ପାଖେ ସଞ୍ଜବେଳେ ବସି ତା'ର ଡାଏରୀ ଲେଖି ବସେ । କ'ଣ ଯେ ଲେଖେ ତାହା କାହାକୁ କହେ ନାହିଁ କି ହାତ ଅଟକେ ନାହିଁ । କାହିଁକି ସେ ବଞ୍ଚିଛି ତା'ର ଅର୍ଥ ପାଏ ନାହିଁ । ନିର୍ଲିପ୍ତ ହେଲାପରି ଭଗବାନ୍‌ଙ୍କୁ ସେ ସ୍ମରଣ କରୁଥାଏ ।

ଏହି ଉପନ୍ୟାସର ଅନ୍ତର୍ସଂଳାପ ଓ ଅସ୍ତିତ୍ୱବାଦିତା ପାଠକର ଦୃଷ୍ଟି ଆକର୍ଷଣ କରେ ।

**ବଘେଇ**

ବଘେଇ ଏକ ଛୋଟ ଉପନ୍ୟାସ । ପ୍ରଥମେ ଏହା ୧୯୭୨ ମସିହାରେ 'ନବରବି' ପତ୍ରିକାର ଦୁଇଟି ସଂଖ୍ୟାରେ ପ୍ରକାଶ ପାଇଥିଲା । ପରେ ୧୯୯୫ ମସିହାରେ ଏକ ଉପନ୍ୟାସ ଭାବେ ପ୍ରକାଶ ପାଇଲା । ଏହା ମଧ୍ୟ ଏକ ଆଦିବାସୀ ଜୀବନଭିତ୍ତିକ ଶିକାର ଗଳ୍ପ ।

ଉପନ୍ୟାସରେ ବର୍ଣ୍ଣିତ ଭୂମିଟି ଗୋଟିଏ ଉପତ୍ୟକା । ଠାଏ ଠାଏ ଚାଷ ଜମି, ଠାଏ ଠାଏ ଗୁଡ଼ା ବା ବସ୍ତି । ସବୁଯାକ ବସ୍ତି ମିଶି ଏ ଅଞ୍ଚଳର ନାଁ ଲେଣ୍ଡେଗାଁ ।

ଲେଣ୍ଡେଗାଁର ଦୁଇଟି ମୁଖ୍ୟ ଚରିତ୍ର – ପଞ୍ଚଷଠି ବର୍ଷର ଗାଁ ମୁଣ୍ଡିଆଳ ଧ୍ରୁବ ସିଂ ଆଉ ସମବୟସ୍କ ଧନୁ ପଣ୍ଡିତ । ପର୍ବତ ଉପରେ ଥିଲାବେଳେ ତୁହାଇ ତୁହାଇ ସେମାନେ ବାଘ ରଡ଼ି ଶୁଣିଲେ । ପ୍ରଥମେ ଧନୁ ପଣ୍ଡିତ ଶୁଣିଲା ଓ ତା' କଡିରେ ଥିବା

ଧ୍ରୁବ ସିଂକୁ ଠାରିଲା । ସେମାନେ ଆଚମ୍ବିତ ହେଲେ । ଲେଣ୍ଡେ ଉପତ୍ୟକା ଭିତରେ ବାଘ ଉପଦ୍ରବ କେବେ ହୋଇ ନ ଥିଲା । ମହାବଳ ବାଘର ଏ ରଡ଼ି ମଣିଷଙ୍କ ମନରେ ଭୟ ଉପୁଜାଇଲା । କିଛି ଦିନ ପରେ ଗୋରୁଗାଈ ହଜିବା ଆରମ୍ଭ ହେଲା । ମଇଁଷିକୁ ବି ପ୍ରତି ଚାରି ଦିନ ବ୍ୟବଧାନରେ ବାଘୁଣୀ ଘୋଷାରି ନେଇଗଲା ।

ଧନୁ ପଣ୍ଡିତଙ୍କୁ ବ୍ରାହ୍ମଣୀ ଦେଇ ଲାଗିଲେ । ଦେବୀଙ୍କ ଆଦେଶ ହେଲା ବାଘ ମାରିବାକୁ । ଲେଣ୍ଡେଗାଁ ଲୋକେ ବଣ ଭିତରକୁ ପଶିଲେ । କିଛି ବାଟ ଗଲା ପରେ ଲୋକେ ବାଟବଣା ହେଲେ । ଲୋକେ ଦଳ ଦଳ ହୋଇ ବିଭିନ୍ନ ବାଟରେ ଗଲାବେଳେ ଧ୍ରୁବ ସିଂକୁ ବାଘ ନେଇଗଲା । ଧନୁ ପଣ୍ଡିତ ବି ଧାଉଁ ଧାଉଁ ଝୁଣ୍ଟି ପଡ଼ିଲା । ଏତିକିବେଳେ ଅଣ୍ଡିରା ବାର୍‌ହାଟିଏ ତୀର ବେଗରେ ଆସି ତା' ବାଟ ଦେଇ ଗଲାବେଳେ ଧନୁ ପଣ୍ଡିତଙ୍କ ଡାହାଣ ଜଙ୍ଘ ଚିରି ହୋଇ ହାଡ଼ ଭାଙ୍ଗିଗଲା । ଲୋକେ ତାଙ୍କୁ ଖଟିଆରେ କାନ୍ଧେଇ ନେଇ ଠାକୁରାଣୀଙ୍କ ପାଖେ ରଖିଲେ ।

ଶୀତ ବଢ଼ିଲା । ବାଘର ଉପଦ୍ରବ କମିଲା ନାହିଁ । ଲୋକେ ତାଟିକବାଟ ବନ୍ଦ କରି ରହିଲେ ।

ସରଳ ଆଦିବାସୀମାନେ ଭାବିଥିଲେ ସବୁ ହେଉଛି ଯୋଗ । ଯୋଗ ଆସିଲେ ମଣିଷ ମରେ, ଘରେ ଥିଲେ ବି ମରେ । ବଣରେ ଥିଲେ ବି ମରେ । କେହି ରକ୍ଷା କରିପାରିବେ ନାହିଁ ।

ଶେଷରେ ଗ୍ରାମବାସୀଙ୍କର ଅଜ୍ଞାତରେ ବାଘୁଣୀ ଓ ବାର୍‌ହା ପରସ୍ପର ସଂଘର୍ଷ କରି ଗୋଟିଏ ପୁରୁଣା କୂଅରେ ପଡ଼ି ମରନ୍ତି । ଲେଣ୍ଡେଗାଁ ହୋଇଛି ବଘେଇରୁ ମୁକ୍ତ ।

ଲେଖକ ଆଦିବାସୀଙ୍କର ସରଳ ବିଶ୍ୱାସ ପୁଣି ଦୋହରାଇଛନ୍ତି । ସରଳ ଆଦିବାସୀମାନେ ବାଘ ମାରନ୍ତି ନାହିଁ । ସେମାନେ ବିଶ୍ୱାସ କରୁଥିଲେ ଯେ ବାଘଠି ମଧ୍ୟ ଦେବତାପଣ ଅଛି । ସେମାନେ ମନେ ମନେ ସମ୍ବୋଧି କହନ୍ତି – ''ଆମେ ଭାଇ ଭାଇ, ଚେହେରା ସିନା ଭିନ୍ନେ – କିନ୍ତୁ ତୁମେ ବଡ଼, ତୁମଠି କେଡ଼େ ବପୁ, କେତେ ଗୁଣ, ସେଥିପାଇଁ ଆମ୍ଭେ ତୁମ୍ଭକୁ ପୂଜା କରୁ ।''

ଆଦିବାସୀମାନଙ୍କ ଜୀବନ ସଂଘର୍ଷ ଓ ଅସହାୟତାର ଜୀବନ୍ତ ରୂପରେଖ ହେଉଛି 'ବଘେଇ' କ୍ଷୁଦ୍ର ଉପନ୍ୟାସ ।

**ମନର ନିଆଁ**

ଏହା ଏକ ପ୍ରେମ କାହାଣୀ । ନାୟକ ଜଣେ ଅବିବାହିତ ତରୁଣ ଡାକ୍ତର – ବେଦବ୍ୟାସ ବଳବନ୍ତରାୟ । ଡାକ ନାମ ଗେଣ୍ଡୁ । ଉପଯୁକ୍ତ ଚିକିତ୍ସା ଅଭାବରେ ଶୈଶବରେ ବେଦବ୍ୟାସର ମା'ଙ୍କର ମୃତ୍ୟୁ ହୋଇଛି ଓ ବାପାଙ୍କର ବସନ୍ତ ରୋଗରେ

ଗୋଟିଏ ଆଖି ନଷ୍ଟ ହୋଇଯାଇଛି । ମଫସଲରେ ପାଠ ନ ପଢ଼ି ସହରରେ ମାମୁ ବ୍ରଜବନ୍ଧୁ ବିଶ୍ୱାଳଙ୍କ ଘରେ ରହି ସ୍କୁଲ ଓ କଲେଜରେ ପଢ଼ିଛି ଓ ଡାକ୍ତର ହୋଇଛି । ବେଦବ୍ୟାସର ବାପା ବିଶୁ ବଳବନ୍ତରାୟ ଶିକ୍ଷା ଓ ସ୍ୱାସ୍ଥ୍ୟସେବାରୁ ବଞ୍ଚିତ ଗାଁର ତ୍ରାଣକର୍ତ୍ତା ପୁଅ ହେବ ବୋଲି ସ୍ୱପ୍ନ ଦେଖୁଥିଲେ । ମାତ୍ର ସେହି ସ୍ୱପ୍ନ ସାକାର ହୋଇ ନାହିଁ । ବେଦବ୍ୟାସ ଗାଁକୁ ଘୃଣା କରେ । ଦି' ଚାରିଦିନ ଗାଁରେ ରହିଗଲେ ତାକୁ ବିରକ୍ତ ଲାଗେ । ତା' ପାଇଁ ବାପ କେବଳ ଜଣେ ମାନ୍ୟବନ୍ତ – ଯେ କି ଘୃଣ୍ୟ ମଫସଲର ପ୍ରତୀକ ।

ଉପନ୍ୟାସର ନାୟିକା ସୁନ୍ଦରୀ ଝୁନି । ଲୋକଚକ୍ଷୁରେ ବେଦବ୍ୟାସର ମାମୁ ଝିଅ ଭଉଣୀ । ଡାକ୍ତର ବେଦବ୍ୟାସ କିନ୍ତୁ ତା'ର ମୁଗ୍ଧ ପ୍ରେମିକ ଥିଲେ । ଝୁନିକୁ ବିବାହ କରିବାର ସଂକଳ୍ପ ମନରେ କରିଥିଲେ । କାହାଆଗେ ଅବଶ୍ୟ ପ୍ରକାଶ କରି ନ ଥିଲେ । ଝୁନିର ବିବାହ ପ୍ରସ୍ତାବ ମାଇନିଂ ଇଞ୍ଜିନିୟର ଦିବାକର ଦଳେଇଙ୍କ ସହ ପଡ଼ିଲା । ଦିବାକର ଥରେ ଆସି ଡାକ୍ତର ବେଦବ୍ୟାସଙ୍କୁ ବିବାହ କଥା କହିଥିଲେ । ତା'ର କାରଣ ବେଦବ୍ୟାସ ଭାବୀ-ଶ୍ୱଶୁରଙ୍କ ବନ୍ଧୁ ଥିଲେ । ବେଦବ୍ୟାସ ସୌଜନ୍ୟବଶତଃ ତା' ଆଗରେ ଆନନ୍ଦ ପ୍ରକାଶ କଲେ ମଧ ହଠାତ୍ ବିଷଣ୍ଣ ହୋଇ ପଡ଼ିଥିଲେ ।

ବେଦବ୍ୟାସ ହାଉସ୍‌ସର୍ଜନ ଥିଲାବେଳେ ଡାକ୍ତରଖାନାରେ ଚିକିତ୍ସିତ ହେଉଥିବା ରିକ୍ସାବାଲାର ଜୀବନର ଅନ୍ତିମ ମୁହୂର୍ତ୍ତରେ ନର୍ସ ଭାନୁମତୀ ଉଭା ହୋଇଛି । ରୋଗୀର ଶୁଶ୍ରୂଷାପାଇଁ ତା'ର ଆନ୍ତରିକତା ଦେଖି ବେଦବ୍ୟାସ ମୁଗ୍ଧ ହୋଇଛନ୍ତି ଓ କିଛି ଦିନପାଇଁ ତା'ର ଅତି ନିକଟତର ହୋଇଛନ୍ତି । ଲୋକେ ପ୍ରଚାର କରିଛନ୍ତି ଯେ ଭାନୁମତୀ ବେଦବ୍ୟାସର ଭାବୀପତ୍ନୀ ।

ଭାନୁମତୀ ପରେ ଆସିଛନ୍ତି ପ୍ରୀତି ନାୟକ । ସେ ଚନ୍ଦ୍ରପୁର ମହିଳା ମହାବିଦ୍ୟାଳୟର ଇଂରାଜୀ ସାହିତ୍ୟର ଅଧ୍ୟାପିକା । ସେ ସାଇକିଆଟ୍ରିକ ରୋଗୀ । ସେ ଡାକ୍ତର ବେଦବ୍ୟାସଙ୍କୁ ଆକୃଷ୍ଟ କରିବାକୁ ଚେଷ୍ଟା କରନ୍ତି ଓ ବାଧ୍ୟ କରନ୍ତି ତା'ର ଛାତି ତଳେ ଦୁଃସାଧ୍ୟ ବ୍ୟାଧିକୁ ହାତମାରି ଚିହ୍ନଟ କରିବାକୁ । ବେଦବ୍ୟାସ ବାଧ୍ୟ ହୁଅନ୍ତି ତା' ଘରକୁ ଯିବାକୁ । ରୋଗ ବାହାନାରେ ପ୍ରୀତି ଶୃଙ୍ଗାରଚର୍ଯ୍ୟା ଆରମ୍ଭ କରିଛନ୍ତି । ବେଦବ୍ୟାସ ବାରମ୍ବାର ପ୍ରୀତି ନାୟକଙ୍କ ଘରକୁ ଯାଇଛନ୍ତି । କିନ୍ତୁ ଦିନେ ସଂଧ୍ୟାରେ ପ୍ରୀତି ନାୟକ ସହିତ ଅନ୍ଧାରରେ ଥିବା ଡଃ ରମଜାନ୍ ଆଲ୍ଲୀଙ୍କୁ ଦେଖି ଅପ୍ରସ୍ତୁତ ହୁଅନ୍ତି । ବେଦବ୍ୟାସ ପରାସ୍ତ ହୋଇ ଫେରିଆସନ୍ତି ।

ଭାନୁମତୀ – ପ୍ରୀତି – ଝୁନି ବେଦବ୍ୟାସଙ୍କ ମନରେ ନିଆଁ ଭରି ଦେଇଛନ୍ତି । ସବୁଠୁ ଅସହ୍ୟ ଉତ୍ତାପର ମୂଳାଧାର ଥିଲା ଝୁନି – ଯାହାର ଦେହର ଗଠନ ଥିଲା ସମ୍ପୂର୍ଣ୍ଣ ନିଆରା । ନିଜର ଅକ୍ଷମଣୀୟ ଦୁର୍ବଳତା ଓ ଅପରିସ୍ଫୁଟ-ଅଭିବ୍ୟକ୍ତିସତ୍ତ୍ୱେ ଝୁନିକୁ ପତ୍ନୀ ରୂପରେ ପାଇପାରି ନାହାନ୍ତି । ବିବାହ ଭୋଜି ଦିନ ସେ ଉପରମହଲା ଝରକା

ଆଡ଼କୁ ଦୃଷ୍ଟି ନିକ୍ଷେପ କରିଛନ୍ତି – କାଳେ ନବବଧୂ ବେଶରେ ଝୁନିର ଦର୍ଶନ ପାଇବେ ବୋଲି । କିନ୍ତୁ ତାହା ଘଟି ନ ଥିଲା, ସେ ଭାରାକ୍ରାନ୍ତ ମନରେ ଏକାନ୍ତରେ ଘରକୁ ଫେରିଛନ୍ତି ।

ନାୟକର ମାନସିକ ଦ୍ୱନ୍ଦ୍ୱ ଓ ସଂଘର୍ଷ ଏହି ଉପନ୍ୟାସରେ ବେଶ୍ ଅନୁଭୂତ ହୁଏ । ଜଣେ ଅବିବାହିତ ଯୁବକର ଅନ୍ତର୍ଭୂତ ମନକୁ ଔପନ୍ୟାସିକ ସୃଷ୍ଟି ମଧ୍ୟରେ ପୂର୍ଣ୍ଣଭାବରେ ପ୍ରତିଫଳନ କରିଛନ୍ତି । ଆଲୋଚକଙ୍କ ଭାଷାରେ – ''ଭାବରାଜ୍ୟରେ ଆତୁର ଉଦ୍‌ବେଳନ ଯୋଗୁଁ 'ମନର ନିଆଁ' ଉପନ୍ୟାସଟି ଅଧିକ ଚେତନା ପ୍ରବାହଧର୍ମୀ ହୋଇଛି ।

## ଦିଗଦିହୁଡ଼ି

'ମାଟିମଟାଳ' ପରି 'ଦିଗଦିହୁଡ଼ି' ଗ୍ରାମ୍ୟ ଜୀବନକୁ କେନ୍ଦ୍ରକରି ରଚିତ । ଏହା ଏକ ବର୍ଣ୍ଣନାତ୍ମକ ଉପନ୍ୟାସ । ଏହା ୧୯୭୮ ମସିହାରେ ପ୍ରକାଶିତ ହୋଇଥିଲା ।

ଏହାର ମୁଖ୍ୟ ଚରିତ୍ର ରମା । ଜମିଦାର ପିତାର ବାପଛେଉଣ୍ଡ କନ୍ୟା ରମା । ଆର ଖଞ୍ଜାରେ ରହୁଥିବା ଦାମ ଦାଦିଙ୍କ ସ୍ତ୍ରୀଙ୍କ ଘରକୁ ଚାଉଳ ସେରେ ଉଧାରପାଇଁ ଯାଇଛି । କିନ୍ତୁ ନ ପାଇ ଫେରିଆସିଛି । ପୁଣି ବୋଉର ବୋଲ ମାନି ମୃଷାଭାଇ ସ୍ତ୍ରୀ ରେବ ପାଖକୁ ଯାଇଛି । କୋଡ଼ିଏ ଏକୋଇଶ ବର୍ଷର ଯୁବକ ହର ଡ୍ରାଇଭର ଦାଣ୍ଡକବାଟ ଖୋଲି ରମାକୁ ଚକିତ କରିପକାଇଛି । କାହାର ଗୋଡ଼ ବାଜି ଲଣ୍ଠନ ଉଗୁଡ଼େଇ ହୋଇ ହୁକିନା ଜଳିଉଠି ନିଭିଯାଇଛି । ଘର ଭିତରେ କିଟି କିଟି ଅନ୍ଧାରରେ ରମା କାହାର ଜଳନ୍ତା ନିଶ୍ୱାସ ଅନୁଭବ କରିଛି । ରମାର ମାଆ ମାୟାଦେବୀ ଅପେକ୍ଷା କରି କରି ଘରେ ଥିବା କୋଳଥ ଜାଉ ପିଲାମାନଙ୍କୁ ଖାଇବାକୁ ଦେଇଛନ୍ତି ।

ମୃଷାଭାଇ ସ୍ତ୍ରୀ ରେବର ଘରେ ହର ସହିତ ଅଘଟଣ ଘଟିବା ପରେ ରମାର ମନ ଭାରାକ୍ରାନ୍ତ ହୋଇଉଠିଛି । ରେବ ହରକୁ ଘରୁ ଏକପ୍ରକାର ତଡ଼ିଦେଇଛି । ରେବ ମାୟାଦେବୀଙ୍କ ପାଖରେ ରମାର ହର ସହିତ ବିବାହ ପ୍ରସ୍ତାବ ପକାଇଛି । ମାୟାଦେବୀ ଦୁଇ ମାଣ ଜମି ତିନି ହଜାର ଟଙ୍କାରେ ବିକିଛନ୍ତି ।

ଦୁର୍ଘଟଣାରେ ହରର ମୃତ୍ୟୁ ହୁଏ । ଶାଶୂଘର ଛାଡ଼ି ରମା ବାପଘରେ ରହିଛି ।

ରମା ଗ୍ରାମସେବିକା ହେବାପାଇଁ ସ୍ଥିର କରି ବଡ଼ଭାଇ ସାଧୁଙ୍କଠାରୁ ସମ୍ମତି ପାଇଛି । ସାକ୍ଷାତ୍‌କାର ପରେ ନିଯୁକ୍ତି ପାଇ ଗ୍ରାମସେବିକା ତାଲିମ ଅନୁଷ୍ଠାନରେ ଯୋଗ ଦେଲା । ଟ୍ରେନିଂ ସେଣ୍ଟରରୁ ବସ୍‌ରେ ଡୁମୁରା ଫେରିବାବେଳେ ନେତା କୁଶଳ କୁମାରଙ୍କ କଥା ଲୋକମାନେ କଥାବାର୍ତ୍ତା ହେଉଥିବା ଶୁଣିଲା । କୁଶଳବାବୁଙ୍କ ନିଃସ୍ୱାର୍ଥପର ଜନସେବାର କାହାଣୀ ରମା ହୃଦୟକୁ ସ୍ପର୍ଶ କଲା ।

ରମା କିଛି କାଳ ବାପଘରେ ରହି ନୂଆ ଚାକିରି ଜାଗା ବନ୍ତିଲୋ ଗାଁକୁ ଯାଇଛି । ସେଠାରେ ଗ୍ରାମସେବିକା ଭାବରେ କାର୍ଯ୍ୟ କରିଛି । ଶିକ୍ଷା, ସ୍ୱାସ୍ଥ୍ୟ, ପରିବେଶ, ପରିବାର ନିୟନ୍ତ୍ରଣ, ସୁଷମ ଖାଦ୍ୟର ଆବଶ୍ୟକତା ପ୍ରଭୃତି ବିଷୟରେ ଗ୍ରାମର ସ୍ତ୍ରୀଲୋକମାନଙ୍କୁ ସଚେତନ କରାଇଛି । ଅକସ୍ମାତ୍ କୁଶଳବାବୁ ବିଭିନ୍ନ ଗ୍ରାମର ପ୍ରତିନିଧିସ୍ତରୀୟ ଲୋକମାନଙ୍କ ଗହଣରେ ବନ୍ତିଲୋ ଗାଁକୁ ପରିଦର୍ଶନରେ ଆସିଛନ୍ତି । ରମାର କାର୍ଯ୍ୟକଳାପକୁ ଗ୍ରାମବାସୀମାନେ ପ୍ରଶଂସା କରିଛନ୍ତି । କୁଶଳବାବୁ ମଧ୍ୟ ମୁଗ୍ଧ ହୋଇଛନ୍ତି ।

ଦିନେ ରମା ଗୋଟିଏ ସ୍ୱତନ୍ତ୍ର ପୂଜାର ଆୟୋଜନ କରିଛି । କୁଶଳବାବୁ ହଠାତ୍ ଅତିଥି ଭାବରେ ପହଞ୍ଚିଛନ୍ତି ଓ ରମାର ମଣିଷପଣିଆ, ହୃଦୟବତ୍ତାକୁ ପ୍ରଶଂସା କରିଛନ୍ତି । ଆଉ ଥରେ ଚାରିମୁହଁ ଗାଁରେ ରାତିରେ ରମାକୁ ସେ ସାକ୍ଷାତ୍ କରିଛନ୍ତି । ରମା ପ୍ରଥମେ କିଛି ବୁଝିପାରି ନାହିଁ । ତା' ଚାହାଣିର ଉଦାସୀନତା କୁଶଳଙ୍କୁ ବାଧିଛି । ରମାର ପ୍ରଚ୍ଛନ୍ନ ଶକ୍ତିକୁ ଅଧିକ ପ୍ରକଟିତ କରିବାପାଇଁ ଉଦ୍ୟମ କରିଛନ୍ତି । ଦେଶରେ ଶାନ୍ତି ମୈତ୍ରୀ ଆଣିବାକୁ ଉଦ୍‌ବୁଦ୍ଧ କରି ରମାଠାରୁ ବିଦାୟ ନେଇଛନ୍ତି । ରମା ସେ ବିଷୟରେ ଗୁରୁତ୍ୱର ସହ ବିଚାର କରିଛି ।

ରମା ଶେଷରେ ଗ୍ରାମସେବିକା ଚାକିରି ଛାଡ଼ି ପୁଅକୁ ସାଙ୍ଗରେ ନେଇ ଓଳଙ୍ଗ ଆଶ୍ରମରେ ପହଞ୍ଚିଛି । ଆଶ୍ରମର ମା' ରାଧୀନାନୀ । ଆଶ୍ରମର ଶାନ୍ତି ଓ ପବିତ୍ରତା ରମାକୁ ମୁଗ୍ଧ କରିଛି । ରମା କିନ୍ତୁ ସାତ ଦିନ ରହିଲା ପରେ ଉଦାସ ହୋଇଉଠିଛି ।

ଦିନେ କୁଶଳବାବୁ ସେଠାକୁ ଆସି ବୃହତ୍ତର ପରିବେଶରେ ସେବାକାର୍ଯ୍ୟ କରିବାପାଇଁ ରମାକୁ ପ୍ରବର୍ତ୍ତାଇଛନ୍ତି । ବଡ଼ ସହରରେ ନୂଆ ସମାଜ ଗଢ଼ିବା ତାଙ୍କର ଲକ୍ଷ୍ୟ । ରମା ରାଧୀନାନୀଙ୍କ ସହିତ ବଡ଼ ସହରରେ ଥିବା କୁଆଡରା ଆଶ୍ରମକୁ ଯାଇଛି ଓ ସେଠାରେ ପନ୍ଦର ଦିନ ରହିଛି । କୁଶଳବାବୁ ଆଉ ଜଣେ ସମାଜସେବୀ ସୁଧୀବାବୁଙ୍କ ନିକଟକୁ ରମାକୁ ନେଇଛନ୍ତି । ରମାକୁ ଅନୁଷ୍ଠାନର ଦାୟିତ୍ୱ ଦେବା ବିଷୟରେ ନିଜର ନିଷ୍ପତ୍ତି ଶୁଣାଇଛନ୍ତି । କିନ୍ତୁ ରମା ସେ ଅନୁଷ୍ଠାନ ସହ ନିଜର ସମ୍ପୃକ୍ତିକୁ ଶ୍ରେୟ ମନେ କରି ନାହିଁ । ସେ ପୁଣି ରାଧୀନାନୀ ସହ ଓଳଙ୍ଗ ଆଶ୍ରମକୁ ଫେରିଆସିଛି । ରାଧୀନାନୀ ରମାକୁ ପୁନର୍ବିବାହ କରିବାକୁ ପ୍ରସ୍ତାବ ଦେଇଛନ୍ତି । ରମା କିନ୍ତୁ ରାଜି ହୋଇ ନାହିଁ । ପୁଅକୁ ଧରି ଗାଁକୁ ଫେରିଆସିଛି । ମା' ମାୟାଦେବୀଙ୍କ ବାରଣସତ୍ତ୍ୱେ ରମା ଅଳ୍ପଦିନ ପରେ ଘର ଛାଡ଼ି ଯାଇଛି ଓଳଙ୍ଗ ଆଶ୍ରମକୁ । କୁଶଳବାବୁ ଦୁଇ ଥର ଆଶ୍ରମକୁ ଆସି ରମାକୁ ନ ପାଇ ଫେରିଯାଆନ୍ତି । ରମାର ଚାକିରି ପ୍ରତି ଆଗ୍ରହ ରହିନି । ମନ ଭିତର ଡାକକୁ ସେ ଅପେକ୍ଷା କରିଛି । ଶୋଷିତ, ନିଷ୍ପେଷିତ ମଣିଷର ସେବା କରିବାପାଇଁ ସେ ଅନ୍ତରର ଆହ୍ୱାନ ଶୁଣିଛି । ରାଧୀନାନୀକୁ ତା'ର ଅନ୍ତିମ ନିଷ୍ପତ୍ତି ଶୁଣେଇ ଦେଇଛି । ରାଧୀନାନୀ ବି ତାକୁ କହିଛି – ''ନୁଖୁରା ସଳିତାରେ ବି ତୁ ଆଲୁଅ ଲଗେଇ ପାରିବୁ ମୋ ମା', ଚାଲ ଯୁଆଡ଼େ ଖୁସି, ତୋ ସାଙ୍ଗେ ସାଙ୍ଗେ ମୁଁ ବି ଯିବି ।''

ନୂତନ ସମାଜ ଗଢ଼ା ସ୍ୱପ୍ନ, ପରକୁ ଆପଣେଇବାର ଆତୁରତା ରମାକୁ କରିଦେଇଛି ଏକ ଆଲୋକବର୍ତ୍ତିକା, ... ଜଳନ୍ତା ଦିହୁଡ଼ି ! ଏକ ସୁନ୍ଦର ସମ୍ଭାବନାମୟ ପୃଥିବୀ ପରିକଳ୍ପନା ହିଁ 'ଦିଗଦିହୁଡ଼ି' ଉପନ୍ୟାସର ଅନ୍ତଃସ୍ୱର ।

**ବୁନ୍ଦାଏ ପାଣି**

୧୯୮୮ ମସିହାରେ 'ବୁନ୍ଦାଏ ପାଣି' ପ୍ରକାଶ ପାଇଥିଲା । ଉପନ୍ୟାସର ନାୟକ ସେ ନିଜେ ଗୋପୀନାଥ ।

୧୯୪୫ ମସିହାରେ ଗୋପୀନାଥ ଉଦୟପୁରରୁ ବଦଳି ହୋଇ ବରଗଡ଼ରେ ସେକେଣ୍ଡ ଅଫିସର ଭାବେ ଯୋଗ ଦେଲେ । ସେଠାକାର ଅଙ୍ଗେନିଭା କାହାଣୀ ଏହି ଉପନ୍ୟାସରେ କହିଛନ୍ତି ।

'ବୁନ୍ଦାଏ ପାଣି'ର ନାୟକ ଏକତିରିଶ ବର୍ଷର ଯୁବକ ବିନୋଦ । ଶିରୀପୁର ସବ୍‌ଡିଭିଜନରେ ସେକେଣ୍ଡ ଅଫିସର । ସ୍ପଷ୍ଟବାଦୀ ସରକାରୀ କର୍ମଚାରୀ । ଗୋଟିଏ ଛୋଟ କୋଠାଘରେ ସେ ରହନ୍ତି । ସାଥିରେ ରହନ୍ତି ବୁଢ଼ୀମା, ସ୍ତ୍ରୀ ଅନୁରାଧା ଆଉ ଦୁଇଟି ପୁଅ କୁଟୁରୁ ଆଉ ମୁଟୁରୁ । ଆଉ ବର୍ଷକର ଝିଅ ମିଉଁ ।

୧୯୪୭ ଅଗଷ୍ଟ ମାସ ୧୪ ତାରିଖରେ ଇଂରେଜ ରାଜୁତି ଲୋପ ହେଲା ଓ ଦେଶ ସ୍ୱାଧୀନ ହେଲା । ସକାଳେ ଏକ ବିରାଟ ପଟୁଆର ଶିରୀପୁର ସହରର କଚେରି ପଡ଼ିଆ ପର୍ଯ୍ୟନ୍ତ ଗଲା । ମୁଖ୍ୟମନ୍ତ୍ରୀ ଦିନ ତିନିଟାବେଳେ ଶିରୀପୁର ଡାକବଙ୍ଗଳାକୁ ବିଜେ କଲେ । ପଟୁଆର ସେଠାରେ ଅଟକିଲା । ମନ୍ତ୍ରୀ ସାଧାରଣ ସଭାରେ ଦୀର୍ଘ ବକ୍ତୃତାଟିଏ ଦେଲେ । ଭାଷଣରେ ମହାତ୍ମାମାନଙ୍କ ସ୍ତୁତିଚାରଣ କଲେ । ପାଖରେ ବିନୋଦ ଠିଆ ହୋଇଥିଲେ । ଜନଦ୍ରୋହୀମାନଙ୍କ ସହିତ ମନ୍ତ୍ରୀଙ୍କର ସଲାସୁତୁରା ତାଙ୍କୁ ବାଧିଥିଲା ।

ମନ୍ତ୍ରୀଙ୍କ ଶିରୀପୁର ଗସ୍ତର ତିନି ଦିନ ପରେ ଅଫିସରେ ପହଞ୍ଚିଥିବା ପ୍ରମୋଶନ ତାଲିକାରେ ନିଜର ନାମ ନ ଦେଖି ନାୟକଙ୍କର ମୁହଁ କଳାକାଠ ପଡ଼ିଗଲା । ସତେଇଶ ଜଣ ପଦୋନ୍ନତି ପାଇଥିଲେ । ତା' ଭିତରେ ତା' ସହିତ ଏକା ବର୍ଷ ନିଆଯାଇଥିବା ବାର ଜଣରୁ ନଅ ଜଣଙ୍କୁ ପଦୋନ୍ନତି ମିଳିଥିଲା । ବିନୋଦ ମର୍ମାହତ ହୋଇପଡ଼ିଲେ । ଏ ସମ୍ବାଦ ଶୁଣି ଅଫିସରୁ ବଡ଼ବାବୁ ପ୍ରଭୃତି ସହାନୁଭୂତି ଜଣାଇଲେ । ଏସ୍.ଡି.ଓ. ରାଘବ ଚୌଧୁରୀଙ୍କୁ ଦେଖାକରି ଆପତ୍ତି ଜଣାଇ ଆବେଦନପତ୍ର ଦେବାକୁ ବିନୋଦ ପ୍ରସ୍ତାବ ଦେଲେ । ମାତ୍ର ଏସ୍.ଡି.ଓ. ରାଘବ ଚୌଧୁରୀ ଆବେଦନପତ୍ର ବଦଳରେ ସଂକ୍ଷେପରେ ପ୍ରାର୍ଥନା ପତ୍ରଟିଏ ଦେବାକୁ ପରାମର୍ଶ ଦେଲେ । ସେଥିସହିତ ନିଜେ ଏକ ଗୁପ୍ତ ରିପୋର୍ଟ ପଠାଇବେ ବୋଲି ପ୍ରତିଶ୍ରୁତି ଦେଲେ । ସମସ୍ତ ଦକ୍ଷତାସତ୍ତ୍ୱେ ଟ୍ୟାକ୍ଟର ଅଭାବ ଥିବା ଏସ୍.ଡି.ଓ. ସୂଚନା ଦେଇଥିଲେ ।

ଜୀବନରେ ପୁଣି ଥରେ ଠୋକ୍‌କର ଖାଇ ବିନୋଦ ଘରକୁ ଫେରି ପତ୍ନୀ ଅନୁରାଧାକୁ ଚାକିରି ଛାଡ଼ିଦେବାକୁ ପ୍ରସ୍ତାବ ଦେଲେ । ବୁଢ଼ୀମା କିନ୍ତୁ ଧୀର ସ୍ଥିର ଭାବରେ ବିଚାର କରିବାକୁ ପରାମର୍ଶ ଦେଲେ ।

ପରଦିନ ଏକ ଠାକୁର ମେଲଣ ବିବାଦରେ ବିନୋଦଙ୍କୁ ଗଣ୍ଡିକଟା ଗାଁକୁ ଯାଇ ଗ୍ରାମବାସୀଙ୍କ ସହ ଆଲୋଚନା କରି ରିପୋର୍ଟ ଦେବାକୁ ଏସ୍.ଡି.ଓ. କହିଛନ୍ତି । ବିନୋଦ ପ୍ରଥମେ ଅନିଚ୍ଛା ପ୍ରକାଶ କରନ୍ତି । ତାଙ୍କୁ କିନ୍ତୁ ବାଧ କରାଗଲା । ରିପୋର୍ଟ ସିଧାସଳଖ କଲେକ୍ଟରଙ୍କୁ ନ ଦେଇ ତାଙ୍କ ସହ ଆଲୋଚନା କରି ରିପୋର୍ଟ ଦେବାକୁ ଏସ୍.ଡି.ଓ. କହିଛନ୍ତି । ବିନୋଦ କିନ୍ତୁ ତଦନ୍ତ ରିପୋର୍ଟ କଲେକ୍ଟରଙ୍କୁ ଦେଇଛନ୍ତି ଏବଂ ଏକ ନକଲ ଏସ୍.ଡି.ଓ.କୁ ଦେଇଛନ୍ତି । ଏସ୍.ଡି.ଓ. ଏଥିରେ ଭୟଙ୍କର ବିରକ୍ତ ହୋଇଛନ୍ତି । ବିନୋଦଙ୍କ ରିପୋର୍ଟକୁ ସରକାର ଗ୍ରହଣ କରି ଠିକଣାବେଳେ ୧୪୪ ଧାରା ଜାରି କରି ଭାବୀ ରକ୍ତପାତରୁ ଲୋକମାନଙ୍କୁ ରକ୍ଷା କରିଛନ୍ତି ।

ସ୍ୱାଧୀନ ଦେଶର ନୂଆ ଆଇନ ମଧ ବିନୋଦଙ୍କ ପ୍ରମୋଶନରେ ବାଧକ ହୋଇଛି । ୨୫ ବର୍ଷ ପୂର୍ବରୁ ଯେଉଁମାନେ ଚାକିରିରେ ଯୋଗ ଦେଇଥିଲେ ସେମାନେ ସିଧାସଳଖ ଡେପୁଟି ପଦବୀରେ ଅବସ୍ଥାପିତ ହେଲେ । ଗଡ଼ଜାତ ଶାସନରେ ରାଜାମାନଙ୍କଠାରୁ ନିଜ ପଦବୀ ଡେପୁଟି ବୋଲି ଲେଖାଇ ନେଇ କେତେ ସେହି ପଦବୀରେ ଓ ଦରମାରେ ରହିଲେ । ଫଳରେ ବିନୋଦ ସାନ ଡେପୁଟି ପଦରେ ଅବସ୍ଥାପିତ ହୋଇଛନ୍ତି । ବିନୋଦ ହତାଶାରେ ମୁହ୍ୟମାନ ହୋଇପଡ଼ନ୍ତି ।

ବିନୋଦଙ୍କୁ ଏକମାତ୍ର ଶିକ୍ଷକ ଶଶୀ ମିଶ୍ର ସାନ୍ତ୍ୱନା ଦେଇଛନ୍ତି । ସେ ବିନୋଦଙ୍କ ଜୀବନଧାରାକୁ ତାରିଫ କରନ୍ତି । ଚାକିରିରୁ ଇସ୍ତଫା ଦେବା ପ୍ରସ୍ତାବକୁ କିନ୍ତୁ ନାପସନ୍ଦ କରିଛନ୍ତି । ଗଛ ପତ୍ର ଉପକାରୀ ହୋଇଥିଲେ ହେଁ କହିବୁଲନ୍ତି ନାହିଁ ବୋଲି ବୁଝାନ୍ତି । ବିନୋଦଙ୍କ ମନରେ ଶାନ୍ତି ଆସିଛି । ମୁହଁରେ ହସ ଫୁଟିଉଠିଛି । କିଛି ଦିନ ପରେ ବିନୋଦଙ୍କ ବଦଳି ଆଦେଶ ଆସିଛି । ଯିବାକୁ ହେବ ମେଳାମୁଣ୍ଡେଇ – ନିଜ ଜିଲ୍ଲାର ସଦର ମହକୁମାକୁ । ତାଙ୍କ ଗାଁ ସେଠୁ ଚାରି କୋଶ ଓ ଶ୍ୱଶୁରଘର କୋଡ଼ିଏ 'କୋଶ । ସହର ଉପକଣ୍ଠରେ ସ୍ତ୍ରୀଙ୍କ ବଡ଼ଭାଇ ବ୍ୟବସାୟ କରନ୍ତି । ରବିବାର ଦିନ ଏସ.ଡି.ଓ. ରାଘବବାବୁ ବିନୋଦଙ୍କୁ ନିଜ ବଙ୍ଗଳାକୁ ଡାକି ବିଦାୟକାଳୀନ ଆତିଥ୍ୟର ବନ୍ଦୋବସ୍ତ କରନ୍ତି । ଏସ୍.ଡି.ଓ.ଙ୍କ ସହିତ ଭୁଲ ବୁଝାମଣାର ଏକ କାବ୍ୟିକ ପରିସମାପ୍ତି ଘଟେଇ ବିନୋଦ ନୂତନ କର୍ମକ୍ଷେତ୍ରକୁ ଯିବାକୁ ଆଗେଇ ଆସିଛନ୍ତି ।

ମେଘଘୋଡ଼ିଆ ସକାଳେ ବିନୋଦ ଏକା ଭଡ଼ା ଟ୍ରକ ଓ ଟ୍ୟାକ୍ସିରେ ନିଜ ପରିବାରକୁ ଧରି ଶିରୀପୁରରୁ ବିଦାୟ ନେଇଛନ୍ତି । ଦୂରରୁ ଶଶୀ ମିଶ୍ରଙ୍କୁ ଦେଖି ପ୍ରତି-ନମସ୍କାର ଜଣାଇଛନ୍ତି । ହୃଦୟ ଭିତର ମନ୍ଥିଚକଟି ହୋଇଛି – ପଛରେ ରହିଯାଇଥିବା ଏତେ ସ୍ନେହ ପାଇଁ ।

## କିଛି କହିବାକୁ ଚାହେଁ

'କିଛି କହିବାକୁ ଚାହେଁ' ଏକ ଆତ୍ମକଥନଧର୍ମୀ ଉପନ୍ୟାସ । ଏହା ୧୯୮୯ ମସିହାରେ ପ୍ରକାଶ ପାଇଥିଲା ।

ଉପନ୍ୟାସର ନାୟକ ସତ୍ତୁ କକେଇ । ଆଠ ବର୍ଷ ପର୍ଯ୍ୟନ୍ତ ସତ୍ତୁ ବିଛଣାରେ ମୂତୁ ଥିଲା । ଏଗାର ବର୍ଷ ବୟସରେ ବରକୋଳି ଚୋରି କରି ଧରାପଡ଼ିବା ଭୟରେ

ପାଚିରି ଡେଇଁ ପଳାଇ ଆସିବାବେଳେ ସଂଗ୍ରାମୀ ବାନର ସେନାଙ୍କ ମେଳରେ ଯାଇ ମଦ ଦୋକାନ ଆଗରେ ପିକେଟିଂ କରିଥିଲା । ବାପା ବାଧ୍ୟ ହୋଇଥିଲେ ହେଡ୍‌ମାଷ୍ଟ୍ରେଙ୍କ ପାଖେ ମୁଚାଲିକାଟିଏ ଲେଖିବାପାଇଁ । ସତୁ ଦ୍ୱିତୀୟ ଶ୍ରେଣୀରେ ମାଟ୍ରିକ୍ ପାସ୍ କଲା । ତା'ପରେ ଚାରି ବର୍ଷ ପଢ଼ି ବି.ଏ. ପାସ୍ କଲା । ବାପା ଚାହୁଁଥିଲେ ସେ ଜଣେ ଶିକ୍ଷକ ହେବ । ସତୁ ମନେ ମନେ ଭାବୁଥିଲା ବିପ୍ଳବୀ ହେବ । କିଛି ଦିନ ମଧ୍ୟ ବିପ୍ଳବୀମାନଙ୍କ ଗୋଷ୍ଠୀରେ ଥିଲା । ଦାରିଦ୍ର୍ୟ ଶେଷରେ ବାଧ୍ୟ କରିଥିଲା ସରକାରୀ ଚାକିରି କରିବାକୁ । ପରେ ପରେ ସେ ଇନ୍ଦୁମତୀକୁ ବିବାହ କଲା ।

ଚାକିରିରେ କିଛି ବର୍ଷ ରହିବା ଭିତରେ ସେ ସୁନାମ ଅର୍ଜନ କଲା । ଯେଉଁମାନେ ଅସତ୍ ଉପାୟରେ ଉଠିବାକୁ ଚାହୁଁଥିଲେ, ସେମାନେ ତାକୁ ସମାଲୋଚନା କଲେ – ଏକବାଗିଆ, ଅଖାଡୁଆ, ଉଦ୍ଧତ ବା ସଂସ୍କାରକ । ସତୁ ମଧ୍ୟ 'ଚାକିରି ଚୋରି, ବଣିଜ ମଝି' – ଏହି ଉକ୍ତିକୁ ମିଥ୍ୟା ବୋଲି ପ୍ରମାଣିତ କଲା ।

ସତୁର ଜଣେ ସହକର୍ମୀ ଥିଲେ – ପ୍ରିୟବାବୁ । ସେ ଥିଲେ ନିଷ୍ଠାପର, ଧୁରନ୍ଧର, ସଚ୍ଚୋଟ ଓ ଗୁଣୀ ବ୍ୟକ୍ତି । ସେ ଚାକିରିରୁ ଉପଯୁକ୍ତ ନ୍ୟାୟ ପାଇ ନ ଥିଲେ ବି ଭାଙ୍ଗି ପଡ଼ି ନ ଥିଲେ । ସତୁକୁ ମଧ୍ୟ ଦାରିଦ୍ର୍ୟର କଶାଘାତ ସହିବାକୁ ପଡ଼ିଥିଲା । ଶେଷରେ ସେ ପ୍ରିୟନାଥବାବୁଙ୍କ ସଙ୍ଗେ ଯୁକ୍ତି କରିଥିଲା – ଅସତ୍ ଉପାୟରେ ଧନ ଅର୍ଜନ କଲେ କ୍ଷତି କଅଣ ? ପ୍ରିୟନାଥବାବୁ ତୀବ୍ର ପ୍ରତିକ୍ରିୟା ପ୍ରକାଶ କରି ଅସତ୍ ମାର୍ଗରୁ ନିବୃତ୍ତ ହେବାପାଇଁ ବୁଝାଇଥିଲେ । କିନ୍ତୁ ସତୁ ପ୍ରିୟନାଥର ଆଦର୍ଶବାଦକୁ ପ୍ରତ୍ୟାଖ୍ୟାନ କରିଛି ।

ଦାନାପାଣିର ତାଡ଼ନାରେ ସତୁ ମଧ୍ୟ ଆଦର୍ଶପଥରୁ ଓହରିଲା । ସେ ଅସତ୍ ଉପାୟ ଅବଲମ୍ବନ କରି ଟଙ୍କା ରୋଜଗାର କଲା । ଶୋଇବା ଆଗରୁ ଯେଉଁ ଗୀତା, ଭାଗବତ ବା ରାମକୃଷ୍ଣଙ୍କ ବହି ପଢୁଥିଲା, ତାହା ସେ ଛାଡ଼ିଦେଲା । ପତ୍ନୀ ଇନ୍ଦୁମତୀ ବିଚଳିତ ହୋଇପଡ଼ିଥିଲେ ତା'ର ଏ ପରିବର୍ତ୍ତନରେ ।

ସତୁ ସଫଳତାର ଶିଡ଼ି ପରେ ଶିଡ଼ି ଅତିକ୍ରମ କରିଚାଲିଛି । ପୁଅକୁ ବିଦେଶରେ ଉଚ୍ଚଶିକ୍ଷାପାଇଁ ପଠାଇଛି । ସାତଟି ଯାକ ଝିଅକୁ ଭଲ ଜାଗାରେ ବାହା ଦେଇଛି । ତିନି ଜାଗାରେ ତିନୋଟି କୋଠାଘର ତିଆରି କରିଛି । ଚାଷଜମି ବି କରିଛି । ସେଆର ବି କିଣିଛି । ଶେଷରେ ଦୁର୍ନୀତି ମକଦ୍ଦମାରେ ଛନ୍ଦି ହୋଇ କାରାବରଣ କରିଛି ।

ସତୁ କେବେଇ ଅଧୀର ହୋଇ ନାହିଁ । ମନେ ମନେ ଭାବିଛି – ମୁଁ ତ ମୃତ୍ୟୁକୁ ଆଦରି ନେଇଛି ବହୁ ଦିନୁ । ଆପଣା ପାଖରେ ଆପେ ହାରିଯାଇଛି । ଯେତେ ମୁହଁ ଟାଣ କଲେ ବି ଆପଣା ଆଗରେ ଅସହାୟ ହୋଇଉଠିଛି । ଏ ଭୌତିକ ସମୃଦ୍ଧି ଜୀବନର ଯଥାର୍ଥ ପରିଚୟ ଯେ ନୁହେଁ – ସେ କଥା ସ୍ୱୀକାର କରିଛି । ଆପଣାର ପାପବୋଧରେ ଘାଣ୍ଟିହୋଇ ଜଣାଇଛି –

''ପ୍ରଭୁ ! ଯାହା କିଛି କରୁଛି ସବୁ ଆତ୍ମରକ୍ଷାପାଇଁ, ପରକୁ ପୀଡ଼ା ଦେବାକୁ ନୁହେଁ । ଏ ସଂସାରରେ ଆତ୍ମରକ୍ଷାପାଇଁ ପ୍ରୟୋଜନ ନ ଥିଲେ କରି ନ ଥାନ୍ତି, ଯଦି ଦୋଷ କଲି, ଭୟରେ କଲି । କ୍ଷମା କରିବ ।''

ଲେଖକଙ୍କର ଦର୍ଶନ ସ୍ପଷ୍ଟ – ''ବଞ୍ଚିବା ଓ ସଫଳତାର ସହ ବଞ୍ଚିବା ହେଉଛି ଜୀବନର ଚୂଡ଼ାନ୍ତ ସତ୍ୟ । ମଣିଷ ଆଗେ ବଞ୍ଚିବା ଦରକାର । ତା'ପରେ ଆସୁ ଦର୍ଶନ । ସେଇଥିପାଇଁ ନାନା ଯୁଗରେ ନାନା ଶାସ୍ତ୍ରର ଅର୍ଥ ଭିନ୍ନେ ଭିନ୍ନେ ହୋଇଛି – କେତେବେଳେ ମୋକ୍ଷପାଇଁ ତ କେତେବେଳେ ଯୁଦ୍ଧ ପାଇଁ; କେତେବେଳେ ପୁଣି ଶାନ୍ତି ସ୍ଥାପନପାଇଁ ।''

କଥାକାର ଗୋପୀନାଥଙ୍କର ଏହା ହେଉଛି ଅନନ୍ୟ ସାଧାରଣ ଅଭିବ୍ୟକ୍ତି ।

**ଜାନକାମ୍ମା**

ଏହା ଏକ କ୍ଷୁଦ୍ର ଉପନ୍ୟାସ । ଏହା ଲେଖକଙ୍କ ମୃତ୍ୟୁର ମାତ୍ର ଚାରି ମାସ ପୂର୍ବରୁ ପ୍ରକାଶ ପାଇଥିଲା । ଏକ ଦଳିତ ମେହେନତ କରୁଥିବା ନାରୀର କରୁଣ କାହାଣୀକୁ ନେଇ ରଚିତ ।

ଆନ୍ଧ୍ରର ଶ୍ରୀକାକୁଲମ ଜିଲ୍ଲାର ତେଲୁଗୁଭାଷୀ ବାପମା'ଙ୍କର ଅଠର ବର୍ଷର ଝିଅ ଜାନକାମ୍ମା । ତା'ର ବିବାହ ହୋଇଛି ଚାଳିଶ ବର୍ଷୀୟ ବଡ଼ଚାଷୀ ତଥା ବିପତ୍ନୀକ ଯୋଗୁଲୁ ସହିତ । ବୋହୂ ଭାବରେ କିଛି ଦିନ ଭଲରେ ରହିଲା ପରେ ଜୀବନରେ ବିପର୍ଯ୍ୟୟ ଆସିଛି । ଜମିବାଡ଼ି ନେଇ ମକଦ୍ଦମା ହୋଇଛି । ଗୃହପାଳିତ ପଶୁଙ୍କର ଅକାଳ ମୃତ୍ୟୁ ହୋଇଛି । ଜାନକାମ୍ମାର ଗୋଟିଏ ପରେ ଗୋଟିଏ ଏପରି ତା' ନିଜ ଗର୍ଭର ଚାରୋଟି ଶିଶୁପୁତ୍ରଙ୍କର ମୃତ୍ୟୁ ହୋଇଛି । ସ୍ୱାମୀ ଯୋଗୁଲୁ ଓ ଦୁଇ ବର୍ଷର ଝିଅ ରାଙ୍ଗାମାକୁ ସାଥିରେ ଧରି ଜାନକାମ୍ମା ଓଡ଼ିଶାର ଏକ ବଡ଼ ସହରକୁ ଚାଲିଆସିଛି । ସ୍ୱାମୀ କାଠଗୋଲାରେ କାମ କରିଛି ।

ଜାନକାମ୍ମା ସହରର ବାବୁଙ୍କ ଘରେ ବାସନମାଜି ପେଟ ପୋଷେ । ସ୍ୱାମୀକୁ ବି ସାହାଯ୍ୟ କରେ । କିନ୍ତୁ କିଛିଦିନ ପରେ ଯୋଗୁଲୁର ଦୁଇଟିଯାକ ଆଖି ନଷ୍ଟ ହୋଇଯାଇଛି । ଜାନକାମ୍ମା ତାକୁ ପୋଷିବାର ଭାର ନେଇଛି ।

ଜାନକାମ୍ମାର ଜୀବନ ସଂଗ୍ରାମ ତୀବ୍ରତର ହେଲା । ତା' ଜୀବନକୁ ଅତିଷ୍ଠ କଲା ବଡ଼ ଝିଅ ରାଙ୍ଗାମ୍ମା । ସେ ବି ମା' ସହିତ ମିଶି ଲୋକଙ୍କ ଘରେ କାମ କରି ପଇସା କମେଇଲା । ହେଲେ ଯୌବନର ତାତିଲା ଆବେଗ ତାକୁ ପଥଭ୍ରଷ୍ଟ କଲା । ବାହାରେ ବୁଲିଲା । କାହା ସଙ୍ଗେ ବି ସିନେମା ଗଲା । ନିଜର ପ୍ରବୃତ୍ତିକୁ ସବୁବେଳେ ଚରିତାର୍ଥ କଲା । ଫଳରେ ଗନେରିଆରେ ପୀଡ଼ିତା ହୁଏ । ଚିକିତ୍ସା ପରେ ଜାନକାମ୍ମା ତାକୁ ନିଜ ଅଞ୍ଚଳର ଜଣେ ଯୁବକ ସହ ବିବାହ କରାଇଦେଇଛି । ଦୁଇ ମାସ ପରେ ମଝିଆ ଝିଅ ଗଙ୍ଗାମ୍ମାର ବିବାହ ମଧ୍ୟ ସହରରେ ରହୁଥିବା ଜଣେ ଯୁବକ ସହିତ ହୁଏ ।

କିଛିଦିନ ପରେ ବଡ଼ ଝିଅ ରାଙ୍ଗାମ୍ମା ଚାରିତ୍ରିକ ସ୍ଖଳନ ହେତୁ ଶାଶୂଘରୁ ବିତାଡ଼ିତା ହୋଇ ମା' ପାଖକୁ ଫେରିଆସିଛି । ଜାନକାମ୍ମା ପୁଣି ଆନ୍ଧ୍ର ପ୍ରଦେଶର ଜାଗ୍‌ଗେୟା ନାମକ ଯୁବକ ସହିତ ରାଙ୍ଗାମ୍ମାର ଦ୍ୱିତୀୟ ବିବାହ କରାଇଦେଇଛି । ବ୍ୟାଙ୍କରୁ ଋଣ ଆଣି ସ୍ୱାଇଁଙ୍କୁ ରିକ୍ସାଚାଳକ କରିଛି । ସେ କିନ୍ତୁ ରାଙ୍ଗାମ୍ମାକୁ ଛାଡ଼ିଦେଇ କୁଆଡ଼େ ପଳେଇଛି । ରାଙ୍ଗାମ୍ମା ପୁଣି ଅର୍ଜୁନ ଗୋଛାଏତ ନାମକ କ୍ଷତ୍ରିୟ ଯୁବକ ସହିତ ଘରଛାଡ଼ି ପଳାଇଛି । ପୁଣି ମାସକ ପରେ ରାଙ୍ଗାମ୍ମା ଫେରିଆସିଛି ମା' ପାଖକୁ । ଜାନକାମ୍ମା ମଧ୍ୟ ତାକୁ ଆଶ୍ରୟ ଦେଇଛି । ରାଙ୍ଗାମ୍ମା ପୁଣି ଜଣେ ଭଦ୍ରଲୋକଙ୍କ ଘରେ ଚାକରାଣୀ ଭାବେ ରହିଛି । ମାତ୍ର ସେଠୁ ବି ପଳେଇ ଆସିଛି ।

ଘରେ ବୃଦ୍ଧ ସ୍ୱାମୀ ଯୋଗୁଲୁ, ରାଙ୍ଗାମ୍ମା ଓ ବଢ଼ି ଉଠୁଥିବା ସାନ ଝିଅ ରାଜେଶ୍ୱରୀ । ଜାନକାମ୍ମା ଠାକୁର ଠାକୁରାଣୀଙ୍କୁ ପଚାରେ – ''କେଉଁଠି ମୋ ତ୍ରୁଟି ?' ମନକୁ ମନ ବୁଝାଏ ଯେ ସେ ତା' କର୍ତ୍ତବ୍ୟ କରିଛି । କେହି ତାକୁ ମନ୍ଦ କହି ନାହିଁ ।''

ଲେଖକ କୌଣସି ବାସ୍ତବ ଘଟଣାକୁ ଆଧାର କରି ଲେଖିଥିବା ଅନୁମାନ କରାଯାଏ ।

## ଅନାମ

'ଅନାମ' ମଧ୍ୟ ଆଦିବାସୀ କନ୍ଧ ସମ୍ପ୍ରଦାୟର ଜୀବନଲିପି ଆଧାରିତ ଏକ ଉପନ୍ୟାସ । ଏହା ୧୯୯୩ ମସିହାରେ ପ୍ରକାଶ ପାଇଥିଲା ।

ଉପନ୍ୟାସର ମୁଖ୍ୟ ଚରିତ୍ର ହେଉଛି ବାଘ ବଂଶ କାନ୍‌କଟା କୋଳିଆ ସେଠ୍ । ସେ ଜାତିରେ ଡମ୍ବ । ନର୍ଲା ମୌଜାର କୁସୁମଗୁଡ଼ାରେ ତା'ର ଜନ୍ମ । ଜମି ନାହିଁ । କାମଧନ୍ଦା ବି ନ ଥିଲା । ଭୋକରେ କେତେଦିନ କାଟିଲା । ବିବାହର କେତେଦିନ ପରେ ଭାରିଯା ଛାଡ଼ି ପଳେଇଲା । ସେ କନ୍ଧ ରାଜ୍ୟ ଅଭିମୁଖେ ଯାତ୍ରା କଲା । କାରଣ ସେ ଜାଣିଥିଲା କନ୍ଧମାନେ ଉଦାର ଓ ଅତିଥିପରାୟଣ ।

କାନ୍‌କଟା ଗଦରଗୁଡ଼ି ଗାଁର ଆଠ ଜଣ କନ୍ଧ ମୁଣ୍ଡାମାଝିଙ୍କୁ ଭେଟିଲା ଓ ସେମାନଙ୍କପାଇଁ କାମ କରିବ ଓ ଆବଶ୍ୟକ ହେଲେ ଆହୁରି କେତେ ମର୍ଦ୍ଦ ମାଇକିନା ଆଣିଦେବ ବୋଲି ପ୍ରତିଶ୍ରୁତି ଦେଲା । ମୁଣ୍ଡା ମାଝି ଉକ୍‌କୁଟି କାନ୍‌କଟାକୁ କଲା ତା'ର ପାଟବାରିକ ।

କାନ୍‌କଟା ମୁଣ୍ଡାମାଝିର ଅନୁମତି ନେଇ କନ୍ଧମାନଙ୍କର ଭାର ଭାର ଫସଲ ତଳ ଅଞ୍ଚଳକୁ ନେଇ ତା' ବଦଳରେ ନୂଆ ନୂଆ ଜିନିଷ ଅଳ୍ପ ପରିମାଣରେ ଆଣି ଦେଲା । ମଧ୍ୟସ୍ଥ ଭାବେ ସେ ସେମାନଙ୍କୁ ଯଥେଷ୍ଟ ଠକିଲା । ନିରୀହ କନ୍ଧମାନେ ଏ କଥା ଜାଣିପାରିଲେ ନାହିଁ । ଶେଷରେ ନିଜର ଡମ୍ବ ସମାଜରୁ ଜ୍ଞାତି ପରିଜନଙ୍କୁ ଆଣି କନ୍ଧ ସମାଜରେ ବାରିକ ଓ ସେବକ ଭାବରେ ନିୟୋଜିତ କଲା । ତଳ ଅଞ୍ଚଳରେ ଯେଉଁ ଡମ୍ବମାନେ ଦୈନ୍ୟ ଭାବରେ ଜୀବନଯାପନ କରୁଥିଲେ, କନ୍ଧ ରାଜ୍ୟରେ ସେମାନେ ସୁଖରେ ରହିଲେ । ସେମାନେ ମଧ୍ୟ କନ୍ଧମାନଙ୍କୁ ନାନା ଭାବେ ଶୋଷଣ କରିବାକୁ ଲାଗିଲେ ।

ପାଟବାରିକ କାନ୍‌କଟାର ପରାମର୍ଶରେ କନ୍ଧମାନଙ୍କ ଉପରେ ଅତ୍ୟାଚାର ବଢ଼ିବାକୁ ଲାଗିଲା । ସେମାନଙ୍କଠାରୁ ଅଧିକ ପାନୁ (କର) ଆଦାୟ କଲା । କାନ୍‌କଟା କପଟତା ଉକ୍‌କୁଟି ଆଦୌ ବୁଝିପାରିଲା ନାହିଁ ।

ଶେଷରେ କନ୍ଧମାନଙ୍କ ମଧ୍ୟରେ ଅସନ୍ତୋଷ ବ୍ୟାପିଲା । ଡାବୁକା ଓ ବାଉଡ଼ା ମାଝି ଏହାର ନେତୃତ୍ୱ ନେଲେ । କାନ୍‌କଟା ମଧ୍ୟ ଡାବୁକାର ଶରଣାଗତ ହେଲା । ଉକ୍‌କୁଟିକୁ ଛାଡ଼ି ଡାବୁକାର ପାଟବାରିକ ହେଲା ।

କନ୍ଧମାନଙ୍କ ମଧ୍ୟରେ ପୁଣି ଥରେ ସଭା ହେଲା । ଡାବୁକା ଓ ବାଉଡ଼ା ଯଥାକ୍ରମେ ପାଟମୁଣ୍ଡା ମାଝି ଓ ବିଶି ମୁଣ୍ଡା ମାଝି ହେଲେ । ଆଠ ଜଣ ମୁଣ୍ଡା ମାଝି ବଛା ହେଲେ । ସେମାନେ ଉପରେ ଧର୍ମ ଓ ତଳେ ବସୁମତୀକୁ ସାକ୍ଷୀ ରଖି ନିଷ୍ଠା ସହକାରେ ଦାୟିତ୍ୱ ତୁଲାଇବେ ବୋଲି ଶପଥ ନେଲେ ।

କନ୍ଧମାନେ ପୂର୍ବଭଳି ଚଳିବାକୁ ଆରମ୍ଭ କଲେ । ସେମାନେ ମଧ୍ୟ ପୂର୍ବପରି ପଦାରୁ ଜିନିଷପତ୍ର କିଣି ବିକିଲେ ।

ଉପନ୍ୟାସରେ କନ୍ଧ ଓ ଡମ୍ବମାନଙ୍କର ଇତିକଥା ସଂକ୍ଷେପରେ ଦିଆଯାଇଛି । ଚତୁର ଡମ୍ବମାନେ ଅନୁପ୍ରବେଶ କରିବାଦ୍ୱାରା ସରଳ କନ୍ଧସମାଜ କିପରି ବିପର୍ଯ୍ୟସ୍ତ ହୋଇପଡ଼ିଛି, ତା'ର ଏକ ନିଖୁଣ ଚିତ୍ର ଲେଖକ ଦେଇଛନ୍ତି ।

'ଅନାମ' ଉପନ୍ୟାସଟି ଗୋପୀନାଥଙ୍କର ମୃତ୍ୟୁର ଦୁଇ ବର୍ଷ ପରେ ପ୍ରକାଶ ପାଇଥିଲା । କନ୍ଧ ଓ ଡମ୍ବ ସମାଜର ସଂଘର୍ଷର ଚିତ୍ର ପ୍ରଦାନ କରିବା ଏହି ଉପନ୍ୟାସର ଲକ୍ଷ୍ୟ ହୋଇଥିବା ଜଣାଯାଏ ।

## କ୍ଷୁଦ୍ରଗଳ୍ପ

'ଡଁ' ହିଁ ଥିଲା ଗୋପୀନାଥଙ୍କ ପ୍ରଥମ ଗଳ୍ପ – ଯାହାକି ଭଗବତୀଚରଣ ପାଣିଗ୍ରାହୀଙ୍କ ସମ୍ପାଦିତ 'ଆଧୁନିକ' ପତ୍ରିକାରେ ପ୍ରକାଶ ପାଇଥିଲା । ଏହି ସମୟରେ 'ଯୁଗବାର୍ତ୍ତା', 'ଉପାସୀ' ଓ 'ଭାଗା' ଇତ୍ୟାଦି ଗଳ୍ପ ପ୍ରକାଶ ପାଇଥିଲା । ୧୯୫୧ରୁ ୧୯୮୯ ମସିହା ଯାଏଁ ଦଶ ଗୋଟି ଗଳ୍ପ ସଙ୍କଳନ ଓ ମୃତ୍ୟୁପରେ ଚାରି ଗୋଟି – ଏହିଭାବେ ଚଉଦଟି ଗଳ୍ପ ସଙ୍କଳନ ପ୍ରକାଶ ପାଇଛି । ସେଗୁଡ଼ିକ ହେଲା – 'ଘାସର ଫୁଲ', 'ପୋଡ଼ାକପାଳ', 'ନବବଧୂ', 'ଛାଇଆଲୁଅ', 'ରଣଧନ୍ଦୋଳ', 'ଗୁପ୍ତଗଙ୍ଗା', 'ନାଁ ମନେ ନାହିଁ', 'ଉଡ଼ନ୍ତା ଖଇ', 'ମନର ନିଆଁ', 'ସାତ ପାଞ୍ଚ', 'ଶର ଶଯ୍ୟା', 'ତିନି କାଳ' ଓ 'ବଘେଇ' । 'ମନର ନିଆଁ', 'ବଘେଇ', କ୍ଷୁଦ୍ର ଉପନ୍ୟାସ ଭାବେ ପୂର୍ବେ ଆଲୋଚିତ । ଅବଶିଷ୍ଟ ଗଳ୍ପମାନଙ୍କ ମଧ୍ୟରୁ 'ଘର' ଓ 'ପିମ୍ପୁଡ଼ି' ପାଠକଙ୍କଦ୍ୱାରା ବିଶେଷ ଭାବେ ଆଦୃତ ହୋଇଥିଲା ।

'ଘର' ଗଳ୍ପର ନାୟକ ସଦାଶିବ ଏକ ଶିକ୍ଷିତ କିରାଣି । ରସୁଲକୁଣ୍ଡାରୁ ବସ୍‌ରେ, ବ୍ରହ୍ମପୁରରୁ ରେଲରେ ଆସି ସଦାଶିବ ସପରିବାର କଟକ ଷ୍ଟେସନରେ

ପହଞ୍ଚିଛି । ପ୍ରଥମ ରାତ୍ରି ବନ୍ଧୁଘରେ ରହିଛି । ପରଦିନ ସକାଳୁ ଯାତ୍ରା ଆରମ୍ଭ କରି ବିଭିନ୍ନ ସ୍ଥାନରେ ବସାଘର ଅନୁସନ୍ଧାନ କରିଛି । ମାତ୍ର ବିଫଳ ମନୋରଥ ହୋଇ ବସାକୁ ଫେରିଚି । ଏହିପରି ଚାରି ଦିନ ଘର ସନ୍ଧାନରେ ବୁଲି ବୁଲି ଶେଷରେ ସଦାଶିବ ନିରାଶ ହୋଇ ନିଜ ଅଫିସ୍‌ରେ ରହିଛି । ସେ ପାଇଛି ବାବୁଆନିର ଭେକ - ସାତ ହାତେ ଖଣ୍ଡେ ପିଣ୍ଡା । ସେଠି ବି ସେ ଏକା ନୁହେଁ । କିଛି ସମୟ ପରେ ଗୋଟିଏ ଛେଳି ଓ ତା'ର ତିନୋଟି ଛୁଆ ସେଠାକୁ ଆସିଛନ୍ତି । ପ୍ରତିଦିନ ଦମୟନ୍ତୀ ଘର ମିଳିବା କଥା ପଚାରେ । କାରଣ ନୂଆ ଶିଶୁପାଇଁ ଘର ଦରକାର ପଡ଼ିଛି । ଶେଷରେ ଦରଖାସ୍ତ କରି ସଦାଶିବ ପାଇଚି ଡାକ୍ତରଖାନାରେ ଗୋଟିଏ ବଖୁରିକିଆ ଘର । ସେଠାକୁ ସଦାଶିବ ସପରିବାର ଉଠି ଆସିଛି । 'ଆମ ଘର' କହି ପିଲାଏ ନୃତ୍ୟ ଆରମ୍ଭ କରିଦିଅନ୍ତି । ସ୍ତ୍ରୀ ଦମୟନ୍ତୀର ମୁହଁରେ ହସ ଫୁଟିଉଠିଛି - ପ୍ରସୂତି କାର୍ଯ୍ୟ ପାଇଁ ଘର ଖଣ୍ଡେ ମିଳିଯାଇଛି ବୋଲି । କିଛି ସମୟ ପରେ ସେ ପାଖ ଖଞ୍ଜାର କବାଟ ଖୋଲିଯାଇଛି । ଗୋଟିଏ ମୃତ୍ୟୁର ପଟୁଆର ବାହାରିଛି । ସଦାଶିବ ଚମକିପଡ଼ି ପିଲାଙ୍କୁ ଭିତରକୁ ଯିବାକୁ କହିଛି ।

'ଘର' ସୃଷ୍ଟିଧର୍ମରେ ରସାଣିତ ଏକ ଅନବଦ୍ୟ ରଚନା ।

'ପିମ୍ପୁଡ଼ି' ଗଳ୍ପରେ ରହିଛି ମଣିଷର ଅର୍ଥନୀତିର ପ୍ରତିବିମ୍ବ । ପିମ୍ପୁଡ଼ିମଳାରେ ହାଉଯାଉ ହୁଅନ୍ତି ପିମ୍ପୁଡ଼ି । ଖାଦ୍ୟ ପଥରେ ଅନବରତ ଧାର ହୋଇ ଚାଲିଥାନ୍ତି । ଚାରି ହଜାର ଫୁଟ ଉପରେ ବିସ୍କୁଟ୍‌ର ଗୁଣ୍ଡ ପଡୁ ପଡୁ ସରୁ ହୋଇ ଧାରଟିଏ ପିମ୍ପୁଡ଼ି ସଙ୍ଗେ ସଙ୍ଗେ ଲାଗିଯାଆନ୍ତି । ଏହି ପିମ୍ପୁଡ଼ିମାନଙ୍କୁ ଚାଉଳପାଇଁ ମଣିଷ ସହ ଲେଖକ ତୁଳନା କରିଛନ୍ତି । ମଣିଷ ବଞ୍ଚିବାପାଇଁ ଚାଉଳ ବିକେ ଆଉ ଚାଉଳ ଖାଏ । ଶହ ଶହ କାଙ୍ଗାଳ ଏହି ଚାଉଳପାଇଁ ଲୁଚେଇ ଲୁଚେଇ ସୀମା ପାରି ଦଉଡ଼ି ପଳାଇବାର ଦୃଶ୍ୟ ନାୟକକୁ ବିବ୍ରତ କରିଛି । ପିମ୍ପୁଡ଼ି ହୋଇଛି ମଣିଷର ପ୍ରତୀକାତ୍ମକ ଅଭିବ୍ୟକ୍ତି ।

ଗୋପୀନାଥ ସମାଜର ବିଭିନ୍ନ ଦିଗକୁ ଦୃଷ୍ଟି ନିକ୍ଷେପ କରିଛନ୍ତି । ଦାରିଦ୍ର୍ୟ ପ୍ରପୀଡ଼ିତ ମଣିଷ ଜୀବନର ଚିତ୍ରକୁ ସେ ସଂବେଗାତ୍ମକ ଭାବରେ ରୂପ ଦେଇଛନ୍ତି । 'ଅସରନ୍ତି' ଗଳ୍ପରେ ଏକ ଛୋଟ ପିଲାର ମାନସିକ ସଂଘର୍ଷ ମଧ ଦେଇ ଏହା ବ୍ୟଞ୍ଜିତ । 'ମାଟିଆ ବୁରୁଜ' ଗଳ୍ପରେ ରାଜନୀତିକ ସ୍ୱାର୍ଥରେ ବଳି ପଡ଼ିଥିବା ନିରୀହ, ଦରିଦ୍ର, ଅସହାୟଙ୍କପାଇଁ ସମବେଦନା ଜଣାଇଛନ୍ତି । ସେ ସାଂପ୍ରଦାୟିକ ସଂଘର୍ଷକୁ ଅତି ଜୀବନ୍ତ ଭାବରେ 'ମାଟିଆ ବୁରୁଜ' ଗଳ୍ପରେ ପ୍ରକାଶ କରିଛନ୍ତି । 'ପାଟପାଣି' ଗଳ୍ପରେ ବନ୍ୟା ପ୍ରପୀଡ଼ିତ ଗ୍ରାମ୍ୟ ଜୀବନର କରୁଣ ଚିତ୍ର ଆଙ୍କିଛନ୍ତି । ସହରୀ ଜୀବନରେ ଟିଉସନ କରି ଜୀବିକା ନିର୍ବାହ କରିବାର ଦୁରବସ୍ଥାକୁ 'ଭାଗ୍ୟ' ଗଳ୍ପରେ ରୂପ ଦେଇଛନ୍ତି । 'ଇତିହାସ', 'ପୁନର୍ଜନ୍ମ' 'ଝଞ୍ଜାବତୀ', 'ପରିଚୟ', 'ପିଞ୍ଛା ପରୀକ୍ଷା' ଆଦି ଗଳ୍ପରେ ଇତିହାସର'

ସଙ୍କେତ ମଧ୍ୟ ଦେଖିବାକୁ ମିଳେ । 'ପିଛା ପରୀକ୍ଷା'ରେ କୃତ୍ତିବାସ ପାଟଶାଣୀଙ୍କର ଇଂରେଜମାନଙ୍କ ବିରୋଧରେ ସଂଗ୍ରାମ ବର୍ଣ୍ଣିତ । ଲେଖକ ମଧ୍ୟ ଚୀନର ଭାରତ ଆକ୍ରମଣ ପରିପ୍ରେକ୍ଷୀରେ କେତୋଟି ଯୁଦ୍ଧଭିତ୍ତିକ ଗଳ୍ପ ରଚନା କରିଛନ୍ତି । ସେଗୁଡ଼ିକ ହେଲା 'ମଣିଷ', 'ତୋପ' ଓ 'ଗୁଳି' । ଏସବୁ ଗଳ୍ପରେ ଲୋକଙ୍କ ରଣହୁଂକାର ଶୁଣିବାକୁ ମିଳେ । ଏଥିରେ ସାଧାରଣ ମଣିଷର ଦେଶପ୍ରେମ ହିଁ ପ୍ରକାଶ କରିଛନ୍ତି ।

ଓଡ଼ିଆ କଥାସାହିତ୍ୟର ବହୁଚର୍ଚ୍ଚିତ ଗୋପୀନାଥ ମହାନ୍ତି କିନ୍ତୁ ଗଳ୍ପ ସାହିତ୍ୟ କ୍ଷେତ୍ରରେ ନିଷ୍ପ୍ରଭ ଜଣାପଡ଼ନ୍ତି । ଆଲୋଚକ ଡଃ ଆଲୋକ ବରାଳଙ୍କ ଭାଷାରେ – ''ସ୍ୱାଧୀନତା ପରବର୍ତ୍ତୀ ଗଳ୍ପଜଗତରେ କିଛି ସମୟପାଇଁ ଚମକ ସୃଷ୍ଟି କରି କ୍ରମଶଃ ଅନ୍ତରାଳକୁ ଚାଲିଯାଇଥିବା ଗାଳ୍ପିକ ହେଲେ କଥାକାର ଗୋପୀନାଥ ମହାନ୍ତି । 'ଗଳ୍ପ' ମାଧ୍ୟମରେ କଥାର ଜଗତକୁ ପ୍ରବେଶ କରିଥିଲେ ହେଁ ଉପନ୍ୟାସର ବିପୁଳ ପ୍ରଶସ୍ତି ଓ ଚର୍ଚ୍ଚା ତଥା ଏକାଗ୍ର ମନୋନିବେଶ ତାଙ୍କୁ ବିଶେଷ ପରିଚିତି ଆଣିଦେଇଛି ଜଣେ ଔପନ୍ୟାସିକ ଭାବେ । ଫଳତଃ ଔପନ୍ୟାସିକ ଭାବେ ଗୋପୀନାଥଙ୍କ ଯେଉଁ ପ୍ରତିଷ୍ଠା ରହିଛି, ଗାଳ୍ପିକ ଭାବେ ତାହା ନାହିଁ ।''

**କାବ୍ୟ**

ଗୋପୀନାଥ ଏକମାତ୍ର କାବ୍ୟ ରଚନା କରିଛନ୍ତି । ତାହା ହେଉଛି 'ଯୁଦ୍ଧ' । ୧୯୬୫ ମସିହାରେ ସେପ୍ଟେମ୍ବର ମାସ ୧ ତାରିଖରେ ପାକିସ୍ଥାନ ସହିତ ଭାରତର ଯୁଦ୍ଧ ହେଲା । ସେହି ମାସ ୨୧ ତାରିଖରେ ବ୍ଲାକ ଆଉଟ ହୋଇଥିଲା । ସେହି ରାତିରେ ଗୋପୀନାଥ ରଚନା ଆରମ୍ଭ କଲେ ଓ ୨୬ ବର୍ଷ ପରେ ଅର୍ଥାତ୍ ୧୯୯୧ ମସିହାରେ ଏହା ପ୍ରକାଶ ପାଇଲା ।

ଅଚାନକ ପାକିସ୍ଥାନର ଭାରତ ଆକ୍ରମଣ ଭାରତର ପ୍ରତ୍ୟୁତ୍ତର, ଘମାଘୋଟ ଯୁଦ୍ଧ, ଦୀର୍ଘ ୨୨ ଦିନର ଯୁଦ୍ଧ ପରେ ୧୯୬୫ ମସିହା ସେପ୍ଟେମ୍ବର ୨୩ ତାରିଖରେ ଉଭୟ ଦେଶ ପକ୍ଷରୁ ଯୁଦ୍ଧବିରତି ଘୋଷଣା, ରୁଷିଆର ତାସ୍‌କେଣ୍ଟଠାରେ ଭାରତର ପ୍ରଧାନମନ୍ତ୍ରୀ ଲାଲ ବାହାଦୁର ଶାସ୍ତ୍ରୀ ଓ ପାକିସ୍ଥାନ ରାଷ୍ଟ୍ରପତି ଆୟୁବ ଖାଁଙ୍କ ବୈଠକ ଓ ସେହି ରାତିରେ ଶାସ୍ତ୍ରୀଙ୍କର ଅକାଳ ମୃତ୍ୟୁ ପ୍ରଭୃତିର ସାମଗ୍ରିକ ଚିତ୍ର ବହନ କରିଛି 'ଯୁଦ୍ଧ' କାବ୍ୟଟି ।

ଆଲୋଚିକା ଡଃ ଗିରିବାଳା ମହାନ୍ତିଙ୍କ ଭାଷାରେ ଗୋପୀନାଥ ଗଦ୍ୟର ବିନ୍ଧାଣି, କଥାର କୁମ୍ଭକାର–କବିତାର କାରିଗର ନୁହନ୍ତି । 'ଯୁଦ୍ଧରେ' ତେଣୁ କବିତାର ମାଧୁର୍ଯ୍ୟ ଅଥବା କାବ୍ୟର ରସ ସୌନ୍ଦର୍ଯ୍ୟ ଆଶା କରାଯିବା ଉଚିତ ହେବ ନାହିଁ । ତଥାପି ସ୍ଥାନେ ସ୍ଥାନେ କବିତାର ଜ୍ୟୋତି ଫୁଟିଉଠିଛି । ଉଦାହରଣ, ନିଷ୍ପୀଡ଼ିତ ରାତିର ବର୍ଣ୍ଣନା –

''ରାସ୍ତାରେ ଆଲୁଅ ନାହିଁ

× × ×

କବାଟ ଝରକା ବନ୍ଦ, ଯେଝା ଘରେ ଯିଏ,
ମଣିଷ ଗଢ଼ିଥିଲା ସଭ୍ୟତା, ସେ ଛପିଛି ଅନ୍ଧାର ଭିତରେ
ପ୍ରକୃତି ଗଢ଼ିଥିଲା ମେଘ, ଆଉ ରାତି ଆଉ ତାରା
ଆଉ ଜୁଳୁଜୁଳିଆ ପୋକ
ସେ ଆଜି ସ୍ପଷ୍ଟ ।''

ଅସ୍ତ୍ରଶସ୍ତ୍ରରେ ଗର୍ବିତ ମଣିଷର ବର୍ଣ୍ଣନା ମଧ୍ୟ ଜୀବନ୍ତ ହୋଇଛି, ଯଥା –

''× × × ନାଁକୁ ମଣିଷ ସିଏ
ବନ୍ଧୁକର ପୁଅ ବୋମାର
ଛୁରୀର
ଯେ ବିଶ୍ୱାସ କରେ ଦୁନିଆର ସବୁ ସଂସ୍କୃତି ସଭ୍ୟତା
ଜନ୍ମହୁଏ ବନ୍ଧୁକର ଉଦରରୁ ।''

ଯୁଦ୍ଧର ଆତଙ୍କରେ ଧରିତ୍ରୀ, ଆକାଶ ଆତଙ୍କିତ ହୋଇ ପଡ଼ିଥିବା ବର୍ଣ୍ଣନା ସରସ ହୋଇଛି, ଯଥା –

''ଧ୍ୱଂସ
ଆକାଶ ଗରଜୁ ଥିଲା
ଭୂଇଁ ଫାଟୁଥିଲା
ପାହାଡ଼ ତାଡ଼ି ହୋଇ ଆକାଶରେ ଉଡ଼ି ପଡୁଥିଲା ଖଣ୍ଡ ଖଣ୍ଡ ହୋଇ ।''

ଏସବୁ ସତ୍ତ୍ୱେ 'ଯୁଦ୍ଧ' ଗୋପୀନାଥଙ୍କ କଥାଶିଳ୍ପ ଭଳି ଆଦୃତ ହୋଇପାରି ନାହିଁ ।

ଗୋପୀନାଥ ଭାଷା ବ୍ୟବହାରରେ ମିତବ୍ୟୟୀ ହୋଇପାରି ନାହାନ୍ତି । ବର୍ଣ୍ଣନା ବହୁଳତା ମଧ୍ୟ ପରିଦୃଷ୍ଟ ହୁଏ । ଏପରିକି ସ୍ଥଳବିଶେଷରେ ଧାରା ବିବରଣୀ ଭଳି ଜଣାଯାଏ । ସମୁଦାୟ କାବ୍ୟଟି ଗଦ୍ୟଛନ୍ଦରେ ରଚିତ । ଗଦ୍ୟ ଛନ୍ଦ ସବୁଠାରୁ କଠିନ, ଦୁରୂହ କଳା ; ନିପୁଣ ଶିଳ୍ପୀ ବିନା ଏ ଛନ୍ଦ ବ୍ୟବହାରର ସିଦ୍ଧି ସମସ୍ତଙ୍କୁ ମିଳେ ନାହିଁ । ଗଦ୍ୟ ଛନ୍ଦରେ ନିପୁଣତା ଲାଭ କରି ନ ଥିବାରୁ କାବ୍ୟଟି ସରସ ହୋଇପାରି ନାହିଁ । ଆଲୋଚକଙ୍କ ମତରେ 'ଯୁଦ୍ଧ' କାବ୍ୟଟି ଏକ ନିରସ ଗଦ୍ୟରେ ପରିଣତ ହୋଇଛି ।

ଓଡ଼ିଆ ସାହିତ୍ୟରେ ସମର କାବ୍ୟ ପ୍ରାୟତଃ ନାହିଁ । 'ସମର ତରଙ୍ଗ' ପରେ 'ଯୁଦ୍ଧ' ଏକ ସମର କାବ୍ୟ ହୋଇଥିବାରୁ ଓଡ଼ିଆ ସାହିତ୍ୟ ଇତିହାସରେ ଏହା ଏକ ମର୍ଯ୍ୟାଦାପୂର୍ଣ୍ଣ ସ୍ଥାନ ଯେ ଅଧିକାର କରେ, ଏଥିରେ ସନ୍ଦେହ ନାହିଁ ।

# ପ୍ରବନ୍ଧ

## କଳାଶକ୍ତି

'କଳାଶକ୍ତି' ସଙ୍କଳନରେ ସତର ଗୋଟି ପ୍ରବନ୍ଧ ସନ୍ନିବେଶିତ । ଏଗୁଡ଼ିକ 'ସହକାର' ପତ୍ରିକାର ବିଭିନ୍ନ ସଂଖ୍ୟାମାନଙ୍କରେ ଆତ୍ମପ୍ରକାଶ କରି ୧୯୭୩ ମସିହାରେ ପୁସ୍ତକ ଆକାରରେ ପ୍ରକାଶିତ ହୋଇଥିଲା । ଏହି ସତର ଗୋଟି ପ୍ରବନ୍ଧରୁ ଗୋପୀନାଥ ତାଙ୍କ ସାହିତ୍ୟ ଜୀବନରୁ ଆରମ୍ଭ କରି ଗଳ୍ପ ଓ ଶେଷରେ ଉପନ୍ୟାସ ଜଗତରେ ଉଭା ହୋଇଛନ୍ତି ।

ଗୋପୀନାଥ ପ୍ରବନ୍ଧର ଆଭିମୁଖ୍ୟ ସମ୍ପର୍କରେ ପୁସ୍ତକର ମୁଖବନ୍ଧରେ ସ୍ପଷ୍ଟ କରିଦେଇଛନ୍ତି – ''ବିଂଶ ଶତାବ୍ଦୀରେ ବିଶେଷତଃ ପ୍ରଥମ ମହାଯୁଦ୍ଧ ପରେ ଇଂରାଜୀରେ ଆଧୁନିକ ପ୍ରବନ୍ଧର ବହୁତ ଅଭିବୃଦ୍ଧି ଘଟିଥାଏ । ସେସବୁ ପ୍ରବନ୍ଧମାନଙ୍କ ଦୃଷ୍ଟି ଅତି ଗଭୀର । ବିଶ୍ଳେଷଣ ଅତି ଉନ୍ନତ ଓ ବୌଦ୍ଧିକ, କିନ୍ତୁ ତହିଁରେ ଢମ ନ ଥାଏ, ଆଡ଼ମ୍ବର ନ ଥାଏ । ଗୁରୁଗମ୍ଭୀର ଠାଣି ନ ଥାଏ ... ଅନ୍ତରଙ୍ଗ ବନ୍ଧୁଟି ବାଜେକଥା ଗପିଲା ପରି ସେଭଳି ପ୍ରବନ୍ଧ କଥା ଗପିଯାଏ ... ଓଡ଼ିଆରେ ସେଭଳି ତାତ୍ତ୍ୱିକ ବିଷୟକୁ ସରସ ସରଳ ଉପାୟରେ ଆଲୋଚନା କରିବାକୁ ମନ ହେବାରୁ ତା' ପାଇଁ ନୂଆ ଶୈଳୀ ଖଞ୍ଜି ଏ ପ୍ରବନ୍ଧଗୁଡ଼ିକୁ ଲେଖିଥିଲି ।''

ସେ ପୁଣି ଲେଖିଛନ୍ତି – ''ନୂତନ ଶୈଳୀ ଛଡ଼ା ଓଡ଼ିଆ ଭାଷାରେ କିଛି କିଛି ନୂତନ ପ୍ରୟୋଗ ବି ଏ ପ୍ରବନ୍ଧମାନଙ୍କର ଆଭିମୁଖ୍ୟ ଥିଲା ।''

ଗୋପୀନାଥଙ୍କ ପୂର୍ବରୁ ତାତ୍ତ୍ୱିକ ବିଶ୍ଳେଷଣପାଇଁ ସଂସ୍କୃତ ଭାଷା ଓ ପ୍ରୟୋଗ ଏକମାତ୍ର ପନ୍ଥା ଥିଲା । ମାତ୍ର ଗୋପୀନାଥ ଜୀଅନ୍ତା କଞ୍ଚା କଥିତ ଭାଷାରେ ଭାବ ପ୍ରକାଶ କଲେ । ଭାଷାରେ ନୂଆ ନୂଆ ପ୍ରୟୋଗ ମଧ୍ୟ ତିଆରି କଲେ ।

'ସହକାର' ସାହିତ୍ୟ ପତ୍ରିକାରେ ୧୯୬୩ ସାଲ ଅପ୍ରେଲ ୧୫ ତାରିଖରେ ଗୋପୀନାଥଙ୍କ ପ୍ରବନ୍ଧ 'ବାଇଆକକ' ପ୍ରକାଶ ପାଇ ସୁଧୀବର୍ଗଙ୍କ ଦୃଷ୍ଟି ଆକର୍ଷଣ କଲା । 'ବାଇଆକକ' ପ୍ରବନ୍ଧରେ ଲେଖକ ସାହିତ୍ୟରେ ଆଶ୍ଚର୍ଯ୍ୟବୋଧର କ୍ରିୟା ସମ୍ପର୍କରେ ଆଲୋଚନା କରିଛନ୍ତି । 'ଭଙ୍ଗାଛାତି' ପ୍ରବନ୍ଧରେ ରୋମାଣ୍ଟିସିଜମ୍‌ର କ୍ରିୟା ପ୍ରତିକ୍ରିୟା ସମ୍ପର୍କରେ ଚର୍ଚ୍ଚା କରିଛନ୍ତି । 'ପତରଚକି' ପ୍ରବନ୍ଧରେ ବାରବୁଲା ଚରିତ୍ରର ଅବତାରଣା କରିଛନ୍ତି । 'ତା ଧିନ୍‌ଧିନା' ପ୍ରବନ୍ଧରେ ସାହିତ୍ୟ ସମାଲୋଚନାର କଳା ଓ କାରିଗରୀ ବିଷୟରେ ଚର୍ଚ୍ଚା କରାଯାଇଛି । 'ଲୋକହସା' ପ୍ରବନ୍ଧରେ ସାହିତ୍ୟରେ ହାସ୍ୟରସର ଭୂମିକା ଆଲୋଚନା କରିଛନ୍ତି । 'କଳାଶକ୍ତି' ପ୍ରବନ୍ଧରେ ସୃଜନଶୀଳତା ଓ 'କୁଆଁତାରା' ଶୀର୍ଷକରେ ସାହିତ୍ୟରେ ଆଧୁନିକତା ପ୍ରସଙ୍ଗ ଚର୍ଚ୍ଚା ହୋଇଛି । 'କାରିଣୀ' ଶିରୋନାମରେ କରୁଣ ରସ ସମ୍ପର୍କରେ ଆଲୋଚନା କରାଯାଇଛି । 'ଏପାରି ସେପାରି'

ଶୀର୍ଷକରେ ଗୋପୀନାଥ କବିତା ସମ୍ପର୍କରେ ଚର୍ଚ୍ଚା କରିଛନ୍ତି । 'ଶାରଦୀୟ' ଶୀର୍ଷକରେ ସେ ମଣିଷର ଈଶ୍ୱର-ବିଶ୍ୱାସ ଉପରେ ବହୁ ତଥ୍ୟ ଉପସ୍ଥାପନ କରିଛନ୍ତି । 'ଛାଇ' ପ୍ରବନ୍ଧରେ ସାହିତ୍ୟ ସ୍ରଷ୍ଟାଙ୍କ ଉପରେ ସମକାଳୀନ ଓ ପୂର୍ବ ସାହିତ୍ୟର ପ୍ରଭାବ ସମ୍ପର୍କରେ ଆଲୋଚନା କରିଛନ୍ତି । 'ଶେଷ ଅଙ୍କ' ପ୍ରବନ୍ଧରେ ଗୋପୀନାଥ ନାଟ୍ୟକଳା ସମ୍ପର୍କରେ ବିଶ୍ଳେଷଣ କରିଛନ୍ତି । 'ଗଣ ସାହିତ୍ୟ' ପ୍ରବନ୍ଧଟି ସେକାଳର ପ୍ରଗତିବାଦୀ ସାହିତ୍ୟ ଉପରେ ରଚିତ । ଏହିପରିଭାବେ ଗୋପୀନାଥ ଓଡ଼ିଆ ସାହିତ୍ୟରେ ଭିନ୍ନ ଭିନ୍ନ ଦିଗକୁ ଗଭୀରଭାବେ ବିଶ୍ଳେଷଣ କରିଛନ୍ତି । ସମାଲୋଚନା କ୍ଷେତ୍ରରେ ଗୋପୀନାଥଙ୍କ ପ୍ରବନ୍ଧଗୁଡ଼ିକ ଏକ ବିକଳ୍ପ ବତିଖୁଣ୍ଟ ପରି ପ୍ରତୀୟମାନ ହୁଏ ବୋଲି ଆଲୋଚକ ଦିଲୀପ ସ୍ୱାଇଁ ଦର୍ଶାଇଛନ୍ତି ।

ଓଡ଼ିଆ ସାହିତ୍ୟରେ ଆଧୁନିକତା ସମ୍ପର୍କରେ ଗୋପୀନାଥଙ୍କର ନିଜସ୍ୱ ବ୍ୟାଖ୍ୟା ରହିଛି । ଗୋପୀନାଥ ସାହିତ୍ୟରେ ଆଧୁନିକତାକୁ ସ୍ୱାଗତ କରିଛନ୍ତି । କିନ୍ତୁ ତା' ସହିତ କହିଛନ୍ତି ଯେ ଉନ୍ନତ ଓ ଆଧୁନିକ ଚେର ନିଜ ମାଟି ଭିତରେ ପୋତା ହୋଇଥାଏ ଓ ଏହା ପ୍ରାଣ ପଲ୍ଲବିତ ଓ ବିକଶିତ ହୋଇ ଆକାଶମୁଖୀ ହୁଏ । ଗୋପୀନାଥ ଏ ପ୍ରସଙ୍ଗରେ କହିଛନ୍ତି –

''ସାହିତ୍ୟ ସାରା ବିଶ୍ୱର ସତ, କିନ୍ତୁ ସେ ଗୁଣର ଉପାଦାନ ପ୍ରାଦେଶିକ । ଯେଉଁ 'ଓଡ଼ିଆତ୍ୱ' ଏ ପ୍ରାଣର ସ୍ପନ୍ଦନ, ତାହା ନୂଆ ସାହିତ୍ୟରେ ନାହିଁ । ଆମ ଦେଶର ସାହିତ୍ୟ କାଞ୍ଜି-ତୋରାଣିରୁ ରସ ଟାଣି ବଞ୍ଚିବ, ମାଣ୍ଡିଆ ଜାଉ, କାକରା, ଆରିସା ପିଠାରେ ମୋଟେଇବ । ଏହି ଆକାଶ, ଏଇ ପବନ, ଏଇ ମଳିମୁଣ୍ଡିଆ ଉପାସିଆ ଜାତି, ଆମେ ଏହି ଦେଶରେ ବଟୁଆ ଖୋସି, ଗାମୁଛା ପକାଇ ଜଗତ ଆଗରେ ଠିଆ ହେବା, ପାନ, ଗୁଣ୍ଡି, ପଖାଳ, ଶୁଖୁଆ ଭିତରେ ଆମଠାରେ ଯାହା ମହତ, ଯାହା ଆଦର୍ଶ, ତାକୁ ହିଁ ଉଦ୍‌ବୋଧନ କରି ଜଗତକୁ ଦେବା ... ।''

ଗୋପୀନାଥ ତେବେ ନିଜସ୍ୱ ପରମ୍ପରାକୁ ଗ୍ରହଣ କରିଥିଲେ ମଧ୍ୟ ଆଧୁନିକତାକୁ ବିରୋଧ କରି ନାହାନ୍ତି । ଆଧୁନିକ ଚେତନାରେ ନିଜସ୍ୱ ମୌଳିକତା ପ୍ରଦର୍ଶନ କରିବାପାଇଁ ପରାମର୍ଶ ଦେଇଛନ୍ତି ।

ଗୋପୀନାଥ ମଧ୍ୟ ଓଡ଼ିଆ ସାହିତ୍ୟରେ ଉତ୍କୃଷ୍ଟ ସମାଲୋଚନାର ଅଭାବ ଥିବା ଦର୍ଶାଇଛନ୍ତି । ସାହିତ୍ୟିକମାନଙ୍କର ବିଜ୍ଞାପିତ ହେବାର ଅଭୀପ୍ସାକୁ ତୀବ୍ର ସମାଲୋଚନା କରିଛନ୍ତି ।

ଆଲୋଚକଙ୍କ ଭାଷାରେ – 'କଳାଶକ୍ତି' ... ବାସ୍ତବିକ୍ ଓଡ଼ିଆ ପ୍ରବନ୍ଧ ସାହିତ୍ୟରେ କ୍ରାନ୍ତି ଓ କାମୋଦୀ, ଏକ ସାର୍ଥକ ଶୈଳୀ ବତିଖୁଣ୍ଟ ।

# ନାଟକ

## ମହାପୁରୁଷ

'ମହାପୁରୁଷ' ନାଟକ ଗୋପୀନାଥ ମହାନ୍ତିଙ୍କଦ୍ୱାରା ୧୯୫୮ ମସିହାରେ ରଚିତ ହୋଇଥିଲା । ବୌଦ୍ଧଯୁଗୀୟ କାହାଣୀକୁ ନେଇ ସେ ଏହାକୁ ରୂପ ଦେଇଥିଲେ । ତାଙ୍କ ନିଜ ଭାଷାରେ – ''ଏ ଗବେଷଣା ନୁହେଁ, ମହାଶୂନ୍ୟରୁ ଓହ୍ଲାଇ ପଡ଼ିଥିବା ଖାଲି ଏକ ସ୍ୱପ୍ନର ଝଲକ ।''

ଖ୍ରୀଷ୍ଟୀୟ ସପ୍ତମ ବା ଅଷ୍ଟମ ଶତାବ୍ଦୀର କଥା । ମୁଖ୍ୟ ନାୟକ ସରହ– ଯେ କି ପ୍ରଥମେ ବୌଦ୍ଧଧର୍ମରେ ତାନ୍ତ୍ରିକତା ପ୍ରବେଶ କରାଇଥିଲେ । ଏହି ସରହଙ୍କ ପୂର୍ବ ନାମ ହେଉଛି ରାହୁଲ ଭଦ୍ର । 'ଉଡ଼ଡିଆଣ' ଦେଶର ରାଜ୍ଞୀ ନଗରରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ଥିଲେ ଜଣେ ବ୍ରାହ୍ମଣ ପଣ୍ଡିତ ଓ ମାତା ଥିଲେ ଡାକିନୀ । ସରହ ବ୍ରାହ୍ମଣ ଓ ବୌଦ୍ଧ ଉଭୟ ଶାସ୍ତ୍ରରେ ପାରଙ୍ଗମ ଥିଲେ । ସେ ଓଡ଼ିଶାର ଚୋକେଶକଳ୍ପ ନାମକ ଜଣେ ବ୍ୟକ୍ତିଙ୍କ ଠାରୁ ମନ୍ତ୍ରଯାନ ଶିକ୍ଷା କଲେ । ସେ ମହାମୁଦ୍ରା କରି ସିଦ୍ଧିଲାଭ କଲେ । ତା' ପରଠାରୁ ସେ ସରହ ନାମରେ ପରିଚିତ ହେଲେ । ସେ ନିଜର ଅଲୌକିକ କଳା ଦ୍ୱାରା ରାଜା ରତ୍ନପାଳଙ୍କୁ ବଶୀଭୂତ କରି ବୌଦ୍ଧଧର୍ମରେ ଦୀକ୍ଷିତ କରାଇଲେ । ପରେ ପରେ ପ୍ରଜାମାନେ ବୌଦ୍ଧଧର୍ମ ଗ୍ରହଣ କଲେ । ସରହ ମଧ୍ୟ ମହାରାଷ୍ଟ୍ର ଗଲେ ଓ ସେଠାରେ ଯୋଗବଳରେ ଏକ ବ୍ୟାଧକନ୍ୟା ସହିତ ମିଳିତ ହୋଇ ବୁଦ୍ଧ କପାଳତନ୍ତ୍ର ପ୍ରବର୍ତ୍ତନ କଲେ ।

ନାଟକରେ କଳିଙ୍ଗର ଐତିହ୍ୟ ଓ ପରମ୍ପରାର ଜୟଗାନ କରାଯାଇଛି । କଳିଙ୍ଗର ନୌବାଣିଜ୍ୟର ଚିତ୍ର ମଧ୍ୟ ସ୍ଥଳ-ବିଶେଷରେ ଦିଆଯାଇଛି । ଲେଖକ ପାରସ୍ୟର ଦୂତଙ୍କ ମୁଖରେ କଳିଙ୍ଗର ଗୌରବ ଗାଥା ଗାନ କରାଇଛନ୍ତି, ଯଥା –

''ପାରସ୍ୟରୁ ଆସିଲି, ଆପଣଙ୍କ ତାମ୍ରଲିପ୍ତି ପୋତାଶ୍ରୟ ପର୍ଯ୍ୟନ୍ତ ବୁଲି ଆସିଲି । ସବୁଠି ଦେଖୁଛି କଳିଙ୍ଗ ଶକ୍ତିଶାଳୀ, କଳିଙ୍ଗ ଧନିକ, କଳିଙ୍ଗ ଜ୍ଞାନୀ । ପୃଥିବୀର ଏ ଅଦ୍ଭୁତ ଜାତି ବିଷୟରେ ମୋର କିଛି ପରିଚୟ ଆବଶ୍ୟକ ଥିଲା, ତାହା ମୁଁ ପାଇଛି । ସମୁଦ୍ରର ଉଡ଼ନ୍ତା ଚଢ଼େଇ ମଧ୍ୟ କହିବ କଳିଙ୍ଗ କଥା ।''

ଗୋପୀନାଥ କିନ୍ତୁ ପୋଖତ ନାଟକ ଶିଳ୍ପୀ ନୁହନ୍ତି । ବର୍ଣ୍ଣନାବହୁଳତା ତାଙ୍କ ନାଟକର ପ୍ରଧାନ ଦୁର୍ବଳତା । କବିସୁଲଭ ବର୍ଣ୍ଣନା ନାଟକର ମୂଳଲକ୍ଷ୍ୟକୁ ବ୍ୟାହତ କରିଛି । ଦୃଶ୍ୟ ବିଭାଜନ ସମ୍ପର୍କରେ ତାଙ୍କର ବିଶେଷ ଜ୍ଞାନ ନ ଥିବା ଜଣାଯାଏ । ଅଭିନୟର ସୀମା-ସରହଦ ମଧ୍ୟ ଖୁବ୍ ବେଶି । ଏତେ ଗୁଡ଼ାଏ ସ୍ଥାନକୁ ନାଟକରେ ଦେଖାଇବା ସମ୍ଭବ ନୁହେଁ । ବହୁ ଅନାଟକୀୟ କଥାବସ୍ତୁ ପରିବେଷଣ କରାଯାଇଛି–ଯାହାର ଅଭିନୟ କଷ୍ଟସାଧ୍ୟ । ଗୋପୀନାଥଙ୍କ ରଚିତ 'ମହାପୁରୁଷ' ନାଟକକୁ ନାଟ୍ୟକାବ୍ୟ କହିବା ଅଧିକ ଯୁକ୍ତିଯୁକ୍ତ ।

## ଜୀବନୀ

ଗୋପୀନାଥ ମହାନ୍ତି ଓଡ଼ିଆ ସାହିତ୍ୟରେ ସବୁ ଦିଗନ୍ତରେ ଲେଖନୀ ଚାଳନା କରିଛନ୍ତି । ଗଳ୍ପ, ଉପନ୍ୟାସ ଭଳି ତାଙ୍କ ଜୀବନୀ ପୁସ୍ତକ ମଧ୍ୟ ବେଶ୍ ଉପାଦେୟ । ସେ ରଚନା କରିଛନ୍ତି ଦୁଇ ଜଣ ଦେଶଭକ୍ତଙ୍କ ଜୀବନୀ । ଜଣେ ହେଲେ ପୁଣ୍ୟାତ୍ମା ଗୋପବନ୍ଧୁ ଚୌଧୁରୀ ଓ ଅନ୍ୟ ଜଣେ ପୁଣ୍ୟାତ୍ମା ଉତ୍କଳମଣି ଗୋପବନ୍ଧୁ ଦାସ । ଓଡ଼ିଶାପାଇଁ, ଓଡ଼ିଆଙ୍କପାଇଁ ଏହି ଦୁଇ ମନୀଷୀଙ୍କ ପ୍ରାଣ କାନ୍ଦି ଉଠୁଥିଲା । ସେ ପୁସ୍ତକଗୁଡ଼ିକ ହେଲା 'ଦୀପଂ ଜ୍ୟୋତି', 'ଧୂଳି ମାଟିର ସନ୍ଥ' ଓ 'ଉତ୍କଳମଣି' ।

ଗୋପବନ୍ଧୁ ଚୌଧୁରୀ ହେଉଛନ୍ତି କଟକ ଜିଲ୍ଲା ଖେରସର ଜମିଦାର ରାୟବାହାଦୁର ଗୋକୁଳାନନ୍ଦ ଚୌଧୁରୀଙ୍କ ପୁତ୍ର । ଇଂରେଜ ସରକାରଙ୍କ ନୀତିର ପ୍ରତିବାଦ କରି ସେ ଚାକିରିରୁ ଇସ୍ତଫା ଦେଇ ଜନସେବାକୁ ଜୀବନର ବ୍ରତ କରିଥିଲେ । କୌଣସି ପଦପଦବୀରେ ସେ ଶେଷ ପର୍ଯ୍ୟନ୍ତ ନ ରହି ଆଦର୍ଶ ଜୀବନ ଯାପନ କରିଥିଲେ ।

## ଦୀପଂ ଜ୍ୟୋତି

ଚୌଧୁରୀ ବଂଶର ଆଦିବୃତ୍ତାନ୍ତ ଠାରୁ ଆରମ୍ଭ କରି ୧୯୨୧ ପର୍ଯ୍ୟନ୍ତ ଅର୍ଥାତ୍ ଚୌଧୁରୀ ବଂଶର ଜୀବନର ନୂଆ ମୋଡ଼ ପର୍ଯ୍ୟନ୍ତ ଘଟଣାକୁ କେନ୍ଦ୍ର କରି ଗୋପୀନାଥ ରଚନା କରିଛନ୍ତି ତାଙ୍କର ପ୍ରଥମ ଜୀବନୀ ପୁସ୍ତକ 'ଦୀପଂ ଜ୍ୟୋତି' । ଏହା ୧୯୬୫ ମସିହାରେ ପ୍ରକାଶିତ ହୋଇଥିଲା । ଏହି ପୁସ୍ତକର ମୁଖବନ୍ଧ ରଚନା କରିଥିଲେ ସନ୍ଥ ଆଚାର୍ଯ୍ୟ ବିନୋବା ଭାବେ ।

## ଧୂଳିମାଟିର ସନ୍ଥ

୧୯୨୧ ମସିହାରୁ ୧୯୫୮ ମସିହା ପର୍ଯ୍ୟନ୍ତ ଗୋପବନ୍ଧୁ ଚୌଧୁରୀଙ୍କର ଜୀବନର ଘଟଣା ସ୍ଥାନ ପାଇଛି ଦ୍ୱିତୀୟ ଜୀବନୀ ପୁସ୍ତକ 'ଧୂଳିମାଟିର ସନ୍ଥ'ରେ। ଗୋପୀନାଥ ଗ୍ରନ୍ଥର ଭୂମିକାରେ ଲେଖିଛନ୍ତି –

''ଏ ପୂଜ୍ୟ ଗୋପବନ୍ଧୁ ଚୌଧୁରୀଙ୍କ ଜୀବନୀ କେବଳ ଜଣେ ବ୍ୟକ୍ତିଙ୍କର ଜୀବନ କାହାଣୀ ନୁହେଁ, ଗୋଟିଏ ସମୟର ଇତିହାସ, ନାନା ଉଦ୍ୟମର ଇତିହାସ ଓ ନାନା ବ୍ୟକ୍ତିଙ୍କ ଆତ୍ମତ୍ୟାଗର କାହାଣୀ ବି ତା' ସହିତ ଅଙ୍ଗାଙ୍ଗୀଭାବେ ଜଡ଼ିତ ।

× × ×

ଗୋପବନ୍ଧୁ ଚୌଧୁରୀ ଭାରତରେ ଓ ଉତ୍କଳରେ ସୁବିଦିତ ଜଣେ ପ୍ରାତଃସ୍ମରଣୀୟ ମହାପୁରୁଷ ଥିଲେ । ... କଂଗ୍ରେସରେ, ସର୍ବୋଦୟରେ କି ଭୂଦାନ ଆନ୍ଦୋଳନର ମହାନ୍ ନେତା ଥିଲେ । ସେତିକି ନୁହେଁ, ଦେଶସେବାପାଇଁ ସପରିବାର ତାଙ୍କର ତ୍ୟାଗ ଅତୁଳନୀୟ । ତାଙ୍କ ବ୍ୟକ୍ତିତ୍ୱ ଓ ଜୀବନ ଅନନ୍ୟସାଧାରଣ ଥିଲା । ସେ ଜଣେ ବ୍ୟକ୍ତି ହୋଇ ସୁଦ୍ଧା ନିଜେ ହୋଇଥିଲେ ଏକ ବିଶାଳ ଅନୁଷ୍ଠାନ । ନାନା କର୍ମ ଓ ପ୍ରେରଣାର ସେ ଉତ୍ସ ଥିଲେ ଓ କେନ୍ଦ୍ର ଥିଲେ । ଦେଶର ଅସଂଖ୍ୟ ବ୍ୟକ୍ତିଙ୍କ ଉପରେ

ତାଙ୍କ ଚରିତ୍ର, ଆଦର୍ଶ ଓ ଦୃଷ୍ଟାନ୍ତର ପ୍ରଭାବ ପଡ଼ିଥିଲା ଓ ଅନେକଙ୍କ ଜୀବନକୁ ନୂଆ ମୋଡ଼ ଦେଇଥିଲା ।''

ଗୋପବନ୍ଧୁ ଚୌଧୁରୀଙ୍କୁ ଗୋପୀନାଥ ଯେଉଁ ବିଶିଷ୍ଟ ଆସନ ଦେଇଛନ୍ତି ତାହା କଳ୍ପନା କରିହେବ ନାହିଁ । ତାଙ୍କ ମତରେ ଗୋପବନ୍ଧୁଙ୍କ ବିଷୟରେ ବହୁ ପୁସ୍ତକ ଲେଖାଯାଇପାରେ ଓ ଜଣେ ଲେଖକ ନୁହେଁ, ବହୁ ଲେଖକ ତାହା ଲେଖିବା ପ୍ରୟୋଜନ ।

ପଣ୍ଡିତ ଗୋପବନ୍ଧୁ ଦାସଙ୍କ କର୍ମମୟ ଜୀବନକୁ ଆଧାର କରି ଗୋପୀନାଥ ରଚନା କରିଛନ୍ତି ତୃତୀୟ ଜୀବନୀ ପୁସ୍ତକ – 'ଉତ୍କଳମଣି' ।

**ଉତ୍କଳମଣି**

ଗୋପୀନାଥ ଗୋପବନ୍ଧୁ ଚୌଧୁରୀଙ୍କ ପ୍ରତ୍ୟକ୍ଷ ସମ୍ପର୍କରେ କିଛି ପରିମାଣରେ ଆସିଥିଲେ । ତେଣୁ ତାଙ୍କୁ କୌଣସି ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ି ନ ଥିଲା । କିନ୍ତୁ ଉତ୍କଳମଣି ଗୋପବନ୍ଧୁଙ୍କ ଜୀବନୀ ରଚନା କଲାବେଳକୁ ତାଙ୍କୁ ଅନ୍ୟ ଉପରେ ନିର୍ଭର କରିବାକୁ ପଡ଼ିଲା । ଗୋପୀନାଥଙ୍କ ଜନ୍ମକାଳ ହେଉଛି ୧୯୧୪ ମସିହା । ଗୋପବନ୍ଧୁଙ୍କ ଦେହାନ୍ତ ୧୯୨୮ ମସିହାରେ ହୋଇଥିଲା । ତେଣୁ ଗୋପୀନାଥ ଗୋପବନ୍ଧୁଙ୍କ ପ୍ରତ୍ୟକ୍ଷ ସମ୍ପର୍କରେ ଆସି ପାରି ନ ଥିଲେ । ସେ ତେଣୁ ଗୋପବନ୍ଧୁ ଦାସଙ୍କ ପ୍ରତ୍ୟକ୍ଷ ସମ୍ପର୍କରେ ଆସିଥିବା ଜଣେ ବ୍ୟକ୍ତିଙ୍କୁ ଖୋଜୁଥିଲେ । ତାଙ୍କୁ ମଧ୍ୟ ମିଳିଥିଲା । ସେ ହେଲେ ରାମ ବାରିକ – ଗୋପବନ୍ଧୁଙ୍କ ସେବାକାରୀ । ସେ ତାଙ୍କ ସହିତ ରହୁଥିଲେ । କେମିତି ଖାଉଥିଲେ, କେମିତି ଚଳୁଥିଲେ, ସକାଳୁ ସଞ୍ଜଯାଏ କ'ଣ କରୁଥିଲେ ବା କହୁଥିଲେ – ସବୁ ତାଙ୍କୁ ଜଣା ଥିଲା । ଗୋପୀନାଥ ୧୯୫୮ ମସିହାରେ ଭେଟିଲେ ରାମ ବାରିକଙ୍କୁ ପ୍ରଥମ କରି । ଅଦ୍ଭୁତ ଉପାୟରେ ମଧ୍ୟ ଜୀବନୀ ଲେଖା ଚାଲିଲା । ଆଗରେ ରହେ ଉତ୍କଳମଣିଙ୍କ ଫଟୋ । ଗୋପୀନାଥ ରାମ ବାରିକଙ୍କ ସଙ୍ଗେ ଗପ ଆରମ୍ଭ କରିଦିଅନ୍ତି । ଆଉ ତା'ପରେ ରାମ ବାରିକ ଅତୀତ ଭିତରେ ହଜିଯାଆନ୍ତି । ମନେ ପକାଇ ଚାଲନ୍ତି ସେ ଅତୀତ କଥାଗୁଡ଼ାକ । ଆଉ ଗୋପୀନାଥ ସେହିଭଳି ଲେଖି ଚାଲୁଥିଲେ । ସେହି ଲେଖାଗୁଡ଼ିକୁ ସାହିତ୍ୟର ଭାଷା ଦେଇ ରଚନା କଲେ ଜୀବନୀ ପୁସ୍ତକ 'ଉତ୍କଳମଣି' ।

'ଉତ୍କଳମଣି'ର ମୁଖବନ୍ଧରେ ଗୋପୀନାଥ ଲେଖିଛନ୍ତି – ''ଓଡ଼ିଶାର ସାମାଜିକ ଓ ରାଜନୈତିକ ଇତିହାସରେ ପଣ୍ଡିତ ଗୋପବନ୍ଧୁଙ୍କର ଯେଉଁ ଆସନ ରହିଛି ଓ ରହିଥିବ, ତା' ପ୍ରତି ଯଥୋଚିତ ବିନୟ, ଭକ୍ତି ଓ ମର୍ଯ୍ୟାଦା ସହକାରେ ଗୋଟିଏ ପୂର୍ଣ୍ଣାଙ୍ଗ, ପ୍ରାମାଣିକ ଜୀବନ ଅଧ୍ୟୟନ ଗ୍ରନ୍ଥ ଲାଗି ତାଙ୍କର ସ୍ମାରକ ହେଲା ଭଳି ଗୋଟିଏ ସ୍ଥାୟୀ ପ୍ରଦର୍ଶନପାଇଁ ଏ ଦେଶ ଅପେକ୍ଷା କରି ରହିଛି । ଯେତେଦିନ ପର୍ଯ୍ୟନ୍ତ ତାହା କରିବାକୁ ଏ ଦେଶ ଯୋଗ୍ୟ ନ ହୋଇଛି, ସେତେଦିନ ପର୍ଯ୍ୟନ୍ତ ସେଥିପାଇଁ ଅପେକ୍ଷା କରାଯାଉଥିବ ।''

ଗୋପୀନାଥ ରଚନା କରିଛନ୍ତି ଏହି ତିନୋଟି ଜୀବନୀ ପୁସ୍ତକ, 'ଦୀପଂଜ୍ୟୋତି', 'ଧୂଳିମାଟିର ସନ୍ଥ' ଆଉ 'ଉତ୍କଳମଣି' । ଏହି ତିନୋଟିକୁ ପାଠ କଲେ ଲାଗେ କେହି ଯେପରି ଅଙ୍ଗେଲିଭା କାହାଣୀକୁ ମନେ ପକାଉଛି ।

ଆଲୋଚକଙ୍କ ଭାଷାରେ – "ତିନୋଟି ପୁସ୍ତକରେ ଗୋପୀବାବୁ କହିଛନ୍ତି ଦୁଇ ଜଣ ମହାରଥୀ ସମାଜସେବୀଙ୍କ କଥା, ସମୟର କଥା, ଓଡ଼ିଶାର କଥା ଏବଂ ସର୍ବୋପରି କିଛି ନିଜ କଥା ।"

## ଅନୁବାଦ

ଓଡ଼ିଆ ସାହିତ୍ୟରେ ଜଣେ ସାର୍ଥକ ଅନୁବାଦକଭାବେ ଗୋପୀନାଥ ଖ୍ୟାତି ଲାଭ କରିଛନ୍ତି । ସେ ଇଂରାଜୀ, ହିନ୍ଦୀ ଆଦିରୁ କେତେଗୁଡ଼ିଏ ଉପାଦେୟ ଗ୍ରନ୍ଥ ଅନୁବାଦ କରିଛନ୍ତି । 'ଆଜି ଓ କାଲି' 'India today and tomorrow'ର ଅନୁବାଦ । ଇଂରାଜୀରେ ସରଳ ଓ ସହଜ ଅନୁବାଦ ଯୋଗୁଁ ଏହା ଆଦୃତ ହୋଇଥିଲା । ୧୯୬୦ ମସିହାରେ କବିଗୁରୁ ରବୀନ୍ଦ୍ରନାଥଙ୍କ ଓଡ଼ିଆ ଅନୁବାଦ ପଢ଼ିବାପାଇଁ ଅଧିକ ଆଗ୍ରହ ଦେଖାଯାଇଥିବା ଜଣାଯାଏ । ଗୋପୀନାଥ ମଧ୍ୟ ପଞ୍ଚଦଶ ଶତାବ୍ଦୀର ଅଜ୍ଞାତ ଇଂରାଜୀ ଲେଖକଙ୍କ ଗଳ୍ପ 'The Welshman's Confession'ର ଅନୁବାଦ କରିଥିଲେ । ଅନୁବାଦ ହୋଇଥିବା ପୁସ୍ତକର ନାମ 'ବୁଝାମଣା' । ସେହିପରି 'King Lewis and hundred man'ର ଓଡ଼ିଆ ଅନୁବାଦ କରିଛନ୍ତି 'ବନ ନିର୍ଝର' ନାମରେ । ଗର୍କିଙ୍କ 'My University'ର ସଫଳ ଅନୁବାଦ ଗୋପୀନାଥ ୧୯୭୦ ମସିହାରେ କରି ସୋଭିଏତ୍ ଲ୍ୟାଣ୍ଡ ନେହରୁ ପୁରସ୍କାର ଲାଭ କରିଥିଲେ । ବଙ୍ଗଳା ଓ ଇଂରାଜୀ ପରି ହିନ୍ଦୀ ଭାଷାରେ ମଧ୍ୟ ଗୋପୀନାଥଙ୍କର ପାଣ୍ଡିତ୍ୟ ଥିଲା । ୧୯୭୩ ମସିହାରେ ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ ଦ୍ୱାରା 'କଥା ଭାରତୀ' ହିନ୍ଦୀ ଗ୍ରନ୍ଥମାଳାର ଓଡ଼ିଆ ଅନୁବାଦ କରିଥିଲେ । ସେ ହିନ୍ଦୀ ଭାଷାରେ ଖାଣ୍ଟି ଶୁଦ୍ଧ ଗ୍ରାମ୍ୟ ଓଡ଼ିଆ ପ୍ରୟୋଗ କରି ପ୍ରଶଂସିତ ହୋଇଥିଲେ । କେନ୍ଦ୍ର ସାହିତ୍ୟ ଏକାଡେମୀର ଅନୁରୋଧକ୍ରମେ ମଧ୍ୟ ସୁବୋଧ ଚନ୍ଦ୍ର ସେନଗୁପ୍ତଙ୍କ ରଚିତ ଇଂରାଜୀ ଗ୍ରନ୍ଥ 'ବଙ୍କିମ ଚନ୍ଦ୍ର ଚାଟାର୍ଜୀ'ର ଓଡ଼ିଆ ଅନୁବାଦ ସେ ୧୯୮୫ ମସିହାରେ କରିଥିଲେ । ଏହା ମଧ୍ୟ ସଫଳ ଅନୁବାଦ ବୋଲି ସ୍ୱୀକୃତି ପାଇଛି ।

ବିଶ୍ୱବିଖ୍ୟାତ ଲିଓ ଟଲଷ୍ଟୟଙ୍କ ପୁସ୍ତକ 'War and Peace'ର ଓଡ଼ିଆ ଅନୁବାଦ ମଧ୍ୟ ଶ୍ରୀ ମହାନ୍ତି କରିଛନ୍ତି । ସେ ଅବଶ୍ୟ ରୁଷିଆ ଭାଷାରେ ଲିଖିତ ପୁସ୍ତକ ପଢ଼ି ନାହାନ୍ତି, ଏହାକୁ ଇଂରାଜୀ ପୁସ୍ତକରୁ ପଢ଼ି ଏହାର ଭାବରସକୁ ନିଜସ୍ୱ କରିପାରିଛନ୍ତି । ଏହା ମଧ୍ୟ ଆଦର ଲାଭ କରିଥିବା ଜଣାଯାଏ ।

**ଅନ୍ୟାନ୍ୟ**

ଗୋପୀନାଥ କୋରାପୁଟରେ ଥିବା ସମୟରେ 'କୁଇ କନ୍ଧ ଭାଷା ତତ୍ତ୍ୱ', 'ଗଦବା ଭାଷା ପରଚ', 'କନ୍ଧ ପରଜା ସ୍ତୋତ୍ରହ ଓ ସଙ୍ଗୀତ' ରଚନା କରିଥିଲେ । ପ୍ରଥମ ଦୁଇଟି ଗୋପବନ୍ଧୁ ଚୌଧୁରୀଙ୍କ ଉଦ୍ୟମରେ ୧୯୫୬ ମସିହାରେ ଅଖିଳ ଭାରତ ସର୍ବସେବା ସଂଘ, ୱାର୍ଦ୍ଧାଙ୍କଦ୍ୱାରା ପ୍ରକାଶ ପାଇଥିଲା । ସେ ମଧ୍ୟ କନ୍ଧମାନଙ୍କ ସ୍ତୋତ୍ର ଓ ସ୍ୱର ଦେଇ ପାଞ୍ଚୋଟି ଗୀତ ରଚନା କରିଥିଲେ । ଏହି ଗୀତ ସଙ୍କଳନର ନାମ ହେଲା 'କୁଲି ଲୋକୁତି ନୋହି ପଣକୁ' । ଏହା ମଧ୍ୟ ୧୯୫୬ ମସିହାରେ ଉତ୍କଳ ଖଦି ମଣ୍ଡଳଦ୍ୱାରା ପ୍ରକାଶିତ ହୋଇଥିଲା । ଗୋପୀନାଥ ସଉରା ଭାଷା ସମ୍ପର୍କରେ ଏକ ପୁସ୍ତକ ରଚନା କରିଥିଲେ । ସେଥିରେ ସେ ସଉରା ଭାଷାର ବୈଶିଷ୍ଟ୍ୟ ଆଲୋଚନା କରିଛନ୍ତି । ଏହିପରି କନ୍ଧ, ସଉରା ଓ ଗଦବା ଭାଷାକୁ ଆୟତ୍ତ କରି ସେ ନିଜର ଭାଷା ଜ୍ଞାନର ପରିଚୟ ଦେଇଛନ୍ତି ।

## ଆତ୍ମଜୀବନୀ

**ସ୍ରୋତସ୍ୱତୀ**

ଗୋପୀନାଥଙ୍କ ଆତ୍ମଜୀବନୀ ହେଉଛି 'ସ୍ରୋତସ୍ୱତୀ' । ଏହା ତିନୋଟି ଭାଗରେ ବିଭକ୍ତ । ଏହି ଭାଗଗୁଡ଼ିକ ଲେଖକଙ୍କ ମୃତ୍ୟୁପରେ ପ୍ରକାଶ ପାଇଛି ।

'ସ୍ରୋତସ୍ୱତୀ'ର ପ୍ରଥମଭାଗ ଲେଖା ଆରମ୍ଭ ହୋଇଛି ୨୫.୯.୧୯୬୭ ମସିହାରେ । ସେତେବେଳକୁ ତାଙ୍କୁ ତେପନ ବର୍ଷ ବୟସ । ସେତେବେଳକୁ ସେ ଉଚ୍ଚକୋଟୀର ଲେଖକଭାବେ ସ୍ୱୀକୃତି ପାଇସାରିଥିଲେ ।

'ସ୍ରୋତସ୍ୱତୀ'ର ପ୍ରଥମ ଭାଗରେ ମାତ୍ର ଷୋଳ ବର୍ଷର ଜୀବନ ଚିତ୍ରିତ ହୋଇଛି । ଏଥିରେ ତାଙ୍କର ବଂଶ ପରମ୍ପରା, ବାଲ୍ୟକାଳ ଓ ବିଦ୍ୟାଳୟର ଘଟଣାମାନ ବର୍ଣ୍ଣନା କରାଯାଇଛି । ଗୋପୀନାଥ ବାପମା'ଙ୍କର ନବମ ସନ୍ତାନ ଥିଲେ । ସେ ଖେଳାବୁଲାରେ ସମୟ କଟାଉଥିଲେ । ଶେଷରେ ବଡ଼ଭାଇଙ୍କ ଆକଟ ଓ ବାପାଙ୍କ ଭର୍ତ୍ସନା ଯୋଗୁଁ ପାଠପଢ଼ାରେ ଆଗ୍ରହୀ ହେଲେ । ବାପା, ବୋଉ, ବିଦ୍ୟାଳୟ ଓ ବନ୍ଧୁ ଓ ନିଜ ଘରର ବର୍ଣ୍ଣନା ଏଥିରେ ଦେଖିବାକୁ ମିଳେ । ସରଳ, ସାବଲୀଳ ଭାଷାରେ ଲେଖା ହୋଇଥିବାରୁ ଏହା ନିଚ୍ଛକ ଗପବହିଟିଏ ପଢ଼ିଲା ପରି ଲାଗେ ।

'ସ୍ରୋତସ୍ୱତୀ'ର ଦ୍ୱିତୀୟ ଭାଗରେ ଲେଖକଙ୍କର ଆଠ ବର୍ଷର ଜୀବନ କାହାଣୀ ବର୍ଣ୍ଣିତ । ଏଥିରେ ମୁଖ୍ୟତଃ କଲେଜ ଶିକ୍ଷାର ନାନା ସ୍ମୃତି ସ୍ଥାନ ପାଇଛି । ଗୋପୀନାଥ

ମଧ୍ୟ ଏହି ସମୟରେ ସାହିତ୍ୟିକ ଭାବରେ ତାଙ୍କର ଜୀବନ ଗଢ଼ିଛନ୍ତି । ନିଜର ପ୍ରଥମ ଲେଖା 'ବାଇଆ କକ' ପ୍ରକାଶ କରାଇଛନ୍ତି । ଏହା ପରଠୁ ତାଙ୍କର ସାହିତ୍ୟ ସାଧନା ସୋପାନ ପରେ ସୋପାନ ଅତିକ୍ରମ କରି ଚାଲିଛି । କଲେଜରେ ଅଧ୍ୟୟନ କରୁଥିବା ବହୁ ବନ୍ଧୁମାନଙ୍କର ସ୍ମୃତିଚାରଣ କରିଛନ୍ତି । କେତେଜଣ ସାଧାରଣ ଜୀବନ କଟାଉଥିବା ଓ ଆଉ କେତେକ ଜୀବନରେ ନାମ କରିଥିବା କଥା ବର୍ଣ୍ଣନା କରିଛନ୍ତି ।

'ସ୍ରୋତସ୍ୱତୀ'ର ତୃତୀୟ ଭାଗରେ ଲେଖକ ତାଙ୍କର ବୈବାହିକ ଜୀବନ, ଅତି ଚିତ୍ତାକର୍ଷକଭାବେ ବର୍ଣ୍ଣନା କରିଛନ୍ତି । ପତ୍ନୀଙ୍କ ପ୍ରତି ଆନୁଗତ୍ୟ ଓ ପତ୍ନୀଙ୍କ ପ୍ରେରଣା ମଧ୍ୟ ତାଙ୍କୁ ଜୀବନ ପଥରେ ଅଗ୍ରସର କରାଇଛି ବୋଲି ଉଲ୍ଲେଖ କରିଛନ୍ତି । ତାଙ୍କର ଚାକିରି ଜୀବନ ମଧ୍ୟ ଅତି ମାର୍ମିକଭାବେ ପ୍ରକାଶ କରିଛନ୍ତି । ଚାକିରିରେ ପ୍ରଥମ ଦିନ ସେ ଉପରିସ୍ଥ କର୍ମଚାରୀ ଭରତ ଚନ୍ଦ୍ର ନାୟକଙ୍କୁ ଦେଖା କରିବାକୁ ଯାଇଛନ୍ତି । ସେଠାରେ ତାଙ୍କର ମନ୍ତବ୍ୟ ଶୁଣିବାକୁ ପାଇଛନ୍ତି – ''ବିଶ୍ୱବିଦ୍ୟାଳୟର ସବୁଠୁଁ ଭଲ ଫୁଲଗୁଡ଼ିକ ଚାଲି ଆସିଲେ ଏଠି ମଉଳି ପଡ଼ିବାକୁ ।''

ଏହାର ସତ୍ୟତା ପରବର୍ତ୍ତୀ ଜୀବନରେ ଗୋପୀନାଥ ଉପଲବ୍ଧି କରିପାରିଛନ୍ତି । ସେ ଅନୁଭବ କରିଛନ୍ତି ଯେ ଚାକିରି ଜୀବନ ହେଉଛି ପରାଧୀନ ଜୀବନ । ପରାଧୀନ ଜୀବନରେ ଆତ୍ମମର୍ଯ୍ୟାଦା ଓ ମଣିଷପଣିଆକୁ ବଳି ପକାଇବାକୁ ହୁଏ । ପଦୋନ୍ନତି ଲୋଭରେ ନୀତିନିୟମକୁ ଏଡ଼ାଇଦେବାକୁ ପଡ଼େ । ଏପରିକି ବିବେକକୁ ଭୁଲି ଯିବାକୁ ହୁଏ । ଲେଖକ ଏହା ତାଙ୍କ ଜୀବନରେ କରି ନାହାନ୍ତି । ସେ ନିର୍ଭୀକ ଭାବରେ କାର୍ଯ୍ୟ କରିଚାଲିଛନ୍ତି । ନିଜ ଆଦର୍ଶ ଓ ସିଦ୍ଧାନ୍ତରେ ଅଟଳ ରହି ଯାହା ଠିକ୍ ମନେ କରିଛନ୍ତି, ତାହା କରିଛନ୍ତି। ଭଲ କାମ କରି ମଧ୍ୟ ସେ ପଦୋନ୍ନତି ପାଇ ନାହାନ୍ତି । ପାଇବାପାଇଁ ମଧ୍ୟ କେବେ ଲାଳାୟିତ ହୋଇ ନାହାନ୍ତି । ଚାକିରି ଜୀବନର ତୀବ୍ର ଅଭିଜ୍ଞତାକୁ ନେଇ ସେ ପରବର୍ତ୍ତୀ କାଳରେ ରଚନା କରିଛନ୍ତି 'ଦାନାପାଣି' ଉପନ୍ୟାସ ।

୧୯୪୦ ମସିହାରେ ଗୋପୀନାଥ କୋରାପୁଟକୁ ବଦଳି ହୋଇଯିବାପରେ ଆଦିବାସୀଙ୍କ ସଂସ୍ପର୍ଶରେ ଆସିଛନ୍ତି । ସେମାନଙ୍କ ସରଳ ନିଷ୍କପଟ ଜୀବନ ପ୍ରଣାଳୀ ଦେଖି ମୁଗ୍ଧ ହୋଇଛନ୍ତି । ସେମାନଙ୍କ ନିକଟତର ହୋଇଛନ୍ତି ମଧ୍ୟ । ସେ ଆଦିବାସୀ ପିଣ୍ଡାରେ ବସିଛନ୍ତି । କନ୍ଧ ବଇଁଶୀ ବଜାଇଛନ୍ତି । ସେମାନେ ବି ତାଙ୍କ ସହିତ ବଜାଇଛନ୍ତି । ତାଙ୍କ ସଙ୍ଗେ ଗୀତ ଗାଇଛନ୍ତି । ସେମାନଙ୍କ ଜୀବନର ଦୁଃଖ ସୁଖ ସେ ଟିପି ନେଇଛନ୍ତି । ଆତ୍ମଜୀବନୀର ଅଧିକାଂଶ ସ୍ଥାନରେ ଗୋପୀନାଥ ତାଙ୍କୁ ଅନ୍ତରର ଶ୍ରଦ୍ଧା ଜଣାଇଛନ୍ତି । ଆଉ ରଚନା କରିଛନ୍ତି ଆଦିବାସୀମାନଙ୍କ ଜୀବନ ନେଇ ଗଳ୍ପ ଉପନ୍ୟାସ । ସେହି ଅନୁଭୂତି, ଅଭିଜ୍ଞତାକୁ ନେଇ ଋଦ୍ଧିମନ୍ତ କରିଛନ୍ତି ସାରସ୍ୱତ ସୃଷ୍ଟିକୁ ।

ସମାଲୋଚକଙ୍କ ଭାଷାରେ – 'ଗୋପୀନାଥ ମହାନ୍ତିଙ୍କ ଆତ୍ମଜୀବନୀ ଅତ୍ୟନ୍ତ ମର୍ମସ୍ପର୍ଶୀ । ସତ୍ୟ, ନ୍ୟାୟ, ନିଷ୍ଠା, ମାନବିକତାର ଏହା ମୂର୍ତ୍ତିମନ୍ତ ଆଲେଖ୍ୟ । ଅଶ୍ରୁ ଓ କାରୁଣ୍ୟର ମଧ୍ୟ ଏହା ଜୀବନ୍ତ ଭାଷ୍ୟ... ।''

ଗୋପୀନାଥଙ୍କ 'ସ୍ରୋତସ୍ୱତୀ' ତିନୋଟି ଭାଗରେ ପ୍ରକାଶ ପାଇଥିଲେ ହେଁ ସମ୍ପୂର୍ଣ୍ଣ ନୁହେଁ । ତିନୋଟି ଭାଗରେ ଅଛି ଚଉତିରିଶ ବର୍ଷର ଜୀବନ ଆଲେଖ୍ୟ ।

**ଜୀବନ ରଙ୍ଗମଞ୍ଚରୁ ବିଦାୟ**

୧୯୩୯ ମସିହାରେ ଯାଜପୁରରେ ଥାର୍ଡ଼ ଅଫିସର୍ ଭାବରେ ଗୋପୀନାଥ ଯୋଗ ଦେବା ପୂର୍ବରୁ ବର୍ଣ୍ଣିତ । ପ୍ରତ୍ନତତ୍ତ୍ୱ ବିଭାଗର ନଜରରେ ପଡ଼ି ନ ଥିବା ବୌଦ୍ଧକୀର୍ତ୍ତିରାଜି ବିମଣ୍ଡିତ ରତ୍ନଗିରି ଢିପ ସମ୍ପର୍କରେ ସେ ଏକ ରିପୋର୍ଟ ସରକାରଙ୍କୁ ଦେଇଥିଲେ ।

୧୯୪୦ ମସିହାରେ ଗୋପୀନାଥ କଟକ ବଦଳି ହୋଇ ଆସି ଟ୍ରେଜେରୀରେ ଅଢ଼େଇମାସ ଟ୍ରେନିଂ ନେଲା ପରେ କୋରାପୁଟକୁ ଦ୍ୱିତୀୟ ଶ୍ରେଣୀ ମାଜିଷ୍ଟ୍ରେଟ୍ ଓ ଏଜେନ୍‌ସି ମୁନ୍‌ସି ଭାବେ ବଦଳି ହେଲେ । କୋରାପୁଟ ଚାକିରି ଆରମ୍ଭର ମାତ୍ର ୧୬ ଦିନ ମଧ୍ୟରେ ମେ ମାସ ଏକତିରିଶ ତାରିଖ ଦିନ କଟକ ଜିଲ୍ଲା ବୋଧପୁର ଗ୍ରାମର ବିଶିଷ୍ଟ ବ୍ୟକ୍ତି କାଶୀନାଥ ମହାନ୍ତିଙ୍କ କନ୍ୟା ଆଦରମଣିଙ୍କ ସହିତ ତାଙ୍କର ବିବାହ ହେଲା । 'ଅମୃତର ସନ୍ତାନ' ଉପନ୍ୟାସର ଲେଖା ଆରମ୍ଭ ଏଇ କୋରାପୁଟରେ ହେଲା ।

ମାର୍ଚ୍ଚ ୧୯୪୪ରୁ ୧୯୪୫ ଜାନୁଆରୀ ମାସ ଶେଷ ପର୍ଯ୍ୟନ୍ତ ଗୋପୀନାଥ ଜୟପୁରରେ ଷ୍ଟେସନେରି ସବ୍ ମାଜିଷ୍ଟ୍ରେଟ୍ ଓ ପରେ ତହସିଲଦାର ଭାବେ କାର୍ଯ୍ୟ କଲେ । ତେଲୁଗୁ ସାହିତ୍ୟରେ ପ୍ରବୀଣ ମହାରାଜା ବିକ୍ରମଦେବ ବର୍ମାଙ୍କର ସମସ୍ତ ରଚନାକୁ ସେ ସଙ୍କଳନ କରି ଗୋଟିଏ ମୁଖବନ୍ଧ ଲେଖିଥିଲେ । ଜୟପୁର ରହଣିବେଳେ 'ଦାଦିବୁଢ଼ା' ଉପନ୍ୟାସ ପ୍ରକାଶ ପାଇଥିଲା ।

୧୯୪୫ ମସିହା ଜାନୁଆରୀ ୨୮ ତାରିଖରେ ବରଗଡ଼ରେ ଗୋପୀନାଥ ଜଏନ୍ କଲେ ସେକେଣ୍ଡ ଅଫିସର୍ ଭାବେ । ବରଗଡ଼ ରହଣି ସମୟରେ 'ପରଜା' ଉପନ୍ୟାସଟି ପ୍ରକାଶିତ ହେଲା ।

୧୯୪୭ ମସିହାରେ ଗୋପୀନାଥ କଟକ ଆସିଲେ । ସେହି ବର୍ଷ ସେରଗଡ଼ ଓ ଆସ୍କା ସ୍ପେଶାଲ୍ ଫାଷ୍ଟକ୍ଲାସ ମାଜିଷ୍ଟ୍ରେଟ ଭାବେ ଗଲେ । ୧୯୫୨ରୁ ୧୯୫୪ ମସିହାରେ ସେ ରାୟଗଡ଼ାରେ ଏସ.ଡି.ଓ. ଥିଲେ । ସେଠାରେ ଥିବାବେଳେ ଗୁଣୁପୁର, ରାୟଗଡ଼ାରେ ଥିବା ଆଦିବାସୀପାଇଁ ଭୂସତ୍ୟାଗ୍ରହ ଯୋଜନା ପ୍ରବର୍ତ୍ତନ କରି ଚାକିରି କ୍ଷେତ୍ରରେ ପଦୋନ୍ନତିରୁ ବଞ୍ଚିତ ହେଲେ ।

ନଭେମ୍ବର ୧୯୫୪ରୁ ୧୯୫୬ ମସିହା ପର୍ଯ୍ୟନ୍ତ ଗୋପୀନାଥ ପୁରୀରେ ଜିଲ୍ଲାବୋର୍ଡ଼ ସ୍ପେସାଲ ଅଫିସରଭାବେ କାର୍ଯ୍ୟରତ ଥିଲେ । ସେହି ସମୟ ମଧ୍ୟରେ

ତାଙ୍କର ଚାରି ଗୋଟି ଉପନ୍ୟାସ 'ଦୁଇପତ୍ର', 'ସପନମାଟି', 'ଶିବଭାଇ' ଓ 'ଦାନାପାଣି' ପ୍ରକାଶ ପାଇଥିଲା । ପୁରୀରେ ଥିଲାବେଳେ ଗୋପୀନାଥ 'ଅମୃତର ସନ୍ତାନ' ଉପନ୍ୟାସପାଇଁ ସାହିତ୍ୟ ଏକାଡେମୀ ପୁରସ୍କାର ପାଇଲେ । ତା'ର ଦୁଇ ବର୍ଷ ପରେ ସାହିତ୍ୟ ଏକାଡେମୀର ଓଡ଼ିଆ ଉପଦେଷ୍ଟା ମଣ୍ଡଳୀର ସଦସ୍ୟ ଭାବେ ପାଞ୍ଚ ବର୍ଷ ପାଇଁ ମନୋନୀତ ହେଲେ । ଅକ୍ଟୋବର ୧୯୫୬ରୁ ଅକ୍ଟୋବର ୧୯୬୧ ପର୍ଯ୍ୟନ୍ତ ଭୁବନେଶ୍ୱରରେ, ୧୯୬୧ରୁ ୧୯୬୨ ପର୍ଯ୍ୟନ୍ତ କଟକରେ ଓ ୧୯୬୨ରୁ ଚାକିରି କାଳ ଶେଷ ପର୍ଯ୍ୟନ୍ତ ଅର୍ଥାତ୍ ୧୯୬୯ ମସିହା ମାର୍ଚ୍ଚ ମାସ ୩୧ ତାରିଖ ପର୍ଯ୍ୟନ୍ତ ଭୁବନେଶ୍ୱରରେ ବିଭିନ୍ନ ଦାୟିତ୍ୱରେ ରହି ଅବସର ଗ୍ରହଣ କଲେ । ଏହି ସମୟରେ 'ମାଟିମଟାଳ' ପୁସ୍ତକ ପ୍ରକାଶ ପାଇଥିଲା । ୧୯୭୨ ମସିହାରେ ୟୁନାଇଟେଡ୍ କମର୍ସିଆଲ ବ୍ୟାଙ୍କର ନିର୍ଦ୍ଦେଶକ ଭାବେ ଗୋପୀନାଥ କିଛି କାଳ କାର୍ଯ୍ୟ କରିଥିଲେ ।

୧୯୭୪ ମସିହାରେ ଗୋପୀନାଥ ଜ୍ଞାନପୀଠ ପୁରସ୍କାରପ୍ରାପ୍ତ ହେଲେ । ତା'ର ଦୁଇ ବର୍ଷ ପରେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ତାଙ୍କୁ ଡି.ଲିଟ୍ ଉପାଧି ପ୍ରଦାନ କଲା । ୧୯୭୯ ମସିହାରେ ସୃଜନାତ୍ମକ ସାହିତ୍ୟ ସୃଷ୍ଟି ପାଇଁ ଗୋପୀନାଥ ୟୁ.ଜି.ସି. ଫେଲୋସିପ୍ ପାଇଲେ । ୧୯୮୧ ମସିହାରେ ଭାରତ ସରକାର ତାଙ୍କୁ 'ପଦ୍ମଭୂଷଣ' ଉପାଧିରେ ସମ୍ମାନିତ କଲେ । ୧୯୮୩ ମସିହାରେ ଭାରତ ସରକାର ପୁଣି ସୃଜନାତ୍ମକ ସାହିତ୍ୟ ସୃଷ୍ଟିପାଇଁ ତାଙ୍କୁ ଫେଲୋସିପ୍ ପ୍ରଦାନ କଲେ ।

୧୯୮୬ ମସିହାରେ ଆମେରିକାର ସାନ୍‌ହୋଜ୍ ବିଶ୍ୱବିଦ୍ୟାଳୟରେ ଗୋପୀନାଥ ଆଡ୍‌ଜଙ୍କ୍ଟ ପ୍ରଫେସର ଭାବେ ନିଯୁକ୍ତି ପାଇଲେ । ୧୯୯୦ ମସିହାରେ ଗୋପୀନାଥ ଦ୍ୱିତୀୟ ଥରପାଇଁ ଆମେରିକା ଗଲେ । ସେଠାରେ ଥିଲାବେଳେ ସେ ଆମେରିକାର କେତେକ ବିଶିଷ୍ଟ ଲେଖକଙ୍କୁ ସାକ୍ଷାତ୍ କରିଥିଲେ । ସେମାନଙ୍କ ଭିତରେ ଥିଲେ କବି ଜନ୍ ଅପ୍‌ଡାଇକ୍ । ୧୯୯୧ ମସିହା ଅଗଷ୍ଟ ମାସ ୬ ତାରିଖରେ ସେ ଓଡ଼ିଆ ସାହିତ୍ୟ ଏକାଡେମୀର ସମ୍ପାଦିକା ମନୋରମା ମହାପାତ୍ରଙ୍କ ପାଖକୁ ଏକ ପତ୍ରରେ ଓଡ଼ିଆ ଜାତିର କ୍ଲାସିକ ବହିଗୁଡ଼ିକ ଭାରତର ଅନ୍ୟ କେତେକ ଭାଷାରେ ଅନୁବାଦ କରିବାକୁ ପରାମର୍ଶ ଦେଇଥିଲେ । ଆଲୋଚିକାଙ୍କ ଭାଷାରେ – ''ଅମାପ ଯଶର ବିଭୂତି ମାଖି ହୋଇ ସାରସ୍ୱତ ଯାଦୁକର ଗୋପୀନାଥ ଜୀବନ ରଙ୍ଗମଞ୍ଚରୁ ଅପସରି ଗଲେ ୧୯୯୧ ମସିହା ଅଗଷ୍ଟ ମାସ ୨୦ ତାରିଖ ଦିନ ।''

ଓଡ଼ିଶା ଭଳି ଏକ ଛୋଟିଆ ରାଜ୍ୟର ଏକ ଛୋଟିଆ ଗାଁରେ ଜନ୍ମ ହୋଇଥିଲେ ଅଜେୟ କଥାକାର ଗୋପୀନାଥ; କିନ୍ତୁ ଶେଷ ନିଶ୍ୱାସ ତ୍ୟାଗ କଲେ ସୁଦୂର ଯୁକ୍ତରାଷ୍ଟ୍ର ଆମେରିକାର ଅତି ସୁନ୍ଦର ରାଜ୍ୟ କାଲିଫର୍ଣ୍ଣିଆର ସାନ୍‌ହୋଜ୍ ସହରରେ । ତାଙ୍କ ପାଇଁ ପୃଥିବୀର ମାଟି ଥିଲା ଆପଣାର ମାଟି ।

'ମୁଁ ଲେଖେ କାହିଁକି' ଶୀର୍ଷକରେ ଗୋପୀନାଥ ଲେଖିଥିଲେ – ''ମୁଁ ମୋର ଦେଖା ଅଦେଖା ଜଗତକୁ ଭଲପାଏ, ମଣିଷକୁ ଭଲ ପାଏ, ଜୀବନକୁ ଭଲପାଏ । × × × ଏହି ତୀବ୍ର ସମ୍ପର୍କ ଯୋଗୁଁ ଯେତେ ପ୍ରକାର ପ୍ରାଣର ଦାହ, ଘରର ସମସ୍ୟା, ପରର ଦୁଃଖ ନିଜର ହୋଇଯାଏ, ପୁଣି ବାହାରର ଆନନ୍ଦ ଉଲ୍ଲାସ ପଶେ ନିଜଠି ।''

ଆଲୋଚିକାଙ୍କ ଭାଷାରେ – ''...ଏହାହିଁ ତାଙ୍କର ପରିଚୟ, ବ୍ରହ୍ମାନନ୍ଦରେ ନିୟତ ନିମଜ୍ଜିତ ଏହି ବ୍ୟକ୍ତିତ୍ୱ, ଅତୁଳନୀୟ ।''

**ମୂଲ୍ୟାୟନ**

ବହୁ ପ୍ରତିଭାର ଅଧିକାରୀ ଗୋପୀନାଥ ମହାନ୍ତିଙ୍କ ସୃଷ୍ଟିର ଦିଗନ୍ତ ଖୁବ୍ ବ୍ୟାପକ। ସେ ଜଣେ ମହାନ୍ ସ୍ରଷ୍ଟା ଭାବରେ ଲୋକ ଚରିତ୍ରକୁ ଅଧ୍ୟୟନ କରି ତା'ର ଯେଉଁ ଚରମ ଉତ୍କର୍ଷ ପ୍ରଦାନ କରିଛନ୍ତି, ତାହା ଅନନ୍ୟ । ବିଶ୍ୱ ମାନବିକତାର ପ୍ରତିଚ୍ଛବି ଅଙ୍କନ କରି ସେ ତାଙ୍କ ସାହିତ୍ୟକୁ ଯେଉଁ ସୌକୁମାର୍ଯ୍ୟ ପ୍ରଦାନ କରିଛନ୍ତି ତାହାର ତୁଳନା ନାହିଁ କହିଲେ ଚଳେ । ଓଡ଼ିଆ ସାହିତ୍ୟ ଏକାଡେମୀର ସେବେକାର ସଭାପତିଙ୍କ ଭାଷାରେ –

''ଓଡ଼ିଆ ଜାତିର କୀର୍ତ୍ତିମାନ୍ ସାହିତ୍ୟସ୍ରଷ୍ଟା ହେଉଛନ୍ତି ଗୋପୀନାଥ ମହାନ୍ତି । ଓଡ଼ିଆ ସାହିତ୍ୟର ଅନ୍ଦିକନ୍ଦିରୁ ଆରମ୍ଭ କରି ବିଶ୍ୱ ସାହିତ୍ୟର କେତେ ଦିଗନ୍ତରେ ତାଙ୍କର ଥିଲା ପ୍ରବେଶ । ଅସାଧାରଣ ପ୍ରଜ୍ଞାରେ ବିଭୂଷିତ ସାର୍ଥକ କଥାଶିଳ୍ପୀ ଗୋପୀନାଥଙ୍କ ସାହିତ୍ୟକୃତି ଯେ ପଢ଼ିଛି ସେ ସେତିକି ଅଭିଭୂତ ହୋଇଛି । ଯେ ତାଙ୍କୁ ଅତି ନିକଟରୁ ଦେଖିଛି, ତାଙ୍କର ଜୀବନ ଦର୍ଶନ ଓ ଜ୍ଞାନର ଗଭୀରତାର କିଞ୍ଚିତ୍ ପରିଚୟ ପାଇଛି, ସେ ତା' ଠାରୁ ବହୁ ଗୁଣରେ ଅଧିକ ବିମୋହିତ ଓ ଅନୁପ୍ରାଣିତ ହୋଇଛି । ତାଙ୍କର ଭାଷା ଯେପରି ଜୀଅନ୍ତା, ତାଙ୍କର ଶୈଳୀ ସେହିପରି ଖାଣ୍ଟି ଓଡ଼ିଆ ବୁନିଆଦିର ଛାପ ବହିଥିବା ମୌଳିକ, ସ୍ୱତନ୍ତ୍ର ଅଥଚ ହୃଦୟଗ୍ରାହୀ । ଓଡ଼ିଆ ସାହିତ୍ୟରେ ପ୍ରଥମ ଥରପାଇଁ ତାଙ୍କ ଲେଖନୀରେ ଫୁଟିଉଠିଛି ବଣୁଆ ମଣିଷର ସରଳ ଜୀବନ ଯାତ୍ରା । ଆଦିବାସୀ କନ୍ଧ, ଡମ୍ବ ଓ ପରଜା ଜୀବନ କାହାଣୀ ଶୁଣାଇଛନ୍ତି ସେ ଶିକ୍ଷିତ ମଣିଷ ସମାଜକୁ । ଦେଖାଇ ଦେଇଛନ୍ତି ମଣିଷର ଅବିକଳ ରୂପ । ସେ ଥିଲେ ଯଥାର୍ଥରେ ମାନବବାଦରେ ବିଶ୍ୱାସୀ । ମଣିଷ ଓ ଜୀବନକୁ କରୁଥିଲେ ଅସୀମ ଶ୍ରଦ୍ଧା । ବୃତ୍ତିରେ ସେ ଥିଲେ ପ୍ରଶାସକ; କିନ୍ତୁ ମନୋବୃତ୍ତି ଥିଲା ଜଣେ ସମ୍ବେଦନଶୀଳ ସ୍ରଷ୍ଟାର । ଜଟିଳ କର୍ମଭୂମିକୁ ସାରସ୍ୱତ ସାଧନା ଦୀପ୍ତିର ଅନୁକୂଳ ମର୍ମଭୂମିରେ ପରିଣତ କରିବା ଯେ କେତେ ବଡ଼ ଦୁଃସାଧ୍ୟ କର୍ମ – କେତେ ପ୍ରତିଭା, ବିଶ୍ୱାସ ଓ ଆତ୍ମଶକ୍ତି ଏକତ୍ରୀଭୂତ, ତାହା କଳ୍ପନା କରିବା କଷ୍ଟସାଧ୍ୟ, ହେଲେ ଗୋପୀନାଥ ସେଥିରେ ସିଦ୍ଧି ହାସଲ କରିଛନ୍ତି ।''

ଗୋପୀନାଥ ମହାନ୍ତି ହିଁ ଓଡ଼ିଆ ଉପନ୍ୟାସ ଜଗତର ସମ୍ରାଟ୍ ।

❑❑❑



## ସମ୍ଭ୍ରାନ୍ତ ଶିଳ୍ପୀ

# ସୁରେନ୍ଦ୍ର ମହାନ୍ତି

## [୧୯୨୨-୧୯୯୦]

ପ୍ରାୟ ଅର୍ଦ୍ଧଶତାବ୍ଦୀ ଧରି ଓଡ଼ିଆ ସାହିତ୍ୟକୁ ଅଜସ୍ରସ୍ରାବୀ ଲେଖନୀରେ ସମୃଦ୍ଧ କରିଥିବା ସାହିତ୍ୟିକ ସୁରେନ୍ଦ୍ର ମହାନ୍ତି ଏକ ଅନନ୍ୟ ପ୍ରତିଭା । କେହି କେହି ଆଲୋଚକଙ୍କ ମତରେ ବ୍ୟାସକବି ଫକୀରମୋହନଙ୍କ ପରେ ଓଡ଼ିଆ ଗଦ୍ୟ ସାହିତ୍ୟର ଉତ୍ତୁଙ୍ଗ ମିନାର ତଥା ଆଲୋକସ୍ତମ୍ଭ ହେଉଛନ୍ତି ସୁରେନ୍ଦ୍ର ମହାନ୍ତି । ସେ ଥିଲେ ଏକାଧାରରେ ଜଣେ ଉଚ୍ଚକୋଟୀର ପ୍ରଭାବଶାଳୀ ସାମ୍ବାଦିକ, ସଫଳ ରାଜନୀତିଜ୍ଞ ଓ ଉଚ୍ଚମାନର ବୌଦ୍ଧିକ ସ୍ରଷ୍ଟା । ତାଙ୍କର ସୁଲଳିତ ଅନୁପ୍ରାସିକ, ଯାମନୀୟ ଗଦ୍ୟ, ବଳିଷ୍ଠ ପ୍ରାଣମୟ ଶବ୍ଦସମ୍ଭାର, ନିଜସ୍ୱ ଗଭୀର ବେଦନାବୋଧ ତାଙ୍କ ସାରସ୍ୱତ ପୁରୁଷର ଦୃଢ଼ତା ଓ ଅନମନୀୟତା ସମସ୍ତଙ୍କୁ ବିସ୍ମିତ କରେ । ତାଙ୍କ ପ୍ରତିଭାର ଐନ୍ଦ୍ରଜାଲିକତା କେବଳ ତୁଳନାବିହୀନ ନୁହେଁ, ମାନବ ଜୀବନ, ମାନବିକ ଅଭିବୃଦ୍ଧି ଓ ବିକାଶ ପଥରେ ସୁଦୀର୍ଘ ପାଥେୟ ।

### ଜନ୍ମ ଓ ଶିକ୍ଷା

ସୁରେନ୍ଦ୍ର କଟକ ସହରଠାରୁ ବାର ମାଇଲ ଦୂରରେ ଉତ୍ତରପୂର୍ବ କୋଣରେ ଅବସ୍ଥିତ ପୁରୁଷୋତ୍ତମପୁର ଗ୍ରାମରେ ୧୯୨୨ ମସିହା ଜୁନ ମାସ ୨୧ ତାରିଖ ରାତିରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ଓ ମାତାଙ୍କ ନାମ ଯଥାକ୍ରମେ ଥିଲା

ଲୋକନାଥ ମହାନ୍ତି ଓ ସୁଶୀଳା । ପିତା ବିହାରର ମୁଜାଫରପୁରର କେଉଁ ଏକ ଡାକ୍ତରଖାନାରେ ଚାକିରି କରୁଥିଲେ । ସେ ବଦଳି ହୋଇ ଆସିଲେ ଓଡ଼ିଶା ଡିଭିଜନକୁ ଆଉ କଟକ ଜିଲ୍ଲାର ଏକ ଜିଲ୍ଲାବୋର୍ଡ ଡାକ୍ତରଖାନାରେ ଚାକିରି କଲେ । ସୁରେନ୍ଦ୍ର ବୋଉଙ୍କ ସହିତ ଗାଁରେ ରହୁଥିଲେ ।

**ଶିକ୍ଷା**

ପିଲାଦିନେ ସୁରେନ୍ଦ୍ର ପାଠଚୋର ଥିଲେ । ଦିନେ ଦିନେ ପେଟ ଟାଣୁଚି, ମୁଣ୍ଡ ବିନ୍ଧୁଛି, ଜର ଅଇଲାଣି – ଏମିତି ନାନା ପେଖନା କରି ଚାଟଶାଳୀକୁ ଯାଉ ନ ଥିଲେ । ସେଇ ପିଲାଦିନୁ କିନ୍ତୁ ଗପ ଶୁଣିବାପାଇଁ ତାଙ୍କର ଭାରି ଆଗ୍ରହ ଥିଲା । ଢେଙ୍କୀମା ବନେଇ ବୁନେଇ ଗପ କହୁଥିଲେ । ରଜା ପୁଅ, ରଜା ଝିଅ, କଲରେଇବେଣ୍ଟ ଇତ୍ୟାଦି । ସୁରେନ୍ଦ୍ର ଶୁଣୁ ଶୁଣୁ ଶୋଇପଡୁଥିଲେ ।

ସୁରେନ୍ଦ୍ର ପିଲା ଦିନେ ନାଲିକସ୍ତା ପିନ୍ଧୁଥିଲେ । ଅଣ୍ଟାରେ ରୁପା ଅଣ୍ଟାସୂତା ହାତରେ ରୁପା ଖଡୁ ଆଉ ବେକରେ ଗୁଡ଼ାଏ ମାଦୁଳି, ଆଖିରେ କଳାଲାଞ୍ଜି ଆଉ ମୁଣ୍ଡରେ ଦୁଇଟା ଜଟ – ଏହି ବେଶରେ ସେ ଗାଁ ଦାଣ୍ଡରେ ବୁଲୁଥିଲେ । ମୁଣ୍ଡରେ ଦୁଇଟା ଜଟ ଥିବାରୁ ସାଙ୍ଗପିଲାଏ ଥଟ୍ଟା ପରିହାସ କରୁଥିଲେ । ଆଉ ଜଟକୁ ବି ଟାଣୁଥିଲେ ।

ଦିନେ ବାପା ଲୋକନାଥ ମହାନ୍ତି ଗାଁକୁ ଆସି ଚାଟଶାଳୀର ବଇଷମ ମାଷ୍ଟରଙ୍କୁ ଘରକୁ ଡକାଇଲେ । ତାଙ୍କ ଚାହାଳିରେ ପାଠ ପଢ଼ିବା ମଧ୍ୟ ସ୍ଥିର ହେଲା । ଦରକାର ପଡ଼ିଲେ ନିସ୍ତୁକ ପିଟିବାକୁ ମଧ୍ୟ ବାପା କହିଲେ । କାଳିକେଇ ମନ୍ଦିର ପିଣ୍ଡାରେ ପାଠପଢ଼ା ଚାଲିଲା । ସକାଳେ ଅଙ୍କ, ମାନସାଙ୍କ ଆଉ ଖଡ଼ିପାଠ ହେଉଥାଏ । ଉପରଓଳି ବହି ପାଠ ହେଉଥିଲା । ବାପା ପ୍ରତି ମାସରେ ଥରେ ଥରେ ଆସୁଥିଲେ । ରାତିଟା ରହି ସକାଳେ ପୁଣି ଚାକିରିସ୍ଥାନକୁ ବାହାରି ଯାଉଥିଲେ । ଦିନେ ବାପା ଆସିଲା ବେଳକୁ ସୁରେନ୍ଦ୍ର ଘରେ ନ ଥିଲେ । ପୋଷା ବଣି ବଣବୁଦାମାନଙ୍କରେ ଖୋଜି ଫେରିବାବେଳକୁ ମୁହଁ ସଞ୍ଜ ହୋଇଗଲା । ବାପା କାନ ଧରି ଭିଡ଼ି ଭିଡ଼ି ଖଞ୍ଜା ଭିତରକୁ ଟାଣିନେଲେ । ମାନସାଙ୍କ ପ୍ରଶ୍ନ ଉପରେ ପ୍ରଶ୍ନ ପଚାରିଲେ । ମାତ୍ର ସୁରେନ୍ଦ୍ର କୌଣସି ଉତ୍ତର ନ ଦେବାରୁ ବ୍ରହ୍ମଚାପୁଡ଼ାଟିଏ ଦେଲେ । ଶେଷରେ ଗାଁରୁ ନେଇଯିବାକୁ ସ୍ଥିର କଲେ । କେତେଦିନ ପରେ ବାପା ଚାରି ଦିନ ଛୁଟି ନେଇ ଗାଁକୁ ଆସିଲେ ଏବଂ ସୁରେନ୍ଦ୍ର ଓ ସ୍ତ୍ରୀଙ୍କୁ ନେଇ ଚାକିରିସ୍ଥାନକୁ ଚାଲିଗଲେ । ବର୍ଷକ ପରେ କାନପୁର ମେଟକାଫ୍ ମି.ଇ. ସ୍କୁଲରେ ଚତୁର୍ଥ ଶ୍ରେଣୀରେ ତାଙ୍କର ନାମ ଲେଖାଗଲା । ତା'ର ପରବର୍ଷ ମାଇନର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ କାନପୁରଠାରୁ ଚାରି ମାଇଲ ଦୂର ସାଲେପୁର ହାଇସ୍କୁଲରେ ତାଙ୍କର ନାମ ଲେଖାଗଲା ।

ସାଲେପୁର ହାଇସ୍କୁଲରେ ପଢ଼ିଲାବେଳେ ବିଶିଷ୍ଟ କଂଗ୍ରେସ ନେତା ଜବାହରଲାଲ ନେହରୁ ସାଲେପୁର ହାଟ ପଡ଼ିଆରେ ସଭା କରିବାର କାର୍ଯ୍ୟକ୍ରମ ଥାଏ । ହଷ୍ଟେଲରେ ଛାତ୍ରମାନଙ୍କୁ କଂଗ୍ରେସ ସଭାକୁ ନ ଯିବା ପାଇଁ କଡ଼ା ତାଗିଦ କରାଯାଇଥାଏ । ନିର୍ଦ୍ଧାରିତ ସମୟ ପୂର୍ବରୁ ହଷ୍ଟେଲର ଫାଟକ ସବୁ ବନ୍ଦ କରିଦିଆଗଲା । ସୁରେନ୍ଦ୍ର କିନ୍ତୁ ଝରକାର ଦୁଇଟା ପୋକଖିଆ କାଠ ରେଲିଂ ହାତରେ ଭାଙ୍ଗି ଝରକା ଡେଇଁ ସଭାରେ ଭାଷଣ ଶୁଣିବାପାଇଁ ହାଟ ଆଡ଼େ ପଳାଇଲେ । ଜବାହରଲାଲଙ୍କ ଭାଷଣ ମଧ୍ୟ ଶୁଣିଲେ । ଝରକା ଭାଙ୍ଗି ଯିବାରେ ହଷ୍ଟେଲରେ ହୁଲସ୍ଥୁଲ ପଡ଼ିଯାଇଥିଲା । ସେ ଫେରିବା ପରେ ସ୍ୱୟଂ ହେଡ୍‌ମାଷ୍ଟରଙ୍କଠାରୁ ତଲବ ଆସିଲା । କୈଫିୟତ ଦେବାର କିଛି ନ ଥିଲା । ହାତ ପାପୁଲିରେ ପାଞ୍ଚ ବେତ ଖାଇବାକୁ ପଡ଼ିଲା ।

ସାଲେପୁର ନିର୍ବାଚନ ମଣ୍ଡଳୀରେ କଂଗ୍ରେସ ପ୍ରାର୍ଥୀଙ୍କପାଇଁ ପ୍ରଚାର କରିବାକୁ ସୁରେନ୍ଦ୍ର ମଧ୍ୟ ପଶ୍ଚାତ୍‌ପଦ ହୋଇ ନ ଥିଲେ । ଛାତ୍ରାବସ୍ଥାରେ ଏହି ଥିଲା ତାଙ୍କର ରାଜନୀତି ସହିତ ପ୍ରଥମ ପରିଚୟ । କଂଗ୍ରେସ ପ୍ରାର୍ଥୀ ଥିଲେ ଗାଁ ପାଖର ଅଟଳବିହାରୀ ଆଚାର୍ଯ୍ୟ । ନିର୍ବାଚନ ଦିନ ସୁରେନ୍ଦ୍ର ବଡ଼ ପାଟିରେ ଚିତ୍କାର କରୁଥିଲେ – ''ଭାଇ, ହଳଦିଆ ବାକ୍‌ସକୁ ଭୁଲିବ ନାହିଁ ।'' କଂଗ୍ରେସ ପ୍ରାର୍ଥୀ ବହୁ ଭୋଟରେ ଜୟଯୁକ୍ତ ମଧ୍ୟ ହେଲେ ।

୧୯୩୮ ମସିହା ମାର୍ଚ୍ଚ ମାସରେ ମହାତ୍ମା ଗାନ୍ଧୀ ଓଡ଼ିଶା ଗସ୍ତରେ ଆସିଲେ । ସେତେବେଳକୁ ମାଟ୍ରିକ ପରୀକ୍ଷା ଦେବାପାଇଁ କ୍ଲାସ ଚାଲିଥାଏ । ମାତ୍ର ସୁରେନ୍ଦ୍ର ମହାତ୍ମା ଗାନ୍ଧୀଙ୍କୁ ଦେଖିବାପାଇଁ ଡେଲାଙ୍ଗ ଗଲେ ଓ ମହାତ୍ମା ଗାନ୍ଧୀଙ୍କୁ ମଧ୍ୟ ଦେଖିଲେ ।

ସୁରେନ୍ଦ୍ର ମାଟ୍ରିକ ପରୀକ୍ଷା ଦେଇ ସେକେଣ୍ଡ ଡିଭିଜନରେ ପାସ୍ କଲେ। ବାପା ତାଙ୍କ ଉପରେ ବିରକ୍ତ ହେଲେ । ଗାଳି ବର୍ଷଣ ମଧ୍ୟ କଲେ । ପୁଅକୁ ଡାକ୍ତର କରିବା ତାଙ୍କର ଇଚ୍ଛା ଥିଲା । କେବଳ ଫାଷ୍ଟ ଡିଭିଜନରେ ପାସ୍ କରୁଥିବା ଛାତ୍ରମାନଙ୍କୁ ମେଡ଼ିକାଲ ସ୍କୁଲରେ ନିଆଯାଉଥିଲା । ଡାକ୍ତର ନ ହୋଇପାରିଲେ ପୁଅ ଭେଟେରିନାରୀ ଡାକ୍ତର ହେବା ବାପା ଚାହୁଁଥିଲେ । କିନ୍ତୁ ତାହା ସୁରେନ୍ଦ୍ରଙ୍କୁ ଆକୃଷ୍ଟ କରିପାରି ନ ଥିଲା । ଦରଖାସ୍ତ ଦେବାପାଇଁ ଫର୍ମ ମଧ୍ୟ ଯୋଗାଡ଼ ହୋଇପାରିଲା ନାହିଁ । ଫଳରେ ୧୯୩୯ ମସିହା ଜୁଲାଇ ମାସରେ ରେଭେନ୍‌ସା କଲେଜରେ ଆଇ.ଏ. ଶ୍ରେଣୀରେ ସୁରେନ୍ଦ୍ର ନାମ ଲେଖାଇଲେ । ସେଥିପାଇଁ ବାପା ତାଙ୍କର କଷ୍ଟ ସଞ୍ଚିତ ପାଣ୍ଠିରୁ ଷାଠିଏଟି ଟଙ୍କା ଦେଇଥିଲେ ।

ସାଲେପୁର ହାଇସ୍କୁଲରେ ଏକାଦଶ ଶ୍ରେଣୀର ଛାତ୍ର ଥିଲାବେଳେ ସୁରେନ୍ଦ୍ରଙ୍କ ପ୍ରଥମ ଗଳ୍ପ 'ବନ୍ଦୀ' 'ଉତ୍କଳ ସାହିତ୍ୟ'ରେ ପ୍ରକାଶ ପାଇଲା । ସେହି ଦିନୁ ତାଙ୍କର ଆତ୍ମପ୍ରତ୍ୟୟ ଜନ୍ମିଲା – ଇଚ୍ଛାକଲେ ସେ ଗଳ୍ପ ଲେଖିପାରିବେ । ଏହା ପରେ ପ୍ରଖ୍ୟାତ କବି ସଚ୍ଚି ରାଉତରାୟଙ୍କ ସମ୍ପାଦିତ 'ଆରତି' ପତ୍ରିକାର ପୂଜାସଂଖ୍ୟାରେ ତାଙ୍କର ଆଉ ଏକ ଗଳ୍ପ ପ୍ରକାଶ ପାଇଲା । ସେଇଟି ହେଲା, 'ମଣିଷ ଓ ଅର୍ଥନୀତି' ।

୧୯୪୨ ମସିହା ଅଗଷ୍ଟ ମାସରେ ଭାରତଛାଡ଼ ଆନ୍ଦୋଳନ ଆରମ୍ଭ ହେଲା । କଟକର ରେଭେନ୍‌ସା କଲେଜର ଛାତ୍ରମାନେ ଇଷ୍ଟ ହଷ୍ଟେଲକୁ 'ରିପବ୍ଲିକ୍' ବୋଲି ଘୋଷଣା କଲେ । ପୋଲିସ ତା' ଭିତରକୁ ପଶିପାରୁ ନ ଥାନ୍ତି । ପାଟଣାରୁ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଶୀଳଭଦ୍ରୟାଜୀ ଆସି କଟକରେ ଆତ୍ମଗୋପନ କରିଥାନ୍ତି । ସେ ମଧ୍ୟ ଇଷ୍ଟହଷ୍ଟେଲର ଛାତ୍ରମାନଙ୍କୁ ରାତିରେ ଗୋପନରେ ସାକ୍ଷାତ୍ କରୁଥାନ୍ତି । ଆନ୍ଦୋଳନ ଚଳାଇବାପାଇଁ ଯୁବକମାନଙ୍କ ସହିତ ସେ ଯୋଗସୂତ୍ର ରଖୁଥିଲେ । ସେ ସୁରେନ୍ଦ୍ରଙ୍କୁ ବାଛି ଅଣ୍ଡରଗ୍ରାଉଣ୍ଡରେ ରହିବାପାଇଁ ନିର୍ଦ୍ଦେଶ ଦେଲେ । ସୁରେନ୍ଦ୍ର ମଧ୍ୟ ରାଜି ହେଲେ ।

ସୁରେନ୍ଦ୍ରଙ୍କର ଅଣ୍ଡରଗ୍ରାଉଣ୍ଡ ଜୀବନ ଅବଶ୍ୟ ସେପରି ନାଟକୀୟ ବା ଉଲ୍ଲେଖଯୋଗ୍ୟ ନ ଥିଲା । ୧୯୪୨ ମସିହା ଅଗଷ୍ଟ ମାସ ୯ ତାରିଖରେ ସେ କଲେଜ ଛାଡ଼ିଲେ । ଗୋଟାଏ ବର୍ଷ ଅଣ୍ଡରଗ୍ରାଉଣ୍ଡରେ ରହି ପୁଣି କଟକ ଫେରିଲେ । ଦୀର୍ଘ କାଳ ଅନୁପସ୍ଥିତ ରହିବା ଯୋଗୁଁ କଲେଜରୁ ନାମ କଟି ଯାଇଥିଲା । ପାଟଣା ବିଶ୍ୱବିଦ୍ୟାଳୟରେ ପରୀକ୍ଷା ଦେବାରୁ ତିନି ବର୍ଷ ପାଇଁ ବଞ୍ଚିତ ମଧ୍ୟ ହୋଇଥିଲେ ।

ଅଣ୍ଡରଗ୍ରାଉଣ୍ଡରୁ ବାହାରକୁ ଆସିବାପରେ ସୁରେନ୍ଦ୍ରଙ୍କୁ ଜୀବିକାର୍ଜନ ଚିନ୍ତା ଘାରିଲା । କିଛି ରୋଜଗାରପାଇଁ ସେ ଲୁଧିଆନାର ଗୋଟିଏ ସିଲ୍‌କ କମ୍ପାନୀର ଭ୍ରାମ୍ୟମାଣ ଏଜେଣ୍ଟ ହେଲେ । ସେ ସମୟରେ ଢାକାର ମୁସଲମାନ ଲୁଗା ବିକାଳିଙ୍କ ସଙ୍ଗେ ସେ ରହୁଥିଲେ – ଖୋର୍ଦ୍ଧା ରୋଡ଼୍‌ର କୁଲିବସ୍ତିର ଗୋଟିଏ ଲମ୍ବା ଚାଳଘରେ । ପାଞ୍ଚ ପର୍ସେଣ୍ଟ ହିସାବରେ ଦିନକୁ ଟଙ୍କା ଦୁଇ ତିନିଟି ମିଳୁଥିଲା । ସେଥିରେ ସିଗ୍ରେଟ ଖର୍ଚ୍ଚ ଉଠି ଯାଉଥିଲା । ବିକାଳିମାନେ ଖୋର୍ଦ୍ଧାରୋଡ଼୍‌ରୁ ଅନ୍ୟ ସହରକୁ ଉଠିଗଲା ପରେ ସୁରେନ୍ଦ୍ର ମଧ୍ୟ ଫେରିଲେ ସେଇ ପୂର୍ବ ପରିଚିତ ସହର – କଟକକୁ ।

### ସାମ୍ବାଦିକତା

୧୯୪୫ ମସିହା ଆଡ଼କୁ ସୁରେନ୍ଦ୍ର ଜୀବିକା ନିର୍ବାହପାଇଁ ତିନୋଟି ଟିଉସନ ଧରିଥିଲେ । ଏଥିପୂର୍ବରୁ ସେ 'ପୃଥ୍ୱୀବଲ୍ଲଭ' ନାମକ ନାଟକଟିଏ ରଚନା କରିଥିଲେ । ତାହାକୁ ମୟୂରଭଞ୍ଜ ମହାରାଜାଙ୍କ ଜନ୍ମୋତ୍ସବ ଆନୁକୂଲ୍ୟରେ ହେଉଥିବା ନାଟକ ପ୍ରତିଯୋଗିତାପାଇଁ ପଠାଇଲେ । ତାହା ମଧ୍ୟ ସର୍ବୋତ୍କୃଷ୍ଟ ବିବେଚିତ ହେଲା । ନିର୍ଦ୍ଦିଷ୍ଟ ଦିନରେ ସେ ବାରିପଦା ଯାଇ ଶହେ ଟଙ୍କା ପୁରସ୍କାର ବାବଦ ପାଇଲେ । ମାତ୍ର ଫୂର୍ତ୍ତି ଆଉ ମଜଲିସରେ ସେ ଟଙ୍କା ଉଡ଼ିଗଲା । ସୁରେନ୍ଦ୍ର 'ପୃଥ୍ୱୀବଲ୍ଲଭ' ନାଟକଟିକୁ ପ୍ରକାଶ କରିବାକୁ ଚାହିଁଥିଲେ ମଧ୍ୟ ଅଭାବରୁ ତାହା କରିପାରିଲେ ନାହିଁ । ନାଟ୍ୟକାର ହେବାକୁ ଇଚ୍ଛା ତାଙ୍କର ଥିଲା । ମାତ୍ର ନାଟକ ମଞ୍ଚୋପଯୋଗୀ ନୁହେଁ ବୋଲି ଭାବି ସେ ଦିଗରେ ଆଉ ମନ ଦେଲେ ନାହିଁ ।

ଅତି ଆକସ୍ମିକ ଭାବେ ସୁରେନ୍ଦ୍ର ସାମ୍ବାଦିକତା କ୍ଷେତ୍ରରେ ପହଞ୍ଚିଗଲେ । ସେତେବେଳେ କଟକରେ ଓଡ଼ିଶା ଥିଏଟର୍ସରେ କାଳୀଚରଣଙ୍କ 'ଅତିବଡ଼ୀ ଜଗନ୍ନାଥ ଦାସ' ନାଟକ ଅଭିନୀତ ହେଉଥାଏ । ସୁରେନ୍ଦ୍ର ବହୁପ୍ରଶଂସିତ ଏହି ନାଟକଟିକୁ ଦେଖିବାକୁ ଯାଇଥିଲେ । ନାଟକର ଗୋଟିଏ ଦୃଶ୍ୟରେ ପୁରୀକୁ ଯାଉଥିବା ବଙ୍ଗାଳୀ ଯାତ୍ରୀମାନଙ୍କୁ ଖୁବ୍ ତାଚ୍ଛଲ୍ୟ ଓ ବିଦ୍ରୂପ କରାଯାଇଥିଲା । ତାହା ତାଙ୍କୁ ଅତି ଅବାନ୍ତର ଓ ଅପ୍ରାସଙ୍ଗିକ ମନେ ହେଲା । କେବଳ ଦୃଷ୍ଟିକଟୁ ନୁହେଁ, ଶ୍ରୁତିକଟୁ ମଧ୍ୟ ହେଲା । ତା'ର ପରଦିନ 'ଅତିବଡ଼ୀ ଜଗନ୍ନାଥ ଦାସ' ଉପରେ ଏକ ସମାଲୋଚନାମୂଳକ ପ୍ରବନ୍ଧ ଇଂରାଜୀରେ ଲେଖି 'ନିୟୁ ଓଡ଼ିଶା' ସମ୍ପାଦକ କେ.ଏନ୍. ଆଚାରୀଙ୍କୁ ପ୍ରକାଶପାଇଁ ଦେଲେ । ଆଚାରୀ ମହାଶୟ ମଧ୍ୟ ଅଳ୍ପ ସଂଶୋଧନ କରି 'ସାମ୍ବାଦିକଙ୍କୁ ପତ୍ର' ସ୍ତମ୍ଭରେ ପ୍ରକାଶ କଲେ । ଏହା ବୁଦ୍ଧିଜୀବୀ ମହଲରେ ଘୋର ଚାଞ୍ଚଲ୍ୟ ସୃଷ୍ଟି କଲା । କେହି ଏହାର ପ୍ରତିବାଦ ପ୍ରକାଶ ମଧ୍ୟ କରିପାରିଲେନି । ସୁରେନ୍ଦ୍ରଙ୍କର ଆତ୍ମପ୍ରତ୍ୟୟ ଆସିଲା ।

ସୁରେନ୍ଦ୍ର ସାମ୍ବାଦିକ ହେବାର ମୋହ ଆଉ ଏଡ଼ାଇ ପାରିଲେ ନାହିଁ । ସେ ଆଚାରୀ ମହାଶୟଙ୍କୁ ଭେଟି 'ନିୟୁ ଓଡ଼ିଶା'ରେ ଗୋଟିଏ ଛୋଟିଆ ମୋଟିଆ ଚାକିରି ଦେବାକୁ ଅନୁରୋଧ କଲେ । ଆଚାରୀ ସୁରେନ୍ଦ୍ରଙ୍କୁ ବୁଝାଇଦେଲେ ଯେ ପତ୍ରିକାର ଆର୍ଥିକ ଅବସ୍ଥା ଆଦୌ ଭଲ ନୁହେଁ । ଯାହାକୁ କହନ୍ତି ଢୋକେ ପିଇ ଦଣ୍ଡେ ଜୀଇଁବା ଅବସ୍ଥା ! ଶେଷରେ ସୁରେନ୍ଦ୍ର ପତ୍ରିକାରେ ଅବୈତନିକ ଭାବେ କାମ କରିବାକୁ ଇଚ୍ଛା ପ୍ରକାଶ କଲେ । ସେଥିରେ ଆଚାରୀ ମହାଶୟଙ୍କର ଆପତ୍ତି ନ ଥିଲା ।

ସୁରେନ୍ଦ୍ର ପ୍ରଥମେ ହେଲେ ପ୍ରୁଫ୍ ରିଡ଼ର । ଦିନ କେତେଟାରେ ସେ ସେଥିରେ ପାରଙ୍ଗମ ହୋଇପଡ଼ିଲେ । ପ୍ରୁଫ୍ ରିଡିଙ୍ଗ୍ ସାଙ୍ଗକୁ ଇଂରାଜୀ ଲିଖନର ଶୈଳୀ ବି ଶିଖିଗଲେ । ଗୋଟିଏ ବାକ୍ୟରେ କହିବାକୁ ଗଲେ, ସେ କାଳକ୍ରମେ ଜୋତା ସିଲାଇଠାରୁ ଆରମ୍ଭ କରି ଚଣ୍ଡୀ ପାଠ ପର୍ଯ୍ୟନ୍ତ ସବୁ ଆୟତ୍ତ କରିନେଲେ । 'ନିୟୁ ଓଡ଼ିଶା' କିନ୍ତୁ ବନ୍ଦ ହୋଇଯିବାପରେ ଆଚାରୀ ମହାଶୟଙ୍କ ସଙ୍ଗେ ତାଙ୍କ ସମ୍ପର୍କର ପୂର୍ଣ୍ଣଚ୍ଛେଦ ପଡ଼ିଲା ।

ସୁରେନ୍ଦ୍ର ଏହାପରେ ଇଂରାଜୀ ସାପ୍ତାହିକ 'ଦି ଅବଜରଭର୍' ର ସମ୍ପାଦକ ମଧୁ ମହାନ୍ତିଙ୍କୁ ଭେଟିଲେ । ସେ ହିଁ ସୁରେନ୍ଦ୍ରଙ୍କୁ ବିଧିବଦ୍ଧ ଭାବେ ସାମ୍ବାଦିକ କ୍ଷେତ୍ରକୁ ଆଣିଲେ । କେବଳ ସେତିକି ନୁହେଁ, ସେ ଯେ ଭଲ ଲେଖକ ହେବେ, ସେ ଦୃଢ଼ ପ୍ରତ୍ୟୟ ତାଙ୍କ ମନରେ ସୃଷ୍ଟି କଲେ ।

### ବିବାହ

ସୁରେନ୍ଦ୍ରଙ୍କ ଜୀବନରେ ବହୁ ପ୍ରେମିକା ଆସିଛନ୍ତି । କିନ୍ତୁ ସୁରେନ୍ଦ୍ରଙ୍କ କହିବା ଅନୁଯାୟୀ ତାଙ୍କ ପ୍ରଥମ ଘନିଷ୍ଠ (serious) ପ୍ରେମ ଥିଲା ମଧୁବାବୁଙ୍କ କନିଷ୍ଠା କନ୍ୟା ରେଣୁକାଙ୍କ ସହିତ । ଶେଷରେ ରେଣୁକାଙ୍କୁ ବିବାହ କରିବାକୁ ସ୍ଥିର କଲେ ।

ସେ ବିବାହରେ କୌଣସି ମଧ୍ୟସ୍ଥ ନ ଥିଲେ । ଭାବୀପତ୍ନୀଙ୍କ ମା' ବା ବାପା କାହାରି ସେପରି ଆଗ୍ରହ ନ ଥିଲା । ବନ୍ଧୁବାନ୍ଧବ ଆସି ତାଙ୍କୁ ବୁଝାଉଥିଲେ- ''ସୁରେନ୍ଦ୍ରଟା ଅଜ୍ଞାତ କୁଳଶୀଳ । ତା'ର ନା ଅଛି ଧନ ନା ଅଛି ମାନ ନା ଅଛି ବିଦ୍ୟା ! ସିଏ ତ ବି.ଏ ପାସ୍ କରି ନାହିଁ, ପୁଣି ଚାକିରି ବାକିରି ନାହିଁ । ତୋ ଝିଅ ଚଳିବ କିପରି ?''

ତାଙ୍କ ମା' କହୁଥିଲେ – ''ସେମାନେ ତ ବାହାହେବାପାଇଁ ଠିକ୍ କରିଛନ୍ତି । ମୁଁ କରିବି କ'ଣ ? ଝିଅକୁ ଜନ୍ମ ଦେଇଛି ବୋଲି ତ ଆଉ କର୍ମ ଦେଇନି । ତା' କର୍ମ ତା'ର ।''

ସୁରେନ୍ଦ୍ରଙ୍କ ବାପାଙ୍କର ମଧ୍ୟ ସେଠାରେ ବିବାହପାଇଁ ଇଚ୍ଛା ନ ଥିଲା । ସେ ଚାହୁଁଥିଲେ ହାତ ପାଇବା ଘରୁ କନ୍ୟା ଆଣିବାପାଇଁ । ଭାବୀ ଶ୍ୱଶୁରଙ୍କ ଘର ଉପରେ ଥିବାରୁ ବାପା ସେଠାରେ ବିବାହର ବିରୋଧୀ ଥିଲେ । ବାପା ମଧ୍ୟ ଯୌତୁକ ଚାହୁଁଥିଲେ । ବୋଉ କିନ୍ତୁ ଚାହୁଁଥିଲେ ଯେ ପୁଅର ଯେଉଁଥିରେ ଖୁସି, ତାଙ୍କର ସେଥିରେ ଅରାଜି ନାହିଁ । ସୁରେନ୍ଦ୍ର ଯୌତୁକ ପ୍ରଥାର ଘୋର ବିରୋଧୀ ଥିଲେ । ସୁତରାଂ ବାହାଘରରେ ସେ ବାପା, ବୋଉ, ସାଇପଡ଼ିଶା, ଜ୍ଞାତିକୁଟୁମ୍ବମାନଙ୍କୁ ବାଦ୍ ଦେଇଥିଲେ । ତଥାପି ନିଜ ଉଦାରତାରେ ସେମାନେ ବାହାଘରକୁ ଆସିଥିଲେ । ଏପରିକି ଗାଁର ପୁରୋହିତ ଓ ବାରିକ ସୁଦ୍ଧା ଆସିଥିଲେ ।

ବାହାଘରରେ ପାଲିଙ୍କି, ବାଜା ବାଜି ନ ଥିଲା । ସୁରେନ୍ଦ୍ର ସାଇକେଲରେ ଡଗରପଡ଼ା ବସାଘରୁ ନିମଚଉଡ଼ି ବାହାରି ଆସିଥିଲେ । ବାହାଘରରେ ସାହାନାଇ ବାଜିଥିଲା । ଆଉ ନବବିବାହିତା ପତ୍ନୀଙ୍କ ବେକର ସୁନା ହାର ବନ୍ଧା ପକାଇ ସୁରେନ୍ଦ୍ରଙ୍କୁ ଚଉଠି ଭୋଜି ଦେବାକୁ ପଡ଼ିଥିଲା ।

**'ଜନତା' ପତ୍ରିକା**

ମଧୁବାବୁଙ୍କର ଓଡ଼ିଶା ଇର୍ଣ୍ଣାଲ ପ୍ରେସ୍ ପକ୍ଷରୁ 'ଜନତା' ନାମକ ଏକ ଓଡ଼ିଆ ଦୈନିକ ପୂର୍ବରୁ ପ୍ରକାଶ ପାଉଥିଲା । କିଛି କାଳ ବାହାରି ତାହା ବନ୍ଦ ହୋଇଯାଇଥାଏ । ସାପ୍ତାହିକ ରୂପେ ତା'ର ପୁନଃ ପ୍ରକାଶପାଇଁ ସୁରେନ୍ଦ୍ର ମଧୁବାବୁଙ୍କୁ ପ୍ରସ୍ତାବ ଦେଲେ । ମଧୁବାବୁ ଆଗ୍ରହର ସହିତ ରାଜି ହେଲେ । ସୁରେନ୍ଦ୍ର ହେଲେ ଏହାର ସମ୍ପାଦକ । ତାଙ୍କର ସଦ୍ୟ ବିବାହିତା ପତ୍ନୀ ରେଣୁକା ହେଲେ ତାହାର ପରିଚାଳିକା ।

'ଜନତା' ପତ୍ରିକା ଅଳ୍ପ ଦିନ ଭିତରେ ବେଶ୍ ପରିଚିତ ହୋଇଗଲା । କିନ୍ତୁ ତା'ର ଲୋକପ୍ରିୟତା ହେଲା ଏହାର କାଳ । ସେତେବେଳେ କଂଗ୍ରେସ ମନ୍ତ୍ରିମଣ୍ଡଳ ଓଡ଼ିଶାରେ ଗଢ଼ା ହୋଇଥାଏ । ଡଃ ମହତାବ ଥାଆନ୍ତି ମୁଖ୍ୟମନ୍ତ୍ରୀ । ସେ ଅସହିଷ୍ଣୁ ପ୍ରକୃତିର ଲୋକ ଥିଲେ ବୋଲି ସୁରେନ୍ଦ୍ର ତାଙ୍କ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି । ସେ ଯାହାହେଉ, କଂଗ୍ରେସ ସରକାର ହଠାତ୍ ଦିନେ 'ଡିଫେନ୍‌ସ ଅଫ୍ ଇଣ୍ଡିଆ'ରେ ସୁରେନ୍ଦ୍ରଙ୍କୁ ଗିରଫ କରିନେଲେ ଓ ଜେଲ୍‌ରେ ଅଟକବନ୍ଦୀ ଭାବେ ରଖିଲେ । 'ଜନତା' ପତ୍ରିକା ବନ୍ଦ

ହୋଇଗଲା । ମଧୁବାବୁ ଅବଶ୍ୟ ଓଡ଼ିଶା ହାଇକୋର୍ଟରେ ହେଭିଅସ୍ ରିଟ୍ ଦାଖଲ କରିବା ଫଳରେ ସରକାର ସୁରେନ୍ଦ୍ରଙ୍କୁ ଏକତରଫାଭାବେ ଖଲାସ କରିଦେଲେ ।

ସୁରେନ୍ଦ୍ର ଏହାପରେ 'ଜନତା' ପତ୍ରିକାର ପୁନଃପ୍ରକାଶନପାଇଁ ଲାଗିପଡ଼ିଲେ । ମାତ୍ର ସାପ୍ତାହିକ ପତ୍ରିକା ଭଲ ଚାଲୁ ନ ଥିଲା । ଯାହାକୁ କହନ୍ତି, ଢୋକେ ପିଇ ଦଣ୍ଡେ ଜିଇବା ଅବସ୍ଥା ଥିଲା । ଓଡ଼ିଶା ସରକାରଙ୍କଠାରୁ କାଁ ଭାଁ କେତୁଟା ବିଜ୍ଞାପନ ମିଳୁଥିଲା । ରାଜନୀତି କାରଣରୁ ତାହା ମଧ ବନ୍ଦ ହୋଇଗଲା । ଗଡ଼ଜାତ ଦରବାରମାନଙ୍କରୁ ମଧ ବିଜ୍ଞାପନ ଆଉ ମିଳୁ ନ ଥିଲା । ଏଜେଣ୍ଟମାନଙ୍କ ଉପରେ ଶହ ଶହ ଟଙ୍କା ବାକି ପଡ଼ିଥିଲା । ତେଣୁ ନିୟମିତ ଭାବେ ପତ୍ରିକା ପ୍ରକାଶ କରିବା ଆଉ ସମ୍ଭବ ହେଲା ନାହିଁ । ଚଳିବା ମଧ କଷ୍ଟସାଧ ହୋଇପଡ଼ିଲା । ଆଉ ପତ୍ରିକାଟି ଚଳାଇ ପାରିବେ ନାହିଁ ବୋଲି ସୁରେନ୍ଦ୍ରଙ୍କର ଉପଲବ୍ଧି ହେଲା । ତେଣୁ ସେ ଚାକିରି ଅନୁସନ୍ଧାନରେ ରହିଲେ । ତାହା ମଧ ସହଜ ନ ଥିଲା ।

ବହୁ ଖୋଜାଖୋଜି ପରେ ସୁରେନ୍ଦ୍ର ନିଜର ଶ୍ୱଶୁରଙ୍କ ଜଣେ ସମ୍ପର୍କୀୟଙ୍କ ପାଖକୁ ଚାକିରି ଆଶାରେ ଜାମସେଦପୁର ଯିବାକୁ ସ୍ଥିର କଲେ । ପତ୍ନୀଙ୍କ ଆଉ ଗୋଟାଏ ଗହଣା ବନ୍ଧା ପକାଇ ସେ ଜାମସେଦପୁର ଗଲେ । ସେ ବନ୍ଧୁଜଣକ ଟାଟା କମ୍ପାନୀରେ ଜଣେ ପଦସ୍ଥ ଅଫିସର ଥିଲେ । ସୁରେନ୍ଦ୍ର ଆଉ ପତ୍ରିକା ଚଳାଇବା ଅବସ୍ଥାରେ ନାହାନ୍ତି ବୋଲି ଜଣାଇ ଗୋଟାଏ ଚାକିରି ଯୋଗାଡ଼ କରିଦେବାକୁ କହିଲେ । 'ଏଠିକା କଥା ଜାଣ ନାହିଁ' ବୋଲି କହି ସେ ଷଢ଼େଇକଳା ମହାରାଜାଙ୍କ ପାଖରୁ ଗୋଟାଏ ରେକମେଣ୍ଡେସନ ଯୋଗାଡ଼ କରିପାରିଲେ ଚାକିରି ମିଳିବ ବୋଲି ଜଣାଇଲେ । ଷଢ଼େଇକଳା ଯିବାକୁ ମଧ ପରାମର୍ଶ ଦେଲେ ।

ସୁରେନ୍ଦ୍ର ଅନ୍ୟ ଉପାୟ ନ ଦେଖି ବମ୍ବେ ମେଲ୍‌ରେ ଯାଇ ସିନି ଷ୍ଟେସନରେ ଓହ୍ଲାଇଲେ । ରାତିଟା କୌଣସିମତେ ବିଶ୍ରାମାଗାରରେ କଟାଇ ସକାଳ ବସ୍‌ରେ ବସି ଷଢ଼େଇକଳାରେ ପହଞ୍ଚିଲେ । ରାଜାଙ୍କ ପ୍ରାଇଭେଟ୍ ସେକ୍ରେଟେରୀଙ୍କୁ ଭେଟିଲେ । ପ୍ରାଇଭେଟ ସେକ୍ରେଟେରୀ ଜଣେ ବଙ୍ଗାଳୀ ଥିଲେ । ସେ ମହାରାଜାଙ୍କ ସଙ୍ଗେ ସାକ୍ଷାତ୍ କରିବାର କାରଣ ପଚାରିଲେ । ମହାରାଜାଙ୍କଠାରୁ ଗୋଟାଏ ରେକମେଣ୍ଡେସନ ବା ସୁପାରିସ ନେବାକୁ ଆସିଛନ୍ତି ବୋଲି ଉତ୍ତର ଦିଅନ୍ତେ ଗୋଟାଏ ଇନ୍‌ଟ୍ରୋଡକସନ୍ ଲେଟର ବା ପରିଚୟପତ୍ର ଆଣିବାକୁ କହିଲେ । ସୁରେନ୍ଦ୍ର ହତାଶ ହୋଇପଡ଼ିଲେ । ତେବେ ବଙ୍ଗାଳୀ ଭଦ୍ରବ୍ୟକ୍ତି ସୁରେନ୍ଦ୍ରଙ୍କୁ ପାଟଣା ମହାରାଜା ସୁନ୍ଦରଗଡ଼ରେ ଥିବା ଜଣାଇ ତାଙ୍କଠାରୁ ପରିଚୟ ପତ୍ର ଆଣିବାକୁ ପରାମର୍ଶ ଦେଲେ ।

କୋଶଳ-ଉତ୍କଳ ପ୍ରଜା ପରିଷଦର ବାର୍ଷିକ ଅଧିବେଶନ ସୁନ୍ଦରଗଡ଼ରେ ହେଉଥାଏ । ସେ ପର୍ଯ୍ୟନ୍ତ ପାଟଣା ମହାରାଜା ବା କଳାହାଣ୍ଡି ମହାରାଜା ପ୍ରତ୍ୟକ୍ଷ

ରାଜନୀତିରେ ଯୋଗଦେଇ ନ ଥାନ୍ତି । ବାର୍ଷିକ ଅଧିବେଶନ ଉପଲକ୍ଷେ ବିଭିନ୍ନ ପୂର୍ବତନ ଗଡ଼ଜାତମାନଙ୍କରୁ ପ୍ରାୟ ଶହେ ଜଣ ପ୍ରତିନିଧି ଆସିଥିଲେ । ସୁନ୍ଦରଗଡ଼ରେ ବସରୁ ଓହ୍ଲାଇ ସୁରେନ୍ଦ୍ର ଅଧିବେଶନ ସ୍ଥାନକୁ ଗଲେ । ସେଠାରେ ପାଟଣା ମହାରାଜାଙ୍କୁ ଭେଟିଲେ । ମହାରାଜା 'ଜନତା' ପତ୍ରିକା ସହିତ ପରିଚିତ ଥିଲେ । ସେ ସୁରେନ୍ଦ୍ରଙ୍କ ସମ୍ପାଦିତ 'ଜନତା' ପତ୍ରିକାର ତାରିଫ କଲେ । କିନ୍ତୁ 'ଜନତା' ପତ୍ରିକାକୁ ଆଉ ଚଳେଇ ପାରିବେ ନାହିଁ ବୋଲି ସୁରେନ୍ଦ୍ର ମୁହଁ ଶୁଖାଇ କହିଲେ । ସବୁ କଥା ଶୁଣି ପାଟଣା ମହାରାଜା ମାସକୁ ଦେଢ଼ହଜାର ଟଙ୍କା ଦେବାକୁ କହି ପତ୍ରିକା ବଞ୍ଚାଇ ରଖିବାକୁ ପରାମର୍ଶ ଦେଲେ । ଅଧିବେଶନରେ ଗୋଟିଏ ଲମ୍ବା ବକ୍ତୃତା ଦେଇ ସୁରେନ୍ଦ୍ର ଆଉ ଜାମସେଦପୁର ନ ଯାଇ କଟକ ଫେରିଲେ ।

୧୯୪୯ ମସିହା ଆଡ଼କୁ ପାଟଣା ମହାରାଜା 'ଦୈନିକ ଗଣତନ୍ତ୍ର' ପ୍ରକାଶପାଇଁ ଉଦ୍ୟମ କରୁଥାନ୍ତି । ସେ ସୁରେନ୍ଦ୍ରଙ୍କୁ କଲିକତା ଡକାଇ ଏ ବିଷୟରେ ଆଲୋଚନା କଲେ । ତାଙ୍କୁ ମଧ୍ୟ ପରିଚାଳନା ଦାୟିତ୍ୱ ନେବାକୁ କହିଲେ । ମାତ୍ର ସୁରେନ୍ଦ୍ର ନିଜର ଅସାମର୍ଥ୍ୟ ପ୍ରକାଶ କରି 'ମାତୃଭୂମି'ର ସମ୍ପାଦକ ବାଳକୃଷ୍ଣ କରଙ୍କ ନାମ ପ୍ରସ୍ତାବ କଲେ । ପାଟଣା ମହାରାଜା ବାଳକୃଷ୍ଣ କରଙ୍କ ସଙ୍ଗେ ଆଲୋଚନା କଲେ । ସ୍ଥିର ହେଲା ଯେ 'ମାତୃଭୂମି' ଦୈନିକରେ ପରିଣତ ହେବ ଓ ନବଗଠିତ ଗଣତନ୍ତ୍ର ପରିଷଦକୁ ସମର୍ଥନ ଦେବ । ମହାରାଜା ମଧ୍ୟ ବାଳକୃଷ୍ଣବାବୁଙ୍କୁ କାଗଜ କିଣିବାପାଇଁ କୋଡ଼ିଏ ହଜାର ଟଙ୍କା ଦେଲେ । 'ମାତୃଭୂମି' ଏହାପରେ ଦୈନିକରେ ପରିଣତ ହେଲା । ମାତ୍ର ପ୍ରଥମ ଗୋଟିଏ ଦୁଇଟି ସଂଖ୍ୟା ପରେ 'ମାତୃଭୂମି' ତା'ର ଦଳ-ନିରପେକ୍ଷ ନୀତି ରକ୍ଷା କରିବାରେ ସଚେଷ୍ଟ ହେଲା । ମହାରାଜା 'ମାତୃଭୂମି' ଠାରୁ ଆଶାନୁରୂପ ସମର୍ଥନ ପାଇଲେ ନାହିଁ ।

### ସାପ୍ତାହିକ ଗଣତନ୍ତ୍ର

କିଛି ମାସ ପରେ ସୁରେନ୍ଦ୍ର ବଲାଙ୍ଗୀର ମହାରାଜାଙ୍କ ଠାରୁ ଖବର ପାଇଲେ ବଲାଙ୍ଗୀର ଯିବାକୁ । କିନ୍ତୁ ହଠାତ୍ କଟକ ଛାଡ଼ି ବଲାଙ୍ଗୀର ଯିବା ତାଙ୍କ ପକ୍ଷେ ସମ୍ଭବ ନ ଥିଲା । ସ୍ତ୍ରୀ ଓ ପିଲାମାନଙ୍କ ଦେହ ଭଲ ନ ଥିଲା । ନିଜ ଦେହ ମଧ୍ୟ ଭଲ ନ ଥିଲା । ପରେ ଯିବେ ବୋଲି ଜଣାଇଲେ । କିଛି ଦିନ ପରେ ବଲାଙ୍ଗୀର ଗଲେ । ମହାରାଜାଙ୍କ ପୃଷ୍ଠପୋଷକତାରେ 'ସାପ୍ତାହିକ ଗଣତନ୍ତ୍ର' ବାହାରୁଥାଏ । ସେ ତାହାର ମୁଖ୍ୟ ସମ୍ପାଦକ ହେଲେ ଓ ତାହା ଛଡ଼ା 'ଗଣତନ୍ତ୍ର' ପରିଷଦର ସଙ୍ଗଠନ ସମ୍ପାଦକ ମଧ୍ୟ ହେଲେ । ମାଗଣାରେ ରହିବାପାଇଁ ଘର ଓ ଗୋଟିଏ ଭୃତ୍ୟ ସହିତ ମାସକୁ ୩୫୦ ଟଙ୍କା ଲେଖାଏଁ ବେତନର ବ୍ୟବସ୍ଥା ଥିଲା ।

ସୁରେନ୍ଦ୍ର ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି – ''ବହୁ ବର୍ଷର ଅନିଶ୍ଚିତତା ଓ କାବୁଲୀବାଲାମାନଙ୍କର ଦ୍ୱାରସ୍ଥ ହେବା ପରେ ମୁଁ ଖୋଜୁଥିଲି କିଛିଟା ନିର୍ଭରଯୋଗ୍ୟ ନିଶ୍ଚିତତା ।''

ତାହା ତାଙ୍କୁ ମିଳିଲା । ପୁରୁଣା ନଅରର ଆଉଟ୍ ହାଉସର ଗୋଟିଏ ଛୋଟ କୋଠରି ହେଲା ରୋଷାଇ ଘର । ସାପ୍ତାହିକ 'ଗଣତନ୍ତ୍ର' ପାଇଁ ଘଣ୍ଟାଏ ଡିକ୍‌ଟେସନ ଦେଉଥିଲେ । ପ୍ରୁଫ୍ ପ୍ରଭୃତି ଦେଖିବାକୁ ଅଧଘଣ୍ଟା ଲାଗୁଥିଲା । 'କୂର୍ମ ଓ କୋଣାର୍କ' ନାମକ ଧାରାବାହିକ ଉପନ୍ୟାସ ଲେଖିବାରେ ଅବଶିଷ୍ଟ ସମୟ ଦେଲେ ।

## ପଣ୍ଡିତ ନେହରୁଙ୍କୁ ଖୋଲା ଚିଠି

ଭାରତରେ ପ୍ରଥମ ସାଧାରଣ ନିର୍ବାଚନ ବେଳର କଥା । ପଣ୍ଡିତ ନେହରୁ କଂଗ୍ରେସପାଇଁ ନିର୍ବାଚନ ପ୍ରଚାର କରିବାକୁ ଆସିବାର କାର୍ଯ୍ୟକ୍ରମ ଥାଏ । ସୁରେନ୍ଦ୍ରବାବୁ 'ସାପ୍ତାହିକ ଗଣତନ୍ତ୍ର'ର ସମ୍ପାଦକ ଥାଆନ୍ତି । ସେ ପଣ୍ଡିତ ଜବାହରଲାଲଙ୍କୁ ଗୋଟିଏ 'ଖୋଲା ଚିଠି' ଦେବାକୁ ସ୍ଥିର କଲେ । ସହ-ସମ୍ପାଦକଙ୍କୁ ଡାକି ସେ ଡିକ୍‌ଟେସନ ଦେଲେ । ଏହି ଖୋଲା ଚିଠିଟି ପ୍ରେସ୍‌ରେ କମ୍ପୋଜ ହେଲା । ପଣ୍ଡିତ ନେହରୁଙ୍କ ଆସିବା ଦିନ ଏହା ଛପା ଯାଇ ବଲାଙ୍ଗୀର ସହରରେ ବଣ୍ଟା ହେଲା ।

ପଣ୍ଡିତ ନେହରୁ ବଲାଙ୍ଗୀରରେ ପହଞ୍ଚିଲେ । ଦଳ ଦଳ ହୋଇ ଲୋକ ଗାଁ-ଗହଳିରୁ ଆସିଲେ ବଲାଙ୍ଗୀର ନେହରୁଙ୍କୁ ଦେଖିବାପାଇଁ ଓ ଶୁଣିବାପାଇଁ । ଟ୍ରକ ଟ୍ରାକ୍ଟର ଯୋଗେ କଂଗ୍ରେସ ଦଳ ପକ୍ଷରୁ ଲୋକ ବୁହା ହେଉଥାନ୍ତି । ଲୋକେ ମଧ୍ୟ ଚିଠି ଦେବାର ପରିଣତି କ'ଣ ହେବ, ତାହା ଜାଣିବାପାଇଁ ଉତ୍କଣ୍ଠିତ ହେବା ସ୍ୱାଭାବିକ ।

ପଣ୍ଡିତଜୀଙ୍କ ଆସିବା ଦିନ ସକାଳେ ଜିଲ୍ଲା କଲେକ୍ଟରଙ୍କ ପେସ୍କାର ସୁରେନ୍ଦ୍ରଙ୍କୁ ଡାକିଲେ । କଲେକ୍ଟର ଥିଲେ ରାମକୃଷ୍ଣାୟା । ସେ ସୁରେନ୍ଦ୍ରବାବୁଙ୍କୁ ଖୋଲା ଚିଠିର ଗୋଟାଏ ଇଂରାଜୀ ଅନୁବାଦ କରିବାକୁ କହିଲେ । ସେ ପ୍ରଥମେ କେଉଁ ଆଇନ ବଳରେ ଏହା ଚାହୁଁଛନ୍ତି ବୋଲି ସୁରେନ୍ଦ୍ର ପ୍ରଶ୍ନ କଲେ । କଲେକ୍ଟର କିନ୍ତୁ ତାହା ନ ଶୁଣି ଇଂରାଜୀ ଅନୁବାଦ କରିବାକୁ ପୁଣିଥରେ କହିଲେ । ସୁରେନ୍ଦ୍ରବାବୁ କିନ୍ତୁ ନିର୍ଭୀକ ଭାବେ ଉତ୍ତର ଦେଲେ – ''ମୁଁ ଦୁଃଖିତ । ମୁଁ ଆପଣଙ୍କର ଅନୁବାଦକ (ଟ୍ରାନ୍‌ସଲେଟର) ନୁହେଁ ।''

ଖୋଲା ଚିଠିଟି ଥିଲା ସଂକ୍ଷିପ୍ତ – ''କଂଗ୍ରେସ ଆଜି ଦୁର୍ନୀତିରେ କୁଷ୍ଠବ୍ୟାଧିଗ୍ରସ୍ତ ରୋଗୀର ଅଙ୍ଗପ୍ରତ୍ୟଙ୍ଗ ପରି ଗଳିତ ହୋଇଗଲାଣି । × × × ଆପଣ ଭାରତର ଜବାହର ଥିଲେ । ଆଜି ଜହର ହୁଅନ୍ତୁ ନାହିଁ ।'' ପଣ୍ଡିତ ଜବାହରଲାଲ ନେହରୁ ଇଂରାଜୀ ଅନୁବାଦଟି ପଢ଼ି ଉତ୍କ୍ଷିପ୍ତ ହୋଇପଡ଼ିଲେ । ସଭାରେ ପାଟଣା ଭଳି ଗୋଟିଏ ଛୋଟିଆ ରାଜ୍ୟରେ – ଯାହାର ନାଁ ବି କେବେ ଶୁଣି ନାହାନ୍ତି – ଗୋଟିଏ ଖୋଲା ଚିଠି ମିଳିଛି ବୋଲି କ୍ରୋଧାନ୍ୱିତ ହୋଇ କହିଚାଲିଲେ । ପ୍ରିୟ ମହାରାଜାଙ୍କୁ ଗାଳି ଦେଉଛନ୍ତି ଭାବି ଶ୍ରୋତାମାନେ ସଭାସ୍ଥଳୀ ଛାଡ଼ି ଚାଲି ଯାଉଥିବାର ଦେଖାଗଲା । ପଣ୍ଡିତଜୀଙ୍କ ଭାଷଣ ମଧ୍ୟ ଅସମାପ୍ତ ରହିଲା । ସଭା ଭାଙ୍ଗିଲା । ସୁରେନ୍ଦ୍ରବାବୁ ବଲାଙ୍ଗୀର ଅଧିବାସୀଙ୍କ ଆପଣାର ହୋଇପଡ଼ିଲେ ।

ଲୋକସଭା ନିର୍ବାଚନରେ ବଲାଙ୍ଗୀର ନିର୍ବାଚନ ମଣ୍ଡଳୀରୁ ମହାରାଜା ନିଜେ ପ୍ରାର୍ଥୀ ହୋଇଥିଲେ । ସେ ତ ବିପୁଳ ସଂଖ୍ୟାରେ ଜୟଲାଭ କଲେ, ଗଡ଼ଜାତମାନଙ୍କରୁ ଗଣତନ୍ତ୍ର ପରିଷଦ ୩୧ଟି ଆସନ ଲାଭ କଲା । ଏହା ଆଶାତୀତ ଥିଲା । ସମସ୍ତେ ବିସ୍ମିତ ହେଲେ । ସୁରେନ୍ଦ୍ରବାବୁଙ୍କ ପ୍ରସ୍ତାବ ଅନୁଯାୟୀ ସମ୍ବଲପୁରର ବିଶିଷ୍ଟ ନେତା ଶ୍ରଦ୍ଧାକର ସୂପକାର ବିଧାନସଭା ଗଣତନ୍ତ୍ର ଦଳର ନେତା ରୂପେ ନିର୍ବାଚିତ ହେଲେ । ସୁରେନ୍ଦ୍ରବାବୁ ଦଳର ସମ୍ପାଦକ ଭାବେ ମନୋନୀତ ହେଲେ ।

**ରାଜ୍ୟସଭା ସଦସ୍ୟ**

'ଗଣତନ୍ତ୍ର ପରିଷଦ'ର ସଙ୍ଗଠନ ସମ୍ପାଦକ ଭାବେ ସୁରେନ୍ଦ୍ରବାବୁ ରହିଥାନ୍ତି । ସେ ପର୍ଯ୍ୟନ୍ତ ସେ କୌଣସି ପଦପଦବୀରେ ରହିବେ ବୋଲି ଚିନ୍ତା କରି ନ ଥିଲେ । ମାତ୍ର ଶେଷରେ କାଉନସିଲ ଅଫ ଷ୍ଟେଟ୍‌ସକୁ ଯିବାକୁ ମନସ୍ଥ କରି ମହାରାଜାଙ୍କୁ କହିଲେ । କେତେଥର ପାଟଣା ମହାରାଜାଙ୍କୁ ପଚାରିବାପରେ ସେ କହିଲେ – 'ମନ୍ଦ ହୁଅନ୍ତା ନାହିଁ' ।

ସୁରେନ୍ଦ୍ରବାବୁଙ୍କ ପ୍ରତିଦ୍ୱନ୍ଦ୍ୱୀ ଥିଲେ ପୂର୍ଣ୍ଣଚନ୍ଦ୍ର ମିଶ୍ର । ସେ ଗଣତନ୍ତ୍ର ପରିଷଦର ସମ୍ପାଦକ ଥିଲେ । ସେ ମଧ୍ୟ ବଲାଙ୍ଗୀରର ଅଧିବାସୀ ଥିଲେ । ବିଶିଷ୍ଟ ଐତିହାସିକ ରୂପେ ତାଙ୍କର ବେଶ୍ ଖ୍ୟାତି ଥିଲା । ସୁରେନ୍ଦ୍ରବାବୁଙ୍କ ଅପେକ୍ଷା ତାଙ୍କର ଦାବି ବଳବତ୍ତର ଥିଲା । ମାତ୍ର ଶେଷରେ ଗଣତନ୍ତ୍ର ପରିଷଦର ସଭାପତି ତଥା ସର୍ବମୟ କର୍ତ୍ତା ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କୁ ନିଷ୍ପତ୍ତି ନେବାକୁ ଦାୟିତ୍ୱ ଦିଆଗଲା । ମହାରାଜାଙ୍କର 'ମୌନଂ ସମ୍ମତି ଲକ୍ଷଣ' ସୁରେନ୍ଦ୍ରବାବୁଙ୍କ ସହାୟକ ହେଲା । ପୂର୍ଣ୍ଣବାବୁ ନୋମିନେସନ୍ ଫାଇଲ୍‌ପାଇଁ ଶେଷ ମୁହୂର୍ତ୍ତରେ ଟଙ୍କା ଯୋଗାଡ଼ କରିପାରିଲେ ନାହିଁ । ସୁରେନ୍ଦ୍ରବାବୁ ନିର୍ବାଚିତ ହେଲେ । ସେ ଏଥିପାଇଁ ମହାରାଜାଙ୍କୁ ନିଜର କୃତଜ୍ଞତା ଜଣାଇଲେ ।

**ଷଢ଼େଇକଳା ଓ ଖରସୁଆଁ ପ୍ରସଙ୍ଗ**

୧୯୪୮ ମସିହା ଅଗଷ୍ଟ ପହିଲା ଦିନ ଭାରତର ଗଭର୍ଣ୍ଣର ଜେନେରାଲଙ୍କ ଆଦେଶ ମୁତାବକ ଷଢ଼େଇକଳା ଓ ଖରସୁଆଁ ବିହାର ସହିତ ସ୍ଥାୟୀ ଭାବରେ ମିଶିଲା । ପୂର୍ବରୁ ଓଡ଼ିଶା ସହିତ ମୟୂରଭଞ୍ଜର ମିଶ୍ରଣ ହୋଇ ନ ଥିବା ଦୃଷ୍ଟିରୁ ସେହି ସାମୟିକ ବ୍ୟବସ୍ଥାକୁ ବାତିଲ କରିବା ପରିବର୍ତ୍ତେ ଭାରତ ସରକାର ଏହି ମିଶ୍ରଣକୁ ଚିରସ୍ଥାୟୀ କରିଦେଲେ । ଏହାର କାରଣ, ବହୁମାନ୍ୟ ବିହାରର ନେତା ରାଷ୍ଟ୍ରପତି ଡଃ ରାଜେନ୍ଦ୍ରପ୍ରସାଦ ଷଢ଼େଇକଳା-ଖରସୁଆଁ ଓଡ଼ିଶା ସହିତ ମିଶିବାକୁ ଚାହୁଁ ନ ଥିଲେ । ଓଡ଼ିଶାର କଂଗ୍ରେସ ନେତାମାନେ ତାଙ୍କ ଭୟରେ ହେଉ ବା ଚାପରେ ହେଉ, ଷଢ଼େଇକଳା-ଖରସୁଆଁର ଓଡ଼ିଶା ସହିତ ପୁନଃମିଶ୍ରଣପାଇଁ ସେପରି ଆଗ୍ରହୀ ନ ଥିଲେ ।

ଷଢ଼େଇକଳା-ଖରସୁଆଁ ଓ କେତେକାଂଶରେ ସିଂହଭୂମ ସଦର ଡିଭିଜନ୍‌ରେ ଓଡ଼ିଆମାନଙ୍କ ପ୍ରବଳ ବିକ୍ଷୋଭ ଓ ଆନ୍ଦୋଳନ ହେଲା । ତାହାକୁ ଦବାଇଦେବାପାଇଁ

ବିହାର ସରକାରଙ୍କ ଦମନଲୀଳା ମଧ୍ୟ ଉତ୍କଟ ହେଲା । ଓଡ଼ିଆ ଅଧିବାସୀମାନଙ୍କ ମଧ୍ୟରେ ଆତ୍ମପ୍ରତ୍ୟୟ ବଞ୍ଚାଇ ରଖିବାପାଇଁ କୋଶଳ-ଉତ୍କଳ ପ୍ରଜା ପରିଷଦ ପକ୍ଷରୁ ଗୋଟିଏ ପ୍ରତିନିଧି ଦଳ ଗଢ଼ା ହେଲା । ଏହି ପ୍ରତିନିଧି ଦଳର ନେତୃତ୍ୱ ନେଲେ ପାଟଣା ମହାରାଜା । ସୁରେନ୍ଦ୍ରବାବୁ ହେଲେ ଏହାର ସମ୍ପାଦକ । ସେମାନେ ଷଢ଼େଇକଳା-ଖରସୁଆଁ ଓ ସିଂହଭୂମ ଅଞ୍ଚଳରେ ପ୍ରାୟ ଦୁଇ ସପ୍ତାହ ବୁଲି ଓଡ଼ିଆମାନଙ୍କ ଉପରେ ନିର୍ଯାତନା ସମ୍ପର୍କରେ ବହୁ ସାକ୍ଷ୍ୟ ସଂଗ୍ରହ କରି ଲିପିବଦ୍ଧ କଲେ । ପାର୍ଲିଆମେଣ୍ଟରେ ଲୋକସଭାରେ ରାଜେନ୍ଦ୍ର ନାରାୟଣ ସିଂହଦେଓ ଓ ରାଜ୍ୟସଭାରେ ସୁରେନ୍ଦ୍ରବାବୁ ବାରମ୍ବାର ଷଢ଼େଇକଳା ଖରସୁଆଁ ପ୍ରଶ୍ନ ଉତ୍ଥାପନ କରି ଓଡ଼ିଶା ପ୍ରତି ସୁବିଚାରପାଇଁ ଦାବି କଲେ ।

ଏ ସମ୍ପର୍କରେ ଥରେ ସୁରେନ୍ଦ୍ରବାବୁଙ୍କ ଗୋଟିଏ ପ୍ରଶ୍ନର ଉତ୍ତରରେ କେନ୍ଦ୍ର ସ୍ୱରାଷ୍ଟ୍ରମନ୍ତ୍ରୀ ଡଃ କାଟଜୁ ଏଥିପାଇଁ ସମ୍ବିଧାନର ତୃତୀୟ ଧାରା ଅନୁସାରେ ଓଡ଼ିଶା ସରକାର କାର୍ଯ୍ୟାନୁଷ୍ଠାନ କରିବା ଉଚିତ ବୋଲି ଜଣାଇଲେ । ଏ ବିଷୟ ମଧ୍ୟ ତତ୍କାଳୀନ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କ ଦୃଷ୍ଟିକୁ ଅଣାଗଲା । ମାତ୍ର ଓଡ଼ିଶା ସରକାର ତଥା କଂଗ୍ରେସ ନେତୃବୃନ୍ଦ ଏ ଦିଗରେ ସମ୍ପୂର୍ଣ୍ଣ ଉଦାସୀନ ରହିଲେ ।

ରାଜ୍ୟ ପୁନର୍ଗଠନପାଇଁ ୧୯୫୩ ମସିହାରେ ଏକ କମିସନ ନିଯୁକ୍ତ ହେଲା । ଉତ୍କଳ ସମ୍ମିଳନୀ ଓ ଗଣତନ୍ତ୍ର ପରିଷଦ ତରଫରୁ ସୁରେନ୍ଦ୍ରବାବୁ କମିସନଙ୍କ ଆଗେ ସାକ୍ଷ୍ୟ ଦେଲେ । କେ.ଏମ୍ ପାନିକର ସବୁ ପ୍ରଶ୍ନ ପଚାରିଲେ । ମାତ୍ର ତାଙ୍କ ପ୍ରଶ୍ନ ସବୁ ଓଡ଼ିଶା ବିରୋଧରେ ହିଁ ଯାଇଥିଲା । କମିସନର ଅଧ୍ୟକ୍ଷ ଫଜ୍‌ଲ ଅଲ୍ଲୀ ଥିଲେ ବିହାରର ଅଧିବାସୀ । ସୁତରାଂ ଓଡ଼ିଶାର ସମସ୍ତ ଦାବି ଉପେକ୍ଷିତ ହେଲା । ୧୯୫୫ ମସିହାରେ ସୁରେନ୍ଦ୍ରବାବୁ ଓ ପାଟଣା ମହାରାଜା ପ୍ରଧାନମନ୍ତ୍ରୀ ଓ ସ୍ୱରାଷ୍ଟ୍ରମନ୍ତ୍ରୀଙ୍କୁ ସାକ୍ଷାତ୍ କରି କମିସନର ରିପୋର୍ଟ ସମ୍ପର୍କରେ ଏକ ଆବେଦନ ପତ୍ର ଦେଲେ ।

ସୁରେନ୍ଦ୍ରବାବୁ ଏ ସଂକ୍ରାନ୍ତରେ ଲେଖିଛନ୍ତି – ''ତଥ୍ୟ, ଯୁକ୍ତି ଓ ନ୍ୟାୟ ଥିଲା ସିନା ଆମ ପକ୍ଷରେ, କିନ୍ତୁ ଜିଦ୍ ଓ ବାହୁବଳ ଥିଲା ବିହାର ସପକ୍ଷରେ । ତା' ଉପରେ ପୁଣି ଓଡ଼ିଶାରେ ଶାସନକ୍ଷମତାପନ୍ନ ଦଳର ଦୁର୍ବଳ ନେତୃତ୍ୱ । ତେଣୁ ୧୯୫୬ ମସିହାରେ ଭାରତ ସରକାରଙ୍କ ଆଦେଶ ଅନୁଯାୟୀ ବିଚ୍ଛିନ୍ନାଞ୍ଚଳପାଇଁ ଓଡ଼ିଶାର ଦାବି ଏକବାରେକେ ଉଡ଼ିଗଲା ।''

ରାଜ୍ୟ ପୁନର୍ଗଠିତ ବିଲ୍ ଆଲୋଚିତ ହେଲାବେଳେ ରାଜ୍ୟସଭାରେ ସୁରେନ୍ଦ୍ରବାବୁ ଓ ଲୋକସଭାରେ ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ ପଦେ ପଦେ ଏହାର ବିରୋଧ କରିଥିଲେ ।

ସୁରେନ୍ଦ୍ରବାବୁ ହୀରାକୁଦ ଯୋଜନା ଉପରେ ବହୁ ପ୍ରଶ୍ନ ଉଠାଇଥିଲେ । ତାଙ୍କର ପ୍ରଶ୍ନବାଣରେ ମନ୍ତ୍ରୀ ଗୁଲଜାରିଲାଲ ନନ୍ଦା ଅତିଷ୍ଠ ହୋଇ ବସି ପଡୁଥିଲେ ।

ସେହିପରି ହିନ୍ଦୁ ବିବାହ ବିଚ୍ଛେଦ ବିଲ୍‌କୁ ସୁରେନ୍ଦ୍ରବାବୁ ଘୋର ବିରୋଧ କରିଥିଲେ । ବିବାହ ବିଧି ନିର୍ଦ୍ଦିଷ୍ଟ ଓ ତାହା ଅବିଚ୍ଛେଦ୍ୟ ବୋଲି ତାଙ୍କର ଦୃଢ଼ ଧାରଣା ଥିଲା । ସେ ଯେପରି ଦୃଢ଼ ବିରୋଧ କଲେ ତାହା 'ନବଭାରତ ଟାଇମ୍‌ସ' ପ୍ରଭୃତି ପ୍ରଖ୍ୟାତ କାଗଜରେ ପ୍ରକାଶ ପାଇଥିଲା । ସ୍ୱୟଂ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହରୁ ସୁରେନ୍ଦ୍ରବାବୁଙ୍କୁ ପ୍ରକାରାନ୍ତରେ କ୍ଷମା ମାଗିଥିଲେ ।

ସୁରେନ୍ଦ୍ରବାବୁଙ୍କୁ ଦିଲ୍ଲୀର ପ୍ରଖ୍ୟାତ ଦୈନିକମାନେ ସର୍ବକନିଷ୍ଠ ସଭ୍ୟ ଭାବେ ବର୍ଣ୍ଣନା କରୁଥିଲେ ।

ରାଜ୍ୟସଭାର ସଭ୍ୟ ଥିଲା ବେଳେ ସୁରେନ୍ଦ୍ରବାବୁ ଭାରତର ପ୍ରଥମ ପାର୍ଲିଆମେଣ୍ଟାରୀ ଦଳରେ ଚୀନ ଯାଇଥିଲେ । ପ୍ରଧାନମନ୍ତ୍ରୀ ନେହରୁ ତାଙ୍କ ନାମକୁ ସ୍ୱୀକୃତି ଦେଇଥିଲେ । ଚୀନରେ ସେ ପ୍ରାୟ ଗୋଟାଏ ମାସ କଟାଇଥିଲେ ।

## ଦୈନିକ 'ଗଣତନ୍ତ୍ର' ପ୍ରତିଷ୍ଠା

ଗଣପ୍ରକାଶନୀ ଟ୍ରଷ୍ଟ ପକ୍ଷରୁ କଟକରେ ୧୯୫୫ ବେଳକୁ ଦୈନିକ 'ଗଣତନ୍ତ୍ର' ପ୍ରକାଶ ପାଇଲା । ସୁରେନ୍ଦ୍ରବାବୁ ଏହାର ସମ୍ପାଦକ ହେଲେ । ଯୁଗ୍ମ ସମ୍ପାଦକ ହେଲେ ବସନ୍ତକୋକିଳ ଭଗବାନ୍ ପତି । ପୂର୍ବନିର୍ଦ୍ଧାରିତ ଦୀପାବଳୀ ଅମାବାସ୍ୟା ସନ୍ଧ୍ୟାରେ ଦୈନିକ ଗଣତନ୍ତ୍ର ଜନ୍ମ ଲାଭ କଲା । ଆରମ୍ଭରେ ଏହାର ପ୍ରସାର ଥିଲା ମାତ୍ର ଦୁଇ ହଜାର । ୧୯୬୦ ମସିହାରେ ସୁରେନ୍ଦ୍ରବାବୁ ବିଦାୟ ନେଇ ଆସିଲାବେଳେ ଏହା ପାଞ୍ଚ ହଜାରରେ ପହଞ୍ଚିଥିଲା ।

## ଦ୍ୱିତୀୟ ଲୋକସଭା ନିର୍ବାଚନ

ଦ୍ୱିତୀୟ ଲୋକସଭା ନିର୍ବାଚନରେ ସୁରେନ୍ଦ୍ରବାବୁ ପଶ୍ଚିମ କଟକ ନିର୍ବାଚନ ମଣ୍ଡଳୀରୁ ପ୍ରାର୍ଥୀ ହେଲେ ଓ ଜିଣିଲେ ମଧ୍ୟ ।

ସୀମା ଆନ୍ଦୋଳନ ନେତୃତ୍ୱ ନେବା ଫଳରେ ଗଣତନ୍ତ୍ର ପରିଷଦ ଖୁବ୍ ଶକ୍ତିଶାଳୀ ହୋଇଉଠିଥିଲା । ପ୍ରଥମ ସାଧାରଣ ନିର୍ବାଚନରେ ଗଣତନ୍ତ୍ର ପରିଷଦ ବିଧାନସଭାରେ ୩୧ଟି ଆସନ ଲାଭ କରିଥିଲା । ଦ୍ୱିତୀୟ ନିର୍ବାଚନରେ ଗଣତନ୍ତ୍ର ପରିଷଦ ବିଧାନସଭାରେ ୫୧ଗୋଟି ଆସନ ପାଇଲା । ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ କଂଗ୍ରେସ ପାଇଲା ମୋଟେ ୫୬ଟି ଆସନ । ଫଳରେ କୌଣସି ଦଳ ନିରଙ୍କୁଶ ଭାବରେ ସଂଖ୍ୟାଗରିଷ୍ଠ ଦଳ ହୋଇପାରିଲା ନାହିଁ । ମହତାବ ସ୍ୱାଧୀନ ସଭ୍ୟମାନଙ୍କୁ ଅକ୍ତିଆର କରି କଳେବଳେକୌଶଳେ ମନ୍ତ୍ରିମଣ୍ଡଳ ଗଢ଼ିଲେ ସତ, ମାତ୍ର ମନ୍ତ୍ରିମଣ୍ଡଳ ସର୍ବଦା ଟଳମଟଳ ଅବସ୍ଥାରେ ରହିଲା । ସରକାରଙ୍କ ଏକମାତ୍ର ଲକ୍ଷ୍ୟ ହେଲା ଆତ୍ମରକ୍ଷା । ତେଣୁ ଅନ୍ୟ କଥା ଭାବିବାପାଇଁ ଅବକାଶ ନ ଥିଲା । ଏ ଅବସ୍ଥା ଲକ୍ଷ୍ୟ କରି ସୁରେନ୍ଦ୍ରବାବୁ ସର୍ବପ୍ରଥମେ କଂଗ୍ରେସ ଓ

ଗଣତନ୍ତ୍ର ପରିଷଦ ମିଳିତ ମନ୍ତ୍ରିମଣ୍ଡଳ ଗଢ଼ିବାପାଇଁ ସମ୍ପାଦକୀୟ ଅଗ୍ରଲେଖାମାନଙ୍କରେ ଆଲୋଚନା ଆରମ୍ଭ କଲେ । କିନ୍ତୁ କଂଗ୍ରେସ ନିଜକୁ ଏକ ମହାଭାରତୀୟ ଦଳ ବିଚାରୁଥିବାରୁ 'ରାଜାରାଜୁଡ଼ା'ଙ୍କ ପରିଚାଳିତ ଦଳ ସହିତ ମିଶି ମିଳିତ ମନ୍ତ୍ରିମଣ୍ଡଳ ଗଠନ କରିବା ପ୍ରସ୍ତାବକୁ ନାପସନ୍ଦ କରିଥିଲା । 'ଗଣତନ୍ତ୍ର ପରିଷଦ'ର ନେତୃବୃନ୍ଦ ମଧ୍ୟ କଂଗ୍ରେସ ସହିତ ହାତ ମିଳାଇବାକୁ ପସନ୍ଦ କରୁ ନ ଥିଲେ । ଦଳର ନେତା ରାଜେନ୍ଦ୍ର ନାରାୟଣ ସିଂହଦେଓ ମଧ୍ୟ ସ୍ପଷ୍ଟ ମତାମତ ନ ଦେଇ ନୀରବ ରହୁଥିଲେ ।

କିନ୍ତୁ ସୁରେନ୍ଦ୍ରବାବୁ ଥରେ ଢେଙ୍କାନାଳରୁ କଟକ ଫେରିବା ବାଟରେ ଟ୍ରାଫିକ ଜାମ୍‌ରେ ଅଟକି ରହିଥିଲେ । କଟକ ଆଡୁ ଆସୁଥିଲେ ବିଜୁବାବୁ । ସେ ସେତେବେଳେ ଜଣେ ଏମ୍.ଏଲ୍.ଏ. ମାତ୍ର ଥିଲେ । ସେ ସୁରେନ୍ଦ୍ରବାବୁଙ୍କୁ ଦେଖି ତାଙ୍କ ସମ୍ପାଦକୀୟମାନ ପଢୁଛନ୍ତି ବୋଲି କହିଲେ । ମିଳିତ ମନ୍ତ୍ରିମଣ୍ଡଳ ଗଢ଼ିବା ଛଡ଼ା ଅନ୍ୟ ବାଟ ନାହିଁ ବୋଲି ମନ୍ତବ୍ୟ ମଧ୍ୟ ଦେଲେ । ପାଟଣା ମହାରାଜାଙ୍କୁ ନେଇ ତାଙ୍କ ଘରକୁ ଆସିବାକୁ କହିଲେ । ପ୍ରାୟ ତିନି ଚାରି ଦିନ ପରେ ଆନନ୍ଦଭବନରେ ମଧ୍ୟାହ୍ନ ଭୋଜନର ଆୟୋଜନ ହେଲା । କଂଗ୍ରେସ ପକ୍ଷରୁ ହରେକୃଷ୍ଣ ମହତାବଙ୍କ ବ୍ୟତୀତ ଲିଙ୍ଗରାଜ ପାଣିଗ୍ରାହୀ ମଧ୍ୟ ଉପସ୍ଥିତ ଥିଲେ । ମହତାବଙ୍କ ନେତୃତ୍ୱରେ ଗଣତନ୍ତ୍ର ପରିଷଦ କଂଗ୍ରେସ ସହିତ ମିଶି ମନ୍ତ୍ରିମଣ୍ଡଳ ଗଢ଼ିବାରେ ଆପତ୍ତି ନାହିଁ ଲେଖି ସୁରେନ୍ଦ୍ରବାବୁ ପାଟଣା ମହାରାଜାଙ୍କ ଆଡ଼େ ବଢ଼ାଇଦେଲେ ତାଙ୍କର ସ୍ୱାକ୍ଷରପାଇଁ । କିନ୍ତୁ ମହାରାଜା ଉତ୍ତର ଦେଲେ –

'ଚେୟାରମ୍ୟାନଙ୍କ ସ୍ୱାକ୍ଷର ତ ଯଥେଷ୍ଟ ।' ସୁରେନ୍ଦ୍ରବାବୁ ଏକଥା ଗୋପନୀୟ ରଖିବାକୁ ବିଜୁବାବୁଙ୍କୁ କହିଥିଲେ । କିନ୍ତୁ କୌଣସି ସୂତ୍ରରୁ ଏହା ପ୍ରକାଶ ପାଇଗଲା । ଏହା ପରେ ପରେ ଗୋଦାବରୀଶ ମହାପାତ୍ରଙ୍କ 'ନିଆଁଖୁଣ୍ଟା' ସୁରେନ୍ଦ୍ରବାବୁଙ୍କ ନାମରେ କୁତ୍ସାରଟନା କରିବାରେ ଲାଗିଲା । ସେ ମହତାବବାବୁଙ୍କ ତରଫରୁ ଦଲାଲୀ କରି ଗଣତନ୍ତ୍ର ପରିଷଦକୁ କଂଗ୍ରେସରେ ମିଶାଉଛନ୍ତି ବୋଲି ବ୍ୟକ୍ତିଗତ ଆକ୍ରମଣ ବି କଲେ । ଏହାର ଦୁଇ ତିନି ଦିନ ପରେ ମହତାବ କଲିକତା ଏଆରପୋର୍ଟରେ କୌଣସି ସାମ୍ବାଦିକଙ୍କ ଆଗରେ ତାଙ୍କ ନେତୃତ୍ୱରେ ଗଣତନ୍ତ୍ର ପରିଷଦ କଂଗ୍ରେସ ସହିତ ମିଳିତ ମନ୍ତ୍ରିମଣ୍ଡଳ ଶାସନ କରିବାପାଇଁ ପ୍ରସ୍ତାବ ଧରି ସେ ଦିଲ୍ଲୀ ଯାଉଛନ୍ତି ବୋଲି ପ୍ରକାଶ କରିଦେଲେ । ଏହାପରେ ଗଣତନ୍ତ୍ର ପରିଷଦର ଏମ୍. ଏଲ୍. ଏ. ମାନେ ମଧ୍ୟ ସୁରେନ୍ଦ୍ରବାବୁଙ୍କୁ ଆକ୍ରମଣ ଆରମ୍ଭ କରିଦେଲେ । ସୁରେନ୍ଦ୍ରବାବୁ ପାଟଣା ମହାରାଜାଙ୍କୁ ଏ ବିଷୟରେ ଜଣାଇଲେ । ମାତ୍ର ମହାରାଜା ଉତ୍ତର ଦେଲେ – ''ତୁମେ ହିଁ ଏହାକୁ ସମ୍ଭାଳିବ ।''

ଗଣତନ୍ତ୍ର ପରିଷଦର କାର୍ଯ୍ୟକାରୀ କମିଟି ବୈଠକରେ ଏ ବିଷୟରେ ଆଲୋଚନା ହେଲା । ସୁରେନ୍ଦ୍ରବାବୁ ତାଙ୍କର ଦୃପ୍ତ ଭାଷଣରେ କହିଲେ ଯେ ସେ ଲୋକସଭାକୁ ନିର୍ବାଚିତ

ହୋଇଛନ୍ତି । ତେଣୁ ମିଳିତ ମନ୍ତ୍ରିମଣ୍ଡଳ ଗଢ଼ାହେଲେ ସେ ମନ୍ତ୍ରୀ ହେବାର ସମ୍ଭାବନା ନାହିଁ କି ତାଙ୍କର ସେଥିପ୍ରତି ଲାଳସା ମଧ୍ୟ ନାହିଁ । ବୌଦ୍ଧିକ ଦୃଷ୍ଟିରୁ ସେ ଏହା ବିଚାର କରି ଓ ରାଜନୈତିକ କ୍ଷେତ୍ରରେ ନିର୍ମଳତା ଓ ଶାସନର ସ୍ଥିରତାପାଇଁ କଂଗ୍ରେସ ଓ ଗଣତନ୍ତ୍ର ପରିଷଦ ମିଳିତ ମନ୍ତ୍ରିମଣ୍ଡଳର ବିକଳ୍ପ ନାହିଁ ବୋଲି କହିଛନ୍ତି । ତାଙ୍କର ଯୁକ୍ତିକୁ କେହି କାଟିପାରି ନ ଥିଲେ । ତେବେ କେହି ସଭ୍ୟ ତାଙ୍କୁ କ୍ଷମା ମାଗିବାକୁ କହନ୍ତେ ସୁରେନ୍ଦ୍ରବାବୁ କ୍ରୋଧାନ୍ୱିତ ହୋଇପଡ଼ିଲେ ଓ ଏହି କୋଆଲିସନ ପ୍ରଶ୍ନ ଉପରେ ଇସ୍ତଫା ଦେବାକୁ ପ୍ରସ୍ତୁତ ବୋଲି ଜଣାଇଲେ ।

ମହତାବ କଂଗ୍ରେସ ହାଇକମାଣ୍ଡଠାରୁ ଗଣତନ୍ତ୍ର ପରିଷଦ ସହିତ ମିଳିତ ମନ୍ତ୍ରିମଣ୍ଡଳ ଗଠନପାଇଁ ପ୍ରସ୍ତାବର ଅନୁମୋଦନ ଧରି ଦିଲ୍ଲୀରୁ ଫେରିଲେ । ସୁରେନ୍ଦ୍ରବାବୁ ଦାବି କଲେ ଯେ ମହତାବବାବୁଙ୍କୁ ଛାଡ଼ିଦେଲେ ମନ୍ତ୍ରିମଣ୍ଡଳର ଦୁଇ ଦଳ ମଧ୍ୟରେ 'ପାରିଟି' ରହିବ । ଅର୍ଥାତ୍, ସଂଖ୍ୟାରେ ସମାନ ସମାନ ହେବ । କଂଗ୍ରେସରୁ ଓ ଗଣତନ୍ତ୍ର ପରିଷଦରୁ ଜଣେ ଜଣେ ମନ୍ତ୍ରୀ ଏହିପରି ଦୁଇ ଜଣ ଓ ମହତାବବାବୁଙ୍କୁ ମିଶାଇ ତିନି ଜଣଙ୍କୁ ଘେନି ମନ୍ତ୍ରିମଣ୍ଡଳ ୧୯୫୯ ମସିହା ମେ ମାସରେ ଗଠିତ ହେଲା ।

ମିଳିତ ମନ୍ତ୍ରିମଣ୍ଡଳ କିନ୍ତୁ ବେଶି ଦିନ ଚାଲିପାରି ନ ଥିଲା। ଯେଉଁ ବିଜୁବାବୁ ମିଳିତ ମନ୍ତ୍ରିମଣ୍ଡଳ ଗଠନପାଇଁ ପ୍ରଗାଢ଼ ଉଦ୍ୟମ କରିଥିଲେ, ମନ୍ତ୍ରିମଣ୍ଡଳ ଗଠନ ପରେ ପରେ ସେହି ବିଜୁବାବୁଙ୍କ ସହିତ ମହତାବବାବୁଙ୍କ ତୀବ୍ର ମନାନ୍ତର କ୍ରମେ ମତାନ୍ତରରେ ପରିଣତ ହେଲା । ମନ୍ତ୍ରିମଣ୍ଡଳ ଗଠିତ ହେବାର ପ୍ରାୟ ମାସକପରେ ମନ୍ତ୍ରିମଣ୍ଡଳର ସମ୍ପ୍ରସାରଣର ଅବ୍ୟବହିତ ପୂର୍ବରୁ ଅର୍ଥାତ୍ ୧୯୫୯ ମସିହା ଜୁନ୍ ମାସ ୩୦ ତାରିଖ ଦିନ ବିଜୁବାବୁ ମିଳିତ ମନ୍ତ୍ରିମଣ୍ଡଳକୁ ଭାଙ୍ଗିଦେବାପାଇଁ ମହତାବବାବୁଙ୍କୁ ପରାମର୍ଶ ଦେଇ ଏକ ପତ୍ର ଲେଖିଲେ । କିନ୍ତୁ ମହତାବବାବୁ ବିଜୁବାବୁ ଓ ତାଙ୍କର ବନ୍ଧୁମାନଙ୍କ ତୀବ୍ର ବିରୋଧସତ୍ତ୍ୱେ ମିଳିତ ମନ୍ତ୍ରିମଣ୍ଡଳକୁ ବଞ୍ଚାଇ ରଖିବାପାଇଁ ବଦ୍ଧପରିକର ହେଲେ । ମିଳିତ ମନ୍ତ୍ରିମଣ୍ଡଳରେ ପାଟଣା ମହାରାଜା ଉପମୁଖ୍ୟମନ୍ତ୍ରୀ ଥିଲେ। ତାଙ୍କର ରାଜନୀତିରେ ବିଚକ୍ଷଣତା ଥିଲା । ସେ ମିଳିତ ମନ୍ତ୍ରିମଣ୍ଡଳକୁ ପ୍ରାୟ ଦୁଇ ବର୍ଷ ପର୍ଯ୍ୟନ୍ତ ଚଳାଇ ରଖିଲେ ।

**ଗଣତନ୍ତ୍ର ପରିଷଦରୁ ଇସ୍ତଫା**

ସୁରେନ୍ଦ୍ରବାବୁ ପାର୍ଲିଆମେଣ୍ଟରେ ମାତ୍ର ୪୦୦ ଟଙ୍କା ବେତନ ପାଉଥିଲେ । ପାର୍ଲିଆମେଣ୍ଟ ଅଧିବେଶନ ବେଳେ ଦୈନିକ ୩୦ ଟଙ୍କା ମିଳୁଥିଲା । ତାହା ଦିଲ୍ଲୀରେ ଖର୍ଚ୍ଚ ବାବଦକୁ ନିଅଣ୍ଟ ହେଉଥିଲା । ଗଣ ପ୍ରକାଶନୀ ଟ୍ରଷ୍ଟରୁ ସେ ମାତ୍ର ମାସିକ ୧୦୦ଟଙ୍କା ପାଉଥିଲେ । ତେଣୁ ଅର୍ଥାଭାବରେ ସମ୍ମୁଖୀନ ହେଉଥିଲେ । ଦିନେ ଦିଲ୍ଲୀରେ ପାଟଣା ମହାରାଜା ଓ କଳାହାଣ୍ଡି ମହାରାଜାଙ୍କୁ ଦେଢ଼ହଜାର ଟଙ୍କା ମିଳିବା ଭଳି ଲିଆଜନ ଚାକିରି ଠିକଣା କରିଦେବାକୁ କହିଲେ । କଳାହାଣ୍ଡି ମହାରାଜା ଚେଷ୍ଟା

କରିବେ ବୋଲି ଉତ୍ତର ଦେଲେ । କିନ୍ତୁ କିଛି ଦିନ ପରେ ସେ ନିଜର ଅସହାୟତା ପ୍ରକାଶ କଲେ । ଯୋଗକୁ ବିଜୁବାବୁଙ୍କ କଳିଙ୍ଗ ଗ୍ରୁପ ଅଫ୍ ଇଣ୍ଡଷ୍ଟ୍ରିଜ୍‌ର ଦିଲ୍ଲୀରେ ରେସିଡେଣ୍ଟ ରିପ୍ରେଜେଣ୍ଟେଟିଭ ହେବାକୁ ପ୍ରସ୍ତାବ ଆସିଲା । ସୁରେନ୍ଦ୍ରବାବୁ ଏ ବିଷୟ ପାଟଣା ମହାରାଜାଙ୍କୁ ଜଣାଇ ତାଙ୍କର ମତାମତ ଲୋଡ଼ିଲେ । ପାଟଣା ମହାରାଜା ମଧ୍ୟ କିଛି ଆପତ୍ତି ନ ଥିବା ଜଣାଇଲେ । ଏହାପରେ ସୁରେନ୍ଦ୍ରବାବୁ କଳିଙ୍ଗ ଗ୍ରୁପ ଅଫ୍ ଇଣ୍ଡଷ୍ଟ୍ରିଜ୍‌ର ରେସିଡେଣ୍ଟ ରିପ୍ରେଜେଣ୍ଟେଟିଭ ଭାବେ ନିଯୁକ୍ତ ହେଲେ ।

ଓଡ଼ିଶାରେ ମିଳିତ ମନ୍ତ୍ରିମଣ୍ଡଳରେ କାର୍ଯ୍ୟକଳାପ ନୈରାଶ୍ୟଜନକ ଥିଲା । ଏକାଧିକ ଅଭିଯୋଗ ଏହା ବିରୋଧରେ ହୋଇଥିଲା । ମହତାବ ମଧ୍ୟ ବିଜୁବାବୁଙ୍କ ବିରୋଧରେ ପାଟଣା ମହାରାଜାଙ୍କୁ ଅସ୍ତ୍ର ରୂପେ ବ୍ୟବହାର କଲେ । ସୁରେନ୍ଦ୍ରବାବୁ ଲୋକସଭାରେ ମିଳିତମନ୍ତ୍ରିମଣ୍ଡଳ ଉପରେ ପ୍ରବଳ ଆକ୍ରମଣ କରି ଭାଷଣ ଦେଲେ । ସେ ସେଠାରେ କହିଥିଲେ –

''ଆଜି କୋଆଲିସନ୍ ମିନିଷ୍ଟ୍ରୀକୁ ବରଖାସ୍ତ କଲେ ବା ଏହା ଭାଙ୍ଗିଗଲେ, ଓଡ଼ିଶାରେ କୁକୁରଟାଏ ମଧ୍ୟ ଭୁକିବ ନାହିଁ ।'' ଏହାପରେ ସୁରେନ୍ଦ୍ରବାବୁ ଗଣତନ୍ତ୍ର ପରିଷଦରୁ ଇସ୍ତଫା ଦେଲେ ।

ଇତିପୂର୍ବରୁ ଜବାହରଲାଲ ନେହରୁ ଲୋକସଭାରେ ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନା ଉପରେ ବିତର୍କର ଉତ୍ତର ଦେବାବେଳେ ସାମ୍ୟବାଦରେ ବିଶ୍ୱାସୀ ନେତାମାନଙ୍କୁ କଂଗ୍ରେସରେ ଯୋଗ ଦେବାପାଇଁ ଆମନ୍ତ୍ରଣ କରିଥିଲେ । ସେତେବେଳେ ମଧ୍ୟ ଅଶୋକ ମେହେଟ୍ଟା ସମେତ କେତେଜଣ ପ୍ରଜା-ସମାଜବାଦୀ ଦଳର ନେତା କଂଗ୍ରେସରେ ଯୋଗ ଦେଇଥିଲେ । ଏହି ଅବକାଶରେ ସୁରେନ୍ଦ୍ରବାବୁ କଂଗ୍ରେସରେ ଯୋଗ ଦେଲେ ।

୧୯୬୧ ମସିହାରେ ଓଡ଼ିଶା ବିଧାନସଭାପାଇଁ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ହେଲା । ବିଜୁବାବୁଙ୍କ ନେତୃତ୍ୱରେ ଓଡ଼ିଶା ବିଧାନସଭାରେ ପ୍ରଥମଥର ପାଇଁ କଂଗ୍ରେସ ୮୫ଟି ଆସନ ପାଇଲା । ବିଜୁବାବୁ ହେଲେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ।

ତୃତୀୟ ସାଧାରଣ ନିର୍ବାଚନରେ ସୁରେନ୍ଦ୍ରବାବୁ କେନ୍ଦ୍ରାପଡ଼ାରୁ ଲୋକସଭା ଆସନପାଇଁ ନିର୍ବାଚନ ଲଢ଼ିଲେ । ପ୍ରଧାନମନ୍ତ୍ରୀ ଜବାହରଲାଲ ନେହରୁ ନିର୍ବାଚନମଣ୍ଡଳୀର ତିନୋଟି ସାଧାରଣ ସଭା କରିଥିଲେ । ସେଥିରେ ସୁରେନ୍ଦ୍ରବାବୁଙ୍କ ବହୁ ପ୍ରଶଂସା କରିଥିଲେ । ନିର୍ବାଚିତ ହେଲେ ମନ୍ତ୍ରିମଣ୍ଡଳରେ ଅନ୍ତତଃ ଜଣେ ଉପମନ୍ତ୍ରୀ ହେବେ ବୋଲି ପ୍ରକାରାନ୍ତରେ ଇଙ୍ଗିତ ଦେଇଥିଲେ । ମାତ୍ର ୬୬ ଖଣ୍ଡି ଭୋଟରେ ସୁରେନ୍ଦ୍ରବାବୁ ହାରିଯାଇଥିବା କଥା ଘୋଷଣା କରାଗଲା । ସେ ଅବଶ୍ୟ ଇଲେକ୍‌ସନ କମିସନ୍‌କୁ ରାୟ ବିରୋଧରେ ଆବେଦନ କରିଥିଲେ । ଭାରତରେ ଦ୍ୱିତୀୟ ସାଧାରଣ ନିର୍ବାଚନ ପରେ ଏହା ଥିଲା ପ୍ରଥମ ଇଲେକ୍‌ସନ ମକଦ୍ଦମା ।

ଏହା ଦୀର୍ଘ ୪ ବର୍ଷ ପରେ ଶେଷ ହୋଇଥିଲା । ଏହାକୁ ନିୟତିର ପରିହାସ ବୋଲି ସୁରେନ୍ଦ୍ରବାବୁ ଧରିନେଇଥିଲେ ।

**'କଳିଙ୍ଗ' ସମ୍ପାଦନା**

ନିର୍ବାଚନ ପରେ ସୁରେନ୍ଦ୍ରବାବୁ କଟକରେ ଅବସ୍ଥାନ କଲେ । କେନ୍ଦ୍ରରେ ଉପମନ୍ତ୍ରୀ ହେବା ଆଶା ତାଙ୍କର ଥିଲା । ମାତ୍ର କଟକର ଓକିଲମାନଙ୍କ ଦୁଆରେ ମହକିଲ ହେଲେ । ତାଙ୍କୁ ଏହା ଭାରି ବାଧିଥିଲା ।

ସୁରେନ୍ଦ୍ରବାବୁ ସମୟ କଟାଇବାପାଇଁ ପଢ଼ାପଢ଼ିରେ ଲାଗିଲେ । ସାରଳା ମହାଭାରତର ଗୋଟାଏ ସେଟ୍ ବଜାରରୁ କିଣିଆଣି ତାହାର ପଢ଼ା ଆରମ୍ଭ କଲେ । କ୍ଷୁଦ୍ରଗଳ୍ପ ପ୍ରଭୃତି ଲେଖିବାରେ ବ୍ୟସ୍ତ ରହିଲେ । କିନ୍ତୁ ବିଜୁବାବୁ ହଠାତ୍ ଦିନେ ଟେଲିଫୋନରେ 'କଳିଙ୍ଗ'ର ସମ୍ପାଦନା ଦାୟିତ୍ୱ ଦେଲେ ।

'କଳିଙ୍ଗ'ରେ ସୁରେନ୍ଦ୍ରବାବୁ ପ୍ରତ୍ୟହ ପାଞ୍ଚ ଛଅ ଘଣ୍ଟା ରହୁଥିଲେ । ସେଥିରୁ ଦୈନିକ ଦୁଇ ତିନି ଘଣ୍ଟା ପଢ଼ାପଢ଼ି ଓ ଲେଖାଲେଖିରେ କଟୁଥିଲା । ଏହି ସମୟ ମଧ୍ୟରେ 'ଓଡ଼ିଆ ସାହିତ୍ୟର ଆଦିପର୍ବ', 'ଓଡ଼ିଆ ସାହିତ୍ୟର ମଧ୍ୟପର୍ବ, 'ଅନ୍ଧ ଦିଗନ୍ତ', 'ନୀଳଶୈଳ' ଓ ବହୁ ସାର୍ଥକ କ୍ଷୁଦ୍ରଗଳ୍ପ ରଚନା କରିଥିଲେ । ତାଙ୍କର ସାହିତ୍ୟିକ ନାମ ପ୍ରତିଷ୍ଠିତ ହୋଇଥିଲା – ଏହି ସମୟ ମଧ୍ୟରେ ।

ସୁରେନ୍ଦ୍ରବାବୁ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି – ''ମୁଁ ନିର୍ବାଚନରେ ସମାନ ଭୋଟରେ କାହିଁକି ପରାସ୍ତ ହେଲି, ଏବେ ତାହାର ରହସ୍ୟ ବୁଝୁଛି । ଯେଉଁ ଅଦୃଶ୍ୟ ଶକ୍ତି ତା'ର ଇଚ୍ଛାରେ ମୋତେ ବାଟ ଅବାଟରେ ଟାଣିନେଇ ଆସିଛି – ଇଏ ମଧ୍ୟ ଥିଲା ତା'ର ଏକ ଖିଆଲ । ମୁଁ ନିର୍ବାଚନରେ ପରାସ୍ତ ହୋଇ ନ ଥିଲେ ମୋର ଶ୍ରେଷ୍ଠ ସାହିତ୍ୟ କୃତିଗୁଡ଼ିକ ସମ୍ଭବ ହୋଇପାରି ନ ଥାନ୍ତା ।''

**ଚତୁର୍ଥ ସାଧାରଣ ନିର୍ବାଚନ**

୧୯୬୭ ମସିହା ଚତୁର୍ଥ ଲୋକସଭାପାଇଁ ନିର୍ବାଚନରେ ସୁରେନ୍ଦ୍ରବାବୁ କେନ୍ଦ୍ରାପଡ଼ା ଆସନରୁ ପ୍ରାର୍ଥୀ ହେଲେ । ରାଜ୍ୟ ବିଧାନସଭା ନିର୍ବାଚନମଣ୍ଡଳୀର ପାଟକୁରାରୁ ବିଜୁବାବୁ ପ୍ରାର୍ଥୀ ହେଲେ । କିନ୍ତୁ ଚତୁର୍ଥ ସାଧାରଣ ନିର୍ବାଚନରେ ଓଡ଼ିଶାରେ କଂଗ୍ରେସ ତଳିତଳାନ୍ତ ହୋଇଗଲା । ପ୍ରବଳ 'କଂଗ୍ରେସ ହଟାଓ' ହାୱା ବହୁଥିଲା । ସୁରେନ୍ଦ୍ରବାବୁ ୬୭୦୦୦ ଭୋଟରେ ହାରିଲେ ।

**ପଞ୍ଚମ ସାଧାରଣ ନିର୍ବାଚନ**

୧୯୭୧ ମସିହାରେ ଭାରତରେ ପଞ୍ଚମ ସାଧାରଣ ନିର୍ବାଚନ ହେଲା । ସେତେବେଳକୁ କଂଗ୍ରେସର ବିଭାଜନ ଘଟିସାରିଥାଏ । ଏହି ଅବସ୍ଥାରେ ଓଡ଼ିଶାରେ ଜନ୍ମ ଲାଭ କଲା ଉତ୍କଳ କଂଗ୍ରେସ । ବିଜୁବାବୁ ଏହାର ସଭାପତି ହେଲେ ।

ସୁରେନ୍ଦ୍ରବାବୁ ୧୯୭୧ ମସିହା ନିର୍ବାଚନରେ କେନ୍ଦ୍ରାପଡ଼ାରୁ ପୁଣି ପ୍ରାର୍ଥୀ ହେଲେ । ନିର୍ବାଚନମଣ୍ଡଳୀମାନଙ୍କରେ ସେତେବେଳେ ଇନ୍ଦିରାଙ୍କ ସପକ୍ଷରେ ହାଓ୍ୱା ଥିଲା । କିନ୍ତୁ ସୁରେନ୍ଦ୍ରବାବୁ ଏକ ତ୍ରିମୁଖୀ ପ୍ରତିଯୋଗିତାରେ ପ୍ରଜା ସମାଜବାଦୀ ଦଳର ନେତା ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କୁ ପ୍ରାୟ ୪୦୦୦ରୁ ଅଧିକ ଭୋଟରେ ହରାଇ ଜୟଯୁକ୍ତ ହେଲେ । ଅତୀତ ପରାଜୟର ପ୍ରତିଶୋଧ ସେ ନେଲେ ବୋଲି ଭାରତର ସମ୍ବାଦପତ୍ରମାନଙ୍କରେ ଖବର ପ୍ରକାଶ ପାଇଥିଲା ।

ପଞ୍ଚମ ଲୋକସଭା ନିର୍ବାଚନପରେ ସୁରେନ୍ଦ୍ରନାଥ ଦ୍ୱିବେଦୀ ସୁରେନ୍ଦ୍ରବାବୁଙ୍କ ବିରୋଧରେ ଗୋଟିଏ ନିର୍ବାଚନ ମୋକଦ୍ଦମା କଲେ । ମିଥ୍ୟା ପ୍ରଚାର କରି ତାଙ୍କର ଚରିତ୍ର ସଂହାର କରାଯାଇଥିବାରୁ ତାଙ୍କର ଭୋଟ କମିଗଲା ବୋଲି ଅଭିଯୋଗ କରିଥିଲେ । ମାତ୍ର ସୁପ୍ରିମକୋର୍ଟରେ ସୁରେନ୍ଦ୍ରବାବୁ ଜୟ ଲାଭ କଲେ । ବିଚାରପତି ତାଙ୍କ ରାୟରେ ଲେଖିଥିଲେ – ''ସୁରେନ୍ଦ୍ରବାବୁଙ୍କ ଭାଷଣରେ ଦ୍ୱିବେଦୀଙ୍କର ଚରିତ୍ର ସଂହାର ହୋଇ ନାହିଁ ।''

**ପଞ୍ଚମ ଲୋକସଭା ସଭ୍ୟ**

ପଞ୍ଚମ ଲୋକସଭାରେ ସୁରେନ୍ଦ୍ରବାବୁ ହେଲେ ଉତ୍କଳ କଂଗ୍ରେସର ଏକମାତ୍ର ସଭ୍ୟ । ଏହା ଏକ ପ୍ରାଦେଶିକ ଦଳ ହୋଇଥିବାରୁ ଲୋକସଭାରେ ତାହାର ସ୍ୱୀକୃତି ନ ଥିଲା । ସେ ସ୍ୱାଧୀନ ସଭ୍ୟଙ୍କ ତାଲିକାରେ ଯାଉଥିଲେ । ତେବେ ସେଥିରେ ସେ ସକ୍ରିୟ ଅଂଶ ଗ୍ରହଣ କରୁଥିଲେ ।

**ଏମର୍ଜେନ୍‌ସୀ ଘୋଷଣା**

ବିହାରରେ ଛାତ୍ର ସଂଘର୍ଷ ତରଫରୁ ଯେଉଁ ଆନ୍ଦୋଳନ ମୁଣ୍ଡ ଟେକିଲା, ତା'ର ନେତୃତ୍ୱ ନେଇଥିଲେ ଜୟପ୍ରକାଶ ନାରାୟଣ । ସେ ଦିଲ୍ଲୀର ରାମଲୀଳା ମୈଦାନରେ ଚାଳିଶ ମିନିଟ ଧରି ଭାଷଣ ଦେଇ କଂଗ୍ରେସକୁ ଗଣ-ଆନ୍ଦୋଳନ ମାଧ୍ୟମରେ ହଟାଇବାପାଇଁ ଆହ୍ୱାନ ଦେଇଥିଲେ । ପୋଲିସ ଓ ସୈନ୍ୟବାହିନୀକୁ ମଧ୍ୟ ସରକାରଙ୍କ ଆଦେଶ ନ ମାନିବାପାଇଁ ଡାକରା ଦେଇଥିଲେ । ଫଳରେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କୁ ଏମର୍ଜେନ୍‌ସୀ ଘୋଷଣା କରିବାକୁ ସୁବିଧା ମିଳିଲା । ରାଷ୍ଟ୍ରପତି ଫକିରୁଦ୍ଦିନ ଅଲ୍ଲୀ ଅହମ୍ମଦଙ୍କୁ ରାତିରେ ବିଛଣାରୁ ଉଠାଇ ଏମର୍ଜେନ୍‌ସୀ ଘୋଷଣାରେ ସ୍ୱାକ୍ଷର ନିଆଯାଇଥିଲା ।

ଏମର୍ଜେନ୍‌ସୀ ଜାରି ହେବା ସଙ୍ଗେ ପ୍ରେସ ସେନ୍‌ସରସିପ୍ ଜାରି ହୋଇଗଲା । ପ୍ରେସମାନଙ୍କରୁ ସାଙ୍ଗେ ସାଙ୍ଗେ ପାଓ୍ୱାର କାଟି ଦିଆଯାଇଥିଲା । ଫଳରେ ତା'ର ପରଦିନ କୌଣସି ଇଂରାଜୀ ଦୈନିକ ପତ୍ରିକା ପ୍ରକାଶ ପାଇ ନ ଥିଲା । କେବଳ ମାତ୍ର ଏକ ପୃଷ୍ଠିଆ ଇଂରେଜୀ ଦୈନିକ 'ମଦରଲ୍ୟାଣ୍ଡ' କିଣିବାକୁ ମିଳିଥିଲା । ସୁରେନ୍ଦ୍ରବାବୁ ତାହାକୁ ଲୁଚାଇ କିଣିଥିଲେ ପାଞ୍ଚ ଟଙ୍କା ମୂଲ୍ୟରେ ।

## ଗିରଫ ଆଶଙ୍କା

ଇମର୍ଜେନ୍‌ସୀ ବେଳେ ଜୟପ୍ରକାଶଙ୍କ ଭଳି ତୁଙ୍ଗ ନେତାମାନେ ଗିରଫ ହେଲେ । ବିରୋଧୀ ଦଳର ବହୁ ନେତା ଓ ଏମ୍.ପି. ମଧ୍ୟ ଗିରଫ ହେଲେ । ଓଡ଼ିଶାରେ ସେତେବେଳେ ମୁଖ୍ୟମନ୍ତ୍ରୀ ଥାଆନ୍ତି ନନ୍ଦିନୀ ଶତପଥୀ । ତାଙ୍କର ସୁଦୃଷ୍ଟିରେ ସୁରେନ୍ଦ୍ରବାବୁ ନ ଥିଲେ । ତେଣୁ ଗିରଫ ହେବାର ଆଶଙ୍କାକୁ ସୁରେନ୍ଦ୍ରବାବୁ ଏଡ଼ାଇ ପାରି ନ ଥିଲେ । ସେଥିପାଇଁ ସେ ଦିଲ୍ଲୀରେ ରହିଲେ । ଯଦି ଗିରଫ ହେବେ ତେବେ ଦିଲ୍ଲୀରେ ଗିରଫ ହେବାକୁ ସେ ଶ୍ରେୟସ୍କର ମଣିଥିଲେ । ଦିଲ୍ଲୀରେ ରବି ରାୟଙ୍କୁ ଗିରଫ କରାଗଲା । ସୁରେନ୍ଦ୍ରବାବୁଙ୍କର ମଧ୍ୟ ଗିରଫ ହେବା ଆଶଙ୍କା ବୃଦ୍ଧି ପାଇଲା । ସେ ସୁଟ୍‌କେଶ୍‌ରେ କିଛି ଲୁଗାପଟା ଓ ବହି, ଖାତା, କଲମ ପ୍ରଭୃତି ରଖି ପୋଲିସ ପ୍ରତୀକ୍ଷାରେ ରହିଲେ । ମାତ୍ର ତାଙ୍କୁ ଗିରଫ କରାଯାଇ ନ ଥିଲା ।

ସୁରେନ୍ଦ୍ରବାବୁ ପ୍ରେସ୍ ସେନ୍‌ସରସିପର ତୀବ୍ର ବିରୋଧ କରି ବିରୋଧୀଦଳ ପକ୍ଷରୁ ପାର୍ଲିଆମେଣ୍ଟର ଦଶଦିନିଆ ସଂକ୍ଷିପ୍ତ ଅଧିବେଶନରେ ଦୀର୍ଘ ଏକ ଘଣ୍ଟା ପନ୍ଦର ମିନିଟ ଧରି ଭାଷଣ ଦେଇଥିଲେ । ମାତ୍ର ପି.ଟି.ଆଇ. ସେଥିପାଇଁ ଗୋଟିଏ ଧାଡ଼ି ଦେଇଥିଲେ –‘‘ବିରୋଧୀ ଦଳ ପକ୍ଷରୁ ସୁରେନ୍ଦ୍ର ମହାନ୍ତି ମଧ୍ୟ ବିତର୍କରେ ଭାଗ ନେଲେ ।’’

ମାତ୍ର ଲଣ୍ଡନର କେତେକ କାଗଜ ସୁରେନ୍ଦ୍ରବାବୁଙ୍କ ଭାଷଣପାଇଁ ପାଞ୍ଚ ଛଅ ଧାଡ଼ି ଦେଇଥିଲେ । ଏହା ସୁରେନ୍ଦ୍ରବାବୁଙ୍କୁ କିଛିଟା ଆଶ୍ୱସ୍ତି ଦେଇଥିଲା ।

ରବି ରାୟ ଜେଲରେ ଥିଲାବେଳେ ସୁରେନ୍ଦ୍ରବାବୁଙ୍କୁ ପୀଡ଼ିତ ଅବସ୍ଥା ଜଣାଇ ପ୍ୟାରୋଲରେ ନେବାକୁ ପତ୍ର ଦେଲେ । ମେଟ୍ରୋପଲିଟାନ୍ ମାଜିଷ୍ଟ୍ରେଟ୍ କିନ୍ତୁ ପ୍ୟାରୋଲ ଦରଖାସ୍ତକୁ ଅଗ୍ରାହ୍ୟ କରିଦେଲେ । ସୁରେନ୍ଦ୍ରବାବୁ ଗୃହ ଉପମନ୍ତ୍ରୀ ଓମ୍ ମେହେଟ୍ଟାଙ୍କୁ ଧରି ପ୍ୟାରୋଲ ବ୍ୟବସ୍ଥା କଲେ । ରବି ରାୟ ପ୍ୟାରୋଲରେ ଜେଲରୁ ଆସିଲେ ।

## କଳିଙ୍ଗ ପ୍ରକାଶନ ବନ୍ଦ

ପଞ୍ଚମ ଲୋକସଭାକୁ ସୁରେନ୍ଦ୍ରବାବୁ ନିର୍ବାଚିତ ହେବାର କେତେମାସ ପରେ ‘କଳିଙ୍ଗ’ ବନ୍ଦ ହୋଇଗଲା । ଅଗ୍ରଲେଖା ଓ ଅନ୍ୟ ଲେଖାଲେଖି ପାଇଁ ‘କଳିଙ୍ଗ’ ପାଞ୍ଚ ଛଅ ହଜାର ପ୍ରକାଶ ପାଉଥିଲା । ମାତ୍ର ସେ ଚାଲିଗଲା ପରେ ଏହାର ପ୍ରସାର ଶୋଚନୀୟ ଭାବେ କମିବାରେ ଲାଗିଲା । ଶେଷରେ ‘କଳିଙ୍ଗ’ ବନ୍ଦ ହୋଇଗଲା ।

## ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ଦେହାନ୍ତ

ଇମର୍ଜେନ୍‌ସି ବେଳେ ପାଟଣା ମହାରାଜା ହଠାତ୍ ଭୁବନେଶ୍ୱରରେ ଅସୁସ୍ଥ ହୋଇପଡ଼ିବାରୁ ଚିକିତ୍ସାପାଇଁ ଦିଲ୍ଲୀ ଗଲେ । ଅଲ୍ ଇଣ୍ଡିଆ ମେଡ଼ିକାଲ ଇନ୍‌ଷ୍ଟିଚ୍ୟୁଟ୍‌ରେ ସବୁ ପ୍ରକାର ପରୀକ୍ଷା ହେଲା । କିଛି ଦିନ ପରେ ବମ୍ବେ ଯଶ୍‌ଲୋକ ହସ୍‌ପିଟାଲରେ ସେ ଭର୍ତ୍ତି ହେଲେ । ସୁରେନ୍ଦ୍ରବାବୁ ଫ୍ଲାଇଟ୍‌ରେ ବମ୍ବେ ଯାଇ ମହାରାଜାଙ୍କୁ ଦର୍ଶନ କଲେ ।

ସେ ମହାରାଜାଙ୍କୁ ଭେଟି ଫେରିଲାବେଳେ ମହାରାଜା ତାଙ୍କୁ 'ଗୁଡ୍‌ବାଇ' କହିଥିଲେ । ସୁରେନ୍ଦ୍ରବାବୁଙ୍କପାଇଁ ମହାରାଜା ରାଜେନ୍ଦ୍ର ନାରାୟଣଙ୍କର ଏହାହିଁ ଥିଲା ଶେଷ କଥା ।

ମହାରାଜାଙ୍କ ମୃତ୍ୟୁରେ ଓଡ଼ିଶା ଏକ ଜନନେତା ହରାଇଲା । କିନ୍ତୁ ସୁରେନ୍ଦ୍ରବାବୁ ହରାଇଲେ ତାଙ୍କର ଏକମାତ୍ର ହିତାକାଙ୍‌କ୍ଷୀ ଓ ବନ୍ଧୁ ।

ସୁରେନ୍ଦ୍ରବାବୁ ତାଙ୍କର ଶୋକବାର୍ତ୍ତାରେ ଲେଖିଥିଲେ – ''ସେ ରାଜାମାନଙ୍କ ମଧ୍ୟରେ ଥିଲେ ଜଣେ ମନୁଷ୍ୟ, ମନୁଷ୍ୟମାନଙ୍କ ମଧ୍ୟରେ ଜଣେ ରାଜା ।''

**ଷଷ୍ଠ ସାଧାରଣ ନିର୍ବାଚନ**

ପଞ୍ଚମ ଲୋକସଭାର ଆୟୁଷକାଳ ଆଉ ଗୋଟାଏ ବର୍ଷ ବଢ଼ାଇ ଦିଆଯାଇଥିଲା । କିନ୍ତୁ ପାର୍ଲିଆମେଣ୍ଟର ଶୀତକାଳୀନ ଅଧିବେଶନ ପରେ ଇମର୍ଜେନ୍‌ସୀ ହଠାତ୍ ଉଠାଇ ଦିଆଗଲା । ଇନ୍ଦିରା ଗାନ୍ଧୀ ଜାତି ଉଦ୍ଦେଶ୍ୟରେ ଭାଷଣ ଦେଇ ସାଧାରଣ ନିର୍ବାଚନ ଆସନ୍ନ ବୋଲି ଘୋଷଣା କଲେ ।

ଷଷ୍ଠ ସାଧାରଣ ନିର୍ବାଚନରେ ଲୋକସଭାର ଓଡ଼ିଶାର ସ୍ଥାନ ସଂଖ୍ୟା ୨୦ରୁ ୨୧ ହେଲା । ବିଜୁବାବୁ ଗୋଟିଏ ନିରାପଦ ନିର୍ବାଚନ ମଣ୍ଡଳୀ ଖୋଜୁଥିବାରୁ ସୁରେନ୍ଦ୍ରବାବୁଙ୍କୁ କେନ୍ଦ୍ରାପଡ଼ା ଆସନ ଛାଡ଼ିଦେବାକୁ ପଡ଼ିଲା । ତାଙ୍କୁ ଜଗତ୍‌ସିଂହପୁରରୁ ପ୍ରତିଦ୍ୱନ୍ଦ୍ୱିତା କରିବାକୁ କୁହାଗଲା । ମାତ୍ର ତାହା ମଧ୍ୟ ଅନ୍ୟଙ୍କୁ ଦିଆଗଲା । ସୁରେନ୍ଦ୍ରବାବୁ ପୁଣି ସାହିତ୍ୟ ଜଗତକୁ ଫେରିଆସିଲେ ।

**ରାଜ୍ୟସଭା ନିର୍ବାଚନ**

୧୯୭୭ ମସିହା ରାଜ୍ୟସଭା ନିର୍ବାଚନପାଇଁ ଲଢ଼ିବାକୁ ସୁରେନ୍ଦ୍ରବାବୁ ଆଶାୟୀ ହେଲେ । ସେଥିପାଇଁ ଚରଣ ସିଂହ, ଅଟଳବିହାରୀ ବାଜପେୟୀ ଓ ବିଜୁ ପଟ୍ଟନାୟକ ପ୍ରଭୃତିଙ୍କ ପାଖକୁ ଟେଲିଗ୍ରାମ କଲେ । ମାତ୍ର କୌଣସି ଉତ୍ତର ମିଳିଲା ନାହିଁ । ୧୯୭୮ ମସିହାରେ କିନ୍ତୁ ଅଚାନକ ତାଙ୍କୁ ରାଜ୍ୟସଭାପାଇଁ ଆବେଦନ କରିବାକୁ କୁହାଗଲା । ସେ ୧୯୭୮ ମସିହାରେ ରାଜ୍ୟସଭାକୁ ନିର୍ବାଚିତ ହେଲେ ।

ରାଜ୍ୟସଭାର ସଭ୍ୟ ଥିଲାବେଳେ ଗୋଟିଏ ପାର୍ଲିଆମେଣ୍ଟାରୀ ପ୍ରତିନିଧି ଦଳରେ ସୁରେନ୍ଦ୍ରବାବୁ ମସ୍କୋ, ଆଉଟର ମଙ୍ଗୋଲିଆର ରାଜଧାନୀ ଉଲାନବାତୁର ହୋଇ ପିଅଂ-ଗାଂ ଯାଇଥିଲେ ।

ଉତ୍ତରକୋରିଆରେ ପ୍ରାୟ ତିନି ସପ୍ତାହ ବୁଲାବୁଲି ପରେ ସୁରେନ୍ଦ୍ରବାବୁ ଦେଶକୁ ଫେରିଲେ । କିନ୍ତୁ ବୋଉଙ୍କ ଅସୁସ୍ଥତା ଖବର ପାଇ ଦିନକ ପରେ ଫ୍ଲାଇଟ୍‌ରେ ଆସି ଘରେ ପହଞ୍ଚିଲେ । ବୋଉ ସଂଜ୍ଞାହୀନ ଅବସ୍ଥାରେ ଥିଲେ । ତେବେ ଶଯ୍ୟା ପାଖରେ ତାଙ୍କ ଆସିବା ଜାଣିଲା ପରି ପଚାରିଲେ – ସୁରିଆ ଆସିଛି ?

ସେଇ ଥିଲା ତାଙ୍କର ଶେଷ କଥା । ଏହା ପୂର୍ବରୁ ବାପା ମଧ୍ୟ ବିଦାୟ ନେଇଥିଲେ । ସୁରେନ୍ଦ୍ରବାବୁ ଆତ୍ମଜୀବନୀରେ ଲେଖିଛନ୍ତି – ''ସୁରିଆ' ବା 'ସୁର' ବୋଲି ମୋତେ ଡାକିବାପାଇଁ ଏହାପରେ କେହି ରହିଲେ ନାହିଁ ।'

**ସୀମାନ୍ତ ପଥ : ସରଜମିନ ତଦନ୍ତ**

ସୁରେନ୍ଦ୍ରବାବୁ ପାର୍ଲିଆମେଣ୍ଟ ଆସ୍ୟୁରାନ୍‌ସ କମିଟିର ସଭ୍ୟ ଥିଲେ । ସରକାରଙ୍କ ପକ୍ଷରୁ ବିତର୍କ ବେଳେ ଯେଉଁସବୁ ପ୍ରତିଶ୍ରୁତି ଦିଆଯାଇଥାଏ, ତାହା କାର୍ଯ୍ୟରେ ପାଳିତ ହେଲା କି ନାହିଁ – ତାହା ତନଖି କରିବା ଏ କମିଟିର ଥିଲା କାର୍ଯ୍ୟ । ତେବେ ଆସ୍ୟୁରାନ୍‌ସ କମିଟିର ଖୋଳତାଡ଼ ସତ୍ତ୍ୱେ ଅସଲ କାର୍ଯ୍ୟରେ କିଛି ଫଳ ହୋଇ ନ ଥାଏ ବୋଲି ସୁରେନ୍ଦ୍ରବାବୁଙ୍କ ମତ ଥିଲା । ସେ ଯାହାହେଉ, ସେଥିରେ ଭାରତ ଦର୍ଶନର ପ୍ରଚୁର ଅବକାଶ ମିଳିଲା । ସେହି ସୂତ୍ରରେ ଭାରତ ପାକିସ୍ତାନ ସୀମାନ୍ତରେ ଥିବା ବର୍ଡର ରୋଡ୍ ସବୁ ସରଜମିନ ତଦନ୍ତପାଇଁ କମିଟି କରାଯାଇଥିଲା । ସୁରେନ୍ଦ୍ରବାବୁଙ୍କର ସ୍ୱାସ୍ଥ୍ୟ ସମସ୍ୟା ଥିଲେ ମଧ୍ୟ ସେଥିରେ ଯାଇଥିଲେ ।

**ଷଷ୍ଠ ସାଧାରଣ ନିର୍ବାଚନ**

ଷଷ୍ଠ ସାଧାରଣ ନିର୍ବାଚନରେ କେନ୍ଦ୍ରାପଡ଼ା ଲୋକସଭା ନିର୍ବାଚନ ମଣ୍ଡଳୀରୁ ଜନତାଦଳର ପ୍ରାର୍ଥୀ ହେବାପାଇଁ ସୁରେନ୍ଦ୍ରବାବୁଙ୍କ ନାମ ଉଠିଲା । ମାତ୍ର ସେ ବିନମ୍ରର ସହିତ ମନା କରିଦେଲେ । ଜନତା ଦଳରୁ ପ୍ରାର୍ଥୀ ହେଲେ ସୁରେନ୍ଦ୍ର ଦ୍ୱିବେଦୀ । ସୁରେନ୍ଦ୍ରବାବୁ ଦ୍ୱିବେଦୀଙ୍କପାଇଁ ନିର୍ବାଚନ ପ୍ରଚାର କରିଥିଲେ । ମାତ୍ର ସୁରେନ୍ଦ୍ର ଦ୍ୱିବେଦୀ ଶୋଚନୀୟ ଭାବେ ପରାସ୍ତ ହେଲେ । ବର୍ଣ୍ଣାଢ଼୍ୟ ବ୍ୟକ୍ତିତ୍ୱର ଅଧିକାରୀ ହୋଇଥିବାରୁ ଲୋକଦଳରୁ ଲଢୁଥିବା ବିଜୁ ପଟ୍ଟନାୟକ କଂଗ୍ରେସ ପ୍ରାର୍ଥୀଙ୍କଠାରୁ ହାରୁ ହାରୁ ଅଳ୍ପକେ ଜିତିଲେ । ଏହାପରେ ସୁରେନ୍ଦ୍ରବାବୁ ଜନତାଦଳ ଛାଡ଼ିଲେ ।

**ପୁନଶ୍ଚ କଂଗ୍ରେସ**

ଲୋକସଭାରେ ସେତେବେଳେ କଂଗ୍ରେସ (ର) ର ବିପୁଳ ସଂଖ୍ୟାଗରିଷ୍ଠତା ଥିଲା । କିନ୍ତୁ ରାଜ୍ୟସଭାରେ ଦୁଇ-ତୃତୀୟାଂଶ ସଂଖ୍ୟାଗରିଷ୍ଠତା ନ ଥିଲା । ସୁରେନ୍ଦ୍ରବାବୁ କଂଗ୍ରେସ ପାର୍ଲିଆମେଣ୍ଟାରୀ ଦଳରେ ଯୋଗ ଦେଲେ । ମାତ୍ର ସଞ୍ଜୟ ଗାନ୍ଧୀ ତାଙ୍କୁ ସେପରି ଗୁରୁତ୍ୱ ଦେଲେ ନାହିଁ । ଏହାପରେ ପାର୍ଲିଆମେଣ୍ଟ ରାଜନୀତିରେ ତାଙ୍କର କୌଣସି ଆଗ୍ରହ ରହିଲା ନାହିଁ ।

**ଓଡ଼ିଶା ସାହିତ୍ୟ ଏକାଡେମୀ ସଭାପତି**

ଓଡ଼ିଶା ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଅନୁରୋଧ ରକ୍ଷା କରି ସୁରେନ୍ଦ୍ରବାବୁ ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ପଦ ଗ୍ରହଣ କଲେ ।

୧୯୮୨ ମସିହା ଡିସେମ୍ବର ମାସରେ ସାହିତ୍ୟ ଏକାଡେମୀର ରଜତଜୟନ୍ତୀ ଉତ୍ସବ ପାଳିତ ହେଲା । ପୂର୍ବ ଭାରତର ସର୍ବବୃହତ୍ ସାଂସ୍କୃତିକ ସମାରୋହ ବୋଲି କଲିକତାର 'ଷ୍ଟେଟ୍‌ସମ୍ୟାନ' ପତ୍ରିକା ମତ ଦେଇଥିଲା । ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଏହାକୁ ଆନୁଷ୍ଠାନିକ ଭାବେ ଉଦ୍‌ଘାଟନ କରିଥିଲେ । ଓଡ଼ିଶାର ସବୁ

ଅଞ୍ଚଳରୁ ସାହିତ୍ୟିକମାନେ ଆମନ୍ତ୍ରିତ ହୋଇ ବିଭିନ୍ନ ଅଧିବେଶନରେ ସାହିତ୍ୟ ସମ୍ପର୍କିତ ଆଲୋଚନାମାନଙ୍କରେ ଅଂଶ ଗ୍ରହଣ କରିଥିଲେ । ଗୋଟିଏ ବିରାଟ ପ୍ରେକ୍ଷାଳୟ ନିର୍ମିତ ହୋଇଥିଲା – ଯାହାର ନାମ ରଖାଯାଇଥିଲା 'ଜୟଦେବ ମଣ୍ଡପ' । ପ୍ରତି ସନ୍ଧ୍ୟାରେ ହଜାର ହଜାର ଲୋକ ସମବେତ ହେଉଥିଲେ ନୃତ୍ୟଗୀତ କାର୍ଯ୍ୟକ୍ରମ ଦେଖିବାପାଇଁ । ସମାରୋହଟି ଏତେ ଚିତ୍ତାକର୍ଷକ ହୋଇଥିଲା ଯେ ଓଡ଼ିଶା ସରକାରଙ୍କ ସାଂସ୍କୃତିକ ବିଭାଗ ଏହାକୁ ଆଉ ଦୁଇ ଦିନ ବଢ଼ାଇ ଦେବାପାଇଁ ଅନୁରୋଧ କରିଥିଲେ ।

ସୁରେନ୍ଦ୍ରବାବୁଙ୍କ ବିରୋଧରେ କିନ୍ତୁ ବହୁ ଅର୍ଥ ବିନର୍ବ୍ୟୟ ହୋଇଥିବା ଅଭିଯୋଗ ହୋଇଥିଲା । ସେ ଅବଶ୍ୟ ଅଭିଯୋଗକୁ ଖଣ୍ଡନ କରିଥିଲେ । ସୁରେନ୍ଦ୍ରବାବୁ ଖେଦ ପ୍ରକାଶ କରି ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି – ''ରଜତ ଜୟନ୍ତୀର ସମାରୋହ ସକାଶେ ପ୍ରାୟ ମୋତେ ମିଳିଥିଲା ଏଇ ପୁରସ୍କାର ।''

୧୯୮୨ ମସିହା ଶେଷ ଆଡ଼କୁ ସୁରେନ୍ଦ୍ରବାବୁଙ୍କ ସ୍ୱାସ୍ଥ୍ୟଭଙ୍ଗ ଆରମ୍ଭ ହେଲା । ସକ୍ରିୟ ଜୀବନରୁ ଓହରି ସେ ଅବସରକାଳୀନ ଜୀବନ ବିତାଇବାକୁ ବାଧ୍ୟ ହେଲେ । ୧୯୮୪ ମସିହା ଜୁନ୍ ମାସରେ ମଝିଆଭାଇ କ୍ଷୀରର ହଠାତ୍ ପରଲୋକ ହୋଇଗଲା । ସିଏ ଥିଲେ ପରିବାରର ମେରୁଖୁଣ୍ଟ । ତେଣୁ ଭୁବନେଶ୍ୱର ଆସିବା ସମ୍ଭବ ହେଲା ନାହିଁ ।

**'ସମ୍ବାଦ' ସମ୍ପାଦକ**

ଅଗଷ୍ଟ ମାସ ୫ ତାରିଖରେ ସୁରେନ୍ଦ୍ରବାବୁ 'ସମ୍ବାଦ' ପତ୍ରିକାର ସମ୍ପାଦକ ଭାବେ ଯୋଗ ଦେଲେ । ଜୀବନ ଯେଉଁ ବିନ୍ଦୁରୁ ଆରମ୍ଭ କରିଥିଲେ, ବହୁ ଘାଟରେ ପାଣି ପିଇ ପିଇ ସେ ସେହି ବିନ୍ଦୁରେ ପୁଣି ପହଞ୍ଚିଲେ ।

ସୁରେନ୍ଦ୍ରବାବୁଙ୍କ ମତରେ ଏହା ସମସ୍ତ ସାଂସାରିକ ଅସଫଳତା ମଧ୍ୟରେ ଥିଲା ଗୋଟିଏ ସଫଳତା ।

## ଗଳ୍ପ

ସୁରେନ୍ଦ୍ରବାବୁ ଜଣେ ଅସାଧାରଣ ଗାଳ୍ପିକ ଥିଲେ । ବସ୍ତୁତଃ ତାହାଙ୍କୁ ଆଧୁନିକ ଓଡ଼ିଆ କ୍ଷୁଦ୍ରଗଳ୍ପର ଅପ୍ରତିଦ୍ୱନ୍ଦ୍ୱୀ ଲେଖକ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସୁରେନ୍ଦ୍ରବାବୁଙ୍କ କଥାବସ୍ତୁର ଚାରଣଭୂମି ହେଉଛି ଇତିହାସ, ପୁରାଣ, ବୌଦ୍ଧଯୁଗ ତଥା ଏବର ସମାଜର ପଲ୍ଲୀ ଓ ସହର । ପୁଣି ଯେଉଁ କଥାବସ୍ତୁ ଗ୍ରହଣ କରିଛନ୍ତି, ସେଗୁଡ଼ିକ ମଣିଷ ଜୀବନର ଦ୍ୱନ୍ଦ୍ୱ, ଅନ୍ତର୍ଦାହ, ସଂଶୟ, ଛଳନା ଓ ଶୂନ୍ୟତା ଉପରେ ଆଧାରିତ । ସେ ମଣିଷ ଜୀବନର ଦୋଷ, ଦୁର୍ବଳତା, ଛଳନା ପ୍ରଭୃତିକୁ ଅଧିକ ଜୀବନ୍ତ କରି ପ୍ରକାଶ କରିବାପାଇଁ ଚେଷ୍ଟା କରିଛନ୍ତି । ତେଣୁ ତାଙ୍କର ଗଳ୍ପଗୁଡ଼ିକ ଜୀବନ୍ତ, ବାସ୍ତବ ଓ ସ୍ୱାଭାବିକ ହୋଇପାରିଛି ।

ସୁରେନ୍ଦ୍ରବାବୁ ପ୍ରଥମେ 'ବନ୍ଦୀ' ଗଳ୍ପ ଲେଖିଥିଲେ ଓ ତାହା ବିଶ୍ୱନାଥ କରଙ୍କ ସମ୍ପାଦନାରେ 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ ହୋଇଥିଲା । ମାତ୍ର 'ମଣିଷ ଓ ଅର୍ଥନୀତି' ହିଁ ତାଙ୍କର ପ୍ରଥମ ସଂଗତ ଗଳ୍ପ । ଏହା ସଚ୍ଚି ରାଉତରାୟଙ୍କ ସମ୍ପାଦିତ 'ଆରତି' ପତ୍ରିକାରେ ୧୯୪୧ ମସିହାରେ ପ୍ରକାଶ ପାଇଥିଲା । ତୃତୀୟ ଗଳ୍ପ ପାଟଣାରୁ ପ୍ରକାଶିତ 'ପ୍ରଭାତୀ'ରେ ପ୍ରକାଶ ପାଇଥିଲା । ଏହା ତାଙ୍କୁ ଗଭୀର ଉତ୍ସାହ ଓ ଆତ୍ମପ୍ରତ୍ୟୟ ଦେଇଥିବା ଅନୁମାନ କରାଯାଏ ।

ସୁରେନ୍ଦ୍ରବାବୁଙ୍କ ଗଳ୍ପ ରଚନାର ପଶ୍ଚାତ୍‌ଭାଗରେ ଜନୈକ ବଙ୍ଗୀୟ ଯୁବକଙ୍କ ଅବଦାନ କମ୍ ନ ଥିଲା । ସୁରେନ୍ଦ୍ରବାବୁ କଟକରେ 'ବ୍ୟାଚିଲରସ୍ ଡେନ୍'ରେ ଥିଲାବେଳେ ଏହି ବଙ୍ଗୀୟ ଯୁବକଟି କଲିକତାରୁ ଆସି ତାଙ୍କ ପାଖେ ଗୋପନରେ ରହିଥିଲେ । ସୁରେନ୍ଦ୍ରବାବୁ ନିଜର ଗଳ୍ପକୁ ପଢ଼ି ତାଙ୍କୁ ଶୁଣାଉଥିଲେ । ଏହି ଗଳ୍ପ ଶୁଣାଇବା ଭିତରେ ସେ ଆଶାତୀତଭାବେ ଉତ୍ସାହ ଓ ଆତ୍ମପ୍ରତ୍ୟୟ ଲାଭ କଲେ । ଏହି ବଙ୍ଗୀୟ ଯୁବକ ଜଣକ ତାଙ୍କ ଜୀବନପଥରେ ଦେଖାଦେଇ ନ ଥିଲେ ସେ ହୁଏତ ଗଳ୍ପ ରଚନା ଦିଗରେ ସେପରି ଆଗ୍ରହୀ ହୋଇ ନ ଥାନ୍ତେ କି ଗଳ୍ପ ରଚନା ଦିଗରେ ଏପରି ପ୍ରତିଷ୍ଠା ପାଇପାରି ନ ଥାନ୍ତେ ! ସୁରେନ୍ଦ୍ରବାବୁ ନିଜେ ଏହା ସ୍ୱୀକାର କରିଛନ୍ତି – ''ମୋ ଜୀବନରେ ସେହି ରହସ୍ୟମୟ ଚରିତ୍ରର ଆବିର୍ଭାବ ଘଟି ନ ଥିଲେ ମୁଁ କେବେ କ୍ଷୁଦ୍ର ଗଳ୍ପ ରଚନାରେ ମନୋନିବେଶ କରି ନ ଥାନ୍ତି । ଆଉ କ'ଣ ଲେଖିଥାନ୍ତି, କେ ଜାଣେ ?''

୧୯୯୦ ମସିହା ଅର୍ଥାତ୍ ସୁରେନ୍ଦ୍ରବାବୁଙ୍କ ତିରୋଧାନର ତିନି ମାସ ପୂର୍ବରୁ ପ୍ରକାଶ ପାଇଥିଲା 'ସୁରେନ୍ଦ୍ର ମହାନ୍ତିଙ୍କ ଶ୍ରେଷ୍ଠ ଗଳ୍ପ ସଙ୍କଳନ' । ସୁରେନ୍ଦ୍ରବାବୁ ଜୀବଦ୍ଦଶାରେ ୧୫୦ଟିରୁ ଅଧିକ ଗଳ୍ପ ରଚନା କରିଛନ୍ତି । ସେଗୁଡ଼ିକ ମଧ୍ୟ ୧୨ଟି ଗ୍ରନ୍ଥରେ ଗ୍ରନ୍ଥିତ । ମୋପାସାଁଙ୍କ ପରି ୩୦୦ରୁ ଅଧିକ ଗଳ୍ପ ରଚନାର ଯୋଜନାକୁ ଅବଶ୍ୟ ସାକାର କରିପାରି ନାହାନ୍ତି; ତେବେ ତାଙ୍କ ଗଳ୍ପରାଶି ଓଡ଼ିଶାରେ ଯେ ବିପୁଳ, ଏହା ସମସ୍ତେ ସ୍ୱୀକାର କରନ୍ତି ।

'ଶ୍ରେଷ୍ଠ ଗଳ୍ପ ସଂକଳନରେ ୧୭ଟି ଗଳ୍ପ ସନ୍ନିବିଷ୍ଟ । ଗଳ୍ପଗୁଡ଼ିକ ସ୍ୱୟଂ ଲେଖକ ଓ ପ୍ରତିଷ୍ଠିତ ଗାଳ୍ପିକ ବିଭୂତି ପଟ୍ଟନାୟକଙ୍କ ମିଳିତ ଆଲୋଚନାକ୍ରମେ ସଙ୍କଳନପାଇଁ ନିର୍ବାଚିତ ହୋଇଛି ।'

ସେହି ଗଳ୍ପମାନଙ୍କ ମଧ୍ୟରୁ ୧୯୪୬ ମସିହାଠାରୁ ୧୯୫୬ ମସିହା (୧୦ ବର୍ଷ) ସୁଦ୍ଧା ରଚିତ ଗଳ୍ପ ମଧ୍ୟରୁ ୧୧ଟି ଗଳ୍ପ ନିର୍ବାଚିତ ହୋଇଥିବାବେଳେ ୧୯୫୭ ମସିହାରୁ ୧୯୮୭ ମସିହା (୩୦ ବର୍ଷ) ସୁଦ୍ଧା ରଚିତ ଗଳ୍ପ ମଧ୍ୟରୁ ୬ଟି ଗଳ୍ପ ନିର୍ବାଚିତ ହୋଇଛି । ଗଳ୍ପଗୁଡ଼ିକ ମାନବଜୀବନର ବହୁବିଧ ଦିଗକୁ ସ୍ପର୍ଶ କରିବାରେ ସଫଳ । ତେବେ ଶ୍ରେଷ୍ଠଗଳ୍ପ ସଙ୍କଳନରୁ ଯେଉଁ ଗଳ୍ପଗୁଡ଼ିକୁ ପାଠକ ଅନାୟାସରେ ସ୍ମରଣ କରିପାରେ, ସେଗୁଡ଼ିକ ହିଁ ଏଥିରେ ଆଲୋଚିତ ହୋଇଛି ।

## ମଣିଷ ଓ ଅର୍ଥନୀତି

୧୯୪୦ ମସିହାରେ ଏହା ରଚିତ ହୋଇଥିଲା । ଏଥିରେ ଏକ କିରାଣି ଜୀବନର ଦାରିଦ୍ର୍ୟ କଳାତ୍ମକ ରୂପ ଲାଭ କରିଅଛି ।

ଅଫିସ କର୍ମକ୍ଲାନ୍ତ ଜନୈକ କିରାଣିର ବହୁ ଈପ୍‌ସିତ ରବିବାରିଆ ସକାଳର ଘଟଣାବଳୀରୁ ଗଳ୍ପର କଥାଭାଗ ଆରମ୍ଭ । ସେଦିନ ଟାଇପ ରାଇଟରର ବିକୃତ ସଟ୍ ସଟ୍ ଆବାଜ ନାହିଁ । ହେଡ୍ କ୍ଲର୍କର ନାଲିଆଖିର ଧମକ ନାହିଁ । ସନ୍ଧ୍ୟା ଛଅଟାରେ ଭୋକିଲା ପେଟରେ ଫେରିଲାବେଳେ 'ସାମ୍ୟବାଦ'କୁ ନେଇ କେଉଁ ପେଣ୍ଡାଲ ଉପରେ ଠିଆ ହୋଇ ବକ୍ତୃତା ଦେବାର ନାହିଁ । କେବଳ ଦିନଟାର ବିଶ୍ରାମ ।

ରବିବାର ଛୁଟିରେ କିରାଣି ଜଣଙ୍କର ହଠାତ୍ ସିନେମା ଯିବାପାଇଁ ମନ ହୋଇଛି । ଜୀବନର ସେହି ମୁହୂର୍ତ୍ତକୁ ଉପଭୋଗ କରିବାପାଇଁ ବକ୍‌ସରେ ଦୁଇଟା ଟିକେଟ କିଣିଛି । ତେବେ କିରାଣି ହୋଇ ମୂଲ୍ୟବାନ୍ ବକ୍‌ସ ଟିକେଟରେ ସିନେମା ଦେଖିବା ଯୋଗୁଁ ଅପବାଦ ଆଶଙ୍କା କରି ସିନେମା ଦେଖା ଆନନ୍ଦ ମିଳି ନାହିଁ । ମାସର ଅବଶିଷ୍ଟ ଦିନ ଖର୍ଚ୍ଚ ପାଇଁ ରହିଛି ସାତଟି ଟଙ୍କା । ଅଯଥାରେ ଖର୍ଚ୍ଚ କରିଲା ସିନା, ତା' ପରଦିନ ଅଫିସ ଯିବା ପୂର୍ବରୁ ସେରେ ଚାଉଳ ଡାଲି ସଂଗ୍ରହ କରିପାରି ନ ଥିବା ଯୋଗୁଁ ନିଜର ଦୂରଦୃଷ୍ଟିହୀନତାକୁ ସମାଲୋଚନା କରିଛି । ବୈବାହିକ ଜୀବନର ସ୍ମୃତି ମୁଦିଟାକୁ ଯେତେବେଳେ ପତ୍ନୀ ବିକ୍ରୟ କରିବାପାଇଁ ଅନୁରୋଧ କରିଛନ୍ତି, ସେ ମନା କରିପାରି ନାହିଁ । କିରାଣି ହୋଇ ଉପଭୋଗ ଅପେକ୍ଷା ଜୀବନକୁ ବଞ୍ଚାଇ ରଖିବା ଅଧିକ ଶ୍ରେୟସ୍କର ବୋଲି ଉପଲବ୍ଧି କରିଛି ।

ଗଳ୍ପଟି ଅତୀବ ଭାବବ୍ୟଞ୍ଜକ ଓ ସର୍ବକାଳାନୁସାରୀ ହୋଇଛି ।

## ରୁଟି ଓ ଚନ୍ଦ୍ର

ଏହି ଗଳ୍ପରେ ଜୀବନ କେବଳ ରୁଟିର ସମସ୍ୟା ନୁହେଁ; ଚନ୍ଦ୍ରର ମଧ ଆବଶ୍ୟକତା ରହିଛି ବୋଲି ପାର୍ଟି କାର୍ଯ୍ୟାଳୟର ଦୁଇ ଜଣ ସଦସ୍ୟ, ସଦସ୍ୟା ଓ ଆନ୍ଦୋଳନ କରିଥିବା ଶ୍ରମିକ ଦମ୍ପତି ଏକ ଜ୍ୟୋତ୍ସ୍ନାସ୍ନାତ ରଜନୀରେ ଉପଲବ୍ଧି କରିଛନ୍ତି । ସେହି ମୁହୂର୍ତ୍ତରେ ଅଲୋଡ଼ା ହୋଇପଡ଼ିଛି ମାର୍କ୍‌ସ ବା ଲେନିନ୍‌ଙ୍କ ଦର୍ଶନ । ସପ୍ତାହବ୍ୟାପୀ ମିଲ୍ ବନ୍ଦ ହୋଇଛି । ଉପାର୍ଜନ ନ ଥିବାରୁ ଉଦରଜ୍ୱାଳା ସତ୍ତ୍ୱେ ଜହ୍ନଆଲୋକ ଶ୍ରମିକ ଦମ୍ପତିକୁ ଉଚ୍ଚାଟିତ କରିଛି ବଂଶୀବାଦନପାଇଁ । ବଂଶୀର ସ୍ୱର ଓ ଜ୍ୟୋତ୍ସ୍ନାର ଚମକ ହୃଦୟକୁ ବାନ୍ଧି ରଖିଛି । ସେଠି କ୍ଷୁଧା ନିବାରଣପାଇଁ ସଂଗ୍ରାମ ବା ସ୍ଲୋଗାନ ମତବାଦର ମୃତ୍ୟୁ ଘଟିଛି ।

କମ୍ରେଡ ଲଳିତା ରୋଟିପାଇଁ ସଂଗ୍ରାମ କରୁଥିବା କମ୍ରେଡ ବିନୋଦକୁ ପ୍ରଶ୍ନବାଣରେ ଜର୍ଜରିତ କରିଛି – ''ଆଚ୍ଛା, ମାର୍କ୍‌ସ କେଉଁଠି ଜହ୍ନରାତି ବିଷୟରେ କିଛି କହି ନାହାନ୍ତି ?''

ଅଧ୍ୟାପକ ପୀତାମ୍ବର ପ୍ରଧାନଙ୍କ ମତରେ – ''ଫାଙ୍କା ଆଦର୍ଶର ଆବର୍ଜନା ମଧ୍ୟରୁ ଜୀବନର ବାସ୍ତବ ସୁଗନ୍ଧ ଅନ୍ୱେଷଣ କରିବାପାଇଁ ଲେଖକଙ୍କର ଅନ୍ତର୍ଦୃଷ୍ଟି ଜଗତ ପକ୍ଷରେ ଚେତାବନୀ ।''

**ଅଷ୍ଟ୍ରେଲିଆ**

୧୯୪୬ ମସିହାରେ ରଚିତ 'ଅଷ୍ଟ୍ରେଲିଆ' ଗଳ୍ପରେ ମଧ୍ୟ ସମାଜର ନିମ୍ନବିତ୍ତ ଶ୍ରେଣୀର ଲୋକ, ଯଥା – ମେହେନ୍ତର, କୁଲି ଆଦି ସହରତଳି ଜୀବମାନଙ୍କର କରୁଣ ଚିତ୍କାର ପ୍ରତିଧ୍ୱନିତ ହୋଇଛି । ଅଷ୍ଟ୍ରେଲିଆରେ ଯେତେବେଳେ ସୁନାଖଣିରେ ସୁନାର ଉତ୍ପାଦନ ବୃଦ୍ଧି ହେବାରେ ଲାଗିଛି, ଭାରତରେ ସେତେବେଳେ ଅନାହାର, ଅର୍ଦ୍ଧାହାର ବୃଦ୍ଧି ପାଇବାରେ ଲାଗିଛି । ଅମୀର ଖାଁ ଗଳିର ନର୍ଦ୍ଦମା ଭିତରେ ଘୃଣ୍ୟ, କୁତ୍ସିତ, କଙ୍କାଳସାର ହରିଜନ ବାଳକମାନଙ୍କର ପଙ୍କ ଘାଣ୍ଟିବା ଅଥବା ଅର୍ଥ ଉପାର୍ଜନ ଚିତ୍ର ଅତି ବାସ୍ତବ ଓ ଜୀବନ୍ତ ହୋଇଉଠିଛି ।

**କୃଷ୍ଣଚୂଡ଼ା**

ଏହା ୧୯୪୭ ମସିହାରେ ରଚିତ ହୋଇଥିଲା । ଏଥିରେ 'ସଂଗ୍ରାମ' ସମ୍ବାଦପତ୍ରର ସମ୍ପାଦକ ଓ ପ୍ରୁଫ୍‌ରିଡର୍ ସଦାନନ୍ଦର ମନସ୍ତାତ୍ତ୍ୱିକ ବିଶ୍ଳେଷଣ କରାଯାଇଛି । ସଦାନନ୍ଦ ଜଣେ ନିରଳସ କର୍ମଚାରୀ । ନିଜ କାର୍ଯ୍ୟ ଓ କାର୍ଯ୍ୟାଳୟର ସୀମିତ ସରହଦ ମଧ୍ୟରେ ତାହାର ରୁଚି ଓ ଆଗ୍ରହ ସୀମାବଦ୍ଧ ଥାଏ । ସଦାନନ୍ଦର ମନର ନିଭୃତ କୋଠରି ଭିତରକୁ ଦିନେ ଅନୁପ୍ରବେଶ କରେ ରାସ୍ତାକଡ଼ର ରକ୍ତିମ କୃଷ୍ଣଚୂଡ଼ାର ଦୃଶ୍ୟ । କୃଷ୍ଣଚୂଡ଼ାର ସ୍ତବକ ଭିତରେ ସେ ତା'ର ଅତୀତକୁ ହଠାତ୍ ଫେରିଯାଏ । କୃଷ୍ଣଚୂଡ଼ା ସହ ତା'ର ପିଲାଦିନର ସ୍ନେହ ଓ ପ୍ରେମ ତା'ର ମନକୁ ଆଚ୍ଛନ୍ନ କରିପକାଏ । ସେ ଅନ୍ୟମନସ୍କ ଭାବେ କାର୍ଯ୍ୟାଳୟରୁ ବାହାରିଆସି କୃଷ୍ଣଚୂଡ଼ା ଗଛରେ ଚଢ଼ିବାକୁ ଉଦ୍ୟମ କରେ । ମାତ୍ର ରାତି ଡିଉଟିର କନଷ୍ଟେବଲର ହସ୍ତକ୍ଷେପ ଫଳରେ ସେ ବାସ୍ତବ ଦୁନିଆକୁ ଫେରିଆସେ । ତା'ର ମନେ ହୋଇଛି ତା'ର ଏ ପୃଥିବୀ ମରିଯାଇଛି । ସଦାନନ୍ଦ ମରିଯାଇଛି । କୃଷ୍ଣଚୂଡ଼ା କେବଳ ସେଇ ଏକଦା ଛବିଳ ଜୀବନର ଅଶ୍ଳୀଳ ସ୍ମାରକୀ ।

ସୁରେନ୍ଦ୍ରବାବୁଙ୍କ ଏହା ଏକ ଶ୍ରେଷ୍ଠ ଗଳ୍ପ ଭାବେ ଗଣ୍ୟ ।

ଏହି ଗଳ୍ପଟି ସମ୍ପର୍କରେ ଶ୍ରୀ ମହାନ୍ତି ନିଜେ କହିଛନ୍ତି – '' 'କୃଷ୍ଣଚୂଡ଼ା' ଗଳ୍ପଟି ମତେ ହଠାତ୍ ରାତାରାତି ପ୍ରସିଦ୍ଧ କରିଦେଲା । 'ସହକାର' ପତ୍ରିକାରେ ଏହି କ୍ଷୁଦ୍ର ଗଳ୍ପଟି ପ୍ରକାଶ ପାଇବାପରେ ସେତେବେଳର ପ୍ରସିଦ୍ଧ ଗାଳ୍ପିକ ଅଧ୍ୟାପକ ରାଜକିଶୋର ରାୟ ଖଣ୍ଡେ ପତ୍ର ଲେଖି ମତେ ଅନୁପ୍ରାଣିତ କରିଥିଲେ । ସେତେବେଳର ଅନ୍ୟତମ ପ୍ରସିଦ୍ଧ ଗାଳ୍ପିକ ଅନନ୍ତ ପ୍ରସାଦ ପଣ୍ଡା ସୁଦୂର ବରଗଡ଼ରୁ ମୋର ଠିକଣା ସଂଗ୍ରହ କରି ଏହି ଗଳ୍ପଟିପାଇଁ ମତେ ଅଭିନନ୍ଦନ ଜଣାଇଥିଲେ ।''

**ପତାକା ଉତ୍ତୋଳନ**

୧୯୪୭ ମସିହା ଅଗଷ୍ଟ ମାସରେ ରଚିତ ଏହି ଗଳ୍ପରେ ବିଭିନ୍ନ ସମୟର ପତାକା ଉତ୍ତୋଳନର ଚିତ୍ର ଦିଆଯାଇଛି । ସ୍ୱାଧୀନତା ପୂର୍ବରୁ ବିଦ୍ରୋହୀମାନେ ୟୁନିୟନ ଜ୍ୟାକ୍ ଚିରି ପକାଇଛନ୍ତି । ରାୟବାହାଦୁରଙ୍କ ପୁଅ ଅରୁଣ ସତ୍ୟାଗ୍ରହୀମାନଙ୍କ ସହ ଜାତୀୟ ପତାକା ଉଡ଼ାଇବାକୁ ଚେଷ୍ଟା କରି ପ୍ରାଣବଳି ଦେଇଛି । ସ୍ୱାଧୀନତା ମିଳିବା ପରେ ବିଜୟ ପତାକା ଉଡ଼ାଇଛନ୍ତି ଅରୁଣ, ରମା, ହେମବତୀ । ନିଜ ଦେଶର ପତାକାପାଇଁ ମୁହଁ ଖୋଲି କହିଛନ୍ତି –

''ଯେଉଁ ପତାକାପାଇଁ ଅରୁ ପ୍ରାଣବଳି ଦେଇଛି, ସେ ପତାକା ଯୁଗେ ଯୁଗେ ରହିବ ଉନ୍ନତ ହୋଇ । ଏହା କେତେ ମିଟର କପଡ଼ା ନୁହେଁ, ଗୋଟିଏ ଜାତିର ମୁକ୍ତିର ମନ୍ତ୍ର, ସ୍ୱାଧୀନତାର ପ୍ରତୀକ ।'' ରାୟବାହାଦୁରଙ୍କ ହାତରେ ମଧ୍ୟ ପତାକା ଉତ୍ତୋଳିତ ହୋଇଛି ।

ରାୟବାହାଦୁର କହିଛନ୍ତି – ''ଏହି ପତାକାପାଇଁ ନିର୍ଦ୍ଦୋଷରେ ମୁଁ ଗୁଳି କରି ମାରିଛି ଅରୁଣକୁ । ଅଥଚ ଭାବୁଛି ଏ ପତାକା କ'ଣ ? ଖଣ୍ଡେ ରଙ୍ଗିନ କନା, ରଙ୍ଗ ଛାଡ଼ିଯିବ ତା'ର ; ତଥାପି ତୋର ପତାକାର ଜୟ ହେଉ ।''

'ପତାକା ଉତ୍ତୋଳନ' ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ୍‌ର ଏକ ବିଚିତ୍ର ସମନ୍ୱୟ । ଏହା ସୁରେନ୍ଦ୍ରଙ୍କ ସ୍ରଷ୍ଟା ମାନସର ଏକ ଅନବଦ୍ୟ କୃତି ।

**ଭାଗାବଣ୍ଡ**

ଏହା ଏକ ଅତି ବାସ୍ତବବାଦୀ ଗଳ୍ପ । ୧୯୫୦ ମସିହାରେ ଏହା ରଚିତ ହୋଇଥିଲା ।

ଗଳ୍ପରେ ତିନି ବନ୍ଧୁଙ୍କ ଉତ୍କଟ ଦାରିଦ୍ର୍ୟପୀଡ଼ିତ ଚିତ୍ର ରହିଛି । କିନ୍ତୁ ଦାରିଦ୍ର୍ୟ ପୀଡ଼ନରୁ ପାରି ହେବାପାଇଁ ପ୍ରଚୁର ଆଶା ଓ ଦାରିଦ୍ର୍ୟ ପ୍ରତି ଭୟ ନୁହେଁ କୌତୁକବୋଧ ହିଁ ସେମାନଙ୍କୁ ସେହି ସ୍ଥିତିରୁ ଉଦ୍ଧାର ହେବାପାଇଁ ଶକ୍ତି ଯୋଗାଇଛି ।

ତିନି ଅବିବାହିତ ବନ୍ଧୁ ପରସ୍ପର ଅଜାଣତରେ ପୁଲିସ ଇନ୍‌ସପେକ୍ଟର ମଲ୍ଲିକାର ପ୍ରଣୟ ପ୍ରତିଯୋଗିତାରେ ଅବତୀର୍ଣ୍ଣ ହୋଇଛନ୍ତି । ମଲ୍ଲିକା ସୁନ୍ଦରୀ ନୁହେଁ । ସେ କାଳୀ, ଦାନ୍ତୁରୀ, ଉତ୍ତୀର୍ଣ୍ଣ-ଯୌବନା ମଧ୍ୟ । ତେବେ ତା'ର ଅଛି ଆଖିଦୃଶିଆ ମାସିକ ଆୟ ଓ ସମ୍ମାନଜନକ ପଦବୀ । ନିଶ୍ଚିତ ଅବଲମ୍ବନ ଲୋଭରେ ଏହି ତିନି ବନ୍ଧୁ ପରସ୍ପରର ପ୍ରତିଦ୍ୱନ୍ଦ୍ୱୀ ହୋଇଉଠନ୍ତି । ତେବେ ମଲ୍ଲିକା ଶେଷରେ ବିବାହ କରିଛି ଜଣକୁ । ଅନ୍ୟ ଦୁଇ ବନ୍ଧୁ ତେବେ ବ୍ୟାପାରଟାକୁ ସହଜରେ ଗ୍ରହଣ କରିନିଅନ୍ତି । ରାତି ଅଧରେ ନିକଟବର୍ତ୍ତୀ ଏକ ଶରଣାର୍ଥୀ ଶିବିର ନିକଟରେ ଆଶ୍ରୟ ନେଇ ଭାଗାବଣ୍ଡ ଭାବେ ଆବିର୍ଭୂତ ହୁଅନ୍ତି । ସେମାନେ ଉପଲବ୍ଧି କରିଛନ୍ତି ଜୀବନ ସତରେ ଏମିତି କିଛି ଦୁଷ୍କର ନୁହେଁ । ଉପରେ ଖୋଲା ଆକାଶ, ଗଛରେ ଶିରି ଶିରି ପବନ, – ଆକାଶରେ ଶୀତଳ ଜହ୍ନ – ଅଭାବସତ୍ତ୍ୱେ ଏହି ଜଟିଳ ଦୁନିଆରେ ଦିନ କେଟୁଟା କାଟିବାପାଇଁ ଯଥେଷ୍ଟ ଉପାଦାନ ଯୋଗାଇପାରେ ।

ପ୍ରକୃତି ଦୃଷ୍ଟିରୁ 'ଭାଗାବଣ୍ଡ' ସହ ତୁଳିତ ହେବା ଭଳି ଗଳ୍ପ ଓଡ଼ିଆ ସାହିତ୍ୟରେ ନାହିଁ କହିଲେ ଚଳେ । ଏଣୁ ଏହା ଓଡ଼ିଆ ସାହିତ୍ୟର ଏକ ଶ୍ରେଷ୍ଠ ଗଳ୍ପ ଭାବେ ଗଣ୍ୟ ।

## ଡିନୋସାରର ଆତ୍ମା

ଡିନୋସାର ଏକ ପ୍ରାଗୈତିହାସିକ ଯୁଗର ଭୟଙ୍କର ବିଶାଳକାୟ ପ୍ରାଣୀ । ସାମନ୍ତବାଦୀ ଚେତନାର ଡିନୋସାର ପ୍ରବୃତ୍ତି ଭିତରେ କୋମଳ ଓ ଉଦାର ଆତ୍ମା ବି ଥାଇପାରେ, ଏହି ଗଳ୍ପରେ ତାହାହିଁ ପରିସ୍ଫୁଟ । ଏହା ୧୯୫୪ ମସିହାରେ ରଚିତ ହୋଇଥିଲା ।

ଗଳ୍ପରେ ରାଜପୁରୁଷର ପ୍ରଜାତନ୍ତ୍ର ବିଦ୍ୱେଷ ମନୋବୃତ୍ତି ପ୍ରତିଫଳିତ ହୋଇଛି । ରାଜତନ୍ତ୍ରର ପ୍ରତୀକ ବ୍ରଜେଶ୍ୱର ପ୍ରଜାତନ୍ତ୍ରର ପ୍ରତୀକ ରାୟଗୁରୁଙ୍କ ମତାମତକୁ ଖଣ୍ଡନ କରିଛନ୍ତି । ସେ ଗଣର ସମ୍ବର୍ଦ୍ଧନାକୁ ପ୍ରତ୍ୟାଖ୍ୟାନ କରନ୍ତି । ନିଜର ଶିକାର ଚେତନାର ସଂକ୍ଷିପ୍ତ ସଂସ୍କରଣ ସ୍ୱରୂପ ସେ ପକ୍ଷୀ ଶିକାର କରି ତଳକୁ ଖସାଇ ଦେଇଛନ୍ତି । ନାରୀ ଶିକାର ମଧ୍ୟ ରାଜତନ୍ତ୍ରର ଏକ ଭୟଙ୍କର ନିଶା । ଏକଦା ଯାହା ଶକ୍ତି ଓ କ୍ଷମତା ବଳରେ ସାଧିତ ହେଉଥିଲା, ଏବେ ତାହାକୁ ଅର୍ଥବଳରେ ବ୍ରଜେଶ୍ୱର ସମ୍ଭବ କରାଇପାରିଛନ୍ତି । ଏହି ପ୍ରବୃତ୍ତି ସାଧନରେ ମୁଖ୍ୟ ସହାୟକଙ୍କୁ ରାଶି ରାଶି ସୁନା ଜହରତ ଦେଇ ବଶୀଭୂତ କରିଛନ୍ତି ଓ ତାଙ୍କର କନ୍ୟାକୁ ରାତ୍ରି ସଙ୍ଗିନୀ କରାଇପାରିଛନ୍ତି । ମାତ୍ର ସୁନ୍ଦରୀର ଉଲଗ୍ନ ଶରୀରର ଅପରୂପ ସୌନ୍ଦର୍ଯ୍ୟକୁ ନିରୋଳା କୋଠରି ଭିତରେ ଦେଖି ଦେଖି ସେ ନିଜର କାମସ୍ପୃହା ମେଣ୍ଟାଇଛନ୍ତି । ସେ ସୁନ୍ଦରୀକୁ ଯୌନକ୍ରୀଡ଼ନକ ନ କରି ଅନାଘ୍ରାତ ଛାଡ଼ି ଦେଇଛନ୍ତି । ତା'ର ନିଜର ମୂଲ୍ୟ ନିର୍ଦ୍ଧାରଣ କରିବାକୁ 'ଷ୍ଟ୍ରଙ୍ଗ୍ ରୁମ୍' ଚାବି ତା' ହାତକୁ ବଢ଼େଇ ଦେଇଛନ୍ତି ।

କ୍ଷୟିଷ୍ଣୁ ସାମନ୍ତବାଦର ବୀଭତ୍ସତା ଭିତରେ ଆତ୍ମାର ମହାନତା ଏଥିରେ ପରିସ୍ଫୁଟ ହୋଇଛି ।

## ପିତା ଓ ପୁତ୍ର

ଏହା ୧୯୫୫ ମସିହାରେ ରଚିତ ହୋଇଥିଲା ।

ନିଜକୁ ଅବହେଳିତ ପୁତ୍ର ମନେ କରି ଅଜାତଶତ୍ରୁ ପିତାଙ୍କୁ ଆଜୀବନ କାରାଦଣ୍ଡ ଦେଇଛନ୍ତି । କାରାଗାରର ନୀରନ୍ଧ୍ର କକ୍ଷରେ କ୍ଷୁଧା ଓ ତୃଷ୍ଣାର ବିକଳତାରେ ତିଳ ତିଳ କରି ପିତା ଯନ୍ତ୍ରଣା ଭୋଗିଛନ୍ତି । ଗର୍ଭଧାରୀ ମାତାଙ୍କୁ କାଶୀରାଜନନ୍ଦିନୀ ବୋଲି ସମ୍ବୋଧନ କରିଛନ୍ତି । କିନ୍ତୁ ଦୁର୍ବିନୀତ, ଦୁରାଚାରୀ ଓ ପାଷଣ୍ଡ ମନେ ହେଉଥିବା ଅଜାତଶତ୍ରୁ ପିତୃତ୍ୱ ଲାଭ କରିଛନ୍ତି । ପୂର୍ବଘୋଷିତ ନିଷ୍ଠୁର ଭବିଷ୍ୟଦ୍‌ବାଣୀ ସତ୍ତ୍ୱେ ପିତୃତ୍ୱର ମହାନନ୍ଦରେ ମଥିତ ହୋଇଯାଇଛି ଅଜାତଶତ୍ରୁଙ୍କ ପ୍ରାଣକନ୍ଦର । ଏହି ଅସାମାନ୍ୟ ଉପଲବ୍ଧି ହଠାତ୍ ତାଙ୍କ ପିତାଙ୍କ ପ୍ରତି ଦରଦୀ କରିପକାଇଛି ।

ନିଜର ତ୍ରୁଟି ସଂଶୋଧନ କରିବାକୁ ସେ ବ୍ୟଗ୍ର ହୋଇପଡ଼ନ୍ତି । ଅଳିନ୍ଦ ପରେ ଅଳିନ୍ଦ ଡେଇଁ କାରାଗାରକୁ ଧାଇଁଗଲେ . ମଧ କାଳର କୁଟିଳ ପରିସ୍ଥିତିକୁ ସେ ଆୟତ୍ତ କରିପାରନ୍ତି ନାହିଁ । ସେତେବେଳକୁ ଅସହ୍ୟ କ୍ଷୁଧା ଓ ତୃଷ୍ଣାର ଯନ୍ତ୍ରଣାରେ ପିତା ବିମ୍ବିସାର ମୃତ୍ୟୁବରଣ କରିସାରିଥାନ୍ତି । ସମସ୍ତ ନିଷ୍ଠୁରତା ଭିତରେ ଅଜାତଶତ୍ରୁଙ୍କ ଚରିତ୍ରରେ ଫୁଟି ଉଠିଥିବା ପିତୃ ହୃଦୟର ମହାନ୍ ଉଜ୍ଜ୍ୱଳ ରୂପର ପ୍ରକାଶ ଏହି ଗଳ୍ପକୁ ରସୋତ୍ତୀର୍ଣ୍ଣ କରିବା ସଙ୍ଗେ ସଙ୍ଗେ କାଳୋତ୍ତୀର୍ଣ୍ଣ କରିଛି । ଏହା ସୁରେନ୍ଦ୍ରବାବୁଙ୍କ ଇତିହାସାଶ୍ରୟୀ ଗଳ୍ପଗୁଡ଼ିକ ମଧ୍ୟରେ ଶ୍ରେଷ୍ଠ ବୋଲି ବିବେଚିତ ହୁଏ ।

**ଅମ୍ବାପାଲୀ**

ସାରିପୁତ୍ର ସୁରେନ୍ଦ୍ରବାବୁଙ୍କ ବୌଦ୍ଧଯୁଗାଶ୍ରୟୀ ଏକ ଗଳ୍ପ । ଏହା ୧୯୫୦ ମସିହାରେ ରଚିତ ହୋଇଥିଲା । ଅନ୍ତଃବିରୋଧୀ ମନସ୍ତତ୍ତ୍ୱର ଦ୍ୱିଧା, ସଙ୍କଟ, ଯନ୍ତ୍ରଣା ଓ ପୀଡ଼ା ଆଧାରରେ ସେ ଏହାକୁ ରଚନା କରିଛନ୍ତି ।

ଅମ୍ବାପାଲୀ ଗଣ ନାରୀର ବ୍ୟର୍ଥ ଜୀବନ କଟାଇଛି । ପୁଣି ମାତୃହୃଦୟର ଗୋପନ ବିଳାପ ଲାଗିରହିଛି । ଏକଦା ଏକ ସମୟରେ ଅମ୍ବାପାଲୀର ପ୍ରାସାଦ ଉପକଣ୍ଠରେ ମହାରାଜା ବିମ୍ବିସାର ଓ ମହାତ୍ମା ବୁଦ୍ଧଙ୍କର ଆବିର୍ଭାବ ଘଟିଛି । ମହାରାଜାଙ୍କ ଭବ୍ୟ ସମ୍ବର୍ଦ୍ଧନାପାଇଁ ଗଣଚିତ୍ତବିନୋଦିନୀ ଅମ୍ବାପାଲୀ ନିଜକୁ ସଜାଇଛି । ମହାରାଜା ବିମ୍ବିସାର ମଧ ପ୍ରତୀକ୍ଷା କରିଛନ୍ତି ଉତ୍କଣ୍ଠାର ସହିତ । ମହାତ୍ମା ବୁଦ୍ଧଙ୍କ ଗହଣରେ ବିଖ୍ୟାତ ଶ୍ରମଣ ଜୀବକ – ଯେକି ପରିତ୍ୟକ୍ତ ଯୌବନର ସନ୍ତକକୁ ଦର୍ଶନ କରିବାର ଅଦମ୍ୟ ପିପାସା ଜାତ ହୋଇଛି । କିନ୍ତୁ ଅନ୍ୟ ପଟେ ବୁଦ୍ଧଙ୍କ ଶରଣାଗତ ହେବାର ସିଦ୍ଧାନ୍ତ ମଧ ପ୍ରାଣକୁ ଆକୁଳିତ କରିଛି । ଶେଷରେ ଦ୍ୱନ୍ଦ୍ୱ-ପୀଡ଼ିତା ଏହି ଦ୍ୱନ୍ଦ୍ୱରୁ ଉତ୍ତୀର୍ଣ୍ଣ ହୋଇ ନଗରବାସୀ, ମହାରାଜା, ପରିଚାରିକାବୃନ୍ଦ ଓ ଭିକ୍ଷୁ – ସମସ୍ତଙ୍କୁ ଆଶ୍ଚର୍ଯ୍ୟ-ଚକିତ କରି ବୁଦ୍ଧଙ୍କଠାରେ ନିଜକୁ ସମର୍ପିତ କରିଦେଇଛି । ତୁଚ୍ଛ ଦେହ ଓ ଶରୀରର ପିପାସା ମେଣ୍ଟାଇବା ଅପେକ୍ଷା କୃଚ୍ଛ୍ର ସାଧନା ଅଧିକ ଶ୍ଳାଘ୍ୟ ବିବେଚିତ ହୋଇଛି । ବସ୍ତୁତଃ, ଏହି ଗଳ୍ପଟି ବୌଦ୍ଧ ଧର୍ମଦର୍ଶନର ପୋଷକତା କରେ । ଏହା ମଧ ସୁରେନ୍ଦ୍ରବାବୁଙ୍କ ଶ୍ରେଷ୍ଠ ଗଳ୍ପ ମଧ୍ୟରେ ଅନ୍ୟତମ ।

**ମହାନଗରୀର ରାତ୍ରି**

ସହରୀଜୀବନଭିତ୍ତିକ 'ମହାନଗରୀର ରାତ୍ରି' ୧୯୪୯ ମସିହାରେ ରଚିତ ହୋଇଥିଲା ।

ନଗର ସଭ୍ୟତାର ଏକ ବିଷମୟ ଏବଂ କଣ୍ଟକିତ ଦିଗ ରୂପଜୀବୀ ବ୍ୟବସାୟ । ଦେହକୁ ନେଇ ବ୍ୟବସାୟ ନଗରର ଗଳି ଉପଗଳିରେ ଦେଖିବାକୁ ମିଳେ । ପୁଣି ଖବରକାଗଜ ଜରିଆରେ ସଭାସମିତି, ସେମିନାର, ପ୍ରଦର୍ଶନୀ ଇତ୍ୟାଦିର ବିଜ୍ଞାପନ ମାଧ୍ୟମରେ ବ୍ୟକ୍ତି ଓ ସଂସ୍ଥା ନିଜକୁ ପ୍ରତିଷ୍ଠିତ କରିବାର ଲିପ୍ସା ବଳବତ୍ତର ହେଉଥିବା

ଲକ୍ଷ୍ୟ କରାଯାଏ । ଏଥିରୁ 'ମହାନଗରୀର ରାତ୍ରି' ଗଳ୍ପ ଗଢ଼ିଉଠିଛି । ରୂପଜୀବୀ ଚନ୍ଦ୍ରାର କେଳିମନ୍ଦିରକୁ ପ୍ରବେଶ କରି ଗାଳ୍ପିକ ବିଗତଯୌବନା ଚନ୍ଦ୍ରା ଓ ଅନାଘ୍ରାତା ଉଦ୍ଭିନ୍ନଯୌବନା କିଶୋରୀ ମିନୁର ସରଳତା ଦେଖି ବିସ୍ମିତ ହୋଇଛନ୍ତି । ଚନ୍ଦ୍ରା କାହିଁକି ଦେହକୁ ପଣ୍ୟ କରେ? ଏହି ପ୍ରଶ୍ନ ସେ କରିଛନ୍ତି । ସେ ସତ୍ୟ ମଧ୍ୟ ଉନ୍ମୋଚିତ ହୋଇଛି । ବଙ୍ଗ ବିଭାଜନ ବେଳେ ନାଗରିକା ଚନ୍ଦ୍ରାର ସ୍ୱାମୀ ଓ ସନ୍ତାନକୁ ହତ୍ୟା ଓ ଚନ୍ଦ୍ରାଙ୍କୁ ମଧ୍ୟ ବାରମ୍ବାର ବଳାତ୍କାର କରନ୍ତି ଉଦ୍‌ଭ୍ରାନ୍ତ ଜନତା । ଶେଷକୁ ବଞ୍ଚି ରହିବାକୁ ଚନ୍ଦ୍ରା ଆପଣାକୁ ପଣ୍ୟବସ୍ତୁ କରେ । ଚନ୍ଦ୍ରା କିନ୍ତୁ କିଶୋରୀ ମିନୁର ଅଭିଭାବକଭାବେ ନିରାପତ୍ତା ପ୍ରଦାନ କରି କହିଛି –

''ସେ ମୋର ଭଉଣୀ ବାବୁ । କିନ୍ତୁ ତା'ର ଶୁଭବଳି ପଡ଼ି ନାହିଁ ।''

ମିନୁର ଭବିଷ୍ୟତ୍ ନେଇ ଗାଳ୍ପିକ ମଧ୍ୟ ଉଦ୍‌ବିଗ୍ନ ହୋଇପଡ଼ିଛନ୍ତି ।

''ଦିନେ ମିନୁର ଶୁଭବଳି ପଡ଼ିବ । ତା'ର ମାଂସ ବାଣ୍ଟି ଖାଇବେ ମହାନଗରୀର ବିଳାସୀମାନେ । ଯେଉଁଦିନ ସେ ମାଂସ ସରିଯିବ, ସେଦିନ ସେ ଫିଙ୍ଗାହେବ ଉଚ୍ଛିଷ୍ଟ ମାଂସହାଡ଼ ପରି କେଉଁଠି କେଉଁ ନର୍ଦ୍ଦମାରେ ।''

ଶେଷ ପର୍ଯ୍ୟାୟରେ ଚନ୍ଦ୍ରାର ବୃତ୍ତିଗତ ଆହ୍ୱାନର ଜବାବରେ ଗାଳ୍ପିକ ଏକ ଶକ୍ତ ଚପେଟାଘାତ କରିଛନ୍ତି ।

ପଚାଶ ବର୍ଷ ପରେ ମଧ୍ୟ ଗଳ୍ପରଚନାର ଆବେଦନ ପାଠକର ଚିତ୍ତକୁ ଉଦାସ କରି ତୋଳେ ।

**ଘନିଆଁର ଗଣେଶ ଚତୁର୍ଥୀ**

ଏକ ଗଳ୍ପରେ ଏକ ପଲ୍ଲୀଗ୍ରାମରେ ଜାତିସଂସ୍କାରପାଇଁ ଉଦ୍ୟମର ଚିତ୍ର ଦିଆଯାଇଛି ।

ଘନିଆଁ ଏକ ହରିଜନ କିଶୋର । ସେ ନିଜ ଶୈଶବ ଓ ବାଲ୍ୟକାଳରେ ଅବଧାନଙ୍କ ପାଖରେ ସ୍କୁଲ୍‌ର ବାରଣ୍ଡାରେ ବସୁଥିଲା । ମାଷ୍ଟ୍ରେ ଛୁଆଁ ହେବେ ବୋଲି ନଙ୍ଗଳା ପିଲାଙ୍କଦ୍ୱାରା ତାଙ୍କୁ ଦଣ୍ଡ ଦେଉଥିଲେ । ତେବେ ଗଣେଶ ଚତୁର୍ଥୀ ଦିନ ଗଣେଶ ପୂଜାରେ ଭାଗ ନେଇପାରିବାର ସୁଯୋଗ ସେ ପାଇଛି । ପିଲାଙ୍କପାଇଁ ପର୍ଯ୍ୟାପ୍ତ ଫୁଲ ତୋଳି ସବର୍ଣ୍ଣ ପିଲାଙ୍କୁ ଲଜ୍ଜିତ କରିଛି । ନିଜ ତୋଳା ଫୁଲରେ ଠାକୁର ପୂଜିତ ହେବାର ଦୃଶ୍ୟରେ ସେ ଆତ୍ମହରା ହୋଇପଡ଼ିଛି । ପରିବାରର ଦୁରବସ୍ଥା ଓ ଆଈମା'ର ଅଭିସମ୍ପାତ ମଧ୍ୟ ଭୁଲିଯାଇଛି । ଯୁଗ ପରିବର୍ତ୍ତନର ହାଓ୍ୱାରେ ସାମିଲ ହୋଇପାରିବାର ଆନନ୍ଦରେ ତା'ର ପାରିପାର୍ଶ୍ୱିକ ବାସ୍ତବତାକୁ ଆଖି ବୁଜି ଦେଇଛି । ସ୍କୁଲ୍‌ରୁ ଅଣ୍ଟିଭରି ଭୋଗ ଧରି ସେ ଫେରିଚି । ତା' ମନର ଆନନ୍ଦ ଶ୍ରଦ୍ଧା ହୋଇ ଝରିପଡ଼ିଛି ପାଳିତ କୁକୁର 'ବୁଲା' ଉପରେ । କାହାଣୀହୀନ ହେଲେ ମଧ୍ୟ ଏହି ଗଳ୍ପର ମାର୍ମିକ ଆବେଦନ କମ୍ ନୁହେଁ ।

## ଶ୍ରୀକୃଷ୍ଣଙ୍କ ଶେଷ ହସ

୧୯୬୦ ମସିହରେ ରଚିତ 'ଶ୍ରୀକୃଷ୍ଣଙ୍କ ଶେଷ ହସ' ଗଳ୍ପଟି ସାରଳା ମହାଭାରତର ନାରୀପର୍ବର କଥାବସ୍ତୁରୁ ସୃଷ୍ଟି । ରହସ୍ୟମୟ ଶ୍ରୀକୃଷ୍ଣଙ୍କ ଉଦ୍ଦେଶ୍ୟ ପ୍ରଣୋଦିତ ହସର ରହସ୍ୟମୟତା ତାଙ୍କ ଚରିତ୍ରର ବିଶେଷତ୍ୱ ଯେମିତି, ଅନ୍ୟ ବ୍ୟକ୍ତିବିଶେଷଙ୍କପାଇଁ ସେମିତି ଦୁର୍ବୋଧ ଓ କୁହେଳିକାଚ୍ଛନ୍ନ ।

ମହାଭାରତ ଯୁଦ୍ଧରେ ଶ୍ରୀକୃଷ୍ଣ ପ୍ରତ୍ୟକ୍ଷଭାବେ ଅସ୍ତ୍ରଧାରଣ କରି ନାହାନ୍ତି । କିନ୍ତୁ ଦୁର୍ଯ୍ୟୋଧନ ସମେତ ୯୯ ଜଣ କୌରବ ବଂଶର ସଦସ୍ୟଙ୍କର ଓ ତାଙ୍କର ସମର୍ଥକଙ୍କୁ ବିନାଶ କରାଯିବାରେ ତାଙ୍କର ଭୂମିକା ନିଶ୍ଚିତଭାବେ ଗୁରୁତ୍ୱପୂର୍ଣ୍ଣ ଥିଲା । କେବଳ ସେତିକି ନୁହେଁ, ଯୁଦ୍ଧ ପରେ ଅନ୍ଧୁଣୀ ଗାନ୍ଧାରୀ ତା'ର ଅନ୍ଧପୁଟୁଳି ଫିଟାଇ ଦେବାକୁ ଯୁଧିଷ୍ଠିରଙ୍କୁ କହିଛନ୍ତି । କିନ୍ତୁ ଶ୍ରୀକୃଷ୍ଣ ଯୁଧିଷ୍ଠିରଙ୍କୁ ତାହା କରିବାକୁ ମନା କରିଛନ୍ତି । ତା'ର କାରଣ ତାଙ୍କୁ ହିଁ ଜଣାଥିଲା । ସେହି କାରଣ ଜଣାପଡ଼ିଲା ଯେଉଁ ମୁହୂର୍ତ୍ତରେ ଯୁଧିଷ୍ଠିରଙ୍କର ଏକାନ୍ତ ଅନୁଗତ ଦୁର୍ଦ୍ଧଷ ଗାନ୍ଧାରୀଙ୍କ ଚକ୍ଷୁରୁ ନିର୍ଗତ ଅଗ୍ନିରେ ଭସ୍ମ ହୋଇ ଯାଇଛନ୍ତି । ଯୁଧିଷ୍ଠିରଙ୍କ ଅସ୍ଥିରତା ଲକ୍ଷ୍ୟ କରି ଶ୍ରୀକୃଷ୍ଣ ନିଜେ କହିଛନ୍ତି - ''ଏହା ରାଜନୀତି । ରାଜନୀତିର ଯଜ୍ଞକୁଣ୍ଡରେ ଏହିପରି ବିଶ୍ୱସ୍ତ ଦୁର୍ଦ୍ଧଷଙ୍କର ଆହୁତି ଏକ ଦୈନନ୍ଦିନ ଘଟଣା ।''

ଆଲୋଚକଙ୍କ ମତରେ - ''ଏହି ସଂଳାପଟି ସୁରେନ୍ଦ୍ରବାବୁଙ୍କର କଥାମାନସର ନିଜସ୍ୱ ଅଭିବ୍ୟକ୍ତି ହୋଇପାରେ ।''

'ଶ୍ରୀକୃଷ୍ଣଙ୍କ ଶେଷ ହସ' ମଧ୍ୟ ସୁରେନ୍ଦ୍ରବାବୁଙ୍କ ଶ୍ରେଷ୍ଠଗଳ୍ପ ମଧ୍ୟରୁ ଅନ୍ୟତମ ।

## ଓଃ କାଲକାଟା

'ଓଃ କାଲକାଟା' ଗଳ୍ପଟି ୧୯୭୧ ମସିହାରେ ରଚିତ ହୋଇଥିଲା । ଏହି ଗଳ୍ପଟି ବିକ୍ଷୁବ୍‌ଧ ଯୁବମାନସର ଚିତ୍ର ବହନ କରେ ।

ଏହି ଗଳ୍ପର ପୃଷ୍ଠଭୂମି ଏକ ସହର । ଗଳ୍ପର ଚରିତ୍ରମାନେ ହେଲେ ଗୁରୁ, ସୁକାନ୍ତ, ଶୁଭେନ୍ଦୁ ଓ ଭବତୋଷ । ଏମାନେ ସମସ୍ତେ ସହରରେ ରହନ୍ତି । ଶୁଭେନ୍ଦୁ ଓ ଭବତୋଷଙ୍କୁ ଛାଡ଼ିଦେଲେ ଅନ୍ୟ ଦୁଇ ଜଣ କଲେଜରୁ ବହିଷ୍କୃତ ହୋଇଛନ୍ତି । ଶୁଭେନ୍ଦୁ ଗଣିତରେ ଏମ୍.ଏ. ପାସ୍ କରିଛି । ଭବତୋଷ ଷଷ୍ଠବାର୍ଷିକ ଛାତ୍ର ଓ କଲେଜ ୟୁନିୟନ ସଭାପତି । ଏକ ସମୟରେ ଗୁରୁ ଓ ଭବତୋଷ ଏକା ସାଙ୍ଗରେ ପଢୁଥିଲେ ଓ କଲେଜ ରାଜନୀତିରେ ମିଳିତଭାବେ କାର୍ଯ୍ୟ କରୁଥିଲେ । କିନ୍ତୁ କାଳକ୍ରମେ ଗୁରୁ ଭବତୋଷଠାରୁ ଅଲଗା ହୋଇ ନିଜର ଦଳ ଗଢ଼ିଛି । ସେ ଭବତୋଷକୁ ଶ୍ରେଣୀ ଶତ୍ରୁରୂପେ ବିବେଚନା କରିଛି । ଦୁହିଁଙ୍କର ମଧ୍ୟ ଗୋଟିଏ ଗୋଟିଏ ଦଳ ରହିଛି । ଶୁଭେନ୍ଦୁ ଜଣେ ସଚ୍ଚା ଛାତ୍ର । ନିଜେ ଅଧ୍ୟବସାୟ ବଳରେ ଏମ୍.ଏ. ପାସ୍ କରିଛି । ନିଜର ଓ ପରିବାରର ଭରଣପୋଷଣପାଇଁ ଏମ୍ପ୍ଲୟମେଣ୍ଟ

ଏକ୍ସଚେଞ୍ଜରେ ନାମ ପଞ୍ଜୀକରଣ କରାଇଛି । ବହୁ ଅଫିସ ଓ କର୍ମସଂସ୍ଥାନମାନଙ୍କର ଦ୍ୱାରସ୍ଥ ହୋଇଛି । କିନ୍ତୁ ନୈରାଶ୍ୟ ଜର୍ଜରିତ ହୋଇଥିବାବେଳେ ଜଣେ କର୍ମକର୍ତ୍ତାଙ୍କ ତାଚ୍ଛଲ୍ୟ – 'ନେତା, ମନ୍ତ୍ରୀ, ଅଫିସର୍ ! ଏଥିରୁ କୌଣସିଟି ଅଛି ତୁମର ?'

ଶୁଭେନ୍ଦୁ ସିନେମା ଟିକେଟ ବ୍ଲାକ କରିବାକୁ ବସିଛି । ଏଠି ମଧ୍ୟ ଧରା ପଡ଼ିଛି ଓ ଅପଦସ୍ଥ ହୋଇଛି । ଶେଷରେ ସେ ଗୁରୁ ଗୋଷ୍ଠୀରେ ସାମିଲ ହୋଇଛି ।

ସହରରେ ଶ୍ରେଣୀସଂଘର୍ଷ ଦୈନନ୍ଦିନ ଘଟଣା ହୋଇଛି । ଗୋଟାଏ କି ଦୁଇଟି ଘଟଣାରେ ଭବତୋଷ ରକ୍ଷା ପାଇଯାଇଛି । ଏଥିପାଇଁ ଗୁରୁ ଶୁଭେନ୍ଦୁକୁ ଦାୟୀ କରିଛି । ତେବେ ଦିନେ ଦେଶଗୌରବ କଲେଜର ଗୋଟିଏ ସାଂସ୍କୃତିକ ଉତ୍ସବ ପାଳିତ ହୋଇଛି । ଗୁରୁ ଶୁଭେନ୍ଦୁକୁ ହାତବୋମା ଥିବା ଆଟାଚି ଦେଇ ସେଠାକୁ ପଠାଇଛି । ମନ୍ତ୍ରୀ ଭାଷଣ ଦେଉଥିବାବେଳେ ଇଲେକଟ୍ରିକ୍ ଫିଉଜ୍ କଟାଇ ବୋମା ଫିଙ୍ଗା ଘଟଣା ଘଟିଛି । ଫିଉଜ ଲଗାଇଦେଲାପରେ ଦେଖାଯାଇଛି ଗୁଡ଼ାଏ ବ୍ଲାଉଜ, ବ୍ରେସିୟାର, ଛିଣ୍ଡା ଫୁଲ, ଚଟି ଆଉ ମେଞ୍ଚା ମେଞ୍ଚା ରକ୍ତ । ଆଉ ପାଖରେ ରକ୍ତାକ୍ତ ଶୁଭେନ୍ଦୁ ।

ଶେଷରେ ଭବତୋଷକୁ ତା'ର ଜଣେ ଚେଲା କହିଛି – ''ଗୁରୁ ଗ୍ୟାଙ୍ଗର ଜଣେ ଖାସ୍ ଶତ୍ରୁ ଖତମ ହୋଇଗଲା ।''

ଗଳ୍ପ ରଚୟିତା ସୁରେନ୍ଦ୍ରବାବୁ ନିଜେ ସ୍ୱୀକାର କରିଛନ୍ତି – ଏହା ଭଗ୍ନସ୍ୱପ୍ନ, ଯୌବନର ବିଭ୍ରାନ୍ତି, ବିସ୍ଫୋରଣ ଓ ବିକୃତିର ଏକ ସାଙ୍କେତିକ ଇତିବୃତ୍ତ । ସଂଘର୍ଷ କୁଟିଳ ସମ୍ପ୍ରତିକାଳର ଏକ ଅସହାୟ ଆର୍ତ୍ତନାଦ ।''

**ଖାଦାନୀ**

'ଖାଦାନୀ' ଗଳ୍ପରେ ଖଣି ଶ୍ରମିକ ଓ ପାର୍ବତୀୟ ମଣିଷ ଗୋଷ୍ଠୀଙ୍କ ତୁଳନାତ୍ମକ ଚିତ୍ର ଦିଆଯାଇଛି । ଗୋଟିଏ ପଟେ ଅଛନ୍ତି ସରଳ ବଣ ପାହାଡ଼ର ମଣିଷ । ଦାରିଦ୍ର୍ୟ ତାଙ୍କର ଚିର ସହଚର । ହେଲେ ସେମାନେ ତାଙ୍କର ପାରମ୍ପରିକ ବିଶ୍ୱାସ ପ୍ରଭୃତି ନେଇ ଶାନ୍ତିରେ ଥାନ୍ତି । ଅନ୍ୟପଟେ ଖାଦାନରେ କାମ କରୁଥିବା ଶ୍ରମିକ ଖାଦାନରୁ ପ୍ରଭୂତ ଉପାର୍ଜନ କରନ୍ତି । ହେଲେ ପାଆନ୍ତି ନାହିଁ ବସ୍ତି ଜୀବନର ପ୍ରଶାନ୍ତି, ଆନନ୍ଦ ଓ ସନ୍ତୋଷବୋଧ ।

ପରମ୍ପରାର ପ୍ରତୀକ କାନ୍‌ମ ମୁଣ୍ଡା । ତା' ପାଇଁ ଖାଦାନ ଏକ ଅଭିଶାପ । ତା'ର କାରଣ ଖାଦାନ ଶୋଷି ନେଉଛି ବସ୍ତି ଜୀବନର ଶାନ୍ତି ଓ ଆନନ୍ଦ । ବଦଳରେ ଭରିଦେଇଛି ପ୍ରତିଯୋଗିତା, ଅବିଶ୍ୱାସ ଓ ସଭ୍ୟତାର ଲୋକଦେଖାଣିଆ ଚାକଚକ୍ୟ । ଲୁଟି ନେଉଛି ମାନ, ଇଜ୍ଜତ, ବିବେକ ଓ ବୁଦ୍ଧି । କଞ୍ଚା ପଇସାର ମୋହ ତାଙ୍କୁ ବିପଥଗାମୀ କରିଦେଉଛି ।

ଯାନ୍ତ୍ରିକ ପ୍ରଗତି ଯାହାହେଉନା କାହିଁକି, ତା'ର କୁଫଳ ବିରୋଧରେ କାନ୍‌ମ ମୁଣ୍ଡା ସ୍ୱର ଉତ୍ତୋଳନ କରିଛି । କିନ୍ତୁ ତା'ର ସ୍ୱର ହୃଦୟରେ ଯେତେ ଆଲୋଡ଼ନ ସୃଷ୍ଟି କରେ, ବାହାରକୁ ସେତେ ଆତ୍ମପ୍ରକାଶ କରିପାରେ ନାହିଁ । ତେଣୁ ସନ୍ତୁଳିତ ଜୀବନ ଯାପନ କରିବା ଛଡ଼ା ଅନ୍ୟ ବାଟ ତା' ପାଖେ ନ ଥାଏ । ଆଦିବାସୀ ବା ଜଙ୍ଗଲୀ ମଣିଷର ସଂସ୍କୃତି ଓ ଆଚାର-ବିଚାରର ଘଟେ ଘୋର ଅବକ୍ଷୟ ।

ଆଞ୍ଚଳିକ ଗଳ୍ପଧାରାର ପ୍ରତିନିଧିତ୍ୱ କରୁଥିବା 'ଖାଦାନୀ' ଏକ ଶ୍ରେଷ୍ଠ ଗଳ୍ପ ଭାବେ ଗଣ୍ୟ । ଏହା ୧୯୫୫ ମସିହାରେ ରଚିତ ହୋଇଥିଲା ।

**ରାଜଧାନୀ**

'ରାଜଧାନୀ'ଭାରତର ରାଜଧାନୀ ଦିଲ୍ଲୀ ଓ ରାଜଧାନୀ ଭଳି ମହାନଗରୀ ସମ୍ପର୍କିତ ଏକ ଗଳ୍ପ । ଏଠି ମଣିଷ ଏକ ଜୀବନ୍ତ ଛଳନା । ନେତାଗିରି, ବ୍ୟବସାୟ, ଅଧ୍ୟାପନା, ସାମ୍ବାଦିକତା ଓ ଶିଳ୍ପୀକରଣ – ସବୁ ବୃତ୍ତିରେ ସାଧୁତା, ସଚ୍ଚୋଟତା ବା କର୍ମଠତାର ତଣ୍ଟି ଚିପାଯାଉଛି । ବିବେକ ଏଠି ବଳି ପଡ଼ିଛି । ସାମ୍ବାଦିକଙ୍କ ଆଖିରେ ସବୁ ସ୍ତରର ପ୍ରତିଷ୍ଠିତ ବ୍ୟକ୍ତିବିଶେଷ ଓ ସଂସ୍ଥାଗୁଡ଼ିକର ନଗ୍ନରୂପ ଧରାପଡ଼ନ୍ତି ।

ସୁବୋଧ ଏକ ପ୍ରଖ୍ୟାତ ଦୈନିକ ସମ୍ବାଦପତ୍ରର ସ୍ପେଶାଲ କରେସ୍‌ପଣ୍ଡେଣ୍ଟ୍ । ସାମ୍ବାଦିକ ସମ୍ମିଳନୀ ଅବକାଶରେ ଲଞ୍ଚ କଫି, ଡିନର, ଫାଇଭ୍‌ଷ୍ଟାର ହୋଟେଲମାନଙ୍କରେ ନିମନ୍ତ୍ରଣ । ମିଲ୍ ଟିକେଟ ତା' ସହିତ ବି ଥାଏ । ଦେଶ, ବିଦେଶର ଏପରିକି କେତୁଟା ରାଷ୍ଟ୍ର ମୁଖ୍ୟଙ୍କର ରିପୋର୍ଟିଙ୍ଗ ତା'ର ପେସା । ସୁବୋଧ ଦିନେ ଏନ୍‌ଗେଜ୍‌ମେଣ୍ଟ୍ ପ୍ୟାଡ୍ ଖୋଲି ଦେଖିଲା । ବ୍ରେକଫାଷ୍ଟ, ତା'ପରେ ଦାରିଦ୍ର୍ୟ ସମ୍ପର୍କରେ ଆଲୋଚନାଚକ୍ର ପଞ୍ଚତାରକା ହୋଟେଲ ବିକ୍ରମାଦିତ୍ୟରେ, ଦିନ ୧୧ଟାରେ ଲଞ୍ଚ; ତା'ପରେ ସନ୍ଧ୍ୟାରେ ଶାନ୍ତା ସାକ୍‌ସେନାର ବାର୍ଥ ଡେ ପାର୍ଟି । ସୁବୋଧ ଚାହୁଁ ନ ଥିଲା ସେଥିରେ ଯୋଗ ଦେବାକୁ । କ'ଣ ଦରକାର ଅଛି ? ଖବରକାଗଜମାନଙ୍କରେ ଆତ୍ମପ୍ରଚାରର ବ୍ୟବସାୟ ଏହି ଶ୍ରେଣୀର ଲୋକଙ୍କର ।

ଯିବାପାଇଁ କିନ୍ତୁ ମନ କଲା ସୁବୋଧ । ଦାରିଦ୍ର୍ୟ ଉପରେ ଅନୁଷ୍ଠିତ୍ ସିମ୍ପୋସିଅମକୁ । ତା'ପରେ ସେ ଯିବ ହୋଟେଲ ବିକ୍ରମାଦିତ୍ୟକୁ । ସେଠାରେ ଉପସ୍ଥିତ ଥିଲେ ଅର୍ଥନୀତି ବିଶାରଦଙ୍କ ଠାରୁ ଆରମ୍ଭ କରି ପାଲେସ୍‌ର ଭିତିରିଆ ଛାମୁଆ, କାନକୁହା ସମସ୍ତେ । କିନ୍ତୁ ତାହା ତାକୁ ଲାଗିଲା ବୌଦ୍ଧିକତାର ଅଭିନୟ ମାତ୍ର ।

ଶାନ୍ତା ସାକ୍‌ସେନାର ବାର୍ଥଡେ ପାର୍ଟିକୁ ଯିବା ପୂର୍ବରୁ ନିର୍ଜନ ପାର୍କରେ କିଛି ସମୟ ସାମ୍ବାଦିକ ସୁବୋଧ କଟାଇଛି । ତା'ପରେ ଗଲା ପାର୍ଟିକୁ । ଶାନ୍ତା ସାକ୍‌ସେନା ମେକ୍‌ଅପ ନେଉଥିଲେ । ସୁବୋଧ ଦେଖୁଥିଲା ଚାଳିଶ ଛୁଇଁବା ବୟସରେ ସୁଦ୍ଧା ନିଜକୁ ଅନନ୍ତଯୌବନା ମନେ କରୁଥିବା ଶାନ୍ତାଙ୍କ ଚନ୍ଦା ମୁଣ୍ଡ । ଶାନ୍ତା ଦିଶୁଥିଲା ଏକ

ପ୍ରେତିନୀ ପରି । ତା'ର ଦୁଇ ବଙ୍କିମ ଭ୍ରୂଲତା ସୁଦ୍ଧା ଥିଲା ଫଲ୍‌ସ । ପ୍ରତିଦିନ ଶାନ୍ତା ତାକୁ ନିଜ ହାତରେ ଚିତ୍ର କରେ ପରା !

ସୁବୋଧର ଉପଲବ୍ଧି ଭିତର ଦେଇ ଗଳ୍ପର ସ୍ୱର ମଧ୍ୟ ମୂର୍ଚ୍ଛିତ ହୋଇଉଠେ – ''ଶାନ୍ତା ସାକ୍‌ସେନା ଯେପରି ପ୍ରତାରଣାମୟୀ ରାଜଧାନୀର ଛଳନାମୟୀ ପ୍ରତୀକ ।''

## ମୃତ୍ତିକାର ଆତ୍ମା

'ମୃତ୍ତିକାର ଆତ୍ମା' ଗଳ୍ପଟି 'ଦୁଇ ସୀମାନ୍ତ' ନାମକ ପତ୍ରିକାରେ ୧୯୭୧ ମସିହାରେ ପ୍ରକାଶ ପାଇଥିଲା ।

ଓଡ଼ିଶାର ଗାଁକୁ ଗାଁ ଯେଉଁସବୁ ପିଚୁ ରାସ୍ତା ସ୍ପର୍ଶ କରିଗଲାଣି, ସେଇ ରାସ୍ତାରେ ସହର ଜୀବନର ସବୁ ବ୍ୟଭିଚାର ଭିତରକୁ ପ୍ରବେଶ କଲାଣି । ଗ୍ରାମର ଅଶିକ୍ଷା, ଅଜ୍ଞତା ଓ ଅନଗ୍ରସରତା ଭିତରେ ଯେଉଁ ମହନୀୟ ଗୁଣଗୁଡ଼ିକ, ଯଥା – ସରଳତା, ସମ୍ଭ୍ରମବୋଧ, ଅଳ୍ପରେ ସନ୍ତୋଷ, ମାନ୍ୟତା ଦାନ, ମାଟି ପ୍ରତି ଯେଉଁ ଆନ୍ତରିକ ଆକର୍ଷଣ – କ୍ରମେ ହଜିଗଲାଣି । ଗ୍ରାମ୍ୟ ଯୁବକର ଅର୍ଥ ଓ ସ୍ୱାଚ୍ଛନ୍ଦ୍ୟ ପ୍ରତି ମୋହ, ଉଚ୍ଛୃଙ୍ଖଳତା, ସାଧାରଣ ଶିଷ୍ଟାଚାର ଅଭାବ ପ୍ରଭୃତି ଯେଉଁ ଚିତ୍ର ଗାଳ୍ପିକ ଉପସ୍ଥାପିତ କରିଛନ୍ତି, ତାହା ହୋଇଉଠିଛି ଅତି ଜୀବନ୍ତ ।

ଗ୍ରାମର ସିଦ୍ଧ କାନୁଗୋଇ ଜଣେ ସରଳପ୍ରାଣ ମଣିଷ । ତାଙ୍କର ବୃତ୍ତି ଶିକ୍ଷକତା । ପରିବାରର ଉଚ୍ଚାଭିଳାଷୀ ପୁଅ ହୋଇଛି ମାତାଲ । ଝିଅ ପ୍ରଗତିଶୀଳା ହେବାକୁ ଯାଇ ପାପଗର୍ଭ ନଷ୍ଟ କରେ ।

ମାଟିର କନ୍ୟା ବିଭୂଷିତା ହୋଇ ଅଭାବଗ୍ରସ୍ତ ପିତାମାତାଙ୍କ ଅପାରଗତାକୁ ବିଦ୍ରୂପ କରି ମୁହଁ ସଞ୍ଜବେଳେ ଘରୁ ବାହାରକୁ ଗୋଡ଼ କାଢ଼େ । ମା' ଆକଟିଲେ କହେ – ''ସାଙ୍ଗରେ ଆଉ ଗୋଟାଏ ଆଣି ଦେଉନୁ; କିଏ ମନା କରୁଛି ? ଆଉ କ'ଣ ମୁଁ ବୁଢ଼ୀ ହେଲେ ଯାଇ ଦେବୁ ?''

ଏ ତ ଝିଅ ନୁହେଁ – ଗାଳ୍ପିକଙ୍କ ମତରେ । ଯେପରି ମୃତ୍ତିକାର ଆତ୍ମା ଆମର ପଲ୍ଲୀ ଘାଟ ଛାଡ଼ି ନରକକୁ ଡେଇଁପଡୁଛି । ମଦ୍ୟ ଓ ମୈଥୁନ ସେହି ନର୍କ ପଲ୍ଲୀର ପ୍ରାନ୍ତେ ପ୍ରାନ୍ତେ ଆଁ କରି ରହିଛି ।

ପଲ୍ଲୀଗ୍ରାମର ସରଳ ମଣିଷଟିର ଦୀର୍ଘଶ୍ୱାସ ଓ ବିମୂଢ଼ତା ଭିତରେ ଗାଳ୍ପିକଙ୍କ ଶୋକୋଚ୍ଛ୍ୱାସ ବାରି ହୋଇଯାଏ । ସେ ଯେପରି ବ୍ୟାକୁଳ ହୋଇ ଆଜି ପଲ୍ଲୀରେ ଖୋଜୁଛନ୍ତି ପୂର୍ବର ସେହି ସରଳ ସମ୍ବେଦନଶୀଳ ଜୀବନବୋଧ ଓ ଦାରିଦ୍ର୍ୟ ମଧ୍ୟରେ ଲୋଡୁଛନ୍ତି ଶୁଭ୍ର ଅମଳିନ ଜୀବନ ମାଧୁର୍ଯ୍ୟ !

ଆଲୋଚକ ଡଃ ଦାଶରଥି ଦାସଙ୍କ ଭାଷାରେ – ''କାବ୍ୟ କାରୁଣ୍ୟରେ ସୁସମୃଦ୍ଧ ଗଳ୍ପଟି ପଲ୍ଲୀର ଦ୍ୱାର ପ୍ରାନ୍ତରେ ସହର ସଭ୍ୟତାର ପଦାଘାତ କେବଳ ଶୁଣାଇ ନାହିଁ ଓଡ଼ିଆ କ୍ଷୁଦ୍ର ଗଳ୍ପରେ ପଞ୍ଚବାର୍ଷିକୀ ଯୋଜନାର ବିଡ଼ମ୍ବନା ମଧ୍ୟ ବାଢ଼ି ବସିଛି ।''

## ଫାଲ୍ଗୁନ ଜ୍ୟୋସ୍ନା

'ଫାଲ୍ଗୁନ ଜ୍ୟୋସ୍ନା' ଗଳ୍ପଟି ଗାଳ୍ପିକ ବହୁ ବର୍ଷ ତଳେ ରଚନା କରିଥିଲେ ମଧ୍ୟ 'ସମ୍ବାଦ' ବାର୍ଷିକ ସଂଖ୍ୟାରେ ପ୍ରକାଶ ପାଇଥିଲା । ଗୋଟାଏ ଦସ୍ୟୁର ହୃଦୟ ପରିବର୍ତ୍ତନ ଏହାର ବିଷୟବସ୍ତୁ ।

ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ଡିଗ୍ରୀଧାରୀ ହେଲେ ବି ଯୁବକଟି ବେକାର । ଶେଷକୁ ଡକାୟତି ହୋଇଛି ଅବଲମ୍ବନ । ଜଣେ ଗୃହସ୍ଥର ଅସାମର୍ଥ୍ୟତା ଓ ଗୃହସ୍ୱାମିନୀଙ୍କ ତୀର୍ଥଯାତ୍ରାଜନିତ ଅନୁପସ୍ଥିତିର ସୁଯୋଗ ଯୁବକଟି ନେଇଛି । ସେହି ଘରକୁ ତା'ର ପ୍ରଥମ ପରୀକ୍ଷା କେନ୍ଦ୍ର ରୂପେ ବାଛିଛି । କିନ୍ତୁ ଗୃହସ୍ୱାମୀ ବହୁ ଦିନ ହେଲା ନିଃସଙ୍ଗ ଓ ଶଯ୍ୟାଶାୟୀ ଥିଲେ । ଅନୁପ୍ରବେଶକାରୀଟିଏ ହେଉ ପଛେ ମଣିଷଟିଏର ଉପସ୍ଥିତି ଏତେ ଆଶ୍ୱସ୍ତିଦାୟକ ହୋଇଛି ଯେ ସେ ଡକାୟତ ସହ ଅନ୍ତରଙ୍ଗ ଆଳାପ କରିବାକୁ ଚେଷ୍ଟା କରିଛନ୍ତି । ଡକାୟତଟି ମଧ୍ୟ ଗୃହସ୍ୱାମୀଙ୍କ ଆନ୍ତରିକତାରେ କଠୋର ହେବା ପରିବର୍ତ୍ତେ ମୁଗ୍ଧ ହୋଇ ସିଗାରେଟ୍‌ରେ ନିଆଁ ଧରାଇବାଠାରୁ ଆରମ୍ଭ କରି ଉଭୟଙ୍କ ଗ୍ଲାସରେ ମଦ ଢାଳିବା ପର୍ଯ୍ୟନ୍ତ ଯନ୍ତ୍ରଚାଳିତବତ୍ କରିଚାଲିଛି । ଗୃହସ୍ୱାମୀ ମଧ୍ୟ ଡକାୟତକୁ ଆଲମାରିର ଚାବି ଦେଇଛନ୍ତି – ତାକୁ ଫିଟାଇ ସୁରୁଖୁରୁରେ ସୁନା ଗହଣା ବା ଈପ୍ସିତ ଧନ ନେଇଯିବାକୁ । ଆଲମାରି ଫିଟାଇ ଡକାୟତଟି ଦୁଇଟି ଛୋଟ ଗହଣା ବାହାର କରିଛି – ଗୃହସ୍ୱାମୀଙ୍କ ଝିଅର ବାଲ୍ୟସ୍ମୃତି । ବାହାରେ ପୁଲିସର ଘନ ଘନ ସାଇରେନ୍ ଓ ହ୍ୱିସିଲ ଶବ୍ଦରେ ଯୁବକଟି ଭୀତ ହୋଇପଡ଼ିଥିବା ଦେଖି ଗୃହସ୍ୱାମୀ ତାକୁ ନିର୍ଦ୍ଦେଶ ଦେଇଛନ୍ତି ତାଙ୍କର ହଳେ ପାଇଜାମା ଓ ପଞ୍ଜାବି ପିନ୍ଧିନେବାକୁ । ସେହି ପୋଷାକରେ ଯୁବକଟିର ଭୟଙ୍କର ଡକାୟତ ଚେହେରା ବଦଳିଯାଇଛି । ଗୃହସ୍ୱାମୀଙ୍କ ମନ୍ତବ୍ୟ – ସେ ଜଣେ ଶିଳ୍ପୀ ବା ବାମପନ୍ଥୀ ନେତା ଭଳି ଦିଶୁଛନ୍ତି । ଡକାୟତଟି ଏହା ଶୁଣି ଚମକି ପଡ଼ିଛି । ଅନ୍ତରରେ ପୁଣି ବଡ଼ମଣିଷ ହେବାର ସ୍ୱପ୍ନ ଚେଇଁଉଠିଛି । ରାତ୍ରି କଟିଯାଇ ଭୋର ହେବାରୁ ଡକାୟତଟି ନିର୍ଦ୍ଦିଷ୍ଟ ବାଟରେ ପୁଣି ଅନ୍ତର୍ହିତ ହୋଇଯାଇଛି । କିନ୍ତୁ ତା' ପୂର୍ବରୁ ଗୃହସ୍ୱାମୀ ତାକୁ ଆଉ ଥରେ ଆସିବାକୁ ଅଦ୍ଭୁତ ନିମନ୍ତ୍ରଣ କରିଛନ୍ତି । ପରେ ପରେ ଗୃହସ୍ୱାମୀ ଗ୍ଲାସରେ ଥିବା ଅବଶିଷ୍ଟ ମଦକୁ ପିଇବା ଇଚ୍ଛାରେ ଟିପୟ ଉପରକୁ ହାତ ବଢ଼େଇଛନ୍ତି । ସେଥିରେ ସେ ଆବିଷ୍କାର କରିଛନ୍ତି ସେହି ଛୋଟ ଛୋଟ ଗହଣା ଦୁଇଟି । ନିଶୀଥ ବନ୍ଧୁର ଏହି ଅପ୍ରତ୍ୟାଶିତ ଆଚରଣରେ ସେ ତଟସ୍ଥ ହୋଇପଡ଼ନ୍ତି ।

ଆଜିର ସମାଜରେ ଦ୍ରୁତ ବଢୁଥିବା ବେକାରୀ ଓ ତା'ର କଦର୍ଯ୍ୟ ପରିଣତି ପ୍ରତି ଗାଳ୍ପିକ ଅଙ୍ଗୁଳି ନିର୍ଦ୍ଦେଶ କରିବା ସଙ୍ଗେ ସଙ୍ଗେ ଭୟାନକ ମଣିଷ ହୃଦୟରେ ଯେ ମହାନତାର ଉତ୍ସ ଗୋପ୍ୟ ହୋଇ ରହିଛି ଓ ତାହା ଅନୁକୂଳ ପରିସ୍ଥିତିରେ ଉଦ୍‌ବୋଧିତ ହୋଇପାରେ – ତାହା ଲେଖକ ଦର୍ଶାଇଛନ୍ତି ।

## ଉପନ୍ୟାସ

ସୁରେନ୍ଦ୍ରବାବୁ ମଧ୍ୟ ଉପନ୍ୟାସ ବିଭାଗରେ ବହୁ ଗ୍ରନ୍ଥ ପ୍ରଣୟନ କରି ଔପନ୍ୟାସିକ ଭାବେ ସ୍ୱୀୟ ପରିଚୟ ପ୍ରଦାନ କରିଛନ୍ତି । ସାମାଜିକ, ପାରିବାରିକ, ଚରିତ୍ର କୈନ୍ଦ୍ରିକ, ଐତିହାସିକ, ଦାର୍ଶନିକ, ରାଜନୀତିକ ଓ ମନସ୍ତାତ୍ତ୍ୱିକ ସୃଷ୍ଟିରେ ସେ ମଧ୍ୟ ଅନନ୍ୟ ସାଧାରଣ ସଫଳତାର ଅଧିକାରୀ ହୋଇଛନ୍ତି ।

### କଲେଜ ବୟ

ଔପନ୍ୟାସିକଙ୍କର ପ୍ରଥମ ପ୍ରକାଶିତ ଉପନ୍ୟାସ ହେଉଛି 'କଲେଜ ବୟ' । ଏହା ୧୯୪୭ ମସିହାରେ ରଚିତ ହୋଇଥିଲା । ସ୍ୱାଧୀନତା ପ୍ରାକ୍ କାଳରେ ଛାତ୍ରସମାଜ ଯେଉଁ ଆଶା, ଆକାଂକ୍ଷା ଓ ଅଭିଳାଷ ନେଇ କଲେଜ ଯାଉଥିଲେ, ତାହା ସ୍ୱାଧୀନତା ସମୟକୁ କ୍ରମଶଃ କ୍ଷୀଣ ହୋଇଯାଇଛି । ଅନୁଷ୍ଠାନଗୁଡ଼ିକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଓ ଆଦର୍ଶ ପଥରୁ ଓହରି ଯାଉଛନ୍ତି । ସେଗୁଡ଼ିକ ହୋଇଉଠୁଛନ୍ତି କ୍ରୀତଦାସର କାରଖାନା ।

ରାଜନୀତିକ ସ୍ୱାଧୀନତା ଆସିଛି ସତ୍ୟ, ନୈତିକ ସ୍ୱାଧୀନତା, ସ୍ୱାଭିମାନବୋଧ କ୍ରମଶଃ ଛାତ୍ର ସମାଜ ମନରୁ ଦୂରେଇ ଯାଉଛି । କଲେଜପଢୁଆ ଯୁବକ ଯୁବତୀମାନେ ପ୍ରେମ ନାମରେ ସମାଜରେ ଭ୍ରଷ୍ଟାଚାର ସୃଷ୍ଟି କରୁଛନ୍ତି । ଇଂରେଜ ଶିକ୍ଷା ସଭ୍ୟତା ଯୁବ ସମ୍ପ୍ରଦାୟକୁ କିପରି ଅନୀତି ପଥକୁ ଟାଣି ନେଇ ବିକଳାଙ୍ଗ କରିଦେଇଛି, ତା'ର ବାସ୍ତବ ରୂପାୟନ ହେଉଛି 'କଲେଜ ବୟ' ଉପନ୍ୟାସ ।

### ବଧୂ ଓ ପ୍ରିୟା

'ବଧୂ ଓ ପ୍ରିୟା' ଔପନ୍ୟାସିକଙ୍କ ଦ୍ୱିତୀୟ ପ୍ରକାଶିତ ଉପନ୍ୟାସ । ଏହା ୧୯୪୮ ମସିହାରେ ରଚିତ ହୋଇଥିଲା । ଏହା ଏକ ମନସ୍ତାତ୍ତ୍ୱିକଧର୍ମୀ ଉପନ୍ୟାସ ।

ଉପନ୍ୟାସର ନାୟକ ତରୁଣ ଶିଳ୍ପୀ ପଙ୍କଜ । ସେ ଘରର ସଂକୀର୍ଣ୍ଣତାକୁ ଭାଙ୍ଗି ବିଶାଳ ପୃଥିବୀ ଭିତରେ ନୂଆ ଘର ବାନ୍ଧିବାପାଇଁ ସ୍ୱପ୍ନ ଦେଖିଛି । ଦିନେ ତା'ର ପେନସନଭୋଗୀ ବଡ଼ ସରକାରୀ କର୍ମଚାରୀ ରାମନାରାୟଣବାବୁ ଓ ତାଙ୍କର ଅଲିଅଳୀ କନ୍ୟା ଲୀଳା ସହିତ ଚଳନ୍ତା ରେଲ୍‌ଗାଡ଼ିର ଦ୍ୱିତୀୟ ଶ୍ରେଣୀ ଡବାରେ ଦେଖାହୋଇଛି । ସଂକ୍ଷିପ୍ତ ପରିଚୟ ପରେ ରାମନାରାୟଣବାବୁ ତାକୁ ଘରକୁ ଯିବାକୁ ଅନୁରୋଧ କରିଛନ୍ତି । ପଙ୍କଜ ପ୍ରତିଦିନ ଯିବାଆସିବା କରିବା ଫଳରେ ଲୀଳା ସହିତ ଘନିଷ୍ଠତା ହୋଇଛି । ଶେଷରେ ପ୍ରଣୟର ସୂତ୍ରପାତ ହୋଇଛି । ରାମନାରାୟଣବାବୁ ଏହାକୁ ପସନ୍ଦ କରି ନାହାନ୍ତି । ସେ ପଙ୍କଜକୁ ଅର୍ଥ ଉପାର୍ଜନ ଲାଳସା ଦେଖାନ୍ତି । ପଙ୍କଜ ତାହାକୁ ଉପେକ୍ଷା କରି ଅନ୍ୟତ୍ର ଚାଲିଯାଉଛି । ରାମନାରାୟଣବାବୁ ଲୀଳାକୁ ତାଙ୍କର ଜଣେ ବନ୍ଧୁଙ୍କ ପୁତ୍ର ସହିତ ବିବାହ ଦେଇଛନ୍ତି ।

ଦୀର୍ଘ ପାଞ୍ଚ ବର୍ଷର ବ୍ୟବଧାନ ପରେ ଶ୍ରୀକାନ୍ତର ବାଲ୍ୟବନ୍ଧୁ ପଙ୍କଜ ସହିତ ଦେଖା ହୋଇଛି । ସେ ପଙ୍କଜକୁ ଆଣି ବସାରେ ଛାଡ଼ିଦେଇ ଯାଇଛି । ଦୀର୍ଘଦିନର ବ୍ୟବଧାନ ପରେ ଲୀଳା ଓ ପଙ୍କଜ ଉଭୟେ ଉଭୟଙ୍କୁ ଦେଖିଛନ୍ତି । ଉଭୟଙ୍କ ମନରେ ଅତୀତର ସ୍ମୃତି ଜାଗିଉଠିଛି । ଲୀଳା ପଙ୍କଜକୁ ଭୁଲିଯିବାକୁ ଚେଷ୍ଟା କରିଛି; ମାତ୍ର ପାରି ନାହିଁ । ପଙ୍କଜକୁ ବାଦ୍ ଦେଇ ତା'ର ଯୌବନର କଳ୍ପନା ହୋଇପାରେନି !

ରୋଗାକ୍ରାନ୍ତ ଓ ନିଃସହାୟ ଅବସ୍ଥାରେ ପଙ୍କଜ ପଡ଼ିଥିଲାବେଳେ ଶ୍ରୀକାନ୍ତ ପଙ୍କଜର ସେବାଶୁଶ୍ରୂଷାପାଇଁ ଘରକୁ ଆଣିଛି । ଲୀଳାର ତତ୍ତ୍ୱାବଧାନରେ ପଙ୍କଜ ଆସ୍ତେ ଆସ୍ତେ ସୁସ୍ଥ ହୋଇ ଆସିଛି । ଆଶା ଓ ଆକାଂକ୍ଷାର ଘୂର୍ଣ୍ଣିରେ ପଙ୍କଜର ମନ ଓ ଦେହ ଆଲୋଡ଼ିତ ହୋଇଛି ଓ ଲୀଳାକୁ ନିଜର କରିବାପାଇଁ ଅନୁରୋଧ କରିଛି । ଲୀଳା ପଙ୍କଜର ମୁହଁରେ ଆଘାତ ଦେଇଛି । ପଙ୍କଜ ଘର ଛାଡ଼ି ଚାଲିଯାଇଛି । ଲୀଳା ଅନୁଶୋଚନାରେ ଭାଙ୍ଗିପଡ଼ିଛି ଓ ଅଶ୍ରୁର ବନ୍ୟାରେ ଅନ୍ଧ ହୋଇଯାଇଛି ।

'ବଧୂ ଓ ପ୍ରିୟା' ମୁଖ୍ୟତଃ ପ୍ରେମ କାହାଣୀ ହୋଇଥିଲେ ମଧ୍ୟ ଏହାର ପଶ୍ଚାତ୍ ଭାଗରେ ମାନବ ମନର ଯେଉଁ ନିବିଡ଼ ସତ୍ୟକୁ ଔପନ୍ୟାସିକ ଉଦ୍‌ଘାଟନ କରିଛନ୍ତି, ତାହା ମନସ୍ତାତ୍ତ୍ୱିକ ଉପନ୍ୟାସ ଜଗତରେ ଏକ ସ୍ୱତନ୍ତ୍ର ଆସନ ଦାବି କରେ ।

### ଅନ୍ଧ ଦିଗନ୍ତ

'ଅନ୍ଧ ଦିଗନ୍ତ' ଏକ ରାଜନୀତିକ ଉପନ୍ୟାସ । ୧୯୨୧ ମସିହାରୁ ୧୯୫୨ ମସିହା ମଧ୍ୟରେ ଉତ୍କଳୀୟ ରାଜନୈତିକ ଆକାଶରେ ଯେଉଁ ଅବସ୍ଥା ସୃଷ୍ଟି ହୋଇଥିଲା, ତାହାର କାବ୍ୟିକ ଗଦ୍ୟ ରୂପ ହେଉଛି 'ଅନ୍ଧ ଦିଗନ୍ତ' ।

ଉପନ୍ୟାସର ଆରମ୍ଭ ୧୯୨୧ ମସିହାରେ ସମଗ୍ର ଦେଶବ୍ୟାପୀ ସୃଷ୍ଟି ହୋଇଥିବା ଅସହଯୋଗ ଆନ୍ଦୋଳନରୁ । ଗାନ୍ଧିଜୀଙ୍କ ଆହ୍ୱାନରେ ଦେଶର ଲକ୍ଷ ଲକ୍ଷ ଜନତା ଭାରତୀୟ ମୁକ୍ତି ସଂଗ୍ରାମରେ ଝାସ ଦେଇଥିଲେ । ଉତ୍କଳର ଅଧିବାସୀ ମଧ୍ୟ ଏହି ଜାତୀୟ ସ୍ରୋତରେ ସାମିଲ ହୋଇଥିଲେ । ଉପନ୍ୟାସର ଶ୍ୟାମବନ୍ଧୁ, ନିଧିବାସ ପରି ଅଗଣିତ ମଣିଷ ଜନ୍ମଭୂମିର ସ୍ୱାଧୀନତାପାଇଁ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ । ନେତା ହେବାପାଇଁ କାହାରି ଅଭିଳାଷ ନ ଥିଲା କି ନିଜର ସ୍ୱାର୍ଥସିଦ୍ଧି ପାଇଁ କେହି ଏହି ଆନ୍ଦୋଳନରେ ଅଂଶ ଗ୍ରହଣ କରି ନ ଥିଲେ । ଶ୍ୟାମବନ୍ଧୁର କଥାରେ –

''ଆମେ ରାଜନୀତି ବୁଝୁ ନାହୁଁ । ଆମେ ଗୋଟିଏ କଥା ବୁଝୁଛୁ, ସ୍ୱରାଜ୍ୟ – ରାମ ରାଜ୍ୟ । × × × ବିଦେଶୀ ଶାସନ ଥିବା ଯାଏ ତାହା ସମ୍ଭବ ହୋଇପାରିବ ନାହିଁ । ସେଥିପାଇଁ ଆମେ ବିଦେଶୀ ଶାସନକୁ ମୂଳପୋଛ କରିବାକୁ ବାହାରିଛୁ ।''

ଦେଶର ସ୍ୱାଧୀନତା ଆସିଛି । କିନ୍ତୁ ସ୍ୱାଧୀନତା ପରେ ଶୋଷଣର ପନ୍ଥା ଭିନ୍ନ ରୂପ ଧାରଣ କରିଛି । ଯେଉଁମାନଙ୍କ ଲୁହ ଓ ଲହୁ ମାଟିରେ ଭିଜି ଏ ଦେଶର ସ୍ୱାଧୀନତା ଆସିଛି, ସ୍ୱାଧୀନତା ପରେ ସେହିମାନେ ହିଁ ପ୍ରଥମେ ଅବହେଳିତ ହୋଇଛନ୍ତି ।

ଏ ଦେଶରେ ରାଜନୀତିକୁ ନିଜର ସ୍ୱାର୍ଥ ନିମିତ୍ତ ବ୍ୟବହାର କରୁଥିବା ଶୁଦ୍ଧୋଧନ, ରାମ ରଥଙ୍କ ପରି ସ୍ୱାର୍ଥାନ୍ଧ ବ୍ୟକ୍ତିମାନେ ପରବର୍ତ୍ତୀ କାଳରେ ଏ ଦେଶର ଭାଗ୍ୟନିୟନ୍ତା ହୋଇଛନ୍ତି । ସେମାନଙ୍କ କ୍ଷମତାର ମୋହ, ଉନ୍ମାଦଗ୍ରସ୍ତ ରାଜନୀତି ସମସ୍ତଙ୍କୁ ଅନ୍ଧ କରିଦେଇଛି । କେବଳ ଏତିକି ନୁହେଁ, ପୂର୍ବରୁ ଯେଉଁମାନେ ଦର୍ପନାରାୟଣ ଜମିଦାରଙ୍କ ପରି ଶୋଷଣ ଓ ଅତ୍ୟାଚାରର ନିର୍ମମ ପ୍ରତୀକ ଥିଲା, ସେମାନେ ହିଁ ସ୍ୱାଧୀନତା ପରବର୍ତ୍ତୀ କାଳରେ ହୋଇଛନ୍ତି ଜନନେତା ଓ ମନ୍ତ୍ରୀ । ଏହି ସତ୍ୟକୁ ଔପନ୍ୟାସିକ 'ଅନ୍ଧ ଦିଗନ୍ତ'ରେ ଅତି ସୁନ୍ଦରଭାବେ ଉପସ୍ଥାପିତ କରିଛନ୍ତି । ଅସହଯୋଗ ଆନ୍ଦୋଳନରେ ଭାଗ ନେଇ ଯେଉଁମାନେ ତ୍ୟାଗସର୍ବସ୍ୱ ନିଧି ଦାସଙ୍କ ଭଳି ବାରମ୍ବାର କାରାବରଣ କରି ଦେଶକୁ ସ୍ୱାଧୀନତା ଆଣି ଦେଇଥିଲେ, ସେମାନଙ୍କୁ ସ୍ୱାଧୀନ ରାଷ୍ଟ୍ରରେ ମନ୍ତ୍ରୀମାନଙ୍କର ପ୍ରତିନିଧିତ୍ୱ କରୁଥିବା ଶୁଦ୍ଧୋଧନ ଅବଜ୍ଞା ପ୍ରଦର୍ଶନ କରିଛନ୍ତି । ସେମାନଙ୍କ କଥାକୁ ଗୁରୁତ୍ୱ ନ ଦେଇ ଇଂରେଜ ଶାସନ ଅମଳରୁ ଚାକିରି କରିଆସୁଥିବା ଅମଲାତନ୍ତ୍ରୀମାନଙ୍କ ଉପରେ ବିଶ୍ୱାସ ସ୍ଥାପନ କରିଛନ୍ତି । ସେ କଥାକୁ ଔପନ୍ୟାସିକ ଅତି କଠୋର ଭାବରେ ବିଦ୍ରୂପ କରିଛନ୍ତି । ଔପନ୍ୟାସିକ ସମାଜକୁ ଚେତାବନୀ ଦେଇଛନ୍ତି – ''ମଣିଷ ସ୍ୱାଧୀନ ହେବାପାଇଁ ତଥାପି ଆହୁରି ଅନେକ ଡେରି, ଅନେକ ଡେରି ।''

'ଅନ୍ଧ ଦିଗନ୍ତ' ସ୍ୱାଧୀନତାର ପ୍ରାକ୍‌କାଳୀନ ଭାରତୀୟ ରାଜନୀତିକୁ କେନ୍ଦ୍ର କରି ରଚିତ ହୋଇଥିଲେ ମଧ୍ୟ ଏଥିରେ ସ୍ୱାଧୀନତା ପରବର୍ତ୍ତୀ ପର୍ଯ୍ୟାୟର କ୍ଷମତାଦୃପ୍ତ ହୀନ ରାଜନୀତିଜ୍ଞମାନଙ୍କ ପ୍ରତି ରହିଛି ତୀବ୍ର ଘୃଣା ଓ ବ୍ୟଙ୍ଗ, ଭବିଷ୍ୟତ୍ ବଂଶଧରମାନଙ୍କପାଇଁ ଚେତାବନୀ, ସର୍ବୋପରି କଳଙ୍କମୁକ୍ତ ଶାସନ ପ୍ରତିଷ୍ଠାପାଇଁ ଆହ୍ୱାନ ।

ଓଡ଼ିଶାର ପ୍ରଖ୍ୟାତ କବି ଓ ସାହିତ୍ୟିକ ମାୟାଧର ମାନସିଂହ ଏହି କୃତିକୁଁ ଆକଳନ କରି ଯେଉଁ ମନ୍ତବ୍ୟ ଦେଇଛନ୍ତି ତାହା ହେଲା – 'ଅନ୍ଧ ଦିଗନ୍ତ'ରେ ସୁରେନ୍ଦ୍ର ମହାନ୍ତି କିଛି ଏକ Soul exploration ଚେଷ୍ଟା କରିବାରୁ ତା'ର କେବଳ କାହାଣୀ ନ ହୋଇ ଜାତୀୟ ଗାଥାରେ ପରିଣତ ହେବାକୁ ଯାଉଛି । ଏ ସାହସ, ଏ ଉତ୍ସାହ, ଏ ସିଦ୍ଧି, (ଯେତେ ଆଂଶିକ ହେଉ ପଛେ) ପାଇଁ ତରୁଣ ଲେଖକଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଜଣାଉଛି ।''

**ନୀଳଶୈଳ**

'ନୀଳଶୈଳ' ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ଏକ ଗୌରବୋଜ୍ଜ୍ୱଳ ମହିମାମୟ ଉପନ୍ୟାସ ।

'ନୀଳଶୈଳ' ଅର୍ଥ ସବୁଜ ରଙ୍ଗର ପାହାଡ଼ ଅର୍ଥାତ୍ ଶ୍ରୀକ୍ଷେତ୍ର ଯେଉଁଠି ଅବସ୍ଥିତ ଜଗତର ନାଥ ଜଗନ୍ନାଥ । ସେହି ମହନୀୟ ପୁରୁଷ ଓ ତାଙ୍କର ସେବକ ରାମଚନ୍ଦ୍ରଦେବଙ୍କ କାହାଣୀ ହିଁ ଏହି ଉପନ୍ୟାସର ଉପଜୀବ୍ୟ ।

ଖୋର୍ଦ୍ଧାରାଜା ରାମଚନ୍ଦ୍ରଦେବ ରିଜିଆବିବିଙ୍କୁ ପରିସ୍ଥିତିରେ ପଡ଼ି ନିକା ହେବା ପରେ ଜଗନ୍ନାଥଙ୍କ ମନ୍ଦିରରେ ପ୍ରବେଶ କରିପାରିବେ କି ନାହିଁ ସେହି ବିଷୟରେ ଜାଣିବାକୁ ଉତ୍କଣ୍ଠିତ ହୋଇଛନ୍ତି । ପରେ ସେ ଜାଣିଛନ୍ତି ଶ୍ରୀମନ୍ଦିରରେ ପ୍ରବେଶାଧିକାରରୁ ସେ ବଞ୍ଚିତ ହୋଇଛନ୍ତି । କିନ୍ତୁ ଜଗନ୍ନାଥଙ୍କ ପ୍ରତି ରହିଛି ତାଙ୍କର ଅଚଳାଚଳ ଭକ୍ତି ।

ରାମଚନ୍ଦ୍ରଦେବ ତକୀ ଖାଁର ଭିଣୋଇ ହେବା ପରେ ବାରବାଟୀ ଦୁର୍ଗରେ ନଜରବନ୍ଦୀ ଭାବରେ ରହିଛନ୍ତି । ତାଙ୍କ ମନର ଗୋଟିଏ କଥା – ''ବଞ୍ଚିରହିଲେ ହୁଏତ ସେ ଭବିଷ୍ୟତ୍‌ରେ ଉତ୍କଳ ଓ ତା'ର ମହାନ୍ ଦେବତା ଜଗନ୍ନାଥଙ୍କ ସୁରକ୍ଷା କରିପାରିବେ ।'' ତାଙ୍କ ଅନୁପସ୍ଥିତିରେ ବକ୍‌ସି ବେଣୁଭ୍ରମରବର ନିଜକୁ ରାଜ୍ୟର ସର୍ବେସର୍ବା ମନେ କରିଛନ୍ତି । ସେହି ବର୍ଷ ସେ ଗୁଣ୍ଡିଚା ଯାତ୍ରାରେ ଛେରାପହଁରା କରି ଚାରିଆଡ଼େ ଚହଳ ପକାଇ ଦେଇଛନ୍ତି । ସେ ମଧ୍ୟ ରାମଚନ୍ଦ୍ରଦେବ ଓ ତକୀ ଖାଁ ମଧ୍ୟରେ ଅବିଶ୍ୱାସର ବୀଜ ବୁଣିଦେବାପାଇଁ ଉଦ୍ୟମ କରନ୍ତି । ନରସା ରାଜୁ ପେସକସ୍ ତିନି ଲକ୍ଷ ଟଙ୍କା ଧରି ଆନ୍ଧ୍ରପ୍ରଦେଶର ଚିକାକୋଲରୁ କଟକ ଆସୁଥିବାବେଳେ ଟଙ୍କା ରାସ୍ତାରେ ଲୁଟିନେଇ ରାମଚନ୍ଦ୍ରଦେବଙ୍କ ମୁଣ୍ଡରେ ଅଠା ବୋଳି ଦେବାପାଇଁ ପାଟମହାଦେଈ ଲଳିତାଦେବୀଙ୍କ ପାଖକୁ ଗୋପନରେ ଏକ ପତ୍ର ଲେଖିଛନ୍ତି । ଉକ୍ତ ଚିଠି କିନ୍ତୁ ବାଲୁଗାଁ ଚଟି ଘର ମାଲିକାଣୀ ସରଦେଈ ସହାୟତାରେ ରାମଚନ୍ଦ୍ରଦେବ ପାଆନ୍ତି ଓ ନିଜେ ପେସକସ୍ ଟଙ୍କା ହରଣଚାଳ କରି ବେଣୁଭ୍ରମରବର ମୁଣ୍ଡରେ ଅଠା ବୋଳିଛନ୍ତି ।

ତକୀ ଖାଁ ଚାହୁଁଥିଲେ ଯେ ରାମଚନ୍ଦ୍ରଦେବ ଧର୍ମାନ୍ତରିତ ହୋଇଥିବାରୁ ଖୋର୍ଦ୍ଧା ଇସଲାମ ଶାସନାଧୀନ ହେବ । ସେ ମଧ୍ୟ ପୁରୀ ଆସୁଥିବା ତୀର୍ଥଯାତ୍ରୀଙ୍କଠାରୁ ଜିଜିୟାକର ଅସୁଲ କରିବାକୁ ବସିଛନ୍ତି । ପୁଣି ଜଗନ୍ନାଥଙ୍କ ଦେହରେ ଥିବା ବହୁମୂଲ୍ୟ ଅଳଙ୍କାରକୁ ପାଇବାକୁ ଆଶାୟୀ ହୋଇଛନ୍ତି । ସେହି ବର୍ଷ ମୁକ୍ତିମଣ୍ଡପ ପଣ୍ଡିତ ସଭା ରାମଚନ୍ଦ୍ରଦେବଙ୍କୁ ଛେରାପହଁରା କରିବାକୁ ଆଦେଶ ଦେଇଛି; ମାତ୍ର ତକୀ ଖାଁ ତା'ର ପଦଲେହନକାରୀ ମାହାଙ୍ଗା ପ୍ରଗଣା ଜାଗିରଦାର ଶେଖ୍ ଅମିନ ଚାନ୍ଦଙ୍କୁ ପୁରୀର ନାଏବ ଭାବେ ନିଯୁକ୍ତ କରିଛନ୍ତି । ତାଙ୍କ ହୁକୁମରେ ଜଗନ୍ନାଥଙ୍କ ସେବା ପୂଜା ନ ହେଲେ ଜଗନ୍ନାଥ ମନ୍ଦିର ଭାଙ୍ଗି ମାଟିରେ ମିଶାଇ ଦିଆଯିବ ବୋଲି ଆଦେଶ ଦେଇଛନ୍ତି । ତକୀ ଖାଁ କବଳରୁ ରିଜିଆବିବି ବହୁ ସମୟରେ ରାମଚନ୍ଦ୍ରଦେବଙ୍କୁ ସାହାଯ୍ୟ ଦିଅନ୍ତି । ରିଜିଆଙ୍କଠାରୁ ତକୀ ଖାଁଙ୍କ ଆଦେଶ ଶୁଣି ରାମଚନ୍ଦ୍ରଦେବ ରଥଯାତ୍ରା ଦେଖିବାପାଇଁ ପୁରୀ ଯାଇଛନ୍ତି । ଅମିନଚାନ୍ଦ ମଧ୍ୟ ଚାହିଁଛି ଯେପ୍ରକାରେ ହେଉ ରାମଚନ୍ଦ୍ରଦେବଙ୍କୁ ଛେରାପହଁରା କାର୍ଯ୍ୟରୁ ନିବୃତ୍ତ କରିବାକୁ । ମାତ୍ର ତାହା ସଫଳ ହୋଇ ନାହିଁ ।

ପୁତ୍ର ଭାଗୀରଥି କୁମାର ମଧ୍ଯ ମାତା ଲଳିତାଦେବୀଙ୍କ ବାଧ୍ୟବାଧକତାରେ ରଥଯାତ୍ରାରେ ଛେରାପହଁରା କରିବାପାଇଁ ପୁରୀ ବାହାରିଛନ୍ତି । ମାତ୍ର ମାଲୁଦ ଫୌଜଦାର ହାତରେ ବନ୍ଦୀ ହୋଇ ବାଟରେ ଅଟକି ରହିଛନ୍ତି । ପରେ ତକୀ ଖାଁଙ୍କ ହସ୍ତକ୍ଷେପ ଫଳରେ ମୁକ୍ତ ହେଲେ ସତ; ମାତ୍ର ପୁରୀରେ ପହଞ୍ଚିଲାବେଳକୁ ଛେରାପହଁରା କାର୍ଯ୍ୟ ଶେଷ ହୋଇସାରିଛି ।

ବାହୁଡ଼ାଯାତ୍ରା ସରିଲେ ଜଗନ୍ନାଥ ଶ୍ରୀମନ୍ଦିରକୁ ବିଜେ କରିବେ ଜାଣି ତକୀ ଖାଁ ସେହି ସମୟରେ ଜଗନ୍ନାଥଙ୍କୁ ଆକ୍ରମଣ କରିବାକୁ ପ୍ରସ୍ତୁତ ହୋଇଛନ୍ତି । ରାମଚନ୍ଦ୍ରଦେବ ମଧ୍ୟ ଜଗନ୍ନାଥଙ୍କୁ ରକ୍ଷା କରିବାପାଇଁ ତାଙ୍କୁ ଅନ୍ୟତ୍ର ଏକ ନିରାପଦ ସ୍ଥାନକୁ ନେବାପାଇଁ ସ୍ଥିର କରିଥାନ୍ତି ଓ ସେଥିପାଇଁ ଏକ ନିରାପଦ ସ୍ଥାନ ଅନୁସନ୍ଧାନରେ ଥାଆନ୍ତି ।

ବାହୁଡ଼ା ଯାତ୍ରା ଦିନ ଅମିନଚାନ୍ଦ ଛେରାପହଁରା କାର୍ଯ୍ୟ କରିବାପାଇଁ ସ୍ଥିର ହୋଇଛି । କିନ୍ତୁ ତା' ପୂର୍ବରୁ ଖୋର୍ଦ୍ଧାରୁ ରାମଚନ୍ଦ୍ରଦେବଙ୍କ ଅନ୍ତର୍ଦ୍ଧାନ ବିଷୟ ପ୍ରଚାର ହୋଇଛି । ଏ ଖବର ମଧ୍ୟ ତକୀ ଖାଁ ପାଖେ ପହଞ୍ଚିଛି ।

ବାହୁଡ଼ା ଯାତ୍ରା ଦିନ ବହୁ ଅଘଟଣ ଘଟିଛି । ବଡ଼ଠାକୁରଙ୍କ ତାଳଧ୍ୱଜ ରଥରେ ଓ ପରେ ଲକ୍ଷ୍ମୀମନ୍ଦିର ଚୂଡ଼ାରେ ଶାଗୁଣା ବସିଛି । ଅମିନଚାନ୍ଦ ଛେରାପହଁରା କରିବା ସମୟରେ ତା' ହସ୍ତରୁ ସୁନା କର୍ପୂର ଆଳତି ଖସିପଡ଼ିଛି । ପୁଣି ରତ୍ନସିଂହାସନ ଉପରେ ଠାକୁରମାନେ ବିଜେ କଲାବେଳେ ଦମକାଏ ପବନରେ ଅଖଣ୍ଡ ଦୀପ ଲିଭିଯାଇଛି । ସିଂହଦ୍ୱାର ବନ୍ଦ ହୋଇଛି । ତା' ପରଦିନ ସକାଳେ କିନ୍ତୁ ରତ୍ନବେଦୀ ଶୂନ୍ୟ ପଡ଼ିଛି । ଦେବତାମାନେ କେଉଁଆଡ଼େ ଅନ୍ତର୍ଦ୍ଧାନ ହୋଇଯାଇଛନ୍ତି ।

ରାମଚନ୍ଦ୍ରଦେବ, ସାନ ପରିଛା, ଲକ୍ଷ୍ମୀ ପରମଗୁରୁ ମହାପାତ୍ର, ଜଗୁନି ଓ ଆଉ କେତେଜଣ ସେବକ ମୂର୍ତ୍ତିମାନଙ୍କୁ ନେଇ ପହଞ୍ଚାଇଛନ୍ତି ଚିଲିକା ମଧ୍ୟସ୍ଥ ଗୁରୁବାଇ ଦ୍ୱୀପରେ । ବାଟରେ ମାଣିକପାଟଣା ମୁହାଣ ନିକଟରେ ଜଗନ୍ନାଥଙ୍କ ସିନ୍ଦୁକ ଭର୍ତ୍ତି ବସନ, ଭୂଷଣ ଓ ଅନ୍ୟାନ୍ୟ ଉପକରଣ ଜଳମଗ୍ନ ହୋଇଛି । ସେଇ ଦ୍ୱୀପର ଏକ ପ୍ରକାଣ୍ଡ ଲୋଟଣୀ ବରଗଛ ତଳେ ଏକ ପିଣ୍ଡିରେ ମୂର୍ତ୍ତିମାନଙ୍କୁ ବିଜେ କରାଯାଇଛି । ଜଗୁନି ବଣ ମଧ୍ୟରୁ ମୁତୁରି ଦାନ୍ତ କାଠି ଓ ପାଚିଲା ଜାମୁକୋଳି ଧରି ଉପସ୍ଥିତ ହୁଅନ୍ତି । ଦିଅଁମାନଙ୍କର ପ୍ରତିଷ୍ଠା ସମୟ ଆସିଛି । ଜଣେ ସେବକ ମାଟି ଉପରେ ପାଣି ସିଞ୍ଚିବାବେଳେ ରାମଚନ୍ଦ୍ରଦେବ ପାଖକୁ ଲାଗି ଆସିଛନ୍ତି । ସେବକ ଜଣକ କହିଉଠିଛନ୍ତି – ''ଏବେ ପଙ୍‌କ୍ତି ଭୋଗ ଲାଗିବ । ଆପଣ ଟିକିଏ ଦୂରଛଡ଼ା ହୋଇ ଯାଆନ୍ତୁ ଛାମୁ ।''

ରାମଚନ୍ଦ୍ରଦେବଙ୍କ ମନରେ ଆଘାତ ଲାଗିଛି । ଭରିଯାଇଛି ଅଭିମାନ । ଯେଉଁ ଜଗନ୍ନାଥଙ୍କପାଇଁ ନିଜେ ଆହାର, ନିଦ୍ରା ଛାଡ଼ିଛନ୍ତି, ଯେଉଁ ଜଗନ୍ନାଥଙ୍କୁ କୋଳେଇ

କାଖେଇ ଅନ୍ୟମାନଙ୍କ ସହ ନେଇଆସିଛନ୍ତି ଏହି ଅପନ୍ତରା ଜାଗାକୁ, ସେଇ ଜଗନ୍ନାଥଙ୍କୁ ଛୁଇଁବାରେ ତାଙ୍କର ଅଧିକାର ନାହିଁ । ଅବହେଳିତ ହୃଦୟ, ଭଙ୍ଗାମନ ଧରି ସେ ଚାଲି ଆସିଛନ୍ତି । ଆଉ ଚିଲିକା ବକ୍ଷରେ ଡଙ୍ଗା ମେଲି ଦେଇଛନ୍ତି – ସେ କୁଆଡ଼େ ଯିବେ ଜାଣି ନାହାନ୍ତି । କୁଆଡ଼େ ଯିବେ – ପ୍ରଶ୍ନ କରିଛି ଜଗୁନି ।

ଉପନ୍ୟାସର ଅନ୍ତିମ ଧାଡ଼ି – ''ସମ୍ମୁଖରେ ଅକୂଳ, ଅଥଳ, ଧୂସର ଚିଲିକା ଉପରେ ନିର୍ମେଘ ଆକାଶ – ଗୋଟାଏ ନୀଳ ମରୁଭୂମି ।''

ନୀଳଶୈଳ ଉପନ୍ୟାସର ପରିଣତି ସମ୍ପର୍କରେ ସ୍ୱୟଂ ଔପନ୍ୟାସିକ ମତ ଦେଇଛନ୍ତି – ''କେତେକାଂଶରେ ଏହା ଅପୂର୍ଣ୍ଣ ମନେ ହୋଇପାରେ । × × × ମାତ୍ର ଗୋଟିଏ ଦୃଷ୍ଟିରୁ ଜୀବନ ପରି କଳା ମଧ୍ୟ ଅପୂର୍ଣ୍ଣ । ସ୍ୱୟଂ ଜଗନ୍ନାଥଙ୍କ ବିଗ୍ରହ ସୁଦ୍ଧା ଅସମ୍ପୂର୍ଣ୍ଣ । × × × କଳା କ୍ଷେତ୍ରରେ ମଧ୍ୟ ସେଇ ନିୟମ ପ୍ରଯୁଜ୍ୟ ।''

କଥାକାରଙ୍କ 'ନୀଳଶୈଳ' ଉପରେ ନିଜସ୍ୱ ମତ – ''ନୀଳଶୈଳ ଏକ ଐତିହାସିକ ଉପନ୍ୟାସ ନୁହେଁ, କିନ୍ତୁ ଏଥିରେ ପାଠକଙ୍କୁ ଯାହା ଗଭୀର ଭାବରେ ପ୍ରଭାବିତ କରେ, ତାହା ଇତିହାସ ନୁହେଁ । ଇତିହାସ ମଧ୍ୟରେ ଯେଉଁ ଚିରନ୍ତନ ଜୀବନଧାରାର ସନ୍ଧାନ ହେଲା ତାହା ଐତିହାସିକ ଉପନ୍ୟାସର ମୂଳକଥା ।'' ତାହା ମଧ୍ୟ ଯଥାର୍ଥ ବୋଲି ପ୍ରତିପାଦିତ ହୋଇଛି । ତେଣୁ ଆଲୋଚକଙ୍କ ମତରେ ନୀଳଶୈଳ କେବଳ ଏକ ସାର୍ଥକ ଐତିହାସିକ ଉପନ୍ୟାସ ନୁହେଁ, ଓଡ଼ିଶା ସଂସ୍କୃତି ତଥା ଓଡ଼ିଆ ଜୀବନର ଏକ ସାର୍ଥକ ବାଙ୍ମୟ କଥାଲେଖ୍ୟ । ସମଗ୍ର ଓଡ଼ିଆ କଥା-ସାହିତ୍ୟରେ 'ନୀଳଶୈଳ'ର ମର୍ଯ୍ୟାଦା ଏ ଦୃଷ୍ଟିରୁ ସ୍ୱତନ୍ତ୍ର ।

**କାଳାନ୍ତର**

୧୯୭୨ ମସିହା ପୂଜାସଂଖ୍ୟା 'ନବରବି'ରେ 'କାଳାନ୍ତର' ଉପନ୍ୟାସ ପ୍ରଥମେ ପ୍ରକାଶ ପାଇଥିଲା । ଏହା ଏକ କାଳ୍ପନିକ କାହାଣୀ ନୁହେଁ ବା ବାସ୍ତବତାର ସ୍ଥୂଳଚିତ୍ର ନୁହେଁ । ଏହା ଲେଖକଙ୍କ ଅନୁଭୂତି ରସରେ ପୁଷ୍ଟ ଏକ ଘଟଣା ବିଶେଷର ସାହିତ୍ୟିକ ରୂପାୟନ ।

ଉପନ୍ୟାସଟି ଦୁଇଟି କଥାକୁ ନେଇ ଗଢ଼ିଉଠିଛି । ପ୍ରଥମଟି ହେଲା, ସରସ୍ୱତୀ ମେଲାଡିହକୁ କିଣିବାପାଇଁ ଦୋଳଗୋବିନ୍ଦବାବୁ ସଫଳ ହୋଇଛନ୍ତି । ତେଣୁ ଗୋପୀନାଥ ମହାନ୍ତିଙ୍କ ସହିତ ତାଙ୍କର ବିବାଦ । ଏହି ବିବାଦକୁ ନେଇ ଗାଁରେ ଦୁଇଟି ପୃଥକ୍ ଦଳର ସୃଷ୍ଟି ହୋଇଛି । ଫଳରେ ମହାନ୍ତି ସାହିର ପାରମ୍ପରିକ ସରସ୍ୱତୀ ପୂଜା ବନ୍ଦ ହୋଇଛି । ଦୋଳଗୋବିନ୍ଦ ଓ ଗୋପୀନାଥଙ୍କ ନିଜ ଘରେ ଲେଖନୀ ଓ ଘଟପୂଜା ଆରମ୍ଭ ହୋଇଛି ।

କାଳ ତା'ର ନିଜସ୍ୱ ବାଟରେ ଗତିଶୀଳ ହୁଏ । ତେଣୁ ଅନ୍ୟବର୍ଷମାନଙ୍କରେ ଏତେବେଳକୁ ଦେବୀଙ୍କ ଚକ୍ଷୁଦାନପାଇଁ ଉତ୍ସବ କୋଳାହଳରେ ସରସ୍ୱତୀ ମନ୍ଦିର ମୁଖରିତ ହୋଇଉଠୁଥାଏ । ଆଜି କିନ୍ତୁ ସବୁ ମୂର୍ଚ୍ଛିତ, ନୀରବ ଓ ପରିତ୍ୟକ୍ତ ।

ଅନ୍ୟ କଥାଟି ହେଲା, କେତୀର ଏକ ବୃଦ୍ଧ ସହ ବିବାହ ହୋଇଛି । ଅକାଳରେ ସେ ବିଧବା ହୋଇଛି । ଦିଅରର ଉତ୍ପୀଡ଼ନ ଯୋଗୁଁ କେତୀ ବାପ ଘରକୁ ପଳାଇଛି । ସେଠାରେ ମଧ୍ୟ ପୋଷ୍ୟପୁତ୍ର ନେଇ ଭାଇ ଗୋକୁଳ ମିଶ୍ର ଓ ଦିଅର ଦାମୋଦରଙ୍କ ଚେଷ୍ଟା ଚାଲିଛି । କେତୀର ଗୋପୀନନ୍ଦ ସହିତ ଅବୈଧ ପ୍ରଣୟ ଫଳରେ ଅବୈଧ ସନ୍ତାନ ଜନ୍ମ ହୋଇଛି । ତା'ର ହତ୍ୟା ପ୍ରଭୃତି ନାନା ଅଘଟଣ ଘଟିଛି ।

କେତୀର ସମ୍ପତ୍ତିକୁ ନେଇ ଲୋଭ ଓ ସ୍ୱାର୍ଥପରତାର ଚରମ ବୀଭତ୍ସତା ପ୍ରକାଶ ପାଇଲାବେଳକୁ ଗାଁର ଆକାଶରେ ଓହ୍ଲାଇ ଆସିଛି ଝଡ଼ର ବିଭୀଷିକା । ଏହି ଝଡ଼ରେ ପ୍ରାକୃତିକ ପରିବର୍ତ୍ତନ ତ ଘଟିଛି, ତା' ସାଥିରେ ଘଟିଛି ମଣିଷ ଆତ୍ମାର ପରିବର୍ତ୍ତନ । ହିଂସା, ଦ୍ୱେଷ, ଈର୍ଷା ସ୍ନେହ, ପ୍ରେମ, ତ୍ୟାଗ ଓ ସେବାରେ ରୂପାନ୍ତରିତ ହୋଇଛି । ନିନ୍ଦୁକ ଶତ୍ରୁମାନଙ୍କର ସୁରକ୍ଷାପାଇଁ କେତକୀ ତଥା ଯୋଗୀ ମହାପାତ୍ର ହୋଇଛନ୍ତି ବ୍ୟଗ୍ର । ବୁଲି ବୁଲି ଗୁହାଳମାନଙ୍କରୁ ଗାଈ ଫିଟାଇଛନ୍ତି । ଛିନ୍ନମୂଳ ଲୋକଙ୍କୁ ଆଣି କେତକୀର ଆଟୁଘରେ ଆଶ୍ରୟ ଦେଇଛନ୍ତି । ମାଳୀ ମିଶ୍ରଙ୍କୁ ଘରକୁ ଟେକିଆଣି ତାଙ୍କପାଇଁ ପାଣି ସଂଗ୍ରହ ହୋଇଛି । ସେହିପରି ଗୋପୀନାଥଙ୍କର ଦୋଳଗୋବିନ୍ଦଙ୍କ ପୁଅପାଇଁ ଆବେଗପୂର୍ଣ୍ଣ ଅପେକ୍ଷା ରହିଛି । ଦୋଳଗୋବିନ୍ଦଙ୍କର ଗୋପୀନାଥଙ୍କ ପରିବାର ସୁରକ୍ଷାପାଇଁ ଉତ୍କଣ୍ଠା ବଢ଼ି ଚାଲିଛି ।

ଗାଳ୍ପିକ ତେଣୁ କାଳର ଗତିକୁ ଲକ୍ଷ୍ୟ କରି ଏହି ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ଯେ କାଳ ମଣିଷର ନିୟନ୍ତ୍ରକ ଓ ମଣିଷ ଜୀବନ ଭିତରେ କାଳର ସ୍ୱରୂପ ଅନୁଭବ୍ୟ । ଗୋଟିଏ ପକ୍ଷକୁ ନେଇ ଜୀବନ ଗଠିତ ନୁହେଁ କିମ୍ବା 'କାଳ' ଓ କାଳାନ୍ତର ମଧ୍ୟ ପରସ୍ପରଠାରୁ ବିଚ୍ଛିନ୍ନ ନୁହେଁ । ମଣିଷର ଜୀବନ ମଧ୍ୟରେ ଗୋଟିଏ କାଳ ଓ ଅନ୍ୟ କାଳର ଜୀବଧର୍ମ ବ୍ୟଞ୍ଜିତ ।

**ଅଚଳାୟତନ**

'ଅଚଳାୟତନ' ଏକ କ୍ଷୁଦ୍ର ଉପନ୍ୟାସ । ଏହା ୧୯୮୧ ମସିହାରେ ରଚିତ ହୋଇଥିଲା । ଯୁଗ ସଂଘର୍ଷର ଏହା ଏକ ପ୍ରତୀକଧର୍ମୀ କାହାଣୀ ।

କାଞ୍ଚନଗଡ଼ର ରାଜା ରୁଦ୍ରମାଧବ ଏହି ଉପନ୍ୟାସର ନାୟକ । ରାଜାରାଜୁଡ଼ା ଯୁଗ ଚାଲିଯିବା ପରେ ମଧ୍ୟ ସେ ଜରାଜୀର୍ଣ୍ଣ ରାଜପ୍ରାସାଦକୁ ଆବୋରି ପଡ଼ି ରହିଛନ୍ତି । ଅଚଳ ମହାମେରୁ ପରି କୌଣସି ପରିବର୍ତ୍ତନକୁ ସେ ସ୍ୱୀକାର କରିବାକୁ ନାରାଜ ହୋଇଛନ୍ତି ।

ରୁଦ୍ରମାଧବବାବୁଙ୍କ ଏକମାତ୍ର କନ୍ୟା ରତ୍ନପର୍ଣ୍ଣା । ରାଜପୁରୀର ଐତିହ୍ୟ ଓ ପରମ୍ପରାକୁ ଗୁରୁତ୍ୱଦେବା ପରିବର୍ତ୍ତେ ପାଶ୍ଚାତ୍ୟ ସଭ୍ୟତାକୁ ଅଧିକ ଆଦର କରନ୍ତି । ପଲାଶପୁର ରାଜବାଟୀର ଅହୀନ୍ଦ୍ର ଚୌଧୁରୀଙ୍କ ସହିତ ବିବାହ ପ୍ରସ୍ତାବକୁ ସେ ପ୍ରତ୍ୟାଖ୍ୟାନ କରନ୍ତି । ସେ କିନ୍ତୁ ଲମ୍ଵାକଲିଯୁକ୍ତ ଚନ୍ଦ୍ରକାନ୍ତଙ୍କ ସହ ଅବାଧରେ ମିଳାମିଶା କରନ୍ତି । ରୁଦ୍ରମାଧବବାବୁଙ୍କ ପୁତ୍ର ଇନ୍ଦ୍ରମାଧବ । ସେ ମଧ୍ୟ ବଂଶର ଐତିହ୍ୟ ଓ ପରମ୍ପରାକୁ ଭ୍ରୂକ୍ଷେପ କରନ୍ତି ନାହିଁ । ପିତାଙ୍କ ଅଜାଣତରେ କାନାଡ଼ାରେ ଡୋରେଥୀକୁ ବିବାହ କରିଛନ୍ତି । ଲୋଭାସକ୍ତ ହୋଇ ଅବିଭାଜ୍ୟ କାଞ୍ଚନଗଡ଼ରେ ନିଜ ଭାଗ ସମ୍ପତ୍ତିର ମୂଲ୍ୟ ନେଇଯିବାପାଇଁ ଆସିଛନ୍ତି । କିନ୍ତୁ ସମ୍ପତ୍ତି ବିକ୍ରି କରିବା ସପକ୍ଷରେ ରୁଦ୍ରମାଧବ ମତ ଦେଇ ନାହାନ୍ତି । ତାଙ୍କ ମତରେ ସମସ୍ତ ସମ୍ପତ୍ତି, ଘର ଠାକୁର ଲକ୍ଷ୍ମୀନାରାୟଣଙ୍କର । ଏହାପରେ ପୁତ୍ର ଇନ୍ଦ୍ରମାଧବ ଓ ଡୋରେଥୀ କାଞ୍ଚନଗଡ଼ରେ ଦିନେ ହଠାତ୍ ଆସି ପହଞ୍ଚିଛନ୍ତି । ଡୋରେଥୀ ଉଗ୍ର ଆଧୁନିକା ବିଦେଶିନୀ ନାରୀ । ପୁତ୍ର ସମ୍ପତ୍ତି ବିକ୍ରି କରି ଟଙ୍କା ନେବା ନିଷ୍ପତ୍ତି କରନ୍ତି । ପୁତ୍ରବଧୂର ବ୍ୟବହାର ରୁଦ୍ରମାଧବଙ୍କୁ ଯଥେଷ୍ଟ ମାନସିକ ଆଘାତ ଦେଇଛି ।

ପୁତ୍ରବଧୂ ଡୋରେଥୀ ମେହେଗାନ କାଠର ବାକ୍ସେଟ ମଧ୍ୟରେ ଥିବା ଦୁଇଟି ହାତୀଦାନ୍ତ ଦେଖି ସ୍ୱଗତୋକ୍ତି କରିବା ପରି କଣ୍ଠରେ କହିଛନ୍ତି – ''ହାତୀଦାନ୍ତ ଦୁଇଟା ଷ୍ଟେଟ୍‌ସରେ ବିକ୍ରି କଲେ ଅନ୍ୟୁନ ଦୁଇ ହଜାର ଡଲାର ମିଳିପାରନ୍ତା ।''

କିନ୍ତୁ ଏହି ଦର କଷାକଷି ରୁଦ୍ରମାଧବଙ୍କୁ ଭଲ ଲାଗିନି । ସେ କହିଛନ୍ତି – ''ଏ ହତଭାଗାମାନେ ବୁଝନ୍ତି କେବଳ ମୂଲ୍ୟ, କିନ୍ତୁ ମୂଲ୍ୟବୋଧ ନୁହେଁ ।''

ରୁଦ୍ରମାଧବଙ୍କ ମତରେ ହାତୀଦାନ୍ତ ଦୁଇଟିର ମୂଲ୍ୟବୋଧ ଖୁବ୍ ଉଚ୍ଚରେ । ତାଙ୍କର ପୂର୍ବପୁରୁଷ ଶ୍ରୀକାନ୍ତଦେବ କେଉଁ ଗଡ଼ଜାତ ଜଙ୍ଗଲରୁ ଏକ ହାତୀ ଶିକାର କରି ତା'ର ଦାନ୍ତ ଆଣିଥିଲେ । ତେଣୁ ସେଗୁଡ଼ିକ ହାତୀଦାନ୍ତ ମାତ୍ର ନୁହେଁ, ତାଙ୍କ ବଂଶର ପୂର୍ବପୁରୁଷଙ୍କର ବୀରତ୍ୱ ଓ ସାହସିକତାର ଚରମ ନିଦର୍ଶନ । ସେହି ମୂଲ୍ୟବୋଧ ନିକଟରେ ଆଜିର କାଞ୍ଚନସର୍ବସ୍ୱ ମୂଲ୍ୟ କ'ଣ ତଉଲ କରାଯାଇପାରେ ?

ହାତୀଦାନ୍ତ କଥା ଉଠାଇ ଡୋରେଥୀ ପୁଣି ପ୍ରସ୍ତାବ ଦେଇଛି ଗୃହର ଇଷ୍ଟଦେବତା ଲକ୍ଷ୍ମୀନାରାୟଣ ମୂର୍ତ୍ତି ଅପହରଣ କରିନେବାପାଇଁ । ଲକ୍ଷ୍ମୀଙ୍କ ବର୍ଦ୍ଧିତ ସ୍ତନାଗ୍ର ଉପରେ ନାରାୟଣଙ୍କ ଅଙ୍ଗୁଳିସ୍ପର୍ଶଯୁକ୍ତ ଇରୋଟିକ୍ କାରୁକାର୍ଯ୍ୟ ଆମେରିକାରେ ବିକ୍ରି କଲେ ପାଞ୍ଚ ଲକ୍ଷ ଡଲାର ମିଳିବ ବୋଲି କହିଛି । କିନ୍ତୁ ଏ ପ୍ରସ୍ତାବକୁ ସହଜରେ ଗ୍ରହଣ କରିପାରି ନାହିଁ ଇନ୍ଦ୍ରମାଧବ । ଯେତେହେଲେ ଲକ୍ଷ୍ମୀନାରାୟଣ ଇଷ୍ଟଦେବତା ! ଆମେରିକାରେ ରହିଲେ ବି ତା'ର ଅବଚେତନ ମନରେ ଲକ୍ଷ୍ମୀନାରାୟଣଙ୍କର

ପ୍ରତିଷ୍ଠା ତଥାପି ଅନାହତ । ତେବେ ଶେଷରେ ମୂର୍ତ୍ତିଟିର ମୂଲ୍ୟ ପିତାଙ୍କ ନିକଟରେ ଖୁବ୍ ବେଶୀ ବୋଲି ଇନ୍ଦ୍ରମାଧବ ବୁଝାଇଛି । ତାହା କିନ୍ତୁ ବ୍ୟର୍ଥ ହୋଇଛି । ଡୋରେଥୀ ପ୍ରରୋଚନାରେ ରାତ୍ରିର ଅନ୍ଧକାରରେ ଗୋପନରେ ମୂର୍ତ୍ତିଟିକୁ ଧରି ସେମାନେ ଆମେରିକା ପଳାଇ ଯାଇଛନ୍ତି ।

ଜୀବନରେ ବହୁ ଆଘାତ ସହିଛନ୍ତି ରୁଦ୍ରମାଧବ । କିନ୍ତୁ କୁଳଦେବତା ଲକ୍ଷ୍ମୀନାରାୟଣଙ୍କର ଅପହରଣର ଦାରୁଣ ଆଘାତ ସହିପାରି ନାହାନ୍ତି । ତଳେ ମୁହଁମାଡ଼ି ପଡ଼ିଯାଇଛନ୍ତି ଓ ତାଙ୍କର ପ୍ରାଣବାୟୁ ଉଡ଼ିଯାଇଛି ।

ଯଥାର୍ଥରେ ମୂଲ୍ୟବୋଧ ଓ ମୂଲ୍ୟ ମଧ୍ୟରେ ସଂଘର୍ଷର ସଫଳ ରୂପାୟନ ହେଉଛି 'ଅଚଳାୟତନ' ।

## ନେତି ନେତି

ଏହା ଏକ ଆତ୍ମଚରିତଧର୍ମୀ ଉପନ୍ୟାସ । ଏହା ୧୯୮୨ ମସିହାରେ ରଚିତ ହୋଇଥିଲା ।

ମାନବେନ୍ଦ୍ର ବା ମାନା ଏ ଉପନ୍ୟାସର ନାୟକ। ସେ ପ୍ରତିଷ୍ଠିତ ଆଚାର, ବିଚାର ଓ ମୂଲ୍ୟବୋଧ ବିରୋଧରେ ବିଦ୍ରୋହୀ ହୋଇ କକ୍ଷଚ୍ୟୁତ ଉଲ୍‌କା ପରି ଘୂରିବୁଲୁଛି । ଜୀବନର ସତ୍ୟ ଅନ୍ୱେଷଣ ନିମନ୍ତେ ନେତି ନେତିର ଦୁର୍ଗମ ମାର୍ଗରେ ଗତି କରୁ କରୁ ମାନବେନ୍ଦ୍ର ଆସି ପହଞ୍ଚିଛି ଏକ ନୂଆ ଦିଗନ୍ତର ଦ୍ୱାର ଦେଶରେ । ପ୍ରାଣରେ ତା'ର ବ୍ୟାକୁଳତା, ପାଦରେ ପୁଣି ଚଞ୍ଚଳତା । ଏହି ନୂଆ ଦିଗନ୍ତ ହିଁ ତା'ର ଭବିଷ୍ୟତ୍ କର୍ମଭୂମି । ଗୋଟିଏ ସ୍ଥିର ଦର୍ଶନ ଓ ନିର୍ଦ୍ଦିଷ୍ଟ ଆତ୍ମପ୍ରତ୍ୟୟ ମଧ୍ୟରେ 'ନେତି ନେତି' ଉପନ୍ୟାସର ଘଟିଛି ପରିସମାପ୍ତି । ପ୍ରତି ଜୀବନରେ ଯେଉଁ ପ୍ରଶ୍ନ ମନୁଷ୍ୟକୁ ବେଳେ ବେଳେ ବିବ୍ରତ କରିଥାଏ ତା'ର ସମାଧାନ ଲେଖକ ମାନବେନ୍ଦ୍ର ଚରିତ୍ର ମାଧ୍ୟମରେ କରିଛନ୍ତି ।

ସୁରେନ୍ଦ୍ରବାବୁ ପ୍ରାରମ୍ଭିକ ସୂଚନାରେ ଲେଖିଛନ୍ତି – ''ଓଡ଼ିଆରେ ଆତ୍ମଚରିତଧର୍ମୀ ଉପନ୍ୟାସ ଲେଖାଯାଇଛି ବୋଲି ମୋର ମନେହୁଏ ନାହିଁ ।''

ସେ ଦୃଷ୍ଟିରୁ ଓଡ଼ିଆରେ ଏହା ପ୍ରଥମ ଉପନ୍ୟାସ । ଆଲୋଚକ ଡଃ ଅନାଦିଚରଣ ଗାଁଣଙ୍କ ମତରେ – ''ଓଡ଼ିଆ ଉପନ୍ୟାସ ପାଠକକୁ ଦେଇଛି ଏକ ଆଶ୍ଚର୍ଯ୍ୟ ଆସ୍ୱାଦ, ପରମ ଚରମ ସ୍ୱର୍ଗ ଓ ଏହାହିଁ ହେଉଛି ଯଥାର୍ଥ ଶିଳ୍ପ ବା କଳାସୃଷ୍ଟି ଧର୍ମ ।''

## ନୀଳାଦ୍ରି ବିଜୟ

ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ର କରି 'ନୀଳାଦ୍ରି ବିଜୟ' ଉପନ୍ୟାସ ରଚିତ । ବସ୍ତୁତଃ, ଏହା ହେଉଛି 'ନୀଳଶୈଳ' ଉପନ୍ୟାସ‥ ଦ୍ୱିତୀୟ ଭାଗ ।

ଚିଲିକା ଗର୍ଭର ଗୁରୁବାଇ ଦ୍ୱୀପର ହେନ୍ତାଳ ବଣରେ ଶ୍ରୀଜଗନ୍ନାଥ ଅବସ୍ଥାନ କରିଛନ୍ତି । କିନ୍ତୁ ତାଙ୍କର ରହଣି ଆଉ ନିରାପଦ ନୁହେଁ ବୋଲି ରାମଚନ୍ଦ୍ରଦେବ ଉପଲବ୍ଧି କରିଛନ୍ତି । ତେଣୁ ସେ ମୋଗଲ ସେନାଙ୍କ ସତର୍କ ଦୃଷ୍ଟି ସତ୍ତ୍ୱେ ପାଇକମାନଙ୍କ ସାହାଯ୍ୟରେ ଜଗନ୍ନାଥଙ୍କୁ ଶଗଡ଼ରେ ବସାଇ 'ଶ୍ରୀଜଗନ୍ନାଥ' ଜୟଧ୍ୱନି ଭିତରେ ଟିକାଲି ଅଭିମୁଖେ ଯାତ୍ରାରମ୍ଭ କରିଛନ୍ତି । ଶେଷରେ ଜଗନ୍ନାଥଙ୍କୁ ଶ୍ରୀମନ୍ଦିରର ରତ୍ନସିଂହାସନକୁ ଫେରାଇ ଆଣିବାରେ ସଫଳ ହୋଇଛନ୍ତି । ମୋଗଲ କନ୍ୟା ରିଜିଆ ପିପିଲି ଘାଟିଠାରେ ନିଜ ପକ୍ଷ ସେନାବାହିନୀଙ୍କୁ ଅତର୍କିତ ଆକ୍ରମଣ କରି ଜଗନ୍ନାଥଙ୍କୁ ନିରାପଦରେ ରତ୍ନସିଂହାସନରେ ବସାଇବାରେ ସାହାଯ୍ୟକାରିଣୀ ହୋଇଛନ୍ତି । ସେତେବେଳେ ମଧ୍ୟ ସମାଜପତିମାନେ ରିଜିଆଙ୍କୁ ଈପ୍ସିତ ଜଗନ୍ନାଥ ଦର୍ଶନ କରାଇ ଦେଇ ନାହାନ୍ତି । ରିଜିଆ କିନ୍ତୁ ପ୍ରତିବାଦ କରି ନାହାନ୍ତି; କାରଣ ପତି ରାମଚନ୍ଦ୍ରଦେବ ମଧ୍ୟ ସମଦଶାପନ୍ନ ହୋଇଛନ୍ତି । ମାତ୍ର ରାମଚନ୍ଦ୍ରଦେବଙ୍କ ଆତ୍ମବିଶ୍ୱାସ ଧୂଳିସାତ୍ ହୋଇଛି । ତାଙ୍କ ହୃଦୟରେ ସୃଷ୍ଟି ହୋଇଛି ତୀବ୍ର ପ୍ରତିକ୍ରିୟା । ଏହା ଲେଖକ ଚମତ୍କାରଭାବେ ବର୍ଣ୍ଣନା କରିଛନ୍ତି – ''ଧର୍ମ ହେଲା ଧର୍ମାନ୍ଧତା, ସ୍ୱାଧୀନତା ହେଲା କେତେକ ଧର୍ମଧ୍ୱଜୀଙ୍କ ବିଚାରହୀନ ପ୍ରମତ୍ତତା × × × ଜଗନ୍ନାଥ ସଂସ୍କୃତି, ମୈତ୍ରୀ, ପ୍ରୀତି – ଏସବୁ କେବଳ ମୁଖରୋଚକ ପଢ଼ଳି । ତା'ର ଆଚରଣ ନାହିଁ ଜନଜୀବନରେ ।''

ଆଲୋଚକଙ୍କ ଭାଷାରେ – '' 'ନୀଳଶୈଳ' ଓ 'ନୀଳାଦ୍ରି ବିଜୟ' ସଫଳତମ ସୃଷ୍ଟି । × × × ମାନବିକ ମୂଲ୍ୟବୋଧ ଓ ପ୍ରଚଣ୍ଡ ଜାତୀୟତାରେ ଅନୁରଣିତ, ଏଥିରେ ଗୋଟିଏ ଜାତିର ବିରାଟ ସଂସ୍କୃତି ଓ ସାହିତ୍ୟର ପରିଚୟ ଝଙ୍କୃତ ।''

**କୃଷ୍ଣାବେଣୀରେ ସନ୍ଧ୍ୟା**

ଏହା ୧୯୮୫ ମସିହାରେ ରଚିତ ହୋଇଥିଲା । ଉତ୍କଳ ଇତିହାସର ଅସ୍ପଷ୍ଟ ସ୍ମୃତିରେ ଯେଉଁମାନେ ହୀନ, ଅପାଙ୍‌କ୍ତେୟ, ନିନ୍ଦିତ ଓ ଅପମାନିତ ଔପନ୍ୟାସିକ ସେହି ସାଧାରଣ ଚରିତ୍ରମାନଙ୍କ ପ୍ରତି ସମ୍ବେଦନଶୀଳ ହୋଇଛନ୍ତି । ଉତ୍କଳର ସୂର୍ଯ୍ୟବଂଶୀ ରାଜା ଗଜପତି ପ୍ରତାପରୁଦ୍ରଦେବଙ୍କ ଦକ୍ଷିଣରେ କୃଷ୍ଣଦେବରାୟଙ୍କ ସହିତ ସଂଗ୍ରାମ ଏବଂ ପରାଜୟ ଓ ତାଙ୍କ କନ୍ୟା ଜଗନ୍ମୋହିନୀଙ୍କ ସହିତ କୃଷ୍ଣଦେବରାୟଙ୍କ ବିବାହ ଘଟଣା ପୁସ୍ତକର କଥାବସ୍ତୁ ।

ଗଜପତି ପ୍ରତାପରୁଦ୍ରଦେବ ସିଂହାସନ ଆରୋହଣ କଲା ପରେ ବାହମନୀ ଓ ବିଜୟନଗର ରାଜ୍ୟକୁ ଉତ୍କଳରେ ମିଶାଇବାପାଇଁ ଆକ୍ରମଣ କରିଛନ୍ତି । ଯୁଦ୍ଧ ଶେଷ ହେବା ପୂର୍ବରୁ ଅଗତ୍ୟା ତାଙ୍କୁ ଫେରିଆସିବାକୁ ପଡ଼ିଛି – ବଙ୍ଗର ସୁଲତାନ ହୁସେନ ସାହଙ୍କ ଉତ୍କଳ ଆକ୍ରମଣକୁ ପ୍ରତିହତ କରିବାପାଇଁ । ହୁସେନ ସାହ ଯୁଦ୍ଧରେ ପରାସ୍ତ

ହୋଇଛନ୍ତି । ଏହି ସୁଯୋଗରେ ବିଜୟନଗର ରାଜା କୃଷ୍ଣଦେବରାୟ ଓଡ଼ିଶା ଆକ୍ରମଣ କରିଛନ୍ତି । ଉଦୟଗିରି ରାଜା ତିରୁମଲ୍ଲ ଯୁଦ୍ଧରେ ପରାଜିତ ହୋଇଛନ୍ତି । ଆତ୍ମସମର୍ପଣ ମାଧ୍ୟମରେ ବିଜୟୀ ବିଜୟନଗର ମନ୍ତ୍ରୀ ତିମିରସୁ ତିରୁମଲ୍ଲଙ୍କୁ ତାଙ୍କ ମୁକୁଟ ପାଦତଳେ ସମର୍ପଣ କରିଦେବାକୁ ନିର୍ଦ୍ଦେଶ ଦେଇଛନ୍ତି । ମାତ୍ର ତିରୁମଲ୍ଲଙ୍କ ବୀରୋଚିତ ବାଣୀ – ‘‘ଉତ୍କଳ ମହାରାଜାଙ୍କର ମୁକୁଟ ଦସ୍ୟୁ ଆତତାୟୀ ପାଖରେ ସମର୍ପଣ କରିପାରିବି ନାହିଁ ।’’

ଘାତକର ଖଡ୍ଗରେ ତିରୁମଲ୍ଲଙ୍କ ଗଣ୍ଡିରୁ ମୁଣ୍ଡ ଅଲଗା ହୋଇଯାଇଛି ।

ଉଦୟଗିରିର କୋଣ୍ଡାବିଡୁ ଦୁର୍ଗ ଉପରେ ଆକ୍ରମଣ ହେଉଥିବାବେଳେ ଉତ୍କଳ ରାଜକୁମାର ବୀରଭଦ୍ର ବିଜୟନଗର ସୈନ୍ୟମାନଙ୍କ ମଧ୍ୟରେ ପଶି ଅତି ବୀରତ୍ୱ ସହକାରେ ଯୁଦ୍ଧ କରିଛନ୍ତି । ତାଙ୍କର ବୀରତ୍ୱ ଓ ସାହସକୁ କୃଷ୍ଣଦେବରାୟ ମଧ୍ୟ ପ୍ରଶଂସା ନ କରି ରହିପାରି ନାହାନ୍ତି । ବୀରଭଦ୍ରଙ୍କ ସ୍ୱାଭିମାନକୁ ଅପମାନିତ କରିବାପାଇଁ ମନ୍ତ୍ରୀ ତିମିରସୁ ଉଦ୍ୟମ କରିଛନ୍ତି ଓ ବୀରଭଦ୍ରଙ୍କୁ ଜଣେ ସାଧାରଣ ସୈନ୍ୟ ସହ ଲଢ଼େଇ କରିବାକୁ ବାଧ୍ୟ କରିଛନ୍ତି ।

ବୀରଭଦ୍ର ଉତ୍ତର ଦେଇଛନ୍ତି – ‘‘ମୋର ଦେହ ହୋଇପାରିଥାଏ ଆଖଡ଼ାରେ ବନ୍ଦୀ, ମୋର ଅହଙ୍କାର, ମୋର ଆତ୍ମା ତଥାପି ଅବିଜିତ ।’’ ବୀରଭଦ୍ର ଉନ୍ମୁକ୍ତ ତରବାରି ବିଦ୍ଧ କରିଛନ୍ତି ନିଜ ଛାତିରେ ।

ସେହିପରି କନ୍ୟା ଜଗନ୍ମୋହିନୀ । ରୂପରେ ସେ ଜଗନ୍ମୋହିନୀ, କଳାର ପୂଜାରିଣୀ ରୂପେ ମଧ୍ୟ ଅନନ୍ୟା । ପ୍ରଥମ ପର୍ଯ୍ୟାୟରେ ତାଙ୍କ ହୃଦୟରେ ନାରୀତ୍ୱ ଗୁଞ୍ଜରିତ ହୋଇଛି । ସେ କୃଷ୍ଣଦେବରାୟଙ୍କ ଚିତ୍ରପଟ ଦେଖିଲା ଦିନୁ ମନେ ମନେ ତାଙ୍କ ପାଖେ ନିଜକୁ ସମର୍ପଣ କରିଦେଇଛନ୍ତି । ତାଙ୍କୁ ସ୍ୱାମୀରୂପେ ପାଇଲାପରେ କିନ୍ତୁ ତାଙ୍କ ହୃଦୟରେ ରାଜକନ୍ୟାର ସ୍ୱାଭିମାନ ଉଦ୍‌ବେଳିତ ହୋଇଉଠିଛି । ବାସର ରାତ୍ରିରେ ସେ ଚିତ୍କାର କରିଛନ୍ତି –

‘‘ମୋତେ ସ୍ପର୍ଶ କରିବେ ନାହିଁ ନରପତି କୃଷ୍ଣଦେବରାୟ × × × ମୁଁ ଉତ୍କଳର ରାଜନନ୍ଦିନୀ । ଦେବଦାସୀ ଚେନ୍ନା ସହିତ ଗୋଟିଏ ଅନ୍ତଃପୁରରେ ରହିବା ମୋ ପକ୍ଷରେ ଅସମ୍ଭବ ...।’’ ଆଲୋଚକଙ୍କ ମତରେ ଏହା ନିବେଦିତାର ବାଣୀ ନୁହେଁ, ସ୍ୱାଭିମାନର ମନ୍ଦ୍ର ନିନାଦ ।’’

କୋଣ୍ଡାଭିଡୁ, କୋଣ୍ଡାପଲ୍ଲୀ ପରି ଦୁର୍ଗ ସବୁର ରକ୍ଷାପାଇଁ ଓଡ଼ିଆ ପାଇକମାନେ ଅନାହାରରେ ରହି ମଧ୍ୟ କୃଷ୍ଣଦେବରାୟଙ୍କ ବିରୋଧରେ ଲଢ଼ିଥିଲେ । ପୃଥିବୀ ଇତିହାସରେ ତା’ର ତୁଳନା ନାହିଁ ବୋଲି ଔପନ୍ୟାସିକ ମତ ଦେଇଛନ୍ତି ।

ଜୀବନର ଶେଷ ପରିଣତିରେ ସର୍ବସ୍ୱ ହରାଇଥିବା ସମ୍ରାଟ୍ ପ୍ରତାପରୁଦ୍ରଦେବ ଆଧ୍ୟାତ୍ମିକ ଆଶ୍ରୟ ଖୋଜିଛନ୍ତି । ତେଣୁ ଶ୍ରୀଚୈତନ୍ୟଙ୍କ ଆଶ୍ରିତ ହେବା ନିନ୍ଦନୀୟ ହୋଇ ନ ପାରେ । ବରଂ ଏହା ଉତ୍କଳୀୟ ଆଧ୍ୟାତ୍ମିକ ପରମ୍ପରାର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ । ଆଲୋଚକ ଅସିତ କବିଙ୍କ ମତରେ – ''ତେଣୁ 'କୃଷ୍ଣାବେଣୀର ସନ୍ଧ୍ୟା' ସତେ ଯେମିତି ଉତ୍କଳର ଶେଷ ଜାତୀୟ ସ୍ୱାଭିମାନର ଲଳିତ ରୂପ ।''

**ଆଜୀବକର ଅଟ୍ଟହାସ୍ୟ**

'ଆଜୀବକର ଅଟ୍ଟହାସ୍ୟ' ଏକ ଐତିହାସିକ ଉପନ୍ୟାସ । ଏହା ବୌଦ୍ଧଧର୍ମର ଅବକ୍ଷୟ ସମୟର ଇତିହାସକୁ ନେଇ ରଚିତ ।

ବୁଦ୍ଧଦେବଙ୍କର ମହାନିର୍ବାଣ ପରେ ବୌଦ୍ଧଧର୍ମର ଅବକ୍ଷୟ ଓ ବିପର୍ଯ୍ୟୟ ଘଟିଛି । କାଳକ୍ରମେ ବୌଦ୍ଧ ସଂଘରେ ଶୀଳ, ସଂଯମ, ଶୃଙ୍ଖଳା ଆସ୍ତେ ଆସ୍ତେ ପରିବର୍ତ୍ତିତ ରୂପ ନେଇଛି । ସେସବୁ ସ୍ଥାନରେ ତନ୍ତ୍ର, ମୈଥୁନ, ଯୌନସାଧନା ଅନୁପ୍ରବେଶ କରିଛି । ଔପନ୍ୟାସିକ କହିବାକୁ ଚାହିଁଛନ୍ତି ଯେ ପ୍ରକୃତିର ତାଡ଼ନା ଆଗରେ ସମସ୍ତ ଶୀଳ, ଶୃଙ୍ଖଳା ବା ସଦାଚାରର କୌଣସି ମାନେ ନାହିଁ । ସଂସାରର ପାର୍ଥିବତା ହେଉଛି ଅସଲ କଥା । ନିର୍ବାଣ ତା'ର ସ୍ୱଭାବ-ବିରୁଦ୍ଧ ।

ବୈଶାଳୀ ଉପକଣ୍ଠର ମହାବନବିହାରରୁ ଆଚାର୍ଯ୍ୟ କାଶ୍ୟପଙ୍କଠାରୁ ବ୍ରହ୍ମଦଣ୍ଡ ପାଇ ବିତାଡ଼ିତ ହୋଇଛନ୍ତି ଉପନନ୍ଦ ଓ କ୍ଷେମା । ସେମାନେ ନିର୍ବିକାର ଭାବେ ଏହାକୁ ଗ୍ରହଣ କରିଛନ୍ତି । ଏହାପରେ ମୋକ୍ଷ ରାସ୍ତାରୁ ବୁଲି ଚାଲିଛନ୍ତି ମୁକ୍ତି ପଥରେ । ଏ ମୁକ୍ତି ହେଉଛି ବୌଦ୍ଧ ସଂଘର ନିୟମାବଦ୍ଧ ପରିବେଶରୁ ମୁକ୍ତି । କଠୋର ଅନୁଶାସନରୁ ମୁକ୍ତି । କାଳକ୍ରମେ ସେମାନଙ୍କ ସଂଖ୍ୟା ଏତେ ବୃଦ୍ଧି ପାଇଛି ଯେ ସେମାନେ ରକ୍ଷଣଶୀଳ ସ୍ଥିତିର ଆଚାର୍ଯ୍ୟ କାଶ୍ୟପଙ୍କ ପରି ନୀତିନିଷ୍ଠମାନଙ୍କୁ ସଂଘରୁ ବିତାଡ଼ିତ କରି ବୌଦ୍ଧ ସଂଘକୁ ବିଭକ୍ତ କରିଛନ୍ତି ।

ଉପନନ୍ଦ ଓ କ୍ଷେମା କ୍ରମେ ପାଲଟି ଯାଇଛନ୍ତି ମହାଚାର୍ଯ୍ୟ ଉପନନ୍ଦ ଓ ଭଗବତୀ କ୍ଷେମା । ଯେଉଁ ଆଚାର୍ଯ୍ୟ କାଶ୍ୟପ ଏମାନଙ୍କୁ ବିତାଡ଼ିତ କରିଥିଲେ, ସେ ବିସ୍ମିତ ହୋଇ ଦେଖୁଛନ୍ତି ଏହି ଦୁହିଁଙ୍କି । ଏମାନେ ଆଚାର୍ଯ୍ୟଙ୍କୁ ସମ୍ମାନ ଜଣାଇ କହିଛନ୍ତି – ''ଆପଣଙ୍କୁ ଆମ ମାର୍ଗର ଯାତ୍ରୀ ହେବାକୁ ପଡ଼ିବ । ମଣ୍ଡଳ, ମୁଦ୍ରା, ମନ୍ତ୍ର, ମୈଥୁନ ପ୍ରଭୃତିକୁ ସ୍ୱୀକାର କରିବାକୁ ହେବ । କାଶ୍ୟପ ନୀରବରେ ସେଠାରୁ ଉଠି କ୍ଳାନ୍ତ ପଦରେ ବନ ପଥରେ ଅଲକ୍ଷ୍ୟ ହୋଇଯାଇଛନ୍ତି । କିନ୍ତୁ ତାଙ୍କ ପଛେ ପଛେ ଆଜୀବକର ଅଟ୍ଟହାସ୍ୟ ଲାଗିରହିଛି ।

'ଆଜୀବକର ଅଟ୍ଟହାସ୍ୟ' ଏକ ଐତିହାସିକ ଉପନ୍ୟାସ ହେଲେହେଁ ଏଥିରେ ଲେଖକ ଜୀବନକୁ ସ୍ୱାଭାବିକ ଦୃଷ୍ଟିରେ ଦେଖିଛନ୍ତି । ଜୀବନର ଶାଶ୍ୱତ ରୂପଶ୍ରୀ କେବଳ ନିବୃତ୍ତିରେ ନୁହେଁ, ବରଂ ଅନେକାଂଶରେ ପ୍ରବୃତ୍ତିଦ୍ୱାରା ପରିଚାଳିତ – ଏହି ସତ୍ୟଟି ଏହି ଉପନ୍ୟାସ ସୂଚାଇଦିଏ ।

## ଫଟାମାଟି

'ଫଟାମାଟି' ଔପନ୍ୟାସିକଙ୍କ ସାମ୍ପ୍ରତିକ ସମସ୍ୟା ଆଧାରିତ ଏକ ରାଜନୈତିକ ସାମାଜିକ ଉପନ୍ୟାସ । ଏହା ୧୯୮୮ ମସିହାରେ ରଚିତ ହୋଇଥିଲା । ଔପନ୍ୟାସିକ 'ଭୂମିକା'ରେ ଲେଖିଛନ୍ତି – ''ଆଜିର ଗ୍ରାମ ଜୀବନକୁ ମୁଁ ଯେପରି ଦେଖିଛି ଅତି ବିଶ୍ୱସ୍ତ ଭାବରେ, ଏଥିରେ ମୁଁ ତାହାକୁ କେବଳ ରୂପ ଦେଇଛି ମାତ୍ର !''

ସ୍ୱାଧୀନତା ପରେ ଗ୍ରାମ୍ୟ ସମାଜର, ବିଶେଷତଃ ସାମ୍ପ୍ରତିକ ସମସ୍ୟା ଜର୍ଜରିତ ଗ୍ରାମ୍ୟ ପରିବେଶ ଲେଖକଙ୍କ ଦୃଷ୍ଟିରେ ଫଟାମାଟି ସାଜିଛି । ସମାଜର ସ୍ତରେ ସ୍ତରେ ଅନୀତି, ଅନ୍ୟାୟ, ଲାଞ୍ଛନା, ଉତ୍ପୀଡ଼ନ ଓ ଦୁର୍ଗତିର ଶେଷ ନାହିଁ । ଶିକ୍ଷା ଓ କୃଷି ବହୁ ଦୂରରେ ପଡ଼ିରହିଛି । ଗ୍ରାମର ବୁଦ୍ଧିଜୀବୀ ମଧ୍ୟ ମୂଲ୍ୟବୋଧରହିତ । ସେମାନେ ଗ୍ରାମ୍ୟ ପରିବେଶରେ ଶାନ୍ତି ଓ ସମତାପାଇଁ ଚେଷ୍ଟା କରିବା ପରିବର୍ତ୍ତେ ଏହାର ଦୁର୍ଗତିପାଇଁ ପଥ ପରିଷ୍କାର କରୁଛନ୍ତି । କ୍ଷମତା ରାଜନୀତିରେ ଗ୍ରାମ ଜୀବନ କଳୁଷିତ ହୋଇପଡ଼ିଲାଣି ।

ସହରରେ ବହୁକାଳ ରହି ହୃଷୀକେଶ ଜାଣିପାରି ନ ଥିଲେ ଗ୍ରାମାଞ୍ଚଳର ଏ ପ୍ରକାର ଉକ୍ରଟ ପରିସ୍ଥିତି । ମନେ ମନେ ସେ ଦେଖି ଆସୁଥିଲେ ସବୁଜ କ୍ଷେତ ଆଉ ନିବିଡ଼ ଛାୟାଘେରା ଗ୍ରାମମାନଙ୍କୁ – ଶାନ୍ତି, ସୌହାର୍ଦ୍ଦ୍ୟ ଓ ଭ୍ରାତୃତ୍ୱର ଗୋଟିଏ ଗୋଟିଏ ଦ୍ୱୀପ ପରି । ସେଥିପାଇଁ ଅବସର ଜୀବନରେ ପଲ୍ଲୀ ଗ୍ରାମକୁ ପଳାଇ ଆସିବାପାଇଁ ସେ ଯେପରି ଛାଟିପିଟି ହେଉଥିଲେ ! କିନ୍ତୁ ସ୍ୱପ୍ନ ତାଙ୍କର ଭାଙ୍ଗିଯାଇଛି । ବାସ୍ତବତା ଅଟ୍ଟହାସ୍ୟ କରିଉଠିଛି । ସେ ମନେ କରିଛନ୍ତି ଯେ ଗ୍ରାମ ତୁଳନାରେ ସହର ଆଜି ଅନେକ ପରିମାଣରେ ଉତ୍ତେଜନା ଓ ସଂଘର୍ଷମୁକ୍ତ ।

ସାମ୍ପ୍ରଦାୟିକ ଗ୍ରାମ୍ୟ ଜୀବନର ଉକ୍ରଟ ସମସ୍ୟାଗୁଡ଼ିକର ଚମତ୍କାର ବିବରଣୀ ଉପନ୍ୟାସରେ ଉପସ୍ଥାପନ ଦିଗରେ ଔପନ୍ୟାସିକ ଯେ ସଫଳକାମ ହୋଇଛନ୍ତି, ଏହା ସମସ୍ତେ ସ୍ୱୀକାର କରନ୍ତି ।

## ହଂସଗୀତି

୧୯୭୫ ମସିହାରେ ପ୍ରକାଶିତ 'ହଂସଗୀତି' ସୁରେନ୍ଦ୍ରଙ୍କ ପ୍ରତିଭାର ଏକ ଭିନ୍ନ ଦିଗନ୍ତ । ସ୍ୱାଧୀନତୋତ୍ତର ଭାରତବର୍ଷରେ ଦେଖାଦେଇଥିବା ପ୍ରତାରଣା ଓ ପ୍ରବଞ୍ଚନା, ଅର୍ଥଲିପ୍‌ସା, ସ୍ୱାର୍ଥପରତା, ଶିକ୍ଷାଗତ ଯୋଗ୍ୟତାର ଅସାରତା ଓ ସେଥିପାଇଁ ଆଧୁନିକ ଯୁବଗୋଷ୍ଠୀର ନିଶା ପ୍ରତି ଆସକ୍ତି ଇତ୍ୟାଦି ଏଥିରେ ବର୍ଣ୍ଣିତ ।

ହଂସର ସ୍ୱାଭାବିକ ମରଣ ଯେତେବେଳେ ସନ୍ନିକଟ ହୁଏ ସେତେବେଳେ ସେ କରୁଣ ରବ ସୃଷ୍ଟି କରିଥାଏ । ତାହା ହଂସରବ ନୁହେଁ । ହଂସଗୀତି ତେଣୁ ବିଷଣ୍ଣ ତରୁଣମାନଙ୍କର ମୃତ୍ୟୁ ବା ଧ୍ୱଂସର ପ୍ରତୀକ । ମୋଟାମୋଟି ଭାବେ ଏହା ସାମାଜିକ ଅବକ୍ଷୟ, ପତନ ଓ ଧ୍ୱଂସର ପ୍ରତୀକ । ଔପନ୍ୟାସିକ ଏହି ପ୍ରତୀକଟିକୁ ବୃହତ୍ତର ଅର୍ଥରେ ଭାରତୀୟ ସମାଜଠାରେ ଏବଂ ସୂକ୍ଷ୍ମଭାବେ ମୁଖ୍ୟ ଚରିତ୍ର (ସୁବ୍ରତ)ଠାରେ ଆରୋପ କରିଛନ୍ତି ।

ସୁବ୍ରତ ଦର୍ଶନରେ ଏମ୍.ଏ. ପାସ୍ କରିଛି । ଏହି ଉଚ୍ଚ ଡିଗ୍ରୀକୁ ଧରି ଖୋଜିଛି ଜୀବିକାର୍ଜନପାଇଁ ଖଣ୍ଡେ ଚାକିରି । କିନ୍ତୁ ସେଥିରେ ପ୍ରତାରିତ ହୋଇଛି । ଇଣ୍ଟରଭିଉପାଇଁ ଲାଗିଥିବା ଲମ୍ବା ଧାଡ଼ିରେ ସେ ଯୋଗ ଦେଇଥିଲା । ତା' ପାଳି ପଡ଼ିବା ପୂର୍ବରୁ ଇଣ୍ଟରଭିଉ ଶେଷ ହୋଇଗଲା । ତା' ଭଳି ଅନେକ ପ୍ରତାରିତମାନଙ୍କ ଅନ୍ଧକ୍ରୋଧରେ ବାଣିଜ୍ୟଭବନର କାଚ ଝରକା ଅବଶ୍ୟ ଢେଲାମାଡ଼ ଖାଇ ଭାଙ୍ଗି ଯାଇଥିଲା । ସୁବ୍ରତର ସୁମିତ୍ରା ସହ ଥିଲା ପ୍ରେମ ସମ୍ପର୍କ । ଘନିଷ୍ଠତାସତ୍ତ୍ୱେ ସୁବ୍ରତ କସ୍ମିନ୍‌କାଳେ ସୁମିତ୍ରାଠାରୁ ଈପ୍‌ସିତ ପ୍ରତିଦାନ ପାଇ ନାହିଁ । ହୋଟେଲରେ ସୁମିତ୍ରା ସହିତ ଗୋଟିଏ ରାତ୍ରି ମଧ୍ୟ କଟାଇ ନାହିଁ । କାରଣ ଦେହଭୋଗର ସମ୍ମତି ପାଇ ନ ଥିଲା । ସୁବ୍ରତ ମଧ୍ୟ ପ୍ରତାରିତ ହୋଇଛି ରେଲଓ୍ୱେ ଷ୍ଟେସନ - ଓ୍ୱେଟିଂ ରୁମ୍ ବିଅରର କିଶୋରୀଲାଲ ଦ୍ୱାରା । ଜୀବିକାର୍ଜନର ରାହା ଖୋଜୁ ଖୋଜୁ ସେ କିଶୋରୀଲାଲ ସାହଚର୍ଯ୍ୟରେ ଟ୍ରେନ ଟିକେଟର କଳାବଜାରୀ କରିଛି । ଦେଶର ଅଗଣିତ ବୃଦ୍ଧ, ଅକ୍ଷମ, ନିରୀହ ରେଳଯାତ୍ରୀଙ୍କୁ ଠକିଛି, ଅନ୍ୟକୁ ଠକିବାକୁ ଯାଇ ନିଜେ ଠକି ଯାଇଛି । ଅବଶେଷରେ ସୁବ୍ରତ ପାଇଛି ମୋହନ ଓବରାୟଙ୍କ ଠାରୁ ଜୀବିକା ଅର୍ଜନର ଆଶ୍ୱାସନା । ରୋଜଗାର, କର୍ମସଂସ୍ଥାନ ଓ ଦିଲ୍ଲୀ ସହରରେ ପରିଚୟ - ସବୁ ପାଇଛି । ହେଲେ ଜଳାଞ୍ଜଳି ଦେଇଛି ଜୀବନର ନୀତି, ଆଦର୍ଶ ଓ ଦେଶାତ୍ମବୋଧ । ଦିଲ୍ଲୀ ସହରର ଯୁବଗୋଷ୍ଠୀକୁ ପ୍ରାଣଘାତୀ ନିଶାର ନଷ୍ଟନୀଡ଼କୁ ନେଇଯାଇଛି । ଶେଷରେ ସୁବ୍ରତର ମୃତ୍ୟୁ ହୋଇଛି ।

ହିପ୍‌ପୀବାଦର ଏକ ପ୍ରୟୋଗଧର୍ମୀ ରଚନା ଭାବେ ଉପନ୍ୟାସଟି ଶ୍ଲାଘ୍ୟ ହୋଇଛି । ଅଧିକନ୍ତୁ ନାୟକର ଅନ୍ତର୍ଦ୍ୱନ୍ଦ୍ୱ ଏବଂ ପରିଣତି ଉପନ୍ୟାସଟିକୁ ମାନବବାଦୀ ଯେ କରିପାରିଛି, ଏଥିରେ ସନ୍ଦେହ ନାହିଁ ।

**ସାହିତ୍ୟ ସମୀକ୍ଷା**

କଥାକାର ଭାବେ ସୁରେନ୍ଦ୍ରବାବୁଙ୍କ ସଫଳତା ବ୍ୟତୀତ ଓଡ଼ିଆ ସାହିତ୍ୟ ସମୀକ୍ଷା କ୍ଷେତ୍ରରେ ସେ ନିଜର ପରାକାଷ୍ଠା ଦେଖାଇଛନ୍ତି । ତାଙ୍କର ନିଜର ସମାଲୋଚନାତ୍ମକ ଦୃଷ୍ଟି ରହିଛି । ସାହିତ୍ୟର ଇତିହାସ ରଚନାଠାରୁ ଆରମ୍ଭ କରି ଲେଖକମାନଙ୍କ ସୃଷ୍ଟି ସମ୍ପର୍କରେ ସେ ନିଜର ଦୃଷ୍ଟିକୋଣକୁ ଚମତ୍କାରଭାବେ ଉପସ୍ଥାପିତ କରିଛନ୍ତି ।

ସୁରେନ୍ଦ୍ରବାବୁଙ୍କ ଆଲୋଚନାମୂଳକ ପୁସ୍ତକମାନଙ୍କ ମଧ୍ୟରେ 'ଓଡ଼ିଆ ସାହିତ୍ୟର ଆଦିପର୍ବ', 'ଓଡ଼ିଆ ସାହିତ୍ୟର ମଧ୍ୟପର୍ବ', 'ଓଡ଼ିଆ ସାହିତ୍ୟର କ୍ରମବିକାଶ ବା ଓଡ଼ିଆ ସାହିତ୍ୟର ମଧ୍ୟପର୍ବ ଓ ଉତ୍ତର ମଧ୍ୟପର୍ବ' ପ୍ରଧାନ । ଏହି ପୁସ୍ତକଗୁଡ଼ିକୁ ଓଡ଼ିଆ ସାହିତ୍ୟର ଇତିହାସ କହିଲେ ଯଥାର୍ଥ ହେବ । ସେ ମଧ୍ୟ ଲେଖକମାନଙ୍କ ଜୀବନୀ ଓ କୃତିତ୍ୱକୁ ନେଇ ଆଲୋଚନା କରିଛନ୍ତି । ଏଗୁଡ଼ିକ ମଧ୍ୟରେ ଫକୀରମୋହନ ଓ ଇଂରାଜୀରେ ଦୀନକୃଷ୍ଣ ଦାସ ପ୍ରଧାନ । ତୃତୀୟଟି ହେଲା ସାହିତ୍ୟର ତୁଳନାତ୍ମକ ବିଶ୍ଳେଷଣ । ଏହି ପର୍ଯ୍ୟାୟରେ 'ସୁରେନ୍ଦ୍ର ବିଚିତ୍ରା' ଅନ୍ତର୍ଭୁକ୍ତ ।

**ଓଡ଼ିଆ ସାହିତ୍ୟର ଆଦିପର୍ବ**

ଓଡ଼ିଆ ସାହିତ୍ୟର ପ୍ରାଥମିକ ଉନ୍ମେଷ ବୌଦ୍ଧଗ୍ରନ୍ଥଠାରୁ ସାରଳାଙ୍କ ମହାକାବ୍ୟ 'ମହାଭାରତ' ପର୍ଯ୍ୟନ୍ତ । ଏହା ଗୋଟିଏ ଖଣ୍ଡରେ ପ୍ରକାଶିତ ।

**ଓଡ଼ିଆ ସାହିତ୍ୟର ମଧ୍ୟପର୍ବ**

ସାରଳାଙ୍କ ପରଠାରୁ ଊନବିଂଶ ଶତାବ୍ଦୀର ଶେଷ ଭାଗ ପର୍ଯ୍ୟନ୍ତ । ଏହାକୁ ସେ ମଧ୍ୟପର୍ବ ଓ ଉତ୍ତର ମଧ୍ୟପର୍ବ – ଏହିପରି ଦୁଇ ଭାଗରେ ବିଭକ୍ତ କରିଛନ୍ତି ।

**ଓଡ଼ିଆ ସାହିତ୍ୟର କ୍ରମବିକାଶ**

ଏହା ସାହିତ୍ୟର ଛାତ୍ରମାନଙ୍କପାଇଁ ଉପାଦେୟ ହୋଇଛି । ଏଥିରେ ଓଡ଼ିଆ ସାହିତ୍ୟର ଗତି ଓ ଅଭିବ୍ୟକ୍ତି କିପରି ଘଟିଛି ତାହାହିଁ ଆଲୋଚନା କରିଛନ୍ତି । ପ୍ରାଚୀନ ଓଡ଼ିଆ ସାହିତ୍ୟଠାରୁ ଆରମ୍ଭ କରି ଅତ୍ୟାଧୁନିକ କାଳ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟର ମୂଲ୍ୟାୟନ ଏଥିରେ ହୋଇଛି ।

**ଫକୀରମୋହନ ଓ ଫକୀରମୋହନ ସମୀକ୍ଷା**

'ଫକୀରମୋହନ ସମୀକ୍ଷା' ୧୯୫୫ ମସିହାରେ ରଚିତ । ୧୯୫୦ ମସିହାରେ ରଚିତ 'ଫକୀରମୋହନ'ର ଏହା ଏକ ପରିବର୍ଦ୍ଧିତ ରୂପ ।

'ଫକୀରମୋହନ ସମୀକ୍ଷା'ରେ ଲେଖକ ଫକୀରମୋହନଙ୍କ ଉପନ୍ୟାସର ପୁଙ୍ଖାନୁପୁଙ୍ଖ ଅନୁଶୀଳନ କରିଛନ୍ତି । ଏହା ବ୍ୟତୀତ କ୍ଷୁଦ୍ରଗଳ୍ପ ଓ କବିତା ସମ୍ପର୍କରେ ଯତ୍‌ସାମାନ୍ୟ ଆଲୋଚନା କରିଛନ୍ତି । ଏଥିରେ ଲେଖକ ଫକୀରମୋହନଙ୍କ ରଚନା ଶୈଳୀକୁ ଇଂରେଜ ଔପନ୍ୟାସିକ ଚାର୍ଲ୍‌ସ ଡିକେନ୍‌ସଙ୍କ ସହିତ ତୁଳନା କରିଛନ୍ତି । ଲେଖକଙ୍କ ଦୃଷ୍ଟିରେ ଫକୀରମୋହନ କେବଳ ଓଡ଼ିଆ ଗଦ୍ୟର ଆଦ୍ୟ ପ୍ରବର୍ତ୍ତକ ନୁହନ୍ତି, ସେ ହେଉଛନ୍ତି ତତ୍କାଳୀନ ସମାଜର ଜଣେ ସଂସ୍କାରକ । ସେ ଫକୀରମୋହନଙ୍କୁ ଜଣେ ବିପ୍ଳବୀ ଭାବରେ ପାଠକ ସମ୍ମୁଖରେ ଉପସ୍ଥାପିତ କରିଛନ୍ତି । ଏହି ସମୀକ୍ଷାଟି ଓଡ଼ିଆ ସମାଲୋଚନା ସାହିତ୍ୟର ଏକ ଉଲ୍ଲେଖଯୋଗ୍ୟ କୃତି ।

### ଦୀନକୃଷ୍ଣ ଦାସ

ସୁରେନ୍ଦ୍ରବାବୁ 'ଦୀନକୃଷ୍ଣ ଦାସ' ନାମକ ଏକ ଗ୍ରନ୍ଥ ଇଂରାଜୀରେ ଲେଖିଛନ୍ତି । ଆଠ ଗୋଟି ପରିଚ୍ଛେଦରେ ଦୀନକୃଷ୍ଣଙ୍କ ସାହିତ୍ୟ ସାଧନାର ପୃଷ୍ଠଭୂମି, ତତ୍କାଳୀନ ସାହିତ୍ୟ ଦର୍ଶନର ସ୍ୱରୂପ, ଦୀନକୃଷ୍ଣଙ୍କ ବ୍ୟକ୍ତିତ୍ୱ, 'ରସକଲ୍ଲୋଳ'ର ବୈଶିଷ୍ଟ୍ୟ ଆଦି ଯାବତୀୟ ଜ୍ଞାତବ୍ୟ ବିଷୟ ବା କୃତି ସମୀକ୍ଷକଙ୍କର ପ୍ରତିଭାର ପରିଚୟ ଦିଏ ।

'ରସକଲ୍ଲୋଳ' ସମ୍ବନ୍ଧରେ ସୁରେନ୍ଦ୍ରବାବୁ ମତାମତ ଦେଇଛନ୍ତି – ''ରସକଲ୍ଲୋଳ କବିଙ୍କ ପ୍ରତିଭା ବିଚାରପାଇଁ ଯଥେଷ୍ଟ ଓ କବି ଯଶ ପ୍ରତିଷ୍ଠାର ଏହା ଏକ ଉଚ୍ଚକୋଟୀର କାବ୍ୟ ।''

## ପ୍ରବନ୍ଧ

ଓଡ଼ିଆ ପ୍ରବନ୍ଧ ରଚନା କ୍ଷେତ୍ରରେ ସୁରେନ୍ଦ୍ରବାବୁ ଏକ ଅପୂର୍ବ ବିନ୍ଧାଣି । ତଥ୍ୟ ଓ ତତ୍ତ୍ୱର ସମର୍ଥନକୁ ଅପେକ୍ଷା ନ କରି ସେ ଯେ କୌଣସି ପ୍ରସଙ୍ଗରେ ପ୍ରବନ୍ଧ ଲେଖି ପାଠକକୁ ଚମତ୍କୃତ କରିପାରନ୍ତି । ବେଳେ ବେଳେ ସେ ନିଜେ କିଛି ତତ୍ତ୍ୱର ଅବତାରଣା କରିଛନ୍ତି । ସେଗୁଡ଼ିକ ହେଲା – 'ଉତ୍କଳ ଯୁଗେ ଯୁଗେ' (୧୯୫୯), 'ସୁରେନ୍ଦ୍ର ବିଚିତ୍ରା' (୧୯୬୭), 'ସାହିତ୍ୟ ଓ ସମାଜ' (୧୯୭୯), 'ଶେଷ ପ୍ରଶ୍ନ' (୧ମ) ୧୮୮୯, 'ଶେଷ ପ୍ରଶ୍ନ' (୨ୟ) ୨୦୦୦ ।

### ଉତ୍କଳ ଯୁଗେ ଯୁଗେ

'ଉତ୍କଳ ଯୁଗେ ଯୁଗେ' ପ୍ରାବନ୍ଧିକଙ୍କର ପ୍ରଥମ ସଂଗ୍ରହ । ଏଥିରେ ପନ୍ଦରଟି ପ୍ରବନ୍ଧ ରହିଛି । ସେଗୁଡ଼ିକ ହେଲା ପ୍ରସ୍ତାବନା, ଅଶୋକ ବିଜୟ, ଶିଶୁପାଳଗଡ଼, କଳିଙ୍ଗର ପ୍ରତିଶୋଧ, ବିଜୟ ସିଂହ, ବକୁଳ ମହାଦେବୀ, କେଶରୀ ସନ୍ଧ୍ୟା, ଓଡ଼ିଶାର ମନ୍ଦିର, ଶ୍ରୀଜଗନ୍ନାଥ, କାବେରୀରୁ ଗଙ୍ଗା, ସାହିତ୍ୟ ଓ ସାମ୍ରାଜ୍ୟ, ସନ୍ଧି ଓ ସର୍ତ୍ତ, ଦଳେଇ ବୁଢ଼ା, ଓଡ଼ିଶାରେ ଇଂରେଜ ଶାସନ ଆରମ୍ଭ ଇତ୍ୟାଦି ।

ଏଗୁଡ଼ିକରେ ଉତ୍କଳର ସୀମାସରହଦ, ଧର୍ମ, ସଂସ୍କୃତି, ମନ୍ଦିର, ଦେବତା, ସାହିତ୍ୟ ଓ ବ୍ୟକ୍ତିତ୍ୱ ପ୍ରଭୃତି ବର୍ଣ୍ଣିତ ।

ଗ୍ରନ୍ଥଟି ଇତିହାସ ରଚନା ନୁହେଁ । ଇତିହାସକୁ ସାହିତ୍ୟରେ ମୂର୍ତ୍ତ କରି ଅତୀତକୁ ବର୍ତ୍ତମାନରେ ପହଞ୍ଚାଇ ପ୍ରତିଷ୍ଠା କରାଇବା 'ଉତ୍କଳ ଯୁଗେ ଯୁଗେ' ଗ୍ରନ୍ଥର ବୈଶିଷ୍ଟ୍ୟ ।

### ସାହିତ୍ୟ ଓ ସମାଜ

ସୁରେନ୍ଦ୍ରବାବୁ ନିଜ ସମ୍ପାଦିତ 'କଳିଙ୍ଗ' ଦୈନିକ ସମ୍ପାଦକ ଭାବେ ଏହି ଲେଖାଗୁଡ଼ିକ ପ୍ରକାଶ କରୁଥିଲେ । ଏଥିରେ ସନ୍ନିବିଷ୍ଟ ରଚନାଗୁଡ଼ିକ ଲଘୁ ନିବନ୍ଧ ଗୋତ୍ରୀୟ । ଏଣୁ ସୁଖପାଠ୍ୟ ହୋଇଥିବା ସ୍ୱାଭାବିକ ।

## ଶେଷସ୍ତମ୍ଭ (୧ମ ଓ ୨ୟ)

୧୯୮୪ ମସିହାରୁ ୧୯୯୦ ମସିହା ସୁଦ୍ଧା 'ଶେଷ ସ୍ତମ୍ଭ' ନାମରେ ଏକ ସାପ୍ତାହିକ (ଦୁଇ ସ୍ତମ୍ଭବ୍ୟାପୀ) ନିଜ ସମ୍ପାଦିତ 'କଳିଙ୍ଗ'ରେ ପ୍ରାବନ୍ଧିକ ପ୍ରକାଶ କରୁଥିଲେ । ଏଥି ମଧ୍ୟରୁ ୧୯୯ଟି ସଂକଳିତ ହୋଇଛି ଦୁଇଟି ଖଣ୍ଡରେ । ମୋଟାମୋଟି ଭାବେ ସେଗୁଡ଼ିକ ସାହିତ୍ୟ, ସଂସ୍କୃତି, ଇତିହାସ, ଧର୍ମ, ରାଜନୀତି, ଦର୍ଶନ ଓ ବ୍ୟକ୍ତିଗତ ଅନୁଭୂତି ଉପରେ ବର୍ଣ୍ଣିତ । ଏଗୁଡ଼ିକରେ ଲେଖକଙ୍କର ପ୍ରଜ୍ଞା, ଅଭିଜ୍ଞତା ଓ ଉପଲବ୍ଧିର ନିର୍ଯ୍ୟାସ ଥିବାରୁ ଏହା ପାଠକର ଚିତ୍ତକୁ ପରିପୁଷ୍ଟ କରେ । ସୁରେନ୍ଦ୍ରବାବୁ ଯେ ବିଶିଷ୍ଟ ପ୍ରାବନ୍ଧିକ ମାନ୍ୟତାପ୍ରାପ୍ତ, ତାହା ଏଥିରୁ ଜଣାଯାଏ ।

## ସୁରେନ୍ଦ୍ର ବିଚିତ୍ରାର ରମ୍ୟରଚନା

'ରମ୍ୟ ରଚନା'ର ଉଦ୍ଦେଶ୍ୟ ସମ୍ପର୍କରେ ଲେଖକ 'ଓଡ଼ିଆ ସାହିତ୍ୟର କ୍ରମ ବିକାଶ'ରେ କହିଛନ୍ତି – ''ପ୍ରବନ୍ଧର ଗୁରୁଗାମ୍ଭୀର୍ଯ୍ୟ ବର୍ଜିତ ଲଘୁ ରସାଶ୍ରିତ କିନ୍ତୁ ଭାବଦ୍ୟୋତକ ଚିନ୍ତାରାଜିର ଶିଥିଳ ଚଟୁଳ ବିବରଣ ସାଧାରଣତଃ ରମ୍ୟରଚନା ରୂପେ ଭାରତୀୟ ସାହିତ୍ୟ ସମାଲୋଚନାର ପରିମଣ୍ଡଳରେ ଗୃହୀତ ହୋଇ ରହିଅଛି । ରମ୍ୟ ରଚନାରେ ପ୍ରବନ୍ଧର ଗୁରୁ-ଗାମ୍ଭୀର୍ଯ୍ୟ ନ ଥିଲେ ବି ଭାବ-ଗାମ୍ଭୀର୍ଯ୍ୟ ପ୍ରକାଶ ପାଇଥାଏ ।''

କଥାକାର ସୁରେନ୍ଦ୍ର ମହାନ୍ତିଙ୍କ ବିଚିତ୍ରା ସଙ୍କଳନଟିରେ 'ଓଡ଼ିଆର ନିଦ', 'କାଗଜ ଡଙ୍ଗା', 'ପ୍ରଥମାଷ୍ଟମୀ', 'ମୟୂର', 'ମହିଷାସୁର ବଧ' ପ୍ରଭୃତି ୧୬ଗୋଟି ରମ୍ୟରଚନା ସ୍ଥାନିତ ହୋଇଅଛି । 'ଓଡ଼ିଆର ନିଦ' ଉକ୍ତିରେ ଲେଖକ ଚଟୁଳ ବ୍ୟଞ୍ଜନା 'ଭୋକେ ଓଡ଼ିଆ ନିଦ ଯାଏ' ବ୍ୟବହାର କରି ଓଡ଼ିଆମାନଙ୍କର କର୍ମବିମୁଖତା ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି । 'କାଗଜ ଡଙ୍ଗା'ରେ ଚାହିଁଛନ୍ତି ଉତ୍କଳର ନୌବାଣିଜ୍ୟ ସଂସ୍କୃତିର ସ୍ମୃତିକୁ ଉଜ୍ଜୀବିତ କରିବାପାଇଁ । ବୋଇତ ବନ୍ଦାଣ, ବାଲିଯାତ୍ରା ପ୍ରଭୃତି କିପରି ଅନ୍ତଃସାରଶୂନ୍ୟ ତାହା ଦର୍ଶାଇଛନ୍ତି । 'ପ୍ରଥମାଷ୍ଟମୀ'ର ତିଥି ଓ ତତ୍ତ୍ୱକୁ ଆଧାର କରି ଲେଖକ ସୂଚାଇଛନ୍ତି ଯେ ପ୍ରକୃତି ସହିତ ଏକ ନିବିଡ଼ ଆନ୍ତରିକତାରେ କୃଷିପ୍ରଧାନ ସମାଜର ଏ ସଂସ୍କୃତି ହୋଇଛି ସ୍ନିଗ୍ଧ, ଅମଳିନ ଓ ଉଜ୍ଜ୍ୱଳ । ସଭ୍ୟତାର ଧୂଳିରେ ତାହା ମଳିନ ଏଯାବତ୍ ପଡ଼ି ନାହିଁ । 'ମୟୂର' ରଚନାରେ ଏହାକୁ ଜାତୀୟ ପକ୍ଷୀ ଭାବେ ସ୍ୱୀକୃତି ଦେବାର ପୃଷ୍ଠଭୂମିରେ କେଉଁ ବିଚାର ଥିଲା ବୋଲି ପ୍ରଶ୍ନ କରିଛନ୍ତି । 'ମହିଷାସୁର ବଧ' ରଚନାରେ ଇତିହାସ ଓ ପୁରାଣ ବିଷୟକ ଅନୁଧ୍ୟାନରେ ଆମର ଉଦାସୀନତାକୁ ସମାଲୋଚନା କରିଛନ୍ତି । 'ଯନ୍ତ୍ରର କ୍ଷୁଧା' ହେଉଛି ସଂସ୍କୃତିବିହୀନ ସାଂସ୍କୃତିକ ସମାରୋହ ପ୍ରତି ଆକ୍ଷେପୋକ୍ତି । 'ଚକ୍ରାନ୍ତ' ସେହିପରି ଏକ ସୁନ୍ଦର ରଚନା । ମାନବର ପାଶବିକ ପ୍ରବୃତ୍ତି 'ଚରିତ୍ର ସଂହାର' ଯେ ପଶୁଠାରୁ ଅଧମ, ତାହାହିଁ ଉପସ୍ଥାପିତ ହୋଇଛି । 'ମେଦବହୁଳ'

ଶୀର୍ଷକ ରଚନାରେ ଲେଖକ ଜର୍ମାନ ପ୍ରଭୃତି ଦେଶରେ ନେତାମାନଙ୍କ ମେଦ ବୃଦ୍ଧି ଅସ୍ୱାଭାବିକ ଭାବେ ହେଉଥିବା କଥା ହାସ୍ୟୋଦ୍ଦୀପକଭାବେ ବର୍ଣ୍ଣନା କରିଛନ୍ତି । 'କଫି ହାଉସ' ରଚନାରେ ଲେଖକ ଦର୍ଶାଇଛନ୍ତି ଯେ ସପ୍ତଦଶ ଶତାବ୍ଦୀରେ ଲଣ୍ଡନର କଫିହାଉସଗୁଡ଼ିକ କାବ୍ୟ ଓ ସାହିତ୍ୟ ରଚନାର ପ୍ରେରଣାର ଉତ୍ସ ହୋଇଥିଲାବେଳେ ଏବେ ଭାରତରେ କେବଳ ଉତ୍ତେଜକ ପାନୀୟ ସେବନ ସ୍ଥଳୀରେ ପରିଣତ ହୋଇଛି । ଆନ୍ତର୍ଜାତିକ ପ୍ରେରଣା କିନ୍ତୁ ଫିଟୁ ନାହିଁ । 'ପଙ୍କ ଓ ପଙ୍କଜ' ରଚନାରେ ସେ କହିଛନ୍ତି ଯେ ବୈଷ୍ଣବ ପାଣିଙ୍କ ବୃତ୍ତି ଓ ଚରିତ୍ର ହେଉଛି ପଙ୍କ । କିନ୍ତୁ ତାଙ୍କ କବିତ୍ୱକୁ ପଙ୍କଜର ସ୍ଥାନ ଦେଇ କହିଛନ୍ତି ଯେ ପଙ୍କଜର ସୌରଭ ଓ ଶୁଭ୍ରତା ଆମର କାମ୍ୟ । ତାହାର ନେପଥ୍ୟରେ ଥିବା କର୍ଦ୍ଦମକୁ କେବଳ ଶୂକର ଅଥବା ମହିଷମାନେ ଆଲୋଡ଼ିତ କରିଥାନ୍ତି । 'ଗୋଲାପ ଓ ପିକଦାନି' ରଚନାରେ ମଧୁବାବୁଙ୍କ ଜୀବନ ଚିତ୍ରର ବୈଶିଷ୍ଟ୍ୟ ପ୍ରତିପାଦିତ ହୋଇଛି । ଦିନେ ଜଣେ ମାଳୀ ମଧୁବାବୁଙ୍କ ପିକଦାନିରେ ସଜ ଗୋଲାପ ଫୁଲ ରଖିଦେଇଥିଲେ । ତାହା ମଧୁବାବୁଙ୍କ ଫୁଲଦାନି ବୋଲି ସେହି ମାଳୀଟି ମଧୁବାବୁଙ୍କ ଜଣେ ଅନୁଗତକୁ କହିଲେ । ମଧୁବାବୁଙ୍କୁ ଏହି କଥା ଅନୁଗତ ଜଣକ ପଚାରିବାରୁ ସେ ସ୍ମିତ ହସି କହିଲେ ଯେ ଓଡ଼ିଶାରେ ଯାହା ପିକଦାନି, ୟୁରୋପ ବଜାରରେ ତାହା ମୂଲ୍ୟବାନ୍ ଫୁଲଦାନି । ଓଡ଼ିଆ ଜାତି ଫୁଲଦାନିକୁ ଯେ ପିକଦାନି କରେ, ସେହି ହେଲା ଦୁର୍ଭାଗ୍ୟ । ଏହା କଥାକୁ ଆଧାର କରି ଲେଖକ କହନ୍ତି, ''ଅସାଧାରଣର ସ୍ପର୍ଶ ତୁଚ୍ଛକୁ ମହନୀୟ କରେ ।'' ଓଡ଼ିଆର ପିକଦାନିକୁ ଫୁଲଦାନିରେ ପରିଚିତ କରିବାର ନେତୃତ୍ୱ କେବଳ ମଧୁବାବୁଙ୍କର ଥିଲା ବୋଲି ଲେଖକଙ୍କର ମତ । ସାହିତ୍ୟ ଓ ସାହିତ୍ୟିକ ସମାଲୋଚନାର ପୃଷ୍ଠଭୂମିରେ ଲେଖକଙ୍କ ଏକ ରମ୍ୟରଚନା 'ଅଫିମର ଫୁଲ' । ରାଧାନାଥଙ୍କ 'ପାର୍ବତୀ' କାବ୍ୟ, ଫକୀରମୋହନଙ୍କ 'ଆତ୍ମଚରିତ'ର ଶୁଦ୍ଧତା ବା ଅଶୁଦ୍ଧତା ଉପରେ ନଜର ନ ଦେଇ ସେମାନଙ୍କର ସାହିତ୍ୟର ଆକର୍ଷଣୀୟ ଦିଗକୁ ଖୋଜି ବାହାର କରିବାକୁ ପରାମର୍ଶ ଦେଇଛନ୍ତି । 'ସାହଜାଦୀ', 'ସାଧକ ଓ ସମାଧି' ଲେଖକଙ୍କ ଶେଷ ରଚନା । ୧୯୫୪ ମସିହାରେ ଏହା ରଚିତ ହୋଇଥିଲା । ତାଙ୍କ ମତରେ ଦିଲ୍ଲୀ ସବୁଦିନ ଦିଲ୍ଲୀ ହୋଇ ରହିଯାଇଛି । ଦିଲ୍ଲୀ ସମ୍ରାଟ୍‌ର, ସ୍ତାବକର ମଧ୍ୟ ଦିଲ୍ଲୀ । ସେଠି ସାଧକର ସ୍ଥାନ ନାହିଁ । ସେ ଗର୍ବର ସହିତ କହିଛନ୍ତି ଯେ ସେ ଆସିଛନ୍ତି ଓଡ଼ିଶାରୁ । ଓଡ଼ିଶା ସମ୍ରାଟ୍‌ର ନୁହେଁ, ସାଧକର ହେଉଛି ଓଡ଼ିଶା । ସାଧକ ଅପେକ୍ଷା ସାଧନା ସେଠି ବଡ଼ । ଲେଖକ ଉନବିଂଶ ଶତାବ୍ଦୀର ପ୍ରସିଦ୍ଧ ଉର୍ଦ୍ଦୁ କବି ମୀର୍ଜା ଗାଲିବଙ୍କ କବରକୁ ପୁଷ୍ପ ଗୁଚ୍ଛ ଦେବାକୁ ଯାଇଥିଲେ । ମାତ୍ର ସମାଧି ଖୋଜି ପାଇ ନ ଥିଲେ । ତା'ର କାରଣ ଗାଲିବ ଚାହିଁଥିଲେ ଏକ ଦୀନ ଜୀବନ ଓ ଅଶ୍ରୁହୀନ ମରଣ ।

ଲେଖଙ୍କର ରମ୍ୟରଚନାଗୁଡ଼ିକ ଓଡ଼ିଆ ସାହିତ୍ୟରେ ଏକ ଉଲ୍ଲେଖଯୋଗ୍ୟ ସ୍ଥାନ ଅଧିକାର କରେ । ଉପନ୍ୟାସଶୈଳୀ, ଭାବର ଗଭୀରତା, ବ୍ୟଙ୍ଗ-ବିଦ୍ରୂପ ଓ ଶ୍ଳେଷୋକ୍ତିର ବିବିଧତା, ସର୍ବୋପରି ଶବ୍ଦର ଯାଦୁକରୀ ସଂଯୋଜନର ଅପୂର୍ବ ସମନ୍ୱୟ ଭିତରେ ସେଗୁଡ଼ିକ ରସୋତ୍ତୀର୍ଣ୍ଣ ହୋଇପାରିଛି । ଏହାକୁ ରମ୍ୟ-ସମାଲୋଚନାର ଗନ୍ତାଘର କହିଲେ ଅତ୍ୟୁକ୍ତି ହେବ ନାହିଁ ।

## ନାଟକ

**ବାପୁ**

ଗାନ୍ଧୀ ଶତବାର୍ଷିକୀ ଉତ୍ସବ ପାଳନ ନିମନ୍ତେ ଅଲ୍-ଇଣ୍ଡିଆ ରେଡ଼ିଓରେ ୧୯୬୯ ମସିହା ଫେବ୍ରୁଆରୀ ଠାରୁ ୧୯୭୦ ମସିହା ଫେବ୍ରୁଆରୀ ପର୍ଯ୍ୟନ୍ତ ବାପୁ ନାଟକ ଧାରାବାହିକ ଭାବେ ପ୍ରତି ମାସର ଶେଷ ଶୁକ୍ରବାର ଦିନ ପ୍ରସାରିତ ହୋଇ ଶ୍ରୋତାମାନଙ୍କୁ ମୁଗ୍ଧ କରିଥିଲା । ଏହାର ବୈଶିଷ୍ଟ୍ୟ ହେଉଛି 'ବାପୁ' ନାଟକଟି ମହାନ୍ ଔପନ୍ୟାସିକ-ଗାଳ୍ପିକ ସୁରେନ୍ଦ୍ର ମହାନ୍ତିଙ୍କଦ୍ୱାରା ରଚିତ ହୋଇଥିଲା ।

'ବାପୁ' ନାଟକଟି ବାରଟି ପର୍ଯ୍ୟାୟରେ ବିଭକ୍ତ । ସେଗୁଡ଼ିକ ହେଲା ନବ ପ୍ରଭାତ, ଅରଣ୍ୟର ନିଦ୍ରାଭଙ୍ଗ, ଅପରାଜିତ, ନୀଳ ଜାଗରଣ, ଆଗ୍ନେୟ ଅଭିଷେକ, ଚରୈବତି ଚରୈବତି, ପଞ୍ଚନଦୀର ଆହ୍ୱାନ, ଭଗ୍ନଦୂତ, ହରିଜନ, କୁରୁକ୍ଷେତ୍ର, ଭାରତଛାଡ଼ ଓ ହା ରାମ । ଏହି ନାଟକରେ ସୁରେନ୍ଦ୍ରବାବୁ ଜାତିର ପିତାଙ୍କର ପୂର୍ଣ୍ଣାଙ୍ଗ ଜୀବନକୁ ଶ୍ରୋତାମାନଙ୍କ ମଧ୍ୟରେ ପରିବେଷଣ କରାଇଛନ୍ତି । ନାଟକ ରଚନାର ସର୍ତ୍ତ ଅନୁଯାୟୀ ଗାନ୍ଧୀ କୁତ୍ରାପି ଏକ ଚରିତ୍ର ଭାବେ ଶ୍ରୋତାମାନଙ୍କ ସମ୍ମୁଖକୁ ଆସି ନାହାନ୍ତି । ଏପରିକି ଗାନ୍ଧୀ ସମଗ୍ର ନାଟକରେ କେଉଁଠି ନିଜ ତୁଣ୍ଡ ଖୋଲି ନାହାନ୍ତି । ପରୋକ୍ଷ ଭାବରେ ତାଙ୍କ ବକ୍ତବ୍ୟ ଉପସ୍ଥାପିତ ହୋଇଛି । ନାଟକରେ ଘଟଣାଗୁଡ଼ିକର ଧାରାବାହିକତା ରକ୍ଷା କରାଯାଇଛି । ନାଟ୍ୟରୂପ ଦେବାରେ ଭାବପ୍ରବଣତା ବା ଆବେଗର ସ୍ଫୁରଣ ନାହିଁ । କେବଳ ରେଡ଼ିଓ ନାଟକ ହୋଇଥିବାରୁ ଭାଷା ପ୍ରୟୋଗ ସମ୍ପର୍କୀୟ ସ୍ୱାଧୀନତା ପାଇଛନ୍ତି । ଧାରାବାହିକତା ରକ୍ଷା ପାଇଁ ସେ ସୂତ୍ରଧର ଭଳି ଏକ ଚରିତ୍ର ସୃଷ୍ଟି କରିଛନ୍ତି ।

ନାଟକର ଶେଷ ଅଧ୍ୟାୟ 'ହା ରାମ' । ୧୯୪୮ ମସିହା ଜାନୁଆରୀ ମାସ ୩୦ ତାରିଖରେ ଆତତାୟୀର ଗୁଳିରେ ଗାନ୍ଧୀଙ୍କର ନିଧନ ହୋଇଛି । ଚିର ବିଶ୍ରାମ ନେଇଛନ୍ତି 'ବାପୁ' । କିନ୍ତୁ ନାଟକ ସରିବାପରେ ଗାନ୍ଧୀଙ୍କ ଜୀବନୀ ସରି ନାହିଁ । ସେ ହୋଇଯାଇଛନ୍ତି ମାନବଜାତିର ପ୍ରେରଣାର ଉତ୍ସ । ଆଲୋକର ପଥପ୍ରଦର୍ଶକ । ସୁରେନ୍ଦ୍ରବାବୁଙ୍କ ଭାଷାରେ – "ଇତିହାସରେ ଗାନ୍ଧୀ ଏକ ପରାଜୟ ନୁହନ୍ତି । ସେ ଏକ ଆହ୍ୱାନ – ମନଷ୍ୟର ଆତ୍ମା ଓ ବିବେକକୁ । ସେ ଆହ୍ୱାନ ଚିରନ୍ତନ ।"

ଆଲୋଚିକା ସଂଘମିତ୍ରା ମିଶ୍ରଙ୍କ ଭାଷାରେ – ସୁରେନ୍ଦ୍ରବାବୁ 'ଏକ ଗୁରୁତ୍ୱପୂର୍ଣ୍ଣ ଐତିହାସିକ ଦାୟିତ୍ୱକୁ ସୁଚାରୁରୂପେ ନିର୍ବାହ କରିଛନ୍ତି । ନିଜର ଅନନ୍ୟ ପ୍ରତିଭାର ପରିବେଷଣପାଇଁ ସେ ଅଧିକ ସୁବର୍ଣ୍ଣ ସୁଯୋଗ ହୁଏତ ପାଇ ନ ଥାନ୍ତେ ।''

**ଏକାଙ୍କିକା**

'ବାପୁ' ନାଟକ ବ୍ୟତୀତ ସୁରେନ୍ଦ୍ରବାବୁ ଲେଖିଛନ୍ତି କେତେକ ଏକାଙ୍କିକା । ସେଗୁଡ଼ିକ ମଧ୍ୟରେ 'ବନ୍ଧି ଜଗବନ୍ଧୁ' (୧୯୫୦), 'ପ୍ରଦୀପ', 'ପୃଥିବୀର ଆଲୋକ' (୧୯୫୩) 'ରାଣୀ ଚନ୍ଦ୍ରିକା' (୧୯୫୫), 'ଯବନିକାର ଅନ୍ତରାଳେ' (୧୯୫୬) ଓ 'ସେନାପତି' (୧୯୬୧) ପ୍ରଭୃତି ପ୍ରଧାନ । 'ପୃଥିବୀର ଆଲୋକ' ଏକାଙ୍କିକାଟି ଏକ ଜୀବନ ଚରିତ୍ର । ଏଥିରେ ଲେଖକ ଜୀବନର ଦୈନ୍ୟ, ଦୁର୍ଦ୍ଦଶା ଓ କାରୁଣ୍ୟ ଚିତ୍ରିତ କରିଛନ୍ତି । ନାୟକ ପ୍ରବୀଣ ପ୍ରକାଶକଙ୍କଠାରୁ ରୟାଲଟି ନ ପାଇ ଫେରିଛନ୍ତି ନିଜର ଛିଣ୍ଡା ଚପଲ ଘୋଷାରି ଘୋଷାରି । ଘରେ ସୁମିତ୍ରା ରୋଗଶଯ୍ୟାରେ । ଲାଞ୍ଛିତ ହୋଇ ମଧ୍ୟ ପ୍ରବୀଣ ଆନନ୍ଦିତ । ସେ ପାଇଛନ୍ତି ତାଙ୍କର ନିଜ ପରିଚୟ, ଲେଖକଙ୍କର ପରିଚୟ । ଲେଖକ ଜୀବନର କାରୁଣ୍ୟ ଭିତରୁ ଜନ୍ମ ନିଏ ଅମୃତମୟ ସୃଷ୍ଟି । ସେଥିପାଇଁ ସମାଜ, ପାଠକ, ପ୍ରକାଶକ ସମସ୍ତଙ୍କ କୁଚକ୍ରାନ୍ତ ମଧ୍ୟରେ ସାହିତ୍ୟ ଓଡ଼ିଶାରେ ବଞ୍ଚିରହିଛି । ବଞ୍ଚି ରହିଥିବ ମଧ୍ୟ ଈଶ୍ୱରଙ୍କ ଆଶୀର୍ବାଦରୁ ।

'ସେନାପତି' ଏକାଙ୍କିକାରେ ଲେଖକ ଫକୀରମୋହନଙ୍କ ଜୀବନ ତଥା ବ୍ୟକ୍ତିତ୍ୱର ବହୁମୁଖୀ ଦିଗ ରୂପାୟିତ କରିଛନ୍ତି । ଫକୀରମୋହନଙ୍କ ପାରିବାରିକ ଜୀବନର ଦୈନ୍ୟତା ଭିତରେ ସାହିତ୍ୟିକ ଜୀବନର ସଫଳତା ଓ କେତେକ କୃତି, ଯଥା –'ଛ'ମାଣ ଆଠ ଗୁଣ୍ଠ'ର ଲୋକପ୍ରିୟତା ପ୍ରଭୃତି ବର୍ଣ୍ଣିତ ।

ଗଳ୍ପ, ଉପନ୍ୟାସ ଭଳି ନାଟକ ବା ଏକାଙ୍କିକା ରଚନାରେ ମଧ୍ୟ ସୁରେନ୍ଦ୍ରବାବୁଙ୍କ ସ୍ୱାତନ୍ତ୍ର୍ୟ ସୁସ୍ପଷ୍ଟ ।

## ଜୀବନୀ

**ଶତାବ୍ଦୀର ସୂର୍ଯ୍ୟ ଓ ଊନବିଂଶ ଶତାବ୍ଦୀ**

ଏହାର ରଚନା କାଳ ୧୯୬୮ରୁ ମାର୍ଚ୍ଚ ୧୯୭୦ । ଏହା ପ୍ରଥମେ ୧୯୭୦ ମସିହାରେ ପ୍ରକାଶ ପାଇଥିଲା । ଊନବିଂଶ ଶତାବ୍ଦୀରେ ଓଡ଼ିଶାର ଜନଜାଗରଣ ଓ ସେଥିରେ ମଧୁସୂଦନଙ୍କ ଭୂମିକା ଏହାର ବିଷୟବସ୍ତୁ । ୧୮୦୩ରୁ ୧୯୦୩ ପର୍ଯ୍ୟନ୍ତ ଦୀର୍ଘ ଏକ ଶତାବ୍ଦୀ କାଳର ଇତିହାସ ମଧୁସୂଦନଙ୍କ ଜୀବନୀ ସୂତ୍ରରେ ଏଥିରେ ଗ୍ରଥିତ ହୋଇଅଛି ।

ଲେଖକ ଦାବି କରିଛନ୍ତି ଯେ 'ଶତାବ୍ଦୀର ସୂର୍ଯ୍ୟ' ପ୍ରକାଶିତ ହେବା ପରେ ଊନବିଂଶ ଶତାବ୍ଦୀର ରାଜନୈତିକ, ସାମାଜିକ, ଅର୍ଥନୈତିକ ଓ ସାଂସ୍କୃତିକ ଇତିହାସ ଉପରେ ଓଡ଼ିଆରେ ବହୁ ଗ୍ରନ୍ଥ ପ୍ରକାଶ ପାଇଥିଲା । ସେହିସବୁ ପୁସ୍ତକଗୁଡ଼ିକର ଭିତ୍ତି ଉପରେ ଅଙ୍କାଯାଇଥିବା ଊନବିଂଶ ଶତାବ୍ଦୀର ଖଣ୍ଡିତ ଚିତ୍ରକୁ ପୂର୍ଣ୍ଣାଙ୍ଗ କରିବାରେ ଏହା ସହାୟକ ହୋଇଛି । ମଧୁବାବୁଙ୍କ ଜୀବନୀ ସମ୍ପର୍କିତ ବହୁ ଅଜ୍ଞାତ ତଥ୍ୟକୁ ଆବିଷ୍କାର କରି ସେଗୁଡ଼ିକୁ ଲୋକଲୋଚନକୁ ଲେଖକ ଆଣିଛନ୍ତି । ଏହା ଫଳରେ ମଧୁବାବୁଙ୍କ ବିରାଟ ଓ ବହୁମୁଖୀ କର୍ମଜୀବନର କଳନା କରିବା ଅନେକ ପରିମାଣରେ ସହଜସାଧ୍ୟ ହୋଇଛି । ସେଥିପାଇଁ କେତେକ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଶ୍ରେଣୀର ଛାତ୍ରମାନେ ଏହାକୁ ସେମାନଙ୍କର ଗବେଷଣା କାର୍ଯ୍ୟରେ ବ୍ୟବହାର କରୁଛନ୍ତି । କେବଳ ଛାତ୍ରମାନେ ନୁହେଁ, ପ୍ରବୀଣ ଅଧ୍ୟାପକମାନେ ଏହାକୁ ଗବେଷଣା ଗ୍ରନ୍ଥ ରୂପେ ଗ୍ରହଣ କରିଥାନ୍ତି ।

କିନ୍ତୁ ପୁସ୍ତକଟିରେ ତଥ୍ୟଗତ ତ୍ରୁଟିବିଚ୍ୟୁତି ଯେ ନ ରହିଛି, ତାହା ନୁହେଁ । ଉଦାହରଣସ୍ୱରୂପ, ଲର୍ଡ଼ ହାର୍ଡିଞ୍ଜ୍ ୧୮୪୪ ମସିହାରେ ଭାଇସରାୟ ଥିବା ତଥ୍ୟ ଭ୍ରମାତ୍ମକ । ୧୮୬୫ ଅଗଷ୍ଟ ମାସରେ 'ଉତ୍କଳ ଦୀପିକା'ର ପ୍ରଥମ ସଂଖ୍ୟା ପ୍ରକାଶ ପାଇଥିବା ଯେଉଁ ତଥ୍ୟ ଲେଖକ ଦେଇଛନ୍ତି, ତାହା ମଧ୍ୟ ଠିକ୍ ନୁହେଁ । 'ଉତ୍କଳ ଦୀପିକା'ର ପ୍ରଥମ ପ୍ରକାଶ କାଳ ୧୮୬୬ ମସିହାରେ । ସେହିପରି ଓଡ଼ିଆ ଭାଷା ଆନ୍ଦୋଳନ କ୍ଷେତ୍ରରେ କେତେକ ତଥ୍ୟଗତ ପ୍ରମାଦ ଦେଖାଯାଏ । କାନ୍ତିଲାଲ ଭଟ୍ଟାଚାର୍ଯ୍ୟଙ୍କ ଲିଖିତ ପୁସ୍ତକର ନାମ 'ଉଡ଼ିୟା ସ୍ୱତନ୍ତ୍ର ଭାଷା ନୁହେଁ, କିନ୍ତୁ ପୁସ୍ତକରେ ନାମ ଅଛି 'ଉଡ଼ିଆ ସ୍ୱତନ୍ତ୍ର ଭାଷା ନୟ' 'ଉତ୍କଳ ହିତୈଷିଣୀ' ଓ 'କଟକ ଷ୍ଟାର'ର ସମ୍ପାଦକଙ୍କ ନାମ ବାଳୀପଦ ବନ୍ଦୋପାଧ୍ୟାୟ ପରିବର୍ତ୍ତେ କାଳୀପଦ ଚାଟାର୍ଜୀ ହୋଇଛି । ସେହିପରି ୧୮୭୮ ମସିହାରେ ପୁରୀର ରାଜା ଦିବ୍ୟସିଂହଦେବଙ୍କୁ ଜଜ୍‌ଙ୍କ ରାୟ ବାହାରିବା ପରେ ଅପିଲର ସୁଯୋଗ ଦିଆ ନ ଯାଇ ହରଣଚାଳ କରି ରାତାରାତି ଗୋଟିଏ ଜାହାଜରେ ଆଣ୍ଡାମାନ ପଠାଇ ଦିଆଯିବାର ଯେଉଁ ତଥ୍ୟ ପରିବେଷିତ ହୋଇଛି, ତାହା ମଧ୍ୟ ସତ୍ୟ ନୁହେଁ ।

ଅବଶ୍ୟ ଉପରୋକ୍ତ ତଥ୍ୟଗତ ତ୍ରୁଟି ସେପରି ଧର୍ତ୍ତବ୍ୟ ନୁହେଁ । ଏଗୁଡ଼ିକର ମଧ୍ୟ ସଂଶୋଧନ କରାଯିବା ସେପରି ଆୟାସସାଧ୍ୟ ନୁହେଁ । ଯେଉଁ ସବୁ ତଥ୍ୟ ଲେଖକ ଦେଇଛନ୍ତି ଓ କଳ୍ପନାର ରଙ୍ଗ ଦେଇ ଊନବିଂଶ ଶତାବ୍ଦୀର ପୃଷ୍ଠପଟ ଉପରେ ମଧୁସୂଦନଙ୍କ ଯେଉଁ ଉଜ୍ଜ୍ୱଳ ଆଲେଖ୍ୟ ଆଙ୍କିଛନ୍ତି, ତାହାହିଁ ହୋଇଉଠିଛି ସାଫଲ୍ୟମଣ୍ଡିତ ।

ଆଲୋଚକଙ୍କ ଭାଷାରେ – ''ତାଙ୍କ ଲେଖନୀ ମୁନର ପୃଷ୍ଠପଟ ଉପରେ ପରିକଳ୍ପିତ ଊନବିଂଶ ଶତାବ୍ଦୀ କେବଳ ରୂପ ପରିଗ୍ରହ କରି ଜୀବନ୍ତ ରୂପେ ପାଠକର ଚକ୍ଷୁ ସମ୍ମୁଖରେ ଉଦ୍‌ଭାସିତ ହୋଇ ନାହିଁ, ମଧୁସୂଦନ ପୁଣି ରକ୍ତ ମାଂସର ଶରୀର ଧାରଣ କରି ସେଇ ରଙ୍ଗମଞ୍ଚ ଉପରେ ସତେ ଯେପରି ଆବିର୍ଭୂତ ହୋଇଛନ୍ତି । ସେହି ହେଉଛି 'ଶତାବ୍ଦୀର ସୂର୍ଯ୍ୟ'ର ସାର୍ଥକତା । ଏହା କେବଳ ଇତିହାସ ହୋଇ ରହି ନାହିଁ , ହୋଇଛି ଏକ ମହାନ୍ ସାହିତ୍ୟକୃତି ।''

**କୁଳବୃଦ୍ଧ**

'ଶତାବ୍ଦୀର ସୂର୍ଯ୍ୟ'ର ରଚନା କାଳ ୧୯୭୦ ମସିହା ଭିତରେ ହୋଇଥିବା ଦୃଷ୍ଟିରୁ ତା'ର ପ୍ରାୟ ଆଠ ବର୍ଷ ପରେ ସୁରେନ୍ଦ୍ରବାବୁ 'କୁଳବୃଦ୍ଧ' ରଚନା କଲେ । ତାହା ଶେଷ ହୋଇଥିଲା ୧୯୭୮ ମସିହାରେ । ୧୯୭୮ ମସିହାରେ ଏହା ମଧ ପୁସ୍ତକାକାରରେ ପ୍ରକାଶ ପାଇଲା । ଏହା ପୂର୍ବରୁ ପ୍ରକାଶିତ ପୁସ୍ତକର ଦୁଇଟି ପରିଚ୍ଛେଦ 'ଆସନ୍ତା କାଲି' ମାସିକ ପତ୍ରିକାରେ ୧୯୭୬ ମସିହା ଜୁନ, ଜୁଲାଇ ଓ ଅଗଷ୍ଟ ଏହିପରି ତିନି ସଂଖ୍ୟାରେ ପ୍ରକାଶିତ ହୋଇଥିଲା ।

୧୮୪୮ରେ ମଧୁସୂଦନଙ୍କ ଜନ୍ମଠାରୁ ୧୯୦୩ ପର୍ଯ୍ୟନ୍ତ ତାଙ୍କ ଜୀବନଚରିତର ଭିତ୍ତିଭୂମି ଉପରେ 'ଶତାବ୍ଦୀର ସୂର୍ଯ୍ୟ' ରଚିତ । ସେହିପରି ୧୯୦୩ରୁ ୧୯୩୪ରେ ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଜୀବନୀ ଉପରେ 'କୁଳବୃଦ୍ଧ' ରଚିତ । ତେଣୁ ଏହାକୁ ମଧୁସୂଦନଙ୍କ ଜୀବନଚରିତର ଦ୍ୱିତୀୟ ଭାଗ ରୂପେ ଗ୍ରହଣ କରାଯାଇପାରେ ।

କୁଳବୃଦ୍ଧକୁ ଏକାନ୍ତଭାବେ ତଥ୍ୟନିଷ୍ଠ କରିବାପାଇଁ ଲେଖକ ଉଦ୍ୟମ କରିଛନ୍ତି । ବହୁ ନୂତନ ତଥ୍ୟ ଏଥିରେ ପ୍ରଦାନ କରିଛନ୍ତି, ଏଥିପାଇଁ ତାଙ୍କୁ ବହୁ ଗବେଷଣା କରିବାପାଇଁ ପଡ଼ିଛି । ଏଥିରେ ମଧୁସୂଦନଙ୍କ ବ୍ୟକ୍ତିତ୍ୱକୁ ନୂତନ ରୂପ ଦେବାପାଇଁ ପ୍ରଚେଷ୍ଟା କରିଥିବାରୁ ସେ ଧନ୍ୟବାଦାର୍ହ ।

ଜୀବନୀରେ ମଧ 'ଶତାବ୍ଦୀର ସୂର୍ଯ୍ୟ' ଭଳି କେତେକ ଗୁରୁତ୍ୱପୂର୍ଣ୍ଣ ଅଭାବ ଓ ତ୍ରୁଟି ପରିଲକ୍ଷିତ ହୁଏ । ବିଶେଷତଃ, ମଧୁସୂଦନଙ୍କ ଗୋପବନ୍ଧୁଙ୍କ ସହିତ ଆଦର୍ଶଗତ ସଂଘର୍ଷ ଥିବା ଦୃଷ୍ଟିରୁ ଲେଖକ ଗୋପବନ୍ଧୁଙ୍କ ପ୍ରତି କିଛିଟା ଅନୁଦାର ମନୋଭାବ ଦେଖାଇଛନ୍ତି । ଲେଖକ ତାଙ୍କ ପ୍ରତି ଅଧିକ ଉଦାର ଓ ସହାନୁଭୂତିଶୀଳ ହେବାର ଆଶା କରାଯାଉଥିଲା । ଏସବୁ ସତ୍ତ୍ୱେ 'କୁଳବୃଦ୍ଧ' ସାଫଲ୍ୟମଣ୍ଡିତ ହୋଇଥିଲା ।

# ଆତ୍ମଜୀବନୀ

## ପଥ ଓ ପୃଥିବୀ

ସୁରେନ୍ଦ୍ରବାବୁଙ୍କ ଲିଖିତ 'ପଥ ଓ ପୃଥିବୀ' ଏକ ଆତ୍ମଜୀବନୀ । ଅବଶ୍ୟ ସେ ଏହାକୁ ଆତ୍ମଜୀବନୀ କହି ନାହାନ୍ତି । ଆତ୍ମଜୀବନୀ ତାଙ୍କ ମତରେ ହେଉଛି ଘଟଣା ପ୍ରବାହର ସ୍ଥୂଳ ପ୍ରାମାଣିକ ବିବରଣୀ । ସେ ଜୀବନର ଘଟଣାବଳୀକୁ 'ଜୀବନ ସ୍ମୃତି' ଭାବେ ଅଭିହିତ କରିଛନ୍ତି । ଏହା ୧୯୯୧ ମସିହାରେ ପ୍ରକାଶିତ ହୋଇଥିଲା ।

ଲେଖକ ତାଙ୍କର ଜୀବନ ସ୍ମୃତିକୁ ତିନି ଭାଗରେ ବିଭକ୍ତ କରିଛନ୍ତି, ଯଥା – ଆଦି, ମଧ୍ୟ ଓ ଉତ୍ତର । ଆଦି ଭାଗରେ ତାଙ୍କର ବାଲ୍ୟକାଳ ଓ ଛାତ୍ରାବସ୍ଥା, ମଧ୍ୟଭାଗରେ ଜଣେ ସାମ୍ବାଦିକରୁ ରାଜନେତା, ସଂଗ୍ରାମ ଓ ସିଦ୍ଧି, ଉତ୍ଥାନପତନ ଓ ସାହିତ୍ୟିକର ଶ୍ରମ ଓ ସାଫଲ୍ୟ ବର୍ଣ୍ଣିତ । ଉତ୍ତର ଭାଗରେ ପାର୍ଲିଆମେଣ୍ଟରେ ସାର୍ଥକତା, ମସ୍କୋ ଓ ପେକିଙ୍ଗ ଯାତ୍ରା, ଓଡ଼ିଆ ସାହିତ୍ୟ ଏକାଡେମୀର ସଭାପତି, ଜୀବନ ଜଞ୍ଜାଳ ଓ ସମ୍ପର୍କ, ସଦିଚ୍ଛା ଆଦିର ବର୍ଣ୍ଣନା ଅଛି ।

ସୁରେନ୍ଦ୍ରବାବୁ ସାରସ୍ୱତ ଜୀବନ ଥିଲା ବର୍ଣ୍ଣାଢ଼୍ୟ ଓ ବହୁମୁଖୀ । ଗଳ୍ପ, ଉପନ୍ୟାସ, ସମାଲେଚନା, ଭ୍ରମଣ କାହାଣୀ, ଜୀବନୀ ଓ ଆତ୍ମଜୀବନୀରେ ତାଙ୍କର ଅଛି ସାର୍ଥକ ଅବଦାନ । ତାଙ୍କ କହିବା ଅନୁଯାୟୀ ସାହିତ୍ୟ ଓ ରାଜନୀତି ତାଙ୍କର ପୃଥିବୀ ହେଲେ ସାମ୍ବାଦିକତା ଥିଲା ତାଙ୍କର ପଥ । ତେଣୁ ପୁସ୍ତକର ନାମକରଣ ଯଥାର୍ଥ ।

ଆଲୋଚକ ଡଃ ଜଗନ୍ନାଥ ଦାସଙ୍କ ଭାଷାରେ –'' 'ପଥ ଓ ପୃଥିବୀ' ସୁରେନ୍ଦ୍ରଙ୍କ ଜୀବନ ଓ କୃତିର ଏକ ଉଜ୍ଜ୍ୱଳ, ସଫଳ, ସମ୍ପୂର୍ଣ୍ଣ ମହାକାବ୍ୟ, ଏକ ସାର୍ଥକ ଜୀବନ ସ୍ମୃତି, ଓଡ଼ିଆ ସାହିତ୍ୟ ଭଣ୍ଡାରର ଏକ ଅମୂଲ୍ୟ ରତ୍ନ ।''

# ଭ୍ରମଣ ସାହିତ୍ୟ

## ପେକିଙ୍ଗ୍ ଡାଏରୀ

୧୯୫୬ ସେପ୍ଟେମ୍ବର-ଅକ୍ଟୋବର ମାସରେ ଭାରତୀୟ ପାର୍ଲିଆମେଣ୍ଟର ଏକ ପ୍ରତିନିଧିଦଳ ଚୀନ ସରକାରଙ୍କ ଆମନ୍ତ୍ରଣକ୍ରମେ ଚୀନ ପରିଭ୍ରମଣରେ ଯାଇଥିଲେ । ସୁରେନ୍ଦ୍ରବାବୁ ରାଜ୍ୟସଭାର ସଦସ୍ୟଭାବେ ଏହି ଦଳରେ ଯାଇଥିଲେ । ୧୯୫୬ ସେପ୍ଟେମ୍ବର ମାସ ୨୮ ତାରିଖରେ କମ୍ୟୁନିଷ୍ଟ ଚୀନରେ ପହଞ୍ଚି ଚାରି ସପ୍ତାହ କାଳ ରହି ଅକ୍ଟୋବର ୨୭ତାରିଖରେ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କଲେ । ସୁରେନ୍ଦ୍ରବାବୁ ନିଜର ଭ୍ରମଣକାଳୀନ ଅନୁଭୂତିକୁ ଏକ ମାର୍ଜିତ ରୂପ ଦେଇଛନ୍ତି 'ପେକିଙ୍ଗ୍ ଡାଏରୀ' ଗ୍ରନ୍ଥରେ ।

ପେକିଙ୍ଗ୍ (ସାମ୍ପ୍ରତିକ ନାମ ବେଇଜିଙ୍ଗ)ରେ ଭାରତୀୟ ପ୍ରତିନିଧି ଦଳକୁ ଶିନ୍‌ଚାଉ ହୋଟେଲରେ ରଖାଯିବାର ବ୍ୟବସ୍ଥା ହୋଇଥିଲା । ସୀମିତ ସମୟ ମଧ୍ୟରେ ସେମାନେ

ଚିୟେନ୍‌ତାନ ପାର୍କ, ୟି-ହେ ୟୁଆନ ଗ୍ରୀଷ୍ମ ପ୍ରାସାଦ, ଉତ୍ତର ଚୀନର ଏକ ଟ୍ରକ କାରଖାନା, ସରକାରୀ ପରିଚାଳିତ ଗୋଟିଏ ଷ୍ଟୁଡ଼ିଓ, ପେକିଙ୍ଗର ପିପୁଲସ୍ କୋର୍ଟ, ଶିଓ ଟେଙ୍ଗ ଗ୍ରାମ, ମାଞ୍ଚୁ ପ୍ରାସାଦ ଆଦି ଦର୍ଶନୀୟ ସ୍ଥାନ ବୁଲି ଦେଖିଥିଲେ । କେତେକ ସ୍ଥାନ ସ୍ୱତନ୍ତ୍ର ଟ୍ରେନରେ ଯାଇଥିଲେ ; ଅବଶିଷ୍ଟ ସ୍ଥାନ ଉଡ଼ାଜାହାଜରେ ଯାଇଥିଲେ ।

'ପେକିଙ୍ଗ୍ ଡାଏରୀ' ସର୍ବମୋଟ ଅଠରଟି ଅଧ୍ୟାୟରେ ବିଭକ୍ତ । ସେହି ଅଧ୍ୟାୟଗୁଡ଼ିକ ହେଲା ପେକିଙ୍ଗ ପଥେ, କମାଣ ଓ କପୋତ, ପେକିଙ୍ଗରେ ଦିନେ ପ୍ରଭୃତି । ଏଗୁଡ଼ିକରେ ଚୀନବାସୀଙ୍କ ସାମାଜିକ, ରାଜନୈତିକ, ଅର୍ଥନୈତିକ, ଐତିହାସିକ, ଶୈଳ୍ପିକ ଓ ବୈଷୟିକ ଜୀବନର ଚିତ୍ର ଦିଆଯାଇଛି । ଲେଖକ ଅନୁଭବ କରିଛନ୍ତି ଯେ ଚୀନର ସାମାଜିକ ବ୍ୟବସ୍ଥା ଅତ୍ୟନ୍ତ କଠୋର । ବ୍ୟକ୍ତିଗତ ମାଲିକାନା ଉଚ୍ଛେଦ ହୋଇଥିବା ଦୃଷ୍ଟିରୁ ଏହାର ପ୍ରତ୍ୟେକ ନାଗରିକ ସମାଜର ସ୍ୱାର୍ଥ ଲାଗି ଦାୟୀ ରହନ୍ତି । ସମୟାନୁବର୍ତ୍ତିତା ଚୀନ ଜନସାଧାରଣଙ୍କ ଏକ ବୈଶିଷ୍ଟ୍ୟ ବୋଲି ଲେଖକଙ୍କର ମତ । ଚୀନବାସୀଙ୍କ ବ୍ୟକ୍ତିଗତ ଜୀବନ ଅତ୍ୟନ୍ତ ଦୁର୍ବିସହ ବୋଲି ସେ ମନେ କରିଛନ୍ତି । ସେ ସେହି ଜୀବନକୁ ଲକ୍ଷ୍ୟ କରି କହିଛନ୍ତି ଯେ ଚୀନରେ ଜୀବନ କେବଳ ଗହମ, ପିଆଜ, ଚାଉଳ, ନେଳୀ ପାଇଜାମା, ନେଳୀ କୋଟ୍ ଆଉ ଆଠ ଘଣ୍ଟା ଖଟଣି । ଜୀବନ କେବଳ 'ରୁଟିକା ସବାଲ' ବୋଲି ସେମାନେ ମନେ କରନ୍ତି । ତେବେ ସେହି ସାମାଜିକ ଜୀବନରେ ଅତିଥିମାନଙ୍କପାଇଁ ସ୍ୱତନ୍ତ୍ର ମର୍ଯ୍ୟାଦା ସେ ଉପଲବ୍‌ଧି କରିଥିଲେ । ରାଜନୈତିକ କ୍ଷେତ୍ରରେ ଲୋକଙ୍କର ପରିଣତ ବୟସରେ କମ୍ୟୁନିଷ୍ଟ ପାର୍ଟି କ୍ୟାଡରରେ ଅନ୍ତର୍ଭୁକ୍ତ ହେବା ଏକମାତ୍ର ଆକାଙ୍‌କ୍ଷା ଓ ଅଭିଳାଷ ଥିବା ଉଲ୍ଲେଖ କରିଛନ୍ତି । ସେ ସ୍ପଷ୍ଟ କହିଛନ୍ତି –

''ଆଦର୍ଶ କମ୍ୟୁନିଷ୍ଟ ହେବା ଛଡ଼ା ଏମାନଙ୍କର (ଚୀନବାସୀ)ଙ୍କର କୌଣସି ରାଜନୈତିକ, ବୌଦ୍ଧିକ ଓ ମାନବିକ ଭବିତବ୍ୟ ନାହିଁ ।'' ଶିଳ୍ପ ବିସ୍ତାର ସମ୍ପର୍କରେ ଲେଖକ ଦର୍ଶାଇଛନ୍ତି ଯେ କମ୍ୟୁନିଷ୍ଟ ଚୀନର ନୂତନ ଧର୍ମ ହେଉଛି ଯନ୍ତ୍ର । ସେମାନଙ୍କର ନୂତନ ଦେବାୟତନ ହେଉଛି କାରଖାନା । ସେମାନଙ୍କର ଦେବତା ହେଉଛନ୍ତି କଳକବ୍‌ଜା । ସେଠାରେ ବ୍ୟକ୍ତିଗତ ଶିଳ୍ପ ନାହିଁ; ସବୁ ରାଷ୍ଟ୍ରାୟତ୍ତ ଶିଳ୍ପକୁ ସମସ୍ତ କଞ୍ଚାମାଲ ସରକାରଙ୍କ ପକ୍ଷରୁ ଯୋଗାଇ ଦିଆଯାଇଥାଏ ଓ ଉତ୍ପନ୍ନ ଦ୍ରବ୍ୟ ସରକାରଙ୍କଦ୍ୱାରା କ୍ରୟ କରାଯାଏ । ତାଙ୍କର ନିଜସ୍ୱ ମତ ହେଲା – ''ରାଷ୍ଟ୍ର ଏଠି କଳ, ବ୍ୟକ୍ତି ସେଥିରେ ନଟ୍ ବୋଲ୍‌ଟ ମାତ୍ର ।''

କୃଷି ସମ୍ପର୍କରେ ଲେଖକ କହିଛନ୍ତି ଯେ କୃଷିକ୍ଷେତ୍ରରେ କର୍ମ କରୁଥିବା ବ୍ୟକ୍ତିମାନଙ୍କ ଜୀବନ ନିର୍ବାହ ଆଦୌ ଭଲ ନୁହେଁ । ସେମାନେ ବର୍ଷସାରା ସମ୍ପୂର୍ଣ୍ଣ ମଜୁରି ପାଇପାରନ୍ତି

ନାହିଁ । ପ୍ରତ୍ୟେକ ଶ୍ରମଜୀବୀ ବର୍ଷକେ ପାଞ୍ଚ ମାସ ବେକାର ରହିଥା'ନ୍ତି । ସୁତରାଂ କୃଷକମାନେ ଅଭାବ ଅନଟନ ଭିତରେ ରହିଥାନ୍ତି । ଚୀନରେ ବେକାର ସମସ୍ୟା ଉତ୍କଟ ବୋଲି ଲେଖକ ମତ ଦେଇଛନ୍ତି । ପରମ୍ପରା ପ୍ରତି ବିଶେଷ ଶ୍ରଦ୍ଧା ଚୀନାମାନଙ୍କ ଜାତୀୟ ଜୀବନର ବୈଶିଷ୍ଟ୍ୟ । ଚୀନ ନୃତ୍ୟ ଓ ଯାତ୍ରାରେ ପାରମ୍ପରିକ କଳା ପରିଦୃଷ୍ଟ ହୁଏ ।

ଚୀନା ନାରୀମାନଙ୍କ ସମ୍ପର୍କରେ ଲେଖକ କହିଛନ୍ତି ଯେ ସେମାନେ ଶ୍ରମରେ ପୁରୁଷମାନଙ୍କ ସମକକ୍ଷ । ସେମାନେ ନାରୀ ଜୀବନର କୋମଳତା ଓ ବ୍ରୀଡ଼ାଭାବକୁ ସମ୍ପୂର୍ଣ୍ଣ ବିସର୍ଜନ ଦେଇ ରାଷ୍ଟ୍ର ଗଠନରେ ନିଜକୁ ନିୟୋଜିତ କରିଥାନ୍ତି ।

ଲେଖକ ମଧ୍ୟ ପ୍ରସଙ୍ଗକ୍ରମେ ଚୀନର ପଞ୍ଚବାର୍ଷିକ ଯୋଜନା, ରୁଷ ସହାୟତାରେ ଚାଲିଥିବା ଆର୍ଥିକ ପୁନର୍ଗଠନ ଓ ନିର୍ମାଣ କାର୍ଯ୍ୟ, ନୃତ୍ୟ, ସଙ୍ଗୀତ, ଯାତ୍ରା, ଜନଜୀବନ ଧାରା, ଶିକ୍ଷା, ବାଣିଜ୍ୟ ପ୍ରଭୃତି ବିଷୟରେ 'ପେକିଙ୍ଗ ଡାଏରୀ'ରେ ଆଲୋକପାତ କରିଛନ୍ତି ।

ସର୍ବୋପରି ଉପସ୍ଥାପନା ଭଙ୍ଗୀ, ବର୍ଣ୍ଣନାଶୈଳୀ, ରୂପକଳ୍ପ, ଭାଷା ପ୍ରୟୋଗ ପ୍ରଭୃତି ଦୃଷ୍ଟିରୁ 'ପେକିଙ୍ଗ ଡାଏରୀ' ଓଡ଼ିଆ ଭ୍ରମଣ ସାହିତ୍ୟରେ ଏକ ସ୍ୱତନ୍ତ୍ର ତଥା ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରେ ।

**ସମାଲୋଚନା**

ସୁରେନ୍ଦ୍ରବାବୁ ଜଣେ ରାଜନୀତିଜ୍ଞ ବ୍ୟକ୍ତି ଥିଲେ । ସେ ତେଣୁ ସ୍ୱାଭାବିକ ଭାବେ ସମାଲୋଚନାର ଶିକାର ହୋଇଛନ୍ତି । ରାଜନୀତିଜ୍ଞ ଭାବେ ସେ ବହୁବାର ଦଳବଦଳ କରିଛନ୍ତି । ସ୍ୱତନ୍ତ୍ର, ଉତ୍କଳକଂଗ୍ରେସ, ଜନତା, କଂଗ୍ରେସ ଇତ୍ୟାଦି ଦେଇ ତାଙ୍କର ରାଜନୈତିକ ଜୀବନ ଧୂସର ହୋଇଉଠିଛି । 'ବାଜି ରାଉତ' ସମ୍ପର୍କରେ ସେ ଯାହା ଲେଖିଥିଲେ, ସେଥିନେଇ ଜୀବିତାବସ୍ଥାରେ ମଧ୍ୟ ବାଦବିସମ୍ବାଦ ଦେଖାଦେଇଥିଲା । କିନ୍ତୁ ତାଙ୍କର ରାଜନୈତିକ ଜୀବନ ତାଙ୍କ ସାହିତ୍ୟ କ୍ଷେତ୍ରକୁ କୌଣସି ପ୍ରକାରେ ପ୍ରଭାବିତ କରିପାରି ନାହିଁ । ତାଙ୍କର ସମସ୍ତ ବ୍ୟକ୍ତିତ୍ୱକୁ ସତେ ଯେମିତି ସାହିତ୍ୟିକ ସତ୍ତା ଆବୋରି ରହିଥିଲା !

**ଦେହାବସାନ**

ସୁରେନ୍ଦ୍ରବାବୁ ଶେଷ ନିଶ୍ୱାସ ତ୍ୟାଗ ପର୍ଯ୍ୟନ୍ତ କର୍ମଚଞ୍ଚଳ ଥିଲେ । ଅବଶ୍ୟ ତାଙ୍କ କହିବା ଅନୁଯାୟୀ ୧୯୮୨ ମସିହା ଶେଷଆଡ଼କୁ ତାଙ୍କର ସ୍ୱାସ୍ଥ୍ୟଭଙ୍ଗ ହୋଇଥିଲା । ପାଦ ଦୁଇଟା ବାଦ ସାଧିବା ଆରମ୍ଭ କରିଦେଇଥିଲେ । ତା' ନ ହୋଇଥିଲେ ସେ ଟ୍ରେନ୍‌ରେ ବୁଲି ବୁଲି ଦିନଗୁଡ଼ିକ କଟାଇଦେଇପାରିଥାନ୍ତେ ବୋଲି ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି । ସେ ଯାହାହେଉ, ସେ 'ସମ୍ବାଦ'ର ସମ୍ପାଦକଭାବେ ୧୯୮୪ ମସିହା

ଅଗଷ୍ଟ ମାସ ୫ ତାରିଖରେ ଯୋଗ ଦେଲେ । ଶେଷ ଆଡ଼କୁ ତାଙ୍କ ହାତ ଅସହଯୋଗ ଆରମ୍ଭ କରିବାକୁ ଲାଗିଲା । ତଥାପି ସେ ନିରସ୍ତ୍ର ହୋଇ ନ ଥିଲେ । ଶାରୀରିକ ଦୁର୍ବଳତା ସତ୍ତ୍ୱେ ସେ 'ସମ୍ବାଦ' ପାଇଁ ନିୟମିତ ଭାବେ ଶେଷସ୍ତମ୍ଭ ଲେଖୁଥିଲେ । ୧୯୯୦ ମସିହା ଡିସେମ୍ବର ମାସ ୨୯ ତାରିଖ ଅପରାହ୍ଣରେ ସୁରେନ୍ଦ୍ରବାବୁ ତାଙ୍କର କନିଷ୍ଠ ପୁତ୍ର ପୁଷ୍ପମିତ୍ରଙ୍କୁ କିଛି ଡାକିଥିଲେ ଓ ସଂଧ୍ୟାରେ ଖବରକାଗଜ ପଢ଼ିଥିଲେ । ଏହାପରେ ସେ ସ୍ୱାଭାବିକ ଭାବେ ଶୋଇବାକୁ ଗଲେ । ପ୍ରାୟ ସାଢ଼େ ବାରଟା ବେଳକୁ ସେ ଛାତିରେ ଯନ୍ତ୍ରଣା ଅନୁଭବ କଲେ । ତାଙ୍କର ପତ୍ନୀ ଓ ପିଲାମାନେ ଉଠିଲେ । ମାତ୍ର ଡାକ୍ତର ଆସିବା ପୂର୍ବରୁ ତାଙ୍କର ପ୍ରାଣବାୟୁ ଉଡ଼ିଗଲା ।

ପ୍ରଖ୍ୟାତ ଔପନ୍ୟାସିକ ବିଭୂତି ପଟ୍ଟନାୟକ ଶୋକ ପ୍ରକାଶ କରି ଲେଖିଥିଲେ - ''ସେ ଥିଲେ ଆଧୁନିକ ଓଡ଼ିଆ ସାହିତ୍ୟର ପିତାମହ ଭୀଷ୍ମ । ଉତ୍ତରାୟଣ ହେବାପୂର୍ବରୁ ଶରଶଯ୍ୟାରୁ ଶବାଧାରକୁ ଯିବାର ବେଳ ଆସିଗଲା କେମିତି ? ଓଡ଼ିଶା ସାହିତ୍ୟାକାଶର ସମୁଜ୍ଜ୍ୱଳ ତାରକାଟି ଲିଭିଗଲା ସିନା, ହେଲେ ତା' ସୃଷ୍ଟିର ସୌରଭ କେବେହେଲେ ଉଡ଼ିଯିବ ନାହିଁ । ସେହି ସୌରଭ ଅନ୍ୟ ସ୍ରଷ୍ଟାମାନଙ୍କ ସୃଷ୍ଟିକୁ ସୁରଭିତ କରିବାପାଇଁ ଯଥେଷ୍ଟ ସହାୟକ ହେବ ।''

ଶେଷରେ ଏତିକି କୁହାଯାଇପାରେ ଯେ ସୁରେନ୍ଦ୍ରବାବୁ ଓଡ଼ିଶାର ଦୀପ୍ତିବନ୍ତ ସାରସ୍ୱତ ସାଧକ ଓ ସ୍ରଷ୍ଟା । ଗଦ୍ୟସାହିତ୍ୟର ସମସ୍ତ ବିଭାଗ, ଯଥା – ଗଳ୍ପ, ଉପନ୍ୟାସ, ନାଟକ, ଏକାଙ୍କିକା, ପ୍ରବନ୍ଧ, ରମ୍ୟରଚନା, ଜୀବନୀ, ଆତ୍ମଜୀବନୀ ବା ଭ୍ରମଣ ସାହିତ୍ୟ - ପ୍ରତ୍ୟେକଟିରେ ସେ ଥିଲେ ସବ୍ୟସାଚୀ । ଲକ୍ଷ୍ୟଭେଦ କରିବାର ଅବ୍ୟର୍ଥ ଶିଳ୍ପୀ । ପାଠକ ମଧ୍ୟ ତାଙ୍କର ସବୁପ୍ରକାର ରଚନା ପ୍ରତି ଆନତ ଓ ଆସକ୍ତ । ତାଙ୍କର ସାବଲୀଳ ସ୍ୱଚ୍ଛନ୍ଦ ଭାଷା ପ୍ରୟୋଗ ଓ ପାଠ୍ୟର ନବଦିଗ ଉନ୍ମୋଚନ ପ୍ରସଙ୍ଗ ମିଶି ସମୁଦାୟ ପଠନକୁ କରିଥାଏ ସ୍ୱାଦ୍ୟ, ପ୍ରୀତିକର ଓ ଯଥାର୍ଥ ସମୟ ବିନିଯୋଗ୍ୟ । ଏଣୁ ସାହିତ୍ୟିକ ସୁରେନ୍ଦ୍ର ଗାଳ୍ପିକ ଭାବେ ବରେଣ୍ୟ, ଔପନ୍ୟାସିକଭାବେ ଅତୁଳନୀୟ, ସମୀକ୍ଷକ ଭାବେ ପ୍ରବୀଣ, ଜୀବନୀକାର ଭାବେ ଅଭିନନ୍ଦନୀୟ, ପ୍ରବନ୍ଧକାର ଭାବେ ବିପୁଳ ଜନପ୍ରିୟ ଏବଂ ସ୍ତମ୍ଭକାର ଭାବରେ ଧାରା ପ୍ରବର୍ତ୍ତକର ଗୌରବାବହ । କୌଣସି ଭାଷାର ସାହିତ୍ୟରେ ଏଭଳି ଉଚ୍ଚମାନର ଗଦ୍ୟକାର ବାସ୍ତବରେ ବିସ୍ମୟ ଏବଂ ବିରଳ ।

❑❑❑



## ଓଡ଼ିଆ ସାହିତ୍ୟ ଜଗତର ସ୍ୱର୍ଣ୍ଣିତ ରାଜପୁତ୍ର

# ରାଜକିଶୋର ପଟ୍ଟନାୟକ

## [୧୯୧୭-୧୯୯୭]

ଓଡ଼ିଆ ସାହିତ୍ୟର ଅନ୍ୟତମ ଲବ୍ଧପ୍ରତିଷ୍ଠ କଥାଶିଳ୍ପୀ ହେଉଛନ୍ତି ରାଜକିଶୋର ପଟ୍ଟନାୟକ । ପ୍ରାକ୍-ସ୍ୱାଧୀନତା କାଳରୁ ସାରସ୍ୱତ ଜଗତରେ ଅବତୀର୍ଣ୍ଣ ହୋଇଥିବା ଏହି ବାସ୍ତବବାଦୀ, ଜୀବନଧର୍ମୀ ସାଧକଙ୍କ ସ୍ୱର ଓ ସ୍ୱାକ୍ଷର ଦୀର୍ଘ ଅର୍ଦ୍ଧଶତାବ୍ଦୀର ଊର୍ଦ୍ଧ୍ୱକାଳଧରି ଓଡ଼ିଆ ଗଳ୍ପ ସାହିତ୍ୟକୁ ଅନୁରଞ୍ଜିତ କରିଆସିଛି । ସମକାଳୀନ ସମାଜର ବାସ୍ତବ ପ୍ରତିଛବି, ସମାଜର ଆବର୍ତ୍ତ ମଧ୍ୟରେ ପଡ଼ିଥିବା ବ୍ୟକ୍ତି ମାନସର ଅନ୍ତର୍ଦ୍ୱନ୍ଦ୍ୱ, ମର୍ମଗହନର ଭାବନାରାଜି ତଥା ପ୍ରତିକ୍ରିୟାକୁ ମର୍ମସ୍ପର୍ଶୀ ଭାବରେ ପ୍ରକାଶ କରି ତହିଁରେ ମାନବିକ ଆବେଦନ ସୃଷ୍ଟି କରିବାରେ ରାଜକିଶୋର ଅପୂର୍ବ ସିଦ୍ଧିର ଅଧିକାରୀ ।

### ଜନ୍ମ

ରାଜକିଶୋରଙ୍କ ପୈତୃକ ବାସଭୂମି ହେଉଛି ରସଲକୁଣ୍ଡା (ବର୍ତ୍ତମାନର ଭଞ୍ଜନଗର)ର ଜଗନ୍ନାଥପ୍ରସାଦ । ମାତ୍ର ସେ କଲିକତାର ୬୭ ନମ୍ବର ଗ୍ରେ ଷ୍ଟ୍ରିଟ୍‌ରେ ୧୯୧୭ ମସିହା ଅପ୍ରେଲ ମାସ ୮ ତାରିଖରେ ଜନ୍ମଗ୍ରହଣ କରିଥିଲେ । କଲିକତା ଥିଲା ପିତା ଶ୍ରୀବସ୍ତ ପଟ୍ଟନାୟକଙ୍କ ସରକାରୀ ଚାକିରିସ୍ଥଳୀ । ମାତା ହେଉଛନ୍ତି ସୁନ୍ଦରମଣି ଦେବୀ । ଶ୍ରୀବସ୍ତ ଥିଲେ ଓଡ଼ିଶାର ତୁଙ୍ଗନେତା ବିଜୁ ପଟ୍ଟନାୟକଙ୍କ ପିତା ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କ ସାନଭାଇ । ଚାକିରି ଜୀବନରେ ଶ୍ରୀବସ୍ତଙ୍କୁ

ଗୋଟିଏ ପରେ ଗୋଟିଏ ସ୍ଥାନରେ ରହିବାକୁ ପଡୁଥିଲା । କଲିକତାରୁ ଟାଟା, ପୁଣି ଟାଟାରୁ ଭାଗଲପୁର । ପରିବାର ନେଇ ସବୁଆଡ଼େ ଯାଇ ରହିବା ସମ୍ଭବ ନ ହେବାରୁ ସେ କଟକରେ ଘର କରି ସେଠାରେ ପରିବାରକୁ ଛାଡ଼ିଦେଇଥିଲେ ।

**ଶୈଶବ**

ପ୍ରଥମ ଆଲୋକ ଓ ପବନ ଛୁଇଁଥିବା କଲିକତାରେ ହିଁ ରାଜକିଶୋରଙ୍କ ଶୈଶବ କଟିଲା । ପରିବାରର ଅନ୍ୟମାନଙ୍କ ସହ ସେ ବି ଆସିଲେ କଟକ । ତାଙ୍କ ପ୍ରାଥମିକ ଶିକ୍ଷା କଟକରେ ହିଁ ହେଲା । ପ୍ରାଥମିକ ଶିକ୍ଷା ଶେଷ ହେବା ପରେ ରେଭେନ୍‌ସା କଲେଜିଏଟ୍ ସ୍କୁଲରେ ତାଙ୍କ ନାମ ଲେଖା ହେଲା । ୧୯୩୨ ମସିହାରେ ସେ ମାଟ୍ରିକ୍ ପାସ୍ କରି ରେଭେନ୍‌ସା କଲେଜରେ ଅଧ୍ୟୟନ କଲେ । ସେ ବିଜ୍ଞାନର ଛାତ୍ର ଥିଲେ ।

ରାଜକିଶୋର ଉତ୍ତମ ଛାତ୍ର ଥିଲେ । ତା’ ସାଙ୍ଗକୁ ଥିଲେ ସାଇକେଲ୍ ରେସ୍ ରେକର୍ଡଧାରୀ । ଛଅ ମିନିଟ୍‌ରେ ସେ ଦୁଇ ମାଇଲ ରାସ୍ତା ଅତିକ୍ରମ କରିପାରିଥିଲେ । ତାଙ୍କ ସାଇକେଲ ରେସ୍‌ର ରେକର୍ଡ ବଜାୟ ରହିଥିଲା ଦୀର୍ଘ ୪୦ ବର୍ଷ ଧରି । ସେ ମଧ୍ୟ ଭଲ ଫୁଟବଲ୍ ଖେଳୁଥିଲେ । ୧୯୩୪ ମସିହାରୁ ରେଭେନ୍‌ସା କଲେଜର ଫୁଟବଲ୍ ଟିମ୍‌ରେ ରାଇଟ ହାଫ୍ ଖେଳାଳି ହିସାବରେ ତାଙ୍କର ସ୍ଥାନ ଥିଲା । ଏଗାର ଜଣ ମଧ୍ୟରେ ଆଗ ଧାଡ଼ିରେ ତାଙ୍କରି ନାଁ ରହିଥିଲା । ଭଲି, କ୍ରିକେଟ ଖେଳ ମଧ୍ୟ ଥିଲା ତାଙ୍କର ଅତି ପ୍ରିୟ ।

ରାଜକିଶୋର ୧୯୩୬ ମସିହାରେ ବି.ଏସ୍‌ସି. ପାସ୍ କଲେ । ଏହାପରେ ଆଇନରେ ସ୍ନାତକ ହେଲେ । ଏହି ସ୍ନାତକ ଉପାଧି ଲାଭ କଲା ପରେ ବହୁ ଭଲ ଭଲ ଚାକିରି କରିବାର ସୁଯୋଗ ତାଙ୍କୁ ମିଳିଥିଲା । ମାତ୍ର ସେସବୁକୁ ଛାଡ଼ି ସେ ସ୍ୱାଧୀନ ଭାବରେ ଆଇନ ବ୍ୟବସାୟ କରିବାକୁ ଚାହିଁଲେ । ୧୯୪୦ ମସିହାରୁ ରାଜକିଶୋରଙ୍କ ବୃତ୍ତିଗତ ଓକିଲ ଜୀବନ ଆରମ୍ଭ ହେଲା – କଟକ ସହରରେ ।

**ଓକିଲାତି**

ମାତ୍ର ରାଜକିଶୋର ସେତିକିରେ ସନ୍ତୁଷ୍ଟ ନ ଥିଲେ । ଅଧିକରୁ ଅଧିକ ଜାଣିବାର ଆଗ୍ରହକୁ ସାକାର କରିବାପାଇଁ ଏଲ୍.ଏଲ୍.ଏମ୍. ପଢ଼ିବାକୁ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ ଗଲେ । ୧୯୪୧ରୁ ୧୯୪୩ ମସିହା ପର୍ଯ୍ୟନ୍ତ ସେ ବନାରସରେ ରହିଲେ । ୧୯୪୩ ମସିହାରେ କଟକ ଫେରିଆସିଲେ ଓକିଲାତି ବ୍ୟବସାୟ ଭିତରକୁ ।

ରାଜକିଶୋର ଜଣେ ଉଚ୍ଚକୋଟୀର ଆଇନଜ୍ଞ ଥିଲେ । ଆଇନ ବିଷୟରେ ତାଙ୍କର ଧାରଣା (Concept) ଖୁବ୍ ପ୍ରାଞ୍ଜଳ ଓ ନିର୍ଭୁଲ ଥିଲା । ବିଚାରପତିମାନେ ତାଙ୍କୁ ସମ୍ମାନ ଦେଇ ଆଗ ଧାଡ଼ିରେ ବସାଉଥିଲେ । ଭାରତୀୟ ସିଭିଲ୍ କୋଡ୍‌ର ଧାରାଗୁଡ଼ିକ ତାଙ୍କର ମୁଖସ୍ଥ ଥିଲା କହିଲେ ଚଳେ । ରେକର୍ଡ ଦେଖି ସେ କହି ପାରୁଥିଲେ ଯେ କେସ୍‌ଟି ଜୟଲାଭ କରିବ କି ନାହିଁ । ଥରେ ଜଣେ ଅନ୍ତରଙ୍ଗ ବନ୍ଧୁ

ଗୋଟିଏ ଜମିବାଡ଼ି ସଂକ୍ରାନ୍ତୀୟ କେସ୍ ଦାୟର କରି ସେ ବିଷୟରେ ରାଜକିଶୋରଙ୍କ ମତାମତ ପଚାରିଲେ । ରାଜକିଶୋର କଚେରିରେ ରେକର୍ଡ ଦେଖି କହିଲେ ଯେ ସେ (ତାଙ୍କ ବନ୍ଧୁ) ନିଶ୍ଚୟ କେସ୍‌ରେ ହାରିବେ । କାରଣ ଅଭିଯୋଗପତ୍ର (Complaint)ଟି ଠିକ୍ ଭାବରେ ଲେଖା ହୋଇ ନାହିଁ । ସତକୁ ସତ ସେ କେସ୍‌ରେ ହାରିଲେ । ୧୯୫୪ ମସିହାର କଥା । କେତେକ ଛାତ୍ର ମିଶି 'ତେନ୍ତୁଳି ଛାଟ' ନାମକ ଏକ ସମାଲୋଚନାମୂଳକ ପତ୍ରିକା ପ୍ରକାଶ କଲେ । ପତ୍ରିକାର ସମ୍ପାଦକ ଥିଲେ ଶ୍ୟାମସୁନ୍ଦର ମିଶ୍ର । ତାଙ୍କ ବିରୋଧରେ କେହି ଜଣେ କୋର୍ଟର ଦ୍ୱାରସ୍ଥ ହେଲେ । ଜଜ୍‌କୋର୍ଟରୁ ସେ ସମନ ପାଇଲେ । ସେ କେସ୍ ରାଜକିଶୋର ଚଳାଇଲେ – ଯଦିଓ ଓକିଲ ହିସାବରେ ତାଙ୍କର କିଛି ଲାଭ ହେବ ନାହିଁ ସେ ଜାଣିଥିଲେ । ଜଜ୍ କୋର୍ଟରେ ସେସନ ବିଚାର ଆରମ୍ଭ ହେଲା ଯଥା ସମୟରେ । ବିଚାରପତି ଥିଲେ ଜୟକୃଷ୍ଣ ମିଶ୍ର । ରାଜକିଶୋର କିନ୍ତୁ ଲଢ଼ିବା ପରିବର୍ତ୍ତେ ପ୍ରତିବାଦୀ ଛାତ୍ର କମ୍ ବୟସ ହୋଇଥିବାରୁ କ୍ଷମା ଦେବାକୁ କୋର୍ଟକୁ ଆବେଦନ କଲେ । ଏଥିରେ ବିବ୍ରତ ହୋଇ ସମ୍ପାଦକ ଅନ୍ୟ ଏକ ଓକିଲ ନିଯୁକ୍ତ କଲେ । ମାତ୍ର ପରେ ସେ ଜାଣିପାରିଲେ ଯେ ରାଜକିଶୋର ଯେଉଁ ପଦକ୍ଷେପ ନେଇଥିଲେ, ତାହା ଥିଲା ଯଥାର୍ଥ ।

ରାଜକିଶୋର ମଧ୍ୟ କିଛି କାଳ କଟକ ଆଇନ କଲେଜର ଅଧ୍ୟାପକ ହିସାବରେ କାର୍ଯ୍ୟରତ ଥିଲେ ।

ଓକିଲାତି ବ୍ୟବସାୟରେ ରାଜକିଶୋର ବ୍ୟାପାରିକ ସଫଳତା ପାଇପାରି ନ ଥିଲେ । ଏହି ପେସାରେ ସତ ମିଛ କହି, ବହଲେଇ, ଧପେଇ, ଧମକେଇ ବା ଚମକେଇ – ଯେମିତି ଆଜିକାଲିକା କେତେ ଓକିଲ ଧନଦୌଲତ କମେଇଛନ୍ତି ଓ କୋଠା ବାଡ଼େଇଛନ୍ତି – ସେ କିଛି କରି ନାହାନ୍ତି ; ବରଂ ତା'ଠାରୁ ସେ ଥିଲେ ବହୁ ଦୂରରେ । ସେହି ଦୁନିଆରେ ଥାଇ ମଧ୍ୟ ରାଜକିଶୋର ଥିଲେ ଅନ୍ୟ ଏକ ଯୁଗର, ଅନ୍ୟ ଏକ ଧର୍ମର ଅବତାର । ମୃତ୍ୟୁର କିଛି କାଳ ପୂର୍ବରୁ ଜଣେ ଗୁଣମୁଗ୍ଧ ମହକିଲ ତାଙ୍କ ଅସୁସ୍ଥତା ଖବର ପାଇ ୫୦୦ଟଙ୍କା ଧରି ଆସିଥିଲେ ଦେବାପାଇଁ । କିନ୍ତୁ ସେ ତାହାକୁ ନମ୍ରତାର ସହ ପ୍ରତ୍ୟାଖ୍ୟାନ କରିଦେଇଥିବାର ଶୁଣିବାକୁ ମିଳିଥିଲା ।

**ସାମ୍ବାଦିକତା**

ରାଜକିଶୋର ପେସାରେ ସାମ୍ବାଦିକ ନ ଥିଲେ । ପ୍ରଚଳିତ ଚଳଣିରେ ତାଙ୍କୁ ହୁଏତ ସାମ୍ବାଦିକ ଶ୍ରେଣୀଭୁକ୍ତ କରାଯାଇ ନ ପାରେ । କିନ୍ତୁ କେତେକ ସାମ୍ବାଦିକ ଗୁଣଧର୍ମୀ ସାମ୍ବାଦିକତାପାଇଁ ସେସମୟରେ ସେ କିଛିଟା ଖ୍ୟାତି ଅର୍ଜନ କରିଥିଲେ ।

ପଞ୍ଚମ ଦଶକରେ ରାଜକିଶୋରଙ୍କ ସମ୍ପାଦିତ ଇଂରାଜୀ ସାପ୍ତାହିକ 'Scrutiny' ପ୍ରକାଶ ପାଇଲା । ସ୍ୱାଧୀନ, ନିରପେକ୍ଷ ବିଚାର ସହିତ ଭିନ୍ନ ମତକୁ ସମ୍ମାନ

ଦେବାରେ ଏହା ଆଲୋଡ଼ନ ସୃଷ୍ଟି କରିଥିଲା । 'Scrutiny' ଦ୍ୱିତୀୟ ପର୍ଯ୍ୟାୟରେ ଏକ ରାଜନୈତିକ ଦଳର ମୁଖପତ୍ର ହେଲା । ଦଳୀୟ ଚିନ୍ତାଧାରାର ପ୍ରସାର ଏହାର ଆଭିମୁଖ୍ୟ ହେଲେ ମଧ୍ୟ ଭିନ୍ନ ମତର ପ୍ରକାଶପାଇଁ ଏହି ସମ୍ବାଦପତ୍ରରେ ଅବକାଶ ଥିଲା । ସେଥିପାଇଁ ତାଙ୍କ ସମ୍ବାଦପତ୍ର କେବେ ସରକାରୀ ବିଜ୍ଞାପନ ପାଇ ନ ଥିଲା ।

୧୯୭୧ ମସିହା ଆଡ଼କୁ ଭାରତରେ ୫ମ ଲୋକସଭାପାଇଁ ନିର୍ବାଚନ ହେଲା । ରାଜକିଶୋର ଏହି ସମୟରେ 'ପାଠଚକ୍ର', ଦୈନିକ, 'ଆମର ଆଇନ' ସାପ୍ତାହିକ ଓ 'Cuttack Law Notes' ସାପ୍ତାହିକ ପ୍ରକାଶ କଲେ । ଦୈନିକ 'ପାଠଚକ୍ର' ଆୟତନରେ କ୍ଷୁଦ୍ର ଥିଲା । କିନ୍ତୁ ସ୍ୱାଧୀନ ବିଚାର ଶୈଳୀ ଏହାର ବିଶେଷତ୍ୱ ଥିଲା । ଦଳୀୟ ରାଜନୀତିରେ ଅମଲାତନ୍ତ୍ରର ଭିତିରି କାରବାରକୁ ସେ ନିର୍ଭୀକ ଭାବରେ ପ୍ରକାଶ କରିଥିଲେ । 'ଆମର ଆଇନ' ଓ 'Cuttack Law Notes'ରେ ସ୍ୱାଧୀନ ସାମ୍ବାଦିକତାର ସ୍ୱରୂପ ପ୍ରକାଶ କରିଛନ୍ତି । ଦଳୀୟ ରାଜନୀତି ସାମ୍ବାଦିକତାର ମୁଖ୍ୟ ଆଭିମୁଖ୍ୟ ହେବା ଉଚିତ ନୁହେଁ ବୋଲି ସେ ଦୃଢ଼ ମତ ପୋଷଣ କରିଛନ୍ତି । ସାମ୍ବାଦିକତା ବୃତ୍ତି କରି ଚଳୁଥିବା ବ୍ୟକ୍ତିମାନେ ସ୍ୱାଧୀନ ନିରପେକ୍ଷ ଚିନ୍ତା କରିପାରୁ ନ ଥିବାରୁ ଖେଦ ପ୍ରକାଶ କରିଛନ୍ତି । ସେଥିପାଇଁ ରାଜକିଶୋର ଯେ ଜଣେ ଯୋଗ୍ୟ ସାମ୍ବାଦିକ ଥିଲେ, ଏହା ସମସ୍ତେ ସ୍ୱୀକାର କରନ୍ତି ।

## ସାହିତ୍ୟ ସେବା

ରାଜକିଶୋର ରେଭେନ୍‌ସା କଲେଜର ଆଇନ ଛାତ୍ର ଥିବା ସମୟରେ 'ନବଭାରତ'ରେ ଧାରାବାହିକଭାବେ ଆରମ୍ଭ କଲେ 'ମୋ ଚିଠି ଫାଇଲ' । ନାରୀ ପୁରୁଷ ଜୀବନର କଥାକୁ ନେଇ ପତ୍ରଲିଖନ ଆଙ୍ଗିକରେ ରଚିତ ଏହି 'ମୋ ଚିଠି ଫାଇଲ' ପରେ 'ପଞ୍ଜୁରି ପକ୍ଷୀ' ନାମରେ ପ୍ରକାଶିତ ହେଲା । ଅପୂର୍ବ ଶୈଳୀ ଓ ବିଷୟବସ୍ତୁର ନୂତନତାରେ ଏହା ଚମକ ସୃଷ୍ଟି କଲା । ତାଙ୍କ ସୃଷ୍ଟିର ଔଜ୍ଜ୍ୱଲ୍ୟତା ସେ କାଳର ସାହିତ୍ୟ ପତ୍ରିକା ସମ୍ପାଦକଙ୍କ ଆଖି ଝଲସାଇ ଦେଲା । 'ନବଭାରତ', 'ଉତ୍କଳ ସାହିତ୍ୟ', 'ସହକାର' ଆଦି ପତ୍ରିକାରେ ରାଜକିଶୋରଙ୍କ ଗଳ୍ପମାନ ପ୍ରକାଶ ପାଇଲା ।

ରାଜକିଶୋର, ଗୋପୀନାଥ ମହାନ୍ତି ଓ ନିତ୍ୟାନନ୍ଦ ମହାପାତ୍ର ଲେଖିଲେ 'ଭଲ ପାଇବାର ଶେଷ କଥା' 'ନବ ଭାରତ' ପୃଷ୍ଠାରେ । ଏହା ପ୍ରାୟ ୧୯୩୭ ମସିହାର କଥା । ରାଜକିଶୋର ହିଁ ନିତ୍ୟାନନ୍ଦ ମହାପାତ୍ରଙ୍କୁ ଏଥିରେ ଲେଖିବାପାଇଁ ବାଧ୍ୟ କରିଥିଲେ ।

''ଆପଣ ବି ଏଥିରେ ଯୋଗ ଦିଅନ୍ତୁ ।'' ବୟସରେ ବଡ଼ ଥିଲେ ନିତ୍ୟାନନ୍ଦ ମହାପାତ୍ର । ସେ ପ୍ରଥମରେ ଲେଖିବାକୁ ରାଜି ନ ଥିଲେ । କିନ୍ତୁ ରାଜକିଶୋର ଥିଲେ ନଛୋଡ଼ବନ୍ଦା । ଶେଷରେ ନିତ୍ୟାନନ୍ଦବାବୁ ରାଜି ହେଲେ ।

ସେତେବେଳକାର ପ୍ରଖ୍ୟାତ ଔପନ୍ୟାସିକ କାହ୍ନୁଚରଣ ତାଙ୍କ ରଚିତ ଉପନ୍ୟାସର ନାମ ରଖିଲେ 'ଭଲ ପାଇବାର ଶେଷ କଥା' ଓ ତାହା ମଧ୍ୟ ପ୍ରକାଶ ପାଇଲା । ଫଳରେ ତିନି ଜଣଙ୍କର ଲେଖା 'ପ୍ରେମର ନିୟତି' ଶୀର୍ଷକରେ ପ୍ରକାଶିତ ହେଲା ।

ରାଜକିଶୋର ଓ କାହ୍ନୁଚରଣଙ୍କ ମଧ୍ୟରେ ସମ୍ପର୍କ ନିବିଡ଼ ଥିଲା । ଦିନେ ରାଜକିଶୋର ଗୋଟିଏ ସାଇକେଲ୍‌ରେ ଆସି କାହ୍ନୁଚରଣଙ୍କ ଘରେ ପହଞ୍ଚିଲେ । ଉଭୟଙ୍କ ମଧ୍ୟରେ ନାନା ଆଲୋଚନା ହେବା ପରେ କାହ୍ନୁଚରଣ ରାଜକିଶୋରଙ୍କୁ ଗୋଟିଏ 'ମାଗୁଣି' କଥା କହିଲେ । 'କି ମାଗୁଣି' ବୋଲି ରାଜକିଶୋର ପଚାରନ୍ତେ, କାହ୍ନୁଚରଣ ତାଙ୍କ ବହିର ନାଁଟି ଦେବାକୁ କହିଲେ । 'କେଉଁ ନାଆଁଟି' ବୋଲି ରାଜକିଶୋର ପୁଣି ପଚାରିଲେ । ହସି ହସି କାହ୍ନୁଚରଣ ଉତ୍ତର ଦେଲେ – 'ପ୍ରୀତିର ବଣିକ' । ରାଜକିଶୋରଙ୍କ ଉତ୍ତର ଥିଲା –

''ସେଇଟି କେମିତି ହେବ ? ଆପଣଙ୍କ ଜୀବନରେ କେବେ ପ୍ରୀତି କରି ନାହାନ୍ତି, ମୁଁ ଜୀବନରେ ଅନେକ ପ୍ରେମ କରି ମୋର ଅନୁଭୂତିକୁ ନେଇ ଲେଖିଛି 'ପ୍ରୀତିର ବଣିକ' । ଆପଣଙ୍କୁ କେମିତି ସେ ନାଆଁଟି ଦେବି ?'' ସେସମୟରେ ସାହିତ୍ୟିକମାନଙ୍କ ମଧ୍ୟରେ ଭାବର ଆଦାନପ୍ରଦାନ ହେବାର ଏହା ଥିଲା ପ୍ରକୃଷ୍ଟ ଉଦାହରଣ ।

### ଉତ୍କଳ ସାହିତ୍ୟ ସମାଜ

ସାମସମୟିକ ରାଜନୀତିରେ ମଧ୍ୟ ରାଜକିଶୋରଙ୍କ ପ୍ରବେଶ ଥିଲା । ଶୈଶବରେ ସେ ଉତ୍କଳ ଗୌରବ ମଧୁସୂଦନ ଦାସ ଓ ତତ୍କାଳୀନ ଓଡ଼ିଆ ଆନ୍ଦୋଳନର ଅଗ୍ରଗାମୀ ନେତା ନିରଞ୍ଜନ ପଟ୍ଟନାୟକଙ୍କର ଦେଶ ମିଶ୍ରଣ ପ୍ରତି ଆକୃଷ୍ଟ ହୋଇଥିଲେ । ଶେଷରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ମାତ୍ର ଛଅଟି ଜିଲ୍ଲାକୁ ନେଇ ଗଠିତ ହେଲା । ସ୍ୱାଧୀନତା ପରେ ଅନ୍ୟ ରାଜ୍ୟମାନଙ୍କ ପରି ଓଡ଼ିଶାରେ କ୍ଷମତାଶାଳୀ ରାଜନେତାମାନେ ବାହାରିଲେ । ଯୋଜନାବଦ୍ଧ ରାଜନୀତି ଏବଂ ସାବାଳକ ଗଣତନ୍ତ୍ରର ମୁଣ୍ଡଗଣତି ଅବସ୍ଥାରେ ସାନମଣିଷମାନେ ହଠାତ୍ ଇତିହାସର ନିର୍ମାତା ହୋଇଗଲେ । ଇତିହାସର ଏହି ମୋଡ଼ରେ ରାଜକିଶୋରଙ୍କ ଭଳି ବହୁ ପ୍ରତିଭାବାନ୍‌ମାନେ ଅପାଙ୍‌କ୍ତେୟ ହୋଇପଡ଼ିଲେ । ତଥାପି ସେଇ ପରିସ୍ଥିତିରେ ସ୍ୱାଧୀନ ଭାବରେ ଜୀବିକା ଓ ଜୀବନର ସମନ୍ୱୟ କରିବାକୁ ରାଜକିଶୋର ଲାଗିପଡ଼ିଲେ । ମୁଣ୍ଡ ସୁମାରି ଗଣତନ୍ତ୍ରର ପ୍ରଭାବ ମଧ୍ୟ ନ୍ୟାୟପାଳିକା ଉପରେ ପ୍ରତ୍ୟକ୍ଷ ଭାବେ ନ ହେଲେ ମଧ୍ୟ ପରୋକ୍ଷ ଭାବେ ପଡ଼ିଲା । ଫଳରେ ବହୁ ମେଧାବୀ ବ୍ୟକ୍ତିଙ୍କର ନିର୍ଭୀକ ସ୍ୱର ଓ ଆଇନର ଶାସନାଦର୍ଶ ମ୍ଳାନ ହୋଇପଡ଼ିଲା । ତଥାପି ରାଜକିଶୋର ସାହସ ହରାଇ ନ ଥିଲେ । ସେ ନିଜର ଉଦ୍‌ବେଗ ଓ ଚାପକୁ ସାହିତ୍ୟରେ ପ୍ରକାଶ କରିବାକୁ ଲାଗିଲେ । ୧୯୪୮ ମସିହାରେ ରାଜକିଶୋର ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ପଦପାଇଁ ବିରୋଧୀ ଦଳ ପକ୍ଷରୁ ପ୍ରତିଦ୍ୱନ୍ଦ୍ୱୀ ମଧ୍ୟ ହେଲେ ।

ରାଜକିଶୋର ନିର୍ଭୀକ ଥିଲେ । ପରିଣାମ ପ୍ରତି ତାଙ୍କର ଭ୍ରୂକ୍ଷେପ ନ ଥିଲା । ସେ ତେଣୁ ନିର୍ଭୀକତାର ବାର୍ତ୍ତାବହ ହେଲେ । ରାଜା ମହାରାଜାଙ୍କ ଦାନରେ ନିର୍ମିତ ହୋଇଥିଲା 'ଉତ୍କଳ ସାହିତ୍ୟ ସମାଜ' । ରାଜକିଶୋର ଏହି ସାରସ୍ୱତ ପୀଠ ସହିତ ଗଭୀରଭାବେ ସଂଶ୍ଳିଷ୍ଟ ହେଲେ । କିନ୍ତୁ 'ଉତ୍କଳ ସାହିତ୍ୟ ସମାଜ' ଭବନରେ ସାହିତ୍ୟ ନାମରେ ଅସାହିତ୍ୟିକମାନଙ୍କର ରାଜୁତି ଚାଲିଲା । ସାହିତ୍ୟ ବଦଳରେ କୋଠା ନିର୍ମାଣ ଓ ସଂରକ୍ଷଣ ହିଁ ସାହିତ୍ୟର ପ୍ରଧାନ ଲକ୍ଷ୍ୟ ହେଲା । ସାହିତ୍ୟ ନାମରେ ଏହି ଆଭିମୁଖ୍ୟ ରାଜକିଶୋରଙ୍କୁ ମ୍ରିୟମାଣ କଲା । ସେ 'ଉତ୍କଳ ସାହିତ୍ୟ ସମାଜ'ରୁ ବାହାରିଯାଇ 'ଓଡ଼ିଆ ସାହିତ୍ୟ ପରିଷଦ' ଗଢ଼ିଲେ । ଏହି ଦୁଇ ଅନୁଷ୍ଠାନକୁ ନିଜ ନେତୃତ୍ୱରେ ମିଶାଇ ଏକ ବଳିଷ୍ଠ ସାରସ୍ୱତ ଅନୁଷ୍ଠାନ ଗଢ଼ିବାପାଇଁ ତତ୍କାଳୀନ ପ୍ରମୁଖ ରାଜନେତା ହରେକୃଷ୍ଣ ମହତାବ ପ୍ରବଳ ଉଦ୍ୟମ ଚଳାଇଲେ । ମାତ୍ର ତାଙ୍କର ଏ ଉଦ୍ୟମକୁ ସାହିତ୍ୟ ଜଗତରେ ପ୍ରତିଷ୍ଠିତ ରାଜକିଶୋର ତୀବ୍ର ବିରୋଧ କଲେ । ଫଳରେ ମହତାବଙ୍କ ଉଦ୍ୟମ ଫଳପ୍ରଦ ହେଲା ନାହିଁ । ମାଲିମକଦ୍ଦମାରେ 'ଉତ୍କଳ ସାହିତ୍ୟ ସମାଜ' ଛନ୍ଦି ହୋଇପଡ଼ିଲା । ସେଥିରେ ତାଲା ଶେଷକୁ ଝୁଲିଲା । ପରବର୍ତ୍ତୀକାଳରେ ହରେକୃଷ୍ଣ ମହତାବ ଓଡ଼ିଶାର ପ୍ରଥମ ପ୍ରଧାନମନ୍ତ୍ରୀ ହେଲେ । ସେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଭାବେ ଚିନ୍ତାମଣି ଆଚାର୍ଯ୍ୟଙ୍କୁ ନିଯୁକ୍ତି ଦେଲେ । ସେ ମଧ୍ୟ 'ଉତ୍କଳ ସାହିତ୍ୟ ସମାଜ'ର ସଭାପତି ହେଲେ । ଏହାପରେ 'ଉତ୍କଳ ସାହିତ୍ୟ ସମାଜ'ର ପୁନର୍ଗଠନ କରାଗଲା । ମାତ୍ର ସେଠାରେ ରାଜକିଶୋରଙ୍କ ନାମ ରହିଲା ନାହିଁ । ଓଡ଼ିଶାରେ ସ୍ୱତନ୍ତ୍ର ନ୍ୟାୟାଳୟ ମଧ୍ୟ ସ୍ଥାପନ କରାଗଲା । ସେଥିରେ ମଧ୍ୟ ରାଜକିଶୋରଙ୍କୁ ସମଧିକ ଗୁରୁତ୍ୱ ଦିଆଗଲା ନାହିଁ ।

ରାଜକିଶୋର ଏଥିରେ ଦବି ନ ଯାଇ ସାହିତ୍ୟ ସେବାରେ ଲାଗିପଡ଼ିଲେ ।

ରାଜକିଶୋର କିନ୍ତୁ ସରକାରୀ ପରିଚାଳନାରେ 'ଓଡ଼ିଶା ସାହିତ୍ୟ ଏକାଡେମୀ' ଗଠନର ତୀବ୍ର ପ୍ରତିବାଦ କଲେ । ସେତେବେଳେ କଟକରେ ରବିନାରାୟଣ ମହାପାତ୍ରଙ୍କ ପୌରୋହିତ୍ୟରେ 'ସାହିତ୍ୟ ସଂସଦ' ଗଢ଼ା ହୋଇଥାଏ । ରାଜକିଶୋର 'ସାହିତ୍ୟ ସଂସଦ'ରେ ଯୋଗ ଦେଲେ । ତାଙ୍କ ଉଦ୍ୟମରେ 'ଡଗର' ସମ୍ପାଦକ ନିତ୍ୟାନନ୍ଦ ମହାପାତ୍ର, ଗାଳ୍ପିକ ସୁରେନ୍ଦ୍ର ମହାନ୍ତି ଓ ଚିନ୍ତାନାୟକ ଓ 'ପ୍ରଭାତୀ ପ୍ରେସ'ର ପରିଚାଳକ ଚିନ୍ତାମଣି ମିଶ୍ର ପ୍ରଭୃତି ଯୋଗ ଦେଲେ । ସେମାନେ ସାହିତ୍ୟ କ୍ଷେତ୍ରରେ ସରକାରୀ ଅନୁପ୍ରବେଶର ଦୃଢ଼ ବିରୋଧ କଲେ । ମହତାବଙ୍କଦ୍ୱାରା ପ୍ରଭାବିତ ହୋଇ ପରବର୍ତ୍ତୀ କାଳରେ ଗାଳ୍ପିକ ସୁରେନ୍ଦ୍ର ମହାନ୍ତି ଓ ନିତ୍ୟାନନ୍ଦ ମହାପାତ୍ର 'ଓଡ଼ିଶା ସାହିତ୍ୟ ଏକାଡେମୀ'ରେ ଯୋଗ ଦେଲେ । ପରବର୍ତ୍ତୀ କାଳରେ ମଧ୍ୟ ସଭାପତି ହେଲେ । ସ୍ୱତନ୍ତ୍ର ଓ ଜନକଂଗ୍ରେସ ମିଳିତ ମନ୍ତ୍ରିମଣ୍ଡଳ ସମୟରେ ରାଜକିଶୋର କିଛି କାଳ 'ଓଡ଼ିଶା ସାହିତ୍ୟ ଏକାଡେମୀ'ର ଅବଶ୍ୟ ସଭ୍ୟ ଥିଲେ । ମାତ୍ର ସେ 'ସାହିତ୍ୟ ସଂସଦ'କୁ ପରିତ୍ୟାଗ କରି ନ ଥିଲେ । ସେ ଶେଷ ନିଶ୍ୱାସ ପର୍ଯ୍ୟନ୍ତ ଏହାର ସଭ୍ୟ

ଥିଲେ । ପ୍ରାୟ ସେ 'ସାହିତ୍ୟ ସଂସଦ'ର ବାର୍ଷିକ ଅଧିବେଶନ, ଶିଶିର ଉତ୍ସବ, ଓଡ଼ିଆ ଲେଖକ ସମ୍ମିଳନୀ ପ୍ରଭୃତିରେ ଯୋଗ ଦେଉଥିଲେ ଓ ସେଥିରେ ସକ୍ରିୟ ଅଂଶ ଗ୍ରହଣ କରୁଥିଲେ ।

## ସକ୍ରିୟ ରାଜନୀତି

ଓଡ଼ିଶାରେ ୧୯୬୭ ମସିହାରେ ସ୍ୱତନ୍ତ୍ର ଓ ଜନକଂଗ୍ରେସ ମନ୍ତ୍ରିମଣ୍ଡଳ ଗଢ଼ା ହେଲା । ରାଜକିଶୋର ସ୍ୱତନ୍ତ୍ର ଦଳର ସଙ୍ଗଠନ ସମ୍ପାଦକ ଭାବରେ କାର୍ଯ୍ୟ କରି ସ୍ୱତନ୍ତ୍ର ଓ ଜନକଂଗ୍ରେସର ମିଳିତ ସରକାର ଗଠନ ଦିଗରେ ପ୍ରମୁଖ ଭୂମିକା ଗ୍ରହଣ କଲେ । ମାତ୍ର ସ୍ୱତନ୍ତ୍ର ଦଳ ପକ୍ଷରୁ ୧୯୬୪ ମସିହାରେ ରାଜ୍ୟସଭାକୁ ଯିବାପାଇଁ ପ୍ରତିଦ୍ୱନ୍ଦ୍ୱିତାରେ ସେ ବିଶ୍ୱାସଘାତକତାର ଶିକାର ହେଲେ । ମାତ୍ର ଦୁଇଟି ଭୋଟରେ ସେ ପରାଜିତ ହେବା ପରେ ସ୍ୱତନ୍ତ୍ର ଦଳ ଛାଡ଼ି 'ସ୍ୱାଧୀନ ଓଡ଼ିଶା' ଦଳ ଗଠନ କଲେ । କିନ୍ତୁ ୧୯୬୭ ମସିହା ନିର୍ବାଚନ ପରେ ପରେ ଅର୍ଥାଭାବରୁ ତାହା ନିଷ୍କ୍ରିୟ ହୋଇଗଲା ।

## ସୃଷ୍ଟି ସମ୍ଭାର

ପ୍ରାକ୍ ସ୍ୱାଧୀନତା କାଳରେ କଥାଶିଳ୍ପୀ ରାଜକିଶୋର ରଚନା କରିଥିଲେ 'ପଞ୍ଜୁରିପକ୍ଷୀ', 'ପ୍ରେମର ନିୟତି', 'ସିନ୍ଦୂରଗାର', 'ଜୀବନର ମଦିରା', 'ବିରହିଣୀ' ଆଦି ଉପନ୍ୟାସ । ସ୍ୱାଧୀନତା ପରବର୍ତ୍ତୀକାଳରେ ତାଙ୍କ ରଚିତ ଉପନ୍ୟାସଗୁଡ଼ିକ ହେଲା, 'ଭସା ମେଘ', 'ସଞ୍ଜବତି', 'ପ୍ରେମିକର ଡାଏରୀ', 'ଚଲାବାଟ', 'ପ୍ରୀତିର ବଣିକ' ଇତ୍ୟାଦି । ସ୍ୱାଧୀନତା ପୂର୍ବ ଲେଖାଗୁଡ଼ିକ ପ୍ରାୟ ବର୍ଣ୍ଣନାତ୍ମକ, କିନ୍ତୁ ସ୍ୱାଧୀନତା ପରବର୍ତ୍ତୀକାଳର ସୃଷ୍ଟିରେ ଲେଖକ କ୍ଲିଷ୍ଟ ଓ ମନସ୍ତାତ୍ତ୍ୱିକ ବିଶ୍ଳେଷଣରେ ଜଟିଳ ପ୍ରାୟ ମନେ ହୁଅନ୍ତି ।

## ପ୍ରେମର ନିୟତି

'ପ୍ରେମର ନିୟତି'ର ପ୍ରକାଶ କାଳ ହେଉଛି ୧୯୩୭ ମସିହା । ରାଜକିଶୋରଙ୍କ ପ୍ରେମ ସମ୍ବଳିତ ତାତ୍ତ୍ୱିକ ବ୍ୟାଖ୍ୟା ଅତୀବ ହୃଦୟସ୍ପର୍ଶୀ ହୋଇଛି । ଭଲ ପାଇବା ସମ୍ପର୍କରେ ତାଙ୍କର ମନ୍ତବ୍ୟ – ''ସବୁ ସୁଖ ମଣିଷ ଏମିତି ଖୋଜେ । ସେ ପାଇବାପାଇଁ ପାଗଳ ହୁଏ । ପାଇଲେ ଭୁଲି ଯାଏ । ପାଇବାକୁ ମନ କରି ନ ପାଇଲେ ଦୁଃଖ ହୁଏ । ଆଉ ପାଇସାରିଲେ ମନରୁ ଏକାବେଳକେ ପୋଛି ହୋଇଯାଏ । ଏହିସବୁ ଏକାଠି କରିଦେଲେ ଯାହା ହୁଏ ତାହାକୁ କୁହାଯାଏ ଭଲପାଇବା ।''

ପୁଣି ଭଲ ପାଇବାଟା ପ୍ରେମିକ ପ୍ରେମିକା ମଧ୍ୟରେ କେତେଦୂର ଫଳବତୀ ହେବ ଓ ଭଲ ପାଇବା ବା ପ୍ରେମ କରିବାରେ କାହାର ଆବଶ୍ୟକତା ରହିଛି – ଏସବୁର ନିଖୁଣ ଚିତ୍ରକୁ ଲେଖକ ସୁନ୍ଦର ଭାବରେ ଉପସ୍ଥାପିତ କରିଛନ୍ତି । ସେ କହିଛନ୍ତି ଯେ ସାରା ପୃଥିବୀରେ ଯେତେ ଭଲ ପାଇବାର ଅଭିସାର ହୋଇଛି, ତା'ର ମୂଳରେ ଅଛି ଦାନ ପ୍ରତିଦାନ । ଯେଉଁଠି ମଣିଷ ପ୍ରତିଦାନ ପାଏ ନାହିଁ ସେଠି ଭଲପାଇବା ଖୁବ୍

ଶୀଘ୍ର ସରିଯାଏ । ଯେତେ ପ୍ରେମ କାହାଣୀ ଦୁନିଆରେ ଅଛି, ସେ ସବୁଥିରେ ଏହି ଆଶାଟି ହେଉଛି ମୂଳସୂତ୍ର ।

ଲେଖକ ବିବାହ ଉପରେ ନିଜ ମତାମତ ମଧ୍ୟ ଦେଇ କହିଛନ୍ତି – ''ମୁଁ ମାନେ ଯେ ସଂସାରଟା ଖାଲି ନିକିତି ଧରା ହିସାବରେ ଚାଲେ ନାହିଁ । ସ୍ନେହ, ଆଦର, ସୋହାଗ ମଣିଷପାଇଁ ଭାରି ଦରକାର । ଏଇଥିରୁ ବାହାଘରର ସୃଷ୍ଟି । ବାହାଘର ଭିତରେ ଯେ ସ୍ନେହ ଆଦର ମୋଟେ ନ ଥାଏ କି ଖୁବ୍ ବେଶି ଥାଏ, ଦୁଇଟିଯାକ ଭୁଲ୍ । ଆମର ସାଧାରଣ ଜୀବନରେ ବାହାଘରଟା ଖୁବ୍ ବଡ଼ କରି ଭାବିଥାଉ, ପ୍ରକୃତରେ ସେଇଟା ସେତେ ବଡ଼ ନୁହେଁ । ଯେଉଁଠି ଉଭୟ ପକ୍ଷରୁ ଭଲ ପାଇବାପାଇଁ ଗୋଟିଏ ରୀତିମତ ଚେଷ୍ଟା ଚାଲିଥାଏ, ଦିନକୁ ଦିନ ଜୀବନରେ ପ୍ରତି କାମ ଏହି ଆନ୍ତରିକତାର ପରିଚୟ ଦିଏ, ସେଠି ବିବାହ ଭାରି ବୋଝ ପରି ହୁଏ ନାହିଁ । ××× ଯେଉଁଠି ଏହିସବୁ କିଛି ନ ଥାଏ, ସେଠି 'ଭଲ ପାଇବା' ନେଇ ଭାଗବଣ୍ଟା କରିବା ବାତୁଳତା ।''

ଉପନ୍ୟାସର ଅନ୍ୟତମ ଲେଖକ ନିତ୍ୟାନନ୍ଦ ଶତପଥୀ 'ଭଲ ପାଇବା' ଉପରେ କହିଛନ୍ତି ଯେ ମଣିଷ ବଞ୍ଚି ରହିବାକୁ, ସୁଖକର କରିବାକୁ ଭଲ ପାଏ ନାହିଁ କିମ୍ବା ଭଲ ପାଇବାପାଇଁ ବଞ୍ଚି ରହେ ନାହିଁ । ମଣିଷ ବଞ୍ଚିଛି ବୋଲି ଭଲ ପାଏ – ଭଲ ନ ପାଇ ରହିପାରେ ନାହିଁ । ପୁଣି ମଣିଷ ଯେମିତି ବଞ୍ଚି ରହିବାକୁ ବାଧ୍ୟ ହୁଏ, ସେମିତି ଭଲ ପାଇବାକୁ ମଧ୍ୟ ବାଧ୍ୟ ହୁଏ । ଭଲ ନ ପାଇଲେ ମଣିଷର ବଞ୍ଚି ରହିବାଟା ଦୁଃଖକର ହୁଏ ନାହିଁ କିମ୍ବା ମଣିଷର ବଞ୍ଚି ରହିବାରେ ସୁଖର ଅଭାବ ହୁଏ ନାହିଁ । ମଣିଷର ବଞ୍ଚି ରହିବା ହିଁ ଭଲ ପାଇବା ।

ଭଲ ପାଇବା ଗୋଟାଏ ଅନୁଭୂତି; ମାତ୍ର ଶେଷ କେଉଁଠି ? ସେଇ ପ୍ରଶ୍ନ ଉପନ୍ୟାସର ଅନ୍ୟତମ ଲେଖକ ଗୋପୀନାଥ ମହାନ୍ତି ଉଠାଇଛନ୍ତି –

''ଏତେ ଆଘାତ ପାଇ ଲୋକ ଫେରେ, ପୁଣି ଭଲ ପାଏ, ପୁଣି ଭୁଲେ, ପୁଣି– । କେତେବେଳେ ସିନ୍ଦୂରା ଫାଟେ, ପୁଣି କେତେବେଳେ ଅନ୍ଧାର ପଡ଼େ । କିନ୍ତୁ ଶେଷ କେଉଁଠି ?''

### ସିନ୍ଦୂରଗାର

ରାଜକିଶୋରଙ୍କ ଲେଖକ ଜୀବନର ପ୍ରଥମ ଅର୍ଘ୍ୟ 'ସିନ୍ଦୂରଗାର' । ସେ ଏକୋଇଶ ବର୍ଷ ବୟସରେ ୧୯୩୭ ମସିହାରେ ଏହାକୁ ରଚନା କରିଥିଲେ । ୧୯୫୯ ମସିହାରେ ଷଷ୍ଠ ମୁଦ୍ରଣଟି ପ୍ରକାଶ ପାଇଲା । ଏହା ଓଡ଼ିଆ ନାରୀ ଜୀବନର ଦୀର୍ଘ ତିରିଶ ବର୍ଷର କାହାଣୀ ବୋଲି ଲେଖକ ମୁଖବନ୍ଧରେ ଲେଖିଛନ୍ତି ।

'ସିନ୍ଦୂରଗାର'ର ରକ୍ଷଣଶୀଳ ଗ୍ରାମୀଣ ପରିବେଶରେ ଦେଖାଦେଇଛନ୍ତି ଦୁଇ ଚରିତ୍ର । ସାରଦା ଓ ସୌଦାମିନୀ । ଉଭୟେ ଉଭୟଙ୍କୁ ପ୍ରଥମ ଦେଖାରେ

ଭଲ ପାଇଛନ୍ତି । ମିନି ସାରାଜୀବନ ମନର ମଣିଷଟି ପାଇବାପାଇଁ ତପସ୍ୟା କରିଛି । ମାତ୍ର ସେଥିରେ ସେ ବିଫଳ ହୋଇଛି । ଶୁଭଙ୍କରଙ୍କୁ ଅବଶ୍ୟ ସ୍ୱାମୀରୂପେ ପାଇଛି । ତାଙ୍କ ଆଗରେ ନିଜର କ୍ଷତାକ୍ତ ଜୀବନକୁ ଲୁଚାଇଛି । ଭୟରେ ଜଡ଼ସଡ଼ ହୋଇ ବଞ୍ଚିରହିଛି । ପ୍ରଥମ ପ୍ରେମର ସ୍ମୃତିକୁ ପୁଞ୍ଜି କରି ବଞ୍ଚି ରହିବାକୁ ଇଚ୍ଛା କଲେ ମଧ୍ୟ ସେଥିରେ ସଫଳ ହୋଇପାରି ନାହିଁ । ପାପ-ପୁଣ୍ୟର ଦ୍ୱାହି ସାରା ଜୀବନ ପ୍ରେମିକା ହୋଇ ରହିବାରେ ବାଧା ଦେଇଛି ।

ସୌଦାମିନୀ ଜୀବନର ପରିପକ୍ୱ ବୟସରେ ଅସଫଳତାକୁ ସ୍ୱୀକାର କରି କହି ଉଠିଛି – ''ସତେ କ'ଣ ମୁଁ ଭଲ ପାଇ ଜାଣି ନାହିଁ ? ପିଲା ଦିନରୁ ଆଜିଯାଏ ମୁଁ କ'ଣ ଥରେ ହେଲେ ସାରଦାବାବୁଙ୍କୁ, ଶୁଭଙ୍କରବାବୁଙ୍କୁ ଆଉ ତୁମକୁ – କାହାରିକୁ ଭଲ ପାଇ ନାହିଁ ? ସବୁ କ'ଣ ମିଛ ? ××× ସବୁଦିନେ କ'ଣ, ମୁଁ କ'ଣ ସମସ୍ତଙ୍କ ପାଖରେ ଲୁଚାଇ ମନକୁ କହୁଥିବି – ମୁଁ ଭଲ ପାଇଛି ।''

ସୌଦାମିନୀ ଆଖିରୁ ଲୁହ ଝରିଛି । 'ଇପ୍‌ସିତ ପୁରୁଷ ହାତରୁ ଟିପାଏ ସିନ୍ଦୂରପାଇଁ ଭାରତୀୟ ଯୁବତୀର ଯେଉଁ ଅସୀମ ଆକାଂକ୍ଷା, ତାହାର ଚିରନ୍ତନୀ ସାମସଙ୍ଗୀତ ଶୁଣାଇଛି 'ସିନ୍ଦୂରଗାର' ।

**ଭସାମେଘ**

'ଭସାମେଘ'ର ରଚନାକାଳ ହେଉଛି ୧୯୫୪ ମସିହା । ଲେଖକ 'ମୋର କହିବାର କଥାରେ' କହିଛନ୍ତି – ''କିରାଣି ଜୀବନ ଓ ଗାଁର ଲୋକ – ଦୁଇଟି ବିଷୟ ମୋର ବିଶେଷ ଅନୁଭୂତିର ବାହାରେ । କ'ଣ ପାଇଁ ଏହି ଦୁଇଟି ପ୍ରସଙ୍ଗକୁ 'ଭସାମେଘ' ବହିରେ ବିଶେଷ ସ୍ଥାନ ଦେଲି – ଜାଣେ ନାହିଁ । ମନଟା କୁଣ୍ଠିତ ହେଉଛି, ଭୁଲ ଗୋଟାଏ ରହିଗଲା ପରି ।''

କିନ୍ତୁ ମାନବ ଚରିତ୍ରର ଗଭୀର ଅଧ୍ୟୟନ ଓ ତା'ର ସଫଳ ରୂପାୟନ ତାଙ୍କ ସୃଷ୍ଟିର ଏକ ବଡ଼ ଆକର୍ଷଣ ବୋଲି ସ୍ପଷ୍ଟ ବାରି ହୁଏ ।

ସୁଲତାର ଘର ମଫସଲରେ । ବାପା ଭାଇ ଥରେ ସହର ଦେଖେଇ ନେଇଥିଲେ । ମାତ୍ର ରଖେଇପାରି ନ ଥିଲେ । ଗାଁ ପ୍ରତି ତା'ର ଘୃଣାର ଝର ଫିଟେଇ ଦେଇଥିଲେ ।

ଶେଷରେ ସୁଲତା ସହର ଖୋଜି ପାଇଛି । ସ୍ୱାମୀ ସହିତ ସହରରେ ରହିବ । ବିଭାଘର ବେଳେ ସେ ଖାଲି ଭାବୁଥିଲା ମଫସଲରେ ରହି ସେ କେତେ ଅସୁବିଧାରେ ପଡ଼ିଯାଇଛି ! ସହରକୁ ଆସିଲାବେଳେ ସହରର ରାସ୍ତା ଦେଖି ଉଲ୍ଲସି ଉଠିଥିଲା । ରାସ୍ତାର ପ୍ରତି ଖୁଣ୍ଟରେ ବିଜୁଳି ଆଲୁଅ ଝୁଲୁଥିଲା ।

ସୁଲତାର ସ୍ୱାମୀ ସାମାନ୍ୟ କିରାଣିଟିଏ । ଗାଁରେ ବାପଘରେ ସ୍ୱାମୀଙ୍କୁ ଆକାଶପରି ଉଚ୍ଚ ଦିଶୁଥିଲା । ମାତ୍ର ସହର ତା' ସ୍ୱାମୀକୁ ଛୋଟ ମଣିଷରେ ହିସାବ କରନ୍ତି – ଏଟା ଜାଣି ତା'ର ମନ ପିତା ହୋଇଯାଇଛି ।

ସହରୀ ଜୀବନର ପ୍ରଥମ ଦିନର ମାଦକତା ଗତ ହୋଇଯାଇଛି । ଟଙ୍କା ପଇସାର ଅଭାବ ଦେଖାଦେଇଛି । ସ୍ୱାମୀଙ୍କର ଅଫିସ ବନ୍ଧୁ ପ୍ରକାଶ ଘରକୁ ଆସି ପରିଚୟ ଦେଇଛି । କୌଶଳୀ ଅଭିନୟ କରି ସୁଲତାର ମନକୁ ଆଘାତ ଦେଇଛି । ସୁଲତା ସେହି ବନ୍ଧୁ ପ୍ରକାଶବାବୁଙ୍କ କଥା ଭାବିଛି । ସେ ଯେମିତି ତା'ର ମନର ମଣିଷଟିକୁ ପାଇଛି ! ସ୍ୱାମୀ ବ୍ରଜବାବୁ ତା' ପାଇଁ ସବୁ କରିଛନ୍ତି ସାଧମତେ । କିନ୍ତୁ ସେ ତା'ର ମନର ମଣିଷ ନୁହନ୍ତି । ପୁଣି ଆସିଛନ୍ତି ଅବିବାହିତା ଜୀବନର ପ୍ରେମିକ ରମାନାଥବାବୁ । ବହୁ ଆଳାପ ଆଲୋଚନା ହୋଇଛି ସେମାନଙ୍କ ମଧ୍ୟରେ । ଶେଷରେ ସୁଲତା ପାଖରେ ଲଗାଲଗି ହୋଇ ବସିବାକୁ ଚେଷ୍ଟା କରିଛନ୍ତି । ସୁଲତା ବଡ଼ ପାଟିରେ କହିଉଠିଛି – ''ମଉଳା ମନ ନେଇ ପ୍ରୀତି ଖୋଜିବ ନାହିଁ । ମନ ଥରେ ମଉଳିଗଲେ ମଉଳା ଫୁଲ ପରି ଆଉ ଥରେ ତା'ର ରୂପ, ରସ, ଗନ୍ଧ ନେଇ ତମ ପାଖରେ ଠିଆ ହେବ ନାହିଁ । ... ଏବେ ତୁମେ ମୋର ବନ୍ଧୁ ।''

ରମାନାଥବାବୁଙ୍କୁ ବିଦାୟ ଦେଲାବେଳେ କହିଛି – ''ଆଉ ଆସିବ ନାହିଁ ଏଠିକି ।''

ପୁଅ ରମୁର ଜଙ୍ଘଟି ଫୁଲିଯାଇଛି – କେହି କାମୁଡ଼ି ଦେବାରେ । ଜଙ୍ଘ ପୋଡ଼ିଛି । ସେ କାନ୍ଦି କାନ୍ଦି ଅସ୍ଥିର ହୋଇଛି । ସୁଲତା ଯାଦୁର ମଲମ ଲଗାଇ ଦେଇଛି । ଭଲ ହୋଇ ନାହିଁ । ଥଣ୍ଡା ପାଣି ଢାଳିଛି । ତଥାପି କିଛି ହୋଇ ନାହିଁ । ସୁଲତା ବିବ୍ରତ ହୋଇପଡ଼ିଛି । ବିଛା କାମୁଡ଼ିଲା ଭାବି ଭଙ୍ଗା ରେକର୍ଡ ଘୋରି ଲଗାଇବାକୁ ପାଖ ଘରକୁ ଯାଇଛି – ଭଙ୍ଗା ରେକର୍ଡ ଆଣିବାପାଇଁ । ପଡ଼ୋଶୀ ଔଷଧ ନେଇ ସୁଲତା ଘରକୁ ଆସିଛନ୍ତି । ଔଷଧ ଦେଇଛନ୍ତି । ଗଲାବେଳେ ସୁଲତା କାନ୍ଧରେ ହାତ ରଖିଛନ୍ତି । ଲୋକଟିର ସ୍ପର୍ଶର ଦଂଶନ ସୁଲତାକୁ ଘୋର ଆଘାତ ଦେଇଛି ।

ଗାଁରୁ ଶାଶୂଙ୍କର ଚିଠି ଆସିଛି । ସେ ଅଭିଯୋଗ କରି ଲେଖିଛନ୍ତି ଯେ ଠାକୁରେ ପିଲା ଦୁଇଟି ଦେଇଛନ୍ତି । ସେମାନେ ଘର ଚିହ୍ନିଲେ ନାହିଁ । ତାଙ୍କର ଦେହ ଭଲ ରହୁ ନାହିଁ । ପାଚିଲା ପତ୍ର – କେତେବେଳେ ଝଡ଼ିପଡ଼ିବେ ଇତ୍ୟାଦି । ସୁଲତାର ମନରେ ଅନୁଶୋଚନା । ପିଲା ଦୁଇଟିଙ୍କୁ ଘରଛଡ଼ା କରିଦେଇଛି; କିନ୍ତୁ ଘରଟିଏ ଦେଇପାରି ନାହିଁ । ଶାଶୂ ମଧ୍ୟ ଲେଖିଛନ୍ତି ଶୀଘ୍ର ଘରକୁ ଯିବାକୁ । ସୁଲତା ଶାଶୂ ଘରକୁ ଯିବାକୁ ସ୍ଥିର କରିଛି ।

ଲେଖକ ଶେଷରେ ଲେଖିଛନ୍ତି – ''ପାଞ୍ଚ ବର୍ଷର ସ୍ୱପ୍ନ ବହୁ ବର୍ଷର ସଞ୍ଚିତ ଆକାଂକ୍ଷା ଦୁଇଟି ଦିନର ସାମାନ୍ୟ କେତୋଟି ଘଟଣାରେ ତା'ର ରୂପ ବଦଳାଇ ଦେଲା... ।''

× × ×

ଭସା ମେଘର ବି କୌଣସି ନିର୍ଦ୍ଦିଷ୍ଟ ସମୟ ନ ଥାଏ । ଚାଲୁ ଚାଲୁ ଭାସି ଭାସି ସେ ଝରିପଡ଼େ ଯେମିତି ଲୋତକ ପରି ।

## ପ୍ରେମିକର ଡାଏରୀ

୧୯୫୫ ମସିହା ଅପ୍ରେଲ ମାସ ୮ ତାରିଖରେ ରାଜକିଶୋର 'ପ୍ରେମିକର ଡାଏରୀ' ଉପନ୍ୟାସଟି ତୃପ୍ତି ଦେବୀଙ୍କୁ ଉତ୍ସର୍ଗ କରି ଲେଖିଥିଲେ —

'ପ୍ରେମିକର ଡାଏରୀ' ଗୋଟିଏ ମିଛ କଥା । ତଥାପି ଏହାକୁ ସତ କଥା ବୋଲି ଭାବିବେ । ××× କେତେକ ଲୋକ ଏହାର ପାଣ୍ଡୁଲିପି ପଢ଼ି କହିଛନ୍ତି ଯେ ଏହା ଭାରି ନୀରସ ଓ କ୍ଲାନ୍ତିକର ହୋଇଛି, ହୋଇଥିବ, କାରଣ ଏହାକୁ ଲେଖିବାକୁ ମୋତେ ପୂରା ପାଞ୍ଚ ବର୍ଷ ଲାଗିଗଲା ।''

ଉପନ୍ୟାସ ଆରମ୍ଭରେ ବର୍ଣ୍ଣିତ ଅଛି ଯେ ଗୀତା, ରାଣୀ ଓ କବିତା ନାମରେ ତିନି ଜଣ ତରୁଣୀ ସାହିତ୍ୟିକ ଗୋବର୍ଦ୍ଧନଙ୍କର ଲେଖା ସମ୍ପର୍କରେ ଅବଗତ ହୋଇ ତାଙ୍କ ସହିତ ପରିଚିତ ହେବାପାଇଁ ଇଚ୍ଛା ପୋଷଣ କରନ୍ତି । ସେମାନଙ୍କ ଧାରଣା ହୋଇଛି ଯେ କବି ଓ ଲେଖକମାନେ ପ୍ରେମିକ ହୋଇପାରନ୍ତି । ତା'ର କାରଣ ସେମାନେ ଅପରର ମନ ଜାଣିପାରନ୍ତି । ମନ ବୁଝି କଥା ଓ କାମ କରିପାରନ୍ତି । ତେଣୁ ରାଣୀ, କବିତା ଓ ଗୀତା ଆପଣା ଆପଣାର ମନକୁ ସାହିତ୍ୟିକ ଗୋବର୍ଦ୍ଧନଙ୍କ ପାଦ ତଳେ ଲୋଟାଇ ଦେଇଛନ୍ତି ।

ଏହି ତିନି ଜଣ ତରୁଣୀ ଗୋବର୍ଦ୍ଧନଙ୍କ ପାଖକୁ ବେନାମି ଚିଠିଟିଏ ଲେଖିଛନ୍ତି । ସେଥିରେ ତିନି ଜଣ ସାହିତ୍ୟ-ପ୍ରେମିକା ସାହିତ୍ୟ ସଭାକୁ ଯାଉଥିବା କଥା କେବଳ ଜଣାଇଛନ୍ତି । ସେମାନେ ସାହିତ୍ୟ ସଭାସ୍ଥଳୀରେ ପହଞ୍ଚି ଗୋବର୍ଦ୍ଧନବାବୁଙ୍କ ଠିକଣା ସଂଗ୍ରହ କରିଛନ୍ତି । ଗୋବର୍ଦ୍ଧନବାବୁ ସମୁଦ୍ର କୂଳ ଗୋଟିଏ ହୋଟେଲରେ ରହୁଥିବା ଜାଣିପାରିଛନ୍ତି । ସାହିତ୍ୟ ସଭାରେ ସେମାନଙ୍କର ଗୋବର୍ଦ୍ଧନବାବୁଙ୍କ ସହ ପରିଚୟ ହୋଇଛି । ସନ୍ଧ୍ୟା ପରେ ସେମାନେ ଗୋବର୍ଦ୍ଧନବାବୁଙ୍କ ପାଖକୁ ଯାଇଛନ୍ତି — ସେହି ପରିଚୟଟିକୁ ଆହୁରି ନିବିଡ଼ କରିବାକୁ । ସେମାନେ ତାଙ୍କଠାରୁ ବିଦାୟ ନେଇ ଆସିଛନ୍ତି, ହେଲେ ନିଛାଟିଆ ସମୁଦ୍ରକୂଳରେ କଟାଇଥିବା ମୁହୂର୍ତ୍ତମାନଙ୍କୁ ସ୍ମରଣ କରି ବିଭୋର ହୋଇପଡ଼ିଛନ୍ତି । ଗୋବର୍ଦ୍ଧନବାବୁ ମଧ୍ୟ ଏହି ତିନି ଗୋଟି ତରୁଣୀଙ୍କ ପ୍ରେମରେ ପଡ଼ିଯାଇଛନ୍ତି । ସେଦିନ ରାତ୍ରିରେ ଅନୁଭବରେ ସାନ୍ନିଧ ଖୋଜିଛନ୍ତି । କେତେ ଭାବନାରେ ବୁଡ଼ି ଯାଇଛନ୍ତି । ସେ ଆଶାୟୀ ଭାବରେ ଚାହିଁ ରହିଛନ୍ତି କେଉଁ ବାନ୍ଧବୀ ଆସିବେ ଆଉ କେଉଁ ସ୍ନେହ, ପ୍ରେମ ଭଣ୍ଡାର ଖୋଲିଦେବେ ।

କିନ୍ତୁ ଗୋବର୍ଦ୍ଧନ ସେହି ରାଣୀ, କବିତା ଓ ଗୀତାଙ୍କ ସହିତ ଯେତିକି ନିକଟତର ହେବାକୁ ଚାହିଁଛନ୍ତି, ସେମାନେ ସେତିକି ଦୂରେଇ ଯିବାର ଆକାଂକ୍ଷା ପୋଷଣ କରନ୍ତି ।

ଦ୍ୱିତୀୟ ଦିନର ଅନୁଭୂତି ଗଢ଼ିଉଠିଛି ହକର୍ ଦୀନବନ୍ଧୁ ଗୃହର ପୃଷ୍ଠଭୂମିରେ । ଦୀନବନ୍ଧୁର ସ୍ତ୍ରୀ ସରଳା । ସେ ଗୋବର୍ଦ୍ଧନଙ୍କ ସାହିତ୍ୟର ମୁଗ୍ଧପାଠିକା । ସେ ମଧ୍ୟ ଗୋବର୍ଦ୍ଧନଙ୍କୁ ଆପଣେଇ ପାରିଛି । ସ୍ୱାମୀ ଦୀନବନ୍ଧୁଙ୍କୁ ରୋଷେଇ କାମରେ ଲଗେଇଛି କେବଳ ଗୋବର୍ଦ୍ଧନଙ୍କ ସହିତ ଆଳାପ କରିବାପାଇଁ । ସରଳା ତା'ର ଦେହର କ୍ଷୁଧାକୁ ପ୍ରକଟ କରିବାକୁ ବ୍ୟଗ୍ର । କିନ୍ତୁ ଅନ୍ୟ ଦିଗରେ ସ୍ୱାମୀର ବଶଂବଦ ଭାବରେ ପ୍ରତିପାଦନ କରିବାକୁ ଚାହିଁଛି । ଗୋବର୍ଦ୍ଧନ ସରଳା ସହିତ ଆଳାପର ସୁଯୋଗର ସଦ୍‌ବ୍ୟବହାରପାଇଁ ନିକଟବର୍ତ୍ତୀ ହେଲାବେଳେ ସରଳା ତାଙ୍କୁ ଭାଇ ବୋଲି ସମ୍ବୋଧନ କରିଛି । ଗୋବର୍ଦ୍ଧନ ଦୂରଛଡ଼ା ହୋଇଯାଇଛି । କ୍ଳାନ୍ତ ସରଳା ମଧ୍ୟ ଭାବିଛି – ତା'ର କ'ଣ ଅଛି ? କ'ଣ ନେଇ ନିଜକୁ ସେ ପରିପୂର୍ଣ୍ଣ ବୋଲି ବଡ଼େଇ କରିପାରିବ ? ରାଜକିଶୋରଙ୍କ ଏହି ଉପନ୍ୟାସରେ କେତେ ବାକ୍ୟ ଉଚ୍ଚାରଣ କରିଛନ୍ତି ଯାହାକୁ ଜୀବନ ସମ୍ପର୍କିତ ସୂକ୍ତି କହିଲେ ଯଥାର୍ଥ ହେବ । ତା'ର ଉଦାହରଣ –

''ପ୍ରେମିକ ତା'ର ଭଣ୍ଡାରଘରକୁ ଯାହା ସାଉଁଟିଆଣେ,ସେଥିରେ ଥାଏ ଏ ପ୍ରକାରର କେତେଟା ଅନୁଭବ – କେଇପଦ କଥା । ଯାହା ମିଳିବ ନାହିଁ, ତାକୁ ଖୋଜିବାର ନାଁ ହେଉଛି ପ୍ରେମ । ଯାହା ରହିପାରିବ ନାହିଁ, ତାକୁ ରଖିବାକୁ ଚେଷ୍ଟା କରେ ପ୍ରେମିକ ।''

**ଚଲାବାଟ**

'ଚଲାବାଟ'ରେ ଔପନ୍ୟାସିକଙ୍କ ଜୀବନାନୁଭୂତି ରୂପାୟିତ ହୋଇଥିବା ଲକ୍ଷ୍ୟ କରାଯାଏ । ଅବଶ୍ୟ ଏହା ପ୍ରତ୍ୟେକଭାବେ ସମ୍ପୂର୍ଣ୍ଣ ହୋଇ ନାହିଁ । ତେବେ ଏହା ଆଂଶିକଭାବେ ହୋଇଥିବା ସ୍ପଷ୍ଟ ବାରି ହୁଏ । ଉପନ୍ୟାସଟିର ରଚନା କାଳ ହେଉଛି ୧୯୫୭ ମସିହା । ସେତେବେଳକୁ ସେ ଜୀବନର ଚାଳିଶ ଗୋଟି ଫଗୁଣ ବିତାଇ ସାରିଥିଲେ । ସେ ମଧ୍ୟ ସେତେବେଳକୁ ଥିଲେ ଅବିବାହିତ ଓ ନିଃସଙ୍ଗ ଜୀବନ ଯାପନ କରୁଥିଲେ । ଏହି ନିଃସଙ୍ଗତାର ସ୍ପଷ୍ଟ ଚିତ୍ର ଉପନ୍ୟାସର ମୁଖ୍ୟ ଚରିତ୍ର ଅମରେନ୍ଦ୍ର ଜୀବନରୁ ଉପଲବ୍ଧ ହୁଏ ।

ଉପନ୍ୟାସରେ ବହୁ ଘଟଣାବଳୀର ସମାବେଶ ନାହିଁ । ବହୁ ଚରିତ୍ରମାନଙ୍କର କୋଳାହଳ ମଧ୍ୟ ନାହିଁ । ତେଣୁ ନାନା ଘଟଣା ଅପେକ୍ଷା ଚରିତ୍ରମାନଙ୍କର ମାନସିକ ଘାତ-ପ୍ରତିଘାତ ସୃଷ୍ଟି କ୍ଷେତ୍ରରେ ଔପନ୍ୟାସିକ ହୋଇଉଠିଛନ୍ତି ସିଦ୍ଧହସ୍ତ ।

ଯୁବକ ଅମରେନ୍ଦ୍ର ଓ ଉତ୍ତର ଭାରତୀୟା କନ୍ୟା ରୀତା ବିଶ୍ୱବିଦ୍ୟାଳୟରେ ସହପାଠୀ ଥିଲେ । ଉଭୟେ ଉଭୟଙ୍କ ପ୍ରତି ଆକୃଷ୍ଟ ହୋଇପଡ଼ିଛନ୍ତି । କିନ୍ତୁ ଭାବପ୍ରବଣତାର ନିର୍ମମ ସ୍ପର୍ଶରେ ଅମରେନ୍ଦ୍ରଠାରୁ ରୀତା କ୍ରମେ ଦୂରେଇ ଯାଇଛି । ବିଶ୍ୱବିଦ୍ୟାଳୟର ଅନ୍ୟ ଛାତ୍ରୀ ସୁମତି ଅମରେନ୍ଦ୍ରଙ୍କୁ ବିବାହ କରିବାକୁ ଚାହିଁଛି । କିନ୍ତୁ ରୀତା ଠାରୁ ଦୂରେଇ ଯାଇଥିବା ଅମରେନ୍ଦ୍ର ସୁମତି ସହିତ ସମ୍ପର୍କ ସ୍ଥାପନ କରିବାକୁ

ଆଗ୍ରହୀ ହୋଇ ନାହାନ୍ତି । ଔପନ୍ୟାସିକଙ୍କ ଭାଷାରେ, ''ଯେକୌଣସି ଜିନିଷପାଇଁ ଚେଷ୍ଟା କରି ତାକୁ ହରାଇଲେ ମନର ଉତ୍ସାହ ବଦଳରେ ବୈରାଗ୍ୟ ଆସେ ।''

ଅମରେନ୍ଦ୍ର ସୁମତି ପାଖକୁ ଚିଠି ଲେଖିଛନ୍ତି – ''ତମର ଚିଠି ବହୁତ ଥର ପଢ଼ିଲି । କିନ୍ତୁ ମୋର ସବୁ କାମ ସରିଛି । ନିଜ ଉପରୁ ଶ୍ରଦ୍ଧା କମିଯାଇଛି । ତେଣୁ କାହାରିକୁ ଶ୍ରଦ୍ଧା କରିପାରିବି ନାହିଁ ।

××× ମୋର ଅତୀତ ବଡ଼ ବିଷାଦଭରା । ଭବିଷ୍ୟତ୍ ଭାରି ଅନ୍ଧାରୁଆ । ××× ଯାଉ – ସେ କଥା ଶେଷ ହୋଇଛି ××× ।''

ଅମରେନ୍ଦ୍ର ଚିଠିରେ 'ପ୍ରିୟତମା' ବୋଲି ଲେଖି ନ ଥିଲା ।

ଏହି ତିନୋଟି ଚରିତ୍ର ରୀତା, ଅମରେନ୍ଦ୍ର ଆଉ ସୁମତି ଆଦରି ନେଇଥିଲେ ନିଃସଙ୍ଗ ଜୀବନ । ନିଜ ଦେହରେ ବର୍ଷବର୍ଷର ଦିନରାତି, ହିମ କାକର, ଖରା ଝାଞ୍ଜି ପାର ହୋଇଛି । ଅମରେନ୍ଦ୍ର ଭାବେ ସତେ କ'ଣ ରୀତା ଆଉ ସୁମତି ସେହି ମନରେ, ସେହି ଦେହରେ, ସେହି ଖିଆଲ ନେଇ ବାଟ ଚାଲିଛନ୍ତି ?

ଲେଖକ ଶେଷରେ କହିଛନ୍ତି – ''ପଥଶ୍ରାନ୍ତ ଅମରେନ୍ଦ୍ର ନିଜର ପାଚିଲା ଦାଢ଼ି ଦର୍ପଣରେ ଦେଖିଲାବେଳେ ତା'ର ଆଖି ଆଗରେ ବେଳେ ବେଳେ ଦେଖାଯାନ୍ତି – ରୀତା ଆଉ ସୁମତି । ସେ ଦୀର୍ଘନିଶ୍ୱାସ ପକାଇ କହେ – ପ୍ରକୃତରେ ତା'ର ମନର ମଣିଷ, ମାନସୀ ପ୍ରତିମା କିଏ ? ... ରୀତା ନା ସୁମତି ? ... ନା, ଏମାନଙ୍କ ଭିତରୁ କେହି ନୁହନ୍ତି ?''

'ଚଲାବାଟ' ଉପନ୍ୟାସରେ କାହାଣୀ ନାହିଁ କହିଲେ ଚଳେ । ଚରିତ୍ରଗୁଡ଼ିକଠାରେ ଘଟଣାର ବୈଚିତ୍ର୍ୟ ପରିଲକ୍ଷିତ ହୁଏ ନାହିଁ । ଚରିତ୍ରମାନଙ୍କର ପୂର୍ଣ୍ଣ ଜୀବନ ଚିତ୍ରର ଆଭାଷ ମଧ୍ୟ ଏଥିରେ ନାହିଁ । ଜୀବନର ଏକ କ୍ଷୁଦ୍ର ଅଂଶକୁ ନେଇ ଏହା ରଚିତ । ଏଇ କ୍ଷୁଦ୍ର ଅଂଶ ମଧ୍ୟରୁ ଏକ ମହତ୍ ଲକ୍ଷ୍ୟ ନେଇ ଧାବମାନ ହେବାର ପଥ ହେଉଛି 'ଚଲାବାଟ' । ଏହା ଏକ ଗଦ୍ୟ ମହାକାବ୍ୟର ଗୌରବ ଦାବି କରେ ବୋଲି ଜଣେ ଆଲୋଚକ ମତ ଦେଇଛନ୍ତି ।

ସମାଲୋଚକ ଡଃ ଜାନକୀବଲ୍ଲଭ ମହାନ୍ତିଙ୍କ ମତରେ – ''ଏହି ଉପନ୍ୟାସରେ ଲେଖକଙ୍କର ବଚନ ବିନ୍ୟାସର ରୀତି ମଧ୍ୟ ଅନନ୍ୟ ଓ ବୈଶିଷ୍ଟ୍ୟପୂର୍ଣ୍ଣ । ଶାଣିତ ବୁଦ୍ଧି, ପରିପକ୍ୱ ଅଭିଜ୍ଞତାରେ ତାହା ରସାଣିତ ଓ ଜୀବନର ସତ୍ୟୋପଲବ୍ଧିରେ ଉଦ୍ଭାସିତ । ଏହି ଉପନ୍ୟାସର ଭାବ ସମ୍ପଦକୁ ଯେପରି ଚମତ୍କାର ଉପମା ଓ ରୂପକାଦି ଅଳଙ୍କାରରେ ସୁସଜ୍ଜିତ କରିଛନ୍ତି, ତାହା ଲେଖକଙ୍କ ଅପୂର୍ବ ସକ୍ଷମତାର ପରିଚାୟକ ।''

ଲେଖକ ନିଜେ ଯଥାର୍ଥରେ ଆହ୍ୱାନ ଦେଇଥିଲେ ସତ୍‌ସାହସର ସହ ଏପରି ଏକ ଉପନ୍ୟାସ ଲେଖାଇବାପାଇଁ 'ଓଡ଼ିଶା ସାହିତ୍ୟ ଏକାଡେମୀ'କୁ ।

ଲେଖକ ଜୀବନର ଶେଷଭାଗରେ ଏକ ସାକ୍ଷାତ୍‌କାରରେ କହିଥିଲେ – 'ଚଲାବାଟ'ରେ ଯେଉଁ ଗୋଟିଏ ଆହ୍ୱାନ ଦେଇଥିଲି ତାହା କ'ଣ ସମସ୍ତଙ୍କପାଇଁ ଆହ୍ୱାନ ନୁହେଁ ?

**କଜ୍ଜଳଗାର**

୧୯୫୯ ମସିହାରେ 'କଜ୍ଜଳଗାର' ଉପନ୍ୟାସ ପ୍ରକାଶ ପାଇଲା । ଅଳ୍ପ ସଂଖ୍ୟକ ଚରିତ୍ରକୁ ନେଇ ଲେଖକ ଦୁଇଟି ପ୍ରାଣର କୌତୂହଳ ଓ ଆବେଗ ସ୍ପନ୍ଦିତ ହୃଦୟର ଗୋପନ ରହସ୍ୟକୁ ପ୍ରକାଶ କରିଛନ୍ତି ।

ଓଡ଼ିଶା ସରକାରଙ୍କ ସବ୍‌ଡେପୁଟି ଚାକିରି ପାଇ ସୁଭାଷବାବୁ ସହରର ଗୋଟିଏ ନିର୍ଜନ ରାସ୍ତା ପାଖରେ ଥିବା ଘରଟିଏ ନେଇଛନ୍ତି । ପାଖ ଘରେ ରହୁଥିଲେ ଶ୍ୟାମାଦେବୀ । ସୁଭାଷବାବୁ ଅବିବାହିତ । ଶ୍ୟାମାଦେବୀ ଚଉଦ ବର୍ଷ ହେଲା ବିବାହିତା । ଦୁଇଟି ସନ୍ତାନର ଜନନୀ ମଧ୍ୟ । ନିଜକୁ ତଥାପି ସେ କିପରି ଅସମ୍ପୂର୍ଣ୍ଣ ମନେ କରନ୍ତି ଓ ପରିପୂର୍ଣ୍ଣ ହେବାର କାମନା କରନ୍ତି ।

ସୁଭାଷବାବୁ ତାଙ୍କ ତରଫରୁ ଅଚିହ୍ନା ନାରୀଟିର ନାମ ରଖନ୍ତି କୃଷ୍ଣପ୍ରିୟା । ଶ୍ୟାମାଦେବୀଙ୍କ ସ୍ୱାମୀ କେଶବବାବୁ ଗସ୍ତରୁ ଫେରିଛନ୍ତି । ସେ ସୁଭାଷବାବୁଙ୍କୁ ନିମନ୍ତ୍ରଣ କରିଛନ୍ତି ତାଙ୍କ ଘରକୁ ଆସିବାପାଇଁ । ସୁଭାଷବାବୁ ମଧ୍ୟ ଯାଇଛନ୍ତି । ଶ୍ୟାମାଦେବୀଙ୍କ ସହିତ କେଶବବାବୁ ପରିଚୟ କରାଇଦେଇଛନ୍ତି । ସ୍ତ୍ରୀଙ୍କ ନାମ ଶ୍ୟାମାଦେବୀ ବୋଲି ଜଣାଇଛନ୍ତି । କଥାବାର୍ତ୍ତାରେ ହିଁ ଶ୍ୟାମାଦେବୀ ସୁଭାଷବାବୁଙ୍କୁ ସିଗାରେଟ୍ ନ ଖାଇବାପାଇଁ କହିଛନ୍ତି । ପ୍ରଥମ ଦେଖା ସାକ୍ଷାତ୍ ଓ ସମସ୍ତ ଘଟଣା ସୁଭାଷବାବୁଙ୍କ ଛାତିରେ ଝଡ଼ ସୃଷ୍ଟି କରିଚି । କେଶବବାବୁ ପୁଣି ଗସ୍ତରେ ଯାଆନ୍ତି । ଶ୍ୟାମାଦେବୀ ହଠାତ୍ କିଛି ଦିନ ବିବାହ ଉତ୍ସବରେ ଯୋଗ ଦେବାକୁ ଯାଇଛନ୍ତି । ଶ୍ୟାମାଦେବୀଙ୍କ ଅନୁପସ୍ଥିତି ସୁଭାଷବାବୁଙ୍କୁ ବିବ୍ରତ କରିଛି । ଶ୍ୟାମାଦେବୀ ଫେରିଛନ୍ତି । ସୁଭାଷବାବୁ ପରକୀୟା ପ୍ରୀତି ଖୋଜି ଯାଆନ୍ତି । ଶ୍ୟାମାଦେବୀଙ୍କ ମନ ମଧ୍ୟ ଘରର ବାଧା ବନ୍ଧନକୁ ଏଡ଼ିଦେଇ ସୁଭାଷବାବୁଙ୍କ ଆଡ଼କୁ ଗତି କରିଛି । ସେ ମଧ୍ୟ ପ୍ରସ୍ତୁତ କରିନେଇଛନ୍ତି ନିଜକୁ ଉତ୍ସର୍ଗ କରିଦେବାପାଇଁ । ତାଙ୍କର ଯୁକ୍ତି ହେଲା –

''ବାହା ହୋଇଛି ବୋଲି ମନ ଯଦି କାହାରିକୁ ଦେଖି ଆକୁଳ ହୁଏ, ସେହି ଆକୁଳତାକୁ ତଣ୍ଟିଚିପି ମାରିଦେବାକୁ କ'ଣ ବାହାଘର ଆମକୁ କହିଛି କି ?''

ଶେଷକୁ ଶ୍ୟାମାଦେବୀ ବିନତି କରି କହିଛନ୍ତି ସୁଭାଷବାବୁଙ୍କୁ – ''କାଲିଠାରୁ କୃଷ୍ଣପ୍ରିୟା ତୁମକୁ ତା'ର ସମସ୍ତ ଉତ୍ସର୍ଗ କରିଦେଲା । ତୁମେ ତାକୁ ରଖ ବା ଫୋପାଡ଼ି ଦିଅ – ସେ ତୁମର !''

ପୁଣି ଶ୍ୟାମାଦେବୀ କହିଛନ୍ତି – ''କାଲି ଠିକ୍ କଲି ଯେ ସେ (ସ୍ୱାମୀ) ଶ୍ୟାମାଦେବୀଙ୍କୁ ପାଇବେ । ତୁମେ ପାଇବ କୃଷ୍ଣପ୍ରିୟାକୁ । ଏ ଦେହଟା ତାଙ୍କର । ଏଇ ମନଟା ତମର ।

ବାହାଘର ଯୋଉ ପାଚେରି ପକାଇ ଦେଇଛି ସେହି କେବଳ ହେଉଛି ବ୍ୟବଧାନ । ଏଇ ଦେହକୁ କାମନା କରିବ ନାହିଁ । ଏତିକି ହେଉଛି ତୁମପାଇଁ ନିଷେଧ ।''

''ସେ ଦିନ ନିସ୍ତବ୍ଧ ରାତିରେ ଛାପିଛାପିକିଆ ଜହ୍ନ ଆଲୁଅରେ ଶ୍ୟାମାଦେବୀ ଦେଖିଛନ୍ତି ନିଜକୁ – ସେ ପୁଣି ଥରେ ବିଭା ହୋଇଛନ୍ତି ... ମନର ବିବାହ ହୋଇ ନ ଥିଲା ... ।''

ଏହି ହେଲା 'କଜ୍ଜଳଗାର' ଉପନ୍ୟାସର କଥାବସ୍ତୁ । ମଣିଷ ଅନ୍ତଃମନର ସଂଗୁପ୍ତ ଚେତନାକୁ ଔପନ୍ୟାସିକ ନିଜସ୍ୱ ଶୈଳୀରେ ରୂପାୟିତ କରିଛନ୍ତି ।

**ଅଷ୍ଟମୀ ଚାନ୍ଦ**

'ଅଷ୍ଟମୀ ଚାନ୍ଦ' ଉପନ୍ୟାସର ନାୟିକା ନୀହାରବାଳା । ସେ ବିବାହ କରିଥିଲା – ବଳରାମବାବୁଙ୍କୁ । କୋଳରେ ଥିଲା ପିଲା । ସ୍ୱାମୀ ଅପବାଦ ଦେଇ କହିଲେ ନୀହାର ଚରିତ୍ରହୀନା ଓ କଳଙ୍କିନୀ । ସେ କୁଆଡ଼େ ସ୍ୱାମୀକୁ ଭଲ ପାଇପାରିଲା ନାହିଁ । ତାଙ୍କ ସୁଖ ଦୁଃଖ ସାଙ୍ଗରେ ନିଜକୁ ଗୁନ୍ଥି ପାରିଲା ନାହିଁ । ସେ ହେଲା ସ୍ୱାମୀ ପରିତ୍ୟକ୍ତା । ନୀହାରବାଳା ସେବିକା ଚାକିରିପାଇଁ ଦରଖାସ୍ତ ଦେଇଛି । କବିରାଜ ଦିଗମ୍ବରବାବୁଙ୍କ ଘରେ ପୁଣି ଆଶ୍ରୟ ନେଇଛି । ସେହି ତାଙ୍କୁ ଏ ଦିଗରେ ସାହାଯ୍ୟ କରିଛନ୍ତି । ଦିଗମ୍ବର ତାକୁ ଆଦର କରିଛି । ଆଉ କହିଛି – ''ତମେ ଯେଉଁଦିନ ମୋତେ ଛାଡ଼ିଦେବ, ମୁଁ ଏସବୁକୁ ତୁଚ୍ଛ କରି ଚାଲିଯିବି ।''

ନୀହାର ବିଶ୍ୱାସ କରିପାରି ନ ଥିଲା । ପଚାରିଥିଲା – ''ଯାଇପାରିବ ଏକାଠି, ମୋ ସାଙ୍ଗରେ ? ମରଣ ଦୁଆର ପର୍ଯ୍ୟନ୍ତ ଚାଲିପାରିବ ? ... ତୁମର ପିଲା କୁନି ଝିଅ, ତାଙ୍କୁ ଭୁଲି ପାରିବ ?

କଳ୍ପନାର ହଟଚମଟ କଥାରେ ମିଶାଇ ଦିଗମ୍ବର କହିଛି – ''ମୁଁ ଜଣେ ସାମାନ୍ୟ ଲୋକ । ତୁମପରି ମଣିମାଣିକ ଧରି ରଖିବାକୁ ମୁଁ ଜଣେ ସାମାନ୍ୟ ଲୋକ ।''

ପୁଣି କହିଛି ''ମୁଁ ନିକର୍ତ୍ତବ୍ୟ ନୀହାରବାଳା । ତୁମ ସାଙ୍ଗରେ ଦେଖାହେବା ଆଗରୁ ମୁଁ ବାନ୍ଧି ହୋଇଯାଇଛି ଲତା ସାଙ୍ଗରେ ... ।''

ନୀହାରବାଳା ସେବିକା ହୋଇଛି । ରୋଗୀମାନଙ୍କୁ ସେବା କରିବା ହେଲା ତା'ର କାମ । ରୋଗୀମାନେ କିନ୍ତୁ ତାକୁ ଭଲ ପାଇବାକୁ ଲାଗିଛନ୍ତି । ପ୍ରଥମେ ତରୁଣ ସଞ୍ଜୟ ତାକୁ ଭଲ ପାଇଛି । ବିହ୍ୱଳ ହୋଇପଡ଼ିଛି । ନୀହାରବାଳା ମଧ ତାକୁ ଭଲ ପାଇଥିଲା । ସଞ୍ଜୟ ରୋଗ ଭଲ ହେବା ପରେ ଚାଲିଯାଇଛି ।

ପଢ଼ାଉଥିବା ଡାକ୍ତର ବି ନୀହାରବାଳାକୁ ଚାହିଁ ରହିଛନ୍ତି । ତାଙ୍କର ଥିଲା ସେଇ ଏକା ନିବେଦନ – ''ମୋତେ ଭଲ ପାଅ ।'' ନୀହାର କିନ୍ତୁ ଡାକ୍ତରଙ୍କ ଘରକୁ ଅନ୍ୟ ସେବିକାମାନଙ୍କ ପରି ଯାଇ ନାହିଁ । କିନ୍ତୁ ସେ ବୁଝିଛି ଯେ ଡାକ୍ତରଖାନାରେ ରହିବାକୁ

ହେଲେ ଡାକ୍ତରଙ୍କ ମନ ନେଇ ରହିବାକୁ ହେବ । ଶେଷକୁ ଡାକ୍ତରଙ୍କ ଘରକୁ ଯାଇଛି । ତା'ର ଦେହ ଅର୍ପଣ କରିଛି । ଡାକ୍ତରୀଛାତ୍ର ଶ୍ରୀଧର ଓ ବାସୁଦେବଙ୍କ ସହ ନୀହାରର ପରିଚୟ ହୋଇଛି । ଶ୍ରୀଧର ତାକୁ ସିନେମା ଦେଖିଯିବାପାଇଁ ଅନୁରୋଧ କରିଛି । ନୀହାର ମନରେ ସନ୍ଦେହ – ସିଏ କ'ଣ ଭଲ ପାଇବାକୁ ଚାହେଁ ?

ଶ୍ରୀଧର ମଧ୍ୟ ସେଇକଥା ଜଣାଇଛି । ଆଜୀବନ ଭଲ ପାଇବ ବୋଲି ପ୍ରତିଜ୍ଞା କରିଛି । ପଢ଼ା ସରିଲେ ପାଖରେ ରଖିବ ବୋଲି ପ୍ରତିଶ୍ରୁତି ଦେଇଛି । ଶ୍ରୀଧର ସାଙ୍ଗରେ ଅକୃତ୍ରିମ ସ୍ନେହ ଆରମ୍ଭ ହୋଇଛି । ନୀହାରବାଳାର ଆଶ୍ୱାସନା ବଢ଼ିଛି । ସେ ଭଲରେ ମନ୍ଦରେ ଶ୍ରୀଧର ଉପରେ ଭରସା ରଖିପାରିବ । କିନ୍ତୁ ସେ ବି ଦଗା ଦେଇଛି । ନୀହାର ଦେଇଥିବା ଚିଠି ପ୍ରଘଟ କରିଦେଇଛି । ଗର୍ବ କରି କହିବୁଲିଛି ଯେ ନୀହାର ତାକୁ ଭାରି ଭଲ ପାଏ । ଆଉ ସେ ଭଲ ନ ପାଇଲେ ନୀହାର ମରିଯିବ । ଶ୍ରୀଧର ସାଙ୍ଗେ ଦେଖାହେଲାବେଳେ ନୀହାର ସେ କଥା ପଚାରିଛି ! ଶ୍ରୀଧର ଚିଡ଼ିଉଠି କହିଛି – ''ହଉ ରଖିଦିଅ ତମ ସତୀତ୍ୱ । ଏମିତି ମୁଁ କେତେ ସତୀଙ୍କୁ ଦେଖିଲିଣି !''

ଯଥେଷ୍ଟ ନ ହେଲା ପରି ସେ ପୁଣି ତିକ୍ତ ଭର୍ତ୍ସନା କରି କହିଛି – ''ଜାଣିଥିଲେ ତୁମ ପାଇଁ ମିନିଟିଏ ସମୟ ଦେଇ ନ ଥାନ୍ତି ।''...

ନୀହାରବାଳା ସମସ୍ତଙ୍କୁ—ବଳରାମ, ଦିଗମ୍ବର ଆଉ ଶ୍ରୀଧର ସମସ୍ତଙ୍କୁ ଟଉଲିଛି । ସେମାନେ କେହି ତାକୁ ନିଜର କରି ରଖି ନାହାନ୍ତି । ନୀହାର କାହାର ହୋଇନି ।

ଶେଷକୁ ସଞ୍ଜୟ ଆସିବ ବୋଲି କହି ଆସିନି । ଥରେ ଷ୍ଟେସନରେ ଅକସ୍ମାତ୍ ଦେଖାହୋଇଛି ସଞ୍ଜୟ ସାଙ୍ଗରେ । ସଞ୍ଜୟ ଆଖି ବିଷାକ୍ତ ହୋଇଉଠିଛି । ନୀହାରବାଳା ସତେ ଯେପରି ଚକ୍ରାନ୍ତ କରି ତା'ର ସରଳ ଜୀବନକୁ ବୁଡ଼ାଇ ଦେବାକୁ ଯାଉଛି ... !

ଶେଷରେ ନୀହାରବାଳା ସ୍ୱାଧୀନ ଜୀବନ କଟାଇଛି – ଯେମିତି କଳଙ୍କର ଦାଗ ଧରି ଆକାଶରେ ଚାନ୍ଦ ବର୍ଷକୁ ବର୍ଷ ପହଁରି ଯାଉଛି । ବଢ଼େ, ଛିଡ଼େ, ପୁଣି ବଢ଼େ, ଅଷ୍ଟମୀ ତିଥିରେ ଥରେ ପୁନେଇଁ ଆଡ଼କୁ ବଢ଼େ ଆଉ ଅମାବାସ୍ୟା ଆଡ଼କୁ ଛିଡ଼େ ।

ସ୍ରଷ୍ଟା ଉଦାତ୍ତ ସ୍ୱରରେ ଘୋଷଣା କରିଛନ୍ତି – ''ଭଲ ପାଇବା ଗୋଟାଏ ଦୋଷ ନୁହେଁ, ସେହି ସ୍ନେହ ଶ୍ରଦ୍ଧା ଉପରେ ସଂସାର ଗଢ଼ା ହୋଇଛି ।''

**ଜୀବନର ମଦିରା : ସକାଳ କୁହୁଡ଼ି**

'ଜୀବନର ମଦିରା : ସକାଳ କୁହୁଡ଼ି' ଉପନ୍ୟାସ ୧୯୭୦ ମସିହାରେ ପ୍ରକାଶ ପାଇଥିଲା ।

ବଛରାଇ ଗାଁର ଝିଅ କନକ । ତା'ର ଦେହରେ ଖୁଣ ନ ଥିଲା । ରୂପ ଯେମିତି ଗୁଣ ସେମିତି । କନକକୁ ଦେଖିବାକୁ ବର ଘର ଆସିଥିଲେ । ସବୁ ଠିକ୍ ଥିଲା ।

କିନ୍ତୁ ବିନା ଦୋଷରେ ସେ ଦୋଷୀ ହେଲା । ଦୋଷ ଭିତରେ ବାହାରିଲା ଯେ ଦରକାର ଅନୁସାରେ ବାପର ଟଙ୍କା ନାହିଁ । ରଦ୍ଦି ବୋଲି କହି ବରଘର ଚାଲିଗଲେ । କନକ ଅପମାନରେ ସଢ଼ିଯାଇଛି । ନିଜକୁ ଧିକ୍‌କାର କରିଛି । ପୁଣି ସେଇ ଅଦରକାରୀ ଜୀବନକୁ ଗଢ଼ିବାର ପ୍ରତିଜ୍ଞା କରିଛି ।

ସେଇ ବଛରାଇ ଗାଁର ଦେଢ଼ ବରଷର ଅଲିଅଳ ବୋହୂ ସୁତପା । କନକ ଘରକୁ ସେ ଆସିଛି । ସୁତପା ଆଉ କନକ ନିକଟତର ହୋଇଛନ୍ତି । ଶେଷରେ ଏକ ମନରେ, ଏକ ପ୍ରତିଜ୍ଞାରେ ବଛରାଇ ଗାଁ ଛାଡ଼ିଛନ୍ତି । ସୁତପାର ସ୍ୱାମୀ ଅଭିନ୍ନବାବୁ ଏଥିରେ ସାହାଯ୍ୟ କରନ୍ତି । କନକର ବାପା ବୋଉଙ୍କୁ କହି କନକକୁ ସାଙ୍ଗରେ ଧରି କଟକ ଯାଇଛନ୍ତି ।

ବଛରାଇ ଗାଁର ସେଇ ସୁକୁମାରୀ ଲାଜକୁଳୀ ଝିଅ କନକ ମଣିଷ ହୋଇଛି । ସେ ହୋଇଛନ୍ତି ସ୍ୱନାମଧନ୍ୟା ଡାକ୍ତରାଣୀ ଶ୍ରୀମତୀ କାନନ ଦେବୀ ।

ଗାଁ ଆଉ ଆଖପାଖର ଲୋକଙ୍କୁ କନକ ଅଲାକୁକୀ ଓ ଅଣ୍ଡିରୀଚଣ୍ଡୀ ହେବାଟା ଆଶ୍ଚର୍ଯ୍ୟ କରିଛି । ସେମାନେ କନକର ଇତିହାସକୁ ଲେଖିବାକୁ ଚେଷ୍ଟା କରିଛନ୍ତି । କିଛି ନ ପାଇ ଅଳ୍ପ କଥାରେ ଶେଷ କରନ୍ତି –

''ଲାଜ ଛାଡ଼ିଲେ, ବାଟ ହୁଡ଼ିଲେ ନିଜର ଆଚାର-ବ୍ୟବହାରରେ ଅଇଁଠା ପକାଇଦେଲେ, ସଂସାରରେ ସାତ ଖୁଣ ମାଫ୍ ।''

ଉପନ୍ୟାସରେ ରାଜକିଶୋର ନାରୀ ଜୀବନରୁ ଫର୍ଦ୍ଦ ପରେ ଫର୍ଦ୍ଦ ଓଲଟାଇଛନ୍ତି । ଏଠି ଅନ୍ତର୍ଦାହ ଅଛି, କାନ୍ଦ ଭିତରେ ହସ ବି ଅଛି । ସଙ୍ଗୀତର ପଂକ୍ତିମାନ ରସଘନ କରି ଗଢ଼ିତୋଳିଛି ଉପନ୍ୟାସକୁ । ଏଥିରେ ମନୁଷ୍ୟର ଜୀବନ ବିଶ୍ଳେଷିତ ହୋଇଛି ।

### ପ୍ରୀତିର ବଣିକ

'ପ୍ରୀତିର ବଣିକ' ଉପନ୍ୟାସଟି ୧୯୭୩ ମସିହାରେ ପ୍ରକାଶିତ ହୋଇଥିଲା । ଏଥିରେ ବହୁ ଚରିତ୍ରର ସମାରୋହ ନାହିଁ । ପ୍ରୀତିର ବଣିକପାଇଁ ଚରିତ୍ରମାନଙ୍କର କୌଣସି ହାଟ ମଧ୍ୟ ବସିନି । ଉପନ୍ୟାସଟି ଗଢ଼ିଉଠିଛି ଚାରୋଟି ଚରିତ୍ରକୁ ନେଇ । ସେମାନେ ହେଲେ କଲେଜ ପାଠ ଶେଷ କରି ପରୀକ୍ଷାପାଇଁ ପ୍ରସ୍ତୁତ ହେଉଥିବା ଦୁଇ ଜଣ ଦରିଦ୍ର ଛାତ୍ର – ରମାକାନ୍ତ ଓ ଭଜକୃଷ୍ଣ । ସେମାନଙ୍କର ଜଣେ ସହପାଠିନୀ – ଅଳକା । ଚତୁର୍ଥ ଚରିତ୍ରଟି ହେଲା ମାନିନୀଦେବୀ । ସେ ବିବାହିତା । ବିବାହିତା ହେଲେ ମଧ୍ୟ ଭଜକୃଷ୍ଣଙ୍କ ପ୍ରତି ତାଙ୍କର ଆକର୍ଷଣ ଅଛି । ତାହା କ୍ରମେ ବୃଦ୍ଧି ପାଇଛି – ବିଶେଷତଃ, ହାକିମ ସ୍ୱାମୀଙ୍କର ଅନୁପସ୍ଥିତିର ମୁହୂର୍ତ୍ତମାନଙ୍କରେ । ରମାକାନ୍ତ ଓ ଅଳକାଙ୍କର ପ୍ରେମ ଗଢ଼ିଉଠିଛି ମହାବିଦ୍ୟାଳୟର ମୁକ୍ତ ପରିବେଶରେ । ରମାକାନ୍ତ ଅଳକାର ସହପାଠୀ, ଆଉ ଭଜକୃଷ୍ଣ ହେଉଛନ୍ତି ମାନିନୀ ଦେବୀଙ୍କର ଗୃହଶିକ୍ଷକ ।

ଗୋଟିଏ ସନ୍ଧ୍ୟାର ଆସରରେ ଭଜକୃଷ୍ଣ ଓ ରମାକାନ୍ତଙ୍କ ଜୀବନର ମୋଡ଼ ବଦଳିଯାଇଛି । ମାନିନୀ ଓ ଭଜକୃଷ୍ଣଙ୍କ ସାକ୍ଷ୍ୟରେ ଦୁହେଁ ଦୁହିଁଙ୍କର ବାଗ୍‌ଦତ୍ତ ଓ ବାଗ୍‌ଦତ୍ତା ହୁଅନ୍ତି । ଅତି ଆକସ୍ମିକ ଭାବରେ ଏହା ଘଟେ । ଏଇଠାରେ ହିଁ ଜୀବନର ବୈଚିତ୍ର୍ୟକୁ ଅନୁଭବ କରିହୁଏ ।

ଆଲୋଚକ ଗିରିଜାକୁମାର ବଳିଆର ସିଂହଙ୍କ ମତରେ 'ପ୍ରୀତିର ବଣିକ' ଉପନ୍ୟାସଟିରେ ଉପନ୍ୟାସଗତ ଲକ୍ଷଣ ରହିଥିଲେ ମଧ୍ୟ ଏହା ନାଟକୀୟ ଉପନ୍ୟାସ ମର୍ଯ୍ୟାଦା ପାଇବାପାଇଁ ହକ୍‌ଦାର ।

**ରାସକେଲ୍**

'ରାସକେଲ୍' ସାଧାରଣ ଅର୍ଥରେ 'ପାଜି'କୁ ବୁଝାଏ । କିନ୍ତୁ ଲେଖକ ଏହି ଶବ୍ଦଟିକୁ ତାଙ୍କ ଉପନ୍ୟାସର ନାମ ଦେଇଛନ୍ତି ।

ରାଜକିଶୋର ନିଜ କଥା କହିବାପାଇଁ ଗୋଟିଏ ପ୍ରାଣୀକୁ ବ୍ୟବହାର କରିଛନ୍ତି । ସେ ହେଉଛି ଗୋଟିଏ କୁକୁର – ଯା'ର ନାମ ଦିଆଯାଇଛି 'ରାସକେଲ୍' । ରାସକେଲ୍‌ର ଜୀବନକୁ ଆଧାର କରି ସମାଜରେ ପ୍ରଚଳିତ କେତେକ ନିର୍ଦ୍ଦିଷ୍ଟ ବ୍ୟବସ୍ଥା ପ୍ରତି ଲେଖକ ବ୍ୟଙ୍ଗ-ବିଦ୍ରୂପ କରିଛନ୍ତି ।

ରାସକେଲ୍ ପଶୁଟିଏ ହେଲେ ବି ତା'ର ଗୋଟିଏ ହୃଦୟ ଅଛି । ସେ ତା'ର ମାଲିକ ପ୍ରତି ବିଶ୍ୱସ୍ତ । ସାମାନ୍ୟ ପଶୁଟିଏ ହେଲେ ବି ତା'ର ଗୋଟିଏ କର୍ତ୍ତବ୍ୟବୋଧ ଅଛି । କିନ୍ତୁ ତାହା ମଣିଷଠାରେ ଅଭାବ ବୋଲି ଲେଖକ ଦର୍ଶାଇଛନ୍ତି ।

ଲେଖକଙ୍କ ମତରେ ପଶୁ ସେବା ହେଉଛି ପରମାତ୍ମା ଚର୍ଚ୍ଚାର ମାପ ଓ ଓଜନ । ଯିଏ ପଶୁ ପକ୍ଷୀଙ୍କୁ ଆପଣାର କରିପାରେ ବା କରିପାରିଛି, ସେଇ କେବଳ ଅପର ମଣିଷକୁ ଆପଣାର କରିପାରିବ ।

ଲେଖକ ମଧ୍ୟ ପଶୁପକ୍ଷୀଙ୍କୁ ଜ୍ଞାନୀ, ସରଳ ବୋଲି ପ୍ରମାଣିତ କରିଛନ୍ତି । ପଶୁ ପକ୍ଷୀଙ୍କର ଜୀବନ ଦର୍ଶନ ନ ଥାଏ । ତେଣୁ ସେମାନେ ପ୍ରକୃତରେ ଜ୍ଞାନୀ । ସେମାନେ ଅଳ୍ପ କଥା ବୁଝନ୍ତି । ତେଣୁ ସେମାନେ ସବୁବେଳେ ମଣିଷଠାରୁ ସରଳ । ପୁଣି ଲେଖକ କହିଛନ୍ତି ଯେ ପଶୁପକ୍ଷୀମାନଙ୍କର ଚରିତ୍ର ମଣିଷ ଚରିତ୍ରଠାରୁ ସରସ । କୁକୁରର ଚରିତ୍ର ତା'ର ମାଲିକର ଚରିତ୍ର ଠାରୁ ସରସ । ରାସକେଲ୍ ପିନ୍ଧିଥିବା ପଟି ମାଧ୍ୟମରେ ଲେଖକ ସବୁ ସ୍ତରର ଚାକିରିଆମାନଙ୍କୁ ସମାଲୋଚନା କରିଛନ୍ତି । ଛୋଟ ଚାକିରିଆ, ବଡ଼ ଚାକିରିଆ, ହାଇକୋର୍ଟ ଜଜ୍ ପାହ୍ୟାରୁ ଛୋଟ ପିଅନ ପର୍ଯ୍ୟନ୍ତ ସମସ୍ତଙ୍କ ବେଲ୍‌ଟ ପିନ୍ଧିବାକୁ ନାପସନ୍ଦ କରିଛନ୍ତି । ତାଙ୍କ ମତରେ ବେଲ୍‌ଟ ହେଉଛି ଆମ ପେଟପାଟଣାର ଚିହ୍ନ – ଠିକ୍ ଖାଉଟି ପଡ଼ି ପରି । ଏଥିରେ ଦର୍ଶନ ନାହିଁ । ଅଛି କେବଳ ସ୍ଥିତି ।

'ରାସକେଲ୍' ଉପନ୍ୟାସର ଏକମାତ୍ର ଚରିତ୍ର ରାସ୍କେଲ । ଶେଷକୁ ସେ ରୋଗଗ୍ରସ୍ତ ହୋଇ ମୃତ୍ୟୁବରଣ କରିଛି । ଖବରକାଗଜରେ ଗୁଡ଼ା ହୋଇ ସୂତାରେ ବନ୍ଧା ହୋଇଛି ସାଇକଲ୍ କ୍ୟାରିଅର୍ ଦେହରେ । ରାସ୍କେଲ ବିଦାୟ ହୋଇ ଯିବା ପରେ ପକ୍କା ପିଣ୍ଡା ଧୁଆ ହୋଇଛି । ରାସକେଲ୍‌ର ଅଖାଖଣ୍ଡକ ବି ଧୁଆ ହୋଇଛି ।

ରାସ୍କେଲ୍ ଚାଲିଯାଇଛି ତାହାର ବିବେକକୁ ଦେଖାଇ । ସେ ବୁଝେଇ ଦେଇଯାଇଛି ଯେ ସେଇ ଛୋଟିଆ ଘରର ପ୍ରତ୍ୟେକ ଜାଗା ଓ ପ୍ରତ୍ୟେକ ଲୋକଙ୍କୁ ସେ ଭଲ ପାଇଥିଲା । ପଶୁ ହେଲେ ବି ତା'ର ବିବେକ ଥିଲା ।

ଉପନ୍ୟାସଟିରେ ଏକ ପୋଷା କୁକୁରଟି ପ୍ରତି ଲେଖକଙ୍କର ସମ୍ବେଦନା ଓ ସହାନୁଭୂତି ଅତ୍ୟନ୍ତ ହୃଦୟସ୍ପର୍ଶୀ ହୋଇପାରିଛି । ଏହା ଏକ ଭିନ୍ନସ୍ୱାଦର ଉପନ୍ୟାସ ।

## କ୍ଷୁଦ୍ର ଗଳ୍ପ

ରାଜକିଶୋର ବହୁ କ୍ଷୁଦ୍ର ଗଳ୍ପ ରଚନା କରିଛନ୍ତି । ଏଗୁଡ଼ିକ ବିଭିନ୍ନ ସଙ୍କଳନରେ ସ୍ଥାନିତ ହୋଇଛି । ପ୍ରାୟ ଆଠଟି ସଙ୍କଳନ ତାଙ୍କର ପ୍ରକାଶ ପାଇଛି ।

### ତୁଠପଥର

ରାଜକିଶୋରଙ୍କ ପ୍ରଥମ ଗଳ୍ପ ସଂକଳନଟି ହେଉଛି 'ତୁଠପଥର' । ଏହା ୧୯୩୬ ଠାରୁ ୧୯୩୮ ମସିହା ମଧରେ ରଚିତ ହୋଇ ୧୯୪୫ ମସିହାରେ ପ୍ରକାଶ ପାଇଥିଲା ।

'ତୁଠପଥର'ରେ ଲେଖକ କହିଛନ୍ତି ଯେ ଗାଧୁଆ ତୁଠରେ ଅଧା ପାଣି ଅଧା ଶୁଖିଲା ହୋଇ ଯେଉଁ ଚଉରାସିଆ ପଥରଖଣ୍ଡଟିମାନ ସମସ୍ତଙ୍କର ଗୋଡ଼ ଘଷାପାଇଁ ପଡ଼ି ରହିଥାଏ, ସେଇଟି ସଂସାରରେ ଗୋଟିଏ ଇଙ୍ଗିତପୂର୍ଣ୍ଣ ନିଶାଣ, କାରଣ ସଂସାରରେ ଅନେକ ନରନାରୀ କର୍ମବୀରମାନଙ୍କୁ ତୁଠପଥର ପରି ବ୍ୟବହାର କରି ଗୋଇଠା ମାରି ହସି ହସି ଚାଲିଯାନ୍ତି । ଅନ୍ୟମାନଙ୍କ ଆଖିରେ ସେହି ତୁଠପଥର ଖଣ୍ଡିକ ନିଷ୍ପ୍ରାଣ ପଥର ଖଣ୍ଡିଏ ହୋଇପାରେ, ମାତ୍ର ତାହା ଲେଖକଙ୍କ ଆଖିରେ ଜୀବନ୍ତ ପାଲଟି ଯାଇଛି । ତାଙ୍କ ଜୀବନ ସେମିତି ତୁଠପଥର ଭଳି ।

ଏହି ସଂକଳନରେ ଲେଖକ ମଣିଷ ଜୀବନର ଅନେକ ଦିଗ ସମ୍ପର୍କରେ ବର୍ଣ୍ଣନା କରିଛନ୍ତି ।

### ପଥୁକୀ

୧୯୫୧ ମସିହାରେ 'ପଥୁକୀ' ଗଳ୍ପ ସଂକଳନ ପ୍ରକାଶ ପାଇଥିଲା । ଉକ୍ତ ଗଳ୍ପ ସଂକଳନରେ ଦଶୋଟି ଗଳ୍ପର ସମାରୋହ ।

ସଂକଳନର ପ୍ରଥମ ଗପଟି ହେଲା 'ବାଟୋଇ' । ବିଧବା ମାତାର ସନ୍ତାନ ପ୍ରତି ବାତ୍ସଲ୍ୟ ମମତା ଓ ତା'ର ମୃତ୍ୟୁରେ ଶୋକବିହ୍ୱଳତାର ଏହା ହେଉଛି ଏକ ଜୀବନ୍ତ

ଆଲେଖ୍ୟ । ଦ୍ୱିତୀୟ ଗଳ୍ପଟି ହେଲା 'ପୋଡ଼ା ଦାଗ' । ଗଳ୍ପଟିର ନାୟକ ହେଉଛି ଦାମୋଦର । ସେ ଚାହିଁଛି କବିଟିଏ ହେବ । ବହି ଲେଖିବ । ସେ ବହିଟି ହେବ ତା'ର ସ୍ମୃତି ଗ୍ରନ୍ଥ । ବହୁ ଚେଷ୍ଟା କରି ବହି ଖଣ୍ଡେ ଲେଖିଚି । ନାମ ଦେଇଛି 'ଚଳନ୍ତିକା' । ସେ ବହିରେ ଲେଖିଛି ଯେ ଧନ ସଂସାରରେ ବଡ଼ ନୁହେଁ; ବଡ଼ ହେଉଛି ମନ । ଇଚ୍ଛା ଥିଲେ ଉପାୟ ଆସେ । ମାତ୍ର ବାସ୍ତବତାର କଷଟି ପଥରରେ ଘଷି ହୋଇ ସେ ଉପଲବ୍ଧି କରିଛି ଯେ ସଂସାରରେ ବଡ଼ ହେଉଛି ଧନ । ମନ ବା ଇଚ୍ଛାକୁ ନେଇ ସଂସାର ଚଳେ ନାହିଁ । ସଙ୍କଳନର ତୃତୀୟ ଗପଟି ହେଲା 'ପାଉଁଶ' । ଦୁଇ ବର୍ଷ ଅକାରଣରେ ଜେଲଦଣ୍ଡ ଭୋଗିଲାପରେ ନଟବର ବାହାରକୁ ଆସି ଦେଖିଛି ଯେ ଯେଉଁମାନଙ୍କୁ ସେ ଭଲ ପାଉଥିଲା ସେମାନେ ତାକୁ ଘୃଣା କରୁଛନ୍ତି । କୁଟା ଖିଏ ନଈ ସୁଅରେ ଭାସି ଭାସି ପାଣିରେ ସଢ଼ିଗଲା ପରି ତା'ର ଦେହ କଟକ ରାସ୍ତା କଡ଼ରେ ମିଳେଇ ଯାଇଛି ! ଆଉ ଗୋଟିଏ ସୁନ୍ଦର ଗଳ୍ପ 'ବାଲି' । ପାନଦୋକାନୀ ଶତ୍ରୁରା ଓରଫ ଶତ୍ରୁଘ୍ନ ଜୀବନରେ ଦୁଃଖର ଜୁଆର ମାଡ଼ି ଆସିଛି । ହନ୍ତସନ୍ତ ହୋଇ କାଳ କାଟୁଥିବାବେଳେ ସୁଖ, ଶାନ୍ତି, ଆଶା, ଆକାଙ୍‌କ୍ଷା ସବୁ ହଜିଯାଇଛି । 'ଦୁଇ ପାଖ' ଗଳ୍ପରେ ଲେଖକ ଗରିବ ଓ ଧନୀ – ଏହି ଦୁଇ ଜୀବନର ଦୁଇ ପାଖ ଚିତ୍ରଣ କରିଛନ୍ତି । 'ଧୂଳି' ଗଳ୍ପରେ ମାତାର ପୁତ୍ର ପ୍ରତି ବାତ୍ସଲ୍ୟ ଓ ସ୍ନେହର ଅମୃତଧାରା ପ୍ରବାହ ହୋଇଥିବା ଲକ୍ଷ୍ୟ କରାଯାଏ । 'ଅପନ୍ତରାର ଫୁଲ' ଆଉ ଏକ ଭିନ୍ନସ୍ୱାଦର ଗଳ୍ପ । ଗଳ୍ପର ନାୟକ ବିଦିଆ । ତା'ର ଜନ୍ମ ଜାତକ ସେ ନିଜେ ଜାଣେନି । ତା'ର ଚେହେରା ଦେଖି ଲୋକେ ତା'ର ବୟସ ଠଉରାନ୍ତି । ସେ ପ୍ରମାଣ କରିଛି ଯେ ଖାଲି ପୁଣ୍ୟ କଲେ ମଣିଷ ବଞ୍ଚେ ନାହିଁ । ପାପ ଅନୀତି କଲେ ମଧ୍ୟ ମଣିଷ ବଞ୍ଚିବ । ବିଦିଆର ଜୀବନ ଦର୍ଶନକୁ ଲେଖକ ନୂତନ ରୂପରେ ଅଙ୍କନ କରିଛନ୍ତି । 'ପାଚିଲା ପତ୍ର' ଗଳ୍ପରେ ଲେଖକ ବିଗତଯୌବନା ନାରୀର କରୁଣ ଚିତ୍ର ଉପସ୍ଥାପନ କରିଛନ୍ତି । ନାରୀର ଯୌବନ ଚାଲିଗଲେ ସେ ହୁଏ ଅଦରକାରୀ । ଏପରିକି ତା'ର ଜନ୍ମିତ ପୁତ୍ର-କନ୍ୟାମାନେ ତାକୁ ପଚାରନ୍ତି ନାହିଁ । ତା'ର ମରଣର ଦିନ ଗଣନ୍ତି । ସଙ୍କଳନର ଶେଷ ଗଳ୍ପ ହେଲା 'ପଟୁଆର' । ଏଥିରେ ଗାଳ୍ପିକ ବିଶ୍ୱବିଦ୍ୟାଳୟ ଛାତ୍ରାବାସର ଅନ୍ତେବାସୀ ମେନନ୍ ଚରିତ୍ରର ମନସ୍ତାତ୍ତ୍ୱିକ ବିଶ୍ଲେଷଣ କରିଛନ୍ତି । ମେନନ୍ ଧନୀର ଅଲିଅଳ ସନ୍ତାନ । ଦେଖିବାକୁ ସୁନ୍ଦର । ସ୍ୱାସ୍ଥ୍ୟ ମଧ୍ୟ ଭଲ । ବନ୍ଧୁବତ୍ସଳ ମଧ୍ୟ । ବନ୍ଧୁମାନଙ୍କୁ ଖୁଆଇବା ପିଆଇବା ପ୍ରଭୃତିରେ ପଇସା ଖର୍ଚ୍ଚ କରେ । ସେ ଗୋଟିଏ ଠେକୁଆ ଛୁଆକୁ ଉଦ୍ଧାର କରି ନିଜ ପାଖରେ ରଖିଛି । ଠେକୁଆ ଦେହରୁ ଟାଇଫଏଡ ଜୀବାଣୁ ଡେଇଁବାରୁ ଟାଇଫଏଡ୍ ରୋଗରେ ଆକ୍ରାନ୍ତ ହୋଇଚି । ହସ୍ପିଟାଲରେ ଶେଷରେ ତା'ର ମୃତ୍ୟୁ ହୋଇଛି । ସେ ମଲା ଦିନ କିନ୍ତୁ ଚାଲିଛି ପରୀକ୍ଷାର ପଟୁଆର । ସହପାଠୀମାନେ ସେହି ପଟୁଆରରେ ଚାଲିଛନ୍ତି । ମାତ୍ର ମେନନ୍ ସେହି ପଟୁଆରରେ ସାମିଲ ହୋଇପାରିନି ।

**ଶାଳଗ୍ରାମ**

ଅନ୍ୟତମ ଗଳ୍ପ ସଂକଳନ ହେଉଛି 'ଶାଳଗ୍ରାମ' । ଏଥିରେ ମଧ୍ୟ ଦଶଟି ଗଳ୍ପ ସନ୍ନିବେଶିତ ହୋଇଛି । ପ୍ରଥମ ଗଳ୍ପଟି ହେଲା 'ସୁଲତାନ' । ଘରକୁ ନୂଆ କୁକୁର ଆସିଛି । ପୁରୁଣା କୁକୁରର ଅଭିମାନ – ସେ ଥାଉ ଥାଉ ନୂଆ କୁକୁର ଆଣିବାର କି ଦରକାର ଥିଲା ? ନୂଆ ପଦ୍ଧୀଟି ଅଇଲେ ଠିକ୍ ଯେମିତି ପୂର୍ବ ପଦ୍ଧୀମାନେ ନାକ ଫୁଲାନ୍ତି ! ସୁଲତାନ ଭୁକି ନାହିଁ । ବାଙ୍ଗେ କୁକୁର ପରି ହାଣ୍ଡି ମାରା କରିଛି । ଅଖାଦ୍ୟ ଖାଇଛି । ଘର ଦ୍ୱାର ଅପରିଷ୍କାର କରିଛି । ଲେଖକଙ୍କର ବ୍ୟଙ୍ଗୋକ୍ତି – ମଣିଷ ନିର୍ଦ୍ଦୟ । ସେ ପଶୁ ସ୍ନେହର ପ୍ରତିଦାନ ଦେଇପାରେ ନାହିଁ । ସୁଲତାନ ଖରାପ ବୋଲି ମଣିଷ ତାକୁ ଫୋପାଡ଼ି ଦେଇ ନାହିଁ; କାରଣ ସେ ପାଗଳ ହୋଇଗଲେ ମୃତ୍ୟୁର ଆଶଙ୍କା । 'ସୁଲତାନ' ମଧ୍ୟ ବଦଳି ନାହିଁ । ତାକୁ ତାଲିମ ଦେବାର ଅଭାବ ରହିଯାଇଛି ।

ଆଉ ଏକ ଗଳ୍ପ 'ଶାଳଗ୍ରାମ' । ଗୌରଗୋବିନ୍ଦବାବୁ ସମାଜରେ ପ୍ରତିଷ୍ଠା ଲାଭ କରିଛନ୍ତି । ତଥାପି ତାଙ୍କର ଅବସର ନାହିଁ । ଅବିରତ କାମ କରି ଚାଲନ୍ତି । ଆଉ ସେଥିରେ ସେ ଶାନ୍ତି ପାଆନ୍ତି । ସେ ନିଜ ବାଡ଼ିରେ ମୂଳା ଲଗାଇବାକୁ ଆୟୋଜନ କରିଛନ୍ତି । ବନ୍ଧୁ ଦୀନନାଥ ତାଙ୍କୁ ଏଥିପାଇଁ ପରିହାସ କରିଛନ୍ତି । ସେ ତାଙ୍କୁ ବୁଝାଇବାକୁ ଯାଇ ଶାଳଗ୍ରାମ କଥା କହିଛନ୍ତି । ଶାଳଗ୍ରାମ ପୋକ ଗଣ୍ଡକୀ ନଈ କୂଳରେ ଥାଏ । ଅବିରତ ପଥର କାଟି ଶାଳଗ୍ରାମ ତିଆରି କରେ । କାମ ଶେଷ ହେଲେ ତାହାକୁ ପାଣିକୁ ପକାଇଦିଏ । ଅପେକ୍ଷା କରି ରହେ ପାଣିରୁ ଆସୁଥିବା 'ଟୁବ୍' ଶବ୍ଦକୁ ।

ଶାଳଗ୍ରାମ ପୋକ ଦିଏ ଶାଳଗ୍ରାମ । ତାହା ଆମ କାମରେ ଲାଗେ । ମଣିଷ ଦିଏ ତା'ର ଦାନ – ସଭ୍ୟତା ଓ ସଂସ୍କୃତି । ସବୁର ମୂଳରେ ରହିଛି ନିଷ୍କାମ କର୍ମ । ଏହି ଗଳ୍ପରେ ଗାଳ୍ପିକ କର୍ତ୍ତବ୍ୟ କର୍ମ ଉପରେ ଗୁରୁତ୍ୱ ପ୍ରଦାନ କରିଛନ୍ତି ।

**ହାଟ ସଉଦା**

'ହାଟ ସଉଦା' ଆଉ ଏକ ଗଳ୍ପ ସଙ୍କଳନ । ଏଥିରେ ଛତିଶଟି ଗଳ୍ପ ସ୍ଥାନିତ ହୋଇଛି । ଜୀବନର ବହୁ ଅନୁଭୂତିକୁ ସେ ଏଥିରେ ଚିତ୍ରଣ କରିଛନ୍ତି । ଲେଖକ ମୁଖବନ୍ଧରେ ଲେଖିଛନ୍ତି –

''ଜୀବନର ଶ୍ରମକ୍ଳାନ୍ତ ପ୍ରବାହରେ ମନରେ ଅସଂଖ୍ୟ ପ୍ରଶ୍ନ ଉଠେ । ସେଗୁଡ଼ିକର ସମାଧାନ ହୁଏ ନାହିଁ । ସେହି ସବୁ ପ୍ରଶ୍ନ ଏହାର ପୃଷ୍ଠାରେ ରହିଛି । କିନ୍ତୁ ଉତ୍ତର ଯିଏ ଯାହା ଦେଇପାରିବେ ।''

'ବଙ୍କାଗଛ' ଗଳ୍ପରେ ଲେଖକ ଗୋଟିଏ ବୃଦ୍ଧ ମଣିଷର ଚିତ୍ର ଆଙ୍କିଛନ୍ତି । ବୁଢ଼ା ବାପା ଅପାରଗ ହୋଇପଡ଼ିଲେ ଯୁବକ ପୁଅ ତାକୁ ଘରୁ ତଡ଼ିଦିଏ । ବସି ଖାଉଥିବା

ବୁଢ଼ା ବାପଟି ଯେ ଜୀବନସାରା ରୋଜଗାର କରି ପୁଅକୁ ପାଳିଛି, ସେ ତାହା ଭୁଲିଯାଏ । ଏହି ଗଳ୍ପରେ ରାଜକିଶୋର ଏହି ଅସହାୟ ବୃଦ୍ଧ ମଣିଷର ସୁନ୍ଦର ଚିତ୍ର ପ୍ରଦାନ କରିଛନ୍ତି । ଫଳ ଥିବା ଯାଏଁ ନଡ଼ିଆ ଗଛକୁ ଲୋକେ ଆଦର କରନ୍ତି । କିନ୍ତୁ ବୁଢ଼ା ହୋଇ ବାଙ୍କିଗଲାପରେ ବା ଫଳ ନ ଫଳୁଥିଲେ ସମସ୍ତେ ତାକୁ ଅଦରକାରୀ ଭାବନ୍ତି ଓ କାଟି ଦିଅନ୍ତି ।

'ପୋଷା କୁକୁର' ଗଳ୍ପରେ ଲେଖକ ସରକାରୀ ଚାକିରିଆମାନଙ୍କୁ ପୋଷା କୁକୁର ସହ ତୁଳନା କରିଛନ୍ତି । ସେମାନେ ସମାନ ଧାତୁରେ ଗଢ଼ା । ନିଜର ଖାଉନ୍ଦକୁ ଖୁସି କରିବାପାଇଁ ପୋଷା କୁକୁରଟି ଯାହା ତାହା ଦେହରେ ଦାନ୍ତ ଲଗାଇଦିଏ । ସେମିତି ସରକାରୀ ଚାକିରିଆମାନେ ସରକାରଙ୍କୁ ଖୁସି କରିବାକୁ ସମସ୍ତଙ୍କୁ ଡରାନ୍ତି । କାହାରିକୁ ଡରନ୍ତି ନାହିଁ ।

'ଅଜଣା ଦିନର ସକାଳ'ରେ ମଣିଷର ଅସହାୟତା ବର୍ଣ୍ଣିତ । ସୁନା ହରିଣର ସ୍ୱପ୍ନ ଦେଖୁଥିବା ମଣିଷଟି ଜାଣିପାରେନା ତାକୁ ପର ମୁହୂର୍ତ୍ତରେ କିଭଳି ପ୍ରତିକୂଳ ଅବସ୍ଥାର ସମ୍ମୁଖୀନ ହେବାକୁ ପଡ଼ିବ । ଏଇ ସମ୍ପର୍କରେ ଲେଖକ ତାଙ୍କର ଜଣେ ଗାଳ୍ପିକ ବନ୍ଧୁଙ୍କର ଅନୁଗୁଳ ଯାଉଥିବା ବାଟରେ ମଟର ଦୁର୍ଘଟଣାରେ ମୃତ୍ୟୁ ହୋଇଥିବା କଥା ଉଲ୍ଲେଖ କରିଛନ୍ତି ।

ମଣିଷର ଈଶ୍ୱର ବିଶ୍ୱାସ ଉପରେ ବହୁ ଗଳ୍ପ ଏଥିରେ ଅଛି । ଗାଳ୍ପିକ ମଧ ଈଶ୍ୱରଙ୍କ ସତ୍ତା ଉପଲବ୍ଧି କରିଛନ୍ତି । ପିତୃଶ୍ରାଦ୍ଧପାଇଁ ପାଖରେ ବିଲକୁଲ ପଇସାଟିଏ ନ ଥିବାବେଳେ ଘୋର ବର୍ଷା ମଧ୍ୟରେ ମହକିଲଟି ଟଙ୍କା ଦେଇଯାଇଛି । ଗାଳ୍ପିକ 'ଅନୁଭବର ବିଶ୍ୱାସ' ଗଳ୍ପରେ ଏହା ଉଲ୍ଲେଖ କରିଛନ୍ତି । ପୁଣି ବନମାଳୀବାବୁଙ୍କ ପୁଅର ଜରବେଳେ ଗାଡ଼ି, ଡାକ୍ତର, ଖଟିଆ ପ୍ରଭୃତି ମିଳିଯାଇଛି । ଏଥିରେ ଗାଳ୍ପିକଙ୍କ ବିଶ୍ୱାସ ମଧ ବଢ଼ିଯାଇଛି । 'ଠାକୁର ଆଉ ମଣିଷ' ଆଉ ଏକ ଏଇ ଧରଣର ଗଳ୍ପ । ମଣିଷ ବେଳେ ବେଳେ ଈଶ୍ୱରଙ୍କ ସତ୍ତା ଅନୁଭବ କଲେ ମଧ ଈଶ୍ୱରଙ୍କୁ ଭୁଲିଯାଏ । ଆପଣା ବୁଦ୍ଧି, ବଳ ଓ ଚେଷ୍ଟାଦ୍ୱାରା ସଫଳତା ପାଇଲା ବୋଲି ଭାବେ । ଗାଳ୍ପିକ ମଣିଷର ଏଇ ଆତ୍ମଗର୍ବକୁ ନ୍ୟୁନ ଦୃଷ୍ଟିରେ ଦେଖି ନାହାନ୍ତି । ଈଶ୍ୱର ମଣିଷ ମନରେ ଆତ୍ମବିଶ୍ୱାସ ଭରି ଦେଇ ନ ଥିଲେ ସେ ସଦାସର୍ବଦା ଈଶ୍ୱରଙ୍କ ଉପରେ ନିର୍ଭରଶୀଳ ହୋଇପଡ଼ନ୍ତା । ତେଣୁ ଈଶ୍ୱର ଚାହାନ୍ତି ଯେ ମଣିଷ ନିଜ ବଳରେ ଠିଆ ହେଉ । ଈଶ୍ୱରଙ୍କ ଉପରେ ସବୁ କଥା ନ ପକାଉ । 'ଗରିବର ଈଶ୍ୱର' ଗଳ୍ପରେ ଲେଖକ ନିଜର ମନର କଥା ପ୍ରକାଶ କରିଛନ୍ତି । ଭଜନ ଗାଉଥିଲାବେଳେ ସହଦେବ କହିଛି ଯେ ସେ କିଛି ତାଙ୍କୁ ମାଗିବାକୁ ଚାହେଁ ନାହିଁ । ଧନ, ଜନ, ମାନ ତା'ର କିଛି ଲୋଡ଼ା ନାହିଁ । ଗରିବ ହୋଇ ରହିବାକୁ ତା'ର ପରବାୟ ନାହିଁ । ତା'ର କାରଣ ବାବୁମାନେ ଯେଉଁ କାମ କରିବାକୁ ଡରନ୍ତି, ସେ କାମ ଈଶ୍ୱରଙ୍କ ନାମ ନେଇ ସେ ସହଜରେ କରିଯାଏ ।

## ବିବାହ

ବହୁ ବିଳମ୍ବରେ ରାଜକିଶୋରଙ୍କ ବିବାହ ହୋଇଥିଲା । ସେତେବେଳକୁ ତାଙ୍କୁ ୪୨ ବର୍ଷ ବୟସ । ୧୯୫୯ ମସିହାରେ ସେ ବିବାହ କଲେ ନାରୀ ଆଇନଜ୍ଞ ଶୈଳବାଳା ଦେବୀଙ୍କୁ । ସେ ଆଇନ ଓ ରାଜନୀତି କ୍ଷେତ୍ରରେ ସୁପ୍ରତିଷ୍ଠିତା ଥିଲେ । ସେ ଥରେ ଲୋକସଭାପାଇଁ ପ୍ରାର୍ଥୀ ଓ ଥରେ ବିଧାନସଭାପାଇଁ ପ୍ରାର୍ଥୀ ହୋଇଥିଲେ । ମାତ୍ର କୌଣସି ରାଜନୈତିକ ଦଳ ସହିତ ସେ ସମ୍ପୃକ୍ତ ନ ଥିଲେ ।

## ଅଭାବ ଓ ଅନଟନ

ରାଜକିଶୋରଙ୍କ ଚଲାବାଟ ଧୂଳି-ଧୂସରିତ ଥିଲା । ସ୍ୱଚ୍ଛଳ ଅଭିଜାତ ବଂଶରେ ସେ ଜନ୍ମ ଗ୍ରହଣ କରିଥିଲେ । ଉଚ୍ଚ ଶିକ୍ଷା ମଧ୍ୟ ଲାଭ କରିଥିଲେ । ଭଲ ଭଲ ଚାକିରି ପାଇବାର ସୁଯୋଗ ପାଇଥିଲେ ମଧ୍ୟ ତାକୁ ହାତଛଡ଼ା କରିଦେଲେ । ସେ ଆଇନ ବ୍ୟବସାୟକୁ ଆଦରି ନେଇଥିଲେ ମଧ୍ୟ ଉପାର୍ଜନର ପନ୍ଥା ଭାବରେ ଏହି କଳା ଧଳା ବେପାରରେ ହଁ ଜୀ ହଁ ଜୀ କରି ସଫଳ ନ୍ୟାୟଜୀବୀ ହୋଇପାରିଲେ ନାହିଁ । ଫଳତଃ ଆର୍ଥିକ ଅବସ୍ଥା ତାଙ୍କର ଭଲ ନ ଥିଲା କହିଲେ ଚଳେ । କିନ୍ତୁ ପାରିବାରିକ ଆଭିଜାତ୍ୟର ଅଭ୍ୟାସ ହେତୁ ସେ ନିଜକୁ ଯେକୌଣସି ପ୍ରକାରେ ଚଳାଇ ନେଉଥିଲେ ।

ରାଜକିଶୋରଙ୍କ ସମ୍ପର୍କୀୟ ଭାଇ ଥିଲେ ବିଜୁ ପଟ୍ଟନାୟକ । ଦୁଇ ଦୁଇ ଥର ରାଜ୍ୟର ମୁଖ୍ୟମନ୍ତ୍ରୀ ହୋଇଥିଲେ । କେନ୍ଦ୍ରରେ ମନ୍ତ୍ରୀ ବି ଥିଲେ । ତେବେ ରାଜକିଶୋର ଓକିଲ ଭାବେ କିମ୍ବା ସାହିତ୍ୟିକରୂପେ ତାଙ୍କ ଗୁଣଗତ ପ୍ରାପ୍ୟ ପାଇବାପାଇଁ ତିଳେମାତ୍ର ଉଦ୍ୟମ କରି ନ ଥିଲେ ।

ରାଜକିଶୋର କଥାସାହିତ୍ୟର ଜଣେ ବଳିଷ୍ଠ ସ୍ରଷ୍ଟା ଓ ରୂପକାର ଥିଲେ । କିନ୍ତୁ ତାଙ୍କର ଥିଲା ପ୍ରଚଣ୍ଡ ସ୍ୱାଭିମାନ । ସେ ନିଜ ବହି ନିଜେ ପ୍ରକାଶ କରୁଥିଲେ । ପ୍ରକାଶକଙ୍କ ଦୁଆରେ ଦାନ୍ତ ନିକୁଟି ଠିଆ ହେଉ ନ ଥିଲେ । ପ୍ରକାଶକମାନଙ୍କ ଅକ୍ଟୋପସ କବଳରୁ ନିଜକୁ ତଥା ଅନ୍ୟାନ୍ୟ ନୂଆ ଲେଖକମାନଙ୍କୁ ରକ୍ଷା କରିବାପାଇଁ ସେ ପ୍ରାୟ ୪୦ ବର୍ଷ ତଳେ ଏକ ପୁସ୍ତକ ପ୍ରତିଷ୍ଠାନ 'ଶାନ୍ତି ନିବାସ ବାଣୀ ମନ୍ଦିର' ପ୍ରତିଷ୍ଠା କରିଥିଲେ । କିନ୍ତୁ ବେଶିଦିନ ତାହା ବଞ୍ଚିପାରି ନ ଥିଲା । ପ୍ରକାଶକମାନଙ୍କ ଚକ୍ରବ୍ୟୂହ ଭିତରେ ସେ ଅଭିମନ୍ୟୁ ଭଳି ଯୁଦ୍ଧ କଲେ ସତ, କିନ୍ତୁ ଅନୁଷ୍ଠାନକୁ ବଞ୍ଚାଇ ରଖିପାରିଲେ ନାହିଁ । ରାଜକିଶୋରଙ୍କ ସ୍ୱାଭିମାନ ତାଙ୍କୁ ଲେଖକ, ପ୍ରକାଶକ ଉଭୟ କାର୍ଯ୍ୟପାଇଁ ପ୍ରୋତ୍ସାହିତ କରିଥିଲା । ସେ ନିଜେ ବହି ଲେଖୁଥିଲେ, ଛାପୁଥିଲେ, ବଜାରରେ ବିକ୍ରି କରୁଥିଲେ । ନିଜେ ସାଇକଲ ଚଢ଼ି ବହି ବ୍ୟାଗ ଧରି ବାଲୁବଜାରରେ ବୁଲୁଥିଲେ । ବିଭିନ୍ନ ବହିଦୋକାନରେ ତାଙ୍କର ବହି ଦେଇ ତା' ପ୍ରତିବଦଳରେ ବହି ନେଇ ଶାନ୍ତିନିବାସ ବାଣୀ ମନ୍ଦିରରେ ବ୍ୟବସାୟ କରୁଥିଲେ ।

ଥରେ ସ୍ୱାଭିମାନୀ ରାଜକିଶୋର ହାତରୁ ଟଙ୍କା ଖର୍ଚ୍ଚ କରି ଉପନିଷଦ ଛାପିଥିଲେ । ପ୍ରତି ବହିର ପୃଷ୍ଠା ସଂଖ୍ୟା ଥିଲା ୩୨ । ପ୍ରତ୍ୟେକର ମୂଲ୍ୟ ଥିଲା ଏକ ଟଙ୍କା । ତିନିଶଖଣ୍ଡ ଉପନିଷଦ ଛାପିଥିଲେ । ବହିଦୋକାନମାନଙ୍କରେ ଅଧା ଦାମ୍‌ରେ ବହି ଦେଲେ । ତେବେ ପଇସା ମିଳିଲା ନାହିଁ । ଶେଷରେ ରେଭେନ୍‌ସା କଲେଜିଏଟ ସ୍କୁଲ ଫାଟକ ପାଖରେ ଠିଆ ହୋଇ ପିଲାଙ୍କୁ ବାଣ୍ଟିଲେ । ସେଥିରେ ଲାଭ କଥା ଦୂରେ ଥାଉ, କ୍ଷତି ହେଲା ଅନେକ – ଆର୍ଥିକ ଦୃଷ୍ଟିରୁ । କିନ୍ତୁ ପ୍ରେସ ବା କାଗଜବାଲାର କାହାରି ପଇସା ସେ ବାକି ରଖି ନ ଥିଲେ ।

ରାଜକିଶୋର ଥରେ ଏକ ସାକ୍ଷାତ୍‌କାରରେ କହିଥିଲେ – ''ଆପଣଙ୍କର ଯଦି କ୍ଷମତା ନାହିଁ, ପ୍ରଭାବ ନାହିଁ ବା ଆପଣ ଯଦି ପାଲିସ୍ କରି ଶିଖି ନାହାନ୍ତି, ତେବେ ଆପଣଙ୍କ ବହି ପ୍ରକାଶକମାନେ ଛାପିବେ କାହିଁକି ?''

ପୁଣି ନିଜର ଅସହାୟତା ବିଷୟରେ ସ୍ପଷ୍ଟଭାବେ କହିଥିଲେ – ''×××୫୦ ବର୍ଷ ଧରି ଲେଖିବା ପରେ ମୋତେ ଯଦି ଆମ୍ବ କିଲେ କିଣି ଖାଇବାକୁ ପଇସା ନ ମିଳିଲା, ତେବେ କ'ଣ ପାଇଁ ମୁଁ କାହାର ଓଠ ଧରି ଲେଖା ଛପେଇବି ।''

ରାଜକିଶୋର ଓଡ଼ିଶା ସରକାର ଦେଉଥିବା ଲେଖକ ଭତ୍ତାପାଇଁ ଦରଖାସ୍ତ ଦେଇ ନ ଥିଲେ । ଥରେ ଜଣେ ବନ୍ଧୁ ତାଙ୍କୁ ଏ ବିଷୟରେ ପଚାରନ୍ତେ, ସେ ଉତ୍ତର ଦେଲେ – '' ××× କାଳିନ୍ଦୀ ପାଣିଗ୍ରାହୀ, ସଚ୍ଚି ରାଉତରାୟ ଏମାନେ କ'ଣ ସବୁ ଦରଖାସ୍ତ ଦେଇ ଭତ୍ତା ପାଉଛନ୍ତି ? ଏମାନଙ୍କ ଦାରିଦ୍ର୍ୟ ଯଦି ସରକାର ଅନୁଭବ କରିପାରୁଛନ୍ତି, ଏମାନଙ୍କ ନାମ ସୁପାରିସ କରିପାରୁଛନ୍ତି, ତେବେ ମୋ ନାଆଁ କାହିଁକି ସୁପାରିସ କରିପାରିବେ ନାହିଁ । କୌଣସି ପ୍ରତିବନ୍ଧକ ନାହିଁ ତ ...''

ମୃତ୍ୟୁର କେତେ ବର୍ଷ ପୂର୍ବରୁ ରାଜକିଶୋରଙ୍କ ଏକ ବିବୃତି ଖବରକାଗଜରେ ବାହାରିଲା । ସେଥିରେ ଥିଲା ଯେ ସେ ଖଣ୍ଡିଏ ବହି ଛପାଇବାକୁ ଚାହାନ୍ତି । କିନ୍ତୁ ଆର୍ଥିକ ସମ୍ବଳ ନାହିଁ । ଶୁଭେଚ୍ଛୁମାନଙ୍କ ସାହାଯ୍ୟ ଲୋଡ଼ିଥିଲେ । କେତେ ବି ଅର୍ଥ ପଠାଇଥିଲେ । ଦାନ ଅର୍ଥ କିନ୍ତୁ ଯଥେଷ୍ଟ ହେଲା ନାହିଁ । ଆର୍ଥିକ ସାହାଯ୍ୟର ମଧ୍ୟ ଆଉ ଆବଶ୍ୟକ ହେଲା ନାହିଁ । ବାଧ୍ୟ ହୋଇ ସେ ଅର୍ଥ ଫେରାଇ ଦେଇଥିଲେ ସମସ୍ତଙ୍କୁ ପୁଣି ମନିଅର୍ଡର ଖର୍ଚ୍ଚ କରି । ଜୀବନର ଶେଷ ପର୍ଯ୍ୟନ୍ତ ସେ ତାଙ୍କର ସ୍ୱାଭିମାନକୁ ରକ୍ଷା କରିଥିଲେ ।

ମୃତ୍ୟୁର ପ୍ରାୟ ବର୍ଷକ ପୂର୍ବରୁ କଚେରି ଯିବା ଏକରକମ ଅସମ୍ଭବ ହୋଇ ପଡ଼ିଲା । ବାର୍ଦ୍ଧକ୍ୟର ହେମାଳ ସ୍ପର୍ଶରେ ଦେହ ଶୀତେଇ ଉଠିବାକୁ ଆରମ୍ଭ କଲା । ଶେଷରେ ରାଜକିଶୋର ଶିରିଡ଼ି ସାଇବାବାଙ୍କ ଚରଣାଶ୍ରିତ ହେଲେ । ନୈରାଶ୍ୟର ଘୋର ଅନ୍ଧାର ମଧ୍ୟରେ ତାହା ଥିଲା କ୍ଷୀଣ ଆଶାର ଆଲୋକ ।

## ଉପେକ୍ଷିତ ନାୟକ

ରାଜକିଶୋର ସମ୍ମାନ କିମ୍ବା ପୁରସ୍କାରପାଇଁ ଲାଳାୟିତ ନ ଥିଲେ । ସାହିତ୍ୟିକ ସ୍ୱୀକୃତି ମଧ୍ୟ ସେ ଚାହିଁ ନ ଥିଲେ । ଅଠର ବର୍ଷ ବୟସରେ ସେ ଲେଖା ଆରମ୍ଭ କରିଥିଲେ । ସେହିଦିନୁ ତାଙ୍କର ଲେଖନୀ ହୋଇଛି ଚଳଚଞ୍ଚଳ । ତାଙ୍କର ଲେଖନୀକୁ ସେ ଫୁରୁସତ ଦେଇ ନାହାନ୍ତି କି ଅଳସ ଭାଙ୍ଗି ନାହାନ୍ତି । ଅବାରିତ ଗତିରେ ଲେଖି ଚାଲିଛନ୍ତି କେତେ ଉପନ୍ୟାସ, ଗଳ୍ପ ଇତ୍ୟାଦି ।

୧୯୭୦ ମସିହାରେ 'ପ୍ରଜାତନ୍ତ୍ର ପ୍ରଚାର ସମିତି' ରାଜକିଶୋରଙ୍କୁ 'ଝଙ୍କାର ପୁରସ୍କାର' ପ୍ରଦାନ କରିଥିଲା । ସାହିତ୍ୟ ସଂସଦ ଆନୁକୂଲ୍ୟରେ ୧୯୮୦ ମସିହାରେ ଏକବିଂଶତମ ଶିଶିର ଉତ୍ସବ ଏବଂ ଓଡ଼ିଆ ଲେଖକ ସମ୍ମିଳନୀରେ ଏକ ନିରାଡ଼ମ୍ବର ସମାବେଶରେ 'ଉତ୍କଳ ରତ୍ନ' ଉପାଧି ତାଙ୍କୁ ମିଳିଥିଲା ।

ମାତ୍ର ରାଜକିଶୋରଙ୍କ ଭଳି ଏକ ବିରଳ ପ୍ରତିଭାଧର ସାରସ୍ୱତ ଓ ବୌଦ୍ଧିକ ରୂପକୁ ଚିହ୍ନିବାରେ ଅନଭିଜ୍ଞ ରାଜନୈତିକ ନେତୃତ୍ୱ ବା ସାମାଜିକ ବ୍ୟବସ୍ଥା ସକ୍ଷମ ହୋଇପାରିଲା ନାହିଁ । ତାଙ୍କର ସାମସମୟିକ କିମ୍ବା ତାଙ୍କଠାରୁ କନିଷ୍ଠ ଲେଖକମାନଙ୍କୁ ଓଡ଼ିଶା ବା କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଦିଆଯାଇ ସମ୍ମାନିତ କରାଗଲା ଓ ତାଙ୍କୁ ପରୋକ୍ଷରେ ସମ୍ମାନରୁ ବଞ୍ଚିତ କରାଗଲା । ସେଥିରେ ସେ କ୍ଷୁଣ୍ଣ ହେଲେ । କୌଣସି ପ୍ରକାର ସମ୍ମାନ ବା ଉପାୟନ ଗ୍ରହଣ କରିବେ ନାହିଁ ବୋଲି ସେ ସିଦ୍ଧାନ୍ତ କଲେ । ତାଙ୍କୁ କୌଣସି ପୁରସ୍କାର ନ ଦେବା ନିମନ୍ତେ ସେ ମଧ୍ୟ ଓଡ଼ିଶା ସାହିତ୍ୟ ଏକାଡେମୀ, ଜ୍ଞାନପୀଠ ଓ ଶାରଳା ପୁରସ୍କାରର ପ୍ରବର୍ତ୍ତକମାନଙ୍କୁ ଜଣାଇଦେଲେ । ଏକଥା ମଧ୍ୟ ସେ କେତେବର୍ଷ ତଳେ ଏକ ସାକ୍ଷାତ୍କାର ପ୍ରସଙ୍ଗରେ ପ୍ରକାଶ କରିଥିଲେ ।

୧.୧.୧୯୫୧ ମସିହାର ୧୪ଶ ବର୍ଷ ତ୍ରୟୋଦଶ ସଂଖ୍ୟା 'ଡଗର'ରେ ସମ୍ପାଦକ ନିତ୍ୟାନନ୍ଦ ମହାପାତ୍ରଙ୍କ ଅନୁରୋଧରେ ରାଜକିଶୋର 'ମୁଁ କାହିଁକି ଲେଖେ' ଶିରୋନାମରେ ଏକ ଲେଖା ଲେଖିଥିଲେ । ସେଥିରେ ସେ କହିଥିଲେ – ''ଝାଡୁଦାର ସାହିତ୍ୟିକ ହିସାବରେ ମୋର କର୍ତ୍ତବ୍ୟ ଶେଷ କରିଚି କହିଲେ ଚଳେ ।''

ଆଉ ଠାଏ ଲେଖିଛନ୍ତି – ''ସରକାରୀ ଲେଖକ ଓ ପ୍ରକାଶକ ତାଲିକାରୁ ବାଦ୍ ପଡ଼ିଛୁ । ପାଠକମାନଙ୍କ ପ୍ରିୟ ସାହିତ୍ୟିକ ଶ୍ରେଣୀରୁ କଟିଯାଇଛୁ ।''

କେବଳ ସେତିକି ନୁହେଁ, ଅଲ୍‌ଇଣ୍ଡିଆ ରେଡ଼ିଓ ମଧ୍ୟ ଲେଖକଙ୍କ ତାଲିକାରୁ ତାଙ୍କ ନାମ କାଟି ଦେଇଥିଲା । ଆଉ ଠାଏ ରାଜକିଶୋର ଖେଦ ପ୍ରକାଶ କରି

କହିଛନ୍ତି – ''ମୋ ଜୀବଦ୍ଦଶାରେ ସରକାରୀ ଓ ଘରୋଇ ଅନୁଷ୍ଠାନରୁ ସର୍ବମୋଟ ୬ ହଜାର ଟଙ୍କା ସାହାଯ୍ୟ ବା ପୁରସ୍କାର ବାବଦରେ ପାଇଛି ××× ଏହାହିଁ ମୋର ସମଗ୍ର ସାହିତ୍ୟିକ ମୂଲ୍ୟ !''

ଦୁଃସ୍ଥ କଳାକାର ଭତ୍ତାପାଇଁ ଦରଖାସ୍ତ କରିବାକୁ ଜଣେ ବନ୍ଧୁ କହନ୍ତେ, ସେ କହିଥିଲେ – ''ମୁଁ ତ ଅଖା ପିନ୍ଧୁ ନାହିଁ, ଦୁଃସ୍ଥ ହେବି କେମିତି ?''

କୌଣସି ସମ୍ମାନ ବା ଉପାୟନ ଗ୍ରହଣ କରିବେ ନାହିଁ ବୋଲି ରାଜକିଶୋର ସିଦ୍ଧାନ୍ତ ଗ୍ରହଣ କରିଥିଲେ । ପ୍ରାୟ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ତାହା ଅପରିବର୍ତ୍ତିତ ରହିଥିଲା । ଯେ କୌଣସି ସାହିତ୍ୟ ଅନୁଷ୍ଠାନ ତାଙ୍କୁ ସମ୍ମାନ ପ୍ରଦର୍ଶନ କରିବାକୁ ଆସିଲେ ସେ ବିନୀତ ଭାବରେ କହୁଥିଲେ ଯେ ସେମାନେ ସେହି ଟଙ୍କା ଅନ୍ୟ କୌଣସି ଲେଖକଙ୍କୁ ଦେଇଦିଅନ୍ତୁ । କାରଣ ତାଙ୍କୁ ଦେଲେ କିଛି ଲାଭ ହେବ ନାହିଁ । ସେ ମଧ୍ୟ ରୋକଠୋକ ଭାବେ କହୁଥିଲେ –

''ମୁଁ ମଧ୍ୟ ଆଣିବାକୁ ଯିବି ନାହିଁ । ଆପଣମାନେ ସେଥିରୁ ବିରତ ରହନ୍ତୁ ।''

ରାଜକିଶୋରଙ୍କୁ 'ସାରଳା ସମ୍ମାନ' ପ୍ରଦାନପାଇଁ ବିଚାରରେ ହେଲେ ମଧ୍ୟ ନିଷ୍ପତ୍ତି ହୋଇଥିଲା । ବିଶିଷ୍ଟ ସାହିତ୍ୟିକ ପଠାଣି ପଟ୍ଟନାୟକଙ୍କ ନିର୍ଦ୍ଦେଶକ୍ରମେ ସାରଳା ସାହିତ୍ୟ ସଂସଦର ସମ୍ପାଦକ ଇଂ. ପ୍ରଭାକର ସ୍ୱାଇଁ ଓ ଡଃ ବିଜୟାନନ୍ଦ ସିଂହ ତାଙ୍କ ତଳତେଲେଙ୍ଗା ବଜାର ବାସଭବନରେ ଭେଟିଥିଲେ । ଏହି ପ୍ରସ୍ତାବରେ ସେ କେତେ ସମୟ ଚୁପ୍ ହୋଇଗଲେ ଓ ପରେ ନିଜର ଅସମ୍ମତି ପ୍ରକାଶ କଲେ । କୌଣସି ପ୍ରଲୋଭନ ତାଙ୍କୁ ସ୍ପର୍ଶ କରି ନ ଥିଲା । ସେ ନିଜ ନିଷ୍ପତ୍ତିରେ ଥିଲେ ଦୃଢ଼ ।

ମୃତ୍ୟୁର ଅବ୍ୟବହିତ ପୂର୍ବରୁ ରାଜକିଶୋର ଶଯ୍ୟାଶାୟୀ ହୋଇପଡ଼ିଲେ । ତାହା ଥିଲା ୧୯୯୭ ମସିହା ଫେବୃୟାରୀ ଆଠ ତାରିଖ । ତାଙ୍କୁ ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି 'ଅତିବଡ଼ୀ ଜଗନ୍ନାଥ ଦାସ' ଉପାୟନ ସହିତ ନଗଦ ପଚିଶ ହଜାର ଟଙ୍କା ଏବଂ ଉପଢୌକନ ସହ ତାଙ୍କ ବାସଭବନରେ ଆସି ପ୍ରଦାନ କଲେ । ସେଦିନ ସେ ପ୍ରାୟ କିଛି ଜାଣୁ ନ ଥିଲେ । ପୂର୍ବରୁ ସେ ସେହି ସମ୍ମାନକୁ ପ୍ରତ୍ୟାଖ୍ୟାନ କରିଦେଇଥିଲେ । ସୁତରାଂ ଜୀବନର ଶେଷ ସମୟରେ ସେ ତାହାକୁ ଗ୍ରହଣ କରିବେ କି ନାହିଁ ସେଥିରେ ଥିଲା ସନ୍ଦେହ । ତାଙ୍କର ବନ୍ଧୁମାନେ କିନ୍ତୁ ତାଙ୍କ ଉପରେ ଚାପ ପକାଇଲେ । ଉପାୟନର ସମ୍ମାନ ଅପେକ୍ଷା ନଗଦ ଟଙ୍କା ଦରକାରରେ ଆସିବ ବୋଲି ତାଙ୍କୁ ବୁଝାଇଲେ । ତେଣୁ ଘୋର ଅନିଚ୍ଛାସତ୍ତ୍ୱେ ରାଜକିଶୋର ନିଜ ବାସଭବନରେ ତାହାକୁ ଗ୍ରହଣ କଲେ – କୁଣ୍ଠିତ ଭାବରେ ।

ଏହାର ୨୦ ଦିନ ପରେ ଅର୍ଥାତ୍ ୧୯୯୭ ମସିହା ମାର୍ଚ୍ଚ ମାସ ପହିଲା ଦିନ ରାଜକିଶୋର ଶେଷ ନିଶ୍ୱାସ ତ୍ୟାଗ କଲେ ।

ରାଜକିଶୋର ତାଙ୍କର ଜୀବନ ତମାମ ସାହିତ୍ୟ ସର୍ଜନା କରି ଓଡ଼ିଶାର ସମକାଳୀନ ସଂସ୍କୃତିକୁ ଋଦ୍ଧିମନ୍ତ କରିଗଲେ । କିନ୍ତୁ ତେଲ ଲୁଣର ସଂସାରରେ କିଏ ଦେଲା ତା'ର ମୂଲ୍ୟ ?

ବଞ୍ଚି ଥାଉ ଥାଉ ଏଇ ଓଡ଼ିଶା ଭୂଇଁରେ ତାଙ୍କୁ ଦିନ କାଟିବାକୁ ପଡ଼ିଛି ବହଳ ବିସ୍ମୃତିର ବଳୟ ଭିତରେ ।

ଅନୁଜା ସଫଳ ଔପନ୍ୟାସିକା ବସନ୍ତ କୁମାରୀଙ୍କ ଭାଷାରେ – ''× × × ସେ ହେଉଛନ୍ତି ମହାଭାରତର କର୍ଣ୍ଣ ଚରିତ୍ର । ସବୁ ସାମର୍ଥ୍ୟ ଥାଇ ମଧ୍ୟ ସେ ବିଜୟଶ୍ରୀ ହାସଲ କରିପାରିଲେ ନାହିଁ ।''

### ମୂଲ୍ୟାୟନ

ଓଡ଼ିଆ ଉପନ୍ୟାସ ସାହିତ୍ୟରେ ଉଭୟ ଗଳ୍ପ, ଉପନ୍ୟାସର କଥାକାର ରାଜକିଶୋର ପଟ୍ଟନାୟକ ଏକ କୀର୍ତ୍ତିମାନ୍ ପୁରୁଷ । ଆଧୁନିକ ମଣିଷର ଜୀବନ କଥାକୁ ସେ ନିଜ ସୃଷ୍ଟିର ଉପାଦାନଭାବେ ଗ୍ରହଣ କରିଛନ୍ତି । ସମାଜରେ ରହୁଥିବା ମଣିଷମାନଙ୍କର ସୁବିଧା ଅସୁବିଧା ତାଙ୍କ ସୃଷ୍ଟିରେ କଳାତ୍ମକଭାବେ ସ୍ଥାନ ପାଇଛି । ସାମସମୟିକ ଜୀବନର ସ୍ୱର, ଜୀବନାନୁଭୂତିର ମାର୍ମିକ ଆଲେଖ୍ୟ, ବାସ୍ତବବାଦୀ ଦୃଷ୍ଟିକୋଣର ଭିତ୍ତିଭୂମି ଉପରେ ଗଢ଼ିଉଠିଛି ତାଙ୍କ ଶିଳ୍ପର ଭାସ୍କର୍ଯ୍ୟ ।

ଘଟଣାର ବିବିଧତା ବା ଚରିତ୍ରର ବିଚିତ୍ରତାରେ ରାଜକିଶୋରଙ୍କ ରଚନାବଳି ସମୃଦ୍ଧ ନୁହେଁ । କିନ୍ତୁ ଅନ୍ତଃମନର, ସଂଗୁପ୍ତ ଚେତନାର ରସୋତ୍ତୀର୍ଣ୍ଣ ଅଭିବ୍ୟକ୍ତିହିଁ ନୂତନତାର ସ୍ପର୍ଶ ଦିଏ । ଅଳ୍ପ କେତୋଟି ଚରିତ୍ରକୁ ନେଇ ମଣିଷ ମନର ସାତ ତାଳ ଗହୀରରେ ଲୁକ୍କାୟିତ ହୋଇ ରହିଥିବା ଅସଲ ସତ୍ୟକୁ ସେ ଉପସ୍ଥାପନ କରିଛନ୍ତି । ସ୍ୱାଧୀନତା ପୂର୍ବ ଓ ପର ସାହିତ୍ୟର ଏକ ସୁଦୃଢ଼ ସେତୁର ଭୂମିକାରେ ଅବତୀର୍ଣ୍ଣ ହୋଇ ପାଠକମାନଙ୍କୁ ପରିବେଷଣ କରିଛନ୍ତି ନୂତନ ଅନୁଭବ, ନୂତନ ସ୍ୱାଦ ।

ରାଜକିଶୋର ତାଙ୍କ ଉପନ୍ୟାସ ବା ଗଳ୍ପମାନଙ୍କରେ ପ୍ରେମକୁ ଜୀବନର ଶ୍ରେଷ୍ଠ ବିଭବ ଭାବେ ଗ୍ରହଣ କରିଛନ୍ତି । ତାଙ୍କର ଶିଳ୍ପୀ ପ୍ରାଣ ଅଧିକାଂଶ କ୍ଷେତ୍ରରେ ପ୍ରେମ ପ୍ରବାହରେ ପ୍ଳାବିତ ହୋଇଅଛି । ଜୀବନର ଅପରାପର ଅନନ୍ତ ବିଭବ ନେଇ ସେ

ବ୍ୟଥିତ ନୁହନ୍ତି । ତରୁଣ, ତରୁଣୀଙ୍କ ପ୍ରେମ, ତାହାର ପ୍ରକୃତି ଓ ଗତି, ସମାଜ ଓ ସାମାଜିକ ଅନୁଷ୍ଠାନର ନିଗଡ଼ ମଧ୍ୟରେ ତାହାର ସ୍ଥିତି, ପ୍ରକାର ଏବଂ ଜୀବନର ଗତି ନିୟନ୍ତ୍ରଣ କରିବାରେ ତାହାର ପ୍ରଭାବ ମଧ୍ୟରେ ତାଙ୍କର ଲେଖନୀର ପ୍ରତିଷ୍ଠା । ପ୍ରେମର ବାର୍ତ୍ତା ପ୍ରଚାର କରିବାରେ ଔପନ୍ୟାସିକ ରାଜକିଶୋର ହେଉଛନ୍ତି ଯଥାର୍ଥରେ ଐନ୍ଦ୍ରଜାଲିକ କଥାକାର । ଓଡ଼ିଆ ଉପନ୍ୟାସ ସାହିତ୍ୟରେ ପ୍ରେମ କଥାକୁ ଉପଜୀବ୍ୟ କରି ମନୋବିଶ୍ଳେଷଣାତ୍ମକ ଉପନ୍ୟାସ ରଚନାରେ ସେ ହେଉଛନ୍ତି ସଫଳ ଯାଦୁକର ।

ରାଜକିଶୋରଙ୍କ ଭାଷା ଆତ୍ମୀୟତାର ଭାଷା । ଭାଷାଦ୍ୱାରା କିପରି ଭାବରେ ମଣିଷ ସହ ମଣିଷ ଯୋଡ଼ି ହୋଇଯାଏ, ତାହା ସେ ଜାଣିଥିଲେ । ଭାଷାକୁ ପାଥେୟ କରି ଜୀବନର ବହୁ କଥା କୁହାଯାଇପାରେ, ତାହା ତାଙ୍କ ଉପନ୍ୟାସମାନଙ୍କରୁ ଉପଲବ୍ଧି କରିହୁଏ । ତାଙ୍କ ଉପନ୍ୟାସର ସଫଳତା ତାଙ୍କ ରଚନାଶୈଳୀ ଉପରେ ନିର୍ଭରଶୀଳ । ସେ କବିସୁଲଭ ମନ ନେଇ ଗଳ୍ପ ଉପନ୍ୟାସମାନ ରଚନା କରିଛନ୍ତି କହିଲେ ଅସଙ୍ଗତ ହେବ ନାହିଁ ।

ଅନେକ ରୂପକଳ୍ପ ଓ ଉପମାରେ ରାଜକିଶୋରଙ୍କ ଉପନ୍ୟାସଗୁଡ଼ିକ ପରିପୁଷ୍ଟ । ସାମସମୟିକ ଜୀବନଚିତ୍ର ପ୍ରଦାନ କରୁଥିବା ରୂପକଳ୍ପ ଓ ଉପମା ମଧ୍ୟରେ ଉପନ୍ୟାସର ବିଷୟବସ୍ତୁ ହୋଇଉଠିଛି ଅଧିକ ହୃଦୟଗ୍ରାହୀ ।

ଶେଷରେ ଏତିକି କୁହାଯାଇପାରେ ଯେ ରାଜକିଶୋର ତାଙ୍କ ଉପନ୍ୟାସଗୁଡ଼ିକରେ ମଣିଷର ଭଲ ପାଇବାର ନାନା କଥାକୁ ଚମତ୍କାରଭାବେ ଉପସ୍ଥାପିତ କରିଛନ୍ତି । ସେ ଓଡ଼ିଆ ଉପନ୍ୟାସକୁ ନୂତନ ଦିଗ୍‌ଦର୍ଶନ ଦେଇଛନ୍ତି । ତାଙ୍କର ନିଷ୍ଠାପର ସାହିତ୍ୟ ସାଧନା ପରବର୍ତ୍ତୀ ଲେଖକମାନଙ୍କପାଇଁ ପ୍ରେରଣାର ଉତ୍ସ ହୋଇ ରହିଛି ଓ ରହିବ ।

❑❑❑



## ପ୍ରତିଭାଶାଳୀ କଥାଶିଳ୍ପୀ

# ବସନ୍ତକୁମାରୀ ପଟ୍ଟନାୟକ

## [୧୯୨୩-୨୦୧୩]

ଓଡ଼ିଶାର ସାରସ୍ୱତ ସାଧନା କ୍ଷେତ୍ରରେ ନାରୀ ଲେଖିକାମାନଙ୍କର ଅବଦାନ କିଛି କମ୍ ନୁହେଁ । ଯେଉଁ ନାରୀ ସ୍ରଷ୍ଟାଗଣ ଓଡ଼ିଆ କଥାସାହିତ୍ୟର ରାଜମାର୍ଗକୁ ସୁସଜ୍ଜିତ କରିଛନ୍ତି, ସେମାନଙ୍କ ମଧ୍ୟରେ ବସନ୍ତକୁମାରୀ ଏକ ତେଜସ୍ୱିନୀ ଲେଖିକାଭାବେ ଗଣ୍ୟ ହୁଅନ୍ତି । ସେ କେବଳ ନାରୀ ଲେଖିକା ନୁହନ୍ତି; ସେ ହେଉଛନ୍ତି ନାରୀମାନଙ୍କ ଲେଖିକା । ତାଙ୍କ ଲେଖାର ଛତ୍ରେ ଛତ୍ରେ ନାରୀର କଥା, ତା'ର ଅନ୍ତରର ବେଦନା, ତା'ର କର୍ତ୍ତବ୍ୟପରାୟଣତା, ପାପପୁଣ୍ୟର ବିଚାର, ସମାଜ-ସଂସ୍କାରର ଚିନ୍ତାଧାରା, ଦୟା, କ୍ଷମା – ଯାହାକିଛି ନାରୀର ସହଜାତ ପ୍ରବୃତ୍ତି, ସବୁକିଛି ଫୁଟିଉଠିଛି ଅତି ନିଖୁଣ ଭାବରେ । ନାରୀ ଚରିତ୍ର ଚିତ୍ରଣରେ ଲେଖିକାଙ୍କ ଅନୁଭାବିକତା ସ୍ପଷ୍ଟ ବାରି ହୁଏ ।

**ଜନ୍ମ**

୧୫.୧୨.୧୯୨୩ ମସିହାର ଏକ ବର୍ଷଣମୁଖର ରାତ୍ରିରେ କଟକସ୍ଥିତ ତେଲେଙ୍ଗାବଜାର ବାସଭବନରେ ବସନ୍ତକୁମାରୀ ଭୂମିଷ୍ଠ ହୋଇଥିଲେ । ପିତାଙ୍କ ନାମ ଶ୍ରୀବତ୍ସ ପଟ୍ଟନାୟକ ଓ ମାତାଙ୍କ ନାମ ସୁନ୍ଦରମଣି ଦେବୀ । ବସନ୍ତକୁମାରୀ ପିତାମାତାଙ୍କର ଚତୁର୍ଥୀ କନ୍ୟା ଥିଲେ ।

କଟକରେ ବସନ୍ତକୁମାରୀଙ୍କର ବାଲ୍ୟଜୀବନ କଟିଥିଲା । ସେଠାରେ ମଧ୍ୟ ତାଙ୍କର ଶିକ୍ଷା ଆରମ୍ଭ ହୋଇଥିଲା । ଏହା ପରେ ସେ ରେଭେନ୍‌ସା ବାଳିକା ବିଦ୍ୟାଳୟରେ ନାମ ଲେଖାଇଲେ । ସେ କଟକରେ ଜନ୍ମଗ୍ରହଣ କରିଥିଲେ ଓ କଟକ ଜଳବାୟୁରେ ବଢ଼ିଲେ ମଧ୍ୟ ଗ୍ରାମ୍ୟ ଜୀବନ ସଙ୍ଗେ ଅନ୍ତରଙ୍ଗ ଭାବରେ ଜଡ଼ିତ ଥିଲେ । ଦୂର ନଦୀ, ଝରଣା, ପଲ୍ଲୀ ପ୍ରକୃତିକୁ ସେ ନିରୀକ୍ଷଣ କରି ଆନନ୍ଦ ପାଉଥିଲେ । ପଲ୍ଲୀର ସାମାଜିକ ପ୍ରାଣୀର ବନ୍ଧନ ଓ ଅସରନ୍ତି ମୋହକୁ ସେ ଅନୁଭବ କରିଥିଲେ — ଯାହାକୁ ସେ ଅତି ନିଖୁଣ ଭାବରେ ବର୍ଣ୍ଣନା କରିଛନ୍ତି ତାଙ୍କ ଗଳ୍ପ ଓ ଉପନ୍ୟାସମାନଙ୍କରେ । ଗ୍ରାମର ନାଲି ରାସ୍ତାରେ ମଦଭାଟି, କୁମ୍ଭାରଶାଳ, ଚିତ୍ରକାର ସାହି, ହଇଚା ବସନ୍ତ ହେଲେ ଠାକୁରାଣୀଙ୍କୁ ଭୋଗ ଯାଚିବା, ମାର୍ଗଶିର ଗୁରୁବାରରେ ଗୋବରପାଣିରେ ଘର ଲିପାପୋଛା କରି ଚିତା, ମୁରୁଜ ପକାଇବା ପ୍ରଭୃତିର ବର୍ଣ୍ଣନା ବସନ୍ତକୁମାରୀଙ୍କ ଗ୍ରାମୀଣ ଅନୁଭୂତି ତଥା ପଲ୍ଲୀ ପ୍ରୀତିର ପରିଚୟ ଦିଏ । ସେହିପରି ପତ୍ର ପକାଇ ସ୍କୁଲ ଭୋଜିରେ ବସି ଖାଇବା ପ୍ରଭୃତିରୁ ସ୍କୁଲ ଜୀବନର ଅନୁଭୂତି ବିଷୟରେ ଧାରଣା କରିହୁଏ ।

ବସନ୍ତକୁମାରୀ ରେଭେନ୍‌ସା ବାଳିକା ବିଦ୍ୟାଳୟରେ ଚାରି ବର୍ଷ ଅଧ୍ୟୟନ କରି ମାଟ୍ରିକ୍ ପରୀକ୍ଷା ଦେଲେ ଓ କୃତିତ୍ୱ ସହ ଉତ୍ତୀର୍ଣ୍ଣ ହେଲେ ।

**କଲେଜ ଶିକ୍ଷା**

ସଙ୍ଗିନୀମାନଙ୍କ ସହ ସୁମଧୁର ସମ୍ପର୍କ ମଧ୍ୟରେ ବସନ୍ତକୁମାରୀ ରେଭେନ୍‌ସା କଲେଜରେ ନାମ ଲେଖାଇଲେ । ସେ ଆଇ.ଏ., ବି.ଏ. ପାସ୍ କଲାପରେ ଅର୍ଥନୀତିରେ ଏମ୍.ଏ. ମଧ୍ୟ ପଢ଼ିଲେ । ମାତ୍ର ସେଥିରେ ତୃତୀୟ ଶ୍ରେଣୀ ଲାଭ କଲେ । ସେ ଏଥିରେ ଭାଙ୍ଗି ପଡ଼ି ନ ଥିଲେ । ସେ ପୁନର୍ବାର ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଅର୍ଥନୀତିରେ ଏମ୍.ଏ. ପରୀକ୍ଷା ଦେଲେ ଓ କୃତିତ୍ୱ ସହ ପାସ୍ କଲେ ।

ପାଞ୍ଚ ଭାଇ ଓ ତିନି ଜଣ ଭଉଣୀଙ୍କ ସହ ବେଶ୍ ହସଖୁସିରେ ବସନ୍ତକୁମାରୀଙ୍କ ଦିନଗୁଡ଼ିକ ଯେ ଅତିବାହିତ ହେଉଥିଲା, ଏଥିରେ ସନ୍ଦେହ ନାହିଁ ।

ବସନ୍ତକୁମାରୀ ଦେଖିବାକୁ ସୁନ୍ଦରୀ ଥିଲେ । ଦୁଧ-ଅଳତା ପରି ଦେହର ରଙ୍ଗ ସହିତ ଧଡ଼ି ନ ଥିବା ସାଦା ଓ ଧଳା ଶାଢ଼ି ତାଙ୍କୁ ବେଶ୍ ମାନୁଥିଲା । ଘର ସଜେଇବା, ଫୁଲଗଛ ଲଗାଇବା, ନିଜ କାମ ନିଜେ କରିବା, ପରିଷ୍କାର ରହିବା ଓ ରଖିବା ପ୍ରଭୃତି ଗୁଣ ତାଙ୍କଠାରୁ କମ୍ ବୟସରୁହିଁ ଦେଖାଯାଇଥିଲା । ତାଙ୍କର ବ୍ୟବହାର ଥିଲା ମଧ୍ୟ ଖୁବ୍ ସରଳ । ଧୀର ଓ ନମ୍ର ଭାବରେ ସେ କଥା କହୁଥିଲେ । ହସି ହସି କଥା କହି ପରକୁ ମଧ୍ୟ ଆପଣାର କରିପାରୁଥିଲେ ।

ଶିକ୍ଷା ସମାପ୍ତ ପରେ ବସନ୍ତକୁମାରୀ ଚାକିରି କରିପାରିଥାନ୍ତେ । ଅଧ୍ୟାପନା ଚାକିରି ମଧ୍ୟ ତାଙ୍କୁ ମିଳିଥିଲା । ଅର୍ଥଠାରୁ ଖ୍ୟାତି ପର୍ଯ୍ୟନ୍ତ ସେ ସବୁ କିଛି ପାଇ ପାରିଥାନ୍ତେ; ମାତ୍ର ରୁଟିନବନ୍ଧା ଜୀବନକୁ ସେ ପସନ୍ଦ କରୁ ନ ଥିଲେ । ତାହାଛଡ଼ା

ଓଡ଼ିଆ ସାହିତ୍ୟ ପ୍ରତି ତାଙ୍କର ଗଭୀର ମମତା ଥିଲା । ସେ ଆଜୀବନ ଲେଖିକା ହେବାପାଇଁ ସ୍ଥିର କଲେ ।

ସ୍କୁଲ ବା କଲେଜ ଜୀବନରେ ପାଠପଢ଼ାରେ ବ୍ୟାଘାତ ସୃଷ୍ଟି ହେବ ବୋଲି ସେ ଲେଖାରେ ମନ ବଳାଇ ନ ଥିଲେ । ୧୯୫୧ ମସିହା ଆଡ଼କୁ ତାଙ୍କ ପାଠପଢ଼ା ଶେଷ ହେଲା । ଏହାପରେ ସେ ଲେଖାଲେଖିରେ ମନୋନିବେଶ କଲେ । ଗଳ୍ପରୁହିଁ ଲେଖିକାଙ୍କ ସାରସ୍ୱତ ଜୀବନ ଆରମ୍ଭ ହେଲା ।

## ପରିବେଶ

ଲେଖିକା ହେବାପାଇଁ ବସନ୍ତକୁମାରୀଙ୍କ ପରିବେଶ ଆଦୌ ଅନୁକୂଳ ନ ଥିଲା । ଅବଶ୍ୟ ବସନ୍ତକୁମାରୀଙ୍କ ଅଗ୍ରଜ ଥିଲେ ରାଜକିଶୋର ପଟ୍ଟନାୟକ । ସେ ସେତେବେଳେ ଓଡ଼ିଶାର ସ୍ୱନାମଧନ୍ୟ ଗାଳ୍ପିକ ଓ ଔପନ୍ୟାସିକ ଥିଲେ । ସେ ଏକଦା ଏକ ସାକ୍ଷାତ୍‌କାରରେ କହିଥିଲେ –

''ମୋ ଛଡ଼ା ଆମ ପରିବାରରେ ଲେଖିବାକୁ ଆଉ କେହି ପ୍ରେରଣା ଦେଇ ନାହିଁ । ବରଂ ବିରକ୍ତ ହୋଇଛନ୍ତି ସମସ୍ତେ ତା' ଉପରେ ଏଇ ଲେଖାଲେଖିପାଇଁ । ସେ ମୋ ଦ୍ୱାରା କିଛି ମାତ୍ରାରେ ପ୍ରଭାବିତ ହୋଇଛି । କିନ୍ତୁ ଆମେ ଦୁହିଁଙ୍କଠାରୁ ସ୍ୱତନ୍ତ୍ର । ଦୁହେଁ ପୁଣି ଅନ୍ୟ ସମସ୍ତଙ୍କଠାରୁ ସ୍ୱତନ୍ତ୍ର ।'' ସୁତରାଂ ଲେଖିକାଙ୍କୁ ଯେ ପରିବାରର ଅସନ୍ତୋଷ ଓ ବିରକ୍ତିର ସାମ୍ନା କରିବାକୁ ପଡ଼ିଥିଲା, ଏଥିରେ ସନ୍ଦେହ ନାହିଁ । ତେବେ ଅଗ୍ରଜ ରାଜକିଶୋରଙ୍କ ଦୀର୍ଘ କାଳର ସାହିତ୍ୟ ସାଧନା ତାଙ୍କୁ ପ୍ରେରଣା ଯୋଗାଇଥିବା ଅନୁମାନ କରାଯାଇପାରେ ।

## ସ୍ୱାତନ୍ତ୍ର୍ୟ

ବସନ୍ତକୁମାରୀଙ୍କ କଥା-ସାହିତ୍ୟରେ ଘଟଣାର ଗତାନୁଗତିକତା ଓ ଧାରାବାହିକତା ନାହିଁ । ସେ ଅନ୍ତର୍ମୁଖୀନ ବାସ୍ତବତାର ପ୍ରବର୍ତ୍ତକ । ତାଙ୍କ ଲେଖାରେ ଅନ୍ତର୍ମୁଖୀନ ଏକୋକ୍ତି ବା ଆତ୍ମଭାଷଣର – ଯାହାକୁ କହନ୍ତି Monologue Interior ବା Internal Monologueରେ ବହୁଳ ପ୍ରୟୋଗ ଦେଖାଯାଏ । ସ୍ମୃତିଚାରଣ, ନେପଥ୍ୟ, କଥାର ଅଧିକ ବ୍ୟବହାର, ତୀର୍ଯ୍ୟକ୍ ବାକ୍‌ଭଙ୍ଗୀର ପ୍ରୟୋଗ ମଧ୍ୟ ତାଙ୍କ ଲେଖାକୁ ବୈଶିଷ୍ଟ୍ୟ ପ୍ରଦାନ କରିଅଛି । ଲେଖିକା ପ୍ରତି ଚରିତ୍ରର ଅବଚେତନ ମନ ଭିତରର ଦୃଶ୍ୟକୁ ସ୍ପଷ୍ଟ ଚିତ୍ରଣ କରିବା ସଙ୍ଗେ ସଙ୍ଗେ ସମସ୍ତ ପ୍ରକାର ଦ୍ୱନ୍ଦ୍ୱ, ସମସ୍ୟା ବିଶେଷତଃ ନାରୀ ଚରିତ୍ରର ଚିନ୍ତାଧାରା ଓ ମନସ୍ତତ୍ତ୍ୱକୁ ବିଶ୍ଳେଷଣ କରିଛନ୍ତି । ତାଙ୍କ ଉପନ୍ୟାସର ପ୍ରାୟ ପ୍ରତ୍ୟେକ ଚରିତ୍ର ଗୌଣ ହେଉ ବା ମୁଖ୍ୟ ହେଉ – ସମସ୍ତଙ୍କର ମନସ୍ତାତ୍ତ୍ୱିକ ବିଶ୍ଳେଷଣ କରାଯାଇଛି । ବସନ୍ତକୁମାରୀ ଉପନ୍ୟାସ ଓ ଗଳ୍ପ ମିଶି ସର୍ବମୋଟ ଛଅ ଗୋଟି ପୁସ୍ତକ ରଚନା କରିଛନ୍ତି । ସ୍ୱଳ୍ପ ହେଲେ ମଧ୍ୟ ଏଗୁଡ଼ିକ ଲେଖିକାଙ୍କ ଜୀବନର ସିଦ୍ଧିର ଉଜ୍ଜ୍ୱଳତମ ସ୍ୱାକ୍ଷର ବହନ କରନ୍ତି ।

## ଉପନ୍ୟାସ

### ଅମଡ଼ାବାଟ

ପୁରପଲ୍ଲୀର ଚରିତ୍ରମାନଙ୍କୁ ନେଇ, ନିତି ଦିନର ପ୍ରତି ପରିବାରର ଘଟଣାକୁ ନେଇ ଲେଖିକା ଏହି ଉପନ୍ୟାସଟି ରଚନା କରିଛନ୍ତି ।

ପାଞ୍ଚୋଟି ସନ୍ତାନର ଜନକ ପୀତାମ୍ବରବାବୁ । ମୋହନ ଓ ମାୟାଙ୍କପାଇଁ ତାଙ୍କର ଏତେ ବେଶୀ ଚିନ୍ତା ହୁଏ ନାହିଁ; କିନ୍ତୁ ସାନପିଲା ତିନୋଟି – ପ୍ରତାପ, ରଞ୍ଜନ ଓ ପହଲିଙ୍କ ଭବିଷ୍ୟତ୍ ବିଷୟକ ଭାବନା ତାଙ୍କୁ ଅସ୍ତବ୍ୟସ୍ତ କରିଦିଏ ।

ବଡ଼ ପୁଅ ମୋହନ ଡାକ୍ତର । ବିବାହ କରି ନାହିଁ । ବିବାହ କରିବାକୁ ରାଜି ହୋଇନି । ନିଜେ ହାତରେ ଖେଚୁଡ଼ି ରାନ୍ଧି ଖାଇଛି । ପୀତାମ୍ବରବାବୁ ବାପା ଓ ମୁରବି ହିସାବରେ ବୁଝାଇଛନ୍ତି । ଘରେ ଅଶାନ୍ତି ନ କରିବାକୁ ମଧ କହିଛନ୍ତି । ଶେଷରେ ବାହା ହେବାକୁ ମୋହନ ରାଜି ହୋଇଛି । କଟକରେ ଝିଅ ଦେଖାଚାହାଁ ହୋଇଛି । ବାହାଘର ଠିକଣା ହୋଇଛି । ଦେବାନେବାର ପ୍ରଶ୍ନ ଉଠି ନାହିଁ । କାବେରୀ ଘରକୁ ବୋହୂ ହୋଇ ଆସିଛି । ମୋହନଙ୍କ ବୋଉ କାବେରୀକୁ ବୋହୂ କରି ଆଣି ଗର୍ବରେ ଛାତି ଫୁଲାଇ ଚାଲିବାକୁ ଆରମ୍ଭ କରନ୍ତି ।

ବିବାହ ପରେ ମୋହନର ଚିନ୍ତାଧାରା ଓ ଗତିପଥରେ ପରିବର୍ତ୍ତନ ହୋଇଛି । ତା'ର ମନ ସ୍ତ୍ରୀର ଘରୋଇ ବୁଦ୍ଧି ପାଖରେ ବନ୍ଦୀ ହୋଇପଡ଼ିଛି । ଏକଥା ସେ ନିଜେ ସ୍ୱୀକାର ନ କଲେ ବି ସମସ୍ତେ ତାହା ଲକ୍ଷ୍ୟ କରିଛନ୍ତି । ମୋହନର ବୋଉ ଅବଶ୍ୟ ଖୁସି ହୋଇଛନ୍ତି । ଯାହାହେଉ, ତାଙ୍କ ପୁଅର ମନ ଘର ଧରିଲାଣି । କାନ୍ଧରେ ପଡ଼ିଲେ ସମସ୍ତେ ବଢ଼େଇ ଶିଖନ୍ତି – ସେ ବା ସେଥିରୁ ବାଦ୍ ଯିବ କିପରି ?

ନବବଧୂ କାବେରୀକୁ ସମସ୍ତେ ପ୍ରଶଂସା କରିଛନ୍ତି । କିନ୍ତୁ ସେ ପ୍ରଶଂସା ସବୁ ଅମୂଳକ । ଧୋବ ବିଛଣା ଚାଦର ଉପରେ ସାନ ଭାଇ ପହଲି ବସିଲେ କାବେରୀ ବିରକ୍ତ ହୁଏ । ମୋହନ ଉପରେ ଭାଇଭଉଣୀ କିମ୍ବା ମାଆଙ୍କର ଏତେଟା ପ୍ରଭାବ ବିସ୍ତାରକୁ ସେ ପସନ୍ଦ କରି ନାହିଁ । ମାୟାକୁ ଆକଟିଛି । ମାୟା ବି ତା'ର ଜବାବ ଦେଇଛି ।

ପୀତାମ୍ବରବାବୁଙ୍କ ଘରେ କାବେରୀପାଇଁ କାଛବାଡ଼ ବି ପ୍ରତୀକ୍ଷାରେ ଦିନ କାଟୁଥିଲେ । ହେଲେ କାବେରୀ ସେ ଘରେ ପାଦ ଦେଲାମାତ୍ରେ ସମସ୍ତଙ୍କର ସ୍ୱପ୍ନ, ଆଶା ସବୁ ମୂଲ୍ୟହୀନ ହୋଇଉଠିଛି । କାବେରୀର ଅମୃତ ଭଳି ରୂପରେ ଯେ ବିଷ ମିଶି ଥାଇପାରେ, ଏ କଥା କେହି କଳ୍ପନା କରିପାରି ନ ଥିଲେ । କାବେରୀ ଶାଶୂଙ୍କର ଗୋଡ଼ଧୁଆ ପାଣି ପିଇବାର ଛଳନା କରିବା ଦିନ ହିଁ ମାୟା କାବେରୀକୁ ବେଶ୍ ଚିହ୍ନିପାରିଛି । କାବେରୀର ଲୋକଦେଖାଣିଆ ବ୍ୟବହାର ମାୟାକୁ ଅଣନିଶ୍ୱାସୀ କରିପକାଇଛି । ମନରେ ଆସିଛି – "ବାହାହୋଇ ସଂସାର କରିବାପାଇଁ ସତେ କ'ଣ ଛଳନା, ପ୍ରବଞ୍ଚନା, ପ୍ରତାରଣାର ଅତି ବେଶୀ ମାତ୍ରାରେ ଆବଶ୍ୟକତା ରହିଛି ?"

କାବେରୀକୁ ଖୁସି କରିବାକୁ ମୋହନ ଆପ୍ରାଣ ଉଦ୍ୟମ କରିଛି । ସେ ଦେଖିଛି ଯେ ତା'ର ପରିବାରର ଅନ୍ୟ ସମସ୍ତେ କ୍ରମେ ତା'ଠାରୁ ଦୂରେଇ ଯାଉଛନ୍ତି । ସେ ଜାଣିଛି ଯେ କାବେରୀର ସ୍ୱାତନ୍ତ୍ର୍ୟ ଦରକାର । ସେ ଚାହେଁ ପରିବାରଠାରୁ ଅଲଗା ହୋଇ ରହିବାପାଇଁ । ନିଜ ଇଚ୍ଛା ମୁତାବକ ଚଳିବାପାଇଁ । ରାତିରେ ସେ କାବେରୀଠାରୁ କେତେ କଥା ଶୁଣିଛି ।

ମୋହନର ପ୍ରକୃତି କ୍ରମେ ବଦଳିଛି । ମାୟାର ସାମାନ୍ୟ ଦୋଷ ମୋହନ ପାଖରେ ଗୁରୁତର ହୋଇପଡ଼ିଛି । ମୋହନ ବ୍ୟବହାରରେ ମାୟା ବି ଆଦୌ ସନ୍ତୁଷ୍ଟ ହୋଇନି । ଭାଇର ପରିବର୍ତ୍ତନ ମାୟାକୁ ଆଘାତ ଦେଇଛି । କିନ୍ତୁ ସେ ବାହାରେ କିଛି କହିନି । ଭାଉଜ କଥାରେ ପଡ଼ି ତାକୁ ଶାସନ ନ କରିବାକୁ ଭାଇକୁ ଚେତାଇ ଦେଇଛି ।

ଘରେ ଓ ସ୍ୱାମୀ ଉପରେ କାବେରୀର କର୍ତ୍ତୃତ୍ୱ ବଢ଼ିବା ସଙ୍ଗେ ମାୟାର ସାବଲୀଳ ଜୀବନଧାରା ବିକ୍ଷୁବ୍ଧ ହୋଇଛି । କାବେରୀକୁ ଦେଖି ଶାଶୂଘରେ ବୋହୂର ଭୂମିକା ଉପଲବ୍ଧି କରିଛି । ତା'ର ବିବାହ ପ୍ରତି ଆସିଛି ବିରକ୍ତି । କିନ୍ତୁ ଶେଷରେ ବାପ ମା'ଙ୍କୁ ସମାଜରେ ଅପଦସ୍ଥ ନ କରିବାପାଇଁ ମାୟା ସେମାନଙ୍କ ମନୋନୀତ ପାତ୍ର ଅଜଣା ଅଶୁଣା ଶଶିଭୂଷଣଙ୍କୁ ବିବାହ କରିଛି । ଝିଅ ବିଦା ହେଲା, ହେଲେ ମା' ବୁଝାଇଛନ୍ତି – ''ଶାଶୂ ଶ୍ୱଶୁରଙ୍କ ସେବା କରିବୁ, ×× ସେଇ ହେଲା ତୋ ଘର ....ମୋ ଦେହ ଛୁଇଁ କହ, କରିବୁ ତ ।''

ମାୟା ବି କଥା ଦେଇଛି କରିବ ବୋଲି । ମାୟା ନାରୀ ଜୀବନର ବିବାହର ଅମଡ଼ା ବାଟରେ ପାଦ ଦେଇଛି ।

ଶାଶୂଘର କାମଚଳା ସଂସାର । ସ୍ୱାମୀ ସ୍ୱଳ୍ପ ଉପାର୍ଜନକ୍ଷମ । ଶାଶୂ ଶାସନ କରିବାକୁ ଆଗଭର । ମାୟାର ମନ ବିଦ୍ରୋହ କରିଉଠିଛି । ବର୍ତ୍ତମାନ ଅବସ୍ଥା କରୁଣ ଓ ଅସହ୍ୟ ହୋଇପଡ଼ିଛି । କିନ୍ତୁ ପ୍ରତି ମୁହୂର୍ତ୍ତରେ ବାପାଙ୍କ କଥା ମନେ ପଡ଼ିଛି । ତାକୁ ମନ୍ତ୍ରବତ୍ ନାଗୁଣୀ ପରି ନିସ୍ତେଜ କରିପକାଇଛି । ତା'ର ମଧ୍ୟ ସ୍ୱାସ୍ଥ୍ୟ ଭାଙ୍ଗିପଡ଼ିଛି । କିନ୍ତୁ କାହାକୁ କହିବ ? ତାକୁ ସବୁ ସହିବାକୁ ପଡ଼ିଛି । ସମୟ ଗଡ଼ିଚାଲିଛି । ଶେଷରେ ଶାଶୂ ମାୟାର ପ୍ରଶଂସା କରିଛନ୍ତି ।

ଶାଶୂ ବ୍ୟାଧିଗ୍ରସ୍ତ ହୋଇଛନ୍ତି । ମାୟା ଆଖି ବୁଜି ସେବା କରିଚାଲିଛି । ହଠାତ୍ ଦିନେ ବାପଘରୁ ଚିଠି ଖଣ୍ଡେ ପାଇଛି । ଭାଇ ପ୍ରତାପ ଲେଖିଛି ବାପା ବେରାମ । ତାକୁ ଖୋଜୁଛନ୍ତି । ଆଉ ବୋଉ ଖାଲି କାନ୍ଦୁଛି । ବିଷମ ସଙ୍କଟ ! କ'ଣ କରିବ ସେ ?

ଏକ ପକ୍ଷରେ ଶାଶୂ, ଅନ୍ୟ ପକ୍ଷରେ ବାପା! ଏହାପରେ ଉପନ୍ୟାସର ଶେଷ ତିନୋଟି ବାକ୍ୟ – ''ଦୁଇ ଆଡ଼େ ଡୋର ଲାଗିଛି । ଗୋଟାକୁ ନ ଛିଣ୍ଡାଇଲେ ନ ଚଳେ । କାହାକୁ ଛିଣ୍ଡାଇବ ? କିଏ ତା' ପାଖରେ ବଡ଼ ?''

ଉପନ୍ୟାସରେ ଓଡ଼ିଆ ପରିବାର ଓ ସାମାଜିକ ଚଳଣିର ବିଶ୍ୱସ୍ତ ଚିତ୍ର ପ୍ରତିଫଳିତ ହୋଇଛି । ବିଶେଷତଃ, ମାୟାର ମା' ବା ଶାଶୂଙ୍କ ସଙ୍ଗିନୀମାନଙ୍କ ସାମାଜିକ ଚଳଣି, ସଚେତନତା, ପରଚର୍ଚ୍ଚା ଓ ପ୍ରବାଦ-ପ୍ରବଚନପୂର୍ଣ୍ଣ ସଂଳାପ, ମାୟାର ସାନଭାଇ ତିନି ଜଣଙ୍କ ସଙ୍ଗେ କୌତୁକପୂର୍ଣ୍ଣ ସମ୍ପର୍କ, ମୋହନର କନ୍ୟାଦେଖା ଓ ବିବାହ, ମାୟାର ବିବାହ ବେଦୀରେ ଯୌତୁକ ଦାବି, ଦେଖଣାହାରି ନାରୀ ମେଳରେ କାବେରୀ ଓ ମାୟାର ବୋହୂପଣିଆର ମୂଲ୍ୟାୟନ, ମାୟା ଶାଶୂଙ୍କର ସ୍ନେହ ଓ ଶାସନମିଶା ବ୍ୟବହାର ପ୍ରଭୃତି ପ୍ରସଙ୍ଗଗୁଡ଼ିକରେ ମଧ୍ୟବିତ୍ତ ଶ୍ରେଣୀୟ ଓଡ଼ିଆ ଘରର ହାଲଚାଲ ପ୍ରତିବିମ୍ବିତ ହୋଇଛି ।

ଓଡ଼ିଆ ସାହିତ୍ୟରେ ଏକ ପାରିବାରିକ ଓ ନାରୀ-କୈନ୍ଦ୍ରିକ ଉପନ୍ୟାସ ଭାବରେ 'ଅମଡ଼ାବାଟ'ର ସ୍ଥାନ ଅତି ଉଚ୍ଚରେ ।

### ଚୋରାବାଲି

ମାୟା ଜୀବନ କଥାର ପରବର୍ତ୍ତୀ ପର୍ଯ୍ୟାୟର ବିବରଣୀ ଦିଆଯାଇଛି 'ଚୋରାବାଲି' ଉପନ୍ୟାସରେ । ଏହା ୧୯୭୩ ମସିହାରେ ପ୍ରକାଶ ପାଇଥିଲା ।

ମାୟା ପିତାଙ୍କ ଜୀବନ ସହ ସଂଗ୍ରାମ କରୁଥିବା ଖବର ପାଇ ଚିନ୍ତାରେ ପଡ଼ିଛି । କର୍ତ୍ତବ୍ୟ ପାଳିବାକୁ ଚେଷ୍ଟା କରି ମଧ୍ୟ ସେ ବାଟ ପାଇ ନାହିଁ । ମାତ୍ର ଶାଶୂ ମାୟାକୁ ପିତାଙ୍କୁ ଦେଖିବାପାଇଁ ଯିବାକୁ ଅନୁମତି ଦେଇଛନ୍ତି । ସେ ସେଥିପାଇଁ ଶାଶୂଙ୍କ ନିକଟରେ କୃତଜ୍ଞ ରହିଛି । ମାତ୍ର ସେ ପିତାଙ୍କୁ ବଞ୍ଚାଇପାରି ନାହିଁ । ପୀତାମ୍ବରବାବୁଙ୍କ ମୃତ୍ୟୁ ହୋଇଛି । ମାୟା ଫେରିଆସି ଶାଶୂଙ୍କ ସେବାରେ ନିଜକୁ ଉତ୍ସର୍ଗ କରିଛି । ଶାଶୂଙ୍କ କ୍ୟାନ୍‌ସର ରୋଗର ଚିକିତ୍ସାପାଇଁ ସେ ନିଜର ଗହଣା, ଜମିବାଡ଼ି ଦାନ କରିଛି । ଶାଶୂ ମଧ୍ୟ ଭଲ ହୋଇଯାଇଛନ୍ତି । ମାତ୍ର ତାଙ୍କର ବ୍ୟବହାର ମାୟା ପ୍ରତି ଅପରିବର୍ତ୍ତିତ ରହିଛି । ତାଙ୍କର ରୋଷ ଦୃଷ୍ଟିର ଶିକାର ପୂର୍ବଭଳି ହୋଇଛି । ମାୟା ଯନ୍ତ୍ରଣାରେ ଜର୍ଜରିତା ହୋଇଛି ।

ତେଣେ ବାପଘରେ ଅବସ୍ଥା ବି ତଦ୍ରୂପ । ପୀତାମ୍ବରବାବୁଙ୍କ ମୃତ୍ୟୁ ପରେ ଘରେ ଅଶାନ୍ତି ବଢ଼ିଯାଇଛି । କାବେରୀ ଓ ମହୀବୋଉଙ୍କ କଳି କ୍ରମେ ପଦାକୁ ଆସିଛି । କାବେରୀ ଚାହିଁଛି ମୋହନକୁ ଘରଠାରୁ ଦୂରେଇ ଦେବାକୁ । ମୋହନ ମଧ୍ୟ ନୀରବ ରହିଛି । ବରଂ କାବେରୀ ପ୍ରତି ସମର୍ଥନ ଏହି ଅଶାନ୍ତିର ନିଆଁକୁ ପ୍ରଜ୍ୱଳିତ କରିଛି । ପ୍ରତାପ ସେନାବାହିନୀରେ ଯୋଗ ଦେଇଛି । ମହୀବୋଉ ଅନ୍ୟ ଦୁଇ ପିଲାଙ୍କୁ ନେଇ ଗାଁକୁ ଚାଲିଯାଇଛନ୍ତି ଓ ସେଠାରେ ରହିଛନ୍ତି ।

ରକ୍ତପାଇଁ ରକ୍ତ କାନ୍ଦିଛି । ମୋହନ କାବେରୀଦ୍ୱାରା ପରିଚାଳିତ ହେଲେ ମଧ୍ୟ ତା'ର ଅବଚେତନ ମନରେ ମାଆ, ଭାଇ ମୋହ ଲାଗିରହିଛି । ମାଆକୁ ଥଣ୍ଡାରେ ପଖାଳ ଖାଇବା ଦେଖି ଅଭିମାନ କରି କହିଛି – ''ଥଣ୍ଡାରେ ପଖାଳ ଗୁଡ଼ା ଖାଉଛୁ ? ସତରେ ଭାବୁଛୁ ତୋ ବଡ଼ପୁଅ ମରିଗଲାଣି । କେତେ ଆଶାରେ ଡାକ୍ତରୀ ପଢ଼େଇ ଥିଲୁ, କଅଣ ପାଇଲୁ ଲୋ ବୋଉ ?'' ମାୟା ତା'ର ବାପଘରର ଉକୁଡ଼ା ସଂସାରକୁ

ଯୋଡ଼ିବାକୁ ଚେଷ୍ଟା କରିଛି । ନିଜ ଭାଇ ମୋହନର ଦୁଃଖରେ ଦୁଃଖୀ ହୋଇ ତାଙ୍କ ସହିତ ଯୋଗାଯୋଗ ରଖିଛି ।

ସେ ଚିଠି ଲେଖିଛି – ''ମତେ ସତରେ ଦୁଃଖ ଲାଗୁଛି ଯେ ତମ ମୋ ଭିତରେ ସବୁକଥା ଏମିତି ଅତୁଆ ତତୁଆ ହୋଇ ଗଣ୍ଠି ପଡ଼ିଯାଇଛି । ସତେ କ'ଣ ଭଗବାନ୍ କରିବେ ? ସେହି ଗଣ୍ଠିସବୁ ଗୋଟି ଗୋଟି ହୋଇ ଫିଟିବ । ସେଇ ମେଞ୍ଚାକ ସୂତା ସେମିତି ଅତୁଆ ହୋଇ ସବୁଦିନକୁ ରହିଯିବ ?''

ମାୟା ପ୍ରସ୍ତାବ ଦେଇଛି – ''ଚାଲ ଆମେ ପଛକଥା ସବୁ ଭୁଲିଯାଇ ନୂଆ କରି ନିଜକୁ ଗଢ଼ିବା ।''

କୁମାରୀ ଜୀବନରେ ମାୟା ମୋହନ ଓ କାବେରୀକୁ ସହଜରେ ଗ୍ରହଣ କରିନେଇ ପାରୁ ନ ଥିଲା, ଅଥଚ ସେମାନଙ୍କଠାରୁ ଦୂରକୁ ଚାଲିଯାଇ ସେ ଅନୁଭବ କରିଛି ଯେ ଜୀବନରେ ସମସ୍ତଙ୍କ ଦୋଷଧରି ଓ ସମସ୍ତଙ୍କ ଉପରେ ଅଭିମାନ କରି ମଣିଷ କେବେ ଶାନ୍ତି ପାଇପାରେ ନାହିଁ ।

'ଅମଡ଼ାବାଟ'ର ମାୟା 'ଚୋରାବାଲି'ରେ ଶାନ୍ତ ହୋଇଯାଇଛି । ନାନା ପରିସ୍ଥିତିରେ ଖାପ ଖୁଆଇ ନିଜକୁ ଚଳାଇ ନେବାରେ ସେ ସମର୍ଥ ବୋଲି ପ୍ରମାଣ କରିବାକୁ ଚାହିଁଛି । ସେ ହୋଇଯାଇଛି ଉଦାର, ସରଳ ଆଉ କ୍ଷମାଶୀଳା ।

ମାୟା ଅନ୍ଧ ପୁଅକୁ ଜନ୍ମ ଦେଇଛି । ସେ ହେଉଛି ଧୂମା । ମାୟା ମନରେ ବହୁ ପ୍ରଶ୍ନ ଉଠିଛି । କାହିଁକି ? ଭଗବାନ୍ ଏତେ ଛୋଟ ପିଲାକୁ, ନିରୀହ, ନିଷ୍ପାପ ନିଷ୍କଳଙ୍କ ହୃଦୟର ବ୍ୟକ୍ତିତ୍ୱକୁ କଷ୍ଟ ଦିଅନ୍ତି ? ମାୟା ପୂର୍ବ ଜନ୍ମର କର୍ମଫଳ ଓ ଗୀତାରେ ବିଶ୍ୱାସ କରିଛି । ଗୀତାର ଦୁଇ ପଦ କଥା, 'କେହି କାହାର ନୁହନ୍ତି, ସବୁ ମାୟା, ସବୁ ଅଳୀକ' ଏହି ଛୋଟ ବହି ଖଣ୍ଡକରେ କେତେ ବିରାଟ ସତ୍ୟ ଲୁଚି ରହିଛି !

ମାୟା ଜୀବନର ସବୁ ଦୁଃଖସୁଖକୁ ଦାର୍ଶନିକ ଦୃଷ୍ଟିଭଙ୍ଗୀରେ ଦେଖିଛି । ତା' ଜୀବନରେ ବହୁ ଘଟଣା, ବହୁ ସଂଘର୍ଷ ଦେଖାଦେଇଛି । ତା' ଜୀବନକୁ ବିଡ଼ମ୍ବିତ କରୁଥିବା ପ୍ରତ୍ୟେକଟି ପ୍ରତି ଅଭିମାନରେ ଜର୍ଜରିତ ହେଲେ ମଧ୍ୟ ସବୁ ସହିନେଇ ସମସ୍ତଙ୍କର ମଙ୍ଗଳ କାମନା କରିଛି । ଜଣେ ଭାରତୀୟ ନାରୀର କର୍ତ୍ତବ୍ୟବୋଧ ଓ ସାମାଜିକ ମର୍ଯ୍ୟାଦା ପ୍ରତିପାଦନ କରିଛି ।

ଆଲୋଚକଙ୍କ ଭାଷାରେ – ''ଅମଡ଼ାବାଟରେ ଯେତେ ଚୋରାବାଲି ଆସିଛି ମାୟା ସେଥିରେ ଲୀନ ହୋଇଯାଇ ନାହିଁ । ବାରମ୍ବାର ଉପରକୁ ଉଠି ପୁଣି ଚାଲିଛି । ଶେଷକୁ ସବୁ କୃତିତ୍ୱର ବିଧାତା ପୁରସ୍କାର ଦେଇଛନ୍ତି ଏକ ଜନ୍ମାନ୍ଧ ପୁତ୍ର । ମାୟା ତାକୁ ମଧ୍ୟ ମାନି ନେଇଛି । ନାରୀ ଜୀବନର ସମସ୍ତ ପର୍ଯ୍ୟାୟରେ କନ୍ୟା, ବଧୂ ଓ ଜନନୀ ଭାବରେ – ମାୟା ସତରେ ଅତୁଳନୀୟା !''

× × ×

''ମାୟା ଚରିତ୍ର ଏକ ଅମର ସୃଷ୍ଟି ।''

## ଅଲିଭା ଚିଠା

'ଅଲିଭା ଚିଠା' ଉପନ୍ୟାସଟି ପୂର୍ବ ଦୁଇଟି ଉପନ୍ୟାସ ଠାରୁ ସମ୍ପୂର୍ଣ୍ଣ ଭିନ୍ନ । 'ଅମଡ଼ାବାଟ' ଓ 'ଚୋରା ବାଲି'ରେ ଗ୍ରାମୀଣ ପରିବେଶ, ଗ୍ରାମର ଚିତ୍ର ଅଙ୍କିତ ହୋଇଛି । ଗ୍ରାମୀଣ ସରଳ ଲୋକଙ୍କ ଚରିତ୍ର ବର୍ଣ୍ଣନା କରାଯାଇଛି । ମାତ୍ର 'ଅଲିଭା ଚିଠା'ରେ ସହରୀ ପରିବେଶ, ଆଧୁନିକତା ଓ ସହରୀ ସଭ୍ୟତାକୁ ନେଇ କାହାଣୀଟି ଗଢ଼ିଉଠିଛି ।

ଉପନ୍ୟାସର ନାୟିକା ବିଦେଶିନୀ – ଲୋରା । ବିବାହିତା । ତା'ର ସ୍ୱାମୀ ଜଣେ ଭାରତୀୟ – ଏଲ୍. ପାଲ୍‌ଖିଓ୍ୱାଲା । ସେ ଧନଶାଳୀ ବ୍ୟକ୍ତି । ଲୋରା ବିଦେଶରୁ ଭାରତ ଆସିଛି ତା'ର ସ୍ୱାମୀଙ୍କ ପାଖକୁ । ସେ ଭାରତରେ ଦୁଇ ବର୍ଷ ରହିବାକୁ ଯୋଜନା କରିଛି । ସେ କିନ୍ତୁ ଜଣଙ୍କୁ ପ୍ରେମ କରୁଥିଲା । ତା'ର ପ୍ରେମିକ ହେଉଛନ୍ତି ସୁବ୍ରମନ୍ୟମ୍ ଆୟାର । ଭାରତକୁ ଆସିବାବେଳେ ଘର ପାଖ ଷ୍ଟେସନ ଛାଡ଼ିବାପରେ ସେ ପ୍ରେମିକଙ୍କ ପାଖକୁ ଚିଠି ଲେଖିଛି । ପ୍ରଥମ ଚିଠିରେ ସେ ଲେଖିଛି – ''ଟ୍ରେନ ଯେତେବେଳେ ମୋ ଆଖି ଆଗରୁ ତମକୁ ଆସ୍ତେ ଆସ୍ତେ ଠେଲିନେଇ ପ୍ଲାଟଫର୍ମର ଲୋକଗହଳି ଭିତରେ ହଜାଇ ଦେବାର ଚେଷ୍ଟା କଲା, ହଠାତ୍ ମୋର ଇଚ୍ଛା ହେଲା ଚଳନ୍ତା ଗାଡ଼ିରୁ ଡେଇଁପଡ଼ି ଧାଇଁଯାଇ ତମ ହାତକୁ ପୁଣି ଭିଡ଼ି ଧରନ୍ତି !''

ଲୋରା ଟ୍ରେନ ଛାଡ଼ି ଜାହାଜରେ ବସିଛି ।

ଜାହାଜରେ ଥାଇ ଦେଇଥିବା ଚିଠିରେ ଲେଖାଥିଲା – ''ଏହି ସମୁଦ୍ରକୁ ଚାହିଁ ଛିଡ଼ା ହେଲେ ଅତୀତର ଦିନ ସବୁ ଆଖି ଆଗରେ ଭାସିଯାଉଛି । ଇଚ୍ଛା ହେଉଛି ପାଣିକୁ ଡେଇଁପଡ଼ି ସବୁ ଶେଷ କରିଦିଅନ୍ତି । କିନ୍ତୁ ତୁମରି ମୁହଁ ଆସି ବାଧା ଦେଇ କହୁଛି – ଅପେକ୍ଷା କର । ଭବିଷ୍ୟତ୍‌ରେ ଆମେ ପୁଣି ଏକାଠି ହେବା ।

× × ×

ତୁମେ ହିଁ ମୋ ଜୀବନର ସବୁ କାମନା, ବାସନା, ପ୍ରିୟ

ତୁମେ ହିଁ ମୋ ଜୀବନର ସାର୍ଥକତା ।''

ଜାହାଜଟି ସଦମ୍ପଟନ୍ ପୋର୍ଟ, ଜିବ୍ରାଲିଟର୍, ସୁଏଜ କେନାଲ, କଲମ୍ବୋ ପ୍ରଭୃତି ସ୍ଥାନ ଦେଇ ବମ୍ବେରେ ପହଞ୍ଚିଛି । ବମ୍ବେରେ ଲୋରା ଓ ସ୍ୱାମୀ କମ୍ବାଲାହିଲ୍‌ରେ ରହିଛନ୍ତି । ସେହିଦିନ ଠାରୁ ଲୋରା ତା'ର ପ୍ରେମିକ ସୁବା (ସୁବ୍ରମନ୍ୟମ ଆୟାର୍) ପାଖକୁ ଚିଠି ଲେଖି ଚାଲିଛି ।

ପ୍ରତିଟି ଚିଠିରେ ଲୋରାର ନିଜ ପ୍ରେମିକ ପାଇଁ ସ୍ନେହ ଅନୁରାଗ ରହିଛି । ନିଜର ସ୍ୱାମୀ ପାଖରେ ସେ ଶାନ୍ତି ପାଇ ନାହିଁ । ନିଜକୁ ବନ୍ଦିନୀ ମନେ କରିଛି । ସେ ତା'ର ସ୍ୱାମୀକୁ ଛାଡ଼ିପାରୁ ନାହିଁ କି ନିଜର କରିପାରୁ ନାହିଁ । ପ୍ରେମିକ ସୁବା (ସୁବ୍ରମନ୍ୟମ୍ ଆୟାର୍)ଙ୍କ ପାଖକୁ ଯାଇପାରୁ ନାହିଁ । କେବଳ ଅନ୍ତର୍ଜ୍ୱଳନରେ ତା'ର ସମୟ କଟୁଛି । ତେବେ ଦିନେ ନା ଦିନେ ତା'ର ସାକ୍ଷାତ୍ ସୁବା ସହିତ ହେବ, ଏହି ବିଶ୍ୱାସ ନେଇ ବଞ୍ଚିଛି ବୋଲି ଚିଠିରେ ଜଣାଇଛି ।

ଭାରତରେ ଖରାଦିନେ ଅସହ୍ୟ ଉତ୍ତାପ ଅନୁଭୂତ ହୋଇଛି । ଅତୀତର ଅନୁଭୂତିକୁ ମନେ ପକାଇ ଲୋରା ଲେଖିଛି – ''କାଲିର ଅସହ୍ୟ ଗରମ ଭିତରେ ମୁଁ ଦେଖୁଥିଲି ଅତୀତର ସେହି ମନଭୁଲା ସ୍ଥାନର ଛୋଟ ଉପତ୍ୟକାଟିଏ, ଆଉ ନଈ କୂଳର ସେଇ ଖୋଲା ପଡ଼ିଆ .... ଆହାଃ, କି ଅଦ୍ଭୁତ ଆକର୍ଷଣ, କି ମଧୁର ସ୍ମୃତି ! ଏଇସବୁ କଥା ମନେ ପଡ଼ିଲେ ମୋ ଛାତି ଭିତରଟା କୋରି ହୋଇଯାଏ । ଆଃ, ପୁଣି କେବେ ସେ ଦିନ ଆସିବ ?''

ଲୋରା ପୁଣି ଚିଠିରେ ଲେଖିଛି – ''ଏମିତି ତମକୁ ଝୁରି ଝୁରି ଏଠି ମୋ ଦିନ ବିତୁଛି । ତମେ କ'ଣ ଡାର୍ଲିଂ ମାପି ପାରିବ ମୋ ମନ ତଳର ଆକୁଳତା ? ମୋର ଏ ପ୍ରତୀକ୍ଷା ? ଏ ତ୍ୟାଗ ? ସେଇ ଆଗାମୀ ଦିନର ସ୍ୱପ୍ନ ମତେ ବଞ୍ଚାଇ ରଖିଛି ଆଉ ମତେ ଏଇ ଅନ୍ଧାର ଭିତରେ ବି ବାଟ ଦେଖାଉଛି... ।''

ପ୍ରିୟତମ ସୁବ୍ରମନ୍ୟମ୍ ନିଜ ପ୍ରତି ଯତ୍ନ ନେଉ ନ ଥିବା ଆଶଙ୍କା କରି ଲୋରା ପୁଣି ଚିଠି ଲେଖିଛି ଯେ ନିଜ ପ୍ରତି ଯତ୍ନବାନ୍ ନ ହେଲେ ଭବିଷ୍ୟତ୍‌ରେ ରୋଗଗ୍ରସ୍ତ ହେବାର ସମ୍ଭାବନା ରହିଛି । ତା'ପରେ ସେ ତା'ର (ଲୋରାର) ଯତ୍ନ କିପରି ନେଇପାରିବ ବୋଲି ପ୍ରଶ୍ନ କରିଛି । ସେ (ସୁବା) ହିଁ ତା'ର ସବୁ କିଛି । ତା' ଜୀବନର ଆକର୍ଷଣ ଓ ତା'ର ବଞ୍ଚିବାର ଉପାଦାନ ବୋଲି ବର୍ଣ୍ଣନା କରିଛି । ଆଉ ପୁଣି ଲେଖିଛି ଯେ ସେ ସୁବାକୁ ପାଇବାପାଇଁ ସବୁ କିଛି କରିପାରେ ।

ଭବିଷ୍ୟତ୍‌ର ସୁନେଲି ସ୍ୱପ୍ନରେ ଲୋରା ବିଭୋର ହୋଇଉଠିଛି । ଗୋଟିଏ ଛୋଟିଆ ଘରଟିଏ ନେଇ ସେଥିରେ ରହି ନିରାମିଷ ଖାଦ୍ୟ ଖାଇ ଶସ୍ତା ସୁନ୍ଦର ଜୀବନଯାପନ କରିବାକୁ ଇଚ୍ଛା ଜଣାଇଛି ଲୋରା ।

ଅନ୍ୟ ଏକ ଚିଠିରେ ଲୋରା ପ୍ରେମିକ ସୁବାକୁ ତା'ର ପରିବାରକୁ ଫେରିଯିବାକୁ କହିଛି । ବିଶେଷତଃ, ତାଙ୍କର ମାଆକୁ ଭଲ ପାଇବାର ପ୍ରାପ୍ୟ ଦେବାକୁ କହିଛି । ଏପରିକି ମାଆଙ୍କୁ ଭଲ ପାଇବାକୁ ଏକପ୍ରକାର ବାଧ୍ୟ କରିଛି ।

ପୁଣି ନିଜ ପ୍ରତି ସୁବାର ଭଲ ପାଇବାକୁ ଅନ୍ୟ କାହାକୁ ନ ଦେବାକୁ ତାଗିଦ୍ କରିଦେଇଛି । ସେ ଲେଖିଛି – ''ମୋ ପ୍ରତି ତମର ଯେଉଁ ପ୍ରେମ, ତାକୁ ତମେ ଭାଗ

କରିପାରିବ ନାହିଁ । ଭଗବାନ୍‌ଙ୍କୁ ମୁଁ ପ୍ରାର୍ଥନା କରୁଛି ତାକୁ ଯେମିତି ତମେ କାହାକୁ କେତେବେଳେ ସମର୍ପଣ କରି ନ ଦିଅ । ଏ ସଂସାରରେ ତମେ ହିଁ ମୋର ସବୁ – ତମ ଛଡ଼ା ମୋର କିଛି ହେଲେ ନାହିଁ, ଆଉ ଯେତେବେଳେ ମୁଁ ଜାଣିବି ଯେ ତମେ ବଞ୍ଚି ରହିଛ ଓ ମତେହିଁ ଭଲ ପାଉଛ, ସେଇ ଭଲ ପାଇବା ଟିକକ ତମର ରକ୍ଷାକବଚ ହୋଇ ମତେ ସବୁ ଦୁଃଖ ଯନ୍ତ୍ରଣାରୁ ଉଦ୍ଧାର କରିବ ।''

ସୁବାକୁ ପୁଣି ଲୋରା ଅନୁରୋଧ କରିଛି ନିଜ ବୃତ୍ତିରେ ଉନ୍ନତି କରିବାକୁ । ସୁବାର ପ୍ରସିଦ୍ଧି ଓ ପ୍ରତୀକ୍ଷା ହିଁ ତା'ର କାମ୍ୟ ହୋଇଛି । ଲୋରା ଆବେଗଭରା ହୃଦୟରେ  ଲେଖିଛି – ''ମୋର ଅନ୍ଧକାରମୟ ଆକାଶରେ ତାରା ପରି ହୋଇ ଜଳ । ତା'ହେଲେ ମୁଁ ଯେତେବେଳେ ଟିକିଏ ସମୟ ପାଇବି, ନିଜେ ତମ ପାଖକୁ ଯିବାକୁ ଅସମର୍ଥ ହେଲେ ହେଁ ବହୁଦୂରରୁ ସେ ତାରାକୁ ଲକ୍ଷ୍ୟ କରିପାରିବି ।''

ଲୋରାର ବେଳେ ବେଳେ ମନକୁ ଆସିଛି ଯେ ସେ ଯେପରି ଦୁଇ ଦୁଇଟି ଜୀବନକୁ ନଷ୍ଟ କରିଦେଉଛି । ସ୍ୱାମୀ ହୋମିଙ୍କ ପ୍ରେମର ପ୍ରତିଦାନ ଓ ସ୍ନେହର ମୂଲ୍ୟ ଦେଇପାରି ନ ଥିବାରୁ ଲୋରା ନିଜକୁ ଦୋଷୀ ମନେ କରିଛି । ମନେ ମନେ ଅନୁତାପ କରିଛି । ଏକ ଦିଗରେ ବିବାହିତ ସ୍ୱାମୀ ଓ ଅନ୍ୟ ଦିଗରେ ମଧୁର ସ୍ମୃତି ବିଜଡ଼ିତ ପ୍ରେମିକ – କେଉଁଟିକୁ ରଖି କେଉଁଟିକୁ ଛିଣ୍ଡାଇ ଫିଙ୍ଗିଦେବ ? ହୋମି କାର୍ଯ୍ୟ ଉପଲକ୍ଷେ ବାହାରକୁ ଯାଇଛନ୍ତି ।

ଲୋରା ପ୍ରେମିକକୁ ଚିଠିରେ ଲେଖିଛି – ''ପ୍ରାଣର ସୁବା, ଆଉ ମାତ୍ର ଅଠଚାଳିଶ ଘଣ୍ଟାପରେ ହୋମି ଏଠି ଆସି ପହଞ୍ଚିବେ । ମତେ ଭାରି ଛାନିଆ ଲାଗୁଛି । ଆଉ ସବୁ ଜିନିଷ ମୁଣ୍ଡ ଭିତରେ କେମିତି ଗୋଟାଏ ଗୋଳମାଳିଆ ହୋଇଯାଉଛି । ତମେ ଦୁହେଁ ମତେ ଭଲ ପାଇଛ । ମୁଁ ଜାଣେ ହୋମି ଫେରିଆସି ମତେ ଖୋଜିବେ, ଆଉ ତମେ ବି ଫେରିଆସିଲେ ମତେ ଖୋଜିବ, କିନ୍ତୁ ମୁଁ କାହିଁ ? ମୁଁ ଯେମିତି ନିଜକୁ କେଉଁଠି ହଜେଇ ଦେଇଛି !''

ଗୋଟିଏ ଚିଠିରେ ଲୋରାର ଗଭୀର ନୈରାଶ୍ୟ ପ୍ରକାଶ ପାଇଛି । ସେ ଲେଖିଛି – ''ଡାର୍ଲିଂ ! ଯଦି ଜୀବନରେ ଆମର ମିଳନ ନ ହୁଏ, ତେବେ ମୋର ଚିଠି ସବୁ ଯେମିତି ଭଗବାନ୍‌ଙ୍କ ଦୟାରୁ ନ ଚିରି ସାଇତି ରଖିବ । ସେତକ ଥରେ ପଢ଼ି ଦେଖିବ ମୁଁ ତମ ମନ ତଳେ ଆସି ଛିଡ଼ା ହେବି । ରୂପ ନେବି – ଜୀବନ୍ତ ହୋଇଉଠିବି । ××× ମୁଁ ଯେଉଁଠି ଯେପରି ଭାବରେ ଥିଲେ ବି ତମ ପ୍ରତି ମୋ ପ୍ରେମ ସବୁବେଳେ ଅତୁଟ ଥିବ – ଏକଥା ଭୁଲିବ ନାହିଁ, ଆଉ ମୋ ପ୍ରାଣ ସବୁବେଳେ ତମରି ପ୍ରେମକୁ ଚାହିଁ ରହିଥିବ – ଏତକ ମଧ୍ୟ ଭୁଲିବ ନାହିଁ ।''

ଶେଷ ଚିଠିରେ କିନ୍ତୁ ଲୋରାର ପ୍ରକୃତିଗତ ଅସ୍ୱାଭାବିକତା ପ୍ରକାଶ ପାଇଛି । ପୂର୍ବ ଚିଠିରେ 'ଡାର୍ଲିଂ', 'ପ୍ରାଣର ପ୍ରିୟତମ ମୋର' ପ୍ରଭୃତି ସମ୍ବୋଧନ କଲା ପରିବର୍ତ୍ତେ ଶେଷ ଚିଠିରେ 'ସୁବ୍ରମନ୍ୟମ୍ ଆୟାର' ବୋଲି ସମ୍ବୋଧନ କରିଛି ।

ସେ ଲେଖିଛି – ''ଏହାଦ୍ୱାରା ତୁମକୁ ଜଣାଇ ଦିଆଯାଉଛି ଯେ ଭବିଷ୍ୟତ୍‌ରେ ତୁମର କିଛି ଦେଖିବାକୁ ବା ଶୁଣିବାକୁ ମୁଁ ଚାହେଁ ନାହିଁ । ତୁମେ ମତେ ଯଦି ଚିଠି ଦିଅ, ସେ ଚିଠି ଅଖୋଲା ପୋଡ଼ି ଦିଆଯିବ । ତଥାପି ତୁମେ ଯଦି ଲେଖ ମୁଁ ତାକୁ ସିଧା ତୁମ ମା'ଙ୍କ ପାଖକୁ ପଠାଇଦେବି ... ।''

ଗୋଟିଏ ଛୋଟ ବାକ୍‌ସ ଭିତରୁ ଲୋରାର ସବୁତକ ଚିଠି ସୁବ୍ରମନ୍ୟମ୍ ଆୟାରଙ୍କ ପୁଅ ସ୍ୱାମୀନାଥନ ବାହାର କରିଛନ୍ତି । ଏକାଠି ରଖି ଦିଆସିଲି ମାରି ଜାଳି ଦେଇଛନ୍ତି ।

ତିରିଶ ବର୍ଷ ପରେ ସୁବ୍ୟମନ୍ୟମ୍ ଆୟାରଙ୍କ ମୃତ୍ୟୁର ବାର ଦିନ ପରେ ଏହି ବାକ୍ସଟିରେ ଅଗ୍ନିସଂଯୋଗ କରାଯାଇଛି ।

ମନ ଭିତରେ ଜଳୁଥିବା ନିଆଁକୁ ଅନେକ ସମୟରେ ଇଚ୍ଛା କରି ମଧ୍ୟ ମଣିଷ ଲିଭାଇପାରେ ନାହିଁ । ଦେହ ଜଳିପୋଡ଼ି ପାଉଁଶ ହୋଇଗଲେ ମଧ୍ୟ ସେ ଚିତା ସବୁ ସମୟପାଇଁ ଅଲିଭା ହୋଇଯାଏ । ଉପନ୍ୟାସର ନାମକରଣ ବେଶ୍ ଯଥାର୍ଥ ମନେହୁଏ । ଏଥିରେ ଶାବ୍ଦିକ ଜଟିଳତା ନାହିଁ । ନିତିଦିନିଆ ଚଳଣିର ଭାଷାର ଯଥାଯଥ ପ୍ରୟୋଗ ଉପନ୍ୟାସଟିକୁ ବିଶେଷ ଲୋକପ୍ରିୟ ଓ ପ୍ରଭାବଶାଳୀ କରିପାରିଛି ।

**ଗଳ୍ପ ସମ୍ଭାର**

ବସନ୍ତକୁମାରୀଙ୍କ ରଚିତ ସମସ୍ତ ଗଳ୍ପ 'ସଭ୍ୟତାର ସାଜ', 'ଜୀବନ ଚିହ୍ନ', 'ପାଲଟା ଢେଉ' – ଏହି ତିନି ଗୋଟି ସଙ୍କଳନରେ ସନ୍ନିବେଶିତ ହୋଇଅଛି ।

**ସଭ୍ୟତାର ସାଜ**

ସମାଜର ବିଭିନ୍ନ ସମସ୍ୟାକୁ ନେଇ ରଚିତ ଗଳ୍ପଗୁଡ଼ିକ ଏହି ସଙ୍କଳନରେ ସ୍ଥାନ ପାଇଅଛି । ତେଣୁ ଗଳ୍ପଗୁଡ଼ିକ ବାସ୍ତବ ଓ ଜୀବନ୍ତ ବୋଧହୁଏ । 'ସଭ୍ୟତାର ସାଜ' ଗଳ୍ପରେ ସନିଆ ଏକ ଚରିତ୍ର । ସେ ଏକାବେଳକେ ପାଞ୍ଚଜଣଙ୍କ ଖାଦ୍ୟ ଖାଇପାରେ । ତା'ର ବେଶଭୂଷା ବିଚିତ୍ର । ଦିଆସିଲି ଆଣିବାକୁ ଯାଇ ଦୋକାନରେ ବସି ସବୁତକ କାଠି ଜାଳିଦିଏ । ତା'ର ଜୀବନର କରୁଣ କାହାଣୀ ଲେଖିକା ଏହି ଗଳ୍ପରେ ଚିତ୍ରଣ କରିଛନ୍ତି ।

'କପାଳ' ଗଳ୍ପରେ ଦିବାକରବାବୁଙ୍କ ସ୍ତ୍ରୀ ଶିରୀଦେଈଙ୍କର ଚରିତ୍ର ଚିତ୍ରଣ ଅତି ସୁନ୍ଦର ହୋଇଛି । ଶିରୀଦେଈ ଜଣେ ଗୃହିଣୀ । ସ୍ୱାମୀ ତାଙ୍କର ଅଫିସରେ ଚାକିରି କରନ୍ତି । ଶିରୀଦେଈ ଘର କାମପାଇଁ ଚାକରଟିଏ ଲୋଡ଼ନ୍ତି । ମାତ୍ର ତାଙ୍କ ପାଖରେ କୌଣସି ଚାକର ବେଶି ଦିନ ରହିପାରନ୍ତି ନାହିଁ । ଦିବାକରବାବୁ ନିଜକୁ ହତଭାଗ୍ୟ ମନେ କରନ୍ତି । ଭଗବାନ୍‌ଙ୍କୁ ପ୍ରାର୍ଥନା କରନ୍ତି ଯେ ଆରଜନ୍ମରେ ତାଙ୍କୁ ସ୍ତ୍ରୀ ଜନ୍ମ ଦିଅନ୍ତୁ ।

ଆଜିର ସମାଜରେ ବଞ୍ଚିରହିବା ଏକ ବଡ଼ ସମସ୍ୟା ହୋଇଛି । ସମାଜରେ ଲେଖକକୁ ଉପଯୁକ୍ତ ସମ୍ମାନ ମିଳୁ ନାହିଁ । ସାହିତ୍ୟ କିପରି ସାଧନା ନୁହେଁ ବ୍ୟବସାୟ ହୋଇଯାଇଛି, ତାହା 'ସକାଳ' ଗଳ୍ପରେ ଲେଖିକା ଦର୍ଶାଇଛନ୍ତି ।

ଦୁଇ ଜଣ ବାଲ୍ୟବନ୍ଧୁ ଓ ଖଣ୍ଡିଏ ନୀଳକାଚକୁ ନେଇ 'ନୀଳ କାଚ' ଗଳ୍ପଟି ରଚିତ ।

'ସପନ' ଆଉ ଗୋଟିଏ ସୁନ୍ଦର ଗଳ୍ପ । ଗୋଟିଏ ମଧ୍ୟବିତ୍ତ ପରିବାରର ସମସ୍ୟାକୁ ନେଇ ଏହି ଗଳ୍ପଟି ଗଢ଼ିଉଠିଛି । ଏବର ମଣିଷ ଖାଲି ସ୍ୱପ୍ନ ଦେଖେ । ନିଜର ସ୍ୱଳ୍ପ ବେତନ, ବାକୀ ଦୋକାନୀର ତାଗିଦ ଓ ସ୍ତ୍ରୀ ବାପଘରକୁ ଚାଲିଯିବାର ଧମକ ମଧ୍ୟରେ ସେ ଖାଲି ସ୍ୱପ୍ନ ଦେଖେ । ଜୀବନ ଜଞ୍ଜାଳ ଭିତରେ ସ୍ତ୍ରୀପାଇଁ କାନଫୁଲଟିଏ ବା ଶାଢ଼ି ଖଣ୍ଡେ କିଣିପାରେ ନାହିଁ । ଦାରିଦ୍ର୍ୟ ନିଷ୍ପେଷିତ ଜୀବନର ସମସ୍ୟା ଗଳ୍ପଟିରେ ମର୍ମେ ମର୍ମେ ଅନୁଭୂତ ହୁଏ ।

'ଗାଉଁଲି' ଗଳ୍ପରେ ଗାଳ୍ପିକା ଗାଁର ସରଳ ଲୋକମାନଙ୍କ ଦୁଃଖ ଓ ଦୈନ୍ୟର ଚିତ୍ର ଦେଇଛନ୍ତି । ଗାଁର ଲୋକେ ପେଟପୂରା ମୁଠାଏ ଖାଦ୍ୟ ଖାଇବାକୁ ପାଆନ୍ତି ନାହିଁ । ସେମାନଙ୍କ ଦରକାରୀ ଜିନିଷ ଏପରିକି ଔଷଧ ମଧ୍ୟ ମିଳିପାରେ ନାହିଁ । କିନ୍ତୁ ସହରବାସୀ ସହରରେ ଅନାୟାସରେ ରହି ଜୀବନ କାଟନ୍ତି । ଗ୍ରାମ୍ୟର ଉନ୍ନତି ଆବଶ୍ୟକ ବୋଲି ଗାଳ୍ପିକା ଏ ଗଳ୍ପରେ କହିଛନ୍ତି ।

'ରତନୀ' ନାମକ ଗରିବ ଝିଅର ଜୀବନ କାହାଣୀକୁ ନେଇ ଲେଖିକା ରଚନା କରିଛନ୍ତି 'ଭଙ୍ଗାତାଳ' ଗଳ୍ପ । ରତନୀ ଗରିବ ଘରର ଝିଅ । ଖାଇବାକୁ ମୁଠିଏ ପାଏ ନାହିଁ । ତା'ର ପରିବାରର ସମସ୍ତେ ଜଣକ ପରେ ଜଣେ ତାକୁ ଛାଡ଼ି ଚାଲିଯାଇଛନ୍ତି । ପେଟପାଇଁ ଯାହା ଘରେ କାମ କରୁଥିଲା, ସେ ବି ଚାଲିଗଲେ । ଏତେ ବଡ଼ ଦୁନିଆରେ ତା'ର ଅଛି କିଏ ? ଗଳ୍ପଟି ବେଶ୍ ହୃଦୟସ୍ପର୍ଶୀ ହୋଇଛି ।

**ଜୀବନ ଚିହ୍ନ**

'ଜୀବନ ଚିହ୍ନ'ସଂକଳନରେ ତେରଟି ଗଳ୍ପ ସ୍ଥାନ ଲାଭ କରିଛି । ଏଥିର ଗଳ୍ପ ମଧ୍ୟ ଅଧିକ ହୃଦୟସ୍ପର୍ଶୀ ।

ସଙ୍କଳନର ପ୍ରଥମ ଗଳ୍ପ ହେଉଛି 'ସମାଧାନ' । ଏଥିରେ ଜଣେ ବିଦେଶିନୀ ମହିଳା ଏମିଲିଙ୍କ ଗୋଟିଏ 'କୁକୁରଟିଏ'ପାଇଁ ସ୍ନେହ ଓ ମମତା ବର୍ଣ୍ଣିତ । କୁକୁରଟିର ସମସ୍ତ ଦୁଷ୍ଟାମି ଏମିଲି ସହି ନିଅନ୍ତି । କେବେ ତାକୁ ହତାଦର କରି ନାହାନ୍ତି । ଏମିଲିଙ୍କୁ ଭାରତ ଛାଡ଼ି ଚାଲିଯିବାକୁ ପଡ଼ିଛି । କୁକୁରଟି ଅବସ୍ଥା କ'ଣ ହେବ ଭାବି ବିବ୍ରତ ହୋଇପଡ଼ନ୍ତି । ଶେଷରେ ଯିବା ପୂର୍ବରୁ ତାକୁ ଗୁଳି କରି ତା'ର ସମ୍ଭାବ୍ୟ ଦୁଃଖକୁ ଦୂର କରିବାପାଇଁ ନିଷ୍ପତ୍ତି ନେଇଛନ୍ତି । କୁକୁରକୁ ଗୁଳି କରିବା ପୂର୍ବରୁ ଭଲ କରି ଖାଇବାକୁ ଦେଇଛନ୍ତି । ତାକୁ ଉତ୍ତେଜନାରେ ନିବିଡ଼ ଭାବରେ ଭିଡ଼ି ଧରିଛନ୍ତି । ତାଙ୍କ ସ୍ୱାମୀ ପଡ଼ିଆକୁ ନେଇ ତିନି ଥର ଗୁଳି କରିଛନ୍ତି । ଏମିଲି ସେତେବେଳେ କବାଟ ଝର୍କା ବନ୍ଦ କରି ପ୍ରାର୍ଥନାରତ ଥିଲେ ।

'ମଲାଙ୍ଗ' ଆଉ ଏକ ହୃଦୟସ୍ପର୍ଶୀ ଗଳ୍ପ । ସୁରବାଳା ବିବାହ କରିଛନ୍ତି ଓ ସୁଖୀ ହୋଇଛନ୍ତି । ବାପା ମା'ଙ୍କର ଅଚଳାଚଳ ସମ୍ପତ୍ତି ଚାଲିଯିବାପରେ ବିଧବା ମା' ଓ ଭାଇଭଉଣୀଙ୍କୁ ଆଣି ପାଖରେ ରଖିଛନ୍ତି ଓ ସେମାନଙ୍କର ଦାୟିତ୍ୱ ଓ ଖର୍ଚ୍ଚ ବହନ କରିଛନ୍ତି । ନିଜ ଘରର ଦାୟିତ୍ୱ ମଧ୍ୟ ମାଆଙ୍କ ହାତରେ ଦେଇଛନ୍ତି । କିନ୍ତୁ ପରବର୍ତ୍ତୀ ସମୟରେ ସୁରବାଳା ଜାଣିପାରିଛନ୍ତି ଯେ ମାଆ ଘରୁ ଜିନିଷପତ୍ର ଲୁଚାଇ ତାଙ୍କର ପୁଅ ବୋହୂଙ୍କ ପାଖକୁ ପଠାନ୍ତି । ଏହା ଜାଣି ସେ ମାଆଙ୍କ ହାତରୁ ସମସ୍ତ ଦାୟିତ୍ୱ ନେଇଯାଇଛନ୍ତି । ପରିବାରରେ ମା'ମାନେ ପୁଅମାନଙ୍କୁ ପ୍ରାଧାନ୍ୟ ଦେବା ବିଷୟ ଏଥିରେ ବର୍ଣ୍ଣିତ ।

'ଅକୁହା କଥା' ଗଳ୍ପରେ ଦାରିଦ୍ର୍ୟର କଶାଘାତରେ ନିଷ୍ପେଷିତ ହୋଇ ସାବି କିପରି ପଥଭ୍ରଷ୍ଟ ହୋଇଛି ତାହା ଗାଳ୍ପିକା ପ୍ରକାଶ କରିଛନ୍ତି । ସେହିଭଳି 'ମୂକ' ଗଳ୍ପରେ ଦାରିଦ୍ର୍ୟର କଶାଘାତରେ ମଣିଷ ଜର୍ଜରିତ ହୋଇ କିପରି ସମାଜରେ ହତାଦର ପାଏ, ତାହା ଅତି ଜୀବନ୍ତଭାବେ ବର୍ଣ୍ଣିତ ହୋଇଛି ।

'ବାଦିନୀ' ଗଳ୍ପରେ ଝିଅଟି ଦାରିଦ୍ର୍ୟର ଯନ୍ତ୍ରଣା ସହି ନ ପାରି ପରପୁରୁଷ ସହ ଚାଲିଯିବାକୁ ବାଧ୍ୟ ହୋଇଛି ।

'ଆଘାତ' ଗଳ୍ପରେ ମଣିଷର ପଶୁ ପକ୍ଷୀଙ୍କ ପ୍ରତି ସ୍ନେହ ବର୍ଣ୍ଣିତ । କୁକୁରଟିର ନାମ ବାଘା । ବାବୁଲି ତାକୁ ଭଲ ପାଉଥିଲା । ବାଘାକୁ କ୍ୟାନ୍‌ସର ହୋଇଛି । ବାଘାକୁ ବିଷ ପିଆଇ ମାରିଦେବା ପ୍ରସ୍ତାବରେ ବାବୁଲି ରାଜି ହୋଇ ନାହିଁ । ବାଘାକୁ କିନ୍ତୁ ଅନ୍ୟତ୍ର ପଠାଇଦେବାକୁ ପ୍ରସ୍ତାବ ହୋଇଛି । 'ବାଘା' ମ୍ୟୁନିସିପାଲିଟି ଗାଡ଼ିରେ ଚାଲିଗଲାପରେ ବାବୁଲି ବିରାଟ ଶୂନ୍ୟତା ଅନୁଭବ କରିଛି । ହୃଦୟ ତା'ର ହାହାକାର କରିଉଠିଛି ।

ପରିବାର ଭିତରେ ଧରାବନ୍ଧା ନିୟମରୁ ବାହାରିଗଲେ କିପରି ଚକ୍ଷୁଃଶୂଳ ହେବାକୁ ପଡ଼େ, ସେହି ବିଷୟ 'ମଲାଟ' ଗଳ୍ପରେ ବର୍ଣ୍ଣନା କରାଯାଇଛି ।

'ଉଆଁସୀ ଚାନ୍ଦ' ଗଳ୍ପରେ ମାଳବିକାଙ୍କର ସ୍ୱାମୀଙ୍କପାଇଁ ପ୍ରତୀକ୍ଷା କ୍ରମଶଃ ଦୀର୍ଘରୁ ଦୀର୍ଘତର ହୋଇଛି । ଅଭିମାନରେ ଫାଟିପଡ଼ିବାବେଳେ ଜିପ୍ ଦୁର୍ଘଟଣାରେ ସ୍ୱାମୀଙ୍କ ମୃତ ଶରୀରକୁ ଦେଖି ସେ ସ୍ତବ୍ଧ ହୋଇପଡ଼ିଛନ୍ତି ।

ଅନ୍ଧବିଶ୍ୱାସ ଓ ସମାଜର ଭୟ ଯୋଗୁଁ ନମିତାର ଜୀବନ କିପରି ଦୁଃଖ-ଯନ୍ତ୍ରଣା-ଗ୍ରସ୍ତ ହୋଇପଡ଼ିଛି, ତାହା ପ୍ରକାଶ କରିଛନ୍ତି ଗାଳ୍ପିକା 'ଭୋଦେଇ ଖରା' ଗଳ୍ପରେ । ନମିତା ଶାଶୂଘରେ ସୁଖ ପାଇ ନାହିଁ । ତା'ର ବାପା ତାକୁ ନେଇ ଆସିଛନ୍ତି ଘରକୁ । କିନ୍ତୁ ବୋଉର ଖାପଛଡ଼ା ବ୍ୟବହାର ନମିତା ସହିପାରିନି । ମାଆ ସମାଜ ଭୟରେ ତାକୁ ଘରେ ରଖି ନାହାନ୍ତି । ନମିତା ଶାଶୂଘରକୁ ପୁଣି ଫେରିଯାଇଛି । ସମାଜର ଏହି ନିତିଦିନିଆ ଘଟଣାକୁ ଗାଳ୍ପିକା ସୁନ୍ଦର ଭାବରେ ରୂପ ଦେଇଛନ୍ତି ।

ଏକ ଗ୍ରାମ୍ୟ ବାଳିକାର ସରଳ, ନିଷ୍କପଟ ମନୋଭାବ, ଗାଉଁଲି ପରିବେଶ, ତା'ର କଣ୍ଢେଇ ବାହାଘର ପ୍ରଭୃତି ବର୍ଣ୍ଣନା କରାଯାଇଛି 'କଣ୍ଢେଇ ବାହାଘର' ଗଳ୍ପରେ । ଏହା ଅତ୍ୟନ୍ତ ଚିତ୍ତାକର୍ଷକ ହୋଇଛି ।

**ପାଲଟା ଢେଉ**

'ପାଲଟା ଢେଉ' ଗାଳ୍ପିକାଙ୍କ ଆଉ ଏକ ଗଳ୍ପ ସଙ୍କଳନ । ଏହି ସଙ୍କଳନରେ ପନ୍ଦରଟି ଗଳ୍ପ ସ୍ଥାନ ପାଇଛି । ଗଳ୍ପଗୁଡ଼ିକ ମଧ୍ୟ ସ୍ୱାଭାବିକ ଓ ହୃଦୟସ୍ପର୍ଶୀ ହୋଇଛି । ସଙ୍କଳନର ପ୍ରଥମ ଗପଟି ହେଲା 'ଭୋଜି' । ନିରୀହା ଛୋଟ ଝିଅ ରମା । ଛୋଟ ଭାଇଟିକୁ ନିଦରୁ ଉଠାଇ ଘର କାମ ଶେଷ କରି ସ୍କୁଲକୁ ଭୋଜି ଖାଇବାକୁ ଯାଇଛି । ମାତ୍ର ତା' ଦେହରେ କାନ୍ଥୁ ଦେଖି ତାକୁ ଓ ତା'ର ଭାଇ ବିନକୁ ଖାଇବା ପତ୍ର ପାଖରୁ ଉଠାଇ ଦିଆଯାଇଛି । କ୍ଳାନ୍ତ ପାଦ ଚାରୋଟିରେ ଭାଇଭଉଣୀ ଦୁହେଁ ଫେରିଆସିଛନ୍ତି । ଗାଳ୍ପିକାଙ୍କ ଛୋଟ ଭାଇଭଉଣୀଙ୍କ ପ୍ରତି ଦରଦ ସହଜରେ ଉପଲବ୍ଧି କରିହୁଏ ।

'ମୂଲ୍ୟହୀନ' ଗଳ୍ପରେ ମଣିଷର ବୁଢ଼ା ଗୋରୁଙ୍କର ଯତ୍ନ ନ ନେବା ନିଛକ ସତ୍ୟକୁ ପ୍ରକାଶ କରିଛନ୍ତି । ତାଙ୍କର ଉକ୍ତି — ''ସଂସାରରେ ମଣିଷ ତ ନିଜର ବୁଢ଼ାଲୋକଙ୍କୁ ଖୋଜେ ନାହିଁ । ଆଉ ବୁଢ଼ା ଗୋରୁଙ୍କୁ କିଏ ବା ଆଦର କରିବ ?''

'ଛୋଟଲୋକ' ଗଳ୍ପରେ ଧନୀ ଦରିଦ୍ରର ସମ୍ପର୍କ ଦେଖାଇ ଦିଆଯାଇଛି । ରଙ୍ଗୀବୋଉର ସବୁତକ ଗହଣା ମିତା ସ୍କୁଲରେ ହଜାଇ ଦେଇଆସିଛି । ମାତ୍ର ଏଥିପାଇଁ ତା'ର ଅନୁଶୋଚନା ନାହିଁ । ରଙ୍ଗୀବୋଉ ମୁହଁ ଶୁଖାଇ ରହିଛି । ସେ କିଛି ସାହାଯ୍ୟ ଆଶାରେ ମିତା ପାଖକୁ ଯାଇଛି । ମାତ୍ର ମିତା ବିରକ୍ତି ପ୍ରକାଶ କରି ପାଞ୍ଚଟଙ୍କିଆ ନୋଟ ତା' ଉପରକୁ ଫୋପାଡ଼ି ଦେଇଛି । ରଙ୍ଗୀବୋଉ ମିତାକୁ ଆଶୀର୍ବାଦ ଦେଇ ଫେରିଆସିଛି । ଏଥିରୁ ତା'ର ମହନୀୟତା ପ୍ରକାଶ ପାଇଛି ।

'ବିଚ୍ଛେଦ' ଗଳ୍ପରେ ଲେଖିକା ନିଶା ସେବନଦ୍ୱାରା ମଣିଷ କିପରି ନିଜତ୍ୱ ହରାଏ, ତାହା ପ୍ରକାଶ କରିଛନ୍ତି । ସ୍ୱାମୀ ସ୍ତ୍ରୀ ସମ୍ପର୍କ ମୂଲ୍ୟହୀନ ହୋଇଉଠେ । ସେମାନଙ୍କର ଜୀବନ ଧ୍ୱଂସଗାମୀ ହୋଇପଡ଼େ । ନିଶାଗ୍ରସ୍ତ ବିଶ୍ୱନାଥ ସ୍ତ୍ରୀ କେତକୀଙ୍କୁ ନିଶା ଖାଇବାକୁ ପଇସା ମାଗେ । ନ ଦେଲେ ଚୁଟି ଝିଙ୍କେ । ବିଧାଗୋଇଠା ମାରେ । ଘରର ଜିନିଷ ବନ୍ଧାପଡ଼େ ଓ କେତକୀର ବାରଣସତ୍ତ୍ୱେ ବିଶ୍ୱନାଥ ଅବାଟରେ ଯାଇ ସର୍ବସ୍ୱାନ୍ତ ହୁଏ । ଲେଖିକା ଏହି ଗଳ୍ପ ମାଧ୍ୟମରେ ସଂସ୍କାର ଆଣିବାକୁ ଚେଷ୍ଟା କରିଛନ୍ତି ।

'ନୂଆ ପୁରୁଣା' ଗଳ୍ପରେ ଲେଖିକା ଧର୍ମଧାରଣା ଓ ଅନ୍ଧବିଶ୍ୱାସର ଏକ ଚିତ୍ର ଦେଇଛନ୍ତି ।

'ଅଚିହ୍ନା' ଆଉ ଏକ ସୁନ୍ଦର ଗଳ୍ପ । ଏଥିରେ ମଣିଷର ମଣିଷ ପ୍ରତି ସ୍ନେହ ଶ୍ରଦ୍ଧାର ବର୍ଣ୍ଣନା ଅଛି ।

ନାବନ ଓ ଅଫିଆ ଦୁଇଟି ଲୋକ, ଦୁହେଁ ପରସ୍ପରର ଅପରିଚିତ । ମାତ୍ର ନାବନ ଅଫିଆ ପ୍ରତି ସ୍ନେହ ଢାଳି ଦେଇଛି । ନିଜ ଭାଇ ଭଳି ସେ ଅଫିଆକୁ ଦେଖିଛି । ନିଜ ଖାଇବାକୁ କାଟି ତାକୁ ଦେଇଛି । ତାହାକୁ ସାହାଯ୍ୟ କରିଛି । ସୁଖୀ କରିଛି । ଏହି ମାନବିକ ଶ୍ରଦ୍ଧାର ଚିତ୍ର ଗଳ୍ପରେ ଦେଖିବାକୁ ମିଳେ ।

ପରିବାରଭିତ୍ତିକ ଆଉ ଏକ ଗଳ୍ପ ହେଉଛି 'ଅଚଳନ୍ତି' । ଶାରିଆ କୁମ୍ଭାରଘର ବୋହୂ । ତା'ର ସଂସାର ହେଉଛି ଗେରସ୍ତ, ଗୋଟିଏ ପୁଅ ଆଉ ଝିଅକୁ ନେଇ । ସେ ଅକ୍ଲାନ୍ତ ପରିଶ୍ରମ କରି ପରିବାରର ପ୍ରତିପାଳନ କରେ । ସେ ଝାଟିକୁ ଯାଏ, ମାଟିକି ବି ଯାଏ । ବିଡ଼ାନାସୀ ଗାଁରୁ ହାଣ୍ଡିବୋଝ ନେଇ ସହରକୁ ଆସେ । ସେଇଥିରେ ପରିବାର ଚଳନ୍ତି ।

'ପିତଳ' ଗଳ୍ପରେ ପିତାମାତା ଛେଉଣ୍ଡ ଚାନ୍ଦର କରୁଣ କାହାଣୀ ଲେଖିକା ବର୍ଣ୍ଣନା କରିଛନ୍ତି ।

ଚାକିରି ଜୀବନର ଦୁଃଖମୟ କାହାଣୀକୁ ନେଇ ରଚନା କରିଛନ୍ତି 'ଅଡୁଆ ସୂତା' ।

ବସ୍ତୁତଃ ବସନ୍ତକୁମାରୀଙ୍କ ଗଳ୍ପରାଜିରେ ଓଡ଼ିଶାର ପଲ୍ଲୀଜୀବନଠାରୁ ସହର ଜୀବନ ପର୍ଯ୍ୟନ୍ତ, ଦରିଦ୍ର ଅସହାୟ ବ୍ୟକ୍ତିଙ୍କଠାରୁ ଆରମ୍ଭ କରି ଧନିକ ଗୋଷ୍ଠୀ ପର୍ଯ୍ୟନ୍ତ-ସମାଜର ସବୁ ଶ୍ରେଣୀର ଲୋକଙ୍କ ବିଷୟ ଜୀବନ୍ତ ଓ ଆକର୍ଷଣୀୟ ରୂପରେ ଚିତ୍ରିତ ହୋଇଛି । ସରଳ ଓ ସାବଲୀଳ ଭାଷାବିନ୍ୟାସ ଗଳ୍ପଗୁଡ଼ିକୁ ଅଧିକ ପ୍ରଭାବଶାଳୀ କରିପାରିଛି ।

## ଏକାଙ୍କିକା

### କୁଆରଭଙ୍ଗା

ବସନ୍ତକୁମାରୀ ତାଙ୍କ ଜୀବନକାଳରେ କେତୋଟି ଏକାଙ୍କିକା ରଚନା କରିଥିଲେ । ସେଗୁଡ଼ିକ ହେଲା, 'ମରୀଚିକା', 'ପରିଣତି' ଓ 'ବେସୁରା' । ଏହି ଏକାଙ୍କିକାଗୁଡ଼ିକ କ୍ଷୁଦ୍ର । ଏହା 'କୁଆରଭଙ୍ଗା' ଶୀର୍ଷକ ଏକାଙ୍କିକା ସଙ୍କଳନରେ ୧୯୭୩ ମସିହାରେ ପ୍ରଥମେ ପ୍ରକାଶ ପାଇଥିଲା । ଦ୍ୱିତୀୟ ସଙ୍କଳନର ପ୍ରକାଶ କାଳ ହେଉଛି ୨୦୧୧ ମସିହା । ଏହା ଲେଖିକାଙ୍କ ପ୍ରତିଭାର ଉଜ୍ଜ୍ୱଳ ସ୍ୱାକ୍ଷର ନୁହେଁ ।

## କବିତା

### ଚିତାନଳ

ବସନ୍ତକୁମାରୀ ମଧ୍ୟ କେତୋଟି କବିତା ଲେଖିଛନ୍ତି । ସେଗୁଡ଼ିକ 'ଚିତାନଳ' ସଙ୍କଳନରେ ସ୍ଥାନ ପାଇଛି ।

'ଚିତାନଳ' ସଙ୍କଳନଟି ପ୍ରଥମେ ୧୯୫୭ ମସିହାରେ ପ୍ରକାଶ ପାଇଥିଲା । ଏହାର ଦ୍ୱିତୀୟ ସଙ୍କଳନଟି ପ୍ରକାଶ ପାଇଛି ୨୦୧୧ ମସିହାରେ ।

ଲେଖିକା କ୍ଷୁଦ୍ର କବିତା ସଙ୍କଳନଟି ଉତ୍ସର୍ଗ କରିଛନ୍ତି ଶ୍ରୀମତୀ ବେଲା ବୋଷଙ୍କୁ । ଏଥିସହିତ ମଧ୍ୟ ଗୋଟିଏ କବିତା ଉପହାର ଦେଇଛନ୍ତି । କବିତାରେ ଲେଖିକାଙ୍କ ଦୁଃଖ, ଯାତନା ଓ ଅନ୍ତର୍ଦାହ ପ୍ରତିଫଳିତ । ତା'ର ଗୋଟିଏ ପଦ –

''ଅଖିଳ ଏ ବିଶ୍ୱର ଯେତେ
ଜଳକଣା ହେଲେ ଠୁଳ
ପାରେ ନାହିଁ ଲିଭାଇ ଯାହାରେ
ସେହି ପୁଣି ବେଳେ ବେଳେ
ଲିଭିଯାଏ ଅବହେଳେ
ଏକ ବିନ୍ଦୁ ଝରା ଅଶ୍ରୁ ଜଳେ ।''

ଲେଖିକାଙ୍କ ଅନ୍ତରରେ ଜଳୁଥିବା ଅନଳକୁ ବିଶ୍ୱର ଯେତେ ଜଳକଣା ମିଶିଲେ ମଧ୍ୟ ଲିଭାଇପାରି ନାହିଁ । ମାତ୍ର ଏକ ବୁନ୍ଦା ଅଶ୍ରୁ ତାହାକୁ ସଙ୍ଗେ ସଙ୍ଗେ ଲିଭାଇ ଦେବାକୁ ସମର୍ଥ ।

## ସାରସ୍ୱତ ଅନୁବାଦ

ବସନ୍ତକୁମାରୀ ଜେ. କୃଷ୍ଣମୂର୍ତ୍ତିଙ୍କର ଗ୍ରନ୍ଥରାଜିକୁ ଓଡ଼ିଆ ଭାଷାରେ ଅନୁବାଦ କରିବା ଦିଗରେ ମନୋନିବେଶ କରିଛନ୍ତି । କଟକର ପୁରୀଘାଟଠାରେ 'The Education Trust' ନାମରେ ଏକ ସାରସ୍ୱତ ଓ ସାଂସ୍କୃତିକ ଅନୁଷ୍ଠାନ ଗଢ଼ିଥିଲେ ଓ ଶ୍ରୀମତୀ ପୁଣ୍ୟପ୍ରଭା ପଟ୍ଟନାୟକ ଓ ଆରତି ମହାନ୍ତିଙ୍କ ସହିତ ମିଶି ଅନୁବାଦ କରିବାରେ ଲିପ୍ତ ଥିଲେ । ଏହାଛଡ଼ା ବିଭିନ୍ନ ଭାଷାରେ ବିଭିନ୍ନ ସାହିତ୍ୟିକଙ୍କର ଉଚ୍ଚକୋଟୀର ଲେଖାସବୁ ସଂଗ୍ରହ କରିଥିଲେ । ସେଗୁଡ଼ିକ ଅନୁଷ୍ଠାନର ପାଠାଗାରରେ ରହିଅଛି । ଅନୂଦିତ ଗ୍ରନ୍ଥଗୁଡ଼ିକ ଗୁଣାତ୍ମକ ଦୃଷ୍ଟିରୁ ଯେ ଅତି ଉଚ୍ଚକୋଟୀର, ଏକଥା ନିର୍ବିବାଦରେ କୁହାଯାଇପାରେ ।

### ଆଗାମୀ ଜୀବନ

ଲେଖିକା ମୁଖବନ୍ଧରେ ଲେଖିଛନ୍ତି ଯେ ''ଜେ. କୃଷ୍ଣମୂର୍ତ୍ତି ଅନ୍ତର୍ଜାତୀୟ ଆଧ୍ୟାତ୍ମିକ ଚେତନା ସ୍ତରରେ ବିଶେଷ ଭାବରେ ବିଦିତ । ତାଙ୍କର ଚିନ୍ତାଧାରା ଓଡ଼ିଆ ପାଠ୍ୟପୁସ୍ତକ ଓ ପ୍ରକାଶନ ବିଭାଗରେ ଅସମ୍ପୂର୍ଣ୍ଣ ଭାବରେ ସ୍ଥାନ ପାଇଛି । ତେଣୁ ତାଙ୍କର ଚିନ୍ତାଧାରା ଓ ଭାବଧାରାର ସମ୍ୟକ୍ ପରିଚିତିପାଇଁ ଅନୁବାଦ ପୁସ୍ତକ 'ଆଗାମୀ ଜୀବନ' ପ୍ରକାଶିତ ହୋଇଛି । ସେ ପୁଣି ଲେଖିଛନ୍ତି ଯେ ବିଶ୍ୱବ୍ୟାପୀ ବିଭ୍ରାଟ ଯୁଗରେ ଆଧୁନିକ ମାନବ ତା'ର ନୈତିକତା ହରାଇ ବସିଛି । ଜେ. କୃଷ୍ଣମୂର୍ତ୍ତିଙ୍କର ସରଳ, ପ୍ରତ୍ୟକ୍ଷ, ନିଶ୍ଚିତ ମାର୍ଗ ଆବାଳବୃଦ୍ଧବନିତା – ସମସ୍ତଙ୍କୁ ଆଲୋକର ସନ୍ଧାନ ଦେବ । ତାଙ୍କର ଅମରବାଣୀ ମାନବ ହୃଦୟର ସମସ୍ତ ଭାବପ୍ରବଣତା, ସମସ୍ତ ପୁରାତନ ମତ, ବିଶ୍ୱାସକୁ ମୂଳଚ୍ଛେଦ କରି ନିଗୂଢ଼ ତଥ୍ୟଟି ଉପରେ ଗୁରୁତ୍ୱ ଦେଇ

କହେ ଯେ ପ୍ରତ୍ୟେକ ମାନବିକ ସମସ୍ୟା କେବଳ ଗୋଟିଏ ମାତ୍ର ଉପାୟରେ ହିଁ ସମାଧାନ ହୋଇପାରିବ । ତାହା ହେଲା ମାନବ ହିଁ କେବଳ ତା' ନିଜ ସମସ୍ୟାର ସମାଧାନ କରିବ, ଅନ୍ୟ କେହି ନୁହେଁ ।

### ପରିବର୍ତ୍ତନ ଏକାନ୍ତ ଜରୁରୀ

ପ୍ରଶ୍ନୋତ୍ତର ଛଳରେ ଜେ. କୃଷ୍ଣମୂର୍ତ୍ତି ବହୁ ବିଷୟ ଉପରେ ନିଜର ସିଦ୍ଧାନ୍ତ ଘୋଷଣା କରିଛନ୍ତି । ସେଗୁଡ଼ିକ ହେଲା, 'ସଜାଗତା', 'ଈଶ୍ୱର ବୋଲି କେହି ଅଛନ୍ତି କି ?', 'ଭୟ', 'ଏ ଦୁନିଆରେ ଚଳିବ କିପରି', 'ଧାର୍ମିକ ଜୀବନ', 'ଆତ୍ମହତ୍ୟା', 'ସଂଘ', 'ପ୍ରେମ ଓ ଯୌନତା', 'ଦୁଃଖଯନ୍ତ୍ରଣା', 'ସୌନ୍ଦର୍ଯ୍ୟ ଓ କଳାକାର', 'ବିଶ୍ୱାସ', 'ସ୍ୱପ୍ନ', 'ପରମ୍ପରା', 'ସୁଖ', 'ଶୃଙ୍ଖଳା', 'ନୂତନ ମାନବ' ପ୍ରଭୃତି । ଏଗୁଡ଼ିକୁ ବିଦୁଷୀ ଲେଖିକାମାନେ ମଣିଷର ଧାର୍ମିକ ଜୀବନଯାପନପାଇଁ ଅନୁବାଦ କରିଛନ୍ତି ।

### ପରିଚିତିରୁ ମୁକ୍ତି

ଆଉ ଏକ ପୁସ୍ତକ ହେଲା 'ପରିଚିତିରୁ ମୁକ୍ତି' । ଏହା 'Freedom from the Known' ପୁସ୍ତକର ଓଡ଼ିଆ ଅନୁବାଦ ।

ମୃତ୍ୟୁ ବିଷୟରେ ଜେ. କୃଷ୍ଣମୂର୍ତ୍ତିଙ୍କର ତଥ୍ୟକୁ ସୁନ୍ଦର ଭାବରେ ଗବେଷିକା ଅନୁବାଦ କରିଛନ୍ତି । ଆମ ଭିତରୁ ଅଧିକାଂଶ ହିଁ ମରିବାକୁ ଭୟ କରନ୍ତି । ତା'ର କାରଣ ହେଲା, ବଞ୍ଚିବା କାହାକୁ କହନ୍ତି ତାହା ଆମକୁ ଜଣା ନ ଥାଏ । ଯେହେତୁ କେମିତି ବଞ୍ଚିବାକୁ ହୁଏ ଆମେ ଜାଣି ନ ଥାଉ, କେମିତି ମରିବାକୁ ହୁଏ ତାହା ଆମକୁ ଅଜଣା । ଯେ ପର୍ଯ୍ୟନ୍ତ ମଣିଷ ଜୀବନକୁ ଭୟ କରି ଚଳୁଥାଏ, ସେ ପର୍ଯ୍ୟନ୍ତ ତା'ର ମୃତ୍ୟୁ ପ୍ରତି ଭୟ ଲାଗିରହେ । ମାତ୍ର ଯାହାର ଜୀବନ ପ୍ରତି ଭୟ ନ ଥାଏ, ସେ ବ୍ୟକ୍ତି ସମ୍ପୂର୍ଣ୍ଣଭାବେ ନିରାପତ୍ତାବିହୀନ ହୋଇଯିବାକୁ ଭୟ କରେ ନାହିଁ । କାରଣ ସେ ଭଲ କରି ବୁଝିଥାଏ ଯେ ନିଜ ଅନ୍ତରରେ ମନସ୍ତାତ୍ତ୍ୱିକ ସ୍ତରରେ ନିରାପତ୍ତା ବୋଲି କିଛି ନାହିଁ । ଅଛି କେବଳ ଏକ ଅନନ୍ତ ସ୍ରୋତ । ତେବେ ତ ଜୀବନ ଓ ମୃତ୍ୟୁ ହେଲା ଏକ । ଯେଉଁ ବ୍ୟକ୍ତି ସୌନ୍ଦର୍ଯ୍ୟବୋଧ ଓ ପ୍ରେମରେ ଭରା ଥାଇ ଜୀବନ ଅତିବାହିତ କରୁଥାଏ, ସେ ବ୍ୟକ୍ତି ମୃତ୍ୟୁକୁ ଭୟ କରେ ନାହିଁ । ତା'ର କାରଣ ମଧ୍ୟ ଅତି ସହଜ । ଭଲ ପାଇବାକୁ ହେଲେ ମରିବାକୁ ହୁଏ ।

### କୃଷ୍ଣମୂର୍ତ୍ତିଙ୍କ ଟିପା ଖାତା

୧୯୬୧ ମସିହା ଜୁନ୍ ମାସରେ ଜେ. କୃଷ୍ଣମୂର୍ତ୍ତି ତାଙ୍କର ଅନୁଭବ, ପର୍ଯ୍ୟବେକ୍ଷଣ ଓ ଚେତନାର ଅବସ୍ଥା ବିଷୟରେ ଏକ ଦୈନିକ ଲିପି ରଚନା ଆରମ୍ଭ କଲେ । ତାଙ୍କର ଏହି ଲିପିବଦ୍ଧ କରିବା କାମ ଛଅ ମାସ ଷୋଳ ଦିନ ଲାଗିଥିଲା । ଏହି ଲିପିବଦ୍ଧ କରିବା କାମଟି ଯେମିତି ଅଚାନକ ଆରମ୍ଭ ହୋଇଥିଲା, ସେମିତି ଅଚାନକ ଶେଷ ମଧ୍ୟ ହୋଇଗଲା । କୃଷ୍ଣମୂର୍ତ୍ତି ନିଜେ ବି କହିପାରି ନ ଥିଲେ କେଉଁ ଜିନିଷଟା ତାଙ୍କୁ

ଏହା ଆରମ୍ଭ କରିବା ଦିଗରେ ପ୍ରବର୍ତ୍ତାଇଥିଲା । ପୂର୍ବରୁ ସେ ସେପରି ଲିପିବଦ୍ଧ କରି ନ ଥିଲେ । ଏହାପରେ ସେ ବି ଆଉ କରି ନାହାନ୍ତି ।

ଲେଖିକା ବସନ୍ତକୁମାରୀ ଏହାର ଓଡ଼ିଆ ଅନୁବାଦ କେବଳ କରି ନାହାନ୍ତି, କିଛି ମାତ୍ରାରେ ସମ୍ପାଦନା ମଧ୍ୟ କରିଛନ୍ତି । କେତେକ ଶବ୍ଦକୁ ସଂକ୍ଷେପ କରିଛନ୍ତି । କେତେକ ସ୍ଥଳରେ ପାଦଟୀକା ଦେଇଛନ୍ତି । କେତେକ ପ୍ରକ୍ଷେପକୁ ବନ୍ଧନୀ ଭିତରେ ଯୋଗ କରିଛନ୍ତି ।

ବସନ୍ତକୁମାରୀ 'ଭୂମିକା'ରେ ଲେଖିଛନ୍ତି – ''ଏହି ଅନୁପମ ଦୈନିକ ଲିପିବଦ୍ଧକରଣରେ ଆମେ କୃଷ୍ଣମୂର୍ତ୍ତିଙ୍କ ଶିକ୍ଷାଦାନର ଉତ୍ସ ଲାଭ କରିପାରିବୁ । ତାଙ୍କ ଶିକ୍ଷାଦାନର ସମୁଦାୟ ସାରବତ୍ତା ତା'ର ସ୍ୱାଭାବିକ ଉତ୍ସ ସ୍ଥଳୀରୁ ବାହାରି ଏଇଥିରେ ହିଁ ସ୍ଥାନ ପାଇଛି ।''

ନିଜେ କୃଷ୍ଣମୂର୍ତ୍ତି ସେହି ପୃଷ୍ଠାମାନଙ୍କରେ ଯାହା ଲେଖିଛନ୍ତି, ତାକୁ ମଧ୍ୟ ଉଦ୍ଧୃତ କରିଛନ୍ତି – 'ପ୍ରତି ଥର ଏଇ ପରମ ଆଶୀର୍ବାଦର ଧାରାରେ କିଛି ଗୋଟାଏ ନୂଆ ହୋଇ ଫୁଟିଥାଏ, ଏହି 'ଅଭିନବ', 'ବୈଶିଷ୍ଟ୍ୟ' ଏକ 'ନୂତନ' ସୌରଭ ଦେଖାଦେଇଥାଏ, କିନ୍ତୁ ତା' ସତ୍ତ୍ୱେ ଏହା ଅପରିବର୍ତ୍ତନୀୟ ।''

ବସନ୍ତକୁମାରୀ ମଧ୍ୟ ଲେଖିଛନ୍ତି ଯେ ସେହି ଆଶୀର୍ବାଦ ଧାରାରେ ବାହାରୁଥିବା ଶିକ୍ଷାକୁ ବାରମ୍ବାର କୁହାଯାଇଥିଲେ ମଧ୍ୟ ତାହା କେତେବେଳେ ହେଲେ ସର୍ବତୋଭାବେ ସମାନ ନୁହେଁ । ଉଦାହରଣସ୍ୱରୂପ – ଗଛ, ପର୍ବତ, ନଦୀ, ମେଘ, ପକ୍ଷୀ ଓ ଫୁଲ ପ୍ରଭୃତିକୁ ସେ ବାରମ୍ବାର ବର୍ଣ୍ଣନା କରିଛନ୍ତି । ତଥାପି ତାହା ଚିର ନୂତନ ଥାଏ, କାରଣ ପ୍ରତିଥର ତାହାକୁ ଦେଖିଲାବେଳେ ତାଙ୍କୁ ଜଣାଯାଏ ସେ ଆଖି ଯେମିତି ତା' ସହିତ କେବେ ପରିଚିତ ନ ଥିଲା ! ପ୍ରତ୍ୟେକ ଦିନ ସେଗୁଡ଼ିକ ଏକ ସମ୍ପୂର୍ଣ୍ଣ ତାଜା ଅନୁଭବଭାବେ ତାଙ୍କ ନିକଟରେ ଦେଖାଦିଅନ୍ତି । ଫଳରେ ଆମକୁ ବି ସେମିତି ଲାଗିଛି ।

**ଅସମ୍ଭବ ପ୍ରଶ୍ନ**

ଲେଖିକା 'The Impossible Question' ପୁସ୍ତକର ଓଡ଼ିଆ ଅନୁବାଦ କରିଛନ୍ତି 'ଅସମ୍ଭବ ପ୍ରଶ୍ନ' ଶୀର୍ଷକରେ ।

ଏହି ପୁସ୍ତକଟି ଦୁଇଟି ବିଭାଗରେ ବିଭକ୍ତ । ପ୍ରଥମ ଭାଗରେ କେତେକ ପ୍ରଶ୍ନର ଆଲୋଚନା କରାଯାଇଛି, ଯଥା – 'ଦୃଷ୍ଟିପାତ ଓ ପ୍ରକ୍ରିୟା', 'ମୁକ୍ତ ଅବସ୍ଥା','ବିଶ୍ଳେଷଣ', 'ବିଖଣ୍ଡନ', 'ଭୟ ଓ ସୁଖ', 'ଭାବନାର ଯନ୍ତ୍ର ଭଳି ତତ୍ପରତା' ଓ 'ଧର୍ମ' ।

ଶ୍ରୀ କୃଷ୍ଣମୂର୍ତ୍ତିଙ୍କ ମତରେ ଧର୍ମ ହେଉଛି ସେହି ଗୁଣ, ଯାହାକି ଜୀବନକୁ ଏକବାରକେ ବିଭାଜନ ଶୂନ୍ୟ କରାଇଥାଏ ।

ଦ୍ୱିତୀୟ ଭାଗରେ 'କଥୋପକଥନ' ମାଳା ରହିଛି । ଏହି 'କଥୋପକଥନ'ର ସଂଖ୍ୟା ହେଉଛି ୭ (ସାତ) । ଶେଷରେ ମଣିଷ ନିଜ ଉପରେ ଦୃଷ୍ଟି ଦେଇ ଏସବୁ ଶିକ୍ଷା କରିବାକୁ ହେବ'ବୋଲି ଲେଖକ କହିଛନ୍ତି । କୌଣସି ବହି କି ଗୁରୁ ଏ ବିଷୟରେ ଶିକ୍ଷାଦାନ କରିପାରିବେ ନାହିଁ । କୌଣସି ଆଧାତ୍ମିକ ସଙ୍ଗଠନରେ ମିଶିବାର ଆବଶ୍ୟକତା ନାହିଁ । ମଣିଷ ନିଜେ ହିଁ ନିଜଠାରୁ ଏସବୁ ଶିକ୍ଷା ଗ୍ରହଣ କରିବାକୁ ପଡ଼ିବ । ତା'ହେଲେ ମଣିଷର ମନ ତା'ର ଧାରଣାତୀତ ଜିନିଷ ଆବିଷ୍କାର କରିପାରିବ ।

**ଶିକ୍ଷା ଓ ଜୀବନର ତାତ୍ପର୍ଯ୍ୟ**

ଜେ.କୃଷ୍ଣମୂର୍ତ୍ତିଙ୍କ ଆଉ ଏକ ପୁସ୍ତକ 'Education and the Significance of Life'ର ଓଡ଼ିଆ ଅନୁବାଦ କରିଛନ୍ତି ବସନ୍ତକୁମାରୀ ପଟ୍ଟନାୟକ, ପୁଣ୍ୟପ୍ରଭା ପଟ୍ଟନାୟକ ଓ ଆରତି ମହାନ୍ତିଙ୍କୁ ନେଇ ଗଠିତ ଅନୁବାଦକ ମଣ୍ଡଳୀ ।

ଏଥିରେ ଥିବା ବିଷୟଗୁଡ଼ିକ ହେଲା 'ଶିକ୍ଷା ଓ ଜୀବନର ତାତ୍ପର୍ଯ୍ୟ', 'ଯଥାର୍ଥ ଶିକ୍ଷା', 'ଧୀ', 'ପ୍ରବୁଦ୍ଧ ଓ ବୁଦ୍ଧି', 'ବିଦ୍ୟାଳୟ', 'ପିତାମାତା ଓ ଶିକ୍ଷକ', 'ଯୌନ ପ୍ରସଙ୍ଗ ଓ ବିବାହ' ଓ 'କଳା, ସୌନ୍ଦର୍ଯ୍ୟ ଓ ସୃଷ୍ଟି', 'ଶିକ୍ଷା ଓ ଜୀବନର ତାତ୍ପର୍ଯ୍ୟ' । ଅନୁବାଦିକାମାନେ ଗତାନୁଗତିକ ଶିକ୍ଷାଧାରାର ଆଲୋଚନା କରିଛନ୍ତି । ଏହା ଫଳରେ ସ୍ୱାଧୀନ ଚିନ୍ତା କଷ୍ଟସାଧ୍ୟ ହୋଇପଡ଼େ ବୋଲି କହିଛନ୍ତି । ଜୀବନର ଏକ ଉଚ୍ଚତର ତଥା ବ୍ୟାପକ ତାତ୍ପର୍ଯ୍ୟ ରହିଛି । ତାହା ଆବିଷ୍କାର କରି ନ ପାରିଲେ ଆମର ଶିକ୍ଷା ଦୀକ୍ଷା ମୂଲ୍ୟହୀନ । ପୁଣି 'ଯଥାର୍ଥ ଶିକ୍ଷା' ବିଷୟରେ ସେ କହିଛନ୍ତି – ''ନିଜକୁ ବୁଝିବାଟା ହିଁ ହେଲା ପ୍ରକୃଷ୍ଟ ଶିକ୍ଷା ।''

**ମୃତ୍ୟୁ ଓ ପରଲୋକ**

ସି.ଡବ୍ଲ୍ୟୁ. ଲିଡ୍‌ହିଟର୍‌ଙ୍କ ରଚିତ 'Death and Beyond' ର ଓଡ଼ିଆ ଅନୁବାଦ କରିଛନ୍ତି ବସନ୍ତକୁମାରୀ ପଟ୍ଟନାୟକ ଓ ପୁଣ୍ୟପ୍ରଭା ଦେବୀ । ପୁସ୍ତକର ନାମ ରଖିଛନ୍ତି 'ମୃତ୍ୟୁ ଓ ପରଲୋକ' । ଏଥିରେ ଅନୁବାଦିକାମାନେ ଜନ୍ମ ଓ ମୃତ୍ୟୁର ସୁନ୍ଦର ବ୍ୟାଖ୍ୟା କରିଛନ୍ତି ।

ମଣିଷଟି ତା'ର ପ୍ରିୟଜନର ମୃତ୍ୟୁରେ ଶୋକାକୁଳ ହୋଇଉଠେ । ସଂସାରଟା ଶୂନ୍ୟ, ଅସାର ମନେ ହୁଏ । ଦଣ୍ଡେ ବଞ୍ଚିବାପାଇଁ ଇଚ୍ଛା ହୁଏ ନାହିଁ । ପ୍ରାଣ ଖୋଜେ ତା'ଠୁଁ ପଦେ ଶୁଣିବାକୁ ଆଉ ତା'ର ହାତର ସ୍ପର୍ଶ ପାଇବାକୁ । କିନ୍ତୁ ଲେଖିକାମାନେ ଏହାକୁ ଏକ ବିରାଟ ଭ୍ରମର ପରିଣାମ ବୋଲି କହିଛନ୍ତି । ପ୍ରଥମରେ, ଏହା ପ୍ରକୃତି ରାଜ୍ୟରେ କାର୍ଯ୍ୟ କରୁଥିବା ନିୟମ ବି ବିଧି ସମ୍ପର୍କରେ ଅଜ୍ଞତା ସୂଚାଇଥାଏ । ଦ୍ୱିତୀୟରେ, ମୃତ୍ୟୁ ପରେ ଅର୍ଥାତ୍ ପରଲୋକରେ ମରିଯାଇଥିବା ପ୍ରିୟଜନଟି ରହିଥାଏ ଏକ ଜଗତରେ ଯେଉଁଠି ଏହି ଜଗତ ଭଳି ସମାନ ପ୍ରାକୃତିକ ନିୟମ, ବିଧି ଇତ୍ୟାଦି କାର୍ଯ୍ୟ କରୁଥାଏ । ତୃତୀୟରେ, ମୃତକଙ୍କପାଇଁ ଶୋକ ଇତ୍ୟାଦି କରିବା ତାହାହିଁ କ୍ଷତି କରିଥାଏ । କାରଣ ମୃତକମାନଙ୍କୁ ଏହି ଧରା ଜୀବନଠାରୁ ତାହା ଢେର ସୁଖକର ବୋଧ ହୋଇଥାଏ ।

ଶେଷରେ ଲେଖିକାମାନେ କହିଛନ୍ତି ଯେ ଈଶ୍ୱର ଏକ, ତାଙ୍କ ଭିତରେ ସବୁ ଅଛି । ସବୁ ଅନ୍ତର୍ଭୁକ୍ତ ହୋଇ ରହିଛି । ଆମେ ଯଦି ଉପଲବ୍ଧି କରିପାରିବା ଯେ ଆମେ ଜୀବିତ ଥାଉ ବା ମୃତ ଥାଉ, ଆମେ ସେହି ଈଶ୍ୱରଙ୍କର ହିଁ ଅଟୁ; ତାଙ୍କରି ଭିତରେ ଆମ ସମସ୍ତଙ୍କର ସତ୍ତା ରହିଛି, ତା'ହେଲେ ଆମର ଶୋକ ପ୍ରକାଶ କରିବାର ପ୍ରଶ୍ନ ହିଁ ରହି ନ ପାରେ ।

**ବାଟୋଇର ଧ୍ରୁବତାରା**

ଏହା ଲେଖିକାଦ୍ୱୟଙ୍କ ମୌଳିକ ରଚନା । ଆଧ୍ୟାତ୍ମିକ ପଥରେ ପଥହରା ପଥିକକୁ ପଥ ଦେଖାଇବାପାଇଁ ଏହି ପୁସ୍ତକ ରଚନା କରିଛନ୍ତି ବୋଲି ଲେଖିକା ଦ୍ୱୟ – ବସନ୍ତକୁମାରୀ ଓ ପୁଣ୍ୟପ୍ରଭା କହିଛନ୍ତି । ବହୁ ଚିନ୍ତାଶୀଳ ବ୍ୟକ୍ତିମାନଙ୍କର ଜ୍ଞାନଗର୍ଭକ ଲେଖାକୁ ବିଶ୍ଳେଷଣ କରି ସେଥିରେ ଉପସ୍ଥାପିତ କରିଛନ୍ତି ।

ପୁସ୍ତକରେ ଲେଖିକାଦ୍ୱୟ 'ବ୍ରହ୍ମବିଦ୍ୟା', 'ଗୁପ୍ତବିଦ୍ୟା' ବିଷୟରେ ସୂକ୍ଷ୍ମାତିସୂକ୍ଷ୍ମଭାବେ ଆଲୋଚନା କରିଛନ୍ତି । ଜୀବନର କ୍ରମବିକାଶ ସମ୍ପର୍କରେ ମଧ୍ୟ ସୂଚନା ଦେଇଛନ୍ତି । ମନୁଷ୍ୟ ଓ ତାହାର ଗଠନ ତତ୍ତ୍ୱ, ଚିନ୍ତାମୂର୍ତ୍ତି, ସ୍ୱପ୍ନ, ଶକ୍ତିକେନ୍ଦ୍ର ବା ଚକ୍ର ଓ କୁଣ୍ଡଳିନୀ ଉପରେ ତାତ୍ତ୍ୱିକ ଆଲୋଚନା କରିଛନ୍ତି । ମୃତ୍ୟୁ ଓ ମୃତ୍ୟୁ ପରେ ଜୀବନ, ପୁନର୍ଜନ୍ମ ଓ କର୍ମବାଦ, ଜୀବନର ଉଦ୍ଦେଶ୍ୟ ପ୍ରଭୃତି ନାନା ଉପାଦେୟ ତଥ୍ୟ ପରିବେଷଣ କରିଛନ୍ତି । ଦିଗହରା ପଥିକଟିଏ ଆକାଶର ଧ୍ରୁବତାରା ଲକ୍ଷ୍ୟ କରି ବାଟ ପାଇଲା ଭଳି ପୁସ୍ତକଟି ପ୍ରତି ମଣିଷଟିପାଇଁ ଧ୍ରୁବତାରା ହୋଇ ପଥ ଦେଖାଇବ ବୋଲି ସେମାନେ ଦୃଢ଼ ଆଶା ପୋଷଣ କରିଛନ୍ତି ।

**ଲେଖିକାଙ୍କ ଖେଦ ପ୍ରକାଶ**

ବହୁଦିନ ତଳେ ବସନ୍ତକୁମାରୀ ଏକ ସାକ୍ଷାତ୍କାରରେ କହିଥିଲେ – ''ମୁଁ ଓଡ଼ିଆ ସାହିତ୍ୟପାଇଁ ଯାହା ଚାହିଁଥିଲି, କିଛି ହେଲେ କରିପାରି ନାହିଁ । × × × ଯାହା ମୋ ଚିନ୍ତାଧାରା ଭିତରେ ଥିଲା କରିବାପାଇଁ, ସେଥିରୁ କାଣିଚାଏ ମଧ୍ୟ କରିପାରି ନାହିଁ ।''

**ସମ୍ମାନ ଓ ପ୍ରଶଂସା**

ଓଡ଼ିଶାର ପ୍ରଖ୍ୟାତ ସାହିତ୍ୟିକ ଓ ବିଶିଷ୍ଟ ନାରୀନେତ୍ରୀ ସରଳାଦେବୀ ବସନ୍ତକୁମାରୀଙ୍କ ପ୍ରତିଭା ବିଷୟରେ କହିଛନ୍ତି – ''ନାରୀ ସାହିତ୍ୟ କହିଲେ ମୁଁ ଯାହା ବୁଝେ, ବସନ୍ତକୁମାରୀ ସେହି ନାରୀ ହସ୍ତର, ନାରୀ ଚିତ୍ତର ସାହିତ୍ୟ ଲେଖିବାରେ ଏ ଯୁଗରେ ଯଶସ୍ୱିନୀ ହୋଇଛନ୍ତି ।''

**ମୂଲ୍ୟାୟନ**

ଗଳ୍ପ ହେଉ କି ଉପନ୍ୟାସ ହେଉ, ବସନ୍ତକୁମାରୀ ପଟ୍ଟନାୟକଙ୍କ ଲେଖାର ଅନ୍ତଃସ୍ୱର ହେଉଛି ଉତ୍କଳୀୟ । ଓଡ଼ିଶାର ଗାଁ-ଗହଳି ଓ ସହରାଞ୍ଚଳ ହେଉଛି ତାଙ୍କ କଥାସୃଷ୍ଟିର ଭିତ୍ତିଭୂମି । ପୁଣି ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଓଡ଼ିଶାର କି ଧନୀ ଗରିବ, ଶିକ୍ଷିତ, ଅଶିକ୍ଷିତ, ଯୁବକ, ଯୁବତୀ, ଶିଶୁ, ବାଳକ, ବୃଦ୍ଧ, ବୃଦ୍ଧା ସମସ୍ତେ

ତାଙ୍କ ଲେଖାରେ ସ୍ଥାନ ପାଇଛନ୍ତି । ଉତ୍କଳୀୟତା ତାଙ୍କ ଲେଖାର ଯେ ସର୍ବାପେକ୍ଷା ଶକ୍ତିଶାଳୀ ଆବେଦନ, ଏହା ସମସ୍ତେ ସ୍ୱୀକାର କରନ୍ତି ।

ବସନ୍ତକୁମାରୀ ମଧ୍ୟ ଥିଲେ ଜଣେ ମାନବବାଦୀ ଓ ସମ୍ବେଦନଶୀଳା ସ୍ରଷ୍ଟା । ସମଗ୍ର ମାନବଜାତିକୁ ଭଲପାଇବା ଯେପରି ଥିଲା ତାଙ୍କର ଏକ ସହଜାତ ପ୍ରବୃତ୍ତି । ଦୁଃସ୍ଥ ମଣିଷର କାରୁଣ୍ୟ ଓ ଅସହାୟତା ପ୍ରତି ସେ ସହାନୁଭୂତିଶୀଳା ହେବା ସଙ୍ଗେ ସଙ୍ଗେ ତା'ର ଦୁଃଖର ଲାଘବପାଇଁ ବା ସମସ୍ୟାର ସମାଧାନପାଇଁ ମାର୍ଗ ନିର୍ଣ୍ଣୟ କରିଛନ୍ତି । ସମସ୍ୟାର ଉପସ୍ଥାପନା ସହ ସମାଧାନର ସଙ୍କେତ ଦେବା ହିଁ ତାଙ୍କ ଉପନ୍ୟାସ ବା ଗଳ୍ପର ଏକ ମହାନ୍ ବିଶେଷତ୍ୱ । ମାନବ ସମାଜପାଇଁ ଯାହା ଅମୃତମୟ, ଯାହା ମଙ୍ଗଳମୟ, ସାହିତ୍ୟ ସୃଷ୍ଟି ମାଧ୍ୟମରେ ସେ ସମ୍ପର୍କରେ ଲେଖିକା ଦିଗ୍‌ଦର୍ଶନ ଦେଇଛନ୍ତି ।

ଗାଳ୍ପିକଙ୍କ ଭାଷା ଓ ଶୈଳୀ ମଧ୍ୟ ଅତ୍ୟନ୍ତ ସରଳ, ସାବଲୀଳ ଓ ହୃଦୟସ୍ପର୍ଶୀ । ପୁଣି ତାହା ସ୍ଥାନ, କାଳ, ପାତ୍ର ଓ ପରିବେଶ ଅନୁସାରୀ ହୋଇଛି । ଏଥି ସହିତ ତାଙ୍କର ବିଭିନ୍ନ ଉପନ୍ୟାସର ବ୍ୟକ୍ତି ଚରିତ୍ରର ବୈଶିଷ୍ଟ୍ୟ ପ୍ରତିପାଦନ ସଙ୍ଗେ ସଙ୍ଗେ ସେମାନଙ୍କର ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଯେପରି କରିଛନ୍ତି ତାହା ତାଙ୍କୁ ପ୍ରତିଭାଶାଳୀ କଥାଶିଳ୍ପୀ ଭାବରେ ପ୍ରତିଷ୍ଠିତ କରିଛି ।

ଆଲୋଚିକାଙ୍କ ଭାଷାରେ – ''ତାଙ୍କର ଚରିତ୍ର-ଚିତ୍ରଣ-ଚାତୁରୀ, ଭାଷାଶୈଳୀ, ଓଡ଼ିଆ ଘରର ଚଳଣି, ପରମ୍ପରା ବିଷୟକ ବର୍ଣ୍ଣନା ଫୁଟାଇବାର ପ୍ରୟାସ ବିଷୟବସ୍ତୁ ସହିତ ଚରିତ୍ର, ଘଟଣା, ଭାଷା ସଂଳାପକୁ ଖାପ ଖୁଆଇ ପରିବେଷଣ କରିବାର ଉଦ୍ୟମ × × × ତାଙ୍କର ଗଳ୍ପ ଓ ଉପନ୍ୟାସରାଜିକୁ ଜୀବନ୍ତ ରୂପରେ ପାଠକର ନିକଟବର୍ତ୍ତୀ କରିପାରିଛି । ନିଖୁଣ ଓ ବାସ୍ତବ ଘଟଣାର କମନୀୟ ପରିପ୍ରକାଶ ହେଉଛି ତାହାଙ୍କ ରଚନାର ଯଥାର୍ଥ ବୈଶିଷ୍ଟ୍ୟ ।''

ବସନ୍ତକୁମାରୀ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଜେ. କୃଷ୍ଣମୂର୍ତ୍ତିଙ୍କ ପୁସ୍ତକଗୁଡ଼ିକର ଅନୁବାଦ ଦିଗରେ ରତ ଥିଲେ । ସେ ବାର୍ଦ୍ଧକ୍ୟଜନିତ ରୋଗରେ ପୀଡ଼ିତା ହୋଇପଡ଼ିଲେ । ଶେଷରେ ୯୦ ବର୍ଷ ବୟସରେ ୨୦୧୩ ମସିହା ମାର୍ଚ୍ଚ ମାସ ୩୦ ତାରିଖରେ ତାଙ୍କର ପରଲୋକ ହେଲା । ତାଙ୍କ ପରଲୋକ ଖବର ପାଇ ବହୁ ବିଶିଷ୍ଟ ବ୍ୟକ୍ତି ଯାଇ ଶେଷ ଦର୍ଶନ କରିଥିଲେ । ଖାନନଗର ଶ୍ମଶାନରେ ତାଙ୍କର ଶେଷକୃତ୍ୟ ସମାପିତ ହୋଇଥିଲା । 'ସମାଜ' ତାଙ୍କ ମୃତ୍ୟୁଖବର ଶୋକ ପ୍ରକାଶ କରି ଲେଖିଥିଲା –

''ଓଡ଼ିଆ ସାହିତ୍ୟର ଅନବଦ୍ୟ ସୃଷ୍ଟି ଅମଡ଼ାବାଟର ବାଟୋଇ ତଥା ବିଶିଷ୍ଟ ଔପନ୍ୟାସିକା ବସନ୍ତକୁମାରୀ ପଟ୍ଟନାୟକ ଆଉ ନାହାନ୍ତି ।''

❑❑❑



## ଅନନ୍ୟ ସାରସ୍ୱତ ସାଧକ

# ଅନନ୍ତ ପ୍ରସାଦ ପଣ୍ଡା

## [୧୯୦୬-୧୯୮୯]

ଅନନ୍ତ ପ୍ରସାଦ ପଣ୍ଡା ଥିଲେ ଜଣେ ପ୍ରତିଭାଦୀପ୍ତ ସାରସ୍ୱତ ସାଧକ । ସେ ଅନେକ ଗଳ୍ପ, ଉପନ୍ୟାସ, କବିତା, ପ୍ରବନ୍ଧ, ଅନୁବାଦ, ଭ୍ରମଣ ସାହିତ୍ୟ ପ୍ରଭୃତି ଲେଖି ସ୍ୱକୀୟ ରଚନା ଶୈଳୀର ପରିଚୟ ଦେଇଛନ୍ତି । ଅନୁଭୂତିବହୁଳ କର୍ମଜୀବନରୁ ସେ ଯାହା ସଂଗ୍ରହ କରିଛନ୍ତି, ତାହାକୁ ରୂପ ଦେଇଛନ୍ତି ତାଙ୍କର ଅଜସ୍ର ଲେଖା ଭିତରେ । ତାଙ୍କର ସାରସ୍ୱତ କୃତିରେ ମାନବିକତା, ସ୍ନେହ, ସଂପ୍ରୀତି ଓ ଭାବପ୍ରବଣତାର ଉଲ୍ଲାସ ଉପଲବ୍ଧ ହୁଏ ।

### ଜନ୍ମ ଓ ବଂଶ ପରିଚୟ

ଅନନ୍ତ ପ୍ରସାଦ ପଣ୍ଡା ବାଲେଶ୍ୱର ଜିଲ୍ଲା ସୋର ଥାନା ବାହାନଗା ବ୍ଲକ ଅନ୍ତର୍ଗତ କଲ୍ୟାଣୀ ଗ୍ରାମରେ ଏକ ଆଭିଜାତ୍ୟ ପରିବାରରେ ୧୯୦୬ ମସିହା ଜୁଲାଇ ମାସ ୧୮ ତାରିଖରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଥିଲା ଉମାକାନ୍ତ ପଣ୍ଡା ଓ ମାତାଙ୍କ ନାମ ଗେହ୍ଲାମଣି । ସେମାନଙ୍କର ବହୁ ଦିନ ଧରି ସନ୍ତାନ ହେଉ ନ ଥିବାରୁ ଅନନ୍ତବ୍ରତ ଓଷା କରିବାରେ ପୁତ୍ରସନ୍ତାନଟିଏ ଜାତ ହେଲା । ସେଥିପାଇଁ ପିତା ତାଙ୍କ ନାମ ଅନନ୍ତ ପ୍ରସାଦ ରଖିଥିଲେ ।

ମରହଟ୍ଟା ଶାସନ କାଳରେ ଅନନ୍ତ ପ୍ରସାଦଙ୍କ ପୂର୍ବପୁରୁଷମାନେ କଣିହା (ବିଷ୍ଣୁପୁର) ଗ୍ରାମରୁ ଆସି କଲ୍ୟାଣୀ ଗ୍ରାମରେ ବସତି ସ୍ଥାପନ କରିଥିଲେ । ସେତେବେଳେ ଗ୍ରାମଟି ବଣ-ଜଙ୍ଗଲରେ ପୂର୍ଣ୍ଣ ଥିଲା । ତେଣୁ ସେମାନେ ଦେହରକ୍ଷୀ ଭାବରେ କଣ୍ଡରା ଜାତିର ଲୋକଙ୍କୁ ସାଙ୍ଗରେ ଆଣିଥିଲେ । ଏବେବି କଲ୍ୟାଣୀ ଗ୍ରାମରେ କଣ୍ଡରାମାନେ ବାସ କରୁଥିବାର ଦେଖାଯାଏ ।

ଅନନ୍ତ ପ୍ରସାଦଙ୍କ ପିତାମହ ଥିଲେ କଲ୍ୟାଣୀ ଗ୍ରାମର ମୁଖିଆ । ଓଡ଼ିଆ ଓ ବଙ୍ଗଳା ଭାଷାରେ ତାଙ୍କର ଦକ୍ଷତା ଥିଲା । ଜମିଦାରଙ୍କ ପରେ ସେ ଥିଲେ ଗ୍ରାମର ପ୍ରତିପତ୍ତିଶାଳୀ ବ୍ୟକ୍ତି । ଜମିଦାର ଥିଲେ ବାଲେଶ୍ୱରର ସାମନ୍ତ ବଂଶ । ତେବେ ଗାଁ-ଲୋକଙ୍କର ଜମିଦାରଙ୍କ ସଙ୍ଗେ ପ୍ରତ୍ୟକ୍ଷ ସମ୍ପର୍କ ନ ଥିଲା । ଫଳରେ ପିତାମହ ମକଦ୍ଦମ ଭାବେ କାର୍ଯ୍ୟ କରୁଥିଲେ । ସେ ଗାଁରୁ ଖଜଣା ଆଦାୟ କରି ଜମିଦାରଙ୍କ ସିରସ୍ତାରେ ପୈଠ କରୁଥିଲେ । ଗାଁର ହାନିଲାଭ ବୁଝୁଥିଲେ । ଅନନ୍ତ ପ୍ରସାଦଙ୍କ ପିତା ଉମାକାନ୍ତ ବାଲେଶ୍ୱର କଚେରିରେ ଜଣେ ମୁକ୍ତାରଙ୍କ ପାଖେ ମୋହରିର ଥିଲେ ।

**ବାଲ୍ୟ ଜୀବନ**

ଅନନ୍ତ ପ୍ରସାଦଙ୍କ ବାଲ୍ୟକାଳ ଗ୍ରାମରେ ହିଁ କଟିଥିଲା । ପିଲାଦିନେ ସାଙ୍ଗମାନଙ୍କ ସହ ମିଶି ପାଣିରେ କଇଁଫୁଲ ତୋଳିବାରେ ତାଙ୍କର ସଉକ ଥିଲା । ସେ ପିଲାଦିନେ ମୋଟା ଥିଲେ । ପେଟ ବି ବାହାରି ପଡ଼ିଥାଏ । ଅବଧାନ ତାଙ୍କୁ କହୁଥିଲେ ସାକ୍ଷାତ୍ ଗଣେଶ ମୂର୍ତ୍ତିଟିଏ ।

**ଶିକ୍ଷା**

ପାଞ୍ଚ ବର୍ଷ ବୟସରେ ଅନନ୍ତ ପ୍ରସାଦଙ୍କ ଖଡ଼ିଛୁଆଁ ହେଲା । ପିତାଙ୍କ ସାଙ୍ଗରେ ନଡ଼ିଆ ଦକ୍ଷିଣା ନେଇ ଗ୍ରାମରେ ଥିବା ନିମ୍ନ ପ୍ରାଥମିକ ବିଦ୍ୟାଳୟକୁ ଯାଇଥିଲେ । ସେ ପ୍ରତିଦିନ ସେଠାକୁ ଯାଉଥିଲେ । ସେଠାରେ ପଡ଼ିଥିବା ଗୋଟିଏ ତାଳପତ୍ର ବୁଣା ଆସନରେ ବସୁଥିଲେ । ସେହି ପ୍ରାଥମିକ ବିଦ୍ୟାଳୟର ଶିକ୍ଷକ ଅନନ୍ତ ପ୍ରସାଦଙ୍କ ଘରେ ରହୁଥିଲେ । ରାତିରେ ସେ ତାଙ୍କୁ ପାଠ ପଢ଼ାଉଥିଲେ ।

ଅନନ୍ତ ପ୍ରସାଦ ମେଧାବୀ ଛାତ୍ର ଥିଲେ । ତାଙ୍କର ବିଚକ୍ଷଣ ବୁଦ୍ଧି ଯୋଗୁଁ ଗୁରୁଜୀମାନେ ତାଙ୍କୁ ଭଲ ପାଉଥିଲେ, ଆଦର କରୁଥିଲେ । ଗୁରୁଜୀମାନଙ୍କ ପ୍ରତି ଅନନ୍ତ ପ୍ରସାଦଙ୍କ ଅସୀମ ଭକ୍ତି ଥିଲା । ସେ ସେମାନଙ୍କ ସେବାରେ ସଦାସର୍ବଦା ନିଜକୁ ନିୟୋଜିତ କରୁଥିଲେ ।

ନିମ୍ନ ପ୍ରାଥମିକ ଶିକ୍ଷା ଶେଷ ହେବା ପରେ ଅନନ୍ତ ପ୍ରସାଦଙ୍କ ପିତା ବାଲେଶ୍ୱର ମିସନ ସ୍କୁଲରେ ଅନନ୍ତ ପ୍ରସାଦଙ୍କ ନାମ ଲେଖାଇଦେଲେ । ତାଙ୍କ ପିତା ସେତେବେଳକୁ ବାଲେଶ୍ୱର ସହରରେ ଘରଭଡ଼ା ନେଇ ରହୁଥାନ୍ତି । ତାଙ୍କ କକା ଭାଗୀରଥି ପଣ୍ଡା ମଧ୍ୟ ବାଲେଶ୍ୱର ଭିକ୍ଟୋରିଆ ଜୁବ୍‌ଲି ମିଡିଲ ଇଂଲିଶ ସ୍କୁଲର ଶିକ୍ଷକ ଥାଆନ୍ତି ।

ସେ ଅନନ୍ତ ପ୍ରସାଦଙ୍କ ଶିକ୍ଷାର ଦାୟିତ୍ୱ ଗ୍ରହଣ କଲେ । ଭାଗୀରଥି ସୁଲେଖକ ଥିଲେ । ସେ ଏକ କାବ୍ୟ ମଧ୍ୟ ରଚନା କରିଥିଲେ । ତାଙ୍କର ଶିକ୍ଷା ଓ ପ୍ରେରଣା ଫଳରେ ଅନନ୍ତ ପ୍ରସାଦ ଓଡ଼ିଆ ସାହିତ୍ୟରେ ଯଥେଷ୍ଟ ସ୍ଥାନ ଅର୍ଜନ କଲେ । ବସ୍ତୁତଃ, ଅନନ୍ତ ପ୍ରସାଦଙ୍କ ସାହିତ୍ୟିକ ଜୀବନର ଭିତ୍ତିଭୂମି ସେଇଠାରେ ହିଁ ପଡ଼ିଥିଲା ।

ଭିକ୍ଟୋରିଆ ଜୁବ୍‌ଲି ମାଇନର ସ୍କୁଲରୁ ଅନନ୍ତ ପ୍ରସାଦ ଉତ୍ତୀର୍ଣ୍ଣ ହେଲା ପରେ ତାଙ୍କ ନାମ ବାଲେଶ୍ୱର ଜିଲ୍ଲା ସ୍କୁଲରେ ଲେଖାଗଲା । ସେତେବେଳେ ସ୍ୱନାମଧନ୍ୟ ସାହିତ୍ୟିକ ଚନ୍ଦ୍ରମୋହନ ମହାରଣା ବାଲେଶ୍ୱର ଜିଲ୍ଲା ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ । ଗଣିତ ଶିକ୍ଷକ ଥିଲେ ଭୀମ ରାଉତ । ସେମାନଙ୍କ ସଂସ୍ପର୍ଶରେ ଅନନ୍ତ ପ୍ରସାଦ ଆସିଲେ । ବିଶେଷତଃ, ଗଣିତ ଶିକ୍ଷକ ଭୀମ ରାଉତଙ୍କ ସହାୟତାରେ ସେ ଫକୀରମୋହନଙ୍କ ସାନ୍ନିଧ ଲାଭ କଲେ । ସେ ଫକୀରମୋହନଙ୍କ ସାହିତ୍ୟର ମୁଗ୍ଧ ପାଠକ ଥିଲେ । ଅନନ୍ତ ପ୍ରସାଦଙ୍କ ଉଦ୍ୟମରେ ହାଇସ୍କୁଲରୁ 'ପାରିଜାତ' ନାମକ ଗୋଟିଏ ହାତଲେଖା ସାହିତ୍ୟ ପତ୍ରିକା ବାହାରିଲା । ଅନନ୍ତ ପ୍ରସାଦଙ୍କ ଏକ ଛନ୍ଦ୍ୟ ସେଥିରେ ସ୍ଥାନ ପାଇଥିଲା । ତା'ର ଗୋଟିଏ ପଦ –

''ସ୍ୱର୍ଗୀୟ କୁସୁମ ଆରେ ପାରିଜାତ
ତୋ ସଙ୍ଗେ ସରି କେ ହେବ କହ ତ ।''

ବାଲେଶ୍ୱର ଜିଲ୍ଲା ସ୍କୁଲରୁ ଅନନ୍ତ ପ୍ରସାଦ ଫାଷ୍ଟ ଡିଭିଜନରେ ମାଟ୍ରିକ ପାସ୍ କରି ଫକୀରମୋହନ ସେନାପତି ସ୍ମାରକୀ ପଦକ ପାଇବାର ଗୌରବ ଅର୍ଜନ କଲେ ।

**ଉଚ୍ଚଶିକ୍ଷା**

ଏହାପରେ ଅନନ୍ତ ପ୍ରସାଦ ଉଚ୍ଚଶିକ୍ଷାପାଇଁ କଟକ ରେଭେନ୍‌ସା କଲେଜକୁ ଆସିଲେ । ସେତେବେଳେ ଓଡ଼ିଶାରେ ଏହା ଏକମାତ୍ର ମହାବିଦ୍ୟାଳୟ ଥିଲା । କଲେଜରେ ନାମ ଲେଖାଇବା ପୂର୍ବରୁ ପ୍ରବେଶିକା ପରୀକ୍ଷା ଦେବାକୁ ପଡୁଥିଲା। ଅନନ୍ତ ପ୍ରସାଦ ମଧ୍ୟ ଏହି ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ସେ ପ୍ରଥମେ ଆଇ.ଏସ୍‌ସି. ଶ୍ରେଣୀରେ ନାମ ଲେଖାଇଲେ । ମାତ୍ର କଳାପ୍ରାଣ ଅନନ୍ତ ପ୍ରସାଦଙ୍କ ବିଜ୍ଞାନ ପଢ଼ିବାକୁ ଇଚ୍ଛା ହେଲା ନାହିଁ । ସେ ବିଜ୍ଞାନ ଛାଡ଼ି କଳା ଶ୍ରେଣୀରେ ନାମ ଲେଖାଇଲେ ।

କଟକରେ ପଢ଼ିବା ସମୟରେ ଅନନ୍ତ ପ୍ରସାଦ ପୂର୍ବ-ଛାତ୍ରାବାସରେ ରହୁଥିଲେ । ସେହି ହଷ୍ଟେଲରେ ବିଭିନ୍ନ ପିଲାଙ୍କପାଇଁ ବିଭିନ୍ନ ମେସ୍‌ର ବ୍ୟବସ୍ଥା ଥିଲା । ବାଲେଶ୍ୱର ଜିଲ୍ଲାର ପିଲାଙ୍କପାଇଁ ପୂର୍ବ ପାଖ ହଷ୍ଟେଲର ଦକ୍ଷିଣଦିଗର ତଳ ମହଲାଟି ଉଦ୍ଦିଷ୍ଟ ଥିଲା । ଅନନ୍ତ ପ୍ରସାଦ ସେହି ମେସ୍‌ରେ ରହିଲେ । ଏହାର ନିକଟବର୍ତ୍ତୀ ଥିଲା ମୟୂରଭଞ୍ଜ ଓ ପୁରୀ ମେସ୍ । ଏହି ତିନୋଟି ମେସ୍‌ର ପିଲାମାନେ ସୁବିଧାରେ ମିଳାମିଶା କରିପାରୁଥିଲେ । ପରବର୍ତ୍ତୀ କାଳରେ ଗୌରବ ଅର୍ଜନ କରିଥିବା

କାଳିନ୍ଦୀଚରଣ ଏହି ପୁରୀ ମେସ୍‌ରେ ରହୁଥିଲେ । ସେ ଉପର ଶ୍ରେଣୀରେ ପଢୁଥିଲେ । ତଥାପି ଦୁହିଁଙ୍କ ମଧ୍ୟରେ ପ୍ରଗାଢ଼ ବନ୍ଧୁତା ଥିଲା ।

ରେଭେନ୍‌ସା କଲେଜରେ ପୂର୍ବ-ଛାତ୍ରାବାସରେ 'ଜାଗରଣ' ନାମକ ଏକ ହାତଲେଖା ସାହିତ୍ୟ ପତ୍ରିକା ପ୍ରକାଶ ପାଉଥିଲା । ସେହି ପତ୍ରିକାରେ ଅନନ୍ତ ପ୍ରସାଦ ନିୟମିତ ଭାବେ ଲେଖୁଥିଲେ । ତାଙ୍କର ପ୍ରଥମ ଗଳ୍ପ 'ଅନ୍ତିମ ମିଳନ' ଏହି ହାତଲେଖା ପତ୍ରିକାରେ ପ୍ରକାଶ ପାଇଥିଲା । ଏହାପରେ ଅନନ୍ତ ପ୍ରସାଦ 'ଅତୃପ୍ତ ବାସନା' ନାମକ ଏକ ଗଳ୍ପ ଲେଖିଲେ । ସେତେବେଳକାର ପ୍ରତିଷ୍ଠିତ 'ଉତ୍କଳ ସାହିତ୍ୟ'ରେ ପ୍ରକାଶ କରିବାପାଇଁ ସେ ଆଶାୟୀ ନ ଥିଲେ । ସେତେବେଳେ କଟକରୁ ସାହିତ୍ୟିକ ଉପେନ୍ଦ୍ର ଦାସଙ୍କ ଉଦ୍ୟମରେ 'ବାରୁଣୀ' ନାମକ ପତ୍ରିକା ପ୍ରକାଶ ପାଉଥିଲା । ସେଥିରେ ନୂତନ ଲେଖକମାନଙ୍କ ଲେଖା ପ୍ରକାଶ ପାଉଥାଏ । ଅନନ୍ତ ପ୍ରସାଦ ତାଙ୍କ ଦ୍ୱିତୀୟ ଗଳ୍ପ 'ଅତୃପ୍ତ ବାସନା'କୁ ସେଥିରେ ପ୍ରକାଶପାଇଁ ଚାହିଁଲେ । ସେ ତାହାକୁ ଜଣେ ସହପାଠୀଙ୍କ ହାତେ 'ବାରୁଣୀ ସମ୍ପାଦକଙ୍କ ପାଖକୁ ପଠାଇ ଛୁଟିରେ ଗାଁକୁ ଗଲେ । ମାତ୍ର ତାଙ୍କର ଦ୍ୱିତୀୟ ଗଳ୍ପଟି 'ବାରୁଣୀ' ସମ୍ପାଦକଙ୍କ ପାଖେ ନ ପହଞ୍ଚି 'ଉତ୍କଳ ସାହିତ୍ୟ'ର ସମ୍ପାଦକ ବିଶ୍ୱନାଥ କରଙ୍କ ପାଖେ ପହଞ୍ଚିଲା । କର ମହାଶୟ ମଧ୍ୟ ସେ ଗଳ୍ପକୁ 'ଉତ୍କଳ ସାହିତ୍ୟ'ରେ ପ୍ରକାଶ କଲେ । ଅନନ୍ତ ପ୍ରସାଦ ଛୁଟିରୁ ଫେରି ତାଙ୍କ ଗଳ୍ପ ପ୍ରକାଶ ପାଇଥିବା ଦେଖିଲେ ଓ ବିଶ୍ୱନାଥ କରଙ୍କୁ ସାକ୍ଷାତ୍ କଲେ । ବିଶ୍ୱନାଥ କର ତାଙ୍କୁ କୁଣ୍ଡାଇ ପକାଇ କହିଲେ –

''ତମ ଲେଖାଟି ବେଶ୍ ଭଲ ହୋଇଛି । ଆହୁରି ଗଳ୍ପ ଲେଖ । ଆଜିକାଲି ଓଡ଼ିଆ ଭାଷାରେ କ୍ଷୁଦ୍ର ଗଳ୍ପ ଆଦୌ ନାହିଁ କହିଲେ ଚଳେ । ମୁଁ ତାକୁ 'ଉତ୍କଳ ସାହିତ୍ୟ'ରେ ପ୍ରକାଶ କରିବି ।''

ଅନନ୍ତ ପ୍ରସାଦଙ୍କ କହିବା ଅନୁଯାୟୀ ସେ ଏଥିରେ ଅତ୍ୟନ୍ତ ଉତ୍ସାହିତ ହୋଇ ପଡ଼ିଲେ । ସେ ତାଙ୍କର ପରବର୍ତ୍ତୀ ଗଳ୍ପ 'ବାସନା ତୃପ୍ତି' ଟି 'ଉତ୍କଳ ସାହିତ୍ୟ'କୁ ପ୍ରକାଶପାଇଁ ପଠାଇଲେ । ତାହା ମଧ୍ୟ ପରବର୍ତ୍ତୀ ସଂଖ୍ୟାରେ ପ୍ରକାଶ ପାଇଲା ।

ଅନନ୍ତ ପ୍ରସାଦଙ୍କ ନାଟକ ଦେଖିବାରେ ସଉକ ଥିଲା । ସେତେବେଳେ ବାସନ୍ତୀ ପେଣ୍ଡାଲରେ ବଙ୍ଗଳା ଥିଏଟର ପାର୍ଟି ବରାବର ନାଟକ ପ୍ରଦର୍ଶନ କରୁଥିଲେ । ଅନନ୍ତ ପ୍ରସାଦ କେତେ ଜଣ ଛାତ୍ରବନ୍ଧୁଙ୍କ ସହିତ ନିୟମିତଭାବେ ଘୋଡ଼ାଗାଡ଼ି କରି ଥିଏଟର ଦେଖିବାକୁ ଯାଉଥିଲେ । ପ୍ରାୟ ପ୍ରତ୍ୟେକ ନୂଆ ନାଟକ ସେ ଦେଖୁଥିଲେ । ଏହି ନାଟକ ଦେଖା ନିଶାରୁ ନାଟକ ଲେଖିବା ଇଚ୍ଛା ଜାଗ୍ରତ ହେଲା । ତାଙ୍କ ପାଖେ ଖଣ୍ଡେ ବଙ୍ଗଳା ରାଜସ୍ଥାନର ଇତିହାସ ପୁସ୍ତକ ଥିଲା । ସେ ସେଥିରୁ 'ତାରାବାଈ' ନାମକ ଗୋଟିଏ ଉପାଖ୍ୟାନକୁ ନାଟକ ରୂପ ଦେଲେ । ଏହି ନାଟକଟି ସେ ମଞ୍ଚସ୍ଥ କରାଇଥିଲେ

ବହୁ ପରେ - ସରକାରୀ ଚାକିରି କଲାପରେ । ସେ କେନ୍ଦ୍ରାପଡ଼ାରେ ସେକେଣ୍ଡ ଅଫିସରଭାବେ ଅବସ୍ଥାପିତ ଥିଲାବେଳେ ନାଟକଟିକୁ ମଞ୍ଚସ୍ଥ କରାଇଥିଲେ ।

ଅନନ୍ତ ପ୍ରସାଦ ଇଂରାଜୀରେ ଅନର୍ସ ସହିତ ବି.ଏ. ପାସ୍ କଲେ । ଏହାପରେ ଇଂରାଜୀରେ ଏମ୍.ଏ. ଓ ତା' ସହିତ ବି.ଏଲ୍. ପଢ଼ିବାପାଇଁ ରେଭେନ୍‌ସା କଲେଜରେ ନାମ ଲେଖାଇଲେ ।

**ବିବାହ**

ବି.ଏ. ପାସ୍ କରିବାପରେ ହିଁ ଅନନ୍ତ ପ୍ରସାଦଙ୍କ ବିବାହ ହେଲା ବାଲେଶ୍ୱର ସହରତଳି ସୁନହଟ ପାତ୍ରପଡ଼ା ଲୋକନାଥ ପତିଙ୍କ କନ୍ୟା ଶରତକୁମାରୀଙ୍କ ସହିତ । ଶ୍ୱଶୁର ଲୋକନାଥ ପତି ଥିଲେ ବାଲେଶ୍ୱର କଲେକ୍ଟର ଅଫିସରେ ନାଜର । ଅନନ୍ତ ପ୍ରସାଦଙ୍କ ପିତାଙ୍କ ସହିତ ତାଙ୍କର ଭଲ ପରିଚୟ ଥିଲା । ସେତେବେଳେ ଶରତକୁମାରୀଙ୍କ ବୟସ ପ୍ରାୟ ଦଶ ବର୍ଷ ଥିଲା । ସେ ସମୟରେ ବିବାହଯୋଗ୍ୟ ବୟସ ଥିଲା ମଧ୍ୟ ଦଶ ବର୍ଷ । ଅନନ୍ତ ପ୍ରସାଦଙ୍କ ପିତା ଏ ପ୍ରସ୍ତାବରେ ରାଜି ହେଲେ ।

ବିବାହ ପ୍ରସ୍ତାବରେ ଶ୍ୱଶୁର ରାଜି ଥିଲେ । କିନ୍ତୁ ତାଙ୍କ ଘରର ସ୍ତ୍ରୀଲୋକେ ଅନନ୍ତ ପ୍ରସାଦଙ୍କ ଗ୍ରାମ ପ୍ରାୟ ଦଶ କୋଶ କି ବାର କୋଶ ଦୂରରେ ଥିବାରୁ ବିରୋଧ କରିଥିଲେ । ସେହି ଦୂରତାର କଳନା କରିବାପାଇଁ ଶ୍ୱଶୁରଙ୍କୁ ରେଳଗାଡ଼ି ବା ଅନ୍ୟ କୌଣସି ଯାନବାହନର ଆଶ୍ରୟ ନ ନେଇ ଚାଲି ଚାଲି ଅନନ୍ତ ପ୍ରସାଦଙ୍କ ଗ୍ରାମକୁ ଯିବାକୁ ପଡ଼ିଥିଲା । ଏହା ଏକ ଅସାଧ ବ୍ୟାପାର ହୋଇଥିଲେ ମଧ୍ୟ ତାଙ୍କ ଶ୍ୱଶୁରଙ୍କୁ ଏହି କଷ୍ଟ ସ୍ୱୀକାର କରିବାକୁ ପଡ଼ିଥିଲା । ପାଦଚଲା ବାଟ ଜାଣିବା ପରେ ଘରର ସ୍ତ୍ରୀଲୋକମାନେ ରାଜି ହେଲେ ।

ବିବାହ ଦିନ ଗୋଟାଏ ତାମ୍‌ଜାନରେ ବସି ଛଅ ଜଣ ବେହେରାଙ୍କ କାନ୍ଧରେ ଚଢ଼ି ଅନନ୍ତ ପ୍ରସାଦ କନ୍ୟାଘରକୁ ଯାଇଥିଲେ । ଆଉ ଲୋକେ ଫୁଲଝାଡ଼ ଗିଲାସଝାଡ଼ ଧରି ଯାଇଥିଲେ । ଚାଲି ଚାଲି ରାତି ପାହିଗଲା । ଯାହାହେଉ, ବିବାହ ପରଦିନ ପହର ସରିକି ସେମାନେ କନ୍ୟା ଗାଁରେ ପହଞ୍ଚିଲେ । ବିବାହ ସରୁ ସରୁ ପ୍ରାୟ ଦ୍ୱିପ୍ରହର ହୋଇଗଲା । ସଞ୍ଜବେଳକୁ ବରଯାତ୍ରୀମାନେ ବୋହୂକୁ ସବାରିରେ ଧରି ଗ୍ରାମକୁ ଫେରିଲେ । ଘରେ ସାତ ଦିନ କଟାଇ ବୋହୂ ଶରତକୁମାରୀ ବାପଘରକୁ ଫେରିଯାଇଥିଲେ ।

**ସରକାରୀ ଚାକିରି**

ଅନନ୍ତ ପ୍ରସାଦ ଏମ୍.ଏ. ଓ ବି.ଏଲ୍. ପଢୁଥିଲାବେଳେ ସରକାରୀ ଡେପୁଟି ଓ ସବ୍‌ଡେପୁଟି ଚାକିରିପାଇଁ ବିଜ୍ଞାପନ ବାହାରିଲା । ସେତେବେଳକୁ ଅନନ୍ତ ପ୍ରସାଦଙ୍କୁ କୋଡ଼ିଏ ବର୍ଷ ମାତ୍ର ହୋଇଥାଏ । ସେ ଚାକିରିପାଇଁ ଦରଖାସ୍ତ ଦେବାକୁ ପ୍ରଥମେ ଅନିଚ୍ଛୁକ ଥିଲେ । ତେବେ ଜଣେ ସାଥୀଙ୍କଠାରୁ ଦରଖାସ୍ତ ଫର୍ମଟିଏ ଆଣି ସେଥିରେ

ପୂରଣ କରି ଅଫିସ୍‌ରେ ଦେଲେ । ପ୍ରଥମେ ବାଲେଶ୍ୱର ଜିଲ୍ଲାରୁ ଯେଉଁମାନେ ଦରଖାସ୍ତ କରିଥିଲେ, ସେମାନଙ୍କୁ ଜିଲ୍ଲା କଲେକ୍ଟର ଜନଷ୍ଟନ୍ ସାହେବ ଦେଖା କରିବାକୁ ଡକାଇଲେ । ସେ ଅନନ୍ତ ପ୍ରସାଦଙ୍କୁ ବାଛି କମିସନର ସାହେବଙ୍କ ସହ ସାକ୍ଷାତ୍‌ପାଇଁ ପଠାଇଲେ । କମିସନର ଥିଲେ ହବାକ୍ ସାହେବ । ସେ ପ୍ରଥମେ ତାଙ୍କୁ ପାଠ୍ୟପୁସ୍ତକରୁ କେତେକ ପ୍ରଶ୍ନ ପଚାରିଲେ । ଅନନ୍ତ ପ୍ରସାଦ ତା'ର ଯଥାଯଥ ଉତ୍ତର ଦେଲେ । କମିସନର ତାଙ୍କୁ ବୟସ ମାତ୍ର କୋଡ଼ିଏ ବର୍ଷ ହୋଇଥିବା କଥା କହିଲେ । ମାତ୍ର ଜନଷ୍ଟନ୍ ସାହେବ ଆଇନ ଦୃଷ୍ଟିରୁ କୋଡ଼ିଏ ବର୍ଷ ହୋଇଥିବା ଆବଶ୍ୟକ ବୋଲି କହନ୍ତେ, ହବାକ୍ ସାହେବ ରାଜିହେଲେ । ସେଥିରେ ମଧ୍ୟ ସେ ବଛା ହେଲେ । ଶେଷରେ ପାଟଣାରେ ରେଭିନ୍ୟୁ ବୋର୍ଡରେ ସାକ୍ଷାତ୍‌କାରପାଇଁ ତାଙ୍କୁ ଡକାଗଲା । ସେଠି ମଧ୍ୟ ସେ ପ୍ରଶ୍ନଗୁଡ଼ିକର ଯଥାଯଥ ଉତ୍ତର ଦେଲେ । ମାତ୍ର ପୂର୍ବ ଭଳି ତାଙ୍କୁ କୋଡ଼ିଏ ବର୍ଷ ହୋଇଥିବା ଦୃଷ୍ଟିରୁ ଅପେକ୍ଷା କରିବାକୁ ରେଭିନ୍ୟୁ ବୋର୍ଡ ସଭାପତି ହାମଣ୍ଡ ସାହେବ କହିଲେ । ମାତ୍ର ଇଂଲଣ୍ଡର ପିଟ୍ ଦି. ୟଙ୍ଗ୍ ଅଳ୍ପ ବୟସରେ ଇଂଲଣ୍ଡର ପ୍ରଧାନମନ୍ତ୍ରୀ ଭାବେ ନିର୍ବାଚିତ ହୋଇଥିଲେ ଓ ଦକ୍ଷତାର ସହିତ କାର୍ଯ୍ୟ କରିଥିବାବେଳେ ଆଇନ ନିର୍ଦ୍ଧାରିତ କୋଡ଼ିଏ ବର୍ଷ ଅତିକ୍ରମ କରିଥିବା ଓ ଅନ୍ୟଥା ଉପଯୁକ୍ତ ବିବେଚିତ ହୋଇଥିବାବେଳେ କମ୍ ବୟସ ଯୋଗୁଁ ବାଦ୍ ପଡ଼ିବେ କାହିଁକି ବୋଲି ଅନନ୍ତ ପ୍ରସାଦ ଜବାବ ଦେଲେ । ଅନନ୍ତ ପ୍ରସାଦଙ୍କ ଜବାବ ସମସ୍ତଙ୍କ ମନକୁ ଛୁଇଁଲା । ସେ ଅଳ୍ପଦିନ ପରେ ସବ୍‌ଡେପୁଟି କଲେକ୍ଟର ଭାବେ ନିଯୁକ୍ତି ପାଇଲେ । ୧୯୨୭ ମସିହା ଜାନୁଆରୀ ମାସ ୧୦ ତାରିଖରେ ସେ ବାଲେଶ୍ୱର ଜିଲ୍ଲାର କଲେକ୍ଟରଙ୍କ କାର୍ଯ୍ୟାଳୟରେ ସବ୍‌ଡେପୁଟି ଭାବେ ଯୋଗ ଦେଲେ । ମାସକୁ ଦରମା ଥିଲା ୧୦୦ ଟଙ୍କା ।

ଅନନ୍ତ ପ୍ରସାଦଙ୍କୁ ଭଦ୍ରକ ସବ୍‌ଡିଭିଜନର ଦୁର୍ଭିକ୍ଷ ପ୍ରପୀଡ଼ିତ କନିକା ଅଞ୍ଚଳକୁ ରିଲିଫ୍ ଅଫିସରଭାବେ ବଦଳି କରାଗଲା । ସେ ଖେରଙ୍ଗ ଡାକବଙ୍ଗଳାରେ କ୍ୟାମ୍ପ ପକାଇଲେ । ସେଠାରେ ରହି ଦୁର୍ଭିକ୍ଷ ପ୍ରପୀଡ଼ିତ ସ୍ଥାନମାନଙ୍କରେ ଚୁଡ଼ା, ଚାଉଳ ବାଣ୍ଟିବା ତାଙ୍କର କାମ ହେଲା ।

ଜିଲ୍ଲା କଲେକ୍ଟର ଜନଷ୍ଟନ୍ ସାହେବ ଥିଲେ ଉଦାର ହୃଦୟ ଓ ଦୟାଳୁ ବ୍ୟକ୍ତି । ଲୋକମାନଙ୍କ ଦୁଃଖ-ଦୁର୍ଦ୍ଦଶା ଦେଖିଲେ ତାଙ୍କ ହୃଦୟ ଦୟାର୍ଦ୍ର ହୋଇଯାଉଥିଲା । ସେତେବେଳକାର ଜିଲ୍ଲାବୋର୍ଡ଼ ଚେୟାରମ୍ୟାନ ହରେକୃଷ୍ଣ ମହତାବ ଦୁର୍ଭିକ୍ଷ ପ୍ରପୀଡ଼ିତ ଅଞ୍ଚଳ ପରିଦର୍ଶନ କରିବାକୁ ଆସୁଥିଲେ । ସେମାନେ ଅନନ୍ତ ପ୍ରସାଦଙ୍କ କାର୍ଯ୍ୟକୁ ଖୁବ୍ ପ୍ରଶଂସା କରୁଥିଲେ । ପରବର୍ତ୍ତୀ ଜିଲ୍ଲା କଲେକ୍ଟର ୱାର୍ଡ଼ ସାହେବ ମଧ୍ୟ ଅନନ୍ତ ପ୍ରସାଦଙ୍କ କାର୍ଯ୍ୟକୁ ପ୍ରଶଂସା କରିଥିଲେ । ଏହାପରେ ଅନନ୍ତ ପ୍ରସାଦଙ୍କୁ ବାଲେଶ୍ୱର ଜିଲ୍ଲାର ବାସୁଦେବପୁର ଥାନାର ମନ୍ତେଇ ନଈକୂଳରେ ଥିବା ଚାରିବାଟିଆ କ୍ୟାମ୍ପକୁ ପଠାଗଲା ।

ଅନନ୍ତ ପ୍ରସାଦ ଚାରିବାଟିଆ ଡାକବଙ୍ଗଳାର ବାରଣ୍ଡାରେ ରହି ମନ୍ତେଇ ନଈର କୁଆରଭଙ୍ଗା ଦେଖି ଆନନ୍ଦ ଲାଭ କଲେ । ସେଇଠି ଥିଲାବେଳେ ସେ 'ଭାଗ୍ୟଚକ୍ର' ଉପନ୍ୟାସ ରଚନା ଆରମ୍ଭ କଲେ ।

ଚାରିବାଟିଆରେ ଥିଲାବେଳେ ମହାତ୍ମାଗାନ୍ଧୀ ଚାରିବାଟିଆ ଡାକବଙ୍ଗଳାର ଅନ୍ୟ ପାଖ କୋଠରିରେ ଅବସ୍ଥାନ କରୁଥିଲେ । ଓଡ଼ିଶାରେ ଦୁର୍ଭିକ୍ଷ ଅଞ୍ଚଳ ବୁଲି ଦେଖିବା ତାଙ୍କର ଉଦ୍ଦେଶ୍ୟ ଥିଲା । ତାଙ୍କ ସହିତ ଥିଲେ ତାଙ୍କର ସେବାକାରିଣୀ ପାଶ୍ଚାତ୍ୟ ମହିଳା ମିସ୍ ମୀରା ବେନ୍ । ଅନନ୍ତ ପ୍ରସାଦଙ୍କର ଦୁଆର ଫିଟାଇ ଗାନ୍ଧିଜୀ ରହୁଥିବା କୋଠରିକୁ ଯାଇ ଦର୍ଶନ କରିବାକୁ ମନ ଉଚ୍ଚାଟ ହେଉଥିଲା । ମାତ୍ର ପୁଲିସ୍ ପହରା ଓ ବହୁ ହାକିମହୁକୁମାଙ୍କର ଉପସ୍ଥିତି ଯୋଗୁଁ ସେ ମହାତ୍ମାଗାନ୍ଧୀଙ୍କୁ ଦେଖିବାକୁ ଯିବାଲାଗି ସାହସ କରିପାରି ନ ଥିଲେ । ସେ ଆତ୍ମଜୀବନୀରେ ତାଙ୍କର ପ୍ରତିକ୍ରିୟା ନିଷ୍କପଟ ଅଥଚ ସ୍ପଷ୍ଟ ଭାବେ ଉଲ୍ଲେଖ କରିଛନ୍ତି – ''ମୁଁ ଯଦି ଯାଇ ମହାତ୍ମା ଗାନ୍ଧୀଙ୍କୁ ମୁଣ୍ଡିଆ ମାରେ ହୁଏତ ମୋ ନାଁରେ ପୋଲିସ ରିପୋର୍ଟ ଦେବ । ଫଳରେ ଚାକିରି ଚାଲିଯାଇପାରେ । ଏହିପରି କେତେକ କୋକୁଆଭୟ ମୋତେ ଘାରି ପକାଇଲା । ଏତେ ପାଖରେ ଥାଇ ସୁଦ୍ଧା ମୁଁ ମହାତ୍ମା ଗାନ୍ଧୀଙ୍କ ପାଖକୁ ଯାଇ ମୁଣ୍ଡିଆଟିଏ ମାରିପାରିଲି ନାହିଁ × × × ପାଖକୁ ଯାଇପାରି ନ ଥିଲେ ମଧ୍ୟ ଦୂରରୁ ଥାଇ ମୋର ଅନ୍ତରର ଭକ୍ତିଭରା ଶ୍ରଦ୍ଧାଞ୍ଜଳି ତାଙ୍କରି ଚରଣ ତଳେ ଅଜାଡ଼ି ଦେଇଥିଲି ।''

ଅନନ୍ତ ପ୍ରସାଦ ବାଲେଶ୍ୱର ଜିଲ୍ଲାର ସଦର ମହକୁମାକୁ ବଦଳି ହେଲେ । ସେ ବାଲେଶ୍ୱର ମ୍ୟୁନିସିପାଲିଟିରେ ରହି ଟିକସ ଜମାବନ୍ଦି କରାଇଲେ ।

**କଟକ ବଦଳି**

ସେହି ସମୟରେ ଓଡ଼ିଶାର ଗାଁ-ଗଣ୍ଡାରେ ବନ୍ଦୋବସ୍ତ କାମ ଚାଲିଥାଏ । ଅନନ୍ତ ପ୍ରସାଦଙ୍କୁ କଟକ ବନ୍ଦୋବସ୍ତ ଅଫିସରେ ଆଠ ମାସ ବନ୍ଦୋବସ୍ତ କାମରେ ରହିବାକୁ ପଡ଼ିଲା । ଏହାପରେ ବାଲେଶ୍ୱର ଜିଲ୍ଲାର ସେକେଣ୍ଡ ଅଫିସରଭାବେ ବଦଳି ହେଲେ । ସେ ଭଦ୍ରକର ସେକେଣ୍ଡ ଅଫିସରଭାବେ ଦାୟିତ୍ୱ ଗ୍ରହଣ କଲେ ।

**ଭଦ୍ରକ ଅବସ୍ଥାନ**

ଭଦ୍ରକରେ ସେକେଣ୍ଡ ଅଫିସର ଥିଲାବେଳେ ମହାତ୍ମା ଗାନ୍ଧୀଙ୍କ ପ୍ରସିଦ୍ଧ ପଦଯାତ୍ରା ପୁରୀରୁ ଆରମ୍ଭ ହେଲା । ଭଦ୍ରକରେ ମଧ୍ୟ ମହାତ୍ମା ଗାନ୍ଧୀଙ୍କ କ୍ୟାମ୍ପ ପଡ଼ିଲା । ସରକାରଙ୍କ କଡ଼ା ଆଇନ ଯୋଗୁଁ ଅନନ୍ତ ପ୍ରସାଦ ଦ୍ୱିତୀୟ ଥର ମଧ୍ୟ ମହାତ୍ମା ଗାନ୍ଧୀଙ୍କ ଦର୍ଶନ ଲାଭ କରିପାରି ନ ଥିଲେ ।

ଭଦ୍ରକରେ ଥିଲାବେଳେ ତାଙ୍କର ପ୍ରଥମ ଗଳ୍ପ ପୁସ୍ତକ 'ତୃଣ ଗୁଚ୍ଛ' ପ୍ରକାଶିତ ହେଲା । ସେହି ଭଦ୍ରକରେ ତାଙ୍କର ପ୍ରଥମ ସନ୍ତାନ ଶ୍ରୀକାନ୍ତ ଓ ଦୁଇ କନ୍ୟା ଉଷାରାଣୀ

ଓ ଶୋଭାରାଣୀଙ୍କର ଜନ୍ମ ହେଲା । ଭଦ୍ରକ ଅବସ୍ଥାନ ବହୁ ଦିଗରୁ ସ୍ମରଣୀୟ ହୋଇଥିଲା ବୋଲି ଅନନ୍ତ ପ୍ରସାଦ ତାଙ୍କ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି ।

### ବରଗଡ଼ ବଦଳି

ଅନନ୍ତ ପ୍ରସାଦ ଭଦ୍ରକରୁ ସମ୍ବଲପୁର ଜିଲ୍ଲାର ବରଗଡ଼କୁ ବଦଳି ହେଲେ ।

ବରଗଡ଼ରେ ତହସିଲଦାର ଥିବା ସମୟରେ ସେ ଅଞ୍ଚଳରେ ବିଶେଷ ଜନପ୍ରିୟ ହୋଇପାରିଥିଲେ । ସେ ମଧ୍ୟ ବରଗଡ଼ ଅଧିବାସୀଙ୍କର ସରଳ ଜୀବନଯାତ୍ରା ପ୍ରଣାଳୀରେ ମୁଗ୍ଧ ହୋଇପଡ଼ିଥିଲେ । ସେ ବହୁବାର ସ୍ୱଭାବକବି ଗଙ୍ଗାଧର ମେହେରଙ୍କ ଜନ୍ମସ୍ଥଳୀ ବରପାଲି ଗ୍ରାମକୁ ଯାଇଥିଲେ । ସେଠାରେ ସ୍ଥାନୀୟ ବ୍ୟକ୍ତିଙ୍କ ଠାରୁ ଚାନ୍ଦା ସଂଗ୍ରହ କରି ଗଙ୍ଗାଧର ମେହେରଙ୍କର ଗୋଟିଏ ସ୍ମୃତି ସ୍ତମ୍ଭ ନିର୍ମାଣ କରାଇଥିଲେ । ଅଦ୍ୟାବଧି ସେହି ସ୍ମୃତିସ୍ତମ୍ଭଟି ରହିଅଛି ।

### କେନ୍ଦ୍ରାପଡ଼ା ବଦଳି

ବରଗଡ଼ରେ କିଛି କାଳ ରହିଲା ପରେ ପାରିବାରିକ ଅସୁବିଧା ଓ ଉପରିସ୍ଥ ଅଫିସରଙ୍କ ସହିତ ମତାନ୍ତର ଯୋଗୁଁ ସେ ସେଠାରେ ରହିବାକୁ ଚାହିଁ ନ ଥିଲେ । ସେ ଓଡ଼ିଶା ଡିଭିଜନର କମିସନରଙ୍କୁ ଭେଟି ନିଜର ଅସୁବିଧା ଜଣାଇବାରୁ ସେ କଟକ ବଦଳି ହୋଇ ଆସିଲେ । ସେହି ସମୟରେ ତାଙ୍କର ନାଟକ 'ତାରାବାଈ' ଓ ପ୍ରଥମ ଉପନ୍ୟାସ 'ଭାଗ୍ୟଚକ୍ର' ପ୍ରକାଶ ପାଇଲା । ମାତ୍ର ସାତ ଆଠ ମାସ ରହିବା ପରେ ତାଙ୍କର କେନ୍ଦ୍ରାପଡ଼ାକୁ ବଦଳି ହେଲା ।

କେନ୍ଦ୍ରାପଡ଼ାରେ ଥିଲାବେଳେ ଅନନ୍ତ ପ୍ରସାଦ 'ତୁଳସୀ' ନାମକ ନାଟକ ରଚନା କଲେ । ସେଥିରେ କେନ୍ଦ୍ରାପଡ଼ାର ପ୍ରସିଦ୍ଧ ଠାକୁର ବଳଦେବଜୀ 'ତୁଳସୀ' ନାଟକର ନାୟକ ଭାବେ ଆତ୍ମପ୍ରକାଶ କରିଥିଲେ । ଅନନ୍ତ ପ୍ରସାଦ ମଧ୍ୟ Indian P.E.N. ର ସଭ୍ୟ ହୋଇଥିଲେ । ତାଙ୍କର କେତେକ ଲେଖା ଏହି P.E.N. ରେ ପ୍ରକାଶ ପାଇଥିଲା ।

କୁଟୀର ଶିଳ୍ପର ଅଭିବୃଦ୍ଧିପାଇଁ କେନ୍ଦ୍ରାପଡ଼ାରେ ଗୋଟିଏ କୁଟୀରଶିଳ୍ପ ପ୍ରତିଷ୍ଠାନ ସ୍ଥାପନ ଥିଲା ଅନନ୍ତ ପ୍ରସାଦଙ୍କର ଏକ ଉଲ୍ଲେଖଯୋଗ୍ୟ କାର୍ଯ୍ୟ ।

ପ୍ରାୟ ତିନି ବର୍ଷ ରହିବାପରେ ଅନନ୍ତ ପ୍ରସାଦ ଗଞ୍ଜାମ ଜିଲ୍ଲାର ଆସିକାକୁ ତହସିଲଦାର ଭାବେ ବଦଳି ହେଲେ ।

### ଆସିକା ଅବସ୍ଥାନ

ଆସିକା ତାଲୁକର ତହସିଲଦାର ଭାବରେ ଅନନ୍ତ ପ୍ରସାଦ ହେଲେ ସେଠାର ସର୍ବେସର୍ବା । ଫୌଜଦାରୀ ମକଦ୍ଦମାରୁ ଆରମ୍ଭ କରି ଯାବତୀୟ ଜମିଜମା ସଂକ୍ରାନ୍ତୀୟ ବିଷୟ ତାଙ୍କୁ ବୁଝିବାକୁ ପଡ଼ିଲା । ମାନ୍ଦ୍ରାଜ ପ୍ରଥା ଅନୁସାରେ ଆଗରୁ

ଯେଉଁ ତହସିଲଦାରମାନେ ଥିଲେ, ସେମାନଙ୍କ ପାଖକୁ ସାଧାରଣ ଲୋକେ ଯାଇପାରୁ ନ ଥିଲେ । ଅଫିସର କର୍ମଚାରୀ (ଗୁମାସ୍ତା) ମାନଙ୍କ ଜରିଆରେ ଯାହା କିଛି ଆବେଦନ କରିପାରୁଥିଲେ । ଫଳରେ ଲାଞ୍ଚ ଗୋଟିଏ ଧରାବନ୍ଧା ପ୍ରଥାରେ ପରିଣତ ହୋଇଥିଲା । ଅନନ୍ତ ପ୍ରସାଦ ତହସିଲଦାର ଭାବେ ଯୋଗଦେବାପରେ ଏହି ପ୍ରଥାକୁ ବଦଳାଇ ଦେଲେ । ତାଙ୍କ ପାଖକୁ ଜନସାଧାରଣଙ୍କୁ ସିଧାସଳଖ ଆସିବାର ବ୍ୟବସ୍ଥା କଲେ । ଗାଁ ଗାଁ ବୁଲି ଲୋକମାନଙ୍କର ପ୍ରତ୍ୟକ୍ଷ ସମ୍ପର୍କରେ ଆସିଲେ । ଫଳରେ ସେ ଅଞ୍ଚଳରେ ସେ ଲୋକପ୍ରିୟ ହୋଇପାରିଲେ ।

ଆସିକା ଅଞ୍ଚଳ ଗସ୍ତ ସମୟରେ ଅନନ୍ତ ପ୍ରସାଦ ଦିନେ ଗୋଟିଏ ପର୍ବତ ଉପରେ ଦ୍ୱୀପାକୃତି ପଥର ଦେଖିଲେ । ଲୋକଙ୍କଠାରୁ ତା'ର ନାମ 'ମାଳତୀଗଡ଼' ବୋଲି ଜାଣିବାକୁ ପାଇଲେ । ତା' ଉପରେ ଲେଖିଲେ ଗୋଟିଏ ଗଳ୍ପ – 'ମାଳତୀଗଡ଼ର ଦ୍ୱୀପ' । ଏହା 'ସହକାର'ରେ ପ୍ରକାଶ ପାଇଥିଲା ।

ଆସିକାରେ ଅନନ୍ତ ପ୍ରସାଦଙ୍କ ପିତାମାତା ଓ ପରିବାର ରହୁଥିଲେ । ସେଇଠି ସୀତାଦେବୀ ଖାଡ଼ଙ୍ଗା ନାମକ ଜଣେ ମହିଳା କବିଙ୍କ ସହ ତାଙ୍କର ପରିଚୟ ହେଲା । ସେ କେତୋଟି କବିତା ରଚନା କରି ଅନନ୍ତ ପ୍ରସାଦଙ୍କ ସ୍ତ୍ରୀଙ୍କ ଜରିଆରେ ଦେଖାଇଲେ । ଅନନ୍ତ ପ୍ରସାଦ ଲେଖିକାଙ୍କ ପ୍ରତିଭାର ସ୍ପଷ୍ଟ ପରିଚୟ ପାଇ ଖଣ୍ଡିଏ ଚିଠି ଲେଖି ଯଥେଷ୍ଟ ପ୍ରଶଂସା କଲେ । ସେହିଦିନଠାରୁ ସୀତାଦେବୀ ଖାଡ଼ଙ୍ଗାଙ୍କ ସଙ୍ଗେ ତାଙ୍କର ବନ୍ଧୁତା ହେଲା । ତାହା କ୍ରମେ ନିଗୂଢ଼ ଘନିଷ୍ଠତାରେ ପରିଣତ ହେଲା । ସେ ସୀତାଦେବୀଙ୍କ କେତୋଟି କ୍ଷୁଦ୍ର ଗଳ୍ପ ମଧ୍ୟ 'ସହକାର'ରେ ପ୍ରକାଶ କରାଇଲେ । ଫଳରେ ସୀତାଦେବୀଙ୍କ କବି ପ୍ରତିଭା ବିକଶିତ ହେଲା । ସେ କ୍ରମେ ଅନନ୍ତ ପ୍ରସାଦଙ୍କ ସାହିତ୍ୟ ସାଥି ହେଲେ । ଫଳରେ ତାଙ୍କର ସାହିତ୍ୟ ସାଧନାର ପଥ ସୁଗମ ହୋଇଉଠିଥିଲା ବୋଲି ଅନନ୍ତ ପ୍ରସାଦ ତାଙ୍କ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି ।

ଗଞ୍ଜାମ ଜିଲ୍ଲାର ପୋଲସରା ଗ୍ରାମରେ ବନ୍ଦୋବସ୍ତ କାର୍ଯ୍ୟରେ ନିୟୋଜିତ ଥିଲାବେଳେ ଜଣେ ପଲ୍ଲୀକବିଙ୍କ ସଙ୍ଗେ ଅନନ୍ତ ପ୍ରସାଦଙ୍କ ପରିଚୟ ହେଲା । ତାଙ୍କର ନାମ ଥିଲା ନୀଳକଣ୍ଠ ପଟ୍ଟନାୟକ । ସେ ତାଙ୍କ ରଚିତ 'ତରୁଣ ତାପ' ନାମକ କ୍ଷୁଦ୍ର କବିତା ପୁସ୍ତକ ଭେଟି ଦେଇଥିଲେ । ତାଙ୍କ କବିତାଗୁଡ଼ିକ ପଢ଼ି ସେ ଗଭୀର ଭାବରେ ଅନୁପ୍ରାଣିତ ହୋଇ କବିତା ଲେଖିବାକୁ ଆରମ୍ଭ କଲେ ।

ଗଞ୍ଜାମର ଖଲିକୋଟରେ ଅନନ୍ତ ପ୍ରସାଦ ଓଡ଼ିଆ ପାଇକମାନଙ୍କର ଯୁଦ୍ଧ ନାଚ ଦେଖିବାର ସୁଯୋଗ ପାଇଥିଲେ । ଗୋଡ଼ରେ ଘୁଙ୍ଗୁର, କଟିରେ କିଙ୍କିଣୀ, ବାହୁ ଓ ମାଣିବନ୍ଧରେ କବଚ, ହାତରେ ଖଣ୍ଡା ଓ ଅନ୍ୟ ହାତରେ ଢାଲ ପ୍ରଭୃତି ଥାଇ ଯେଉଁ ଯୁଦ୍ଧ ନାଚ ଦେଖାଇଲେ, ସେଥିରେ ସେ ଆତ୍ମହରା ହୋଇଉଠିଥିଲେ । ବିଭିନ୍ନ ଗ୍ରାମରୁ ଦଳ ଦଳ ପାଇକ ଆସି ସେମାନଙ୍କର ନାଚ ତଥା ଯୁଦ୍ଧକୌଶଳ ତାଙ୍କୁ ଦେଖାଇଯାଉଥିଲେ ।

ଗଞ୍ଜାମ ଜିଲ୍ଲାର ଦୁଇଟି ଗ୍ରାମର ପାଇକମାନଙ୍କର ନିଷ୍କର ଜମି ଉପରେ ଖଲିକୋଟ ରାଜା ବନ୍ଦୋବସ୍ତରେ ଅତ୍ୟଧିକ ଖଜଣା ଧାର୍ଯ୍ୟ କରିଥିବାରୁ ମକଦ୍ଦମା ହୋଇଥିଲା । ଉପରୋକ୍ତ ମକଦ୍ଦମାର ବିଚାରପାଇଁ ଅନନ୍ତ ପ୍ରସାଦଙ୍କ ପାଖକୁ ଆସିଲା । ବ୍ରହ୍ମପୁର ଓକିଲମାନେ ଆସି ରାଜାଙ୍କପାଇଁ ଲଢ଼ିଲେ । କିନ୍ତୁ ବହୁ ପୁରୁଣା କାଗଜରୁ ସେ ଗ୍ରାମଟି ପାଇକମାନଙ୍କୁ ଇନାମ ସ୍ୱରୂପ ଦିଆଯାଇଥିବା କଥା ଅନନ୍ତ ପ୍ରସାଦ ଜାଣିବାକୁ ପାଇଲେ । ତା' ଉପରେ ନିର୍ଭର କରି ରାଜାଙ୍କ ଦାବି ଡିସମିସ୍ କରିଦେଲେ । ଫଳରେ ଅନନ୍ତ ପ୍ରସାଦ ରାଜାଙ୍କ କୋପ ଦୃଷ୍ଟିରେ ପଡ଼ିଲେ । ତାଙ୍କୁ ବଦଳି କରାଗଲା ପୁଣି ସମ୍ବଲପୁର ଜିଲ୍ଲାର ବରଗଡ଼କୁ ।

**ପୁନଶ୍ଚ ବରଗଡ଼**

ବରଗଡ଼ରେ ଅନନ୍ତ ପ୍ରସାଦ ସେକେଣ୍ଡ ଅଫିସରଭାବେ ଯୋଗ ଦେଲେ । ସେ ରହୁଥିବା ଘରର ସମ୍ମୁଖରେ ବଲାଙ୍ଗୀର ସମ୍ବଲପୁର ରାସ୍ତା ଲମ୍ବି ଯାଇଥାଏ । ପୂର୍ବରୁ ସେ ତହସିଲଦାର ଭାବେ ଅବସ୍ଥାପିତ ଥିବା ବେଳେ ସେହି ରାସ୍ତାରେ ଶହ ଶହ ସଂଖ୍ୟାରେ ବଳଦଗାଡ଼ି ଚାଲୁଥିବାର ଦେଖିଥିଲେ । ପ୍ରତ୍ୟେକ ଶଗଡ଼ଗାଡ଼ି ତଳେ ଛୋଟ ଲଣ୍ଠନଟି ମାନ ଟଙ୍ଗା ହୋଇଥାଏ । ସେହି ବଳଦଗାଡ଼ି ତଳେ ବନ୍ଧାଥିବା ଲଣ୍ଠନର ଆଲୁଅ ବରଗଡ଼ ସହରରେ ଅପୂର୍ବ ଶୋଭାର ସମ୍ଭାର ସୃଷ୍ଟି କରୁଥିଲା । ଅସଂଖ୍ୟ ବଳଦଗାଡ଼ିର କେଁ-କଟର ଶବ୍ଦ ମଧ୍ୟ ଅପୂର୍ବ ସଙ୍ଗୀତର ଝଙ୍କାର ସୃଷ୍ଟି କରୁଥିଲା । ସେକେଣ୍ଡ ଅଫିସର ଭାବେ ବରଗଡ଼ରେ ଯୋଗ ଦେବାପରେ ଗୋଟିଏ ଶଗଡ଼ର ସତ୍ତା ପାଇଲେ ନାହିଁ । ତା' ପରିବର୍ତ୍ତେ ସଡ଼କରେ ବିରାଟକାୟ ଲୌହଦାନବ ଟ୍ରକ ବା ଲରୀ ଦେଖି ତାଙ୍କ ମନ ବିଷାଦଗ୍ରସ୍ତ ହୋଇପଡ଼ିଲା । ତାଙ୍କ ମନରେ କେତେ ପ୍ରଶ୍ନ ଉଙ୍କି ମାରିଲା – ''ତେବେ ସେ ଶଗଡ଼ିଆଗୁଡ଼ିକ ଗଲେ କୁଆଡ଼େ ?'' ତାଙ୍କ ମନର ପ୍ରଶ୍ନ ଲେଖନୀ ମୁନରେ ସୃଷ୍ଟି କଲା ଏକ ଅପରୂପ ଗଳ୍ପ ସାହିତ୍ୟ – 'ଶଗଡ଼' ।

'ଶଗଡ଼' ଗଳ୍ପଟି ଓଡ଼ିଶାର ପ୍ରଖ୍ୟାତ ସାହିତ୍ୟ ପତ୍ରିକା 'ସହକାର'ରେ ପ୍ରକାଶ ପାଇଲା । ତା'ପରେ ଦିନେ ହଠାତ୍ ସେ ଗୋଟିଏ ପୋଷ୍ଟକାର୍ଡ଼ ପାଇଲେ । ତାକୁ ଲେଖିଥିଲେ ଓଡ଼ିଶାର କବିବର ରାଧାନାଥ ରାୟଙ୍କ ସୁସାହିତ୍ୟିକ ସୁଲେଖକ ପୁତ୍ର–ଶଶିଭୂଷଣ ରାୟ । ଚିଠିରେ ଲେଖାଥିଲା – ''ଗତ ସଂଖ୍ୟା 'ସହକାର'ରେ ଭବଦୀୟ ଅମୃତୋପମ ରଚନା 'ଶଗଡ଼'କୁ ...... ଚାରି ଥର ପାଠ କରି ସୁଦ୍ଧା ତୃପ୍ତ ହୋଇପାରିଲି ନାହିଁ । ମୋର ଆନନ୍ଦ ଏହାଠାରୁ ଭଲ ଭାବରେ ପ୍ରକାଶ କରିବାର ଶକ୍ତି ନାହିଁ ବୋଲି ଲଜ୍ଜିତ ...। ଭବଦୀୟ ଲେଖନୀ ଉପରେ ଫୁଲଚନ୍ଦନ ବୃଷ୍ଟି ହେଉ ।''

ସମ୍ମାନାସ୍ପଦ ଶଶିଭୂଷଣ ରାୟଙ୍କ ଶୁଭାଶିଷ ସମ୍ବଳିତ ପତ୍ରଟି ସାହିତ୍ୟସାଧନା ପଥରେ ତାଙ୍କୁ ଯଥେଷ୍ଟ ଉତ୍ସାହ ଦେଇଥିଲା ଓ ଆଗେଇ ନେଇଥିଲା ବୋଲି ଅନନ୍ତ ପ୍ରସାଦ ନିଜେ ସ୍ୱୀକାର କରିଛନ୍ତି ।

ବରଗଡ଼ରେ ରହିଥିଲାବେଳେ ଅନନ୍ତ ପ୍ରସାଦ ଭାଗ୍ୟବାଦୀ ହୋଇପଡ଼ିଲେ । ସେଇ ସର୍ବନିୟନ୍ତାଙ୍କ ପାଖେ ସେ ନିଜକୁ ସମର୍ପଣ କରିଦେଲେ । ପ୍ରଜାଙ୍କ ପକ୍ଷରେ ନ୍ୟାୟ ବିଚାର କରିବା ଫଳସ୍ୱରୂପ ଯେପରି ସୁଦୂର ବରଗଡ଼କୁ ତାଙ୍କୁ ବଦଳି କରାଗଲା, ସେଥିରେ ସେ ହତାଶ ହୋଇପଡ଼ିଥିଲେ । ମାତ୍ର ସେହି ହତାଶା ବା ନିରାଶାକୁ ସେ ମନରୁ ଦୂର କରିଦେଲେ । ତାଙ୍କ ମନରେ ଜାଗିଉଠିଲା ଆଶାବାଦର ଜୁଆର । ଯାହାସବୁ ସଂସାରରେ ଘଟିଯାଉଛି ତାହା ଅଲଂଘ୍ୟ ନିୟତିର ନିର୍ଦ୍ଦେଶରେ ଘଟୁଛି ବୋଲି ଧରିନେଇ କର୍ତ୍ତବ୍ୟ ପଥରେ ଆଗେଇ ଯିବାକୁ ଶ୍ରେୟସ୍କର ମଣିଲେ । ସେ ତାଙ୍କର ମନୋଭାବ ଏକ କବିତାରେ ସ୍ପଷ୍ଟ କରିଦେଇଛନ୍ତି –

''କରିବି ମୁଁ ଅନୁତାପ କିପାଁ ଅକାରଣେ
ଘଟେ ଯଦି ସବୁ ତୁମ ବିଧିର ବିଧାନେ ?''

ବରଗଡ଼ରେ ହିଁ ତାଙ୍କ ଜୀବନରେ ଆସିଲା ଏକ ବିରାଟ ପରିବର୍ତ୍ତନ । ଏହି ପରିବର୍ତ୍ତନ ଫଳରେ ଚାକିରି ଜୀବନର ଅବଶିଷ୍ଟ ଅଂଶ ସମବାୟ ବିଭାଗରେ କଟିଲା । ଏହା ମଧ୍ୟ ଥିଲା ବିଶ୍ୱନିୟନ୍ତାଙ୍କ ଆଶୀର୍ବାଦ ।

ବରଗଡ଼ରେ ହିଁ ଅନନ୍ତ ପ୍ରସାଦଙ୍କର ସମବାୟ ବିଭାଗର ତତ୍କାଳୀନ ଡେପୁଟି ରେଜିଷ୍ଟ୍ରାର ସତୀଶଚନ୍ଦ୍ର ରାୟଙ୍କ ସଙ୍ଗେ ସାକ୍ଷାତ୍ ହେଲା । ସେ ବିଭାଗୀୟ କାମରେ ବରଗଡ଼ ଗସ୍ତରେ ଆସିଥିଲେ । କଥା ପ୍ରସଙ୍ଗରେ ସେ ସତୀଶଚନ୍ଦ୍ର ରାୟଙ୍କୁ ସମବାୟ ଆନ୍ଦୋଳନ ପ୍ରତି ତାଙ୍କର ଅନୁରକ୍ତି ଥିବା ଜଣାଇଲେ । ଲେଖା ମାଧ୍ୟମରେ କିପରି ସମବାୟ ଭାବଧାରା ପ୍ରକାଶ କରିଛନ୍ତି, ତାହା ମଧ୍ୟ ତାଙ୍କ ଦୃଷ୍ଟିକୁ ଆଣିଲେ । ସତୀଶବାବୁ ଅନନ୍ତ ପ୍ରସାଦଙ୍କୁ ସମବାୟ ବିଭାଗକୁ ନେବାପାଇଁ ଇଚ୍ଛା ପ୍ରକାଶ କରନ୍ତେ, ଅନନ୍ତ ପ୍ରସାଦ ଆନନ୍ଦରେ ସମ୍ମତି ଦେଲେ । କିଛି ଦିନ ପରେ ତାଙ୍କର ସମବାୟ ବିଭାଗକୁ ବଦଳି ହେଲା । ପୁରୀରେ ଆସିଷ୍ଟାଣ୍ଟ ରେଜିଷ୍ଟ୍ରାର ଭାବେ ଯୋଗ ଦେବାକୁ ତାଙ୍କୁ ଆଦେଶ ମିଳିଲା ।

**ପୁରୀରେ ଅବସ୍ଥାନ**

୧୯୪୮ ମସିହାରେ ପୁରୀର ସମୁଦ୍ର କୂଳରେ ଅନନ୍ତ ପ୍ରସାଦ ଗୋଟିଏ ଘର ନେଇ ରହିଲେ । ସମୁଦ୍ର କୂଳରେ ରହିବା ସୁଖପ୍ରଦ ହୋଇଥିଲା ।

ପୁରୀରେ ଅନନ୍ତ ପ୍ରସାଦ ଶିକ୍ଷାନବିସ ଭାବେ ଦୁଇ ମାସ କାର୍ଯ୍ୟ କଲେ । ସେସମୟରେ ସମବାୟ ଆନ୍ଦୋଳନର ଅବସ୍ଥା ଥିଲା, କବିଙ୍କ ଭାଷାରେ, ବୁଡ଼ିଲା ଡଙ୍ଗା ପରି । ପୁରୀ କେନ୍ଦ୍ର ସମବାୟ ବ୍ୟାଙ୍କ ଦରମଲା ଅବସ୍ଥାରେ ଥିଲା । ନୂଆ କାରବାର ନ ଥିଲା ବେଳେ ଲୋକଙ୍କଠାରୁ ବକେୟା ପଡ଼ିଥିବା ଭଡ଼ା ଆଦାୟ ଥିଲା ସମବାୟ ବିଭାଗର କାମ । ଅନନ୍ତ ପ୍ରସାଦ ପୂରା ଦାୟିତ୍ୱ ନେଲା ପରେ ଏହି ଅବସ୍ଥାର ଉନ୍ନତିପାଇଁ ଉଦ୍ୟମ କଲେ । 'ସହଯୋଗ' ନାମକ ଗୋଟିଏ ପୁସ୍ତିକା ଛପାଇଲେ ।

ଏଥିରେ ସମବାୟ ଆଦର୍ଶ, ସଞ୍ଚୟ ପ୍ରଭୃତି ବିଭିନ୍ନ ବିଷୟ ସରଳ ଭାଷାରେ ବର୍ଣ୍ଣନା କରାଯାଇଥିଲା । ସେ ଏହି ପୁସ୍ତିକାକୁ ଲୋକଙ୍କ ମଧ୍ୟରେ ବାଣ୍ଟିଲେ । କେତେକ କର୍ମପନ୍ଥା ମଧ୍ୟ ସ୍ଥିର କଲେ । ସମବାୟ ବିଭାଗର ସର୍ବୋଚ୍ଚକର୍ତ୍ତା ସୋଲୋମନ ସାହେବଙ୍କ ଅକୁଣ୍ଠ ସମର୍ଥନ ମଧ୍ୟ ପାଇଲେ । ନୂଆ ଆଦର୍ଶରେ ସେ ଆଗେଇଲେ । ସେତେବେଳେ ପୃଥିବୀରେ ଦ୍ୱିତୀୟ ମହାସମର ଲାଗିଥାଏ । ଯୁଦ୍ଧରେ ବ୍ୟବହାର କରିବାପାଇଁ କପଡ଼ାର ଦରକାର ହେଲା । ସୋଲୋମନ ସାହେବ ଗଞ୍ଜାମର ତନ୍ତୁବାୟମାନଙ୍କୁ ସମବାୟ ସୂତ୍ରରେ ସଙ୍ଗଠିତ କରି ଏହି ଯୁଦ୍ଧପାଇଁ କପଡ଼ା ତିଆରି କରିବାକୁ ପ୍ରସ୍ତାବ ଦେଲେ । ସେହି କାର୍ଯ୍ୟପାଇଁ ସେ ଅନନ୍ତ ପ୍ରସାଦଙ୍କୁ ବାଛିଲେ । ପୁରୀରେ ମାତ୍ର ଦଶ ମାସ ରହିବା ପରେ ସମବାୟ ସୂତ୍ରରେ କପଡ଼ା ବୁଣିବାପାଇଁ ଅନନ୍ତ ପ୍ରସାଦଙ୍କୁ ବ୍ରହ୍ମପୁରକୁ ବଦଳି କରାଗଲା ।

### ବ୍ରହ୍ମପୁରରେ ସମବାୟ କାର୍ଯ୍ୟ

୧୯୪୨ ମସିହା ଜୁଲାଇ ମଧ୍ୟଭାଗରେ ଅନନ୍ତ ପ୍ରସାଦ ବ୍ରହ୍ମପୁର ସହରରେ ଆସିଷ୍ଟାଣ୍ଟ ରେଜିଷ୍ଟ୍ରାର ଭାବେ ଅବସ୍ଥାପିତ ହେଲେ । ଅନନ୍ତ ପ୍ରସାଦ ଗଞ୍ଜାମ ଜିଲ୍ଲାର ଏ ମୁଣ୍ଡରୁ ସେ ମୁଣ୍ଡ ଯାଏଁ ଗସ୍ତ କଲେ । ଯେତେ ସମବାୟ ବସତି ଥିଲା ସେଠାରେ ତନ୍ତୁବାୟ ସହଯୋଗ ସମିତିମାନ ଗଢ଼ିଲେ । ସେ ସମିତିଗୁଡ଼ିକ ହେଲା କଞ୍ଚୁରୁ, ହିଞ୍ଜିଳିକାଟୁ, ପାଟପୁର, ଗଡ଼ଦାମୋଦର ପଲ୍ଲୀ, ପାଇକପଡ଼ା ଇତ୍ୟାଦି । ଏହି ତନ୍ତୁବାୟ ସମିତିଦ୍ୱାରା ହଜାର ହଜାର ଗଜ ଯୁଦ୍ଧ କପଡ଼ା ତିଆରି ହେଲା । ବର୍ଷ ଶେଷରେ ଦେଖାଗଲା ଯେ ଭାରତବର୍ଷରେ ହସ୍ତତନ୍ତଦ୍ୱାରା ଯୁଦ୍ଧ କପଡ଼ା ତିଆରି ବିଷୟରେ ଓଡ଼ିଶା ତୃତୀୟ ସ୍ଥାନ ଅଧିକାର କରିଅଛି । ଗଞ୍ଜାମରେ ଯେତେ ଯୁଦ୍ଧ କପଡ଼ା ପ୍ରସ୍ତୁତ ହୋଇଥିଲା, ତା'ର ଦୁଇ-ତୃତୀୟାଂଶ ତନ୍ତୁବାୟ ସମିତିମାନଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥିଲା । ସହଯୋଗ ସମିତିଗୁଡ଼ିକର ସଫଳତାରେ ସୋଲୋମନ ସାହେବ ଉଲ୍ଲସିତ ହୋଇଉଠିଥିଲେ ।

ବ୍ରହ୍ମପୁରରେ ଅବସ୍ଥାନ ବେଳେ ଅନନ୍ତ ପ୍ରସାଦଙ୍କ ଆତ୍ମସମର୍ପଣ ଭାବ ତୀବ୍ର ହୋଇପଡ଼ିଲା । ସେ ଆଧ୍ୟାତ୍ମିକ ମାର୍ଗରେ ଅଗ୍ରସର ହେଲେ ବୋଲି ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି ।

ବ୍ରହ୍ମପୁରରୁ ଗସ୍ତରେ ଅନନ୍ତ ପ୍ରସାଦ ଗଞ୍ଜାମର ବିଭିନ୍ନ ସ୍ଥାନକୁ ଯାଉଥିଲେ । ଥରେ ବୋଇରାଣୀ ଯାଇଥିଲେ । ଅନନ୍ତ ପ୍ରସାଦ ଲୋକଙ୍କଠାରୁ ଜାଣିବାକୁ ପାଇଲେ ଯେ କବିସୂର୍ଯ୍ୟ ବଳଦେବ ରଥ ପ୍ରସିଦ୍ଧ ସଙ୍ଗୀତାବଳୀ ବୋଇରାଣୀର ନାଗେଶ୍ୱର କୁଞ୍ଜବେଷ୍ଟିତ ଏକ ମନୋରମ ସ୍ଥାନରେ ରଚନା କରିଥିଲେ । ଅନନ୍ତ ପ୍ରସାଦ କବିସୂର୍ଯ୍ୟଙ୍କ ବାସଗୃହଠାରେ ଗୋଟିଏ ସ୍ମୃତିସ୍ତମ୍ଭ ନିର୍ମାଣ କରିବା ପ୍ରସ୍ତାବ ସେଠା ଅଧିବାସୀଙ୍କୁ ଦେଲେ । ବୋଇରାଣୀରେ କବିସୂର୍ଯ୍ୟ ସ୍ମୃତିରକ୍ଷା ସମିତି ଗଢ଼ା ଯିବାକୁ

ପ୍ରସ୍ତାବ ମଧ୍ୟ ଦେଇଥିଲେ । ତାହା ଗୃହୀତ ଓ କାର୍ଯ୍ୟକାରୀ ହେଲା । ବୋଈରାଣୀରେ 'କବିସୂର୍ଯ୍ୟ ସ୍ମୃତିରକ୍ଷା ସମିତି ଗଠନ କରାଗଲା । ୧୯୪୩ ମସିହା ମେ ମାସ ୬ ତାରିଖ ପୁଣ୍ୟ ଅକ୍ଷୟତୃତୀୟା ଦିନ ଆଠଗଡ଼ରେ କବିସୂର୍ଯ୍ୟ ସ୍ମୃତିସ୍ତମ୍ଭ ସ୍ଥାପନ କରାଗଲା । ଏହାକୁ ଉଦ୍‌ଘାଟନ କରିଥିଲେ ନିଜେ ଅନନ୍ତ ପ୍ରସାଦ ।

ବ୍ରହ୍ମପୁରରେ ପ୍ରାୟ ଦୁଇ ବର୍ଷ ରହିଲା ପରେ ଅନନ୍ତ ପ୍ରସାଦ କଟକକୁ ବଦଳି ହୋଇ ଆସିଲେ । 'ଭାଗ୍ୟଚକ୍ର' ଉପନ୍ୟାସର ଦ୍ୱିତୀୟ ସଂସ୍କରଣ ସେଠାରେ ପ୍ରକାଶ ପାଇଲା । 'ସଭ୍ୟତାର ତଳେ' ଗଳ୍ପ ପୁସ୍ତକଟି ମଧ୍ୟ ପ୍ରକାଶିତ ହେଲା ।

### ପଦୋନ୍ନତି

ଦୁଇ ବର୍ଷ କାଳ କଟକ ସର୍କଲର ଆସିଷ୍ଟାଣ୍ଟ ରେଜିଷ୍ଟ୍ରାର କାମ କଲା ପରେ ଅନନ୍ତ ପ୍ରସାଦ ଡେପୁଟି ରେଜିଷ୍ଟ୍ରାର ପଦକୁ ଉନ୍ନୀତ ହେଲେ । ତାଙ୍କର କାର୍ଯ୍ୟ ପରିସର ସମଗ୍ର ଓଡ଼ିଶାକୁ ବୃଦ୍ଧି ପାଇଲା ।

କଟକରେ ଅନନ୍ତ ପ୍ରସାଦଙ୍କ ଉଦ୍ୟମରେ 'ଗୃହଲକ୍ଷ୍ମୀ' ସହଯୋଗ ସମିତି ଗଢ଼ା ହେଲା । ସେହି ସମିତି ଜରିଆରେ ମହିଳାମାନଙ୍କୁ ଗୃହଶିଳ୍ପର ସରଞ୍ଜାମ ଯୋଗାଇ ଦିଆଗଲା ଓ ସେମାନଙ୍କ ପ୍ରସ୍ତୁତ ଜିନିଷଗୁଡ଼ିକର ବିକ୍ରୟ କରିବାର ବ୍ୟବସ୍ଥା ହେଲା । ସେଥିରେ ତ୍ରିବେଣୀ ଦେବୀ ସଭାନେତ୍ରୀ ହେଲେ । ସମ୍ପାଦିକା ହେଲେ ବସନ୍ତକୁମାରୀ ଦେବୀ । ଅନନ୍ତ ପ୍ରସାଦଙ୍କ ନିର୍ଦ୍ଦେଶ ଓ ପ୍ରେରଣା ଫଳରେ ସମିତିଟି ଭଲ ଭାବରେ ଚାଲିଲା ।

ସାକ୍ଷୀଗୋପାଳରେ ମଧ୍ୟ ଦୁର୍ଗାଦେବୀଙ୍କ ନେତୃତ୍ୱରେ 'ନାରୀ ମଙ୍ଗଳ ସମବାୟ ସମିତି' ଗଢ଼ାଗଲା ।

କଟକରେ 'ଓଡ଼ିଆ ଲେଖକ ସହଯୋଗ ସମିତି' ମଧ୍ୟ ଅନନ୍ତ ପ୍ରସାଦଙ୍କ ଉଦ୍ୟମରେ ସ୍ଥାପିତ ହେଲା । ଏହା ମାଧ୍ୟମରେ ତରୁଣ ଲେଖକମାନଙ୍କର ଲେଖା ପ୍ରକାଶ ପାଇବା ସୁବିଧା ହେଲା । ଏହା ତରଫରୁ 'ଉଦୟ' ନାମକ ମାସିକ ପତ୍ରିକା ମଧ୍ୟ ପ୍ରକାଶ ପାଇଲା ।

ସମବାୟ ଆନ୍ଦୋଳନ ମାଧ୍ୟମରେ ଅର୍ଥନୈତିକ ପ୍ରଗତି ଆସିପାରିବ ବୋଲି ଅନନ୍ତ ପ୍ରସାଦ ବିଶ୍ୱାସ କରୁଥିଲେ । ସେଥିପାଇଁ ଅଣ୍ଟାଭିଡ଼ି କାମ ମଧ୍ୟ କରୁଥିଲେ । ସମବାୟ ସମ୍ବନ୍ଧରେ ତାଙ୍କ ନାମ ସମଗ୍ର ଓଡ଼ିଶାରେ ପରିବ୍ୟାପ୍ତ ହେଲା କହିଲେ ଚଳେ ।

### ବିଦେଶ ଯାତ୍ରା

୧୯୫୨ ମସିହାରେ ଅନନ୍ତ ପ୍ରସାଦ U.N. ବା ମିଳିତ ଜାତିସଂଘର ଗୋଟିଏ ବୃତ୍ତି ପାଇ ଆମେରିକା ଗଲେ । ଫେରିବା ବାଟରେ ବିଲାତ ଓ ଡେନମାର୍କ ପ୍ରଭୃତି ୟୁରୋପର କେତୋଟି ଦେଶ ବୁଲିବାର ସୁଯୋଗ ପାଇଲେ । ତାଙ୍କର ଭ୍ରମଣ ବୃତ୍ତାନ୍ତ 'ପାଶ୍ଚାତ୍ୟ ଅନୁଭୂତି' ଶୀର୍ଷକ ପୁସ୍ତକରେ ଲିପିବଦ୍ଧ ହୋଇଛି ।

ଅନନ୍ତ ପ୍ରସାଦ ମଧ୍ୟ ଚାରି ଖଣ୍ଡି ପୁସ୍ତକ ସମବାୟ ସମ୍ବନ୍ଧରେ ରଚନା କରିଥିଲେ । ଯୋଡ଼ିଏ ଇଂରାଜୀରେ ଲେଖିଥିଲେ । ସେ ଦୁଇଟି ହେଲା –

1. The Special Features of Co-operation in Canada.

2. The Special Features of Co-operation in Denmark.

ଅନ୍ୟ ଦୁଇ ଖଣ୍ଡ ଓଡ଼ିଆରେ ରଚନା କରିଥିଲେ । ସେ ଦୁଇଟି ହେଲା –

୧. ଆମେରିକାର ସମବାୟ ସମ୍ବନ୍ଧେ କେତୋଟି ଜାଣିବାର କଥା ।

୨. ଡେନମାର୍କର ସମବାୟ ସମ୍ବନ୍ଧେ କେତୋଟି ଜାଣିବାର କଥା ।

ବହିଗୁଡ଼ିକରେ ଥିବା କେତୋଟି ନୀତିକୁ ଓଡ଼ିଶା ସରକାର ଗ୍ରହଣ କରିଥିଲେ । ସମବାୟ ଶିକ୍ଷାର ବିଶେଷ ବ୍ୟବସ୍ଥା ସମ୍ବନ୍ଧରେ ମଧ୍ୟ ଅନନ୍ତ ପ୍ରସାଦ ଲେଖିଥିଲେ । ତଦନୁସାରେ ଓଡ଼ିଶା ସରକାର ସମବାୟ ଶିକ୍ଷା ପ୍ରଚଳନର ବ୍ୟବସ୍ଥା କରିଥିଲେ ।

ବିଦେଶରୁ ଫେରିବାର କିଛି କାଳ ପରେ ଅନନ୍ତ ପ୍ରସାଦ ସମବାୟ ବିଭାଗର ଡେପୁଟି ରେଜିଷ୍ଟ୍ରାର ପଦରୁ ଉନ୍ନୀତ ହୋଇ ଉକ୍ତ ବିଭାଗର ସର୍ବପ୍ରଥମ ଜଏଣ୍ଟ ରେଜିଷ୍ଟ୍ରାର ଭାବରେ ନିଯୁକ୍ତ ହେଲେ । ଏହା ଫଳରେ ଓଡ଼ିଶାର ପୁରପଲ୍ଲୀ ବୁଲି ସମବାୟ ଆନ୍ଦୋଳନର ପ୍ରସାର କରିବାକୁ ସୁବିଧା ମିଳିଲା । ତେବେ I.A.S. ଗୋଷ୍ଠୀ ଅନ୍ତର୍ଭୁକ୍ତ ହୋଇ ନ ଥିବାରୁ ସେ ଉକ୍ତ ବିଭାଗର ସର୍ବୋଚ୍ଚ କର୍ମକର୍ତ୍ତା ଅର୍ଥାତ୍ ରେଜିଷ୍ଟ୍ରାର ହୋଇପାରି ନ ଥିଲେ । ଫଳରେ ସମବାୟ ବିଭାଗର ଉନ୍ନତି ଆଣିବାକୁ ଯେଉଁ କଳ୍ପନାଜଳ୍ପନା ଥିଲା, ତାହା କାର୍ଯ୍ୟକାରୀ କରାଇବାର ସୁଯୋଗ ପାଇପାରିଲେ ନାହିଁ ।

ଅନନ୍ତ ପ୍ରସାଦ ତାଙ୍କ ଆତ୍ମଜୀବନୀରେ ଏହା ଉଲ୍ଲେଖ କରିଛନ୍ତି – "ମନରେ ଗୋଟାଏ ଅବସୋସ୍ ରହିଗଲା ।"

**ସୃଷ୍ଟି ସମ୍ଭାର**

## ଗଳ୍ପ

ଓଡ଼ିଆ ସାହିତ୍ୟରେ ଗାଳ୍ପିକ ଭାବରେ ଅନନ୍ତ ପ୍ରସାଦ ପ୍ରତିଷ୍ଠା ଅର୍ଜନ କରିଛନ୍ତି । ଫକୀରମୋହନଙ୍କ ପରେ ତାଙ୍କ ଗାଳ୍ପିକ ପ୍ରତିଭା ଓଡ଼ିଶାର ପାଠକ ଶ୍ରେଣୀକୁ ବିସ୍ମିତ କରିଦେଲା । ସେହି କାଳରୁ ସ୍ୱାଧୀନତାର ଉତ୍ତରକାଳ ପର୍ଯ୍ୟନ୍ତ ଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି ସେ ଗଳ୍ପ ରଚନା କରିଆସିଛନ୍ତି ।

ଅନନ୍ତ ପ୍ରସାଦ ତାଙ୍କ ଗ୍ରନ୍ଥାବଳୀର ପ୍ରଥମ ଖଣ୍ଡରେ ଉଲ୍ଲେଖ କରିଛନ୍ତି – "ମୋର ସାହିତ୍ୟ ସାଧନାକୁ କେବଳ ଗଳ୍ପ, ଉପନ୍ୟାସ ମଧ୍ୟରେ ସୀମାବଦ୍ଧ ନ ରଖି ମୁଁ ଅବଶ୍ୟ ସାହିତ୍ୟର ଅନ୍ୟାନ୍ୟ ବିଭାଗ, ଯଥା — କବିତା, ସଙ୍ଗୀତ, ଏକାଙ୍କିକା, ନାଟକ, ପ୍ରବନ୍ଧ, ଭ୍ରମଣ ବୃତ୍ତାନ୍ତ ଓ ଅନୁବାଦ ଇତ୍ୟାଦି ଲେଖିବାରେ ରଚନା

ଚଳାଇଛି; କିନ୍ତୁ ଗଳ୍ପ ରଚନାରେ ହିଁ ଅଧିକ ସମୟ ବିନିଯୋଗ କରିଛି ଓ ତାହାହିଁ ଦେଇଛି ମୋତେ ସବୁଠାରୁ ଅଧିକ ଆନନ୍ଦ ।''

ସ୍ୱାଧୀନତା ପୂର୍ବବର୍ତ୍ତୀ ଉତ୍କଳୀୟ ସମାଜ ଜୀବନର ଦୁଃଖାତ୍ମକ ଘଟଣା ଅନନ୍ତ ପ୍ରସାଦଙ୍କୁ ବ୍ୟଥିତ କରିଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଅଭାବ ଅନଟନରେ ରହୁଥିବା ବୁଭୁକ୍ଷୁ ଲୋକଙ୍କ ଅର୍ଦ୍ଧାହାର, ଅନାହାର, ଭିଟାମାଟି ତ୍ୟାଗ, ସ୍ୱାଧୀନତୋତ୍ତର ଭାରତର ସାମ୍ପ୍ରଦାୟିକ ଦଙ୍ଗା ପ୍ରଭୃତି ଘଟଣାକୁ ନେଇ ତାଙ୍କର କ୍ଷୁଦ୍ର ଗଳ୍ପଗୁଡ଼ିକ ରଚ୍ଚିମନ୍ତ ହୋଇଛି ।

ଅନନ୍ତ ପ୍ରସାଦଙ୍କ ସମସ୍ତ ଗଳ୍ପଗୁଡ଼ିକୁ ନେଇ ସାତୋଟି ଗଳ୍ପ ସଙ୍କଳନ ପ୍ରକାଶ ପାଇଛି । ସେଗୁଡ଼ିକରୁ ପ୍ରଧାନ ହେଲା 'ତୃଣଗୁଚ୍ଛ', 'ସଭ୍ୟତାର ତଳେ', 'ମନର ଭୂତ' ଓ 'ବାରମଜା' ।

**ତୃଣଗୁଚ୍ଛ**

'ତୃଣଗୁଚ୍ଛ' ସଙ୍କଳନ ଅନନ୍ତ ପ୍ରସାଦଙ୍କ ପ୍ରଥମ ଗଳ୍ପ ସଙ୍କଳନ । ଏଥିରେ ୧୧ଟି ଗଳ୍ପ ସ୍ଥାନ ପାଇଛି । ଏହାର ଗଳ୍ପଗୁଡ଼ିକ ପୂର୍ବରୁ 'ଜାଗରଣ', 'ସହକାର', 'ପଲ୍ଲୀମଙ୍ଗଳ', 'ଉତ୍କଳ ସାହିତ୍ୟ' ପ୍ରଭୃତି ପତ୍ରିକାରେ ପ୍ରକାଶ ପାଇଥିଲା । ଏହି ସଙ୍କଳନର ଅଧିକାଂଶ ଗଳ୍ପ ପ୍ରେମ ବା ପ୍ରଣୟ ଆଧାରିତ ।

ସଙ୍କଳନର ପ୍ରଥମ ଗଳ୍ପ ହେଉଚି 'ଅନ୍ତିମ ମିଳନ' । ଏଥିରେ ଘନଶ୍ୟାମର ପ୍ରେମ ବର୍ଣ୍ଣିତ । ଘନଶ୍ୟାମ ପିତୃମାତୃହୀନ ଏକ ଅନାଥ ପିଲା । ସେ ବାମଦେବ ମହାପାତ୍ରଙ୍କ ଘରେ ଆଶ୍ରିତ । ତାଙ୍କର କିଶୋରୀ କନ୍ୟା କନକକୁ ସେ ନିଜ ଅଜାଣତରେ ଭଲ ପାଇଛି । କିନ୍ତୁ କନକ ପୁରୀ ଯାଇଥିଲାବେଳେ ନିଖୋଜ ହୋଇଛି । ଘନଶ୍ୟାମ ତା'ର ଆଦ୍ୟ ପ୍ରେମକୁ ଭୁଲି ପାରିନି । କୈଶୋରରୁ ଯୌବନରେ ପହଞ୍ଚିଛି; କିନ୍ତୁ ବିବାହ କରି ନାହିଁ । ବାଲ୍ୟସ୍ମୃତିକୁ ମନେପକାଇ କାଳ କାଟିଛି । ଶେଷ ମୁହୂର୍ତ୍ତରେ କନକ ସଙ୍ଗେ ଅବଶ୍ୟ ଦେଖା ହୋଇଛି ; ମାତ୍ର ମିଳନ ହୋଇପାରି ନାହିଁ । ନାୟକ ଘନଶ୍ୟାମର ମୃତ୍ୟୁ ହୋଇଛି । ସେ ଦୁଃଖ ସହ୍ୟ କରି ନ ପାରି କନକ ଆତ୍ମହତ୍ୟା କରିଛି ।

ଅନନ୍ତ ପ୍ରସାଦଙ୍କ ଆଦ୍ୟ ଜୀବନର ସୃଷ୍ଟି ହେଲେହେଁ ଏହା କରୁଣ ରସାପ୍ଳୁତ ଓ ଜୀବନ୍ତ ହୋଇପାରିଛି ।

'ଅତୃପ୍ତ ବାସନା' ଗଳ୍ପରେ ନାୟକ ଉପେନ୍ଦ୍ର ସହପାଠିନୀ ସରଳାକୁ ଭଲ ପାଇଛି ଓ ବିବାହ କରିବାପାଇଁ କଥା ଦେଇଛି । ମାତ୍ର ସରଳାର ବାପା ଅନ୍ୟ ଏକ ବୃଦ୍ଧ ସହିତ ବିବାହ ଦେଇ କନ୍ୟାସୁନା ଆଣିଛନ୍ତି । ସରଳା ବିଧବା ହୋଇଛି, ଉପେନ୍ଦ୍ର ପୁଣି ଆଉଥରେ ସରଳାକୁ ବିବାହ କରିବାକୁ ପ୍ରସ୍ତାବ ଦେଇଛି । ମାତ୍ର ସରଳା ପାତିବ୍ରତ୍ୟକୁ ରକ୍ଷା କରିବାକୁ ଯାଇ ରାଜି ହୋଇ ନାହିଁ । ଉପେନ୍ଦ୍ର ଚଞ୍ଚଳାକୁ ବିବାହ କରନ୍ତି । ସରଳାର କାମନା ଚିରଦିନ ଅତୃପ୍ତ ରହିଯାଇଛି ।

ଗଳ୍ପଟି 'ଉତ୍କଳ ସାହିତ୍ୟ'ରେ ପ୍ରଥମେ ପ୍ରକାଶ ପାଇଥିଲା । ଏହା ଏକ ସଂସ୍କାରଧର୍ମୀ ରଚନା ।

ଗାଳ୍ପିକଙ୍କର ଅନ୍ୟ ଏକ ସୃଷ୍ଟି ହେଲା 'ଅର୍ଥର ମୋହ' । ଏଥିରେ ମଧ୍ୟ ଲେଖକ କନ୍ୟାସୁନାର କୁପରିଣାମ ବର୍ଣ୍ଣନା କରିଛନ୍ତି ।

ଅର୍ଥପାଇଁ ପିତା କିପରି ନିଜର ପିତୃତ୍ୱକୁ ଭ୍ରୂକ୍ଷେପ ନ କରି ନିଜର କନ୍ୟାକୁ ବିକ୍ରୟ କରେ, ତାହାହିଁ ଚିତ୍ରିତ ହୋଇଛି ଏ ଗଳ୍ପରେ । ଲବଙ୍ଗଲତାର କରୁଣ ପରିଣତି ପାଠକ ପ୍ରାଣରେ ସମ୍ବେଦନା ସୃଷ୍ଟି କରେ ।

ବିଧବା ଜୀବନର କରୁଣ ଚିତ୍ର ହେଉଛି 'ଛାଡ଼ଖାଇ' । ଏହା ପ୍ରଥମେ 'ସହକାର'ରେ ପ୍ରକାଶ ପାଇଥିଲା ।

ଛତ୍ରରେ ଖାଇଛି ଏକ ବ୍ରାହ୍ମଣ ଘରର ବୋହୂ । ଘରେ ତାଙ୍କର ଥିଲେ ଦେବୋପମ ସ୍ୱାମୀ, ଶ୍ୱଶୁର, ଶାଶୂ । ମାତ୍ର ବୈତରଣୀ ନଦୀ ବନ୍ୟାରେ ସେ ସମସ୍ତଙ୍କୁ ହରାଇଚି । ଛତ୍ରରେ ଖାଇବାହେତୁ ସମସ୍ତେ ତାଙ୍କୁ ଘୃଣା କରିଛନ୍ତି । ସେ ଘରେ ପଶିଲେ ଲୋକେ ଗୋବରପାଣି ପକାନ୍ତି । ମାତ୍ର ଗ୍ରାମରେ ମହାମାରୀ ପଡ଼ିଛି । ନିନ୍ଦା ଭର୍ତ୍ସନାକୁ ପଛରେ ପକାଇ ଛତ୍ରଖାଇ ଲୋକଙ୍କର ସେବା କରିଛି । ସେ ଅସ୍ପୃଶ୍ୟ ନୁହେଁ, ଦେବୀରେ ପରିଣତ ହୋଇଛି ।

ଗଳ୍ପରେ ଅନନ୍ତପ୍ରସାଦଙ୍କ ସଂସ୍କାରମୁଖୀ ଭାବଧାରା ପ୍ରକାଶ ପାଇଛି ।

'ଗାଉଁଲି' ଆଉ ଗୋଟିଏ ସୁନ୍ଦର ଗଳ୍ପ । ମଫସଲ ଯୁବକ ଅଗଣା । ବାପା ମା' ତା'ର କେହି ନାହାନ୍ତି । ସାଆନ୍ତାଣୀଙ୍କ ଘରେ ରହିଛି । ସାଆନ୍ତାଣୀଙ୍କର ଝିଅ ଫୁଲମତୀ । ଅଗଣାକୁ ଭାଇର ସ୍ନେହ ଦିଏ । କିନ୍ତୁ ସାଆନ୍ତାଣୀ ଓ ବାବୁ ତାକୁ ସନ୍ଦେହ କରିଛନ୍ତି ଓ ଘରୁ ବାହାର କରିଦେଇଛନ୍ତି । ଅଗଣା କଲିକତା ପଳାଇ ଯାଇ ଚଟକଳରେ କାମ କରିଛି । ଦିନେ ଘରୁ ଭାଷା ପାଇଛି ଯେ ଫୁଲମତୀର ବାହାଘର ହେଉଛି । ଅଗଣା ଶାଢ଼ି ସିନ୍ଦୂର ପ୍ରଭୃତି ଧରି ଗାଁକୁ ଆସି ଫୁଲମତୀ ଘରେ ପହଞ୍ଚିଛି ।

'ଆମ ଗାଁ ଠାକୁରାଣୀ' ଗଳ୍ପରେ ଜଗୁ ମାଷ୍ଟ କିପରି ନରସିଂହପୁର ଲୋକମାନଙ୍କ ମଧ୍ୟରେ ଅନ୍ଧବିଶ୍ୱାସ ଦୂରେଇ ଦେଇ ସମସ୍ତଙ୍କ ପ୍ରିୟପାତ୍ର ହୋଇଛି, ତାହା ବର୍ଣ୍ଣିତ ।

'ମିଳନ ପଥେ' ସଂକଳନର ଶେଷ ଗଳ୍ପ । ନାୟକ ହରି । ସେ ଜୀବନରେ ଭଲ ପାଇଛି ନିରୁକୁ । କିନ୍ତୁ ନିରୁର ଭାଇ ହରି ପାଖକୁ ଚିଠି ଦେଇଛି ଯେ ନିରୁ ସାପ କାମୁଡ଼ାରେ ମରିଯାଇଛି । କିଛି ଦିନ ପରେ ହରି ଓ ନିରୁର ମିଳନ ହୋଇଛି ।

ଏହି ଗଳ୍ପଗୁଡ଼ିକ ଲେଖକଙ୍କର ଆଦ୍ୟ ଜୀବନର ରଚନା ହୋଇଥିଲେହେଁ ଏଗୁଡ଼ିକ ହୃଦ୍ୟ ହୋଇପାରିଛି ।

**ସଭ୍ୟତାର ତଳେ**

'ସଭ୍ୟତାର ତଳେ'ରେ ପ୍ରକାଶିତ ଗଳ୍ପଗୁଡ଼ିକ ଅର୍ଥନୈତିକ ଭିତ୍ତି ଉପରେ ଲିଖିତ ବୋଲି ଲେଖକ ଉଲ୍ଲେଖ କରିଛନ୍ତି । ଏଥିରେ ସଭ୍ୟତା ଶଗଡ଼ପିଷ୍ଟ ଦଳିତ, ଲାଞ୍ଛିତ ବ୍ୟକ୍ତିମାନଙ୍କର କରୁଣ କାହାଣୀ ବର୍ଣ୍ଣିତ ।

ଲେଖକ ଲେଖିଛନ୍ତି – ''ବିରାଟ ସଭ୍ୟତାର ଚକ ଗଡ଼ି ଚାଲିଛି । ତା'ର ତଳେ କେତେ ମହାପ୍ରାଣୀ ଜନ୍ଦା ପିମ୍ପୁଡ଼ି ପରି ପେଷି ହୋଇଯାଉଛନ୍ତି ତା'ର ଖବର ରଖୁଛି କିଏ ? କିଏ ସେଇ ପିଷ୍ଟ ଦଳିତର ବୁକୁଫଟା ଦୀର୍ଘଶ୍ୱାସ ଶୁଣି 'ଆହା' ପଦୁଟିଏ କହୁଛି ? ନିର୍ମମ ସଭ୍ୟତାର ନାମରେ କେତେ ଜାଲ ଜୁଆଚୋରି ଦୁନିଆରେ ଘଟି ନ ଯାଉଛି ? ଆଉ ସେଇ ସଭ୍ୟତାର ତଳେ ଅନ୍ଧାର କୋଣରେ ପଡ଼ିଥିବା ଜୀବନର କି ନିର୍ମମ ପରିଣତି ଘଟୁଛି !''

ଏଇ ସଙ୍କଳନର ପ୍ରଥମ ଗଳ୍ପଟି ହେଲା 'ରାଜଭାଗ' । ଏଥିରେ ରାଜାଙ୍କର ନୃଶଂସ ଶୋଷଣର ଚିତ୍ର ଦିଆଯାଇଛି । ଗାଳ୍ପିକ କେନ୍ଦ୍ରାପଡ଼ାରେ ସେକେଣ୍ଡ ଅଫିସର ଥିବାବେଳେ ରେଣ୍ଟ ସୁଟ୍ ମକଦ୍ଦମାଗୁଡ଼ିକ ବିଚାର କରୁଥିଲେ । ଆଳି କନିକା ରାଜାଙ୍କ ପକ୍ଷରୁ ଅସଂଖ୍ୟ ରେଣ୍ଟସୁଟ୍ କୋର୍ଟ୍‌ରେ ଦାୟର ହୋଇଥାଏ । ଏହିପରି ଏକ ମକଦ୍ଦମା ସେ ବିଚାର କରୁଥିବାବେଳେ ସେ ପ୍ରଜାପୀଡ଼ନର ପ୍ରମାଣ ପାଇଥିଲେ । ନିଜେ ବିଚାରକ ଆସନରେ ଥିଲେ ବି ଓ ନିଷ୍ପେଷିତର ବୁକୁଫଟା ବିଳାପ ତାଙ୍କ ଅନ୍ତରକୁ ସ୍ପର୍ଶ କରିଥିଲେ ମଧ ଆଇନର ଅଧୀନରେ ଥିବାରୁ କିଛି କରିପାରି ନ ଥିଲେ ।

ସୁଖୀ ସଂସାର ପରିକଳ୍ପନା କରୁଥିବା ଦରିଦ୍ର ଚାଷୀ ଦାସିଆ ପରିବାରର ଦାରୁଣ ଦୁର୍ଗତିକୁ ଲେଖକ ଏଥିରେ ପ୍ରକାଶ କରିଛନ୍ତି । ବାସ୍ତବ ଘଟଣା ଉପରେ ଆଧାରିତ ଏବଂ ଗଳ୍ପଟି ଲେଖକଙ୍କ ସଫଳ ସୃଷ୍ଟି । ଏହା ଦ୍ୱିତୀୟଥର 'କଥା' ପତ୍ରିକାରେ ପ୍ରକାଶ ପାଇଥିଲା ।

ଯନ୍ତ୍ର ଶିଳ୍ପର ଅଭ୍ୟୁଦୟ ଫଳରେ କୁଟୀରଶିଳ୍ପ ଧ୍ୱଂସମୁଖୀ ହୋଇଛି । ଯେଉଁମାନେ କୁଟୀରଶିଳ୍ପ ଉପରେ ନିର୍ଭର କରି ଜୀବିକା ନିର୍ବାହ କରୁଥିଲେ ସେମାନଙ୍କ ଜୀବନ କ୍ରମେ ଶୋଚନୀୟ ହୋଇଉଠିଛି । ଏହି ସମସ୍ୟା ଉପରେ ରଚିତ ଗଳ୍ପ 'ଗୋପୀ ସାହୁର ଦୋକାନ' । ଦୋକାନ ଭାଙ୍ଗିଯିବା ପରେ ଗୋପୀ ସାହୁର ଜୀବନ କିପରି ଅସହାୟ ହୋଇପଡ଼ିଲା, ତା'ର କରୁଣ ଚିତ୍ର ଏହି ଗଳ୍ପରେ ପ୍ରକାଶ ପାଇଛି ।

'ଶଗଡ଼' ଆଉ ଏକ ସୁନ୍ଦର ଗଳ୍ପ । ଏଥିରେ ଶଗଡ଼ ପରିବର୍ତ୍ତେ ମାଲବାହୀ ଟ୍ରକ ଚଳାଚଳ ହେବାଫଳରେ ଦେଖି ଶଗଡ଼ିଆର ବିଧ୍ୱସ୍ତ ଜୀବନର କରୁଣ ଚିତ୍ର ପ୍ରଦାନ କରିଛନ୍ତି । ଶଗଡ଼ ଚଳାଇ ଜୀବିକା ଅର୍ଜନ କରୁଥିବା ସଂକୀର୍ତ୍ତନ ଶେଷରେ ଯନ୍ତ୍ର ଦାନବର ପ୍ରତୀକରୂପେ ପଞ୍ଜାବୀ ଡ୍ରାଇଭରକୁ ହତ୍ୟା କରିଛି ।

'ଶଗଡ଼' ଗଳ୍ପଟି ଉତ୍କର୍ଷରେ ଉତ୍ତୀର୍ଣ୍ଣ ହୋଇଥିଲା । ଏହାକୁ ପାଠ କରି ଓଡ଼ିଶାର ବିଶିଷ୍ଟ ସାହିତ୍ୟିକ ଶଶିଭୂଷଣ ରାୟ ଅନନ୍ତପ୍ରସାଦଙ୍କୁ ପ୍ରଶଂସାମୂଳକ ଏକ ପତ୍ର ଦେଇଥିଲେ ।

ଯନ୍ତ୍ରଶିଳ୍ପର ପ୍ରସାର ଫଳରେ କୁଟୀରଶିଳ୍ପର ଅଧୋଗତିକୁ ନେଇ ଆଉ ଏକ ସାର୍ଥକ ଗଳ୍ପ ହେଲା 'ରଙ୍ଗୁଣୀର ସଂସାର' । ଆସିକା ତାଲୁକାର ଦାମୋଦର ପଲ୍ଲୀରେ ରହୁଥିବା ତନ୍ତୁବାୟଙ୍କ ସୁଖ ଦୁଃଖର ସଂସାରକୁ ନେଇ ଏହା ରଚିତ ।

ଅନୁରୂପ ଏକ ଗଳ୍ପ 'ପାଗଳ କିଏ' । ଏଥିରେ ମଧ୍ୟ ଅନନ୍ତପ୍ରସାଦ ତନ୍ତୁବାୟ ପରିବାରର ଦୁରବସ୍ଥା ଚିତ୍ରଣ କରିଛନ୍ତି । କଳଲୁଗା ସହିତ ପ୍ରତିଦ୍ୱନ୍ଦ୍ୱିତା କରି ନ ପାରି କିପରି ହାତଲୁଗା ବଜାରରୁ ଲୋପ ପାଇଛି, ତାହା ବର୍ଣ୍ଣନା କରିଛନ୍ତି ମଣିଆ ଚରିତ୍ର ମାଧ୍ୟମରେ ।

ସେହିଭଳି ତେଲୀମାନଙ୍କର ବ୍ୟବସାୟ ଧ୍ୱଂସ ହେବା ଘଟଣା ଉପରେ 'ଦୁନିଆ ବିଚାର' ଗଳ୍ପର ସୃଷ୍ଟି । ଘଣାରେ ସୋରିଷ ପେଡ଼ି ତେଲ ବାହାର କରୁଥିବା ଗରିବ ଚାଷୀ କିପରି ତେଲ କଳ ଦ୍ୱାରା ଦୁର୍ଦ୍ଦଶାଗ୍ରସ୍ତ ହୋଇଛି, ତା'ର ମାର୍ମିକ ଚିତ୍ର ଗାଳ୍ପିକ ପ୍ରଦାନ କରିଛନ୍ତି । ଶେଷରେ ସମଗ୍ର ତେଲୀ ପରିବାରର ସଂସାରକୁ ଉଜାଡ଼ି ଦେଇଥିବା ଶେଠକୁ ରାଧୁ ସାହୁ ହତ୍ୟା କରିଛି । ସେ ସଭ୍ୟତାକୁ ସ୍ୱାଗତ କରିଛି । ହେଲେ ପୂର୍ବପୁରୁଷର ଧରାବନ୍ଧା ପଦ୍ଧତିକୁ ନେଇ ସେ ବଞ୍ଚିବାକୁ ଚାହିଁଛି ।

'ଧାନକୁଟୁଣୀ'ରେ ଲେଖକ ବିଧବା ଜୀବନର କରୁଣ ଚିତ୍ର ଦେଇଛନ୍ତି । ପଲ୍ଲୀ ଗାଁରେ ଅନ୍ୟର ଢେଙ୍କି କୁଟି ଜୀବନ ନିର୍ବାହ କରୁଥିବା ବିଧବାଟିର ହା-ଅନ୍ନ ଜନିତ ବୁକୁଫଟା ବିଳାପକୁ ସୁନ୍ଦରୀ ଚରିତ୍ର ମାଧ୍ୟମରେ ପ୍ରକାଶ କରିଛନ୍ତି ।

ଭାରତରେ ଦୁଇ ସଂପ୍ରଦାୟ ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ଲାଗି ରହିଥିବା ସଂଘର୍ଷକୁ ନେଇ ରଚନା କରିଛନ୍ତି 'ଦେଖିଲା କାମ' । ଏହି ଦୁଇ ସଂପ୍ରଦାୟ ମଧ୍ୟରେ ଥିବା ମୈତ୍ରୀ କିପରି ନଷ୍ଟ ହେଉଛି, ତା'ର କରୁଣ ପରିଣତି ବର୍ଣ୍ଣନା କରିଛନ୍ତି ।

'ଭିକାରିଣୀ'ରେ ଲେଖକ ଜନୈକା ନୀଚ ଜାତି କନ୍ୟାର ପ୍ରେମାନୁଭବକୁ ବର୍ଣ୍ଣନା କରିଛନ୍ତି । ଉକ୍ତ ଗଳ୍ପରେ ଉଚ୍ଚ ଜାତିର ଯୁବକ ନୀଚ ଜାତିର ଯୁବତୀକୁ ଉପଭୋଗ କରି ପ୍ରତ୍ୟାଖ୍ୟାନ କରିଛି । ଯୁବତୀର ପ୍ରେମର ଗଭୀରତା ହିଁ ଏଥିରେ ଚିତ୍ରିତ ହୋଇଛି ।

'ଟି.ଟି.ଆଇ.' ଗଳ୍ପରେ ଚାଉଳ ନେଇ ଯାଉଥିବା ଦରିଦ୍ର ସ୍ତ୍ରୀଲୋକଟି ପ୍ରତି ଟି.ଟି.ଆଇ.ର ଅମାନୁଷିକତା ଓ ତା' ସହିତ ମାନସିକ ପ୍ରତିକ୍ରିୟାକୁ ଗାଳ୍ପିକ ଏଥିରେ ସୁନ୍ଦର ଭାବେ ଫୁଟାଇଛନ୍ତି ।

'ଧର୍ମଶାଳା' ଗଳ୍ପର ନାୟକ ଓଁକାର ମଲ୍ଲ ଶେଠ ଲୋକ ଦେଖାଣିଆ ଧର୍ମ କରନ୍ତି । ଧର୍ମଶାଳା ତୋଳାନ୍ତି । ତାଙ୍କୁ ରାୟବାହାଦୁର ଉପାଧିରେ ଭୂଷିତ କରାଯାଇଛି । କିନ୍ତୁ ବାସ୍ତବରେ ସେ ଅପକର୍ମରେ ଲିପ୍ତ ଥାଆନ୍ତି । ଶସ୍ତାରେ ଧାନ ଚାଉଳ କିଣି ସେଥିରେ ବାଲି, ଗୋଡ଼ି ମିଶାଇ ଲୋକଙ୍କୁ ବିକ୍ରି କରନ୍ତି । ଧର୍ମ ଓ ପରୋପକାର ନାମରେ କିଭଳି ଶୋଷଣ ଚାଲିଛି, ଲେଖକ ତା'ର ଏକ ଚିତ୍ର ଦେଇଛନ୍ତି ।

'ପହିଲି ଭୋଗ' ଗଳ୍ପରେ ଜଣେ ନିଷ୍ଠୁର ସାହୁକାରର ଅତ୍ୟାଚାର ବର୍ଣ୍ଣିତ । ଠାକୁରଙ୍କ ନାମରେ ସେ ଶୋଷଣ କରେ । ତା'ରି ଅତ୍ୟାଚାରରେ ଗାଁର ଷହେ ଘର କୁଟୁମ୍ବ ଜମିବାଡ଼ି ହରାଇ ଦାଣ୍ଡର ଭିକାରି ହୋଇଛନ୍ତି । ମକରାର ଘର ଡିହ ଉପରେ ସାହୁକାରର ଆଖି ପଡ଼ିଛି । ମକରା ଆପତ୍ତି କରିବାରୁ ମିଥ୍ୟା ମକଦ୍ଦମା କରି ତା'ର ଘରଡିହ ହଡ଼ପ କରିଛନ୍ତି । ପୁଣି ତାକୁ ଏପରି ଜୋର୍‌ରେ ଠେଲି ଦେଇଛନ୍ତି ଯେ ଉଠି ନ ପାରି ବିଛଣା ଧରିଛି । ମାସ ଦୁଇଟା ଭିତରେ ତା'ର ମୃତ୍ୟୁ ହୋଇଛି । ତା'ର ପୁଅ ସପନା ମଧ୍ୟ ତାଙ୍କ ନିର୍ମମ ଅତ୍ୟାଚାରରୁ ତ୍ରାହି ପାଇ ନାହିଁ ।

ଜଣେ ମଠ ମହନ୍ତର ଶୋଷଣ 'ଚିତ୍ରକଟା' ଗଳ୍ପର ଉପଜୀବ୍ୟ । ନରିପୁର ମଠର ମହନ୍ତ ପ୍ରେମ ଜୀବନ ଦାସ ପୂଜାପାର୍ବଣ ଯାନିଯାତ୍ରାରେ ଦ୍ୱାରିକା ଛାପାଠାରୁ ଆରମ୍ଭ କରି ଗୌଡ଼ୀୟ ଛାପା ଦେହରେ ଧାରଣ କରନ୍ତି । ଗରିବ ଲୋକଙ୍କୁ ଟଙ୍କା କରଜ ଦିଅନ୍ତି । କିନ୍ତୁ କରଜ ପରିଶୋଧ କରିବାକୁ ଆସିଲେ ମିଠାକଥା କହି ଫେରାଇ ଦିଅନ୍ତି । ଚାରି ପାଞ୍ଚ ବର୍ଷ ପରେ ଚକ୍ରବୃଦ୍ଧି ହାରରେ ଟଙ୍କା ଦୁଇ ତିନି ଗୁଣା ହୋଇଗଲେ ତାଙ୍କର ଜମି ରଖି ତାକୁ ଦେଣାରୁ ମୁକ୍ତି ଦିଅନ୍ତି ।

ଲେଖକ ଭିକ୍ଷା ବୃତ୍ତି କରୁଥିବା କେଲୁଣୀର କରୁଣ ଚିତ୍ର ପ୍ରଦାନ କରିଛନ୍ତି 'ଭିକାରୁଣୀ' ଗଳ୍ପରେ ।

'ଅନ୍ଧ' ଆଉ ଏକ କରୁଣ ରସାତ୍ମକ ଗଳ୍ପ । ଅନ୍ଧଟିଏ ନିଜ ପୁଅକୁ ଅକାଳରେ ହରାଇଛି । ଭିକାରି ହୋଇ ଗୀତ ଗାଉ ଗାଉ ଏକ ଛୋଟ ଶିଶୁ କଅଁଳ ହାତର ସ୍ପର୍ଶ ପାଇଛି । ଶିଶୁଟି ମଧ୍ୟ ପୁଣି ଗୀତ ଗାଇବାକୁ କହିଛି – 'ବୁଢ଼ା, ଗୀତ ଗାଆ' ।

କଅଁଳ ଶିଶୁର ସ୍ପର୍ଶ ଓ ଅଳି ଅନ୍ଧ ବୁଢ଼ାର ପିତୃ ସ୍ନେହକୁ ଉଜ୍ଜୀବିତ କରିଛି । ସେହି ମଧୁର ପଦ ଶୁଣିବାପାଇଁ ଦିନ ପରେ ଦିନ ଗୀତ ଗାଇଛି । ଅନ୍ଧ ବୁଢ଼ା ଅସୁସ୍ଥ ହୋଇପଡ଼ିଛି । ସେ କେତେ ଦିନ ଗଲାପରେ ସୁସ୍ଥ ହୋଇ ପୁଣି ସେଇ ମଧୁର କଥା ଶୁଣିବାକୁ ଧାଇଁଆସିଛି । ମାତ୍ର ଏ ଭିତରେ ଘରବାଲାର ବଦଳି ହୋଇଯାଇଛି । ଶିଶୁଟିର ମଧୁର କଥା ତା' କାନରେ ଆଉ ବାଜି ନାହିଁ । କିନ୍ତୁ ତା'ର ପ୍ରାଣରେ ସେହି ସ୍ୱରର ପ୍ରତିଧ୍ୱନି ଶୁଣିଛି । ଗଳ୍ପଟି ବାତ୍ସଲ୍ୟ ମମତାର ଅପୂର୍ବ ନିଦର୍ଶନ ।

ସମାଜରେ ବଡ଼ପଣ୍ଡା ବୋଲାଉଥିବା ବ୍ୟକ୍ତିଙ୍କ ପାପ ପ୍ରଲୋଭନରେ ଭୟାତୁର ହୋଇ ଶ୍ରୀଜଗନ୍ନାଥଙ୍କ ଚରଣରେ ଆଶ୍ରୟ ନେବାକୁ ପୁରୀ ଯାତ୍ରା କରୁଥିବା ଅସହାୟା ବିଧବା ଜୀବନର କାହାଣୀକୁ 'ଷ୍ଟେସନ ମାଷ୍ଟର' ଗଳ୍ପରେ ଅନନ୍ତ ପ୍ରସାଦ ପ୍ରକାଶ କରିଛନ୍ତି ।

'ଓକିଲବାବୁଙ୍କ ଉଇଲ୍' ଏକ ଭିନ୍ନସ୍ୱାଦର ଗଳ୍ପ । ଏଥିରେ ଓକିଲଙ୍କ ନିଃସ୍ୱାର୍ଥ ତ୍ୟାଗ ବର୍ଣ୍ଣିତ । ଲୋକ ମୁହଁରେ ସେ ଥିଲେ କୃପଣ । ଭାଟ ଭିକାରିଙ୍କୁ ମୁଠାଏ ଚାଉଳ କିମ୍ବା ଅଧଲାଟା ହାତଟେକି ଦେଇ ନାହାନ୍ତି । କିନ୍ତୁ ମୃତ୍ୟୁ ପୂର୍ବରୁ ଜିଲ୍ଲା କଲେକ୍ଟରଙ୍କ

ଛରିଆରେ ସ୍ତ୍ରୀଙ୍କ ଭରଣପୋଷଣ, କୁଷ୍ଠାଶ୍ରମ, ଫ୍ରି ବୋର୍ଡିଙ୍ଗ୍, ମାତୃମଙ୍ଗଳ କେନ୍ଦ୍ର ପ୍ରଭୃତି ସ୍ଥାପନପାଇଁ ୧୨ ଲକ୍ଷ ଟଙ୍କା ଦାନ କରିଯାଇଛନ୍ତି । ଜୀବନର ଅନ୍ତିମ ମୁହୂର୍ତ୍ତରେ ଏହି ତ୍ୟାଗ ତାଙ୍କ ଚରିତ୍ରକୁ ଗୌରବାନ୍ୱିତ କରିଛି ।

## ମନର ଭୂତ

'ମନର ଭୂତ' ଗଳ୍ପ ସଂକଳନରେ ଥିବା ଗଳ୍ପଗୁଡ଼ିକ ମଧ୍ୟରୁ ଅଧିକାଂଶ ମନସ୍ତାତ୍ତ୍ୱିକ । ଲେଖକଙ୍କର କଟକ ଅବସ୍ଥାନ କାଳରେ ଏହା କଟକ ଅରୁଣୋଦୟ ପ୍ରେସରୁ ପ୍ରକାଶିତ ହୋଇଥିଲା ।

ସଙ୍କଳନର ପ୍ରଥମ ଗଳ୍ପଟି ହେଲା 'ମନର ଭୂତ' । ଏଥିରେ ଗାଳ୍ପିକ ଚଞ୍ଚଳର ମନରେ କିପରି ଭୂତ ଖେଳିଯାଇଛି ତାହା ପ୍ରକାଶ କରିଛନ୍ତି ।

'ଦ୍ୱିଧାରା' ଗଳ୍ପରେ ଅନନ୍ତ ପ୍ରସାଦ ରେଙ୍ଗୁନ୍‌ଯାତ୍ରୀ ଓଡ଼ିଆ କୁଲିର ଅସହାୟତା ପ୍ରକାଶ କରିଛନ୍ତି । ଏଥିରେ ମଧ୍ୟ ଉତ୍କଳର ନୌବାଣିଜ୍ୟର ଚିତ୍ର ଦେଇଛନ୍ତି । ସେତେବେଳେ ଓଡ଼ିଆ ପୁଅ ଯାଉଥିଲା ସୁଦୂର ଜାଭା, ବାଲି, ବୋର୍ଣ୍ଣିଓ, ସୁମାତ୍ରା, ବର୍ମା ପ୍ରଭୃତି ଦେଶକୁ ଓଡ଼ିଶାର ଟେକ ରଖିବାପାଇଁ । ଓଡ଼ିଶା ମାଟିରେ ଥିବା ଘରକୁ ସୁନା ରୁପାରେ ଭରି ଦେବାପାଇଁ । କିନ୍ତୁ ସେ ଯୁଗ ଆଜି ନାହିଁ । ସେ ଓଡ଼ିଆ ପୁଅ ଆଜି ଓଡ଼ିଆ ସାଧବ ପୁଅ ନୁହେଁ । ଆଜି ଓଡ଼ିଆ କୁଲି × × × ଆଜି ନାହିଁ ତା'ର ସେହି ମକରକୁଣ୍ଡଳ, ଭ୍ରମର କୃଷ୍ଣ ଦୀର୍ଘ କେଶଗୁଚ୍ଛ । ଆଉ ନାହିଁ ତା'ର ପାଟ ଛରିପାଗ । ଆଜି ତା'ର ଚକ୍ଷୁ କୋଟରଗତ ହୋଇଛି । ଗାଳ୍ପିକ ଏ ଗଳ୍ପରେ ଅତୀତ ଓ ବର୍ତ୍ତମାନର ଓଡ଼ିଆଙ୍କ ମଧ୍ୟରେ ତୁଳନାତ୍ମକ ବିଚାର କରି ଏକ ନଗ୍ନ ସତ୍ୟ ଜାତି ସମ୍ମୁଖରେ ଉପସ୍ଥାପିତ କରିଛନ୍ତି ।

ବିଦେଶ ଯାତ୍ରା ଫଳରେ ଯାତ୍ରୀମାନଙ୍କର ଜୀବନ କେବଳ ଦୁର୍ବିଷହ ହେଉ ନ ଥିଲା, ସେମାନଙ୍କର ପରିବାର ମଧ୍ୟ ଦୁର୍ଦ୍ଦଶାଗ୍ରସ୍ତ ହୋଇପଡୁଥିଲେ । 'କଙ୍କାଳର ସ୍ୱପ୍ନ'ରେ ଲେଖକ ସ୍ୱାମୀର ରେଙ୍ଗୁନ ଯାତ୍ରା ଯୋଗୁଁ ପଦୀର ଜୀବନ କିଭଳି ଶୋଚନୀୟ ହୋଇଉଠିଛି ତା'ର ଚିତ୍ର ଦେଇଛନ୍ତି । ଏକ ସତ୍ୟ ଘଟଣା ଉପରେ ଏହା ଆଧାରିତ ।

ସେହି ରେଙ୍ଗୁନ ଯାତ୍ରା ଉପରେ ଆଉ ଏକ ଗଳ୍ପ ହେଉଛି 'ଦେଶାନ୍ତରୀ' । ରେଙ୍ଗୁନ ଯାତ୍ରୀ ସ୍ୱାମୀ ଆଉ ଫେରି ନାହିଁ । ତା'ର ପତ୍ନୀକୁ କିଭଳି ନିର୍ଯାତନା ଦିଆଯାଇଛି, ତା'ର କରୁଣ ଚିତ୍ର ମିଳେ ଏହି ଗଳ୍ପରେ ।

ଲେଖକ ଇତିହାସର ଉପାଦାନକୁ ନେଇ ଗଳ୍ପ ରଚନା କରିଛନ୍ତି 'ସ୍ମୃତିର ପୂଜାରୀ' । ଏଥିରେ ନନ୍ଦିକା ଓ ଚୋଳଗଙ୍ଗଦେବଙ୍କ କାହାଣୀ ବର୍ଣ୍ଣିତ । ସେହିପରି ରମଣୀପାଇଁ ବ୍ରିଟିଶ ସମ୍ରାଟ୍‌ଙ୍କର ସିଂହାସନ ତ୍ୟାଗକୁ ନେଇ ରଚନା କରିଛନ୍ତି 'ପାଣିର ଗାର' ।

ସେହିଭଳି ଆଉ ଏକ ଗଳ୍ପ ହେଉଛି 'ନବାବଙ୍କ ନାତି' ।

ମରହଟ୍ଟାମାନଙ୍କ ବିରୋଧରେ ଯୁଦ୍ଧ କରିବାପାଇଁ ବଙ୍ଗଳାର ନବାବ ଆଲିବର୍ଦ୍ଦି ଖାଁ ନିଜର ନାତି ସିରାଜଉଦ୍ଦୌଲାଙ୍କୁ ମୁର୍ଶିଦାବାଦ ପଠାଇଛନ୍ତି । କିନ୍ତୁ ସେ ମେଦିନୀପୁରରେ ଥିଲାବେଳେ ଖବର ପାଇଲେ ଯେ ସିରାଜ ଲୁତଫ୍ ଉନ୍‌କିସ୍ ନାମକ ଏକ ରମଣୀ ପ୍ରେମରେ ପଡ଼ି ଭାଗଲପୁର ପଳାୟନ କରିଛନ୍ତି । ସେହି ନବାବଙ୍କ ନାତି ଆଜି କଥା ଛଳରେ ବ୍ୟଙ୍ଗୋକ୍ତିରେ ପରିଣତ ହୋଇଛି ।

ନାମକରଣ ଦୃଷ୍ଟିରୁ ଗଳ୍ପଟି ସଫଳତା ଲାଭ କରିଥିଲା ।

ଇତିହାସକୁ ଆଶ୍ରୟ କରି ଆଉ ଏକ ଗଳ୍ପ ହେଉଛି 'ମିଳନର ଧାରା' ।

ମଗଧର ନାଳନ୍ଦା ବିଶ୍ୱବିଦ୍ୟାଳୟ ପରି ସପ୍ତମ ଓ ଅଷ୍ଟମ ଶତାବ୍ଦୀରେ ପୁଷ୍ପଗିରି ଥିଲା ଏକ ବିଶ୍ୱବିଦ୍ୟାଳୟ । ଏହା ମଧ୍ୟ ଏକ ବୌଦ୍ଧବିହାର ଥିଲା । ସତ୍ୟ, ଶାନ୍ତି ଓ ଅହିଂସାର ବାର୍ତ୍ତାବହ ରୂପେ ବୌଦ୍ଧଧର୍ମ ମାନବଜାତିର ଜୀବନ ଦର୍ଶନକୁ ପ୍ରଭାବିତ କରିପାରିଥିଲା । କିନ୍ତୁ କାଳକ୍ରମେ ତାନ୍ତ୍ରିକ ବୌଦ୍ଧଧର୍ମର ପ୍ରସାରରେ ବୌଦ୍ଧବିହାରରେ ରହୁଥିବା ଭିକ୍ଷୁ-ଭିକ୍ଷୁଣୀମାନଙ୍କ ଯୌନାଚାର ପବିତ୍ର ଧର୍ମକୁ କଳୁଷିତ କରିପକାଇଲା । କାଳକ୍ରମେ ଏହି ଧର୍ମ କାଳର କରାଳ ଗର୍ଭରେ ଲୀନ ହୋଇଗଲା ।

'ମିଳନର ଧାରା' ଗଳ୍ପରେ ଲେଖକ ପୁଷ୍ପଗିରି ବିଶ୍ୱବିଦ୍ୟାଳୟ ସୃଷ୍ଟି ସମ୍ପର୍କରେ ଉଲ୍ଲେଖ କରିଛନ୍ତି । ଏଥି ମଧ୍ୟରେ ଜଣେ ଯୁବକ ସନ୍ନ୍ୟାସୀ ଓ ଜଣେ କିଶୋରୀର ପ୍ରେମ କାହାଣୀକୁ ବର୍ଣ୍ଣନା କରିଛନ୍ତି । ଯୁବ-ସନ୍ନ୍ୟାସୀଙ୍କ ସ୍ୱଳନର ଚିତ୍ର ମଧ୍ୟ ଦେଇଛନ୍ତି । ତା'ର ଉଦାହରଣ –

''ଯୁବକ ଭୁଲିଗଲା ଗୁରୁର ଆଦେଶ, ଜାତକର ମନ୍ତ୍ର । କି ଏକ ଅପୂର୍ବ ପୁଲକର ଅନୁଭୂତିରେ ରୋମାଞ୍ଚିତ ହେଲା ତା'ର ଅଙ୍ଗ ....'' ଇତ୍ୟାଦି ।

ଆଲୋଚକଙ୍କ ଭାଷାରେ – ''ଏହି ଐତିହାସିକ ସତ୍ୟର ଅବତାରଣା ମୂଳରେ ଲେଖକଙ୍କର ଏକ ଉଦ୍ଦେଶ୍ୟ ନିହିତ । ଓଡ଼ିଶା ଇତିହାସର ଗୌରବୋଜ୍ଜ୍ୱଳ କୀର୍ତ୍ତି ଏବଂ ପୁଷ୍ପଗିରିର ଐତିହ୍ୟ ଓ ସଂସ୍କୃତି ସହିତ ଲୋକମାନଙ୍କୁ ପରିଚିତ କରାଇବାପାଇଁ × × × ଏହିଭଳି ପଦକ୍ଷେପ ନେଇଛନ୍ତି ।''

**ବାରମଜା**

ଏଥିରେ ଏଗାରଟି କ୍ଷୁଦ୍ର ଗଳ୍ପ ଓ ଗୋଟିଏ ଏକାଙ୍କିକା ରହିଛି । ଏଥିରେ ବିଭିନ୍ନ ସ୍ୱାଦର ଗଳ୍ପ ପ୍ରକାଶ ପାଇଥିବାରୁ ଏହାର ନାମକରଣ ଏହିପରି ହୋଇଛି ।

ସଙ୍କଳନର ପ୍ରଥମ ଗଳ୍ପ ହେଉଛି 'ଚଣାଚୂର' । ଏଥିରେ ଏକ ବୁଢ଼ା ଚଣାଚୂର ବିକାଳିର ବାତ୍ସଲ୍ୟ ମମତା ପ୍ରତିଫଳିତ ହୋଇଛି ।

ଏକ ଗରିବ ବୁଢ଼ା ଚଣାଚୂର ବିକାଳିଟି ତା'ର ଶିଶୁକନ୍ୟାକୁ ହରାଇଛି । ସେ ଥରେ ଚଣାଚୂର ବିକ୍ରି କଲାବେଳେ ଏକ ଟିକି ଝିଅର ଦରୋଟି କଥା ଶୁଣିଛି ।

ପ୍ରାଣରେ ତା'ର ଆପଣା ହଜିଲା ଝିଅର କଅଁଳ ଡାକ ଶୁଣିପାରିଛି । ଚଣାଚୂର ଦେଇ ସେ ଦାମ୍ ମାଗିନି । ଟିକି ଝିଅଟି ସମୟକ୍ରମେ ବଡ଼ ହୋଇଛି । ତା'ର ବିବାହ ବେଳେ ବୁଢ଼ା ବିକାଳିଟି ଚଣାଚୂର ଭିତରେ ଏକ ରୁପା ସେଫ୍ଟିପିନ୍ ଉପହାର ଦେଇ ସବୁରି ଅଜ୍ଞାତରେ ଦୂରେଇ ଯାଇଛି ।

ସ୍ତ୍ରୀମାନଙ୍କ ଅଳଙ୍କାର ମଧ୍ୟରେ କାନରେ ବ୍ୟବହୃତ ହେଉଥିବା ନୋଳି ଅନ୍ୟତମ । ଏହାକୁ ଅବଲମ୍ବନ କରି ଗାଳ୍ପିକ ରଚନା କରିଛନ୍ତି ଗଳ୍ପ – 'ନୋଳି' । ଏହି ନୋଳିପାଇଁ ସ୍ୱାମୀ ଋଣ କରିଛି । ଋଣ ଶୁଝିବାପାଇଁ ବିଦେଶ ଯାଇଛି । ଫଳରେ ତା'ର ପରିବାରଟି ଛାରଖାର ହୋଇଯାଇଛି । ସେହି ଅଶ୍ଳୁଳ କାହାଣୀଟି ଲେଖକଙ୍କର ଏକ ସଫଳ ସୃଷ୍ଟି ବୋଲି ଧରାଯାଏ ।

'ନର୍ସ' ଗଳ୍ପରେ ଲେଖକ ମାନବିକ ପ୍ରେମ ଓ କର୍ମତତ୍ପରତା ଉପରେ ଆଲୋଚନା କରିଛନ୍ତି ।

'କୋଇଲି' ଲେଖକଙ୍କ ଅନ୍ୟ ଏକ ଅନବଦ୍ୟ ସୃଷ୍ଟି ।

ମେହେନ୍ତର ଝିଅ କୋଇଲି । ସେ ଘନକୁ ଭଲ ପାଉଥିଲା । କିନ୍ତୁ କୋଇଲିକୁ ତା' ମା' ନବୀନ ସହିତ ବିବାହ ଦେବାପାଇଁ କଥା ଦେଇଛି । ନବୀନ ତେଣୁ ଘନ ପ୍ରତି ଈର୍ଷାପରାୟଣ ହୋଇଛି । ଘନକୁ ଚାକିରିରୁ ବାହାର କରିଦେବାପାଇଁ ଜମାଦାର ପାଖରେ ସତ ମିଛ କହିଛି । ଫଳରେ ଘନର ଚାକିରି ଯାଇଛି । ତଥାପି ଘନ ଓ କୋଇଲିର ଭଲ ପାଇବାରେ ଅନ୍ତ ଘଟିନି । କୋଇଲିକୁ ତା' ମା' ନବୀନ ସହିତ ବିବାହ କରିଦେଇଛି । ତଥାପି କୋଇଲି ଘନକୁ ଭୁଲିପାରି ନାହିଁ ।

ଚାକିରି ଯିବା ପରେ ଘନ ନିଃସଙ୍ଗ ହୋଇପଡ଼େ । କୋଇଲିକୁ ମନରୁ ପାସୋରି ଦେବାପାଇଁ ମଦ ପିଇଛି । ଅତ୍ୟଧିକ ମଦ୍ୟପାନଦ୍ୱାରା ତା'ର କଲିଜା ନଷ୍ଟ ହୋଇଛି ।

ଦିନେ ପାହାନ୍ତାରେ କୋଇଲି ଝାଡୁଧରି ରାସ୍ତା ସଫା କରିବାକୁ ଗଲାବେଳେ ବାଟରେ କିଏ ଜଣେ ପଡ଼ିଥିବାର ଦେଖି ଅଟକି ଯାଇଛି । ସେ ଘନକୁ ଚିହ୍ନିପାରିଛି । ଘନ ଶେଷ ନିଶ୍ୱାସ ତ୍ୟାଗ କଲାବେଳେ କୋଇଲି ତାକୁ କୋଳ କରିନେଇଛି ।

ନୀଚ ଜାତିରେ ଜନ୍ମ ହୋଇଥିବା କୋଇଲିର ପ୍ରେମର ଗଭୀରତାକୁ ଗାଳ୍ପିକ ପ୍ରକାଶ କରିଛନ୍ତି ।

'କୋଇଲି' ଗାଳ୍ପିକଙ୍କର ଏକ ସଫଳ ସୃଷ୍ଟି ।

'ଅଲିଭାଚିତା' ଆଉ ଏକ କରୁଣ ରସାତ୍ମକ ଗଳ୍ପ । ଗଳ୍ପର ନାମହୀନା ନାୟିକା ଯାହାକୁ ଭଲ ପାଇଥିଲା ତାକୁ ବିବାହ କରିପାରି ନ ଥିଲା । ଏକ ବୃଦ୍ଧକୁ ବିବାହ କରି ଅକାଳରେ ବିଧବା ହେଲା । ପୁଣି ତା'ର ପ୍ରେମିକ ସହିତ ମିଳନ ହୋଇଥିଲା । ମାତ୍ର ନିନ୍ଦା ଅପବାଦ ସହି ନ ପାରି ଶେଷରେ ଆତ୍ମହତ୍ୟା କଲା । ନାୟକ ମଧ୍ୟ ସଂସାର ଛାଡ଼ି ସନ୍ନ୍ୟାସୀ ହୋଇଛି ।

ଗଳ୍ପଟି ବିଧବା ଜୀବନର ଏକ ମାର୍ମିକ ଆଲେଖ୍ୟ ।

ଅନନ୍ତ ପ୍ରସାଦ ମଧ୍ୟ କିମ୍ବଦନ୍ତୀକୁ ନେଇ ଗଳ୍ପ ରଚନା କରିଛନ୍ତି । 'ମାଳତୀଗଡ଼ର ଦୀପ' ସେହିପରି ଏକ କିମ୍ବଦନ୍ତୀମୂଳକ ଗଳ୍ପ ।

ଏହି ଗଳ୍ପଟି ପ୍ରଣୟ ଉପରେ ଆଧାରିତ । ଏଥିରେ ନାୟକ ରାଜକୁମାର ଓ ନାୟିକାର ସ୍ୱାଭାବିକ ଆକର୍ଷଣ, ମଧୁର ଦାମ୍ପତ୍ୟ ଜୀବନ ଓ କରୁଣ ପରିଣତି ବର୍ଣ୍ଣନା କରାଯାଇଛି ।

'ମାଳତୀଗଡ଼ର ଦୀପ' ଅନନ୍ତ ପ୍ରସାଦଙ୍କ ଏକମାତ୍ର କିମ୍ବଦନ୍ତୀମୂଳକ ଗଳ୍ପ ।

'ଅଭିନବ ଦୁର୍ଗୋତ୍ସବ' ଗଳ୍ପରେ ଦେବୀ ବନ୍ଦନା ପରିବର୍ତ୍ତେ ମାନବ ବନ୍ଦନାକୁ ଅଭିନବ ଦୁର୍ଗୋତ୍ସବ ବୋଲି ଲେଖକ କହିଛନ୍ତି । ଦାରିଦ୍ର୍ୟ ଦୂରୀକରଣପାଇଁ କର୍ମଶାଳା ପ୍ରତିଷ୍ଠା, କୁଟୀରଶିଳ୍ପ ପ୍ରଚଳନ, ପଶୁବଳି ବିଲୋପ ପ୍ରଭୃତିପାଇଁ ଗଳ୍ପରେ ସନ୍ଦେଶ ଦିଆଯାଇଛି ।

ଏହି ଗଳ୍ପରେ ଗାଳ୍ପିକ ଅନନ୍ତ ପ୍ରସାଦଙ୍କ ସଂସ୍କାରମୁଖୀ ଆଭିମୁଖ୍ୟର ପରିଚୟ ମିଳେ ।

ଲେଖକମାନେ ବାସ୍ତବତାକୁ ଆଶ୍ରୟ କରି ସାହିତ୍ୟ ରଚନା କରିଥାନ୍ତି । କିନ୍ତୁ ସମୟେ ସମୟେ ବାସ୍ତବ ଜଗତରେ ସେମାନଙ୍କର ଆତ୍ମା ତୃପ୍ତ ହୁଏ ନାହିଁ । ତେଣୁ କଳା ଜଗତରେ ବୁଲି ଆସିବାପାଇଁ ପ୍ରାଣ ଉଚ୍ଚାଟ ହୁଏ । ଗଳ୍ପ ଜଗତରେ ଆନନ୍ଦ ମିଳିପାରିବ – ଏହି କଥା ଲେଖକ 'ଦୁନିଆ ବାହାରେ' ଗଳ୍ପରେ ପ୍ରତିପାଦିତ କରିଛନ୍ତି ।

**ନୈଶ୍ୟସୁନ୍ଦରୀ**

ଅନନ୍ତ ପ୍ରସାଦଙ୍କ ସର୍ବାଧୁନିକ ଗଳ୍ପ ସଞ୍ଚୟନ ହେଉଛି 'ନୈଶ୍ୟସୁନ୍ଦରୀ' । ଏଥିରେ ଥିବା ଗଳ୍ପଗୁଡ଼ିକ ତାଙ୍କର ବିପୁଳ ଅଭିଜ୍ଞତା ଓ ଅନୁଭୂତି ଭିତରୁ ସୃଷ୍ଟି ହୋଇଥିବା ଲକ୍ଷ୍ୟ କରାଯାଏ । ଏହି ସମୟର ବହୁ ଗଳ୍ପ ମଧ୍ୟ ସଫଳତା ଲାଭ କରିଅଛି ।

'ନୈଶ୍ୟସୁନ୍ଦରୀ' ଗାଳ୍ପିକଙ୍କର ଭୁବନେଶ୍ୱର ଅବସ୍ଥାନ ସମୟର ରଚନା । ଦିନେ ସନ୍ଧ୍ୟାରେ ନିଜ କନ୍ୟା ଶୋଭାରାଣୀ ସହ ଏକ ନର୍ସରୀରେ ବୁଲୁଥିବାବେଳେ ଦେଖିଲେ ଏକ ଗଛ । ସେହି ଗଛର ଫୁଲ କେବଳ ରାତି ଅଧରେ ଫୁଟୁଥିବା ଜାଣିବାକୁ ପାଇଲେ । ଘରକୁ ଆସିଲାପରେ ନର୍ସରୀର ତତ୍ତ୍ୱାବଧାରକଙ୍କ ଜୀବନକୁ ନେଇ ରଚନା କଲେ ଏହି ଗଳ୍ପଟି ।

ଚାକିରି ଜୀବନ ଭିତରେ ପ୍ରେମ ସ୍ମୃତିକୁ ନେଇ ଗଳ୍ପଟି ଗଢ଼ିଉଠିଛି । ଏହାର ମନୋବିଶ୍ଳେଷଣ ବେଶ୍ ଜୀବନ୍ତ ହୋଇଥିବାରୁ ଉଚ୍ଚମାନର ଗଳ୍ପ ରୂପେ ସ୍ୱୀକୃତି ଲାଭ କରିଛି ।

ଅନନ୍ତ ପ୍ରସାଦ ସରକାରୀ ଚାକିରିଆ ଥିଲେ । ଚାକିରି ଜୀବନରେ ସରକାରୀ କର୍ମଚାରୀମାନଙ୍କର ବିଭିନ୍ନ ଅବସ୍ଥାର ମାନସିକ ଦ୍ୱନ୍ଦ୍ୱ, ବିକ୍ଷୋଭ ଓ ସଂଘର୍ଷକୁ ଉପଲବ୍ଧି କରିଥିଲେ । ବିଶେଷତଃ, ନିମ୍ନ ତୃତୀୟ ଓ ଚତୁର୍ଥ ଶ୍ରେଣୀ କର୍ମଚାରୀମାନଙ୍କର ମାନସିକ ଅବସାଦ, ଆର୍ଥନୀତିକ ଦୁରବସ୍ଥା, ସହରରେ ଘରଭଡ଼ା ସମସ୍ୟା, ଅବସର ଗ୍ରହଣର ପୂର୍ବରୁ ଓ ପରେ ସେମାନଙ୍କର ମାନସିକ ଦ୍ୱନ୍ଦ୍ୱ ଓ ସଂଘର୍ଷ ନେଇ ବହୁ ଗଳ୍ପ ରଚନା କରିଛନ୍ତି ।

ସହରର ବାସଗୃହର ଉତ୍କଟ ଅଭାବ ଥିବା ସାଧାରଣ କଥା । ବିଭିନ୍ନ ଟାଇପ୍‌ର ଘର ଭିତରେ ଚାକିରିଆ ଜୀବନ କିପରି ଯନ୍ତ୍ରଣାରେ ଆର୍ତ୍ତନାଦ କରେ, ତା'ର ସଫଳ ରୂପାୟନ ହୋଇଛି 'ଟାଇପ୍ ଫୋର୍' ଗଳ୍ପରେ ।

ଅନନ୍ତ ପ୍ରସାଦ ଭୁବନେଶ୍ୱରରେ ଏକ ଟାଇପ୍ ସିକ୍‌ସ କ୍ୱାର୍ଟରରେ ରହୁଥିଲେ । ନିଜ କ୍ୱାର୍ଟର ବାରଣ୍ଡାରେ ବସି ସାମନା ସଡ଼କର ଅପରପାର୍ଶ୍ୱରେ ଥିବା ଟାଇପ୍ ଫୋର୍ କ୍ୱାର୍ଟର ଉପରେ ତାଙ୍କର ଦୃଷ୍ଟି ପଡୁଥିଲା । ବେଶି ଦୂର ନ ହେଲେ ବି ସେ ଦେଖନ୍ତି ଯେ ଟାଇପ୍ ସିକ୍‌ସ ବା ତାହାଠାରୁ ଉର୍ଦ୍ଧ୍ୱ କ୍ୱାର୍ଟରରେ ରହୁଥିବା ବ୍ୟକ୍ତିମାନଙ୍କ ସହିତ ଟାଇପ୍ ଫୋର୍‌ରେ ରହୁଥିବା ଚାକିରିଆ ମଧ୍ୟରେ କୌଣସି ସାମାଜିକ ସମ୍ପର୍କ ନାହିଁ । ଏହି ଶ୍ରେଣୀ ପାର୍ଥକ୍ୟ ଯୋଗୁଁ ତାଙ୍କ ମନରେ ଯେଉଁ ଭାବଧାରା ଜାଗି ଉଠିଥିଲା, ତାକୁ ରୂପ ଦେଇଥିଲେ ଏହି 'ଟାଇପ୍ ଫୋର୍' ଗଳ୍ପରେ ।

ଲେଖାଟି ବାସ୍ତବ ଚିତ୍ର ପ୍ରଦାନ କରୁଥିବାରୁ ଏହା ପାଠକମାନଙ୍କ ହୃଦୟରେ ସମ୍ବେଦନା ସୃଷ୍ଟି କରିଥିଲା । 'ଝଙ୍କାର'ରେ ପ୍ରକାଶ ପାଇବା ପରେ ଏହା କଟକ 'ପ୍ରଜାତନ୍ତ୍ର' ପକ୍ଷରୁ ଆୟୋଜିତ ହେଉଥିବା ବିଷୁବ ପୁରସ୍କାର ଲାଭ କରିଥିଲା । ଏହା ଏତେ ଉଚ୍ଚକୋଟୀର ହୋଇଥିଲା ଯେ ଏହା ହିନ୍ଦୀରେ ଅନୁବାଦିତ ହୋଇ ବମ୍ବେରୁ ପ୍ରକାଶିତ ଏକ ପତ୍ରିକା ଓ ଦିଲ୍ଲୀରୁ ପ୍ରକାଶିତ 'ଆଜକଲ୍'ରେ ପ୍ରକାଶିତ ହେଲା । ହାଇଦ୍ରାବାଦରୁ ପ୍ରକାଶିତ 'ବିପୁଳା' ପତ୍ରିକାରେ ଏହାର ତେଲଗୁ ଅନୁବାଦ ମଧ୍ୟ ପ୍ରକାଶ ପାଇଥିଲା ।

'ଟାଇପ୍ ଫୋର୍' ଗଳ୍ପଟି ମାଧ୍ୟମିକ ଶିକ୍ଷାବୋର୍ଡ ଓଡ଼ିଶାଙ୍କଦ୍ୱାରା ସମ୍ପାଦିତ ଏକାଙ୍କିକା ସମାରୋହରେ ପାଠ୍ୟ ରୂପେ ସଙ୍କଳିତ ହୋଇଥିଲା ।

ଚାକିରି ପ୍ରତି ମଣିଷର ଅହେତୁକ ମୋହ ଓ ପଲ୍ଲୀ ତ୍ୟାଗ କରି ସହରରେ ଜୀବନଯାପନ କରିବାର ବାସନାକୁ 'କକ୍ଷଚ୍ୟୁତ' ଗଳ୍ପରେ ଗାଳ୍ପିକ ପ୍ରକାଶ କରିଛନ୍ତି ।

ପଲ୍ଲୀରେ ମଣିଷ ସ୍ୱାଧୀନ ଭାବରେ ଜୀବନଯାପନ କରେ । ଏହା ତାହା ମନରେ ଶାନ୍ତି ଆଣେ । ସହରୀ ଜୀବନର କୃତ୍ରିମତା, ଚାକଚକ୍ୟ, ବିଳାସବ୍ୟସନକୁ ସେ ତୁଚ୍ଛ ମନେ କରେ । ସେ ନିଜକୁ କକ୍ଷଚ୍ୟୁତ ବୋଲି ମନେ କରେ । ତା'ର ଜୀବନ ଯନ୍ତ୍ରଣାଗ୍ରସ୍ତ ହୋଇପଡ଼େ । ଏହାହିଁ ଲେଖକ 'କକ୍ଷଚ୍ୟୁତ'ରେ ଦର୍ଶାଇଛନ୍ତି ।

'ଦିଲ୍ଲୀ କି ଲଡ୍ଡୁ' ଗଳ୍ପରେ ମଧ୍ୟ ସହରୀ ଜୀବନର ନିଃସଙ୍ଗତା, ସମ୍ପର୍କହୀନତା ତଥା କୃତ୍ରିମତା ଏବଂ ପଲ୍ଲୀ ଜୀବନର ସ୍ୱାଭାବିକତା ଓ ଆନ୍ତରିକତାକୁ ଚିତ୍ରଣ କରାଯାଇଛି । ଏଥିରେ ଗାଳ୍ପିକଙ୍କର ପଲ୍ଲୀ ପ୍ରୀତିର ପରିଚୟ ମିଳେ ।

ଚାକିରିଆ ଜୀବନର ଚଳଣିକୁ ନେଇ ଅନନ୍ତ ପ୍ରସାଦ ମଧ୍ୟ ରଚନା କରିଛନ୍ତି 'ଶନିବାର ସନ୍ଧ୍ୟା' । ଶନିବାର ସନ୍ଧ୍ୟାରେ ଚାକିରିଆମାନେ ଏକାଠି ହେବାର ସୁଯୋଗ ପାଇଥାନ୍ତି । ସେଠାରେ ପ୍ରଶାସନିକ ବ୍ୟବସ୍ଥା ତଥା ହାକିମଙ୍କ ମର୍ଜି, ବିଳାସ ପ୍ରଭୃତି ଆଲୋଚନା କରିଥାନ୍ତି । ଏହା ମଧ୍ୟରେ ଗାଳ୍ପିକ ନିଜର ଆବେଗ ଓ ଅନୁଭୂତିକୁ ପ୍ରକାଶ କରିଛନ୍ତି ।

'ଭୂତପୂର୍ବ' ଗଳ୍ପରେ ଲେଖକ କ୍ଷମତା, ପ୍ରତିପତ୍ତି, ପଦବୀ ନିର୍ବିଶେଷରେ ସମସ୍ତେ ସମାନ ବୋଲି ଦର୍ଶାଇଛନ୍ତି ।

ଚାକିରି ଜୀବନର ବାସ୍ତବ ସତ୍ୟ ଉପରେ ଆଉ ଏକ ଗଳ୍ପ ହେଉଛି 'ପହିଲା ପରେ' । ସାଧାରଣତଃ, ପହିଲା ତାରିଖରେ ଚାକିରିଆମାନେ ଦରମା ପାଇଥାନ୍ତି । ସେଦିନ ତେଣୁ ଆନନ୍ଦିତ ହେବା ସ୍ୱାଭାବିକ । ମାତ୍ର ଯାହାର ଯାହା ପ୍ରାପ୍ୟ ତାହାକୁ ଦେବାକୁ ପଡ଼େ । ପହିଲା ଯାଉଁ ଯାଉଁ ଟଙ୍କା ସରିଯାଏ । ପୁଣି ଆର ପହିଲା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼େ । ଏହି ବାସ୍ତବ ଘଟଣାକୁ କଥାକାର ଅତି ସୁନ୍ଦର ଭାବେ ରୂପାୟିତ କରିଛନ୍ତି ।

'ସାୟାହ୍ନ ସାଥୀ'ରେ ଗାଳ୍ପିକ ଅଧ୍ୟକ୍ଷାଙ୍କ ଅବସରକାଳୀନ ମର୍ମବ୍ୟଥା ପ୍ରକାଶ କରିଛନ୍ତି । ଗୋଟିଏ କଲେଜର ଅଧ୍ୟକ୍ଷା ସୁଜାତା ଅବସର ଗ୍ରହଣ କରିବାକୁ ଯାଉଛନ୍ତି । ବିଦାୟ କାଳରେ ତାଙ୍କର ମର୍ମବ୍ୟଥା ଫୁଟିଉଠିଛି । ତାଙ୍କର କର୍ମକ୍ଷେତ୍ର କଥା ମନେ ପଡ଼ିଛି । ଦୀର୍ଘ କାଳ ଧରି ଛାତ୍ରୀମାନଙ୍କର ଅଭାବ ଶୁଣି ଆସିଥିଲେ । ତାଙ୍କୁ ଆଉ ଶୁଣିବାକୁ ହେବ ନାହିଁ । ସେମାନଙ୍କ ସଙ୍ଗେ ଦେଖା ବି ହେବ ନାହିଁ । ତାଙ୍କୁ ନିଃସଙ୍ଗ ଜୀବନଯାପନ କରିବାକୁ ପଡ଼ିବ ।

କିନ୍ତୁ ଜୀବନର ସାୟାହ୍ନରେ ସୁଜାତାଙ୍କୁ ସାଥୀଟିଏ ମିଳିଛି । ସେ ତାଙ୍କର ପ୍ରେମ ନିବେଦନକୁ ଏଡ଼ାଇ ପାରି ନାହାନ୍ତି । ଦୁହିଁଙ୍କର ମିଳନ ହୋଇଛି ।

ଗାଳ୍ପିକ ଅନନ୍ତ ପ୍ରସାଦ ଲେଖକ ଜୀବନକୁ ନେଇ ରଚନା କରିଛନ୍ତି ଗଳ୍ପ – 'ସ୍ରଷ୍ଟାର ଅଭିମାନ' । ସ୍ରଷ୍ଟା ତା'ର ସୃଷ୍ଟିର ଆତ୍ମପ୍ରକାଶରେ ଆନନ୍ଦ ପାଏ । ଏହାହିଁ ତା' ଜୀବନର ଚରମ ସାର୍ଥକତା । ମାତ୍ର ସେ ଏଥିରୁ ବଞ୍ଚିତ ହେଲେ ବା ତା'ଠାରୁ ବହୁ ନିମ୍ନସ୍ତରର ସୃଷ୍ଟି ବ୍ୟାବସାୟିକ ସ୍ତରରେ ସଫଳତା ଲାଭ କରେ, ସେତେବେଳେ ତା'ର ସ୍ରଷ୍ଟା ପ୍ରାଣ ଅଭିମାନରେ ଭରିଯାଏ । ଏହି ସତ୍ୟକୁ ଲେଖକ ଅସୀମ ରଞ୍ଜନ ମାଧ୍ୟମରେ ବର୍ଣ୍ଣନା କରିଛନ୍ତି ।

ସମ୍ଭବତଃ ଲେଖକ ନିଜର ସ୍ରଷ୍ଟା ଜୀବନର ଅନୁଭୂତିକୁ ଏଥିରେ ବ୍ୟକ୍ତ କରିଛନ୍ତି ।

'କେଉଁ ବାଟଟି ଠିକ୍' ? ଗଳ୍ପରେ ଲେଖକ ରାଖା ମିଆଁ ଜୀବନର ବ୍ୟଥା ଓ ବେଦନାକୁ ଉପସ୍ଥାପିତ କରିଛନ୍ତି । ସେ ଘାତକ ଓ ଘୃଣ୍ୟ ମାଂସ ବ୍ୟବସାୟୀ ହେଲେ ବି ତା'ର ହୃଦୟ ଅଛି । ଅନ୍ୟ ବ୍ୟବସାୟୀଙ୍କ ପରି ସେ ଠକ କିମ୍ବା ଶୋଷକ ନୁହେଁ । ଲେଖକ ରାଖାମିଆଁ ଚରିତ୍ର ମାଧ୍ୟମରେ ସମାଜର ବାସ୍ତବ ସ୍ୱରୂପ ଉଦ୍‌ଘାଟନ କରିଛନ୍ତି ।

ଜଣେ ରିକ୍‌ସାବାଲାର ଜୀବନ ଯନ୍ତ୍ରଣାକୁ ନେଇ ଅନନ୍ତ ପ୍ରସାଦ ରଚନା କରିଛନ୍ତି ଗଳ୍ପ – 'ରିକ୍‌ସା' ।

ସହରର ରିକ୍‌ସାବାଲାଙ୍କ ସମସ୍ୟା 'ରିକ୍‌ସା' ଗଳ୍ପରେ ଅଙ୍କିତ ହୋଇଛି । ନେତାମାନଙ୍କ ରାଜନୈତିକ ଚାଲ୍ କିପରି ସାଧାରଣ ଜୀବନକୁ ବିପର୍ଯ୍ୟସ୍ତ କରେ ତାହା ଏଥିରେ ପ୍ରତିଫଳିତ ହୋଇଛି । ରିକ୍‌ସାବାଲା ବୁଦ୍ଧି ରାଜନୀତିକୁ ବୁଝି ନ ପାରି ଆନ୍ଦୋଳନ କରିଛି । ମାତ୍ର ଫଳ କିଛି ହୋଇ ନାହିଁ । ବରଂ ତା'ର ଦୁଃଖ ବଢ଼ିଛି । ରାଜନେତା ଦଳବେହେରା ତା'ର ଦୁର୍ଦ୍ଦଶାପାଇଁ ଦାୟୀ ବୋଲି ତା'ର ହୃଦ୍‌ବୋଧ ହୋଇଛି । ତାଙ୍କୁ ଆଘାତ କରି ଶେଷରେ ସେ ଜେଲ୍ ଯାଇଛି ।

'ମଣିଷ' ଗାଳ୍ପିକଙ୍କର ଏକ ଉଲ୍ଲେଖଯୋଗ୍ୟ ସୃଷ୍ଟି ।

ଗାଳ୍ପିକ ସାମ୍ପ୍ରଦାୟିକତାର ଘୋର ବିରୋଧୀ ଥିଲେ । ଭାରତରେ ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ଚାଲିଥିବା ମୈତ୍ରୀ କିପରି ନଷ୍ଟ ହେଉଛି, ତାହା କେତେକ ଗଳ୍ପରେ ପ୍ରକାଶ କରିଛନ୍ତି ।

ହିନ୍ଦୁ ଓ ମୁସଲମାନ ଏହି ଦୁଇ ସମ୍ପ୍ରଦାୟ ମଧ୍ୟରେ କିପରି ସଦ୍‌ଭାବ ରହିବ ସେହି ଉଦ୍ଦେଶ୍ୟରେ ସେ ସୃଷ୍ଟି କରିଛନ୍ତି ଗୋଟିଏ ଗଳ୍ପ – 'ମଣିଷ' । ସାମ୍ପ୍ରଦାୟିକତା ମନୋଭାବ ପ୍ରତି ସେ ଏହି ଗଳ୍ପରେ ଘୃଣା ପ୍ରକାଶ କରିଛନ୍ତି । ମଣିଷ ମଣିଷ ଭିତରେ ଧର୍ମ ବିଶ୍ୱାସ ଠାରୁ ମାନବିକତା ଯେ ଅଧିକ ସ୍ପୃହଣୀୟ – ତାହା ଏଥିରେ ସେ ପ୍ରତିପାଦିତ କରିଛନ୍ତି । ସେ ଏହି ଗଳ୍ପରେ ମାନବଧର୍ମକୁ ପ୍ରାଧାନ୍ୟ ଦେଇଛନ୍ତି । ଏହା ବହୁଦିନ ଧରି ପାଠ୍ୟପୁସ୍ତକରେ ସ୍ଥାନ ପାଇଥିଲା ।

ସମାଜରେ ଧନୀ ଗରିବ, ଅଫିସର ଠାରୁ କିରାଣି, ଚପରାସୀ ପର୍ଯ୍ୟନ୍ତ ସମସ୍ତେ ନିଜ ଆୟ ଅନୁସାରେ ଚଳନ୍ତି । ତଥାପି ତେଲ ଲୁଣର ସଂସାରରେ ସମସ୍ତଙ୍କର ଅଭାବ ଅନଟନ ଲାଗି ରହିଥାଏ । ଏହା ଉପରେ ରଚନା କରିଛନ୍ତି ଗଳ୍ପ 'ମୋଟା ବାଉଁଶ' । ଲେଖକ ଗଳ୍ପର ମୁଖ୍ୟ ଚରିତ୍ର ମାଧ୍ୟମରେ ଅଭାବ ଅସୁବିଧାର ସମ୍ମୁଖୀନ ହେଉଥିବା ସମଗ୍ର ଚାକିରିଜୀବୀମାନଙ୍କର ମାନସିକ ପ୍ରତିକ୍ରିୟାକୁ ଜୀବନ୍ତ ରୂପ ଦେଇଛନ୍ତି ।

**ଯୁଗ ରହସ୍ୟ**

ଲେଖକଙ୍କର ଶେଷ ଗଳ୍ପ ସଞ୍ଚୟନ ହେଉଛି 'ଯୁଗ ରହସ୍ୟ' । ଯୁଗ ଯନ୍ତ୍ରଣାର ଚିତ୍ର ଏଥିରେ ବର୍ଣ୍ଣିତ ।

ଯେକୌଣସି ସହରରେ ବିଶେଷତଃ କଟକରେ ଘର ସମସ୍ୟା ଅଧିକ ଜଟିଳ । ଚାକିରି କରୁଥିବା କର୍ମଚାରୀମାନେ ଘର ଖଣ୍ଡିଏ ପାଇବାପାଇଁ ନୟାନ୍ତ ହୋଇଯାଆନ୍ତି । ଗାଳ୍ପିକ ଏହି ସମସ୍ୟାକୁ ହୃଦ୍ୟ ଭାବରେ ପ୍ରକାଶ କରିଛନ୍ତି 'ଭଡ଼ାଘର' ଗଳ୍ପରେ ।

'ଛଅ ମହଲା କୋଠା' ଗଳ୍ପରେ ସହରରେ ବାସ କରୁଥିବା ଦୁଃସ୍ଥ ଲୋକଙ୍କ ଜୀବନ, ବିଶେଷତଃ କୁଷ୍ଠରୋଗାକ୍ରାନ୍ତ ଭିକାରିର ଜୀବନଯାତ୍ରା ଓ ତା'ର କରୁଣ ଚିତ୍ର ଏଥିରେ ଆଙ୍କିଛନ୍ତି ।

ଗଳ୍ପରେ ସାମ୍ୟବାଦ ପ୍ରତିଷ୍ଠା ନାମରେ ଚାଲିଥିବା ସଭା ସମିତି ଓ ତା'ର ରାଜନୈତିକ ଚାଲ୍ ସାଧାରଣ ଜୀବନଠୁ କିପରି ବହୁ ଦୂରରେ ଥାଏ, ତାହା ଦର୍ଶାଇଛନ୍ତି ।

ସହରରେ ରହୁଥିବା ଚାକିରିଆମାନଙ୍କ ମନର ଅବସ୍ଥା, ବିଶେଷତଃ ଅବସର ସମୟ ପାଖେଇ ଆସୁଥିଲାବେଳେ ତାଙ୍କର ମାନସିକ ଦ୍ୱନ୍ଦ୍ୱକୁ ଅତି ଜୀବନ୍ତ ଭାବରେ ପ୍ରକାଶ କରିଛନ୍ତି 'ତଳ ବରଡ଼ା' ଗଳ୍ପରେ । ସମୟ ଅନୁସାରେ ତାଳଗଛର ବାହୁଙ୍ଗା ଖସିପଡ଼ିଲା ପରି ଯେକୌଣସି ଚାକିରି କରିଥିବା ବ୍ୟକ୍ତି ନିଜର କର୍ମ ସମ୍ପାଦନ କରି ବିଦାୟ ନିଏ । ଏହି ବାସ୍ତବ ସତ୍ୟକୁ ଅସୀମବାବୁ ଚରିତ୍ର ମାଧ୍ୟମରେ ଗାଳ୍ପିକ ପ୍ରକଟ କରିଛନ୍ତି ।

ଗଳ୍ପଟି 'ଚଳନ୍ତି କାହାଣୀ' ସଙ୍କଳନରେ ସ୍ଥାନ ପାଇ ସ୍ନାତକୋତ୍ତର ଓଡ଼ିଆ ପାଠ୍ୟ ରୂପେ ଗୃହୀତ ହୋଇଥିଲା ।

## ଶିଶୁ ସାହିତ୍ୟ

ଶିଶୁ ସାହିତ୍ୟକୁ ଅନନ୍ତ ପ୍ରସାଦଙ୍କ ଅବଦାନ ମଧ୍ୟ କମ୍ ନୁହେଁ । ତାଙ୍କ ଗ୍ରନ୍ଥାବଳୀର ପ୍ରଥମଖଣ୍ଡରେ ସଙ୍କଳିତ ହୋଇଥିବା ଗଳ୍ପ ସଞ୍ଚୟନ 'ପ୍ରକୃତି' ଏକ ଶିଶୁ ଉପଯୋଗୀ ରଚନା । ଏହା ଶିଶୁମାନଙ୍କପାଇଁ ଅଭିପ୍ରେତ ବୋଲି ଲେଖକ ନିଜେ ଉଲ୍ଲେଖ କରିଛନ୍ତି ।

'ପ୍ରକୃତି'ରେ ସର୍ବମୋଟ ବାରଟି ଗପ ରହିଛି । ଏହାର ପ୍ରଥମ ତିନୋଟି ଗଳ୍ପ ଛଅଟି ଋତୁ ଉପରେ ଆଧାରିତ । ପ୍ରଥମ ଗଳ୍ପ ହେଉଛି 'ଶିଶିର ଓ ବସନ୍ତ' । ଦ୍ୱିତୀୟଟି ହେଲା 'ଗ୍ରୀଷ୍ମ ଓ ବର୍ଷା' ଓ ତୃତୀୟଟି ହେଲା 'ଶରତ ଓ ହେମନ୍ତ' । ଏହି ସବୁ ଋତୁରେ ପ୍ରକୃତି ଚିତ୍ରଣ ଏବଂ ଏହାର ଉପକାରିତା ଓ ଅପକାରିତାକୁ ବର୍ଣ୍ଣନା କରିଛନ୍ତି । 'ବସୁମତୀ' ଗଳ୍ପରେ ପୃଥିବୀ ଆମର ମାଆ ବୋଲି କହିଛନ୍ତି । ଜୀବନ ଧାରଣପାଇଁ ଯାହା କିଛି ଆବଶ୍ୟକ, ତାହା ସେ ଯୋଗାଇଥାଏ ବୋଲି ସୂଚାଇଛନ୍ତି । ନଦୀର ଉତ୍ପତ୍ତି ତଥା ବାଧାବିଘ୍ନ ନ ମାନି ସାଗର ଗର୍ଭ ହେବା ଚିତ୍ର 'ତଟିନୀ' ଗଳ୍ପରେ ଦେଇଛନ୍ତି । 'ଇନ୍ଦ୍ରଧନୁ' ଗଳ୍ପରେ ଇନ୍ଦ୍ରଧନୁ କିପରି ସୃଷ୍ଟି ହୁଏ

ତାହା ବର୍ଣ୍ଣନା କରିଛନ୍ତି । ସୂର୍ଯ୍ୟଦେବଙ୍କ କିରଣ ସହି ନ ପାରି ସୈନ୍ୟମାନେ ପଳାଇଯିବା ଓ ଇନ୍ଦ୍ରଦେବ ତାଙ୍କ ଧନୁ ଧରି ଉଭା ହେବା କଥା ଉଲ୍ଲେଖ କରିଛନ୍ତି । 'ଫୁଲ ଓ ଫଳ' ଗଳ୍ପରେ ସେମାନଙ୍କର ପର ଉପକାର କଥା ଦର୍ଶାଇଛନ୍ତି । ଫୁଲ ଓ ଫଳ ପରି ପରର ଉପକାର କରିବାକୁ ଶିଶୁମାନଙ୍କୁ ଉପଦେଶ ଦେଇଛନ୍ତି । ଚନ୍ଦ୍ର କିପରି 'ଜହ୍ନମାମୁ' ନାମରେ ପରିଚିତ, ତାହା ଲେଖକ 'ଜହ୍ନମାମୁ' ଗଳ୍ପରେ ବ୍ୟକ୍ତ କରିଛନ୍ତି । ଏହା କିପରି ପୃଥିବୀ ଚାରିପଟେ ବୁଲୁଛି, ତାହା ବର୍ଣ୍ଣନା କରିଛନ୍ତି । 'ଜଳ ହିଁ ଜୀବନ' ଏହି କଥାକୁ ଗାଳ୍ପିକ 'ଜଳ' ଗଳ୍ପରେ ପ୍ରକାଶ କରିଛନ୍ତି । ଜଳ ପରି ପବନ ଆମ ଜୀବନ ଧାରଣର ହେତୁ ବୋଲି ଲେଖକ 'ପବନ' ଗଳ୍ପରେ ପ୍ରକାଶ କରିଛନ୍ତି । ସୌର ଜଗତର ଚିତ୍ର 'ଆକାଶ'ରେ ବର୍ଣ୍ଣିତ । 'ଅଗ୍ନିଶର୍ମା' ଗଳ୍ପରେ ଲେଖକ ଅଗ୍ନିର ଉତ୍ପତ୍ତି ଓ ଏହାର ଉପକାରିତା ଓ ଅପକାରିତା ବର୍ଣ୍ଣନା କରିଛନ୍ତି ।

ସଞ୍ଚୟନରେ କାହାଣୀ ଭାଗ ନାହିଁ କହିଲେ ଚଳେ । ଏହା ଶିଶୁ ଉପଯୋଗୀ ବର୍ଣ୍ଣନାଧର୍ମୀ ରଚନା ଭାବେ ଗ୍ରହଣ କରାଯାଇପାରେ ।

## ଉପନ୍ୟାସ

ଅନନ୍ତପ୍ରସାଦ ଚାରି ଗୋଟି ଉପନ୍ୟାସ ରଚନା କରିଛନ୍ତି । ସେଗୁଡ଼ିକ ହେଲା 'ଭାଗ୍ୟଚକ୍ର', 'ନୂଆ ଦୁନିଆ', 'କୁଲି' ଓ 'ମୁକ୍ତ ଆକାଶର ବିହଙ୍ଗ' ।

### ଭାଗ୍ୟଚକ୍ର

ହରିପୁର ଗ୍ରାମର ରାଧାଶ୍ୟାମ ଦାଶଙ୍କର ଏକମାତ୍ର ପୁତ୍ର ଦାମୋଦର । ସେ ଥିଲେ ବାପଛେଉଣ୍ଡ । ଘରେ ଥିଲେ ବୁଢ଼ୀ ମା' ଓ କିଛି ଜମିବାଡ଼ି । ସେ ମଧ୍ୟ ଶିକ୍ଷିତ ଥିଲେ । ନୂଆ ଗାଁର ପ୍ରତିପତ୍ତିଶାଳୀ ଜମିଦାର ହେଉଛନ୍ତି ଜନାର୍ଦ୍ଦନ ଚୌଧୁରୀ । ତାଙ୍କର ଯୁବତୀ କନ୍ୟା ଯମୁନାର ବିବାହ ପ୍ରସ୍ତାବ ପଡ଼ିଚି ଦାମୋଦର ସଙ୍ଗେ । ପ୍ରସ୍ତାବ ପକାଇଥିଲେ ଗ୍ରାମର ଟାଉଟର ମାର୍କଣ୍ଡ ମିଶ୍ର । ଦାମୋଦର କିନ୍ତୁ ବଡ଼ ଲୋକ ଘରେ ବାହା ହେବାକୁ ରାଜି ହୋଇ ନ ଥିଲେ । ଜମିଦାରଙ୍କର କନ୍ୟା ଯମୁନା ମଧ୍ୟ ଦରିଦ୍ର ଦାମୋଦରକୁ ଘୃଣା କରିଛି । ସେ ପ୍ରସ୍ତାବ ଭାଙ୍ଗିଦେବାପାଇଁ ଦାସୀ ଗୁରୁବାରୀକୁ ନିୟୋଜିତ କରିଛି ।

ଅନ୍ୟ ଏକ ଗାଁର ଗୋପାଳ ମହାପାତ୍ର ନାମକ ଜଣେ ବ୍ୟକ୍ତି ଟଙ୍କା ଲୋଭରେ ଗୋଟିଏ ଅଶୀ ବର୍ଷର ବୃଦ୍ଧ ଜମିଦାର ଗୋବର୍ଦ୍ଧନ ସାନ୍ତରା ସଙ୍ଗେ ତାଙ୍କ କନ୍ୟା ବିମଳା ସହିତ ବିବାହ ଦେବାକୁ ଚାହିଁଛନ୍ତି । ବିମଳା ସେଥିପାଇଁ ଦୁଃଖିତା ହୋଇଛି । ହେଲେ ମଧ୍ୟ ତା'ର କୌଣସି ଉପାୟ ନ ଥିଲା । ସେହି ଗ୍ରାମର ଜଣେ ସ୍କୁଲ ଶିକ୍ଷକ ହେଉଛନ୍ତି ଗୌରହରି । ସେ ସଂସ୍କାରପ୍ରିୟ ବ୍ୟକ୍ତି ଥିଲେ । ତାଙ୍କ ପତ୍ନୀ ସୀତାମଣିଦେବୀଙ୍କ ବାନ୍ଧବୀ ଥିଲେ ବିମଳା । ସେ ବିମଳାକୁ ଦାମୋଦର ସହ ବିବାହ

କରାଇଦେଇଛନ୍ତି । ଯମୁନା ଏଥିରେ ଆନନ୍ଦିତା ହୋଇଛି ଓ ଗୋବର୍ଦ୍ଧନ ସାନ୍ତରାଙ୍କ ସମ୍ପତ୍ତି ପ୍ରତି ଆକୃଷ୍ଟା ହୋଇ ତାକୁ ବିବାହ କରିଛି । ବିବାହର ଅଳ୍ପ ଦିନ ପରେ ଯମୁନା ବିଧବା ହୋଇଛି ।

ଦାମୋଦର ଯମୁନାକୁ ବିବାହ ନ କରିବା ଫଳରେ ଜମିଦାର ଜନାର୍ଦ୍ଦନ ଚୌଧୁରୀ ପ୍ରତିହିଂସାପରାୟଣ ହୋଇଉଠିଛନ୍ତି । ସେ ଦାମୋଦର ନାମରେ ମକଦ୍ଦମା ରୁଜୁ କରିଛନ୍ତି, ମାତ୍ର ହାରିଛନ୍ତି ଓ ନିଜ କୃତକର୍ମର ଫଳସ୍ୱରୂପ ଜେଲ୍ ଦଣ୍ଡ ଭୋଗିଛନ୍ତି ।

ଯମୁନାର ମଧ ଦୁର୍ଦ୍ଦଶାର ସୀମା ନାହିଁ । ସେ ବିଧବା ହେଲା ପରେ ଯାଇ ଦାମୋଦରଙ୍କ ଘରେ ଆଶ୍ରୟ ନେଇଛି । ଫଳରେ ଦାମୋଦର ଓ ବିମଳା ମଧ୍ୟରେ ବିଚ୍ଛେଦ ଘଟିଛି । ଯମୁନା ସହିତ ଅବୈଧ ପ୍ରଣୟରେ ଲିପ୍ତ ରହିଛି ଦାମୋଦର । ସେ କ୍ରମେ ଦୁର୍ବଳ ଓ ରୋଗାକ୍ରାନ୍ତ ହୋଇପଡ଼ିଛି । ଏହି ସୁଯୋଗରେ ଯମୁନା ତାଙ୍କ ଟଙ୍କା ପଇସା ଧରି କଲିକତା ପଳାଇଯାଇଛି । ସେଠି କିଛି ଦିନ ବେଶ୍ୟା ବୃତ୍ତି କଲାପରେ ବନାରସର ଜଣେ ଶେଠ୍‌ଙ୍କ ସହିତ ଦେଖା ହୋଇଛି । ଶେଠ୍‌ଙ୍କ ସହିତ ପଳାଇଯାଇ ସେଠାରେ ଯୌବନ ଥିବା ଯାଏଁ ବିଳାସ ବ୍ୟସନରେ କାଳ କଟାଇଛି । ଶେଷରେ ସମସ୍ତଙ୍କଦ୍ୱାରା ପରିତ୍ୟକ୍ତା ହୋଇଛି । ଗୁରୁବାରୀ ମଧ ଯମୁନାର ଶେଷ ସମ୍ବଳ ସୁନାବଳା ନେଇ ଚାଲିଯାଇଛି ।

ଦାମୋଦର ଓ ବିମଳାର ଅତୀତର ସୁଖମୟ ଦାମ୍ପତ୍ୟ ଜୀବନ ଫେରିଆସିଛି । ଲେଖକ ଉପନ୍ୟାସରେ ଭାଗ୍ୟବାଦୀ ହୋଇପଡ଼ିଛନ୍ତି । ଭାଗ୍ୟଚକ୍ରର ଘୂର୍ଣ୍ଣନ ଅନୁସାରେ ମନୁଷ୍ୟ ଭଲ ମନ୍ଦ ଭୋଗ କରେ – ଏହି କଥା ସେ ଉପନ୍ୟାସଟିରେ ପ୍ରତିପାଦିତ କରିଛନ୍ତି ।

**ନୂଆ ଦୁନିଆ**

୧୯୨୮ ମସିହାରେ ପ୍ରଥମ ଉପନ୍ୟାସର ବହୁ ପରେ ଅନନ୍ତ ପ୍ରସାଦ ତିନୋଟି ଉପନ୍ୟାସ ରଚନା କରିଛନ୍ତି । ସେଗୁଡ଼ିକ ହେଲା, ‘ନୂଆ ଦୁନିଆ’, ‘କୁଲି’ ଓ ‘ମୁକ୍ତ ଆକାଶର ବିହଙ୍ଗ’ । ପ୍ରଥମଟି ହେଉଛି ‘ନୂଆ ଦୁନିଆ’ ।

ଉପନ୍ୟାସର ନାୟକ ନବକୁମାର । ସେ ଓ ହେମାଙ୍ଗିନୀ ଦୁହେଁ ଥିଲେ ସହପାଠୀ । ଉଭୟଙ୍କ ମଧ୍ୟରେ ଥିଲା କିନ୍ତୁ ବଡ଼ ବ୍ୟବଧାନ । ନବକୁମାର କୃଷକ ପରିବାରରେ ଜନ୍ମଗ୍ରହଣ କରିଥିଲେ । ହେମାଙ୍ଗିନୀ ଥିଲେ ଧନୀ ଘରର କନ୍ୟା । ନବକୁମାର ଦେଶର ଆର୍ଥିକ ସମସ୍ୟା କଥା ଚିନ୍ତା କରୁଥିଲେ । ସେ ଭାବୁଥିଲେ ଯେ ଦେଶର ଆର୍ଥନୀତିକ ପ୍ରଗତି କେବଳ ସମବାୟଦ୍ୱାରା ସମ୍ଭବ ହେବ । ତେଣୁ ସମବାୟ ପ୍ରତିଷ୍ଠା ଓ ପ୍ରଚାର ଦିଗରେ ସେ ଉଦ୍ୟମ କରୁଥିଲେ । କିନ୍ତୁ ହେମାଙ୍ଗିନୀଙ୍କର ମତ ଅଲଗା ଥିଲା । ପରବର୍ତ୍ତୀକାଳରେ ଅବଶ୍ୟ ସେ ନବକୁମାରଙ୍କୁ ସମର୍ଥନ କରିଛନ୍ତି ଓ ତାଙ୍କର ସହକର୍ମିଣୀ ହୋଇଛନ୍ତି ।

ପଢ଼ା ଶେଷ ହେଲା ପରେ ନବକୁମାର ନିର୍ବାଚନରେ ବିଧାନସଭାକୁ ନିର୍ବାଚିତ ହୋଇଛନ୍ତି । ତାଙ୍କର ବିବାହ ହୋଇଛି ହେମାଙ୍ଗିନୀଙ୍କ ସହିତ । ହେମାଙ୍ଗିନୀ ସମବାୟ ଆଦର୍ଶରେ ଅନୁପ୍ରାଣିତ ହୋଇଛନ୍ତି । ଏପରିକି ଖଦଡ଼ ପିନ୍ଧି ରିଲିଫ୍ ବାଣ୍ଟିବାକୁ ଯାଇଛନ୍ତି ।

ନବକୁମାର ଓ ହେମାଙ୍ଗିନୀ କଳା, ସାହିତ୍ୟ ଓ ସଂସ୍କୃତିର ଅଭିବୃଦ୍ଧିପାଇଁ ପ୍ରେସଟିଏ ସ୍ଥାପନ କରିଛନ୍ତି । ସେଥିରୁ 'ନୂଆ ଦୁନିଆ' ନାମକ ସମ୍ବାଦପତ୍ର ପ୍ରକାଶ ପାଇଛି । ସମବାୟ ପ୍ରଚାର ଓ ପ୍ରସାର ହେବା ସଙ୍ଗେ ସଙ୍ଗେ ଲୋକଙ୍କ ଆର୍ଥିକ ସ୍ଥିତିର ଉନ୍ନତି ଘଟିବା ଫଳରେ ଦୁହେଁ ପରମ ତୃପ୍ତି ଲାଭ କରିଛନ୍ତି ।

କଳାଧର୍ମୀ ନ ହେଲେ ଉପନ୍ୟାସଟି ଯୁଗୋପଯୋଗୀ ଓ କାଳଧର୍ମୀ ହୋଇଥିବା ଲକ୍ଷ୍ୟ କରାଯାଏ ।

## କୁଲି

ଅନନ୍ତ ପ୍ରସାଦଙ୍କ ତୃତୀୟ ଉପନ୍ୟାସଟି ହେଉଛି 'କୁଲି' । ଏହା ଗାନ୍ଧିଜୀଙ୍କ ଆଦର୍ଶବାଦୀ ଚିନ୍ତାଧାରାର ପ୍ରତୀକ ।

ଯୁଦ୍ଧ ସମୟରେ ହରିପୁର ଗାଁମୁଣ୍ଡ ପଡ଼ିଆରେ ଉଡ଼ାଜାହାଜ ଘାଟି ନିର୍ମାଣ କାର୍ଯ୍ୟ ଚାଲିଛି । ଏହି କାର୍ଯ୍ୟ ବିଦେଶୀ କଣ୍ଟ୍ରାକ୍ଟର ଓ ଇଞ୍ଜିନିୟରଙ୍କଦ୍ୱାରା ହେଉଛି । ଉଡ଼ାଜାହାଜ ଘାଟି ଛଡ଼ା ଦଶ ହଜାର ସୈନ୍ୟଙ୍କ ରହିବାପାଇଁ ଘରଦ୍ୱାର ତିଆରି କାମ ପାଇଁ ଶହ ଶହ ସଂଖ୍ୟାରେ କୁଲି ନିୟୋଜିତ ହୋଇଛନ୍ତି ।

କାମ କରୁଥିବା କୁଲିମାନଙ୍କ ମଧ୍ୟରେ ଗୋପିଆ ବାଉରି ଓ ପଦୀ ବାଉରାଣୀ ଥିଲେ ଅନ୍ୟତମ । ଦୁହେଁ ଏକାଠି କାମ କରୁଥିଲେ । ଦୁହିଁଙ୍କ ମଧ୍ୟରେ ଥିଲା ଘନିଷ୍ଠ ସମ୍ପର୍କ ।

ପଦୀ ବାଉରାଣୀ ହେଲେ ବି ଥିଲା ରୂପବତୀ । ତା'ଉପରେ ଆଖି ପଡ଼ିଛି ଇଞ୍ଜିନିୟରଙ୍କର । ତାକୁ ଉପଭୋଗ କରିବାପାଇଁ କଣ୍ଟ୍ରାକ୍ଟର ଓ କୁଲି ସର୍ଦ୍ଦାର ହାତରେ ଖବର ଦେଇଛନ୍ତି । ପଦୀ ପ୍ରତିବାଦ କରିବାରୁ କାମରୁ ବିଦା ହୋଇଛି । କୁଲି ସର୍ଦ୍ଦାର ଦିନେଇ ରାଉତର ଗୋଡ଼ ଧରି ପଦୀ କାନ୍ଦିଛି, ହେଲେ କିଛି ଫଳ ହୋଇ ନାହିଁ ।

ଗୋପିଆ ଏ ଖବର ଜାଣିବାକୁ ପାଇଛି । ଶିକ୍ଷିତ କୁଲି ରଘୁନାଥ ରାଉତରାୟଙ୍କ ବସାକୁ ଯାଇ ସବୁ କଥା ଜଣାଇଛି । ଫଳରେ କୁଲିମାନେ ଧର୍ମଘଟ କରିଛନ୍ତି । ଧର୍ମଘଟ ବେଳେ ଗୋପିଆ କୁଲି ସର୍ଦ୍ଦାର ହୋଇଛି । ପଦୀ ତା' ମୁଣ୍ଡରେ ଥିବା ରୁପା କଣ୍ଟାକୁ ବାହାର କରି ଶ୍ରମିକ ସହଯୋଗ ସମିତିକୁ ଦେବା ଫଳରେ ସମସ୍ତଙ୍କର ପ୍ରଶଂସାର ପାତ୍ର ହୋଇଛି । ଧର୍ମଘଟର ନେତୃତ୍ୱ ନେଇଛନ୍ତି ରଘୁନାଥ । ଧର୍ମଘଟ ମଧ୍ୟ ସଫଳ ହୋଇଛି । ଶେଷରେ କଣ୍ଟ୍ରାକ୍ଟର କାମରୁ ବିଦା ହୋଇଛି । ଇଞ୍ଜିନିୟରଙ୍କର ମଧ୍ୟ ସେଠାରୁ ବଦଳି ହୋଇଛି । ଏହାପରେ କୁଲି ମୂଲିଆମାନେ ଶ୍ରମିକ ସହଯୋଗ

ସମିତି ଗଢ଼ିଛନ୍ତି । ତା'ର ସଭାପତି ହୋଇଛନ୍ତି ରଘୁନାଥ । ଶ୍ରମିକ ସହଯୋଗ ସମିତି ଏରୋଡ୍ରମ ନିର୍ମାଣ କାର୍ଯ୍ୟ ହାତକୁ ନେଇଛି ଓ ସୁଚାରୁରୂପେ କାର୍ଯ୍ୟ ଶେଷ କରିଛି ।

ପଦୀ ବାଉରାଣୀ ଘଟଣାକ୍ରମେ ଶିକ୍ଷାଲାଭ କରିଛି । ସେ କୁଲି ବସ୍ତିରେ ପାଠ ପଢ଼େଇଛି ଓ କ୍ରମେ ପଦ୍ମିନୀ ଦେବୀ ହିସାବରେ ପରିଚିତା ହୋଇଛି । ରଘୁନାଥଙ୍କୁ ମଧ୍ୟ ଏକ ସ୍ୱତନ୍ତ୍ର ଅଫିସ ଯୋଗାଇ ଦିଆଯାଇଛି । କ୍ରମେ ରଘୁନାଥ ଓ ପଦ୍ମିନୀ ଦେବୀଙ୍କ ମଧ୍ୟରେ ପ୍ରେମ ସମ୍ପର୍କ ଗଢ଼ିଉଠିଛି । ସେମାନେ ଶେଷରେ ବିବାହ କରନ୍ତି । ସେମାନଙ୍କ ଚେଷ୍ଟା ଓ ତ୍ୟାଗ ବଳରେ ବସ୍ତିରେ ବହୁ ଉନ୍ନତିମୂଳକ କାର୍ଯ୍ୟ ହୋଇଛି ।

ପଦୀ ପ୍ରେମରେ ପାଗଳ ହୋଇ ଗୋପିଆ ଘୂରିବୁଲିଛି । ଶେଷରେ ପଦୀ ନିକଟରେ ପହଞ୍ଚିଛି । ଜୀବନସାରା ସଞ୍ଚିତ ଅର୍ଥରେ ତିଆରି କରିଥିବା ସୁନାମୋହରକୁ ପଦୀର ପୁଅ ଉଦ୍ଦେଶ୍ୟରେ ଅର୍ପଣ କରି ସେହିଠାରେ ଶେଷ ନିଶ୍ୱାସ ତ୍ୟାଗ କରିଛି ।

ଅନ୍ୟାୟ ଓ ଶୋଷଣରେ ପେଷି ହୋଇଯାଉଥିବା କୁଲିମାନଙ୍କର ଜୀବନର ବାସ୍ତବ ଚିତ୍ର ଔପନ୍ୟାସିକ ଏଥିରେ ଅଙ୍କିତ କରିଛନ୍ତି । ମାର୍କ୍ସବାଦୀ ଶ୍ରେଣୀସଂଘର୍ଷ ଓ ଚେତନା ଏଥିରେ ପ୍ରତିଫଳିତ ହୋଇଛି ।

**ମୁକ୍ତ ଆକାଶର ବିହଙ୍ଗ**

'ମୁକ୍ତ ଆକାଶର ବିହଙ୍ଗ' ଏକ ଆତ୍ମଜୀବନୀମୂଳକ ଉପନ୍ୟାସ । ଔପନ୍ୟାସିକ ଏଥିରେ ଏକ ଗ୍ରାମ୍ୟ ବାଳିକା ସୁଶୀଳାର ଜୀବନରେ ଘଟି ଯାଇଥିବା ସମସ୍ତ ବିଷୟକୁ କାହାଣୀ ଆକାରରେ ପ୍ରକାଶ କରିଛନ୍ତି ।

ସୁଶୀଳା ପୁରୀ ଜିଲ୍ଲାର ଏକ ମଫସଲ ଗାଁର ଝିଅ । ମାଇନର ପଢୁଥିଲାବେଳେ ତା'ର ଇଚ୍ଛା ବିରୋଧରେ ତାକୁ ବିବାହ କରିଦିଆଯାଇଛି । ଫଳରେ ସେ ତା'ର ମନରେ ଆରମ୍ଭ ହୋଇଛି ଭୀଷଣ ପ୍ରତିକ୍ରିୟା । ସେ ସମାଜ ବିରୋଧରେ ବିଦ୍ରୋହ କରିଛି । ସେ ସମାଜର ନୀତିନିୟମକୁ ଭ୍ରୂକ୍ଷେପ ନ କରି କଟକ ପଳାଇ ଯାଇଛି । ସେଠାରେ ନର୍ସିଂ ତାଲିମପ୍ରାପ୍ତ ହୋଇଛି ଓ ଘରୋଇଭାବେ ସେବିକା କାମ କରିଛି ।

କଟକରେ ରହିଥିବାବେଳେ ବୃଦ୍ଧ ହରିବାବୁଙ୍କ ସହ ତା'ର ପରିଚୟ ହୋଇଛି । ହରିବାବୁ ହୋମିଓପାଥିକ ଡାକ୍ତରଙ୍କ ଘରେ ସେ ରହିଛି । ହରିବାବୁ ମଧ୍ୟ ତାକୁ ଝିଅ ପରି ଦେଖିଛନ୍ତି । କିଛି ଦିନ ପରେ ସୁଶୀଳା ସଙ୍ଗୀତ ଶିକ୍ଷା କରିଛି । ସେହି ସୂତ୍ରରେ ରାଧାମୋହନଙ୍କ ସହ ପରିଚୟ ହୋଇଛି । ଉଭୟେ ପରସ୍ପର ପ୍ରତି ଆକୃଷ୍ଟ ହୁଅନ୍ତି । ଶେଷରେ ଉଭୟଙ୍କର ବିବାହ ହୋଇଛି ।

ବିବାହ ପରେ ସୁଶୀଳା ରାଧାମୋହନଙ୍କ ସହ ତାଙ୍କ ଗ୍ରାମକୁ ଯାଇଛି, ମାତ୍ର ତାଙ୍କ ପରିବାରର ସମସ୍ତେ ତାକୁ ଘୃଣା କରିଛନ୍ତି । ମାତ୍ର ଗୋଟିଏ ରାତି ରହି ସୁଶୀଳା ରାଧାମୋହନଙ୍କ ସହ କଟକ ଫେରିଛି । କିଛି ଦିନ ସୁଖୀ ଦାମ୍ପତ୍ୟ ଜୀବନ କଟାଇଲା ପରେ ସେ ମାତୃତ୍ୱର ଗୌରବ ଲାଭ କରିଛି ।

ପୁଣି ସୁଶୀଳାର ଭାଗ୍ୟ ଆକାଶରେ ଦେଖାଦେଇଛି କଳାବାଦଲ । ରାଧାମୋହନଙ୍କୁ ଦ୍ୱିତୀୟବାର ବିବାହ କରିବାପାଇଁ ଲୋକେ ମନ୍ତ୍ରଣା ଦେଉଥିବା ଜାଣି ମର୍ମାହତ ହୋଇଛି । ରାଧାମୋହନଙ୍କ ସଙ୍ଗେ ଝଗଡ଼ା କରିଛି ଓ ବିରକ୍ତିରେ ଜାମସେଦପୁର ପଳାଇ ଯାଇଛି । ସେଠାରେ ଏକ ଘରୋଇ ଡାକ୍ତରଖାନାରେ ଚାକିରି କରିଛି । ରାଧାମୋହନ ଖୋଜି ଖୋଜି ସେଠାରେ ପହଞ୍ଚିଛନ୍ତି ଓ ସୁଶୀଳାକୁ ଫେରାଇ ଆଣିଛନ୍ତି ।

ଦୁଇ ଜଣଙ୍କ ମଧ୍ୟରେ ଭୁଲ୍ ବୁଝାମଣା ଯୋଗୁଁ ସୁଶୀଳା ବାରମ୍ବାର ପଳାଇ ଯାଇଛି । ପୁଣି ଫେରିଛି । ବହୁ ମିଳନ ବିଚ୍ଛେଦ ଘଟିବା ପରେ ସୁଶୀଳା ଦିନେ ସାମାନ୍ୟ ଗୋଟାଏ ଗହଣାପାଇଁ ରାଧାମୋହନଙ୍କୁ ବହୁ ଧିକ୍କାର କରିଛି । ଶେଷରେ ପୁଳାଏ କାମୁଡ଼ି ଦେଇ ଝିଅ ବାଣୀକୁ ଧରି ଚାଲିଯାଇଛି କଲିକତା ଓ ସେଠାରେ ଥିବା ଚିତ୍ତରଞ୍ଜନ ସେବାସଦନରେ ଚାକିରି କରିଛି । ସବୁ ଦିନ ପାଇଁ ସୁଶୀଳା ସାଂସାରିକ ବନ୍ଧନ ଛିନ୍ନ କରିଛି । ସେ ହୋଇଛି ମୁକ୍ତ ଆକାଶର ବିହଙ୍ଗ ।

ଜଣେ ବନ୍ଧୁଙ୍କ ଜୀବନ କାହାଣୀକୁ ରୂପ ଦେବାପାଇଁ ଔପନ୍ୟାସିକ ଏହାକୁ ରଚନା କରିଥିବା ଜଣାଯାଏ । ସୁତରାଂ ଉପନ୍ୟାସଟି କଳାତ୍ମକ ହୋଇପାରି ନାହିଁ ।

ଆଲୋଚକଙ୍କ ମତରେ – ''ଉପନ୍ୟାସ ରଚନା କ୍ଷେତ୍ରରେ ସେ (ଅନନ୍ତ ପ୍ରସାଦ) ତାଙ୍କର ସାମସମୟିକ ଔପନ୍ୟାସିକମାନଙ୍କୁ ଅତିକ୍ରମ କରି ନାହାନ୍ତି ।''

**କବିତା**

ଅନନ୍ତ ପ୍ରସାଦଙ୍କ କାବ୍ୟିକ ଜୀବନ ଆରମ୍ଭ ହୋଇଥିଲା ୧୯୪୮ ମସିହାରେ । ପାଶ୍ଚାତ୍ୟ ବିଶେଷତଃ ରବୀନ୍ଦ୍ରନାଥଙ୍କ ପ୍ରଭାବ ତାଙ୍କ ଉପରେ ଗଭୀର ଭାବରେ ପଡ଼ିଥିଲା । ପ୍ରଥମ ପର୍ଯ୍ୟାୟରେ ସେ ସୃଷ୍ଟିତତ୍ତ୍ୱ ବିଷୟରେ କବିତା ରଚନା କରିଥିଲେ । ତାଙ୍କର କବିତା ସଙ୍କଳନଗୁଡ଼ିକ ହେଲା, 'ନୀହାରିକା', 'ମୋ କବିତା' ଓ 'କବିତାର ବିଳାପ' । ଏଥିରେ ମୋଟ ୧୩୯ ଗୋଟି କବିତା ସ୍ଥାନ ପାଇଛି ।

**ନୀହାରିକା**

ସୌର ଜଗତର ଆଦି ଜନନୀ ହେଉଛି ନୀହାରିକା । ନୀହାରିକାର ନିବିଡ଼ ମହାଅନ୍ଧାରର ଅନନ୍ତଗର୍ଭରୁ ଆଲୋକ ଓ ଜୀବନ ସତ୍ତାର ଆବିର୍ଭାବ କରାଇଥିଲା । ସେହିପରି କବିଙ୍କର ମୋହାନ୍ଧକାର ମଧ୍ୟରେ ପ୍ରଥମେ ଯେତେବେଳେ ଗୋଟିଏ ଭାବର ଜ୍ୟୋତି ରେଖା ଫୁଟି ଉଠିଥିଲା, ସେତେବେଳେ ସେ ତାକୁ ଯନ୍ତ୍ରଚାଳିତବତ୍ ଲେଖି ପକାଇଲେ । କବିଙ୍କ ଭାଷାରେ –

"ନ ଥିଲି ଲୋଡ଼ିବାକୁ ଆସିଲା ନିଜ ମନେ
ମୁକୁଳା ଘରେ ମୋର ଏକାକୀ ସେ ଗୋପନେ
ଅଚିହ୍ନା ଅତିଥି ସେ କହିଲା କେତେ କଥା
ଲଗାଇ ଦେଲା ପ୍ରାଣେ ଚକିତେ କି ମମତା ।"

ଅନନ୍ତ ପ୍ରସାଦଙ୍କ ରୋମାଣ୍ଟିକ ଚିନ୍ତାଧାରା ଦେଖିବାକୁ ଯେଉଁ କବିତାଗୁଡ଼ିକରେ ମିଳେ ସେଗୁଡ଼ିକ ହେଲା – 'ରହିଥିବି ଦୂରେ', 'ରହିଛ ଗୋ ତୁମେ କାହିଁ ?', 'କିଏ ସେ ଗୋ ତୁମେ ଲୁଚି ରହିଥିଲ ଦୂରେ', 'ନାଶିଲା ଆଖି ଆରେ', 'କହଗୋ କହ ସଖୀ' ଇତ୍ୟାଦି । କବିଙ୍କ ଆଦ୍ୟ ପର୍ଯ୍ୟାୟର କବିତାଗୁଡ଼ିକରେ ଏହି ଭାବର ପ୍ରାଚୁର୍ଯ୍ୟତା ଦେଖାଯାଏ ।

'କିଏ ସେ ଗୋ ତୁମେ ଲୁଚି ରହିଥିଲ' କବିତାରେ କବି ଜଗନ୍ନାଥଙ୍କ ବିଷୟରେ ଲେଖିଛନ୍ତି ଯେ ସେ କିଛି ଧନ, ଜନ ମାଗୁ ନାହାନ୍ତି । କେବଳ ପାଖରେ ଦାସ ହୋଇ ରହିବାପାଇଁ ଚାହାନ୍ତି –

"ତୁମେ ପରା ଦୀନବନ୍ଧୁ ପତିତ ଅନାଥ ବନ୍ଧୁ
ତୁମରି କରୁଣା ବିନ୍ଦୁ ଦୀନ ବିତର
ନ ମାଗେ ମୁଁ ଧନ ମାନ ଦାସଦାସୀ ଅବା ଯାନ
କେବଳ କରୁଣା ଦାନ
ତୁମେ ପରା କରୁଣା ସିନ୍ଧୁ ମାଗେ ମାତର
ସରିକି ଯିବ ଦେଲେ ଗୋଟିଏ ବିନ୍ଦୁ ?"

ଜଗନ୍ନାଥଙ୍କୁ ପ୍ରାର୍ଥନା କରି ଅନ୍ୟ ଏକ କବିତା –

"ତୁମେ ପରା ଚକା ଆଖି ବିଶ୍ୱ ଜଗତର ସାକ୍ଷୀ
କେତେ ଦୀନ ନିରିମାଖି ଅଛନ୍ତି ଚାହିଁ
ପେଟ ବିକଳେ ଅଜ୍ଞାନ ରୋଗେ ଶୋକେ ମ୍ରିୟମାଣ
ମୁଣ୍ଡ ଗୁଞ୍ଜିବାକୁ ଥାନ ଟିକିଏ ନାହିଁ
ନ ଦିଶେନି ତୁମ ନୟନେ
କି ଅବା 'ଚକାଆଖି' ନାମ ବହନେ ?"

'ମୁକ୍ତି ପଥର ଯାତ୍ରୀ' କବିତାଟି ଏକ ସତ୍ୟ ଘଟଣା ଉପରେ ଆଧାରିତ । ଜଗନ୍ନାଥଙ୍କ ଦର୍ଶନ ଉଦ୍ଦେଶ୍ୟରେ ଯାଉଥିବା ଶାଶୂବୋହୂଙ୍କ ଜୀବନଚିତ୍ର ଏଥିରେ ବର୍ଣ୍ଣିତ ।

**କବିତାର ବିଳାପ**

ଗଦ୍ୟ ରୂପରେ ଲିଖିତ ସଙ୍କଳନଟି ହେଲା 'କବିତାର ବିଳାପ' । ଏଥିରେ କବି ଅତୀତ ଓ ବର୍ତ୍ତମାନର କବିତା ମଧ୍ୟରେ ଏକ ତୁଳନାତ୍ମକ ଚିତ୍ର ଦେଇଛନ୍ତି ।

'ପୁରୁଣା ଚିଠି'ରେ ସେହିଭଳି କବି କବିତାକୁ ନିଜର ନବବଧୂରୂପେ ବରଣ କରିଛନ୍ତି, ଯଥା –

''କିଏ ସେ ଗୋ ତୁମେ
ଲୁଚି ରହିଥିଲ ଅନ୍ତର ପୁରେ ମମ
ଓଢ଼ଣା ଉଢ଼ାଳେ ମୁଖଟି ଘୋଡ଼ାଇ
ପଲ୍ଲୀ ବଧୂଟି ସମ
ଆସିଲ ଗୋ ଯେବେ ନବ ବଧୂ ମୋର
ନୂପୁର ବଜାଇ ପାଦେ
ଉଲ୍ଲାସେ ଥରି ଉଠିଲା ଗୋ ଛାତି
ସେଇ ଝୁଣୁଝୁଣୁ ନାଦେ ।''

କିନ୍ତୁ ବାସ୍ତବ ଜୀବନର ଜଟିଳ ଜଞ୍ଜାଳ ତାଙ୍କର କାବ୍ୟିକ ଦୃଷ୍ଟିକୁ ପରିବର୍ତ୍ତନ କରିଦେଇଛି । ତେଣୁ ରୋମାଣ୍ଟିକ ଭାବକୁ ପରିତ୍ୟାଗ କରି ଜୀବନ ଅନ୍ୱେଷଣରେ ସେ ଅଗ୍ରସର ହୋଇଛନ୍ତି । ସେ ତାଙ୍କ କବିତାରେ ବିପ୍ଳବର ବାଣୀ ଶୁଣାଇଛନ୍ତି । ସାମାଜିକ ବୈଷମ୍ୟକୁ ଲୋପ କରି ଏକ ନୂତନ ସମୃଦ୍ଧିଶାଳୀ ସମାଜ ଗଢ଼ିବାକୁ ସେ ଯୁବସମାଜକୁ ଆହ୍ୱାନ ଦେଇଛନ୍ତି 'ନୀହାରିକା' କବିତା ପୁସ୍ତକରେ । 'ସକଳ ଓଡ଼ିଆ ପୁଅ' କବିତାରେ କବି ଉତ୍କଳର ଅତୀତ ଗୌରବ ଫେରାଇ ଆଣିବାକୁ କହିଛନ୍ତି –

''ଅଣ୍ଟାଭିଡ଼ି ଆସ ଧାଇଁ
ସକଳ ଓଡ଼ିଆ ଭାଇ
ଆଉ ବାରେ ବେଳ ନାହିଁ
ହୁଅ ନିର୍ଭୟ ଲାଗିପଡ଼ ନୂଆ ଉଦ୍ୟମେ
ଭାଗ୍ୟଲକ୍ଷ୍ମୀ ବଶୀଭୂତା ହେବେ କରମେ ।''

**ଝଙ୍କାର**

କବି ଉତ୍କଳର ସୁପ୍ତ ଯୁବଶକ୍ତିକୁ ଜାତୀୟ ଚେତନାରେ ଉଦ୍‌ବୁଦ୍ଧ ହେବାପାଇଁ ଆହ୍ୱାନ ଦେଇଛନ୍ତି 'ଜାଗ ଜାଗ ସୁପ୍ତ ଶକ୍ତି ଜାଗ' କବିତାରେ –

''ଜାଗ ଜାଗ ସୁପ୍ତ ଶକ୍ତି ଜାଗ
ଲୁପ୍ତ ରତ୍ନ ଉଦ୍ଧାର ଲାଗି କର୍ମେ ନିରତ ଜାଗ
× × ×
ତହିଁରେ ଚିନ୍ତା ନାହିଁରେ ଭୟ
ତରୁଣ ଶକ୍ତି ମୃତ୍ୟୁଞ୍ଜୟ
ମୁକ୍ତି ମନ୍ତ୍ରେ ଦୀକ୍ଷିତ ହୋଇ
ଶକ୍ତି ସଂଧାନେ ଜାଗ ।''

କବି ମଧ୍ୟ ନିଜ ଜୀବନକୁ ଜନସମାଜପାଇଁ ଉତ୍ସର୍ଗ କରି ଅନ୍ୟ ମୁଖରେ ହସ ଝରାଇ ଦେବାକୁ ଆଶାୟୀ ହୋଇଛନ୍ତି 'ଶାରଦ ଶେଫାଳି ପରି' କବିତାରେ –

''ଶାରଦ ଶେଫାଳି ପରି
ସଞ୍ଜରେ ଫୁଟି ସକାଳରେ ପଛେ
ଲୋଟିବି ଧୂଳିରେ ଝରି
× × ×
ହସିବ ଜଗତ ସାରା
ଚିର ଯୌବନ ହିଲ୍ଲୋଳେ ନାଚି ବୁଲିବ ଜୀବନ ସାରା ।''

**ମୋ କବିତା**

କବିଙ୍କ 'ମୋ କବିତା' ସଙ୍କଳନଟି ସମୁଦାୟ ବିଶ୍ବପ୍ରେମ ସମ୍ବଳିତ । ତାଙ୍କ ଦୃଷ୍ଟିରେ ଭଗବାନ୍ ସର୍ବଶକ୍ତିମାନ୍ । ତାଙ୍କରି ନିର୍ଦ୍ଦେଶରେ ଏହି ସୃଷ୍ଟି ପରିଚାଳିତ । ମଣିଷକୁ ସେ ଯେଉଁ ପଥ ଦେଖାନ୍ତି ସେ ତାକୁ ଅବଲମ୍ବନ କରିଥାଏ । 'ପ୍ରାର୍ଥନା' ଏହିଭଳି ଏକ ସୁନ୍ଦର କବିତା

''ହେ ମୋର ଭଗବାନ୍
ବିଶ୍ୱସାରା ବ୍ୟାପ୍ତ ତବ ମହିମା ସୁମହାନ୍
ଗଗନେ ଦେଖେ ମୁଁ ତୁମରି ଅଙ୍ଗ
ପବନେ ଲଭେ ମୁଁ ତୁମରି ସଙ୍ଗ
ଯେଉଁ ଦିଗେ ଚାହେଁ ସେ ଦିଗେ ରହିଛି
ତୁମେ ହିଁ ମୂର୍ତ୍ତିମାନ୍ ।''

ଅନନ୍ତ ପ୍ରସାଦ ଏହି ପଂକ୍ତିକୁ ପ୍ରତିଦିନ ଆବୃତ୍ତି କରିଥାନ୍ତି ବୋଲି 'ଜୀବନ ସ୍ମୃତି'ରେ ଉଲ୍ଲେଖ କରିଛନ୍ତି । ଏକ ଗଦ୍ୟଧର୍ମୀ କବିତା 'ଚିଠି'କୁ ଦୁଃସମୟର ସାଥିଭାବେ ଗ୍ରହଣ କରିଛନ୍ତି । 'ସକାଳର ସାଢ଼େ ନଅ ଘଣ୍ଟା' କବିତାରେ କବିଙ୍କର ଜୀବନର କେତୋଟି ମୁହୂର୍ତ୍ତ ବର୍ଣ୍ଣନା କରାଯାଇଛି । 'ନବବର୍ଷର ସ୍ୱାଗତିକା' କବିତାରେ କବି ୧୯୬୨ ମସିହାକୁ ବିଦାୟ ଦେଇଛନ୍ତି । ୧୯୬୩ ମସିହାକୁ ସ୍ୱାଗତ କରିଛନ୍ତି ।

ଅନନ୍ତ ପ୍ରସାଦ ଗଳ୍ପ ଉପନ୍ୟାସ କ୍ଷେତ୍ରରେ ଅଧିକ ପ୍ରତିଷ୍ଠିତ ହୋଇଥିଲେ ହେଁ ବହୁବିଧ କବିତା ରଚନା କରିଛନ୍ତି । ପ୍ରାୟ ଏକ ଶହ ଅଠଷଠି (୧୬୮)ଟି କବିତା ରଚନା କରି ଜଣେ ନିଷ୍ଠାପର କାବ୍ୟସାଧକ ଭାବେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ପ୍ରତିଭାତ ହୁଅନ୍ତି ।

# ଅନୁବାଦ

## ଓମାର ଚୟନିକା

ପାରସ୍ୟ କବି ଓମାରଖୈୟାମଙ୍କର ଚୌପଦୀ ଇଂରାଜୀ କବି ପିଟଜରାଲଡ୍‌ଙ୍କଦ୍ୱାରା ଅନୂଦିତ ହେଲା ଭଳି କବି ଅନନ୍ତ ପ୍ରସାଦ ଓମାରଙ୍କର ପଦ୍ୟାବଳୀକୁ ଓଡ଼ିଆରେ ଅନୁବାଦ କରିଛନ୍ତି । ଏଥିରେ ରୋମାଣ୍ଟିକ୍ ଚେତନାର ବିଶେଷ ପ୍ରଭାବ ଲକ୍ଷ୍ୟ କରାଯାଏ ।

ଗୋଟିଏ ଉଦାହରଣ –

''ଛାଡ଼ି ସବୁ ସଂସାର ଜଞ୍ଜାଳ
ଆସ ସଖା ଆସ ପ୍ରିୟେ ଏ ନବ ବସନ୍ତେ
ସୋମରସ ଭରିଦିଅ ଜୀବନର ଥାଳ
ଫିଙ୍ଗିଦିଅ ଅନୁତାପ ଗୀତ କୁହେଳିକା
ଫୁଟାଅ ଗୋ ଫଗୁଣର ଉଷ୍ମ ରଶ୍ମିନାଳ
ନାହିଁ ଗୋ ସମୟ ଆଉ ଦେଖ ରେ ଆକାଶେ
ଛୁଟିଆସେ ବାଜପକ୍ଷୀ ସମ କ୍ରୂର କାଳ ।''

## ଯୋଗବାଶିଷ୍ଠ ରାମାୟଣ

ସଂସ୍କୃତ ସାହିତ୍ୟର ଏକ ଅମୂଲ୍ୟ ଗ୍ରନ୍ଥ 'ଯୋଗବାଶିଷ୍ଠ ରାମାୟଣ' । ଏହା ବେଦାନ୍ତ ଦର୍ଶନ ଉପରେ ଆଧାରିତ । ସମାଜରେ ଆର୍ଥନୀତିକ ବିକାଶପାଇଁ ଯେତେପ୍ରକାର ଯୋଜନା ପ୍ରସ୍ତୁତ କରାଗଲେ ମଧ ତାହା ଫଳପ୍ରଦ ହୋଇପାରୁ ନାହିଁ । ଲେଖକ ସମାଜର ଏହି ସମସ୍ୟାକୁ ମର୍ମେ ମର୍ମେ ଅନୁଭବ କରି ତା'ର ସମାଧାନପାଇଁ ସ୍ୱତନ୍ତ୍ରଭାବେ ଏହି ମୂଲ୍ୟବାନ୍ 'ଯୋଗବାଶିଷ୍ଠ ରାମାୟଣ'ର ଅନୁବାଦ କରିଛନ୍ତି । ଜନସାଧାରଣଙ୍କ ମନରୁ ଅବସାଦ ଓ କର୍ମବିମୁଖତା ଦୂରେଇ ଜ୍ଞାନ ଓ କର୍ମର ଉଦୟପାଇଁ ଏହି ଗ୍ରନ୍ଥ ମାଧ୍ୟମରେ ଉଦ୍ୟମ କରିଛନ୍ତି ।

'ଯୋଗବାଶିଷ୍ଠ ରାମାୟଣ'ର ତୃତୀୟ ପରିଚ୍ଛେଦରେ ରାମଚନ୍ଦ୍ରଙ୍କର କର୍ମବିମୁଖତା କିପରି ଦୂରୀଭୂତ ହୋଇଛି ତାହା ବର୍ଣ୍ଣନା କରାଯାଇଛି । ରାମଚନ୍ଦ୍ର ନିଜର ବୈରାଗ୍ୟ ଭାବ ବର୍ଣ୍ଣନା କରି ମୌନ ହୋଇ ବସି ରହିଛନ୍ତି । ସଭାରେ ଉପସ୍ଥିତ ମୁନିଋଷିଗଣ, ଯଥା – ବଶିଷ୍ଠ, ବିଶ୍ୱାମିତ୍ର ଓ ଜୟନ୍ତ, ଧୃଷ୍ଟି ପ୍ରଭୃତି ମନ୍ତ୍ରିଗଣ ରାଜା ଦଶରଥ ଓ ଅନ୍ୟାନ୍ୟ ସଭାସଦ୍‌ବର୍ଗ ତାଙ୍କର ବୈରାଗ୍ୟପୂର୍ଣ୍ଣ କଥା ଶୁଣି ବିସ୍ମିତ ହୋଇପଡ଼ିଛନ୍ତି । ଶେଷରେ କୁଳଗୁରୁ ବଶିଷ୍ଠ ପ୍ରକୃତ କର୍ମ କଅଣ ତାହା ବୁଝାଇଛନ୍ତି । ସେଥି ସହିତ ଦୈବ ଓ ଅଦୃଷ୍ଟର ସମ୍ପର୍କ, ପୁରୁଷକାର ଇତ୍ୟାଦି

ବିଷୟମାନ ବୁଝାଇବା ଫଳରେ ରାମଚନ୍ଦ୍ରଙ୍କ ମନରେ କର୍ମବାସନା ଜାଗ୍ରତ ହୋଇଛି । ସେ କର୍ମପ୍ରବଣ ହୋଇଛନ୍ତି ।

ପୁରାଣକୁ ଗଦ୍ୟରେ ପ୍ରକାଶ କରିବାର ପ୍ରଚେଷ୍ଟା ଓଡ଼ିଆ ସାହିତ୍ୟରେ ନ ଥିଲାବେଳେ ଅନନ୍ତ ପ୍ରସାଦଙ୍କ ଅନୁବାଦ ଏକ ଅଭିନବ ପଦକ୍ଷେପ ବୋଲି ଧରାଯାଇପାରେ ।

## ପ୍ରବନ୍ଧ

ଅନନ୍ତ ପ୍ରସାଦ ମଧ୍ୟ ବହୁ ପ୍ରବନ୍ଧ ରଚନା କରିଛନ୍ତି । ତାଙ୍କର ପ୍ରବନ୍ଧଗୁଡ଼ିକ ବିଭିନ୍ନ ସମୟରେ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ପାଇଥିଲା । ସଂଗ୍ରହ କରାଯାଇଥିବା ସର୍ବମୋଟ ୩୯ଟି ପ୍ରବନ୍ଧ ଗ୍ରନ୍ଥାବଳୀର ପ୍ରଥମ ଓ ଦ୍ୱିତୀୟ ଭାଗରେ ସନ୍ନିବିଷ୍ଟ । ତାଙ୍କର ପ୍ରବନ୍ଧଗୁଡ଼ିକ ନିମ୍ନୋକ୍ତ ପ୍ରକାରେ ଭାଗ କରାଯାଇଛି, ଯଥା –

(କ) ସାହିତ୍ୟ ବିଷୟକ (ଖ) ସାମାଜିକ
(ଗ) ଜୀବନୀମୂଳକ (ଘ) ଐତିହାସିକ
(ଙ) ସାଂସ୍କୃତିକ (ଚ) ଶିକ୍ଷା ସମ୍ବନ୍ଧୀୟ
(ଛ) ସମବାୟମୂଳକ (ଜ) ବିବିଧ ବିଷୟକ

ସାହିତ୍ୟ ବିଷୟକ ପ୍ରବନ୍ଧ ରଚନାରେ ଅନନ୍ତ ପ୍ରସାଦ ନିଜ ପ୍ରତିଭାର ପରିଚୟ ଦେଇଛନ୍ତି । 'ଖୋଲା ଚିଠି' ଏକ ପତ୍ର-ସମ୍ବଳିତ ରଚନା । ମାୟାଧର ମାନସିଂହ 'ପରଧର୍ମ' ଶୀର୍ଷକ ଏକ ପ୍ରବନ୍ଧରେ ଓଡ଼ିଆର କେତେକ କବି ଓ ଲେଖକ ଅନୁକରଣ କରି ସାହିତ୍ୟ ରଚନା କରୁଛନ୍ତି ବୋଲି ଆକ୍ଷେପ କରିଥିଲେ । ଅନନ୍ତ ପ୍ରସାଦ ଏହାକୁ ଖଣ୍ଡନ କରି ପତ୍ର ଆକାରରେ 'ସହକାର' ସମ୍ପାଦକଙ୍କ ପାଖକୁ ପଠାଇଥିଲେ । ତାହାହିଁ 'ଖୋଲାଚିଠି' ନାମରେ ପ୍ରକାଶ ପାଇଲା । ଓଡ଼ିଆ ସାହିତ୍ୟର ବର୍ତ୍ତମାନ ଦୁରବସ୍ଥା, ତହିଁର କାରଣ ଓ ପ୍ରତିକାର ଶୀର୍ଷକ ପ୍ରବନ୍ଧରେ ନିଜର ସୁଚିନ୍ତିତ ମତ ଦେଇ ଓଡ଼ିଆ ସାହିତ୍ୟର ଉନ୍ନତିପାଇଁ ପ୍ରତି ଗ୍ରାମରେ ପାଠାଗାର, ସାହିତ୍ୟ ପରିଷଦ ଗଠନ, ପତ୍ରପତ୍ରିକାର ପ୍ରଚଳନ, ପ୍ରକାଶନ ଓ କମ୍ପାନୀ ଗଠନ ପ୍ରଭୃତି କରିବାକୁ ପରାମର୍ଶ ଦେଇଛନ୍ତି । ଅନ୍ୟ ପ୍ରବନ୍ଧଗୁଡ଼ିକ ହେଲା 'ଆଧୁନିକ ଓଡ଼ିଆ ସାହିତ୍ୟର ଅଭାବ ଓ ତା'ର ନିରାକରଣ ଉପାୟ', 'ମନୁଷ୍ୟ ଜୀବନରେ ସାହିତ୍ୟର ପ୍ରଭାବ', ଓ 'ଭ୍ରମଣ କାହାଣୀ' । 'କାବ୍ୟନାୟିକା' ପ୍ରବନ୍ଧରେ ଲେଖକ କବି ରାଧାମୋହନ ଗଡ଼ନାୟକ କବିତା ପୁସ୍ତକ 'କାବ୍ୟନାୟିକା'ର ଏକ ସମୀକ୍ଷା କରିଛନ୍ତି । 'ଟାଇପ୍ ଫୋର୍' ଗଳ୍ପଟି ଅସାଧାରଣ ସଫଳତା ଲାଭ କରିଥିଲା । ତା'ର ୨୨ ବର୍ଷ ପରେ 'ଟାଇପ୍ ଫୋର୍'ର ନିଜ କଥା ପ୍ରବନ୍ଧଟି ରଚନା କରିଛନ୍ତି । ଏଥିରେ ଉକ୍ତ

ଗଳ୍ପର ପୃଷ୍ଠଭୂମି ବିଷୟରେ ଆଲୋଚନା କରିଛନ୍ତି । 'ସାହିତ୍ୟ ଓ ସମାଜ', 'ବର୍ତ୍ତମାନ ଓ ଭବିଷ୍ୟତ' ପ୍ରବନ୍ଧରେ ସାହିତ୍ୟ ଜଗତର ଦେଖାଦେଇଥିବା ସଙ୍କଟକୁ ଦର୍ଶାଇ ବୋଧଗମ୍ୟ ସାହିତ୍ୟ ସୃଷ୍ଟି କରିବାକୁ ପରାମର୍ଶ ଦେଇଛନ୍ତି ।

'ଲେଖକଙ୍କର ସାମାଜିକ ପ୍ରବନ୍ଧଗୁଡ଼ିକ ହେଲା 'ସାମାଜିକ ଅଜ୍ଞତା', 'ପଲ୍ଲୀ ସଂସ୍କାର', 'ଭୂତ, ବର୍ତ୍ତମାନ ଓ ଭବିଷ୍ୟତ୍', 'ଆଗାମୀର ଆବାହନ', 'ସ୍ୱାଧୀନତାର ମାପକାଠି' ପ୍ରଭୃତି ।

ପ୍ରାବନ୍ଧିକ ମଧ୍ୟ କେତେଜଣ ଓଡ଼ିଶାର ପ୍ରଖ୍ୟାତ ବରପୁତ୍ରଙ୍କ ଉପରେ ପ୍ରବନ୍ଧ ଲେଖିଛନ୍ତି । ସେମାନେ ହେଲେ 'କବିଶେଖର ଚିନ୍ତାମଣି', ବିଶିଷ୍ଟ ଶିକ୍ଷାବିତ୍ 'ଚନ୍ଦ୍ରମୋହନ ମହାରଣା', 'ନବୀନ'ର ସମ୍ପାଦକ ସମାଜସେବୀ 'କୃପାସିନ୍ଧୁ ପଟ୍ଟଦେବ' ପ୍ରଭୃତି ।

ଅନନ୍ତ ପ୍ରସାଦଙ୍କ ଐତିହାସିକ ପ୍ରବନ୍ଧ ହେଲା 'ଓଡ଼ିଆ ପାଇକ' । ଏଥିରେ ଓଡ଼ିଆ ପାଇକର ଅତୀତ ଓ ବର୍ତ୍ତମାନ ଅବସ୍ଥା କହିଛନ୍ତି । ଅତୀତରେ ଓଡ଼ିଆ ପାଇକ ଥିଲା ବୀର, ସମର କୌଶଳୀ; ମାତ୍ର ସେଦିନ ଯାଇଛି । ଆଜିର ଓଡ଼ିଆ ପାଇକ ନିସ୍ତେଜ, ଦୁର୍ବଳ । ସାହୁକାରର ତାଡ଼ନାରେ ସେ ଆଜି କ୍ଷତ-ବିକ୍ଷତ । ଅତୀତ ଗୌରବକୁ ଉଜ୍ଜୀବିତ କରିବାପାଇଁ ସେ ଏହି ପ୍ରବନ୍ଧଟି ରଚନା କରିଛନ୍ତି ।

ସଂସ୍କୃତି ବିଷୟକ ପ୍ରବନ୍ଧଟି ହେଲା 'ଦଶହରା' । ସେ ଏଥିରେ ଦଶହରାର ବିଭିନ୍ନ ମୂର୍ତ୍ତିପୂଜା ଉପରେ ବିଶ୍ଳେଷଣ କରି କହିଛନ୍ତି ଯେ ଦୁର୍ଗା ମେଢ଼ରେ କେବଳ ଦୁର୍ଗା ନ ଥାନ୍ତି; ସଙ୍ଗରେ ଥାନ୍ତି ଲକ୍ଷ୍ମୀ, ସରସ୍ୱତୀ, ଗଣେଶ, କାର୍ତ୍ତିକେୟ, ଶିବ ପ୍ରଭୃତି । ଦୁର୍ଗା ମହାଶକ୍ତିର ପ୍ରତୀକ ହେଲେ ବି ଏହାକୁ ନିୟନ୍ତ୍ରଣ କରିବାପାଇଁ ଜ୍ଞାନ, ଧନ, ସିଦ୍ଧି, ବୀରତ୍ୱ ପ୍ରଭୃତି ଆବଶ୍ୟକ । ଏସବୁର ପ୍ରତୀକଭାବେ ଯଥାକ୍ରମେ ସରସ୍ୱତୀ, ଲକ୍ଷ୍ମୀ, ଗଣେଶ, କାର୍ତ୍ତିକେୟ ଓ ଶିବଙ୍କୁ ନିଆଯାଇଛି । ତେଣୁ ଜୀବନର ପରିପୂର୍ଣ୍ଣତାପାଇଁ ଜ୍ଞାନ, ଧନ, ସିଦ୍ଧି, ବୀର୍ଯ୍ୟ ଓ ଶିବର ସମନ୍ୱୟକୁ ଆରାଧନା କରିବାପାଇଁ ନିର୍ଦ୍ଦେଶ ଦେଇଛନ୍ତି ।

ଆଧ୍ୟାତ୍ମିକ ପ୍ରବନ୍ଧଭାବେ 'ମନର ମୂଳେ ଏ ଜଗତ' ପ୍ରବନ୍ଧକୁ ନିଆଯାଇପାରେ । ସେ ଏହାକୁ ଜଗନ୍ନାଥ ଦାସଙ୍କ 'ଭାଗବତ'ର ପବିତ୍ର ବାଣୀ ଅବଲମ୍ବନରେ ରଚନା କରିଛନ୍ତି । ଏଥିରେ ପ୍ରାବନ୍ଧିକ ମନର ମହାନତା ଓ ସର୍ବବ୍ୟାପକତାକୁ ପ୍ରତିପାଦନ କରିଛନ୍ତି । ତାଙ୍କ ମତରେ ମନହିଁ କରେ ସୃଷ୍ଟି, ଏଇ ମନ ହିଁ କରେ ଧ୍ୱଂସ । ଏହି ମନ କରେ ପାଳନ । ସୁତରାଂ ସୃଷ୍ଟି, ସ୍ଥିତି ଓ ବିଲୟର ସ୍ରଷ୍ଟା ହେଉଛି ମନ । ମନହିଁ ଗଢ଼େ ଦେବତା, ମନହିଁ ତା'ର କରେ ପୂଜା ଓ ମନ ହିଁ ପାଏ ବର । ଏଥିରେ ଗଭୀର ଦାର୍ଶନିକ ଭାବର ସୂଚନା ମିଳେ ।

ଶିକ୍ଷା ସମ୍ବନ୍ଧୀୟ ଦୁଇଟି ପ୍ରବନ୍ଧ ହେଲା 'ନୂଆ କଥା' ଓ 'ବୃତ୍ତିଗତ ଶିକ୍ଷା' । ପ୍ରଥମଟିରେ ଲେଖକ ପ୍ରାଥମିକ ଶିକ୍ଷା ସମ୍ବନ୍ଧରେ ନିଜର ସୁଚିନ୍ତିତ ମତ ଦେଇଛନ୍ତି । ପ୍ରଚଳିତ ଶିକ୍ଷାପଦ୍ଧତିରେ ପରିବର୍ତ୍ତନ କରି ବୃତ୍ତିଗତ ଶିକ୍ଷାର ପ୍ରଚଳନପାଇଁ ଦ୍ୱିତୀୟ ପ୍ରବନ୍ଧରେ ପରାମର୍ଶ ଦେଇଛନ୍ତି ।

ପ୍ରାବନ୍ଧିକ ସମବାୟ ଉପରେ କେତୋଟି ପ୍ରବନ୍ଧ ଲେଖିଛନ୍ତି । ସେଗୁଡ଼ିକ ହେଲା 'ସମବାୟ ସଙ୍ଗଠନ', 'ଶିକ୍ଷା ସଙ୍ଗଠନ' ଓ 'ଖାଉଟି ସମବାୟ ଏକ ଦୃଷ୍ଟିପାତ' ।

ଏତଦ୍‌ବ୍ୟତୀତ ଅନନ୍ତ ପ୍ରସାଦ ଆହୁରି ଅନେକ ପ୍ରବନ୍ଧ ଲେଖିଛନ୍ତି । ସେଗୁଡ଼ିକ ହେଲା 'ପାନାମା କେନାଲ', 'ବଣର ମାଳତୀ' ଓ 'ତିନି' । 'ପାନାମା କେନାଲ'ରେ ଲେଖକ ଏହାର ନିର୍ମାଣ କୌଶଳ ବିଷୟରେ ବିସ୍ତୃତ ବିବରଣୀ ଦେଇଛନ୍ତି । 'ବଣର ମାଳତୀ' ପ୍ରବନ୍ଧରେ କେତେକ ଉଜ୍ଜ୍ୱଳ ପ୍ରତିଭାକୁ ଲୋକଲୋଚନକୁ ଆଣିଛନ୍ତି । ସେମାନେ ହେଲେ ଆସିକା ହାଇସ୍କୁଲର ପ୍ରଧାନ ଶିକ୍ଷକ ନରସିଂହ ପାଢ଼ୀ, ସଂସ୍କୃତ ଶିକ୍ଷକ ଚନ୍ଦ୍ରଶେଖର ବ୍ରହ୍ମା ଓ ନାରୀକବି ସୀତାଦେବୀ ଖାଡ଼ଙ୍ଗା । 'ତିନି'ର ପ୍ରାଧାନ୍ୟ ଦୃଷ୍ଟିରୁ 'ତିନି' ଉପରେ ଏକ ପ୍ରବନ୍ଧ ରଚନା କରିଛନ୍ତି । ଏହି ତିନି ଗୁଣ – ସତ୍ତ୍ୱ, ରଜ ଓ ତମକୁ ବୁଝାଇଥାଏ । ହିନ୍ଦୁର ଦେବତା ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ବୁଝାଇଥାଏ । ତିନି ପବିତ୍ର ନଦୀ, ଯଥା – ଗଙ୍ଗା, ଯମୁନା, ସରସ୍ୱତୀ ମଧ୍ୟ ଏହି ତିନି ଉପରେ ପ୍ରତିଷ୍ଠିତ ବୋଲି କହିଛନ୍ତି । ଏହା ଅନନ୍ତ ପ୍ରସାଦଙ୍କ ପାଣ୍ଡିତ୍ୟ ତଥା ମନନଶୀଳତାର ପରିଚୟ ଦିଏ ।

## ନାଟକ ଓ ଏକାଙ୍କିକା

ଅନନ୍ତ ପ୍ରସାଦ 'ତାରାବାଈ' ଓ 'ତୁଳସୀ' ନାମକ ଦୁଇ ଖଣ୍ଡ ନାଟକ ରଚନା କରିଛନ୍ତି ।

'ତାରାବାଈ' ଏକ ଐତିହାସିକ ନାଟକ । ବଙ୍ଗଳାରେ ଲିଖିତ 'ରାଜସ୍ଥାନର ଇତିହାସ' ପୁସ୍ତକରେ ଥିବା 'ତାରାବାଈ' ଶୀର୍ଷକ ଉପାଖ୍ୟାନ ପଢ଼ି ସେ ଏହାକୁ ନାଟ୍ୟରୂପ ଦେଇଛନ୍ତି । ତାରାବାଈଙ୍କ ଅଣ୍ଟୁଳ ପରିଣତି ହିଁ ନାଟକର କଥାବସ୍ତୁ ।

ତାରାବାଈ ଥିଲେ ବେଡ଼ାନରର ସାମନ୍ତରାଜା ରାୟ ଶୂରତନଙ୍କର କନ୍ୟା । ଯୁଦ୍ଧଯାତ୍ରା କାଳରେ ମେବାରର ରାଜପୁତ୍ର ଜୟମଲ୍ଲ ତୃଷାତୁର ହୋଇପଡ଼ନ୍ତି । ତାରାବାଈ ଦୈବକ୍ରମେ ସେଠାରେ ଉପସ୍ଥିତ ହୋଇ ଜୟମଲ୍ଲଙ୍କ ସେବା କରିଛନ୍ତି । ଜୟମଲ୍ଲ ତାରାବାଈଙ୍କୁ ବିବାହ କରିବାକୁ ଚାହିଁଛନ୍ତି । ମାତ୍ର ରାୟ ଶୂରତନଙ୍କ ସର୍ତ୍ତ ଥିଲା ଯେ ପିତୃରାଜ୍ୟ ଆଫଗାନ ସର୍ଦ୍ଦାର ଗିଲ୍ଲାଙ୍କ ହାତରୁ ମୁକ୍ତ କରିବା ବ୍ୟକ୍ତିଙ୍କ ହସ୍ତେ କନ୍ୟାକୁ ଅର୍ପଣ କରିବେ । ଜୟମଲ୍ଲ ଗିଲ୍ଲା ବିରୋଧରେ ଯୁଦ୍ଧ ଘୋଷଣା କରି ପରାସ୍ତ ହୋଇଛନ୍ତି । ବ୍ୟର୍ଥ ମନୋରଥ ହୋଇ ସେ ତାରାବାଈଙ୍କୁ ବଳପୂର୍ବକ ନେଇଯିବାକୁ ବସିଛନ୍ତି; ମାତ୍ର ପ୍ରହରୀଦ୍ୱାରା ବନ୍ଦୀ ହୋଇଛନ୍ତି । ବିଚାରରେ ନିଜର ଭୁଲ ସ୍ୱୀକାର ନ କରିବାରୁ ମୃତ୍ୟୁ ମୁଖରେ ପଡ଼ିଛନ୍ତି ।

ମେବାରର ରାଜା କରଦ ରାଜ୍ୟର ରାଜାଙ୍କ ବିଚାରରେ ସନ୍ତୋଷ ପ୍ରକାଶ କରିଛନ୍ତି । ପୁତ୍ର ପୃଥ୍ୱୀରାଜଙ୍କ ହାତରେ ରାଜ୍ୟଭାର ସମର୍ପି ଦେଇଛନ୍ତି ।

ପୃଥ୍ୱୀରାଜ ବେଙ୍ଗାନରର କରଦ ରାଜାଙ୍କ ନିକଟକୁ ତାରାବାଈଙ୍କୁ ବିବାହ କରିବାକୁ ପ୍ରସ୍ତାବ ଦେଇଛନ୍ତି । ମାତ୍ର ରାୟ ଶୂରତନ ସେହି ସର୍ତ୍ତ ରଖିଛନ୍ତି । ପୃଥ୍ୱୀରାଜ ଗିଲାଙ୍କୁ ପରାସ୍ତ କରିଛନ୍ତି ଓ ତାରାବାଈଙ୍କୁ ବିବାହ କରିଛନ୍ତି ।

କିଛି ଦିନ ପରେ ପୃଥ୍ୱୀରାଜ ନିଜ ଭଗ୍ନୀ ଚଞ୍ଚଳାଙ୍କୁ ଭଗ୍ନୀପତି ପାଉଙ୍କ ଅତ୍ୟାଚାରରୁ ରକ୍ଷା କରିବାପାଇଁ ଭଉଣୀ ଘରକୁ ଯାଇଛନ୍ତି । ମାତ୍ର ଭଗ୍ନୀପତି ଦେଇଥିବା ବିଷଲଡୁ ଖାଇ ମୃତ୍ୟୁମୁଖରେ ପଡ଼ନ୍ତି । ସ୍ୱାମୀଙ୍କ ଚିତାନଳରେ ତାରାବାଈ ଝାସ ଦେଇଛନ୍ତି ।

ନାଟକଟିରେ ସଂଳାପର ଦୁର୍ବଳତା ପରିଲକ୍ଷିତ ହୁଏ । ତେବେ ବଳିଷ୍ଠ କାହାଣୀପାଇଁ ନାଟକଟି କିଛି ସଫଳତା ଲାଭ କରିଥିଲା ।

**ତୁଳସୀ**

କେନ୍ଦ୍ରାପଡ଼ା 'ତୁଳସୀକ୍ଷେତ୍ର' ନାମରେ ପରିଚିତ । ଏହା ଶ୍ରୀ ଶ୍ରୀ ବଳଦେବଜୀଉଙ୍କ ପାଇଁ ପ୍ରସିଦ୍ଧ । କେନ୍ଦ୍ରାପଡ଼ାର 'ତୁଳସୀ କ୍ଷେତ୍ର ମାହାତ୍ମ୍ୟ' ପୁସ୍ତକ ପାଠ କରି ଲେଖକ ଏହାକୁ ରଚନା କରିଛନ୍ତି ।

ଲଳିତଗିରିର ଅତ୍ୟାଚାରୀ ଅସୁର ହେଉଛି କନ୍ଦରାସୁର । ତା'ର ରୂପବତୀ କନ୍ୟା ତୁଳସୀ ଯୁଦ୍ଧପାଇଁ ଆସିଥିବା ବଳଦେବଙ୍କୁ ଦେଖି ତାଙ୍କୁ ପତିରୂପେ ବରଣ କରିଛନ୍ତି । ବଳଦେବ ଓ କନ୍ଦରାସୁର ଯୁଦ୍ଧରେ କନ୍ଦରାସୁର ନିହତ ହୋଇଛି । ତୁଳସୀ ବଳଦେବଙ୍କ ଗଳାରେ ବରଣମାଳା ଦେଇଛନ୍ତି । ତୁଳସୀଙ୍କ ଅନୁରୋଧ ରକ୍ଷାକରି ବଳଦେବ ଯୁଦ୍ଧ ସ୍ଥାନର ନାମ କନ୍ଦରାପଡ଼ା (କେନ୍ଦ୍ରାପଡ଼ା) ରଖିଛନ୍ତି । ପତ୍ନୀଙ୍କ ନାମ ଅନୁସାରେ ଏହାକୁ 'ତୁଳସୀ କ୍ଷେତ୍ର' ନାମିତ ମଧ କରିଛନ୍ତି ।

ଅତୀତର ଗୌରବୋଜ୍ଜ୍ୱଳ ପୃଷ୍ଠା ଉନ୍ମୋଚନ ଉଦ୍ଦେଶ୍ୟରେ ନାଟ୍ୟକାର ଏହାକୁ ରଚନା କରିଥିବାର ଜଣାଯାଏ ।

ଅନନ୍ତ ପ୍ରସାଦ ପ୍ରଥମେ ଏହାକୁ ନାଟକଭାବେ ରଚନା କରିଥିଲେ । ପରେ ଏହାକୁ ସଂକ୍ଷିପ୍ତ କରି ଏକାଙ୍କିକାରେ ପରିଣତ କରିଛନ୍ତି ।

**ଯୁଗରହସ୍ୟ**

ଲେଖକ ଚାକିରିରୁ ଅବସର ଗ୍ରହଣ କଲା ପରେ 'ଯୁଗ ରହସ୍ୟ' ଏକାଙ୍କିକା ରଚନା କରିଥିଲେ । ଏହା ଗୋଟିଏ ଦିନର ଘଟଣାକୁ ନେଇ ରଚିତ । ଏଥିରେ ମଧ ଗୋଟିଏ ଦୃଶ୍ୟ ରହିଛି । ଏହା ସମାଜର ବାସ୍ତବ ଚିତ୍ର ପ୍ରଦାନ କରେ । ଏଥିରେ ଧର୍ମ ନାମରେ ଚାଲିଥିବା ଶୋଷଣକୁ ସୁନ୍ଦରଭାବେ ପ୍ରକାଶ କରିଛନ୍ତି ।

**ସତ୍ୟ ଯୁଗ**

ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ମାନବ ଧର୍ମ ପ୍ରତିଷ୍ଠା କରିବାପାଇଁ ଲେଖକ ଏଥିରେ ଆହ୍ୱାନ ଦେଇଛନ୍ତି ।

# ଭ୍ରମଣ ସାହିତ୍ୟ

## ପାଶ୍ଚାତ୍ୟ ଅନୁଭୂତି

ଅନନ୍ତ ପ୍ରସାଦ କେତେକ ଭ୍ରମଣ ସାହିତ୍ୟ ରଚନା କରିଛନ୍ତି । 'ଡାଏରୀରୁ କେତେକ ପୃଷ୍ଠା', 'ବଡ଼ଦିନ ଛୁଟି ଚାରି ଦିନ', 'ବୁଦ୍ଧଖୋଲ', 'ଚିଲିକା ବକ୍ଷେ', ପ୍ରଭୃତି ହେଉଛି କ୍ଷୁଦ୍ର ଭ୍ରମଣ ବୃତ୍ତାନ୍ତ । ଏଗୁଡ଼ିକ ଯଥାକ୍ରମେ 'ଉତ୍କଳ ସାହିତ୍ୟ', 'ସହକାର', 'ନବୀନ' ପ୍ରଭୃତିରେ ପ୍ରକାଶ ପାଇଥିଲା । 'ପାଶ୍ଚାତ୍ୟ ଅନୁଭୂତି' ପୁସ୍ତକଟି ଗ୍ରନ୍ଥାବଳୀ ଦ୍ୱିତୀୟ ଭାଗରେ ସଙ୍କଳିତ ହୋଇଅଛି ।

ଅନନ୍ତ ପ୍ରସାଦ ସମବାୟ ବିଭାଗରେ ଉଚ୍ଚ ପଦବୀରେ ଅଧିଷ୍ଠିତ ଥିଲେ । ୧୯୫୨ ମସିହାରେ ବିଶ୍ୱ ମିଳିତ ଜାତିସଂଘଠାରୁ ଆର୍ଥିକ ସାହାଯ୍ୟ ପାଇ ସମବାୟ ବିଷୟରେ ଅଧିକ ଜ୍ଞାନ ଅର୍ଜନପାଇଁ ଉତ୍ତର ଆମେରିକାର କାନାଡ଼ା ଯାଇଥିଲେ । ସେ କାନାଡ଼ାରେ ୧୯୫୨ ମସିହା ସେପ୍ଟେମ୍ବର ମାସରୁ ଡିସେମ୍ବର ପର୍ଯ୍ୟନ୍ତ ରହିଥିଲେ । ଡେନ୍‌ମାର୍କରେ ମଧ୍ୟ କିଛି ଦିନ ରହିଥିଲେ । ସେଠାର ଅନୁଭୂତିକୁ ସେ 'ପାଶ୍ଚାତ୍ୟ ଅନୁଭୂତି' ଗ୍ରନ୍ଥରେ ଲିପିବଦ୍ଧ କରିଛନ୍ତି ।

କେତେକ ଆଲୋଚକ 'ପାଶ୍ଚାତ୍ୟ ଅନୁଭୂତି'କୁ ଶୁଷ୍କ ପରିଚୟ ପୁସ୍ତକଭାବେ ଅଭିହିତ କରିଛନ୍ତି । ଭ୍ରମଣ ସାହିତ୍ୟ ଭାବେ ସଫଳତା ଲାଭ କରିଥିବା 'ପଶ୍ଚିମ ପଥିକ'ର ରଚୟିତା ଡଃ ମାୟାଧର ମାନସିଂହ ଲେଖକଙ୍କ ଉତ୍ସାହକୁ ପ୍ରଶଂସା କରିବା ସଙ୍ଗେ ସଙ୍ଗେ କହିଛନ୍ତି ଯେ ଏଥିରେ କିଞ୍ଚିତ୍ ଶିଳ୍ପ ସଂଯୁକ୍ତ ହୋଇଥିଲେ ଏହା ଉଚ୍ଚମାନର ଭ୍ରମଣ କାହାଣୀ ହୋଇପାରିଥାନ୍ତା । ତେବେ ଓଡ଼ିଆ ସାହିତ୍ୟ ଭ୍ରମଣ ସାହିତ୍ୟରେ ସମୃଦ୍ଧ ନ ଥିଲାବେଳେ ତାଙ୍କର (ଅନନ୍ତ ପ୍ରସାଦ) ଅବଦାନ ଯଥେଷ୍ଟ ବୋଲି କୁହାଯିବ । ଆଉ ଜଣେ ଆଲୋଚକଙ୍କ ମତରେ ''ଏଇ ଦୃଷ୍ଟିରୁ ଓଡ଼ିଶା ଭ୍ରମଣ ସାହିତ୍ୟର ଅନ୍ୟତମ ସ୍ରଷ୍ଟା ଭାବେ ସେ (ଅନନ୍ତ ପ୍ରସାଦ) ଅଭୁଲା ହୋଇ ରହିବେ ।''

# ଆତ୍ମଜୀବନୀ

ଲେଖକଙ୍କ 'ଆତ୍ମଜୀବନୀ' ଗ୍ରନ୍ଥାବଳୀର ପ୍ରଥମ ଭାଗରେ 'ମୋ ଜୀବନ ସ୍ମୃତି' ନାମରେ ସଙ୍କଳିତ ହୋଇଥିଲା । ପରେ ଅନନ୍ତ ପ୍ରସାଦ ଜନ୍ମ ଶତବାର୍ଷିକୀ କମିଟିଦ୍ୱାରା ପୁସ୍ତକ ଆକାରରେ ପ୍ରକାଶ ପାଇଛି ।

ଲେଖକ 'ମୋ ଜୀବନ ସ୍ମୃତି'ର ପ୍ରଥମ ପରିଚ୍ଛେଦରେ ଲେଖିଛନ୍ତି –

''ପ୍ରଥମେ ମୁଁ ସୂଚାଇ ଦେବାକୁ ଚାହେଁ ଯେ ମୋର ଜୀବନ ଅବଶ୍ୟ ବେଶି ଘଟଣାବହୁଳ ନୁହେଁ, କିନ୍ତୁ ଅନୁଭୂତିବହୁଳ ।''

ଅନନ୍ତ ପ୍ରସାଦ ନିଜ ଅନୁଭୂତିଗୁଡ଼ିକୁ ଏଥିରେ ଲିପିବଦ୍ଧ କରିଛନ୍ତି । ସେ ତାଙ୍କର ଜନ୍ମଠାରୁ ଅର୍ଥାତ୍ ୧୯୨୬ ମସିହାରୁ ୧୯୬୩ ମସିହାର ପରବର୍ତ୍ତୀ ଘଟଣାଗୁଡ଼ିକ

ବର୍ଣ୍ଣନା କରିଛନ୍ତି । ଏହି ସମୟ ମଧ୍ୟରେ ନିଜ ଗାଁ ସ୍କୁଲ, କଲେଜ, କର୍ମମୟ ଜୀବନ, ସାହିତ୍ୟ ସାଧନା, ବିଦେଶ ଯାତ୍ରା, ପ୍ରବନ୍ଧ ଲେଖା, ଲେଖକ ସହଯୋଗ ସମିତି ଗଢ଼ା ପ୍ରଭୃତି ଏଥିରେ ସ୍ଥାନ ପାଇଛି ।

ଲେଖକ କିନ୍ତୁ ଅନ୍ୟ ଆତ୍ମଜୀବନୀ ଭଳି ନିଜ ବ୍ୟକ୍ତିଗତ ଜୀବନର ହସ-କାନ୍ଦ, ରାଗ-ଅନୁରାଗ, ପ୍ରେମ-ପ୍ରଣୟ, ଭୁଲ-ଭ୍ରାନ୍ତି ଆଦି ଉଲ୍ଲେଖ କରି ନାହାନ୍ତି । ଆଲୋଚକଙ୍କ ଭାଷାରେ ଏଥିରେ ଲେଖକଙ୍କ ପ୍ରାଣ ସ୍ପନ୍ଦନ ନାହିଁ । ଫଳରେ 'ମୋ ଜୀବନ ସ୍ମୃତି' ଯେଉଁ ଜନପ୍ରିୟତା ହାସଲ କରିଥାନ୍ତା, ତାହା ହୋଇପାରି ନାହିଁ ।

ତେବେ ଆତ୍ମଜୀବନୀ ଲେଖାରେ ଦରିଦ୍ରପ୍ରାୟ ଓଡ଼ିଆ ସାହିତ୍ୟରେ ଏହା ଏକ ଅନବଦ୍ୟ ସୃଷ୍ଟି । ସରଳ, ସାବଲୀଳ ଭାଷା ଓ ନିରାଡ଼ମ୍ବର ପ୍ରକାଶ ଶୈଳୀ ଯୋଗୁଁ ଏହା ପାଠକମାନଙ୍କଦ୍ୱାରା ଆଦର ଲାଭ କରିଛି ।

**ଅବସର ଗ୍ରହଣ**

୧୯୩୬ ମସିହାରୁ ଦୀର୍ଘ ୩୦ ବର୍ଷ ପର୍ଯ୍ୟନ୍ତ ଅନନ୍ତ ପ୍ରସାଦ ଇଣ୍ଡିଆନ୍ ପି.ଇ.ଏନ୍.ର ସଭ୍ୟ ଥିଲେ । ତାଙ୍କର କେତେକ ଲେଖା ଏଥିରେ ପ୍ରକାଶ ପାଇଥିଲା ।

ଦୀର୍ଘ ପଞ୍ଚତିରିଶ ବର୍ଷ ସରକାରୀ ଚାକିରି କଲା ପରେ ଅନନ୍ତ ପ୍ରସାଦ ୧୯୬୧ ମସିହାରେ ଅବସର ଗ୍ରହଣ କଲେ ।

ଅବସରଗ୍ରହଣ ପରେ ଅନନ୍ତ ପ୍ରସାଦ ଗୋପାଳପୁର ସମବାୟ ଶିକ୍ଷାକେନ୍ଦ୍ରରେ ଅଧ୍ୟକ୍ଷଭାବେ ଯୋଗ ଦେଲେ । ଏହି ସମବାୟ ଶିକ୍ଷା କେନ୍ଦ୍ରଟି ଥିଲା ଆଞ୍ଚଳିକ ଶିକ୍ଷାକେନ୍ଦ୍ର । ସେଠାରେ ବିହାର ଓ ଓଡ଼ିଶା ରାଜ୍ୟର ସମବାୟ ଶିକ୍ଷାର୍ଥୀମାନେ ତାଲିମ ପାଉଥିଲେ । ଗୋପାଳପୁର ଭଳି ମନୋରମ ସ୍ଥାନରେ ତାଙ୍କର ଅବସ୍ଥାନ ସୁଖପ୍ରଦ ହୋଇଥିଲା । ଅଧ୍ୟୟନ ଓ ଅଧ୍ୟାପନା ମଧ୍ୟ ତାଙ୍କୁ ବିଶେଷ ଆନନ୍ଦ ଦେଇଥିଲା । ସେଠାରେ ସେ ଦୁଇ ବର୍ଷ ତିନି ମାସ ରହିଲେ । ୧୯୬୨ ମସିହାରେ ସମବାୟ ଶିକ୍ଷାନୁଷ୍ଠାନଗୁଡ଼ିକର ପରିଚାଳନା ଷ୍ଟେଟ କୋଅପରେଟିଭ ୟୁନିୟନ ହାତକୁ ଗଲା । ସେହି ୟୁନିୟନର ଟ୍ରେନିଂ ଅଫିସର ଭାବରେ ୧୯୬୩ ମସିହା ଜୁନ ମାସରେ ସେ ମଧ୍ୟ ଯୋଗ ଦେଲେ । ସେ କଟକରେ ନିଜ ଗୃହରେ ରହି ସେହି କାର୍ଯ୍ୟ ତୁଲାଉଥିଲେ ।

ଅନନ୍ତ ପ୍ରସାଦ ଅଲ୍ ଇଣ୍ଡିଆ ରେଡ଼ିଓର ପରାମର୍ଶଦାତା କମିଟିର ସଦସ୍ୟ ଭାବେ ବହୁକାଳ ରହିଥିଲେ । World Vision ସହିତ ସେ ସମ୍ପୃକ୍ତ ଥିଲେ । କଟକ ଥିଓସୋଫିକାଲ ସୋସାଇଟିର ମଧ୍ୟ ସଭ୍ୟ ଥିଲେ ।

**ଦେହାନ୍ତ**

ଅବସର ଗ୍ରହଣ ପରେ ଅନନ୍ତ ପ୍ରସାଦ କଟକ ସେଲ୍ଟର ଛକରେ ଥିବା ବାସଗୃହରେ ରହୁଥିଲେ । ଦୀର୍ଘ ଦିନ ଧରି ପୀଡ଼ିତ ରହିବା ପରେ ୮୩ ବର୍ଷ ବୟସରେ ୧୯୮୯ ମସିହା ଡିସେମ୍ବର ମାସ ୧୫ ତାରିଖରେ ତାଙ୍କର ଦେହାନ୍ତ ହେଲା ।

ଶ୍ରୀଯୁକ୍ତ ପଣ୍ଡାଙ୍କ ମୃତ୍ୟୁରେ ଗଭୀର ଶୋକ ପ୍ରକାଶ କରି ରାଜ୍ୟ ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଲେଖିଥିଲେ – ''ସାହିତ୍ୟିକ, ସମବାୟ ଆନ୍ଦୋଳନର ବିଶିଷ୍ଟ ପ୍ରବର୍ତ୍ତକ ଏବଂ ସମାଜସେବୀ ଅନନ୍ତ ପ୍ରସାଦ ପଣ୍ଡାଙ୍କ ବିୟୋଗରେ ମୁଁ ଅତ୍ୟନ୍ତ ଦୁଃଖିତ । ସେ କେବଳ ମୋର ପଡ଼ୋଶୀ ନ ଥିଲେ, ତାଙ୍କ ସହିତ ବ୍ୟକ୍ତିଗତ ଓ ପାରିବାରିକ ବନ୍ଧୁତା ଥିଲା । ତାଙ୍କର ଭଦ୍ରତା, ଶାଳୀନତା ଏବଂ ବନ୍ଧୁବତ୍ସଳତା ଉଲ୍ଲେଖନୀୟ ଥିଲା ।''

## ମୂଲ୍ୟାୟନ

ଅନନ୍ତ ପ୍ରସାଦ ହେଉଛନ୍ତି ଜଣେ ଅନନ୍ୟ ସାରସ୍ୱତ ସାଧକ । ସାରସ୍ୱତ ରଚନା ଥିଲା ତାଙ୍କର ସ୍ୱତଃସ୍ଫୂର୍ତ୍ତ ଭାବନାର ଅପୂର୍ବ ସ୍ୱାକ୍ଷର । ତାଙ୍କ ଅନ୍ତରର ନିବିଡ଼ତମ କୋଣରେ ଯେତେବେଳେ ଯେ କୌଣସି ଭାବନାର ଜ୍ୟୋତିରେଖା ଫୁଟି ଉଠୁଥିଲା, ତାହାକୁ ସେ ଯନ୍ତ୍ରଚାଳିତ ଭାବେ ଲେଖି ଯାଉଥିଲେ । ସେ ଥିଲେ ଓଡ଼ିଆ ଜୀବନର ଜଣେ ସଫଳ ରୂପକାର । ସେଥିପାଇଁ ତାଙ୍କ ସାହିତ୍ୟ ଜନମାନସକୁ କେତେବେଳେ ଉତ୍ସାହ, ପ୍ରେରଣା ଦେଉଥିଲା ତ କେତେବେଳେ ଉପଦେଶ ବା ପରାମର୍ଶ ଦେଉଥିଲା । ବହୁ ସ୍ଥାନରେ ନୈତିକତାବୋଧକୁ ପ୍ରତିଷ୍ଠା କରିବାକୁ ଯାଇ ସେ ଏକ ଅଦୃଷ୍ଟ ଶକ୍ତିକୁ ନିୟାମକ ଭାବେ ଗ୍ରହଣ କରିଥିଲେ । ଫଳରେ ନୈତିକତାର ବିଜୟ ହୋଇ ମାନବିକତାର ଦ୍ୟୁତି ଫୁଟି ଉଠୁଥିଲା । ପୁଣି ସମାଜ କଲ୍ୟାଣ ଚେତନାହିଁ ତାଙ୍କର ସାରସ୍ୱତ ସୃଷ୍ଟି ଚେତନାର ପ୍ରଧାନ ଆଭିମୁଖ୍ୟ ଥିଲା । ସେ ପାଠକକୁ ଆନନ୍ଦ ଦେବା ଉଦ୍ଦେଶ୍ୟରେ ସାହିତ୍ୟ ରଚନା କରି ନାହାନ୍ତି; ତାଙ୍କର ପ୍ରତ୍ୟେକ ରଚନା ନିର୍ଦ୍ଦିଷ୍ଟ ଆଦର୍ଶର ଭିତ୍ତିଭୂମି ଉପରେ ହିଁ ଗଢ଼ିଉଠିଛି । ଜଣେ କ୍ରାନ୍ତଦର୍ଶୀ ଲେଖକଭାବେ ସମାଜର ପରିବର୍ତ୍ତନ ଚାହିଁଛନ୍ତି । ଆଗାମୀର ଆବାହନ କରିଛନ୍ତି କେତେକ ଲେଖାରେ ।

ଶେଷରେ ଏତିକି କୁହାଯାଇପାରେ ଯେ ଅନନ୍ତ ପ୍ରସାଦ ଜଣେ ବାସ୍ତବବାଦୀ ସ୍ରଷ୍ଟା ଭାବେ ଆମ ସମ୍ମୁଖରେ ପ୍ରତିଭାତ ହୁଅନ୍ତି । ସେ କେତେକ ଗଳ୍ପ ମାଧ୍ୟମରେ ମଣିଷର ବଞ୍ଚିବା ସମସ୍ୟାକୁ ଅଗ୍ରାଧିକାର ଦେଇଛନ୍ତି । ଦାନାପାଣି ଖୋଜୁଥିବା ଚାକିରିଆ ଜୀବନର ଜୀବନ୍ତ ଚିତ୍ର ମଧ୍ୟରେ ତା'ର ମାନସିକ ଅବସାଦ, ଅସହାୟତା, ଉତ୍କଟ ଘରଭଡ଼ା ସମସ୍ୟା, ଅବସର ପୂର୍ବ ଓ ପର ମାନସିକ ଦୃଷ୍ଟିକୋଣକୁ ଯେପରିଭାବେ ଫୁଟାଇଛନ୍ତି, ତାହା ତାଙ୍କୁ ଅପୂର୍ବ ଗୌରବ ବିମଣ୍ଡିତ କରିଛି । ସେ ଗୌରବ ରବି ଅସ୍ତମିତ ହେବାର ନୁହେଁ ।

❑❑❑



## ଗାଳ୍ପିକ

# ରାଜକିଶୋର ରାୟ

## [୧୯୧୪-୧୯୯୯]

ଗାଳ୍ପିକ ରାଜକିଶୋର ରାୟ ଓଡ଼ିଆ ସାହିତ୍ୟରେ ସୁପ୍ରତିଷ୍ଠିତ । ତାଙ୍କ ଗଳ୍ପ ରଚନା ଭିତରେ ଯେଉଁଟି ପ୍ରଥମେ ସ୍ପଷ୍ଟତର ହୋଇଉଠେ, ତାହା ହେଲା ତାଙ୍କର କାବ୍ୟିକ କଳାକୁଶଳତା । ବିଭିନ୍ନ ସମୟରେ ତାଙ୍କ ରଚିତ କ୍ଷୁଦ୍ର ଗଳ୍ପଗୁଡ଼ିକରେ ଏହି ସାମୂହିକ ସମାହାରଟି ଆଧୁନିକ ଦୃଷ୍ଟିକୋଣରୁ ଏକ ମହାକାବ୍ୟରୂପେ ଅଭିହିତ କରାଯାଇପାରେ ବୋଲି କେହି କେହି କହିଥାନ୍ତି । ଅବଶ୍ୟ କାବ୍ୟ ମହାକାବ୍ୟର ପ୍ରାଚୀନ ଆଳଙ୍କାରିକ ଲକ୍ଷଣମାନ ଆଧୁନିକ ସାହିତ୍ୟରେ ଆଉ ନାହିଁ । ତେବେ ଶ୍ରୀଯୁକ୍ତ ରାୟଙ୍କ ଅଧିକାଂଶ ଗଳ୍ପଗୁଡ଼ିକ ବେଶ୍ ରସୋତ୍ତୀର୍ଣ୍ଣ ସାହିତ୍ୟ ସୃଷ୍ଟିରେ ଅବତୀର୍ଣ୍ଣ ହୋଇଛି । ଗଳ୍ପ ସାହିତ୍ୟ ସୃଷ୍ଟିରେ ରାଜକିଶୋର ରାୟ ଓଡ଼ିଆ ସାହିତ୍ୟକୁ ଦିଗ୍‌ଦର୍ଶନ ଦେଇଛନ୍ତି ବୋଲି ସମସ୍ତେ ସ୍ୱୀକାର କରନ୍ତି ।

ରାଜକିଶୋର ଖୋର୍ଦ୍ଧାଠାରୁ ୯ ମାଇଲ ଦୂର ମେଣ୍ଢାଶାଳ ଗ୍ରାମରେ ୧୯୧୪ ମସିହା ନଭେମ୍ବର ମାସ ୨୩ ତାରିଖରେ ଜନ୍ମଗ୍ରହଣ କରିଥିଲେ । ଏହି ମେଣ୍ଢାଶାଳ ଗ୍ରାମଟି ତାଙ୍କର ମାତୁଳାଳୟ ଥିଲା । ପିତ୍ରାଳୟ ହେଉଛି ଖୋର୍ଦ୍ଧାରୁ ୮ ମାଇଲ ଦୂର ଛତାବର ଗ୍ରାମ । ପିତାଙ୍କ ନାମ ଥିଲା ଶ୍ରୀନାଥ ରାୟ, ମାତାଙ୍କ ନାମ ସୁନାମଣି ଦେବୀ ।

**ଜନ୍ମବୃତ୍ତାନ୍ତ**

ରାଜକିଶୋର ସଂଭ୍ରାନ୍ତ ବଂଶର ସନ୍ତାନ ଥିଲେ । ପିତାମହ ହେଉଛନ୍ତି ମୃତ୍ୟୁଞ୍ଜୟ ଛୋଟରାୟ । ତାଙ୍କ ପୂର୍ବ-ପୁରୁଷମାନେ ପୁରୀରଁ ଗଜପତିରାଜାଙ୍କ ପକ୍ଷରୁ ଖୋର୍ଦ୍ଧା ଅଞ୍ଚଳରେ ଶାସନ କାର୍ଯ୍ୟ ପରିଚାଳନା କରୁଥିଲେ । ଗଜପତିଙ୍କ ଆଦେଶ ଅନୁଯାୟୀ ପରିବାରର ଜ୍ୟେଷ୍ଠପୁତ୍ରଙ୍କୁ 'ରାୟ' ପଦବୀ ମିଳୁଥିଲା । ଅନ୍ୟମାନେ 'ପଟ୍ଟନାୟକ' ପଦବୀ ଧାରଣ କରୁଥିଲେ । ରାଜକିଶୋରଙ୍କ ପିତା ଶ୍ରୀନାଥ ଜ୍ୟେଷ୍ଠପୁତ୍ର ଥିବାରୁ 'ରାୟ' ପଦବୀ ଗ୍ରହଣ କଲେ । ରାଜକିଶୋରଙ୍କ ନାମ ଶେଷରେ ବି 'ରାୟ' ରହିଲା ।

ଶ୍ରୀନାଥ ରାୟଙ୍କର ବିବାହର ଆଠ ବର୍ଷ ବିତି ଯାଇଥିଲେ ମଧ୍ୟ କୌଣସି ସନ୍ତାନ ଜନ୍ମ ହୋଇ ନ ଥିଲେ । କଥିତ ଅଛି ଯେ ସୁନାମଣି ଦେବୀ ବ୍ୟଥିତା ହୋଇ ଗ୍ରାମର କିଛି ଦୂରରେ ଥିବା ଭୀମେଶ୍ୱର ମନ୍ଦିରରେ ଧ୍ୟାନସ୍ଥ ଥିବା ସମୟରେ ଶିବ ଲିଙ୍ଗରୁ ବେଲପତ୍ର ସହ ପୁଷ୍ପଗୁଚ୍ଛ ତାଙ୍କ ଉପରେ ପଡ଼ିଲା । ତାହାକୁ ପ୍ରସାଦ ମନେ କରି ପୁତ୍ର କାମନାରେ ସୁନାମଣି ଦେବୀ ଭକ୍ଷଣ କରିବା ଫଳରେ ତାଙ୍କର ଗର୍ଭୋଦୟ ହେଲା । ସେହି ମହାଦେବଙ୍କ ନାମାନୁସାରେ ପୁତ୍ରର ନାମ ଭୀମ ରଖାଗଲା । ଶ୍ରଦ୍ଧା ନାମ ହେଲା ରାଜକିଶୋର । ସେ 'ରାଜକିଶୋର' ନାମରେ ପରିଚିତ ହେଲେ ।

**ସାତ୍ତ୍ୱିକ ଶିହରଣ**

ପିତାମହ ମୃତ୍ୟୁଞ୍ଜୟ ଶିବଙ୍କର ପରମ ଭକ୍ତ ଥିଲେ । ସେ ପ୍ରତିଦିନ ଶିବ ମନ୍ଦିରକୁ ଯାଇ ଏକ ଘଣ୍ଟା ଜପ, ତାଳପତ୍ର ପୋଥିପାଠ ଓ ଭୋଗ-ନୈବେଦ୍ୟ ଅର୍ପଣ ସାରି ଘରକୁ ଫେରୁଥିଲେ । ଭୋଗ ନେବାପାଇଁ ବେଳେ ବେଳେ ପିତାମହ ରାଜକିଶୋରଙ୍କୁ ଡାକୁଥିଲେ । ରାଜକିଶୋର ସେଠାକୁ ଯାଉଥିଲେ । ପିତାମହଙ୍କର ପୂଜା ଆୟୋଜନ ଓ ଦେବତା ସମର୍ପଣ ପ୍ରଭୃତି ତାଙ୍କୁ ଆକୃଷ୍ଟ କରିଥିଲା । ତୁଳସୀ ଗଛରେ ଜଳଦାନ ଓ ସେବା ବେଳର ମାତାଙ୍କର ମୁଖର ଦୀପ୍ତି ତାଙ୍କୁ ଆନନ୍ଦ ଦେଉଥିଲା । ପ୍ରଦୋଷରେ ଗୃହରେ ଶଙ୍ଖଧ୍ୱନି ଓ ପ୍ରତ୍ୟେକଟି କଳା ପାହାଚ ଉପରେ ସଳିତା ଦାନ ହୃଦୟରେ ସାତ୍ତ୍ୱିକ ଶିହରଣ ସୃଷ୍ଟି କରୁଥିଲା ।

**ସାମନ୍ତବାଦୀ ଚାଲିଚଳଣ**

ପିତାମହ ସାମନ୍ତବାଦର ପ୍ରତୀକ ଥିଲେ । ତାଙ୍କ ଗୃହର ମୁଖ୍ୟ ଦ୍ୱାରରେ ଲୌହଗୋବବସା ସୁଦୃଢ଼ ଯାଉଁଳି କବାଟ ଲାଗିଥିଲା । ଆଚୁ ଘର ଭିତରେ ବିରାଟ ଯନ୍ତା ଭଳି ମାଳ ମାଳ ସିନ୍ଦୁକ, ପାନ ଡବା, ଥାଳି, ବିରାଟକାୟ କଂସାଗିନା ପ୍ରଭୃତି ଥିଲା ।

ମୃତ୍ୟୁଞ୍ଜୟ କ୍ଷୀଣ ସ୍ୱରରେ କଥା କହୁ ନ ଥିଲେ । କାହାକୁ ଡାକନ୍ତି ଅବା ଗୋରୁ ଗାଈଙ୍କୁ ଡାକିଲାଭଳି ତାଙ୍କ ପାଟି କୋଶ କୋଶ ଦୂରକୁ ଶୁଭୁଥିଲା ।

ପିତାମହ ଖୋର୍ଦ୍ଧାଗଡ଼କୁ ଅବା ପୁରୁଷୋତ୍ତମ କ୍ଷେତ୍ରକୁ ବେଳେ ବେଳେ ଯାଉଥିଲେ । ପିନ୍ଧୁଥିଲେ ଧଳା ଚପକନ । ବେକରେ ଉତ୍ତରୀୟ । ତାହା ମୋଡ଼ି ମୋଡ଼ି ହୋଇ

କୁଞ୍ଚିକୁଞ୍ଚିକା ବହୁ ଶିରା ଉପଶିରାରେ ଝୁଲୁଥିଲା । ଗ୍ରାମ ଦାଣ୍ଡର ଲୋକେ ତଟସ୍ଥ ହୋଇ ଚାହିଁ ରହୁଥିଲେ ଏହି ଶୁଭ ଯାତ୍ରା ବେଳକୁ । ଯାଉଥିଲେ ବିଚିତ୍ର ଶଗଡ଼ ଯାନରେ । ଯୋଚା ହେଉଥିଲା ଘାଗୁଡ଼ିଲଗା ବଳଦ । ସାଙ୍ଗରେ ଥାଏ ସାହେବ ମାଜିଷ୍ଟ୍ରେଟଙ୍କ ଉଦ୍ଦେଶ୍ୟରେ ଭେଟିଆଳ । ତାହା ଆମ୍ବ ପଣସଠାରୁ ଆରମ୍ଭ କରି ନାନା ଜାତୀୟ ପିଠା କାକରାରେ ଭର୍ତ୍ତି ହୋଇଥାଏ । ପିତାମହ ବ୍ରିଟିଶ ସରକାରର ସମ୍ବନ୍ଧ ସେତୁ ଭାବେ ଥିଲେ । ସେ ଅବୈତନିକ ଜୁରି ସଭ୍ୟ ମଧ୍ୟ ହୋଇଥିଲେ ।

ଅନ୍ୟପଟରେ ରାଜକିଶୋରଙ୍କ ମାତାଙ୍କ ପିତା ନବକିଶୋର ପଟ୍ଟନାୟକ ଦୀର୍ଘକାୟ ଉଜ୍ଜ୍ୱଳ ପୁରୁଷ ଥିଲେ । ସେ ଅମିନ କାର୍ଯ୍ୟ ସହିତ କୃଷି କାର୍ଯ୍ୟ କରୁଥିଲେ । ପୁରୀଠାରୁ କଟକ ପ୍ରଥମ ରେଳପଥ ପଡ଼ିବାବେଳେ ସେ ସମସ୍ତ ରେଳପଥ ସର୍ଭେ କରିଥିଲେ ।

**ଶିକ୍ଷା ଆରମ୍ଭ**

ଗ୍ରାମାଞ୍ଚଳରେ ମାଟିବଂଶ ଅବଧାନମାନେ ପିଲାଙ୍କୁ ପଢ଼ାଉଥିଲେ । ରାଜକିଶୋରଙ୍କ ପ୍ରଥମ ଶିକ୍ଷା ଗୁରୁ ଥିଲେ ଏହି ମାଟିବଂଶ ଅବଧାନ ।

ବାଲ୍ୟ କାଳରେ ରାଜକିଶୋରଙ୍କ ସ୍ୱାସ୍ଥ୍ୟ ଭଲ ରହୁ ନ ଥିଲା । ବେମାରି ଲାଗି ରହିଥିଲା । ଦେହରେ କାଛୁକୁଣ୍ଡିଆ ବାହାରୁଥିଲା । ସେଥିରୁ ପୂଯ ବାହାରୁଥିଲା । ତେଣୁ ମନଟା ତାଙ୍କର ବିରସ ରହୁଥିଲା । ବୋଉ ଯତ୍ନରେ ନିମ୍ବପତ୍ର ଓ ଖଇରସିଝା ପାଣିରେ ଘା'ଗୁଡ଼ିକ ଧୋଇ ଦେଉଥିଲେ । ସେ ସେତେବେଳେ ରଡ଼ି ଛାଡୁଥିଲେ । ବାପା ଥରେ ଥରେ ତାଙ୍କ ପାଟି ଶୁଣି ରାଗିଯାଇ ପ୍ରହାର କରୁଥିଲେ ।

ମାଟିବଂଶ ଶିକ୍ଷା ଶେଷ ପରେ ରାଜକିଶୋର ବାପାଙ୍କ ସହିତ ପୁରୀ ଗଲେ । ସେଠାରେ ବାପା ପୁଲିସ ବିଭାଗର ଜଣେ ନିମ୍ନ କର୍ମଚାରୀ ଥିଲେ । ମାସକୁ ତାଙ୍କର ଦରମା ଥିଲା ମାତ୍ର ୩୫ ଟଙ୍କା ।

ପିତା ପୁରୀରେ ପଟିଆ ରାଣୀ ମନ୍ଦିର ପାଖ ବେହେରା ସାହିର ଗଳିରେ ଗୋଟିଏ ଭଡ଼ାଘରେ ରହିଲେ । ପରେ ବଳଗଣ୍ଡି ସାହିରେ ମାତ୍ର ଦୁଇ ଶହ ଟଙ୍କାରେ ଘର କିଣି ସେଠାକୁ ଉଠିଗଲେ ।

ଏହାପରେ ରାଜକିଶୋର ପୁରୀ ବଳଗଣ୍ଡି ସାହିର ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ନାମ ଲେଖାଇଲେ । ସେତେବେଳେ ଶିକ୍ଷାର ମାନ ଖୁବ୍ ଉଚ୍ଚ ଥିଲା । ଶିକ୍ଷକମାନେ ନିୟମିତ ସ୍କୁଲକୁ ଆସୁଥିଲେ । ଧର୍ମଶିକ୍ଷା ଦେବାର ବ୍ୟବସ୍ଥା ଥିଲା । ରାଜକିଶୋରଙ୍କର ପ୍ରକୃତି ପାଠ ପ୍ରିୟ ବିଷୟ ଥିଲା । ବିଦ୍ୟାଳୟରେ ଥିବା ଗଛଲତାଗୁଡ଼ିକ କେମିତି ବଢ଼ୁଛି, ତାହା ଲକ୍ଷ୍ୟ କରୁଥିଲେ ।

ରାଜକିଶୋର ପଞ୍ଚମ ଶ୍ରେଣୀ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ସେ ପ୍ରଥମ ହୋଇଥିଲେ । ଶିକ୍ଷକମାନେ ତାଙ୍କ ଘରକୁ ଆସି ଆଶୀର୍ବାଦ କରିଥିଲେ ।

ଉକ୍ତ ପ୍ରାଥମିକ ଶିକ୍ଷା ଶେଷ ହେବା ପରେ ୧୯୨୦ ମସିହାରେ ପୁରୀ ଜିଲ୍ଲା ସ୍କୁଲରେ ରାଜକିଶୋରଙ୍କ ନାମ ଷଷ୍ଠ ଶ୍ରେଣୀରେ ଲେଖାଗଲା । ଚନ୍ଦ୍ରମୋହନ ମହାରଣା, ନନ୍ଦକିଶୋର ବଳ, ଆନନ୍ଦ ପତି, ବିଶ୍ୱମ୍ଭର ମିଶ୍ର, ଲଳିତ ମୋହନ ଘୋଷ, ପଣ୍ଡିତ ଫକୀର ମିଶ୍ର, ପଣ୍ଡିତ ଜଗନ୍ନାଥ ରଥ ଓ ରହମତ୍ ଅଲ୍ଲୀ ପ୍ରଭୃତି ଉଚ୍ଚକୋଟୀର ଶିକ୍ଷକ ସେତେବେଳେ ଥିଲେ । ସେହି ସମୟରୁ ସଂସ୍କୃତ ଓ ଓଡ଼ିଆ ପ୍ରତି ତାଙ୍କର ଅତ୍ୟଧିକ ମମତା ପ୍ରକାଶ ପାଇଲା ।

ରାଜକିଶୋରଙ୍କ ମନରେ ଗଭୀର ରେଖାପାତ କରିଥିଲେ ଦୁଇ ଜଣ ଶିକ୍ଷକ । ସେମାନେ ହେଲେ ଚନ୍ଦ୍ରମୋହନ ମହାରଣା ଓ ଭୀମ ରାଉତ । ଭୀମ ରାଉତ ବାଙ୍ଗରା, କିନ୍ତୁ ତାଙ୍କର ପରିପୁଷ୍ଟ ଚେହେରା ଥିଲା । ସୁନାଚେନରେ ନଟକିଥିବା ଘଣ୍ଟା ତାଙ୍କ ଛାତି ପକେଟରେ ରହୁଥିଲା । ସେ ଦଣ୍ଡ ବିଧାନ ଦାୟିତ୍ୱରେ ଥାଆନ୍ତି । ଥରେ ଭୀମ ରାଉତ ରାଉଣ୍ଡ ଦେଉଥିବାବେଳେ ରାଜକିଶୋରଙ୍କୁ ଟିକିଏ ଉଚ୍ଚ ଗଳାରେ କଥା କହୁଥିବାର ଦେଖିଲେ । ସାଙ୍ଗେ ସାଙ୍ଗେ ଶାସ୍ତିବିଧାନ କଲେ । ବେଞ୍ଚ ଉପରେ ତାଙ୍କୁ ଠିଆ ହେବାକୁ ପଡ଼ିଲା । ରାଜକିଶୋର ବି ସାଙ୍ଗେ ସାଙ୍ଗେ ଠିଆ ହୋଇଗଲେ । ଭୀମ ରାଉତ ଚାଲିଗଲେ, ଏହାପରେ ତାଙ୍କର ଶ୍ରେଣୀଶିକ୍ଷକ କ୍ଲାସକୁ ଆସିଲେ । ରାଜକିଶୋର ଠିଆ ହୋଇଥିବାର ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । କାରଣ ସେ ଜଣେ ସୁଶୀଳ ବାଳକଭାବେ ଗଣ୍ୟ ହେଉଥିଲେ । ସେତେବେଳେ ମଧ୍ୟ ଦଣ୍ଡବିଧାନ ତାଲିକାରେ ନାମ ଚଢ଼ିବାଟା ଗୋଟାଏ ବ୍ୟର୍ଥତା ବୋଲି ସମସ୍ତେ ଭାବୁଥିଲେ । ଭବିଷ୍ୟତ୍‌ରେ ଚାକିରି ନ ମିଳିବାର ଆଶଙ୍କା ବି ଥିଲା । ରାଜକିଶୋର ନୀରବରେ ଅଶ୍ରୁ ବୁହାଇ ଚାଲିଥିଲେ । ତିନି ଘଣ୍ଟା ବେଞ୍ଚ ଉପରେ ଛିଡ଼ା ହେବା ପରେ ନିଜେ ଭୀମ ରାଉତ ଶ୍ରେଣୀକୁ ଆସି ତାଙ୍କୁ ବସିବାକୁ କହିଥିଲେ ।

ରାଜକିଶୋର ପୁରୀ ଜିଲ୍ଲା ସ୍କୁଲର ଛାତ୍ର ଥିଲାବେଳକୁ ସ୍ୱାଧୀନତା ଆନ୍ଦୋଳନ ଚାଲିଥାଏ । ପଣ୍ଡିତ ଗୋପବନ୍ଧୁ ପୁରୀ ଆସି ସଭାସମିତିମାନ କରୁଥାନ୍ତି । ପୁରୀର ସିଂହଦ୍ୱାର ଚକଡ଼ାରେ ଅସହଯୋଗ ଆନ୍ଦୋଳନର ସଭାସମିତି ହେଉଥାଏ । ପିତା ପୁଲିସ ଚାକିରି କରୁଥିବାରୁ ପୁତ୍ରକୁ ସେ ସ୍ଥାନମାନଙ୍କୁ ନ ଯିବାପାଇଁ ବାରମ୍ବାର କହୁଥାନ୍ତି । କିନ୍ତୁ ତାଙ୍କ ମନା ନ ମାନି ରାଜକିଶୋର ସେ ସ୍ଥାନକୁ ଯାଉଥିଲେ ଓ ସେହି ସଭାମାନଙ୍କରେ ଯୋଗ ଦେଉଥିଲେ । ଥରେ ଗୋଟିଏ ସଭାରେ ସେ ପିତାଙ୍କ ବାରଣ ନ ମାନି ଗୋପନରେ ଯୋଗ ଦେଇଥିଲେ । ଅନେକ ଶ୍ରୋତାଙ୍କୁ ତାଙ୍କ ଆଗରେ ଗିରଫ କରାଗଲା । ମାତ୍ର ରାଜକିଶୋରଙ୍କ ପାଳି ପଡ଼ି ନ ଥିଲା । ରାଜକିଶୋର ଦ୍ୱିତୀୟ ଶ୍ରେଣୀରେ ମାଟ୍ରିକ ପାସ୍ କଲେ ।

ଏହାପରେ ରାଜକିଶୋର ରେଭେନ୍‌ସା କଲେଜରେ ଆଇ.ଏ. ପଢ଼ିବାପାଇଁ ଆଗ୍ରହୀ ହେଲେ । କିନ୍ତୁ ଘରର ଆର୍ଥିକ ଅନଟନ ଯୋଗୁଁ ଉଚ୍ଚଶିକ୍ଷାପାଇଁ କାହାର ଇଚ୍ଛା ନ ଥିଲା । ପିତା ତାଙ୍କୁ କନେଷ୍ଟବଳ ଚାକିରିରେ ନିଯୁକ୍ତ କରାଇବାର ସମସ୍ତ ବ୍ୟବସ୍ଥା

କରିସାରିଥିଲେ । କିନ୍ତୁ ରାଜକିଶୋରଙ୍କ ଶୁଭେଚ୍ଛୁ ଗଣିତ ଶିକ୍ଷକ ରହମତ୍ ଅଲ୍ଲୀ ରାଜକିଶୋରଙ୍କୁ ଉଚ୍ଚଶିକ୍ଷା ଦେବାପାଇଁ ପିତାଙ୍କୁ କହିଲେ । କିନ୍ତୁ ପିତା ଏ ପ୍ରସ୍ତାବରେ ରାଜି ହେଲେ ନାହିଁ । ରହମତ୍ ଅଲ୍ଲୀ ରାଜକିଶୋରଙ୍କୁ ଟ୍ରେନ୍‌ରେ ବସାଇ କଟକ ନେଲେ । ରେଭେନ୍‌ସା କଲେଜରେ କଳା ବିଭାଗରେ ତାଙ୍କର ନାମ ଲେଖାଗଲା । ନାମ ଲେଖା ଟଙ୍କା ଓ ମାସିକ ଖର୍ଚ୍ଚ ସମ୍ଭବତଃ ରହମତ୍ ଅଲ୍ଲୀ ଦେଲେ । ଆଉ ମଧ୍ୟ ତାଙ୍କର କେତେ ଧର୍ମଜନକ ଥିଲେ ବୋଲି ରାଜକିଶୋର ତାଙ୍କ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି ।

ରାଜକିଶୋର ପୂର୍ବ-ଛାତ୍ରାବାସରେ ରହିଲେ । କଲେଜ ଜୀବନରେ ଯେଉଁ କେତେଜଣ ଅଧ୍ୟାପକଙ୍କ ସମ୍ପର୍କରେ ଆସିଲେ, ସେମାନେ ହେଉଛନ୍ତି ଆର୍ତ୍ତବଲ୍ଲଭ ମହାନ୍ତି, ଘନଶ୍ୟାମ ଦାସ, ଲକ୍ଷ୍ମୀକାନ୍ତ ଚୌଧୁରୀ ପ୍ରଭୃତି । ଆର୍ତ୍ତବଲ୍ଲଭ ମହାନ୍ତି ପ୍ରାଚୀନ ଓଡ଼ିଆ ସାହିତ୍ୟର ଗବେଷଣା ବା ପାଠୋଦ୍ଧାର ଶୁଭାରମ୍ଭ କରିଥିଲେ । ସେ ଶୁଭ୍ର ଓ କମନୀୟତାର ପ୍ରତୀକ ଥିଲେ । ଲକ୍ଷ୍ମୀକାନ୍ତ ଚୌଧୁରୀ ପୁଅ ଝିଅଙ୍କୁ ଓଡ଼ିଶୀ ସଙ୍ଗୀତ ଶିକ୍ଷା ଦେଉଥିଲେ । ସେମାନଙ୍କ ବ୍ୟକ୍ତିତ୍ୱ ରାଜକିଶୋରଙ୍କ ଜୀବନରେ ଗଭୀର ପ୍ରଭାବ ପକାଇଲା ।

ପ୍ରଥମ ବର୍ଷ ଅଫିସ ସୁପରିଣ୍ଟେଣ୍ଡେଣ୍ଟ ଜଗନ୍ନାଥ ମିଶ୍ର, ଇତିହାସ ଅଧ୍ୟାପକ ଘନଶ୍ୟାମ ଦାସ ଏବଂ ପଦାର୍ଥବିଜ୍ଞାନ ଅଧ୍ୟାପକ ନାରାୟଣ ମିଶ୍ର ରାଜକିଶୋରଙ୍କୁ ଥିଏଟରରେ ନାୟିକା ଭାବରେ ଅଭିନୟ କରିବାପାଇଁ ବାଛିଲେ । ସେ ମଧ୍ୟ ଶାକୀ ଭୂମିକାରେ ଅଭିନୟ କଲେ । ତା' ପରଠାରୁ ସେ କ୍ରମାଗତ ଭାବେ ନାରୀ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ । ଏହି ସୁଯୋଗ ନ ପାଇଥିଲେ ହୁଏତ ସେ ଜଣେ ଅଭିନେତା ବା ସଙ୍ଗୀତଜ୍ଞ ଭାବରେ ନାଟ୍ୟ ସଙ୍ଗୀତ ଜଗତକୁ ପ୍ରବେଶ କରିପାରି ନ ଥାନ୍ତେ ।

**ପ୍ରଥମ ପ୍ରଣୟ**

୧୯୩୩ ମସିହା ଘଟଣା । ରାଜକିଶୋର ରେଭେନ୍‌ସାରେ ଦୁଇ ବର୍ଷ ପାଠ ପଢ଼ି ବି.ଏ. ଶ୍ରେଣୀରେ ପଢୁଥାନ୍ତି । ପ୍ରେମଲତା ନାମକ ଜଣେ ଖ୍ରୀଷ୍ଟିୟାନ ଛାତ୍ରୀ ମହିଳା କଲେଜରୁ ଆଇ.ଏ. ପାସ୍ କରି ରେଭେନ୍‌ସାରେ ନାମ ଲେଖାଇଲେ । ଛଅ ଶହ ପୁଅ ପିଲାଙ୍କ ମଧ୍ୟରେ ସେ ଓ ଆଉ ଜଣେ ନାରୀ ଥିଲେ । ଏହି ଦୁଇ ଜଣଙ୍କୁ ଦେଖିବାପାଇଁ ବାର ଶହ ଆଖି ନିତ୍ୟନିୟତ ଖେଳାବୁଲା କରୁଥିଲା । ରାଜକିଶୋର ସେହି ଖ୍ରୀଷ୍ଟିୟାନ ଝିଅ ପ୍ରେମଲତାର ପ୍ରେମରେ ପଡ଼ିଲେ ।

ଜୀବନର ପ୍ରଥମ ପ୍ରେମର ଅନୁଭୂତି ସେ ରୂପ ଦେଇ ଲେଖିଛନ୍ତି – ''ଅନ୍ୟ ଜଣଙ୍କର ସହିତ ମୋର ଆଦ୍ୟ ତାରୁଣ୍ୟର ପନ୍ଦର ବର୍ଷ ସ୍ୱପ୍ନବିଳାସୀ ଜୀବନର ଗୋଟିଏ ବିରାଟ ଚିତ୍ରର ସଂଯୋଗ ରହିଛି । ଓଡ଼ିଶାରେ ସେତେବେଳେ ଆମ ଦୁହିଁଙ୍କର ସମ୍ପର୍କ ଘେନି ତଳଠାରୁ ଉପରଯାଏ ସବୁ ଶ୍ରେଣୀର ଲୋକଙ୍କ ପାଖେ

ଆମେ ରହିଗଲୁ ଅଜ୍ଞେୟ ରାଜ୍ୟର ଆବିଷ୍କାରକ ... ଶାଶ୍ୱତ ପ୍ରେମର ପ୍ରବାହ ନିର୍ବିଘ୍ନ ପ୍ରବାହିତ ହୁଏ ନାହିଁ । ତାହାହିଁ ଘଟିଥିଲା ଆମ ଯୁଗ୍ମ ଜୀବନରେ ।''

ଧର୍ମ ଓ ସାମ୍ପ୍ରଦାୟିକତାକୁ ଭ୍ରୂକ୍ଷେପ ନ କରି ରାଜକିଶୋର ପ୍ରେମ ପଥରେ ଆଗେଇଗଲେ । ତାଙ୍କର ପ୍ରେମ, ତାଙ୍କ କହିବା ଅନୁଯାୟୀ ଶାଶ୍ୱତ ଥିଲା ।

ରାଜକିଶୋରଙ୍କ ଭାଷାରେ – ''ମୋର ସାହିତ୍ୟସେବା, ଧର୍ମଚିନ୍ତା, କୃଷ୍ଣ ଚିନ୍ତାରେ ସହଯୋଗିନୀ ଶ୍ୟାମଳୀ ମତେ ହାତଧରି ଯିମିତି ନେଇଯାଇଥିଲା ସୋପାନ ପରେ ସୋପାନ .... ସେଠି ପ୍ରେମର କଳଙ୍କ ନ ଥିଲା, ସ୍ୱାର୍ଥର ସଂଭୋଗ ଜିଜ୍ଞାସା ନ ଥିଲା । ଫୁଟନ୍ତା ଫୁଲର ବାସ ଘେନି ଯେତେବେଳେ କିଶୋର ବୟସରେ ମୁଁ ଚକିତ କୃଷ୍ଣସାର ଭଳି ସଂସାରକୁ ସନ୍ଦର୍ଶନ କରୁଥିଲି, ସେତେବେଳେ ପ୍ରେମଲତା ମୋର ଲଲାଟରେ ଚନ୍ଦନଚିତା ଦେଇ କହୁଥିଲା – ''ଆଗକୁ ଯାଅ, ବିଜୟୀ ହୁଅ । ମୁଁ ପଛରେ ଅଛି ।''

ଛାତ୍ରାବାସର ତତ୍ତ୍ୱାବଧାରକ ଅଧ୍ୟାପକ ଘନଶ୍ୟାମ ଦାସ ରାଜକିଶୋରଙ୍କୁ ଛାତ୍ରାବାସର ପ୍ରାର୍ଥନା ଗୃହର ସମ୍ପାଦକ ଭାବରେ ମନୋନୀତ କଲେ । ଏହି ପ୍ରାର୍ଥନା ଗୃହରେ ପ୍ରତିଦିନ ଭଗବଦ୍‌ଗୀତା ପାରାୟଣ ହେଉଥିଲା । ସମସ୍ତେ ସେଥିରେ ଯୋଗ ଦେବାକୁ ବାଧ୍ୟ ହେଉଥିଲେ । କେହି ଶୋଇପଡ଼ିଲେ ନିଜେ ତତ୍ତ୍ୱାବଧାରକ ଘନଶ୍ୟାମ ଦାସ ଠକ୍ ଠକ୍ କରି କବାଟ ବାଡ଼େଇ ତାଙ୍କୁ ଉଠାଉଥିଲେ । ରାଜକିଶୋର ହାରମୋନିୟମରେ ଗୀତା ପାଠ କରୁଥିଲେ । ଅନ୍ୟ ସମସ୍ତେ ପ୍ରତିଧ୍ୱନି ଦେଉଥିଲେ । ସେ ଧ୍ୱନି ସଂଚାର ଖଣ୍ଡମଣ୍ଡଳରେ ବ୍ୟାପିଯାଉଥିଲା ଓ ସମସ୍ତଙ୍କୁ ଜାଗ୍ରତ କରୁଥିଲା । ଏହାପରେ ଛାତ୍ରାବାସର ପ୍ରାତ୍ୟହିକ କାର୍ଯ୍ୟ ଆରମ୍ଭ ହେଉଥିଲା ।

ପ୍ରାର୍ଥନା ହଲ୍‌ରେ ବିବେକାନନ୍ଦ, ରାମକୃଷ୍ଣ, ବୁଦ୍ଧ, ଚୈତନ୍ୟ ପ୍ରଭୃତିଙ୍କର ଚିତ୍ର ଶୋଭା ପାଉଥିଲା । କିନ୍ତୁ ରାଜକିଶୋରଙ୍କୁ ମନେ ହେଲା ଯେମିତି କିଛି ଅପୂର୍ଣ୍ଣତା ରହିଯାଇଛି ! ଏହି ହିନ୍ଦୁ ଦେବଦେବୀଙ୍କ ମଧ୍ୟରେ ପ୍ରେମଲତାର ପୂଜ୍ୟ ଦେବତା ଯିଶୁଙ୍କ ଚିତ୍ର ରଖିବାକୁ ଚାହିଁଲେ । ପ୍ରେମଲତାଙ୍କ ସହିତ ନିଭୃତ ଆଲୋଚନା ହେଲା । ପ୍ରେମଲତା ଗୋଟିଏ କ୍ରୁଶବିଦ୍ଧ ଯିଶୁଙ୍କର ତୈଳଚିତ୍ର ଯୋଗାଇଦେବେ ବୋଲି କହିଲେ । ଯୋଗାଇ ଦେଲେ ମଧ୍ୟ । ପ୍ରେମଲତା ଦେଇଥିବା ଯିଶୁଙ୍କ ତୈଳଚିତ୍ରକୁ ସେ କାନ୍ଥରେ ଟାଙ୍ଗିଦେଲେ । ଏଥିରେ ପ୍ରବଳ ପ୍ରତିକ୍ରିୟା ସୃଷ୍ଟି ହେଲା । ତାଙ୍କ ଶ୍ରେଣୀର ଛାତ୍ରମାନେ ପ୍ରାର୍ଥନା ଗୃହରେ ଖ୍ରୀଷ୍ଟଧର୍ମର ପ୍ରଚାରକ ଯିଶୁଖ୍ରୀଷ୍ଟଙ୍କ ତୈଳଚିତ୍ର ରଖିବା ବିରୋଧରେ ଦରଖାସ୍ତ ଦେଲେ । କିନ୍ତୁ ଉଦାରହୃଦୟ ଘନଶ୍ୟାମ ଦାସ ଯିଶୁ, କୃଷ୍ଣ ପ୍ରଭୃତି ଏକ ବୋଲି କହି ଏପରି ନୀଚମନା ନ ହେବାକୁ ଉପଦେଶ ଦେଇଥିଲେ ।

ଦୁଇ ଦିନ ପରେ ଇଷ୍ଟ ହଷ୍ଟେଲ ଛାତ୍ରାବାସକୁ ପ୍ରେମଲତାଙ୍କ ଦାନ, ଯିଶୁଖ୍ରୀଷ୍ଟଙ୍କର ତୈଳ ଚିତ୍ର ଟଙ୍ଗା ଓ ସେଥିରେ ଘନଶ୍ୟାମ ଦାସଙ୍କର ପୁଷ୍ପମାଲ୍ୟ

ଅର୍ପଣ ପ୍ରଭୃତି ବିଷୟ 'ଉତ୍କଳ ଦୀପିକା'ରେ ପ୍ରକାଶ ପାଇଲା । ଏ ସମ୍ବାଦ ନିଜେ ରାଜକିଶୋର ଦେଇ ଆସିଥିଲେ ।

ଏ ସମ୍ବାଦ ପ୍ରକାଶ ପାଇବାପରେ ସହାଧ୍ୟାୟୀମାନେ ଉତ୍ତ୍ୟକ୍ତ ହୋଇପଡ଼ିଲେ । ଫଳରେ ସେମାନେ କୈଶୋରୀୟ ନାନାବିଧ ଉପଦ୍ରବ ଆରମ୍ଭ କରିଦେଲେ – ଦୁଇ ଜଣଙ୍କ ଉପରେ । ବିଶେଷତଃ, ସେହି ସହାଧ୍ୟାୟୀମାନେ ରାଜକିଶୋର ଓ ପ୍ରେମଲତାଙ୍କ ମିଳନ ଓ କଥାବାର୍ତ୍ତା କେଉଁଠାରେ ଓ କିପରି ଭାବରେ ହେଉଛି ତାହା ଜାଣିବାକୁ ଉଦ୍ୟମ ଚଳାଇଲେ । ତାହା କ୍ଲାସ ରେଜିଷ୍ଟର ରକ୍ଷକ ଓ ବିତରଣକାରୀ ଜଣେ ତୃତୀୟ ଶ୍ରେଣୀର କର୍ମଚାରୀଦ୍ୱାରା ହେଉଥିଲା । ସେ ଗୋପନରେ ରାଜକିଶୋରଙ୍କଠାରୁ ସମ୍ବାଦ ଓ ପତ୍ର ନେଉଥିଲେ ଓ ପ୍ରେମଲତାଙ୍କୁ ତାହା ଦେଇ ମିଳନର ସ୍ଥାନ ପ୍ରଭୃତି ଜଣାଉଥିଲେ । ଏପରିକି ବିପକ୍ଷ ଦଳର ଛାତ୍ରମାନେ କିପରି ଚକ୍ରାନ୍ତ କରୁଛନ୍ତି ସେ ବିଷୟରେ ମଧ୍ୟ ରାଜକିଶୋରଙ୍କୁ ଜଣାଉଥିଲେ । ଫଳରେ ସହାଧ୍ୟାୟୀମାନଙ୍କର ରାଜକିଶୋରଙ୍କୁ ଅପଦସ୍ତ କରିବାର ଉଦ୍ୟମ ସଫଳ ହୋଇ ନ ଥିଲା ।

''ଆମ ଜୀବନରେ ଏହି ଅଳ୍ପ ବୟସର ଯୁବକଙ୍କର ଉପକାର ଅଭୁଲା ହୋଇ ରହିବ'' ବୋଲି ରାଜକିଶୋର ତାଙ୍କ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି ।

ରାଜକିଶୋର ପ୍ରେମଲତାଙ୍କୁ ପଚାରି ସବୁ କାର୍ଯ୍ୟ କରୁଥିଲେ । ସେ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି – ''ଏ ଯାଏଁ ଯଥାର୍ଥରେ ସହଧର୍ମିଣୀ ନ ହୋଇଥିଲେ ବି ପ୍ରେମଲତା ଥିଲା ସହଯୋଗିନୀ, ସହକର୍ମିଣୀ । ତାଙ୍କୁ ନ ପଚାରି ମୁଁ କିଛି କରୁ ନ ଥିଲି । ମତେ ନ ପଚାରି ସେ ତା'ର ଜୀବନରେ କୌଣସି ଚିନ୍ତା ଓ କାର୍ଯ୍ୟକୁ ରୂପ ଦେଇ ନ ଥିଲା ...।''

୧୯୩୩ ମସିହାରେ ପ୍ରଣୟ ଆରମ୍ଭ ହୋଇ ୧୯୪୫ ମସିହାରେ ଶେଷ ହେଲା । ସାମାଜିକ ରୀତି ନୀତି ଓ ଧର୍ମର ବାଡ଼ ସେମାନଙ୍କ ପକ୍ଷେ ଅନତିକ୍ରମଣୀୟ ହୋଇଗଲା । ଦୁଇ ପରିବାର ପକ୍ଷରୁ ସେମାନଙ୍କ ବିବାହପାଇଁ ଆପତ୍ତି ଉଠିଲା । କୌଣସି ବନ୍ଧୁବାନ୍ଧବଙ୍କଠାରୁ ସେମାନେ ମଧ୍ୟ ସମର୍ଥନ ପାଇପାରିଲେ ନାହିଁ । ସୁତରାଂ ସଂସାରର ଯାତ୍ରାପଥରେ ସେମାନେ ପାଦରେ ପାଦ ମିଳାଇ ଏକତ୍ର ଚାଲି ପାରିଲେ ନାହିଁ ।

୧୯୪୭ ମସିହା ଜୁନ ମାସ ୫ ତାରିଖରେ ରାଜକିଶୋରଙ୍କର ବିବାହ ହେଲା ମନୋରମା ଦେବୀଙ୍କ ସହିତ ।

ରେଭେନ୍ସା କଲେଜରୁ ସ୍ନାତକ ଶ୍ରେଣୀରୁ ଉତ୍ତୀର୍ଣ୍ଣ ହେବା ପରେ ରାଜକିଶୋର ଇଂରାଜୀରେ ସ୍ନାତକୋତ୍ତର ଶ୍ରେଣୀରେ ଅଧ୍ୟୟନ କଲେ । ୧୯୩୭ ମସିହାରେ ରେଭେନ୍ସା କଲେଜରୁ ତାଙ୍କର ଛଅ ବର୍ଷର ଛାତ୍ର ଜୀବନ ଶେଷ ହେଲା ।

### ଚାକିରି ଜୀବନ

୧୯୩୭ ମସିହା ଅଗଷ୍ଟ ମାସରେ ରାଜକିଶୋର ଏମ୍.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ସେହି ବର୍ଷ କଳାହାଣ୍ଡିର ଭବାନୀପାଟଣା ଉଚ୍ଚ ଇଂରାଜୀ ବିଦ୍ୟାଳୟର ଗୋଟିଏ ଶିକ୍ଷକ ପଦ ଖାଲି ପଡ଼ିଲା । ସେଠାରେ ଶିକ୍ଷକ ଥିବା ମାୟାଧର ମାନସିଂହ ବିଲାତ ଗଲେ । ଫଳରେ ସେହି ସ୍ଥାନରେ ରାଜକିଶୋର ନିଯୁକ୍ତି ପାଇଲେ । ବେତନ ମାସିକ ମାତ୍ର ୪୦ ଟଙ୍କା ଥିଲା । କିନ୍ତୁ ସେତିକି ଟଙ୍କା ସେତିକିବେଳେ ଯଥେଷ୍ଟ ଥିଲା । ରାଜକିଶୋର ସେ ସମୟର ବଜାର ଦର ବିଷୟରେ ଉଲ୍ଲେଖ କରିଛନ୍ତି, 'ମୋର ବିଚିତ୍ର ଗଡ଼ଜାତୀ ଜୀବନ' ଶୀର୍ଷକ ଲେଖାରେ –

''ଟଙ୍କାକୁ ତୋଫା ଚାଉଳ ଚାଳିଶ ସେର । ଖାଣ୍ଟି ଗୁଆ ଘିଅ ଟଙ୍କାକୁ ପାଞ୍ଚ ସେର । କୁକୁଡ଼ା ଗୋଟାକୁ ଦୁଇ ଅଣା, ଲାଭ ମାଗିଲେ ଛୋଟ ପେଣ୍ଡିଟିଏ ମିଳିଯାଉଥିଲା ...'' ତେଣୁ ଦରମା ୪୦ ଟଙ୍କା ମାସକୁ ମନେହୁଏ ଅପର୍ଯ୍ୟାପ୍ତ ସମ୍ପତ୍ତି ।''

ସେତେବେଳେ ଭବାନୀପାଟଣା ସ୍କୁଲର ପ୍ରଧାନଶିକ୍ଷକ ଥିଲେ ବାସୁଦେବ ମହାନ୍ତି । ଇଂରାଜୀ ଶିକ୍ଷକ ଥିଲେ ହେମେନ୍ଦ୍ର ନାଥ କାନୁନ୍‌ଗୋ । ରାଜକିଶୋର ସଦ୍ୟ ଏମ୍.ଏ. ପାସ୍ କରି ଶିକ୍ଷକଭାବେ ଯୋଗ ଦେଇଥାନ୍ତି । ସେ ଏକାଦଶ ଶ୍ରେଣୀ ଇଂରାଜୀ ପରୀକ୍ଷା ପାଇଁ ପ୍ରଶ୍ନ ପକାଇଥିଲେ 'Morality and Literature', 'Art for Art Sake' ଏବଂ 'Life and Poetry' ଭଳି କଠିନ ବିଷୟରେ ରଚନା ଲେଖିବାପାଇଁ । ତତ୍କାଳୀନ ପ୍ରଧାନ ଶିକ୍ଷକ ମହୋଦୟ ପରୀକ୍ଷା ହଲ୍‌ରେ ଏଭଳି ପ୍ରଶ୍ନ ଦେଖି ପିଲାଙ୍କ ଅସାମର୍ଥ୍ୟ ଉପଲବ୍ଧି କଲେ ଓ ତାହାକୁ ସଙ୍ଗେ ସଙ୍ଗେ ପରିବର୍ତ୍ତନ କଲେ । 'କଳା ଗାଈ' ବା 'ଗାଁ ଦୋକାନ' ବା 'ଅନ୍ଧୁଣୀ ବୁଢ଼ୀର ଇତି କଥା' ଉପରେ ପ୍ରବନ୍ଧ ଲେଖିବାକୁ କୁହାଗଲା । ପରେ ଏକାନ୍ତରେ ରାଜକିଶୋରଙ୍କୁ ଡାକି କହିଲେ ଯେ ସଦ୍ୟ ପାସ୍ କରି ଆସିଥିବା ହେତୁ ଏପରି ହୋଇଛି । ତେବେ ସବୁ ଠିକ୍ ହୋଇଯିବ ବୋଲି ସେ ଆଶା ପ୍ରକାଶ କଲେ ।

ଭବାନୀପାଟଣାର ମନୋରମ ସବୁଜିମାଭରା ଅରଣ୍ୟାନୀ, ଆଦିବାସୀମାନଙ୍କ ଅପୂର୍ବ ଜୀବନଧାରା ପୁଣି ବ୍ୟବହାର୍ଯ୍ୟ ପଦାର୍ଥର ପ୍ରାଚୁର୍ଯ୍ୟ ତାଙ୍କୁ ବିମୋହିତ କରିଥିଲା । କିନ୍ତୁ ବେଶି ଦିନ ସେ ସେଠାରେ ରହି ନ ଥିଲେ । ଏହାପରେ ନିମାପଡ଼ା ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ନିଯୁକ୍ତି ପାଇଲେ । ମଧୁ ବିଶ୍ୱାଳ ସେ ବିଦ୍ୟାଳୟର ପ୍ରଧାନଶିକ୍ଷକ ଥିଲେ । ଏକ ବର୍ଷରୁ ଅଧିକ କାଳ ରାଜକିଶୋର ସେଠାରେ ରହିଲେ । ଜଣେ ଉତ୍ତମ ଶିକ୍ଷକ ହିସାବରେ ସେ ସୁନାମ ଅର୍ଜନ ମଧ୍ୟ କଲେ ।

### ଅଭିନୟ ପ୍ରୀତି

ରାଜକିଶୋର ଛାତ୍ରାବସ୍ଥାରୁ ଅଭିନୟ ପ୍ରତି ଆକୃଷ୍ଟ ହୋଇଥିଲେ । ପୂର୍ବ ଛାତ୍ରାବାସରେ ଥିଲାବେଳେ କଲେଜ ଥିଏଟରରେ ଅଂଶ ଗ୍ରହଣ କରୁଥିଲେ । ପ୍ରଥମ ବର୍ଷ ବି ଇତିହାସ ଅଧ୍ୟାପକ ଘନଶ୍ୟାମ ଦାସ ଓ ପଦାର୍ଥବିଜ୍ଞାନ

ଅଧ୍ୟାପକ ନାରାୟଣ ମିଶ୍ର ରାଜକିଶୋରଙ୍କୁ ଶାକୀ ଭୂମିକାରେ ଅଭିନୟ କରିବାପାଇଁ ବାଛିଥିଲେ । ଏହାପରେ ସେ ଉଦୀପୁରୀ, ଜୋଲେଖା ଏବଂ ଅନ୍ୟାନ୍ୟ ନାରୀ ଭୂମିକାରେ ଅବତୀର୍ଣ୍ଣ ହୋଇଥିବା ପୂର୍ବରୁ ବର୍ଣ୍ଣିତ । ଶତାଧିକ ନାଟକରେ ସଫଳ ଅଭିନୟ କରି ସେ ଦର୍ଶକମାନଙ୍କୁ ଆନନ୍ଦ ଦେଲେ । ସେ ମଧ୍ୟ ସଙ୍ଗୀତ ଜଗତରେ ପ୍ରବେଶ କଲେ । ସୀତାର, ବଂଶୀ, ତବଲା ଓ ହାରମୋନିୟମ୍ ପ୍ରଭୃତି ବାଦ୍ୟଯନ୍ତ୍ର ବଜାଇବାରେ ନିପୁଣ ହୋଇଉଠିଲେ ।

ସଙ୍ଗୀତ ଓ ଅଭିନୟରେ ଦକ୍ଷତା ହାସଲ ହେତୁ ରାଜକିଶୋର ବଣାଇଗଡ଼ର ରାଜା ଶ୍ରୀ ଧରଣୀଧର ଦେଓଙ୍କର ବ୍ୟକ୍ତିଗତ ସହାୟକ ଭାବେ ନିଯୁକ୍ତି ପାଇଲେ । ଏ କାର୍ଯ୍ୟ ଅତି ଦାୟିତ୍ୱପୂର୍ଣ୍ଣ ଥିଲା । କାରଣ କେବଳ ବଣାଇଗଡ଼ର ନୁହେଁ, ଅନ୍ୟାନ୍ୟ ଗଡ଼ଜାତ ଅଞ୍ଚଳ ଶାସନର ଗୋପନୀୟ ତଥ୍ୟର ରକ୍ଷଣାବେକ୍ଷଣ କରିବାକୁ ପଡୁଥିଲା । ରାଜକିଶୋର ପ୍ରାତଃକାଳରେ ଅଙ୍ଗମର୍ଦ୍ଦନ ସମୟରେ ରାଜାସାହେବଙ୍କୁ ଭେଟୁଥିଲେ । ସେ ଯାହା ଡାକିଦେଉଥିଲେ ତାହାକୁ ଲେଖିନେଉଥିଲେ । ଗୋପନୀୟ ବ୍ୟାପାର ସଂକ୍ରାନ୍ତରେ ତାଙ୍କ ସଙ୍ଗେ ଆଲୋଚନା କରୁଥିଲେ । ଯାହା ସିଦ୍ଧାନ୍ତ ନିଆଯାଉଥିଲା, ତାହାକୁ ଚିଠିରେ ରାଜାଙ୍କ ଦସ୍ତଖତରେ ଦେବାନଙ୍କ ଦପ୍ତରକୁ ଯାଉଥିଲା । ରାଜକିଶୋର ବେଶ୍ ପ୍ରଭାବଶାଳୀ ହୋଇପଡ଼ିଲେ ।

ପ୍ରତିଦିନ ସନ୍ଧ୍ୟାରେ ଦରବାରରେ ସଙ୍ଗୀତ ଆସର ହେଉଥିଲା । ରାଜକିଶୋର ଡୁବିତବଲା ବଜାଉଥିଲେ । ବେହେଲା ଅନ୍ୟ ଜଣେ ବଜାଉଥିଲେ । ମାର୍ବଲ ପଥରର ବହିଃଚଟାଣ ଉପରେ ସଙ୍ଗୀତ ଆସର ସନ୍ଧ୍ୟା ଛଅଟାରୁ ଆରମ୍ଭ ହେଉଥିଲା । ଆଉ ତାହା ରାଜାସାହେବ ମଦ୍ୟ ଖାଇ ଅଣାୟତ୍ତ ହେବା ପର୍ଯ୍ୟନ୍ତ ଚାଲୁଥିଲା । ମଦ୍ୟ ସାଙ୍ଗକୁ ଉପେନ୍ଦ୍ର ଭଞ୍ଜ, ବନମାଳୀ, ଗୋପାଳକୃଷ୍ଣଙ୍କ ରଚିତ ସଙ୍ଗୀତ ଝରୁଥିଲା । ଏହା ପ୍ରାୟ ସବୁଦିନ ଚାଲୁଥିଲା । ଏହି ସମୟରେ ରାଜକିଶୋରଙ୍କର ବହୁ ବିଚିତ୍ର ଚରିତ୍ରମାନଙ୍କ ସହିତ ସାକ୍ଷାତ୍ ଓ ପରିଚୟ ଘଟିଥିଲା । ରାଜାସାହେବ ଜଣେ ନିରପେକ୍ଷ ବିଚାରକ, ହାସ୍ୟରସିକ, ନମ୍ର ଓ ହୃଦୟବାନ୍ ସୁପୁରୁଷ ଥିଲେ ।

ଭାଷାକୋଷପ୍ରଣେତା ଗୋପାଳଚନ୍ଦ୍ର ତାଙ୍କ ଅନବଦ୍ୟ କୃତିକୁ ଲୋକଲୋଚନକୁ ଆଣିବାପାଇଁ ବଣାଇଗଡ଼ର ରାଜାସାହେବଙ୍କ ସାହାଯ୍ୟ ଲୋଡ଼ିଲେ । ମାତୃଭାଷାର ଉନ୍ନତିକଳ୍ପେ ରାଜକିଶୋର ରାଜାଙ୍କ ମନରେ ଅନୁକୂଳ ମନୋଭାବ ସୃଷ୍ଟି କରିଥିଲେ – ଯାହା ଫଳରେ କି ଗୋପାଳଚନ୍ଦ୍ର ପ୍ରହରାଜ ସେ ସମୟରେ ପାଞ୍ଚ ହଜାର ଟଙ୍କା ଆର୍ଥିକ ସାହାଯ୍ୟ ଲାଭ କଲେ ।

ରାଜକିଶୋର ଦକ୍ଷ ପ୍ରଶାସକ ଥିଲେ । ଘଡ଼ିସନ୍ଧି ମୁହୂର୍ତ୍ତରେ ଠିକ୍ ନିଷ୍ପତ୍ତି ନେଉଥିଲେ । ରଣପୁରରେ ବେଜଲଗେଟଙ୍କ ହତ୍ୟାକାଣ୍ଡ ପରେ ପଲିଟିକାଲ ଏଜେଣ୍ଟଙ୍କ ଠାରୁ ସାମରିକ ସତର୍କତାପାଇଁ ତାରବାର୍ତ୍ତା ଆସିଲା । ରାଜାସାହେବ

ସେତେବେଳେ ପାଲଲହଡ଼ାରେ ଥିଲେ । ଦେବାନ ମଧ୍ୟ ଅନୁପସ୍ଥିତ ଥିଲେ । ଉଭୟଙ୍କ ଅନୁପସ୍ଥିତିରେ ରାଜକିଶୋର ରାଜାଙ୍କ ପ୍ରତିନିଧି ରୂପେ ବିଚକ୍ଷଣତାର ସହିତ ସେ ପରିସ୍ଥିତିକୁ ସମ୍ଭାଳି ନେଇଥିଲେ ।

ବଣାଇଗଡ଼ରେ ସେ ସମୟରେ ତିନି ଜଣ ଓଡ଼ିଆ ମାତ୍ର ଉଚ୍ଚ ସରକାରୀ କର୍ମଚାରୀ ଥିଲେ । ସେମାନେ ହେଲେ ନୀଳମଣି ଆଚାର୍ଯ୍ୟ (ସିଭିଲ ସର୍ଜନ) ଶ୍ରୀ ଚରଣ ଦାସ (ଆସିଷ୍ଟାଣ୍ଟ ସର୍ଜନ) ଓ ରାଜକିଶୋର ରାୟ । ସେମାନଙ୍କୁ ଛାଡ଼ିଦେଲେ ଅନ୍ୟ ସମସ୍ତ କର୍ମଚାରୀ ଥିଲେ ବଙ୍ଗାଳୀ । ସେମାନେ ରାଜ୍ୟର ଅର୍ଥନୀତିକୁ ନିୟନ୍ତ୍ରିତ କରୁଥିଲେ । ଏପରିକି ଆବଶ୍ୟକୀୟ ଲୁଣ, ପିଆଜ ପ୍ରଭୃତି କଲିକତାରୁ ଆସୁଥିଲା । ସେମାନେ ରାଜାଙ୍କୁ ଖୋସାମତ କରି ନିଜ ପକ୍ଷରେ ରଖିବାକୁ ଆପ୍ରାଣ ଉଦ୍ୟମ କରୁଥିଲେ । ରାଜକିଶୋର ବଙ୍ଗାଳୀ କର୍ମଚାରୀମାନଙ୍କର ଶୋଷଣକୁ ସହ୍ୟ କରିପାରି ନ ଥିଲେ । ସେ ସେମାନଙ୍କର ପ୍ରକୃତ ସ୍ୱରୂପ ଖୋଲି ଦେବାକୁ ବଦ୍ଧପରିକର ହେଲେ । ସେ ଏକ ଏକାଙ୍କିକା ଲେଖି ଧରଣୀଧର କ୍ଲବ ଜରିଆରେ ଅଭିନୀତ କରାଇଲେ । ସେଥିରେ ଅଣଓଡ଼ିଆମାନଙ୍କର ପ୍ରତାରଣା ଓ ଶୋଷଣର ଚିତ୍ର ଦିଆଯାଇଥିଲା । ବଙ୍ଗାଳୀମାନେ ଏଥିରେ ଖଡ୍ଗହସ୍ତ ହୋଇଉଠିଲେ । ରାଜକିଶୋରଙ୍କ ରହିବା ତାଙ୍କ ସ୍ୱାର୍ଥ ହାସଲ ଦିଗରେ ଅନ୍ତରାୟ ହେବ ବୋଲି ସେମାନେ ଉପଲବ୍ଧି କଲେ । ତେଣୁ ସେମାନେ ରାଜକିଶୋରଙ୍କୁ ସେଠାରୁ ହଟାଇଦେବାକୁ ତତ୍ପର ହେଲେ । ସେମାନଙ୍କ ଯୋଜନା ମଧ୍ୟ ସଫଳ ହେଲା । ରାଜକିଶୋରଙ୍କୁ ବଣାଇଗଡ଼ରୁ ବିଦାୟ ନେବାକୁ ପଡ଼ିଲା ।

ରାଜକିଶୋର ଏହାପରେ ଅନ୍ୟତ୍ର ଚାକିରି ଅନୁସନ୍ଧାନରେ ରହିଲେ । ବହୁ ବିଭାଗରେ ଦରଖାସ୍ତ ଦେଲେ । ବହୁ ସ୍ଥାନରେ ସାକ୍ଷାତ୍‌କାର ଦେଲେ । ଏକସାଇଜ୍ ଇନ୍‌ସପେକ୍ଟର, ସବ୍‌ଡେପୁଟି କଲେକ୍ଟର ପ୍ରଭୃତି ହେବାପାଇଁ ଉଦ୍ୟମ କଲେ ; ମାତ୍ର ସବୁ ବ୍ୟର୍ଥ ହେଲା । ଶିକ୍ଷକତା ତାଙ୍କର ଯେପରି ଅଦୃଷ୍ଟ ଲିଖନ ଥିଲା !

୧୯୪୧ ମସିହାରେ ରାଜକିଶୋର ପୁଣି ଶିକ୍ଷକଭାବେ ନିଯୁକ୍ତ ହେଲେ । ଜଗତ୍‌ସିଂହପୁରରେ ନାରୀ ନେତ୍ରୀ ସରଳା ଦେବୀଙ୍କ ବଂଶଧର ଶ୍ରୀ କୃଷ୍ଣ ମହାପାତ୍ର ଶ୍ରୀକୃଷ୍ଣ ଏକାଡେମୀ ପ୍ରତିଷ୍ଠା କଲେ । ସେହି ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ ଦିଗମ୍ବର ଭୂୟାଁ । ରାଜକିଶୋର ଶିକ୍ଷକଭାବେ ସେଥିରେ ଯୋଗ ଦେଲେ । ସେ ଏହାପରେ ବି. ଇଡି. ପଢ଼ିବାପାଇଁ ସ୍ଥିର କଲେ । ସେ କଟକ ଟ୍ରେନିଂ କଲେଜରେ ନାମ ଲେଖାଇଲେ । ଏହା ଏବେ ରାଧାନାଥ ଟ୍ରେନିଂ କଲେଜ ରୂପେ ପରିଚିତ । ଏହାର ପ୍ରଧାନ ଶିକ୍ଷକ ଥିଲେ ପ୍ରଖ୍ୟାତ ଶିକ୍ଷାବିତ୍ ମହେଶଚନ୍ଦ୍ର ପ୍ରଧାନ ।

ରାଜକିଶୋର ବି.ଇଡି. ପରୀକ୍ଷାରେ ଅକୃତକାର୍ଯ୍ୟ ହେଲେ । ପ୍ରାକ୍ଟିକାଲ ପରୀକ୍ଷାରେ ବହୁତ କମ୍ ନମ୍ବର ପାଇଥିଲେ । ଏଥିରେ ସେ ଭାଙ୍ଗିପଡ଼ିଲେ । ଏପରିକି

କାଠଯୋଡ଼ିରେ ଆତ୍ମହତ୍ୟା କରିବାପାଇଁ ଉଦ୍ୟତ ହେଲେ, କିନ୍ତୁ ଆକସ୍ମିକଭାବେ ସେଠାରେ ଉପସ୍ଥିତ ହେଲେ ପ୍ରେମଲତା ବେହେରା – ଯାହାଙ୍କ ସଙ୍ଗେ ଆଦ୍ୟ ଯୌବନରେ ସେ ପ୍ରଣୟାସକ୍ତ ଥିଲେ । ତାଙ୍କରି ଆଶ୍ୱାସନାରେ ସେଦିନ ଆତ୍ମହତ୍ୟା ଉଦ୍ୟମରୁ ରାଜକିଶୋର ବିରତ ହେଲେ ।

ରାଜକିଶୋର ପୁଣି ବି.ଇଡି. ପରୀକ୍ଷା ଦେଲେ । ଏଥର ପ୍ରାକ୍ଟିକାଲରେ ସେ ଭଲ ନମ୍ବର ରଖିଲେ । ପରୀକ୍ଷକ ଥିଲେ ତତ୍କାଳୀନ ଷ୍ଟୁଆର୍ଟ ସ୍କୁଲର ଅଧ୍ୟକ୍ଷ । ରାଜକିଶୋରଙ୍କ ଶିକ୍ଷାଦାନ ଶୈଳୀରେ ସେ ଅଭିଭୂତ ହୋଇପଡ଼ିଲେ । ରାଜକିଶୋର ବି.ଇଡି. ପରୀକ୍ଷାରେ ସମସ୍ତ ବିହାର-ଓଡ଼ିଶାରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କଲେ । ଏଥିରେ ସମସ୍ତେ ବିସ୍ମିତ ହୋଇପଡ଼ିଥିଲେ ।

ବି.ଇଡି. ପରୀକ୍ଷାରେ ବିହାର-ଓଡ଼ିଶାରେ ପ୍ରଥମ ସ୍ଥାନ ଅଧିକାର କରିଥିବାରୁ ଶିକ୍ଷାବିଭାଗ କର୍ତ୍ତୃପକ୍ଷଙ୍କର ଦୃଷ୍ଟି ରାଜକିଶୋରଙ୍କ ଉପରେ ପଡ଼ିଲା । ସେତେବେଳେ ଓଡ଼ିଶାର ଶିକ୍ଷା ନିର୍ଦ୍ଦେଶକ ଥିଲେ ଶ୍ୟାମସୁନ୍ଦର ତ୍ରିପାଠୀ । ସେ ରାଜକିଶୋରଙ୍କୁ ରେଭେନ୍‌ସା କଲେଜରେ ଇଂରାଜୀ ଅଧ୍ୟାପକ ଭାବେ ନିଯୁକ୍ତି ଦେଲେ । ଏହା ୧୯୪୨ ମସିହାର କଥା । ସେତେବେଳେ ରେଭେନ୍‌ସା କଲେଜରେ ବିଶିଷ୍ଟ ଶିକ୍ଷାବିତ୍‌ମାନେ ଅଧ୍ୟାପକ ଥିଲେ, ଯଥା – ଆର୍ତ୍ତବଲ୍ଲଭ ମହାନ୍ତି, ଗିରିଜାଶଙ୍କର ରାୟ, ରତ୍ନାକର ପତି ଓ ବିପିନ ବିହାରୀ ରାୟ । ସେହି କଲେଜର ଯେଉଁ ବିଶିଷ୍ଟ ଛାତ୍ରମାନେ ଥିଲେ ସେମାନେ ହେଲେ ଗୋପବନ୍ଧୁ ଦାସ, ନୀଳକଣ୍ଠ ଦାସ ପ୍ରଭୃତି । ଇଂରାଜୀ ବିଭାଗର ମୁଖ୍ୟ ଅଧ୍ୟାପକ ଥିଲେ ମି. ସୁନ୍ଦରମ୍ । ଓଡ଼ିଆମାନେ ଯେ ଇଂରାଜୀ ଅଧ୍ୟାପନା ସୁଚାରୁରୂପେ କରିପାରିବେ, ସେ ବିଶ୍ୱାସ ତାଙ୍କର ନ ଥିଲା । ରାଜକିଶୋରଙ୍କ ନିଯୁକ୍ତିର ପର ଦିନ ବି.ଏ. ଶେଷ ବର୍ଷରେ ସେକ୍‌ସପିଅରଙ୍କ ଅଥେଲୋ ପଢ଼ାଇବାପାଇଁ ନିର୍ଦ୍ଦେଶ ଦେଲେ । ରାଜକିଶୋର ସେହି ମହାନ୍ ସୃଷ୍ଟିକୁ ଅତି ଚମତ୍କାର ଭାବେ ଛାତ୍ରମାନଙ୍କୁ ବୁଝାଇ ଉଚ୍ଚ ପ୍ରଶଂସିତ ହେଲେ ।

ରାଜକିଶୋର ନିଯୁକ୍ତି ପାଇଲାପରେ ପୋଷାକ ନେଇ ଚିନ୍ତିତ ହୋଇପଡ଼ିଲେ । ତା'ର କାରଣ ପ୍ରତ୍ୟେକ ଅଧ୍ୟାପକ ୟୁରୋପୀୟ ଢଙ୍ଗରେ ଫୁଲ୍ ସୁଟ୍ ପିନ୍ଧି କଲେଜକୁ ଆସୁଥା'ନ୍ତି । ଗଳାବନ୍ଧା କୋଟ୍ ଓ ଛାତି ଖୋଲା କୋଟ୍‌ର ପ୍ରଚଳନ ଥିଲା । ଆର୍ତ୍ତବଲ୍ଲଭ ମହାନ୍ତି, ଗିରିଜାଶଙ୍କର ରାୟ ପ୍ରଭୃତି ଗଳାବନ୍ଧା କୋଟ୍ ପିନ୍ଧି କଲେଜକୁ ଆସୁଥିଲେ । ଅନ୍ୟମାନେ ସାହେବୀ ଢଙ୍ଗରେ ପୋଷାକ ପିନ୍ଧି ଆସୁଥିଲେ । ରାଜକିଶୋରଙ୍କ ଆର୍ଥିକ ସ୍ୱଚ୍ଛଳତା ନ ଥିଲା । ନିଯୁକ୍ତି ପରେ ପୋଷାକ ତିଆରି କରି କଲେଜକୁ ଆସିବା ଏକ ସମସ୍ୟା ହେଲା । ସୌଭାଗ୍ୟକୁ କଲେଜର ସେତେବେଳକାର ଦର୍ଶନ ଅଧ୍ୟାପକ ବିପିନବିହାରୀ ରାୟ ରାଜକିଶୋରଙ୍କୁ ପୋଷାକପତ୍ର କିଣିବାପାଇଁ ଦୁଇ ଶହ ଟଙ୍କା ଦେଇଥିଲେ ।

ରେଭେନ୍‌ସା କଲେଜ ସେତେବେଳେ ଓଡ଼ିଶାରେ ଏକମାତ୍ର ସରକାରୀ କଲେଜ ଥିଲା । ଉଚ୍ଚ ଶିକ୍ଷାର ପ୍ରସାରପାଇଁ ପୁରୀ, ବାଲେଶ୍ୱର, ସମ୍ବଲପୁରରେ କଲେଜମାନ ଖୋଲାଗଲା । ରାଜକିଶୋର ପ୍ରାୟ ଛଅ ମାସ ଇଂରାଜୀ ଅଧ୍ୟାପକ ଭାବେ କାର୍ଯ୍ୟ କଲେ । ଏହାପରେ ବ୍ରହ୍ମପୁର ମଡେଲ ମଧ୍ୟ-ଇଂରାଜୀ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ହେଲେ । ସେତେବେଳେ ତାଙ୍କର ଦରମା ଥିଲା ମାସିକ ୬୫ ଟଙ୍କା । ଏହାପରେ ସେ ବାଲେଶ୍ୱର କଲେଜରେ ଇଂରାଜୀ ଅଧ୍ୟାପକ ଭାବେ ଯୋଗ ଦେଲେ । ସେତେବେଳେ ସେ ଗଳ୍ପ ଲେଖକ ଭାବେ ଖ୍ୟାତି ଅର୍ଜନ କରିସାରିଥିଲେ । ହଠାତ୍ ତାଙ୍କୁ ଓଡ଼ିଆରେ ଏମ୍. ଏ. ପରୀକ୍ଷା ଦେବାକୁ ଉଚ୍ଚ ଶିକ୍ଷା ନିର୍ଦ୍ଦେଶକଙ୍କଠାରୁ ନିର୍ଦ୍ଦେଶ ମିଳିଲା । ସେ ମଧ୍ୟ କଲିକତା ବିଶ୍ୱବିଦ୍ୟାଳୟରେ ଘରୋଇ ଭାବରେ ଏମ୍. ଏ. ପରୀକ୍ଷା ଦେଇ ଓଡ଼ିଆରେ ଏମ୍.ଏ. ପାସ୍ କଲେ । ଏହା ୧୯୪୫ ମସିହାର କଥା ।

ଓଡ଼ିଆରେ କୃତିତ୍ୱର ସହିତ ଏମ୍. ଏ. ପାସ୍ କଲେ ମଧ୍ୟ ରାଜକିଶୋରଙ୍କୁ ସାଙ୍ଗେ ସାଙ୍ଗେ ଅଧ୍ୟାପକ ଚାକିରି ମିଳିଲା ନାହିଁ । ସେ ତେଣୁ ବାଧହୋଇ ବ୍ରହ୍ମପୁରରେ ପ୍ରଧାନ ଶିକ୍ଷକ ହେଲେ । ସେତେବେଳେ ବ୍ରହ୍ମପୁରରୁ ମନ୍ଥୁରୀର ରାଜା ନବୀନଚନ୍ଦ୍ର ଦେଓଙ୍କ ସମ୍ପାଦନାରେ ସାପ୍ତାହିକ 'ନବୀନ' ପତ୍ରିକା ପ୍ରକାଶ ପାଉଥିଲା । ରାଜକିଶୋରଙ୍କ ବହୁ ଲେଖା ସେହି ପତ୍ରିକାରେ ବିଭିନ୍ନ ସମୟରେ ପ୍ରକାଶ ପାଇଲା ।

୧୯୪୬ ମସିହା ଜୁଲାଇ ମାସରେ ରାଜକିଶୋର ସାମନ୍ତ ଚନ୍ଦ୍ରଶେଖର କଲେଜ, ପୁରୀରେ ଓଡ଼ିଆ ଅଧ୍ୟାପକ ଭାବେ ଯୋଗ ଦେଲେ ।

### ସମ୍ବଲପୁର ବଦଳି

ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜରେ ଥିଲାବେଳେ ତାଙ୍କର ବଦଳି ସମ୍ବଲପୁରକୁ ହେଲା । ସେ ସେତେବେଳକୁ ନବବିବାହିତ । ବୃଦ୍ଧ ପିତାମାତାଙ୍କୁ ଛାଡ଼ି ସମ୍ବଲପୁର ଯିବାକୁ ଅନିଚ୍ଛା ପ୍ରକାଶ କଲେ । ତତ୍କାଳୀନ ପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବଙ୍କୁ ସେ ଭେଟିଲେ । ହରେକୃଷ୍ଣ ମହତାବ ତାଙ୍କୁ କହିଲେ – ''ରାଜକିଶୋର ! ତମକୁ ମୁଁ ଏକ ଉଦ୍ଦେଶ୍ୟ ରଖି ପଠାଇଛି । ହୀରାକୁଦ ବନ୍ଧ ନିର୍ମାଣଜନିତ ଯେ ବିକ୍ଷୋଭ ଦେଖାଦେଇଛି ତାହା ଯେତେ ରାଜନୈତିକ ନୁହେଁ, ସେତେ ସାଂସ୍କୃତିକ × × × ତମେ କଲେଜରେ ଅଧ୍ୟାପନା ଆଳରେ ସମ୍ବଲପୁରୀ ଭାଷା ଓ ସାହିତ୍ୟପ୍ରତି ଅନୁରାଗ ସୃଷ୍ଟି କରି ଗୋଟାଏ ସାଂସ୍କୃତିକ ବାତାବରଣ ଗଢ଼ ।''

ରାଜକିଶୋର ମଧ୍ୟ ଅଧ୍ୟକ୍ଷ ଘନଶ୍ୟାମ ଦାସଙ୍କ ସହଯୋଗରେ ଏ ଦିଗରେ କେତେକ ପଦକ୍ଷେପ ନେଇଥିଲେ ।

### ପାରଳାଖେମୁଣ୍ଡି ବଦଳି

ରାଜକିଶୋରଙ୍କର ମଧ୍ୟ ପାରଳାଖେମୁଣ୍ଡି ବଦଳି ହୋଇଥିଲା । ସେ ମୁଖ୍ୟମନ୍ତ୍ରୀଙ୍କୁ ଭେଟିଥିଲେ । ମାତ୍ର ମୁଖ୍ୟମନ୍ତ୍ରୀ ଡଃ ହରେକୃଷ୍ଣ ମହତାବ କହିଥିଲେ –

''ରାଜକିଶୋର ! ପାରଳାଖେମୁଣ୍ଡିରେ କ୍ରମେ ତେଲଗୁ ସମ୍ପ୍ରଦାୟ ଓ ଓଡ଼ିଆଙ୍କ ମଧ୍ୟରେ ଆଶାନୁରୂପ ସଦ୍ଭାବ ରହୁ ନାହିଁ । × × × ତେଣୁ ସାହିତ୍ୟ ଓ ସଂସ୍କୃତି ସ୍ତରରେ ବହୁ କାର୍ଯ୍ୟ କରିବାକୁ ପଡ଼ିବ । ତମକୁ ମୁଁ ଜାଣେ, ତୁମେ ଯାଅ । × × × ଯେଉଁ ଉଦ୍ଦେଶ୍ୟରେ ମୁଁ ପଠାଉଛି ତାହାକୁ ପୂରଣ କର ।''

ରାଜକିଶୋର ପାରଳାଖେମୁଣ୍ଡିରେ ସାତ ଦିନ ବ୍ୟାପୀ ସାହିତ୍ୟ ସଂସ୍କୃତି ମେଳା ଆୟୋଜନ କରିଥିଲେ । ନାଟକ, ଦାସକାଠିଆ, ପାଲା, ତେଲଗୁ ନାଟକ ପ୍ରଭୃତିର ଆୟୋଜନ କରିଥିଲେ । ମୁଖ୍ୟମନ୍ତ୍ରୀ ଡଃ ମହତାବ ମୁଖ୍ୟ ଅତିଥି ଭାବେ ଯୋଗଦେଇ ଉଭୟ ସମ୍ପ୍ରଦାୟ ମଧ୍ୟରେ ସଦ୍ଭାବ ଦେଖି ବିସ୍ମିତ ହୋଇପଡ଼ିଥିଲେ ।

ରାଜକିଶୋର ପ୍ରଥମେ ଶିକ୍ଷକ ଓ ପରେ ଅଧ୍ୟାପକ ହେଲେ । ସ୍କୁଲ ପରିଦର୍ଶକ ମଧ୍ୟ ଥିଲେ । ସେ ସମୟର ଶିକ୍ଷାଦାନ ସମ୍ପର୍କରେ ତାଙ୍କର ମତାମତ ଅପ୍ରାସଙ୍ଗିକ ହେବ ନାହିଁ । ସେ ଲେଖିଛନ୍ତି – ''ସେତେବେଳେ ଶିକ୍ଷକର ଦରମାଭିତ୍ତିକ ବୃତ୍ତି ନ ଥିଲା । ଏକ ବ୍ୟାପକ ଓ ଗଭୀର ଆତ୍ମବୋଧ ଛାତ୍ରମାନଙ୍କର ଥିଲା । × × × ଶ୍ରେଣୀଗୃହ ସେତେବେଳେ ମନ୍ଦିର ଥିଲା । ମୋର ଅଧ୍ୟୟନ କାଳ ଭିତରେ ମୁଁ କୌଣସି ଦିନ ଦେଖି ନାହିଁ କ୍ଲାସ ପ୍ରକୋଷ୍ଠର ଚୌକି ବେଞ୍ଚ ଏଣେ ତେଣେ ପଡ଼ିଛି । ବ୍ଲାକ୍‌ବୋର୍ଡ ଉପରେ ଅବାନ୍ତର, ଅଶ୍ଳୀଳ ଲେଖା ରହିଛି ....।''

ସେକାଳର ପରୀକ୍ଷା ସମ୍ପର୍କରେ ରାଜକିଶୋର ନିଜର ମତାମତ ବ୍ୟକ୍ତ କରିଛନ୍ତି – ''ପରୀକ୍ଷା ସେତେବେଳେ ପରିଚାଳିତ ହେଉଥିଲା ଏକ ଧର୍ମୀୟ ଅନୁଷ୍ଠାନ ଭଳି । ଏକ ପୂଜା-ପାର୍ବଣର ପବିତ୍ରତା ଭଳି ପରିବେଶ ସୃଷ୍ଟି ହେଉଥିଲା । ପରୀକ୍ଷାର୍ଥୀମାନେ ଯେ ଯାହା ସ୍ଥାନରେ ବସୁଥିଲେ ନିଶ୍ଚଳ ଭାବରେ । ମୁଖ୍ୟ ପରିଦର୍ଶକମାନେ ଠିକ୍ ଦଶ ମିନିଟ ପୂର୍ବରୁ ସିଲ୍ କରାଯାଇଥିବା ପ୍ୟାକେଟ ଧରି ପ୍ରବେଶ କରୁଥିଲେ ନତମସ୍ତକରେ ଏବଂ ଛିଡ଼ା ହୋଇ ରହୁଥିଲେ ସମସ୍ତଙ୍କ ସମ୍ମୁଖରେ ।

ପୁଣି ସେ ଲେଖିଛନ୍ତି – ''ଏକ ସମ୍ଭ୍ରାନ୍ତ ନୀରବତା ବିରାଜମାନ କରୁଥିଲା । ଦ୍ୱିତୀୟ ଘଣ୍ଟା ବାଜିବାମାତ୍ରେ ପ୍ରଶ୍ନପତ୍ର ବଣ୍ଟନ କରାଯାଏ । ଆଉ ତିନି ଜଣ ସହକାରୀ ନିଜର କର୍ତ୍ତବ୍ୟ କରନ୍ତି । ସେମାନେ ସମସ୍ତେ ପରୀକ୍ଷା ଶେଷ ହେବାଯାଏ ଘୂରି ବୁଲୁଥାନ୍ତି । କେହି ବସିରହି ପରସ୍ପର ସହିତ ଗପ କରିବା ମୁଁ ଦେଖି ନାହିଁ । କପି ଶବ୍ଦ ସେତେବେଳେ ସୃଷ୍ଟି ହୋଇ ନ ଥିଲା । ବାଁ ଡାହାଣକୁ ପରୀକ୍ଷାର୍ଥୀ ଆଖି ପକାଇବା – ଏକପ୍ରକାର ଅସମ୍ଭବ ବ୍ୟାପାର ଥିଲା । ଆଜିର ପରୀକ୍ଷା ପରିଚାଳନାର ଏ ପରିପ୍ରେକ୍ଷୀରେ ଏ ସତ୍ୟକୁ ସ୍ୱୀକାର କରିନେବାକୁ ମନରେ ଦ୍ୱିଧା ଆସିବ ।''

**ଏକାଡେମୀ ସମ୍ପାଦକ**

ସ୍ୱାଧୀନତା ପରେ ଭାଷା ଓ ସାହିତ୍ୟର ବିକାଶ ନିମନ୍ତେ ସାହିତ୍ୟ ଏକାଡେମୀମାନ ରାଜ୍ୟମାନଙ୍କରେ ପ୍ରତିଷ୍ଠା କରାଗଲା । ଓଡ଼ିଶାରେ ମଧ୍ୟ ଗୋଟିଏ

ଏକାଡେମୀ ପ୍ରତିଷ୍ଠା ହେବାର ସ୍ଥିର ହେଲା । ସେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲେ ଡଃ ହରେକୃଷ୍ଣ ମହତାବ । ତାଙ୍କ ଉଦ୍ୟମରେ ୧୯୫୬ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀ ଭୁବନେଶ୍ୱରରେ ପ୍ରତିଷ୍ଠା କରାଗଲା । ଓଡ଼ିଶାର ତୁଙ୍ଗ ସାହିତ୍ୟିକ ପଣ୍ଡିତ ନୀଳକଣ୍ଠ ଦାସ ଏକାଡେମୀର ସଭାପତି ହେଲେ । ଏହାର ପ୍ରଥମ ସମ୍ପାଦକ ହେବାର ଗୌରବ ଅର୍ଜନ କଲେ ରାଜକିଶୋର ରାୟ ।

ଶ୍ରୀଯୁକ୍ତ ରାୟ ଏହି ଏକାଡେମୀକୁ ଏକ ସୁଦୃଢ଼ ଭିତ୍ତିଭୂମି ପ୍ରଦାନ କରିବାକୁ ଉଦ୍ୟମ କଲେ । ସେତେବେଳେ ଶିକ୍ଷାମନ୍ତ୍ରୀ ଥିଲେ ବିଶିଷ୍ଟ ଆଇନଜ୍ଞ ଲିଙ୍ଗରାଜ ପାଣିଗ୍ରାହୀ । ସେ ବ୍ରହ୍ମପୁରରେ ଏକାଡେମୀର ସମସ୍ତ ମୁଦ୍ରଣ କାର୍ଯ୍ୟପାଇଁ ଚାହିଁଲେ । କିନ୍ତୁ ରାଜକିଶୋର ସଭାପତିଙ୍କ ମାଧ୍ୟମରେ ଏହାର ବିରୋଧ କଲେ । ବ୍ରହ୍ମପୁର ପରିବର୍ତ୍ତେ କଟକରେ ଏକାଡେମୀର ସମସ୍ତ ମୁଦ୍ରଣ କାର୍ଯ୍ୟ କରିବାକୁ ପ୍ରସ୍ତାବ ଦେଲେ । ଏହାକୁ ଶିକ୍ଷାମନ୍ତ୍ରୀ ପ୍ରତ୍ୟାଖ୍ୟାନ କଲେ । ତାଙ୍କର କୋପ ଦୃଷ୍ଟି ରାଜକିଶୋରଙ୍କ ଉପରେ ପଡ଼ିଲା । ରାଜକିଶୋର ମଧ୍ୟ ସ୍ୱାଧୀନଚେତା । ସେ ଆତ୍ମମର୍ଯ୍ୟାଦା ସମ୍ପର୍କରେ ସତତ ସଚେତନ ଥିଲେ । ସେହି ଦୃଷ୍ଟିରୁ ସେ ସମ୍ପାଦକ ପଦରୁ ଓହରିଗଲେ । ଏହାର ପରବର୍ତ୍ତୀ ସମ୍ପାଦକ ହେଲେ ଗୌରୀକୁମାର ବ୍ରହ୍ମା । ରାଜକିଶୋର ତାଙ୍କୁ ଚେତାଇ ଦେଇ ଲେଖିଥିଲେ – ''ବନ୍ଧୁ ! ବୁଝି ସୁଝି ଆସ ।''

ରାଜକିଶୋର ସମ୍ପାଦକ ପଦରୁ ଇସ୍ତଫା ଦେଲା ପରେ ଅଧ୍ୟାପକ ଭାବେ ସାମନ୍ତ ଚନ୍ଦ୍ରଶେଖର କଲେଜ ପୁରୀକୁ ଫେରିଆସିବାକୁ ଚାହିଁଥିଲେ । ସେତେବେଳକୁ ତାଙ୍କ ସାନ ଝିଅ ୨୧ ଦିନର ମାତ୍ର ହୋଇଥାଏ । ମାତ୍ର ଶିକ୍ଷାମନ୍ତ୍ରୀଙ୍କର ବିରୋଧ ହେତୁ ତାହା ସମ୍ଭବ ହେଲା ନାହିଁ । ସେ ବାଲେଶ୍ୱରକୁ ବଦଳି ହେଲେ । ୧୯୬୩ ମସିହାରେ ସେ ଆସିଲେ ରେଭେନ୍‌ସା ସାନ୍ଧ୍ୟ ମହାବିଦ୍ୟାଳୟକୁ ଉପାଧ୍ୟକ୍ଷ ଭାବେ । ୧୯୬୭ ମସିହା ପର୍ଯ୍ୟନ୍ତ ସେ ସେଠାରେ ଥିଲେ । ପ୍ରଶାସକ ଭାବେ ସେ ସୁନାମ ଅର୍ଜନ କରିଥିଲେ । ଉପାଧ୍ୟକ୍ଷ ଥିବା ସମୟରେ 'ଭାଇ ଭାଉଜ' ଚଳଚ୍ଚିତ୍ରରେ ସେ ଅଭିନୟ କରି ତାଙ୍କର କଳାନୈପୁଣ୍ୟର ପରିଚୟ ଦେଇଥିଲେ ।

୧୯୬୭ ମସିହାରେ ରାଜକିଶୋର ଢେଙ୍କାନାଳ ଓ କେନ୍ଦୁଝର ଶିକ୍ଷାମଣ୍ଡଳର ସ୍କୁଲ ପରିଦର୍ଶକ ଭାବେ ନିଯୁକ୍ତ ହେଲେ । ପରେ ପରେ ଗଞ୍ଜାମ ଓ ଫୁଲବାଣୀ ଶିକ୍ଷାମଣ୍ଡଳର ସ୍କୁଲ ପରିଦର୍ଶକ ଭାବେ ବଦଳି ହେଲେ । ସେ ସେଠାରେ ମଧ୍ୟ ଖ୍ୟାତି ଅର୍ଜନ କରିଥିଲେ ।

୧୯୬୯ ମସିହା ମାର୍ଚ୍ଚ ମାସରେ ୫୫ ବର୍ଷ ବୟସରେ ରାଜକିଶୋର ସରକାରୀ ଚାକିରିରୁ ଅବସର ଗ୍ରହଣ କଲେ ।

**ସୃଷ୍ଟି ସମ୍ଭାର**

ରାଜକିଶୋର ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରିଛନ୍ତି । ଜଣେ କବି ରୂପେ ପ୍ରଥମେ ତାଙ୍କ ପ୍ରତିଭାର ଉନ୍ମେଷ ହୋଇଥିଲା । ଆଦ୍ୟ ଯୌବନରେ ସେ କବିତା ପୁସ୍ତକ 'ଦୀପାଳି' ରଚନା କରିଥିଲେ । ସେ ମୁଖବନ୍ଧରେ ଲେଖିଥିଲେ – ''ପରମକାରୁଣିକ ଭଗବତ୍ କୃପାରୁ ଦୀର୍ଘ ଦୁଇ ବର୍ଷ ପରେ ମତ୍ ଲିଖିତ କତିପୟ କବିତାଗୁଡ଼ିକୁ 'ଦୀପାଳି' ଆଖ୍ୟା ଦେଇ ପ୍ରକାଶ କରିବାକୁ ମୁଁ କ୍ଷମ ହୋଇଛି, × × × ଭାଷା ଓ ଭାବର ସୌଷ୍ଠବତା ଦୃଷ୍ଟିରୁ 'ଦୀପାଳି' ନିସ୍ତେଜ ଓ ଶ୍ରୀହୀନ ହେଲେହେଁ ତାହା ମୋର ପ୍ରାଣର କେତେଟା ସୁଖ ଦୁଃଖର ସ୍ମୃତିକୁ ସଜାଇ ରଖିଅଛି । କବିତା ଲେଖାରେ ଏ ମୋର ପ୍ରଥମ ଉଦ୍ୟମ ... ।''

'ଦୀପାଳି' ରେ ରାଜକିଶୋର ରୂପ ଓ ପ୍ରଣୟର କବି । 'ଅଭିସାର' ସେଇ ଧରଣର ଏକ କବିତା । ତା'ର ଗୋଟିଏ ପଂକ୍ତି –

''ସୁତପା ଚାରୁ ଚରଣ ଚାପେ
ଚମକ ଚଇତି ବୁକୁ ଉତ୍ତାପେ
ପ୍ରେୟସି ! ମମ
ଭାଙ୍ଗିଲ ମୋହ
ନୀର ଭରା ନୟନେ ନିତି
ବକ୍ଷେ କିବା ବେଦନା ବୀଥି
ବହିଛ ଗୋ ସହୀ ଅହରହ ।''

'ତରୁଣ ତାପ' ଆଉ ଏକ ଏଇ ଧରଣର କବିତା –

''ସେ ଦିନ ପୂର୍ଣ୍ଣିମା ନିଶା ବଇଶାଖ ରାକା
ରଚିଥିଲା ମୃଦୁ ଶୀତ, ଲାବଣ୍ୟ ସେ ବିନା
ଜ୍ୟୋସ୍ନାସ୍ନାତା ପିକବଧୂ ପର୍ଣ୍ଣାଞ୍ଚଳ ଟାଣି
ତୋଳୁଥିଲା ତଳେ ମଧୁମୟ ଗୀତିବାଣୀ ।''

ଏଇଠି ପ୍ରକୃତି ସୁନ୍ଦର ଭାବରେ ରୂପାୟିତ ହୋଇଛି । 'କୋଣାର୍କ' ଭଳି କବିତା ମଧ୍ୟ ଏଥିରେ ମିଳେ । କେତେକ ବିଶିଷ୍ଟ ପ୍ରତିଭାର ସ୍ମୃତିଚାରଣ ମଧ୍ୟ କବି କରିଛନ୍ତି –

''ଉତ୍କଳ ଜନନୀ ନିରାଭରଣା
ଶୋକାର୍ତ୍ତ ନିରତେ ନୀରନୟନା
ହରାଇ ବସିଛି ତା' ମଥାମଣି
କେ ଶୁଣିବ ତା'ର ଦୁଃଖ କାହାଣୀ ?''
ଇତ୍ୟାଦି ।

ରାଜକିଶୋର କିନ୍ତୁ ଗଳ୍ପ ରଚନା ଦିଗରେ ଆଗ୍ରହୀ ହେଲେ । ଲେଖକଙ୍କ ଭାଷାରେ –

''ମନେପଡ଼େ, ମୋର ଯେତେବେଳେ ସମ୍ପୂର୍ଣ୍ଣ କୈଶୋର ଅବସ୍ଥା, ଯେତେବେଳେ ମୋର ହୃଦୟ ବିଶ୍ୱର ବହୁ ଭାବତରଙ୍ଗକୁ ଦୋଳନ ଦେବାପାଇଁ ଉନ୍ମୁଖ ହୋଇ ରହିଥିଲା, ସେତେବେଳେ ଫୁଲ ଗଛରେ ଫୁଲଟିଏ ହଲିଲେ, ନଈରେ ସୁଅ ହେଲେ, ତାଳ ଉପରେ ବଉଦ ଭାସିଲେ × × × ମୋର ପ୍ରତି ଶିରା ସ୍ନାୟୁ ଓ ରକ୍ତଧାରରେ ତଡ଼ିତ୍ ପ୍ରବାହ ଖେଳିଯାଏ । ସେ କି ଉଦ୍ଦାମ ପ୍ରବୃତ୍ତି ! କିଏ ଯେପରି ବହୁ ଦୂରରୁ ଧ୍ୱନି ତୋଳି କହିଦିଏ ଏସବୁ ତୁ ଦେଖିଲୁ, ଆନନ୍ଦ ପାଇଲୁ, ଉପଭୋଗ କଲୁ, ତଥାପି ତୋର ମନ ହେଉ ନାହିଁ ସେହି ରସକୁ, ସେଇ ଆନନ୍ଦର ନିର୍ଝର ବିଶ୍ୱ ମାନସ ଆଗରେ ମର୍ମର ଶବ୍ଦରେ ଝରେଇ ଦେବାପାଇଁ ? ସେହିଦିନୁ ସେ ଗଳ୍ପ ଲେଖିବାରେ ମନୋନିବେଶ କଲେ ।

ଲେଖକ ଏହାକୁ ଆହୁରି ସ୍ପଷ୍ଟ କରିଦେଇଛନ୍ତି ଏକ ସାକ୍ଷାତ୍କାରରେ – ''ମୋର ପ୍ରଥମ ପ୍ରେମ ଥିଲା କବିତା ପ୍ରତି । ଏହାର ଉଦ୍ଭବ ଘଟିଲା ମୋର କୈଶୋରୀୟ ସମ୍ବିତ୍‌ରେ । ଚେତନାର ଅସହ୍ୟ ଯନ୍ତ୍ରଣା ଯେତେବେଳେ ଭୋଗିଲି, ପ୍ରଣୟିନୀ ପ୍ରତି ପ୍ରେମ ନିବେଦନ ବେଳେ କବିତା ହିଁ ମାଧ୍ୟମ ହେଲା ଉଦ୍‌ବେଳିତ ପ୍ରେମକୁ ପରିସ୍ଫୁଟ କରିବାପାଇଁ । ପରବର୍ତ୍ତୀ ସମୟରେ ମୁଁ କ୍ଷୁଦ୍ର ଗଳ୍ପ ଲେଖା ପ୍ରତି ଆକୃଷ୍ଟ ହେଲି, ଯେତେବେଳେ ମୁଁ ଅନୁଭବ କଲି ବିଶ୍ୱର ବହୁ ଗବାକ୍ଷରୁ ସଞ୍ଚରି ଆସୁଛି କେତେ ମଧୁ, ତିକ୍ତ, କଷାୟ, ଆନନ୍ଦ, ନିରାନନ୍ଦ, ସଂଘର୍ଷ, ପୀଡ଼ା, ଅନ୍ୟାୟ, ମୂଲ୍ୟବୋଧର ସଂଗ୍ରାମ ଏବଂ ଏହା ସବୁ ମୋ ଚିତ୍ତକୁ ବିକ୍ଷୁବ୍‌ଧ କରୁଛି । ବେଦନାରୁ ସୃଷ୍ଟି ଜନ୍ମ ନିଏ । ଯେତେବେଳେ ଏତେ ବଡ଼ ଜୀବନ କ୍ୟାନଭାସ୍‌କୁ କବିତା ଭିତରେ ଫୁଟାଇ ପାରିବି ନାହିଁ ମନେହେଲା କବିତାର ଉଚ୍ଛ୍ୱାସ, ଭାବପ୍ରବଣତା, ଧ୍ୱନି, ରସ ସମର୍ଥ ନୁହେଁ ଜୀବନର ବିପୁଳତା ଓ ବୈଚିତ୍ର୍ୟକୁ ରୂପ ଦେବାପାଇଁ, ତେଣୁ ଅଜ୍ଞାତରେ ମୁଁ ଆକର୍ଷିତ ହୋଇଆସିଲି କାହାଣୀର କୁହା ଅକୁହା କୁହୁକ ପରିଧିକୁ ।

ରାଜକିଶୋର ତେଣୁ ପଦ୍ୟ ପରିବର୍ତ୍ତେ କ୍ଷୁଦ୍ର ଗଳ୍ପ ରଚନା କଲେ । ତାଙ୍କ କ୍ଷୁଦ୍ର ଗଳ୍ପ ସଙ୍କଳନଗୁଡ଼ିକ ନିମ୍ନୋକ୍ତମତେ ପ୍ରଦତ୍ତ ହେଲା ।

**ନୀଳ ଲହରୀ**

'ନୀଳ ଲହରୀ' ଗଳ୍ପ ସଙ୍କଳନ ୧୯୪୪ ମସିହାରେ ପ୍ରକାଶ ପାଇଥିଲା । ଏଥିରେ ଦଶଟି ଗଳ୍ପ ସନ୍ନିବେଶିତ ହୋଇଅଛି । ରାଜକିଶୋର 'ନିଜ କଥା'ରେ ଲେଖିଛନ୍ତି – ''କଥା ସାହିତ୍ୟ ସୃଷ୍ଟି କରିବାରେ ମୋର ଯଥାଯୋଗ୍ୟ ଅଭିନିବେଶ ନାହିଁ । ମୁଁ ବୁଝୁଛି ଗଳ୍ପ ଲିଖନ ଶୈଳୀ କଠିନ ମାଧ୍ୟମ, ତଥାପି ବହୁ ବିଭବମୟ ଏ ସଂସାରରେ ଗତିଶୀଳ ଧାରାକୁ ଗଳ୍ପଗୁଡ଼ିକରେ ଅଙ୍ଗୀଭୂତ କରାଯାଇଛି ...।''

ପୁସ୍ତକର ପ୍ରଥମ ଗଳ୍ପଟି ହେଉଛି 'କଳିଙ୍ଗ ଶିଳ୍ପୀ' ।

ଶିଳ୍ପୀ ଶ୍ରୀଧର ମହାରଣା ଶୁଣିଥିଲେ ବିନ୍ଧ୍ୟାର ବିବରଣୀ । ସେ ବିନ୍ଧ୍ୟାଙ୍କର ମୂର୍ତ୍ତି ଗଢ଼ିଥିଲେ । ରାଜା ତାକୁ ଦେଖି ଉଚ୍ଚ ସ୍ୱରରେ କହିଉଠିଥିଲେ – ''ଏ ଯେ ସତ ବିନ୍ଧ୍ୟା।''

ଏହା କହି ରାଜା ମୂର୍ତ୍ତି ପାଖକୁ ଝୁଙ୍କିପଡ଼ିଲେ । ମହାରଣା କିନ୍ତୁ ଶାନ୍ତ ଭାବରେ କହିଲେ – ''ମଣିମା ! ଆପଣଙ୍କର ଭ୍ରମ ହିଁ ମୋର ଯଥାଯୋଗ୍ୟ ଉପହାର ।''

ଗାଳ୍ପିକଙ୍କର ଜାତୀୟ ସ୍ୱାଭିମାନ ଏ ଗଳ୍ପରେ କଳିଙ୍ଗ ଶିଳ୍ପୀକୁ ନୂତନ ମର୍ଯ୍ୟାଦା ଦେଇଛି ବୋଲି ଆଲୋଚକମାନେ ମତ ଦେଇଛନ୍ତି ।

'କିଂଶୁକ' ଗଳ୍ପରେ ଲେଖକ ଦର୍ଶାଇଛନ୍ତି ଯେ ଜଡ଼ି ମନ୍ତ୍ର କରି ତା'ର ପ୍ରଭାବରେ ଜଣେ ମଣିଷକୁ ନିଜର ହାତମୁଠାରେ ରଖାଯାଇପାରେ ।

'ମାସୀ ମା' ଗଳ୍ପରେ ମାସୀ ମା ଏକ ସୁନ୍ଦର ଚରିତ୍ର । ଭାରତର ସୀମାନ୍ତରେ ଯୁଦ୍ଧରତ ସୈନିକମାନଙ୍କ ସେବା କରି ମାସୀ ମା କିପରି ପ୍ରାଣତ୍ୟାଗ କରିଛନ୍ତି ତାହା ବର୍ଣ୍ଣିତ । ଲେଖକ ଏ ଗଳ୍ପରେ ହିନ୍ଦୁମାନଙ୍କ ପରି ଖ୍ରୀଷ୍ଟିୟାନମାନଙ୍କ କବରର ସାର୍ଥକ ବର୍ଣ୍ଣନା କରିଛନ୍ତି ।

ଗୋରୁମହିଷାଣୀ ପାହାଡ଼ର କୋଇଲା ଖଣିର ଶ୍ରମିକ ଅଗଣି । କୋଇଲା କଳା ମେସିନ ଧୂଆଁରେ କାମ କରି ରୋଗଣା ହୋଇପଡ଼ିଛି । ଭକ୍ ଭକ୍ ବାନ୍ତି କରିଛି । ବିଧବା ମଲ୍ଲୀ ତା'ର ସେବା କରିଛି । ପଥି ଦେଇ ହେପାଜତ କରିଛି । ଭଲ ହୋଇଯିବ ବୋଲି ଆଶା ଦିଏ । କିନ୍ତୁ କୁଲି ସର୍ଦ୍ଦାର ରାମଭୋଲା ଏମିତିକିଆ ଚଳିବ ନାହିଁ ବୋଲି କହିଛି । ତା'ର ଚକ୍ରାନ୍ତରେ ମଲ୍ଲୀର କୁଲିବସ୍ତିକୁ ଯିବା ବନ୍ଦ ହୋଇଯାଇଛି । ଶେଷରେ ଝିଅ ନାଣ୍ଡୀକୁ ମନେ ପକାଇ ଅଗଣି ଶେଷ ନିଃଶ୍ୱାସ ଛାଡ଼ିଛି ।

କୋଇଲା ଶ୍ରମିକର କରୁଣ କାହାଣୀ 'ବିକାଶ' ଗଳ୍ପରେ ବର୍ଣ୍ଣିତ ।

'ଝିଙ୍କ କାଠି' ଗଳ୍ପରେ ଗାନ୍ତ୍ରିକ ଲୋକଙ୍କ ଭ୍ରମ ଧାରଣାକୁ ରୂପ ଦେଇଛନ୍ତି । ସାଧାରଣତଃ, ବିଶ୍ୱାସ ଅଛି ଯେ ପେଡ଼ି ସଜ ଭିତରେ ଖଣ୍ଡିଏ ଝିଙ୍କ କାଠି ଥିଲେ ସେହି ସ୍ତ୍ରୀଲୋକର ସବୁ ପ୍ରକାର ଉନ୍ନତି ହୁଏ । ସେହି ଝିଙ୍କ କାଠିରେ ମୁଣ୍ଡରେ ସିନ୍ଦୂର ନାଇଲେ ସେହି ନାରୀ ଅହ୍ୟସୁଲକ୍ଷଣୀ ହୁଏ । କିନ୍ତୁ ମୃତ୍ୟୁଞ୍ଜୟ ଓ ଅହଲ୍ୟାଙ୍କର ପ୍ରେମ ବ୍ୟାପାରକୁ ନେଇ ହଣାହଣି ହୋଇଛି । ଗୋଟା ଗୋଟା ଖୋରଧା ପାଇକ ଟଳି ପଡ଼ିଛନ୍ତି । ମୃତ୍ୟୁଞ୍ଜୟ ଝିଙ୍କ କାଠିରେ ଅହଲ୍ୟା ସୀମନ୍ତରେ ସିନ୍ଦୂର କାଠିଏ ଦେଇ ଡାଳରେ ଝୁଲିପଡ଼ିଛି । ଅହଲ୍ୟା ବି ଝୁଲିପଡ଼ିଛି ।

'ଗୋରାକବର' ଗଳ୍ପରେ ସାମାଜିକ ଅନ୍ୟାୟ, ଅନୀତି ଯୋଗୁଁ ବୀର ପୁରୁଷୋତ୍ତମ ଶାସନର ବନମାଳୀର ପିତା ଖ୍ରୀଷ୍ଟଧର୍ମ ଗ୍ରହଣ କରିଛନ୍ତି । ସ୍ତ୍ରୀ ଗର୍ଭ ବେଦନାରେ କଷ୍ଟ ପାଉଥିବାବେଳେ କୌଣସି ଲୋକ ସାହାଯ୍ୟ କରିବାକୁ ଆଗେଇ ଆସି ନାହାନ୍ତି । ଫଳରେ ସ୍ତ୍ରୀଙ୍କର ମୃତ୍ୟୁ ହୋଇଛି । ଗ୍ରାମର ଅନାଥ ମିଶ୍ର ଶବସତ୍କାର

କରିବାକୁ ପରାମର୍ଶ ଦେଇଛନ୍ତି, କିନ୍ତୁ ତାହା ପ୍ରତ୍ୟାଖ୍ୟାନ କରିଛନ୍ତି ବନମାଳୀର ପିତା । ପୁରୀ ସେବାସଂଘର ଲୋକଙ୍କଦ୍ୱାରା ମୁର୍ଦ୍ଧାର ଉଠିଛି । ସେହିଦିନୁ ସେ ଧର୍ମରେ ବିଶ୍ୱାସ ନ ରଖି ଲୋକର ହୃଦୟ ଉପରେ ବିଶ୍ୱାସ ରଖିଛନ୍ତି ।

'ନୀଳ ଲହରୀ' ଗଳ୍ପ ସଞ୍ଚୟନଟି ବହୁଦିନ ଧରି ପାଠ୍ୟପୁସ୍ତକ ଭାବେ ପ୍ରଚଳିତ ଥିଲା ।

## ବିକଚ ଶତଦଳ

'ନୀଳ ଲହରୀ' ପରେ ୧୯୪୫ ମସିହାରେ 'ବିକଚ ଶତଦଳ' ପ୍ରକାଶ ପାଇଲା ।

ଲେଖକ 'ସୂଚନା'ରେ ଲେଖିଛନ୍ତି – ''ବିକଶିତ ସୃଷ୍ଟିରେ ଏହା କିପରି ଭାବରେ ଯେ ଆନନ୍ଦର ଉସ ଖେଳାଇବ, ତାହା ସ୍ରଷ୍ଟାର ବୁଝିବାରେ ପ୍ରୟୋଜନ ନାହିଁ, ଅଛି କେବଳ ସେହିମାନଙ୍କର ଯାହାଙ୍କର ପ୍ରାଣରେ ଏହାର ରୂପଶ୍ରୀ ରେଖାପାତ କରିବ ...।''

ସଙ୍କଳନର ପ୍ରଥମ ଗଳ୍ପଟି ହେଲା 'ଶିଳା ଓ ଶୈଳ' । ଗଳ୍ପର ନାୟକ ପ୍ରତ୍ନତତ୍ତ୍ୱ ବିଭାଗର ଅଧ୍ୟାପକ । ମିଉଜିୟମ କିପରି କ୍ରମେ ପ୍ରତିଷ୍ଠା ପାଇବ – ଏହି ଚିନ୍ତା ତାଙ୍କର ହୃଦୟ ଅଧିକାର କରିଛି । ଦିନେ ଗୋଟିଏ ମିଉଜିୟମ ଯାଇ 'ଜନନୀ' ମୂର୍ତ୍ତିକୁ ପାଇଛନ୍ତି । ପତ୍ନୀ ଶୈଳ ମାଆ ହୋଇପାରି ନାହାନ୍ତି । ହିନ୍ଦୁ ସ୍ତ୍ରୀର ବିଶ୍ୱାସ ଅନୁସାରେ ଖୋର୍ଦ୍ଧା ନିକଟସ୍ଥ ଅତ୍ରି ଉଷ୍ଣପ୍ରସ୍ରବଣରେ ସ୍ନାନ ସାରି ପୁତ୍ର କାମନା କରି ଗୁଆ ଖୋଜିଛନ୍ତି । କିନ୍ତୁ ଗୁଆ ନ ପାଇ ଗୋଟିଏ ଛୋଟ ପିତଳ କୃଷ୍ଣମୂର୍ତ୍ତି ପାଇ ତାକୁ ଢୋକି ଦେଇଛନ୍ତି । ପାକସ୍ଥଳୀରେ ରକ୍ତସ୍ରାବ ହୋଇଛି । ଅସହ୍ୟ ଯନ୍ତ୍ରଣା ହେବାରୁ ପାକସ୍ଥଳୀ ଅପରେଶନ କଲାବେଳେ ତାଙ୍କର ମୃତ୍ୟୁ ହୋଇଛି । ମୃତ୍ୟୁ ପୂର୍ବରୁ ଶୈଳ 'ଜନନୀ' ମୂର୍ତ୍ତିକୁ ନଷ୍ଟ ନ କରିବାକୁ କହିଛନ୍ତି ।

ନାରୀର ମାତୃତ୍ୱ କାମନାର ଜୀବନ୍ତ ଚିତ୍ର ଏଥିରେ ଦିଆଯାଇଛି ।

ଦ୍ୱିତୀୟ ଗଳ୍ପଟି ହେଲା 'ମୁକୁଟ ବନ୍ଧା ପରେ' । ରେଖାର ବିବାହ ସରିଛି । ବିଦାୟ ପର୍ବ ଆସିଛି । ସୁଆରି ଭିତରେ ଲୁହନାଳ ହୋଇ ଗଡ଼ି ଯାଉଥାଏ ରେଖା । ସୁଆରି ଉଠିଛି । ଗଉଡ଼ମାନେ ଗୀତ ଧରିଛନ୍ତି । ପିଲାଟି ଦିନର ଧୂଳି ଖେଳ ଦାଣ୍ଡ, ଗାଁ ଆମ୍ବତୋଟା, ଗାଧୁଆ ତୁଠ, ତୁଳସୀ ଚଉରାମୂଳ – ସବୁ ପଛରେ ପଡ଼ିଯାଇଛି ।

ସୁଆରିରେ ବସି ରେଖା ଭାଇଙ୍କୁ ଟଙ୍କା ଦେବା କଥା ମନେ ପକେଇଦେଇଛି । ଗଳ୍ପର ନାୟକ ମଧ୍ୟ ରେଖା ହାତରେ ଟଙ୍କା ଧରେଇ ଦେଇଛନ୍ତି । ନାୟକ ପ୍ରଥମେ ବିସ୍ମିତ ହୋଇପଡ଼ିଛନ୍ତି । ''ରେଖା ସ୍ୱାମୀଙ୍କ ଟଙ୍କାର ଆବଶ୍ୟକତା ଜାଣିଲା କିପରି ? ତେବେ କଅଣ ଦୁଇ ହୃଦୟର ଏକାବେଳକେ, ଏକବାରେ, ଏକ ଭାବରେ ସ୍ପନ୍ଦନ ଆରମ୍ଭ ହୋଇଗଲାଣି ?''

'ତେଲ ଲୁଣର ସଂସାର' ଗଳ୍ପରେ ଗାର୍ହସ୍ଥିକ ଜୀବନର ନିଷ୍ଠୁର ବାସ୍ତବତାର ଚିତ୍ର ଅଙ୍କନ କରିଛନ୍ତି ।

ସଙ୍ଗୀତା ବିବାହ କରିଥିଲା ଗଳ୍ପର ନାୟକଙ୍କୁ । ସେ ହେଉଛନ୍ତି 'ଅଣଚାଶ ଟଙ୍କାର କିରାଣିଟିଏ । ସଙ୍ଗୀତା କିନ୍ତୁ ରୂପ ଆଭିଜାତ୍ୟରେ ଥିଲା ଖୁବ୍ ବଡ଼ । ସେ ମଧ ଥିଲା ଆଧୁନିକା । ବିବାହ ପୂର୍ବରୁ କହିଥିଲା – ''ଜୀବନ ସୁନ୍ଦର, ତୁମେ ସୁନ୍ଦର ।''

ବିବାହ ପରେ କିନ୍ତୁ ସଂସାରର କଠୋର ବାସ୍ତବତାରେ ସେହି କଥା କୁଆଡ଼େ ହଜିଯାଇଛି !

ଅଫିସରୁ ଫେରିଲାପରେ ଗୃହିଣୀଙ୍କର ଗର୍ଜନ କାନରେ ପଡ଼େ । ''ସାତ ଦିନ ହେଲା ଚାକର ପଳେଇଲାଣି । ରୋଷାଇ କରି ହାତରେ ଫୋଟକା ହୋଇ ଜୀବନ ନେଲାଣି'' ଇତ୍ୟାଦି । ଦିନ ଅଫିସରେ ଗଧ ଖଟଣି ଖଟି ଘରେ ଏ ଯେଉଁ ଅଶାନ୍ତି କଥା କହନ୍ତେ, ଗୃହିଣୀଙ୍କଠାରୁ ଉତ୍ତର ମିଳିଛି, ''ଏ ଭୁଲ ସଂଶୋଧନ କରିଦିଅ ।'' ସ୍ୱାମୀ ଜଳଖିଆ ଖାଇବାପାଇଁ ମୁଡ଼ି ମାଗନ୍ତେ; ଉତ୍ତର ମିଳିଛି – ''ପିଲାଏ ଖାଇ ଦେଇଛନ୍ତି ।'' ପାଣି ଗିଲାସେ ବି ମିଳିନି । ନିଜେ ସୋରେଇରୁ ଆଣି ଦେଖନ୍ତି ତ ଅଳତାମିଶା ପାଣି ସେଥିରେ ଅଛି । ରାଗରେ ସୋରେଇକୁ ଉପରକୁ ଟେକି ତଳେ ପିଟି ଦେଇଛନ୍ତି ସ୍ୱାମୀ । ରାଗ ଶାନ୍ତ ହେଲା ପରେ ଗୃହକୁ ଫେରନ୍ତି । ମାତ୍ର ଗୃହିଣୀ ସେହିଦିନୁ ବାପ ଘରକୁ ଯାଇଛନ୍ତି । ଫେରି ନାହାନ୍ତି ।

ବାହ୍ୟ ବାସ୍ତବ ଘଟଣାକୁ ସୂକ୍ଷ୍ମ ଅନୁଭୂତିଦ୍ୱାରା ଗାଳ୍ପିକ ରସାପ୍ଳୁତ କରିଦେଇଛନ୍ତି । ଫଳରେ ଗଳ୍ପଟି ଉପଭୋଗ୍ୟ ହୋଇପାରିଛି ।

'ପାଲଟା ଢେଉ' ଗଳ୍ପରେ ଲେଖକ ଦୁଇ ସଙ୍ଗିନୀମାନଙ୍କର କଥାବାର୍ତ୍ତାକୁ ପରିବେଷଣ କରିଛନ୍ତି । ନାରୀ କିପରି ବେଶଭୂଷା ହୋଇ ସ୍ୱାମୀ ମନକୁ ଅଧିକ ଆକୃଷ୍ଟ କରିରଖେ, ସେ କଥା ଲେଖକ କହିଛନ୍ତି । ତାହାରି ଭିତରେ ଲଜ୍ଜାଶୀଳା ନାରୀ ଅନ୍ତରର ଗୋପନ କଥା ପ୍ରକାଶ ପାଇଛି ।

'ପଦେ କଥା' ଗଳ୍ପରେ ଲେଖକ ଗୋଟିଏ ବୁଢ଼ୀର କରୁଣ କାହାଣୀ ବର୍ଣ୍ଣନା କରିଛନ୍ତି । ଶାନ୍ତ ପାଗଳୀ ସେ । ତା'ର ବାଡ଼ିଆପିଟା ନାହିଁ । ଧାଁ-ଧପଡ଼ ନାହିଁ । କେବଳ ମୁହଁରୁ ବାହାରେ ପଦେ କଥା – 'ରାମ', 'ଦୁଇ' ।

ବୁଢ଼ୀ ନାଁ ମଲ୍ଲୀ । ସ୍ୱାମୀ ସଙ୍ଗେ ସଂସାର କରିଥିଲା । ଝିଅ ବାହା କରିଥିଲା । ସେଥିପାଇଁ ଦଶ ବାର ମାଣ ଜମି ଛଡ଼େଇ ଦେଇଥିଲା । ଆଶା ଥିଲା ଦୁଇ ଭେଣ୍ଡା ପୁଅ ତାକୁ ପୋଷିବେ । ମାତ୍ର ରଘୁ ମାଷ୍ଟ୍ରେ କଥାରେ ପଡ଼ି ତା'ର ଦୁଇ ପୁଅ କଲିକତା ଯାଇଛନ୍ତି । କୋଉ କଳ-କାରଖାନାରେ କାମ କରିଛନ୍ତି । ଶେଷକୁ ବୋମା ମାଡ଼ରେ ଦୁହେଁ ମରିଛନ୍ତି । ମାଆ ପାଗଳୀ ହୋଇଯାଇଛି । ପଦେ କଥା, 'ରାମ', 'ଦୁଇ' କହି ଏଣେ ତେଣେ ବୁଲୁଛି – ସେ ଦୁହିଁଙ୍କୁ ଖୋଜିଲା ପରି !

'ନିର୍ମାଲ୍ୟ' ଆଉ ଏକ ସୁନ୍ଦର ଗଳ୍ପ । ମୃତ୍ୟୁ ସମୟରେ ମଧ ଗାଁ ଲୋକେ ଅଡ଼ି ବସନ୍ତି । ମଣି ଦୁଃଖରେ ବର୍ଣ୍ଣନା କରିଛି – ''× × × ତିଦିସ୍ତା ବରଷ ଘରପୋଡ଼ିରେ

ଚାଳଟି ଚାଲିଗଲା । ଆଉ ବର୍ଷ ଝଡ଼-ତୋଫାନରେ କାନ୍ଥ ଖସିପଡ଼ିଲା । ବଖରାଏ ବୋଲି ଘର । ବୁଅ ଯାହା ଦି'ଖଣ୍ଡ ବାହାରିଥିଲା । × × × ''କେଉଁ ପୁରୁଣାକାଳିଆ କଥାରୁ ଅପମାନ ଖିଅ କାଢ଼ିଲେ । ବୁଅ ବିକିଲି । ତେବେ ଯାଇ ମଡ଼ା ଉଠିଲା ।''

ଗଳ୍ପରେ ଗାଁବାଲାଙ୍କ ଜୁଲମର ଚିତ୍ର ଲେଖକ ଦେଇଛନ୍ତି ।

'ପରପାରର ବନ୍ଦୀ' ଲେଖକଙ୍କର ଏକ ନିବିଡ଼ ରସାତ୍ମକ ଗଳ୍ପ । ଗଳ୍ପର ନାୟକ ଉର୍ବଶୀକୁ ନିବିଡ଼ ଭାବରେ ଭଲ ପାଉଥିଲେ । ଲେଖକଙ୍କ ଭାଷାରେ – ''ସେ ପ୍ରଣୟବ୍ୟାପ୍ତି ଆକାଶକୁ ସ୍ପର୍ଶ କରୁଥିଲା ଆଉ ଛୁଉଁଥିଲା ସବୁଜ ଏ ବସୁନ୍ଧରାକୁ ।'' ନାୟକର ପିତା କିନ୍ତୁ ତାଙ୍କୁ ମାଧୁରୀ ସହିତ ବିବାହ କରାଇଲେ ଯୌତୁକ ଲୋଭରେ । ବୋଉ ବାପାଙ୍କୁ ବୁଝେଇଲେ – ଜାତି, ଧର୍ମ, ଧନରୁ କ'ଣ ମିଳିବ ? ପୁଅ ଅନ୍ୟ ସହିତ ବିବାହରେ ଅସୁଖୀ ହେବ । କିନ୍ତୁ ବୋଉ ହଟିଗଲେ । ବୋଉ ସାବଧାନ କରିଦେଇଥିଲେ – ''ପୁଅ ଯଦି ନିଜ ଉପରେ ହାତ ଉଠେଇ ଦିଏ, ତେବେ ମୋ ସଂସାର ଉଚ୍ଛନ୍ନ ହୋଇଯିବ ।''

ବୋଉଙ୍କ ଆଶଙ୍କା ସତ୍ୟରେ ପରିଣତ ହେଲା । ନାୟକ ଆତ୍ମହତ୍ୟା କଲେ ।

ବୋଉଙ୍କ ସଂସାର ଉଚ୍ଛନ୍ନ ହୋଇଯାଇଛି । ଉର୍ବଶୀ ମଧ୍ୟ ଜାଣି ନାହିଁ । ଚିଠି ପରେ ଚିଠି ଲେଖି ଚାଲିଛି .... ।'' ପରପାରରେ ଥାଇ ସେ ବା କି ଉତ୍ତର ଦେଇପାରିବେ ?

ଲେଖକଙ୍କର ଆଉ ଏକ ସାର୍ଥକ ସୃଷ୍ଟି, 'ଦଶହରା ଭେଟି' ।

ପୂର୍ବକାଳରେ କରଣକୁଳରେ ଦାସୀ ରଖିବା ପ୍ରଥା ପ୍ରଚଳିତ ଥିଲା । ଜମିଦାରମାନେ ସ୍ତ୍ରୀ ଥିବା ସତ୍ତ୍ୱେ ଦାସୀ ବା ରକ୍ଷିତା ରଖୁଥିଲେ । ବେଳେ ବେଳେ ସ୍ତ୍ରୀମାନେ ସେହି ଦାସୀ ରଖିବାକୁ ସମର୍ଥନ ମଧ୍ୟ କରୁଥିଲେ । ଏହାର ସୁନ୍ଦର ରୂପାୟନ ହେଉଛି 'ଦଶହରା ଭେଟି' ।

ତିଳୋତ୍ତମାପୁରର କରଣ ସାଆନ୍ତେ ହେଉଛନ୍ତି ନବଘନ । ସେ ମଧ୍ୟ ଦାସୀପ୍ରଥାର ମହତ୍ତ୍ୱ ଅଛି ବୋଲି ଭାବୁଥିଲେ । ଆସନ୍ନା ଯୁବତୀ ଅବସ୍ଥାରେ ଜହ୍ନ ସାଆନ୍ତଙ୍କ ଘରେ ଆଶ୍ରୟ ନେଇଥିଲା । ସେ ଭାବିଥିଲା ଯେ ସାଆନ୍ତଙ୍କ ଘରେ କାମ କରି ଜୀବନଟା କଟାଇଦେବ । କିନ୍ତୁ ଆଶ୍ରୟଦାତା ଦିନେ ଜିଦ୍ ଧରି ବସିଲେ ଯେ ସେ ଜହ୍ନକୁ ଉପଭୋଗ କରିବେ । ସାଆନ୍ତେଙ୍କର ସ୍ତ୍ରୀ ମଧ୍ୟ ଜହ୍ନକୁ ରେଶମୀ ଶାଢ଼ିରେ ସଜାଇଦେଲେ । ପାନଥାଳିଆ ଦେଇ ଠେଲିଦେଲେ ସାଆନ୍ତେଙ୍କ ବିଶ୍ରାମ ଘରକୁ ।

ଜହ୍ନ ହେଲା ସାଆନ୍ତାଣୀଙ୍କର 'ଦଶହରା ଭେଟି' ।

'କ୍ଷତ' ଗଳ୍ପରେ ପଶୁ ମାଧ୍ୟମରେ ମାନବର ଦୁଃଖ ରୂପାୟିତ ହୋଇଛି ।

କମଳୀର ତିନୋଟି ସନ୍ତାନ ହୋଇ ମରି ଯାଇଛନ୍ତି । ସ୍ୱାମୀ ଚରିତ୍ରହୀନ ହୋଇଥିବାରୁ ଦୁଷ୍ଟ ବ୍ୟାଧି ରୋଗାକ୍ରାନ୍ତ । ଗୋଟିକ ପରେ ଗୋଟିଏ ସନ୍ତାନ ମୃତ୍ୟୁ ମୁଖରେ ପଡ଼ିଛନ୍ତି । ମାଈ କୁକୁର ଟେଲୀର ଗର୍ଭ ବେଦନାରେ ଘରର ମୁରବି ଅତିଷ୍ଠ

ହୋଇପଡ଼ିଛନ୍ତି । ଟେଲୀର ଯଥା ସମୟରେ ତିନୋଟି ଛୁଆ ଜନ୍ମ ହୋଇଛି । ଟେଲୀର ସେଥିରେ ଆନନ୍ଦର ସୀମା ନାହିଁ । କିନ୍ତୁ ଚାରି ଦିନ ପରେ ଛୁଆମାନଙ୍କ ଦେହରେ ଲାଲ ଲାଲ କ୍ଷତ ଦେଖାଦେଇଛି । ସେମାନେ ଗୋଟିଏ ପରେ ଗୋଟିଏ ମରିଯାଇଛନ୍ତି । ଟେଲୀର ଦୁଃଖ କମଳାହିଁ ଅନୁଭବ କରିଛି ଓ ତା' ଦୁଃଖରେ ସମବେଦନା ପ୍ରକାଶ କରିଛି ।

**ବନଜ୍ୟୋସ୍ନା**

୧୯୪୮ ମସିହାରେ ପ୍ରକାଶ ପାଇଥିବା 'ବନଜ୍ୟୋସ୍ନା' ସଂକଳନର ପ୍ରଥମ ଗଳ୍ପ ହେଲା 'ତନୁପାତଳୀ' । ଗଳ୍ପଟି ପ୍ରଣୟ ଆଧାରିତ ।

ମଧୁଯାମିନୀ ରାତ୍ରିରେ ସ୍ୱାମୀ ନବ ପରିଣୀତା ପତ୍ନୀଙ୍କ ପାଖେ ଅନ୍ୟମନସ୍କ ହୋଇ ପ୍ରବାସରେ ଥିବା ପ୍ରଣୟିନୀ 'ସ୍ନେହ'ଙ୍କ ନାମରେ ଥରେ ନୁହେଁ, ଦୁଇ ଥର ନୁହେଁ, ତିନି ଥର ଡାକିଛନ୍ତି । ଫଳରେ ପତ୍ନୀ କୁନ୍ତଳିନୀଙ୍କ ମୁଣ୍ଡ କଅଣ ହୋଇଯାଇଛି । ସେ ମୂର୍ଚ୍ଛା ହୋଇପଡ଼ିଛନ୍ତି । ସକାଳ ହୋଇଛି । ବୋଉ ଶୁଣି କହିଲେ ହୋମ ନିଆଁରେ ବସି ବୋହୂ ଝାଉଁଳି ପଡ଼ିଛି । ଦି' ମାସ ଭିତରେ ସକାଳେ ସଞ୍ଜେ କଞ୍ଚାଦୁଧ ଓ ଲହୁଣି ଖୁଆଇ ବୋହୂକୁ ଠିକ୍ କରିଦେବେ । ବୋଉ ଆଉ କହିଛନ୍ତି – ''ସେ ତ ତନୁପାତଳୀଟିଏ ।''

ଦ୍ୱିତୀୟ ଗପଟି ହେଲା 'ନବାମ୍ବୁ' । ଏଥିରେ ବିବାହ ପର ଘଟଣାର ବର୍ଣ୍ଣନା ଅଛି ।

ଗଳ୍ପର ନାୟକ ଓ ସଦ୍ୟବିବାହିତା ପତ୍ନୀ କଲ୍ୟାଣୀଙ୍କୁ ଶୁଭେଚ୍ଛା ଜ୍ଞାପନ କରିବାକୁ ବନ୍ଧୁବାନ୍ଧବମାନଙ୍କୁ ନିମନ୍ତ୍ରଣ କରାଯାଇଛି । ପ୍ରାୟ ସମସ୍ତେ ଆସିଛନ୍ତି ମଧ । ସେମାନଙ୍କ ମଧରେ ଅଛନ୍ତି ନାୟକଙ୍କ ପୂର୍ବ ପ୍ରଣୟିନୀ–ଲକ୍ଷ୍ମୀ । ରକ୍ତର ସମ୍ପର୍କ ନ ଥିଲେ ବି ତାକୁ ବଡ଼ଭଉଣୀ କହି ନବବଧୂ କଲ୍ୟାଣୀ ଲକ୍ଷ୍ମୀଙ୍କୁ ନିମନ୍ତ୍ରଣ କରିଛନ୍ତି । ଲକ୍ଷ୍ମୀ ପ୍ରଥମେ ସହ୍ୟ କରିପାରିବେ ନାହିଁ ଭାବିଲେ । କିନ୍ତୁ ଶେଷରେ ନିମନ୍ତ୍ରଣ ରକ୍ଷା କରି ସହଜ ସୁନ୍ଦର ଭାବେ ଆସିଛନ୍ତି ।

ପ୍ରେମିକାକୁ ଦେଖି ଗଳ୍ପର ନାୟକ ଅପ୍ରତିଭ ହୋଇପଡ଼ିଛନ୍ତି । ଲକ୍ଷ୍ମୀ ଶୁଭେଚ୍ଛା ଜ୍ଞାପନ କରି ବିଦାୟ ମାଗି ଚାଲିଯାଇଛନ୍ତି । ଲକ୍ଷ୍ମୀଙ୍କୁ ଡାକିବାରେ କଲ୍ୟାଣୀଙ୍କର ତିଳେମାତ୍ର ଦ୍ୱିଧା ହୋଇନି । ତାଙ୍କ ମନରେ କିଛି ଈର୍ଷା ଜାତ ବି ହୋଇନି ।

ଦୁଇଟି ନାରୀଙ୍କ ତ୍ୟାଗରେ ଗାଳ୍ପିକଙ୍କର ଅନ୍ତର ପରିପୂର୍ଣ୍ଣ ହୋଇଉଠିଛି ।

'ଯୌବନ ଢଳିଯାଏ' ଆଉ ଏକ ସୁନ୍ଦର ଗଳ୍ପ । ସୁବ୍ରତ ଜଣେ ଶିଳ୍ପୀ । ତା' ଭାବନାରେ ବିଶ୍ୱ ସୁନ୍ଦର । ଜୀବନ ସୁନ୍ଦର । ସେ ଗୋଟିଏ ସୁନ୍ଦରୀ ନାରୀକୁ ବିବାହ କରିବାକୁ କଳ୍ପନା କରିଥିଲା । ମା' କାନ୍ତାଦେବୀ ମଧ ସେହିପରି ଏକ ସୁନ୍ଦରୀ କନ୍ୟା ବାଛିଲେ । ସେ ହେଉଛି କଳ୍ପନା । କଳ୍ପନା ଗୋଟିଏ ଚାଉଳରେ ଗଢ଼ା । ରୂପ ଆଉ

ଗୁଣରେ କେହି ବାଛିପାରିବେ ନାହିଁ । ବିବାହ ମଧ୍ୟ ହୋଇଛି । ସୁବ୍ରତର ଆନନ୍ଦର ସୀମା ରହିନି । ସେ କଳ୍ପନାଙ୍କର ଓଠ, ଅଧର, ଶେଷରେ ଆଖିର ପ୍ରଶଂସା କରିଛି । କହିଛି ମଧ୍ୟ ସେ ଭାରି ସୁନ୍ଦରୀ । ଆଖି ଫିଟାଇବାକୁ କହିଛି । କିନ୍ତୁ କଳ୍ପନା ଆଖି ଫିଟାଇ ନାହାନ୍ତି । ସୁବ୍ରତ ଭାବିଛି ଯେ କଳ୍ପନା ଲଜ୍ଜାରେ ଚକ୍ଷୁ ମୁଦିଛନ୍ତି । କିନ୍ତୁ ପରେ ଜାଣିବାକୁ ପାଇଛି ଯେ ଦୁଇଟି ଆଖିରୁ ଗୋଟିଏ ଭଲ, ଆଉ ଆରଟି କାଚ ଆଖି । ପିଲାଦିନେ ବସନ୍ତରେ ଗୋଟିଏ ଆଖି ନଷ୍ଟ ହୋଇଯିବାରୁ କାଚ ଆଖି ଯୋଡ଼ା ହୋଇଛି ।

ସୁବ୍ରତର କଳ୍ପନା ଜଳିଯାଇଛି ।

ଗାଳ୍ପିକ ବନ୍ଧ୍ୟା ନାରୀର ଗଭୀର ମର୍ମବ୍ୟଥା 'ଶତ ଜନ୍ମର ପରିଚୟ' ଗଳ୍ପରେ ପ୍ରକାଶ କରିଛନ୍ତି ।

ଯେଉଁ ନାରୀ ବିବାହ ପରେ ଜନନୀ ହୋଇପାରେନି ତା' ମନରେ କେତେ ଦୁଃଖ ! ନିର୍ମଳା ମାଆ ହୋଇପାରି ନାହାନ୍ତି । ସେ ଅଣ୍ଡା ଛୁଇଁ ନାହାନ୍ତି । ହାତରେ ଡେଉଁରିଆ ବାନ୍ଧିଛନ୍ତି । ଶୋଇଲାବେଳେ ଅଲଗା ଶେଯ ପକାଇଛନ୍ତି । ଛୁଆ ଖେଳାଇବାକୁ ଭୟ ଲାଗିଛି – କାଳେ ବେକ ଢଳିପଡ଼ିବ । ଛୁଆ ଖେଳେଇଲା ବେଳେ ପ୍ରାଣରେ ଯେଉଁ ପୁଲକ ସଞ୍ଚାର କରେ, ତାହା ମାଆ ନ ହୋଇଥିବା ନିର୍ମଳା କେମିତି ବୁଝିବେ ?

ଗାଳ୍ପିକଙ୍କର ଉକ୍ତି – ''ନାରୀ ଓ ଜନନୀ – କେତେ ପାଖାପାଖି ଆଉ କେତେ ଦୂର !''

'ଜୀବନାୟନ' ଗଳ୍ପରେ ନାୟକ ଆଦ୍ୟ ଜୀବନରେ ପ୍ରଣୟରତ ଥିଲେ । ବିବାହ କରିପାରି ନାହାନ୍ତି, ବିବାହ କଲେ ଆଉ ଜଣେ – ବନ୍ଦନାଙ୍କୁ । ବନ୍ଦନାଙ୍କର ଜଣେ ଉଡ଼ାଜାହାଜ ଚାଳକ ପ୍ରେମିକ ଥିଲେ । ତାଙ୍କ ପାଖରୁ ଖଣ୍ଡିଏ ଚିଠି ଆସିଛି ସ୍ୱାମୀଙ୍କ ପାଖକୁ । ସେ ସ୍ୱାମୀଙ୍କ ଘରକୁ ଆସି ବନ୍ଦନାକୁ ନେଇଯିବେ ବୋଲି ସୂଚନା ଦେଇଛନ୍ତି । ସ୍ୱାମୀ ପତ୍ନୀଙ୍କୁ ପ୍ରେମିକଙ୍କ ଚିଠି ଦେଖାଇଛନ୍ତି । ବନ୍ଦନା କ୍ଷମା ମାଗିଛନ୍ତି । ବନ୍ଦନା ମଧ୍ୟ ସ୍ୱାମୀଙ୍କ ପୂର୍ବର ପ୍ରେମିକାଙ୍କ ପାଖକୁ ଏକ ପତ୍ର ଦେଇଛନ୍ତି । କେବେ କେବେ ଘରକୁ ଆସି କଲ୍ୟାଣ କରିବାକୁ ଅନୁରୋଧ କରିଛନ୍ତି ।

ସଂକଳନରେ 'ବଉଳି' ଏକ ସାର୍ଥକ ଗଳ୍ପ । ଏଥିରେ ଗୃହପାଳିତ ପଶୁ ପ୍ରତି ସ୍ନେହ ଓ ଅନୁକମ୍ପା ପରିସ୍ଫୁଟ ହୋଇଛି ।

ଗଳ୍ପରେ ପ୍ରଥମେ ସରସୀର ବିଫଳ ମାତୃତ୍ୱର ଚିତ୍ର ଦିଆଯାଇଛି । ସେ ଦୀର୍ଘ ଦିନ ହେଲା ବିବାହ କରିଥିଲେ ମଧ୍ୟ ମାଆ ହୋଇପାରି ନାହିଁ । ତେଣୁ ଉଜ୍ଜଳା ଗାଈର ଝିଅ 'ବଉଳି'ର ସ୍ପର୍ଶ ତା' ମନରେ ପୁଲକ ସୃଷ୍ଟି କରେ । ତା'ର ଦୁଧ ଫେଣ ଲଗା ମୁହଁକୁ ସେ ଉପଭୋଗ କରିଆସିଛି ।

ସହରରେ ଅନୁଷ୍ଠିତ ହୋଇଥିବା ଗୋ-ପ୍ରଦର୍ଶନୀରେ ଭାଗ ନେଇ ପୁରସ୍କାର ପାଇବାପାଇଁ ସରସୀର ସ୍ୱାମୀ ଭଜନି ଢଲ୍ଲି ଆଉ ତା'ର ଝିଅ ବଉଳିକୁ ନେଇ ସହରକୁ ଯାଇଛି । କିନ୍ତୁ ଯୋଗ୍ୟ ହେଲେ ବି ପୁରସ୍କାର ମିଳିନି । ଫେରିବାବେଳେ ବଉଳିର ଅବସ୍ଥା ଖରାପ ହୋଇଛି । ତା'ର ମୁହଁରୁ ଝଲକାଏ ରକ୍ତ ବାହାରି ପଡ଼ିଛି । ବଉଳିର ପ୍ରାଣ ଚାଲିଯାଇଛି ।

ଭଜନି ଲୁହଭରା ଆଖିରେ କହିଉଠିଛି – ''ମହାପ୍ରୁ ! ସର କଅଣ ମତେ କହିବ ? ସେ ବଞ୍ଚିବ ଟି ? ମୁଣ୍ଡ ପିଟି ଦେବ × × × ଭଗବାନ୍ ତା'ର କୋଳରେ ଛୁଆ ବକଟେ ଦେଇ ନାହାନ୍ତି । ବଉଳି ତା'ର ଝିଅ ଥିଲା ।''

ପଶୁ ପ୍ରତି ମନୁଷ୍ୟର ମମତାର ସାର୍ଥକ ରୂପାୟନ – 'ବଉଳି' !

'ବନଜ୍ୟୋତ୍ସ୍ନା' ସଂକଳନର ଗଳ୍ପଗୁଡ଼ିକ ପାଠ କରି ଓଡ଼ିଶାର ସୁପ୍ରତିଷ୍ଠିତ ନାରୀ ଲେଖିକା ସରଳା ଦେବୀ ମନ୍ତବ୍ୟ ଦେଇଛନ୍ତି – ''ଗଳ୍ପଗୁଡ଼ିକ ପୁରାତନ ରଚନା, ତଥାପି ତାହାର ସମାବେଶ ପାଠକର ଚିତ୍ତରେ ଆଣେ ନୂତନ ଜୟନ୍ତୀର ସମାରୋହ ....।''

**ଅଶୋକ ଚକ୍ର**

'ଅଶୋକ ଚକ୍ର' ଗଳ୍ପ ସଞ୍ଚୟନ ୧୯୪୯ ମସିହାରେ ପ୍ରକାଶ ପାଇଥିଲା । ଏଥିରେ ଦଶଟି ଗଳ୍ପ ସ୍ଥାନ ପାଇଛି । ପ୍ରଥମ ଛଅଟି ଗଳ୍ପ ଦେଶର ସ୍ୱାଧୀନତା ଲାଭ ଘଟଣା ସହିତ ସମ୍ପୃକ୍ତ । ଆଉ ଚାରୋଟି ଗଳ୍ପ ମଣିଷ ଜୀବନ.... ସୁଖ ଦୁଃଖ ହସ କାନ୍ଦକୁ ନେଇ ରଚିତ । ପ୍ରଥମ ଗଳ୍ପଟି ହେଲା 'ଅଶୋକ ଚକ୍ର' । ସେହି ଗଳ୍ପର ନାମ ଅନୁସାରେ ପୁସ୍ତକର ନାମକରଣ ହୋଇଛି ।

ଓଡ଼ିଶାର ବିଶିଷ୍ଟ ସାହିତ୍ୟିକ, କବି ଓ ଜନନେତା ପଣ୍ଡିତ ଗୋଦାବରୀଶ ମିଶ୍ର ପୁସ୍ତକର 'ଗ୍ରନ୍ଥ ପ୍ରବେଶ' ଶିରୋନାମରେ ଲେଖିଛନ୍ତି ଯେ ଭାରତର ସ୍ୱାଧୀନତା ଲାଭ ରୂପ ମହନୀୟ ଘଟଣାରେ ଲେଖକ ଉଦ୍‌ବୁଦ୍ଧ, ଉତ୍ସାହିତ ଓ ଅନୁପ୍ରାଣିତ ହୋଇଛନ୍ତି । ତା'ର ପରିଚୟ ପ୍ରଥମ ଛଅଟି ଗଳ୍ପରୁ ମିଳେ । ପ୍ରଥମ ଗଳ୍ପ 'ଅଶୋକ ଚକ୍ର'ରେ ଜାତୀୟ ପତାକାରେ ଚରଖା ବଦଳରେ ଚକ୍ର ରହିବାର ତାତ୍ପର୍ଯ୍ୟ ବୁଝାଇଛନ୍ତି । ଆର୍ଥନୀତିକ ପଟ୍ଟଭୂମି ଉପରେ ଚରଖାର ଉଦ୍ଦେଶ୍ୟ ରହିଛି । କିନ୍ତୁ ଭାରତର ସବୁ ଶ୍ରେଣୀର, ସବୁ ସମ୍ପ୍ରଦାୟର ଲୋକଙ୍କର ସଂକୀର୍ଣ୍ଣତା ଦୂର କରି ଯେଉଁ ଭାରତୀୟ ସଂସ୍କୃତିର ଚକ୍ର ବୁଲୁଛି, ତାହାର ପ୍ରବର୍ତ୍ତନରେ କାହାର ଭିନ୍ନ ମତ ନାହିଁ ବୋଲି ଲେଖକ କହିଛନ୍ତି । ଜାତିର ଜନକ ମହାତ୍ମା ଗାନ୍ଧୀଙ୍କୁ ଜଣେ ହିନ୍ଦୁ ହତ୍ୟା କରିଛି ଓ କି ହିନ୍ଦୁ କି ମୁସଲମାନ ବା ଖ୍ରୀଷ୍ଟିୟାନ ସମସ୍ତେ ବ୍ୟଥିତ ହୋଇପଡ଼ିଛନ୍ତି ବୋଲି ଲେଖକ ପ୍ରକାଶ କରିଛନ୍ତି 'ଅଶରୀରୀ କଥା କହେ' ଗଳ୍ପରେ । 'ଆଚାର୍ଯ୍ୟେ ଥିଲେ ବୋଲି' ଗୋଟିଏ ସାର୍ଥକ ଗଳ୍ପ । ଭିକାରି ଓ ଅନ୍ଧୁଣୀ ପ୍ରଭୃତି ଭିକ୍ଷା ମାଗିଲାବେଳେ ଦେବାନ, ଅଧ୍ୟାପକ ବା କଂଗ୍ରେସକର୍ମୀ – କାହାରି ମନ ଟଳିନି । କେହି ପଇସାଟିଏ

ବି ବଢ଼େଇ ଦେଇ ନାହାନ୍ତି । କିନ୍ତୁ ଆଚାର୍ଯ୍ୟେ ଥିବା ସମୟରେ ନୋଟ ଟଙ୍କା ପ୍ରଭୃତି ବଢ଼େଇ ଦେଇଛନ୍ତି ।

ଗାନ୍ଧିକ ଅଧ୍ୟାପକ ଓ କଂଗ୍ରେସକର୍ମୀଙ୍କର ତ୍ରୁଟି ବିଚ୍ୟୁତିର ଚିତ୍ର ଅଙ୍କନ କରିଛନ୍ତି ।

ଲେଖକ ଦେଶ ଓ ମହାତ୍ମା ଗାନ୍ଧୀଙ୍କୁ ଅଲଭ୍ୟ ଆଦର୍ଶରେ ରଖିଥିବାରୁ କେତେକ ସାଧାରଣ ଘଟଣାରେ ବ୍ୟଥିତ ହୋଇପଡ଼ିଛନ୍ତି । ସେହି ବ୍ୟଥାର ଚିତ୍ର 'ରୁଦ୍ର', 'ଦେଖ ପତାକା ଉଡୁଛି' ଏବଂ 'ମନ୍ତ୍ର ମୋହନ' ପ୍ରଭୃତି ଗଳ୍ପମାନଙ୍କରେ ଅଙ୍କିତ ହୋଇଛି । ଲେଖକଙ୍କର ଖେଦୋକ୍ତି – ''ଆଜି ଦେଶଯାକ ଜହର ଗୁଡ଼ାଖୁ, ଗାନ୍ଧୀ ବିଡ଼ି, ଆଜାଦ ହୋଟେଲ, ପଟେଲ ତାଡ଼ିରେ ଛାଇ ହୋଇଗଲାଣି । କିଏ ଜାଣେ, କାଲି ହୁଏତ 'କୃପାଳିନୀ ଗଣିକାଳୟ' ଦେଶରେ ଦେଖା ନ ଦେବ ?''

'ଉପହାର ରହିଗଲା' ଗଳ୍ପରେ ଲେଖକ ଗୋଟିଏ କରୁଣ ସାମାଜିକ ଚିତ୍ର ଅଙ୍କନ କରିଛନ୍ତି । ଗଳ୍ପର ନାୟକ ଭଗ୍ନୀ ସୁନନ୍ଦାଙ୍କ ଘରକୁ ଦୁଇଟି କନକ କଙ୍କଣ ଓ ସିନ୍ଦୂର ପୁଡ଼ା ନେଇଯାଇଛନ୍ତି । କିନ୍ତୁ ଦୁଇ ଦିନ ଜ୍ୱରରେ ସୁନନ୍ଦାଙ୍କର ସ୍ୱାମୀଙ୍କର ପରଲୋକ ହୋଇଯାଇଛି । ବୈଧବ୍ୟ ବହ୍ନି-ସଂଯୋଗରେ ସୁନନ୍ଦାଙ୍କର ଲାସ୍ୟମୟୀ ରୂପ ହତଶ୍ରୀ ହୋଇଯାଇଛି । ଗଳ୍ପର ନାୟକଙ୍କର ଆତ୍ମା ବିକଳି ଉଠୁଛି । ଫେରିଲାବେଳେ ଭାଇକୁ ଶୀଘ୍ର ବିବାହ କରି ନୂଆବୋହୂକୁ ସୁନାକଙ୍କଣ ଓ ସିନ୍ଦୂର ପୁଡ଼ିଆ ଉପହାର ଦେବାକୁ ସୁନନ୍ଦା ଅନୁନୟ କରିଛନ୍ତି । କିନ୍ତୁ ଫେରିବାର ପନ୍ଦର ଦିନ ପରେ ସୁନନ୍ଦାଙ୍କର କଳ୍ପିତ ନୂଆବୋହୂ ଅର୍ଚ୍ଚନାଙ୍କ ମରଶରୀରକୁ ଚିତାଗ୍ନିରେ ନିକ୍ଷେପ କରିଛନ୍ତି ଗଳ୍ପର ନାୟକ । ଅର୍ଚ୍ଚନାଙ୍କର ଶରୀର ପୋଡ଼ି ପାଉଁଶ ହୋଇଯାଇଛି ।

ଦୁଇ ଦୁଇ ଥର ଉପହାର ଦେବାକୁ ଥିବା ସୁନାକଙ୍କଣ ଓ ସିନ୍ଦୂର ପୁଡ଼ିଆ ଚିରଦିନପାଇଁ ନାୟକଙ୍କ ପାଖେ ରହିଯାଇଛି ।

'ଉପହାର ରହିଗଲା' ଗଳ୍ପଟି ଲେଖକଙ୍କ ଅନ୍ୟତମ ଶ୍ରେଷ୍ଠ ଗଳ୍ପ ।

'ଅଧ୍ୟାପକ' ଗଳ୍ପଟି ପଢ଼ିଲେ ମନେ ହୁଏ ସତେ କଅଣ ଗଳ୍ପଟି ଲେଖକଙ୍କ ଅନୁଭୂତିରୁ ବାହାରିଛି ? ଅଧ୍ୟାପକ ଜଣକ ବଦଳି ହୋଇଗଲାପରେ ପ୍ରବାସରେ ଭଡ଼ା ଘରପାଇଁ ଘୂରି ବୁଲିଛନ୍ତି । ପ୍ରଥମ ଘର ମାଲିକ ତାଙ୍କର କି ଧର୍ମ ବୋଲି ପଚାରିଛନ୍ତି । ଅଧ୍ୟାପକ ଜାଣନ୍ତି ତାଙ୍କର ଧରାବନ୍ଧା ଧର୍ମ କିଛି ନାହିଁ । ମଣିଷର ହୃଦୟ ତାଙ୍କ ପାଖେ ପରମ ସତ୍ୟ । ତଥାପି ସଂସ୍କାର ଦୃଷ୍ଟିରୁ ତାଙ୍କ ପାଟିରୁ ବାହାରିପଡ଼ିଛି – 'ହିନ୍ଦୁ' । ଦ୍ୱିତୀୟ ଘର ମାଲିକ ମଧ୍ୟ ତାଙ୍କୁ ଘର ଦେବାକୁ ମନା କରିଛନ୍ତି । କେବଳ 'ପୁଲିସବାଲାଙ୍କୁ' ସେ ଘର ଦେବେ ବୋଲି କହିଛନ୍ତି । କିନ୍ତୁ ଶେଷକୁ ପ୍ରଥମ ଖ୍ରୀଷ୍ଟିୟାନ ଘର ମାଲିକ ତାଙ୍କ ହୃଦୟ ଭିତର ମହାନ୍ ଭାବଧାରା ବହୁଥିବା ଜାଣିପାରିଛନ୍ତି । ଅଧ୍ୟାପକଙ୍କୁ ସେ ଘର ମିଳିଛି ।

'ରତି ବିଳାପ' ଗଳ୍ପରେ ଗଳ୍ପ ନାୟକ ବିବାହ କରିବାକୁ ଚାହିଁଛନ୍ତି ନଳିନୀର ମାଉସୀମା'ଙ୍କୁ । କିନ୍ତୁ ବାସ୍ତବ ଜୀବନରେ ନାନା ପ୍ରତିବନ୍ଧକ ଦେଖାଦେଇଛି । ତା'ର ମାଉସୀମା'ଙ୍କୁ ବିବାହ କରିବା ସମ୍ଭବ ହୋଇନି । ପରିସ୍ଥିତିର ଚାପରେ ଗଳ୍ପର ନାୟକ ଅନ୍ୟତ୍ର ବିବାହ କରିଛନ୍ତି । ନଳିନୀ ଏଥିପାଇଁ ତାଙ୍କ ଉପରେ ଦୋଷାରୋପ କରିଛି । ଗଳ୍ପର ନାୟକ କିନ୍ତୁ ଏଥିପାଇଁ ଅଦୃଷ୍ଟକୁ ଦାୟୀ କରିଛନ୍ତି –

''ନଳିନୀ, ଅଦୃଷ୍ଟ, ସବୁ ଅଦୃଷ୍ଟ ! ତୁମେ ତ ଜାଣ, ବିନିମୟର ଚରମ ସୀମାରେ ଯେତେବେଳେ ଦୁଇଟି ପ୍ରାଣ ପରିପୂର୍ଣ୍ଣ ହୋଇଥିଲା, ସେତେବେଳେ ଏ ବଜ୍ରପାତ ! ... ମୋର ମନେହୁଏ ଯେପରି ସବୁ ବିଧିନିର୍ଦ୍ଦିଷ୍ଟ ...।''

**ଜୟଶ୍ରୀ**

୧୯୪୭ ମସିହାରେ ପ୍ରକାଶ ପାଇଥିବା 'ଜୟଶ୍ରୀ' ଗଳ୍ପ ସଂକଳନରେ ଦଶଟି ଗଳ୍ପ ସନ୍ନିବେଶିତ ହୋଇଛି । ଗଳ୍ପରେ ଲେଖକ ନାନା ନୀତି କଥା, ବିଜ୍ଞାନ କଥା, ଦାର୍ଶନିକ ତତ୍ତ୍ୱ ସରଳ ଓ ସୁନ୍ଦରଭାବେ ପ୍ରକାଶ କରିଛନ୍ତି ବୋଲି ସଂକଳନର 'ମୁଖବନ୍ଧ'ରେ ଲେଖିଛନ୍ତି ବିଶିଷ୍ଟ ସାହିତ୍ୟିକ ଚିନ୍ତାମଣି ଆଚାର୍ଯ୍ୟ ।

ସଂକଳନର ପ୍ରଥମ ଗପଟି ହେଲା 'ମରୁ ନଦୀ' । ଏଥିରେ ନାରୀ ଚରିତ୍ରର ବିଶ୍ଳେଷଣ କରାଯାଇଛି ।

ଗଳ୍ପର ନାୟକ ପ୍ରଥମ ପତ୍ନୀ ବୀଣାଙ୍କ ମୃତ୍ୟୁରେ ବ୍ୟଥିତ ହୋଇଛନ୍ତି । ବିଶେଷତଃ, କନ୍ୟା ଶେଫାଳୀପାଇଁ ବିଶେଷ ଚିନ୍ତିତ ହୋଇପଡ଼ନ୍ତି । ରାତ୍ରିରେ ନିଦ ଆସିନି । ଲେଖକଙ୍କ ଭାଷାରେ, ପ୍ରାଣ ଉପରେ ଶିଳା ଖଣ୍ଡେ ରଖି ସେ ଚାଲିଛନ୍ତି । ଶେଷକୁ ଧାଈ କଥାରେ ବିଶ୍ୱାସ କରି ଦ୍ୱିତୀୟ ବିବାହ କରିଛନ୍ତି ଅନୁରାଧାଙ୍କୁ । ସଉତୁଣୀ ସେ, ମାଆର ହୃଦୟ କାହୁଁ ପାଇବେ ? ଶେଫାଳୀ ଉପରେ ନିର୍ଯାତନା ଆରମ୍ଭ ହୋଇଛି । ତାଙ୍କ ଘରର ଧାଈ ମଧ୍ୟ ଅନୁରାଧାଙ୍କ ପ୍ରକୋପ ସହି ନ ପାରି ବିଦାୟ ନେଇଛି । ଶେଷରେ ପାଉଡର ଟିଣ ଘର ଯାକ ବିଞ୍ଚି ଦେଇଥିବାରୁ ଶେଫାଳୀକୁ ଭଣ୍ଡାର ଘରେ ଭର୍ତ୍ତି କରି ତାଲା ପକାଇ ଦେଇଛନ୍ତି । ନିର୍ମମ ମାଡ଼ରେ ଶେଫାଳୀ ଦେହ ରକ୍ତାକ୍ତ ହୋଇଛି । ତେବେ ଅନୁରାଧାଙ୍କ ହୃଦୟରେ ପରିବର୍ତ୍ତନ ଆସିଛି । ଡାକ୍ତର ଡାକି ଶେଫାଳୀକୁ ଦେଖାଇବାକୁ କହିଛନ୍ତି । ବିସ୍ମିତ ହୋଇପଡ଼ିଛନ୍ତି ଗଳ୍ପର ନାୟକ – ''ମରୁ ନଦୀରେ କେବେ କଅଣ ପ୍ରବାହ ଖେଳେ ?''

'ଜୀବନ ସଙ୍ଗୀତ' ଗୋଟିଏ ସୁନ୍ଦର ଗଳ୍ପ । ଏଥିରେ ଗାଳ୍ପିକ ମୃତ୍ୟୁକୁ ବିଶ୍ଳେଷଣ କରିଛନ୍ତି । ତାଙ୍କ ଦୃଷ୍ଟିରେ ମୃତ୍ୟୁ ମହନୀୟ, ବନ୍ଦନୀୟ । ମୃତ୍ୟୁ ଫଳରେ ମନୁଷ୍ୟ ଚିରଶାନ୍ତି ଲାଭ କରିଥାଏ ।

ମୃତ୍ୟୁ ସମ୍ପର୍କରେ ଗାଳ୍ପିକ ଗୀତା, ପୁରାଣ ଇତ୍ୟାଦିର ବାକ୍ୟ ଉଲ୍ଲେଖ କରିଛନ୍ତି । ଗୀତାରେ ଅଛି – ମନୁଷ୍ୟ ସର୍ବତ୍ର ମୃତ୍ୟୁର ଅଧୀନ । ପୁରାଣ କହେ ସଂସାର ଅନିତ୍ୟ । ବାଇବେଲ୍‌ରେ ମଧ୍ୟ ଅଛି – "ଯେ ମରିଯାଇଛି, ତା' ପାଇଁ ଶୋକ ବୃଥା ।"

ଗାଳ୍ପିକ ପୁଣି ବୁଦ୍ଧଦେବଙ୍କ ଉପଦେଶ ଶୁଣାଇଛନ୍ତି । ପୁତ୍ରହରା ନାରୀ ଯେତେବେଳେ ଘର ଘର ବୁଲି ସୋରିଷ ନ ପାଇ ଫେରିଛନ୍ତି, ସେ ବୁଦ୍ଧଙ୍କ ଆଗରେ ନିଜର ଅଜ୍ଞାନତା ସ୍ୱୀକାର କରିଛନ୍ତି ।

"ପ୍ରଭୋ ! ଅଜ୍ଞାନତା ଦୋଷରୁ ମୁଁ ବୁଝିପାରି ନ ଥିଲି ଯେ ମନୁଷ୍ୟ ଜନ୍ମ ହେବା ମାତ୍ରେ ମୃତ୍ୟୁ ପଥର ଯାତ୍ରୀ ହୋଇଥାଏ । ସେ ପଥରେ ପୁଅ ମୋର ଯାଇଛି । ଏଥିରେ ଦୁଃଖ କରିବି ବା କାହିଁକି ?"

କିନ୍ତୁ ଗଳ୍ପର ନାୟକଙ୍କ ପତ୍ନୀ ଉଷାଙ୍କ ମନ ପରିବର୍ତ୍ତନ ହୋଇ ନାହିଁ । କହିଛନ୍ତି – "କିନ୍ତୁ ଏ ଶାସ୍ତ୍ର କଥା । ମୋର ମୋ ମାଆର ଛାତି ....।"

ଶେଷରେ ଗଳ୍ପର ନାୟକ ନାରଦଙ୍କ ଉପାଖ୍ୟାନ କହିଛନ୍ତି – "ନାରଦ ସଂସାର ମାୟାରେ ପଡ଼ି ଭଗବାନ୍‌ଙ୍କୁ ଭୁଲିଥିଲେ । ଭଗବାନ୍ ନାରଦଙ୍କ ଗର୍ବ ଖର୍ବ କରିବାକୁ ଉପାୟ ପାଞ୍ଚିଲେ । ଗିରିନଦୀରେ ସମସ୍ତେ ଭାସିଗଲେ । ପୁତ୍ର କନ୍ୟା, ସ୍ତ୍ରୀ ସମସ୍ତେ । ନାରଦଙ୍କର ଜ୍ଞାନୋଦୟ ହେଲା । ବନ୍ଧନ ତାଙ୍କର ତୁଟିଗଲା !"

ଉଷା ଶୁଣିଛନ୍ତି, ତାଙ୍କର ପୁତ୍ରଶୋକ ଦୂର ହୋଇଛି । କହିଛନ୍ତି – "ସତରେ ଆମେ ମାୟାରେ ପଡ଼ି ଦୁଃଖ କରୁ, ଯେ ଯାଉଛି, ତା' ପାଇଁ ମୁଣ୍ଡ ବାଡ଼େଇଲେ ଲାଭ କଅଣ ?"

ଏହି ସମୟରେ ଘର ଦରଜା ଖୋଲି ଆସିଛି ଜଣେ ଯୁବକ – ହରମୋହନ, ପୁଅର ପଢ଼ା ସାଥି । ହାତରେ ପୁଅର କେତେ ଖଣ୍ଡ ଲୁଗା, ତା'ର ପଢ଼ାବହି ... ଅଧାଲେଖା ଚିଠି ।

ଉଷାଙ୍କର ଧୈର୍ଯ୍ୟର ବାଲିବନ୍ଧ ଭାଙ୍ଗିଯାଇଛି । ଚଟାଣ ଉପରେ ମୁଣ୍ଡ ପିଟି ଦେଇଛନ୍ତି ... ରକ୍ତ ବହି ଆସିଛି ।

'ପଦରଜ' ଗଳ୍ପରେ ଗଳ୍ପର ନାୟକ ଅଦୃଷ୍ଟବାଦକୁ ସ୍ୱୀକାର କରିଛନ୍ତି । ସଂସାରର ଯେକୌଣସି ଲୋକ ପ୍ରତି ଏହା ପ୍ରଯୁଜ୍ୟ ବୋଲି କହିଛନ୍ତି ।

କ୍ଷମାସାଗର ଗଳ୍ପର ନାୟକ । ସେ ପଞ୍ଜାବର ଇସଲାମିଆ କଲେଜରେ ପଢୁଥିଲାବେଳେ ମମତାଜ ପ୍ରେମରେ ପଡ଼ିଥିଲେ । ଫଳରେ କଲେଜରୁ ତାଙ୍କୁ ବହିଷ୍କାର କରାଗଲା । ମମତାଜର ପିତା ମଧ୍ୟ ମମତାଜକୁ ଘରୁ ବାହାର କରିଦିଅନ୍ତି । କ୍ଷମାସାଗର ପାଗଳ ହୋଇଯାଇଛନ୍ତି । ବଦ୍ରିନପ୍ୟାରା ନାମକ ଛୋଟ ସହରରେ ଥିବା ପାଗଳ ଡାକ୍ତରଖାନାରେ ଭର୍ତ୍ତି ହୋଇଛନ୍ତି । ସେଠାରେ ମଧ୍ୟ ନିସ୍ତାର ନାହିଁ । କେତେକ ମୁସଲମାନ ଗୁଣ୍ଡା ଆକ୍ରମଣରେ ସେ ଜ୍ଞାନଶୂନ୍ୟ

ହୋଇପଡ଼ିଛନ୍ତି । ଲାହୋର ଡାକ୍ତରଖାନାର ପ୍ରଧାନ ନର୍ସଙ୍କ ସେବା ଫଳରେ କ୍ରମଶଃ ସୁସ୍ଥ ହୋଇଛନ୍ତି । ତାଙ୍କ ପ୍ରଧାନ ନର୍ସଙ୍କ ନାମ ମିନତି । ସେ କ୍ଷମାସାଗରକୁ ଜଳବାୟୁ ପରିବର୍ତ୍ତନପାଇଁ ଆସାମ ନେଇଯାଇଛନ୍ତି । ସେଠି ମିନତିଙ୍କର ପରିଚୟ ମିଳିଛି ।

ବିଶ୍ୱବାସୀଙ୍କ ପଦରଜରେ ଦୁଇ ଯୁଗଳ ପ୍ରାଣ ମିଳିତ ହୋଇଛି ।

'କେରଳ କାକଳି' ଗଳ୍ପରେ ଟାଉଟରମାନଙ୍କଦ୍ୱାରା କିପରି ଗ୍ରାମ୍ୟ ପରିବେଶ ନଷ୍ଟ ହୋଇଯାଉଛି, ତାହା ଲେଖକ ପ୍ରକାଶ କରିଛନ୍ତି ।

ଗଳ୍ପର ନାୟକ ଗ୍ରାମରେ ଥିବା ପୈତୃକ ବିଲରୁ ଭାଗ ଧାନ ଆଣିବାକୁ ଯାଇଛନ୍ତି । ମାତ୍ର ଟାଉଟରମାନେ ଆସି ତାଙ୍କ ପାଖରେ ପହଞ୍ଚିଛନ୍ତି । ନିରାକାରବାବୁ ମଦ ଖାଇ କହିଛନ୍ତି ଯେ ସେ କାଣିଚାଏ ବି ବିଲରୁ ପାଇବେ ନାହିଁ । ଗଞ୍ଜୋଡ଼ ଗୁଡ଼ିଆ ଭୋଜନି ମଧ ସେହି କଥା କହିଛି । ମାଳୀବଂଶର ଶିବ ସେବକ ନୀଳାମ୍ବର ମଧ ତାଙ୍କୁ ଭେଟି ପରିହାସ କରି ପଚାରିଛନ୍ତି – ''ଚାଷୀମାନେ କେତେ ଦେବେ ବୋଲି କହୁଛନ୍ତି ?''

ମନ୍ତ୍ରୀଙ୍କ ସେକ୍ରେଟେରୀ ହରିବାବୁ ମଧ ସେଠାରେ ପହଞ୍ଚି ସାଫ୍ ସାଫ୍ ଶୁଣାଇ ଦେଇଛନ୍ତି ଯେ – ''ଧାନ ଚାଉଳ କିଛି ମିଳିବ ନାହିଁ । ଗରିବ ଚାଷୀ ଖାଇବାକୁ ପାଉ ନାହାନ୍ତି, ଆଉ କଅଣ ଦେବେ ?''

ହରିବାବୁ ମଧ କେରଳ କଥା ଉଠାଇ କହିଛନ୍ତି ଯେ କେରଳରେ ଚାଷୀମାନେ ଯେପରି ଦେଉ ନାହାନ୍ତି, ଏଠି ବି ସେଇଆ ହେବ ।

ତିନି ଜଣ ଟାଉଟରଙ୍କ ଠାରୁ ଏକା କଥା ଶୁଣି ଚାଷୀଙ୍କ ଠାରୁ ଭାଗ ଧାନ ପାଇବା ଆଶା ଗଳ୍ପର ନାୟକଙ୍କର ମଉଳି ଯାଇଛି । ସହଧର୍ମିଣୀ ମଧ ଫେରିଯିବାକୁ ଉଦ୍ୟତ ହୋଇଛନ୍ତି । ଶେଷକୁ ପୁରୁଣା ଚାଷୀ ଚୈତନ୍ୟ ଉଠି କହିଛନ୍ତି – ''ରଖ ହରିବାବୁ, ତମ କେରଳ କଥା । ତମେ କିଏ ଆମକୁ କହିବ ବାବୁଙ୍କ ନ୍ୟାଯ୍ୟ ଫସଲ ନ ଦେବାପାଇଁ । × × × ଆମେ ଧର୍ମକୁ ମାନିବୁ । ଆମେ ଶଗଡ଼ରେ ଧାନ ଚାଉଳ ବୋଝେଇ କରି ନେଇଆସୁଛୁ ।''

ଗଳ୍ପର ନାୟକ ତାଙ୍କ ପ୍ରାପ୍ୟ ଧାନ ପାଇଛନ୍ତି । କେରଳ କାକଳି ବୃଥା ହୋଇଛି ।

'ଅସମୟ' ଗଳ୍ପରେ ଲେଖକ ମଶାଣି ଭୂମିର ଚିତ୍ର ପ୍ରଦାନ କରିଛନ୍ତି ।

''ପ୍ରହେଳିକାମୟ ଜୀବନର ଅନ୍ତିମ ପରିଣତି ଏ ଚିତାଗ୍ନି । ସୁଖ ଦୁଃଖ, ଯଶ, ପାପ ପୁଣ୍ୟର କୋଟି କୋଟି ସନ୍ଦର୍ପ ଅଭିଯାନ କ୍ଷଣିକ ଭିତରେ ରୂପାନ୍ତରିତ ହୁଏ ଏହି ଚିତାର ଗୋଟିଏ ମାତ୍ର ସ୍ଫୁଲିଙ୍ଗରେ । ସେଠାରେ ହତାଶା ନାହିଁ, ଯନ୍ତ୍ରଣା ନାହିଁ, କ୍ଷୋଭ ନାହିଁ । କେବଳ ରହିଯାଏ ଅନନ୍ତ ଶୂନ୍ୟତା, ଅସୀମ ରିକ୍ତତା ।''

ଶବ ଦାହ କରିବାକୁ ଆସିଥିବା ଲୋକଙ୍କ ସାଙ୍ଗରେ ଆସିଥିଲା ବନମାଳୀ । ବୟସ ବାର କି ତେର । ବର୍ଷା ହେବାରୁ ରାମ ଦାସର କୁଡ଼ିଆରେ ଆଶ୍ରା ନେଲା ।

ଦେଖା ହେଲା ତା'ର ଝିଅ – ଅବଳି ସହିତ । ଅବଳି ପାଠ ପଢୁ ନ ଥିବାରୁ ଦୁଃଖ କଲା । ପାଠ ପଢ଼େଇଦେବ ବୋଲି କହିଲା । ତିନି ଥର ବି ଆସିଛି ଅବଳିକୁ ପଢ଼େଇବାକୁ । ଶେଷରେ ସେହି ବନମାଳୀ ଆଖି ବୁଜି ଦେଇଛି । ଆଉ ସେହି ମଶାଣିକୁ ଆସିଛି ପୋଡ଼ା ହେବାପାଇଁ ।

ଅବଳିର ମନ ଗୋଳେଇ ଘାଣ୍ଟି ହୋଇଛି । ବାପର ପାଟି ଶୁଭିଛି – ''ହରି ହରି, ପିଲାଟା ମଶାଣିକୁ ଆସୁଥିଲା ... ମୁଁ ଜାଣେ ପରା ... ହରି ହେ, ସେ ଆଜି ଆଖି ବୁଜି ଦେଲା ।''

ଅସମୟରେ ଆସି ବନମାଳୀ ଆଖି ବୁଜିଛି ।

ସଂକଳନର ଶେଷ ଗଳ୍ପ ହେଲା 'ମାଟିଆ ବୁରୁଜ' । ୧୯୪୬ ମସିହା ଅଗଷ୍ଟ ମାସର ଶେଷ ତାରିଖ । କଲିକତାରେ ହିନ୍ଦୁ ମୁସଲମାନ ହାଣକାଟ ଆରମ୍ଭ ହୋଇ ଯାଇଥାଏ । ମାଟିଆ ବୁରୁଜରେ କୁଲିବସ୍ତିରେ ଥିଲେ ପାଞ୍ଚ ଶହ ଓଡ଼ିଆ କୁଲି । ସେମାନଙ୍କୁ ଲିଡାମିଆଁ ଅଭୟ ଦେଇଥିଲା । ତା'ରି କଥାରେ ପଡ଼ି ପାଞ୍ଚ ଶହ ହିନ୍ଦୁ କୁଲି ଧାଡ଼ି ଧାଡ଼ି ହୋଇ ବସି ପଡ଼ିଥିଲେ । ତାଙ୍କୁ ବ୍ୟୂହରେ ପକାଇ ଚାରିପଟେ ବେଢ଼ି ଯାଇଥିଲେ ଶହେ ପଠାଣ । ହାତରେ ତାଙ୍କର ଖଣ୍ଡା, ଛୁରି, ବର୍ଛା ଆଉ ଫାର୍ଶା ... ପାଞ୍ଚଶ କୁଲି ମୁର୍ଦ୍ଦାର ପାଲଟି ଯାଇଛନ୍ତି ।

୧୯୪୬ ମସିହା ସାମ୍ପ୍ରଦାୟିକତା ବିଭୀଷିକା ଜୀବନ୍ତ ରୂପ ପାଇଛି 'ମାଟିଆ ବୁରୁଜ' ଗଳ୍ପରେ ।

ଲବ୍‌ଧପ୍ରତିଷ୍ଠ ସାହିତ୍ୟିକ ଚିନ୍ତାମଣି ଆଚାର୍ଯ୍ୟ ଏହି ଦଶଟି ଗଳ୍ପଦ୍ୱାରା ଓଡ଼ିଆ ସାହିତ୍ୟକୁ 'ଜୟଶ୍ରୀ' ଯୁକ୍ତ କରିଥିବାରୁ ଗାଳ୍ପିକଙ୍କୁ ଅଭିନନ୍ଦନ ଜଣାଇଛନ୍ତି ।

**ଜୟ ଶଙ୍ଖ**

ଏହାର ପ୍ରଥମ ପ୍ରକାଶ କାଳ ୧୯୫୦ ମସିହା । ଏଥିରେ ଏଗାରଟି ଗଳ୍ପ ସନ୍ନିବେଶିତ ହୋଇଛି ।

'ଜୟ ଶଙ୍ଖ' ସଂକଳନର ପ୍ରଥମ ଗଳ୍ପ ହେଉଛି 'ଆଲୋକ ନୁହେଁ ଶିଖା' । ଗଳ୍ପର ନାୟିକା ଭବାନୀ । ମୌଳିକ ଶିକ୍ଷା କୁଟୀର ପ୍ରତିଷ୍ଠା କରିଛନ୍ତି । ଗଳ୍ପର ନାୟକଙ୍କୁ ପଚାରିଛନ୍ତି –

''ସ୍ୱାମୀ ନ ଥିଲେ ନାରୀର କ'ଣ ପରିତ୍ରାଣ ନାହିଁ ?'' ନାୟକ ଉତ୍ତର ଦେଇଛନ୍ତି – ''ନାରୀର ଅବଲମ୍ବନ ସ୍ୱାମୀ । ସେ ଥିଲେ ହାତର କବଚ ଟାଣ ଥାଏ । ସହଜରେ ଭୂତପ୍ରେତ ତା' ଚାରିପଟେ ମେଳି ବାନ୍ଧନ୍ତି ନାହିଁ । ଏହି ରକ୍ଷାକବଚ ଉପହାସର କଥା ନୁହେଁ ।''

ଭବାନୀ ଆଉ ନାୟକ କୁମାରଙ୍କର ମିଳନ ହୋଇଛି । ଗଳ୍ପର ନାୟକଙ୍କ ଭ୍ରମ ଦୂର ହୋଇଛି । କହିଉଠିଛନ୍ତି – ''ଭବାନୀ ! ତୁମେ କେବଳ ଆଲୋକ ନୁହଁ, ଶିଖା ।''

'ବିସର୍ଜନ' ଗଳ୍ପଟି ଆକାଶବାଣୀରେ ପ୍ରଥମେ ପ୍ରଚାରିତ ହୋଇଥିଲା । ଗୋଟିଏ ଭିକ୍ଷା ମାଗୁଥିବା ବାଳିକା ଯୌବନପ୍ରାପ୍ତି ପରେ ସମ୍ରାଟ୍ ବସୁଭୂମାଙ୍କ ଅନ୍ତଃପୁରର ରକ୍ଷିତା ହୋଇଛି । ତା'ରି ପରାମର୍ଶରେ ରାଜ୍ୟ ଶାସନ ଚାଲିଛି । ବୀରପୁରୁଷମାନଙ୍କୁ ସମ୍ରାଟ୍ ବିଷ ଦୃଷ୍ଟିରେ ଦେଖୁଛନ୍ତି । ସେମାନଙ୍କୁ ହତ୍ୟା କରାଯାଇଛି । ରାଜାଙ୍କୁ ହତ୍ୟା କରିବାପାଇଁ ଷଡ଼୍‌ଯନ୍ତ୍ର ହୋଇଛି । ତାଙ୍କୁ ହତ୍ୟା କରିବା ଭାର ସୁମିତ୍ରାଙ୍କୁ ଦିଆଯାଇଛି । ସୁମିତ୍ରା 'ନିର୍ମଳା' ଛଦ୍ମନାମରେ ବସୁଭୂମାଙ୍କର ପରିଚାରିକା ହୋଇ ତାଙ୍କୁ ନିର୍ଦ୍ଦିଷ୍ଟ ଦିନରେ ହତ୍ୟା କରିବାପାଇଁ ପ୍ରସ୍ତୁତ ହୋଇଛନ୍ତି । ସୁମିତ୍ରା ସମ୍ରାଟ୍‌ଙ୍କୁ ହତ୍ୟା କରିବାକୁ ପ୍ରତିଜ୍ଞାବଦ୍ଧ ଥିଲେ ମଧ ସମ୍ରାଟ୍‌ଙ୍କୁ ଭଲପାଇ ବସିଛନ୍ତି । ସମ୍ରାଟ୍ ମଧ୍ୟ ସୁମିତ୍ରାଙ୍କ ମଣିବନ୍ଧ ଉପରେ ପବିତ୍ର ରାଖୀ ବାନ୍ଧିଛନ୍ତି । ରାଖୀବନ୍ଧନ ଶେଷ ହେବା ସଙ୍ଗେ ସଙ୍ଗେ ଶେଷ ତୂର୍ଯ୍ୟନାଦ ହୋଇଛି । ସୁମିତ୍ରା ନିଜ ବକ୍ଷରେ ଛୁରିକାଘାତ କରି ପ୍ରାସାଦ ବାହାରକୁ ଛୁରିକା ନିକ୍ଷେପ କରିଛନ୍ତି । ସମ୍ରାଟ୍‌ଙ୍କର ମୃତ୍ୟୁ ହୋଇଛି ଭାବି ଜନତା ଉଲ୍ଲସିତ ହୋଇଉଠିଛି । କିନ୍ତୁ ସମ୍ରାଟ୍ ବସୁଭୂମା ଉନ୍ମତ୍ତ ହୋଇ ସୁମିତ୍ରାଙ୍କର ନିଷ୍ପନ୍ଦ ଶରୀର ଉପରେ ଲୋଟିପଡ଼ି କହିଛନ୍ତି –

''ସୁମିତ୍ରା ଏ କଅଣ କଲ ? ନିଜକୁ ବିସର୍ଜନ ଦେଲ କାହିଁକି ? କୁହ ।''

ଗଳ୍ପରେ ଅଦୃଷ୍ଟର ଶକ୍ତି ହିଁ ପ୍ରତିପାଦିତ ହୋଇଛି ।

'ପୋତାଶ୍ରୟ' ଆଉ ଏକ ସୁନ୍ଦର ଗଳ୍ପ । ଗଳ୍ପର ନାୟକଙ୍କର ଡାକ୍ତରୀ ଦୋକାନଟିଏ ଅଛି । ସେ ହସପିଟାଲରେ ଅପରେସନ ହୋଇ କୋଡ଼ିଏଟି ଦିନ କଟାଇଥିଲେ । ସେଠାରେ ହାଡ଼ିଆ ନାମକ ଛୋଟ ପୁଅକୁ ଦେଖିଥିଲେ । ତା'ର ଗୋଡ଼ ଦୁଇଟି ସଢ଼ି ଯାଇଥିଲା । ଡାକ୍ତରମାନେ ତା'ର ପାଦ ଦୁଇଟି ଭଲ କରିବାପାଇଁ ଲାଗିପଡ଼ିଥିଲେ । ସେହି ୱାର୍ଡ଼ର ଜଣେ ସେବିକା – ପୁଲ୍ଲନଳିନୀ । ନିରାଶ୍ରୟ ଶିଶୁଟିର ସେବା ସେ ମାଆଭଳି କରୁଥିବା ସେ ଦେଖିଥିଲେ । ସମୟକ୍ରମେ ପୁଲ୍ଲନଳିନୀ ସଙ୍ଗେ ଗଳ୍ପର ନାୟକଙ୍କ ଦେଖା ହୋଇଛି । ପୁଲ୍ଲନଳିନୀ ଏଥିମଧ୍ୟରେ ବିବାହ କରି ଏକ ପୁତ୍ରର ଜନନୀ ହୋଇଥିବା ଶୁଣିଛନ୍ତି । ଗାଳ୍ପିକଙ୍କର ମନ୍ତବ୍ୟ – ''ସ୍ୱାମୀ, ଘର, ସଂସାର ସ୍ତ୍ରୀର କାମ୍ୟ । ଏସବୁ ଭିତରେ ରହି ସେବିକା ଭାବରେ ନାରୀ ଯଦି ଦୁଃଖୀ ମାନବର ସେବା ଯତ୍ନ କରିପାରେ, ତେବେ ତା'ର ଜନ୍ମ ସାର୍ଥକ ।''

ଗାଁ-ଗହଳିରେ ତରୁଣୀମାନେ ଠାକୁର ପ୍ରସାଦ ଖାଇ 'ମିତ' ବା 'ବଉଳ' ବସିବା ପ୍ରଥା ପ୍ରଚଳିତ ଅଛି । 'ମାଧବୀର ରତିବିଳାପ' ଗଳ୍ପରେ ସେବତୀ ଓ ମାଧବୀ ଦୁହେଁ କ୍ଷୀରଚୋରା ଗୋପୀନାଥଙ୍କର ରସାବଳୀ ଭୋଗ ଖାଇ ମିତ ବସିଛନ୍ତି ।

ପୁଣି ସଞ୍ଜବେଳେ ପଲ୍ଲୀର ଚାରି ଜଣ ଯୁବତୀ ଏକ ପ୍ରାଣ ଏକ ମନ ହୋଇ ସଞ୍ଜବତି ଧରି ତୁଳସୀ ଚଉରା ପ୍ରଦକ୍ଷିଣ କରିବା ଏବଂ ସଞ୍ଜବତି ଦେବାର ବର୍ଣ୍ଣନା ଗଳ୍ପରେ ମିଳେ ।

ନାରୀ ବେଳେ ବେଳେ ଅବିବାହିତା ହୋଇ ରହିବାକୁ ଚାହେଁ । ସ୍ୱୟଂଚାଳିତା ହେବାକୁ ଭଲ ପାଏ । ସେହିପରି ଗୋଟିଏ ଘଟଣା 'ଅଗଲ ତୁଳସୀ' ଗଳ୍ପରେ ବର୍ଣ୍ଣିତ ।

ଗଳ୍ପର ନାୟିକା ସୁମିତ୍ରା । ବିବାହ କରି ନାହାନ୍ତି । କିନ୍ତୁ ସେ ତାଙ୍କ ଜୀବନର ବ୍ୟର୍ଥତା ମର୍ମେ ମର୍ମେ ଅନୁଭବ କରିଛନ୍ତି । ଜୀବନଟା ବାଟ ବଣା ହୋଇଗଲା ପରି ଲାଗିଛି । ତାଙ୍କର ଶେଷ ସମ୍ବଳ ଜନ୍ ମଧ ପରପାରିକୁ ଚାଲିଯାଇଛି । ସୁମିତ୍ରା ଚାହିଁଛନ୍ତି ତାଙ୍କର ଭଉଣୀମାନଙ୍କୁ କହିଯିବାକୁ – ''ଭଗବାନ୍ ନାରୀକୁ ଜନନୀ ଭାବରେ ରୂପ ଦେଇଛନ୍ତି । ସେହି ରୂପ ହିଁ ଯଥାର୍ଥ ରୂପ । କୋଳରେ ପିଲାଟିଏ ଖେଳାଇ ତା'ର ଗଣ୍ଡରେ ଚୁମ୍ବନ ଦେବାରେ ନାରୀ ଜନ୍ମର ସାର୍ଥକତା ।''

ସୁମିତ୍ରା ପୁଣି କହିଛନ୍ତି – ''କିନ୍ତୁ ମୁଁ ଯେଉଁ ଭୁଲ କରିଛି, ଅନ୍ୟମାନେ ଯେପରି ନ କରନ୍ତି ।''

ସଂକଳନର ଶେଷ ଗଳ୍ପ ହେଉଛି 'ଧର୍ମତ୍ୟାଗିନୀ' । ଏଥିରେ ଶୋଭା ଖ୍ରୀଷ୍ଟିୟାନ ହେଲେ ମଧ ଜଣେ ହିନ୍ଦୁକୁ ଭଲ ପାଇଛି ଓ ବିବାହ କରିବ ବୋଲି ବାପାଙ୍କୁ କହିଛି । ବାପା ସନ୍ତୋଷ କୁମାର ଝିଅକୁ ଅଲକ୍ଷଣୀ, କଳଙ୍କିନୀ ପ୍ରଭୃତି କହିଛନ୍ତି । ଶୋଭା ଉତ୍ତର ଦେଉଛି – ''ମୁଁ କିଛି ଭୁଲ୍ କରି ନାହିଁ । ମୋର ପୂର୍ବପୁରୁଷ ହିନ୍ଦୁ ଥିଲେ । ଆଜି ମୁଁ ଜଣେ ହିନ୍ଦୁକୁ ବିବାହ କରିବାକୁ ଯାଉଛି । ଏହା ଖୁବ୍ ବ୍ୟକ୍ତିଗତ । ଏଥିରେ ଆପତ୍ତି କରିବାର କଅଣ ଅଛି ?''

ପିତା ତାଙ୍କୁ ଆଘାତ କରିଥିଲେ । ଘରୁ ତଡ଼ି ଦେଇଥିଲେ । କେତେ ଦିନ ପରେ ୱେଟିଙ୍ଗ ରୁମ୍‌ରେ ପିତାଙ୍କ ସହ ଦେଖା ହୋଇଛି । ମନ ଭିତରେ ତାଙ୍କର ଝଡ଼ ବହୁଥିଲା ।

ଗାଳ୍ପିକ ଦାର୍ଶନିକ ଦୃଷ୍ଟି ଦେଇ କହିଛନ୍ତି – ''ଏହି ଝଡ଼ ମଣିଷ ଭିତରେ ଅବିରତ ବହି ଚାଲିଛି, ମୃତ୍ୟୁ ହିଁ ଏକମାତ୍ର ଶାନ୍ତି ପାରାବାର ।''

ମୃତ୍ୟୁ ସମ୍ପର୍କରେ ଏହି ମହତ୍ ଧାରଣା ଗାଳ୍ପିକ ମରଣଶୀଳ ମାନବ ନିକଟରେ ପହଞ୍ଚାଇ ଦେଇଛନ୍ତି ।

**ଶୋଣିତ କାବ୍ୟ**

'ଶୋଣିତ କାବ୍ୟ' ଗଳ୍ପ ସଂକଳନଟି ୧୯୫୨ ମସିହାରେ ପ୍ରକାଶ ପାଇଥିଲା । ଲେଖକ 'ନିଜ କଥା ନୁହେଁ'ରେ ଲେଖିଛନ୍ତି – ''ସମଗ୍ର ଜଗତ ଓ ଗତିଶୀଳ ବିଚିତ୍ର

ଜୀବନ ମୋ ସୃଜନକଳାର ସାମଗ୍ରୀ । ସେଗୁଡ଼ିକ ନିଜ କଥା ନୁହେଁ, ଜୀବନର କଥା – ଜଗତର କଥା । କେବଳ ସେଥିରେ ରହିଛି ସେହି ଦୃଷ୍ଟିଶକ୍ତିସମ୍ପନ୍ନ ଦୁଇଟି ଚକ୍ଷୁ ଓ ଅନୁଭୂତି-ପ୍ରବଣ ଗୋଟିଏ ହୃଦୟ ।''

ସଂକଳନର ପ୍ରଥମ ଗପଟି ହେଉଛି 'ଶୋଣିତ କାବ୍ୟ' । ପର୍ବତ ଶିଖର ଉପରେ ଥିବା ପାରଳାଖେମୁଣ୍ଡି ଗଜପତି ମହାବିଦ୍ୟାଳୟର ଅଧ୍ୟାପକ ହେଉଛନ୍ତି ଶଶାଙ୍କ । ସେହି ମହାବିଦ୍ୟାଳୟର କୋଠା ତିଆରି ହେଉଥିଲା ବେଳର କଥା ଶୁଣିବାକୁ ପାଇଛନ୍ତି – ସେତେବେଳେ ସେଠାରେ କାମ କରୁଥିବା ଶ୍ରମିକ ଲଛନାଠାରୁ । ଦୂର ଗାଁ'ରୁ ଲଛନା ଆସିଥିଲା ସେଠି କାମ କରିବାକୁ । ସାଙ୍ଗରେ ଥିଲେ ବୁଢ଼ା ବାପା ଆଉ ସ୍ତ୍ରୀ ନେତ । ନେତ ଥିଲା ଗରିବକୁଳର ଲକ୍ଷ୍ମୀପ୍ରତିମା । ସେ ବି କାମ କରିଛି କୋଠା ତୋଳାରେ । ତା' ଉପରେ ଆଖି ପଡ଼ିଲେ ଆଉ ଫେରେ ନାହିଁ । ଜର୍ମାନୀ ଇଞ୍ଜିନିୟର ବାଇନୋକୁଲାରରେ ଦେଖିଛନ୍ତି ନେତକୁ । ପାଟିରୁ ବାହାରିଛି – 'ଇଣ୍ଡିଆନ୍ ବିଉଟି' । ସର୍ଦ୍ଦାରକୁ ଲଗେଇଛନ୍ତି ନେତକୁ ମନେଇବାକୁ । ନେତ ରାଜି ହୋଇନି । ଶେଷରେ ନେତ ନିଜର ପ୍ରାଣ ନେଇଛି । ଲଛନା ଆଉ ସହିପାରି ନାହିଁ । ବଡ଼ ପଥର ଖଣ୍ଡେ ଟେକି ସର୍ଦ୍ଦାର ମୁଣ୍ଡକୁ ଛେଚି ଦେଇଚି । ନେତର ମୃତଦେହକୁ ମହାବିଦ୍ୟାଳୟ ପାଖ ବଣ ବୁଦାରେ ପୋତି ଦେଇଛି ।

ରକ୍ତ ଓ ଅଶ୍ରୁର ଲୀଳାମୟ ଅତୀତକୁ ଚାହିଁରହନ୍ତି ଅଧ୍ୟାପକ ଶଶାଙ୍କ ।

'ଉରୁଭଙ୍ଗ' ଆଉ ଏକ ସୁନ୍ଦର ଗଳ୍ପ । ଶତଦଳ ଗାଁର ଚୈତନ ରାଉଳ ଜଣେ ବଡ଼ ଚାଷୀ । ସେ ତା'ର ଝିଅ ସଜନୀ ସଙ୍ଗେ ରାମର ବାହାଘର ଠିକ୍ କରିଚି । ବିବାହ ଭୋଜିରେ ଯୋଗ ଦେବାପାଇଁ ନିମନ୍ତ୍ରଣ କରିଛି ଲାଟସାହେବ, ଉପମନ୍ତ୍ରୀ, ମାଜିଷ୍ଟ୍ରେଟ୍ ପ୍ରଭୃତିଙ୍କୁ । ନିମନ୍ତ୍ରଣ ପତ୍ର ମିଳିବାପରେ ସେକ୍ରେଟେରିଏଟରେ ଚହଳ ପଡ଼ିଯାଇଛି । ଦାରୋଗାବାବୁ ଥାନାକୁ ଚୈତନ ରାଉଳଙ୍କୁ ଡକାଇଛନ୍ତି । ଲାଟ, ମେଜେଷ୍ଟର ପ୍ରଭୃତି ବିଭାଗୀୟ କର୍ମଚାରୀମାନଙ୍କର ବାହାପୁଆଣିରେ ଘରକୁ ଯାଉଥିଲାବେଳେ ତାଙ୍କ ଘରକୁ କାହିଁକି ନ ଆସିବେ ବୋଲି ପ୍ରଶ୍ନ କରିଛି । ଦାରୋଗା ଉତ୍ତର ଦେଇପାରି ନାହାନ୍ତି । ତେବେ ତାକୁ ବୁଝେଇ ଶୁଝେଇ ଛାଡ଼ିଦେବାକୁ ଉପରୁ ହୁକୁମ ଆସିଥିବା କଥା ଜଣାଇଛନ୍ତି । ଫଳରେ ଫାଣ୍ଡି ଭିତରୁ ସମସ୍ତେ ବାହାରକୁ ଆସିଛନ୍ତି । ଭୀମ ଦୁଃଶାସନର ଉରୁ ଭାଙ୍ଗିଲା ଭଳି କଥା ହେଲା ବୋଲି କେହି ମନ୍ତବ୍ୟ ଦେଇଛନ୍ତି । ରାଉଳ ତାହା ବୁଝିପାରି ନାହିଁ । ଲୋକଙ୍କ ଉରୁକୁ ଭାଙ୍ଗି ପୁଣି ଠିଆ ହେବାକୁ କହିବା ସଙ୍ଗେ ସମାନ ବୋଲି ତାଙ୍କୁ ବୁଝେଇ ଦିଆଯାଇଛି ।

ବାହାଘର ଭୋଜିକୁ ଅବଶ୍ୟ ହାକିମ-ହୁକୁମାଙ୍କର ପାଦଧୂଳି ପଡ଼ିନି, ତେବେ ଉରୁଭଙ୍ଗ ଉପମା କଥାଟା ଗ୍ରାମବାସୀମାନେ ଭୁଲି ନାହାନ୍ତି !

'ଶେଷ ହୋଇ ବି ଅଶେଷ' ଗଳ୍ପରେ ନରେନ୍ଦ୍ରଙ୍କର ଶବାଧାର ଯାଉଥିବା ବେଳେ କନ୍ଦଳ ସୃଷ୍ଟି ହୋଇଥିବା ବର୍ଣ୍ଣିତ ।

ଗଞ୍ଜାସାହି ଆଉ ମଞ୍ଜାସାହି ଭିତରେ ବହୁକାଳୁ ମନୋମାଳିନ୍ୟ ଲାଗିରହିଛି । ସେ ସାହିର ନବପରିଣୀତା ବୋହୂ ଏ ସାହି ଭିତରେ ଯାଏ ନାହିଁ । ଏ ସାହିର ସେମିତି ରାଧାମୋହନ ଜୀଉ ସେ ସାହି ଦାଣ୍ଡରେ ବିଜେ କରନ୍ତି ନାହିଁ । ଗଞ୍ଜାସାହିର ନରେନ୍ଦ୍ର ସାହୁଙ୍କର ମୃତ୍ୟୁ ହୋଇଛି । ତାଙ୍କ ଶବାଧାର ଶ୍ମଶାନକୁ ନିଆଯାଇଛି । ଛକ ପାଖରେ ନରେନ୍ଦ୍ରଙ୍କ ବଡ଼ପୁଅ ମଞ୍ଜା ସାହି ଭିତରେ ଶବ ଯିବାକୁ ବାରଣ କରିଛି । ମାତ୍ର ଲୋକେ କହିଛନ୍ତି ଯେ ମୃତ୍ୟୁରେ ଶତ୍ରୁ ସୁଦ୍ଧା ଆହା କରେ । ବଞ୍ଚିଥିବାବେଳେ ସିନା ରାଗ ଥାଏ । ଶବ ଚାଲିଛି ମଞ୍ଜା ସାହି ଦେଇ । କିନ୍ତୁ ସାହି ଭିତରେ ଶବ ପଶିଛି କି ନାହିଁ, ଚାରିଆଡ଼ୁ ଟେକାପଥର ମାଡ଼ ହୋଇଛି । ଶବବାହକମାନେ ପକାଇ ଯାଇଛନ୍ତି । କୀର୍ତ୍ତନ ବନ୍ଦ ହୋଇଛି । ଶେଷକୁ ଚିତା ଉପରେ ଶୋଇବା ପରିବର୍ତ୍ତେ ନରେନ୍ଦ୍ରଙ୍କ ଶବ ପୋତା ହୋଇଛି ।

ଲେଖକ ଦର୍ଶାଇଛନ୍ତି ଯେ ଶବ ପ୍ରତି ସମ୍ମାନ ମଧ୍ୟ ଏ ଯୁଗରେ ସମ୍ଭବ ହେଲା ନାହିଁ । ଜୀବନରେ କଳିତକରାଳ ତ ଲାଗିରହିଛି, ସବୁ ଶେଷ ପରେ ବି ମଣିଷର ଅଶେଷ ଦୁର୍ଗତି !

'ଭୟାର୍ତ୍ତ ମାନବ' ଗଳ୍ପରେ ଏକ ମୁସଲମାନ ଯାତ୍ରୀର ମାନସିକ ଅବସ୍ଥା ଅତି ସୁନ୍ଦରଭାବେ ଗାଳ୍ପିକ ବର୍ଣ୍ଣନା କରିଛନ୍ତି । ମୁସଲମାନ ଯାତ୍ରୀ ଜଣକ ମିସ୍ତ୍ରୀ । ଭୁବନେଶ୍ୱର ଆସେମ୍ବ୍ଲି ଭିତରେ ଫିଟିଂ କାମପାଇଁ ଭୁବନେଶ୍ୱରକୁ ଟ୍ରେନ୍‌ରେ ଆସିବା କଥା । ଷ୍ଟେସନରେ ପହଞ୍ଚିଲାବେଳକୁ ମେଲ୍ ଗାଡ଼ି ଛାଡ଼ିଦେଇଛି । ଦଉଡ଼ି ଦଉଡ଼ି ସେ ଗୋଟିଏ ଡବାରେ ଦ୍ୱାର ପାଖ ଲୁହାକୁ ଧରି ପଶିବାପାଇଁ ଚେଷ୍ଟା କରିଛନ୍ତି । ମାତ୍ର ଗୋଟିଏ ଶକ୍ତ ହାତ ତାଙ୍କ ହାତ ଉପରକୁ ଆଘାତ ଦେଇଛି । ସେ ଓହ୍ଲେଇଯିବା ଅବସ୍ଥାରେ ନ ଥିବାରୁ ନିଶ୍ଚଳ ଭାବରେ ଫୁଟ ବୋର୍ଡ଼ରେ ଓହଳି ରହିଛନ୍ତି । ମୁସଲମାନ ବୋଲି ତାଙ୍କୁ ଡବାରେ ପ୍ରବେଶ କରାଇ ଦିଆଯାଇ ନାହିଁ । ଆଗ ଷ୍ଟପେଜ୍‌ରେ ଅନ୍ୟ ଡବାର ଦ୍ୱାରଦେଶରେ ସେ ପହଞ୍ଚିଛନ୍ତି । ସେ ଡବାର ଲୋକେ ତାଙ୍କୁ ଭିତରକୁ ଟେକି ନେଇଛନ୍ତି । ଦେହ ହାତ ଥରୁଥିବାରୁ ତାଙ୍କ ଦେହକୁ କେହି ଜଣେ କମଳରେ ଘୋଡ଼ାଇ ଦେଇଛନ୍ତି । ମାଥୁର ନାମକ ଜଣେ ଯାତ୍ରୀ ଗରମ କଫି ପିଇବାକୁ ଦେଇଛନ୍ତି । ସେ ଡବାରେ ଥିବା ଜଣେ ତରୁଣ ସୈନିକ ତାଙ୍କ ଗୋଡ଼ ଦୁଇଟିକୁ ମର୍ଦ୍ଦନ କରିଛନ୍ତି । ମୁସଲମାନ ଯାତ୍ରୀଜଣକ ସୁସ୍ଥ ହୋଇଛନ୍ତି । କହିଉଠିଛନ୍ତି – ''ଖୋଦା ! ଦୁନିଆରେ ଏପରି ଦୟାଳୁ ମଣିଷ ଅଛନ୍ତି !''

ସମାଜରେ ମଣିଷ ନାରୀକୁ ସବୁବେଳେ ଭଗିନୀ ବା ଜନନୀ ଭାବରେ ଦେଖେ ନାହିଁ । ସେ ଦେଖେ ଅନ୍ୟ ଦୃଷ୍ଟିରେ । ଉପଭୋଗ ଲାଳସା ଦାଉ ଦାଉ ହୋଇ ଜଳେ । 'ଗାଙ୍ଗେୟ ନୀର' ଗଳ୍ପରେ ବିଭାଦେବୀଙ୍କ କଥାରେ ତାହା ସୂଚିତ ହୋଇଛି ।

ବିଭାଦେବୀ କହିଛନ୍ତି ଯେ ସେ ବ୍ରତ ଧାରଣ କରିଥିଲେ ସେବା କରିବାପାଇଁ । ମାତ୍ର କୁଳବଧୂ ବାହାରକୁ ଆସିଲେ ଭାଇବନ୍ଧୁ ଉନ୍ମାଦଗ୍ରସ୍ତ ହୋଇପଡ଼ନ୍ତି । ମୁହଁକୁ ଚାହିଁ ରହିବା, ଅଶ୍ଳୀଳ ଇଙ୍ଗିତ ଦେବା ପ୍ରଭୃତି ଆଧୁନିକ ଯୁବକମାନଙ୍କର ବୀରଧର୍ମ ହେଲାଣି !

ଗଳ୍ପର ନାୟକ ମଧ ଏଥିରେ ଏକମତ ହୋଇଛନ୍ତି । ତାଙ୍କ ଭାଷାରେ – ''ଆଜି ଦେଶରେ ଗାଙ୍ଗେୟ ନୀର ନର୍ଦ୍ଦମାକୁ ମିଶିଲାଣି । ଏହାର ପବିତ୍ରତା ଆଉ ନାହିଁ ।''

**ଏ କି ଦେବାୟତନ**

'ରାୟ ରଚନାବଳୀ'ର ଶେଷ ଗଳ୍ପ ସଂକଳନଟି ହେଲା 'ଏ କି ଦେବାୟତନ' । ଏହା ୧୯୫୪ ମସିହାରେ ପ୍ରକାଶିତ ହୋଇଥିଲା । ଏଥିରେ ନଅ ଗୋଟି ଗଳ୍ପ ସନ୍ନିବେଶିତ ହୋଇଛି । ପ୍ରଥମ ଗଳ୍ପଟି ହେଲା, 'ଏ କି ଦେବାୟତନ' ।

ଗଳ୍ପର ନାୟକ ପରମେଶ୍ୱର । ସେ ବୃଦ୍ଧ । ଆଉ କାଶ ରୋଗରେ ପୀଡ଼ିତ । ସେ ଭଗବାନ୍‌ଙ୍କ ଉପରେ ଦୃଢ଼ ଆସ୍ଥା ପ୍ରକଟ କରିଛନ୍ତି । ସେ କହିଛନ୍ତି –

''ହେ ଭଗବାନ୍ ! ଅଶାନ୍ତ ପାରାବାର ଉପରେ ମୋର ଜୀର୍ଣ୍ଣ ତରୀ ଖଣ୍ଡିକ ଯେ ଆଜିଯାଏ ଚଳେଇ ଆସିଲେ ସେଇ କର୍ଣ୍ଣଧାର – ହେଇଟି ମୋର ଆଗରେ । ମଙ୍ଗଧରା ନାବିକ ସେ କେଡ଼େ କୁଶଳୀ ସତେ ! ମତେ ଇଙ୍ଗିତ ଦେଇଛନ୍ତି – ବିଶ୍ରାମ ନେବାକୁ । ତା'ରି ପାଖରେ ଜୀବନର ସମସ୍ତ ଭୁଲ ତ୍ରୁଟି ମୁଁ ସ୍ୱୀକାର କରିନେଇଛି । ଆହା ! କି ଶାନ୍ତି ... କି ଆନନ୍ଦ !''

ଲେଖକ ଭଗବାନ୍‌ଙ୍କ ଅପାର ଶକ୍ତି ଉପଲବ୍‌ଧି କରିଛନ୍ତି ।

ପୁଣି ସେଇ ଗଳ୍ପରେ କଲେଜ ଅଧ୍ୟାପକ ମନୋଜ ଠିକ୍ ସମୟରେ ଉପରିସ୍ଥ ହରିହରବାବୁଙ୍କ ଭୋଜିସଭାରେ ଉପସ୍ଥିତ ହୋଇଛନ୍ତି । ନିୟତିର ଖେଳ ହିଁ ଗଳ୍ପର ପରିଣତିକୁ ଭିନ୍ନମୁଖୀ କରିଦେଇଛି । ମନୋଜ ଭୁଲ ବୁଝାମଣାରୁ ରକ୍ଷା ପାଇଛନ୍ତି । ସେତେବେଳେ ସେ ଉପଲବ୍‌ଧି କରିଛନ୍ତି ଯେ ସବୁ ସେଇ ଭଗବାନ୍‌ଙ୍କ ଇଚ୍ଛା ଯୋଗୁଁ ହେଉଛି । ମନୁଷ୍ୟ କେବଳ ନିମିତ୍ତ ମାତ୍ର ।

ଏଠାରେ ଲେଖକ ଅଦୃଷ୍ଟ ଶକ୍ତି ସମ୍ପର୍କରେ କହିଛନ୍ତି ।

'ଉଦୟ ଓ ଅସ୍ତ' ଏକ ପ୍ରଣୟ ଆଧାରିତ ଗଳ୍ପ । ଅତର୍କିତ ମୁହୂର୍ତ୍ତରେ କିଶୋର ଆସିଥିଲେ ପୂଜା ଘରକୁ । ସେ ଲାଜରେ ପୂଜାଙ୍କୁ ଚାହିଁପାରି ନାହାନ୍ତି । ପୂଜା ଖଣ୍ଡେ ନାଟକ ଲେଖିଦେବାକୁ ଅନୁରୋଧ କରିଛନ୍ତି । କିଶୋର ମଧ ରାଜି ହୋଇଛନ୍ତି କେବଳ ଗୋଟିଏ ସର୍ତ୍ତରେ – ତାଙ୍କର ନାମ ପ୍ରକାଶ କରାଯିବ ନାହିଁ ।

ପୂଜାଙ୍କର ବିବାହ ହୋଇଛି ପଙ୍କଜଙ୍କ ସହିତ । କିଶୋର ପାଇଛନ୍ତି ଧକ୍‌କା । ଭାଙ୍ଗି ପଡ଼ିଛନ୍ତି । ପଙ୍କଜଙ୍କର ବଦଳି ହୋଇଛି ଦୂର ଜାଗାକୁ । କର୍ମସ୍ଥଳୀକୁ ଯିବାକୁ ଜିନିଷ ବନ୍ଧାବନ୍ଧି ସରିଛି । ବିଦାୟ ପୂର୍ବରୁ ସମସ୍ତେ ଆସି ପୂଜା ଓ ପଙ୍କଜଙ୍କୁ ଭେଟିଛନ୍ତି ।

ଏକା କିଶୋର ଆସି ନାହାନ୍ତି । ପଙ୍କଜ ଯାଇଛନ୍ତି କିଶୋରଙ୍କୁ ଆଣିବାକୁ; କିନ୍ତୁ ତାଙ୍କୁ ପାଇ ନାହାନ୍ତି । କିଶୋର ଯେ ପୂଜାଙ୍କୁ ଏତେ ଭଲ ପାଆନ୍ତି, ତାହା ପଙ୍କଜ ଜାଣିପାରିଛନ୍ତି । ପତ୍ନୀ ପୂଜାଙ୍କୁ କହିଛନ୍ତି ସେହି ସ୍ଥାନରେ ରହି କିଶୋରଙ୍କର ଯତ୍ନ ନେବାକୁ ।

ପୂଜା ମଧ୍ୟ ରହିଛନ୍ତି । କିଶୋର ସୁସ୍ଥ ହୋଇଛନ୍ତି । ମାତ୍ର ସେ ବୁଝିଛନ୍ତି ଯେ ପୂଜା ତାଙ୍କର ହେବେ ନାହିଁ, କାରଣ ସେ ସାମାନ୍ୟ ଗୁଞ୍ଜାରୁଅ । ପୂଜା ହୃଦୟର ଦେବବିଗ୍ରହ ସେ ନୁହନ୍ତି, କିଶୋର ପୂଜାଙ୍କୁ ପଙ୍କଜଙ୍କ ପାଖକୁ ପଠାଇ ଦେଇଛନ୍ତି ।

କିଶୋରଙ୍କ ଜୀବନରେ ପୂଜାଙ୍କ ଉଦୟ ଓ ଅସ୍ତ ହୋଇଛି ।

'ମାଳା ବଦଳ' ଆଉ ଏକ ସାର୍ଥକ ଗଳ୍ପ । ଗଳ୍ପର ନାୟକ ପ୍ରେମାନନ୍ଦ । ଲାବଣ୍ୟ ସଙ୍ଗେ ତାଙ୍କର ପରିଚୟ ଥିଲା । ଲାବଣ୍ୟ ସ୍ୱପ୍ନ ଦେଖିଛି ଯେ ତା' ସହିତ ପ୍ରେମାନନ୍ଦ ଭାଇ ବେଦୀରେ ବସିବେ । ତାକୁ ବି ପ୍ରେମାନନ୍ଦ କଥା ଦେଇଥିଲେ –

''ଲାବ, ତୁମକୁ ମୁଁ କଥା ଦେଲି, ମୁଁ ତୁମକୁ ହୃଦୟର ରାଣୀ କରିବି ।''

କିନ୍ତୁ ପରେ ପ୍ରେମାନନ୍ଦଙ୍କର କୁଙ୍କୁମ ସହିତ ପରିଚୟ ହୋଇଛି । ନିଜେ ଲେଖିଥିବା ନାଟକରେ କୁଙ୍କୁମ ଅଭିନୟ କରି ପ୍ରଶଂସିତ ହୋଇଛନ୍ତି । ଶେଷରେ ଦୁହିଁଙ୍କର ବିବାହ ହୋଇଛି ।

ପ୍ରେମାନନ୍ଦ ଓ କୁଙ୍କୁମର ବିବାହର ମାତ୍ର ପାଞ୍ଚ ଘଣ୍ଟା ପରେ ଲାବଣ୍ୟ ସଙ୍ଗେ ତା' ବାପ ବାଛିଥିବା ପୁରୁଷ ସଙ୍ଗେ ବିବାହ ହୋଇଛି ।

ମାଳା ବଦଳ ହୋଇଛି ।

'ଦୁଇ ଧାରା' ଗଳ୍ପରେ ଜୀବନର ଦୁଇଟି ଧାରା ବିଷୟରେ ଗାଳ୍ପିକ ବର୍ଣ୍ଣନା କରିଛନ୍ତି । ନିର୍ମଳା ଓ ଉର୍ମିଳା ଦୁଇ ଭଉଣୀ । ନିର୍ମଳାର ବିବାହ ଦିନ ହିଁ ସାନଭଉଣୀ ଝାଡ଼ା ରୋଗରେ ଆକ୍ରାନ୍ତ ହୋଇଛି । ନିର୍ମଳାର ବାହାଘର ସରିଛି ; ମାତ୍ର ଆଠ ଘଣ୍ଟା ପରେ ଉର୍ମିଳା ମୃତ୍ୟୁ ମୁଖରେ ପଡ଼ିଛି ।

ଲେଖକଙ୍କର ଖେଦୋକ୍ତି – ''ଏକା ଗର୍ଭର ଦୁଇଟି ଧାରା । କିନ୍ତୁ ଗୋଟିଏ ଧାରା ଝରି ଚାଲିଲା ସ୍ୱାମୀ ପ୍ରେମର ଅନୁରାଗିଣୀ ହୋଇ । ଅନ୍ୟଟି ଗଡ଼ି ଗଲା ସବୁ ପ୍ରେମ, ସବୁ ସୋହାଗର ଅତୀତ ମଶାଣି ଭୂଇଁକୁ ।''

'ରାୟ ରଚନାବଳୀ' (ପ୍ରଥମ ଖଣ୍ଡ)ରେ ଉପରୋକ୍ତ ଆଠୋଟି ଗଳ୍ପ ସଂକଳନ ସ୍ଥାନିତ ହୋଇଛି । ଏହାଛଡ଼ା ଶ୍ରୀଯୁକ୍ତ ରାୟ ଆଉ କେତେକ କ୍ଷୁଦ୍ର ଗଳ୍ପ ସଂକଳନ ରଚନା କରିଛନ୍ତି । ସେଗୁଡ଼ିକ ହେଲା, 'ମନର ମୃଣାଳ (୧୯୫୨), ଆଦିପୁରୁଷ (୧୯୬୦), ମଧ୍ୟାହ୍ନର ମରୁପଥେ (୧୯୬୨), ପଙ୍କ ଚନ୍ଦନ (୧୯୬୩), ଜୀବନ ସଙ୍ଗୀତ (୧୯୬୫), ଦୁର୍ବଳ ଦେବାଳୟ (୧୯୭୦), ସୁନ୍ଦରର ଆବାହନ (୧୯୭୮), ମନ୍ୱନ୍ତରର ମାନବ (୧୯୮୮), ଅମୃତ (୧୯୮୯) ଓ ଭବବନ୍ଧନ' ।

**ମନର ମୃଣାଳ**

'ମନର ମୃଣାଳ' (୧୯୫୨) ଗଳ୍ପ ସଂକଳନରେ ଆଉ ଏକ 'କଳିଙ୍ଗ ଶିଳ୍ପ' ଶୀର୍ଷକ ଗଳ୍ପ ରହିଛି ।

ସୈକତ ଦୁରାନୀଙ୍କ ଝିଅ ମାଲଉନିସା କଳାର ଦେଶ ଉତ୍କଳର ଶିଳ୍ପ ଭାସ୍କର୍ଯ୍ୟରେ ମୁଗ୍ଧ ହୋଇ ଓଡ଼ିଶା ଆସିଛନ୍ତି । ସେ ଓଡ଼ିଆ କାରିଗରର ପାଷାଣ ଦେହରେ ଶିଳ୍ପ ଦେଖି ଚକିତ ହୋଇପଡ଼ିଛନ୍ତି । ସେ ମାଲଉନିସାରୁ ମାଳତୀ ହେବାକୁ ଚାହିଁଛନ୍ତି । ସେ ପାଷାଣର ମୂର୍ତ୍ତି ଦେଖି କହି ଉଠିଛନ୍ତି –

''ମୁଁ ଏ ପାଷାଣ ମୁହଁର ଭାଷା କେବଳ ଶୁଣିଥିଲି,
ଆଜିଠୁଁ ତୁମ ଓଡ଼ିଆ ଜାତିକୁ ଚିହ୍ନିଲି ...।''

ପରିଶେଷରେ ମାଲଉନିସା କଳାପାହାଡ଼ ଆକ୍ରମଣରୁ ମୂର୍ତ୍ତିକୁ ରକ୍ଷା କରିବାକୁ ଜୀବନ ବିସର୍ଜନ କରିଛନ୍ତି ।

**ମଧ୍ୟାହ୍ନର ମରୁପଥେ**

୧୯୬୨ ମସିହାରେ ପ୍ରକାଶିତ 'ମଧ୍ୟାହ୍ନର ମରୁପଥେ' ସଂକଳନର 'ଶେଷ' ହେଉଛି ଏକ ସୁନ୍ଦର ଗଳ୍ପ । ଏଥିରେ ଲେଖକଙ୍କ ମୃତ୍ୟୁ ସମ୍ବନ୍ଧୀୟ ଦାର୍ଶନିକ ଚିନ୍ତାଧାରା ପ୍ରକାଶ ପାଇଛି ।

''ମନୁଷ୍ୟର ଜୀବନଯାତ୍ରା ଆରମ୍ଭ ହୁଏ ଜନ୍ମରେ, ମୃତ୍ୟୁରେ ତା'ର ପରିସମାପ୍ତି ଘଟେ । ଏଇ ପଥ ଉପରେ କେତେ ଯୁଗରୁ ମନୁଷ୍ୟ ପାଦ ପକାଇ ଚାଲିଛି । ××× ଯାଇ ଯାଇ ଯେତେବେଳେ ଶେଷ ଯାତ୍ରା ଆରମ୍ଭ ହୁଏ, ସେତେବେଳେ ମୋହମାୟା ତୁଟାଇଦେଇ ଶ୍ମଶାନ ପଥର ଯାତ୍ରୀ ହୁଏ ।''

'ଅଖ୍ୟାତ ଶୋଣିତ ଲିପି' ଏକ ଶ୍ରେଷ୍ଠ ଗଳ୍ପ । ଗୋଟିଏ କୁକୁରୀର ତିନୋଟି ଛୁଆ ହୋଇଛି । ସେଥିମଧ୍ୟରୁ ମାଈ ଛୁଆଟିକୁ ଜଣେ ଟ୍ରେନ୍‌ରେ ଦୂରକୁ ନେଇ ଯାଇଛନ୍ତି । ଲୋକଟି ସେଇ ଛୁଆଟିକୁ ଫାଷ୍ଟକ୍ଲାସ ଡବାର ଜଣେ ବାବୁଙ୍କ ପାଖରେ ଛାଡ଼ି ଦେଇଛନ୍ତି । କିଛି ସମୟ ପରେ ସେ ଡବାକୁ ଟିକେଟ କଲେକ୍ଟର ଆସିଛନ୍ତି ଓ କୁକୁର ଛୁଆପାଇଁ ୧୦ ଟଙ୍କା ଦାବି କରିଛନ୍ତି । ସେହି ବାବୁ ଜଣକ କୁକୁରଛୁଆଟିକୁ ଟ୍ରେନ୍‌ରୁ ବାହାରକୁ ଫିଙ୍ଗି ଦେଇଛନ୍ତି । ଛୁଆଟି ବେହୋସ ହୋଇ ତଳେ ପଡ଼ିଛି । ପରେ ପିଲାଙ୍କର ଟେକା ମାଡ଼ରେ କୁକୁରଛୁଆଟି ମରିଯାଇଛି ।

ପଶୁ ଉପରେ ଏହି ଅତ୍ୟାଚାରକୁ ଲେଖକ ଆକ୍ଷେପ କରିବା ସଙ୍ଗେ ସଙ୍ଗେ ମନୁଷ୍ୟ ସତ୍ୟ, ଶିବ, ସୁନ୍ଦର × × × ହେବାପାଇଁ ଉପଦେଶ ଦେଇଛନ୍ତି

**ଜୀବନ ସଙ୍ଗୀତ**

ଏ ସଂକଳନର ଗୋଟିଏ ଗଳ୍ପ ହେଲା, 'ଆଲୋକ ରଞ୍ଜିତ ପଥ' । ଏଥିରେ ଲେଖକ ଜୀବନର ଓ ଜଗତର ଯଥାଯଥ ଚିତ୍ରଣ କରିଛନ୍ତି ।

ଜୀବନରେ କେତେ ଅନୁଭୂତି ଆସେ । ପୁଣି ତାହା ଭୁଲି ହୋଇଯାଏ । ଲେଖକ ଜୀବନକୁ ମରୁବାଲି ସହିତ ତୁଳନା କରିଛନ୍ତି । ଏଥିରେ ବାରମ୍ବାର ପବନ ବହେ । ଝଡ଼ ଆସେ । ପଦଚିହ୍ନର ସତ୍ତା ରହେ ନାହିଁ । ସବୁ ଲିଭି ଯାଏ । ମରୁ ପୁଣି ମରୁ ହୋଇ ରହିଯାଏ ।

## ଦୁର୍ବଳ ଦେବାଳୟ

'ଦୁର୍ବଳ ଦେବାଳୟ' ୧୯୭୩ ମସିହାରେ ପ୍ରକାଶ ପାଇଥିଲା ।

'ଦୁର୍ବଳ ଦେବାଳୟ' ଗଳ୍ପରେ ଲେଖକ ମଧ ଜୀବନର ଚିତ୍ର ଅଙ୍କନ କରିଛନ୍ତି । ଜୀବନ ସମ୍ପର୍କରେ ତାଙ୍କର ଦୃଷ୍ଟିକୋଣ ଅନନ୍ୟ । ତାଙ୍କ ଭାଷାରେ – ''ବିଚିତ୍ର ଜୀବନର ବିଚିତ୍ର ତା'ର ଧାରା । କେତେ କୁଆଡ଼େ ଭାସିଯାଇଛି । ଛୋଟ ହେଉ, ବଡ଼ ହେଉ, ମଣିଷ ଜୀବନ ଗୋଟିଏ ପ୍ରଶସ୍ତ ଗନ୍ତାଘର । ମଣିମାଣିକ୍ୟଠାରୁ ଆରମ୍ଭ କରି ଅତି ତୁଚ୍ଛ ପଦାର୍ଥରେ ପରିପୂର୍ଣ୍ଣ ହୁଏ ବୋଲି ଜୀବନ ଏତେ ସୁନ୍ଦର ପୁଣି ଏତେ କୁତ୍ସିତ ।''

## ସୁନ୍ଦରର ଆବାହନ

ଏହାର ପ୍ରକାଶକାଳ ହେଉଛି ୧୯୭୮ ମସିହା । 'ଶ୍ୱାନ ସଂସ୍କାର' ଗୋଟିଏ ସୁନ୍ଦର ଗଳ୍ପ । କୁକୁରୀଟିର ସନ୍ତାନ ପ୍ରତି ବାତ୍ସଲ୍ୟର ଚିତ୍ର ଏଥିରେ ଦିଆଯାଇଛି ।

''କୁକୁରୀଟି ଦୁଇ ହାତ ଦୁଇ ଗୋଡ଼ରେ ଗାତଟିଏ ଖୋଳି ପକାଇଛି । ସେ ଖୋଳା ସ୍ଥାନ ଭିତରକୁ ପଶିଛି । ଚଉକାତ ହୋଇ ପଡ଼ିଯାଇଛି । ତା'ର ଏକ ସ୍ତନରୁ ଶ୍ୱାନ ଶିଶୁର କ୍ଷୀର ଟାଣିବାର ଚଁ ଚଁ ଶବ୍ଦ ଶୁଭୁଛି ।

ଲେଖକଙ୍କ ମତରେ ଅତୁଳନୀୟ ଏହି ସଙ୍ଗୀତର ପ୍ରବାହ ।

## ଗଳ୍ପ ସମ୍ଭାର (ପ୍ରଥମା)

'ଗଳ୍ପ ସମ୍ଭାର (ପ୍ରଥମା) ୧୯୮୬ ମସିହାରେ ପ୍ରକାଶ ପାଇଥିଲା ।

'ଗୋଟିଏ ବୃତ୍ତ ଓ ଦୁଇଟି ପରିଧି' ଗଳ୍ପରେ ମଣିଷ ଜୀବନକୁ ଦାର୍ଶନିକ ଦୃଷ୍ଟିକୋଣ ନେଇ ଦେଖିଛନ୍ତି – ''ହାୟରେ ଜୀବନ ! ତୋର ସ୍ରୋତ କେତେଆଡ଼େ ବହିମାଏ, କାହାକୁ ଛୁଏଁ, ସିକ୍ତ କରେ 'କାହାକୁ ଭସାଇ ନିଏ, ଅଲକ୍ଷ୍ୟ ଲକ୍ଷ୍ୟ ସବୁ ଆଡ଼କୁ ।''

## ମନ୍ୱନ୍ତରର ମାନବ

ଏହି ସଂକଳନ ୧୯୮୮ ମସିହା ଡିସେମ୍ବର ମାସରେ ପ୍ରକାଶ ପାଇଥିଲା । ଏହା ପ୍ରାୟ ଗାଳ୍ପିକଙ୍କ ଜୀବନର ଅପରାହ୍ଣର ରଚନା । 'ଆସନ୍ନ ଅବସର' ଗଳ୍ପରେ ଲେଖକ ଈଶ୍ୱର ବିଶ୍ୱାସୀ ହୋଇଛନ୍ତି । 'ସେ ମହାନ୍, ଅନିର୍ବଚନୀୟ' – ଏହି ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ।

ଗାଳ୍ପିକଙ୍କ ମତରେ ଈଶ୍ୱର ହେଉଛନ୍ତି ସର୍ବନିୟନ୍ତା । ବିଜ୍ଞାନ ବଳରେ ବଳୀୟାନ୍ ହେଲେ ମଧ ଈଶ୍ୱର ଯେ ସର୍ବଶକ୍ତିମାନ୍, ଏକଥା ଭୁଲିଗଲେ ଚଳିବ ନାହିଁ । ଈଶ୍ୱର ଯେ ସବୁର ଊର୍ଦ୍ଧ୍ୱରେ, ଏକଥା ଗାଳ୍ପିକ ସ୍ପଷ୍ଟ ଭାବେ ବ୍ୟକ୍ତ କରିଛନ୍ତି ।

ଲେଖକ ପୁଣି କହିଛନ୍ତି – ''ଏତେ ଆଧୁନିକତାର ଚର୍ଚ୍ଚା ବେଳେ ବି ମଣିଷ ରହିଯାଇଛି ସେହି ଆଦିମ ପ୍ରାୟାନ୍ଧକାର କତିପୟ ସରୀସୃପ, ମାତ୍ର ଏହି ଆତତାୟୀ ହନ୍ତାମାନଙ୍କୁ ମନେ ରଖିବାକୁ ହେବ ଯେ ଊର୍ଦ୍ଧ୍ୱରେ ଜଣେ ସର୍ବାଧୀଶ୍ୱର ଅଛନ୍ତି, ତଳେ ତାଙ୍କ ସୃଷ୍ଟିର ମାୟାଜାଲ ପ୍ରସାରିତ ।''

'ଶିବ ଓ ଶିବାନୀ' ଆଉ ଏକ ଗଳ୍ପ । ଏଥିରେ ଗାନ୍ଧିକ ବିବାହ ପ୍ରଥା ଉପରେ ଲେଖନୀ ଚାଳନା କରିଛନ୍ତି ।

ହିନ୍ଦୁ ଧର୍ମରେ ବିବାହ ସାମାଜିକ ରୀତିରେ ସାଧିତ ହୁଏ । ସେଥିପାଇଁ କେତେକ ବିଧିବିଧାନ ପାଳନ କରିବାକୁ ପଡ଼େ । ପ୍ରଥମତଃ, ବର କନ୍ୟାଙ୍କର ଜନ୍ମକୁଣ୍ଡଳୀ ବା ଜାତକ ମେଳ ହୋଇଥାଏ । ଜାତକ ଶୁଝିଲେ ବିବାହ କାର୍ଯ୍ୟରେ ଅଗ୍ରଗତି ହୁଏ ।

ରାଜୀବ ତାଙ୍କ ଝିଅ ଅରୁନ୍ଧତୀର ବିବାହ ପ୍ରସ୍ତାବ ପକାଇଛନ୍ତି । ଜାତକ ମେଳ ହୋଇଛି । ଝିଅ ଓ ପୁଅର ଜାତକ ସମ୍ପୂର୍ଣ୍ଣ ମିଳିଯାଇଛି ବୋଲି ଭାବୀସମଦୀ ଜଣାଇବାରେ ରାଜୀବ ଆଶ୍ୱସ୍ତ ହୋଇଛନ୍ତି ।

**ଅମୃତ**

୧୯୮୯ ମସିହା ଜାନୁଆରୀ ମାସରେ ପ୍ରକାଶ ପାଇଲା 'ଅମୃତ' ସଞ୍ଚୟନ । ଏଥିରେ ସନ୍ନିବେଶିତ 'ମୋର ମହନୀୟ ପ୍ରତିବେଶୀ' ଗୋଟିଏ ସାର୍ଥକ ଗଳ୍ପ । ଏଥିରେ ଲେଖକ ଆଜିର ସହରୀ ଜୀବନର ଅବସ୍ଥାପାଇଁ ଦୁଃଖ ପ୍ରକାଶ କରିଛନ୍ତି ।

ସହରରେ ଲୋକେ ପାଖାପାଖି ରହନ୍ତି । କିନ୍ତୁ ସେ ଜାଣେ ନାହିଁ ଯେ ତା'ର ପାଖ ପଡ଼ିଶା କିଏ ? ତା'ର ଦୁଃଖ କଅଣ ? ସୁଖ କଅଣ ? ସମସ୍ତେ ନିଜ ସ୍ୱାର୍ଥରେ ବ୍ୟସ୍ତ । ପଡ଼ୋଶୀର କିଛି ଗୋଟାଏ ବିପଦ ପଡ଼ିଲେ ପାଖ ଲୋକ ସାହାଯ୍ୟ କରିବାକୁ ଆଗେଇ ଆସେନି । କାହାରି ସଙ୍ଗେ କାହାରି ମେଳ ଥିବା ଦୂରେ ଥାଉ ଦେଖାସାକ୍ଷାତ୍ ବି ହୁଏନା । ଅତି ବେଶି ହେଲେ ଦେଖାହେଲେ ପାଟିରୁ ବାହାରିଆସେ – ''ହ୍ୟାଲୋ, କେମିତି ଅଛନ୍ତି ?''

ଏତିକି ମଧୁର ବାଣୀରେ ସବୁର ସମାପ୍ତି !

ଗଳ୍ପଟି ପ୍ରଥମେ ୧୯୮୪ ମସିହାରେ 'ପ୍ରତିବେଶୀ' ପତ୍ରିକା'ର ପୂଜା ସଂଖ୍ୟାରେ ପ୍ରକାଶିତ ହୋଇଥିଲା ।

'ହେ ମୋର ପତିତପାବନ' ଆଉ ଏକ ସୁନ୍ଦର ଗଳ୍ପ । ଏଥିରେ ପୁଅ ପଦ ପଦବୀଧାରୀ ହୋଇଗଲେ ତାକୁ କନ୍ୟା ଦେବାପାଇଁ ବ୍ୟାକୁଳତା ବୃଦ୍ଧି ପାଇବାର ଚିତ୍ର ଲେଖକ ପ୍ରଦାନ କରିଛନ୍ତି ।

ସୁବିମଳବାବୁ ଜଣେ ପ୍ରାଇମେରୀ ସ୍କୁଲ ଶିକ୍ଷକ । ତାଙ୍କ ପୁତ୍ର ଶିବଶଙ୍କର ଆଇ.ଏ.ଏସ୍. ପାଇଛନ୍ତି । ପ୍ରତିଦିନ ଲୋକେ କନ୍ୟାର ବିବାହ ପ୍ରସ୍ତାବ ନେଇ ଆସିଛନ୍ତି । ସୁବିମଳାବାବୁଙ୍କ ପତ୍ନୀ ନିର୍ମଳା ଦେବୀ ବ୍ୟସ୍ତ ହୋଇ କହିଛନ୍ତି –

''...ଆମ ପୁଅପାଇଁ ସାବଧାନ । ଏକ୍ଷଣି ସେ ବାହାହେବନି; ହେଲେ ବି ଆମର ଯୌତୁକ ଦରକାର ନାହିଁ । ସେ ନିଜେ ଖୋଜି ଝିଅ ବାହା ହେବ । ଦୟାକରି ଆମ ଘରକୁ ପ୍ରସ୍ତାବ ନେଇ ନ ଆସନ୍ତୁ ।''

ପୁଣି ତାଙ୍କର ଆକ୍ଷେପ – ''ଏତେଦିନ ତ ଗରିବ ସ୍କୁଲ ମାଷ୍ଟ ଘରକୁ କେହି ଆସୁ ନ ଥିଲେ । × × × ଏବେ କ'ଣ ହୋଇଗଲା କି ?''

**ଭବବନ୍ଧନ**

ଲେଖକଙ୍କର ଶେଷ ଗଳ୍ପ ସଂକଳନଟି ହେଲା 'ଭବବନ୍ଧନ' ।

ଉପରୋକ୍ତ ଗଳ୍ପ ସଂକଳନରେ ଥିବା ଗଳ୍ପଗୁଡ଼ିକ ବ୍ୟତୀତ ବହୁ ଗଳ୍ପ ଓଡ଼ିଶାର ବିଶିଷ୍ଟ ପତ୍ରପତ୍ରିକାମାନଙ୍କରେ ପ୍ରକାଶପାଇଛି । ସେଗୁଡ଼ିକ ହେଲା– 'ଡଗର', 'ନବଭାରତ', 'ଶଙ୍ଖ', 'ଝଙ୍କାର', 'ଜୀବନରଙ୍ଗ', 'ନବରବି', 'ରାଷ୍ଟ୍ରଦୀପ' ପ୍ରଭୃତି ।

'ଝଙ୍କାର' ପତ୍ରିକାରେ ପ୍ରକାଶ ପାଇଥିବା ଗୋଟିଏ ସୁନ୍ଦର ଗଳ୍ପ 'ବ୍ରାହ୍ମଣୀ ବେଙ୍ଗ' । ଏହି ଗଳ୍ପରେ ପୁଲିସର ନିର୍ମମ ଅତ୍ୟାଚାରର ଚିତ୍ର ମିଳେ ।

ପାପଗର୍ଭ ହେତୁ ମାଳତୀ ପୁଲିସ ଥାନାକୁ ଯାଇଛି । କିଏ ତାକୁ ଏମିତି କରିଚି ବୋଲି ପୁଲିସ ପଚାରିଛି । ମାଳତୀ ତୁଣ୍ଡରୁ ପଦେ କଥା ବାହାରିନି । 'ମାଲୋ , 'ଧନଲୋ' ବୋଲି ସେମାନେ ବୁଝାଇଛନ୍ତି; ତଥାପି ମାଳତୀ ନୀରବ ରହିଛି । ପୁଲିସବାବୁ ମାଳତୀର ପେଟକୁ ବୁଟ୍‌ରେ ଗୋଇଠାଟାଏ ମାରିଛନ୍ତି । ତଥାପି ମାଳତୀ ପ୍ରେମିକର ନାଁ କହି ନାହିଁ । ତା'ପରେ ପୁଲିସବାବୁ ରୋଳବାଡ଼ି ଧରି ପିଟି ଚାଲିଛନ୍ତି । ବାଡ଼ିଟା ଯାକ ରକ୍ତ ଜୁବୁବୁବୁ ହୋଇଯାଇଛି । ହାଜତ ଭିତରଟା ବି ରକ୍ତ । ଗର୍ଭର ପିଲାଟା ଖସିଯାଇଛି । ତାକୁ ସାଙ୍ଗେ ସାଙ୍ଗେ ପୁଲିସ ଡ୍ରାଇଭର ପୋତି ଦେଇଛି । ମାଳତୀର ପ୍ରାଣ ବି ଛାଡ଼ିଯାଇଛି, ତା'ର ଶବକୁ ପୋଖରୀରେ ଫୋପାଡ଼ି ଦେଇ ପୋଲିସ୍ ରିପୋର୍ଟ ଦେଇଛି – ''ପାପଗର୍ଭ ହେତୁ ମାଳତୀ ପୋଖରୀରେ ବୁଡ଼ି ଆତ୍ମହତ୍ୟା କରିଛି ।''

**ଏକାଙ୍କିକା, ପ୍ରବନ୍ଧ ପ୍ରଭୃତି**

ପୁରୀ 'ଶ୍ରୀକ୍ଷେତ୍ର ଚିନ୍ତନ ଚକ୍ର' ତରଫରୁ ୧୯୭୬ ମସିହାରେ ପ୍ରକାଶ ପାଇଥିବା ସ୍ମରଣିକାରେ 'ଶାନ୍ତିର ପଥ' ଶୀର୍ଷକ ପ୍ରବନ୍ଧ ସ୍ଥାନିତ । ଲେଖକ କହିଛନ୍ତି – ''ମନୁଷ୍ୟ ଜୀବନରେ ଶାନ୍ତି ନ ଆସିଲେ, ଜୀବନର ମାନେ କିଛି ହୁଏନା । ସେ ପେଟପାଇଁ ରୋଜଗାର କରେ । କ୍ଷୁଧାର ଉପଶମ ପରେ ତା' ପାଇଁ ମାନସିକ ଶାନ୍ତି ବଡ଼ କଥା । ସେଥିପାଇଁ ଭଗବତ୍ ବିଶ୍ୱାସ, ପରମାତ୍ମାଙ୍କ ପାଖରେ ଆତ୍ମସମର୍ପଣ ନିହାତି ଆବଶ୍ୟକ ।''

ଶ୍ରୀଯୁକ୍ତ ରାୟ ଶାନ୍ତିର ପଥ ଦେଖାଇଛନ୍ତି – ''ଆତ୍ମବିଶ୍ୱାସ ଓ ସାହସ ଘେନି ଆଗକୁ ଚାଲିବାକୁ ହେବ । ଆମର ପ୍ରତିବେଶୀ ଓ ମଣିଷ ସମାଜକୁ ବିଶ୍ୱାସ କରିବାକୁ ହେବ । ଶେଷରେ ଭଗବାନ୍‌ଙ୍କଠାରେ ପୂର୍ଣ୍ଣ ସମର୍ପଣ ଓ ଭକ୍ତି ରଖିବାକୁ ହେବ ...।''

ରାଜକିଶୋର ଜଣେ ବିଶିଷ୍ଟ ଅଭିନେତା ଥିବା ପୂର୍ବରୁ ବର୍ଣ୍ଣିତ । ରଙ୍ଗମଞ୍ଚ ସହିତ ତାଙ୍କର ଘନିଷ୍ଠ ସମ୍ପର୍କ ଥିଲା । ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜର ପାଥେରପୁରୀ ଛାତ୍ରାବାସର ଛାତ୍ରମାନଙ୍କର ଅନୁରୋଧ ରକ୍ଷା କରି ସେ କେତେକ ଏକାଙ୍କିକା ରଚନା କରିଥିଲେ । ତାଙ୍କର 'ପଞ୍ଚପଲ୍ଲବ' ଏକାଙ୍କିକା ଏକ ସାର୍ଥକ ସୃଷ୍ଟି ।

ଶ୍ରୀଯୁକ୍ତ ରାୟ ମଧ୍ୟ ବିଭିନ୍ନ ସମୟରେ ପ୍ରବନ୍ଧମାନ ରଚନା କରିଛନ୍ତି । 'ସମାଲୋଚନା ସାହିତ୍ୟ'କୁ ତାଙ୍କର ଅବଦାନ ସୀମିତ ହେଲେ ମଧ୍ୟ ନଗଣ୍ୟ ନୁହେଁ । ୧୯୪୮ ମସିହାରେ ପ୍ରକାଶ ପାଇଥିବା 'ସାହିତ୍ୟ ଓ ସାହିତ୍ୟ ତତ୍ତ୍ୱ' ଏହା ପ୍ରମାଣିତ କରେ ।

ଆଲୋଚକଙ୍କ ଭାଷାରେ – ''ସାହିତ୍ୟ ସାଧନା କରିବାକୁ ଯାଇ ରାଜକିଶୋରଙ୍କ ସୃଜନ ବଂଶୀରେ ଅନେକ ରାଗ-ରାଗିଣୀ ଫୁଟି-ଉଠିଥିଲା – ଯାହା ଫଳରେ ସାହିତ୍ୟର ବିଭିନ୍ନ ବିଭାଗ ଶସ୍ୟଶ୍ୟାମଳା ହୋଇଛି । କିନ୍ତୁ ଗଳ୍ପରେ ହିଁ ଆମେ ପାଉ ତାଙ୍କ ପ୍ରତିଭାର ଭୂୟୋବିକାଶ ।''

## ଶେଷ ଜୀବନ

ଚାକିରି କ୍ଷେତ୍ରରୁ ଅବସର ଗ୍ରହଣ କଲାପରେ ଶ୍ରୀଯୁକ୍ତ ରାୟ ପୁରୀ ବଳଗଣ୍ଡି ଛକ ସ୍ଥିତ ବାସଭବନରେ ରହୁଥିଲେ । ୧୯୭୨ ମସିହା ଆଡ଼କୁ ପୁରୀରେ ଶ୍ରୀକ୍ଷେତ୍ର ଚିନ୍ତନ ଚକ୍ର ପ୍ରତିଷ୍ଠିତ ହେଲା । ତା'ର ପ୍ରତିଷ୍ଠାତା ସଭାପତି ଥିଲେ ସୋମନାଥ ଖୁଣ୍ଟିଆ । ଶ୍ରୀଯୁକ୍ତ ରାୟ ସେହି ଚିନ୍ତନ ଚକ୍ର ସହିତ ଘନିଷ୍ଠ ଭାବେ ସଂଶ୍ଳିଷ୍ଟ ହେଲେ । ବେଦ, ପୁରାଣ, ଗୀତା, ଶ୍ରୀଅରବିନ୍ଦ ଓ ରାମକୃଷ୍ଣ ପ୍ରଭୃତିଙ୍କ ଦର୍ଶନ ଆଲୋଚନାରେ ସେ ଅଂଶ ଗ୍ରହଣ କରୁଥିଲେ । ସାହିତ୍ୟ ସେବା ଅପେକ୍ଷା ଆଧ୍ୟାତ୍ମିକ ଚର୍ଚ୍ଚାରେ ସେ ବେଶୀ ସମୟ ଦେଇଥିବା ଜଣାଯାଏ ।

ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ବେଳେ ରାଜକିଶୋରବାବୁ ନିୟମିତ୍ ଭାବେ ବେତାର ବିବରଣୀ ପ୍ରଦାନ କରୁଥିଲେ । ପୁରୀରୁ ପ୍ରକାଶ ପାଉଥିବା ଖବରକାଗଜ 'ଉତ୍କଳ ସମାଜ'ର ସମ୍ପାଦକ ଭାବେ କିଛି କାଳ କାର୍ଯ୍ୟ କରିଥିଲେ ।

୧୯୯୭ ମସିହାରେ ଶେଷ ଗଳ୍ପ ସଞ୍ଚୟନ 'ଭବବନ୍ଧନ' ପ୍ରକାଶ ପାଇଲା । ସେତେବେଳକାର ଉନ୍ନୟନ ମନ୍ତ୍ରୀ ଶ୍ରୀଯୁକ୍ତ ମତଲୁବ ଅଲ୍ଲୀ ଏହି ଗ୍ରନ୍ଥର ଶୁଭ ଉନ୍ମୋଚନ କରିଥିଲେ ।

୮୫ ବର୍ଷ ବୟସରେ ଶ୍ରୀଯୁକ୍ତ ରାୟଙ୍କର ଶ୍ରୀକ୍ଷେତ୍ରରେ ପରଲୋକ ହେଲା । ଏକ ମାତ୍ର ପୁତ୍ର ସିଦ୍ଧାର୍ଥ ଶଙ୍କର ରାୟ ଦୁବାଇରୁ ଆସିଲା ପରେ ତାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ସମାପନ ହୋଇଥିଲା ।

'କଳିଙ୍ଗଶିଳ୍ପୀ କଥାକାର ରାଜକିଶୋର ରାୟଙ୍କ ପରଲୋକ' ଶୀର୍ଷକରେ ରାଜକିଶୋରଙ୍କ ମୃତ୍ୟୁ ଖବର 'ସମ୍ବାଦ'ରେ ପ୍ରକାଶ ପାଇଥିଲା । ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକ ତାଙ୍କ ଶୋକବାର୍ତ୍ତାରେ ଲେଖିଥିଲେ – ''ରାଜକିଶୋରବାବୁ ଜଣେ ଯଶସ୍ୱୀ ସ୍ରଷ୍ଟା ଭାବେ ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ସମୃଦ୍ଧ କରିଛନ୍ତି । ସେ ଜଣେ ଲୋକପ୍ରିୟ ଓ ସଫଳ କଥାକାର ଥିଲେ । ସେ ଗଳ୍ପଗୁଡ଼ିକ ମାଧ୍ୟମରେ ଏକ ସୁସ୍ଥ ଓ ସୁନ୍ଦର ସମାଜ ଗଠନପାଇଁ ନିର୍ଦ୍ଦିଷ୍ଟ ବାର୍ତ୍ତା ଦେଇଛନ୍ତି । ତାଙ୍କ ରଚନାଶୈଳୀ, ବର୍ଣ୍ଣନା ପାଟବ ଓ ଗୁରୁଗମ୍ଭୀର ଭାଷା ପାଠକର ପ୍ରାଣକୁ ସ୍ପର୍ଶ କରୁଥିଲା ।''

## ମୂଲ୍ୟାୟନ

ଗାଳ୍ପିକ ରାଜକିଶୋର ଜଣେ ଶକ୍ତିଶାଳୀ ଲେଖକ ଥିଲେ । ସେହି ନୈସର୍ଗିକ ଶକ୍ତି ହେଉଛି ପ୍ରତିଭା । ସେହି ପ୍ରତିଭା ବଳରେ ରାଜକିଶୋର ନିଜ ଅଙ୍ଗେ ଲିଭେଇଥିବା ଘଟଣାକୁ କଳ୍ପନାର ପୁଟ ଦେଇ ଯେଉଁ ରସାଣିତ ରୂପ ସୃଷ୍ଟି କରିଛନ୍ତି, ତାହା ହୋଇଉଠିଛି ଅନନ୍ୟ ।

ରାଜକିଶୋର ତାଙ୍କ ଗଳ୍ପରେ କୌଣସି ନୂତନ ପରୀକ୍ଷା-ନିରୀକ୍ଷା କରି ନାହାନ୍ତି । ବରଂ ସେ ତା'ର ପକ୍ଷପାତୀ ନୁହନ୍ତି ବୋଲି କହିଛନ୍ତି । ପ୍ରଗତି ନାମରେ ଫେସନର କ୍ରିୟା-ବିକ୍ରିୟାର ଏ ଯୁଗ ବୋଲି ତାଙ୍କର ମତ । ସେ କହିବା ଅନୁଯାୟୀ ସାମ୍ପ୍ରତିକ ଓଡ଼ିଆ ଗଳ୍ପ ସାହିତ୍ୟ ଆନ୍ତର୍ଜାତିକତାକୁ ଉଲ୍ଲଙ୍ଘନ ଦେଇଛି ସତ୍ୟ, ନିଜ ସଂସ୍କୃତି, ପରମ୍ପରାକୁ ରଖିପାରି ନାହିଁ । ହୁଏତ ଆସିଥାଇପାରେ ବିପୁଳତା ବା ବିଚିତ୍ରତା, ମାତ୍ର ବୌଦ୍ଧିକତାର ପ୍ରଚାର, ଆୟୋଜନରେ ରସ ଓ ଶିଳ୍ପର ଅବକ୍ଷୟ ଘଟିଛି । ସୁତରାଂ ଶ୍ରୀଯୁକ୍ତ ରାୟ ପରୀକ୍ଷା-ନିରୀକ୍ଷାରେ ବିଶ୍ୱାସ ନ କରି ନିଚ୍ଛକ ଅନୁଭୂତି ସମ୍ବଳିତ ବିଷୟବସ୍ତୁ ଓ ଶୈଳୀ ଉପରେ ଆସ୍ଥା ପ୍ରକଟ କରିଛନ୍ତି ।

ରାଜକିଶୋରଙ୍କ ଅଧିକାଂଶ ଗଳ୍ପରେ ସେ ନିଜେ ନାୟକ । ଭାବ ସଚେତନ ଅପେକ୍ଷା ଆଙ୍ଗିକ ସଚେତନ ଶିଳ୍ପୀ ବୋଲି ସେ କଥିତ ହୁଅନ୍ତି । ତାଙ୍କର ଅଧିକାଂଶ ଗଳ୍ପରେ ତାଙ୍କର ବ୍ୟକ୍ତିଗତ ବା ଆତ୍ମକୈନ୍ଦ୍ରିକ ଚିନ୍ତାଧାରା ପ୍ରାଧାନ୍ୟ ପାଇଥିବା ହେତୁ ସେ ସମାଲୋଚନାର ପାତ୍ର ହୋଇଛନ୍ତି । ତାଙ୍କର ବହୁ କ୍ଷୁଦ୍ର ଗଳ୍ପରେ ସେ ନାୟକ – ଏହା ସେ ଅସ୍ୱୀକାର କରି ନାହାନ୍ତି । ମାତ୍ର ଏହା ଦୋଷାବହ ବୋଲି ବିଚାରି ନାହାନ୍ତି । ବରଂ ନିଜସ୍ୱ ନାୟକତ୍ୱ ଗଢ଼ିବା ବେଳେ ସେ ଦୃଷ୍ଟି ଦେଇଥାନ୍ତି ଯେ ତାହା ଯେପରି ସୀମିତ ବା ଏକକାଶ୍ରୟୀ ହୋଇ ନ ରହୁ । ତାହା ବିଶ୍ୱ ପ୍ରାଙ୍ଗଣକୁ ବ୍ୟାପ୍ତ ହେଉ । ରାଜକିଶୋର ତେଣୁ ନିଜ ଭିତର ଦେଇ ଜୀବନର ବ୍ୟଥା, ବେଦନା, ହସ, କାନ୍ଦ ପ୍ରକଟିତ କରିବାପାଇଁ ଆଗେଇ ଆସିଛନ୍ତି ।

ଆଧୁନିକ ସମାଜରେ ଦୁର୍ନୀତି ଓ ବିଶୃଙ୍ଖଳା ପୂରିରହିଛି । ଲେଖକ ସମାଜର ଏକ ଅଂଶ ହୋଇଥିବାରୁ ସାମାଜିକ ବିଶୃଙ୍ଖଳା ଓ ସମାଜରେ ଦେଖାଦେଉଥିବା ଦୁର୍ନୀତି ଲେଖକଙ୍କର ଚିତ୍ତକୁ ଆଲୋଡ଼ିତ କରିଛି । ତାହା ମଧ୍ୟ ସ୍ୱାଭାବିକ । ମାତ୍ର ଲେଖକ ଏହା ଭିତରେ କେବଳ ଯଦି ଆଲୋଡ଼ିତ ହୁଏ ବା ଅସ୍ଥିର ହୋଇପଡ଼େ, ତାହା ଭିତରର ରସସିକ୍ତ ଭାବଧାରା ହଜିଯିବାର ଆଶଙ୍କା ଥାଏ । ଶ୍ରୀଯୁକ୍ତ ରାୟ ଏ ବିଷୟରେ ସଚେତନ ଥିବା ଜଣାଯାଏ ନାହିଁ । ସମାଜର ବିକଳତା ସନ୍ଦର୍ଶନ କରି ଅତି ସାଧାରଣ ଘଟଣାରେ ସେ ବ୍ୟଥିତ ହୋଇପଡ଼ିଛନ୍ତି । ସମାଜରେ ଦେଖା ଦେଉଥିବା ଦୁର୍ନୀତି, ଭ୍ରଷ୍ଟାଚାର ବା ବିଶୃଙ୍ଖଳା ତାଙ୍କୁ ଅସ୍ଥିର କରିପକାଇଛି । ତାଙ୍କର ପ୍ରତିକ୍ରିୟା ତୀବ୍ର ହୋଇଉଠିଛି । ସେଥିପାଇଁ ତାଙ୍କ ଗଳ୍ପଗୁଡ଼ିକ ପାଠ କରି ଆଉ ଜଣେ ବିଶିଷ୍ଟ ଓଡ଼ିଆ ସାହିତ୍ୟିକ ଅନ୍ନଦା ଶଙ୍କର ରାୟ ଲେଖିଛନ୍ତି ଯେ ଦେଶବ୍ୟାପୀ ଦୁର୍ନୀତି ଓ ବିଶୃଙ୍ଖଳା ବହୁ ଲୋକଙ୍କୁ ଅସ୍ଥିର କରିଛି । ଏହି ଅସ୍ଥିରତାରୁ ରାଜକିଶୋର ମୁକ୍ତ ନୁହନ୍ତି । କିନ୍ତୁ ମୁକ୍ତ ହେବା ଦରକାର ବୋଲି ତାଙ୍କର ମତ । କାରଣ ତାହା ନ ହେଲେ ରସଧାରା ମରୁଭୂମିରେ ହଜିଯିବ ବୋଲି ଚେତାଇ ଦେଇଛନ୍ତି ।

ରାଜକିଶୋର ରାୟଙ୍କ ଅଧିକାଂଶ ଗଳ୍ପଗୁଡ଼ିକ ଅନୁଭୂତିମୂଳକ ହୋଇଥିବାରୁ ଗଳ୍ପମାନଙ୍କରେ ମୃତ୍ୟୁ ହିଁ ସ୍ୱାଭାବିକ ଭାବେ ପ୍ରକଟିତ ହୋଇଛି । ତାଙ୍କ ସୃଷ୍ଟିରେ ଅସମ୍ଭବ ବା ଅବାସ୍ତବର ସ୍ଥାନ ନାହିଁ । ସେ ଜୀବନର ରୂପକାର; ବ୍ୟଥା ବେଦନା, ହାସ୍ୟ ଓ ପୁଲକର ଅପୂର୍ବ ଚିତ୍ରକାର । ତାଙ୍କର ସୃଜନ ଶକ୍ତି ପ୍ରକ୍ରିୟାରେ ତାଙ୍କ ରଚିତ କାହାଣୀଗୁଡ଼ିକ କାଳରୁ କାଳାତୀତ ହୋଇଯାଇଛି । କେତେକ ଗଳ୍ପ ବହୁ ଅତୀତରେ ଲେଖା ହୋଇଥିଲେ ମଧ୍ୟ ନିତ୍ୟନୂତନ ଭାବେ ବୋଲି ଜଣାଯାଆନ୍ତି ।

ରାଜକିଶୋରଙ୍କ ଶିଳ୍ପକଳା ସ୍ୱତନ୍ତ୍ର । ଗଳ୍ପର ବିଷୟବସ୍ତୁ ନିର୍ବାଚନରେ, ତାହାର ଆରମ୍ଭ ଓ ଶେଷରେ ଉତ୍କଣ୍ଠା, ବାସ୍ତବତା, ଆକସ୍ମିକତାର ପରିବେଷଣ, କୌଶଳ ବିଚାରରୁ ପୁଣି ସମସ୍ୟା ଉପସ୍ଥାପନ କରି ତାହାର ସମାଧାନରେ ପାଠକମାନଙ୍କ ନିଷ୍ପତ୍ତିକୁ ଛାଡ଼ିଦେବା ବିଚାରରୁ ଶ୍ରୀଯୁକ୍ତ ରାୟ କଳାନୈପୁଣ୍ୟର ପ୍ରକୃଷ୍ଟ ପରିଚୟ ଦେଇଛନ୍ତି ବୋଲି ବିଶିଷ୍ଟ ଔପନ୍ୟାସିକ କାଳିନ୍ଦୀଚରଣ ପାଣିଗ୍ରାହୀ କହିଛନ୍ତି ।

ଶ୍ରୀଯୁକ୍ତ ରାୟଙ୍କ ଭାଷା ଅଭିଜାତ ହେବା ସହିତ ଗାଉଁଲି ଭାଷାର ସମ୍ମିଶ୍ରଣ ହୋଇ ତାହା ସରଳ ଓ ସୁନ୍ଦର ହୋଇଯାଇଛି ।

ଶେଷରେ ଏତିକି କୁହାଯାଇପାରେ ଯେ ରାଜକିଶୋର ରାୟ ଓଡ଼ିଆ କ୍ଷୁଦ୍ର ଗଳ୍ପ ସାହିତ୍ୟରେ ଏକ ମର୍ଯ୍ୟାଦାବନ୍ତ ସ୍ଥାନର ଅଧିକାରୀ ।

❑❑❑



## ମହାନ୍ କଥାକାର

# ଅଖିଳମୋହନ ପଟ୍ଟନାୟକ

## [୧୯୨୭-୧୯୮୨]

ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ଗଳ୍ପ ସାହିତ୍ୟରେ ଅଖିଳମୋହନ ଏକ ସମୁଜ୍ଜ୍ୱଳ ନାମ । ସୀମିତ ସାହିତ୍ୟିକ ଜୀବନ ମଧ୍ୟରେ ଏତେ ବିପୁଳ ସୁନାମର ଅଧିକାରୀ ହେବା ବୋଧହୁଏ ଅଖିଳମୋହନଙ୍କ ବ୍ୟତୀତ ଅନ୍ୟ କୌଣସି ଗାଳ୍ପିକଙ୍କ ଜୀବନରେ ଘଟି ନାହିଁ । ସେ ସୌଖୀନ କଥାକାର ନ ଥିଲେ । ଆପଣା ବୃତ୍ତର ପରିଧି ମଧ୍ୟରେ ରହି ସେ ନିଜର ଗଳ୍ପଗୁଡ଼ିକ ମଧ୍ୟରେ ଫୁଟାଇ ପାରିଛନ୍ତି ତାଙ୍କର ଗମ୍ଭୀର ବ୍ୟକ୍ତିତ୍ୱ । ଗଳ୍ପଗୁଡ଼ିକ ତେଣୁ ହୋଇଯାଇଛି ଗମ୍ଭୀର ଆଉ ଭାବଦ୍ୟୋତକ ।

### ଜନ୍ମ

ଅଖିଳମୋହନ ୧୯୨୭ ମସିହା ଡିସେମ୍ବର ମାସ ୧୮ ତାରିଖରେ ଖୋରଧା ହାଇସ୍କୁଲର ପ୍ରଧାନ ଶିକ୍ଷକଙ୍କ ବାସଭବନରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତା ହେଉଛନ୍ତି ବାଙ୍କନିଧି ପଟ୍ଟନାୟକ । ସେ ଓଡ଼ିଶାର ପ୍ରଖ୍ୟାତ ପ୍ରଧାନଶିକ୍ଷକ ତଥା କଥାକାରଭାବେ ଖ୍ୟାତି ଅର୍ଜନ କରିଥିଲେ । ମାତାଙ୍କ ନାମ ଥିଲା ହୀରାମଣି । ଅଖିଳମୋହନଙ୍କର ତିନି ଭାଇ ଓ ଦୁଇ ଭଉଣୀ ଥିଲେ । ସେ ଥିଲେ ପିତାଙ୍କ ଦ୍ୱିତୀୟ ସନ୍ତାନ ।

**ବାଲ୍ୟକାଳ**

ଅଖିଳମୋହନ ଶୈଶବର ସ୍ମୃତି, ଜୀବନ ଧାରଣର ଶୈଳୀ ଓ ତା'ର ଚାରିପଟେ ରହିଥିବା ପରିବେଶ କଥା ଆତ୍ମଜୀବନୀର କିୟଦଂଶରେ ବର୍ଣ୍ଣନା କରିଛନ୍ତି । ସେ ଲେଖିଛନ୍ତି – ''ଝରକା ଖୋଲିଦେଲେ ଆଖିରେ ପଡ଼େ ବୁଢ଼ା ଥୁଣ୍ଟା ସଜନା ଗଛ । ଆଉ ତା'ର ଡାଳରେ ଗୁଛି ହୋଇଥାନ୍ତି କେଜାଣି କେତେ ବଣି । ପରଗୁଡ଼ାକ ଢିଲା କରି ବସିଥାଆନ୍ତି କୁଙ୍କୁରି କାଙ୍କରି ହୋଇ ।''

ପିଲାଦିନର ବହୁ କଥା ଅଖିଳମୋହନ ବର୍ଣ୍ଣନା କରିଛନ୍ତି । ସକାଳୁ ଉଠି ପାଠ ପଢ଼ିବାକୁ ପଡ଼େ । କିନ୍ତୁ ନିଦରୁ ଉଠି ବିଛଣା ଛାଡ଼ିବାକୁ ସେ ଅନିଚ୍ଛା ପ୍ରକାଶ କରନ୍ତି । ଭଲ ପାଠ ପଢ଼ିବାକୁ ଓ ଭଲ ମଣିଷ ହେବାକୁ ପିତାଙ୍କର କଡ଼ା ନିର୍ଦ୍ଦେଶ ଥାଏ । କିନ୍ତୁ ଅନ୍ୟ ପଟେ ଥାଏ ବିଚିତ୍ରବର୍ଣ୍ଣା ପ୍ରଜାପତି ଓ ଗଛ ସାରା ଲେସି ହୋଇ ରହିଥିବା ଗୋଡ଼ିବାଣଫୁଲର ଆକର୍ଷଣ । କ୍ରୀଡ଼ାପ୍ରିୟ ତାଙ୍କର ଚପଳ ମନ ଆନନ୍ଦର ସନ୍ଧାନରେ ଦୌଡ଼େ । ଶେଷରେ ସେ କହିଛନ୍ତି – ''ଜ୍ଞାନ ଜ୍ଞାନୀ କରିପାରେ, କିନ୍ତୁ ଖରାରେ ଦୌଡ଼ିବା କି ଆରାମ !''

**ଶିକ୍ଷା**

ପିଲାଦିନେ ଅଖିଳମୋହନଙ୍କୁ ଶ୍ଳୋକ ଘୋଷିବାକୁ ପଡୁଥିଲା । ଗୃହଶିକ୍ଷକ ନୀତିବାକ୍ୟ ଶୁଣାଉଥିଲେ – ''ସତ୍ୟ କହିବ ନିରନ୍ତର ।''

ମାଆ, ଭଉଣୀ ଓ ଭାଇଙ୍କ ସାଙ୍ଗରେ ଏକାଠି ବସି ପିତାଙ୍କ ଠାରୁ ଦ୍ରୌପଦୀଙ୍କର କୁରୁସଭା ତଳେ ବିବସନ ହେବାର କାହାଣୀ ଶୁଣୁଥିଲେ ।

ତାଙ୍କର ସ୍କୁଲ ଜୀବନ ଆରମ୍ଭ ହେଲା । ସେ ସ୍କୁଲକୁ ଅତି ଭଲ ପାଉଥିଲେ । ସେ କହିଛନ୍ତି – ''ସ୍କୁଲ, ଆମ ସ୍କୁଲ, ମୋ ସ୍କୁଲ ।''

ସ୍କୁଲ ଆରମ୍ଭରେ ପିଲାମାନଙ୍କର ସମ୍ମିଳିତ ପ୍ରାର୍ଥନା 'ହେ ଆନନ୍ଦମୟ ଭୁବନ ପାଳକ'ର ମୂର୍ଚ୍ଛନାକୁ ସେ ମନେ ରଖି କହିଛନ୍ତି – ''ଆଖି ବୁଜିକରି ସମବେତ କଣ୍ଠ ସଙ୍ଗୀତର ମୂର୍ଚ୍ଛନା ଶୁଣିଲାବେଳେ ମୋର ମନେ ହେଉଥିଲା ଯେପରି କୌଣସି ସ୍ୱର୍ଗୀୟ ପରିବେଶରେ ମୁଁ ଅବଗାହନ କରୁଛି । ମୁଁ ସ୍ପଷ୍ଟ ଅନୁଭବ କରୁଥିଲି ଏହି ପ୍ରାର୍ଥନା ବଳରେ ହିଁ ମୁଁ କିଛି ଲାଭ କରିବି ।''

ବାଲ୍ୟକାଳରେ ଅଖିଳମୋହନ ଚପଳ ପ୍ରକୃତିର ଥିବା ଜଣାଯାଏ । ପିତା ତେଣୁ ତାଙ୍କୁ ଖୋରଧାର ୧୨ ମାଇଲ ଦୂର ବେଗୁନିଆ ସ୍କୁଲର ଛାତ୍ରାବାସରେ ରଖାଇଲେ । ସେହି ବେଗୁନିଆ ସ୍କୁଲରୁ ସେ ମାଇନର ପାସ୍ କଲେ । ଏହାପରେ ଖୋରଧା ହାଇସ୍କୁଲରେ ସେ ଅଧ୍ୟୟନ କଲେ ।

ବାଳକ ଅବସ୍ଥାରେ ମଧ୍ୟ ଅଖିଳମୋହନ ଖୋରଧା ଠାରୁ ଦୁଇ ମାଇଲ ଦୂରରେ ଥିବା ବରୁଣାଇ ପାହାଡ଼କୁ ନିବିଡ଼ ଭାବରେ ଭଲ ପାଉଥିଲେ । ସେ ଲେଖିଛନ୍ତି –

''ମୋର ବେଳେ ବେଳେ ମନେ ହୁଏ, ମୁଁ ଜନ୍ମ ହୋଇଛି ଏଇ ବରୁଣେଇ ପାହାଡ଼ରେ । ଜଣେ ଲୋକର ବାପା ଆଉ ମାଆ ଥିବା ଦରକାର ବୋଲି ମୋର ବି ବାପ ମାଆ ଅଛନ୍ତି ।''

ଅଖିଳମୋହନ କହିଛନ୍ତି ଯେ ବରୁଣେଇ ପାହାଡ଼ ହିଁ ତାଙ୍କର ଜନ୍ମଭୂମି । ତାଙ୍କରି ଭାଷାରେ – ''ଢେଉଢେଉକା ବରୁଣାଇର ନାସି ଲମ୍ବିଯାଇଛି ଅନେକ ବାଟ ପର୍ଯ୍ୟନ୍ତ ପଶ୍ଚିମ ଆଡ଼କୁ ଆଉ ମିଶିଯାଇଛି ଗୋଟିଏ ବିରାଟ ସମତଳ ଟାଙ୍ଗରା ଭୂଇଁରେ । ସେଇ ପଥର ଉପରେ ମୋର ଜନ୍ମ । ସେଇ ତାତିଲା ପଥରର ଏନ୍ତୁଡ଼ିଶାଳରେ ମୁଁ ସେକା ହୋଇଛି ଆଉ ବରୁଣେଇର ଥଣ୍ଡା ପବନ ମତେ ପୁଣି ଶୀତଳ କରିଯାଇଛି । ବରୁଣେଇ ଦିହରୁ ଏତେ ପବନ ବା ଆସେ କୁଆଡୁ ? ମୋର ଯାହା ଧାରଣା, ଏଇ ପୃଥିବୀର ସମଷ୍ଟିଗତ ଖରା, ବର୍ଷା ପବନରୁ ଗୋଟିଏ ବଡ଼ ଅଂଶ ବରୁଣେଇ ଯେମିତି ହଉ ଆତ୍ମସାତ୍ କରିନିଏ ।''

ଖୋରଧା ହାଇସ୍କୁଲର ଛାତ୍ର ଥିଲାବେଳେ ଅଖିଳମୋହନ ବରୁଣେଇ ପାହାଡ଼ର ଆକର୍ଷଣରୁ ନିଜକୁ ମୁକ୍ତ କରିପାରି ନ ଥିଲେ । ଅଖିଳମୋହନ ଲେଖିଛନ୍ତି – ''...ମୁଁ ବରୁଣେଇ ପାଖକୁ କେତେଥର ଯାଇଥିବି, ତା'ର ସଂଖ୍ୟା ନିର୍ଣ୍ଣୟ କରିବା ସମ୍ଭବ ନୁହେଁ । କିନ୍ତୁ ମୋର ମନେ ଅଛି ଫୁଙ୍ଗୁଳା ଦିହରେ ଗାମୁଛା ଖଣ୍ଡେ ପକେଇ ମୁଣ୍ଡରେ ଗୋଟାଏ ବଡ଼ ଚନ୍ଦନ ଟୋପା ମାରି ସେଇଠି ଜଣେ ପୂଜକ ଥାଏ । ସନ୍ଧ୍ୟା ଛ'ଟା ବେଳକୁ ପୁରଦିଆ ଏଣ୍ଡୁରିପିଠା ଆଉ ଟିକିଏ ଚାଉଳ ଖିରି ଭୋଗ ଦେଇ ପୂଜକ ଯେତେବେଳେ ଦେଉଳ ଦୁଆର ବନ୍ଦ କରେ ଏକ କ୍ଳାନ୍ତିମିଶା ସ୍ୱରରେ କହେ, 'ଥା'ଲୋ ମା' ଥା' । ଆଉ ତା'ପରେ ତାଳି ମାରି ମାରି ପାହାଚ ଓହ୍ଲେଇ ଆସେ ।''

ବରୁଣାଇର ଶୋଭା କିପରି ଅଖିଳମୋହନଙ୍କୁ ମତୁଆଲା କରୁଥିଲା, ତା'ର ଚିତ୍ର ଆଙ୍କିଛନ୍ତି – ''ଦିନେ ଦିନେ ବରୁଣାଇରେ ଢେଉଢେଉକା ଲୁଚକାଳି ଖେଳୁଥାଏ ଛାଇ ଆଉ ଖରା ଫାଳକରେ ନୀଳ ନୀଳ ବିସ୍ତୃତ କାର୍ପେଟ ଯାହା ଆଖିକୁ ଥଣ୍ଡା କରିଦିଏ । ଆର ଫାଳକରେ ଝିଲିମିଲି ସୁନା ଜରିର ଶାଢ଼ି – ଯାହା ଆଖିକୁ ଝଲସେଇ ଦିଏ । ଆଉ ରହି ହୁଏ ନାହିଁ । ମନେହୁଏ ବରୁଣେଇ ଖୁସି ହୋଇ ଆଖିମିଟିକା ମାରି ଆମକୁ ତୁହାକୁ ତୁହା ଡାକୁଛି... ।''

ଖୋରଧା ହାଇସ୍କୁଲରୁ ମାଟ୍ରିକ ପାସ୍ କଲାପରେ ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜରେ ଅଖିଳମୋହନ ନାମ ଲେଖାଇଲେ । ସେ ଛାତ୍ରାବାସରେ ରହି ଅଧ୍ୟୟନ କଲେ । ସେ ବି.ଏ. ପାସ୍ କଲାପରେ ରେଭେନ୍ସା କଲେଜରେ ଇଂରାଜୀ ସାହିତ୍ୟରେ ସ୍ନାତକୋତ୍ତର ଶ୍ରେଣୀରେ ନାମ ଲେଖାଇଲେ ।

କଲେଜ ଜୀବନରେ ଅଖିଳମୋହନ ଥଟ୍ଟା-କୌତୁକରେ ଲିପ୍ତ ରହୁଥିଲେ । ଦିନେ ଦିନେ ବନ୍ଧୁମାନଙ୍କ ସହିତ ସାରା ରାତ୍ରି କଟକ ସହର ପରିକ୍ରମା କରୁଥିଲେ ।

ଜହ୍ନ ରାତିରେ ବାଲି ଉପରେ ବସିଥିବା ପୁଷି ବିଲେଇକୁ ଚାହିଁ କୌତୁକ କରିବାରେ ଆନନ୍ଦ ପାଉଥିଲେ । ପୁଣି ମଳିନ ଜହ୍ନ ରାତିରେ କଲେଜ ପାଖ ତାଳଦଣ୍ଡା କେନାଲ କୂଳରେ ଥିବା ଚଉରାକୁ ସୁଶ୍ରୀ ଗ୍ରାମବଧୂ ବୋଲି ଭାବୁଥିଲେ । ନୈଷ୍ଠିକ ହିନ୍ଦୁ ବ୍ରାହ୍ମଣ ଖିଲିପାନ ଦୋକାନୀକୁ ଅଣ୍ଡା ମାଗି ବିରକ୍ତ କରିବା ପ୍ରବୃତ୍ତି ତାଙ୍କର ଛାତ୍ରାବସ୍ଥାର ଦୁଷ୍ଟାମିର ଗୋଟିଏ ଅଭୁଲା ସ୍ମୃତିସମ୍ପଦ ହୋଇ ରହିଛି ବୋଲି ଅଖିଳମୋହନ କହିଛନ୍ତି ।

ଅଖିଳମୋହନଙ୍କ ଖାମଖିଆଲୀ ମନୋଭାବ କିନ୍ତୁ ଏତିକିରେ ସୀମିତ ନ ଥିଲା । ବର୍ତ୍ତମାନ ଉପରେ ତାଙ୍କର ଗଭୀର ବିଶ୍ୱାସ ଥିଲା । ଯେତେବେଳେ ଯେଉଁ ସୁଯୋଗ ଆସୁଥିଲା, ତାକୁ ହାତଛଡ଼ା ନ କରିବାକୁ ସେ ଚାହୁଁଥିଲେ । ପରୀକ୍ଷା ନିକଟରେ ଥିଲେ ମଧ୍ୟ ସେ ପରୀକ୍ଷା କଥା ଭୁଲି ଯାଇ ତାସ ଖେଳରେ ମଜ୍ଜି ଯାଉଥିଲେ । ସେ ଜୀବନଟାକୁ ଗୋଟିଏ ସତରଞ୍ଚର ଖେଳ ବୋଲି ମନେ କରୁଥିଲେ ।

ଅଖିଳମୋହନ ଛାତ୍ରାବସ୍ଥାରେ ମଧ୍ୟ ରାଜନୀତିରେ ସକ୍ରିୟ ଭାବରେ ଅଂଶ ଗ୍ରହଣ କରିଥିଲେ । ସେ ଥିଲେ ବାମପନ୍ଥୀ ଛାତ୍ର ନେତା । ବାମପନ୍ଥୀ ଆନ୍ଦୋଳନଦ୍ୱାରା ବିକାଶଶୀଳ ଦେଶ ଯେ ପ୍ରଗତି କରିପାରିବ – ଏହା ଥିଲା ତାଙ୍କର ବଳିଷ୍ଠ ଯୁକ୍ତି । ସେ ବାମପନ୍ଥୀ ଭାବାପନ୍ନ ଲେଖକମାନଙ୍କ ପୁସ୍ତକ ପଢୁଥିଲେ । ସମାଜରେ ସୃଷ୍ଟି ହେଉଥିବା ନାନା ସମସ୍ୟା ବିରୋଧରେ ସେ ସ୍ୱର ଉତ୍ତୋଳନ କରୁଥିଲେ । ଅଖିଳମୋହନ ଛାତ୍ର ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ୧୯୫୨ ମସିହାରେ ଦରମା ବୃଦ୍ଧି ବିରୋଧରେ ରେଭେନ୍ସା ମହାବିଦ୍ୟାଳୟର ସଭାପତି ରାଜେନ୍ଦ୍ର ପ୍ରସାଦ ଦାସ ପ୍ରମୁଖଙ୍କ ନେତୃତ୍ୱରେ ଯେଉଁ ଛାତ୍ର ଆନ୍ଦୋଳନ ହୋଇଥିଲା, ସେଥିରେ ପ୍ରମୁଖ ଅଂଶ ଗ୍ରହଣ କରିଥିଲେ ।

ଅଖିଳମୋହନ ଏମ୍.ଏ. ପାସ୍ ପରେ ଆଇନ ପଢ଼ିଲେ । ଆଇନ ମହାବିଦ୍ୟାଳୟରୁ ଶିକ୍ଷା ଶେଷ ପରେ ସେ ନିଖିଳ ଉତ୍କଳ ଛାତ୍ର ସଂଘର ସଭ୍ୟ ହେଲେ । ୧୯୫୨ ମସିହାରେ ଡକ୍ଟର ଜୟସୁରିଆଙ୍କ ଆତିଥ୍ୟରେ ସେ କଟକରେ ନିଖିଳ ଉତ୍କଳ ଛାତ୍ର ସଂଘର ବାର୍ଷିକ ଅଧିବେଶନରେ ଯୋଗଦାନ କଲେ । ସଂଘର୍ଷ ପଥର ଯାତ୍ରୀ ହୋଇ ୧୯୫୨ ମସିହାରେ ସେ କାରାବରଣ କରିଥିଲେ ।

### ଓକିଲାତି

ଅଖିଳମୋହନ କୌଣସି ଚାକିରି ନ କରି ସ୍ୱାଧୀନ ଭାବରେ ଜୀବିକା ନିର୍ବାହ କରିବାକୁ ସ୍ଥିର କଲେ । ଶିକ୍ଷା ଲାଭ ପରେ ସେ ଆଇନ ବ୍ୟବସାୟ ଆରମ୍ଭ କଲେ । ପ୍ରାୟ ଏକ ବର୍ଷ ଧରି ସେ ଠିକାଦାରି ମଧ୍ୟ କରିଥିଲେ । ମାତ୍ର ତାହାକୁ ଛାଡ଼ି ସେ ସାରା ଜୀବନ ଆଇନ ବ୍ୟବସାୟ କଲେ । ଆଇନଜୀବୀ ଭାବରେ ଅଖିଳମୋହନ ଆର୍ଥିକ ସ୍ୱଚ୍ଛଳତାକୁ ତୁଚ୍ଛ ମନେ କରୁଥିଲେ । ତେବେ ନାଁ କରିଥିଲେ । ଭୁବନେଶ୍ୱରର ନାଁ କରା

ଓକିଲ ମଧ୍ୟ ଥିଲେ । ସେ ଥିଲେ ଅତ୍ୟନ୍ତ ବିଚକ୍ଷଣ ଫୌଜଦାରି ଓକିଲ । କୌଣସି ମକଦ୍ଦମାରେ ଯେ ଆତ୍ମରକ୍ଷାପାଇଁ ବାଟ ନାହିଁ – ଏକଥା ସେ ଭାବୁ ନ ଥିଲେ ।

"Is there a case where there is no defence ?"–

ଏହା ଥିଲା ତାଙ୍କ ଓକିଲାତିର ବୀଜମନ୍ତ୍ର ।

ଓକିଲ ହିସାବରେ ଅଖିଳମୋହନ ସୁନାମ ଅର୍ଜନ କଲେ । ଓଡ଼ିଶା ଆସିଥିବା ସମୟରେ ତତ୍କାଳୀନ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀଙ୍କୁ ଆଘାତ କରିବା ଅପରାଧରେ ଭାରତ ସରକାରଙ୍କ ପକ୍ଷରୁ ଯେଉଁ କେତେଜଣ ଯୁବକମାନଙ୍କ ନାମରେ ଫୌଜଦାରି ମୋକଦ୍ଦମା ହୋଇଥିଲା, ସେଥିରେ ଅଖିଳମୋହନ ମୁଦାଲାମାନଙ୍କ ପକ୍ଷରୁ ଓକିଲଭାବେ ଲଢ଼ିଥିଲେ । ଫଳରେ ସମସ୍ତ ମୁଦାଲାମାନେ ନିର୍ଦ୍ଦୋଷରେ ଖଲାସ ହେଲେ ।

ଓଡ଼ିଶା ମାଇନିଙ୍ଗ କର୍ପୋରେସନ୍‌ର ଏକ ମକଦ୍ଦମା ଅଖିଳମୋହନ ହାତକୁ ନେଇଥିଲେ । ସେ ନିଜ ଆତ୍ମ ମକଦ୍ଦମା ପ୍ରତି ଯେପରି ଆଗ୍ରହ ଦେଖାଇଥିଲେ, ତାହା କଳ୍ପନା କରି ହେବ ନାହିଁ । ସେ ନିଜେ ଖଣି ଅଞ୍ଚଳ ଦେଖିବାପାଇଁ ଯାଇଥିଲେ ଏବଂ ଜଣେ ବିଶେଷଜ୍ଞଭାବେ ମାଇନିଙ୍ଗ କର୍ପୋରେସନ୍‌ର ମକଦ୍ଦମା ପରିଚାଳନା କରିଥିଲେ । ଅପରପକ୍ଷ ଯେତେ ଲୋଭ ଦେଖାଇଲେ ବି ସେ ନିଜ କର୍ତ୍ତବ୍ୟପଥରୁ ବିଚ୍ୟୁତ ହୋଇ ନ ଥିଲେ । ସେ ଓଡ଼ିଶା ମାଇନିଙ୍ଗ କର୍ପୋରେସନ୍‌ପାଇଁ ଦିନ ରାତି ଖଟିଥିଲେ । ସେତେବେଳେ ସେ ଜଣେ ଓକିଲଙ୍କୁ ପରିହାସରେ କହିଥିଲେ – "ମୁଁ ଓକିଲାତି ସାମୟିକଭାବେ କରେ ବୋଲି ସମସ୍ତେ ଜାଣନ୍ତି । ମାତ୍ର ମୋର ସ୍ତ୍ରୀ କହିବାକୁ ଆରମ୍ଭ କଲେଣି ଯେ ଓଡ଼ିଶା ମାଇନିଙ୍ଗ କର୍ପୋରେସନ୍ ମତେ ପୂରା ସମୟ ଦେଇ କାର୍ଯ୍ୟ କରିବା ଓକିଲରେ ପରିଣତ କରିଦେଲାଣି ।"

ଅଖିଳମୋହନଙ୍କ ଜୀବିକା ଥିଲା ଓକିଲାତି, କିନ୍ତୁ କଳା ବା ସାହିତ୍ୟ ଥିଲା ତାଙ୍କର ଜୀବନ । କେହି କେହି କହୁଥିଲେ ଆଇନ ଥିଲା ତାଙ୍କର ପତ୍ନୀ ଭଳି ସହାୟିକା, କିନ୍ତୁ ଗଳ୍ପ ଥିଲା ତାଙ୍କର ପ୍ରେମିକା ପରି ପ୍ରିୟତମା । ଆଇନ ବ୍ୟବସାୟ ପ୍ରତି ତାଙ୍କର ଆସକ୍ତି ଯେ ନ ଥିଲା, ଏକଥା ଅତି ସ୍ପଷ୍ଟ । ତେବେ ଆଗନ୍ତୁକ ମହକିଲମାନଙ୍କୁ ସେ ଉପେକ୍ଷା କରୁ ନ ଥିଲେ । ଉଭୟ ଆଇନ ଓ ସାହିତ୍ୟ ସହିତ ତାଙ୍କର ସମ୍ପର୍କ ଥିଲା, ଯଦିଓ ଆଇନ ଅପେକ୍ଷା ସାହିତ୍ୟ ତାଙ୍କ ପାଇଁ ଥିଲା ଅତି ପ୍ରିୟ ।

ବନ୍ଧୁ ସାହିତ୍ୟିକ ଚିନ୍ତାମଣି ବେହେରା କଥା ପ୍ରସଙ୍ଗରେ କହିଥିଲେ – "ଅଖିଳବାବୁ, ଆପଣଙ୍କ ଜୀବନ ଓ ଜୀବିକା ଠିକ୍ ବିଶ୍ୱବିଖ୍ୟାତ ଶିଳ୍ପୀ ଶେଖପଙ୍କ ଭଳି । ସେ ଅବଶ୍ୟ ଚିକିତ୍ସକ ଓ ଔଷଧବିକ୍ରେତା ଥିଲେ – କିନ୍ତୁ କଳା ସୃଷ୍ଟି ଥିଲା ତାଙ୍କର ଜୀବନ ।"

ଏକଥା ଶୁଣିବାମାତ୍ରେ ଅଖିଳମୋହନ ଗମ୍ଭୀର ହୋଇଯାଇ ଶେଖପଙ୍କଙ୍କ ଉଦ୍ଦେଶ୍ୟରେ ହାତଯୋଡ଼ି ପ୍ରଣାମ ଜଣାଇଲେ ଓ ପରମୁହୂର୍ତ୍ତରେ ନିଜର ବିନୟ ଓ ବୈଦଗ୍ଧ୍ୟ ପ୍ରକାଶ କରି କହିଲେ – ‘‘ସେମାନେ ତ ସବୁ ବଡ଼ ଲୋକ । କାହିଁ ରାଣୀ କାହିଁ ଚନ୍ଦ୍ର... ।’’

ମୁଖ୍ୟତଃ ଅଖିଳମୋହନ ବୃତ୍ତିରେ ଆଇନଜୀବୀ ଥିଲେ ହେଁ ପ୍ରବୃତ୍ତିରେ ସେ ଥିଲେ ବିଦଗ୍ଧ ସାହିତ୍ୟଶିଳ୍ପୀ ।’’

ବିବାହ

ଅଖିଳଙ୍କ ଜୀବନ ଦର୍ଶନ ଥିଲା ବୈଚିତ୍ର୍ୟମୟ । ଗତାନୁଗତିକତାରେ ତାଙ୍କର ବିଶ୍ୱାସ ନ ଥିଲା । ଚିରାଚରିତ ପ୍ରଥାରେ ସେ ଆବଦ୍ଧ ହୋଇ ରହିପାରି ନ ଥିଲେ । ତାଙ୍କର ବିବାହ ମଧ ଚିରାଚରିତ ପ୍ରଥାରେ ହୋଇ ନ ଥିଲା । ପାଟଣା ପ୍ରଶିକ୍ଷଣ ମହାବିଦ୍ୟାଳୟରେ ଅଧ୍ୟୟନ କରୁଥିବା ଖ୍ରୀଷ୍ଟିୟାନ ଝିଅ ଜ୍ଞାନଦା ଦେବୀ ଅଖିଳମୋହନଙ୍କ ମନ ତଥା ପ୍ରାଣକୁ ସ୍ପର୍ଶ କରିଥିଲେ । ବିବାହ ପୂର୍ବରୁ ଜ୍ଞାନଦା ଆର୍ଯ୍ୟ ସମାଜଦ୍ୱାରା ହିନ୍ଦୁ ଧର୍ମ ଗ୍ରହଣ କରିଥିଲେ । ଅତି ନିରାଡ଼ମ୍ବର ଭାବରେ ୧୯୫୪ ମସିହା ମାର୍ଚ୍ଚ ମାସ ୪ ତାରିଖରେ ଦୁହିଁଙ୍କ ବିବାହ ହୋଇଥିଲା । ତାଙ୍କ ଜୀବନର ମଧୁଚନ୍ଦ୍ରିକା ରାତ୍ରି ବନାରସରେ କଟିଥିଲା । ଶୁଣାଯାଏ ଯେ ବାସର ରାତ୍ରିରେ ସ୍ତ୍ରୀଙ୍କ ସହିତ ରେସ୍ତୋରାଁରେ ଡିନର ଖାଇ ହୋଟେଲକୁ ଫେରିଲେ । କଟକ ପରି ଅନେକ ରାତି ଯାଏ ବନାରସରେ ପାନଦୋକାନ ଖୋଲା ରହୁଥିଲା । ବଜାର ଭିତରେ ଅଟକି ଯାଇ କୁଆଡ଼େ କହିଥିଲେ – ‘‘ଜ୍ଞାନଦା, ପାନ ଖାଇବ ?’’

ପାନଦୋକାନରେ ପାନ ଭଙ୍ଗା ହୋଇଛି । ପୁଣି ବାଜି ରଖି ଚେସ୍ ଖେଳ ଚାଲିଛି । ପାନଖାଇ ଚେସ୍ ଖେଳିବାରେ ମଜ୍ଜିଯାଇଥିଲେ ରାତି ଗୋଟାଏ ପର୍ଯ୍ୟନ୍ତ ।

ଜଣେ ବନ୍ଧୁ ତଥା ଶୁଭେଚ୍ଛୁ ତାଙ୍କ ବିଷୟରେ ଲେଖିଛନ୍ତି – ‘‘... ତାଙ୍କ ମଧରେ ଏକ ଦୁର୍ଦ୍ଦମନୀୟ ରୋମାଣ୍ଟିକ ବ୍ୟକ୍ତିତ୍ୱ ଥିଲା – ଯାହା ବାହ୍ୟ ଜୀବନରେ ସମସ୍ତ କୃତିତ୍ୱ ଓ ସାଫଲ୍ୟସତ୍ତ୍ୱେ ସନ୍ତୁଷ୍ଟ ରହିପାରୁ ନ ଥିଲା । ଭିତରେ ତାଙ୍କର ଆଉ କିଛି ଅଧିକ ମହନୀୟ, ବିଶାଳତର, ମୁକ୍ତତର ସତ୍ୟକୁ ଖୋଜିବାର ଭାବ ପ୍ରଚ୍ଛନ୍ନଭାବେ ରହିଥିଲା... ।’’

ପୁଣି ସେ ଲେଖିଛନ୍ତି – ‘‘ଜୀବନ ସମ୍ପର୍କରେ କୌଣସି ବିଷଣ୍ଣ ଅବସାଦ ବା ଉଦାସୀନତାର ଭାବକୁ ସେ ପ୍ରଶ୍ରୟ ଦେଉ ନ ଥିଲେ । ନିଷ୍କ୍ରିୟ ଉଦ୍ୟମହୀନତାକୁ ସେ ପସନ୍ଦ କରୁ ନ ଥିଲେ । ନିଜର ପାରିବାରିକ ଜୀବନରୁ ସେ ଗଭୀର ଆନନ୍ଦ ପାଉଥିଲେ । ପରିବାରର ସମସ୍ତଙ୍କ ପ୍ରତି ତାଙ୍କର ପ୍ରଗାଢ଼ ଭଲ ପାଇବା ଥିଲା ।’’

ତାଙ୍କ ନାତୁଣୀର ଜନ୍ମ ଉପଲକ୍ଷେ ସେ ଜଣେ ବନ୍ଧୁଙ୍କ ପାଖକୁ ଲେଖିଥିଲେ – ‘‘ମୋର ଗୋଟିଏ ନାତୁଣୀ ହୋଇଛି, ତାହାହିଁ କଳାମେଘର ସୀମାନ୍ତରେ ଏକମାତ୍ର ରଜତ ରେଖା ।’’

## ସାହିତ୍ୟିକ ପରିବେଶ

ଅଖିଳମୋହନଙ୍କର ପିତାମହ ଓ ପିତାମହୀ ଉଭୟେ କାହାଣୀ କହିବାରେ ସିଦ୍ଧହସ୍ତ ଓ ସିଦ୍ଧହସ୍ତା ଥିଲେ । ଶୈଶବରେ ସେ ସେମାନଙ୍କଠାରୁ ଗପ ଶୁଣୁଥିଲେ । କୋଉ କେଶବତୀ କନ୍ୟାର ଦୀର୍ଘ କେଶ ଫରୁଆରେ ଭାସି ଯାଉ ଯାଉ କୋଉ ଦେଶର ରାଜକୁମାର ତାକୁ ପାଇ କେଶବତୀ କନ୍ୟାର ଅନୁସନ୍ଧାନ କରିବା ଓ ତାକୁ ଶେଷରେ ବିବାହ କରିବା କଥା ଶୁଣିଥିଲେ । କେଉଁ ଅଭିଶପ୍ତା କିନ୍ନରୀର ଟୋପା ଟୋପା ଲୁହ ନୀଳପଦ୍ମ ହୋଇ ନଦୀରେ ଭାସି ଯାଉଥିବା ଓ ରାଜାପୁଅ ସେହି ନୀଳପଦ୍ମର ଉତ୍ପତ୍ତିସ୍ଥଳ ଆବିଷ୍କାର କରିବା ଇତ୍ୟାଦି ଗପ ପିତାମହୀଙ୍କ ଠାରୁ ଶୁଣି କାବା ହୋଇଯାଉଥିଲେ । କେତୋଟି ଆରବ୍ୟ କାହାଣୀ ତାଙ୍କ ଠାରୁ ମଧ୍ୟ ଶୁଣିଥିଲେ । ଅଖିଳମୋହନଙ୍କ ପିତା ଥିଲେ ସ୍ୱନାମଧନ୍ୟ ଗାଳ୍ପିକ ବାଙ୍କନିଧି ପଟ୍ଟନାୟକ । ତାଙ୍କର ସାହିତ୍ୟକୃତିଗୁଡ଼ିକ ତାଙ୍କ ମନ ଉପରେ ପ୍ରଭାବ ପକାଇଥିବା ସ୍ୱାଭାବିକ । ଅଖିଳମୋହନ 'ମୁଁ କାହିଁକି ଲେଖେ' ନିବନ୍ଧରେ ପିତାଙ୍କର ପ୍ରଭାବକୁ ସ୍ୱୀକାର କରିଛନ୍ତି । ସେ ଉକ୍ତ ନିବନ୍ଧରେ ଲେଖିଛନ୍ତି – ''ମୋର ମନେହୁଏ ମୁଁ ମୋର ବନ୍ଧୁ ସଗୋତ୍ରମାନଙ୍କ ଅପେକ୍ଷା ଅଧିକ ଭାଗ୍ୟବାନ୍ ।''

ପିତାଙ୍କ ପ୍ରଭାବ ବିଷୟରେ ସେ ଲେଖିଛନ୍ତି – ''ମୋର ସପ୍ତମ-ଅଷ୍ଟମ ଶ୍ରେଣୀ ବେଳକୁ ମୁଁ ବାପାଙ୍କ ସହିତ କଥୋପକଥନ ଓ ଭାବ ବିନିମୟ ଆରମ୍ଭ କରିଦେଲିଣି । ତାଙ୍କର ରେଜେଇ ଭିତରେ ଶୋଇଶୋଇ ମୁଁ କୋନାନ୍ ଡଏଲଙ୍କ ସମସ୍ତ ଶେର୍‌ଲକ୍ ହୋମ୍‌ସଙ୍କ କାହାଣୀ ଶୁଣି ସାରିଥିଲି । ଦଶମ ଶ୍ରେଣୀ ବେଳକୁ ମୁଁ ସେକ୍‌ସପିଅରଙ୍କ ଚାରୋଟିଯାକ ଟ୍ରାଜେଡିର କାହାଣୀ ଶୁଣି ସାରିଥିଲି । ସେହି ବୟସରେ ମୋର କଳ୍ପନା ଜାଲ ବୁଣିବାକୁ ଆରମ୍ଭ କରିଥିଲା । ମୁଁ କଳ୍ପନା କରୁଥିଲି କିପରି ଲେଡି ମ୍ୟାକ୍‌ବେଥର ହତ୍ୟାଜନିତ ରକ୍ତାକ୍ତ ହସ୍ତ-ଯୁଗଳ ସପ୍ତସିନ୍ଧୁକୁ ମଧ୍ୟ ଲାଲ କରିଦେବ । ସେତିକିବେଳେ ନିରପରାଧ ଡେସଡିମୋନା ପ୍ରତି ମୋର କୋମଳ ମନ କରୁଣାସିକ୍ତ ହୋଇଉଠିଥିଲା ।''

ଅଖିଳମୋହନଙ୍କ ସୃଜନୀ ପ୍ରତିଭାର ବିକାଶ ଦିଗରେ ଶ୍ୟାମସବୁଜିମାଭରା ଖୋରଧା ଭୂମି ଓ ବିଶେଷତଃ ବରୁଣେଇ ପାହାଡ଼ ଓ ତା'ର ପ୍ରାକୃତିକ ପରିବେଶର ଅବଦାନ କମ୍ ନ ଥିଲା ବୋଲି ଲେଖକ କହିଛନ୍ତି ।

ବରୁଣେଇ ପାହାଡ଼ ଅଖିଳମୋହନଙ୍କୁ ଆତ୍ମହରା କରିପକାଏ । ତାଙ୍କ ଭାଷାରେ – ''ଦିନେ ଦିନେ ବରୁଣେଇ ଗାଢ଼ ନୀଳ ରଙ୍ଗର ଶାଢ଼ି ଏବଂ ବରପୂର୍ବା କୁମାରୀ କନିଆ ପରି ଚୁପ୍‌ଚାପ୍ ବସି ରହିଥାଏ । ହଠାତ୍ ସୂର୍ଯ୍ୟ ଉଠେ । ଆଉ ତା'ପରେ ଏକ ଚିରସ୍ରୋତା ଝରଣା ଆଉଟା ସୁନା ପରି ଝରିଆସେ ବରୁଣେଇ ମୁଣ୍ଡରୁ ପାଦ ଯାଏ ।''

ବର୍ଷା ସମୟରେ ବରୁଣେଇ ପାହାଡ଼ ତାଙ୍କୁ ବିହ୍ୱଳିତ କରିପକାଉଥିଲା – ''ଧାରା ଶ୍ରାବଣର ସ୍ୱଚ୍ଛ ନୀରରେ ବରୁଣେଇ ମନଇଚ୍ଛା ଗାଧାଏ । ଆଉ ତା' ଦେହସାରା

**ଯେତେ ଆବର୍ଜନା ଭରି ଯାଇଥାଏ ବର୍ଷସାରା, ସବୁ ଗୋଟାଏ ମାସର ବୁଢ଼ ଗାଧୁଆରେ ଧୋଇଧାଇ ଏକାଥରକେ ସାଫ୍ । ପିଙ୍ଗଳ ବୈଶାଖରେ ଶୀର୍ଣ୍ଣ ହୋଇ ଆସିଥିବା ବୃକ୍ଷଲତା ହଠାତ୍ ଜୀବନ୍ତ ଆଉ ସବୁଜ ହୋଇଉଠନ୍ତି ।''**

**ସୁତରାଂ ବରୁଣେଇ ପାହାଡ଼ ଯେ ଅଖିଳମୋହନଙ୍କ ସୃଜନୀଶକ୍ତିକୁ ଭାଷା ଦେଇଛି, ଏହା ଅନୁମାନ କରିବା କଷ୍ଟସାଧ ନୁହେଁ ।**

**ପ୍ରସ୍ତୁତି**

ହାଇସ୍କୁଲର ଛାତ୍ରାବସ୍ଥାରୁ ହିଁ ଅଖିଳମୋହନ ଗଳ୍ପ ପୁସ୍ତକ ପଢ଼ିବାକୁ ଲାଗିଥିଲେ । ସେ ଇଂରାଜୀରେ ଲିଖିତ 'ଆଲିସ ଇନ୍ ୱଣ୍ଡର ଲ୍ୟାଣ୍ଡ' ଓ 'ଗଲିଭର ଟ୍ରାଭେଲର୍ସର ସଂକ୍ଷିପ୍ତ ସଂସ୍କରଣ, ଓଡ଼ିଆ ସାହିତ୍ୟର କେତେ ଖଣ୍ଡ ବହି, ଯଥା –'ଅଶ୍ରୁଧାରା', 'ତୁ ମୋ ମା', 'ମାଟିର ମଣିଷ', 'ହା ଅନ୍ନ', ଏପରିକି ଲକ୍ଷ୍ମୀଧର ନାୟକଙ୍କ 'ସାଥୀ'ରେ ବାହାରୁଥିବା ଉପନ୍ୟାସ, ମାୟାଧର ମାନସିଂହଙ୍କ 'ଧୂପ' ଓ ସଚ୍ଚି ରାଉତରାଙ୍କ 'ବାଜିରାଉତ' ପ୍ରଭୃତି ପଢ଼ିଥିଲେ । ଅଖିଳମୋହନ ମାସିକ ପତ୍ରିକା 'ଜହ୍ନମାମୁ' ଓ 'ଆରତି' ପତ୍ରିକାର ନିୟମିତ ପାଠକ ଥିଲେ ।

କଲେଜରେ ମଧ ଅଖିଳମୋହନ ଉପନ୍ୟାସ ଗଳ୍ପ ପୁସ୍ତକ ପଢ଼ିବାରେ ମଜିଗଲେ । ପାଠ୍ୟପୁସ୍ତକ ପଢ଼ିବା ଗୌଣ ମନେ କଲେ । ଗାଳ୍ପିକ ଲେଖିଛନ୍ତି ଯେ ''ସମସ୍ତ ସମ୍ଭାବନା ସତ୍ତ୍ୱେ ମୁଁ ହେଲି ଜଣେ ଦ୍ୱିତୀୟ ଶ୍ରେଣୀର ଛାତ୍ର ।''

ଲେଖକ ହେବାପାଇଁ ପ୍ରସ୍ତୁତି ଯେ ଦରକାର ସେ ବିଷୟରେ ଅଖିଳମୋହନ ନିଶ୍ଚିତ ଥିଲେ । ସେ ଲେଖିଛନ୍ତି – ''ଜଣେ ଲେଖକପାଇଁ ଶୈଶବ ଅବସ୍ଥାରେ ହେଉ ବା ଯେକୌଣସି ଅବସ୍ଥାରେ ହେଉ ପ୍ରସ୍ତୁତିର ପ୍ରୟୋଜନ ରହିଛି । ଯାହା କୁହାଯାଏ, ସାଲବେଗ, ସାରଳା, ଭୀମ ଭୋଇ ଇତ୍ୟାଦିଙ୍କର କୌଣସି ଅଧ୍ୟୟନ ନ ଥିଲା, ଏଥିରେ ମୁଁ ବିଶ୍ୱାସ ସ୍ଥାପନ କରିପାରେ ନାହିଁ । ହୋଇପାରେ, ସେମାନଙ୍କର ପାରମ୍ପରିକ ଅଧ୍ୟୟନ ନ ଥିଲା; କିନ୍ତୁ କୌଣସି ଅଧ୍ୟୟନ ନ ଥାଇ ଶବ୍ଦ ଯୋଜନାର ଶୃଙ୍ଖଳା, ଲାଳିତ୍ୟ ଓ ଛନ୍ଦ ଚେତନା ଶୂନ୍ୟରୁ ଆସିବା ସମ୍ଭବ ନୁହେଁ ।''

ଅଖିଳମୋହନ ଆଉ ଜଣକଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୋଇଥିଲେ । ସେ ହେଉଛନ୍ତି ବଡ଼ମ୍ବାର ଲୋକନାଥ ପଟ୍ଟନାୟକ । ସେ ଥିଲେ ଶିକ୍ଷାବିଭାଗର ପଦସ୍ଥ କର୍ମଚାରୀ । ତାଙ୍କ ସହିତ ଅଖିଳମୋହନଙ୍କ ପରିବାରର ଘନିଷ୍ଠ ସମ୍ପର୍କ ଥିଲା । ସେ ଅଧିକାଂଶ ସମୟ ପିତା ବାଙ୍କନିଧିବାବୁଙ୍କ ଘରେ ରହୁଥିଲେ । ସେ ଗଳ୍ପକୁ ଏପରି ଭାବରେ ବର୍ଣ୍ଣନା କରି କହୁଥିଲେ ଯେ ତାହା ଅଖିଳମୋହନ ଶୁଣି ବିମୋହିତ ହୋଇଯାଉଥିଲେ । ତାଙ୍କ କହିବାର ଶୈଳୀରେ ଅଖିଳମୋହନ ହେଉଥିଲେ ମନ୍ତ୍ରମୁଗ୍ଧ । ଅଖିଳମୋହନ ମଧ ବିଶ୍ୱ ସାହିତ୍ୟ ପ୍ରତି ଦୃଷ୍ଟି ରଖିଥିଲେ । ସେ ଟଲଷ୍ଟୟ, ଏଜରାପାଉଣ୍ଡ, କାମ୍ୟୁ, ସାର୍ତ୍ରେ ପ୍ରଭୃତିଙ୍କ ଲିଖିତ ପୁସ୍ତକମାନ ଅଧ୍ୟୟନ କରିଥିଲେ । ଓଡ଼ିଆରେ ଅଗ୍ରଜ ସାହିତ୍ୟିକ, ଯଥା – କାଳିନ୍ଦୀଚରଣ, ଗୋପୀନାଥ, ରାଜକିଶୋର ରାୟ, ମାୟାଧର ମାନସିଂହ, ସୁରେନ୍ଦ୍ର ମହାନ୍ତି ଓ ଅନ୍ୟାନ୍ୟ ଲେଖକମାନଙ୍କର

ରଚନାକୁ ଅଧ୍ୟୟନ କରିଥିଲେ । ଏହାଦ୍ୱାରା ଅଖିଳମୋହନଙ୍କ ଲେଖକ ବ୍ୟକ୍ତିତ୍ୱର ପରିସ୍ଫୁଟନ ଯେ ଘଟିଥିଲା, ଏହା ଅତି ସ୍ପଷ୍ଟ ।

**ଲେଖନୀ ଚାଳନା**

ପିଲାବେଳେ ଅଖିଳମୋହନ ସ୍ଥାନୀୟ କ୍ଲବ୍ ବା ସ୍କୁଲର ପାଣ୍ଡୁଲିପି ପତ୍ରିକାମାନଙ୍କରେ ଲେଖା ଯେ ଆରମ୍ଭ କରିଥିଲେ ଏହା ବେଶ୍ ଅନୁମାନ କରାଯାଇପାରେ । ଖୋରଧାରେ ଅବସ୍ଥାନ କାଳରେ ଯେଉଁସବୁ ଲେଖା ହୋଇଥିଲା ତାହା ବିସ୍ମୃତି ଗର୍ଭରେ । ତେବେ ବିଲୁପ୍ତି ଗର୍ଭରୁ ନିଜ ହସ୍ତଲିଖିତ କେତେକ ରଚନା ଏବେ ଲୋକଲୋଚନକୁ ଆସିଲାଣି । ତେବେ ତାଙ୍କର ପ୍ରଥମ ପ୍ରକାଶିତ ଗଳ୍ପ ହେଉଛି 'ସପନ' । ଏହି ଗଳ୍ପ ଲେଖିବା ପଛରେ ଗୋଟିଏ ନିର୍ଦ୍ଦିଷ୍ଟ ଝୁଙ୍କ ଥିଲା । ତାଙ୍କର ବଡ଼ଭାଇ ମନମୋହନ ପଟ୍ଟନାୟକ 'ସରସୀ ଓ ଛନ୍ଦା' ନାମରେ ଗଳ୍ପଟିଏ ଲେଖିଥିଲେ । ତାହା ମଧ୍ୟ 'ଶଙ୍ଖ' ପତ୍ରିକାରେ ପ୍ରକାଶିତ ହୋଇଥିଲା । ବଡ଼ଭାଇଙ୍କର ଗଳ୍ପଟିକୁ ସେ ଉତାରି ଦେଇଥିଲେ । ପାରିଶ୍ରମିକଭାବେ ବଡ଼ଭାଇଙ୍କୁ ମିଳିଥିଲା ପାଞ୍ଚ ଟଙ୍କା । ଉତାରିବା ବାବଦରେ ଅଖିଳମୋହନ ଏକ ଟଙ୍କା ଦାବି କରି ପାଇଥିଲେ ମାତ୍ର ଚାରି ଅଣା । ଏହାପରେ ସେ ସିଦ୍ଧାନ୍ତ ନେଲେ ଯେ ସେ ନିଜେ ଗଳ୍ପ ଲେଖିବେ । ସତକୁ ସତ ତାଙ୍କର ପ୍ରଥମ ଗଳ୍ପ 'ସପନ'ଟି ପ୍ରକାଶ ପାଇଲା । ପ୍ରକାଶିତ ଗଳ୍ପଟି ପାରିଶ୍ରମିକ ସହିତ ଅଖିଳମୋହନଙ୍କ ପିତା ବାଙ୍କନିଧିବାବୁଙ୍କ ପାଖକୁ ଆସିଥିଲା । ପ୍ରେରକ ଥିଲେ 'ଶଙ୍ଖ' ପତ୍ରିକାର ସମ୍ପାଦକ ମାୟାଧର ମାନସିଂହ । ସେ ଏକ ପତ୍ରରେ ଗଳ୍ପ ଲେଖିବାପାଇଁ ପୁତ୍ରକୁ ଉତ୍ସାହିତ କରିବାକୁ ଲେଖିଥିଲେ ।

ଅଖିଳମୋହନ ସେତେବେଳେ ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜର ଛାତ୍ର ଥିଲେ । ଓଡ଼ିଆ ବିଭାଗର ଅଧ୍ୟାପକ ଥିଲେ ରାଜକିଶୋର ରାୟ । ସେ ଥିଲେ ସେ ସମୟର ପ୍ରତିଷ୍ଠିତ ଗାଳ୍ପିକ । ସେ ଗଳ୍ପଟି ପଢ଼ିଥିଲେ । ସେ ତାଙ୍କର ମନ୍ତବ୍ୟ ପ୍ରକାଶ କରିଥିଲେ – ''ମୁଁ ଅଭିଭୂତ ହୋଇଯାଇଥିଲି । କ୍ଲାସରେ ସେ ଗଳ୍ପଟି ମୁଁ ପଢ଼ିଥିଲି । ତା'ପରେ ଅଖିଳର ଏହି ସୃଷ୍ଟିକାରିଣୀ ଶକ୍ତିକୁ ସମ୍ମାନ ଦେବାପାଇଁ ମୁଁ କ୍ଲାସ ଛୁଟି କରିଦେଇଛି ।''

ଡଃ ମାୟାଧର ମାନସିଂହଙ୍କର ପିତାଙ୍କ ପାଖକୁ ପତ୍ର ଓ ଅଧ୍ୟାପକ ରାଜକିଶୋର ରାୟଙ୍କ କ୍ଲାସ ଛୁଟି କରିବା ଘଟଣାଦ୍ୱୟ ଅଖିଳମୋହନଙ୍କ ମନ ଭିତରେ ସୃଷ୍ଟି କଲା ଗଭୀର ଆତ୍ମବିଶ୍ୱାସ । ସେ ପାଇଲେ ଯଥେଷ୍ଟ ପ୍ରେରଣା ।

ଆଲୋଚକଙ୍କ ଭାଷାରେ – ''ଏହି ପ୍ରେରଣାର ବଶବର୍ତ୍ତୀ ହୋଇ ସେ ସୃଷ୍ଟି କଲେ ଯେଉଁ ସବୁ ଗଳ୍ପ, ତାହା ଓଡ଼ିଆ ସାହିତ୍ୟାକାଶରେ ଗୋଟିଏ ଗୋଟିଏ ଉଜ୍ଜ୍ୱଳ ଜ୍ୟୋତିଷ୍କ ହୋଇ ରହିଗଲା ।''

ଅଖିଳମୋହନ ତାଙ୍କର ୩୪ ବର୍ଷ ସାହିତ୍ୟ ସାଧନା ଭିତରେ ଯେଉଁସବୁ ଗଳ୍ପ ଲେଖିଯାଇଛନ୍ତି, ସେଗୁଡ଼ିକ 'ଅଖିଳାୟନ'ରେ ସନ୍ନିବେଶିତ ହୋଇଛି । ସେଗୁଡ଼ିକୁ ଚାରି ଭାଗରେ ବିଭକ୍ତ କରାଯାଇଛି, ଯଥା – 'ଝଡ଼ର ଇଗଲ ଓ ଧରଣୀର

କୃଷ୍ଣସାର', 'ଓ ଅନ୍ଧଗଳି', 'ନଦୀର ନାମ ଗଣତନ୍ତ୍ର' ଓ 'ପ୍ରଥମ ଓ ଶେଷ' । ତାଙ୍କ ଗଳ୍ପର ସଂଖ୍ୟା ପଚାଶରୁ ଷାଠିଏ ।

**ଝଡ଼ର ଇଗଲ ଓ ଧରଣୀର କୃଷ୍ଣସାର**

ଏହାର ପ୍ରଥମ ଭାଗରେ ଷୋଳଟି ଗଳ୍ପ ସନ୍ନିବେଶିତ ହୋଇଛି । ଏହାର ଶେଷ ଗଳ୍ପଟି ହେଲା 'ଝଡ଼ର ଇଗଲ ଓ ଧରଣୀର କୃଷ୍ଣସାର ।

ଏହି ଗଳ୍ପରେ ରୋମାଣ୍ଟିକ୍ ଭାବଧାରାର ଫଲ୍‌ଗୁ ପ୍ରବାହିତ ହୋଇଥିବା ଦେଖିବାକୁ ମିଳେ ।

ଲେଖକ ପ୍ରଥମଥରପାଇଁ ଓଡ଼ିଆ ସାହିତ୍ୟରେ ଇଗଲ ପକ୍ଷୀ ଓ କଳା କୃଷ୍ଣସାରକୁ ପ୍ରେମିକମାନଙ୍କର ପ୍ରତୀକଭାବେ ଗ୍ରହଣ କରିଛନ୍ତି । ତାଙ୍କ ପୂର୍ବରୁ ଓଡ଼ିଆ ସାହିତ୍ୟରେ ପ୍ରେମର ବହୁଳ ବର୍ଣ୍ଣନା ଥିଲେ ମଧ କୌଣସି ଲେଖକ ଏପରି ଏକ ଚମକପ୍ରଦ ପ୍ରତୀକ ଗ୍ରହଣ କରି ନାହାନ୍ତି ।

ଦୁଇଟି ତରୁଣ ତରୁଣୀ ଉଭୟ ଉଭୟଙ୍କୁ ପ୍ରେମ କରୁଥିଲେ ମଧ ପରସ୍ପର ମଧ୍ୟରେ କିଛିଟା ଦ୍ୱନ୍ଦ୍ୱ ଦେଖାଦେଇଛି । ନାୟିକା ଦୂରକୁ ଚାଲିଯାଇଛି । ଘୃଣାରେ ଘରକୁ ଆସିବା ଦୂରେ ଥାଉ, ଚିଠି ମଧ ଦେଇ ନାହିଁ । ଦିନେ ଅଚାନକ ନାୟକ ପାଖକୁ ଆସି ତାଙ୍କୁ ଚମତ୍କୃତ କରିଦେଇଛି । ଆଉ କହିଛି – ''ଏଇଟା ମୋର ଅଭିମାନ – ମୁଁ ଦୂରରୁ ରହି ତମକୁ ଅନୁଭବ କରିବାକୁ ଚାହେଁ ।''

ଗଲାବେଳେ ପ୍ରକାରାନ୍ତରେ ସମସ୍ୟାର ସମାଧାନ କରିବାକୁ କହିଯାଇଛି ।

ନାୟକ ମନରେ ହତାଶାଭାବ ଦେଖାଦେଇଛି ।

'ଚନ୍ଦ୍ରର ଅଭିଶାପ' ଗଳ୍ପରେ ନାୟକ ସୀମାଦ୍ରିର ଯୌନବ୍ୟକ୍ତିତ୍ୱ ପରିସ୍ଫୁଟ ହୋଇଛି ।

ସୀମାଦ୍ରି ଜଣେ କଳାପ୍ରାଣ ବ୍ୟକ୍ତି (Artist) । ଜୀବନ ସବୁଠାରୁ ବଡ଼ କଳା ବୋଲି ସେ ଭାବେ । ଯେ ଜୀବନକୁ ନିତ୍ୟନୂତନ କରି ବଞ୍ଚିପାରିଲା, ତା'ଠାରୁ ବଡ଼ କଳାପ୍ରେମୀ ଆଉ କେହି ନାହିଁ । ତା'ର ବନ୍ଧୁ ସରୋଜ । ସେ ସିନିକ୍ । ଦୁନିଆଟାରେ ଯେ କିଛି ଗୋଟାଏ ହେବ ବା କିଛି ଲାଭଜନକ ଜିନିଷ କରାଯାଇପାରିବ, ଏକଥା ସେ ବିଶ୍ୱାସ କରେ ନାହିଁ ।

ସହରର କୋଳାହଳ ଦୁଇ ବନ୍ଧୁଙ୍କୁ ଆକୃଷ୍ଟ କରେ ନାହିଁ । ପ୍ରତିଦିନ ସନ୍ଧ୍ୟାରେ ସେମାନେ କେନାଲ ଆଡ଼େ ବୁଲିବାକୁ ଯାଆନ୍ତି । ସେମାନେ କେନାଲ କୂଳରେ ଜ୍ୟୋତ୍ସ୍ନାବିଧୌତ ରଜନୀରେ ବସି ରହିବାକୁ ଭଲ ପାଆନ୍ତି । ସେଠାରେ ଥିବା ଗୋଟିଏ ଜୀର୍ଣ୍ଣ ଚଉରାକୁ ବେଳେ ବେଳେ ଡାକପିଅନ ବା କେତେବେଳେ କୋଣାର୍କ ମନ୍ଦିରରୁ ଆସିଥିବା ଲାସ୍ୟମୟୀ ରୂପସୀ ବୋଲି ମନେ କରନ୍ତି । ଦୁହେଁ ବସି ଗପସପ କରନ୍ତି । ବେଳେ ବେଳେ ଯୁକ୍ତି ତର୍କରେ ମାତନ୍ତି । ସମୟ ହୋଇଗଲେ ଘରକୁ ଫେରନ୍ତି । ଥରେ ସୀମାଦ୍ରି ଏକା ଏକା ରାତ୍ରିରେ ଯାଇ କେନାଲ କୂଳରେ

ବସିଛି । ସରୋଜ ଘରେ ତାକୁ ନ ଦେଖି କେନାଲ କୂଳକୁ ଯାଇ ବସିଥିବାର ଦେଖିଛି ଆଉ ତାକୁ ଫେରାଇ ଆଣିଛି । ସରୋଜର ବିରୋଧାଭାଷ ଓ ବିଦ୍ରୂପ ସୀମାଦ୍ରିକୁ ଭଲଲାଗିନି । ଫଳରେ ସରୋଜକୁ ସାଙ୍ଗରେ ନ ନେଇ ଏକୁଟିଆ କେନାଲ କୂଳକୁ ଯାଇଛି ।

ସୀମାଦ୍ରି ରୀତା ପ୍ରତି ଆକୃଷ୍ଟ; କିନ୍ତୁ ମନଖୋଲି କହିପାରିନି । ରୀତା ଗାର୍ଲସ ହଷ୍ଟେଲର ଦ୍ୱିତାଲା କୋଠାରେ ରହେ । ରୀତା କଥା ସୀମାଦ୍ରି ଭାବିଛି । ରୀତା କ'ଣ ଚାହେଁନା ଏଇ ଜହ୍ନ ଆଲୁଅରେ ଏଇ ଶୀତଳ ବାଲିଶେଯରେ ଶୋଇବାକୁ ? — ସେ ଯକ୍ଷପୁରୀ ଭିତରୁ ରୀତାକୁ ଉଦ୍ଧାର କରିବାକୁ ପଡ଼ିବ ବୋଲି ଚିନ୍ତା କରିଛି । ତା'ବି ସମ୍ଭବ । ଲୁହାର ପାଇପ୍ ଧରି ଦୋତାଲା କୋଠା ଉପରକୁ ଯିବାକୁ ପଡ଼ିବ । ତା'ପରେ ...

ସୀମାଦ୍ରି ମନର ଭାରସାମ୍ୟ ହରାଇ ବସିଛି । ଉଚ୍ଛୃଙ୍ଖଳ ଜ୍ୟୋସ୍ନାଝରା ରାତିରେ ସେ ଯାଇଛି ଆଉ ପାଇପ୍‌କୁ ଧରି ଉଠିଛି ଉପରକୁ । ହଠାତ୍ ଶୂନ୍ୟକୁ ଝୁଙ୍କିପଡ଼ିଛି । ତା'ପରେ ତା'ର ଚେତନା ଶକ୍ତି ଲୋପ ପାଇଛି ।

ତା'ପରଦିନ ସକାଳେ ଗାର୍ଲସ ହଷ୍ଟେଲ୍ ପଡ଼ିଆରେ ଲୋକଙ୍କର ଭିଡ଼ ଜମିଛି । ସରୋଜ ବି ଆସିଛି । ସମସ୍ତେ ଉପସଂହାରରେ ଉପନୀତ ହୋଇଛନ୍ତି ଯେ ସୀମାଦ୍ରି କୌଣସି ପ୍ରେମଜନିତ ବ୍ୟାପାରରେ ଜଡ଼ିତ ହୋଇ ଦୁର୍ଘଟଣାର ସମ୍ମୁଖୀନ ହୋଇଛି ବା ଆତ୍ମହତ୍ୟା କରିଛି ... !

'ପକ୍ଷାଘାତ' ଗଳ୍ପରେ ଗାଳ୍ପିକ ଉଭୟ ନାୟକ ଓ ନାୟିକାଙ୍କ ମନରେ ଲୁକ୍କାୟିତ ହୋଇ ରହିଥିବା ଯୌନ-ଚେତନାକୁ କଳାତ୍ମକ ଭାବରେ ପ୍ରକାଶ କରିଛନ୍ତି ।

ଗଳ୍ପର ନାୟକ ହେଉଛି ସୂର୍ଯ୍ୟ । ପାର୍ଟି ଅଫିସରେ କାମ କରେ । ପାର୍ଟିପାଇଁ ସମ୍ପାଦକୀୟ ଲେଖେ । ସେ ପାର୍ଟି ଭିତରେ ସଚେତନ ନୀତି-ବିଶାରଦ । ଅସଂଖ୍ୟ ଗ୍ରନ୍ଥ ସେ ପଢ଼ିଛି — ଅନୁବାଦ କରିଛି । ତର୍ଜମା କରିଛି । କିନ୍ତୁ ଖବରକାଗଜର ଅଳିଆ ଭିତରେ ଶୋଇରହିଥିବା ଇନ୍ଦିରାକୁ ଚାହିଁ ତା'ର ଭାବାନ୍ତର ଜାତ ହୋଇଛି ।

''ଇନ୍ଦିରା କେତେ ସୁନ୍ଦର ! କେତେ ନିର୍ଦ୍ଦୋଷ । ଅଥଚ କେତେ ଅତ୍ୟାଚାରିତ... !'' ସୂର୍ଯ୍ୟର ମନେ ହେଲା ସେ ଇନ୍ଦିରାର ଶଯ୍ୟାଧାରରେ ଠିଆ ହୋଇ ତା' ପାଖରୁ କ୍ଷମା ମାଗନ୍ତା ।

ଆଦର୍ଶର ଜୟଗାନ କରୁଥିବା ସମୟରେ ସୂର୍ଯ୍ୟ ଅଣନିଶ୍ୱାସୀ ହୋଇପଡ଼ିଛି । ତା'ର ମନେ ହୋଇଛି ଯେ ଏସବୁ ବିଷୟରେ ଜ୍ଞାନ ଆହରଣ କଲେ ମଧ ତା'ର କିଛି ଜାଣିବାର ଅଭାବ ରହିଯାଇଛି ।

ଗାଳ୍ପିକଙ୍କ ଭାଷାରେ — ''ସମାଜନୀତି, ରାଜନୀତି, ଗୋଷ୍ଠୀ ସଙ୍ଗଠନ ସବୁ ସେ ବର୍ଷ ବର୍ଷ ଧରି ପଢ଼ିଛି । କିନ୍ତୁ ସେ ଯେମିତି ପଢ଼ିପାରି ନାହିଁ ମଣିଷ ମନର ବହି !''

ଲେଖକ ଓଡ଼ିଆ ସାହିତ୍ୟରେ ପ୍ରଥମଥରପାଇଁ ଭାଗାବଣ୍ଡ ଚରିତ୍ର ଚିତ୍ରଣ କରିଛନ୍ତି । 'ସୁକାନ୍ତ ମହାନ୍ତି' ଏକ ଭାଗୀବଣ୍ଡ ଚରିତ୍ର । ସେ ଅଭାବ ପ୍ରପୀଡ଼ିତ । ବେପରୁଆଭାବେ ଜୀବନ କାଟେ । ଦିନେ ଧନୀ ବନ୍ଧୁ ପ୍ରଦୀପ୍ତ ପାଖେ ପହଞ୍ଚିଛି । ବାଲ୍ୟ ବନ୍ଧୁତାର ସୁଯୋଗ ନେଇ ଇଣ୍ଟରଭିଉର ବାହାନା ଦେଖାଇ ତା'ଠାରୁ ମାଗି ନେଇଛି ଏକ ଲୋମଶ କୋଟ୍ । ତାକୁ କିନ୍ତୁ ଫେରାଇ ନାହିଁ । ତାକୁ ପିନ୍ଧି ଭଦ୍ରଲୋକରେ ପରିଣତ ହୋଇଛି ଓ ମିଃ ଓ ମିସେସ୍ ଦାସଙ୍କର ଲାଇଫ ଇନସ୍ୟୁରାନ୍ସର ପ୍ରଥମ କ୍ୱାର୍ଟର ପ୍ରିମିୟମ୍‌କୁ ଆତ୍ମସାତ୍ କରିଛି । ହୋଟେଲରେ କଫି ଖାଇଲାବେଳେ ଦେଖାହୋଇଛି ସନତ ରକ୍ଷିତଙ୍କ ସଙ୍ଗେ । ଆଉ ଅଧପ୍ଲେଟ ମାଂସ ତରକାରି ଖାଇବାପାଇଁ ସେ ସୁକାନ୍ତଙ୍କୁ ମାତ୍ର ଚାରି ଅଣା ପଇସା ମାଗିଛି । ସୁକାନ୍ତ ସେଥିରେ ରାଜି ହୋଇ ନାହିଁ । କହିଛି – ''ମୋ ପାଖେ ପଇସା କୁଆଡ଼େ ଆସିବ ଭାଇ ! ମୁଁ ତ ତୁମଠାରୁ ଆହୁରି ଦରିଦ୍ର ।''

ସନତ ରକ୍ଷିତ ବିଦ୍ରୂପ ହସି କହିଛି – ''ଦରିଦ୍ର, ତୁମେ ଦରିଦ୍ରବାବୁ ! ଆସ ମୋ ସାଙ୍ଗରେ ଆସ, ତମର ଏକା ଦାମିକା କୋଟ୍ ଖଣ୍ଡର ବିକ୍ରି ବ୍ୟବସ୍ଥା ମୁଁ କରିଦଉଚି ... ହାଃ ହାଃ ! ଶୀତରେ ବଞ୍ଚି ହୁଏ ବାବୁ; କିନ୍ତୁ ଯେତେବେଳେ ଆସେ କ୍ଷୁଧାର ଦୈତ୍ୟ...''

ସନତ ରକ୍ଷିତ ତା' ଜୀବନର ଦୈନ୍ୟ, ଦୁଃଖ ବର୍ଣ୍ଣନା କରିଛି । ରାଜଯକ୍ଷ୍ମାରେ ସେ ପୀଡ଼ିତ ଇତ୍ୟାଦି । ସୁକାନ୍ତର ଧୈର୍ଯ୍ୟ ନ ଥିଲା ଶୁଣିବାକୁ । ସେ ଝଡ଼ବେଗରେ ବାହାରକୁ ବାହାରି ଯାଇଛି ।

ସେହି ରାତ୍ରିରେ ଗଣିକା ମୀନା ସଙ୍ଗେ ସୁକାନ୍ତର ଦେଖା ହୋଇଛି । ଆଦିମ କ୍ଷୁଧାକୁ ମେଣ୍ଟାଇବାପାଇଁ ମୀନା ସୁକାନ୍ତକୁ ନିମନ୍ତ୍ରଣ କରିଛି । ରାତ୍ରିର ଅନ୍ଧାରରେ ମୀନା ଓ ସୁକାନ୍ତ ଯାଇଛନ୍ତି ମୀନାର କୁଟୀରକୁ ।

ସୁକାନ୍ତ ଶାନ୍ତିରେ ନିଶ୍ୱାସ ନେଇଛି । ମୀନା ସଙ୍ଗେ ରାତ୍ରି କଟିବାର କଳ୍ପନା ତାକୁ ଆମୋଦିତ କରିଛି । କିନ୍ତୁ ମୀନା ଦୁଆରବନ୍ଧ ପାଖରେ ଦେଖିଛି ତା'ର ବାପାକୁ । ଶୀତଳ ସ୍ଥାଣୁ ମୂର୍ତ୍ତି । 'ବାପା' ବୋଲି ଚିତ୍କାର କରିଉଠିଛି ବାସକସଜ୍ଜା ମୀନା ।

ସୁକାନ୍ତ ହତବାକ୍ ହୋଇପଡ଼ିଛି । ପାଦ ବଢ଼ାଇ ଝୁଙ୍କିପଡ଼ି ଦେଖିଛି ସେଇ ସନତ୍ ରକ୍ଷିତ । ମୀନାର ବାପା ! ଅଣନିଶ୍ୱାସୀ ହୋଇ ଦୌଡ଼ିବାକୁ ଆରମ୍ଭ କରିଛି ସୁକାନ୍ତ ମହାନ୍ତି । ଗଳ୍ପଟିରେ ଲେଖକ ନାୟକର ଚରିତ୍ର ମାଧ୍ୟମରେ ଆଧୁନିକ ମଣିଷର ସ୍ଥିତିବାଦୀ ଜୀବନ ଦର୍ଶନକୁ ପ୍ରକାଶ କରିଛନ୍ତି ।

'ସୁକାନ୍ତ ମହାନ୍ତି' ଗଳ୍ପ ଭଳି ଗାଳ୍ପିକ ଅଖିଳମୋହନ 'ପୌଷର ଗୋଟିଏ ରାତ୍ରି'ର ନାୟକକୁ ଜଣେ ଦୁଃସାହସୀ ଭାଗାବଣ୍ଡ ବୋଲି ଅଭିହିତ କରିଛନ୍ତି ।

ଗଳ୍ପର ନାୟକ ସୁକାନ୍ତ ଏକଦା ପ୍ରଣୟିନୀ (ଏବେ ଅନ୍ୟକୁ ବିବାହିତା) ନୀହାରିକା ପାଖକୁ ଆସିଛି । ''ପ୍ରଣୟାତୁର ଆବେଗ ଉଚ୍ଛ୍ୱାସରେ ନୁହେଁ, ପ୍ରୟୋଜନ ସାଧିବା ଉଦ୍ଦେଶ୍ୟ ଘେନି ।'' ନୀହାରିକା ସ୍ମୃତିମେଦୁର ଅତୀତ ରୋମନ୍ଥନ କରିଚାଲିଛି ।

କିନ୍ତୁ ନାୟକ ସୁକାନ୍ତ ପକେଟରୁ ଗୋଟିଏ ଛିଣ୍ଡାବୋତାମ କାଢ଼ି ଅନୁନୟ କରିବା ଢଙ୍ଗରେ କହିଛି – ''କିଛି ଦିନ ହେଲା ବେକ ପାଖ ବୋତାମଟି ଛିଣ୍ଡିଯାଇଛି । ଖୁବ୍ ଅସୁବିଧା ହେଉଛି ... ।''

ନୀହାରିକା ସୁକାନ୍ତ ବସିଥିବା କାଉଚ୍ ହାତ ଉପରେ ବୋତାମ ସିଲେଇ କରୁ କରୁ ଅଭିମାନଭରା କଣ୍ଠରେ କହିଛି – ''ସୁକାନ୍ତ, ଅଦ୍ଭୁତ ତୁମର ଖିଆଲ । ଟିକିଏ ଭୁଲ ବୁଝାମଣା ଭିତରେ ତମେ ସିନା ମୋ ଜୀବନଟା ଛାରଖାର କରିଦେଲ ?''

ସୁକାନ୍ତ କହିଛି – ''ମୁଁ ଆସୁଛି ନୀହାରିକା । ଅନେକ କଷ୍ଟ ଦେଲି ତମକୁ, ତା'ଛଡ଼ା ଖୁସି ହେଲି ତମର ସୁଖ-ସ୍ୱାଚ୍ଛନ୍ଦ୍ୟ ଦେଖି ।''

ଉନ୍ମାଦିନୀ ନାୟିକା ଭଳି ନୀହାରିକା ସୁକାନ୍ତକୁ ଯିବାକୁ ଦେଇ ନାହିଁ । ଆବେଦନ କରିଛି – 'ତମେ ଯାଇପାରିବନି, ସୁକାନ୍ତ ।''

ସୁକାନ୍ତ କିନ୍ତୁ ଘୃଣା ଅନୁଭବ କରିଛି । ନୀହାରିକା ଆମନ୍ତ୍ରଣ ଜଣାଇଲାବେଳେ ସେ ଉପଭୋଗ କରନି । ନୀହାରିକାର ପଣ୍ୟଧର୍ମୀ ଗଣିକାସୁଲଭ ଦେହଦାନକୁ ଅସ୍ୱୀକାର କରି କହିଉଠିଛି – ''କ୍ଷମା କରିବେ ନୀହାରିକା । ପତଙ୍ଗ ମୁଁ ନୁହେଁ । ମୋର ଆସିବାର ଉଦ୍ଦେଶ୍ୟ ଥିଲା ସମ୍ପୂର୍ଣ୍ଣ ଅର୍ଥନୈତିକ । ଆଉ ତା' ମଧ୍ୟ ମୁଁ ହାସଲ କରିସାରିଛି ।''

ହାତରେ ସୁନାର ଦୁଲ୍ ଦୁଇଟା ନଚାଇ ନଚାଇ ସୁକାନ୍ତ କହିଛି – ''କିଛି ଦିନର ଖୋରାକପାଇଁ ଚଳିଯିବ୍ ଏହି ଦୁଇଟା ଦୁଲ୍... ।''

ପୁଣି ସୁକାନ୍ତ କହିଛି – ''ଏହି ଅର୍ଥନୀତିରେ ଅଭାବ ମେଣ୍ଟାଇବାପାଇଁ ଏକଦା ପ୍ରଣୟିନୀର ସୁନା ଦୁଲ୍ ଅପହରଣ କରିବା ଏକ ପଣ୍ୟଧର୍ମୀ ଜୀବନର ପରିଚୟ ଦିଏ ।''

'ପୁଷ୍ପ ଧନୁ' ଆଉ ଏକ ସୁନ୍ଦର ଗଳ୍ପ । ଏହି ଗଳ୍ପରେ ଲେଖକ ଦାମ୍ପତ୍ୟ ପ୍ରେମର ଚିତ୍ର ଆଙ୍କିଛନ୍ତି ।

ଗଳ୍ପର ନାୟିକା ରୋନା ଡେନିସନ୍ ଅତୀତରେ ଥିଲା ରୋନା ଫର୍ଣ୍ଣାଡିସ୍ । କାନପୁର ଆଙ୍ଗ୍ଲୋଇଣ୍ଡିଆନ୍ କଲୋନିର ସବୁଠାରୁ ସୁନ୍ଦରୀ ଝିଅ ଥିଲା । ସେ ପ୍ରାଚୁର୍ଯ୍ୟ ଭିତରେ ରହିବାକୁ ଧନୀ, ସୁନ୍ଦର ଡେରିକ୍‌କୁ ବିବାହ କରିଥିଲା । କିନ୍ତୁ ଡେରିକ୍ ପରିସ୍ଥିତିରେ ପଡ଼ି ଘରର ସମସ୍ତ ଆସବାବ ବିକ୍ରି କରି ଘୋଡ଼ା ଦୌଡ଼, ଜୁଆଖେଳ ଓ କ୍ଲବରେ ମନଇଚ୍ଛା ଖର୍ଚ୍ଚ କରି ନିଃସ୍ୱ ହୋଇପଡ଼ିଛନ୍ତି । ରୋନା ଜୀବନର ସମସ୍ତ ସୁଖ, କଳ୍ପନା ଓ ସ୍ୱପ୍ନ ଧୂଳିସାତ୍ ହୋଇଯାଇଛି । ରୋନା ବହୁବାର ତାକୁ ଚେତାଇ ଦେଇଛି ଯେ ସଂସାର ଆଉ ଚଳେନା । କିନ୍ତୁ ଫଳ କିଛି ହୋଇନି । ରୋନା ଆଉ ସହ୍ୟ କରିପାରିନି । ଚିଠିରେ ଶେଷ ବିଦାୟ ନେଇ ଘରୁ ପଳାଇଯାଇଛି ଷ୍ଟେସନକୁ । ରାତି ୧୧ଟା ୧୫ ମିନିଟିରେ ଟ୍ରେନ ଧରିବାକୁ ପଡ଼ିବ ଜବଲପୁରକୁ । ଗାଡ଼ି ଚାଲିବା ପୂର୍ବରୁ କିନ୍ତୁ ରୋନାକୁ ଡେରିକ୍‌ର ପ୍ରତି କଥା ମନେ ପଡ଼ିଛି । ଆତ୍ମା ତା'ର ବାହୁନି ଉଠିଛି ।

ଅତୀତର ଧନୀ ଓ ବର୍ତ୍ତମାନର ଦରିଦ୍ର ସ୍ୱାମୀକୁ ନିଃସଙ୍ଗ ଅବସ୍ଥାରେ ଛାଡ଼ି ନ ଦେବାକୁ ସ୍ଥିର କରିଛି । ସ୍ୱାମୀକୁ ଚିଠିର ଭାଷା ସହିତ ପରିଚିତ ନ କରେଇବାପାଇଁ ସେ ଦ୍ରୁତଗତିରେ ଘରକୁ ଫେରିଆସିଛି ।

ଗଳ୍ପରେ ଲେଖକ ରୋନା ଜୀବନର ପ୍ରଜ୍ୱଳିତ ଭାବକୁ ପରିସ୍ଫୁଟ କରିଛନ୍ତି । ଦାମ୍ପତ୍ୟ ଜୀବନରେ ଯେତେ କଳହ, ଅଶାନ୍ତି ଓ ଦ୍ୱେଷ ଲାଗି ରହିଥିଲେ ମଧ୍ୟ ପ୍ରେମର ବନ୍ଧନରେ ଉଭୟେ ବାନ୍ଧି ହୋଇପଡ଼ନ୍ତି ।

'ସିଦ୍ଧାର୍ଥର ଉପକଥା' ଲେଖକଙ୍କ ଭାଗାବଣ୍ଡ ଚରିତ୍ର ମଧ୍ୟରେ ଏକ ଉଜ୍ଜ୍ୱଳତମ ସୃଷ୍ଟି । ଭାଗାବଣ୍ଡ ପ୍ରଚଳିତ ଅର୍ଥରେ ଅସାମାଜିକ ଲୋଫର ହେଲେ ମଧ୍ୟ ଏହାର ଆଭିଧାନିକ ଅର୍ଥ ଅଲଗା । ସ୍ଥାନରୁ ସ୍ଥାନାନ୍ତର ବୁଲି ଏକ ବେପରୁଆ ଜୀବନ ଯାପନ ଯେ କରେ ତାକୁ ଭାଗାବଣ୍ଡ କହିବା ଉଚିତ ହେବ । ତା'ର ସ୍ଥାୟୀ ବସତି ନ ଥାଏ । ତା'ର କୌଣସି ପାର୍ଥିବ ଆସକ୍ତି ମଧ୍ୟ ନ ଥାଏ । ସେ ବେପରୁଆ ଭାବେ ଜୀବନକୁ ସାମନା ସାମନି କରେ ।

ଗଳ୍ପର ନାୟକ ସିଦ୍ଧାର୍ଥ ଏହିଭଳି ଏକ ଚରିତ୍ର । ଅସହଯୋଗ ଆନ୍ଦୋଳନରେ ଭାଗ ନେଇ ଏମ୍.ଏସ୍‌ସି. କ୍ଲାସରୁ ବିତାଡ଼ିତ ହୋଇଛି । ବିଲାତ ଯାଇ ସେଠାରୁ ଚିକିତ୍ସା ବିଜ୍ଞାନରେ ସର୍ବୋଚ୍ଚ ଡିଗ୍ରୀ ଏମ୍.ଆର୍.ସି.ପି. ପାଇ ମେଡିକାଲ କଲେଜରେ ପ୍ରଥମ ଶ୍ରେଣୀର ଚାକିରି ପାଇଛି । ତାକୁ ମଧ୍ୟ ଅବଲୀଳାକ୍ରମେ ପ୍ରତ୍ୟାଖ୍ୟାନ କରି ସେ ଶାନ୍ତିନିକେତନରେ ପହଞ୍ଚିଛି । ସେଠାରେ ଅପୂର୍ବ ରୂପସୀ ଛାତ୍ରୀ ଅହଲ୍ୟା ପ୍ରତି ଆକୃଷ୍ଟ ହୋଇ ତାଙ୍କୁ ବିବାହ କରିଛି । ବିବାହ ପରେ ବିରତପୁର ଗାଁରେ ନିରୋଳା ନିର୍ଜନ ପରିବେଶରେ ବନବାସ କରି ଚିକିତ୍ସା ବ୍ୟବସାୟ ଆରମ୍ଭ କରିଛି ।

ଅହଲ୍ୟା ଆଖିରେ ସିଦ୍ଧାର୍ଥ ଅଦ୍ଭୁତ, ଅଦ୍ୱିତୀୟ । ଅହଲ୍ୟାକୁ ଏକବାରକେ ହତଚକିତ କରି ସିଦ୍ଧାର୍ଥ ଥରେ ତା'ର ଏଠାକୁ ଆସିବାର କାରଣ କହିଛି – ''ଖାଲି ଟିକିଏ ଶାନ୍ତ ନିଭୃତ ପରିବେଶ ଭିତରେ ତମକୁ ନିବିଡ଼ଭାବେ ଅନୁଭବ କରିବି ବୋଲି ।''

କିନ୍ତୁ ଅହଲ୍ୟା ଲୁହା ସିମେଣ୍ଟର ଅଭିଜାତ ଦୁର୍ଗ ନିର୍ମାଣ କରି ତା' ଭିତରେ ନିଜର ପରିଚୟ ଖୋଜି ପାଇବାକୁ ଉଦ୍ୟମ କରିଛି । ତାକୁ ମଧ୍ୟ ସେ ବାସ୍ତବରେ ପରିଣତ କରିଛି । ସିଦ୍ଧାର୍ଥର ଉପାର୍ଜିତ ଅର୍ଥରେ ନିର୍ମାଣ କରିଛି ସୁନ୍ଦର ବଙ୍ଗଳା । ଲଗାଇଛି ସୁନ୍ଦର ଲୁହାର ଫାଟକ । ସୁନ୍ଦର ପୋର୍ଟିକୋ ଆଉ ରଖିଛି ଗୁର୍ଖା ଦରୱାନ ଓ ଜିହ୍ୱା ଲହ ଲହ କରୁଥିବା ଆଲସେସିଆନ୍ କୁକୁର । କିନ୍ତୁ ସିଦ୍ଧାର୍ଥ ଏଥିରେ ଅଣନିଶ୍ୱାସୀ ହୋଇପଡ଼ିଛି । ଆସ୍ତେ ଆସ୍ତେ ଅହଲ୍ୟା ପ୍ରତି ତା'ର ଭଲପାଇବା ଶିଥିଳ ହୋଇପଡ଼ିଛି । ଜୀବନର ସତ୍ୟକୁ ଉପଲବ୍ଧି କରିବାପାଇଁ ସେ ଚାହିଁଛି ମୁକ୍ତି । ଏହି ଧରାବନ୍ଧା ଜୀବନ ବାହାରେ ଅନ୍ୟ ଗୋଟିଏ ଜୀବନ ଅଛି – ଯାହାକୁ ସାମ୍ନା କରିବାପାଇଁ ପ୍ରଚୁର ସାହସ ଦରକାର । ସେହି ବାରବୁଲା ଯାଯାବର ଜୀବନ

ତା'ର ଆଦର୍ଶ ହୋଇଛି । ଶେଷରେ ସିଦ୍ଧାର୍ଥ ତା'ର ଆସନ୍ନପ୍ରସବା ସ୍ତ୍ରୀ, ଇଟା ସିମେଣ୍ଟ ଘେରା ଦୁର୍ଗ ଇତ୍ୟାଦିକୁ ପ୍ରତ୍ୟାଖ୍ୟାନ କରି ଚାଲିଯାଇଛି ଯାଯାବରମାନଙ୍କ ମୁକ୍ତ ଜୀବନ ପାଖକୁ ।

ଗାଳ୍ପିକ ଏହି ଗଳ୍ପରେ ସିଦ୍ଧାର୍ଥର ମାନସିକ ଅବସ୍ଥାକୁ ସୁନ୍ଦରଭାବେ ବିଶ୍ଳେଷଣ କରିଛନ୍ତି । ଗୋଟିଏ ମୁକ୍ତିପ୍ରୟାସୀ ଆତ୍ମାର ନିର୍ଲିପ୍ତ ରୂପଚିତ୍ରକୁ ଅଙ୍କନ କରିଛନ୍ତି ।

**ଓ ଅନ୍ଧଗଳି**

ଏହି ଭାଗରେ ପନ୍ଦରଟି ଗଳ୍ପ ସ୍ଥାନ ପାଇଛି । ଏହାର ପ୍ରଥମ ଗଳ୍ପଟି ହେଲା 'ଡିମିରିଫୁଲ' ।

ଡିମିରିଫୁଲର ଅସ୍ତିତ୍ୱ ନାହିଁ । ତେଣୁ ତାକୁ କେହି କେବେ ଦେଖି ନାହିଁ । ଅନୁରୂପ ଭାବେ ଏକ ଭଦ୍ରମହିଳାଙ୍କ ଝିଅ ମଞ୍ଜୁ । ତା'ର ମୃତ୍ୟୁ ଖବର ଭଦ୍ରମହିଳାଙ୍କୁ ଅଜଣା ରଖାଯାଇଛି । ମଞ୍ଜୁର ତିନି ବର୍ଷର ଅନୁପସ୍ଥିତି ମା'ଙ୍କୁ ବ୍ୟସ୍ତ ଓ ବିବ୍ରତ କରିଛି । ତାଙ୍କର ମସ୍ତିଷ୍କ ବିକୃତି ଘଟିଛି । ତେଣୁ ପିତା ଝିଅର ମୃତ୍ୟୁ ଖବର ମା'ଙ୍କୁ ଦେଇ ନାହାନ୍ତି । ଝିଅ ବାହାରେ ଗବେଷଣା କରୁଛି ଓ ଏହାପରେ ବିଲାତ ଯିବା ସମ୍ବାଦ ଦେଇଛନ୍ତି । ମା' ଝିଅର ଆସିବା ବାଟକୁ ଅପେକ୍ଷା କରିରହିଛନ୍ତି । ଅଶୋକ ନାମକ ଏକ ଯୁବକକୁ ସଞ୍ଜୟ ବୋଲି ଭାବି ତାଙ୍କ ହସ୍ତେ ଝିଅପାଇଁ ଉପହାର ପଠାଇଛନ୍ତି ।

ଏହିପରି ଏକ ନିଃସଙ୍ଗ ମାତୃତ୍ୱର ଅସହାୟ ଅବସ୍ଥାକୁ ଗାଳ୍ପିକ ବିଶ୍ଳେଷଣ କରି ମାନବିକ ସମ୍ବେଦନା ସୃଷ୍ଟି କରିପାରିଛନ୍ତି ।

'ଗୋଟିଏ ଲଟେରୀ ଟିକେଟ' ଆଉ ଗୋଟିଏ ସୁନ୍ଦର ଗଳ୍ପ । ଏଥିରେ ଲେଖକ ଜୀବନକୁ ତୀର୍ଯ୍ୟକ୍ ଭାବରେ ଦେଖିଛନ୍ତି । ସାମାନ୍ୟ ଖଣ୍ଡେ ଲଟେରୀ ଟିକେଟକୁ ନେଇ ଛଳନାମୟ ଜୀବନର ନିଗୂଢ଼ ସତ୍ୟକୁ ପ୍ରକାଶ କରିଛନ୍ତି ।

ଗଳ୍ପର ନାୟକ ଭ୍ରମରବର ମର୍ଦ୍ଦରାଜ ରାୟ । ସେ ଏକ କ୍ରମକ୍ଷୟିଷ୍ଣୁ ରାଜପରିବାରର ପୁତ୍ରମାନଙ୍କର ଉତ୍ତରାଧିକାରୀ । କିନ୍ତୁ ପରିଣତ ବୟସରେ ଆର୍ଥିକ ଅନଟନ ଦେଇ ଗତି କରିଛନ୍ତି । ଶେଷରେ ଶୁନପାମ୍ପୁଡ଼ି ବିକ୍ରୟବାଲାରେ ପରିଣତ ହୋଇଛନ୍ତି । ତାଙ୍କର ଏପରି ଦୁର୍ଦ୍ଦିନରେ କେହି ଆହା କରିବାପାଇଁ ଆଗେଇ ଆସି ନାହାନ୍ତି । କିନ୍ତୁ ଯେତେବେଳେ ସେ ଲଟେରୀ ଟିକେଟରେ ପୁରସ୍କାର ପାଇ ୩୬ ଲକ୍ଷ ଟଙ୍କାର ଅଧିକାରୀ ହୋଇଛନ୍ତି, ସେତେବେଳେ ସମସ୍ତଙ୍କର ଦୃଷ୍ଟି ତାଙ୍କ ଉପରେ ପଡ଼ିଛି । ବିଶେଷତଃ, ଧୂମକେତୁ ଭଳି ତାଙ୍କ ଆକାଶରେ ଦେଖାଦେଇଛନ୍ତି ଦାସ ସାହେବ, ଭିଣୋଇ ଚକ୍ରବାବୁ, ଲଟେରୀ ଟିକେଟ ବିକ୍ରିବାଲା ଭାସ୍କର ରାଓ ଓ ପଡ଼ୋଶୀ ବୈରାଗୀଚରଣ । ପର୍ଶୁଙ୍କୁ ସାହାଯ୍ୟ କରିବା ଥିଲା ସେମାନଙ୍କର ବାହ୍ୟ ଆଦର୍ଶ, କିନ୍ତୁ ଭିତର ଉଦ୍ଦେଶ୍ୟ ଥିଲା କଳେ ବଳେ ସେ ଟଙ୍କାକୁ ଅପହରଣ କରିବା । ସରଳ ପର୍ଶୁ କିନ୍ତୁ ସେହି ବ୍ୟକ୍ତିମାନଙ୍କର ଅନ୍ତର୍ନିହିତ ଉଦ୍ଦେଶ୍ୟ ହୃଦୟଙ୍ଗମ କରିପାରି ନାହାନ୍ତି । ତାଙ୍କୁ ଧୁତୁରା ମଞ୍ଜି ବିଷ ଦେଇ ହତ୍ୟା କରାଯାଇଛି ।

ଆଲୋଚ୍ୟ ଗଳ୍ପରେ ମଧ୍ୟବିତ୍ତ ବ୍ୟକ୍ତିମାନଙ୍କ ଉଦ୍ଦେଶ୍ୟ ପ୍ରଣୋଦିତ ସାହାଯ୍ୟ, ସହାନୁଭୂତି ଓ ସମ୍ବେଦନା ଇତ୍ୟାଦିକୁ ତୀକ୍ଷ୍ଣ ଭାବରେ ଲେଖକ ସମାଲୋଚନା କରିଛନ୍ତି ।

'ଅକାଳବୋଧନ' ଗଳ୍ପର ନାୟିକା ବେଲା ଓ ସବିତା । ଉଭୟେ ବିଶ୍ୱବିଦ୍ୟାଳୟର ଶ୍ରେଷ୍ଠ ଛାତ୍ର ବିନୟକୁ ପ୍ରେମ ନିବେଦନ କରିଛନ୍ତି । ମାତ୍ର ବିନୟ ଏସବୁକୁ ପ୍ରତ୍ୟାଖ୍ୟାନ କରି ବିଦେଶ ଚାଲିଯାଇଛି । ଫଳରେ ସବିତା ଆତ୍ମହତ୍ୟା କରିଛି । କିନ୍ତୁ ଏହାର ପ୍ରତିଶୋଧ ନେବାପାଇଁ ବେଲା ବିଲାତ ଯାଇଛି ଓ ଏକ ଦେଶୀ ଧନୀ ବ୍ରୋକରଙ୍କୁ ବିବାହ କରିଛି । ପରେ ନିଜ ସ୍ୱାମୀକୁ ଡାଇଭୋର୍ସ କରିଛି ଓ ଏକ ବେଶ୍ୟା ରୂପ ଧାରଣ କରି ମାନେଜିଂ ବ୍ରଦର୍ସର ତରୁଣ ଡାଇରେକ୍ଟର ବିନୟ ଦାସଙ୍କୁ ନିମନ୍ତ୍ରଣ କରି ତା'ର ଅତୀତର ପ୍ରେମକୁ ରୋମନ୍ଥନ କରିବା ସଙ୍ଗେ ସଙ୍ଗେ ଦୈହିକ ବାସନାକୁ ଚରିତାର୍ଥ କରିଛି ।

ଆଭିଜାତ୍ୟ ପାରିବାରିକ ଜୀବନର ସ୍ୱପ୍ନ କିପରି ପ୍ରତାରଣାରେ ପରିଣତ ହୋଇଛି, ତାହା ଲେଖକ 'ହଂସ ସଙ୍ଗୀତ' ଗଳ୍ପରେ ଦର୍ଶାଇଛନ୍ତି ।

ସ୍ୱାମୀ ରମାପଦ କୌଣସି କାରଣରୁ ନିଜ ସ୍ତ୍ରୀ ଉମାକୁ ସନ୍ଦେହ ଚକ୍ଷୁରେ ଦେଖନ୍ତି । ତାଙ୍କ ମନରେ ଯେଉଁ ଅବିଶ୍ୱାସର ବୀଜଟି ବୁଣା ହୋଇଥିଲା, ତାହା ଦୀର୍ଘ ୨୫ ବର୍ଷ ପରେ ଶାଖାପ୍ରଶାଖାଯୁକ୍ତ ହୋଇ ଏକ ବିରାଟ ବୃକ୍ଷରେ ପରିଣତ ହୋଇଛି । ରମାପଦ ଓ ଉମା ତାଙ୍କ ବିବାହ ବାର୍ଷିକୀର ରୌପ୍ୟଜୟନ୍ତୀ ଆଡ଼ମ୍ବରରେ ପାଳନ କରିଛନ୍ତି । ଉଭୟେ ଉଚ୍ଚକୋଟୀର ପ୍ରସାଧନ ସାମଗ୍ରୀରେ ବିଭୂଷିତ ହୋଇଛନ୍ତି । କିନ୍ତୁ ଅନ୍ତର ମଧ୍ୟରେ ଦେଖାଦେଇଥିବା ହତାଶା ଓ ଗ୍ଲାନିରେ ଉଭୟେ ଜର୍ଜରିତ । ସେମାନଙ୍କ ଭିତରେ ଯେଉଁ ଅନ୍ତର୍ଦ୍ୱନ୍ଦ୍ୱ ଦେଖାଦେଇଛି, ତାହାକୁ ଏଡ଼ାଇଦେବା ସମ୍ଭବ ହୋଇନି ।

ପ୍ରତାରଣାର ପରିଣତିସ୍ୱରୂପ ରମାପଦ ଖଣ୍ଡେ ବହି ଉମାଦେବୀଙ୍କ ଆଡ଼କୁ ବଢ଼େଇ ଦେଇ କହିଛନ୍ତି – "ତମକୁ ଆଜିକାର ଉପହାର ଦେବାକୁ ଭୁଲିଯାଇଥିଲି – କ୍ଷମା କରିବ ।"

ଉମାଦେବୀ ବହିର ଶିରୋନାମରେ ଆଖି ବୁଲେଇଛନ୍ତି । ଲେଖାଅଛି – 'ବିଧବାର ପ୍ରଥମ ସପ୍ତାହର ସାମାଜିକ ଆଚରଣ ସମ୍ପର୍କରେ ନିୟମାବଳୀ' ।

ବେକାରି ତଥା ଦାରିଦ୍ର୍ୟ ନିପୀଡ଼ିତ ଜୀବନର ଅସହାୟତାକୁ ସୁନ୍ଦର ରୂପ ଦେଇଛନ୍ତି ଗାଳ୍ପିକ 'ରକ୍ତକଇଁ' ଗଳ୍ପରେ ।

ତ୍ରୈଲୋକ୍ୟ ଆଉ ମିତ୍ରା । ନିରୀହ ଭାଇ ଭଉଣୀ ଦୁଇଟି ଧୀରେ ଧୀରେ ସେମାନଙ୍କର ସ୍ୱର୍ଗୀୟ ସରଳତାକୁ ହରାଇ ବସିଛନ୍ତି । ପରିବାରର ଗୁଜରାଣ ତଥା ରୁଗ୍ଣ ପିତାଙ୍କର ଆବଶ୍ୟକତାକୁ ତୁଲାଇବାପାଇଁ ଭଉଣୀ ମିତ୍ରା ବେଶ୍ୟାବୃତ୍ତି କରିଛି । ଏହା ମଧ୍ୟ ତ୍ରୈଲୋକ୍ୟର ଦୃଷ୍ଟିରୁ ବାଦ ଯାଇ ନାହିଁ ।

ଶେଷରେ ଭାଇ ଭଉଣୀ ହାଜତ୍‌ରେ ନିଜର ଅତୀତକୁ ରୋମନ୍ଥନ କରିଛନ୍ତି ।

ମିତ୍ରା କହିଛି – "ଭାଇ ଆମର ପିଲାଦିନଟା ଭାରି ସୁନ୍ଦର ଥିଲା, ନାଇଁ ? ତ୍ରୈଲୋକ୍ୟ ମିତ୍ରାଙ୍କୁ କଚେରି ହତା ପାଖକୁ ଲାଗି ପୋଖରୀରେ ଗୋଟିଏ ନାଲି କଇଁ ଫୁଟିଥିବା କଥା କହିଛି । ମିତ୍ରା ସେ ଆଡ଼କୁ ଚାହିଁଛି । ଦେଖିଲା ପୋଖରୀର ଜଳରାଶି ଉପରେ ମୁଣ୍ଡ ଟେକି ରହିଛି ରକ୍ତକଇଁ । ସବୁ ବିରୋଧାଭାଷ ଜରିଆରେ ଚିରନ୍ତନ ସତ୍ୟଟିର ପ୍ରତୀକ । ଯାହା ଅତୀତ ପୁଣି ଯାହା ଆଗାମୀ, ସରଳ ନିଷ୍ପାପ ପିଲା ଦିନ ଆଉ ପୁଞ୍ଜୀଭୂତ ଅସହାୟତାର ରକ୍ତାକ୍ତ ବିସ୍ଫୋରଣ – ଏଇ ରକ୍ତକଇଁ ।

'ହଳେ ଜୋତା କିଣିବାର ପ୍ରତ୍ୟକ୍ଷ ବିବରଣୀ' ଗଳ୍ପରେ ଲେଖକ ଗୋଟିଏ ମୁହୂର୍ତ୍ତର ପ୍ରତିକ୍ରିୟାର ଦୁଃଖଦ ପରିଣତି ବର୍ଣ୍ଣନା କରିଛନ୍ତି ।

ନାୟକର ନାମ ସୁଧାଂଶୁ । ସେ ଏକ ଜୋତା ଦୋକାନରେ ସେଲ୍‌ସମ୍ୟାନ୍‌ରୂପେ କାର୍ଯ୍ୟ କରୁଥିଲା । ଜଣେ ଗ୍ରାହିକା ଭଦ୍ରମହିଳାଙ୍କ ଗୋଡ଼ର ଜୋତା ମାପ କରୁଥିବା ସମୟରେ ତା' ମନରେ ଭାବାନ୍ତର ସୃଷ୍ଟି ହୋଇଛି । ତା' ମନରେ କେତେ ଭାବନାରାଜି ଉଙ୍କି ମାରିଛି । କଳ୍ପନା ରାଜ୍ୟରେ ପୁଣି ବିଚରଣ କରିଛି । ଫଳରେ ପ୍ରୌଢ଼ ସୁଧାଂଶୁ ୨୨ ବର୍ଷ ଯୁବକ ସୁଧାଂଶୁରେ ପରିଣତ ହୋଇଯାଇଛି ।

ଭଦ୍ରମହିଳାଙ୍କ ରୁଚିମୁତାବକ ଜୋତା ମିଳି ନାହିଁ । ପରବର୍ତ୍ତୀ ଷ୍ଟକ୍ ଆସିଲେ ଆସିବେ ବୋଲି କହିଛନ୍ତି । ସୁଧାଂଶୁର ପାଟିରୁ କିନ୍ତୁ ବାହାରି ପଡ଼ିଛି – "ଆପଣ ସତରେ କ'ଣ ଆଉ ଥରେ ଆସିବେ ?" ଏଭଳି ଉତ୍ତର ବେଖାପ ଶୁଣାଯାଇଥିଲା । ଅବଶ୍ୟ ଭଦ୍ରମହିଳାଙ୍କ ମୁଖରେ ବିରକ୍ତିର ଆଭାସ ନ ଥିଲା ।

ତେବେ ସୁଧାଂଶୁକୁ ସେଥିପାଇଁ ବେଶ୍ କିଛି ମୂଲ୍ୟ ଦେବାକୁ ପଡ଼ିଛି । ସେ ପାଇଛନ୍ତି ଚାକିରିରୁ ବହିଷ୍କାର ଆଦେଶ ।

**ନଦୀର ନାମ ଗଣତନ୍ତ୍ର**

'ଅଖିଳାୟନ'ର ତୃତୀୟ ଭାଗରେ ଚଉଦଟି ଗଳ୍ପ ସନ୍ନିବେଶିତ ହୋଇଛି । ଏହାର ପ୍ରଥମ ଗଳ୍ପଟି ହେଲା – 'ଚକେ ଗଲେ ବାର ହାତ' । ଏଥିରେ ଗାଳ୍ପିକ ଗୋଟିଏ ମୁହୂର୍ତ୍ତର ପ୍ରତିକ୍ରିୟାକୁ ପ୍ରକାଶ କରିଛନ୍ତି ।

'ମାଂସପେଶୀର ହୃଦୟ' ଗଳ୍ପରେ ମଜଦୁରମାନେ ମାଲିକ ଶ୍ରେଣୀ ବିରୋଧରେ ବିପ୍ଳବ କରିବାକୁ ଆଗେଇ ଆସିଛନ୍ତି । ଜୟନ୍ତ ଦାସ ଶ୍ରମିକମାନଙ୍କର ନେତୃତ୍ୱ ନେଇଛନ୍ତି । ମ୍ୟାନେଜମେଣ୍ଟ ବିରୋଧରେ ସ୍ଲୋଗାନ ଦେଇ ଦେଇ ଭାଷଣ ଜାଗାରେ ପହଞ୍ଚିଛନ୍ତି । ଗାଳ୍ପିକ 'ମୁଁ' ଚରିତ୍ର ମାଧ୍ୟମରେ ନିଜର ବକ୍ତବ୍ୟକୁ ଉପସ୍ଥାପନ କରିଛନ୍ତି ।

ସଭା ଆରମ୍ଭ ପୂର୍ବରୁ ମାମଲତକାରମାନେ ମାଇକ୍ ଆଗରେ ଠିଆ ହୋଇ ମାଇକ୍ ଟେଷ୍ଟ କରୁଥାନ୍ତି । ଜୟନ୍ତ ଦାସ ସଭାପତି ଆସନରେ ବସିଛନ୍ତି । କିନ୍ତୁ କଳା ମଚ୍‌ମଚ୍ ଗୋଟାଏ ଲୋକ – ଯେ କି ବିପକ୍ଷ ପାର୍ଟିର ଲୋକ ଥିଲା ଆଉ ପଟେ ଛିଣ୍ଡାଜୋତା ଧରି

ଆକ୍ରମଣ କରିବାକୁ ଆସିଥିଲା – ଗୋଟାଏ ଷ୍ଟେଟ ଏକ୍ସପ୍ରେସ ସିଗାରେଟ ପ୍ୟାକେଟ ଆଉ ଦିଆସିଲି ଜୟନ୍ତ ଦାସଙ୍କୁ ବଢ଼ାଇ ଦେଇଛି । ମାତ୍ର ସେ ୟୁନିୟନର କେତେଜଣ ତାଙ୍କୁ ଶୂନ୍ୟେ ଶୂନ୍ୟେ ଟେକି ଧରି ବାହାରେ ଛାଡ଼ି ଦେଇଛନ୍ତି ।

କେତେ ଦିନ ପରେ ପୁଲିସ ସହିତ ଏହି ୟୁନିୟନର ମୁହାଁମୁହିଁ ସଂଘର୍ଷ ହୋଇଛି । ଲାଠି ଚାର୍ଜ୍ ହୋଇଛି । ୟୁନିୟନର ଶହେ ସରିକି ଶ୍ରମିକ ଗିରଫ ହୋଇଛନ୍ତି । ସେତିକିବେଳେ ସେହି କଳା ମଚ୍ ମଚ୍ ଲୋକଟା ଜୟନ୍ତ ଦାସଙ୍କ ଆଡ଼କୁ ଆଗେଇ ଆସିଛି । ବୋଧହୁଏ ପ୍ରତିଶୋଧ ନେବାକୁ ଆସିଛି ବୋଲି ଜୟନ୍ତ ଦାସ ଭାବିଛନ୍ତି । କହିଛନ୍ତି – ''ମାରିବ ତ ମାର, ଆଉ ତ କେହି ନାହିଁ ଦେଖୁଚ ।''

ମାତ୍ର ସେହି ଲୋକଟା ପକେଟରୁ ଗୋଟିଏ ବ୍ରାଣ୍ଡିବୋତଲ ଧରେଇ ଦେଇଛି । ଆଉ କହିଛି – ''ମୁଁ ଯେତେହେଲେ ତ ଜଣେ ମଜଦୁର ! ସେମାନେ ତ ସମସ୍ତେ ପୁଲିସ ଘେରରେ, ଆପଣଙ୍କ କଥା ବୁଝିବ କିଏ ।''

ଲୋକଟିର ଅଯାଚିତ ଆତିଥ୍ୟ ଜୟନ୍ତ ଦାସଙ୍କୁ ଅଭିଭୂତ କରିଛି ।

'କନିଅପା' ଗଳ୍ପରେ ଏକ ଗରିବ ତଥା ନିଃସନ୍ତାନ ଅସହାୟା ନାରୀ 'କନିଅପା'ର ହା-ହୁତାଶମୟ ଜୀବନ ଚିତ୍ର ଅଙ୍କନ କରିଛନ୍ତି ।

'କନିଅପା' ଥିଲେ ନିଃସହାୟା । ତାଙ୍କର ପିଲାପିଲି ନ ଥିଲା । ଭାଇଙ୍କ ଝିଅକୁ ଝିଅ କରିଥିଲେ । ମାତ୍ର ପାଞ୍ଚ ବର୍ଷରେ ପିତ୍ତୁଳା ରୋଗରେ ସେ ମଲା । କନିଅପା ବାୟାଣୀ ହୋଇଗଲେ । ଅନ୍ୟ ଘରେ ପାଚିକା ହେଲେ । ପାଳିତା ଝିଅ ଖନି ବୋଲି ଡେବିରି ଓଷା କରୁଥିଲେ । ବାଁ ହାତରେ ସବୁବେଳେ ଖାଉଥିଲେ । ଆଶା ଥିଲା ଝିଅର ପାଟି ଫିଟିବ । ତା'ପରେ ସେ ଓଷା ଉଜେଇବେ । ଝିଅ ପାଖକୁ ପ୍ରତି ସପ୍ତାହରେ ଚିଠି ଦେଉଥିଲେ ଓ ଉତ୍ତରକୁ ଅପେକ୍ଷା କରି ରହୁଥିଲେ । ମାତ୍ର ଚିଠି ଆସନ୍ତା ବି କିପରି ? ଶେଷକୁ କନିଅପା କାମକୁ ଆଉ ପାରିଲେ ନାହିଁ । କନ୍ଥା ଘୋଡ଼େଇ ହୋଇ ଗୋଟିଏ କଣରେ କିଛି ଦିନ ପଡ଼ିରହିଲା ପରେ ଗୃହକର୍ତ୍ତାଙ୍କୁ କହିଦେଇ ଗଲେ ତାଙ୍କ ଗାଁକୁ । ଗାଁରେ କିଛି ଦିନ ରହି ଫେରିଆସିବେ ବୋଲି ଗଲାପୂର୍ବରୁ କହିଥିଲେ । ତାଙ୍କ ବ୍ୟାଗ ନେଇ ସେ ଗଲେ ଯେ ଆଉ ଫେରିଲେ ନାହିଁ । ଗାଁରେ ତାଙ୍କର ମୃତ୍ୟୁ ହେଲା । ତାଙ୍କର ସନ୍ଧାନ ନେବାପାଇଁ ଗାଳ୍ପିକ କନିଅପାଙ୍କ ଗାଁକୁ ଯାଇଛନ୍ତି । କନିଅପାଙ୍କ ଝିଅ ରହସ୍ୟ ମଧ୍ୟ ଉନ୍ମୋଚିତ ହୋଇଛି ।

ଗାଳ୍ପିକଙ୍କୁ ଦେଖାଯାଉଥିଲା କନିଅପା ସମସ୍ତଙ୍କୁ ପଛ କରି ଗୋଲପୋଷ୍ଟରେ ଠିଆ ହୋଇ ରହିଛନ୍ତି । ଏକୁଟିଆ-ନିତାନ୍ତ ଏକୁଟିଆ !

'ପୁତ୍ର' ଗଳ୍ପରେ ଲେଖକ ମୋସିଓ ସୋପାର୍ଣ୍ଣୋ ଓ ମାଦ୍ୟାମ ଭାଁଦେକ୍ ଏକମାତ୍ର ପୁତ୍ର ରବର୍ଟର ଅନୁପସ୍ଥିତିରେ କିପରି ଅସହାୟ ଜୀବନ କଟାଇଛନ୍ତି, ତା'ର କରୁଣ ଚିତ୍ର ଦେଇଛନ୍ତି ।

ବୃଦ୍ଧ ପିତା ଓ ମାତା ରବର୍ଟ ଉପରେ ନିର୍ଭରଶୀଳ ଥିଲେ । ରବର୍ଟ ନିଜର ସ୍ତ୍ରୀ ନୋରାଦ୍ୱାରା ପ୍ରଭାବିତ ହୋଇ ନିଜ ବୃଦ୍ଧ ପିତାମାତାଙ୍କୁ ପରିତ୍ୟାଗ କରିଛି । ସେମାନେ ଜରାନିବାସ (ଓଲ୍ଡ ହୋମ୍)ରେ ଆଶ୍ରୟ ଗ୍ରହଣ କରିଛନ୍ତି । କିନ୍ତୁ ସେହି ଜରାନିବାସର ଅନ୍ତେବାସୀଙ୍କ ଉପହାସରୁ ରକ୍ଷା ପାଇବାପାଇଁ ସୋପାର୍ଣ୍ଣୋ ଦମ୍ପତି ବାରମ୍ବାର ଚିଠି ପାଉଥିବାର ଅଭିନୟ କରିଛନ୍ତି । ତଥାପି ଉଭୟେ ରବର୍ଟଙ୍କୁ ଭୁଲିପାରି ନାହାନ୍ତି । ଅତୀତରେ ନିଜ ପରିବାରର ଚଳଣି ଓ ରବର୍ଟ ପ୍ରତି ଥିବା ସ୍ନେହ ମମତାକୁ ରୋମନ୍ଥନ କରନ୍ତି ।

ଲୁକ୍ସୁର-ଦେ-ପେଲ୍ ଉତ୍ସବଟି ଫରାସୀ ପିତା ପକ୍ଷରେ ଏକ ଆକାଙ୍କ୍ଷିତ ଦିବସ । ଏହି ଦିନକୁ ସେମାନେ ପିତୃଦିବସ ଭାବେ ପାଳନ କରିଥାନ୍ତି । ବାପା ନୂଆ ଲୁଗାପଟା ପିନ୍ଧନ୍ତି ଓ ପିଲାମାନେ ବାପାଙ୍କପାଇଁ ଉପହାର ଆଣନ୍ତି ।

କିନ୍ତୁ କାହାନ୍ତି ସୋପାର୍ଣ୍ଣୋଙ୍କର ପୁତ୍ର ଆଉ ପୁତ୍ରବଧୂ ଯେଉଁମାନେ କି ବୃଦ୍ଧ ପିତାମାତାଙ୍କପାଇଁ ଆଣିବେ ଉପହାର ?

ଏହି ଉତ୍ସବ ପାଳନପାଇଁ ମ୍ୟାଡାମ୍ ଭାଁଦେଜ୍ ନିଜର ହୀରକର ଅଙ୍ଗୁରୀୟଟି ବିକ୍ରିକରି ସେଇ ପଇସାକୁ ନିଜ ପୁଅ ରବର୍ଟ ନାମରେ ସ୍ୱାମୀ ମୋସିଓ ସୋପାର୍ଣ୍ଣୋଙ୍କ ପାଖକୁ ଏକ ନାତିଦୀର୍ଘ ଚିଠି ସହ ପଠାଇ ଜରାନିବାସର ସମସ୍ତ ଅନ୍ତେବାସୀଙ୍କୁ ଚମତ୍କୃତ କରିଦେଇଛନ୍ତି । ପୁଅ ଯେତେ ଘୃଣାର ପାତ୍ର ହେଲେ ବି ମା' ତା'ର ସବୁ ଦୋଷକୁ ଘୋଡ଼ାଇ ରଖିବାକୁ ଚେଷ୍ଟା କରେ ଓ ନିଜର ପୁତ୍ରର ସୁଗୁଣକୁ ଅନ୍ୟ ଆଗେ ଜଣାଇବାକୁ ଚେଷ୍ଟା କରେ ।

ଗାଳ୍ପିକ ଏହି ଗଳ୍ପରେ ମ୍ୟାଡାମ୍ ଭାଁଦେଜ୍‌ଙ୍କ ମନୋବୃତ୍ତିକୁ ଚମତ୍କାର ଭାବରେ ବର୍ଣ୍ଣନା କରିଛନ୍ତି ।

ମାନବିକ ସମ୍ବେଦନଶୀଳତା ଥିଲା ଗାଳ୍ପିକଙ୍କର ଗଳ୍ପଜଗତର ମୁଖ୍ୟ ବିଷୟ । ତାହା ପ୍ରକାଶ ପାଇଛି 'ଗୋଟିଏ ଉଡ଼ାଜାହାଜ ସମ୍ପର୍କରେ' ଶୀର୍ଷକ ଏକ ଗଳ୍ପରେ ।

ହାଇଦ୍ରାବାଦମୁଖୀ ଫ୍ଲାଇଟ୍‌ରେ ଯିବାପାଇଁ ଏୟାରପୋର୍ଟ ଲାଉଞ୍ଜରେ ଅପେକ୍ଷା କରିଛି କମ୍ପାନୀ ଏକ୍‌ଜିକିଉଟିଭ ଅଭିଜିତ୍ । ପାଖରେ ତାକୁ ବିଦାୟ ଦେବାପାଇଁ ସ୍ତ୍ରୀ ଲୀଳା । ଫ୍ଲାଇଟର ବିଳମ୍ବ ଯୋଗୁଁ ଅଭିଜିତ୍ ବିରକ୍ତ ହୋଇଛି । ତଥାପି ଗୁରୁତ୍ୱପୂର୍ଣ୍ଣ କନ୍‌ଫରେନ୍ସ । ସେଥିରେ ଯୋଗଦେବାପାଇଁ ଯିବାକୁହିଁ ହେବ ! ହଠାତ୍ ମାଇକ୍‌ରେ ଶୁଭିଲା ଏକ ଅନୁରୋଧ । ସେ ଅନୁରୋଧ ଥିଲା ଜଣେ ଭଦ୍ରମହିଳାଙ୍କର । ତାଙ୍କର ସ୍ୱାମୀ ଗୁରୁତର ମଟର ଦୁର୍ଘଟଣାରେ ହାଇଦ୍ରାବାଦ ଡାକ୍ତରଖାନାରେ । ଯଦି କେହି ଯାତ୍ରୀ ତାଙ୍କର ଟିକେଟ ତାଙ୍କୁ ଦିଅନ୍ତେ ତେବେ ସେ ତାଙ୍କର ଶିଶୁପୁତ୍ରକୁ ନେଇ ହାଇଦ୍ରାବାଦ ଯାଇପାରିବେ । ଅବଶ୍ୟ ଆଉ ବାର ଘଣ୍ଟା ପରେ ଫ୍ଲାଇଟ୍ ଅଛି; ମାତ୍ର ସେତେବେଳକୁ ଅନେକ ଡେରି ହୋଇଯିବ । ଅଭିଜିତ୍ ନିଜର ଟିକେଟଟି ଉକ୍ତ ଭଦ୍ରମହିଳାଙ୍କୁ ଦେଇ ଲୀଳା ସହିତ ଘରକୁ ଫେରିଛି । କିଛି ସମୟ ପରେ ସେହି

ହାଇଦ୍ରାବାଦମୁଖୀ ଉଡ଼ାଜାହାଜଟି ନିଆଁ ଲାଗି ଧ୍ୱସ୍ତବିଧ୍ୱସ୍ତ ହୋଇ ଖସିପଡ଼ିଛି । ଜଣେ ହେଲେ ଯାତ୍ରୀ ବଞ୍ଚି ରହି ନାହାନ୍ତି ।

ମାନବିକ ସମ୍ପର୍କର ଅନେକ ଗୂଢ଼ ରହସ୍ୟ ଗାଳ୍ପିକଙ୍କ ରଚନାରେ ଉନ୍ମୋଚିତ ହୋଇଛି ।

**ପ୍ରଥମ ଓ ଶେଷ**

'ଅଖିଳାୟନ'ର ଶେଷ ବିଭାଗଟି ହେଉଛି 'ପ୍ରଥମ ଓ ଶେଷ' । ଏଥିରେ ତେରଟି ଗଳ୍ପ ସନ୍ନିବେଶିତ ହୋଇଛି ।

ଏହି ଭାଗର ଦ୍ୱିତୀୟ ଗଳ୍ପଟି ହେଲା 'ଗୋଟିଏ ହୋଟେଲର ନକ୍ସା' । ଏହି ଗଳ୍ପରେ ମିଃ ଧରିଆ ଓ ମିସେସ୍ ଧରିଆଙ୍କର ଏକମାତ୍ର ପୁତ୍ର ଶିଲୁର ସ୍ୱାସ୍ଥ୍ୟକୁ ନେଇ ଯେଉଁ ମାନସିକ ଉଦ୍‌ବେଗ ଦେଖାଦେଇଛି, ତାହାକୁ ଗାଳ୍ପିକ ସୁନ୍ଦରଭାବେ ଚିତ୍ରଣ କରିଛନ୍ତି ।

ଅତି ସମ୍ଭ୍ରାନ୍ତ ପରିବାରରେ ଜନ୍ମ ଗ୍ରହଣ କରିଥିଲେ ମଧ ଶିଲୁ ହିମୋଫିଲିଆ ରୋଗରେ ଆକ୍ରାନ୍ତ । ତେଣୁ ମିଃ ଧରିଆଙ୍କ ପରିବାରରେ ସମସ୍ତେ ଆତଙ୍କିତ ଅବସ୍ଥାରେ ରହିଛନ୍ତି । ପ୍ରତିଟି ମୁହୂର୍ତ୍ତ ଗୋଟିଏ ଯୁଗ ଭଳି ଲାଗେ । କେଉଁ ସମୟରେ ସେମାନେ ବିପଦର ସମ୍ମୁଖୀନ ହେବେ, ସେଥିପାଇଁ ସେମାନେ ସଜାଗ ଥାଆନ୍ତି । ସମସ୍ତେ ଅପେକ୍ଷା କରିଛନ୍ତି କେତେବେଳେ କେଉଁ ମୁହୂର୍ତ୍ତରେ ମୃତ୍ୟୁ ଆସିଯିବ ।

ଶିଲୁ କ୍ଳାନ୍ତ ହୋଇପଡ଼ିଚି । ମି. ଧରିଆ ବାଁ ହାତରେ ଚଷମା କାଢ଼ିନେଇ ସଫା କରିବା ବାହାନାରେ ଆଖି ପୋଛିଛନ୍ତି । କେତେବେଳେ ମି. ଧରିଆ ଓ ଆଉ କେତେବେଳେ ମିସେସ୍ ଧରିଆଙ୍କର ଆଖିରେ ଲୁହ ପଡ଼ିଛି ।

ଏହିପରି ଭାବରେ ଉଭୟ ପିତାମାତାଙ୍କର ମାନସିକ ଯନ୍ତ୍ରଣାକୁ ବର୍ଣ୍ଣନା କରି ଗାଳ୍ପିକ ଏକ ବେଦନାମୟ ପରିବେଶ ସୃଷ୍ଟି କରିଛନ୍ତି ।

ଗଭୀର ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ 'ବନ୍ୟଶୂକର' ଗଳ୍ପକୁ ଗାଳ୍ପିକ ଚମତ୍କାର ଭାବେ ବିଶ୍ଳେଷଣ କରିଛନ୍ତି ।

ଗଳ୍ପର ନାୟକ ଜଗନ୍ନାଥ ପରିଜା । ପ୍ୟାରିସ୍ ସହରର ବିଖ୍ୟାତ 'ପରଫ୍ୟୁମ ଡି ପ୍ୟାରିସ୍'ର କଲିକତା ଶାଖାରେ ଚାକିରି କରନ୍ତି । ତାଙ୍କର କାମ ଥିଲା ସହରର ବିଭିନ୍ନ କସମେଟିକ୍ ଦୋକାନକୁ ଯାଇ ଅତରର ବିକ୍ରି ବୃଦ୍ଧି କରିବା । ତାଙ୍କୁ ଭଲ ଦରମା ଓ ଅନ୍ୟାନ୍ୟ ସୁବିଧା ମଧ ଯୋଗାଇ ଦିଆଯାଇଥିଲା । ସେହି ଅନୁଷ୍ଠାନର ମାଲିକ ଥିଲେ ପ୍ୟାରିସ୍‌ର ମୋସିଓ ଗିଓଭାନି । ସେ ପ୍ୟାରିସ୍ ସହରର ବିଖ୍ୟାତ ଅତର ବ୍ୟବସାୟୀ । ତାଙ୍କରି ଝିଅ ଭାରତବର୍ଷକୁ ଆସିବାର କାର୍ଯ୍ୟକ୍ରମ ହୋଇଛି । ତାଙ୍କୁ ଭାରତସାରା ବୁଲେଇ ଦେଖାଇବାର ଦାୟିତ୍ୱ ଜଗନ୍ନାଥଙ୍କୁ ଦିଆଯାଇଛି । ପାଞ୍ଚ ଛଅ ମାସ ଏକାଠି ମାଲିକଙ୍କ କନ୍ୟା କେଜି ଓ ଜଗନ୍ନାଥ ବୁଲିଛନ୍ତି । ଦୁହେଁ ମଧ ଅତି ଅନ୍ତରଙ୍ଗ ହୋଇପଡ଼ିଛନ୍ତି । ଶେଷରେ କେଜି ପ୍ରେମ ନିବେଦନ କରିଛି ଓ ଗୋଟିଏ ରୁମ୍‌ରେ ରାତ୍ରି ଯାପନପାଇଁ ନିମନ୍ତ୍ରଣ କରିଛି । କିନ୍ତୁ ସେହି ଝିଅର ପ୍ରେମକୁ ଜଗନ୍ନାଥ ପ୍ରତ୍ୟାଖ୍ୟାନ କରନ୍ତି ।

ତା' ପରଦିନ କେଜି ପ୍ୟାରିସ୍ ଫେରିଯାଇଛି । ଗୋଟିଏ ସପ୍ତାହ ପରେ ବିଦେଶୀ ଲଫାପାରେ ଗୋଟିଏ ସୁନ୍ଦର ଖ୍ରୀଷ୍ଟମାସ୍ କାର୍ଡ ଜଗନ୍ନାଥ ପାଇଛନ୍ତି । ଛବିରେ ଖଟ ଉପରେ ଶୋଇରହିଛି ଜଣେ ପ୍ରାୟ ଅସଂଯତା ସୁନ୍ଦରୀ ତରୁଣୀ ଏକ ନିମନ୍ତ୍ରଣ ଢଙ୍ଗରେ । ତା'ର ଖଟ ଚାରିପଟେ ଶୁଂଘି ଶୁଂଘି ବୁଲୁଥିବା ଗୋଟିଏ ଘୁଷୁରିର ଛବି ଅଛି । ସେଇଦିନ ମଧ୍ୟ କର୍ମଚ୍ୟୁତ ହୋଇଥିବା ଆଦେଶ ବହନ କରିଥିବା ପତ୍ର ପାଇଛନ୍ତି ।

ଅଭିନନ୍ଦନ ପତ୍ରରେ ଥିବା ପରିବେଶରୁ ଉଭୟଙ୍କ ମନର ଅବସ୍ଥା ଅତି ନିଖୁଣ ଭାବରେ ଯେ ପ୍ରକାଶ ପାଇଛି, ଏଥିରେ ସନ୍ଦେହ ନାହିଁ ।

ଶେଷ ଭାଗର ଶେଷ ଗଳ୍ପ ହେଲା 'ସପନ' । ଲେଖକ ବିଭିନ୍ନ ସାକ୍ଷାତ୍କାରରେ 'ସପନ' ତାଙ୍କର ପ୍ରଥମ ଗଳ୍ପ ବୋଲି କହିଛନ୍ତି । ଆଜକୁ ୩୮ ବର୍ଷ ତଳେ ବାମଣ୍ଡାରେ ପ୍ରକାଶ ପାଉଥିବା 'ଶଙ୍ଖ'ରେ ଏହି ଗଳ୍ପ ପ୍ରଥମେ ପ୍ରକାଶ ପାଇଥିଲା । ଏହା ଗାଳ୍ପିକଙ୍କ ଆଦ୍ୟ ଜୀବନର ସାରସ୍ୱତ ପ୍ରତିଭା ସ୍ୱାକ୍ଷର ବହନ କରେ ।

ଏକ ବଳିଷ୍ଠ କାହାଣୀ ମାଧ୍ୟମରେ ଗାଳ୍ପିକ ନୈତିକ ଅଧୋଗତିକୁ ରୂପାୟିତ କରିଛନ୍ତି ।

ରିକ୍ସା ଟାଣୁଥିବା ଗରିବ ବନ୍ଧୁଆର କେହି ନାହାନ୍ତି । ଦଶ ବାର ବରଷର ହୋଇଥିଲାବେଳେ ଭିକ ମାଗୁଥିଲା । ଏବେ ରିକ୍ସା ଟାଣୁଛି । ବନ୍ଧୁଆର ରାମା ବ୍ୟତୀତ ସାହାଭରସା କେହି ନାହାନ୍ତି । ରାମା ପରିବାର ସହିତ ସେ ସଂଶ୍ଲିଷ୍ଟ ହୋଇଛି । ରାମାର ଭଉଣୀ ଚମ୍ପାକୁ ସେ ଭଉଣୀର ସ୍ନେହ ଦେଇଛି । ରାମାର ମାଆକୁ ସେ ମାଆର ମାନ୍ୟ ଦେଇଛି । ଚମ୍ପା ବାହା ହେବାପାଇଁ ପଇସା ସଞ୍ଚୟ କରିଛି ।

ରାମା ମରିଯିବାପରେ ବନ୍ଧୁଆର ରାମା ପରିବାର ପ୍ରତି ମମତା ବଢ଼ିଯାଇଛି । ଏହା ସନିଆ ରିକ୍ସାବାଲା ଓ ଅନ୍ୟମାନେ ସହିପାରି ନାହାନ୍ତି । ବୁଢ଼ୀ ମା'ର ବୟସ ଗଲା ପରେ ଚମ୍ପା ତା' ସ୍ଥାନରେ ବ୍ୟବସାୟ ଚଳାଇଛି । ପଇସାପାଇଁ ଚକୁଳି କରି ଅନ୍ୟମାନଙ୍କୁ ଖାଇବାକୁ ଦେଇଛି । ଚମ୍ପାର କଅଁଳ ହାତର ପରଶପାଇଁ ଗରାଖମାନେ ବେଶ୍ ଆସି ଜମନ୍ତି । ବେଳେ ବେଳେ ଟାହୁଲି ଟାପରା କରନ୍ତି । ବନ୍ଧୁଆ ନାଁରେ ବାରକଥା କହନ୍ତି । ବନ୍ଧୁଆ ମୁହଁରେ କିନ୍ତୁ କେହି କହିବାକୁ ସାହସ କରନ୍ତି ନାହିଁ । ଚମ୍ପା ସେସବୁ କଥା ବନ୍ଧୁଆ ଆଗରେ କହେ । କିନ୍ତୁ ବନ୍ଧୁଆ ସେଥିରେ ଗୁରୁତ୍ୱ ଦିଏ ନାହିଁ । ସେ କହିଛି – "ଲୋକେ କହିଲେ ବୋଲି କ'ଣ ସେ ତା'ର ସାନଭଉଣୀକୁ ଛାଡ଼ି ପଳେଇବ ?"

ଚମ୍ପା ଯୁବତୀ, ସୁନ୍ଦରୀ । ତା'ର ଦେହକୁ ସନିଆ ଲୋଲୁପ ଦୃଷ୍ଟିରେ ଚାହିଁ ରହେ । ଦିନେ ରାତି ପ୍ରାୟ ଏଗାରଟା ହେବ । ରିକ୍ସାବାଲା ସବୁ ଫେରି ନାହାନ୍ତି । ଚମ୍ପା ଦୋକାନ ଖୋଲା କରି ବସି ରହିଛି । ସନିଆ ଆସିଛି । ଏତିକିବେଳେ ବନ୍ଧୁଆ ଆସି ପହଞ୍ଚିଛି । ବନ୍ଧୁଆକୁ ଦେଖି ଚମ୍ପା ପିଣ୍ଡରେ ପ୍ରାଣ ପଶିଛି । ବନ୍ଧୁଆ ସନିଆକୁ ଦେଖି ଆସିବାର କାରଣ ପଚାରିଛି । ବନ୍ଧୁଆ ଉପରେ ଏକ ଶକ୍ତ ପ୍ରହାର ବସିଛି । ସେଇଠି ସେ ଟଳି ପଡ଼ିଛି । ସନିଆ ଚମ୍ପାକୁ ବଳାତ୍କାର କରି ନେଇଯାଇଛି ।

ବନ୍ଧୁଆ ସପନ ଦେଖେ ଚମ୍ପାକୁ ବିବାହ କରିବ । ଚମ୍ପା ସପନ ଦେଖେ – ସେ ବାହା ହେବ । ସେହି ସପନ ସପନରେ ହିଁ ରହିଯାଇଛି । ତାହା ବାସ୍ତବରେ ପରିଣତ ହୋଇ ନାହିଁ ।

ଅଖିଳମୋହନଙ୍କ କେତେଗୁଡ଼ିଏ ଗଳ୍ପ ଇଂରାଜୀ, ରୁଷୀୟ ଓ ଅନ୍ୟ ଭାରତୀୟ ଭାଷାରେ ଅନୁବାଦିତ ହୋଇଛି । ତାଙ୍କ ରଚିତ 'ମତ୍ସ୍ୟଗନ୍ଧା' ଗଳ୍ପଟି ବଙ୍ଗଳା ସାହିତ୍ୟ ପତ୍ରିକା 'ଦେଶ'ରେ ଅନିମା ଅଗ୍ନିହୋତ୍ରୀଙ୍କଦ୍ୱାରା ଅନୁବାଦିତ ହୋଇ ପ୍ରକାଶ ପାଇଛି । ଆଉ ଗୋଟିଏ ଗଳ୍ପ 'କୁକୁରର କଥା', 'ଏକଟି କୁକୁରେର କଥା' ନାମରେ ବଙ୍ଗଳା ପତ୍ରିକା 'ଜୟଶ୍ରୀ'ରେ ପ୍ରକାଶିତ ହୋଇଅଛି । ପ୍ରଖ୍ୟାତ ସାହିତ୍ୟିକ ଶ୍ରୀନିବାସ ଉଦ୍‌ଗାତା 'ଡିମିରିଫୁଲ'କୁ 'ଗୁଲାର-କେ ଫୁଲ' ନାମ ଦେଇ ହିନ୍ଦୀ ଭାଷାରେ ଅନୁବାଦ କରିଛନ୍ତି । ସେହିପରି 'ତାମ୍ର ବଳୟ' ଶଙ୍କରଲାଲ ପୁରୋହିତଙ୍କଦ୍ୱାରା ଅନୁବାଦିତ ହୋଇ ହିନ୍ଦୀ ପତ୍ରିକା 'କାଦମ୍ବିନୀ'ରେ ପ୍ରକାଶ ପାଇଛି । ଅଖିଳମୋହନଙ୍କ 'ଗୋଟିଏ ହୋଟେଲର ନକ୍ସା', 'ଲାଲ ବଙ୍ଗଳା' ଶୀର୍ଷକରେ ଦିଲ୍ଲୀରେ ଏକ ସାହିତ୍ୟ ପ୍ରକାଶନୀଦ୍ୱାରା ପ୍ରକାଶିତ ହୋଇଛି । ଗାଳ୍ପିକଙ୍କ 'ହଂସ ସଙ୍ଗୀତ' ମଧ୍ୟ ଦିଲ୍ଲୀର ପ୍ରସିଦ୍ଧ ଇଂରାଜୀ ଦୈନିକ 'ପାଟ୍ରିୟଟ୍'ରେ ୧୯୭୯ ମସିହାରେ ପ୍ରକାଶ ପାଇଥିଲା ଓ ବିଶେଷ ଆଦୃତ ହୋଇଥିଲା । ଗଳ୍ପଗୁଡ଼ିକରେ ମୌଳିକତା ତଥା ନୂତନ ଦୃଷ୍ଟିଭଙ୍ଗୀ ଥିବାରୁ ଏଗୁଡ଼ିକ ଅନ୍ୟ ଭାଷାନ୍ତେ ଅନୁବାଦିତ ହୋଇଥିବାର ଗୌରବ ଅର୍ଜନ କରିଅଛି ବୋଲି କୁହାଯାଇପାରେ ।

## ପ୍ରବନ୍ଧ

### ଖବରକାଗଜ

ଅଖିଳମୋହନ ମଧ୍ୟ କେତୋଟି ପ୍ରବନ୍ଧ ରଚନା କରିଛନ୍ତି । ସେଥିମଧ୍ୟରୁ 'ଖବରକାଗଜ' ଅନ୍ୟତମ ।

କାଗଜରୁ ଅନେକ କଥା ହୁଏ । ମାତ୍ର କାଗଜର ବଡ଼ ସାର୍ଥକତା ହେଉଛି ଖବରକାଗଜ ହେବାରେ । ଖବରକାଗଜ କେତେ କିସମର ବାହାରେ । କିଏ ପାକ୍ଷିକ, କିଏ ବା ମାସିକ । ସକାଳ ହେବା ପରେ ଖବରକାଗଜବାଲା ଦୁଆରେ ଆସି ହାଜର କରେ । ନାଗୁଆ କାଗଜ କିଣାଳି ହୋଇଥିଲେ, ସେମାନେ ଶୋଇଥିଲେ ବି ପାଇଯାନ୍ତି । ଖବରକାଗଜ ଖଣ୍ଡକ କବାଟ ବା ଝରକା ଫାଙ୍କରେ ଘର ଭିତରକୁ ଆସିଯାଏ ।

ସକାଳେ ଟିକିଏ ପଦାକୁ ବାହାରିଲେ ଖବରକାଗଜ ବିକାଳି ପିମ୍ପୁଡ଼ି ପରି ଘେରିଯାନ୍ତି । ଆପତ୍ତି କଲେ ଶୁଣି ନ ଥାନ୍ତି । ଖବରକାଗଜ ନେବାକୁ ମଣିଷ ବାଧ ହୁଏ । ବହୁରକମର ବିକାଳି ମଧ୍ୟ ଦେଖାଯାନ୍ତି । ଆଠ ବର୍ଷର ଛୋଟ ବାଳକ ମୁଣ୍ଡରେ ଗାନ୍ଧୀ ଟୋପି ପିନ୍ଧି ହାତରେ ଖବରକାଗଜ ମେଲାଇ ଥାଏ । ୪୫ ବର୍ଷର ବୃଦ୍ଧ ମଧ୍ୟ ବିକୁଥାଏ । ଦକ୍ଷିଣୀ ଟୋକା ଫୁଲପ୍ୟାଣ୍ଟ ଉପରେ କାମିଜ ଗଳାଇ ବିକିବାର ଦେଖାଯାଏ ।

ଖବରକାଗଜ ଖଣ୍ଡ କିଣି ହାତରେ ମୋଡ଼ି ଧରିବା ଦରକାର । ନ ହେଲେ ବିପଦର ସମ୍ମୁଖୀନ ହେବାକୁ ପଡ଼େ । ଖବରକାଗଜ ମାଗିନେଇ ପଢ଼ିବା ଲୋକର ବି ଅଭାବ ନାହିଁ । 'କ୍ଷମା କରିବେ' କହି କାଗଜ ଖଣ୍ଡ ମାଗି ପଢ଼ନ୍ତି । ଯିବାର ସମୟ ହେଲେ କେହି କେହି ଅବଶ୍ୟ କାଗଜଟି ଫେରାଇ ଦିଅନ୍ତି । 'ଆଜିକାର ଖବର କ'ଣ' ? ବୋଲି କେହି କେହି ପଚାରିବସନ୍ତି । ଉଦାସିଆ ଆଖିରେ ବିଶେଷ କିଛି ଖବର ନାହିଁ କହି କାଗଜଟି ବଢ଼ାଇଦେଲେ ସେତେ ଅସୁବିଧା ହୁଏ ନାହିଁ । କିନ୍ତୁ କିଛି କାଗଜରେ ବାହାରିଥିବା କଥା ଯଦି ଅଜାଣତରେ ପାଟିରୁ ବାହାରିପଡ଼େ, ତେବେ ରକ୍ଷା ନାହିଁ । ସେ ବିଷୟରେ ଚର୍ଚ୍ଚା ଆରମ୍ଭ ହୋଇଯାଏ । ସେଠୁ ଉଠିଯିବାକୁ ଉପାୟ ନ ଥାଏ । ସ୍ଥାନଟି ଗୋଟିଏ ବକ୍ତୃତା ମଞ୍ଚରେ ପରିଣତ ହେବାରେ ଆଶଙ୍କା ଥାଏ ।

ଘରକୁ ଫେରିଲେ ମଧ ରକ୍ଷା ନାହିଁ । ପ୍ରଚୁର ସମୟ ଥିବା ଦରକାର ଖବରକାଗଜ ପଢ଼ିବାପାଇଁ । ପଢ଼ିବାର ମନ ଥିଲେ ମଧ ତେଲ ଲୁଣର ସଂସାର ତାହା କରାଇ ଦିଏ ନାହିଁ ।

କେତେରକମର ଖବରକାଗଜ ପଢ଼ିଲାବାଲା ଅଛନ୍ତି । କାହାପାଇଁ ଖବରକାଗଜର କ୍ଷୁଦ୍ର ଅଂଶ ଯଥେଷ୍ଟ । କିଏ ସୁନା ରୁପା ଦର ଦେଖିବାରେ ପଢ଼ା ଶେଷ କରେ ତ କିଏ ଫୁଟବଲ ଖେଳର ପରିଣତି ଜାଣିବାକୁ ଚାହେଁ ।

ପେସାଦାର ଖବରକାଗଜ ପଢ଼ାଳିଙ୍କର ମଧ ଅଭାବ ନାହିଁ । କିନ୍ତୁ ସେମାନେ ପ୍ରାୟତଃ କୌଣସି ରାଜନୈତିକ ଦଳର ଅନ୍ତର୍ଭୁକ୍ତ ହୋଇଥାଆନ୍ତି । ସେମାନେ କହନ୍ତି ସେଇଟା ସେମାନଙ୍କର ଅତ୍ୟାବଶ୍ୟକ ଜିନିଷ ... ଅର୍ଥାତ୍ ନ ହେଲେ ନ ଚଳେ ! କୌଣସି ଖବର ଆଖିରୁ ଖସିଗଲେ ସେମାନଙ୍କୁ ଅସୁବିଧା ଭୋଗ କରିବାକୁ ପଡ଼େ । ପ୍ରାବନ୍ଧିକ ବ୍ୟଙ୍ଗାତ୍ମକଭାବେ କହିଛନ୍ତି – ''ସେମାନେ ଯେ ପୂରାପୂରି ମିଛ କହନ୍ତି, ତା' ନୁହେଁ । ଏଇ କାଗଜ ପଢ଼ିବାଟା ସେମାନଙ୍କ ପକ୍ଷେ ପ୍ରୟୋଜନ, କାରଣ ସେମାନଙ୍କୁ ବକ୍ତୃତା ଦେବାକୁ ପଡ଼େ । ଆଉ ସେଥିପାଇଁ ଅନେକ ବିଷୟବସ୍ତୁ ମହଜୁଦ ରଖିବା ପ୍ରୟୋଜନ ।''

ଖବରପାଇଁ ଖବରକାଗଜ ପଢ଼ିବା ବ୍ୟକ୍ତିଙ୍କ କଥା ଅଖିଳମୋହନ ମଧ କହିଛନ୍ତି । ଏମାନେ ସାଧାରଣତଃ ପ୍ରୌଢ଼ ଓ ବେକାର । ପ୍ରାବନ୍ଧିକଙ୍କ ମତରେ ଏହି ଶେଷୋକ୍ତ ଗ୍ରାହକ ଖବରକାଗଜର ସମ୍ମାନିତ ପାଠକ ।

ଓଡ଼ିଆ ପ୍ରବନ୍ଧ ସାହିତ୍ୟରେ 'ଖବରକାଗଜ' ଏକ ଅନବଦ୍ୟ ସୃଷ୍ଟି ।

'ଅପୂର ସଂସାର' କ୍ଷୁଦ୍ର ପ୍ରବନ୍ଧଟି 'ସମାବେଶ' ପତ୍ରିକାର ସମ୍ପାଦକୀୟରେ ପ୍ରକାଶ ପାଇଥିଲା । 'ବାଘରାଣୀ ଖଇରୀ' ମଧ ଇଂରାଜୀ ସଂସ୍କୃତି ପତ୍ରିକା (The Heritage) ରେ ସଂକ୍ଷିପ୍ତ ଆକାରରେ 'Princess Khairi' ଶିରୋନାମରେ ପ୍ରକାଶ ପାଇ ଉଚ୍ଚ ପ୍ରଶଂସିତ ହୋଇଥିଲା ।

**ସାହିତ୍ୟ ପତ୍ରିକା ସମ୍ପାଦନା**

ଅଖିଳମୋହନ ଏକ ସୃଷ୍ଟିଧର୍ମୀ ସାହିତ୍ୟିକ ଥିଲେ । ଗଳ୍ପ, ସୁଲଳିତ ନିବନ୍ଧ, ଭ୍ରମଣ ବୃତ୍ତାନ୍ତ ଆଦି ସାହିତ୍ୟର ବିଭିନ୍ନ ଦିଗରେ ଲେଖନୀ ଚାଳନା କରିଛନ୍ତି । ସେ ମଧ୍ୟ ସାହିତ୍ୟ ପତ୍ରିକା ସମ୍ପାଦନରେ ସିଦ୍ଧହସ୍ତର ପରିଚୟ ଦେଇଛନ୍ତି । ସେ 'ସମାବେଶ' ସାହିତ୍ୟ ପତ୍ରିକାର ପ୍ରାୟ ୪ ବର୍ଷ କାଳ ମୁଖ୍ୟ ସମ୍ପାଦକ ଭାବେ କାର୍ଯ୍ୟ କରିଥିଲେ । ଏହି ପତ୍ରିକାର ବିଭିନ୍ନ ପ୍ରସ୍ଥରେ ସେ ସମ୍ପାଦକ ହିସାବରେ ଯେଉଁ ମହତ୍ତ୍ୱପୂର୍ଣ୍ଣ ଲେଖାମାନ ଲେଖିଛନ୍ତି, ତାହା ତାଙ୍କ ପ୍ରତିଭାର ପରିଚୟ ଦିଏ ।

ସମ୍ପାଦକଙ୍କର କାର୍ଯ୍ୟ ସମ୍ବନ୍ଧରେ ବର୍ଣ୍ଣନା କରି ଅଖିଳମୋହନ 'ସମାବେଶ'ର ସମ୍ପାଦକୀୟ 'ଶେଷ ପୃଷ୍ଠା'ରେ କହିଛନ୍ତି – ''ସମ୍ପାଦକୀୟ ଏକ ଆଫ୍ଟର ଡିନର ବକ୍ତୃତା ପରି ଦୁଃସାଧ୍ୟ କାର୍ଯ୍ୟ ।'' ତାଙ୍କ ମତରେ ସମ୍ପାଦକୀୟ ଏପରି ହେବା ଉଚିତ ଯେଉଁଥିରେ ସମ୍ପାଦକ ଏକ ନୂତନ ସମସ୍ୟା ପାଠକମାନଙ୍କ ଆଗରେ ଟେକି ଧରିବେ ଓ ଯଦି ତାଙ୍କ ଅକ୍ତିଆର ଭିତରେ ଥାଏ, କିଛି ସମାଧାନପାଇଁ ଇଙ୍ଗିତ ଦେବେ ।

'ସମାବେଶ' ପତ୍ରିକାର ସମ୍ପାଦକୀୟକୁ ଅଖିଳମୋହନ 'ଶେଷପୃଷ୍ଠା' ନାମରେ ନାମିତ କରିଥିଲେ । ନିଜେ ପ୍ରତ୍ୟେକ ସଂଖ୍ୟାରେ ଲେଖୁଥିଲେ । 'ସମାବେଶ' ପତ୍ରିକାର ପ୍ରତିଷ୍ଠାତା ବନ୍ଧୁ ଜଗଦୀଶ ପାଣି ତାଙ୍କୁ ମଧ୍ୟ ଅବାଧ ସ୍ୱାତନ୍ତ୍ର୍ୟ ଦେଇଥିଲେ । ଏହି 'ଶେଷପୃଷ୍ଠା' ଶିରୋନାମରେ ଅଖିଳମୋହନ ବିଶ୍ୱ ଗଳ୍ପ ସାହିତ୍ୟର ଅତୀତ, ପରମ୍ପରା, ଓଡ଼ିଶାର ଇଂରାଜୀ କବି ଜୟନ୍ତ ମହାପାତ୍ରଙ୍କ ରଚନା, କବି ବୈକୁଣ୍ଠନାଥଙ୍କ ପ୍ରୟାଣ, କବି ରମାକାନ୍ତ ରଥଙ୍କ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତି, ଭୁଟ୍ଟୋଙ୍କର ଫାଶୀ, ଲେଖକର ସମସ୍ୟା, ସୁରେନ୍ଦ୍ର ମହାନ୍ତିଙ୍କ ଶାରଳା ପୁରସ୍କାର ପ୍ରାପ୍ତି, ସୃଜନଶୀଳ ଲେଖାର ସ୍ୱରୂପ ଆଦି ବିଭିନ୍ନ ସମସ୍ୟା ଓ ବ୍ୟକ୍ତିଙ୍କ ଉପରେ ଲେଖନୀ ଚାଳନା କରିଛନ୍ତି । ସମ୍ପାଦକୀୟମାନଙ୍କରେ ସେ ଯେଉଁ ପ୍ରଶ୍ନଗୁଡ଼ିକ ଉଠାଇଛନ୍ତି ସେଗୁଡ଼ିକ ମୁଖ୍ୟତଃ ସାଂସ୍କୃତିକ, ସାହିତ୍ୟିକ ଓ ମାନବିକ । ଜଣେ ସଫଳ ସମ୍ପାଦକ ଓ ଗଦ୍ୟଲେଖକ ଭାବେ ସେ ନିଶ୍ଚିତଭାବେ ଅଜସ୍ର ସମ୍ମାନର ଅଧିକାରୀ ।

## ଅନ୍ୟ ଦେଶ

**ଭ୍ରମଣବୃତ୍ତାନ୍ତ**

ଅଖିଳମୋହନ ଏକ ଭ୍ରମଣକାରୀ ପ୍ରତିନିଧି ଦଳରେ ଲଣ୍ଡନ ଓ ପ୍ୟାରିସ୍ ଯାଇଥିଲେ । ଏକ ଶିଳ୍ପୀ ତଥା ଅନୁସନ୍ଧିତ୍ସାର ଅନ୍ତର୍ଦୃଷ୍ଟି ନେଇ ଲଣ୍ଡନ ଓ ପ୍ୟାରିସକୁ ସେ ଆବିଷ୍କାର କରିଛନ୍ତି । ସେ ପ୍ୟାରିସ୍‌ର ସ୍ଥାପତ୍ୟ, ଫରାସୀ ଜାତିର ଇତିହାସ, ତା'ର ସଂସ୍କୃତିର ବହୁବିଧବିନ୍ୟାସ ଓ ସର୍ବୋପରି ସେଠା ଜନସାଧାରଣ ଓ ମହାନଗରୀର ଅନ୍ଧକାରାଚ୍ଛନ୍ନ ଦିଗକୁ ଅନୁଧ୍ୟାନ କରିଛନ୍ତି । ସେହିପରି ଲଣ୍ଡନ ମହାନଗରୀର ପ୍ରସିଦ୍ଧ

ହାଇଡ୍ ପାର୍କ, ଟେମ୍‌ସ ନଦୀ, ଟ୍ରାଫଲଗାର କୀର୍ତ୍ତିସ୍ତମ୍ଭ, ସର୍ପେଣ୍ଟାଇନ ଲେକ୍, ସ୍କଟଲ୍ୟାଣ୍ଡ କାର୍ଯ୍ୟାଳୟ, ମଟର କାରଖାନା ପ୍ରଭୃତି ବହୁବିଧ ଦୃଶ୍ୟରାଜିକୁ କଳାତ୍ମକ ଭାବରେ ପ୍ରକାଶ କରିଛନ୍ତି । 'ଅନ୍ୟ ଦେଶ' ପୁସ୍ତକରେ, 'ଅଖିଳମୋହନଙ୍କ ଯାଯାବର ଶିଳ୍ପୀ ପ୍ରାଣ ଓ ମନ, ଶିଶୁସୁଲଭ କୌତୂହଳ ଓ ଅନୁସନ୍ଧିତ୍ସା ତାଙ୍କର ଗଳ୍ପମାନଙ୍କରେ ପ୍ରକାଶ ପାଇଲା ଭଳି ତାଙ୍କ ଭ୍ରମଣ କାହାଣୀରେ ପ୍ରତିଫଳିତ ହୋଇଛି ।

ପ୍ରଖ୍ୟାତ ଔପନ୍ୟାସିକ ବିଭୂତି ପଟ୍ଟନାୟକଙ୍କ ଭାଷାରେ – 'ଅନ୍ୟ ଦେଶ' ତଥ୍ୟ, କଳ୍ପନା, ସ୍ୱପ୍ନ ଓ ବାସ୍ତବତାର ଏକ ଅପୂର୍ବ ବାଙ୍‌ମୟ ଚିତ୍ର । ଅଖିଳମୋହନଙ୍କ ଭାଷାରେ ଯାଦୁ ମାୟା, ବର୍ଣ୍ଣନାର ନିଜସ୍ୱ ଚମତ୍କାର ଶୈଳୀ, ସମାଜ ସଚେତନ ଶକ୍ତି, ମନର ନିକଷରେ ୟୁରୋପୀୟ ସମକାଳୀନ ବାସ୍ତବତାକୁ ପରଖି ନେବାର ଶକ୍ତି ଓ ଆପଣାକୁ ଜାଣିବା ଲାଗି ତାଙ୍କର ଶାଣିତ ଜିଜ୍ଞାସା – ଏହି ଭ୍ରମଣ କାହାଣୀ ଗ୍ରନ୍ଥକୁ ଏକ ନୂତନ ସାହିତ୍ୟିକ ଉଚ୍ଚତା ପ୍ରଦାନ କରିଛି ।''

ଆଲୋଚକଙ୍କ ମତରେ ଏହା ଓଡ଼ିଆ ଭ୍ରମଣ କାହାଣୀ ସାହିତ୍ୟର ଚଲାପଥରେ ଏକ ମାଇଲଖୁଣ୍ଟ ରୂପେ ବିବେଚିତ ହେବ ।

### ଅଭିନୟ

ଅଭିନୟ ପ୍ରତି ଅଖିଳମୋହନଙ୍କ ଗଭୀର ମମତା ଥିଲା । କଳାକାରମାନଙ୍କ ଦୁର୍ଦ୍ଦିନରେ ସେ ହଠାତ୍ ଆବିର୍ଭୂତ ହୋଇ ସଭାପତି ପଦ ଗ୍ରହଣ କରିଥିଲେ ଓ ସମସ୍ତ ମଞ୍ଚ ପରିଚାଳନା ଭାର ଗ୍ରହଣ କରିଥିଲେ । ହତୋତ୍ସାହ ହୋଇପଡ଼ିଥିବା କଳାକାରମାନଙ୍କ ମୁଖରେ ସେ ହସ ଫୁଟାଇ ପାରିଥିଲେ । ସେ ଅବଶ୍ୟ କୌଣସି ନାଟକ ରଚନା କରି ନାହାନ୍ତି, ତଥାପି ନାଟକକୁ ବିଭିନ୍ନ ଦିଗରୁ ବିଶ୍ଳେଷଣ କରୁଥିଲେ । ରଙ୍ଗମଞ୍ଚପାଇଁ କେଉଁ ନାଟକ ଉଦ୍ଦିଷ୍ଟ ହେବ, କେଉଁ ଅଭିନେତା ଅଭିନୟ କରିବେ, ଦର୍ଶକମାନଙ୍କ ପାଖରେ କିପରି ନାଟକକୁ ପହଞ୍ଚାଇବାର ହେବ, ଏସବୁ ବିଷୟରେ ସେ ଚିନ୍ତା କରୁଥିଲେ । ଚଳଚ୍ଚିତ୍ର 'ପରଝିଅ ଘର ଭାଙ୍ଗେନା'ରେ ସେ ଶ୍ରାବଣୀ ରାୟଙ୍କ ସହ କନ୍ୟାପିତା ଭୂମିକାରେ ଅଭିନୟ କରିଥିଲେ । ୧୯୫୭ ମସିହାରେ ସେ ଖୋର୍ଦ୍ଧାରେ ଗ୍ଲୋରିଆ ରାଉତଙ୍କ ସହ ଅଭିନୟ ମଧ୍ୟ କରିଥିଲେ । ଏଥିରୁ ଜଣାଯାଏ ଯେ ସେ ନାଟକ, ରଙ୍ଗମଞ୍ଚ ପ୍ରଭୃତି ସହ ଘନିଷ୍ଠ ଭାବରେ ସଂଶ୍ଳିଷ୍ଟ ଥିଲେ ।

### ଦେହାନ୍ତ

ଜୀବନ ସମ୍ପର୍କରେ ଅଖିଳମୋହନ କୌଣସି ବିଷଣ୍ଣ, ଅବସାଦ ବା ଉଦାସୀନ ଭାବକୁ ପ୍ରଶ୍ରୟ ଦେଇ ନ ଥିଲେ । ନିଷ୍କ୍ରିୟ ଉଦ୍ୟମହୀନତାକୁ ସେ ପସନ୍ଦ କରୁ ନ ଥିଲେ । ନିଜର ପାରିବାରିକ ଜୀବନରୁ ସେ ଗଭୀର ଆନନ୍ଦ ପାଇଥିଲେ । ପରିବାରର ସମସ୍ତଙ୍କ ପ୍ରତି ତାଙ୍କର ପ୍ରଗାଢ଼ ଭଲ ପାଇବା ଥିଲା । ତାଙ୍କ ନାତୁଣୀର ଜନ୍ମ ଉପଲକ୍ଷେ ସେ ଜଣେ ବନ୍ଧୁଙ୍କୁ ଲେଖିଥିଲେ – ''ମୋର ଗୋଟିଏ ନାତୁଣୀ ହୋଇଛି, ତାହାହିଁ କଳାମେଘର ସୀମାନ୍ତରେ ଏକମାତ୍ର ରଜତ ରେଖା ।''

ଶେଷରେ ଅଖିଳମୋହନ ଏକ ଦୁରାରୋଗ୍ୟ ବ୍ୟାଧିର ଅସ୍ତ୍ର ଚିକିତ୍ସାପାଇଁ କଟକର ଏକ ଘରୋଇ ହସ୍‌ପିଟାଲରେ ଭର୍ତ୍ତି ହେଲେ । ସେ ନିଜେ କାର୍ ଚଳାଇ ସେଠାରେ ପହଞ୍ଚିଲେ ଓ ଏକ ମତ୍ତ ଯୋଦ୍ଧା ଭଳି ଟେବୁଲ ଉପରକୁ ଲମ୍ଫ ଦେଇ ଛୁରି କତୁରି ଧରିଥିବା ଡାକ୍ତର ଓ ନର୍ସଙ୍କୁ ଅଭିବାଦନ ଜଣାଇଲେ । ମୁହଁରେ ଥିଲା ଚିରସୋହାଗୀ ସିଗାରେଟ ଶେଷ ଖଣ୍ଡ । .. ସେଇ ଟେବୁଲ ଉପରେ ହିଁ ତାଙ୍କର ହାର୍ଟ ଫେଲ୍ ହୋଇଗଲା ।

ଯିବା ପୂର୍ବରୁ ସେ ଘରେ କହିଯାଇଥିଲେ ସେ ପାଞ୍ଚ ଦିନ ପରେ ଫେରି ଆସିବେ । ମାତ୍ର ଫେରିବା ତାଙ୍କ ହାତରେ ନ ଥିଲା । ସେ ସେହି ହସ୍‌ପିଟାଲର ଅପରେସନ ଥିଏଟରରେ ଶେଷ ନିଶ୍ୱାସ ତ୍ୟାଗ କଲେ । ସେ ଦିନ ଥିଲା କାର୍ତ୍ତିକ ଶୁକ୍ଳ ତ୍ରୟୋଦଶୀ ସୋମବାର । ନଭେମ୍ବର ଅଣତିରିଶ ୧୯୮୨ ମସିହା ।

ଅଖିଳମୋହନଙ୍କ ମୃତ୍ୟୁ ଖବର ଉଭୟ କଟକ ଓ ଭୁବନେଶ୍ୱରରେ ତଡ଼ିତ୍ ଗତିରେ ବ୍ୟାପିଗଲା । ନିଜ ବସାଘର 'ବାଲିଘର' କୋଳାହଳ, କ୍ରନ୍ଦନରେ ପୂରିଗଲା । ଓଡ଼ିଆ ସାହିତ୍ୟର ବରେଣ୍ୟ ଓ ପ୍ରବୀଣ ସାଧକ ଔପନ୍ୟାସିକ ଗୋପୀନାଥ ମହାନ୍ତି ବିଦ୍ୟୁତ୍ ଗତିରେ ପହଞ୍ଚି ଶ୍ରଦ୍ଧାର୍ଘ୍ୟ ପ୍ରଦାନ କରି କହିପକାଇଲେ – ''ବୁଝିଲେ ମୋଠୁଁ ଚଉଦ ବର୍ଷ ସାନ ।''

ଏହି ପଦକ କଥାରେ ତାଙ୍କ ଅନ୍ତରର କୋହ ଯେପରି ଉଚ୍ଛଳ ଓ ଉଦ୍‌ବେଳ ହୋଇଉଠୁଥିଲା ! ଆଉ ସାହିତ୍ୟିକ ବନ୍ଧୁ ସୀତାକାନ୍ତ ମହାପାତ୍ର କବାଟ କଣକୁ ଆଉଜି କାନ୍ଦୁଥିଲେ ।

ଓଡ଼ିଆ ସାହିତ୍ୟ ଏକାଡେମୀ ଓଡ଼ିଆ ସାହିତ୍ୟର ଏଇ ଶକ୍ତିଧର ପୁରୁଷଙ୍କ ଗଳାରେ ଶୁଭ୍ର ଶତଦଳ ଖଚିତ ପୁଷ୍ପମାଲ୍ୟ ଦେଇ ଶେଷ ସମ୍ମାନ ଜଣାଇଥିଲା । ଅଖିଳମୋହନଙ୍କ ଶବଦାହ ହେଲା ଜନ୍ମମାଟି ଖୋରଧାର ଅତି ପ୍ରିୟ ବରୁଣାଇର ଟାଙ୍ଗରା ଭୂମିରେ । ସେ ଆତ୍ମଜୀବନୀର କିୟଦଂଶରେ ଲେଖିଥିଲେ – ''ମୁଁ ସ୍ପଷ୍ଟ ଦେଖିପାରୁଛି ବରୁଣେଇର ସେହି ନାସିତଳେ ଗୋଟିଏ ଛୋଟ ନିଆଁ ଜଳୁଛି । କାହିଁ ମୋ ଗାଁରେ କେହି ମରିଯିବାର ସମ୍ବାଦ ମୁଁ ଏପର୍ଯ୍ୟନ୍ତ ପାଇ ନାହିଁ ! ହୋଇପାରେ, ସେ ଚିତାଗ୍ନି ମୋର ! ମୁଁ ହୁଏତ ବରୁଣେଇ ଦେହରେ ଘସି ହୋଇ ସରିଗଲି । କିନ୍ତୁ ମୋର ମନେ ହେଉଛି ଯେପରି ମୁଁ ବିପୁଳସ୍ତନା ବରୁଣେଇ ଜନନୀର ସମଗ୍ରଦେହକୁ ଆଲିଙ୍ଗନ କରି ଶୋଇରହିଛି ଏକ ମଧୁର, ପ୍ରଶାନ୍ତ ଓ ଅନନ୍ତ ନିଦ୍ରାରେ ... ।''

ଏହା ଯେପରି ଅଖିଳମୋହନଙ୍କର ଥିଲା ଏକ ଉଇଲ ! ଶେଷ ଇଚ୍ଛା ଥିଲା ବରୁଣେଇ ତଳ ମଶାଣିରେ ତାଙ୍କର ଶେଷ ଇଚ୍ଛା ପୂର୍ଣ୍ଣ ହେବ । ହେଲା ମଧ୍ୟ । ସେଦିନ ଗଭୀର ରାତ୍ରିର ପଣତ ତଳେ ସେଇ ବରୁଣେଇ ନାସି ତଳେ ଯେଉଁ ଛୋଟ ନିଆଁଟି ଜଳିଲା, ସେ ଥିଲା ଚିତାଗ୍ନି । ଆଉ ତାହା ଥିଲା ଅଖିଳମୋହନଙ୍କର ।

ଓଡ଼ିଶାର ବିଶିଷ୍ଟ ଜନନାୟକ ହରେକୃଷ୍ଣ ମହତାବ ଅଖିଳମୋହନଙ୍କ ଅକାଳ ମୃତ୍ୟୁରେ ଗଭୀର ଶୋକ ପ୍ରକାଶ କରି ଲେଖିଥିଲେ – ''ମୋ ବୟସର ଲୋକ ବୟସରେ ବହୁ ବର୍ଷ କମ୍‌ବୟସ୍କ ବନ୍ଧୁଙ୍କ ମୃତ୍ୟୁରେ କିଛି ଲେଖିବା ହିଁ ଅତି ଦୁଃଖଦାୟକ ।''

ମୁଖ୍ୟମନ୍ତ୍ରୀ ତଥା ସହପାଠୀ ଜାନକୀବଲ୍ଲଭ ପଟ୍ଟନାୟକ ଶୋକବାର୍ତ୍ତାରେ ଲେଖିଥିଲେ – ''ଏକ ସରଳ, ସ୍ନେହମୟ, ରସୋତ୍ତୀର୍ଣ୍ଣ ଜୀବନର ସେ ଏକ ପ୍ରତୀକ ଥିଲେ । ତେଣୁ ତାଙ୍କର ବିଦାୟ ଏଡ଼େ ଦୁଃଖପ୍ରଦ !''

ଆଉ ଜଣେ ବିଶିଷ୍ଟ ଔପନ୍ୟାସିକ ତଥା ଓଡ଼ିଆ ସାହିତ୍ୟର କଥାକାର ସୁରେନ୍ଦ୍ର ମହାନ୍ତିଙ୍କ ଭାଷାରେ – ''ମୃତ୍ୟୁ ହିଁ ତାଙ୍କ କପାଳରେ ପିନ୍ଧାଇଦେଲା ଅମରତ୍ୱର ଜୟ ଟୀକା ।''

ଏକଦା ଗୁରୁ ଥିବା ପ୍ରଖ୍ୟାତ ଗାଳ୍ପିକ ରାଜକିଶୋର ରାୟ ମଧ୍ୟ 'ଦୁର୍ବିନୀତ' ଛାତ୍ରର ମୃତ୍ୟୁରେ ଲେଖିଛନ୍ତି – ''ରଖିଯାଇଛି ଗୁଡ଼ାଏ ବାଲି, ତା'ରି ଉପରେ ଗୁଡ଼ିଏ ଶାମୁକା, ନୀରନ୍ଧ୍ର ଅନ୍ଧକାର ବା ଜ୍ୟୋତ୍ସ୍ନାଧୌତ ରଜନୀରେ ଅଥବା ବାଳାରୁଣର ଅରୁଣିମାରେ, ଯେପର୍ଯ୍ୟନ୍ତ ମାନବୀୟ ପ୍ରଜ୍ଞା, ସାଧୁ ଚିନ୍ତନ, ହଜି ଯାଇଥିବା ଐଶ୍ୱର୍ଯ୍ୟକୁ ପରଖୁଥିବ, ଅଶ୍ରୁ ଧୋଇ ଦେଉଥିବ !''

## ମୂଲ୍ୟାୟନ

ସ୍ୱାଧୀନତାର ପୂର୍ବ ଦଶନ୍ଧିରୁ ଓଡ଼ିଆ ଗଳ୍ପ ସାହିତ୍ୟରେ ବ୍ୟକ୍ତିସ୍ୱାତନ୍ତ୍ର୍ୟବୋଧକୁ ନେଇ ଯେଉଁ ନୂତନ ଗଳ୍ପ ଶୈଳୀ ଆରମ୍ଭ ହୋଇଥିଲା, ସେହି ଧାରାର ଅନ୍ୟତମ ସାର୍ଥକ କଳାକାର ହେଉଛନ୍ତି ଅଖିଳମୋହନ । କେବଳ ସେଇ ଧାରାରୁ ନୁହେଁ, ଧାରା ଉପରେ ସେ ଆଙ୍କିଲେ ଆଉ ଏକ ନୂତନ ଧାରା – ଯାହା ଥିଲା ତାଙ୍କର ସମ୍ପୂର୍ଣ୍ଣ ନିଜସ୍ୱ । ୧୯୪୬ ମସିହାରେ ପ୍ରକାଶ ପାଇଥିବା ଗଳ୍ପ 'ସପନ'ଠାରୁ 'ଝଡ଼ର ଇଗଲ ଓ ଧରଣୀର କୃଷ୍ଣସାର' ପର୍ଯ୍ୟନ୍ତ ତାଙ୍କର ଗଳ୍ପମାନସ ଯେଉଁ ଭିତ୍ତି ସ୍ଥାପନ କଲା, ତାହା ଥିଲା ସେ କାଳର ଗଳ୍ପ ଧାରା ଠାରୁ ସମ୍ପୂର୍ଣ୍ଣ ଭିନ୍ନ । ସୁତରାଂ ପରମ୍ପରା ପୃଷ୍ଠଭୂମିରେ ଅଖିଳମୋହନଙ୍କ ଗଳ୍ପଗୁଡ଼ିକ ଯେ ଏକ ନୂତନ ଦିଗନ୍ତ ଉନ୍ମୋଚନ କରିଛି, ଏହା ନିର୍ବିବାଦରେ କୁହାଯାଇପାରେ ।

ଅଖିଳମୋହନ ହେଉଛନ୍ତି ବାସ୍ତବବାଦୀ ଶିଳ୍ପୀ । ଜୀବନର କୌଣସି ବାସ୍ତବ ଅନୁଭୂତି ଧାରଣ ନ କରିବା ପର୍ଯ୍ୟନ୍ତ ସେ ଗଳ୍ପ ଲେଖିବାରେ ମନୋନିବେଶ କରନ୍ତି ନାହିଁ ବୋଲି 'ମୁଁ କାହିଁକି ଲେଖେ' ଶୀର୍ଷକରେ କହିଛନ୍ତି । ଲେଖିଲା ପୂର୍ବରୁ ଯେଉଁ ଯେଉଁ ବାସ୍ତବ ଘଟଣା ମଧ୍ୟ ଦେଇଯାଇଛନ୍ତି ଏବଂ ତାଙ୍କର ସମ୍ପୂର୍ଣ୍ଣ ନିଜସ୍ୱ ଅନୁଭୂତିକୁ ସେ କେବଳ ରୂପାୟିତ କରିଥାନ୍ତି । ସେ ପୁଣି ସ୍ୱୀକାର କରିଛନ୍ତି ଯେ ଗଳ୍ପ ଲେଖିଲାବେଳେ ତାଙ୍କର କୌଣସି କଳ୍ପନା ବିଳାସ ବା ପ୍ରେରଣା ନ ଥାଏ । ପ୍ରାୟ ତାଙ୍କର ସମସ୍ତ ଗଳ୍ପ ଅନୁଭୂତିସିଦ୍ଧ ବୋଲି ମାନିନେବାକୁ ପଡ଼ିବ ।

ଅଖିଳମୋହନଙ୍କ ରଚନାରେ ପରିଦୃଷ୍ଟ ହୁଏ ଗଭୀର ଯନ୍ତ୍ରଣାବୋଧ । ଖାଲି ଗଳ୍ପ କାହିଁକି, ଯେକୌଣସି ସୃଜନଶୀଳ ସାହିତ୍ୟର ବିଭାଗରେ ଲେଖିବା ସମ୍ଭବ ନୁହେଁ; ଯଦି ଲେଖକର ଗଭୀର ଯନ୍ତ୍ରଣାବୋଧ ନ ଥାଏ – ଏହା ଥିଲା ତାଙ୍କର ଦୃଢ଼ ମତ । ସେ ସମାଜର ଅସହାୟ, ଅବହେଳିତ ଓ ନିପୀଡ଼ିତ ମଣିଷମାନଙ୍କ ଚିତ୍ର ଆଙ୍କିଛନ୍ତି । ବିଶେଷତଃ, ସମାଜର ମଧ୍ୟବିତ୍ତ ଓ ତଦୂର୍ଦ୍ଧ୍ୱ ବ୍ୟକ୍ତିମାନଙ୍କ ଜୀବନର ନିଃସଙ୍ଗତା, ବ୍ୟର୍ଥତା ଓ ଅନ୍ତର୍ଦାହ ଖୁବ୍ ଉଚ୍ଛଳିତ ଭାବେ ତାଙ୍କ ଗଳ୍ପରେ ରୂପ ପାଇଛି । ଅଧିକାଂଶ ଗଳ୍ପ ତାଙ୍କର କରୁଣ, ବେଦନାସିକ୍ତ । ହାସ୍ୟରସ ପ୍ରାୟତଃ ନାହିଁ । ଗମ୍ଭୀର ପରିବେଶ, ନାଟକୀୟତା ଓ ପ୍ରତୀକ – ସବୁ ବର୍ଛାପରି ଗୋଟିଏ ବିନ୍ଦୁରେ ବିଦ୍ଧ କରନ୍ତି । ଏହାହିଁ ଅଖିଳମୋହନଙ୍କ ଗଳ୍ପର ଆବେଦନ । ଗୋଟିଏ ବାକ୍ୟରେ କହିଲେ, ସେ ହେଉଛନ୍ତି ଦୁଃଖ ଆଉ ଗାମ୍ଭୀର୍ଯ୍ୟର ଶିଳ୍ପୀ ।

ଅଖିଳମୋହନଙ୍କ ଗଳ୍ପର ଭାଗାବଣ୍ଡ ଚରିତ୍ର ଓଡ଼ିଆ ଗଳ୍ପ ସାହିତ୍ୟରେ ଏକ ନୂତନ ପଦାଙ୍କ । ଏକ ମଧ୍ୟମ ଶ୍ରେଣୀ ଚରିତ୍ରକୁ ସେ ପ୍ରଥମଥରପାଇଁ ପ୍ରଧାନ ଆଭିମୁଖ୍ୟ ଚରିତ୍ର ଭାବରେ ଗ୍ରହଣ କରିଛନ୍ତି । ସେହି ଚରିତ୍ରମାନଙ୍କ ମଧ୍ୟରେ ନିଷ୍ଠୁର ପୃଥିବୀର ଏକ ଦୃଢ଼ ବାସ୍ତବ ଚିତ୍ର ଆଙ୍କିଛନ୍ତି । ସେହି ନିଷ୍ଠୁର ପୃଥିବୀକୁ ଅତିକ୍ରମଣ କରିବାପାଇଁ ମଣିଷର ଶେଷ ନିଃଶ୍ୱାସ ତ୍ୟାଗ ପର୍ଯ୍ୟନ୍ତ ଜୀବନ ସଂଗ୍ରାମ ଚାଲିଥିବ । ଅଖିଳମୋହନଙ୍କ ଭାଗାବଣ୍ଡ ଚରିତ୍ର ଏକ ନୂତନ ଦୀପ୍ତିରେ ରଶ୍ମିମନ୍ତ, ଏହି ଦୃଷ୍ଟିରୁ ଗାଳ୍ପିକଙ୍କର କେତୋଟି ଗଳ୍ପ ବର୍ତ୍ତମାନ ସୁଦ୍ଧା ଓଡ଼ିଆ ସାହିତ୍ୟରେ ଅନତିକ୍ରାନ୍ତ ।

ଅଖିଳମୋହନଙ୍କ ଗଳ୍ପଗୁଡ଼ିକର ଭାଷା ମଧ୍ୟ ସେହି ଗାମ୍ଭୀର୍ଯ୍ୟର ଭାଷା । ଗମ୍ଭୀର ଭାଷା ବ୍ୟଙ୍ଗଦ୍ୱାରା ଶାଣିତ । ତାଙ୍କର ଗୁରୁଗମ୍ଭୀର ଭାଷା ଜୀବନର ବିଭିନ୍ନ ସ୍ତରର ସୂଚକ ନୁହେଁ । ଆଲୋଚକଙ୍କ ମନ୍ତବ୍ୟ –

''ତାଙ୍କ ଭାଷାରେ ବନ ଝରଣାର କଳ କଳ ଗୀତ ନାହିଁ । ଏହା ଯେମିତି ସମତଳ ଭୂଇଁରେ ନଦୀର ଗମ୍ଭୀର ଗତି । ବେଗ ନୁହେଁ, ଗଭୀରତା, ବିଭିନ୍ନତା ନୁହେଁ, ଚିରନ୍ତନତା ହିଁ ଏହାର ଲକ୍ଷ୍ୟ ।''

ପରିଶେଷରେ ଏତିକି କହିଲେ ଯଥେଷ୍ଟ ହେବ ଯେ ସାମ୍ପ୍ରତିକ କାଳର ଚିତ୍ତ ସଂଘର୍ଷର ଏକ ବିପୁଳ ପଟ୍ଟଭୂମି ଉପରେ ଦଣ୍ଡାୟମାନ ହୋଇ ଅଖିଳମୋହନ ଯେଉଁ ସାରସ୍ୱତ ଅବଦାନ ଦେଇଯାଇଛନ୍ତି, ତାହା ଓଡ଼ିଆ ସାହିତ୍ୟକୁ ମହାନ୍ ଦାନର ପରିଚୟ ପ୍ରଦାନ କରିଛି । ତାଙ୍କ ଗଳ୍ପମାନଙ୍କରେ ସେ ଯେଉଁ ନୂତନ ମୂଲ୍ୟବୋଧର ଧାରା ଫୁଟାଇଛନ୍ତି, ତାହା ତାଙ୍କୁ ଓଡ଼ିଆ ସାହିତ୍ୟର ନୂତନ ଧାରା ଓ ପିଢ଼ି ସହିତ ଏକ ସୂତ୍ରରେ ଗ୍ରଥିତ କରିପାରିଛି । ଓଡ଼ିଆ ସାହିତ୍ୟର ଦୀର୍ଘ ପଥରେ ସେ ଏକ ମାଇଲଖୁଣ୍ଟ ଭଳି ଉଭା ହୋଇଛନ୍ତି ଓ ରହିବେ ବହୁକାଳ ଧରି ।

□□□



## କାଳାନ୍ତର କବି
# ସଚ୍ଚିଦାନନ୍ଦ ରାଉତରାୟ
## [୧୯୧୩ – ୨୦୦୪]

ଓଡ଼ିଆ ସାହିତ୍ୟରେ କବି ସଚ୍ଚିଦାନନ୍ଦ ରାଉତରାୟ ଅତ୍ୟାଧୁନିକତାର ପ୍ରବର୍ତ୍ତକ । ରାଧାନାଥ, ଫକୀରମୋହନ ଓ ସବୁଜଗଣ ଓଡ଼ିଆ ସାହିତ୍ୟ ଦୁର୍ଗର ବାତାୟନଗୁଡ଼ିକୁ ଯଦି ବିଶ୍ୱ ଦିଗକୁ ମୁକ୍ତ କରି ନୂତନ ଚିନ୍ତା ଚଳାଚଳର ସୁଯୋଗ ତିଆରି କରିଦେଇଥିଲେ, ତେବେ ସେ ଚିନ୍ତାକୁ 'ଚତୁଷ୍କୋଟି ବିନିର୍ମୁକ୍ତି ଦେଇ ତା'ର ବିଶ୍ୱାୟନ କରିଥିବା ପ୍ରତିଭାଧରଙ୍କ ମଧ୍ୟରେ ସଚ୍ଚିଦାନନ୍ଦ ଅଗ୍ରପୂଜାର ଅଧିକାରୀ । ସେଥିପାଇଁ ଏହି ଦ୍ୱିତୀୟ ପ୍ରଜାପତିଙ୍କର ସୃଷ୍ଟିକୁ ମହାକାଳ ସମ୍ଭ୍ରମରେ କାଳଜୟୀ ରଚନାର ତାଲିକାଭୁକ୍ତ କରେ, ଏଥିରେ ସନ୍ଦେହ ନାହିଁ ।

**ଜନ୍ମ ଓ ବଂଶ ପରମ୍ପରା**

ସଚ୍ଚିଦାନନ୍ଦ ଖୋରଧା ସହରଠୁ ଅଧମାଇଲ ଦୂର ଗୁରୁଜଙ୍ଗ ଗ୍ରାମରେ ୧୯୧୩ ମସିହା ମେ ମାସ ୧୩ ତାରିଖରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ଜନ୍ମିତପିତା ପ୍ରସନ୍ନ କୁମାର ରାଉତରାୟ ଖୋରଧାର ବିଶିଷ୍ଟ ମୁକ୍ତାର ଓ କଂଗ୍ରେସ ନେତା ଥିଲେ । ମାତାଙ୍କ ନାମ ମୁକ୍ତାଦେବୀ । ଜନ୍ମ ହେବା ପରେ ତାଙ୍କ ବଡ଼ବାପା ସଦାନନ୍ଦ ରାଉତରାୟ ଓ ବଡ଼ମା ହେମବତୀ ଦେବୀ ତାଙ୍କୁ ପୋଷ୍ୟପୁତ୍ର ଭାବେ ଗ୍ରହଣ କରିଥିଲେ ।

ସଚ୍ଚିଦାନନ୍ଦଙ୍କ ପିତାମହ ମଧୁସୂଦନ ରାଉତରାୟ ବୌଦ ରାଜାଙ୍କ ଦେବାନ୍ ଥିଲେ । ତାଙ୍କ ଘର ତେଣୁ ଦିଆନ୍ ଘର ବୋଲି ଖ୍ୟାତ ଥିଲା । ଏବେ ମଧ୍ୟ ସେହି ସାହିକୁ ଲୋକେ ଦିଆନ୍‌ସାହି କହନ୍ତି । ସଚ୍ଚିଦାନନ୍ଦଙ୍କ ପୂର୍ବପୁରୁଷମାନେ ପୁରୀ ଗଜପତି ରାଜାଙ୍କ ଅସ୍ତ୍ରଗୁରୁ ଥିଲେ । ପ୍ରତିବର୍ଷ ଗହ୍ମାପୁନେଇଁ ଦିନ ବଂଶର ଜ୍ୟେଷ୍ଠ ଅଂଶର ଜଣେ ଦଣ୍ଡ ଓ ପଇତା ନେଇ ପୁରୀ ଯାଇ ରାଜାଙ୍କୁ ଭେଟି ଦେଉଥିଲେ ଓ ଦକ୍ଷିଣାସ୍ୱରୂପ ଗଜପତି ମହାରାଜାଙ୍କ ଠାରୁ ପାଟ ଦୋସଡ଼ା ପାଉଥିଲେ ।

ଜନ୍ମ ହେବାର ଛଅ ଦିନରେ ସଚ୍ଚିଦାନନ୍ଦଙ୍କ ଷଠୀଘର ଗଢ଼ା ଯାଇଥିଲା – ପଛ ଖଞ୍ଜାର ଏକ ଘରେ । ସେ ଷଠୀଘର ବହୁ ବର୍ଷ ପର୍ଯ୍ୟନ୍ତ ଥିବା କଥା ସଚ୍ଚିଦାନନ୍ଦ ତାଙ୍କ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି । ସେଇ ଷଠୀ ଦୋସେଇଙ୍କ କଥା ମଧ୍ୟ ସେ ତାଙ୍କ କବିତାରେ ବର୍ଣ୍ଣନା କରିଛନ୍ତି ।

''ମାଟିର ସେଇ ସରଗ ମୋର
ସେଇଠି ଅଛି ମୋ ଷଠୀଘର
ସେଇଠି ପୁଣି ଜଳିବ ଶେଷେ
ମୋହରି ଚିତା ନିଆଁଟି
ଛୋଟ ମୋର ଗାଆଁଟି ।'' (ପଲ୍ଲିଶ୍ରୀ)

ସଚ୍ଚିଦାନନ୍ଦଙ୍କ ଗାଁ ଗୁରୁଜଙ୍ଗ ପାଖ ଜଙ୍ଗଲର ନାମ ଥିଲା ବେରଣା । ବେରଣା ନଟା ପଶ୍ଚିମ ପଟେ ଅଛି ବରୁଣେଇ ପାହାଡ଼ । ଅଧରାତିରେ ମହାବଳ ବାଘ ଗର୍ଜନ ଶୁଭେ ବେରଣା ନଟାରୁ । କେବେ ଶୁଣାଯାଏ ବରୁଣେଇ ପାହାଡ଼ ଆଡୁ । ସଚ୍ଚିଦାନନ୍ଦ ତାକୁ ଶୁଣି ଭୟରେ ଜଡ଼ପ୍ରାୟ ହୋଇଯାଉଥିଲେ । ମାମା କୋଳରେ ଶୋଇ ଶୀତେଇ ଉଠୁଥିଲେ । ଖରାଦିନେ ପ୍ରାୟ ମାସେ କାଳ ଘର ପାଖ ଧବଳେଶ୍ୱର ମନ୍ଦିରରେ ରାମଲୀଳା ହେଉଥିଲା । ବଡ଼ମାନେ ସଚ୍ଚିଦାନନ୍ଦଙ୍କୁ କେବେ କେମିତି ରାମଲୀଳା ଦେଖାଇବାକୁ ନେଇଯାଉଥିଲେ । ମାଳୀ ସାହିରେ ମେଣ୍ଢା ଲଢ଼େଇ ବି ହେଉଥିଲା । ସାପୁଆକେଳା ସାପ ଖେଳେଇବାକୁ ବା ଚକୁଳିଆପଣ୍ଡା ଗୀତ ବୋଲିବାକୁ ବେଳେବେଳେ ଗାଁକୁ ଆସୁଥିବା କଥା ମଧ୍ୟ ଲେଖକ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି ।

### ବିଦ୍ୟାରମ୍ଭ

ଚାରି ବର୍ଷ ହୋଇଥିଲା ବେଳେ ସଚ୍ଚିଦାନନ୍ଦଙ୍କର ବିଦ୍ୟାରମ୍ଭ ହେଲା । ଅବଧାନେ ବଛାହେଲେ ଗାଁକୁ ଲାଗିଥିବା କୋଚିଲାବଣର ବାଲୁଙ୍କେଶ୍ୱର ମହାପାତ୍ର । ତାଙ୍କ ପାଖରୁ ସେ ଅକ୍ଷର ଚିହ୍ନିଲେ । ପଣିକିଆ ଦି-ତିନି ଗଣ୍ଡା ଶିଖିଲେ । ମଧୁସୂଦନ ରାଓଙ୍କ 'ବର୍ଣ୍ଣବୋଧ' ମଧ୍ୟ ପଢ଼ା ଆରମ୍ଭ କଲେ ।

ଚାରି ଛ' ମାସ ପାଠ ପଢ଼ିବାପରେ ସଚ୍ଚିଦାନନ୍ଦ ଶକ୍ତ ବେମାର ପଡ଼ିଲେ । ଜ୍ୱର ଆଉ ଛାଡ଼ିଲା ନାହିଁ । ଘରେ ସମସ୍ତେ ଆଶା ଛାଡ଼ିଦେଲେ । ପ୍ରଥମେ ଖୋରଧାର ବାଳମୁକୁନ୍ଦି ଡାକ୍ତରଙ୍କ ହୋମିଓପ୍ୟାଥିକ ଔଷଧ ଖାଇଲେ; ସେଥିରେ ଭଲ ନ ହେବାରୁ ଖୋରଧା ଡାକ୍ତରଖାନାର ବଡ଼ଡାକ୍ତରଙ୍କୁ ଦେଖାଗଲା । ତାଙ୍କ ନାମ ଥିଲା ପତିତବାବୁ । ସେ ଔଷଧ ଦେଲେ । କିଛି ଫଳ ହେଲା ନାହିଁ । ଶେଷରେ ପାଳିତ ପିତା କବିରାଜି ବହିମାନ ଖୋଜି ଏକ ଚୂର୍ଣ୍ଣ ପ୍ରସ୍ତୁତ କଲେ । ପ୍ରାୟ ୧୦-୧୫ ଦିନ ସେ ଚୂର୍ଣ୍ଣ ଖାଇବାପରେ ଜ୍ୱର ଧୀରେ ଧୀରେ କମିଲା । ଶେଷରେ ସେ ସମ୍ପୂର୍ଣ୍ଣ ସୁସ୍ଥ ହେଲେ ।

## ଖୋରଧା ହାଇସ୍କୁଲ

୧୯୨୫ ମସିହାରେ ସଚ୍ଚିଦାନନ୍ଦ ଖୋରଧା ହାଇସ୍କୁଲରେ ନାମ ଲେଖାଇଲେ । ସ୍କୁଲର ହେଡ୍ ମାଷ୍ଟର ଥିଲେ ଜଣେ ନାମଜାଦା ବ୍ୟକ୍ତି – ବାଙ୍କନିଧି ପଟ୍ଟନାୟକ । ସେ କଡ଼ା ମିଜାଜର ଶିକ୍ଷକ ଥିଲେ । ଦୁଇ ତିନି ଥର ଜୋତା ମଚ୍‌ମଚ୍ କରି ସ୍କୁଲ ବାରଣ୍ଡାରେ ଏ ମୁଣ୍ଡରୁ ସେ ମୁଣ୍ଡକୁ ପଇଁତରା ମାରୁଥିଲେ । ସେ ଆସିବାର ଜାଣି କି ପିଲା କି ମାଷ୍ଟ୍ରେ ଜାଗତିଆର ହୋଇଯାଉଥିଲେ । କେବେ କେବେ କେଉଁ କ୍ଲାସରେ ପଶିଯାଇ ପିଲାମାନଙ୍କୁ ପାଠ ପଚାରୁଥିଲେ । କିଛି ଭୁଲ୍ ଦେଖିଲେ ଶିକ୍ଷକଙ୍କୁ ପରେ ଡାକିନେଇ ତାଗିଦ କରିଦେଉଥିଲେ । କୁଳିଆ ଦପ୍ତରୀ କଥା ମଧ୍ୟ ସଚ୍ଚିଦାନନ୍ଦ ତାଙ୍କ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି । ତାଙ୍କ ଭାଷାରେ – ''କୁଳିଆ ଦପ୍ତରୀକୁ ନ ଚିହ୍ନିଚି କିଏ ? ସେ ଥାଏ ସ୍କୁଲର ଦପ୍ତରୀ, ପିଅନ ଓ ସବୁ ।''

କୁଳିଆ ଦପ୍ତରୀର କାମ ଥିଲା – ଘଣ୍ଟା ଦେବା । ଗୋଟାଏ ପିରିୟଡ୍ ଶେଷ ହେଲେ ସେ ଘଣ୍ଟା ପିଟି ଜଣାଇ ଦେଉଥିଲା ।

ଶିକ୍ଷକମାନଙ୍କ ମଧ୍ୟରେ ଥିଲେ ଭଗବାନ ପଣ୍ଡା – ହେଡ୍‌ପଣ୍ଡିତ । ସେ ସଂସ୍କୃତ ପଢ଼ାଉଥିଲେ । ମୁକୁନ୍ଦବାବୁ ଥିଲେ ଡ୍ରଇଁ ଶିକ୍ଷକ । ଫଜିଲବାବୁ ଥିଲେ ଆସିଷ୍ଟାଣ୍ଟ ହେଡ୍‌ମାଷ୍ଟର । ସେ ଇଂରାଜୀ ପଢ଼ାଉଥିଲେ । ରାଧାଚରଣବାବୁ ଗଣିତ ଶିକ୍ଷକ ଥିଲେ; ଆଉ ବାକ୍‌ଚିବାବୁ ଇତିହାସ, ଭୂଗୋଳ ପ୍ରଭୃତି ପଢ଼ାଉଥିଲେ ।

ସଚ୍ଚିଦାନନ୍ଦ ସ୍କୁଲ୍‌ରେ ଭଲ ଫୁଟବଲ ଖେଳୁଥିଲେ । ସେ ସ୍କୁଲ୍ ଟିମ୍‌ରେ ଲେଫ୍‌ଟ ଆଉଟ୍ ଥିଲେ । ସେ ସ୍କୁଲ୍ ଟିମ୍‌ର ଖେଳାଳିମାନେ ଖଡଗ୍‌ପୁର ଓ ବି.ଏନ୍. ଆର୍. ଟିମ୍ ପ୍ରଭୃତିଙ୍କ ସଙ୍ଗେ ଖେଳିବାର ସୁଯୋଗ ପାଇଥିଲେ । ଏପରିକି ପୁରୀ ଜିଲ୍ଲାର ଶ୍ରେଷ୍ଠ ଏକାଦଶ ଖେଳାଳିଙ୍କ ମଧ୍ୟରେ ସେ ସ୍ଥାନ ପାଇଥିଲେ ।

ସ୍କୁଲ୍‌ରେ ପଢ଼ିବାବେଳେ ଲୁଚାଛପାରେ ସଚ୍ଚିଦାନନ୍ଦ କବିତା ରଚନା ଆରମ୍ଭ କରିଦେଲେ । ୧୯୨୭ ମସିହାରେ କଟକ ଟ୍ରେଡିଂ କମ୍ପାନୀ ପ୍ରକାଶ କରୁଥିବା 'ପଞ୍ଚାମୃତ' ନାମକ ଏକ ମାସିକ ଶିଶୁ ପତ୍ରିକାରେ ତାଙ୍କର ଗଦ୍ୟ କବିତାଟି ପ୍ରକାଶ

ପାଇଲା । ବିଶିଷ୍ଟ ଜନସେବକ ଲକ୍ଷ୍ମୀନାରାୟଣ ସାହୁ ତାଙ୍କ କବିତା ପତ୍ରପତ୍ରିକାରେ ଦେଖି ସ୍କୁଲକୁ ଆସି ତାଙ୍କୁ ଭେଟିଥିଲେ । ତାଙ୍କ ଲେଖାଲେଖି କଥା ପଚାରିଥିଲେ ।

**ହାଇସ୍କୁଲରୁ ବିତାଡ଼ିତ**

ସଚ୍ଚିଦାନନ୍ଦ ଖୋରଧା ହାଇସ୍କୁଲରେ ମାଟ୍ରିକ୍ୟୁଲେସନ ପଢ଼ିଲା ବେଳକୁ ସ୍ୱାଧୀନତା ଆନ୍ଦୋଳନ ଆରମ୍ଭ ହୋଇଯାଇଥିଲା । ୧୯୨୮ ମସିହାରେ ଭାରତରେ ସାଇମନ୍ କମିସନ୍ ପାଦଦେବା ପୂର୍ବରୁ ଏହି ଆନ୍ଦୋଳନ ତୀବ୍ର ହେବାକୁ ଲାଗିଲା । ଖୋରଧାରେ ମଧ୍ୟ କଂଗ୍ରେସ ସଭାମାନ ହେଉଥାଏ । ଥରେ ଖୋରଧା ହାଇସ୍କୁଲ୍ ବୋର୍ଡିଙ୍ଗ୍ ପଛପଟ ପଲଟନ୍ ପଡ଼ିଆରେ ଏକ ବଡ଼ କଂଗ୍ରେସ ସଭା ହେବାକୁ ଥାଏ । ପଣ୍ଡିତ ନୀଳକଣ୍ଠ ଦାସ ଓ ଯଦୁମଣି ମଙ୍ଗରାଜ ଏହି ସଭାରେ ବକ୍ତୃତା ଦେବା କାର୍ଯ୍ୟକ୍ରମ ଥାଏ । ସଚ୍ଚିଦାନନ୍ଦଙ୍କ ଜନ୍ମିତ ପିତା ପ୍ରସନ୍ନ ରାଉତରାୟ – ଯେ କି ଖୋରଧାର ଜଣେ ବଡ଼ ମୁକ୍ତାର ଥିଲେ – ସେ ସଭାରେ ସଭାପତିତ୍ୱ କରୁଥାନ୍ତି । ସେଦିନ ସଚ୍ଚିଦାନନ୍ଦଙ୍କ ସମେତ କେତେକ ହାଇସ୍କୁଲ ଛାତ୍ର ହେଡ୍‌ମାଷ୍ଟରଙ୍କ ନିଷେଧାଜ୍ଞା ନ ମାନି ସେହି ସଭାରେ ଯୋଗ ଦେଲେ । ଏ ଖବର ହେଡ୍‌ମାଷ୍ଟରଙ୍କ କାନକୁ ଗଲା । ସଭା ହେବାର ପରଦିନ ସେ ଛାତ୍ରମାନଙ୍କୁ ଅଫିସକୁ ଡକାଇ ଧମକେଇଲେ । ସଚ୍ଚିଦାନନ୍ଦଙ୍କ ପିତା ପ୍ରସନ୍ନବାବୁ ସଭାରେ ସଭାପତିତ୍ୱ କରିଥିଲେ । ତେଣୁ ସଚ୍ଚିଦାନନ୍ଦଙ୍କୁ ବେଶି କିଛି କହିଲେ ନାହିଁ; କିନ୍ତୁ ମନେ ମନେ ରାଗ ରଖିଲେ । ହେଡ୍‌ମାଷ୍ଟ୍ରେ ଅନ୍ୟ ଜଣେ ଛାତ୍ର ନୃସିଂହ ଚରଣ ସାମନ୍ତରାୟଙ୍କୁ ଅନ୍ୟ ଏକ ଉପାୟରେ ସ୍କୁଲରୁ ବିତାଡ଼ିତ କଲେ । ଦୁଇ ମାସର ଦରମା ଦେଇ ନ ଥିବାରୁ ସ୍କୁଲରୁ ସଚ୍ଚିଦାନନ୍ଦଙ୍କ ନାମ କଟାଗଲା । ନିୟମ ଅନୁସାରେ ଦରମା ଟଙ୍କା ଜୋରିମାନା ସହ ଦେଇ ନାମ ଲେଖାଇବାର କଥା । ମାତ୍ର ନାମ ଲେଖାଇବାର ଦରଖାସ୍ତରେ ବାଙ୍କନିଧିବାବୁ ଦସ୍ତଖତ କଲେ ନାହିଁ । ହେଡ୍‌ମାଷ୍ଟ୍ରେ ମଞ୍ଜୁର ନ କଲେ ନାମ ଲେଖାଯାଇ ପାରୁ ନ ଥିଲା । ଫଳରେ ସଚ୍ଚିଦାନନ୍ଦଙ୍କ ଖୋରଧା ହାଇସ୍କୁଲରେ ପଢ଼ିବା ଶେଷ ହୋଇଗଲା ।

**୧୯୩୦ ଲବଣ ସତ୍ୟାଗ୍ରହ**

୧୯୩୦ ମସିହା ଜାନୁଆରୀ ୨୬ ତାରିଖରେ ଜାତିର ଜନକ ଗାନ୍ଧିଜୀ ଐତିହାସିକ ଲବଣ ସତ୍ୟାଗ୍ରହପାଇଁ ଡାକରା ଦେଲେ । ସେହିଦିନ (ମାର୍ଚ୍ଚ ୧୨ ତାରିଖ) ସେ ତାଙ୍କର ଦାଣ୍ଡିଯାତ୍ରା ଆରମ୍ଭ କଲେ । ଓଡ଼ିଶାରେ ମଧ୍ୟ ଏହା ପ୍ରଭାବ ପକାଇଲା । ବାଲେଶ୍ୱର ଜିଲ୍ଲାର ଇଞ୍ଚୁଡ଼ିଠାରେ ଲବଣ ଆଇନ ଭଙ୍ଗ କରି ଲୁଣ ମାରିବାପାଇଁ ସ୍ଥିର ହେଲା । ସଚ୍ଚିଦାନନ୍ଦ ଏହି ଲବଣ ସତ୍ୟାଗ୍ରହରେ ଯୋଗ ଦେବାପାଇଁ ମନେ ମନେ ସ୍ଥିର କରି କଂଗ୍ରେସର ବିଶିଷ୍ଟ ନେତା ବ୍ରହ୍ମପୁରର ନିରଞ୍ଜନ ପଟ୍ଟନାୟକଙ୍କ ପାଖକୁ ପତ୍ର ଦେଲେ । ସେ ମଧ୍ୟ ଯିବାପାଇଁ କେତେକ ପରାମର୍ଶ ପୋଷ୍ଟକାର୍ଡ଼ରେ ଲେଖି ପଠାଇଲେ । ସେତେବେଳକୁ କିନ୍ତୁ ବାଲେଶ୍ୱରରେ ବାପାଙ୍କ ଯାଆଁଳା ଭାଇ ନନ୍ଦଦା

ପୋଲିସ ଇନ୍‌ସପେକ୍ଟର ଥିଲେ। ସେ ସଚ୍ଚିଦାନନ୍ଦର ଇଞ୍ଜୁଡ଼ି ଯିବା ଖବର କେଉଁଠୁ ପାଇ ସାନଦଦେଇଙ୍କ ପାଖକୁ ପତ୍ର ଦେଲେ ଯେ ସେ ବାଲେଶ୍ୱର ଗଲେ ତାଙ୍କୁ ଗିରଫ କରିବେ । ଘର ଲୋକେ ତାଙ୍କ ଯିବାରେ ପ୍ରବଳ ବାଧା ଦେଲେ । ଫଳରେ ସଚ୍ଚିଦାନନ୍ଦ ସେଠାକୁ ଯିବା ସମ୍ଭବ ହେଲା ନାହିଁ ।

ଗାନ୍ଧିଜୀ ଥିଲେ ସଚ୍ଚିଦାନନ୍ଦଙ୍କର ପ୍ରେରଣାର ଉତ୍ସ । ତାଙ୍କର ପ୍ରଭାବ ସଚ୍ଚିଦାନନ୍ଦଙ୍କ ଉପରେ ବହୁଭାବରେ ପଡ଼ିଲା । ସେ ପ୍ରତିଦିନ ଚରଖା ବା ଚକଲିରେ ସୂତା କାଟିଲେ । ଖଦଡ଼ ପିନ୍ଧିଲେ । ମାଛ, ମାଂସ ଏପରିକି ପିଆଜ ରସୁଣ ମଧ ଛାଡ଼ିଦେଲେ । ଗାନ୍ଧିଜୀଙ୍କୁ ଟିକିଏ ଟପିଯାଇ ବହୁବର୍ଷ ଗୋଡ଼ରେ ଜୋତା କି ଚପଲ ପିନ୍ଧୁ ନ ଥିଲେ ବୋଲି ସଚ୍ଚିଦାନନ୍ଦ ତାଙ୍କ ଆତ୍ମଜୀବନୀରେ  ଉଲ୍ଲେଖ କରିଛନ୍ତି । ତାଙ୍କର ଦେହର ଏକମାତ୍ର ପରିଧାନ ଥିଲା ଖଦଡ଼ ଚାଦର, କାମିଜ୍, ପଞ୍ଜାବି ନୁହେଁ । ଏପରିକି ବାଳ ମଧ କୁଣ୍ଡାଉ ନ ଥିଲେ ।

**ଦେଶ ମିଶ୍ରଣ ଆନ୍ଦୋଳନ**

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଆନ୍ଦୋଳନରେ ସଚ୍ଚିଦାନନ୍ଦ ଜଡ଼ିତ ହୋଇପଡ଼ିଲେ । ସେ ପୁରୀଠାରେ ନିଖିଳ ଉତ୍କଳ ଯୁବ ସମ୍ମିଳନୀ ଆୟୋଜନ କଲେ । ପରବର୍ତ୍ତୀ କାଳରେ ହୋଇଥିବା ପ୍ରଧାନ ବିଚାରପତି ବୀରକିଶୋର ଦାସ ସେଥିରେ ସଭାପତିତ୍ୱ କରିଥିଲେ । ସେହି ସମ୍ମିଳନୀରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନପାଇଁ  ଜୋର୍‌ରେ ଦାବି ହୋଇଥିଲା ।

**ଖୋରଧା ଅନ୍ୱେଷଣ**

ଖୋରଧା ହାଇସ୍କୁଲରୁ ତଡ଼ା ଖାଇଲାପରେ ସଚ୍ଚିଦାନନ୍ଦ ଗ୍ରାମରେ ରହି ଲେଖାଲେଖି ଓ ପଢ଼ାଶୁଣାରେ ମନ ଦେଲେ । ମଝିରେ ମଝିରେ ଖୋରଧା ଅଞ୍ଚଳର ବିଭିନ୍ନ ଗ୍ରାମକୁ ଯାଇ ସଭାସମିତିମାନ କରୁଥିଲେ । ଲୋକଙ୍କୁ ମଧ କଂଗ୍ରେସ ବାର୍ତ୍ତା ଶୁଣାଉଥିଲେ । ପରବର୍ତ୍ତୀ କାଳରେ ପାର୍ଲିଆମେଣ୍ଟ ସଭ୍ୟ ହୋଇଥିବା ନୃସିଂହ ଚରଣ ସାମନ୍ତସିଂହାର ମଧ ସଚ୍ଚିଦାନନ୍ଦଙ୍କ ସଙ୍ଗେ କେତେ ଗାଁ-ଗଣ୍ଡା ବୁଲିଥିଲେ । ସନ୍ଧ୍ୟାରେ ସଭାସମିତି କରି ଘରକୁ ଫେରିଆସୁଥିଲେ ।

ଖୋରଧାର ବିଭିନ୍ନ ଗ୍ରାମମାନଙ୍କରେ ବୁଲିଲାବେଳେ ସଚ୍ଚିଦାନନ୍ଦ ବୀରମାଟି ଖୋରଧାର ଐତିହ୍ୟ ସନ୍ଧାନ କରିବାରେ ଲାଗିପଡୁଥିଲେ । ଗ୍ରାମର ପୁରୁଣା ପୁରୁଣା ଲୋକଙ୍କଠାରୁ ସେ ସ୍ଥାନର ମହତ୍ତ୍ୱ, ଗାରିମା, ଇତିବୃତ୍ତ ଓ ଲୋକକଥା ସଂଗ୍ରହ କରୁଥିଲେ । ତାଙ୍କୁ ମନେ ହେଉଥିଲା ଯେପରି ଚାରିଆଡ଼େ ଇତିହାସର ଟୁକୁଡ଼ା ବିଛାଡ଼ି ହୋଇପଡ଼ିଛି । ତାଙ୍କ ଭାଷାରେ –

''ପ୍ରତ୍ୟେକଟି ପୁରୁଣା ବରଗଛ ଗୋଟିଏ ଗୋଟିଏ ଫାଶୀ ଖୁଣ୍ଟ । ସେଥିରେ ଯେ କେତେ ସହିଦ ଓ ବିଦ୍ରୋହୀଙ୍କୁ ଫାଶୀରେ ଲଟକାଇ ଦିଆଯାଇଛି, ତାହାର କୌଣସି ଠିକଣା ନାହିଁ ।''

ସେ ଅବଶ୍ୟ ସ୍ୱୀକାର କରିଛନ୍ତି – ''ମୋର ଖୁରୁଧା ଆବିଷ୍କାର ଏ ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ହୋଇ ନାହିଁ ।''

ଗାଁରେ ରହି ସଚ୍ଚିଦାନନ୍ଦ ତ ଲେଖାଲେଖି କରୁଥାଆନ୍ତି, କେତୋଟି କବିତା ସେତେବେଳର ପ୍ରଖ୍ୟାତ ପତ୍ରିକା 'ସହକାର'ରେ ପ୍ରକାଶ ପାଇଲା । ତା' ମଧ୍ୟରେ ଥିଲା 'ଫାଲଗୁନ ଲକ୍ଷ୍ମୀ' ଓ 'ପତିତାର ଅର୍ଘ୍ୟ' । ସଚ୍ଚିଦାନନ୍ଦ ମଧ୍ୟ ବହୁତ ବହି ପଢ଼ାପଢ଼ି କଲେ । ସେଗୁଡ଼ିକ ମଧ୍ୟରେ କାର୍ଲ ମାର୍କ୍‌ସ ଓ ଟ୍ରଟସ୍କିଙ୍କ ଲିଖିତ କେତେ ଖଣ୍ଡ ବହି ଥିଲା ।

**ଯାଜପୁର ହାଇସ୍କୁଲ**

ସଚ୍ଚିଦାନନ୍ଦଙ୍କ ଭଉଣୀ ମହନୀଅପା ବିବାହ କରିଥିଲେ ଡାକ୍ତର ଜଗନ୍ନାଥ ଦାସଙ୍କୁ । ସେ ଯାଜପୁର ହସ୍‌ପିଟାଲର ମୁଖ୍ୟ ଭାବେ କାର୍ଯ୍ୟ କରୁଥିଲେ । ସେ ଓ ମହନୀଅପା ଧରାଧରି କରି ସଚ୍ଚିଦାନନ୍ଦଙ୍କୁ ନେଇ ଯାଜପୁର ହାଇସ୍କୁଲରେ ନାମ ଲେଖାଇଦେଲେ । ମାତ୍ର ଭିଣୋଇ କିଛି ଦିନ ପରେ ଉଚ୍ଚ ଶିକ୍ଷାପାଇଁ ଲଣ୍ଡନ ଯିବାରୁ ମହନୀଅପା ସମେତ ସମସ୍ତେ ଗାଁକୁ ଚାଲିଆସିଲେ ।

**ବାଙ୍କୀ ହାଇସ୍କୁଲ**

ଏହାପରେ ଘରଲୋକେ ବହୁ ପରାମର୍ଶ ପରେ ବାଙ୍କୀ ହାଇସ୍କୁଲରେ ସଚ୍ଚିଦାନନ୍ଦଙ୍କ ନାମ ଲେଖାଇଲେ । ସେ ହାଇସ୍କୁଲ ଛାତ୍ରାବାସରେ ରହିଲେ । କିନ୍ତୁ ମହାନଦୀରେ ଘଣ୍ଟା ଘଣ୍ଟା ଧରି ଗାଧୋଇବା ଯୋଗୁଁ ଜ୍ୱରରେ ପଡ଼ିଲେ । ଫଳରେ ବାଧ ହୋଇ ତାଙ୍କୁ ସ୍କୁଲ ଛାଡ଼ି ଗାଁକୁ ଆସିବାକୁ ପଡ଼ିଲା ।

**ବ୍ରତୋପନୟନ**

୧୦-୧୧ ବର୍ଷ ହୋଇଥିଲାବେଳେ ସଚ୍ଚିଦାନନ୍ଦଙ୍କର ବ୍ରତୋପନୟନ ହେଲା । ତାଙ୍କ ଘରେ ଏହି ପ୍ରଥା ଥିଲା । ପାଲିଙ୍କିରେ ବସି ବାଜା ବଜାଇ ଆଡ଼ମ୍ବରରେ ଗାଁ ମୁଣ୍ଡ ପର୍ଯ୍ୟନ୍ତ ତାଙ୍କୁ ଯିବାକୁ ପଡ଼ିଥିଲା । କିଛି ଦିନ ନିୟମର ସହିତ ପଇତା ଧାରଣ କରିବାକୁ ମଧ୍ୟ ହୋଇଥିଲା ।

**ପୁରୀ ଜିଲ୍ଲା ସ୍କୁଲ**

ଭିଣୋଇ ଜଗନ୍ନାଥ ଦାସ ଭିଏନାରୁ ଡାକ୍ତରୀରେ ଉଚ୍ଚ ଡିଗ୍ରୀ ପାଇ ଓଡ଼ିଶା ଫେରିଆସିଲେ ଓ ପୁରୀ ଜେନେରାଲ ହସ୍‌ପିଟାଲ୍‌ରେ ସିଭିଲ୍ ସର୍ଜନ ଭାବେ ଅବସ୍ଥାପିତ ଦେଲେ । ପରିବାର ଲୋକେ ତେଣୁ ସଚ୍ଚିଦାନନ୍ଦଙ୍କୁ ପୁରୀରେ ପଢ଼ିବାପାଇଁ ପୁଣି ପଠାଇଲେ । ସଚ୍ଚିଦାନନ୍ଦ ପୁରୀ ଜିଲ୍ଲା ସ୍କୁଲ୍‌ରେ ନାମ ଲେଖାଇଲେ ।

୧୯୩୩ ମସିହାରେ ଗାନ୍ଧିଜୀ ପୁରୀ ଆସିଲେ । ଗାନ୍ଧିଜୀଙ୍କୁ ରେଳ ଷ୍ଟେସନରେ ଅଭ୍ୟର୍ଥନା ଜଣାଇବାକୁ କୌଣସି ଛାତ୍ର ଯେପରି ନ ଯାଆନ୍ତି, ସେଥିପାଇଁ ସ୍କୁଲ୍ କର୍ତ୍ତୃପକ୍ଷଙ୍କ ପକ୍ଷରୁ କଡ଼ା ନିର୍ଦ୍ଦେଶ ଥିଲା । ମାତ୍ର ସଚ୍ଚିଦାନନ୍ଦ ଅନ୍ୟ ଦୁଇ ଜଣ ଛାତ୍ରଙ୍କ

ସହିତ ଷ୍ଟେସନକୁ ଯାଇ ଗାନ୍ଧିଜୀଙ୍କୁ ସମ୍ବର୍ଦ୍ଧନା ଜଣାଇଲେ । ମାଟ୍ରିକ୍ୟୁଲେସନ୍ ପରୀକ୍ଷା ଦେବାକୁ କର୍ତ୍ତୃପକ୍ଷ ତାଙ୍କୁ ସେଣ୍ଟ ଅପ୍ କରି ନ ଥିଲେ । ବହୁ କଷ୍ଟରେ ଶେଷକୁ ତାଙ୍କୁ ସେଣ୍ଟ ଅପ୍ କରାଗଲା ଓ ସେ ପରୀକ୍ଷା ଦେଲେ । କିନ୍ତୁ ଗଣିତରେ ଫେଲ୍ ହେଲେ । ମାଟ୍ରିକ୍ୟୁଲେସନ୍ ପରୀକ୍ଷାରେ ଅକୃତକାର୍ଯ୍ୟ ହେବାରୁ ସଚ୍ଚିଦାନନ୍ଦଙ୍କର ମୁରବିମାନେ ତାଙ୍କୁ ପଢ଼ିବାପାଇଁ କଲିକତା ପଠାଇଲେ ।

### କଲିକତାରେ ଛାତ୍ର ଜୀବନ

୧୯୩୪ ମସିହା ଜୁଲାଇ ମାସରେ ସଚ୍ଚିଦାନନ୍ଦ କଲିକତାରେ ପହଞ୍ଚିଲେ । ସାଥିରେ ଥିଲେ ପୁରୀ କୁଣ୍ଡେଇବେଣ୍ଟ ସାହିର ଗୋପୀନାଥ ମିଶ୍ର । ଝାମାପୁକୁର ଲେନ୍‌ରେ ଥିବା ବ୍ରାହ୍ମ ବୟେଜ ସ୍କୁଲରେ ମାଟ୍ରିକ୍ୟୁଲେସନ୍ ଶେଷ ଶ୍ରେଣୀରେ ତାଙ୍କୁ ଭର୍ତ୍ତି କରାଗଲା । ସ୍କୁଲର କେତେକ ବଙ୍ଗାଳୀ ଛାତ୍ର ତାଙ୍କୁ 'ଉଡ଼େ' 'ଉଡ଼େ' କହୁଥିଲେ । ତା'ର କାରଣ ଓଡ଼ିଆମାନଙ୍କୁ ସେମାନେ ହେୟ ମନେ କରୁଥିଲେ । କିନ୍ତୁ ବଙ୍ଗଳାର ବିଦ୍ୱାନ୍ ଓ ସଂସ୍କୃତିସମ୍ପନ୍ନ ବ୍ୟକ୍ତିମାନେ ଓଡ଼ିଶାକୁ ଯଥେଷ୍ଟ ମର୍ଯ୍ୟାଦା ଦେଉଥିବା ସେ ଲକ୍ଷ୍ୟ କରିଥିଲେ । ସେମାନେ ଓଡ଼ିଶାକୁ କଳା ଓ ସଂସ୍କୃତିର ଦେଶ ବୋଲି ମନେ କରୁଥିଲେ ।

ସଚ୍ଚିଦାନନ୍ଦ ପ୍ରଥମ ଡିଭିଜନ୍‌ରେ ମାଟ୍ରିକ୍ ପାସ୍ କରିଥିବା ବିଷୟ ଗାଁରେ ଜାଣିବାକୁ ପାଇଲେ ।

### ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ

ଏହାପରେ ସଚ୍ଚିଦାନନ୍ଦ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଆଇ. ଏ. ଶ୍ରେଣୀରେ ନାମ ଲେଖାଇଲେ । ସେ ରୋଜ କଲେଜ ଯାଉଥିଲେ ଓ ପଢ଼ାପଢ଼ିରେ ମନ ଦେଉଥିଲେ । କିନ୍ତୁ ବିଶ୍ୱବିଦ୍ୟାଳୟର ଛାତ୍ରମାନେ ରକ୍ଷଣଶୀଳ ବୋଲି ତାଙ୍କୁ ମନେ ହେଲା । ଛାତ୍ରମାନେ ଚୁଟି ରଖିଥାଆନ୍ତି । ଚିତା ମଧ୍ୟ ଲଗାଇଥାଆନ୍ତି । ତାଙ୍କୁ ସେଠାକାର ଆବହାଉଆ ଭଲ ଲାଗିଲା ନାହିଁ । କିଛି ଦିନ ରହିଲାପରେ ସେ ମାଇଗ୍ରେସନ୍ ସାର୍ଟିଫିକେଟ ଓ ଜିନିଷପତ୍ର ଧରି କଲିକତା ଆସିଲେ । କଲିକତା ସିଟି କଲେଜରେ ସେ ଆଇ.ଏ. ଶ୍ରେଣୀରେ ନାମ ଲେଖାଇଲେ ।

### କଲିକତା ଛାତ୍ର ଜୀବନ

କଲିକତାରେ ପଢୁଥିଲାବେଳେ ସେ ମାର୍କ୍ସବାଦ ପ୍ରତି ଆକୃଷ୍ଟ ହେଲେ । ମାର୍କ୍ସ, ଏଙ୍ଗେଲସ୍, ଲେନିନ ପ୍ରଭୃତିଙ୍କ ବହୁ ପୁସ୍ତକ ଅଧ୍ୟୟନ କଲେ । ସେମାନଙ୍କ ମତବାଦ ଓଡ଼ିଆ ସାହିତ୍ୟରେ ପ୍ରବର୍ତ୍ତନ କରିବାପାଇଁ ସେ ଆଗ୍ରହୀ ହେଲେ । ଏହା ପୂର୍ବରୁ ୧୯୩୧ ମସିହାରେ 'ଯୁଗବୀଣା' ପତ୍ରିକାରେ ତାଙ୍କର କବିତା 'ଭଗବାନ୍ ଅଛ କାହିଁ' ପ୍ରକାଶ ପାଇଥିଲା । ପରେ 'ବିସର୍ଜନ' ନାମକ ଗଳ୍ପ ପ୍ରକାଶ ପାଇଲା । ପରେ ପରେ 'ଭାତ', 'ରୁଟି', 'ବନ୍ଦୀର ଭାବନା', 'ସର୍ବହରା', 'କୋଣାର୍କ', ପ୍ରଭୃତି ଓଡ଼ିଆ

କବିତା ପ୍ରକାଶ ପାଇଲା । ଏଗୁଡ଼ିକ ମାନବୀୟ ଦୃଷ୍ଟିକୋଣରୁ ରଚିତ ହୋଇଥିଲା । ୧୯୩୭ ମସିହାରେ 'ଅଭିଯାନ' ପୁସ୍ତକ ପ୍ରକାଶ ପାଇ ଓଡ଼ିଆ ସାହିତ୍ୟରେ ଚାଞ୍ଚଲ୍ୟ ସୃଷ୍ଟି କଲା । କେତେକ ତୁଙ୍ଗ କମ୍ୟୁନିଷ୍ଟ ନେତାଙ୍କ ସହିତ କଲିକତାରେ ସଚ୍ଚିଦାନନ୍ଦଙ୍କ ପରିଚୟ ହେଲା । ସେମାନଙ୍କ ମଧ୍ୟରେ ଥିଲେ ମୁଜାଫର ଅହମ୍ମଦ ଓ ବଙ୍କିମ ମୁଖାର୍ଜୀ । ସେ ମଧ୍ୟ କେତେକ ଶ୍ରମିକ ସଭାରେ ଯୋଗ ଦେଲେ ।

ଆଇ.ଏ. ପରୀକ୍ଷା ଆଉ ଦୁଇ ମାସ ଥାଏ । କମ୍ୟୁନିଷ୍ଟ ଷଡ଼୍ଯନ୍ତ୍ର ମାମଲାରେ ତାଙ୍କୁ ହଠାତ୍ ଗିରଫ କରାଗଲା । ସେ ଜେଲ୍‌ରେ ଦୁଇ ମାସ ରହିଲେ । ପରୀକ୍ଷା ଦିନ ହିଁ ତାଙ୍କୁ ଜାମିନ ମିଳିଲା । ସେ ଆଇ.ଏ. ସେକେଣ୍ଡ ଡିଭିଜନ୍‌ରେ ପାସ୍ କଲେ । କଲିକତାରେ ବି.ଏ. ପଢ଼ିବାପାଇଁ ଘରେ କେହି ରାଜି ହେଲେ ନାହିଁ । ମାମା କହିଲା – ''କଲିକତାରେ କେଉଁଦିନ ଫାଶୀ ହୋଇଯିବ – ସେଠି ଆମର ପଢ଼ିବାର ଦରକାର ନାହିଁ ।''

**ରେଭେନ୍‌ସା କଲେଜ ଛାତ୍ର ଜୀବନ**

ବାଧ୍ୟ ହୋଇ ସଚ୍ଚିଦାନନ୍ଦ କଟକ ରେଭେନ୍‌ସା କଲେଜ ତୃତୀୟ ବାର୍ଷିକ ଶ୍ରେଣୀରେ ନାମ ଲେଖାଇଲେ। ସେ ଅର୍ଥଶାସ୍ତ୍ରରେ ଅନର୍ସ ନେଇଥିଲେ । ଡଃ ସଦାଶିବ ମିଶ୍ର ଅର୍ଥନୀତି ପଢ଼ାଉଥିଲେ । ଡଃ ଆର୍ତ୍ତବଲ୍ଲଭ ମହାନ୍ତି ଓଡ଼ିଆ କ୍ଲାସ ନେଉଥିଲେ । ଏହି ଦୁଇ ଜଣ ମହାନ୍ ଶିକ୍ଷକଙ୍କଠାରୁ ଶିକ୍ଷା ପାଇବାର ସୌଭାଗ୍ୟ ତାଙ୍କର ହୋଇଥିଲା ବୋଲି ସଚ୍ଚିଦାନନ୍ଦ ଆତ୍ମଜୀବନୀରେ ଲେଖିଛନ୍ତି ।

ସଚ୍ଚିଦାନନ୍ଦ ପଢ଼ିଲାବେଳେ ସବୁ କଲେଜରେ କଲେଜ ୟୁନିଅନ୍ ଗଢ଼ାଯିବ ବୋଲି ନିର୍ଦ୍ଦେଶ ଆସିଲା । କିନ୍ତୁ କଲେଜ ୟୁନିଅନ୍‌ରେ ପ୍ରିନ୍‌ସିପାଲ Ex-officio ସଭାପତି ରହିବେ ବୋଲି ନିର୍ଦ୍ଦେଶ ଥିଲା । ସଚ୍ଚିଦାନନ୍ଦଙ୍କ ଗୋଷ୍ଠୀ ଏହାର ବିରୋଧ କଲେ ।

ସଚ୍ଚିଦାନନ୍ଦ ମଧ୍ୟ ଓଡ଼ିଶାର ଗଡ଼ଜାତ ପ୍ରଜା ଆନ୍ଦୋଳନରେ ପ୍ରମୁଖ ଭୂମିକା ଗ୍ରହଣ କଲେ । ବିଶେଷତଃ, ଢେଙ୍କାନାଳ ପ୍ରଜା ଆନ୍ଦୋଳନରେ ସେ ପ୍ରତ୍ୟକ୍ଷ ଭାବେ ଜଡ଼ିତ ହେଲେ । ଢେଙ୍କାନାଳରେ ପ୍ରଜାମାନଙ୍କ ଆନ୍ଦୋଳନ ତୀବ୍ର ହୋଇ ଉଠିଥାଏ । ସେହି ପ୍ରଜା ଆନ୍ଦୋଳନକୁ ସମର୍ଥନ କରି ସେ ଯେଉଁସବୁ କବିତା-ବନାମ-ସଙ୍ଗୀତ ଲେଖିଲେ, ତାହା ଢେଙ୍କାନାଳରେ ଚାଞ୍ଚଲ୍ୟ ସୃଷ୍ଟି କଲା । ସେ ସବୁ କବିତା କଟକରୁ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ସମ୍ପାଦିତ 'କୃଷକ' ପତ୍ରିକାରେ ପ୍ରକାଶ ପାଉଥିଲା । ଢେଙ୍କାନାଳ ରାଜା ଏସବୁ କବିତାକୁ ତାଙ୍କ ରାଜ୍ୟରେ ବାଜ୍ୟାପ୍ତ କଲେ । ସେ କବିତାଗୁଡ଼ିକ ମଧ୍ୟରେ 'ମାର୍ ତୁ ମୋତେ ଗୁଳି, ହୁଁକାପିଟା ଶାସନ, ଆମେ ଗୋଡ଼ରେ ଦେବୁ ଦଳି' ପ୍ରଭୃତି କବିତା ଲୋକଙ୍କ ମୁହଁରୁ ମୁହଁକୁ ବ୍ୟାପି ଚାରିଆଡ଼େ ଅଭୂତପୂର୍ବ ପ୍ରେରଣା ଆଣିଦେଲା । ଓଡ଼ିଶାରେ ମଧ୍ୟ ଏହି ସବୁ

କବିତା-ବନାମ-ସଙ୍ଗୀତ ଲୋକମୁଖରେ ପ୍ରସାରିତ ହେଲା । ଏହିସବୁ ନିଷିଦ୍ଧ କବିତା ଗାନ କରି ବହୁ କର୍ମୀ ଶୋଭାଯାତ୍ରା ଆଗରେ ରହି ଗୁଳି ଖାଇ ମରିଥିଲେ ।

୧୯୩୮ ସାଲ ଅକ୍ଟୋବର ମାସ ୧୦ ତାରିଖ ରାତିରେ ଭୁବନ ନିକଟସ୍ଥ ନୀଳକଣ୍ଠପୁର ଗ୍ରାମର ୧୨ ବର୍ଷର ବାଳକ ବାଜିରାଉତ ବ୍ରିଟିଶ ଫୌଜର ଗୁଳିମାଡ଼ରେ ମୃତ୍ୟୁ ବରଣ କଲା । କେବଳ ବାଜିରାଉତ ନୁହେଁ; ସେହି ଅନ୍ଧାର ରାତିରେ ଛଅ ଛଅଟା ମଣିଷ ଗୁଳି ମାଡ଼ରେ ମଲେ । ୧୨।୧୦।୧୯୩୮ ଅପରାହ୍ଣରେ ଛଅଟିଯାକ ଶବକୁ ଡଙ୍ଗାଯୋଗେ ଢେଙ୍କାନାଳର କବାଟବନ୍ଧଠାରୁ ଜେନାପୁର ନିଆଗଲା । ସେଠାରୁ ଗୋଟାଏ ମାଲ ଗାଡ଼ି ଡବା ଭଡ଼ା କରି ଛଅଟିଯାକ ଶବକୁ କଟକ ନିଆଗଲା । ତାହାପରେ ଗୋଟିଏ ଶଗଡ଼ରେ ଗୋଟିଏ ଶବକୁ ପୁଷ୍ପାଚ୍ଛାଦିତ କରି ଲକ୍ଷାଧିକ ଲୋକଙ୍କ ଶୋଭାଯାତ୍ରାରେ ଖାନ୍‌ନଗର ମଶାଣିକୁ ନିଆଗଲା । ସଚ୍ଚିଦାନନ୍ଦ ଥିଲେ ମୃତ ହୁରୁଷୀ ପ୍ରଧାନ ଶଗଡ଼ର ଚାଳକ ।

ଶବଗୁଡ଼ିକୁ ଦାହ କଲାବେଳେ ସେହି ଲେଲିହାନ ଶିଖା ପାଖରେ ବସି ସଚ୍ଚିଦାନନ୍ଦଙ୍କ ମନ ମଧ୍ୟରେ ଯେଉଁ ଭାବନା ଜାଗି ଉଠିଥିଲା, ତାହା 'ବାଜିରାଉତ' ନାମକ ଖଣ୍ଡକାବ୍ୟରେ ସେ ଲିପିବଦ୍ଧ କରିଛନ୍ତି । ତାହା ଥିଲା ତାଙ୍କ ପ୍ରାଣର ଗଭୀର ଉଚ୍ଛ୍ୱାସ ।

**ଅନୁଗୁଳ କ୍ୟାମ୍ପ**

ଗଡ଼ଜାତ ପ୍ରଜା ଆନ୍ଦୋଳନ ସମୟରେ ଲକ୍ଷ ଲକ୍ଷ ଭୟାର୍ତ୍ତ ପ୍ରଜା – ସ୍ତ୍ରୀ, ପୁରୁଷ, ବୃଦ୍ଧ, ଶିଶୁ – ବିଭିନ୍ନ ଗଡ଼ଜାତ ଅଞ୍ଚଳରୁ ନିଜ ନିଜ ଗାଁ ଗଣ୍ଡା, ଘରଦ୍ୱାର ଛାଡ଼ି ବ୍ରିଟିଶ ଶାସିତ ମୋଗଲବନ୍ଦି ଅଞ୍ଚଳକୁ ପଳାଇଆସି ମାସ ମାସ ଧରି ଶରଣାର୍ଥୀ ଶିବିରମାନଙ୍କରେ ଆଶ୍ରୟ ନେଇଥିଲେ । ସେହି ଶିବିରଗୁଡ଼ିକ ହେଲା ଅନୁଗୁଳ ନିକଟସ୍ଥ କଲାଣ୍ଡ ଓ ବୁଢ଼ାପଙ୍କ । ସଚ୍ଚିଦାନନ୍ଦ ସେହି ଶିବିର ଦାୟିତ୍ୱରେ ପ୍ରାୟ ଏକ ମାସ ଥିଲେ । ଥରେ ମାଳତୀ ଦେବୀଙ୍କ ନିର୍ଦ୍ଦେଶ ପାଇ ସଚ୍ଚିଦାନନ୍ଦ ବୁଢ଼ାପଙ୍କ କ୍ୟାମ୍ପରୁ ଦୁଇ ଜଣ ଗର୍ଭବତୀ ସ୍ତ୍ରୀଙ୍କୁ ନେଇ ଚାଲି ଚାଲି ଢେଙ୍କାନାଳ ରେଳ ଷ୍ଟେସନ୍‌ରେ ପହଞ୍ଚିଲେ । ତା'ର କାରଣ କଟକକୁ ଦୀନବନ୍ଧୁ ଆଣ୍ଟୁଜ ସାହେବ ଆସୁଥାନ୍ତି । ତାଙ୍କ ଆଗରେ ସୈନ୍ୟଙ୍କଦ୍ୱାରା ଗର୍ଭବତୀ ହୋଇଥିବା ଦୁଇ ଜଣ ନାରୀ ସାକ୍ଷ୍ୟ ଦେବାର ସ୍ଥିର ହୋଇଥିଲା । ସେମାନେ ଖୁବ୍ ଜୋର୍‌ରେ ଚାଲି ଷ୍ଟେସନ୍‌ରେ ପହଞ୍ଚିଲେ । ତାଳଚେର ଗାଡ଼ି ମଧ୍ୟ ଆସି ଠିଆହୋଇଥାଏ । ସଚ୍ଚିଦାନନ୍ଦ ସେହି ଗର୍ଭବତୀ ନାରୀଙ୍କୁ ଧରି ତରତରରେ ଟ୍ରେନ୍‌ରେ ଚଢ଼ିଗଲେ । ରଜାଙ୍କ ଲୋକେ ଧରିନେବାକୁ ଅବଶ୍ୟ ଷ୍ଟେସନ୍‌ରେ ପଇଁତରା ମାରୁଥାନ୍ତି । ମାତ୍ର ସେମାନେ ଟ୍ରେନରୁ ଧରିନେବାକୁ ସାହସ କରି ନ ଥିଲେ । କଟକରେ ସେମାନେ ଠିକ୍ ସମୟରେ ପହଞ୍ଚି ଦୀନବନ୍ଧୁଙ୍କ ଆଗରେ ସାକ୍ଷ୍ୟ ଦେଲେ । ଦୀନବନ୍ଧୁ ଆଣ୍ଡୁଜ ମଧ୍ୟ ଧୀରସ୍ଥିର ଭାବେ ସବୁ ଶୁଣିଲେ । ଆଖି ତାଙ୍କର

ଛଳ ଛଳ ହୋଇଉଠିଲା । ସେଦିନ ଧରା ପଡ଼ିଥିଲେ ତାଙ୍କର ମୃତ୍ୟୁ ନିଶ୍ଚିତ ଥିଲା ବୋଲି ସଚ୍ଚିଦାନନ୍ଦ ତାଙ୍କ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି ।

ପ୍ରଜା ଆନ୍ଦୋଳନ ଶାନ୍ତ ପଡ଼ିବାପରେ ଥରେ କଟକରୁ ସଚ୍ଚିଦାନନ୍ଦ, ଜଣେ କମ୍ୟୁନିଷ୍ଟ ସହକର୍ମୀ ଓ ବନ୍ଧୁ ଗୁରୁଚରଣ ପଟ୍ଟନାୟକଙ୍କ ସହ ସାଇକଲରେ ଢେଙ୍କାନାଳ ଯାଇଥିଲେ । ଢେଙ୍କାନାଳ ଜେଲରେ ଅଟକ ଥିବା ଅନନ୍ତ ପଟ୍ଟନାୟକଙ୍କୁ ଦେଖିବାପାଇଁ ଓ କିଛି ନିତ୍ୟବ୍ୟବହାର୍ଯ୍ୟ ଜିନିଷ ଓ ବହିପତ୍ର ଦେବା ସେମାନଙ୍କର ଉଦ୍ଦେଶ୍ୟ ଥିଲା । ମାତ୍ର ପୁଲିସ ଇନ୍‌ସପେକ୍ଟର ଧଳବାବୁ ଗୁରୁଚରଣଙ୍କୁ ତାଙ୍କ ଭାଇ ଅନନ୍ତବାବୁଙ୍କୁ ଦେଖିବାପାଇଁ ଅନୁମତି ଦେଲେ । ସଚ୍ଚିଦାନନ୍ଦଙ୍କୁ ଅନନ୍ତ ପଟ୍ଟନାୟକଙ୍କ ସହ ସାକ୍ଷାତ୍ ପାଇଁ ଛାଡ଼ି ନ ଥିଲେ । ପ୍ରାୟ ଦେଢ଼ଘଣ୍ଟା ଅପେକ୍ଷା କଲାପରେ ସାଇକଲରେ ପୁଣି ସେମାନେ କଟକ ଫେରିଲେ ।

## ରଣପୁର ପ୍ରଜା ଆନ୍ଦୋଳନ

୧୯୩୯ ମସିହା ଆରମ୍ଭରେ ରଣପୁରଠାରେ ପ୍ରଜାମଣ୍ଡଳ ଆନ୍ଦୋଳନ ହିଂସାତ୍ମକ ଆକାର ଧାରଣ କଲା । ପଲିଟିକାଲ ଏଜେଣ୍ଟ ମେଜର ବେଜେଲ୍‌ଗେଟ୍‌ଙ୍କୁ ଉତ୍ତ୍ୟକ୍ତ ଲୋକେ ଠେଙ୍ଗାରେ ପିଟି ପିଟି ମାରିଦେଲେ । ରଣପୁର ପ୍ରଜା ଆନ୍ଦୋଳନର ଦୁଇ ଜଣ ନେତା ରଘୁନାଥ ମହାନ୍ତି ଓ ଦିବାକର ପରିଡ଼ାଙ୍କୁ ବେଜଲଗେଟ୍ ହତ୍ୟା ମାମଲାରେ ଜଡ଼ିତ କରି ଗିରଫ କରାଗଲା ।

ସଚ୍ଚିଦାନନ୍ଦଙ୍କର ରଣପୁର ସହିତ ଘନିଷ୍ଠ ସମ୍ପର୍କ ଥିଲା । ତାଙ୍କ ଜନ୍ମିତ ମା' ରଣପୁର ରାଜାଙ୍କ କୁଟୁମ୍ବ ବା ବିରାଦରଙ୍କ କନ୍ୟା ଥିଲେ । ପିଲାଦିନେ ସଚ୍ଚିଦାନନ୍ଦ ଶଗଡ଼ଗାଡ଼ିରେ ଗ୍ରାମ ଗୁରୁଜଙ୍ଗରୁ ରଣପୁରଗଡ଼କୁ ବଳଦଗାଡ଼ିରେ ଯାଉଥିଲେ । ତେଣୁ ରଣପୁରର ରାଜନୈତିକ ପରିସ୍ଥିତି ଉପରେ ସଚ୍ଚିଦାନନ୍ଦ ତୀକ୍ଷ୍ଣ ଦୃଷ୍ଟି ରଖିବା ସ୍ୱାଭାବିକ ।

ଗିରଫ ରଘୁ ମହାନ୍ତି ଓ ଦିବାକର ପରିଡ଼ାଙ୍କ ବିଚାର ରଣପୁର ଜେଲରେ ଚାଲିଲା । ସେତେବେଳେ ସଚ୍ଚିଦାନନ୍ଦ ରଘୁଙ୍କ ସହ ଦେଖା କରିବାପାଇଁ ଖୋରଧାର ମୁକ୍ତାର ରଘୁନାଥ ଦାସଙ୍କ ସହିତ ଏକ ଟ୍ୟାକ୍ସିଯୋଗେ ରଣପୁର ଗଲେ । ରଘୁନାଥ ଦାସ ମୁଦାଲାମାନଙ୍କ ପକ୍ଷର ଓକିଲ ଥିଲେ । ଟ୍ୟାକ୍ସି ରଣପୁରରେ ପହଞ୍ଚିବା ମାତ୍ରେ ପୁଲିସ ଟ୍ୟାକ୍ସି ରୋକି ରଘୁନାଥ ଦାସଙ୍କୁ ଜେଲ ଭିତରକୁ ଛାଡ଼ିଲେ । ଟ୍ୟାକ୍ସିରେ କିନ୍ତୁ ସଚ୍ଚିଦାନନ୍ଦଙ୍କୁ ବସାଇ ରଖିଲେ । କିଛି ସମୟପରେ ତାଙ୍କୁ ଗିରଫ କରି ରଜାଘର ଗାଡ଼ିରେ ଜବରଦସ୍ତ ବସାଇ ଦିଆଗଲା । ତା'ପରେ ତାଙ୍କୁ ଆଣି ଗୁରୁଜଙ୍ଗ ଗାଁ ମୁଣ୍ଡରେ ଛାଡ଼ିଦେଇଗଲେ ।

## ଗଡ଼ଜାତ ମିଶ୍ରଣରେ ଭୂମିକା

୧୯୪୭ ମସିହାରେ ଭାରତ ସ୍ୱାଧୀନ ହେଲା । ସ୍ୱାଧୀନ ହେବା ପରେ ଗଡ଼ଜାତ ପ୍ରଜା ଆନ୍ଦୋଳନ ତୀବ୍ର ଆକାର ଧାରଣ କଲା । ଗଡ଼ଜାତ ପ୍ରଜାମାନେ

ଜାତୀୟ ମହାସ୍ରୋତରେ ସାମିଲ ହେବାପାଇଁ ସବୁପ୍ରକାର ତ୍ୟାଗ ସ୍ୱୀକାର କରିବାକୁ ପ୍ରସ୍ତୁତ ଥିଲେ । ଓଡ଼ିଶାର ରାଜାରାଜୁଡ଼ାମାନେ ମଧ୍ୟ ଖୁବ୍ ଜୋର୍‌ରେ ଇଷ୍ଟର୍ଣ୍ଣ ଷ୍ଟେଟ୍‌ସ ଏଜେନ୍ସି ଗଠନପାଇଁ ଲାଗିପଡ଼ିଲେ । ସେମାନେ ଏକ ସମ୍ବିଧାନ ପ୍ରଣୟନ କରିଥିଲେ ଓ ପ୍ରଜା ଆନ୍ଦୋଳନକୁ ଦବାଇଦେବାପାଇଁ ମିଳିତ ପୁଲିସ ବାହିନୀ ଗଠନ କରିଥିଲେ ।

୧୯୪୭ ମସିହା ନଭେମ୍ବର ମାସ ୧୪ ତାରିଖରେ ଓଡ଼ିଶା ସରକାର ଏକ ସାହସିକ ପଦକ୍ଷେପ ନେଇ ନୀଳଗିରି ରାଜ୍ୟକୁ ଓଡ଼ିଶାରେ ମିଶାଇଦେଲେ । ଅନ୍ୟ ରାଜାମାନେ ଏହାକୁ ଏକ ଆହ୍ୱାନରୂପେ ଗ୍ରହଣ କଲେ । ଶେଷରେ ସର୍ଦ୍ଦାର ପଟେଲ ଓଡ଼ିଶା ଷ୍ଟେଟ୍‌ର ରାଜାମାନଙ୍କୁ କଟକ ରାଜଭବନରେ ଭେଟିଲେ ଓ ଗଡ଼ଜାତର ରାଜାମାନଙ୍କୁ ଓଡ଼ିଶାରେ ସେମାନଙ୍କର ରାଜ୍ୟର ମିଶ୍ରଣକୁ ଗ୍ରହଣ କରିନେବାକୁ ଉପଦେଶ ଦେଲେ ।

ଏହି ସମୟରେ ସଚ୍ଚିଦାନନ୍ଦ କଲିକତାରେ ଥିଲେ । ସେଠାରେ ବିଭିନ୍ନ ପ୍ରବାସୀ ଓଡ଼ିଆମାନଙ୍କ ପକ୍ଷରୁ ଷଢ଼େଇକଳା ଓ ଖରସୁଆଁକୁ ଓଡ଼ିଶାକୁ ଫେରାଇଦେବାପାଇଁ ଦୃଢ଼ ଦାବି କରିଥିଲେ । ଓଡ଼ିଶାର ତତ୍କାଳୀନ ପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବଙ୍କୁ ଡକାଇ ମାଟିଆବୁରୁଜଠାରେ ଏକ ବିରାଟ ଜନସଭା ଆୟୋଜନ କରିଥିଲେ । ଏହି ସମ୍ମିଳନୀର ଅଭ୍ୟର୍ଥନା ସମିତିର ସଭାପତି ସଚ୍ଚିଦାନନ୍ଦ ଥିଲେ । କଲିକତାରେ ଥିଲାବେଳେ ଗଡ଼ଜାତ ମିଶ୍ରଣ ଦାବି କରି ବହୁ ସଭାରେ ସେ ଭାଷଣମାନ ଦେଇଥିଲେ । ଏଥି ସଂକ୍ରାନ୍ତୀୟ କେତେକ କବିତା ମଧ୍ୟ ସେ ପ୍ରକାଶ କରିଥିଲେ ।

**ଛାତ୍ର ଆନ୍ଦୋଳନରେ ଭୂମିକା**

ରେଭେନ୍‌ସା କଲେଜରେ ପଢୁଥିଲାବେଳେ ସଚ୍ଚିଦାନନ୍ଦ ସୁକିନ୍ଦାରୁ ନିର୍ଦ୍ୱନ୍ଦ୍ୱରେ ପ୍ରଦେଶ କଂଗ୍ରେସ କମିଟିକୁ ସଭ୍ୟଭାବେ ନିର୍ବାଚିତ ହେଲେ । ସରକାର ତାଙ୍କ ପଛରେ ସି.ଆଇ.ଡି. ଲଗାଇଥାନ୍ତି । ସଚ୍ଚିଦାନନ୍ଦ ସାଇକଲ୍‌ରେ କିମ୍ବା ରିକ୍ସାରେ କୁଆଡ଼େ ଗଲେ ସେମାନେ ପଛେ ପଛେ ଯାଉଥିଲେ । ଫେରିଆସି ତାଙ୍କ କୋଠରିରେ ରହିଲେ ବି ସେମାନେ ରାତି ଅଧ ପର୍ଯ୍ୟନ୍ତ ବସି ରହୁଥିଲେ ।

ଓଡ଼ିଶାରେ ଛାତ୍ର ଆନ୍ଦୋଳନରେ ସଚ୍ଚିଦାନନ୍ଦ ଦୁଇ ଥର କାରାବରଣ କରିଥିଲେ । ପ୍ରଥମଟି ହେଲା ମେଡ଼ିକାଲ ସ୍କୁଲ୍ ଛାତ୍ର ଧର୍ମଘଟ । ସେଥିରେ ସଚ୍ଚିଦାନନ୍ଦଙ୍କୁ ଗିରଫ କରାଗଲା । ମାତ୍ର ସେ ପ୍ରାଦେଶିକ କଂଗ୍ରେସ କମିଟି ସଭ୍ୟ ଥିବା ଦୃଷ୍ଟିରୁ ତାଙ୍କୁ ଛାଡ଼ି ଦିଆଗଲା । ଏହି ଧର୍ମଘଟରେ ମୁଖପତ୍ର 'ଛାତ୍ର' ପତ୍ରିକା ସେ ପ୍ରକାଶ କରୁଥିଲେ । ତେଣୁ ତାଙ୍କୁ ପ୍ରେସ ଆକ୍ଟ ଅନୁଯାୟୀ ୨୫୦ଟଙ୍କା ଜୋରିମାନା ହୋଇଥିଲା । ତାଙ୍କ ଜୋରିମାନା ଟଙ୍କା କୋର୍ଟରେ ଆଡଭୋକେଟ୍ ମଧୁସୂଦନ ମହାନ୍ତି ଦାଖଲ କଲେ । ଫଳରେ ସେ ନିକଟରେ ହେବାକୁ ଥିବା ବି. ଏ. ପରୀକ୍ଷା ଦେଇପାରିଲେ ।

'ଛାତ୍ର'ରେ ପ୍ରକାଶିତ ସଚ୍ଚି ରାଉତରାୟଙ୍କ କବିତାଟି ଧର୍ମଘଟକାରୀ ଛାତ୍ରମାନେ ବୋଲୁଥିଲେ । ତାହାର କେତୋଟି ପଂକ୍ତି –

''ସ୍ୱପ୍ନସାଗର ଆସେ ଛେଦି ହେ । ଜାଗିଛି ତରୁଣ ଛାତ୍ର
ଅରୁଣ କିରଣେ ଉଷାର ତୋରଣେ । ନିଭିଛି ତିମିର ରାତ୍ର ।

× × ×

ଦେଶେ ଦେଶେ ଛାତ୍ର ଆଣିଛି ଜୀବନ
ଇତିହାସ ସେହୁ କରିଛି ନବୀନ
ଏ ଦେଶେ ଆଣିବ ସେହି ଶୁଭ ଦିନ
ଗାଇବ ସ୍ୱାଧୀନ ମନ୍ତ୍ର
ଛାତ୍ର ଏକଜୁଟ ହୁଅ ।''

## ବି.ଏ. ପରୀକ୍ଷାରେ ଫେଲ୍

୧୯୩୯ ମସିହାରେ ସଚ୍ଚିଦାନନ୍ଦ ରେଭେନ୍ସା କଲେଜରେ ବି.ଏ. ଫାଇନାଲ ପରୀକ୍ଷା ଦେଲେ । ଶେଷଦିନ ଇକୋନୋମିକ୍ସ ପେପର ଥିଲା । ସେହି ସମୟରେ ତ୍ରିପୁରାଠାରେ କଂଗ୍ରେସ ଅଧିବେଶନ ଚାଲିଥାଏ । ସେ ସମୟରେ ଗାନ୍ଧିଜୀଙ୍କ ବିନା ସମର୍ଥନରେ ନେତାଜୀ ସୁଭାଷଚନ୍ଦ୍ର ବୋଷ କଂଗ୍ରେସର ସଭାପତିଭାବେ ନିର୍ବାଚିତ ହୋଇଥାନ୍ତି । ସେ ଗାନ୍ଧିଜୀଙ୍କ ସମର୍ଥିତ ପ୍ରାର୍ଥୀ ଡଃ ପଟ୍ଟାଭି ସୀତାରାମାୟାଙ୍କୁ ବହୁ ଭୋଟରେ ହରାଇଥିଲେ । ଗାନ୍ଧିଜୀଙ୍କ ସମର୍ଥକମାନେ କିନ୍ତୁ ସୁଭାଷଚନ୍ଦ୍ରେ ବୋଷଙ୍କର କ୍ଷମତା କ୍ଷୁଣ୍ଣ କରିବାକୁ ଉଦ୍ୟମ କରୁଥିଲେ । ତେଣୁ ସୁଭାଷଚନ୍ଦ୍ରଙ୍କ ସପକ୍ଷରେ ଭୋଟ ଦେବାର ଆବଶ୍ୟକ ହେଲା । ତ୍ରିପୁରାରୁ ମାଳତୀ ଦେବୀ ଓ ନବକୃଷ୍ଣ ଚୌଧୁରୀ ପ୍ରଭୃତି ସଚ୍ଚିଦାନନ୍ଦଙ୍କୁ ଟେଲିଗ୍ରାମ କରି ତ୍ରିପୁରା ଯିବାକୁ ଡକାଇଲେ । ତେଣୁ ବାଧ୍ୟହୋଇ ସଚ୍ଚିଦାନନ୍ଦୟ ଶେଷ ଦିନର ପେପର ଭାରତୀୟ ଅର୍ଥନୀତି ମାତ୍ର ଅଧଘଣ୍ଟାଏ ଭିତରେ ଶେଷ କରି ଘରକୁ ଫେରିଲେ ଓ ଆସନ୍‌ସୋଲ୍ ଟ୍ରେନ୍ ଧରି ତ୍ରିପୁରା ଅଭିମୁଖେ ଯାତ୍ରା କଲେ । ଯଥା ସମୟରେ ତ୍ରିପୁରାରେ ସେ ପହଞ୍ଚି ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କ ସପକ୍ଷରେ ଭୋଟ ଦେଲେ । କିନ୍ତୁ ଇକୋନୋମିକ୍ସରେ ସେ ଫେଲ୍ ହେଲେ । ଅବଶ୍ୟ ଦେଢ଼ମାସ ପରେ ବି.ଏ. ସପ୍ଲିମେଣ୍ଟାରୀ ପରୀକ୍ଷା ଦେଇ ଡିଷ୍ଟିଂକ୍ସନ୍ ରଖି ପାସ୍ କଲେ ।

## ଏମ୍.ଏ. ଓ ଲ' (ଆଇନ) ପଢ଼ିବାରୁ ବଞ୍ଚିତ

ସପ୍ଲିମେଣ୍ଟାରୀ ପରୀକ୍ଷାରେ ସଚ୍ଚିଦାନନ୍ଦ ବି.ଏ. ପାସ୍ କଲାପରେ ଏମ୍.ଏ. ଓ ଲ' ଶ୍ରେଣୀରେ ଭର୍ତ୍ତି ହେବାପାଇଁ ଆବେଦନ କଲେ । ସେତେବେଳେ ଲ' କ୍ଲାସ ସକାଳେ ହେଉଥିଲା । ତେଣୁ ଜଣେ ଛାତ୍ର ଏକାଠି ଏମ୍.ଏ. ଓ ଲ' ପଢ଼ି ପାରୁଥିଲେ । ସେତେବେଳେ କଲେଜରେ ପ୍ରିନ୍‌ସିପାଲ ଥିଲେ ପରିଡା ସାହେବ । ସେ ସଚ୍ଚିଦାନନ୍ଦ ଦରଖାସ୍ତ ଉପରେ ଲେଖିଲେ ଯେ ସେ ଜଣେ ରାଜନୈତିକ ଚରମପନ୍ଥୀ ବ୍ୟକ୍ତି ।

ସେ ରେଭେନ୍‌ସା କଲେଜରେ ସ୍ନାତକୋତ୍ତର ଶ୍ରେଣୀରେ ପଢ଼ିବାଟା କଲେଜ ପକ୍ଷରେ ନିରାପଦ ନୁହେଁ । ଓଡ଼ିଶାର କେବଳ ସେହି ଗୋଟିକ କଲେଜରେ ସ୍ନାତକୋତ୍ତର ଶ୍ରେଣୀ ଥିଲା । ତେଣୁ ସଚ୍ଚିଦାନନ୍ଦଙ୍କର ଛାତ୍ରଜୀବନ ଶେଷ ହେଲା ।

ଏହାପରେ ଓଡ଼ିଶାରେ ହୋଇଥିବା ଛାତ୍ର ଆନ୍ଦୋଳନରେ ସେ ଛାତ୍ରଭାବେ ସଭ୍ୟ ରହିପାରି ନ ଥିଲେ । ତେବେ ଅଣ ଛାତ୍ର ହେଲେ ହେଁ ସେଥିରେ ସେ ନେତା ଭୂମିକା ଗ୍ରହଣ କରିଥିଲେ ।

**ରେଭେନ୍‌ସା କଲେଜ ଛାତ୍ର ଧର୍ମଘଟ**

୧୯୪୦ ମସିହା ଜାନୁଆରୀ ମାସ ୨୬ ତାରିଖରେ ରେଭେନ୍‌ସା କଲେଜ ହତା ମଧ୍ୟରେ ଅଧ୍ୟକ୍ଷ ପ୍ରାଣକୃଷ୍ଣ ପରିଜାଙ୍କ ଆଦେଶକୁ ଅମାନ୍ୟ କରି ଛାତ୍ରମାନେ ଜାତୀୟ ତ୍ରିରଙ୍ଗା ପତାକା ଉଡ଼ାଇଲେ । ପରିଜା ସାହେବ ଶାସ୍ତିମୂଳକ ପଦକ୍ଷେପ ନେଲେ । ନୀଳମଣି ରାଉତରାୟ ଓ ବିବୁଧେନ୍ଦ୍ର ମିଶ୍ରଙ୍କ ଉପରେ କଲେଜ ଶୃଙ୍ଖଳାଭଙ୍ଗ କରିଥିବାହେତୁ ୨୫ଟଙ୍କା ଲେଖାଏଁ ଜୋରିମାନା କଲେ । ଜୋରିମାନା ନ ଦେଲେ ବି. ଏ. ପରୀକ୍ଷାରୁ ବଞ୍ଚିତ ହେବେ ବୋଲି ଆଦେଶ ଦେଲେ । ଫଳରେ କଲେଜ ଛାତ୍ରମାନଙ୍କ ମଧ୍ୟରେ ଘୋର ଉତ୍ତେଜନା ଦେଖାଦେଲା । ବାହାରୁ ବହୁ ଛାତ୍ର ଆସି କଲେଜରେ ରୁଣ୍ଡ ହେବାକୁ ଲାଗିଲେ । ଫେବୃଆରୀ ୧୮ତାରିଖରୁ ଧର୍ମଘଟ ଆରମ୍ଭ ହେବ ବୋଲି ସ୍ଥିର ହେଲା । ସଚ୍ଚିଦାନନ୍ଦ ସେତେବେଳେ ଗ୍ରାମ ଗୁରୁଜଙ୍ଗରେ ଟାଇଫଏଡ୍ ଜ୍ୱରରେ ପୀଡ଼ିତ ଥାଆନ୍ତି । ଦିନେ ସକାଳେ ଛାତ୍ରନେତା ନୀଳମଣି ରାଉତରାୟ ଗାଁରେ ଆସି ପହଞ୍ଚିଲେ । କଲେଜରେ ଛାତ୍ର ଧର୍ମଘଟ କଥା ଜଣାଇ କଟକ ଯିବାପାଇଁ ଜିଦ୍ ଧରିଲେ । ସଚ୍ଚିଦାନନ୍ଦ ନିଜର ଶାରୀରିକ ଅସୁସ୍ଥତା ବିଷୟ କଥା କହିଲେ ମଧ୍ୟ ସେ ଶୁଣିଲେ ନାହିଁ । ଅଗତ୍ୟା ସେ ଘରେ ସମସ୍ତଙ୍କୁ କହି କଟକ ଗଲେ ।

**ଗିରଫ ଓ କାରାବାସ**

ସଚ୍ଚିଦାନନ୍ଦ ଓ ନୀଳମଣି କଟକରେ ପହଞ୍ଚି ପୂର୍ବ-ଛାତ୍ରବାସର ନୀଳମଣିଙ୍କ ରହୁଥିବା କୋଠରିରେ ପହଞ୍ଚିଲେ । ସେଠାରେ ବସି ଅନ୍ୟ ଛାତ୍ରମାନଙ୍କ ସହିତ ଛାତ୍ର ଧର୍ମଘଟ ସମ୍ପର୍କରେ ଆଲୋଚନା କରୁଥିବାବେଳେ ପୁଲିସ ଇନ୍‌ସପେକ୍ଟର ଲକ୍ଷ୍ମଣ ମିଶ୍ର କେତେ ଜଣ କନ୍‌ଷ୍ଟେବଲ୍‌ଙ୍କୁ ଧରି ସେଠାରେ ପହଞ୍ଚିଲେ ଓ ସଚ୍ଚିଦାନନ୍ଦଙ୍କୁ ଗିରଫ କରି ତଳକୁ ନେଲେ । ସେଠାରେ ଗୋଟିଏ ଘୋଡ଼ାଗାଡ଼ି ଅପେକ୍ଷା କରିଥାଏ । ସେହି ଘୋଡ଼ାଗାଡ଼ିରେ ଆଗରୁ ଅଶୋକ ଦାସ ଗିରଫ ହୋଇ ବସିଥାନ୍ତି । ଚାରିଆଡ଼େ ଛାତ୍ରମାନେ ଘେରି ରହିଥାନ୍ତି ଓ ସେମାନଙ୍କ ଜୟଜୟକାର କରୁଥାନ୍ତି ।

ଅଶୋକ ଦାସ ଉପସ୍ଥିତ ଛାତ୍ର ଜନତାକୁ ଧର୍ମଘଟ ସଫଳ କରିବାକୁ ଜ୍ୱାଳାମୟୀ ଭାଷଣ ଦେଲେ । ସେମାନଙ୍କୁ କଟକ ଜେଲରେ ରଖାଗଲା ।

ରେଭେନ୍‌ସା କଲେଜ ଗେଟ୍ ସାମ୍ନାରେ ପିକେଟିଂ ଚାଲିଥାଏ । ବଳରାମ ମହାନ୍ତି ଓ ମନମୋହନ ମିଶ୍ର ଗିରଫ ହେଲେ । ଲାଠି ମାଡ଼ରେ ବହୁ ଛାତ୍ର ଆହତ ହେଲେ । ବହୁ ଛାତ୍ର ହଷ୍ଟେଲ ଛାଡ଼ି ଘରକୁ ପଳାଇଲେ । ସମଗ୍ର କଲେଜ ଶ୍ମଶାନ ପରି ଜଣାଗଲା । ଏହାପରେ ସୂରଯମଲ ଶାହା, ରାମକୃଷ୍ଣ ପତି, ବିଜୟଚନ୍ଦ୍ର ଦାସ, ଦୁର୍ଗାଚରଣ ମହାନ୍ତି, ନୀଳମଣି ରାଉତରାୟ ପ୍ରଭୃତି ଗିରଫ ହେଲେ ।

ଜେଲରେ ସଚ୍ଚିଦାନନ୍ଦ ପ୍ରଭୃତି ଅନଶନ କରିଥିଲେ । ସନ୍ଧ୍ୟାରେ ଇଂରାଜୀରେ ଡିବେଟିଂ ପ୍ରଭୃତି ହେଉଥିଲା ।

ପ୍ରାୟ ଏକ ମାସ ପର୍ଯ୍ୟନ୍ତ ସଚ୍ଚିଦାନନ୍ଦ ଜେଲରେ ରହିଲେ ।

**କୃଷକ ଆନ୍ଦୋଳନରେ ଅଂଶ ଗ୍ରହଣ**

ଭାରତର କୃଷକ ଆନ୍ଦୋଳନକୁ ସଂଗଠିତ ରୂପ ଦେବାପାଇଁ ନିଖିଳ ଭାରତ କୃଷକ ମହାସଂଘ ଜନ୍ମ ନେଲା । ଅଧ୍ୟାପକ ରଙ୍ଗା, ସଦାନନ୍ଦ ପ୍ରଭୃତି ଏହାର ନେତୃତ୍ୱ ନେଇଥିଲେ । ୧୯୩୫ ମସିହାରେ ଓଡ଼ିଶାରେ କିଷାନ ସଂଘ ଗଠିତ ହେଲା । ଏହାର ଉଦ୍ଦେଶ୍ୟ ଥିଲା କୃଷକମାନଙ୍କର ସ୍ୱାର୍ଥ ରକ୍ଷା କରିବା ଓ ଜମିଦାରମାନଙ୍କର ବେଆଇନ ଶୋଷଣ ବନ୍ଦ କରିବା । ଓଡ଼ିଶାରେ କଂଗ୍ରେସ ଦଳ କୃଷକ ଓ ଗ୍ରାମ୍ୟ ପୁନର୍ଗଠନ କାର୍ଯ୍ୟସୂଚୀ ଗ୍ରହଣ କରିଥିଲା । ୧୯୩୬ ସାଲ ମେ ମାସରେ ବାଲେଶ୍ୱର ଓ କଟକ ଜିଲ୍ଲାରେ ବହୁ କୃଷକ ସଭାମାନ ହେଲା । କୃଷକ ଆନ୍ଦୋଳନ କ୍ରମେ ଶକ୍ତିଶାଳୀ ହୋଇଉଠିଲା । କନିକା ଜମିଦାରିରେ ଚକ୍ରଧର ବେହେରାଙ୍କ ନେତୃତ୍ୱରେ କୃଷକ ଆନ୍ଦୋଳନ ତୀବ୍ର ହେଲା । ୧୯୩୮ ମସିହାରେ କଂଗ୍ରେସ ସୋସାଲିଷ୍ଟ ନେତା ସୁରେନ୍ଦ୍ର ନାଥ ଦ୍ୱିବେଦୀଙ୍କ ସମ୍ପାଦନାରେ କଟକରୁ 'କୃଷକ' ନାମକ ସାପ୍ତାହିକ ପତ୍ରିକା ପ୍ରକାଶ ପାଇଲା ।

'କୃଷକ' ପତ୍ରିକାରେ ଭଗବତୀଚରଣ ପାଣିଗ୍ରାହୀ, ସଚ୍ଚିଦାନନ୍ଦ ପ୍ରଭୃତି ଲେଖାଲେଖି କରୁଥିଲେ । ଗଡ଼ଜାତ ପ୍ରଜା ଆନ୍ଦୋଳନର ସମ୍ପୃକ୍ତ ବହୁ ଲେଖା ଓ କବିତା ମଧ୍ୟ 'କୃଷକ'ରେ ପ୍ରକାଶ ପାଉଥିଲା ।

ଗଞ୍ଜାମରେ ବିଶ୍ୱନାଥ ଦାସ କୃଷକ ଆନ୍ଦୋଳନର ନେତୃତ୍ୱ ନେଇଥିଲେ । ବିଶ୍ୱନାଥ ଦାସ ପ୍ରଧାନମନ୍ତ୍ରୀ ହେଲାପରେ ମାଡ୍ରାସ ଲ୍ୟାଣ୍ଡ ଆକ୍ଟ ସଂଶୋଧନ କଲେ । ଏହି ଆଇନ ମଧ୍ୟ ଗଞ୍ଜାମ ଜିଲ୍ଲା ପ୍ରତି ପ୍ରଯୁଜ୍ୟ ହେଲା ।

ସଚ୍ଚିଦାନନ୍ଦ ଓଡ଼ିଶାରେ ବହୁ କୃଷକ ସଭାରେ ଯୋଗ ଦେଇଥିଲେ । କୃଷକମାନଙ୍କର ସ୍ୱାର୍ଥରକ୍ଷାପାଇଁ ଜମିଦାରି ପ୍ରଥାର ଉଚ୍ଛେଦ ଦାବି କରି ଉଦ୍‌ବୋଧନ ମାନ ଦେଉଥିଲେ । ଏହାଛଡ଼ା କୃଷକ ଆନ୍ଦୋଳନ ଉପଲକ୍ଷେ ବହୁ କବିତା ରଚନା କରିଥିଲେ । ସେଗୁଡ଼ିକ ମଧ୍ୟରେ 'ଭାତ' ଓ 'ରୁଟି' ଉଲ୍ଲେଖଯୋଗ୍ୟ ।

'ଭାତ' କବିତାର ପ୍ରଥମ ପଂକ୍ତି –

''ବଡ଼ ଭୋକ ବାବୁ, ବଡ଼ ଭୋକ ଆଜି
ଖାଇବାକୁ ଦିଅ ଭାତ,
ହକ ପାଉଣା ଗଣ୍ଡାକପାଇଁ
କେତେ ବା ପାତିବୁ ହାତ ?''

ଏହି କବିତାଟି 'ଅଭିଯାନ' ପୁସ୍ତକରେ ସ୍ଥାନିତ ହୋଇଛି ।

ଆନ୍ଧ୍ରପ୍ରଦେଶର ପଲାଶାଠାରେ ନିଖିଳ ଭାରତ କିଷାନ ସଂଘର ବାର୍ଷିକ ଅଧିବେଶନ ହେଲା । ଆନ୍ଧ୍ରପ୍ରଦେଶର ଅଧ୍ୟାପକ ରଙ୍ଗା କୃଷକ ଆନ୍ଦୋଳନର ନେତୃତ୍ୱ ନେଉଥିଲେ । ପ୍ରାୟ ୪·୫ ଲକ୍ଷ କୃଷକ ଏହି ସମ୍ମିଳନୀରେ ଯୋଗ ଦେଇଥିଲେ । ଏହି ସମ୍ମିଳନୀରେ କର୍ମକର୍ତ୍ତା ନିର୍ବାଚନରେ ସଚ୍ଚିଦାନନ୍ଦ ଯୁଗ୍ମସଚିବ ଭାବେ ନିର୍ବାଚିତ ହେଲେ ।

ସଚ୍ଚିଦାନନ୍ଦ ମଧ୍ୟ ଓଡ଼ିଶା କୃଷକ ସଂଘର କେତେ ବର୍ଷ ସଭାପତି ଥିଲେ । ଡମପଡ଼ା ନିକଟସ୍ଥ ହଂସପଡ଼ାଠାରେ ବିରାଟ କୃଷକ ସମ୍ମିଳନୀ ହେଲା । ସଚ୍ଚିଦାନନ୍ଦ ସେଥିରେ ସଭାପତିତ୍ୱ କରିଥିଲେ । ପଟିଆରେ ମଧ୍ୟ ଆଉ ଏକ ବଡ଼ କୃଷକ ସମ୍ମିଳନୀ ତାଙ୍କ ଉଦ୍ୟମରେ ହୋଇଥିଲା । ସଚ୍ଚିଦାନନ୍ଦ, ଭଗବତୀଚରଣ ପାଣିଗ୍ରାହୀ, ଅନନ୍ତ ପଟ୍ଟନାୟକ ଓ ବୈଦ୍ୟନାଥ ରଥ ପ୍ରଭୃତି ସଭାପତି ମଣ୍ଡଳୀରେ ଥିଲେ । ଖୋରଧାରେ ମଧ୍ୟ କୃଷକ ସଂଘର ବାର୍ଷିକ ସମ୍ମିଳନୀ ପଲଟନ୍ ପଡ଼ିଆରେ ହୋଇଥିଲା । ଜେନାପୁର କୃଷକ ସଭାରେ ସଚ୍ଚିଦାନନ୍ଦ ଉଦ୍‌ବୋଧନ ଦେଇଥିଲେ ।

**ବିଚ୍ଛିନ୍ନାଞ୍ଚଳ କାର୍ଯ୍ୟ**

୧୯୪୦ ସାଲରୁ ୧୯୪୨ ସାଲ ମଧ୍ୟରେ ସଚ୍ଚିଦାନନ୍ଦ ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆ ଭାଷାର ସୁରକ୍ଷାପାଇଁ ବହୁ କାର୍ଯ୍ୟ କରିଥିଲେ । ସେ ବ୍ରହ୍ମପୁର ଓ କଟକରେ କେତୋଟି ସଭାସମିତିରେ ଓଡ଼ିଆ ଭାଷା ଓ ଓଡ଼ିଆ ଗ୍ରନ୍ଥଗୁଡ଼ିକର ସୁରକ୍ଷାପାଇଁ ଜନମତ ସୃଷ୍ଟି କରିଥିଲେ । ବ୍ରହ୍ମପୁରଠାରୁ ଅଳ୍ପ ଦୂରରେ ଇଚ୍ଛାପୁର ରେଳଷ୍ଟେସନ ନିକଟରେ ସୁରଙ୍ଗୀ ରାଜାସାହେବଙ୍କୁ ଭେଟି ସୁରଙ୍ଗୀ ସମେତ ଶ୍ରୀକାକୁଲମ ପର୍ଯ୍ୟନ୍ତ ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳରେ ଓଡ଼ିଆ ଭାଷା କିପରି ଅକ୍ଷୁଣ୍ଣ ରହିବ, ସେ'ଦିଗରେ ଆଲୋଚନା କରିଥିଲେ । ସୁରଙ୍ଗୀ ରାଜାସାହେବ ଏ ଦିଗରେ କିଛି ତତ୍ପରତା ପ୍ରକାଶ କରିଥିଲେ । ଇଚ୍ଛାପୁର, ଟେକାଲି ପ୍ରଭୃତି କେତୋଟି ବିଚ୍ଛିନ୍ନାଞ୍ଚଳର ସଭାରେ ଓଡ଼ିଆ ଭାଷାର ସୁରକ୍ଷା ଦାବି କରି ସଚ୍ଚିଦାନନ୍ଦ ଭାଷଣମାନ ଦେଇଥିଲେ ।

କଲିକତାରେ ଥିଲାବେଳେ ସେଠାରେ ଥିବା ୭-୮ ଲକ୍ଷ ଓଡ଼ିଆ ଶ୍ରମିକମାନଙ୍କପାଇଁ ସଚ୍ଚିଦାନନ୍ଦ ବହୁ କାର୍ଯ୍ୟ କରିଥିଲେ । ୧୯୪୮ ମସିହାରେ ମାଟିଆବୁରୁଜଠାରେ ପ୍ରବାସୀ ଓଡ଼ିଆ ସମ୍ମିଳନୀ ଆୟୋଜନ କରିଥିଲେ ।

ସଚ୍ଚିଦାନନ୍ଦ ଅଭ୍ୟର୍ଥନା ସମିତିର ଅଧ୍ୟକ୍ଷ ଥିଲେ । ପ୍ରାୟ ୨ ଲକ୍ଷରୁ ଅଧିକ ଓଡ଼ିଆ ଏହି ସମ୍ମିଳନୀରେ ଉପସ୍ଥିତ ଥିଲେ । ଏହି ସମ୍ମିଳନୀରେ ଓଡ଼ିଶାର ବିଚ୍ଛିନ୍ନାଞ୍ଚଳର ମିଶ୍ରଣ, ଓଡ଼ିଆ ସଂସ୍କୃତିର ସୁରକ୍ଷା ଦାବି କରି ପ୍ରସ୍ତାବମାନ ଗୃହୀତ କରାଇଥିଲେ। ସେହିପରି ନିଖିଳ ଭାରତ ପ୍ରବାସୀ ଉତ୍କଳ ସମ୍ମିଳନୀର ପ୍ରସ୍ତୁତି କମିଟିର ବୈଠକ କଲିକତା ବହୁବଜାରରେ ହୋଇଥିଲା । ସଚ୍ଚିଦାନନ୍ଦ ପ୍ରସ୍ତୁତି କମିଟିର ସଭାପତି ଥିଲେ । ଓଡ଼ିଆ ଭାଷା, ସଂସ୍କୃତି ଓ କଳାର ବିକାଶ କିପରି ବିଚ୍ଛିନ୍ନାଞ୍ଚଳମାନଙ୍କର ହୋଇପାରିବ ସେଥିପାଇଁ କେତେକ ଯୋଜନା ହୋଇଥିଲା । ଏହି ସମ୍ମିଳନୀ ୩ ଦିନ ଧରି ଚାଲିଥିଲା ଓ ପ୍ରତିଦିନ ପ୍ରାୟ ୩ ଲକ୍ଷ ଓଡ଼ିଆ ଏଥିରେ ଯୋଗ ଦେଉଥିଲେ ।

### କେଶୋରାମ କଟନ୍ ମିଲରେ ଚାକିରି

ସଚ୍ଚିଦାନନ୍ଦଙ୍କ 'ବାଜିରାଉତ' କବିତାଟି କେବଳ ଓଡ଼ିଶା ନୁହେଁ, ସମଗ୍ର ଭାରତବର୍ଷର ଜାତୀୟ ମୁକ୍ତି ସଂଗ୍ରାମରେ ପ୍ରବଳ ପ୍ରେରଣା ଓ ଶକ୍ତି ଯୋଗାଇଲା । ୧୯୪୧ ମସିହାରେ ଭାରତର ପ୍ରସିଦ୍ଧ କବି ସରୋଜିନୀ ନାଇଡୁଙ୍କ ସାନଭାଇ ହରୀନ୍ଦ୍ରନାଥ ଚଟ୍ଟୋପାଧ୍ୟାୟ ଏହାକୁ ଇଂରାଜୀରେ ଅନୁବାଦ କଲେ । ଏହାର ଶୀର୍ଷକ ଥିଲା 'The Boatman Boy & other Poems' । ଏହାର ପାଣ୍ଡୁଲିପିକୁ ପୁସ୍ତକାକାରରେ ପ୍ରକାଶ କରିବାପାଇଁ ସଚ୍ଚିଦାନନ୍ଦ ଉଦ୍ୟମ କଲେ । ସେ କଲିକତା ଓ ଭାରତର କେତେକ ପ୍ରକାଶକଙ୍କୁ ଏହାକୁ ପ୍ରକାଶ କରିବାପାଇଁ ପତ୍ର ଲେଖିଲେ । କିନ୍ତୁ ସେଭଳି ବିପ୍ଳବୀ କବିତା ପ୍ରକାଶ କରିବାପାଇଁ କେହି ରାଜି ହେଲେ ନାହିଁ । ତାଙ୍କର ଜଣେ ବନ୍ଧୁ ତଥା ବଙ୍ଗଦେଶର ଅନ୍ୟତମ ଛାତ୍ରନେତା ବିଶ୍ୱନାଥ ମୁଖାର୍ଜୀଙ୍କୁ ସଚ୍ଚିଦାନନ୍ଦ ଏ ବିଷୟ ଥରେ ଓଡ଼ିଶାରେ କହିଥିଲେ । ସେ ମଧ୍ୟ ସାହାଯ୍ୟ କରିବେ ବୋଲି କହିଥିଲେ । ପରେ ସେ ପଶ୍ଚିମବଙ୍ଗ ବାମପନ୍ଥୀ ସାମ୍ମୁଖ୍ୟ ସରକାରରେ ଜଣେ ମନ୍ତ୍ରୀ ହେଲେ । ସେ ଦିନେ ପତ୍ରରେ ସଚ୍ଚିଦାନନ୍ଦଙ୍କୁ କଲିକତା ଯିବାକୁ କହିଲେ । ସଚ୍ଚିଦାନନ୍ଦ କଲିକତା ଗଲେ ଓ ସେଠାରେ ବିଶ୍ୱନାଥ ମୁଖାର୍ଜୀଙ୍କୁ ଭେଟିଲେ । କଲିକତାରେ ତାଙ୍କୁ ଏଥିପାଇଁ ଅପେକ୍ଷା କରିବାକୁ ପଡ଼ିଲା । ମାତ୍ର ମାସ ମାସ ଧରି ମେସ୍ ଖର୍ଚ୍ଚ ଦେଇ କଲିକତାରେ ରହିବା ତାଙ୍କ ପକ୍ଷେ ସମ୍ଭବପର ନ ଥିଲା । ସେ ତେଣୁ ଚାକିରି ଅନ୍ୱେଷଣରେ ରହିଲେ ।

ପୂର୍ବରୁ ସଚ୍ଚି ରାଉତରାୟଙ୍କ ବିଷୟରେ ବମ୍ବେର 'କାଇଜର୍-ଇ-ହିନ୍ଦ୍' ପତ୍ରିକାରେ ହରୀନ୍ଦ୍ରନାଥ ଚଟ୍ଟୋପାଧ୍ୟାୟଙ୍କର ଏକ ଇଂରାଜୀ ପ୍ରବନ୍ଧ ପ୍ରକାଶ ପାଇଥିଲା । ସେଥିରେ ସେ କବି ରାଉତରାୟଙ୍କ ବିପ୍ଳବାତ୍ମକ ମାର୍କ୍ସବାଦୀ କବିତାଗୁଡ଼ିକର ସମୀକ୍ଷା ଇଂରାଜୀରେ କରିଥିଲେ । ସଚ୍ଚିଦାନନ୍ଦ ଶିଳ୍ପପତି ଜି.ଡି. ବିରଳାଙ୍କୁ କୌଣସି ଶିଳ୍ପ ଅନୁଷ୍ଠାନରେ ଚାକିରିଦେବାପାଇଁ ଅନୁରୋଧ କଲେ । ଉତ୍ତରରେ ସେ କଲିକତା

ଗାର୍ଡେନ ରିଚ୍ ରୋଡ୍‌ରେ ବିରଳା ବ୍ରଦର୍ସ ଲିଃ. ପରିଚାଳିତ କେଶୋରାମ କଟନ୍ ମିଲ୍‌ର ଜେନେରାଲ ମ୍ୟାନେଜର ବ୍ରଜମୋହନ ବାପିଙ୍କୁ ଦେଖା କରିବାକୁ କହିଲେ । ବାପି ତାଙ୍କୁ କଟନ୍‌ମିଲ୍‌ର ଶ୍ରମମଙ୍ଗଳ ଅଫିସର ଭାବେ ନିଯୁକ୍ତି ଦେଲେ ।

### କେଶୋରାମ କଟନ୍ ମିଲ୍

କେଶୋରାମ୍ କଟନ୍ ମିଲ୍ ଗାର୍ଡେନ୍ ରିଚ୍ ରୋଡ୍, କଲିକତାରେ ଅବସ୍ଥିତ ଥିଲା । ଏହା ଭାରତର ଏକ ବୃହତ୍ତମ କଟନ୍ ମିଲ୍ ଥିଲା । ଏଥିରେ ପ୍ରାୟ ୧୨ ହଜାର ଶ୍ରମିକ କାର୍ଯ୍ୟ କରୁଥିଲେ । ସେମାନଙ୍କ ମଧ୍ୟରେ ଓଡ଼ିଆ ଶ୍ରମିକଙ୍କ ସଂଖ୍ୟା ୩୦୦୦ ଥିଲା ।

ସଚ୍ଚିବାବୁ ଶ୍ରମିକମାନଙ୍କର ମଙ୍ଗଳ ନିମନ୍ତେ ନିଯୁକ୍ତ ହୋଇଥିଲେ । ସେ ମିଲ୍‌ର ପ୍ରଶାସନ, ଡିପାର୍ଟମେଣ୍ଟ ମୁଖ୍ୟ ଏବଂ ଶ୍ରମିକମାନଙ୍କ ମଧ୍ୟରେ ଏକ ସେତୁ ପରି କାର୍ଯ୍ୟ କରୁଥିଲେ । ଶ୍ରମିକମାନଙ୍କପାଇଁ ବାସଗୃହ, ବିଦ୍ୟାଳୟ ପ୍ରଭୃତି ବ୍ୟବସ୍ଥା କରୁଥିଲେ । ଶ୍ରମିକମାନଙ୍କପାଇଁ ପ୍ରଥମେ ୟୁ.ପି. ସ୍କୁଲ୍ ଖୋଲାଗଲା । ପରେ ତାହା ଏମ୍.ଇ. ସ୍କୁଲରେ ପରିଣତ ହେଲା । କ୍ରମେ ଏହି ସ୍କୁଲ୍‌ଟିକୁ +୩ କଲେଜ ପର୍ଯ୍ୟନ୍ତ ବଢ଼ା ଯାଇଥିଲା । ଶ୍ରମିକମାନଙ୍କର ମାଟି ଘର ବଦଳରେ ବଡ଼ ବଡ଼ ଚାରି ତାଲା ବିଶିଷ୍ଟ କୋଠାଘର ନିର୍ମାଣ କରାଗଲା । ଶ୍ରମିକମାନଙ୍କ ପ୍ରତି କିଛି ଅନ୍ୟାୟ କରାଗଲେ ସଚ୍ଚିଦାନନ୍ଦ ବିଭାଗୀୟ ମୁଖ୍ୟମାନଙ୍କ ଦୃଷ୍ଟିକୁ ଆଣୁଥିଲେ । ଅନେକ ସମୟରେ ବିଭାଗୀୟ ଶୃଙ୍ଖଳା ନଷ୍ଟ କରୁଛନ୍ତି ବୋଲି ବିଭାଗୀୟ ମୁଖ୍ୟମାନେ ଜେନେରାଲ ମ୍ୟାନେଜରଙ୍କ ଆଗେ ଅଭିଯୋଗ କରୁଥିଲେ । ବେଳେ ବେଳେ କର୍ତ୍ତୃପକ୍ଷଙ୍କୁ ତାଙ୍କୁ କୈଫିୟତ ଦେବାକୁ ପଡୁଥିଲା । କେବେ କେବେ ବିଭାଗୀୟ ମୁଖ୍ୟମାନଙ୍କ ପକ୍ଷ ନେଇ କର୍ତ୍ତୃପକ୍ଷ ତାଙ୍କ ପ୍ରତି ବିରକ୍ତି ମଧ୍ୟ ପ୍ରକାଶ କରୁଥିଲେ । ଶ୍ରମିକମାନେ ସଚ୍ଚିଦାନନ୍ଦଙ୍କୁ ପ୍ରକୃତ ସହାୟକ ରୂପେ ଦେଖିବାକୁ ଲାଗିଲେ । ସେ ମଧ୍ୟ ବେଙ୍ଗଲ ସରକାରଙ୍କ ଲେବର କମିସନରଙ୍କ ସଙ୍ଗେ ଯୋଗାଯୋଗ ରଖିଥିଲେ । ଶ୍ରମିକମାନଙ୍କର ସମସ୍ୟା ନେଇ ସେମାନଙ୍କ ସହ ଆଲୋଚନା କରୁଥିଲେ । କେତେଥର ମଧ୍ୟ ଲେବର କମିସନରଙ୍କ ଅଫିସ୍ କର୍ମଚାରୀଙ୍କ ଦଳ ସହ ମିଲ୍‌ର ଶ୍ରମିକମାନଙ୍କ ଦଳର ଫୁଟ୍‌ବଲ୍ ମ୍ୟାଚ୍‌ର ଆୟୋଜନ କରୁଥିଲେ । ସେ ନିଜେ Left out ଭାବେ ମିଲ୍ ଟିମ୍ ପକ୍ଷରେ ଖେଳୁଥିଲେ । ଏହାଛଡ଼ା ସଚ୍ଚିବାବୁ ବଙ୍ଗଳା ଓ ଓଡ଼ିଶାର କେତେକ ମନ୍ତ୍ରୀଙ୍କୁ ମିଲ୍‌କୁ ନିମନ୍ତ୍ରଣ କରି ମିଲ୍‌ର ବିଭିନ୍ନ ସମସ୍ୟା ବିଷୟରେ ଅବଗତ କରାଉଥିଲେ ।

ମିଲ୍ ପରିସରରେ କେତେବର୍ଷ ପରେ ସଚ୍ଚିଦାନନ୍ଦଙ୍କ ଉଦ୍ୟମରେ ଜଗନ୍ନାଥ ମନ୍ଦିର ତୋଳା ହେଲା ।

କେଶୋରାମ୍ କଟନ୍ ମିଲ୍‌ରେ ଦୁର୍ଭିକ୍ଷ ପ୍ରପୀଡ଼ିତ ବୁଭୁକ୍ଷୁ ଲୋକଙ୍କପାଇଁ ଅନ୍ନଛତ୍ର ଖୋଲାଯାଇଥିଲା । ସଚ୍ଚିବାବୁ ଏହି ବ୍ୟବସ୍ଥାର ତଦାରଖ କରୁଥିଲେ ।

**ପାହ୍ୟାରେ ଉନ୍ନତି**

ବିଦେଶରୁ ଫେରିଲାପରେ ମିଲ୍‌ରେ ସଚ୍ଚିବାବୁଙ୍କ ପାହ୍ୟାରେ ଉନ୍ନତି କରାଗଲା । ଦଶ ବର୍ଷ ମୁଖ୍ୟ ଲେବର ଓ୍ୱେଲଫେୟାର ଅଫିସର ରୂପେ କାର୍ଯ୍ୟ କରିବାପରେ ତାଙ୍କୁ ଏକ୍‌ଜିକ୍ୟୁଟିଭ୍ ଅଫିସର କରାଗଲା । ତାଙ୍କ ଅଧୀନରେ ଲେବର ଓ୍ୱେଲ୍‌ଫେୟାର ବିଭାଗ ଓ ମୁଖ୍ୟ ପରିଚାଳନା ବିଭାଗ ରହିଲା । ପୂର୍ବପରି ଶ୍ରମିକମାନଙ୍କ ଭବିଷ୍ୟନିଧି ପାଣ୍ଠିର ସେକ୍ରେଟାରୀ ଓ ମିଲ୍ ସ୍କୁଲ୍‌ର ସେକ୍ରେଟାରୀ ମଧ୍ୟ ରହିଲେ ।

**ଚାକିରିରୁ ଇସ୍ତଫା**

୧୯୪୨ ମସିହାରେ ଦେଶରେ ଭାରତଛାଡ଼ ଆନ୍ଦୋଳନ ପ୍ରବଳ ଆକାର ଧାରଣ କଲା । ସଚ୍ଚିବାବୁ ସେଥିରେ ସକ୍ରିୟ ଅଂଶ ଗ୍ରହଣ କରିପାରି ନ ଥିଲେ । ତା'ର କାରଣ ପ୍ରାୟ ୩ ମାସ ହେଲା ସେ କେଶୋରାମ୍ କଟନ୍ ମିଲ୍‌ରେ ଯୋଗ ଦେଇଥିଲେ । ତେବେ ସ୍ୱାଧୀନତା ସଂଗ୍ରାମ ଉପଲକ୍ଷେ ମିଲ୍ ଉପରେ ଜାତୀୟ ପତାକା ଉଡ଼ାଇଥିଲେ । ସେ ପତାକା ବହୁ ଘଣ୍ଟା ରହିବା ପରେ ଶେଷରେ ପୁଲିସ୍ ଫୌଜ ଆସି ସେଗୁଡ଼ିକୁ କାଢ଼ିନେଲେ । ଶ୍ରମିକମାନଙ୍କ ମଧ୍ୟରୁ କେତେକଙ୍କୁ ଗିରଫ କରି ଥାନାକୁ ନେଲେ ।

ସଚ୍ଚିବାବୁ କେଶୋରାମ୍ କଟନ୍ ମିଲ୍‌ରେ ମୁଖ୍ୟ ଶ୍ରମମଙ୍ଗଳ ଅଫିସର ଭାବେ କାର୍ଯ୍ୟ କରୁଥିଲାବେଳେ ମଧ୍ୟ ବହୁ ଦେଶାତ୍ମବୋଧ କବିତା ରଚନା କରିବାକୁ ପଶ୍ଚାତ୍‌ପଦ ହୋଇ ନ ଥିଲେ । ତାଙ୍କ ଲିଖିତ ସେ ସମୟର କବିତାମାନ ହେଲା, 'ଆମେରୀ', 'ଜୟଦେବ', 'ବୋମାରୁ' ପ୍ରଭୃତି । ସେଗୁଡ଼ିକ ପତ୍ରପତ୍ରିକାମାନଙ୍କରେ ପ୍ରକାଶ ପାଇ ଅଭୂତପୂର୍ବ ଜାଗରଣ ସୃଷ୍ଟି କଲା । ବିଶେଷତଃ 'ବାଜିରାଉତ' କବିତାର ଇଂରାଜୀ ଅନୁବାଦ ୧୯୪୨ ମସିହା ସେପ୍ଟେମ୍ବର ମାସରେ ପ୍ରକାଶ ପାଇ ସ୍ୱାଧୀନତା ଆନ୍ଦୋଳନକୁ ପ୍ରଚୁର ପ୍ରେରଣା ଯୋଗାଇଲା । ଏହି ପୁସ୍ତକରେ ସନ୍ନିବିଷ୍ଟ କେତୋଟି କବିତା ସାପ୍ତାହିକୀ 'Bombay Chronicle'ରେ ପ୍ରକାଶ ପାଇ ସାମ୍ରାଜ୍ୟବାଦ ବିରୋଧରେ ସ୍ୱର ଉତ୍ତୋଳନ କଲା ।

ମିଲ୍‌ର ଆବହାଉଆ ମଧ୍ୟ ଉତ୍ତେଜନାପୂର୍ଣ୍ଣ ହୋଇପଡ଼ିଥିଲା । ଶ୍ରମିକ ୟୁନିୟନ ମଧ୍ୟରେ କମ୍ୟୁନିଷ୍ଟ ୟୁନିୟନଗୁଡ଼ିକ ହିଁ ଅଧିକ ଲଢୁଆ ଥିଲା । କମ୍ୟୁନିଷ୍ଟ ୟୁନିୟନରେ ଓଡ଼ିଆ ଶ୍ରମିକମାନେ ଅଧିକ ସଂଖ୍ୟାରେ ଯୋଗ ଦେଇଥିଲେ । ସେମାନଙ୍କ ସଂଖ୍ୟା ପ୍ରାୟ ଚାରି ହଜାର ଥିଲା । ଯେକୌଣସି ଆନ୍ଦୋଳନ ହେଲେ ଓଡ଼ିଆ ଶ୍ରମିକମାନେ ଆଗଭର ହୋଇ ବାହାରି ପଡୁଥିଲେ । ତେଣୁ ମିଲ୍ କର୍ତ୍ତୃପକ୍ଷ ଓଡ଼ିଆ ଶ୍ରମିକମାନଙ୍କ ପ୍ରତି ବିମୁଖ ଥିଲେ । ମିଲ୍‌ର ନୂଆ ଅଧିକାରୀମାନେ ବଡ଼ ବଡ଼ ଓଡ଼ିଆ

ହେଡ୍ ମିସ୍ତ୍ରିମାନଙ୍କୁ ଧୀରେ ଧୀରେ ହଟାଇବାକୁ ଲାଗିଲେ । ଓଡ଼ିଆ ମିସ୍ତ୍ରିଙ୍କୁ ମଧ୍ୟ ଠିକାଶ୍ରମିକ ଭାବେ ନିଯୁକ୍ତ କରାଗଲା । ସେମାନଙ୍କ ପ୍ରାପ୍ୟ ଦିଆଗଲା ନାହିଁ । ସେମାନେ ପ୍ରାପ୍ୟ ନେଇ ଆସିବାବେଳେ ଦିବାଲୋକରେ ହିନ୍ଦୁସ୍ଥାନୀ ଶ୍ରମିକମାନେ ଛଡ଼ାଇ ନେଉଥିଲେ । ବଡ଼ ମ୍ୟାନେଜରଙ୍କ ସହିତ ତାଙ୍କ ସମ୍ପର୍କ ଭଲ ରହିଲା ନାହିଁ ।

କ୍ରମଶଃ ମିଲ୍ କର୍ତ୍ତୃପକ୍ଷଙ୍କ ସହିତ ସଚ୍ଚିବାବୁଙ୍କର ମତାନ୍ତର ସୃଷ୍ଟି ହେଲା । ସେମାନେ ସଚ୍ଚିବାବୁଙ୍କୁ ମିଲ୍ ଚାକିରିରୁ ଇସ୍ତଫା ଦେବାପାଇଁ କହିଲେ । ସଚ୍ଚିବାବୁ ନିଜେ ବି.କେ. ବିରଲାଙ୍କୁ ଦେଖା କରି ଚାକିରିରୁ ଅବ୍ୟାହତି ନେଲେ ।

ସଚ୍ଚିବାବୁଙ୍କର ସେଥିପାଇଁ ଦୁଃଖ ବା କ୍ଷୋଭ ନ ଥିଲା ।

"ମୁଁ ଅଗଷ୍ଟ ବିପ୍ଳବ ବା ଆଜାଦ୍ ହିନ୍ଦ୍ ଅଭିଯାନକୁ ମୋ କାବ୍ୟକବିତାରେ ରୂପାୟିତ କରିବାରେ ପଶ୍ଚାତ୍‌ପଦ ହୋଇ ନାହିଁ । ଏହାହିଁ ଥିଲା ଜଣେ କବି ହିସାବରେ ମୋର ପ୍ରମୁଖ ମାର୍ଗ । ମୁଁ ସେଥିରୁ ବିଚ୍ୟୁତ ହୋଇ ନାହିଁ ।"

**ବିବାହ**

ସଚ୍ଚିବାବୁଙ୍କର ଆନ୍ଧ୍ରପ୍ରଦେଶର ନାରାୟଣ ଅପ୍ପାରାଓ ବାହାଦୁରଙ୍କ ସହିତ ୧୯୪୪ ମସିହାରେ ଜଣେ ଭଦ୍ରଲୋକଙ୍କ ଅଫିସରେ ଦେଖା ହୋଇଥିଲା । ଅପ୍ପାରାଓ କୃଷ୍ଣା ଜିଲ୍ଲା ଅନ୍ତର୍ଗତ ନୁଜଭିର ତାଲୁକର ଜଣାଶୁଣା ଜମିଦାର ଥିଲେ । ସେ ମଧ୍ୟ ବଡ଼ ସଂସ୍କୃତିସମ୍ପନ୍ନ ବ୍ୟକ୍ତି ଥିଲେ । ଚିହ୍ନା ପରିଚୟ ପରେ ସେ ନିଜର ଗୋଲାପଲ୍ଲୀ ଗୃହକୁ ଥରେ ଆସିବାପାଇଁ ସଚ୍ଚିବାବୁଙ୍କୁ ନିମନ୍ତ୍ରଣ କଲେ । ସଚ୍ଚିବାବୁ ମାଡ୍ରାସରୁ ଫେରିବା ବାଟରେ ତାଙ୍କ ଗୋଲାପଲ୍ଲୀ ପ୍ୟାଲେସରେ ଦୁଇ ଦିନ ଅତିଥି ହୋଇଥିଲେ । ସେହି ସମୟରେ ତାଙ୍କର ଭୂଦେବୀଙ୍କ ସହ ପରିଚୟ ହେଲା । ଭୂଦେବୀ ଅପ୍ପାରାଓଙ୍କର କନିଷ୍ଠା କନ୍ୟା ଥିଲେ ।

ବାହାଘରରେ ବରଯାତ୍ରୀ ରୂପେ ସଚ୍ଚିବାବୁଙ୍କର ପୋଷ୍ୟପିତା ସଦାନନ୍ଦ ରାଉତରାୟ, ମହନୀଅପା (ସୌଦାମିନୀ) ଓ ତାଙ୍କର ଦୁଇ ଝିଅ ସରୋଜିନୀ ଓ ଶର୍ମିଷ୍ଠା ଏବଂ ଦାଦାପୁଅ ବାସୁଦେବ (ପରେ ବ୍ରିଗେଡିଅର୍ ଓ ମିଲିଟାରୀ ଡାକ୍ତର) ଯାଇଥିଲେ । ବିବାହ ଗୋଲାପଲ୍ଲୀ ରାଜବାଟୀରେ ମହାସମାରୋହରେ ଅନୁଷ୍ଠିତ ହେଲା । ବିବାହ ପରେ ବାହାବେଦୀ ସାମ୍ନାରେ ଏକ କବି ସମ୍ମିଳନୀ ହୋଇଥିଲା । ସେଥିରେ ଆନ୍ଧ୍ରପ୍ରଦେଶର ବହୁ ବିଶିଷ୍ଟ କବି ଯୋଗ ଦେଇଥିଲେ ଓ ସ୍ୱରଚିତ କବିତାମାନ ପାଠ କରିଥିଲେ । ସେମାନଙ୍କ ମଧ୍ୟରେ ତେଲୁଗୁ ଛାୟାବାଦୀ କବିତାର ଅଗ୍ରଗଣ୍ୟ କୃଷ୍ଣ ଶାସ୍ତ୍ରୀ ଓ ନାରାୟଣବାବୁ ପ୍ରଭୃତି ଥିଲେ । ବିଖ୍ୟାତ ସଙ୍ଗୀତଶିଳ୍ପୀ ଅନସୂୟା ଓ ତାଙ୍କ ଭଉଣୀ ସୀତା ସଙ୍ଗୀତ ପରିବେଷଣ କରିଥିଲେ । ସଚ୍ଚିବାବୁଙ୍କ ବଡ଼ ଶଳା ଏମ୍.ଆର୍. ଅପ୍ପାରାଓ କବିମାନଙ୍କୁ ସମ୍ବର୍ଦ୍ଧନା ଦେଇଥିଲେ । ସେ ସଞ୍ଜୀବ ରେଡ୍ଡି ମନ୍ତ୍ରିମଣ୍ଡଳର କ୍ୟାବିନେଟ ମନ୍ତ୍ରୀ ହେଲେ ଓ ପରେ ଆନ୍ଧ୍ର ବିଶ୍ୱବିଦ୍ୟାଳୟର

କୁଳପତି ହୋଇଥିଲେ । ପୁଣି ସେ ପାର୍ଲିଆମେଣ୍ଟର ରାଜ୍ୟସଭା ସଭ୍ୟରୂପେ ମନୋନୀତ ହୋଇଥିଲେ ।

ପତ୍ନୀ ଭୂଦେବୀ ମାଡ୍ରାସର କନଭେଣ୍ଟ ସ୍କୁଲରେ ପଢୁଥିଲେ । ଗୋଲାପଲ୍ଲୀରେ ରହୁଥିଲାବେଳେ ଅବସରପ୍ରାପ୍ତ ଅଧ୍ୟକ୍ଷଙ୍କଠାରୁ ଶିକ୍ଷା ଲାଭ କରିଥିଲେ । ଇଂରାଜୀରେ କାବ୍ୟ ନାଟକ ଆଦି ତାଙ୍କଠାରୁ ଶିକ୍ଷା କରିଥିଲେ । ହିନ୍ଦୀରେ ମଧ୍ୟ 'ପରିଚୟ' ପାସ୍ କରିଥିଲେ । ବିବାହପରେ ସେ ଓଡ଼ିଆ ଶିଖିଲେ ଓ ଶୁଦ୍ଧ ଓଡ଼ିଆରେ କଥାବାର୍ତ୍ତା କଲେ ।

ବିବାହ ପରେ ସଚ୍ଚିବାବୁ ଓ ସ୍ତ୍ରୀ ଭୂଦେବୀ କଲିକତାରେ ରହିଲେ । ତାଙ୍କ ଶ୍ୱଶୁର ବରାବର ଚାକରାଣୀ ତାଙ୍କ ଘରକୁ ପଠାଉଥିଲେ । କବିଙ୍କ ପିଲାମାନେ ସେମାନଙ୍କଠାରୁ କିଛି ତେଲୁଗୁ ଶିଖିପାରିଥିଲେ ।

**ସାମ୍ପ୍ରଦାୟିକ ଦଙ୍ଗା**

୧୯୪୬ ମସିହା ଅଗଷ୍ଟ ମାସରେ ମାଟିଆବୁରୁଜରେ ସାମ୍ପ୍ରଦାୟିକ ଦଙ୍ଗା ହେଲା । କେଶୋରାମ କଟନ୍ ମିଲ୍‌ର ତିନି ପାଖରେ ମୁସଲମାନ ବସ୍ତି ଥିଲା । ମିଲ୍ ଲାଇନରେ ପ୍ରାୟ ୪-୫ ହଜାର ହିନ୍ଦୁ ଶ୍ରମିକ ୪-୫ଟି ବଡ଼ ବଡ଼ କୋଠାରେ ରହୁଥିଲେ । ବାହାରୁ ମଧ୍ୟ ବହୁ ହିନ୍ଦୁ ଶ୍ରମିକ ପଳାଇଆସି ସେଠାରେ ଆଶ୍ରୟ ନେଇଥିଲେ । ରାତିରେ ହଜାର ହଜାର ମୁସଲମାନ ଲାଇନ୍ ସେପଟେ 'ଆଲ୍ଲା ହୋ ଆକବର' ଧ୍ୱନି ଦେଲାବେଳେ ହିନ୍ଦୁ ଶ୍ରମିକମାନେ ଭୀତତ୍ରସ୍ତ ହୋଇପଡୁଥିଲେ । ବେଳେ ବେଳେ ସେମାନେ 'ଲଡ୍‌କେ ଲେଙ୍ଗେ ପାକିସ୍ଥାନ' ଧ୍ୱନି ମଧ୍ୟ ଦେଉଥିଲେ ।

ଦଙ୍ଗା ଲାଗିବାର ୩-୪ ଦିନ ବିତିଗଲେ ମଧ୍ୟ ବଙ୍ଗ ସରକାର ମାଟିଆବୁରୁଜକୁ କୌଣସି ପୁଲିସ ଫଉଜ ପଠାଇ ନ ଥିଲେ । ସଚ୍ଚିବାବୁ ଏହି ସମୟରେ ଓଡ଼ିଶାର ଭୂତପୂର୍ବ ପ୍ରଧାନମନ୍ତ୍ରୀ ଓ ପି. ସି. ସି. ସଭାପତି ବିଶ୍ୱନାଥ ଦାସଙ୍କୁ ଓଡ଼ିଆ ଶ୍ରମିକମାନଙ୍କର ଅବସ୍ଥା ବୁଝି ପ୍ରତିକାର କରିବାପାଇଁ ଟେଲିଗ୍ରାମ କଲେ । ସେ ଟେଲିଗ୍ରାମ ପାଇ ବିଶ୍ୱନାଥବାବୁ ସଙ୍ଗେ ସଙ୍ଗେ କଲିକତା ଆସିଲେ ଓ ମାଟିଆବୁରୁଜରେ ସଚ୍ଚିବାବୁଙ୍କର ଅତିଥି ହୋଇ ରହିଲେ ।

ସଚ୍ଚିବାବୁ ଓ ବିଶ୍ୱନାଥ ଦାସ ପରଦିନ ବଙ୍ଗର ପ୍ରଧାନମନ୍ତ୍ରୀ ସୁରାବର୍ଦ୍ଦିଙ୍କୁ ଭେଟି ମାଟିଆବୁରୁଜରେ ହୋଇଥିବା ଦଙ୍ଗା ବିଷୟରେ ସମସ୍ତ ତଥ୍ୟ ଦେଲେ । ଏ ସମସ୍ତ ବିଷୟ ଶୁଣି ସୁରାବର୍ଦ୍ଦି ପୁଲିସ ଓ ସୈନ୍ୟ ପ୍ରାୟ ୪-୫ ଗାଡ଼ି ପଠାଇବାକୁ ଟେଲିଫୋନ୍‌ରେ ନିର୍ଦ୍ଦେଶ ଦେଲେ । ପୋଲିସ ଓ ଫୌଜ ଆସିଲା ପରେ ଅବସ୍ଥା ଶାନ୍ତ ପଡ଼ିଲା ।

**ଗାନ୍ଧିଜୀଙ୍କ ସହ କେତୋଟି ଦିନ**

ଗାନ୍ଧିଜୀ ୧୯୪୭ ମସିହା ଅଗଷ୍ଟ ମାସରେ କଲିକତା ଆସିଲେ । ସେଠାରେ ଶାନ୍ତି ଓ ସୌହାର୍ଦ୍ଦ୍ୟର ବାତାବରଣ ସୃଷ୍ଟି କଲେ । ସେ ଚାରିଆଡ଼େ ସଭାସମିତି କରି

ଅହିଂସା ଓ ଶାନ୍ତିର ବାଣୀ ଶୁଣାଇଲେ । ପ୍ରତିଦିନ ଗାନ୍ଧିଜୀଙ୍କୁ ନେବା ଆଣିବାପାଇଁ ମିଲ୍‌ରୁ ଗାଡ଼ି ପଠାଯାଉଥିଲା । କେଶୋରାମ କଟନ୍ ମିଲ୍‌ର ଗୋଟିଏ ବଡ଼ କାଇଜର ଗାଡ଼ି ଥିଲା । ସଚ୍ଚିବାବୁ ପ୍ରତିଦିନ ଗାନ୍ଧିଜୀଙ୍କୁ ଗାଡ଼ିରେ ନେଇ ସଭାସ୍ଥଳୀକୁ ଯାଉଥିଲେ ଓ ସଭାପରେ ସେଠାରୁ ଆଣି ବେଲିଆଘଟା ବାସଭବନରେ ଛାଡୁଥିଲେ ।

ପ୍ରାୟ ଦଶ ବାର ଦିନ ସଚ୍ଚିବାବୁଙ୍କର ଗାନ୍ଧିଜୀଙ୍କ ସାନ୍ନିଧ ଲାଭ କରିବାର ସୌଭାଗ୍ୟ ହୋଇଥିଲା । ବାଟରେ ଗଲାବେଳେ ଗାନ୍ଧିଜୀ କଲିକତାର ଅବସ୍ଥା ବିଷୟରେ ବୁଝୁଥିଲେ । ସଚ୍ଚିବାବୁ ମଧ୍ୟ ଯଥାଯଥ ଉତ୍ତର ଦେଉଥିଲେ ।

ସଚ୍ଚିବାବୁ ମଧ୍ୟ 'ଗାନ୍ଧିଜୀ ଗହଣେ' ନାମକ ଏକ କବିତା ରଚନା କରିଥିଲେ । ତାହା ତାଙ୍କର 'ଅଭିଜ୍ଞାନ' ପୁସ୍ତକରେ ସ୍ଥାନିତ ହୋଇଛି ।

### ବିଦେଶ ଯାତ୍ରା

ପୃଥିବୀର ବିଭିନ୍ନ ଦେଶରେ ଅନୁଷ୍ଠିତ ସାହିତ୍ୟ, ସଂସ୍କୃତି ଓ ସମାଜ କଲ୍ୟାଣ ବିଷୟକ ସେମିନାର ଓ ସଭାସମିତିରେ ବକ୍ତୃତା ଦେବାର ସୁଯୋଗ ସଚ୍ଚିବାବୁଙ୍କୁ ମିଳିଥିଲା । ୧୯୫୨ ମସିହା ଜାନୁଆରୀ ମାସ ୮ ତାରିଖରେ ସେ କଲିକତାରୁ ବିମାନ ଯୋଗେ ଅଷ୍ଟ୍ରେଲିଆ ଯାତ୍ରା କରିଥିଲେ । ପ୍ରଥମେ ଥାଇଲ୍ୟାଣ୍ଡ ରାଜଧାନୀ ବ୍ୟାଙ୍କକ୍‌ରେ ୮ ଦିନ ରହିଥିଲେ । ବ୍ୟାଙ୍କକ୍ ଆର୍ଟ କଲେଜର ପ୍ରିନ୍‌ସିପାଲ ଓ ଛାତ୍ରଛାତ୍ରୀମାନେ ତାଙ୍କୁ ସମ୍ବର୍ଦ୍ଧନା ଦେଇଥିଲେ । ବ୍ୟାଙ୍କକ୍‌ରୁ ଅଷ୍ଟ୍ରେଲିଆର ମେଲବୋର୍ଣ୍ଣ ଗଲେ । ସେଠାରେ ଅନ୍ତର୍ରାଷ୍ଟ୍ରୀୟ ସମାଜମଙ୍ଗଳ ସେମିନାରରେ ଅଂଶ ଗ୍ରହଣ କଲେ । ସେଠାରେ ସେମିନାର ଦୁଇ ମାସ କାଳ ଚାଲିଲା । ଏହାପରେ ସିଡ୍‌ନୀରେ ୨ ଦିନ ରହି ନ୍ୟୁଜିଲ୍ୟାଣ୍ଡ ଗଲେ । ସେଠାରେ ମଧ୍ୟ ସମାଜମଙ୍ଗଳ ସେମିନାରରେ ଯୋଗ ଦେଲେ । ଫେରିଲାବେଳେ ଜାହାଜରେ ଆସିଲେ । ଜାହାଜ ଆସି କଲମ୍ବୋରେ ଲାଗିଲା । କଲମ୍ବୋ ନଗର ବୁଲି ଦେଖିଲେ । ଏହାପରେ ବମ୍ବେରେ ପହଞ୍ଚିଲେ । ଗୋଲାପଲ୍ଲୀ ଦେଇ ସେ କଲିକତା ଫେରି କାମରେ ଯୋଗ ଦେଲେ । କଟନ୍ ମିଲ୍‌ର ମଜଦୁରମାନେ ତାଙ୍କର ସଫଳ ବିଦେଶଯାତ୍ରା ଉପଲକ୍ଷେ ସଭା କରି ସମ୍ବର୍ଦ୍ଧିତ କରିଥିଲେ ।

### ସାଧାରଣ ନିର୍ବାଚନ

୧୯୫୨ ମସିହା ସାଧାରଣ ନିର୍ବାଚନରେ ସଚ୍ଚିବାବୁ କଂଗ୍ରେସପ୍ରାର୍ଥୀ ହେବାପାଇଁ ଆବେଦନ କଲେ । ମହତାବ ଓ ତାଙ୍କ ମଧ୍ୟରେ ଚିହ୍ନା ପରିଚୟ ଥିଲା । ମାତ୍ର ଖୋରଧାରୁ ତାଙ୍କୁ କଂଗ୍ରେସ ଟିକେଟ ମିଳିଲା ନାହିଁ । ରାଜନୀତିରେ କନିଷ୍ଠ ଥିବା ବନମାଳୀ ପଟ୍ଟନାୟକଙ୍କୁ କଂଗ୍ରେସ ଟିକେଟ ମିଳିଲା ।

### ରାଜ୍ୟସଭା ଆଶାୟୀ

ଏହାର ପ୍ରାୟ ୭-୮ ବର୍ଷ ପରେ ରାଜ୍ୟସଭାକୁ ପ୍ରାର୍ଥୀ କରିବାପାଇଁ ସଚ୍ଚିବାବୁ ମହତାବଙ୍କୁ ବାରମ୍ବାର ଅନୁରୋଧ କଲେ । ମାତ୍ର ତାଙ୍କୁ କଂଗ୍ରେସ ପ୍ରାର୍ଥୀ ରୂପେ

ବଛାଗଲା ନାହିଁ । ଶିଳ୍ପପତି ବିରଲାଙ୍କ ଶ୍ଵାଇଁ ଥିରାନୀ ବ୍ରଜରାଜନଗରରେ ଓରିଏଣ୍ଟ ପେପର ମିଲ୍‌ର ଉଚ୍ଚ ପଦାଧିକାରୀ ଥିଲେ । ସେ ଓଡ଼ିଶାର ଲୋକ ନ ଥିଲେ କି ଓଡ଼ିଶାରେ ରହୁ ନ ଥିଲେ । ତାଙ୍କୁ ରାଜ୍ୟସଭାକୁ ପଠାଗଲା ।

ସଚ୍ଚିବାବୁ ତାଙ୍କ ଆତ୍ମଜୀବନୀରେ ଖେଦୋକ୍ତି ପ୍ରକାଶ କରିଛନ୍ତି – ''ମୋତେ ରାଜନୀତିକ କ୍ଷେତ୍ରରେ କୌଣସି ସୁଯୋଗ ନ ଦେବାପାଇଁ ଓଡ଼ିଶାର କଂଗ୍ରେସ ନେତୃତ୍ଵ ଯେପରି ବଦ୍ଧପରିକର ଥିଲା ।''

୧୯୫୬ ମସିହାରେ ଡଃ ହରେକୃଷ୍ଣ ମହତାବ ପୁଣି ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ । ସଚ୍ଚିବାବୁ ତାଙ୍କୁ ଭେଟି ରାଜ୍ୟସଭାକୁ ପଠାଇବାପାଇଁ ପୁଣି ଅନୁରୋଧ କଲେ । ସେ ହଁ, ହଁ କରି କିଛି କଲେ ନାହିଁ । ଶେଷରେ ତାଙ୍କୁ ରାଷ୍ଟ୍ରପତିଙ୍କଦ୍ଵାରା ରାଜ୍ୟସଭାକୁ ମନୋନୀତ ହେବାପାଇଁ ସୁପାରିସ କରିବାକୁ ଓ ବ୍ୟକ୍ତିଗତଭାବେ ରାଜେନ୍ଦ୍ର ପ୍ରସାଦଙ୍କୁ ଟିକେ ଜୋର୍ ଦେଇ ଲେଖିବାକୁ ଅନୁରୋଧ କଲେ । ଡଃ ମହତାବ ସେଦିନ ଅସୁସ୍ଥ ଅଛନ୍ତି ବୋଲି ତାଙ୍କ ପି. ଏ. ରାମଚନ୍ଦ୍ରନ୍ କହିଲେ । ସବୁ କାଗଜପତ୍ର ଓ Bio Data ଦେଇଦେବାକୁ କହିଲେ । ସଚ୍ଚିବାବୁ ତାଙ୍କର ସବୁ କାଗଜପତ୍ର ବୁଝାଇ ଚାଲିଆସିଲେ । କିନ୍ତୁ ତାଙ୍କ ନାମ କେବଳ ନୁହେଁ, କାହାରି ନାମ ପଠାଗଲା ନାହିଁ ।

ସଚ୍ଚିବାବୁ ତାଙ୍କ ଆତ୍ମଜୀବନୀରେ ଦୁଃଖର ସହିତ ଲେଖିଛନ୍ତି – ''ମାତ୍ର ଆଜିପର୍ଯ୍ୟନ୍ତ ମୋତେ କିମ୍ବା ଓଡ଼ିଶାର ଅନ୍ୟ କାହାକୁ ରାଷ୍ଟ୍ରପତି ମନୋନୀତ କରି ନାହାନ୍ତି, ଅଥଚ ଅନ୍ୟ ପ୍ରଦେଶରୁ ବହୁ ମଧ୍ୟମ କାଟର ଲେଖକ ଓ କଳାକାର ରାଷ୍ଟ୍ରପତିଙ୍କଦ୍ଵାରା ମନୋନୀତ ହୋଇପାରିଛନ୍ତି ...।''

### ଆମେରିକା ଓ ୟୁରୋପରେ ଛଅ ମାସ

୧୯୫୫ ମସିହାରେ ସଚ୍ଚିବାବୁ ଆମେରିକାର ହାର୍ଭାର୍ଡ଼ ବିଶ୍ଵବିଦ୍ୟାଳୟରେ ଆନ୍ତର୍ଜାତିକ କଳା-ବିଜ୍ଞାନ ସେମିନାରରେ ଭାରତୀୟ ସାହିତ୍ୟର ପ୍ରତିନିଧି ହିସାବରେ ଯୋଗଦେବାପାଇଁ ନିମନ୍ତ୍ରଣ ପାଇଲେ । ପତ୍ରଟି ଲେଖିଥିଲେ ହାର୍ଭାର୍ଡ ବିଶ୍ଵବିଦ୍ୟାଳୟର ଇତିହାସ ବିଭାଗ ଆସୋସିଏଟ୍ ପ୍ରଫେସର ଡଃ ହେନେରୀ ଏ. କିସିଞ୍ଜର । ସେ ପରେ ଆମେରିକାର ସ୍ଵରାଷ୍ଟ୍ର ସଚିବ ହୋଇଥିଲେ । ସେ ମଧ୍ୟ ଭିଏଟ୍‌ନାମ ପ୍ରଧାନମନ୍ତ୍ରୀଙ୍କ ସହିତ ଶାନ୍ତିପାଇଁ ଯୁଗ୍ମ ଭାବରେ ନୋବେଲ ପୁରସ୍କାର ପାଇଥିଲେ ।

୧୯୫୫ ମସିହା ଜୁଲାଇ ୪ ତାରିଖରେ ଏହି ଆନ୍ତର୍ଜାତିକ ସେମିନାର ଆରମ୍ଭ ହେଲା । ସଚ୍ଚିବାବୁ ସେମିନାରକୁ ଉଦ୍‌ଘାଟନ କରିଥିଲେ ଓ ନାତିଦୀର୍ଘ ଭାଷଣ ଦେଇଥିଲେ । ସେମିନାରରେ ବିଭିନ୍ନ ଦେଶର ସାହିତ୍ୟ ସମ୍ପର୍କରେ ଆଲୋଚନା ହୋଇଥିଲା ଓ ସଚ୍ଚିବାବୁ ସେଥିରେ ଅଂଶ ଗ୍ରହଣ କରିଥିଲେ । ସେ ମଧ୍ୟ ବୋଷ୍ଟନ

ରେଡ଼ିଓ ଓ ଟି.ଭି.ରେ କବିତା ପାଠ କରିଥିଲେ । ଆମେରିକାରେ ପ୍ରାୟ ଚାରି ମାସ ରହିବା ମଧ୍ୟରେ ବହୁ ଆଧୁନିକ କବି, ସାହିତ୍ୟିକ ଓ ପ୍ରକାଶକମାନଙ୍କ ସହିତ ପରିଚିତ ହେବାର ସୁଯୋଗ ପାଇଥିଲେ ।

ନିୟୁୟର୍କରେ ମଧ୍ୟ କେତେକ କବି ଓ ସାହିତ୍ୟିକ ବନ୍ଧୁ ସଚ୍ଚିବାବୁଙ୍କୁ ଏକ ସଭାରେ ଭାଷଣ ଦେବାପାଇଁ ଡାକିଥିଲେ । ସେ ଆଧୁନିକ ଭାରତୀୟ ସାହିତ୍ୟ ଓ ସଂସ୍କୃତି ଉପରେ ଭାଷଣ ଦେଇଥିଲେ । ତାଙ୍କ ରଚିତ କବିତାର ଅଂଶବିଶେଷ ପଢ଼ି ତାଙ୍କର ବକ୍ତବ୍ୟ ପ୍ରତିପାଦନ କରିଥିଲେ । ଅନୁବାଦ ଉପରେ ମଧ୍ୟ ଗୁରୁତ୍ୱ ପ୍ରଦାନ କରିଥିଲେ । ବିଶ୍ୱର କାଳଜୟୀ ସାହିତ୍ୟକୃତିଗୁଡ଼ିକ ଆନ୍ତର୍ଜାତିକ ଭାଷାରେ ଅନୂଦିତ ହେଲେ ଆନ୍ତର୍ଜାତିକ ସଂହତି ବୃଦ୍ଧି ପାଇବ ବୋଲି ମତ ଦେଇଥିଲେ ।

**ଲଣ୍ଡନ ଯାତ୍ରା**

ଆମେରିକାରୁ କବି ଲଣ୍ଡନ ଗଲେ । ସେଠାରେ ଏକ ଦେଢ଼ମାସିଆ କାର୍ଯ୍ୟକ୍ରମର ବ୍ୟବସ୍ଥା ହୋଇଥିଲା । ସଚ୍ଚିବାବୁ ବ୍ରିଟିଶ୍ ମିଉଜିୟମ୍ ବୁଲି ଦେଖିଲେ । ମାଞ୍ଚେଷ୍ଟରରେ ପ୍ରବାସୀ ଭାରତୀୟମାନଙ୍କ ସଭାରେ ଯୋଗ ଦେଇଥିଲେ । ସମ୍ମାନିତ ଅତିଥିରୂପେ ସେ ତାଙ୍କ ଭାଷଣରେ କହିଲେ ଯେ ଭାରତୀୟ ସଂସ୍କୃତିର ଆକର୍ଷଣୀୟ ନମୁନାମାନ ବିଲାତରେ ପ୍ରଦର୍ଶିତ ହେବା ଆବଶ୍ୟକ । ପ୍ରବାସୀ ଭାରତୀୟମାନେ ମଧ୍ୟ ନିଜର କାର୍ଯ୍ୟକଳାପ ଓ ବ୍ୟବହାରରେ ଉଚ୍ଚମାନ ରଖିବା ଉପରେ ଗୁରୁତ୍ୱ ଦେଇଥିଲେ । ସେ ସେକ୍ସପିୟରଙ୍କ ଜନ୍ମସ୍ଥାନ ଷ୍ଟାଟ୍‌ଫୋର୍ଡ଼-ଅପ୍‌ଅନ୍ ଏଭନ୍ ପରିଦର୍ଶନ କରିଥିଲେ । କେମ୍ବ୍ରିଜ ଓ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟ ମଧ୍ୟ ବୁଲି ଦେଖିଥିଲେ ।

ଏହାପରେ ରୋମରେ ଦୁଇ ସପ୍ତାହ, ପ୍ୟାରିସ୍‌ରେ ଦୁଇ ସପ୍ତାହ, ଜେନେଭାରେ ଏକ ମାସ ରହି ସଚ୍ଚିବାବୁ ଭାରତ ଫେରିଲେ ।

**ନିର୍ବାଚନରେ ଅଂଶଗ୍ରହଣ**

୧୯୬୧ ମସିହା ବେଳକୁ ଓଡ଼ିଶାରେ କଂଗ୍ରେସ ନେତୃତ୍ୱରେ ପରିବର୍ତ୍ତନ ହେଲା । ବିଜୁ ପଟ୍ଟନାୟକ କଂଗ୍ରେସର ନେତୃତ୍ୱ ଗ୍ରହଣ କଲେ । ତାଙ୍କର ପ୍ରଧାନ ସହକାରୀ ଥିଲେ ବୀରେନ୍ ମିତ୍ର ଓ ନୀଳମଣି ରାଉତରାୟ । ଏ ଦୁହେଁ ରେଭେନ୍‌ସା କଲେଜ ଛାତ୍ର ଆନ୍ଦୋଳନରେ ସଚ୍ଚିବାବୁଙ୍କ ପ୍ରଧାନ ସହଯୋଗୀ ଥିଲେ । ବିଜୁ ପଟ୍ଟନାୟକଙ୍କ ସଙ୍ଗେ ସଚ୍ଚିବାବୁଙ୍କର ବହୁବାର ସାକ୍ଷାତ୍ ଓ ଆଳାପ ଆଲୋଚନା କଲିକତାରେ ହୋଇଥିଲା । ତାଙ୍କ ନେତୃତ୍ୱରେ ଓଡ଼ିଶାରେ ସାଧାରଣ ନିର୍ବାଚନ ହେଲା । ସଚ୍ଚିବାବୁ ଖୋରଧାରୁ କଂଗ୍ରେସ ପ୍ରାର୍ଥୀରୂପେ ନିର୍ବାଚନ ଲଢ଼ିବାକୁ ଚାହିଁଲେ । ଖୋରଧା ତାଙ୍କର ଜନ୍ମସ୍ଥାନ ଥିଲା । ବାଲ୍ୟକାଳ ଖୋରଧାରେ କଟିଥିବାରୁ ଖୋରଧାବାସୀଙ୍କର ସମର୍ଥନ ପାଇବେ ବୋଲି କହିଥିଲେ । ମାତ୍ର କଂଗ୍ରେସ କର୍ତ୍ତୃପକ୍ଷ ଖୋରଧାରୁ ବନମାଳୀ ପଟ୍ଟନାୟକଙ୍କୁ ଟିକେଟ ଦେବାର ପ୍ରତିଶ୍ରୁତି ଦେଇଥିଲେ । ସେ ସେଠାର

ପୁରୁଣା ଏମ୍.ଏଲ୍.ଏ. ଥିବାରୁ ତାଙ୍କର ଦାବି ଅଧିକ ହେଲା । ସେ ଜଣେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ବ୍ୟକ୍ତି ହୋଇଥିବାରୁ ଖୋରଧା ବା ବାଣପୁର ସବୁ ତାଙ୍କପାଇଁ ସମାନ ହେବ ବୋଲି ବୀରେନ୍‌ବାବୁ ଯୁକ୍ତି କରିଥିଲେ ।

ମାତ୍ର ସଚ୍ଚିବାବୁଙ୍କୁ ବାଣପୁର ନିର୍ବାଚନମଣ୍ଡଳୀ ଆଦୌ ସୁବିଧାଜନକ ନ ଥିଲା । ବାଣପୁରର ମୁଷ୍ଟିମେୟ ଶିକ୍ଷିତ ଲୋକେ ତାଙ୍କୁ ଜାଣିଥିଲେ ବା ତାଙ୍କ ସାହିତ୍ୟ ପଢ଼ିଥିଲେ । ବାଣପୁରର ଗାଁ-ଗହଳର ଲୋକେ ତାଙ୍କୁ ନ ଜାଣିବା ସ୍ୱାଭାବିକ । କଂଗ୍ରେସ କର୍ମୀମାନେ ବାଣପୁର ନିର୍ବାଚନ ମଣ୍ଡଳୀରୁ ଜଣେ ବାଣପୁରବାସୀଙ୍କୁ ପ୍ରାର୍ଥୀ କରିବାକୁ ଚାହୁଁଥିଲେ । ଏପରିକି ହାଇସ୍କୁଲ ସହପାଠୀ ନୃସିଂହଚରଣ ସାମନ୍ତସିଂହାର ତାଙ୍କ ପ୍ରାର୍ଥୀତ୍ୱର ଘୋର ବିରୋଧ କଲେ ।

ସେ ଯାହାହେଉ, ଶେଷରେ ଦିଲ୍ଲୀ କର୍ତ୍ତୃପକ୍ଷ ସଚ୍ଚିବାବୁଙ୍କୁ ବାଣପୁରରୁ କଂଗ୍ରେସ ଟିକେଟ ଦେବାକୁ ନିଷ୍ପତ୍ତି କଲେ । ମାତ୍ର ନିର୍ବାଚନରେ କର୍ମୀମାନେ ତାଙ୍କୁ ଆଦୌ ସହଯୋଗ କଲେ ନାହିଁ । କେତେଜଣ ଜଣାଶୁଣା କର୍ମୀଙ୍କ ଛଡ଼ା ସମସ୍ତ କର୍ମୀ ଉଦାସୀନ ରହିଲେ । ସେମାନଙ୍କ ମଧ୍ୟରୁ କେତେକ ବିପକ୍ଷ ପ୍ରାର୍ଥୀଙ୍କୁ ମଧ୍ୟ ସାହାଯ୍ୟ କଲେ । କଥାକାର ସୁରେନ୍ଦ୍ର ମହାନ୍ତି ଓ ମନମୋହନ ମିଶ୍ର ଅବଶ୍ୟ ଦୁଇ ତିନିଟି ସଭାରେ ସଚ୍ଚିବାବୁଙ୍କପାଇଁ ପ୍ରଚାର କଲେ । ମାତ୍ର କୌଣସି ସର୍ବଭାରତୀୟ ସ୍ତରର ନେତା ତାଙ୍କ ନିର୍ବାଚନ ମଣ୍ଡଳୀକୁ ଆସି ନ ଥିଲେ । କେବଳ ପଣ୍ଡିତ ନେହରୁ ଏକ ବାର୍ତ୍ତା ପଠାଇ ନିର୍ବାଚନରେ ସଚ୍ଚିବାବୁଙ୍କୁ ସମର୍ଥନ କରିବାପାଇଁ ଭୋଟରମାନଙ୍କୁ ଅନୁରୋଧ କରିଥିଲେ । ଜଣେ କମ୍ୟୁନିଷ୍ଟ ପ୍ରାର୍ଥୀ ଶ୍ରୀଚରଣ ବରାଳ ମଧ୍ୟ ମଝିରେ ଠିଆ ହୋଇ ତାଙ୍କ ଭୋଟଗୁଡ଼ିକୁ ବିଭକ୍ତ କଲେ । ସଚ୍ଚିବାବୁଙ୍କର ମୁଖ୍ୟ ପ୍ରତିଦ୍ୱନ୍ଦ୍ୱୀ ଥିଲେ ପଣ୍ଡିତ ରଘୁନାଥ ମିଶ୍ର । ସେ ଖ୍ୟାତନାମା ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କର ଜ୍ୟେଷ୍ଠପୁତ୍ର ଥିଲେ । ସେ ଗଣତନ୍ତ୍ର ପରିଷଦ ପକ୍ଷରୁ ପ୍ରାର୍ଥୀ ଥିଲେ । ସେ ପୂର୍ବରୁ ମଧ୍ୟ ବାଣପୁର ବିଧାୟକ ଭାବେ ନିର୍ବାଚିତ ହୋଇଥିଲେ । ତାଙ୍କର ସେ ଅଞ୍ଚଳରେ ବିଶେଷ ପ୍ରଭାବ ଥିଲା । ପ୍ରଚାର କାର୍ଯ୍ୟରେ ତାଙ୍କର ଗାଡ଼ିର ଅଭାବ ଥିଲା । ଫଳରେ ଅଧିକାଂଶ ଗ୍ରାମକୁ ଯାଇପାରିଲେ ନାହିଁ । ଫଳରେ ସଚ୍ଚିବାବୁ ନିର୍ବାଚନରେ ହାରିଗଲେ । ବିଜୟୀ ପ୍ରାର୍ଥୀ ରଘୁନାଥ ମିଶ୍ର ଚାରି ହଜାର ଛଅ ଶହ ଭୋଟ ପାଇଥିବାବେଳେ ସଚ୍ଚିବାବୁ ତିନି ହଜାର ସାତ ଶହ ଭୋଟ ପାଇଥିଲେ ।

**ପଦ୍ମଶ୍ରୀ ସମ୍ମାନ**

୧୯୬୨ ମସିହା ଜାନୁଆରୀ ୨୬ ତାରିଖରେ ସଚ୍ଚିବାବୁଙ୍କୁ ରାଷ୍ଟ୍ରୀୟ ସମ୍ମାନ 'ପଦ୍ମଶ୍ରୀ' ମିଳିଲା । ସ୍ୱରାଷ୍ଟ୍ରମନ୍ତ୍ରୀ ଲାଲବାହାଦୁର ଶାସ୍ତ୍ରୀ ଏକ ଟେଲିଗ୍ରାମ କରି ତାଙ୍କୁ ଅଭିନନ୍ଦନ ଜଣାଇଥିଲେ । ଫିଲ୍ମ ଅଭିନେତା ଅଶୋକ କୁମାରଙ୍କୁ ମଧ୍ୟ ସେହି ବର୍ଷ 'ପଦ୍ମଶ୍ରୀ' ଦିଆଯାଇଥିଲା ।

## ୟୁଗୋସ୍ଲୋଭିଆ ପ୍ରଦର୍ଶନୀ

ୟୁଗୋସ୍ଲୋଭିଆ ରାଷ୍ଟ୍ରଦୂତଙ୍କ ଅନୁରୋଧକ୍ରମେ ସଚ୍ଚିବାବୁ ଏକ ପ୍ରଦର୍ଶନୀ ଭବାନୀପୁରର ଆଶୁତୋଷ କଲେଜରେ ଆୟୋଜନ କରିଥିଲେ । ଏଥିରେ ୟୁଗୋସ୍ଲୋଭିଆରୁ ଆସିଥିବା ଫଟୋଚିତ୍ରଗୁଡ଼ିକ ପ୍ରଦର୍ଶିତ ହୋଇଥିଲା । ଏହାର ଦାୟିତ୍ୱ ବାନ୍ଧବୀ ନୀତା ନେଇଥିଲେ ।

## ଓଡ଼ିଶା ବୋର୍ଡ଼ ମିଲ୍ସ ଲିଃ

କେଶୋରାମ୍ କଟନ୍ ମିଲ୍‌ରେ ପ୍ରାୟ କୋଡ଼ିଏ ବର୍ଷ ଧରି କାମ କଲାପରେ ସଚ୍ଚିବାବୁ ଓଡ଼ିଶା ଫେରିଆସିଲେ । ଦୁଇ ତିନି ବର୍ଷ ତଳେ ଆରମ୍ଭ କରିଥିବା ଇଣ୍ଡଷ୍ଟ୍ରିଆଲ ଇଷ୍ଟେଟ୍‌ରେ ଓଡ଼ିଶା ବୋର୍ଡ଼ ମିଲ୍ ଲିମିଟେଡ୍‌କୁ ଚଳାଇଲେ ।

ଏହି ମିଲ୍‌ରେ ସଚ୍ଚିବାବୁ ଓ ତାଙ୍କ ପତ୍ନୀ ଭୂଦେବୀ ଦଶ ହଜାର ଲେଖାଏଁ କୋଡ଼ିଏ ହଜାର ଟଙ୍କା ମୂଲ୍ୟର ଅଂଶଧନ କିଣିଥିଲେ । ପରେ ଆର୍ଥିକ ସଙ୍କଟ ଦୂର କରିବାପାଇଁ ଉଭୟେ କୋଡ଼ିଏ ହଜାର ଟଙ୍କାର ଅଂଶଧନ କିଣିଲେ । ପୁଣି ଦଶ ହଜାର ଟଙ୍କା ଲୋନ୍ ଆକାରରେ ଦେଲେ । ନିଜେ ସଚ୍ଚିବାବୁ ମିଲ୍‌ର ମ୍ୟାନେଜିଙ୍ଗ ଡାଇରେକ୍ଟର ଭାବେ କାର୍ଯ୍ୟ କଲେ । ଏହି ମିଲ୍‌ର ଯନ୍ତ୍ରପାତି କଲିକତାର ଇଷ୍ଟର୍ଣ୍ଣ ପେପର ମିଲ୍ସ ଲିମିଟେଡ୍‌ରୁ କିଣାଯାଇଥିଲା । Dryer ଟି ପଶ୍ଚିମ ଜର୍ମାନୀରୁ ଅଣାଯାଇଥିଲା । ଏହି ମିଲ୍‌କୁ ଷ୍ଟେଟବ୍ୟାଙ୍କ ଓ ରାଜ୍ୟ ଅର୍ଥ ନିଗମ ପ୍ରାୟ ଛଅ ଲକ୍ଷ ଟଙ୍କା ଋଣ ଦେଇଥିଲେ । ଓଡ଼ିଶା ସରକାର ଦୁଇ ଲକ୍ଷ ଟଙ୍କାର ଅଂଶଧନ କିଣିଥିଲେ । ପ୍ରାୟ ଦଶ ଲକ୍ଷ ଟଙ୍କା ଏଥିରେ ଖଟାଯାଇଥିଲା ।

ଓଡ଼ିଶା ବୋର୍ଡ ମିଲ୍ସ କ୍ରମେ ଉତ୍ପାଦନ ଆରମ୍ଭ କଲା । ଏହି ମିଲ୍‌ରେ ପ୍ରସ୍ତୁତ ନଡ଼ା ସମଗ୍ର ଭାରତରେ ସୁନାମ ଅର୍ଜନ କଲା । ନଡ଼ାରୁ ବୋର୍ଡ଼ ତିଆରି କରିବାରେ ଏହା ଓଡ଼ିଶାରେ ପ୍ରଥମ ଥିଲା । ଏ ମିଲ୍‌ର ଉତ୍ପାଦିତ ନଡ଼ାବୋର୍ଡ଼ ଦିଲ୍ଲୀ, କଲିକତା, ଅହମ୍ମଦାବାଦ, କାନପୁର, ମାଡ୍ରାସ ପ୍ରଭୃତି ସ୍ଥାନରେ ଭଲ ବିକ୍ରି ବି ହେଲା । ଏହାର ଚାହିଦା ଦିନକୁ ଦିନ ବଢ଼ିବାରେ ଲାଗିଲା ।

ମାତ୍ର ମିଲ୍‌ର ଦୁର୍ଦ୍ଦିନ ମାଡ଼ି ଆସିଲା । ପାଟଣା ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ ଓ ଜନକଂଗ୍ରେସ ମିଶି ଓଡ଼ିଶାରେ ମିଳିତ ମନ୍ତ୍ରିମଣ୍ଡଳ ଗଢ଼ିଥିଲେ । ସଚ୍ଚିବାବୁ ଗଡ଼ଜାତ ପ୍ରଜା ଆନ୍ଦୋଳନର ନେତୃତ୍ୱ ନେଇଥିଲେ । ତାଙ୍କର କବିତା 'ବାଜିରାଉତ' ଭାରତର ସ୍ୱାଧୀନତା ଆନ୍ଦୋଳନକୁ ପ୍ରେରଣା ଯୋଗାଇଥିଲା । ଗଡ଼ଜାତ ରାଜା-ମହାରାଜାମାନେ ଶାସନ କ୍ଷମତାକୁ ଆସିଲାପରେ ପ୍ରତିଶୋଧପରାୟଣ ହୋଇଉଠିଲେ । ସାରା ଭାରତରେ ସାମନ୍ତବାଦୀ ଶାସକ ଓ ଶାସନର ବିକଟରୂପ ଦେଖାଇଥିବାରୁ ତା'ର ପରିଣାମ ସଚ୍ଚିବାବୁଙ୍କୁ ଭୋଗ

କରିବାକୁ ପଡ଼ିଲା । ସେମାନେ ସଚ୍ଚିବାବୁଙ୍କ ପ୍ରତିଷ୍ଠିତ ଓଡ଼ିଶା ବୋର୍ଡ ମିଲ୍‌କୁ ଅଚଳ କରିଦେଲେ । ଖଟାଇଥିବା ପ୍ରାୟ ପଚାଶ ହଜାର ଟଙ୍କାର ମୂଳଧନ ଗଲା । ସଚ୍ଚିବାବୁ ପ୍ରାୟ ନିଃସ୍ୱ ହୋଇପଡ଼ିଲେ ।

**ଦ୍ୱିତୀୟବାର ଆମେରିକା ଯାତ୍ରା**

୧୯୬୨ ମସିହାରେ ଆମେରିକାର 'Study Mission International of America' ପକ୍ଷରୁ ସଚ୍ଚିବାବୁ ପ୍ରାୟ ଦେଢ଼ମାସପାଇଁ ବକ୍ତୃତା ଦେବାପାଇଁ ଆମନ୍ତ୍ରଣ ପାଇଲେ । ଭାରତର ଆଉ ୮-୯ ଜଣ ସାମ୍ବାଦିକ ଓ ଲେଖକ ମଧ୍ୟ ଆମନ୍ତ୍ରିତ ହୋଇଥିଲେ ।

ପ୍ରଥମେ ୱାସିଂଟନ୍‌ରେ 'ୱାସିଂଟନ ପୋଷ୍ଟ' ଓ ଅନ୍ୟାନ୍ୟ ସ୍ଥାନୀୟ ସମ୍ବାଦପତ୍ରମାନଙ୍କଦ୍ୱାରା ଆୟୋଜିତ ଏକ ସଭାରେ ସଚ୍ଚିବାବୁ ଚୀନ-ଭାରତ ସମ୍ପର୍କରେ କହିଥିଲେ । କ୍ୟାପିଟାଲ ବା ସଂସଦଗୃହ, ଆଲିଗେଟନ୍ ନ୍ୟାସନାଲ ସିମେଟ୍ରି, ନ୍ୟାସନାଲ ଆର୍ଟ ଗ୍ୟାଲେରୀ, ଲିଙ୍କନ ମେମୋରିଆଲ, ୟୁଲିୟମସ୍ୱବର୍ଗ ପ୍ରଭୃତି ପରିଦର୍ଶନ କଲେ । ଏହାପରେ ଆଇଓ୍ୱା ନଗର, ଚିକାଗୋ, ଫୋନିକ୍ସ, ସାନଫ୍ରାନ୍‌ସିସ୍‌କୋ, କାଲିଫର୍ଣ୍ଣିଆ, ମିନିଆପୋଲିସ ମିନିସେଟ, ନ୍ୟୁୟର୍କ ନଗର ପ୍ରଭୃତି ପରିଦର୍ଶନ କଲେ । ଏହାପରେ କମନୱେଲ୍‌ଥ ସରକାରଙ୍କ ଅତିଥିରୂପେ ଇଂଲଣ୍ଡରେ ଦଶ ଦିନ ରହିଲେ । ସେଠାରେ ଆଧୁନିକ କବିତାର ଅଗ୍ରପୂଜ୍ୟ ଟି.ଏସ୍.ଏଲିଏଟ୍‌ଙ୍କୁ ଭେଟି ତାଙ୍କ ସହିତ ଅଧଘଣ୍ଟା ଆଲୋଚନା କରିଥିଲେ ।

**ଦିଗନ୍ତ ଲେଖକ କର୍ମଶାଳା**

'ଦିଗନ୍ତ ଲେଖକ କର୍ମଶାଳା' କବି ସଚ୍ଚିବାବୁଙ୍କର ଏକ ଅଭିନବ ଉଦ୍ୟମ ଥିଲା । ବହୁ ଲେଖକ ଲେଖିକା ଏଥିରେ ଯୋଗ ଦେଉଥିଲେ । ସେମାନେ ସ୍ୱରଚିତ କବିତା ବା କ୍ଷୁଦ୍ର ଗଳ୍ପ ପାଠ କରୁଥିଲେ । ଆଲୋଚନାରେ ମଧ୍ୟ ଅଂଶ ଗ୍ରହଣ କରୁଥିଲେ । ପ୍ରବୀଣ ସମାଲୋଚକମାନେ ଏହାର ସମୀକ୍ଷା କରୁଥିଲେ । ଯେଉଁ ଲେଖକମାନେ ଯୋଗ ଦେଇଥିଲେ, ସେମାନଙ୍କ ମଧ୍ୟରେ ଥିଲେ ଡଃ ହରେକୃଷ୍ଣ ମହତାବ, କାଳିନ୍ଦୀଚରଣ ପାଣିଗ୍ରାହୀ, କାଳୀଚରଣ ପଟ୍ଟନାୟକ, ବୈକୁଣ୍ଠନାଥ ପଟ୍ଟନାୟକ, ପଦ୍ମାଳୟା ଦାସ ପ୍ରଭୃତି ।

ଆଇଓ୍ୱା ବିଶ୍ୱବିଦ୍ୟାଳୟ ଇଣ୍ଟରନ୍ୟାସନାଲ ରାଇଟିଙ୍ଗ ପ୍ରୋଗ୍ରାମର ପ୍ରତିଷ୍ଠାତା କବି ପଲ୍‌ଇଙ୍ଗଲ ଭାରତ ଗସ୍ତରେ ଆସିଥିଲାବେଳେ କର୍ମଶାଳାର ଏକ ବିଶେଷ ଅଧିବେଶନରେ ଯୋଗ ଦେଇଥିଲେ । ସେ ଆଇଓ୍ୱାରେ ଏକ ଆନ୍ତର୍ଜାତିକ କର୍ମଶାଳା ପ୍ରତିଷ୍ଠା କରିବାର ପ୍ରେରଣା ଏଠାରୁ ପାଇଥିଲେ ବୋଲି କବିଙ୍କୁ ଜଣାଇଥିଲେ ।

'ଦିଗନ୍ତ ଲେଖକ କର୍ମଶାଳା' ଓଡ଼ିଶାରେ ଉଧେଇପାରିଲା ନାହିଁ । ଲେଖକ ଖେଦ ପ୍ରକାଶ କରିଛନ୍ତି - ''ଏହା ମୋ ଜୀବନର ବହୁ ବିଡ଼ମ୍ବନା ମଧ୍ୟରୁ ଅନ୍ୟତମ ।''

**ବାଙ୍ଗ୍‌ଲାଦେଶ ପରିଦର୍ଶନ**

ସଚ୍ଚିବାବୁ ୧୯୭୨ ମସିହା ଡିସେମ୍ବର ମାସ ଶେଷ ସପ୍ତାହରେ ମୈମନସିଂ (ବାଙ୍ଗ୍‌ଲାଦେଶ) କୃଷି ବିଶ୍ୱବିଦ୍ୟାଳୟର ବାର୍ଷିକ ଉତ୍ସବରେ ମୁଖ୍ୟ ଅତିଥିରୂପେ ଯୋଗ ଦେଇଥିଲେ । ଉତ୍ସବରେ ସେ ବଙ୍ଗଳା ଭାଷାରେ ଭାଷଣ ଦେଇଥିଲେ । ବାଙ୍ଗଲାଦେଶର ମୁକ୍ତି ସଂଗ୍ରାମରେ ତାଙ୍କର ଭୂମିକା ବିଷୟରେ ସୂଚନା ଦେଇ ଭାରତ ଓ ବାଙ୍ଗ୍‌ଲାଦେଶ ମଧ୍ୟରେ ସହୃଦୟତା ସମ୍ପର୍କ ଗଢ଼ିଉଠିବା ଅପରିହାର୍ଯ୍ୟ ବୋଲି ସେ ମତ ପ୍ରକାଶ କରିଥିଲେ । ଦୁଇ ଦେଶ ମଧ୍ୟରେ ସାଂସ୍କୃତିକ ସମ୍ପର୍କ ଓ ଭାବଗତ ଆଦାନପ୍ରଦାନ ଦୃଢ଼ କରିବାପାଇଁ ଆହ୍ୱାନ ଦେଇଥିଲେ ।

ସମ୍ମିଳନୀରେ କବିଙ୍କ 'ରୋସନାରା' କବିତାର ବଙ୍ଗଳା ଅନୁବାଦ ବିଶ୍ୱବିଦ୍ୟାଳୟ ବଙ୍ଗଳା ଅଧ୍ୟାପକ ଅବଦୁଲ ରହମାନ ଆବୃତ୍ତି କରିଥିଲେ ।

ମୈମନସିଂଠାରେ ଥିବାବେଳେ ସାରା ବାଙ୍ଗ୍‌ଲାଦେଶ ଛାତ୍ର ସମ୍ମିଳନୀ ଆରମ୍ଭ ହେଲା । ସଚ୍ଚିବାବୁ ପ୍ରଧାନ ଅତିଥିରୂପେ ସେଠାରେ ବଙ୍ଗଳାରେ ଭାଷଣ ଦେଇଥିଲେ । ଛାତ୍ରମାନଙ୍କ ମଧ୍ୟରେ ଐକ୍ୟ ପ୍ରତିଷ୍ଠା ଦିଗରେ କବି ଗୁରୁତ୍ୱ ପ୍ରଦାନ କରିଥିଲେ । ଦେଶର ସ୍ୱାଧୀନତାକୁ ବଜାୟ ରଖିବାପାଇଁ ଦୃଢ଼ ସଂକଳ୍ପ ଜାତ ହେବା ଆବଶ୍ୟକ ବୋଲି କହିଥିଲେ ।

ସଚ୍ଚିବାବୁ ମୈମନସିଂରୁ ଢାକା ଗଲେ । ସେ ବାଙ୍ଗଲାଦେଶର ତୁଙ୍ଗ ନେତା ମୁଜିବୁର ରହେମାନଙ୍କୁ ସାକ୍ଷାତ୍ କରିଥିଲେ । ତାଙ୍କର ଦୁଇଟି ଓଡ଼ିଆ କବିତା 'ରୋସନାରା' ଓ 'ମୁଜିବୁର ରହମାନ'ର ବଙ୍ଗଳା ଅନୁବାଦ ଅଧ୍ୟାପକ ରହମାନ ପଢ଼ି ଶୁଣାଇଥିଲେ । କବିଙ୍କୁ ମଧ୍ୟ ମୁଜିବୁର ରହମାନ ଚା' ଜଳଖିଆ ଦେଇ ଆପ୍ୟାୟିତ କରିଥିଲେ । ଭାରତ ବାଙ୍ଗଲାଦେଶ ଅଧିବାସୀଙ୍କୁ ଯଥେଷ୍ଟ ସାହାଯ୍ୟ ଦେଇଥିବାରୁ ସେ ହାର୍ଦ୍ଦିକ କୃତଜ୍ଞତା ପ୍ରକାଶ କରିଥିଲେ ।

**କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର**

ସଚ୍ଚି ରାଉତରାୟ କବିତା ସଙ୍କଳନ (କବିତା-୧୯୬୨) ପାଇଁ ୧୯୬୨ ମସିହାରେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇଲେ । ୧୯୬୪ ମସିହାରେ ଉପରାଷ୍ଟ୍ରପତି ଡଃ ଜାକୀର ହୁସେନ୍ ଏହି ପୁରସ୍କାର ପ୍ରଦାନ କରିଥିଲେ । ଏହାର କବିତାମାନଙ୍କରେ ଚିତ୍ରକଳ୍ପ, ପ୍ରତୀକ, ତଥା ମିଥ୍ ଆଦିର ସଫଳ ପ୍ରୟୋଗ ହୋଇଛି ବୋଲି ଆଲୋଚକମାନେ ମତ ଦେଇଥିଲେ ।

ସଚ୍ଚିବାବୁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇବାରେ ଓଡ଼ିଶାର ପ୍ରଥମ କବି ଥିଲେ । ପୂର୍ବରୁ କେତେଜଣ ବିଶିଷ୍ଟ ଓଡ଼ିଆ ଲେଖକ ଅବଶ୍ୟ ଗଦ୍ୟରଚନାପାଇଁ ଏହି ପୁରସ୍କାର ପାଇଥିଲେ ; ମାତ୍ର କବିତାପାଇଁ କେହି ପାଇ ନ ଥିଲେ । ଏଥିପାଇଁ କଟକର ଶ୍ରୀରାମଚନ୍ଦ୍ର ଭବନରେ ଏକ ମନୋଜ୍ଞ ସମ୍ବର୍ଦ୍ଧନା ସଭାର ଆୟୋଜନ ହେଲା । କେତେକ ଲେଖକବନ୍ଧୁଙ୍କ ମତରେ ଏହା ସ୍ୱୟଂ-ସମ୍ବର୍ଦ୍ଧନା ଥିଲା । କବିଙ୍କୁ ବିରୋଧ ଓ ବିଦ୍ରୂପ କରିବା ସେମାନଙ୍କର ଲକ୍ଷ୍ୟ ଥିଲା ।

## ଅମୃତବଜାର ପ୍ରତିକାର ସ୍ତମ୍ଭଲେଖା

୧୯୭୨ ମସିହାରେ କଲିକତାରୁ ପ୍ରକାଶିତ ଇଂରାଜୀ ଦୈନିକ ଅମୃତ ବଜାର ପତ୍ରିକାରେ ସଚ୍ଚିବାବୁଙ୍କ ଲେଖା 'In and Around Odisha' ପ୍ରତି ରବିବାର ସଂଖ୍ୟାରେ ପ୍ରକାଶ ପାଇଲା । ଏହା ପ୍ରାୟ ଏକ ବର୍ଷ ପର୍ଯ୍ୟନ୍ତ ଚାଲିଲା । ଲେଖକ ଏଥିରେ ସାମ୍ପ୍ରତିକ ରାଜନୀତିକ ଓ ସାମାଜିକ ସ୍ଥିତି ଉପରେ ଲେଖୁଥିଲେ ଓ ଏହା ଓଡ଼ିଶା ତଥା ବଙ୍ଗଳାରେ ବିଶେଷ ଆଦୃତ ହୋଇଥିଲା ।

## ଦିଗନ୍ତ ପତ୍ରିକା ପ୍ରକାଶନ

ଓଡ଼ିଶାରୁ 'ଦିଗନ୍ତ' ପତ୍ରିକା ପ୍ରକାଶ ପାଉଥିଲା । ଏହାର ପୂର୍ବତନ ସମ୍ପାଦକ ଥିଲେ ମନୋଜ ଦାସ । ସେ ପଣ୍ଡିଚେରୀ ଚାଲିଯିବାପରେ ଏହାର ପ୍ରକାଶନ ବନ୍ଦ ହୋଇଯାଇଥିଲା । କେତେଜଣ ବନ୍ଧୁଙ୍କ ଅନୁରୋଧକ୍ରମେ ସଚ୍ଚିବାବୁ 'ଦିଗନ୍ତ' ପତ୍ରିକାର ସମ୍ପାଦନା ଦାୟିତ୍ୱ ଗ୍ରହଣ କଲେ ଓ ଏହାକୁ ଏକ ତ୍ରୈମାସିକ ପତ୍ରିକା ରୂପେ ପ୍ରକାଶ କଲେ । ଏହା ଏକ ରୁଚିକର ସଂଭ୍ରାନ୍ତ ପତ୍ରିକା ରୂପେ ବିବେଚିତ ହେଲା । ଏହାର ପ୍ରଥମ ସଂଖ୍ୟା ୧୯୬୫ ମସିହା ଶେଷ ଭାଗରେ ପ୍ରକାଶ ପାଇଲା । ଏଥିରେ ଉଚ୍ଚକୋଟୀର ପ୍ରବନ୍ଧ, ଗଳ୍ପ, ସମାଲୋଚନା ଓ କବିତାମାନ ପ୍ରକାଶ ପାଇଥିଲା । ଗାଳ୍ପିକ କିଶୋରୀ ଚରଣ ଦାସ, ପ୍ରହରାଜ ସତ୍ୟନାରାୟଣ ନନ୍ଦ ଓ ପ୍ରାଧ୍ୟାପକ ବିନୋଦ ବିହାରୀ ପଣ୍ଡା ପ୍ରଭୃତିଙ୍କ ଲେଖାମାନ ଏଥିରେ ବାହାରୁଥିଲା ।

'ଦିଗନ୍ତ' ପତ୍ରିକାରେ ଅପ୍ରକାଶିତ 'ଅମର ପୋଥି' ନାମକ ଏକ ବିଭାଗ ରଖାଗଲା । ଏଥିରେ ବହୁ ଅମୂଲ୍ୟ ଅପ୍ରକାଶିତ ପୋଥି ଧାରାବାହିକ ରୂପେ ପ୍ରକାଶ ପାଇଲା । ଉପେନ୍ଦ୍ର ଭଞ୍ଜଙ୍କ ପ୍ରଣୀତ 'ଷୋଳପୋଇ' ଓ 'ତ୍ରୈଲୋକ୍ୟମୋହିନୀ', କବିସୂର୍ଯ୍ୟ ବଳଦେବ ରଥଙ୍କ ରଚିତ 'ହାସ୍ୟକଲ୍ଲୋଳ' ପ୍ରଭୃତି ଅପ୍ରକାଶିତ ଗ୍ରନ୍ଥମାନ ପ୍ରକାଶ ପାଇଲା । ଅତିବଡ଼ୀ ଜଗନ୍ନାଥ ଦାସଙ୍କ ଅପ୍ରକାଶିତ କାବ୍ୟ 'ଉଷାହରଣ' ମଧ୍ୟ ଧାରାବାହିକ ଭାବେ ଏଥିରେ ପ୍ରକାଶିତ ହୋଇଥିଲା । ଡଃ ସତ୍ୟନାରାୟଣ ରାଜଗୁରୁଙ୍କ 'ସିଂହଳରେ ପ୍ରାଚୀନ ଉଡ୍ରଭାଷା' ନାମକ ଏକ ପ୍ରବନ୍ଧରେ ବହୁ ନୂତନ ଐତିହାସିକ ତଥ୍ୟ ପ୍ରଦାନ କରାଯାଇଥିଲା । ଅନ୍ୟ ଏକ ପ୍ରବନ୍ଧରେ ଡଃ ରାଜଗୁରୁ ପୂର୍ବବଙ୍ଗରେ କଳିଙ୍ଗ ରାଜବଂଶୀୟମାନେ ରାଜତ୍ୱ କରିଥିବା କଥା ବର୍ଣ୍ଣିତ ।

ଆଧୁନିକ ଚିତ୍ରକଳ୍ପ ସମ୍ବନ୍ଧରେ ମଧ୍ୟ ବହୁ ପ୍ରବନ୍ଧ ପ୍ରକାଶ ପାଇଥିଲା । ପଞ୍ଚସଖାଙ୍କ ଉପରେ ମଧ୍ୟ ଆଲୋକପାତ କରାଯାଇଥିଲା । କିନ୍ତୁ 'ଦିଗନ୍ତ' ଓଡ଼ିଶାରେ ବଞ୍ଚିପାରିଲା ନାହିଁ । ବିଜ୍ଞାପନଦାତାମାନେ ପ୍ରାୟ ଉଦାସୀନ ରହିଥିଲେ । ପତ୍ରିକା ଏଜେଣ୍ଟମାନେ ମଧ୍ୟ ବିକ୍ରୟଲବ୍ଧ ଅର୍ଥ ପ୍ରାୟ ପଠାଇ ନ ଥିଲେ ।

**ଦିଗନ୍ତ ମ୍ୟୁଜିୟମ୍ ଓ ଗବେଷଣା କେନ୍ଦ୍ର ସ୍ଥାପନା**

ସଚ୍ଚିବାବୁ କଟକରେ 'ଦିଗନ୍ତ' ମ୍ୟୁଜିୟମ ସ୍ଥାପନ କଲେ । ପୋଥିପତ୍ର ସଂଗୃହୀତ ହେଲା । ପୋଥିଚିତ୍ର ମଧ୍ୟରେ ଉପେନ୍ଦ୍ର ଭଞ୍ଜଙ୍କ 'ଲାବଣ୍ୟବତୀ' କାବ୍ୟଟି ଅତି ଉଚ୍ଚକୋଟୀର ପୋଥିଚିତ୍ର ଥିଲା । ୧୯୭୦ ମସିହା ଅକ୍ଟୋବର ମାସ ୫ ତାରିଖରେ କଟକର ଶ୍ରୀରାମଚନ୍ଦ୍ର ଭବନରେ ପ୍ରାଚୀନ ଚିତ୍ରପୋଥି ପ୍ରଦର୍ଶନୀ ଆୟୋଜିତ ହୋଇଥିଲା । କେନ୍ଦ୍ର ସାହିତ୍ୟ ଏକାଡେମୀର ସଭାପତି ଡଃ ସୁନୀତିକୁମାର ଚାଟାର୍ଜୀ ଏହି ସଭାରେ ମୁଖ୍ୟ ଅତିଥି ରୂପେ ଯୋଗ ଦେଇଥିଲେ ।

ଓଡ଼ିଶା ସରକାର ଏହି ଦିଗନ୍ତ ମ୍ୟୁଜିୟମକୁ କିଣିବାକୁ ସ୍ଥିର କରି ସଚ୍ଚିବାବୁଙ୍କୁ ଜଣାଇଲେ । ଏକ ମୂଲ୍ୟନିର୍ଦ୍ଧାରଣ କମିଟି ମଧ୍ୟ ଗଠିତ ହେଲା । ମାତ୍ର ସରକାର ଯେଉଁ ମୂଲ୍ୟ ଦେବାକୁ ପ୍ରସ୍ତାବ ଦେଲେ, ତାହା ସଚ୍ଚିବାବୁଙ୍କ ଗ୍ରହଣଯୋଗ୍ୟ ହୋଇ ନ ଥିଲା । ତେଣୁ ସରକାରଙ୍କ ମ୍ୟୁଜିୟମ କିଣିବା ଉଦ୍ୟମ ସଫଳ ହୋଇ ନ ଥିଲା ।

**ଆନ୍ଧ୍ର ବିଶ୍ୱବିଦ୍ୟାଳୟରୁ ସମ୍ମାନସୂଚକ ଡି.ଲିଟ୍ ଡିଗ୍ରୀ**

୧୯୭୨ ମସିହାରେ ଆନ୍ଧ୍ର ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ସଚ୍ଚିବାବୁଙ୍କୁ ସମ୍ମାନସୂଚକ ଡକ୍ଟରେଟ୍ ଡିଗ୍ରୀ ବା ଡି.ଲିଟ୍ ଡିଗ୍ରୀ ପ୍ରଦାନ କଲେ । ମାନପତ୍ରରେ ସଚ୍ଚିବାବୁଙ୍କୁ ବାସ୍ତବରେ ଭାରତର ସାଂସ୍କୃତିକ ଦୂତ ବୋଲି ଉଲ୍ଲେଖ କରାଯାଇଥିଲା ।

୧୯୭୮ ମସିହାରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଦଶମ ବାର୍ଷିକ ସମାବର୍ତ୍ତନ ଉତ୍ସବରେ ସଚ୍ଚିବାବୁଙ୍କୁ ସମ୍ମାନସୂଚକ ଡି.ଲିଟ୍ ଡିଗ୍ରୀ ପ୍ରଦାନ କଲେ ।

**ସମ୍ବଲପୁର ବିଶ୍ୱବିଦ୍ୟାଳୟ ସମ୍ମାନ**

୧୯୮୩ ମସିହା ଜାନୁଆରୀ ୩ ତାରିଖରେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ସଚ୍ଚିବାବୁଙ୍କୁ 'ଭରତଚନ୍ଦ୍ର ନାୟକ' ସ୍ମୃତି ପୁରସ୍କାର ପ୍ରଦାନ କଲେ । ଏଥିସହିତ ଏକ ପ୍ରଶସ୍ତିପତ୍ର ଏବଂ ୩୦୦୦ଟଙ୍କା ପ୍ରଦାନ କରିଥିଲେ ।

ପ୍ରଶସ୍ତିପତ୍ରିକାରେ ଲେଖାଥିଲା –

''ଆଧୁନିକ ଓଡ଼ିଆ ସାହିତ୍ୟକୁ ଆପଣ ଯେଉଁ ଶକ୍ତି ଓ ସୌନ୍ଦର୍ଯ୍ୟ ପ୍ରଦାନ କରିଛନ୍ତି, ତାହା ବସ୍ତୁତଃ ନାନାଭାବରେ ସ୍ୱୀକୃତ – ଯେଉଁଥିପାଇଁ ଆପଣଙ୍କୁ ଯଥାର୍ଥରେ ଆଧୁନିକତାର ପ୍ରବର୍ତ୍ତକ ବୋଲି ବର୍ଣ୍ଣନା କରାଯାଇଛି ।''

''ଓଡ଼ିଶାର ଜଣେ ବିଶିଷ୍ଟ ଯୁଗପ୍ରବର୍ତ୍ତକ କବି, ଜଣେ ପ୍ରତିଷ୍ଠିତ ଗାଳ୍ପିକ, ଔପନ୍ୟାସିକ ତଥା ଜଣେ ବଳିଷ୍ଠ ସାହିତ୍ୟ ସମାଲୋଚକ ଭାବେ ଆପଣଙ୍କ ବହୁମୁଖୀ ପ୍ରତିଭା ସମସ୍ତଙ୍କୁ ପ୍ରଲୁବ୍ଧ କରିଛି ।''

**ଓଡ଼ିଶା ସାହିତ୍ୟ ଏକାଡେମୀ ସଭାପତି**

୧୯୭୮ ମସିହା ଜୁଲାଇ ମାସ ୨୪ ତାରିଖରେ ସଚ୍ଚିବାବୁ ଓଡ଼ିଶା ସାହିତ୍ୟ ଏକାଡେମୀ ସଭାପତି ଭାବେ ମନୋନୀତ ହେଲେ । ଏକାଡେମୀର ସମ୍ପାଦକ ଥିଲେ ମନୋରଞ୍ଜନ ଦାସ । ପରିଷଦର ସଭ୍ୟ ସଂଖ୍ୟା ଥିଲା ୨୯ ।

'ଓଡ଼ିଶାର ଲେଖକ, କଳାକାର ଓ କ୍ରୀଡ଼ାବିତ୍‌ମାନଙ୍କୁ ମାସିକ ୨୦୦ ଟଙ୍କାରୁ ୫୦୦ ଟଙ୍କା ପର୍ଯ୍ୟନ୍ତ ପେନସନ୍ ବା ଭତ୍ତା ଦେବାକୁ ସଚ୍ଚିବାବୁ ପରିଷଦର ପ୍ରଥମ ବୈଠକରେ ପ୍ରସ୍ତାବ ଆଣିଲେ । ଏହି ପ୍ରସ୍ତାବ ଗୃହୀତ ହେଲା – ଯଦିଓ ଏଭଳି ସାଧୁ ଉଦ୍ୟମର ବିରୋଧ ବହୁ ପ୍ରତିଷ୍ଠିତ କବି ଓ କଥାକାର କରିଥିଲେ । ଏହାଛଡ଼ା କେତେକ ଅତି ଉପାଦେୟ ପୁସ୍ତକ କଥା 'ଶତାବ୍ଦୀର ଶ୍ରେଷ୍ଠ କବିତା', 'ଶତାବ୍ଦୀର ଶ୍ରେଷ୍ଠ ଗଳ୍ପ' ପ୍ରଭୃତି ସେ ସଭାପତି ଥିବା ସମୟରେ ଏକାଡେମୀ ପ୍ରକାଶ କରିଥିଲା । ଏହି ପେନସନ୍ ମଧ୍ୟ ପରେ ଦୁଃସ୍ଥ ଅଭିନେତା, ନୃତ୍ୟଶିଳ୍ପୀ, ଅଭିନେତ୍ରୀ, ଦେବଦାସୀ, ସ୍ଥପତି ପ୍ରଭୃତିଙ୍କୁ ମିଳିଲା ।

**ରୁଷ ଯାତ୍ରା**

ରୁଷର ବିଖ୍ୟାତ କବି ପୁଷ୍କିନ୍‌ଙ୍କ ଗ୍ରାମରେ ପ୍ରତିବର୍ଷ ପୁଷ୍କିନ୍ ମେଳା ଅନୁଷ୍ଠିତ ହୋଇଥାଏ । ସେଥିରେ ସମଗ୍ର ରୁଷର ବିଭିନ୍ନ ସ୍ଥାନରୁ ଆସିଥିବା କବିଙ୍କ ସହିତ ପୃଥିବୀର ବିଭିନ୍ନ ଦେଶର କବିମାନେ ସ୍ୱରଚିତ କବିତାମାନ ପାଠ କରିଥାନ୍ତି ।

ଭାରତ ସରକାର ଓ ସୋଭିଏତ୍ ରୁଷ ଲେଖକ ସଂଘଙ୍କ ମିଳିତ କାର୍ଯ୍ୟକ୍ରମ ଅନୁଯାୟୀ ସଚ୍ଚିବାବୁ ରୁଷ ଯିବାପାଇଁ ଆମନ୍ତ୍ରିତ ହେଲେ । ସୋଭିଏତ୍ ରୁଷ ଯିବାପାଇଁ ଓ ସେଠାରେ ସାଂସ୍କୃତିକ କାର୍ଯ୍ୟକ୍ରମରେ ପ୍ରତ୍ୟକ୍ଷଭାବେ ଯୋଗ ଦେବାପାଇଁ ତରୁଣ ବୟସରୁ କବି ଆଗ୍ରହୀ ଥିଲେ । ତେଣୁ ରୁଷରେ ତିନି ସପ୍ତାହ ରହି ମହାକବି ପୁଷ୍କିନଙ୍କ ଜନ୍ମବାର୍ଷିକୀରେ ଯୋଗ ଦେବାକୁ ଅମୂଲ୍ୟ ସୁଯୋଗ ମନେ କରିବା ସ୍ୱାଭାବିକ ।

୧୯୭୯ ମସିହା ମେ ମାସ ୨୩ ତାରିଖରେ ସଚ୍ଚିବାବୁ ଦିଲ୍ଲୀ ପାଲାମ୍ ଏୟାର୍ ପୋର୍ଟରୁ ରୁଷ ଅଭିମୁଖେ ଯାତ୍ରା କଲେ । ମେ ମାସ ୨୬ ତାରିଖରେ ଭାରତୀୟ ଦୂତାବାସରେ ଲେଖକମାନଙ୍କୁ ସମ୍ବର୍ଦ୍ଧନା ଦିଆଗଲା । କବି ସମ୍ମିଳନୀରେ ଭାରତୀୟ ଲେଖକ-ଲେଖିକାମାନେ ସ୍ୱରଚିତ କବିତା ପାଠ କଲେ । ସଚ୍ଚିବାବୁ ଇଂରାଜୀରେ ଅନୂଦିତ 'ବାଜିରାଉତ' କବିତାର ପ୍ରାୟ ଗୋଟିଏ ପୃଷ୍ଠା ଆବୃତ୍ତି କଲେ । ତାହା ଶ୍ରୋତୃମଣ୍ଡଳୀଙ୍କଦ୍ୱାରା ଉଚ୍ଚ ପ୍ରଶଂସିତ ହେଲା । ଭାରତୀୟ ରାଷ୍ଟ୍ରଦୂତ ଇନ୍ଦ୍ରକୁମାର ଗୁଜରାଲ ଓ ତାଙ୍କ ପତ୍ନୀ ତାଙ୍କ କବିତାର ତାରିଫ୍ କରିଥିଲେ ।

ସଚ୍ଚିବାବୁ ମସ୍କୋସ୍ଥିତ ପୁଷ୍କିନ ପାର୍କ ଓ ପୁଷ୍କିନ୍‌ଙ୍କର ବାସଗୃହ ପରିଦର୍ଶନ କରିଲେ । ପୁଷ୍କିନ୍ ମ୍ୟୁଜିୟମ ମଧ୍ୟ ଦେଖିବାକୁ ଯାଇଥିଲେ । ଲେଲିନଗ୍ରାଦ୍‌ରେ ପୁଷ୍କିନ୍ ଥିଏଟର ପ୍ରେକ୍ଷାଳୟରେ ପୁଷ୍କିନଙ୍କ ଜୀବନ ଉପରେ ଆଧାରିତ ଏକ ନାଟକ ମଧ୍ୟ ଦେଖିଥିଲେ ।

ସଚ୍ଚିବାବୁ ଏହାପରେ ମଧ୍ୟ ସ୍କଭ୍ ସହର ପରିଭ୍ରମଣରେ ଗଲେ । ସେଠାରେ ଲେନିନ୍ ସଂଗ୍ରହାଳୟ, କ୍ରେମଲିନ ଦୁର୍ଗ, ଏକ ପ୍ରାଚୀନ ଚର୍ଚ୍ଚ, କଳା ସଂଗ୍ରହାଳୟ ପ୍ରଭୃତି ସ୍ଥାନ ବୁଲି ଦେଖିଥିଲେ । ଏହି ଅଞ୍ଚଳ କବି ପୁଷ୍କିନଙ୍କ ପୈତୃକ ଭୂମିର ଅଂଶବିଶେଷ ଥିଲା । ସେହି ସହରରେ ସଚ୍ଚିବାବୁଙ୍କ ସମେତ ସମାଗତ ଲେଖକମାନଙ୍କୁ ଏକ ନାଗରିକ ସମ୍ବର୍ଦ୍ଧନା ଦିଆଯାଇଥିଲା । ଏହାପରେ କବି ପୁଷ୍କିନ୍‌ଙ୍କର ଜନ୍ମ ଗ୍ରାମ ମିଖାଇଲୋଭସ୍କାୟା ଯାଇଥିଲେ । ସେଠାରେ ପୁଷ୍କିନ୍‌ଙ୍କ ବାସଭବନ ପରିଦର୍ଶନ କରିଥିଲେ । ସେଠାର ଶାନ୍ତ ସରଳ ପରିବେଶ କବିଙ୍କୁ ମୁଗ୍ଧ କରିଥିଲା ।

ତା' ପରଦିନ ମିଖାଇଲୋଭସ୍କାୟାରେ ପୁଷ୍କିନ୍ ମେଳା ଆରମ୍ଭ ହେଲା । ଦେଶ ବିଦେଶର ବହୁ ଲେଖକ ଲେଖିକା, କବି ଏହି ମେଳାରେ ଯୋଗ ଦେଇଥିଲେ । ସେଠାରେ ସଚ୍ଚିବାବୁ ଦୁଇଟି କବିତା ପାଠ କରିଥିଲେ । ଗୋଟିଏ ଥିଲା 'The Boat Man Boy And Forty Poems' ର କିଛି ଅଂଶ । ଅନ୍ୟ କବିତାର ନାମ ଥିଲା 'ସାହଜାହାନ' । ଇଂରାଜୀ କବିତା ଦୁଇଟି କବି ନିଜେ ପାଠ କରିଥିଲେ । ଏହାର ରୁଷୀୟ ଭାଷାନ୍ତର କରିଥିଲେ ନାରୀକବି ଭାଲେନ୍‌ଟିନା । ଏହା ଶ୍ରୋତାମାନଙ୍କଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଥିଲା ।

କବି ଏହାପରେ ମସ୍କୋ ଗଲେ । ସେଠା ବିଶ୍ୱବିଦ୍ୟାଳୟରେ ପୋଥିଚିତ୍ର ଓ ପଟ୍ଟଚିତ୍ରର ଏକ ପ୍ରଦର୍ଶନୀ ବୁଲି ଦେଖିଥିଲେ । ରୁଷର କବି ମାୟାକୋଭସ୍କିଙ୍କ ବାସଗୃହ ମଧ୍ୟ ବୁଲି ଦେଖିଲେ । ସେଠାରୁ ୟାସନାୟା ପଲିୟାନା ଯାଇ ଟଲଷ୍ଟୟଙ୍କ ବାସଗୃହ ଓ ଜନ୍ମସ୍ଥାନ ବୁଲି ଦେଖିଲେ । ଲିଓ ଟଲଷ୍ଟୟଙ୍କ ଉପରେ ଗୋଟିଏ କବିତା ମଧ୍ୟ ଲେଖିଥିଲେ । ମସ୍କୋରେ ବଲଶୋଇ ଥିଏଟରରେ ଆନାକାରେନିନା ଅଭିନୟ ଦେଖିଥିଲେ ।

ମସ୍କୋ ରେଡ଼ିଓର ଆମନ୍ତ୍ରଣକ୍ରମେ ମସ୍କୋ ରେଡ଼ିଓରେ ରୁଷ ଅଭିଜ୍ଞତା ସମ୍ପର୍କରେ କବି ଭାଷଣ ଦେଇଥିଲେ ।

**ଚେକୋସ୍ଲୋଭାକିଆ ଗସ୍ତ**

ମସ୍କୋରୁ ବିମାନ ଯୋଗେ ସଚ୍ଚିବାବୁ ଚେକୋସ୍ଲୋଭାକିଆ ଗଲେ । ସେ ୧୧.୬.୭୯ରେ ରାଜଧାନୀ ପ୍ରାଗ୍‌ରେ ପହଞ୍ଚିଲେ । ପ୍ରାଗ୍ ହେଉଛି ୟୁରୋପର ସର୍ବାପେକ୍ଷା ସୁନ୍ଦର ଓ ଶୋଭନ ନଗରୀ । ପ୍ରାଗ୍‌ର ଚାର୍ଲସ ବିଶ୍ୱବିଦ୍ୟାଳୟ ଅତି ପୁରାତନ ବିଶ୍ୱବିଦ୍ୟାଳୟ । ୧୩୪୮ ମସିହାରେ ଏହା ସ୍ଥାପିତ ହୋଇଥିଲା । ଏହି ବିଶ୍ୱବିଦ୍ୟାଳୟରେ

କବି ଭାରତୀୟ କଳା ଓ ସଂସ୍କୃତି ସମ୍ବନ୍ଧରେ ଭାଷଣ ଦେଇଥିଲେ । ପ୍ରାଗ୍‌ରେ ନାସିର ଅହମ୍ମଦ ନାମକ ଜଣେ ପାକିସ୍ଥାନୀ ଲେଖକଙ୍କ ସଙ୍ଗେ କବିଙ୍କ ସାକ୍ଷାତ୍ ହୋଇଥିଲା । ସେ ସଚ୍ଚିବାବୁଙ୍କ କବିତାଟି ଇଂରାଜୀରୁ ଚେକ୍ ଭାଷାରେ ଅନୁବାଦ କରିବେ ବୋଲି କହିଥିଲେ । ବ୍ରାତିଶ୍ଲାଭା ନାମକ ଆଉ ଏକ ଚେକୋସ୍ଲୋଭାକିଆର ସହରକୁ କବି ଯାଇଥିଲେ । ସେଠାରେ ସେ ଭାରତୀୟ ସାହିତ୍ୟ ଉପରେ ଏକ ଭାଷଣ ଦେଇଥିଲେ । ସେଠାରେ ଥିବା ମ୍ୟୁଜିୟମ୍ ବୁଲି ଦେଖିଥିଲେ ।

**ପୋଲାଣ୍ଡ ଯାତ୍ରା**

ପ୍ରାଗ୍‌ରୁ ସଚ୍ଚିବାବୁ ପୋଲାଣ୍ଡ ଗଲେ । ସେଠାରେ ତାଙ୍କର ଦୁଇ ସପ୍ତାହ କାର୍ଯ୍ୟକ୍ରମ ନିର୍ଦ୍ଧାରିତ ହୋଇଥିଲା । ପୋଲାଣ୍ଡର ୱାରସ ବିଶ୍ୱବିଦ୍ୟାଳୟରେ ଭାରତର ଓ ବିଶେଷ ଭାବରେ ଓଡ଼ିଶାର ପ୍ରାଚୀନ ଚିତ୍ରକଳା, ଯଥା – ପୋଥିଚିତ୍ର ଓ ପଟ୍ଟଚିତ୍ର ସମ୍ବନ୍ଧରେ ୩୦ ମିନିଟ ଭାଷଣ ଦେଇଥିଲେ । ଏହାଛଡ଼ା ଆଧୁନିକ ଭାରତ ସାହିତ୍ୟ ଉପରେ ଆଲୋକପାତ କରିଥିଲେ । ସଚ୍ଚିବାବୁଙ୍କର ଇଂରାଜୀ ଭାଷଣକୁ ଦ୍ୱିଭାଷୀ ହେନେରୀ ପୋଲିସ୍ ପୋଲାଣ୍ଡ ଭାଷାରେ ଅନୁବାଦ କରି ଶୁଣାଇଥିଲେ । ପୋଲାଣ୍ଡର ଲେଖକ ସଂଘ ୱାରସରେ ସଚ୍ଚିବାବୁଙ୍କୁ ଏକ ମଧ୍ୟାହ୍ନଭୋଜନରେ ଆପ୍ୟାୟିତ କରିଥିଲେ । ଏଥିରେ ବହୁ ଲେଖକ, ଲେଖିକା, ସାମ୍ବାଦିକ ଓ ବୁଦ୍ଧିଜୀବୀ ଯୋଗ ଦେଇଥିଲେ । ଲେଖକ ସଂଘର ସଭାପତି ଏହି ଅଭ୍ୟର୍ଥନା ସଭାରେ ପୌରୋହିତ୍ୟ କରିଥିଲେ । ସଚ୍ଚିବାବୁ ତାଙ୍କ ଭାଷଣରେ ପୋଲାଣ୍ଡବାସୀଙ୍କ ସ୍ୱଦେଶପ୍ରୀତିର ଉଚ୍ଛ୍ୱସିତ ପ୍ରଶଂସା କରିଥିଲେ ।

ପୋଲାଣ୍ଡର ଲୋକମାନେ ସମାଜବାଦୀ ବ୍ୟବସ୍ଥା ଚାହୁଁଥିଲେ ମଧ୍ୟ ବ୍ୟକ୍ତି ସ୍ୱାତନ୍ତ୍ର୍ୟ ଲୋପ ପାଉ ବୋଲି ଚାହୁଁ ନ ଥିବା କବି ଉପଲବ୍ଧି କରିଥିଲେ ।

ୱାରସରେ ସଚ୍ଚିବାବୁ ଥିଲାବେଳେ ପୋଲାଣ୍ଡ-ଭାରତ ମୈତ୍ରୀ ସଂଘ ତାଙ୍କୁ ବକ୍ତୃତା ଦେବାପାଇଁ ନିମନ୍ତ୍ରଣ କରିଥିଲେ । କବି ଭାଷଣରେ ପୋଲାଣ୍ଡ ଓ ଭାରତ ମଧ୍ୟରେ ସାଂସ୍କୃତିକ ବିନିମୟ ସେତୁ ଆହୁରି ସୁଦୃଢ଼ ହେବା ଉପରେ ଗୁରୁତ୍ୱ ପ୍ରଦାନ କରିଥିଲେ ।

କବି ଫେରିବା ବାଟରେ ଲଣ୍ଡନରେ ଏକ ମାସ ରହିଲେ । ଫ୍ରାନ୍‌ସ ଯାଇ ପ୍ୟାରିସ୍‌ରେ ଦଶ ଦିନ ରହଣି ପରେ ସେ ଭାରତକୁ ଫେରିଲେ ।

**ଲଣ୍ଡନରେ ଓଡ଼ିଶାର ପ୍ରାଚୀନ ଚିତ୍ରକଳା ପ୍ରଦର୍ଶନ**

୧୯୮୨ ମସିହାରେ ଲଣ୍ଡନରେ ଭାରତ ଉତ୍ସବ ଅନୁଷ୍ଠିତ ହେଉଥାଏ । ଲଣ୍ଡନ ବିଶ୍ୱବିଦ୍ୟାଳୟର ଏକ ଅନୁଷ୍ଠାନ 'School of Oriental African Studies' ରେ ଏକ ଭାରତୀୟ କଳା ପ୍ରଦର୍ଶନୀର ଆୟୋଜନ କରିବାକୁ ସ୍ଥିର କଲେ । ସେମାନେ ସଚ୍ଚିବାବୁଙ୍କୁ ଓଡ଼ିଶାର ପୋଥିଚିତ୍ର ଓ ପଟ୍ଟଚିତ୍ରର ଏକ ପ୍ରଦର୍ଶନୀ ଆୟୋଜନ କରିବାକୁ ଅନୁରୋଧ କଲେ । ସଚ୍ଚିବାବୁ ଏଥିରେ ରାଜି ହେଲେ ।

ଲଣ୍ଡନରେ ଦୁଇ ମାସ ରହିବା ଓ ଖାଇବା ଖର୍ଚ୍ଚ ପ୍ରଭୃତି ବହନ କରିବାପାଇଁ ସଚ୍ଚିବାବୁ କେନ୍ଦ୍ର ସଂସ୍କୃତି ବିଭାଗକୁ ଅନୁରୋଧ କଲେ । ମାତ୍ର ସେମାନେ ଏ ବାବଦ ଖର୍ଚ୍ଚ ବହନ କରିବାକୁ ରାଜି ହେଲେ ନାହିଁ । ଏ ପ୍ରଦର୍ଶନୀ ବାବଦରେ ଆନୁଷଙ୍ଗିକ ଖର୍ଚ୍ଚ ବହନ କରିବାକୁ ଓଡ଼ିଶା ସରକାରଙ୍କୁ ମଧ୍ୟ କବି ଅନୁରୋଧ କଲେ । ମାତ୍ର ଓଡ଼ିଶା ସରକାର ମଧ୍ୟ କିଛି ଆର୍ଥିକ ସାହାଯ୍ୟ ଦେଲେ ନାହିଁ । ଶେଷରେ କବିଙ୍କ ଝିଅ ଓ ଜ୍ୱାଇଁ ନିଜ ଘରେ ରହିବାକୁ ଟେଲିଫୋନରେ ଅନୁରୋଧ କରିବାରୁ ସଚ୍ଚିବାବୁ ଲଣ୍ଡନ ଯିବାକୁ ସମ୍ମତ ହେଲେ ।

ଏହି ପ୍ରଦର୍ଶନୀ ଡଃ ସଚ୍ଚି ରାଉତରାୟ ଓ School of Oriental African Studiesର ଡେପୁଟି ଲାଇବ୍ରେରିଆନ୍ ଷ୍ଟିଫେନ ଗୋଡାର୍ଡଙ୍କ ଦ୍ୱାରା ଆୟୋଜିତ ହୋଇଥିଲା । ଏହା ୧୯୮୨ ମସିହା ମେ ମାସ ୬ ତାରିଖରୁ ସେହି ବର୍ଷ ଜୁନ ମାସ ୧୦ ତାରିଖ ପର୍ଯ୍ୟନ୍ତ ଚାଲିଲା । ଏହା ବିଶେଷ ଲୋକପ୍ରିୟ ହେଲା । ଫଳରେ ଏହାକୁ ଆଉ ଦୁଇ ମାସ ବଢ଼ାଇ ଦିଆଯାଇଥିଲା ।

### ଓଡ଼ିଶା ରାଜ୍ୟ ଲେଖକ, କଳାକାର ଓ କ୍ରୀଡ଼ାବିତ୍ ସଙ୍ଗଠନ

ସଚ୍ଚିବାବୁଙ୍କ ଉଦ୍ୟମରେ ଓଡ଼ିଶା ରାଜ୍ୟ ଲେଖକ, କଳାକାର, କ୍ରୀଡ଼ାବିତ୍ ସଙ୍ଗଠନ ଗଠିତ ହେଲା । ଏହା Society Act ଅନୁସାରେ ରେଜିଷ୍ଟ୍ରି ହେଲା । ଓଡ଼ିଶାର ବରେଣ୍ୟ ଲେଖକ କାଳିନ୍ଦୀଚରଣ ପାଣିଗ୍ରାହୀ ଏହାର କାର୍ଯ୍ୟକାରୀ ସଭାପତି ହେଲେ । ଏହି ସଙ୍ଗଠନର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଲେଖକ, କଳାକାର କ୍ରୀଡ଼ାବିତ୍ ପ୍ରଭୃତିଙ୍କର ସ୍ୱାର୍ଥରକ୍ଷା । ସେମାନଙ୍କୁ ମାସିକ ପେନସନ୍ ସର୍ବନିମ୍ନ ଦୁଇ ଶହରୁ ତିନି ଶହ ଟଙ୍କା ଦେବାକୁ ଏହି ସଙ୍ଗଠନ ପ୍ରସ୍ତାବ ଗ୍ରହଣ କଲା । ପ୍ରାୟ ଏକ ହଜାର ବ୍ୟକ୍ତିଙ୍କୁ ୧୯୮୨ ସୁଦ୍ଧା ଭତ୍ତା ଦିଆଯାଇଥିଲା ।

### କଲିକତା ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଏମ୍.ଏ. କ୍ଲାସ ଚାଲୁ କରିବାକୁ ଦାବି

କଲିକତା ବିଶ୍ୱବିଦ୍ୟାଳୟରେ ୧୯୨୦ ମସିହାରୁ ସର୍ବପ୍ରଥମେ ଓଡ଼ିଆ ଏମ୍.ଏ. କ୍ଲାସ ଚାଲୁ ହୋଇଥିଲା । କିନ୍ତୁ ୧୯୪୯ ମସିହାରୁ ବିଶ୍ୱବିଦ୍ୟାଳୟ ଓଡ଼ିଆ ଏମ୍.ଏ. କ୍ଲାସ୍ ବନ୍ଦ କରିଦେଲେ । ୨୧.୧୧.୧୯୮୨ ତାରିଖରେ ସଚ୍ଚିବାବୁ ପୁନରାୟ ଓଡ଼ିଆ କ୍ଲାସ ଚାଲୁ କରିବାକୁ ଦାବି କରି ଏକ ପ୍ରସ୍ତାବ ଆଣିଲେ ଓ ଏଥିପାଇଁ କ୍ରମାଗତ ଉଦ୍ୟମ ଚଳାଇଲେ। ଶେଷରେ କଲିକତା ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ଓଡ଼ିଆ ଏମ୍.ଏ. କ୍ଲାସ ଚାଲୁ କରିବାକୁ ରାଜି ହେଲେ ।

### ଜ୍ଞାନପୀଠ ପୁରସ୍କାର ଓ ଅନ୍ୟାନ୍ୟ ବିଶେଷ ସମ୍ମାନ

୧୯୮୬ ମସିହାପାଇଁ କବି ସଚ୍ଚିବାବୁଙ୍କୁ ଜ୍ଞାନପୀଠ ସମ୍ମାନ ପ୍ରଦାନ କରାଗଲା । ପରବର୍ତ୍ତୀ କାଳରେ ପ୍ରଧାନମନ୍ତ୍ରୀ ହୋଇଥିବା ଶ୍ରୀ ନରସିଂହ ରାଓ କବିଙ୍କ ସମ୍ବନ୍ଧରେ ଏକ ମୂଲ୍ୟାୟନ ପାଠ କରିଥିଲେ । ଜ୍ଞାନପୀଠ ପୁରସ୍କାର ପାଇବା ପରଦିନ U.P.S.C.ର କର୍ମକର୍ତ୍ତା ଓ କର୍ମଚାରୀମାନେ କବିଙ୍କୁ ସମ୍ବର୍ଦ୍ଧିତ କରିଥିଲେ ।

କବି ରାଉତରାୟ ଏହାଛଡ଼ା ବହୁ ସମ୍ମାନର ଅଧିକାରୀ ହୋଇଛନ୍ତି । ୧୯୯୭ ମସିହାରେ ଗଙ୍ଗାଧର ଫାଉଣ୍ଡେସନ ତରଫରୁ କବିଙ୍କୁ 'ସାହିତ୍ୟ ଭାରତୀ' ସମ୍ମାନ ଦିଆଯାଇଥିଲା । ୧୯୯୮ ମସିହାରେ ଖୋର୍ଦ୍ଧାର ପ୍ରାଣନାଥ କଲେଜ ପକ୍ଷରୁ ତାଙ୍କୁ 'ପ୍ରାଣନାଥ ସମ୍ମାନ' ଦିଆଯାଇଥିଲା । ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ତାଙ୍କୁ ଉତ୍କଳରତ୍ନ ସମ୍ମାନ ମିଳିଥିଲା । ଓଡ଼ିଶା ସାହିତ୍ୟ ଏକାଡେମୀ ତାଙ୍କୁ ସମ୍ବର୍ଦ୍ଧନା ଦେଇଥିଲେ । ବଙ୍ଗଳାର ବିଭୂତିଭୂଷଣ ସମ୍ମାନ ମଧ୍ୟ ତାଙ୍କୁ ମିଳିଥିଲା । ନେହରୁ ଆୱାର୍ଡ ୧୯୬୫ ମସିହାରେ ତାଙ୍କୁ ମିଳିଲା । ୧୯୮୮ ମସିହାରେ ଶ୍ରୀରାମଚନ୍ଦ୍ର ଭବନରେ ଓଡ଼ିଶାବାସୀଙ୍କ ପକ୍ଷରୁ କବିଙ୍କୁ 'ମହାକବି' ଉପାଧିରେ ଭୂଷିତ କରାଗଲା ।

**କବି ବାନ୍ଧବୀ**

କବି ସଚ୍ଚିବାବୁ ସ୍ୱାଭାବିକ ଭାବେ ବହୁ ନାରୀଙ୍କ ସଂସ୍ପର୍ଶରେ ଆସିଥିଲେ । କେତେକଙ୍କ ସହିତ ତାଙ୍କର ଘନିଷ୍ଠତା ବି ଥିଲା । କଲିକତାରେ ଥିଲା ବେଳେ ଯେଉଁ କେତେଜଣ ତାଙ୍କ ସାହିତ୍ୟ ସୃଷ୍ଟିରେ ପ୍ରେରଣାଦାୟିନୀ ଥିଲେ, ସେମାନଙ୍କ ମଧ୍ୟରେ ଅନ୍ୟତମ ହେଉଛନ୍ତି ଇଭା ମେନନ୍ ।

**ଇଭା ମେନନ୍**

ଇଭା ମେନନ୍ ଥିଲେ ଏକ ତାମିଲ ପରିବାରର ଝିଅ । ସେ, ତାଙ୍କ ମା' ଓ ଦୁଇ ଭାଇ ହାଓଡ଼ାରେ ରହୁଥିଲେ । ସେ B.A. ପାସ୍ କରି A.R.P ବିଭାଗରେ କାମ କରୁଥିଲେ । ସେ ମେଳାପୀ ଥିଲେ । ବହୁ ବଙ୍ଗଳା କବିତା ତାମିଲ ଭାଷାରେ ଅନୁବାଦ କରିଥିଲେ । ତାହା ମଧ୍ୟ ମାଡ୍ରାସରେ କେତେକ ପତ୍ରିକାରେ ପ୍ରକାଶିତ ହୋଇଥିଲା । କବି ତାଙ୍କ ଘରକୁ ଗଲେ ତାଙ୍କ ମା' ଓ ଭାଇମାନେ ଖୁସି ହେଉଥିଲେ । କବି ଅନେକ ସମୟରେ ବାହାରେ ମଧ୍ୟ ତାଙ୍କ ସହିତ ସମୟ କଟାଉଥିଲେ । ବିଶେଷତଃ କଲିକତା ବଟାନିକାଲ ଗାର୍ଡ଼େନ ତାଙ୍କର ଅତି ପ୍ରିୟ ସ୍ଥାନ ଥିଲା । କବିଙ୍କର ଇଭା ପ୍ରେମିକା ଥିବା ଅନୁମାନ କରାଯାଏ ।

ଇଭା ମେନନ୍‌ଙ୍କ ଉଦ୍ଦେଶ୍ୟରେ କବି 'ସ୍ମରଣ' ନାମକ ଏକ କବିତା ମଧ୍ୟ ରଚନା କରିଥିଲେ । ତା'ର କେତେ ଧାଡ଼ି –

''ରକ୍ତରେ ତୁମ୍ଭର କାଞ୍ଚା ଦ୍ରାବିଡ଼ର
ରକ୍ଷଣଶୀଳ ଶ୍ରୀ
ମୁହଁରେ ତୁମର ଶ୍ୟାମଳ ରଙ୍ଗର ଅରୁଣିମା
ମୁଁ କରିଛି ତା'ର ପ୍ରାପ୍ତି ସ୍ୱୀକାର୍ ।''

ଏହା ପ୍ରଥମେ ବଙ୍ଗଳାରେ ରଚିତ ହୋଇ ବଙ୍ଗଳା ପତ୍ରିକାରେ ପ୍ରକାଶିତ ହୋଇଥିଲା ।

**ରମଲା ମଜୁମଦାର**

ରମଲା ମଜୁମଦାରଙ୍କ ସଙ୍ଗେ ସଚ୍ଚିବାବୁଙ୍କ ଗାଢ଼ ବନ୍ଧୁତା ମଧ୍ୟ ଥିଲା । ସେ ଏମ୍.ଏ. ପାସ୍ କରି ଚାକିରି ସନ୍ଧାନରେ ଥିଲେ । ତାଙ୍କ ବାପା ଥିଲେ ବଡ଼ ସରକାରୀ କର୍ମଚାରୀ । ଛୁଟିରେ ତାଙ୍କ ସଙ୍ଗେ କବି ଜଲପାଇଗୁଡ଼ି ଯାଇଥିଲେ । ତାଙ୍କ ଘରର ବାରଣ୍ଡାରେ କବି ପ୍ରଥମେ ହିମାଳୟକୁ ଦେଖିଥିଲେ ।

**ସିପ୍ରା**

କବିଙ୍କର ଆଉ ଜଣେ ବାନ୍ଧବୀଙ୍କ ନାମ ଥିଲା ସିପ୍ରା । ସେ ତାଙ୍କ ଉଦ୍ଦେଶ୍ୟରେ 'ଆକାଶ' ନାମକ କବିତା ରଚନା କରିଥିଲେ । ତା'ର ଦୁଇଟି ଧାଡ଼ି –

''ତୁମ ମୁହଁକୁ ପିଙ୍ଗିଥିଲି ମୁଁ ମୁଠାଏ ଆକାଶ
ଭାବିଥିଲି ସ୍ୱପ୍ନ ଦେଖିବ ଅନ୍ୟମନସ୍କ ହେବ
ଅନ୍ଧାରରେ ବସି ଅବା ନଖରେ କାଟିବ ଗାର
ଯେଉଁପରି କ୍ଷୀଣ ପ୍ରତିପଦ ।''

**ରେବା ମଲ୍ଲିକ**

ରେବା ମଲ୍ଲିକ ରେଭେନ୍‌ସାରେ କବିଙ୍କର ସହପାଠିନୀ ଥିଲେ । ତାଙ୍କ ସହିତ କବିଙ୍କ ଦୀର୍ଘ ଦିନର ପ୍ରେମ ଥିଲା । ସେ ଦୁହିଁଙ୍କୁ କେନ୍ଦ୍ର କରି ଝଡ଼ ଉଠିଥିଲା । ରେବା ମଲ୍ଲିକର ଦୀର୍ଘଶ୍ୱାସ ବହନ କରୁଥିବା କବିତା ଦ୍ୱୟ ହେଉଛି 'ଝଡ଼' ଓ 'ହେ ମୋର ନିରପରାଧ ଦେଶ' ।

ଉଭୟ କବିତା 'ପାଣ୍ଡୁଲିପି' ଗ୍ରନ୍ଥରେ ସ୍ଥାନିତ । ଏମାନଙ୍କ ଛଡ଼ା କବିଙ୍କର ଆଉ କେତେ ବାନ୍ଧବୀ ଥିଲେ । କବି ଲେଖିଛନ୍ତି – ''ଆଜି ନଦୀର ଅପରପାର୍ଶ୍ୱରୁ ବଡ଼ ପାଟିରେ ଡାକିବାକୁ ଇଚ୍ଛା ହୁଏ, ବନ୍ଧୁ, ବନ୍ଧୁ, ବନ୍ଧୁ ।''

କବିଙ୍କ ମତରେ – ''ଦେହ ଓ ମନ, ବାକ୍ୟର ମିଳନ ଓ ସମନ୍ୱୟ ହିଁ ବନ୍ଧୁତା । ଏକ ପର୍ଯ୍ୟାୟରେ ଏହା ପ୍ରେମ, ଅନ୍ୟ ପର୍ଯ୍ୟାୟରେ ଏହା ମୃତ୍ୟୁ ।''

କବି ପୁଣି କହିଛନ୍ତି – ''ଭଲ ପାଇବା ଯେଉଁଠି କେବଳ ଦେହରେ ସୀମିତ, ସେଠି ତାହା ଦାସତ୍ୱ... । ଏହା ଜୀବନପଥରେ ଦୁଇ ସହଯାତ୍ରୀଙ୍କର ବନ୍ଧନହୀନ ଗ୍ରନ୍ଥି ନୁହେଁ, ବରଂ ଶୃଙ୍ଖଳ । ଏହା ଆମକୁ ଚାଲିବାକୁ ଦିଏ ନାହିଁ, ବରଂ ବାଟରେ ସେହି ସ୍ଥାନରେ ବାନ୍ଧି ରଖେ ।''

**ନୀତା**

୧୯୫୩ ମସିହାରେ କବିଙ୍କ ଜୀବନରେ ଆଉ ଏକ ନାରୀ ନୀତାଙ୍କର ଆବିର୍ଭାବ ହୋଇଥିଲା । ପୂରା ନାମ ଥିଲା ନୀତା ଚକ୍ରବର୍ତ୍ତୀ । ସେ ତାମିଲ ବଂଶଜାତ ଥିଲେ । ସେ କିନ୍ତୁ ଜଣେ ବଙ୍ଗାଳୀ କର୍ମଚାରୀଙ୍କୁ ବିବାହ କରିଥିଲେ । ବିବାହର

ଅଳ୍ପ ବର୍ଷ ପରେ ସ୍ୱାମୀ ମୃତ୍ୟୁ ମୁଖରେ ପଡ଼ିଲେ । ନୀତାଙ୍କର ଇଂରାଜୀ ଜ୍ଞାନ ଭଲ ଥିଲା । ସେ ଭଲ ଟାଇପ ମଧ୍ୟ କରିପାରୁଥିଲେ । ସଚ୍ଚିବାବୁଙ୍କ ଇଂରାଜୀ କବିତା ଓ ପ୍ରବନ୍ଧ ଟାଇପ କରୁଥିଲେ । ସେ ମଧ୍ୟ ଗଳ୍ପ ଉପନ୍ୟାସ ପ୍ରଭୃତି ସଚ୍ଚିବାବୁଙ୍କଠୁଁ ନେଇ ପଢୁଥିଲେ । ଲେଖକଙ୍କ କହିବା ଅନୁଯାୟୀ କାୟମନୋବାକ୍ୟରେ ସେ ଥିଲେ ତାଙ୍କର ଜଣେ ବନ୍ଧୁ । ନୀତା ମଧ୍ୟ ତାଙ୍କ ପାଖକୁ ଚିଠିପତ୍ର ଦେଉଥିଲେ । ସଚ୍ଚିବାବୁ ବି ତା'ର ଉତ୍ତର ଦେଉଥିଲେ ।

କବିଙ୍କ ସ୍ୱୀକାରୋକ୍ତି – ''ଆମ ସମ୍ପର୍କ ଯେତେ ଦେହ ତାପ-ତପ୍ତ ଥିଲା, ତା'ଠାରୁ ବେଶି ଥିଲା ବୌଦ୍ଧିକ ଅନ୍ତରଙ୍ଗ ।''

କବି କଟକ ଚାଲିଆସିଲାପରେ ନୀତା ପୁଣି ବିବାହ କଲେ । ଦ୍ୱିତୀୟ ସ୍ୱାମୀଙ୍କ ସହ ସେ କଟକ ଆସି କବିଙ୍କୁ ଦେଖି ଯାଉଥିଲେ ।

ନୀତାଙ୍କ ଉପରେ ରଚିତ 'ଉତ୍ତର ତିରିଶ' ପ୍ରଥମେ 'ଝଙ୍କାର'ରେ ପ୍ରକାଶ ପାଇଥିଲା । ତାହା ପରେ 'ସ୍ୱଗତ' ପୁସ୍ତକରେ ସ୍ଥାନିତ ହୋଇଅଛି ।

**କାବ୍ୟକୃତି**

କବି ଅଳ୍ପ ବୟସରୁ ଗଳ୍ପ ଓ କବିତା ପ୍ରଭୃତି ଲେଖାଲେଖି କରୁଥିଲେ । ତାଙ୍କର କେତେକ କବିତା ବ୍ରହ୍ମପୁର ରୟାଲ ପ୍ରେସରୁ ପ୍ରକାଶିତ 'ନବୀନ' ପତ୍ରିକାରେ ବାହାରିଥିଲା । ଏହାର ସମ୍ପାଦକ ଥିଲେ କୃପାସିନ୍ଧୁ ପଟଦେବ । ୧୯୩୦ ମସିହାରେ ଏହି ପତ୍ରିକାରେ ତାଙ୍କ ରଚିତ 'ଭଗବାନ୍ ଅଛ କାହିଁ' କବିତାଟି ପ୍ରକାଶ ପାଇଲା । ସେତେବେଳକୁ ତାଙ୍କର ବୟସ ୧୩ ବା ୧୪ । ଏହି କବିତାରେ ସେ ଭଗବାନ୍‌ଙ୍କ ଅସ୍ତିତ୍ୱ ସମ୍ପର୍କରେ ପ୍ରଶ୍ନ କରିଛନ୍ତି –

''ଭଗବାନ୍ ଅଛ କାହିଁ
ଗଗନ, ପବନ ଗର୍ଜି ମୋ କାନେ
    କହିଯାଏ ନାହିଁ', ନାହିଁ ।
ଯଦି ମୁଁ ଫେରାଏ
ଆଜି ବେନି ଆଖି
ତହିଁ ଦେଖେ ଖାଲି ଦୀନ ନିରିମାଖି (୨)
ଅନ୍ନ ବିହୁନେ ମଣିଷ ଆତ୍ମା
କରୁଅଛି ହାଇ ହାଇ ।
ଭଗବାନ ଅଛ କାହିଁ ?''

ଏହି ମାନବବାଦୀ କବିତାଟି ସେତେବେଳେ ସାରା ଓଡ଼ିଶାରେ ଚହଳ ପକାଇଦେଲା । ଏହି କବିତାଟି ପରିବର୍ଦ୍ଧିତ ଓ ପୁନର୍ଲିଖିତ ହୋଇ 'ସହକାର' ମାସିକ ପତ୍ରିକାରେ ପ୍ରକାଶ ପାଇଲା । ପରେ କୃପାସିନ୍ଧୁ ପଟଦେବଙ୍କ

ସମ୍ପାଦନାରେ ବ୍ରହ୍ମପୁରରୁ 'ଶିଶିର' ନାମକ ପତ୍ରିକା ପ୍ରକାଶ ପାଇଲା । ସେଥିରେ କବିଙ୍କ 'ଇସ୍ପାତ', 'ଯୁଦ୍ଧସ୍ୟ ଭାରତ', 'ଉତ୍ତିଷ୍ଠିତ ଜାଗ୍ରତ' ପ୍ରଭୃତି ବିପ୍ଳବାତ୍ମକ କବିତା ସ୍ଥାନ ପାଇଥିଲା । ସେଗୁଡ଼ିକ ଉଗ୍ର ଜାତୀୟତାବାଦୀ ତଥା ସମାଜବାଦୀ ଦୃଷ୍ଟିକୋଣର ସ୍ୱାକ୍ଷର ବହନ କରିଥିଲା । ଏହି କବିତାଗୁଡ଼ିକର ଉଚ୍ଛ୍ୱସିତ ପ୍ରଶଂସା କରିଥିଲେ ଉତ୍କଳଭାରତୀ କୁନ୍ତଳାକୁମାରୀ ସାବତ । ସେ କବିଙ୍କୁ 'ବୀରତୀର୍ଥ ଖୋର୍ଦ୍ଧାର ଯୋଗ୍ୟ ଦାୟାଦ' ଭାବେ ଅଭିହିତ କରି ତାଙ୍କୁ 'ନବୀନ' ପତ୍ରିକାରେ ଅଭିନନ୍ଦିତ କରିଥିଲେ । କାନ୍ତକବି ଲକ୍ଷ୍ମୀକାନ୍ତ ମଧ୍ୟ ଉକ୍ତ ପତ୍ରିକାରେ କବିଙ୍କୁ ଅଭିନନ୍ଦନ ଜଣାଇଥିବା କଥା ଲକ୍ଷ୍ମୀକାନ୍ତ ଗ୍ରନ୍ଥାବଳୀରୁ ଜଣାଯାଏ ।

**ପାଥେୟ**

୧୯୩୧ ମସିହା ଆଡ଼କୁ ସଚ୍ଚିଦାନନ୍ଦଙ୍କ ପ୍ରଥମ କବିତାଗ୍ରନ୍ଥ 'ପାଥେୟ' ପ୍ରକାଶ ପାଇଲା । ଏଥିରେ କବିଙ୍କର 'ନୀଳ ଆକାଶ', 'ଗୋଧୂଳି ସନ୍ଧ୍ୟା' ବା 'ଜୋଛନା ପ୍ରତି ଆକର୍ଷଣ' ପ୍ରଭୃତି କବିତା ସ୍ଥାନିତ ।

**ପ୍ରକୃତି ବର୍ଣ୍ଣନାର ଉଦାହରଣ**

''ଆଜି ହେମନ୍ତର ସ୍ୱର୍ଣ୍ଣ ସନ୍ଧ୍ୟା ଆସିଛି ଗଗନ ଛାଇ
ଗୋଷ୍ଠେ ଫେରନ୍ତି କ୍ଳାନ୍ତ ଗୋପାଳ ମଧୁର ମୁରଲୀ ବାଇ ।''

କବିଙ୍କୁ ସେତେବେଳେ ୧୫/୧୬ ବର୍ଷ ହୋଇଥିବା ଅନୁମାନ କରାଯାଏ । ସେ ଯୌବନର ପହିଲି ସ୍ପର୍ଶ ଲାଭ କରିଥିଲେ । ତରୁଣୀର ପ୍ରେମପାଇଁ ତାଙ୍କ ପ୍ରାଣ ଉତ୍କଣ୍ଠିତ ହୋଇଉଠିବା ସ୍ୱାଭାବିକ । 'ନୂପୁର ବାଜେ' କବିତାଟି ପ୍ରିୟା ପାଇଁ କବି ପ୍ରାଣର ଏକ ଆବେଗଭରା ଶ୍ରଦ୍ଧାଞ୍ଜଳି ଭାବେ ଗ୍ରହଣ କରାଯାଇପାରେ –

''ପଥେ ପଥେ ତା'ର ନୂପୁର ବାଜେ
ବନେ ବନେ ଆଜି ବୀଣା ଉଠେ ବାଜି
ମରେ ମୁଁ ସଜନୀ ଅଧୀର ଲାଜେ ।''

'ଫଗୁଣ ବ୍ୟଥା'ରେ ସେହିପରି କବି ହୃଦୟର ବ୍ୟଥା ଫୁଟିଉଠିଛି । ଏହିସବୁ କବିତାଗୁଡ଼ିକରେ ସବୁଜ ଯୁଗୀୟ କବିମାନଙ୍କ ପ୍ରଭାବ ପଡ଼ିଥିବାର ଜଣାଯାଏ । ପରବର୍ତ୍ତୀ କାଳରେ ସେ କେତେକ ପ୍ରେମ କବିତା ରଚନା କରିଥିଲେ ହେଁ ଉପର ଆଲୋଚିତ କବିତାଗୁଡ଼ିକ ଭଳି ସେଗୁଡ଼ିକରେ କବି ହୃଦୟର ଆକୁଳ ଆତ୍ମନିବେଦନ ପରିଦୃଷ୍ଟ ହୁଏ ନାହିଁ ବୋଲି ଆଲୋଚକ ପଞ୍ଚାନନ ମହାନ୍ତି କହିଛନ୍ତି ।

କବିଙ୍କ ଉପରେ ମଧ୍ୟ ଆଉ ଏକ କ୍ଷେତ୍ରରେ ସବୁଜ ଯୁଗୀୟ ପ୍ରଭାବ ସୁସ୍ପଷ୍ଟ । ଏହା ହେଲା ଭଗବାନ୍‌ଙ୍କ ସ୍ଥିତି ବିଷୟରେ । ସେ କେବଳ ଈଶ୍ୱରଙ୍କ ଅସ୍ତିତ୍ୱ ସ୍ୱୀକାର

କରି ନାହାନ୍ତି, ଅନ୍ୟ ଏକ ସବୁଜଯୁଗୀୟ କବି ବୈକୁଣ୍ଠନାଥଙ୍କ ଭଳି ସବୁ ଈଶ୍ୱରଙ୍କ ଇଚ୍ଛା ବୋଲି କହିଛନ୍ତି । କବି ଈଶ୍ୱରଙ୍କଠାରେ ଆତ୍ମସମର୍ପଣ କରିଦେଇଛନ୍ତି, ଯଥା –

"ଦୁଃଖ ଦିଅ ଦୁଃଖ ଦିଅ ମାଗେ ଏହି ଭିକ୍ଷା
ଦିଅ ଶ୍ରୀ ପୟରେ ଆଜି ଦାରିଦ୍ର୍ୟର ଦୀକ୍ଷା
ଦୀନ ମୁହିଁ, ଦୀନ ବେଶେ ଯିବି ତୁମ୍ଭ ଦ୍ୱାରେ
ଶିରେ ବହି ଦାରିଦ୍ର୍ୟର ନ୍ୟାଯ୍ୟ ଅଧିକାରେ ।"

ସେହିଭଳି କବିତାର ଆଉ ଏକ ପଂକ୍ତି –

"ନିଖିଳର ମେଷ ପଲେ ମୁହିଁ ଏକା ମେଷ
ଗୋଠ ନାହିଁ ଏଣେ ତେଣେ ବୁଲେ କେତେ ଦେଶ
ଶୁଣି ନାହିଁ ବଂଶୀସ୍ୱନ ରଖୁଆଳି ଡାକ
ବୁଲିଅଛି ବିଲ କେତେ ପଥ ବାଙ୍କ ।"

ଏହି କବିତାଗୁଡ଼ିକରେ ରହସ୍ୟବାଦୀ ଭାବଧାରାର ସୂଚନା ମିଳେ ।

**ପୂର୍ଣ୍ଣିମା**

୧୯୩୨ ମସିହାରେଏହି ଗୀତିକାବ୍ୟ ରଚିତ ହେଲା । ଏଥିରେ ଦେବଦେବ ମହାଦେବଙ୍କ ପ୍ରତି ମଦନର ଶର ନିକ୍ଷେପ ଓ ମହାଦେବଙ୍କ ହୈମବନ୍ତୀଙ୍କ ପ୍ରତି କାମନା ଉଦ୍ରେକ ହେବା ବର୍ଣ୍ଣିତ । ଏଥିରେ ଗତାନୁଗତିକ ଆଦର୍ଶ ପ୍ରେମ ଓ ପରମ ନିଷ୍ଠାର ଆକର୍ଷଣ ଅତି ସୁନ୍ଦର ଭାବରେ ଚିତ୍ରିତ ହୋଇଛି । ଆଲୋଚକ ଡଃ ନଟବର ସାମନ୍ତରାୟଙ୍କ ମତରେ, "ଏ ରଚନାରେ ଅନୁକରଣ ବ୍ୟତୀତ ତାଙ୍କର ବିପ୍ଳବାତ୍ମକ ମନୋବୃତ୍ତିର କୌଣସି ପରିଚୟ ପରିଲକ୍ଷିତ ହୁଏ ନାହିଁ ।"

**ପଲ୍ଲିଶ୍ରୀ**

'ପଲ୍ଲିଶ୍ରୀ' ରଚନା କରିବା ପୂର୍ବରୁ କବି ପଲ୍ଲୀ ଉପରେ କେତୋଟି କବିତା ରଚନା କରିଥିଲେ । ସେଗୁଡ଼ିକ ହେଲା 'ପଲ୍ଲୀ ଗୋଧୂଳି', 'ପଲ୍ଲୀ ପ୍ରଭାତ', 'ଚୈତ୍ର ସନ୍ଧ୍ୟା', 'ଫଗୁଣ ବ୍ୟଥା', 'ବର୍ଷା' ପ୍ରଭୃତି । ସେଗୁଡ଼ିକ ମଧ୍ୟ 'ପାଥେୟ'ରେ ପ୍ରକାଶ ପାଇଥିଲା । ଆଲୋଚକ ପଞ୍ଚାନନ ମହାନ୍ତିଙ୍କ ଭାଷାରେ, କବି ଏଗୁଡ଼ିକରେ ହାତଦୋରସ୍ତ କରି 'ପଲ୍ଲିଶ୍ରୀ' ରଚନା ଦିଗରେ ଆଗ୍ରହୀ ହୋଇଛନ୍ତି । ସେ ଯାହାହେଉ, ସମୟକ୍ରମେ ପଲ୍ଲୀ କବିଙ୍କୁ ଆକର୍ଷିତ କରିଛି । ପଲ୍ଲୀ ହୋଇଛି ତାଙ୍କପାଇଁ ତୀର୍ଥ । ପଲ୍ଲୀର ବିଲ, ବନ, ପ୍ରାନ୍ତର, ଗଛଲତା, ଫୁଲଫଳ, ନଦୀ, ଝରଣା, ବଣ, ପାହାଡ଼ – ସବୁ ତାଙ୍କୁ ଆତ୍ମହରା କରିଛି । ତାଙ୍କର ମନକୁ କଳ୍ପନାମୁଖର କରିଛି । ସେହି କଥାକୁ ସେ ରୂପାୟିତ କରିଛନ୍ତି 'ଛୋଟ ମୋର ଗାଁଟି' କବିତାରେ –

"ତାହାରି ଫୁଲ ଶାଗୁଆ ଲତା, କଣ୍ଠେ ମୋର ଦେଲା ଯେ କଥା
ଆଖିରେ ଦେଲା ଚାହାଣି ନୂଆ ଫଗୁଣ ଉଷା ପାହାନ୍ତି
ଛୋଟ ମୋର ଗାଁଟି
ଝରଣା ତା'ର କଲା ଯେ କବି ନୟନେ ଦେଲା ରୂପର ଛବି
ବୁହାଇ ଦେଲା ସପନ ଢେଉ ପଥର ବୁକେ ନିହାତି
ଛୋଟ ମୋର ଗାଁଟି ।"

ପଲ୍ଲୀର ସକାଳ ଓ ସନ୍ଧ୍ୟାର ଚିତ୍ର କବି ଅତି ଜୀବନ୍ତଭାବେ ଅଙ୍କନ କରିଛନ୍ତି –

"କଅଁଳ ଗଛର କଅଁଳ ପତର
ଫଗୁଣ ପବନ ନାଚିଲା ।
ବାଉଁଶ ଲଟିର ଗହଳ ଛାଇରେ
କିଏ ବସି ମାଳା ରଚିଲା ।"

ଅଥବା –

ଇଷାନ ଆକାଶ ଛାଇ
ଲଘୁ ପଦେ ଆସେ ଧାଇଁ
ଚଇତର ଶୁଭ୍ର ମେଘମାଳା
ଘନ ନାରିକେଳ ଶାଖେ
ବନ ପକ୍ଷୀ କାରେ ଡାକେ
ଝରିପଡ଼େ ଜୋଛନାର ଧାରା ।"

ଗାଁ ଶ୍ମଶାନ କବିଙ୍କୁ ବିଶେଷଭାବେ ମୁଗ୍ଧ କରିଛି । ତେଣୁ ଏହା ତାଙ୍କ କବିତାରେ ସ୍ଥାନ ପାଇଛି । ଶ୍ମଶାନ ପୁଣି ତାଙ୍କର କେବଳ କୁଢ଼ କୁଢ଼ ହାଡ଼, ପାଉଁଶର ଗଦା ନୁହେଁ; ତାହା କାବ୍ୟିକ ବ୍ୟଞ୍ଜନାରେ ଅପୂର୍ବ ଜୀବନ୍ୟାସ ପାଇଛି –

ଗ୍ରାମ ଶେଷେ ଶମଶାନ କୁଢ଼ କୁଢ଼ ହାଡ଼ମାଳ –
ବାଉଁଶ ମାଠିଆ ପୁଣି ଅଙ୍ଗାର ମାଳ
ପାଉଁଶ ବିଭୂତି ବୋଳି ଯୋଗୀ ସମ ଅଛି ପଡ଼ି
ହାତରେ ଧରିଛି ସେ ତ ଖପୁରି ମାଳ ।"

ଗାଁ ମଶାଣି ସମ୍ବନ୍ଧରେ ଗ୍ରାମଲୋକଙ୍କର ଅଦ୍ଭୁତ ବିଶ୍ୱାସ ଥାଏ । ଉଆଁସ ସଂକ୍ରାନ୍ତି ରାତିରେ ବରଗଛରେ ଗୋଡ଼ ମେଲେଇ ଚିରଗୁଣୀ କୁଆଡ଼େ ଏକୁଡ଼ି ଛାଳି ପିଲା ସେକେ । ନଈ ପଠାରେ ପିଚାଶୁଣୀ ଚରି ବୁଲେ । ଏଗୁଡ଼ିକ ଅତି ସୁନ୍ଦର ଭାବରେ ବର୍ଣ୍ଣିତ, ଯଥା –

''ଅଶିଣ ଉଆଁସ ରାତି ଗରଭଣା ସଂକରାନ୍ତି
ନିଶାଗତେ ଡାକିଯାଏ ତରଳ କାକ
× × ×
ଦୁଇ ଗୋଡ଼ ଦେଇ ମେଲି ଶିଶୁରେ ଏକୁଡ଼ି ଜାଳି
ସେକୁଥାଏ ଚିରଗୁଣୀ ବିକଟ ହସି ।''

ଏ ପ୍ରକାର ରୂପାୟନରେ କବିତାଟି ଅତି ବାସ୍ତବବାଦୀ ହୋଇଉଠିଛି ।

ପଲ୍ଲୀ ଜୀବନ ତଥା ପଲ୍ଲୀ ମଣିଷର ଚଞ୍ଚଳତା, ଆଶା-ଆକାଙ୍‌କ୍ଷା ପ୍ରଭୃତିର ଚିତ୍ରଣ ଅତି ନିଖୁଣ ଓ ଜୀବନ୍ତ ହୋଇଛି ।

''ଆଲୋ ହେ ବଉଳ ଫେଇବ କି ନାହିଁ କବାଟ ଆଜି
କାଉ ରାବିଲେଣି ଅଳସ ପହଡ଼
ନାହିଁକି ଭାଜି ?

ସନ୍ଧ୍ୟା ବେଳେ ଯୁବତୀ ବଧୂଟି ପ୍ରବାସୀ ସ୍ୱାମୀପାଇଁ ଦୀପ ଜାଳେ । ତା'ର ରୂପାୟନ –

''ପଣତ ଉହାଡ଼େ ସଞ୍ଜ ଧରି କେବା
ପ୍ରିୟ କଇଲାଣ ମନାସି
ଖଞ୍ଜା ଅଗଣାରେ ତୁଳସୀ ତଳରେ
ଶିରଟି ଯତନେ ବିନ୍ୟାସି
ସଳିତାଟି ରଖେ ତା' ମୂଳେ ।''

ସେହିପରି ପଲ୍ଲୀରେ ଦେଖାଯାଉଥିବା ନାନା ଚରିତ୍ରମାନଙ୍କର ବର୍ଣ୍ଣନା କବି ଅତି ଦକ୍ଷତା ସହକାରେ କରିଛନ୍ତି । ଗାଁ ଗାଁରେ ମହାଜନ, ସରବରାକାର, ଟାଉଟର, ମାମଲତକାର ପ୍ରଭୃତି ଥାଆନ୍ତି । ସେମାନେ ଲୋକଙ୍କୁ ଶୋଷିବାରେ ବ୍ୟସ୍ତ ରହନ୍ତି । ତାହା 'ଛୋଟ ମୋର ଗାଁଟି' କବିତାରେ ରୂପାୟିତ ହୋଇଛି, ଯଥା –

''ସରବରାକାର ଅଗାଧୁ ଷଣ୍ଢ ଗାଧୋଇ ସାରି ଦିଅନ୍ତି ଦଣ୍ଡ
ପୋଷିଲେ ଜଣେ ଶୋଷନ୍ତି ପଣେ କଲମ କାଠି ଛୁଆଁନ୍ତି
ଛୋଟ ମୋର ଗାଁଟି ।
ପ୍ରତାପଶାଳୀ ସାମନ୍ତରାୟ ଗାଁରେ କଲେ ଏମନ୍ତ ରାୟ
ଦେଏଣା ଭାରେ ଚାଷୀ ଯେ ହାୟ ରେଙ୍ଗୁନ ଭୂଇଁ ଧାଆଁନ୍ତି
ଛୋଟ ମୋର ଗାଁଟି ।''

କବି ମଧ୍ୟ ଗାଉଁଲି ଭାଷାରେ ଲଘୁ ହାସ୍ୟରୂପ ପରିବେଷଣ କରିଛନ୍ତି । ତା'ର ଉଦାହରଣ –

"ଚଉକିଦାର ଗୋବରା ଭାଇ
ରାତିଟାଯାକ ନିଦରେ ଶୋଇ
ସକାଳୁ କହେ – ବୁଲାଇ ଦେଲି
ଚୋରକୁ କାଲି ଭୁଆଁଟି
ଛୋଟ ମୋର ଗାଁଟି ।"

ସେହିପରି 'ରେଙ୍ଗୁନ ଯାତ୍ରୀ' କବିତାରେ ହାସ୍ୟରସର ଅବତାରଣା କରାଯାଇଛି ।

"ଶୁଖିଯାଏ ପାଟି ଦେଖୁଚି ତଡ଼ତି
ବଟୁଆରେ ଟିକେ ଏତା
ମୋର ମନଟି ଲାଗୁଛି ପିତା ।"

କବି ପଲ୍ଲୀ ଜୀବନକୁ ଏପରି ନିପୁଣ ଓ ନିଖୁଣ ଭାବରେ ଚିତ୍ରଣ କରିଛନ୍ତି ଯେ ଜଣେ ବିଦେଶୀ ହେଲେ ମଧ୍ୟ ଏହାକୁ ପାଠ କରି ଗାଁ ସମ୍ପର୍କରେ କିଛି ଧାରଣା କରିପାରିବ । ଗାଉଁଲି ଭାଷା ମାଧ୍ୟମରେ ଉପଯୁକ୍ତ ଭାବର ପରିପ୍ରକାଶ କରିପାରିଥିବା ହେତୁ ସଚ୍ଚିଦାନନ୍ଦ ଯେ ପଲ୍ଲୀ କବିର ସମ୍ମାନ ଦାବି କରନ୍ତି, ଏହା ନିଃସନ୍ଦେହରେ କୁହାଯାଇପାରେ ।

**ଅଭିଯାନ**

୧୯୩୮ ମସିହାରେ 'ଅଭିଯାନ' ପ୍ରଥମ ସଂସ୍କରଣର ଭୂମିକାରେ ସଚ୍ଚିଦାନନ୍ଦ ତାଙ୍କ ଆଭିମୁଖ୍ୟ ସମ୍ପର୍କରେ ଲେଖିଥିଲେ –

"ଓଡ଼ିଶାର ଅନ୍ୟାନ୍ୟ ଅନେକ ସାଧାରଣ ଅନୁଷ୍ଠାନ ପରି ଏହାର ସାହିତ୍ୟ ମଧ୍ୟ ପ୍ରତିକ୍ରିୟାଶୀଳ, ରକ୍ଷିତ ଓ ସ୍ୱାର୍ଥମାନଙ୍କ ହାତମୁଠାରେ ନିହିତ । ଫଳରେ ଉତ୍କଳ-ସାହିତ୍ୟରେ ପ୍ରଗତିଶୀଳ ବିପ୍ଳବମୁଖୀ ଚିନ୍ତାଧାରାର ପ୍ରକାଶପାଇଁ କ୍ଷେତ୍ର ଅଭାବ । ଜାତିବିଶେଷର ବିପ୍ଳବାତ୍ମକ ପ୍ରତିଭାପାଇଁ ଉନ୍ମୁକ୍ତ କ୍ଷେତ୍ର ଯୋଗାଇ ନ ପାରିଲେ ଏହାର ସାହିତ୍ୟ ଯେ ଜାତୀୟ ଅଗ୍ରସର ପଛରେ ପଡ଼ିଯିବ, ଏହା ନିଃସନ୍ଦେହ । ତେଣୁ ଓଡ଼ିଶାର ଜାତୀୟ ଜୀବନରେ ନାନା ବିଭାଗରେ ଯେଉଁ ବିପ୍ଳବାତ୍ମକ, ବାମପନ୍ଥୀ ଓ ଅଗ୍ରଗାମୀ ଚିନ୍ତାଧାରାର ସୂଚନା ମିଳୁଛି, ସାହିତ୍ୟରେ ତା'ର ଆଭାଷ ଦେବାପାଇଁ 'ଅଭିଯାନ'ର କବିତାଗୁଡ଼ିକ ଅଭିପ୍ରେତ ।"

ପୁଣି କବି କହିଛନ୍ତି –

"ଧନିକ ଶ୍ରେଣୀର ମନଗଢ଼ା ସମସ୍ତ ଅନୁଷ୍ଠାନ, ଯଥା – ଧର୍ମ, ସମାଜ, ନୀତି, ବିବାହ, ଦେଶପ୍ରେମ, ଶିକ୍ଷା, ସାହିତ୍ୟ, ସଂସ୍କୃତି ଓ ଦେବତା ବିଶ୍ୱାସ ଯେ ସେହି ଗୋଷ୍ଠୀ ବିଶେଷର ସ୍ୱାର୍ଥ ବଜାୟ ରଖିବା ଉଦ୍ଦେଶ୍ୟରେ ପ୍ରତିଷ୍ଠିତ – ବର୍ତ୍ତମାନ ଏ ସତ୍ୟ କହିବାର ସମୟ ଆସିଛି । ପରସ୍ୱଭୋଗୀ, ବୁର୍ଜୋୟା ଶ୍ରେଣୀର ସ୍ୱାର୍ଥସେବୀ ଏହି ସମସ୍ତ ଅନୁଷ୍ଠାନମାନଙ୍କରେ କୁଠାରାଘାତ କରିବାହିଁ 'ଅଭିଯାନ'ର ସର୍ବ ପ୍ରଥମ ଲକ୍ଷ୍ୟ ...।"

ଛାତ୍ର ଜୀବନରୁ ସଚ୍ଚିଦାନନ୍ଦ ରାଜନୀତି ସହିତ ଓତପ୍ରୋତ ଭାବେ ଜଡ଼ିତ ଥିଲେ ବୋଲି ପୂର୍ବରୁ ବର୍ଣ୍ଣିତ । ୧୯୨୮ ମସିହାରେ ଛାତ୍ର ଥିବା ବେଳେ ଯେ ମହାତ୍ମା ଗାନ୍ଧୀଙ୍କ ଆନ୍ଦୋଳନରେ ପ୍ରତ୍ୟକ୍ଷ ଭାବେ ଯୋଗ ଦେଇଥିଲେ । କଲିକତାରେ ଥିଲାବେଳେ ସେ କମ୍ୟୁନିଷ୍ଟ ଦଳ ସହିତ ସମ୍ପୃକ୍ତ ଥିଲେ । ସେ ମଧ୍ୟ ବାମପନ୍ଥୀ ସାହିତ୍ୟ ସଙ୍ଗଠନ, 'ଦୀପକ ସଂଘ' ପ୍ରତିଷ୍ଠା କରିଥିଲେ । ଓଡ଼ିଶାରେ କମ୍ୟୁନିଷ୍ଟ ମତବାଦର ପ୍ରଚାର ଓ ପ୍ରସାରପାଇଁ ଭଗବତୀଚରଣ ପାଣିଗ୍ରାହୀ ଯେତେବେଳେ ଉଦ୍ୟମ କଲେ, ସେତେବେଳେ ସଚ୍ଚିଦାନନ୍ଦ ତାହାଙ୍କୁ ପୂର୍ଣ୍ଣ ସମର୍ଥନ କଲେ । ୧୯୩୬ ମସିହାରେ ସର୍ବଭାରତୀୟ ସ୍ତରରେ ପ୍ରଗତିଶୀଳ ଲେଖକ ସଂଘ ଗଠିତ ହେବାପରେ ଓଡ଼ିଶାରେ ଏହାର ଏକ ଶାଖା ଗଠିତ ହେଲା । ସେଥିରେ ଭଗବତୀ ଚରଣ ପାଣିଗ୍ରାହୀ, ଗୁରୁଚରଣ ପଟ୍ଟନାୟକ ଓ ସଚ୍ଚିଦାନନ୍ଦ ରାଉତରାୟ ସକ୍ରିୟ ଅଂଶ ଗ୍ରହଣ କରିବା ସ୍ୱାଭାବିକ । ସୁତରାଂ 'ପାଥେୟ' ଓ 'ପଲ୍ଲିଶ୍ରୀ' ମଧ୍ୟରେ ତାଙ୍କର ଯେଉଁ ଭାବୋଚ୍ଛ୍ୱାସ ବା କଳ୍ପନାବିଳାସ ଥିଲା, ତାହା ସମ୍ପୂର୍ଣ୍ଣଭାବେ ବଦଳିଗଲା । ଦଳିତ, ଲାଞ୍ଛିତ ଓ ନିତିଦିନିଆ ଜୀବନର ହସ, କାନ୍ଦ, ଆଶା, ଅଭିଳାଷ ହେଲା ତାଙ୍କ କବିତାର ବିଷୟବସ୍ତୁ ।

ପରିବର୍ତ୍ତିତ କାବ୍ୟଧାରା ସମ୍ପର୍କରେ ସଚ୍ଚିଦାନନ୍ଦ ଲେଖିଛନ୍ତି – ''ଭାବପ୍ରବଣତା ଓ ମଧ୍ୟମଶ୍ରେଣୀସୁଲଭ ପ୍ରବଣତାର ତାଡ଼ନାରେ ବର୍ତ୍ତମାନ ଲେଖକମାନେ ସାହିତ୍ୟ ସୃଷ୍ଟି କରୁଥିବାରୁ ସାହିତ୍ୟ ବାସ୍ତବ ଜୀବନଠାରୁ ସାମଞ୍ଜସ୍ୟ ହରାଉଛି । ଜୀବନ ସଂଗ୍ରାମର ସମ୍ମୁଖୀନ ହେବାପାଇଁ ଯେଉଁ ସାହସ ଦରକାର, ତାହା ଏହି ସାହିତ୍ୟରେ ନାହିଁ । ଏହା ପଳାୟନ ତତ୍ପର, ଭୀରୁ ସାହିତ୍ୟ ।''

ସାହିତ୍ୟ ଓ ଅର୍ଥନୀତି ମଧ୍ୟରେ ସଂଯୋଗ ଥିବା ଦର୍ଶାଇ ସେ କହିଛନ୍ତି – ''ସାହିତ୍ୟ ସାମସମୟିକ ଆର୍ଥନୀତିକ ଅବସ୍ଥାଦ୍ୱାରା ନିର୍ଣ୍ଣୀତ ହେବାକୁ ବାଧ୍ୟ । କାରଣ ଅନ୍ୟାନ୍ୟ ଜିନିଷ ଭଳି ସାହିତ୍ୟ ମଧ୍ୟ ଆର୍ଥନୀତିକ ଶକ୍ତିର ସମନ୍ୱୟରୁ ଉଦ୍ଭବ । ବର୍ତ୍ତମାନ ଗୋଟିଏ ଆଡ଼େ ଉତ୍ପାଦକ ଶ୍ରେଣୀ ଓ ଅନ୍ୟ ଆଡ଼େ ଶୋଷକ ବୁର୍ଜୋୟାଗଣ । ଏହି ଶ୍ରେଣୀର ସଂଘର୍ଷ ଆର୍ଥନୀତିକ ଜଗତର ଯେପରି ସତ୍ୟ – ଚିନ୍ତାଜଗତରେ ମଧ୍ୟ ସେହିପରି ସ୍ପଷ୍ଟ । ସାହିତ୍ୟ ଏହି ଶ୍ରେଣୀୟ ସଂଘର୍ଷରେ ଯଦି ଜନସାଧାରଣଙ୍କୁ ସାହାଯ୍ୟ ନ କରେ, ତେବେ ଏହାର କୌଣସି ମୂଲ୍ୟ ରହିବ ନାହିଁ ।''

ଓଡ଼ିଆ ସାହିତ୍ୟରେ ଗତିଶୀଳତା ବହୁକାଳରୁ ଅଭିଜାତ ଓ ମଧ୍ୟମସୁଲଭ ଭାବପ୍ରବଣତା, ରହସ୍ୟବାଦ ପ୍ରଭୃତିଦ୍ୱାରା ମନ୍ଥର ହୋଇଯାଇଥିବାରୁ କବି ରାଉତରାୟ କ୍ଷୋଭ ପ୍ରକାଶ କରିଛନ୍ତି । ସେ ସାହିତ୍ୟରେ ବିପ୍ଳବାତ୍ମକ ପରିବର୍ତ୍ତନ ଆଣିବାପାଇଁ ପ୍ରୟାସୀ ହୋଇଛନ୍ତି ।

'ଶ୍ରମିକ କବି' ତାଙ୍କର ଏଇ ଧରଣର କବିତା । ଏଥିରେ ସେ ରୋମାଣ୍ଟିକ୍ ଭାବଧାରାକୁ ତୀବ୍ର ବ୍ୟଙ୍ଗ କରି ଗାଇଛନ୍ତି –

''ରୂପ-ସଉକ ମୁଁ ତେଜିଛି ଆଜିରେ ଭୁଲିଛି ସପନ ଗତେ
କଳ୍ପନା ଛାଡ଼ି ଚାଲିବି ଆଜି ମୁଁ ସହଜ ଜୀବନ ପଥେ ।''

ସେହିଭଳି 'ଦୁଇ ପଥ' କବିତାରେ ପ୍ରେମ, ପ୍ରଣୟ, ସ୍ୱପ୍ନ ପ୍ରଭୃତି ଛାଡ଼ି କବି ରୁକ୍ଷ, ବାସ୍ତବବାଦୀ ହେବାକୁ ଚାହିଁଛନ୍ତି –

''ତମ ପାଇଁ ସଖୀ ସାଇତା ହୋଇଛି ଫଗୁଣର ମହୁ ଫୁଲହାର
ମୋ ପାଇଁ ରହିଛି କଳାପାଣି ଆଉ ଅସୀମ କଷଣ କାରାଗାର ।।

× × ×

ମୋ ମୁଖେ ଚାହିଁଛି ଦାଆ ଓ ହାତୁଡ଼ି ଭାଷା ମାଗେ ମୋତେ ମୂକ ଛବି
ଧରଣୀରେ ଯେତେ ଦୀନ ଓ ଦଳିତ ମୁହିଁ ପରା ତା'ର ସଭା କବି ।''

ଏହି ସମୟରେ କବିଙ୍କର ମୋକ୍ଷ ବଦଳରେ ରୁଟି କାମ୍ୟ ହୋଇଛି । ତାହା 'ରୁଟି' କବିତାରେ ପ୍ରତିଫଳିତ ।

''ଦୈନ୍ୟ ଯାତନା ଅଭାବେ ଡାକୁଛୁ – ଅଛ ଯଦି ଭଗବାନ୍
ଦୁନିଆର ଏହି ଜୀଅନ୍ତା ନରକୁ କର ବେଗେ ପରିତ୍ରାଣ
ଲୋଡୁନା ମୋକ୍ଷ ଚିର
ଲୋଡୁଛନ୍ତି ଖାଲି ବକଟେ ରୁଟି ନୋହିଲେ ମୃତ୍ୟୁ ବର ।''

କବି ପୃଥିବୀର ସାମସମୟିକ ଘଟଣାକୁ ଅତି ଉଗ୍ର ଭାବରେ ବର୍ଣ୍ଣନା କରିଛନ୍ତି 'ସ୍ପେନ' କବିତାରେ –

''ଆକାଶେ ତାହାର ହୁଂକାର ଆଜି ଝଡ଼ର ଶିଙ୍ଗା ବାଜେ
ତାହାରି ମାଟିରେ ବିପ୍ଲବୀ ମନ ଭୈରବ ରସେ ସାଜେ
କୂଳେ କୂଳେ ତା'ର ଶୁଭୁଚି ଆଜି ଯେ ନବ ଜୀବନର ଗୀତା
ଅତୀତର ଶବ ଜଳିଯାଏ ତହିଁ, ହସେ ଶମଶାନ ଚିତା ।''

ଉଗ୍ରରୁ ଉଗ୍ରତର ଆଉ ଏକ କବିତା 'ହାତୁଡ଼ି', ଯଥା –

''ଜାଗ ଦୁନିଆର ମଜଦୁର ଜାତି
ଭୁଲିଯାଅ ଭୟବାଦ
କାନ୍ଧ କୋଦାଳ ଦାଆ କର ଠୁଳ
ଶୁଣରେ ମନ୍ତ୍ର ସ୍ୱର
ହାତୁଡ଼ି ଡାକୁଛି ନିହାଣକୁ ଚାହିଁ
କାରଖାନା ଥରହର

× × ×

ବଜ୍ର ନିନାଦେ ଗର୍ଜି ଉଠୁଛି
ଅୟୁତ ହାତର ବଳ
ଏକଜୁଟ ହୁଅ ଏକଜୁଟ ହୁଅ
କଙ୍କାଳ ସେନା ଦଳ ।''

ପୁରାତନକୁ କବର ଦେବାକୁ କବି ଆହ୍ୱାନ ଦେଇଛନ୍ତି । ଏପରିକି ଏଥିପାଇଁ ସର୍ବନାଶର ଯାତ୍ରୀ ହେବାକୁ କବି କୁଣ୍ଠିତ ହୋଇ ନାହାନ୍ତି । 'ସର୍ବନାଶର ପଥେ' କବିତାରେ ତାହା ରୂପାୟିତ ହୋଇଛି –

''ଆମେ ତ ଭାଇ ସର୍ବନାଶର ଯାତ୍ରୀ
ଆସିଅଛୁ ଆମେ ଅଗ୍ନି-ଧୌତ ପଥେ
ନିଭାଇଛୁ ଆମେ ଫୁକାରେ ଅମାରାତ୍ରି
ପତାକା ଆମର ରଞ୍ଜିତ ନିଜ କ୍ଷେତେ
ଆମେରେ ଜାଳିବୁ ପୁରାତନ ଶିରେ ନିଆଁ
ଧ୍ୱଂସ କରିବୁ ଅତୀତର ପ୍ରତିକ୍ରିୟା ।''

ମୃତ୍ୟୁକୁ ମଧ୍ୟ କବି ଭୟ କରି ନାହାନ୍ତି । ବରଂ ଅମୃତ ବୋଲି ମନେ କରିଛନ୍ତି । 'ଶିଙ୍ଗା' କବିତାର ଦୁଇଟି ପଂକ୍ତି –

''ବୈଶାଖୀ ସେ ଝଞ୍ଜା ଡାକେ
ଦୂର୍ଣ୍ଣ ବେଗେ ଉଲ୍‌କା ନାଚେ
ମୁକ୍ତିଭାଇ ଦୁନିଆରେ ତୋର
ଅମୃତ କି ମୁକ୍ତି ଯାଚେ ।
ଉଠରେ ଆଜି ବଜ୍ର ତେଜେ
ଅଶନି ଭଳି ପୁଲକେ ଜଳି
ବିଷାଣ ତୋର ଟେକୁରେ ଶିର
ସମ୍ମୁଖର ଶଙ୍କ ତୋଳି ।''

'ଭାତ' ଗୋଟିଏ ଉଗ୍ର ସାମ୍ୟବାଦୀ କବିତା । ଏହି କବିତାଟି କବିଙ୍କ କେତୋଟି କବିତା ସହ ୧୯୩୯ ମସିହାରେ 'ରକ୍ତଶିଖା' ନାମକ ପୁସ୍ତକରେ ପ୍ରକାଶ ପାଇଥିଲା । କିନ୍ତୁ ବ୍ରିଟିଶ ସରକାରଙ୍କଦ୍ୱାରା ଏହି ପୁସ୍ତକ ବାଜ୍ୟାପ୍ତ ହୋଇଥିଲା । ଏହାକୁ ପ୍ରକାଶ କରିଥିଲେ କଟକର ଶ୍ରୀପ୍ରେସ । ତାହା ଉପରେ ୧୦୦୦ଟଙ୍କା ଜୋରିମାନା ମଧ୍ୟ ହୋଇଥିଲା । ସେତେବେଳେ ଓଡ଼ିଶାରେ କଂଗ୍ରେସ ମନ୍ତ୍ରିମଣ୍ଡଳ ମଧ୍ୟ ଥିଲା । କବିତାଟିର ଗୋଟିଏ ପଂକ୍ତି –

''ବଡ଼ ଭୋକ ବାବୁ ! ବଡ଼ ଭୋକ ଆଜି ଖାଇବାକୁ ଦିଅ ଭାତ
ହକ ପାଉଣାଗଣ୍ଡାକ ପାଇଁ କେତେ ବି ପାତିବୁ ହାତ ?
ଯେଉଁ ଧାନ ଆମେ ବୁଣିଲୁ କାଟିଲୁ ସେହି ଧାନ ଦିଅ ଆଣି
ପୀଡ଼ିତ ଆତ୍ମା ଗର୍ଜି ଉଠଇ ଶୁଣ ତା' ବିପୁଳ ବାଣୀ ।''

'ବିପ୍ଳବର ଜନ୍ମଦିନେ', 'ତୁମ୍ଭେ ମାର ଯେତେ ଆଜି ମାରିବ' ମଧ୍ୟ ଦୁଇଟି ଉଗ୍ର ବିପ୍ଳବାତ୍ମକ କବିତା । ଏହା ପ୍ରଥମେ 'ରକ୍ତଶିଖା'ରେ ପ୍ରକାଶିତ ହୋଇଥିଲା । ଗଡ଼ଜାତ ଶାସନ ଯେ ଅଚିରେ ଲୋପ ପାଇବ, କବି ସେ କଥା ଏହି କବିତା ଦ୍ୱୟରେ ଘୋଷଣା କରିଥିଲେ –

''ତୁମ୍ଭେ ମାର ଯେତେ ମାରିବ
ଜଳ ଜଳ ଜଳ ଭଲ କରି ଜଳ
ଚାରିଆଡ଼େ ଜଳେ ଆଜି ଦାବାନଳ
ଝରିପୋକ ପରି ତୁମ୍ଭେ ଦଳ ଦଳ ।''

'ନାଲ୍ ନଭେମ୍ବର' ସେହିପରି ଆଉ ଏକ ଉଗ୍ର ସାମ୍ୟବାଦୀ କବିତା । ଏହା ୧୯୪୩ ମସିହାରେ 'ଉଠ, ଜାଗ ଭୋଗୀ, ବନ୍ଦୀ' ନାମକ ଏକ କବିତା ସଙ୍କଳନରେ ପ୍ରକାଶ ପାଇଥିଲା । ତାହା ମଧ୍ୟ ସରକାରଙ୍କଦ୍ୱାରା ବାଜ୍ୟାପ୍ତ ହୋଇଥିଲା ।

'ଅଭିଯାନ' ଗ୍ରନ୍ଥରେ ମାର୍କସୀୟ ଭାବଧାରା ସ୍ପଷ୍ଟ ଅନୁଭବ କରିହୁଏ । ଏଥିରେ ସେ ସାମ୍ୟବାଦୀ ଦର୍ଶନର ଚିନ୍ତାଧାରାକୁ ଅତି ନିର୍ଭୀକ ଭାବରେ ଉପସ୍ଥାପିତ କରିଛନ୍ତି । ଏଥିରେ କେତେକ ସଫଳ କବିତା ଥିଲେ ମଧ୍ୟ କବି ତାଙ୍କର ଚିନ୍ତାଧାରାକୁ ଅତି ଉଗ୍ର ଭାବରେ ପ୍ରକାଶ କରିଥିବାରୁ ସେଗୁଡ଼ିକର ସାହିତ୍ୟିକ ମର୍ଯ୍ୟାଦା ଯେ ବହୁ ପରିମାଣରେ ହ୍ରାସ ପାଇଛି ଏଥିରେ ସନ୍ଦେହ ନାହିଁ ।

**ସମାଲୋଚନା**

କବି ରାଉତରାୟ କେତେକ ଉଗ୍ରବାଦୀ କବିତା ଯୋଗୁଁ ଘୋର ସମାଲୋଚନାର ଶରବ୍ୟ ହେଲେ । ଔପନ୍ୟାସିକ ଗୋପୀନାଥ ମହାନ୍ତି 'ଗଣ ସାହିତ୍ୟ' ଶିରୋନାମରେ କବିଙ୍କ ସୃଷ୍ଟି ସମ୍ଭାରକୁ 'ଘଡ଼ଘଡ଼ି' କବିତା ବୋଲି କହିଲେ । ରୋମାଣ୍ଟିକ କବି ବିନୋଦ ଚନ୍ଦ୍ର ନାୟକ ସଚ୍ଚିରାଉତରାଙ୍କ କବିତାକୁ ଲକ୍ଷ୍ୟ କରି ଲେଖିଲେ ଯେ କବିତା ବା ସାହିତ୍ୟର ଉଦ୍ଦେଶ୍ୟ ହେଲା ଜୀବନକୁ ସୌନ୍ଦର୍ଯ୍ୟମୟ କରିବା – ଯାହାକୁ କି ରାଉତରାୟ ଗ୍ରହଣ କରି ନାହାନ୍ତି । ଏହାକୁ ମାନ୍ଧାତା ଅମଳର ସାହିତ୍ୟ ବୋଲି ପରିତ୍ୟାଗ କରିଛନ୍ତି । ସାହିତ୍ୟକୁ ଜୀବନର ପ୍ରତିବିମ୍ବ ନ କହି ଜୀବନ ସଙ୍ଗଠକ ବୋଲି ବିବେଚନା କରିଛନ୍ତି । ଶ୍ରମିକମାନେ ସାହିତ୍ୟକୁ କଠିନ ହାତୁଡ଼ି ପରି ବ୍ୟବହାର କରିବାକୁ ପଶ୍ଚାତ୍‌ପଦ ହୋଇ ନ ଥିବା ମନ୍ତବ୍ୟ ଦେବା ବାସ୍ତବିକ ଦୁଃଖଦାୟକ । ସାମ୍ୟବାଦରେ ବିଶ୍ୱାସ କରୁଥିବା କବି ମନମୋହନ ମିଶ୍ର ମଧ୍ୟ କହିଥିଲେ – ''ପ୍ରଗତି ଭଉଁରିରେ ପଡ଼ି କବି ଶ୍ରୀଯୁକ୍ତ ରାଉତରାୟ ନଷ୍ଟ ହେବାରେ ଲାଗିଛନ୍ତି ।'' ତେବେ ନାରୀନେତ୍ରୀ ସରଳାଦେବୀ କବିଙ୍କ ପ୍ରଶଂସା କରିବାକୁ ଆଗେଇ ଆସିଥିଲେ । ତାଙ୍କର ବକ୍ତବ୍ୟ – ''ତାଙ୍କର (ସଚ୍ଚିଦାନନ୍ଦ ରାଉତରାୟ) ପ୍ରତ୍ୟେକ କବିତା ପଛ ଆଡ଼େ ରହିଚି ବିପ୍ଳବର ଦ୍ୟୋତନା, ଉଗ୍ର ଚେତନାର ଦୀପ୍ତ ପ୍ରବାହ, ତାରୁଣ୍ୟର ରଣ ବିଷାଣ ।''

ସଚ୍ଚିଦାନନ୍ଦଙ୍କ କବିତାଗୁଡ଼ିକ ସାହିତ୍ୟର ଗନ୍ତାଘରେ ଚିରନ୍ତନ ରତ୍ନରୂପେ ବିରାଜମାନ କରିବ ବୋଲି ସେ ମତ ଦେଇଥିଲେ ।

**ବାଜିରାଉତ**

ଗଡ଼ଜାତ ଆନ୍ଦୋଳନର ପଟ୍ଟଭୂମିରେ ରଚିତ କବିଙ୍କ ବିସ୍ମୟୋଦ୍ଦୀପକ ସୃଷ୍ଟି – ବାଜିରାଉତ ।

ତା'ର ପ୍ରାରମ୍ଭିକ ପଂକ୍ତି –

''ନୁହେଁ ବନ୍ଧୁ ନୁହେଁ ଏହି ଚିତା
ଏ ଦେଶ ତିମିର ତଳେ
ଏ ଅଲିଭା ମୁକତି ସଳିତା
ନୁହେଁ ଏହା ଜଳିଯିବା ପାଇଁ
ଏହାର ଜନମ ଏଥି ଜାଳି ପୋଡ଼ି ଦେବାକୁ ଧସାଇ ।''

କାବ୍ୟଗ୍ରନ୍ଥଟି ପାଞ୍ଚୋଟି ଭାଗରେ ବିଭକ୍ତ । ପ୍ରଥମ ଭାଗରେ କବି ଦର୍ଶାଇଛନ୍ତି ଯେ ବାଜିରାଉତ ହଳଦିଘାଟରୁ ବଳି ଇତିହାସ ଗଢ଼ି ଯାଇଛି । ମୃତ୍ୟୁ ତାକୁ ଛୋଟ କରି ପାରିନି । ଶ୍ମଶାନ ହୋଇଯାଇଛି ତୀର୍ଥ । ତା'ର ଶବାଗାର ହୋଇପଡ଼ିଛି ଦେବାଳୟ ।

''ଗଢ଼ିଲା ସେ ହାଡ଼ମାଁସେ
ନିଶ୍ୱାସରେ ଦେଲା ଜୀବନ୍ୟାସ
ହଳଦିଘାଟ ଠୁଁ ବଡ଼ ଗଢ଼ିଗଲା
ଦେଶ ଇତିହାସ ।''

ପୁଣି

''ମରଣ ପାରିଲା ନାହିଁ କଦାପି ତ
ତାକୁ ଛୋଟ କରି
ଶମଶାନ କଲା ତୀର୍ଥ
ଦେବାଳୟ ହେଲା ଶବାଗାର।''

ଏଥି ସହିତ କବି ବର୍ତ୍ତମାନ ମଣିଷର ଦୁଃଖ, ଦୈନ୍ୟ ଓ ଶୋଷଣର ଚିତ୍ର ଦେଇଛନ୍ତି, ଯଥା –

''ଆଜି ଏହି ସୁନ୍ଦରର ପଥ
ମଳିନର ହ୍ରେଷାରବେ ହୋଇଅଛି ରୁଦ୍ଧ, ପ୍ରତିହତ
ଶୋଷଣର ନିର୍ମମ ସ୍ୟନ୍ଦନ
ପିଷ୍ଟକରେ ଜୀବନର ଲତାୟିତ ଚାରୁ ପଦ୍ମବନ
ଅନଶନେ ଅନଟନେ ଶତ
ମଣିଷ ପାସୋରି ଅଛି ସତ୍ୟ ଶିବ ସୁନ୍ଦରର ପଥ ।''

ଦ୍ୱିତୀୟ ଭାଗରେ କବି ବାଜିରାଉତର ଆତ୍ମା ପ୍ରତି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିଛନ୍ତି । ଭବିଷ୍ୟତ୍‌ରେ ସେହି ବିପ୍ଳବୀ ବୀର ପୁଣି ଏହି ଧୂଳି-ଧୂସରିତ ଧରାରେ ଜନ୍ମଗ୍ରହଣ କରିବ ବୋଲି ଆଶା ପ୍ରକାଶ କରିଛନ୍ତି, ଯଥା –

''ଏ ଧରାର ଭଗ୍ନ ମନ, ଚୂର୍ଣ୍ଣ ଆଶା
ବିଦୀର୍ଣ୍ଣ ପଞ୍ଜରେ
ତୁମ୍ଭେ ଯେ ଭୂମିଷ୍ଠ ହେବ, ଚିରଜୀବୀ
ଜନ୍ମ ଜନ୍ମାନ୍ତରେ
ଅତିକ୍ରମି ଲକ୍ଷ ତ୍ରୁଟି, ବନ୍ଧନର ଶତ ଅନ୍ଧକୂପେ ।''

ତୃତୀୟ ଭାଗରେ କବି ବାଜି ରାଉତର କ୍ଷୁଦ୍ର ଦେହକୁ ସାଇତି ରଖିବାକୁ କହିଛନ୍ତି । ପୁଣି ମଶାଣି ଭୂଇଁରେ ମଥା ନୁଆଁଇ ଭକ୍ତି ଅର୍ଘ୍ୟ ବାଢ଼ିଦେବାକୁ ଓଡ଼ିଶାବାସୀଙ୍କୁ ନିବେଦନ କରିଛନ୍ତି –

''ଛିଡ଼ା ହୁଅ ବାରେକେ ବାଟୋଇ
ଏଇ ପଥ ପାଶେ ସେ ଯେ
ଅଭିମାନେ ପଡ଼ିଅଛି ଶୋଇ ।''

ପୁଣି

''ବାରେ ମଥା କରି ନତ
ଏ ଯେ ମହା ତୀର୍ଥ ଭୂଇଁ
ନୁହେଁ ଏହା ଖାଲି ରାଜପଥ ।
ଏଇଠି ଶୋଇଚି ସେ ଯେ, ଅଭିମାନେ
ଧୂଳି ଶେଯ ତଳେ
ଟିକି ଦେହେ ଦେଖ ତା'ର
ଦାବାନଳ ଜଳେ ।''

ବାଜି ରାଉତ ମୃତ୍ୟୁ ଠାରୁ ବଡ଼ ହୋଇଯାଇଛି । କବିଙ୍କ ଭାଷାରେ –

''ଭୁଲ ନାହିଁ ତା'ରେ
ମୃତ୍ୟୁଠାରୁ ସେ ଯେ ବଡ଼,
ଜୀବନର ଅମର ସତ୍ତାରେ
ଦରଭୁଲା ପଦ-ଧୂଳି ତା'ର
ଆମରି ପଥର ଛନ୍ଦେ ଆଜି ବାରେ କର ସୀଉକାର ।''

ଚତୁର୍ଥ ଭାଗରେ କବି ଆଜିର ସ୍ୱପ୍ନଜୀବୀ କବିମାନଙ୍କୁ ବାଜି ରାଉତର କରୁଣ ମୃତ୍ୟୁରେ ଅଶ୍ରୁ ବିସର୍ଜନ କରିବାକୁ ନିବେଦନ କରିଛନ୍ତି, ଯଥା –

''ବହୁ ଦିନ ତଳେ
କିରାତର ଶରବିଦ୍ଧ ବନପକ୍ଷୀ କରୁଣ ଦୁଃଖରେ
କାନ୍ଦିଥିଲା ବାରେ
× × ×
ଆଜି ଏ ମଣିଷର ଶିଶୁ
ପଡ଼ିଛି ଭୂଇଁରେ ଲୋଟି ଅସହାୟ ମରଣର ବିଷୁ
ଶର କି ଗଲାଣି ସରି
କବି ତମ ନୟନ ତୂଣୀରୁ
ବ୍ୟଥାର କରୁଣ ଲିପି
ହରାଇଲ ଆଜି କି ବାଣୀରୁ ?''

ସେମାନଙ୍କୁ କବି କହିଛନ୍ତି ପଳାୟନପନ୍ଥୀ । ସେମାନଙ୍କୁ ବିଦ୍ରୂପ କରିଛନ୍ତି –

''ଆରେ ଆରେ ପଳାୟନପନ୍ଥୀ
ପଳାଇବୁ ଆଜି କାହିଁ
ଛିନ୍ନ କରି ଧରଣୀର ଗ୍ରନ୍ଥି ?
ଲୁଚିବୁ କି କାହିଁ ?
ମୃତ୍ତିକାର ଏତେ ଦାବି
ପାରିବୁ କି ଆଜି ତୁ କଟାଇ ?''

କେବଳ ସେତିକି ନୁହେଁ; ପ୍ରେମ, ପ୍ରଣୟ, ସ୍ୱପ୍ନ, ଜ୍ୟୋତ୍ସ୍ନା, ଚକୋର ପ୍ରଭୃତିର ନିଗଡ଼ ବନ୍ଧନରୁ ମୁକ୍ତ କରି ମଣିଷ ଜୀବନର ସୁଖ, ଦୁଃଖ, ଆଶା, ନିରାଶା, ଅନ୍ଧାର ପ୍ରଭୃତିକୁ ନେଇ କବିତା ରଚନାରେ ବ୍ରତୀ ହେବାକୁ ସେ କବିମାନଙ୍କୁ ଆହ୍ୱାନ କରିଛନ୍ତି।

କାବ୍ୟଗ୍ରନ୍ଥର ପଞ୍ଚମ ଭାଗରେ କବି ବାଜି ରାଉତର ଶୋକସନ୍ତପ୍ତା ଜନନୀଙ୍କୁ ସାନ୍ତ୍ୱନା ଦେବାକୁ ଯାଇ କହିଛନ୍ତି ଯେ ତାଙ୍କ ପୁତ୍ରର ଜୟଗାନ ଆଜି ସାରା ବିଶ୍ୱବାସୀ କରୁଛନ୍ତି । ଯିଏ ତାଙ୍କର ଥିଲା, ସେ ମରି ମଧ୍ୟ ଅମର ହୋଇଛି । ସେସବୁ ମଣିଷ ଜାତିର ସମ୍ପତ୍ତିରେ ରୂପାନ୍ତରିତ ହୋଇଛି । ସବୁ ଦିନ ପାଇଁ ତା'ର ସ୍ମୃତି ଜାଗରୂକ ହୋଇ ରହିବ । ସେ କେବଳ ଜଣଙ୍କର ପୁଅ ନୁହେଁ, ଜନତାର ଏକ ଶୁଭ ଅନୁଷ୍ଠାନରେ ପରିଣତ ହୋଇଯାଇଛି ।

''ତାହାର ଅଭୁଲା ସ୍ମୃତି ଏ ଦେଶର
ପ୍ରତି ମନେ ଖେଳେ
ଜୟେ ସେହି ଦିଏ ଦମ୍ଭ
ପରାଜୟେ ହୋଇଯାଏ ଆଶା

ସେ ନୁହେଁ ତମରି ଖାଲି
 ସେ ଯେ ମାତା ବିଶ୍ୱର ପିପାସା
ସେ ନୁହେଁ ତମରି ସନ୍ତାନ
 ସେ ଯେ ଚିର ମୁକ୍ତି-ବୀଜ
 ଜନତାର ଶୁଭ ଅନୁଷ୍ଠାନ ।''

କବିଙ୍କ ସାମ୍ୟବାଦର ସ୍ୱର ଏଥିରେ ଚୂଡ଼ାନ୍ତ ପର୍ଯ୍ୟାୟକୁ ଉନ୍ନୀତ ହେବା ସଙ୍ଗେ ସଙ୍ଗେ କଳାଗତ ଚରମ ଉତ୍କର୍ଷ ଏଥିରେ ପରିଲକ୍ଷିତ ହେଉଥିବାରୁ ଏହା କବିଙ୍କ ଶ୍ରେଷ୍ଠ କୃତି ବୋଲି ଗଣ୍ୟ ହୁଏ ।

ବିଶିଷ୍ଟ ଆଲୋଚକ ଡଃ ନିତ୍ୟାନନ୍ଦ ଶତପଥୀଙ୍କ ମନ୍ତବ୍ୟ ଏ ସଂକ୍ରାନ୍ତରେ ଉଲ୍ଲେଖଯୋଗ୍ୟ –

''ମାର୍କ୍ସବାଦୀ ଶୋଷଣର ବିନାଶ ଓ ଚାଷୀ ମୂଲିଆର ରାଜୁତି ଉପରେ ସଚ୍ଚିଦାନନ୍ଦ ବିଶ୍ୱାସ କରନ୍ତି । ତାଙ୍କ କବିତାରେ ତେଣୁ ଏହି ଉତ୍ତରଳ ବିଦ୍ରୋହର ବାର୍ତ୍ତା ଅତ୍ୟନ୍ତ ସୁଲଭ । 'ବାଜି ରାଉତ' କାବ୍ୟହିଁ ଏହାର ଚରମ କଳାଗତ ପରିଣତି ବୋଲି ମାନିନେବାକୁ ହେବ ।''

'ବାଜି ରାଉତ' ଗ୍ରନ୍ଥ ପବିତ୍ର ପୁରାଣ ତଥା ଧର୍ମଶାସ୍ତ୍ର ପରି ଏ ଜାତିର ଉପାସ୍ୟ ବୋଲି 'ଡଗର' ସମ୍ପାଦକ ବିଶିଷ୍ଟ ସାହିତ୍ୟିକ ଲକ୍ଷ୍ମୀକାନ୍ତ ମନ୍ତବ୍ୟ ଦେଇଥିଲେ ।

ଆଉ ଜଣେ ବିଶିଷ୍ଟ ଶିକ୍ଷାବିତ୍ ଡଃ ପ୍ରାଣକୃଷ୍ଣ ପରିଜାଙ୍କ ମତରେ ସଚ୍ଚି ରାଉତରାୟ 'ବାଜି ରାଉତ'କୁ ମାନବିକ ପ୍ରେମ ଓ ତ୍ୟାଗର ଚିରନ୍ତନୀ ପରମ ନିଦର୍ଶନ ଭାବେ ତୋଳିଛନ୍ତି ।

ଆଲୋଚକ ଡଃ ମଥୁରାନନ୍ଦ ହୋତାଙ୍କ ମତରେ 'ବାଜି ରାଉତ' କବିତାଗ୍ରନ୍ଥ ପ୍ରତ୍ୟକ୍ଷ ବିପ୍ଳବର ସ୍ରଷ୍ଟା । ଢେଙ୍କାନାଳ ପ୍ରଜାମଣ୍ଡଳ ଆନ୍ଦୋଳନକାରୀଙ୍କଦ୍ୱାରା ତାହା ଦୀପ୍ତ କଣ୍ଠରେ ଗାନ କରାଯାଉଥିଲା । ସେ ଯାହାହେଉ, 'ବାଜି ରାଉତ' କବି ସଚ୍ଚିଦାନନ୍ଦ ରାଉତରାୟଙ୍କର ଏକ ଅନବଦ୍ୟ ସୃଷ୍ଟି । ଏହାଦ୍ୱାରା ସେ ବିପ୍ଳବାତ୍ମକ କବି ଭାବେ ସମସ୍ତଙ୍କର ସ୍ୱୀକୃତି ଲାଭ କଲେ ।

**ପାଣ୍ଡୁଲିପି**

ଏଥିରେ ସର୍ବମୋଟ ୨୯ଟି କବିତା ସ୍ଥାନ ପାଇଛି । ରଚନାର ପରିସର ହେଉଛି ୧୯୩୪ରୁ ୧୯୪୬ ମସିହା । ସେଥିମଧ୍ୟରୁ ୨୭ଟି କବିତାରେ ମାର୍କ୍ସୀୟ ଭାବ ପ୍ରକାଶ ପାଇଛି ।

କବି ନାନ୍ଦୀମୁଖରେ ତାଙ୍କର ଆଭିମୁଖ୍ୟ ସ୍ପଷ୍ଟ କରିଛନ୍ତି –

''ତେଣୁ ମଣିଷର ସବୁ କ୍ଷେତ୍ରରେ ଅଗ୍ରଗତିର ପଦ ଚିହ୍ନ ଯେଉଁ କବିତା ଭୃଗୁପାଦ ପରି ନିଜ ବକ୍ଷରେ ଧାରଣ କରିପାରି ନାହିଁ, ତାହା ଖାଲି ସ୍ଥିତିଶୀଳ ନୁହଁ,

ପ୍ରତିକ୍ରିୟାଶୀଳ ମଧ୍ୟ । ମଣିଷର ଦ୍ରୁତ ଅଗ୍ରଗାମୀ ଜୀବନ ଦର୍ଶନର ପ୍ରତିନିଧିତ୍ୱ କରିବାର ଅଧିକାର ତା'ର ନାହିଁ । କାରଣ ତାହା ଅନଗ୍ରସର, ତାହା ସ୍ଥାଣୁ । ଜୀବନର ପ୍ରଗତି ସହ ତା'ର କୌଣସି ମେଳ ନାହିଁ ।''

କବି କାହା କଥା କହିବାପାଇଁ ଚାହାନ୍ତି, ତାହା ସେ 'କବିତାର ଜବର' କବିତାରେ ସ୍ପଷ୍ଟ କରିଦେଇଛନ୍ତି –

''ଧରଣୀର ରାଜପଥେ ଚାଲୁ ଚାଲୁ ପଥଚାରୀ ମୁହିଁ
ଯେ ବ୍ୟଥା ବାଜୁଛି ବୁକେ ମଣିଷର ଅପମାନ ଛୁଇଁ ।
ତାକୁଇ ଦେଇଛି ବାଣୀ, କହିଛି ଯେ ସାଧାରଣ କଥା
ଭାଷାର କପଟ ଜାଲେ, ରଚି ନାହିଁ ମାୟାଜାଲ କଥା ।''

କବି ନିଶ୍ଚିତଭାବେ ସାମ୍ୟବାଦୀ ସମାଜ କାମନା କରନ୍ତି । ତାହାର ପ୍ରବର୍ତ୍ତନ ନିମନ୍ତେ ସେ ବିପ୍ଳବକୁ ନିମନ୍ତ୍ରଣ କରିଛନ୍ତି । ବିପ୍ଳବ ହେଉଛି ଏକ ଝଡ଼ – ଯାହାକି ପୁରାତନ ବ୍ୟବସ୍ଥାକୁ ଭାଙ୍ଗି ଚୂରମାର କରିଦେବ । କବି ସେହି ବିପ୍ଳବରୂପକ ଝଡ଼କୁ ସ୍ୱାଗତ କରିଛନ୍ତି । 'ଝଡ଼' କବିତାରେ କବି ତାହା କହିଛନ୍ତି –

''ଏଇ ଯେ ଆସୁଛି ଝଡ଼
କର ସଖୀ ତା'ର ନମସ୍କାର
ତା' ପାଖେ ପ୍ରଣତି ବାଢ଼େ
ଗିରି, ବନ, ନଦୀ, ପାରାବାର ।''

ସେ ପୁଣି ଚେତାବନୀ ଦେଇଛନ୍ତି –

''ମୁକ୍ତ କର ବାତାୟନ
ଭୀରୁ ! ଆଜି କିଳ ନାହିଁ ଦ୍ୱାର,
ଏଇ ଯେ ଆସୁଛି ଝଡ଼
କର ପ୍ରିୟେ ତା'ର ନମସ୍କାର ।''

କବି ଅତୀତକୁ ହେୟ ଦୃଷ୍ଟିରେ ଦେଖିଛନ୍ତି । ସାମସମୟିକ ସାହିତ୍ୟିକମାନଙ୍କ ନିନ୍ଦା, ଅପମାନ, ଅପବାଦକୁ ସେ ଭ୍ରୂକ୍ଷେପ କରି ନାହାନ୍ତି । ଆଗେଇ ଯିବାହିଁ ହୋଇଉଠିଛି ଜୀବନର ଧର୍ମ । ଆଗାମୀ ସମାଜପାଇଁ ସେ ବିପ୍ଳବର ତୂର୍ଯ୍ୟନାଦ କରିଛନ୍ତି । ତାହାର ଉଦାହରଣ 'ସଂକ୍ରାନ୍ତି' କବିତା –

''ଭ୍ରାମ୍ୟମାଣ ମୁଁ ଜୀବନ କକ୍ଷେ
ସୂର୍ଯ୍ୟ ସମାନ ଭ୍ରମି
ସମ୍ମୁଖ ଦିଗେ ଚାଲିଛି ଯାତ୍ରା
ପଶ୍ଚାତେ ଅତିକ୍ରମି ।

× × ×

ମାଟିର ସରଣି ସମ ପଡ଼ିରହେ
ପଶ୍ଚାତେ ପୁରାତନ
ଆଜି ମୋ ମନର ପୂର୍ବ ଅଚଳେ
ପ୍ରଭାତର ଉଦୟନ
ଜାଗି ଉଠେ ନବ କ୍ରାନ୍ତି
ଇତିହାସ ବୁକେ ଆଣିଛି ମୁଁ ଆଜି ନୂତନର ସଂକ୍ରାନ୍ତି ।''

'ପଶୁ' ଓ 'ରାକ୍ଷସ' କବିତା ଦୁଇଟି ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ରଚିତ । ସମାଜ ଗଢ଼ା ମୂଲ୍ୟବୋଧ କବିଙ୍କ ପକ୍ଷେ ଅସାର ହୋଇପଡ଼ିଛି । କବି ଚାହାନ୍ତି ପୃଥିବୀର ସୁନ୍ଦର ବସ୍ତୁସବୁକୁ ଧ୍ୱଂସ କରିଦେବାକୁ । ଚୈତ୍ର ମାସ ପ୍ରତ୍ୟୁଷରେ ଗାନ କରୁଥିବା ପିକକୁ ଦେଖିଲେ ତା'ର କ୍ଷୁଦ୍ର ଦେହକୁ ଗୋଡ଼ରେ ଦଳିଚକଟି ଦେବାକୁ ବ୍ୟଗ୍ର ହୋଇଛନ୍ତି । ଶରତ କାଳରେ କଇଁଫୁଲର ପାଖୁଡ଼ାକୁ ଚିରି ତା'ର ସୌନ୍ଦର୍ଯ୍ୟକୁ ଛିନ୍ନବିଛିନ୍ନ କରିଦେବାକୁ ଚାହାନ୍ତି । ପୁଣି ଭାଦ୍ର ଆକାଶରେ ବଙ୍କା ଜହ୍ନକୁ ଦେଖିଲେ ତା'ର ତଣ୍ଟି ଚିପି ଦେବାକୁ ଇଚ୍ଛା କରନ୍ତି । ସେ ତେଣୁ ପଶୁ ରୂପରେ ଅବତୀର୍ଣ୍ଣ ହୋଇ ସବୁ କିଛି ଧ୍ୱଂସ କରିଦେବାକୁ ଚାହାନ୍ତି, ଯଥା –

''ଧ୍ୱଂସର କଥା କୁହ
ସୃଷ୍ଟିର ଛବି ଦେଖି ଦେଖି ବନ୍ଧୁ ହେଲାଣି ଦୁର୍ବିଷହ
ଚୈତ୍ର ଉଷାରେ ଗାଏ ଯେବେ ପିକ ଶୁଣିଥିବ ତା'ର ଗାନ
ଟିକି ଦେହକୁ ତା' ଗୋଡ଼ରେ ଦଳିବା କେତେ ମଜା ତା'କି ଜାଣ ?

× × ×

ଶରୀରର କାରାଗାରେ,
ଜାଗେ ସୟତାନ ଧ୍ୱଂସର ରାସେ, କ୍ଷୁଧିତ ହାହାକାରେ ।''

'କୋଣାର୍କ' କବିତାରେ କବିଙ୍କ ମାର୍କ୍ସୀୟ ଚିନ୍ତାଧାରା ଅଧିକ ପରିସ୍ଫୁଟ ହୋଇଛି । ଏହା ୧୯୩୭–୩୯ ମସିହା ମଧ୍ୟରେ ରଚିତ ହୋଇଥିଲା । ଏହି କବିତାଟି ମୂଲିଆ ଆଖିରେ ଦେଖିଛନ୍ତି ବୋଲି କବି ଦୃପ୍ତ ଘୋଷଣା କରିଛନ୍ତି –

କବି ପୃଥିବୀର ସମସ୍ତ ବସ୍ତୁକୁ ଦୁଇଟି ଶିବିରରେ ବିଭକ୍ତ କରିଛନ୍ତି । ପ୍ରଥମ ଶିବିରବାସୀ ହେଲେ ରମ୍ୟକଳାର ପୂଜାରୀ । ଦ୍ୱିତୀୟ ଶିବିରବାସୀ କୋଟି କଙ୍କାଳ ସ୍ତୂପ ।

ପ୍ରାରମ୍ଭିକ ପଙ୍‌କ୍ତିମାନଙ୍କରେ ସେ ପ୍ରଥମ ଶ୍ରେଣୀର ଶିବିରବାସୀଙ୍କୁ ତୀବ୍ର ସମାଲୋଚନା କରିଛନ୍ତି, ଯଥା –

''ତୁମ୍ଭେ ଦେଖିଅଛ ଶିଳାରେ ତା'ର ତ
ରମ୍ୟ କଳାର ରୂପ,

× × ×

ତୁମ୍ଭେ ଦେଖିଅଛ ଫୁଟିଛି କିପରି
କଳାର କାଉଁରୀ ଲାଗି
ରାତ୍ରିର କଳା ଯବନିକା ପରେ
ସ୍ୱର୍ଣ୍ଣ ଉଷାର ଛବି ।''

ଅଥବା –

''ତୁମ୍ଭେ ଚାଖିଅଛ ରସର ଝରଣା
ଚାରୁ ମନ୍ଦିର ତଳେ
ଗଣ୍ଡୁଷ ଭରି ପିଇଛ ପୀୟୂଷ
ନିଭାଇ ତୃଷା ନଳେ ।''

କିନ୍ତୁ କବି ତାହାକୁ ଭିନ୍ନ ଦୃଷ୍ଟିରେ ଦେଖିଛନ୍ତି । ତାହା ହେଲା ମୂଲିଆର ଆଖି । ମନ୍ଦିର ନିର୍ମାଣ କରିଥିବା କୋଟି କୋଟି ମୂଲିଆ ମଜଦୁରଙ୍କର ଦୁଃଖ, ଅଶ୍ରୁ କବିଙ୍କୁ ବ୍ୟଥିତ କରିଛି –

''ମୁଁ ଦେଖିଛି ସେଇ ଶିଳାର କବରେ
କେତେ କାରିଗର ଛାତି
ତିଳେ ତିଳେ ହାୟ ଲଭିଲା ସମାଧି
ସହିଲା କଷଣ ତାତି ।''

ପୁଣି –

କେତେ ମଜଦୁର ଗର୍ଦ୍ଦଭ ପରି
ବହି ବହି ଶିଳା ଭାର
ବଙ୍କା କଲେଟି ମେରୁ ହାଡ଼
ହିସାବ କି ଅଛି ତା'ର ?''

ଅଥବା –

କେତେ ଯେ କଟାଳି ନିହାଣ ମୁନାର
ରଜାର ହୁକୁମ ମାନି
କଳା ମୁଗୁନିର ଦିହରୁ ରକତ
ପୋଷ ପୋଷ କଲା ପାଣି ।''

× × ×

''କେତେ କ୍ଷୁଧାତୁର ମଣିଷ ଖାଇଛି
କ୍ଷୁଧାରେ ସେ ଦିନ ମାଟି
ରମ୍ୟ କଳାର ଦରବାରେ ତା'ର
କିଛି ନାହିଁ ପରିପାଟୀ ।''

ଚାଷୀପାଇଁ ମଧ୍ୟ ତାଙ୍କର ସମବେଦନା ଝରିପଡ଼ିଛି –

''କୃଷକ ଦେଲା ତା' କନକ ଶସ୍ୟ
ରାଜକୋଷେ ଅକଳନ
ଅଥବା କଳାର ଦରବାରେ ନାଇ
ତାଙ୍କ ବ୍ୟଥାର ସ୍ଥାନ ।''

ଧର୍ମପଦ ପରି କେତେ କେତେ କାରିଗର କୋଣାର୍କରେ ସମାଧିପ୍ରାପ୍ତ ହୋଇଛନ୍ତି । ସେମାନଙ୍କର ଜୀବନଚିତ୍ର କଳାରେ ପ୍ରସ୍ଫୁଟିତ ହୋଇପାରି ନ ଥିବାରୁ କବି କ୍ଷୋଭ ପ୍ରକାଶ କରିଛନ୍ତି । 'କୋଣାର୍କ' କବିତାର ଶେଷ ପଂକ୍ତି –

''ରମ୍ୟ କଳାର ଲୀଳା
କିଛି ତ କହିନ ମଣିଷର କଥା –
କହିବାର ଯାହା ଥିଲା ।''

କହିବା ବାହୁଲ୍ୟ ଯେ 'କୋଣାର୍କ' କବିତାଟି ଓଡ଼ିଆ କାବ୍ୟଜଗତରେ ଘୋର ଚାଞ୍ଚଲ୍ୟ ସୃଷ୍ଟି କଲା । କବି ଏଥିପାଇଁ ଘୋର ସମାଲୋଚନାର ପାତ୍ର ହେଲେ । ବିଶିଷ୍ଟ କଥାକାର ରାଜକିଶୋର ରାୟ ଏହି କବିତା 'ପ୍ରୋପାଗଣ୍ଡାରେ ବିଷାକ୍ତ' ବୋଲି ମତ ଦେଲେ । ଓଡ଼ିଶାର ବିଶିଷ୍ଟ କବି ତଥା ସାହିତ୍ୟିକ ଡଃ ମାୟାଧର ମାନସିଂହ ତୀବ୍ର ପ୍ରତିକ୍ରିୟା ପ୍ରକାଶ କରି କହିଲେ –

''ସୋଭିଏଟ୍ କମରେଡ୍‌ମାନଙ୍କ ସହିତ ସମଗ୍ର ବିଶ୍ୱର ବରେଣ୍ୟ ବ୍ୟକ୍ତିସବୁ... ଅନୁପମ ସୃଷ୍ଟି କୋଣାର୍କର ଶିଳ୍ପ ସ୍ଥାପତ୍ୟ ଦେଖି ମୁଗ୍ଧ ହେଲେ ହେଁ, କୋଣାର୍କ ଦେଖି ସେ ଦିନର ସମୃଦ୍ଧ ଉତ୍କଳ ସାମ୍ରାଜ୍ୟର ସୁସ୍ଥ ସୁନ୍ଦର ଜାଗିରି-ଭୋଗୀ 'ସର୍ବହରା' ପଥୁରିଆମାନଙ୍କପାଇଁ ସଚ୍ଚି ରାଉତରାୟ ଯେ କେବଳ ଅଶ୍ରୁ ବିସର୍ଜନ କରିଚାଲିଲେ, ଏହା ବାମପନ୍ଥୀ କପଟ-କୁଶଳ ପ୍ରଚାର ଛଡ଼ା ଆଉ କିଛି ହୋଇପାରେ କି ?''

ଆଲୋଚକ ସୌରୀନ୍ଦ୍ର ବାରିକ 'କୋଣାର୍କ' କାବ୍ୟସ୍ୱରର ନୂତନତ୍ୱ ସ୍ୱୀକାର କଲେ ମଧ୍ୟ ଏହା ତାଙ୍କର ଅନୁଭୂତି ପ୍ରସୂତ ନୁହେଁ ବୋଲି ଅଭିଯୋଗ କରିଛନ୍ତି । କବିତାଟିରେ ଆନ୍ତରିକତା ପରିବର୍ତ୍ତେ ଶିହରଣ ସୃଷ୍ଟି କରିବାର ପ୍ରୟାସ ଅଧିକ ବୋଲି ମତ ଦେଇଛନ୍ତି । 'କୋଣାର୍କ'କୁ ମୂଲିଆର ପୋଜ୍ ନେଇ ଦେଖିଛନ୍ତି ବୋଲି ଆଉ ଜଣେ ଆଲୋଚକ ରବିଶଙ୍କର ମିଶ୍ର କହିଛନ୍ତି ।

ଆଲୋଚକ ମଥୁରାନନ୍ଦ ହୋତା କିନ୍ତୁ କବିଙ୍କର ଦୃଷ୍ଟିଭଙ୍ଗୀକୁ ତାରିଫ କରିଛନ୍ତି ।

'କୋଣାର୍କ' କବିତାରେ ଏହି ଆଦର୍ଶ ବଳିଷ୍ଠ ଭଙ୍ଗୀରେ ପ୍ରକାଶିତ । ପାଠକ ପ୍ରାଣରେ ତାହା ସୃଷ୍ଟିକରେ ବିଦ୍ରୋହର ଝଙ୍କାର । କବିଙ୍କର ଅନନୁମେୟ ଦୀପ୍ତ ମନୋଭାବ ମନ୍ଦିରର ଶୋଭନୀୟ ଚରିତ୍ର ଉପରେ କରିଛି ନିଷ୍ଠୁର ପଦାଘାତ । × × ମାର୍କ୍‌ସୀୟ ନାନ୍ଦନିକ ବିଚାରଧାରା ସହିତ ଅତୀତ ଇତିହାସର ସ୍ୱରୂପ ଏଥିରେ ପ୍ରକଟିତ ହୋଇଛି ...।''

ସେ ପୁଣି ଲେଖିଛନ୍ତି – ''ଶ୍ରୀ ରାଉତରାୟ କୋଣାର୍କର ଶିଳ୍ପକ୍ଷେତ୍ରରେ ଯେଉଁ ହଜାର ହଜାର ଶ୍ରମଜୀବୀର ସ୍ୱେଦ ଓ ଅଶ୍ରୁ ଆବିଷ୍କାର କରିଛନ୍ତି, ତାହା ତାଙ୍କର ଗଭୀର ସମ୍ବେଦନଶୀଳ ଦୃଷ୍ଟିଭଙ୍ଗୀର ପରିଚୟ ପ୍ରଦାନ କରେ । ତାଙ୍କ ଅନ୍ତଃକରଣରୁ ଉଦ୍ଭୂତ ବେଦନା କୋଣାର୍କକୁ ମୂଲିଆର ଆଖି ନେଇ ଦେଖିବାକୁ ବାଧ କରିଛି । ଏଭଳି ଦେଖିବାରେ ତାଙ୍କର ପ୍ରତାରଣା ନାହିଁ, ବରଂ ଏ ଚିନ୍ତା ତାଙ୍କ ଜୀବନବୋଧ ଓ ଆଦର୍ଶବୋଧ ସହିତ ଓତପ୍ରୋତ ଭାବରେ ସଂଶ୍ଳିଷ୍ଟ ।''

ଆଲୋଚକଙ୍କ ମତରେ 'ପାଣ୍ଡୁଲିପି'ର ସଙ୍କଳିତ କବିତା ମଧ୍ୟରେ 'କୋଣାର୍କ' ଏକ ମୂଲ୍ୟବାନ୍ କୃତି ।

'ରାଜଜେମା' ଶୀର୍ଷକ କବିତାରେ ଅଛି ରାଜଭୋଗ ଓ ବାସ୍ତବବାଦ ମଧ୍ୟରେ ମୃଦୁ ସଂଘର୍ଷ । ରାଜଜେମା ରାଜକୀୟ ଭୋଗବାଦୀ ଜୀବନର ପ୍ରତୀକ । କବି କିନ୍ତୁ ଦୀନ-ଦୁଃଖୀ ମଣିଷର ପ୍ରତିନିଧି । ରାଜଜେମା ପୁଞ୍ଜିବାଦ ନାମ ଶୁଣି ଚମକି ପଡ଼ିଛନ୍ତି । ସେ ଚାହିଁଛନ୍ତି ଗଢ଼ିବାକୁ ଶନିବାର ଆସରର ଗଳ୍ପ – ଯେଉଁଥିରେ କି କିଛି କଳା କାରୁକାର୍ଯ୍ୟ ଅଛି । କବି କିନ୍ତୁ ନିଷ୍ପେଷିତ ନରନାରୀଙ୍କ କଥା ଫୁଟାଇବାକୁ ଚାହିଁଛନ୍ତି । ରାଜଜେମା କହିଛନ୍ତି ଯେ ସେ ଏହାଦ୍ୱାରା ସମସ୍ତଙ୍କଦ୍ୱାରା ନିନ୍ଦିତ ହେବେ । ଏପରିକି ଆଗାମୀ ବଂଶଧର ତାଙ୍କୁ କ୍ଷମା କରିବେ ନାହିଁ । କିନ୍ତୁ କବି ସେଥିକି ଭ୍ରୂକ୍ଷେପ କରି ନାହାନ୍ତି । ସେ କହିଛନ୍ତି –

''ମୁଁ ସଚ୍ଚି ରାଉତରା
(ନୁହେଁ ଟାଗୋର ବା ଶେଲୀ)
ମୁଁ ଏଇ ମାଟିର ଧରା
ଆଉ ଆକାଶର କବି
କାମ ନୁହେଁ ମୋ ଖାଲି ଆଙ୍କିବା କାଗଜର ଛବି ।
× × ×
ମଣିଷର ଲହୁ ଲୁହେ କବିତା ମୋ ନୀଳ
ଜୀବନର ସୁବର୍ଣ୍ଣ ଦଲିଲ ।''

୧୯୪୫ ମସିହାରେ ପ୍ରକାଶ ପାଏ ନାରୀ ଉପରେ କବିତା, 'ପ୍ରତିମା ନାୟକ' । ଏହା ଏକ ବହୁଚର୍ଚ୍ଚିତ କବିତା ।

ପ୍ରତିମା ନାୟକ ବର୍ଣ୍ଣନାରେ ରୀତିଯୁଗୀୟ ଚାତୁର୍ଯ୍ୟ ନାହିଁ । ସବୁଜଯୁଗୀୟ ରହସ୍ୟବୋଧରେ ମଧ୍ୟ ଏହା ରସାଣିତ ନୁହେଁ । କେମିତି ଏକ ରୁକ୍ଷ ବାସ୍ତବତା ପ୍ରତିମା ନାୟକଙ୍କୁ ଘେରିରହିଛି । ପ୍ରତିମା ନାୟକ ସୁନ୍ଦରୀ ନୁହେଁ । ରୋଗାକ୍ରାନ୍ତ ଦେହ ତା'ର । ମୁଖ ତା'ର ବ୍ରଣ ଦୁଷ୍ଟ । ଗାଲ ରକ୍ତାଭ ନୁହେଁ । ଦେହରେ ଢାଙ୍କିଚି ସେ ଖାକି ପୋଷାକ । ରୁକ୍ଷ ବାସ୍ତବତା ତା'ର ମନକୁ ବେଦନା ବିଧୁର କରି ତୋଳିଛି । ତା'ର ବ୍ୟକ୍ତିଗତ ଜୀବନ

ମଧ୍ୟ ଦୁଃଖଦ । ପିତାଙ୍କର ମୃତ୍ୟୁ ହୋଇଛି । ଦର୍ଶନରେ ଏମ୍. ଏ. ପଢ଼ିଥିଲା । ତା'ବି ସମ୍ପୂର୍ଣ୍ଣ ହୋଇପାରିନି । ଜୀବନରେ ଥରେ ଅଧେ ହୁଏତ ପ୍ରେମରେ ପଡ଼ିଥିଲା । ଜୀବନ ତା'ର ହୋଇଉଠିଛି ହା-ହୁତାଶମୟ । ସବୁଆଡୁ ହରାଇ ଶେଷରେ ସେ ସପ୍ଲାଇରେ ଚାକିରିଟିଏ ପାଇଛି । ଦରମା ବି ମନ୍ଦ ନୁହେଁ । ଚଳି ଯାଉଥିଲା ।

ପ୍ରତିମା ନାୟକ ସଙ୍ଗେ କବିଙ୍କର ଦେଖାହୋଇଛି । ଗତାନୁଗତିକ ଭାବେ ଭଲ ଅଛି କି ବୋଲି କବି ଆବେଗହୀନ ଭାବେ ପଚାରିଛନ୍ତି । ପ୍ରତିମା ନାୟକ କିନ୍ତୁ ତା'ର ଉତ୍ତର ଦେଇନି । ଖାଲି ଟିକିଏ ହସି ଦେଇଛି – ହୁଏତ ବିଦ୍ରୁପର ହସ ।

'ଶଙ୍ଖ' ପତ୍ରିକାରେ ଏହା ପ୍ରକାଶ ପାଇଲାପରେ ଡଃ ମାୟାଧର ମାନସିଂହ ଏହାକୁ ପ୍ରଶଂସା କରି ମତାମତ ଦେଇଥିଲେ । ପ୍ରତିମା ନାୟକ ଦ୍ୱିତୀୟ ଯୁଦ୍ଧୋତ୍ତର ନାରୀ ସମାଜର ପ୍ରତିନିଧି ବୋଲି ଅଧ୍ୟାପକ ଚିନ୍ତାମଣି ବେହେରା ମତ ଦେଇଥିଲେ । ଆଲୋଚକ ମଥୁରାନାଥ ହୋତାଙ୍କ ମତରେ 'ପ୍ରତିମା ନାୟକ' ବିଡ଼ମ୍ବିତ ନାରୀତ୍ୱର ପ୍ରତିନିଧି ବ୍ୟତୀତ ଆଉ କିଛି ନୁହେଁ ।

ନାରୀ ଉପରେ କବିଙ୍କ ଆଉ ଏକ କବିତା – 'ଅଳକା ସାନ୍ୟାଲ' । ଏହା 'ନବଭାରତ'ରେ ୧୯୪୭ ମସିହାରେ ପ୍ରକାଶ ପାଇଥିଲା ।

କବି ପ୍ରଥମେ ଅଳକା ସାନ୍ୟାଲକୁ ବିଦେହର ରାଜପୁରରେ ସୀତା ଭିତରେ ଦେଖିଛନ୍ତି । ପରେ ଦେଖିଛନ୍ତି ଦ୍ୱାପର ଯୁଗର ଧର୍ଷିତା ଦ୍ରୌପଦୀ ଭିତରେ । ତା'ପରେ ସେ ତାକୁ ଉଦ୍ଧାର କରନ୍ତି ଚିତ୍ରରଥ ଗନ୍ଧର୍ବ ହାତରୁ । ଏହାପରେ ସେ ତାକୁ ନାଳନ୍ଦାର ନିର୍ଜନ ଦେଶରେ ସହପାଠିନୀ ହିସାବରେ ଆବିଷ୍କାର କରନ୍ତି । ଶେଷରେ କବି ନୂଆଖାଲିରୁ ତା'ର ବିଖଣ୍ଡିତ ରୂପକୁ ଉଦ୍ଧାର କରନ୍ତି ।

ପ୍ରାଗୈତିହାସିକ ଯୁଗରୁ ନାରୀର କ୍ରମବିକାଶ କିପରି ହୋଇଆସିଛି, ତାହା ଦେଖାଇବା କବିତାର ସ୍ପଷ୍ଟ ଉଦ୍ଦେଶ୍ୟ ।

**ଅଭିଜ୍ଞାନ**

'ଅଭିଜ୍ଞାନ' ସଙ୍କଳନଟି ୧୯୪୮ଟି ମସିହାରେ ପ୍ରକାଶିତ ହୋଇଥିଲା । ଏଥିରେ ସନ୍ନିବେଶିତ କବିତାଗୁଡ଼ିକ ୧୯୪୪ ମସିହାରୁ ୧୯୫୯ ମସିହା ମଧ୍ୟରେ ରଚିତ ହୋଇଥିଲା । ଏଥିରେ ତେଣୁ 'ପାଣ୍ଡୁଲିପି'ର ସ୍ୱର ମିଳେ । ରୋମାଣ୍ଟିକ, ପ୍ରଗତି ସହିତ ଆଧୁନିକ ଅର୍ଥାତ୍ ବିପ୍ଳବାତ୍ମକ କବିତା ଥିଲେ ମଧ୍ୟ ବିପ୍ଳବାତ୍ମକ କବିତାର ସଂଖ୍ୟା ଅଧିକ ଅଟେ ।

ଗୋଟିଏ ସମ୍ବାଦପତ୍ର ମତ ଦେଇଥିଲା – ''ଆଧୁନିକ ଜୀବନର ଭାବପ୍ରବାହ ବହୁଦିନ ଧରି ପାରିପାର୍ଶ୍ୱିକ ଜଟିଳତା ମଧ୍ୟରେ ପଥରୁଦ୍ଧ ହୋଇପଡ଼ିଥିଲା । କବି ରାଉତରାୟ ନୂତନ ଯୁଗର ସେହି ଭାବପ୍ରବାହକୁ ତାଙ୍କ କବିତାରେ ରୂପାୟିତ କରିଛନ୍ତି ।''

'ଅଭିଜ୍ଞାନ' ନାମରୁ ହିଁ ତାହା ବେଶ୍ ସ୍ପଷ୍ଟ ।

୧୯୪୭ ମସିହା ଅଗଷ୍ଟ ମାସ ୧୫ ତାରିଖରେ ଭାରତ ସ୍ୱାଧୀନତା ପାଇଲା । ସ୍ୱାଧୀନତା ଆନ୍ଦୋଳନରେ ବହୁ ଲୋକ ଝାସ ଦେଇଥିଲେ । କବି ସେମାନଙ୍କୁ ଅଭିନନ୍ଦନ ଜଣାଇଛନ୍ତି 'ଶେଷ ନଦୀ' କବିତାରେ –

''ଆଜିର ଏ ଭଗ୍ନାଂଶ ଜଞ୍ଜିର
ପୂର୍ଣ୍ଣ କରି ପଲ୍ଲୀ, ଜନପଦ
ଗାଇ ଉଠେ ତାଙ୍କ ଜୟନାଦ
ମୁକ୍ତିର ସନନ୍ଦ ?''

କବି ସେଥିରେ ସ୍ୱାଭାବିକ ଭାବେ ଖୁସି ଥିଲେ ହେଁ ପୁଣି କୌଣସି ଅନାଗତକୁ ଅପେକ୍ଷା କରିଛନ୍ତି –

''ଆଜି ଏ ସବୁ କିଛି
ହସ ହସ, ଖୁସି ସ୍ୱାଭାବିକ
ସେ ଯେ ଅନାଗତର
ଉପକ୍ରମଣିକା ।''

'ରକ୍ତବୀଜର ଅଭିଯାନ' କବିତାରେ କବି ନୂଆ ଯୁଗ ଗଢ଼ିବାପାଇଁ ଆହ୍ୱାନ ଦେଇଛନ୍ତି, ଯଥା –

''ମନେ ରଖ ଆମେ
ଶେଷ ଦେବକୀର ଗର୍ଭ ବିଦାରି
ଶେଷ କାରାଗାର ବକ୍ଷ ବିଦାରି
ହୋଇଅଛୁ ଜନମ
ନୂଆ ଯୁଗ ଖସଡ଼ା
ରଚେ ଆମ ବଲ୍ଲମ
ନୂଆ ଯୁଗ ଚେହେରା
ଲେଖେ ଆମ କଲମ ।''

କବି ୧୯୪୮ ମସିହା ଅକ୍ଟୋବର ମାସରେ ତାଜମହଲ ଦେଖିଥିଲେ । ତାକୁ ଦେଖି ତାଙ୍କ ମନରେ ଭାବ ତରଙ୍ଗ ସୃଷ୍ଟି ହୋଇଥିଲା –

''ଧୀରେ ଧୀରେ ଚାନ୍ଦ ଉଇଁ ଆସୁଥିଲା
ଯମୁନାର ନୀଳ ଜଳରେ ଲକ୍ଷ ହୀରା
ସ୍ଫଟିକ ଓ ପ୍ରବାଳର ଦୀପ
ନୀଳ ଦୁଧରେ ଧୁଆ ଧୋବ ଫରଫର ରାତି
ମନେ ହେଲା ଚାରିଆଡ଼େ ଏକ ଅଶରୀରୀ
ବିରହିଣୀ ନାରୀର ଆତ୍ମା ।''

× × ×

ଆଲୋଚକଙ୍କ ମତରେ 'ତାଜମହଲ' କବିଙ୍କ ମାର୍କ୍‌ସବାଦ ଚିନ୍ତାଧାରାର ପ୍ରତିନିଧି ନୁହେଁ, ଏହା ଏକ ସାମନ୍ତବାଦୀ ସଭ୍ୟତାର ପ୍ରତୀକ ।

'ଭାନୁମତୀର ଦେଶ' ଏକ ଗଦ୍ୟ କାବ୍ୟ । ଏଥିରେ କବି ପ୍ରଥମଥରପାଇଁ ଗଦ୍ୟ ଛନ୍ଦ ପ୍ରୟୋଗ କରିଛନ୍ତି । କାବ୍ୟର କଥାବସ୍ତୁରେ ନୂତନତ୍ୱ ନ ଥିଲେ ମଧ୍ୟ ପ୍ରକାଶଭଙ୍ଗୀରେ ନୂତନତ୍ୱ ଦୃଷ୍ଟିଗୋଚର ହୁଏ ।

କାବ୍ୟର ନାୟିକା ବିନତା । ସେ ଆଧୁନିକା ଓ ଶିକ୍ଷିତା ମଧ୍ୟ । ସେ ଓ ତା'ର ମା' ଅତିଥି ହୋଇଥିଲେ ତରଙ୍ଗର । ସୁନ୍ଦରଗଡ଼ର ଏକ ନିର୍ଜନ ଡାକବଙ୍ଗଳାରେ ରହିଥିଲେ । ସୁନ୍ଦରଗଡ଼ର ସୌନ୍ଦର୍ଯ୍ୟ ବିନତାଙ୍କୁ ମୁଗ୍ଧ କଲା । ସେ ଗାଁର ପ୍ରଥମ ଦର୍ଶନରେ କହି ଉଠିଥିଲେ –

''ସତରେ କିନ୍ତୁ ଚମତ୍କାର
ଭାରି ଚମତ୍କାର ତମ ଗାଁ
ସାର୍ଥକ ହୋଇଛି ତା'ର ନାଁ
ସୁନ୍ଦରଗଡ଼ ।''

ଅନ୍ୟ ପାଖର ପାହାଡ଼ କବିଙ୍କ କଳ୍ପନାରେ ଓଟର ବଙ୍କା କୁଜ ଭଳି, ଯଥା –

''ଓଟର ବଙ୍କା କୁଜ ପରି
ଏହି ସବୁ ଘୁମନ୍ତ ପାହାଡ଼
ଯେମିତି ଗୋଟାଏ ଗୋଟାଏ
ମସ୍ତବଡ଼ ପିଲିସଜ
ତା' ଉପରେ ସକାଳେ ଆଉ ସନ୍ଧ୍ୟାବେଳେ
ସୂର୍ଯ୍ୟଦୀପ ଜଳେ ।''

ବିନତା ସହରରେ ବଢ଼ି ଆସିଛି । ସୂର୍ଯ୍ୟୋଦୟ ଦିନେ ବି ଭଲ କରି ଦେଖି ନାହିଁ । ସେ ଆଶ୍ଚର୍ଯ୍ୟ ହୋଇଛି । ଭାବିଛି –

''ଏ କି ମୁକ୍ତି ! ଯେ କି ସମ୍ଭବ ?''

ଆଉ ଦିନେ ବିନତା ଓ ତରଙ୍ଗ ବସିଥିଲେ ଏକ ନିର୍ଜନ ସ୍ଥାନରେ । ବିନତା ନୂଆ ବର୍ଷରେ ସହରକୁ ଯିବାକୁ ନିମନ୍ତ୍ରଣ କଲା । ତରଙ୍ଗ ଉତ୍ତର ଦେଲା –

''ମୁଁ ସହରକୁ ଘୃଣା କରେ
ମୁଁ ଘୃଣା କରେ ସେହି ଇଟା, ମାଟି, ଲୁହା
ଆଉ କଂକ୍ରିଟ୍‌ର ଧୂସର ଜଗତକୁ ।
ଗ୍ରାମର ଏହି ନାଲି ମାଟିର ସଡ଼କ
ଏଇ ସବୁ ସବୁ ଗ୍ରାମ ବିଲ ନଦୀ ବନ
ଗେରୁଆ ରଙ୍ଗର ଶୀତ ସକାଳର ।''

ଦୁଇଟି ଜୀବନର ପ୍ରେମ କାହାଣୀକୁ ହିଁ 'ଭାନୁମତୀର ଦେଶ'ର ମୂଳକଥା । ନାୟକ ନାୟିକାଙ୍କ ମଧ୍ୟରେ ଶେଷ ପର୍ଯ୍ୟନ୍ତ ମିଳନ ସମ୍ଭବ ହୋଇ ନାହିଁ । ଜୀବନର କର୍ତ୍ତବ୍ୟ ଓ ଆହ୍ବାନପାଇଁ କବିତା ହୋଇଛି ବିଚ୍ଛେଦାତ୍ମକ । କବି ସେଠାରେ ପ୍ରମାଣ କରାଇଛନ୍ତି ଯେ ପ୍ରେମଠାରୁ ଜୀବନ ଅନେକ ବଡ଼ । ତେଣୁ ବଞ୍ଚିବାକୁ ହେଲେ ବେଳେବେଳେ ପ୍ରେମକୁ ବାଦ୍ ଦେବାକୁହିଁ ହେବ । ସ୍ମୃତି ଅବଶ୍ୟ ରହିବ । ତାହାକୁ ଆଦୌ ଉପେକ୍ଷା କରାଯାଇ ନ ପାରେ । କବି 'ବିନତାର' ଚିଠି ମଧ୍ୟରେ ଏହି କଥା ଅତି ସୁନ୍ଦର ଭାବେ କହିଛନ୍ତି –

''ଭାନୁମତୀ ଦେଶର ସେଇ ରକ୍ତକରବୀ
ଆଜି ସୁଦ୍ଧା ମୁଁ ମୋର କବିତା ଖାତା
ଭିତରେ ସାଇତି ରଖିଛି ।
ଆଉ ଅସ୍ତ ସୂର୍ଯ୍ୟର ଉପତ୍ୟକାର ସେଇ
ସ୍ୱଚ୍ଛ କୃଷ୍ଣଚୂଡ଼ା
ଏବେ ବି କୁଡ଼ାରେ ଖୋସି ମୁଁ ଆନନ୍ଦ ପାଏ ।''

ବିନତା ସ୍ମୃତିକୁ ସାଇତି ମାତ୍ର ରଖିଛନ୍ତି । ସେ ତେବେ ଜୀବନଠାରୁ ଦୂରେଇ ଯାଇ ନାହାନ୍ତି । କବିଙ୍କ ଦର୍ଶନ ହେଉଛି – 'ଜୀବନପାଇଁ ପ୍ରେମ ଦରକାର, କିନ୍ତୁ ପ୍ରେମ ପାଇଁ ଜୀବନ ନୁହେଁ ।''

'ଭାନୁମତୀର ଦେଶ' କବିତାଟି ସର୍ବଜନାଦୃତ ହୋଇଥିଲା । ଆଲୋଚକ ଚିନ୍ତାମଣି ବେହେରା ଏହାକୁ ପ୍ରଶଂସା କରି କହିଥିଲେ –

'' 'ଭାନୁମତୀର ଦେଶ' ରାଉତରାୟଙ୍କର ଗଦ୍ୟ କାବ୍ୟ ଓ ଏ କ୍ଷେତ୍ରରେ କବି ଅସାଧାରଣ ସଫଳତା ଲାଭ କରିଛନ୍ତି । କଥାବସ୍ତୁର ପରିବେଷଣରେ ରୋମାଣ୍ଟିକ ଦୃଷ୍ଟିଭଙ୍ଗୀ ଓ ବହୁ ବିଚିତ୍ର ଚିତ୍ରକଳ୍ପ ସୃଷ୍ଟି ପାଠକ ପ୍ରାଣକୁ ତନ୍ମୟ କରିଦିଏ ।''

ଆଉ ଜଣେ ଆଲୋଚକ ହରପ୍ରସାଦ ଦାସ କହିଛନ୍ତି – ''ଭାନୁମତୀର ଦେଶ ଚେତନାର ପଦ୍ୟ କାବ୍ୟ । ×× ବାକ୍‌ଶୈଳୀକୁ କାବ୍ୟଶୈଳୀରେ ପରିଣତ କରିବାର ଏ ଶାସ୍ତ୍ରୀୟ ଉଦାହରଣ ଅପୂର୍ବ, ଆଶ୍ଚର୍ଯ୍ୟର କଥା ଏହି ଯେ ଏଯାବତ୍ ଏ ଶୈଳୀର ତୁଙ୍ଗିମାକୁ ଆଉ କେହି ସ୍ପର୍ଶ କରି ନାହାନ୍ତି । ଶୈଳୀର ବୀଜରେ ପ୍ରାଣମୟ ଆମର କାବ୍ୟଭାଷାର ମୃତ୍ତିକାରେ ଏ ଶସ୍ୟ ଆଉ ଉପୁଜି ନାହିଁ ।''

ଅଧ୍ୟାପକ ଦେବେନ୍ଦ୍ର ମହାନ୍ତିଙ୍କର ମନ୍ତବ୍ୟ ମଧ୍ୟ ଉଲ୍ଲେଖଯୋଗ୍ୟ – 'ଭାନୁମତୀ ଦେଶ' କାବ୍ୟ ରଚନାରେ କବି ଆଧୁନିକ ଓଡ଼ିଆ ସାହିତ୍ୟରେ କାବ୍ୟ ରଚନା କ୍ଷେତ୍ରରେ ଏକ ନୂତନ ଦିଗ୍‌ଦର୍ଶନ ଦେଇଛନ୍ତି । କେବଳ ଏତିକି ନୁହେଁ, ଓଡ଼ିଆ ସାହିତ୍ୟରେ କାବ୍ୟ ରଚନାର ପରମ୍ପରାକୁ ଭାଙ୍ଗି ଦେଇ ଦେଶ, କାଳ ଓ ପାତ୍ର ବିବେଚନାରେ କାବ୍ୟସାହିତ୍ୟକୁ ଯୁଗୋପଯୋଗୀ କରିଛନ୍ତି ।''

ତାଙ୍କ ମତରେ 'ଭାନୁମତୀର ଦେଶ' ଏକ ଅମଳିନ କାଳଜୟୀ ସୃଷ୍ଟି ।''

**ହସନ୍ତ**

'ହସନ୍ତ'ର ପ୍ରକାଶ କାଳ ୧୯୫୦ ମସିହା । ଏହାର କବିତାଗୁଡ଼ିକର ସମୟ ସୀମା ୧୯୩୫ ଠାରୁ ୧୯୫୦ ପର୍ଯ୍ୟନ୍ତ । ପ୍ରାରମ୍ଭିକ ପର୍ଯ୍ୟାୟର ପ୍ରତିକ୍ରିୟାଶୀଳତାରୁ ଯେଉଁ ବ୍ୟଙ୍ଗ ସୃଷ୍ଟି ହୋଇଛି ତାହା ୧୯୩୫-୩୬ ମସିହା ସମୟର କବିତାରେ ଖୁବ୍ ସ୍ପଷ୍ଟ । ୧୯୩୬ ମସିହାର ପରବର୍ତ୍ତୀ କବିତାରେ ବିପ୍ଳବାତ୍ମକ ବ୍ୟଙ୍ଗ ମଧ୍ୟ ପ୍ରକାଶ ପାଇଛି । କବି ନିଜେ କହିଛନ୍ତି – "କବିତାଗୁଡ଼ିକ ହାସ୍ୟରସ ପୂର୍ଣ୍ଣ । ରୁଚିର ଖୋରାକ । ଏ କବିତାଗୁଡ଼ିକ ବ୍ୟଙ୍ଗରସାତ୍ମକ ହେଲେ ମଧ୍ୟ ସମାଜବୋଧରେ ତୀକ୍ଷ୍ଣ ।"

## ଆଧୁନିକ ପର୍ବ ୧୯୫୦-୧୯୮୧

ସ୍ୱାଧୀନତା ପରେ ସଚ୍ଚିଦାନନ୍ଦ ମହାନଗରୀ କଲିକତାରେ ଅବସ୍ଥାନ କଲେ । ଭାରତୀୟ ସାହିତ୍ୟରେ ଦେଖାଦେଇଥିବା ଅନୁପ୍ରେରଣା ତାଙ୍କ ହୃଦୟରେ ସଞ୍ଚାର ହେଲା । ପ୍ରବଳ ଅନ୍ତର୍ଦାହ ଓ ଆତ୍ମସମାଲୋଚନା କବି ହୃଦୟରେ ଯେଉଁ କରୁଣ ରାଗିଣୀ ତୋଳିଲା, ତାହାହିଁ ହେଲା ଓଡ଼ିଆ ସାହିତ୍ୟପାଇଁ ନବ୍ୟଚେତନା । ସଚ୍ଚିଦାନନ୍ଦ ହୋଇପଡ଼ିଲେ ଆଧୁନିକ କବିତାର ଅପ୍ରତିଦ୍ୱନ୍ଦୀ କଳାକାର । କେହି କେହି ତାଙ୍କୁ ମାଟିର ଦ୍ରୋଣଭାବେ ଅଭିହିତ କଲେ । ସଚ୍ଚିଦାନନ୍ଦ ଏହା ପରେ ଲେଖିଲେ ସ୍ୱଗତ (୧୯୫୮), କବିତା–୧୯୬୨, କବିତା–୧୯୬୯, ଏସିଆର ସ୍ୱପ୍ନ, କବିତା–୭୧, କବିତା–୧୯୭୪, କବିତା–୧୯୮୫, କବିତା–୧୯୮୭ ଓ କବିତା–୧୯୯୦ ପ୍ରଭୃତି କବିତା ଗ୍ରନ୍ଥମାଳା ।

**ସ୍ୱଗତ**

କବି ଏଠାରେ ଏକ ନିର୍ଦ୍ଦିଷ୍ଟ ଶୈଳୀକୁ ପାଠକମାନଙ୍କ ଆଗରେ ରଖିଛନ୍ତି । କବିତାଗୁଡ଼ିକ ହୋଇଛି ଜୀବନବୋଧର କବିତା । ମାତ୍ର କବିତାର ଉକ୍ତି ହୋଇଛି ସ୍ୱଗତୋକ୍ତି – ନିଜସ୍ୱ ସଂଳାପ ।

ଆଲୋଚକ ହରପ୍ରସାଦ ଦାସଙ୍କ ଭାଷାରେ – "ନିଜ ସହିତ କଥା କହିବାର ବେଳ ଆସେ ଯେତେବେଳେ ଆଉ କାହାକୁ କିଛି କହିବାର ନ ଥାଏ । ଗୋଟିଏ ରାତି ହୁଏ ଦୁଇଟି ରାତି, ଏମିତିକି ଗୋଟିଏ ଅନ୍ଧକାର ହୁଏ ଦୁଇଟି ଅନ୍ଧକାର, ନିଜର ଖୋଜିବା ଅଂଶ ଓ ହଜିବା ଅଂଶ ସତେ ଯେମିତି ପରସ୍ପରର ମୁହାଁମୁହିଁ ହୋଇ ଠିଆ ହୁଅନ୍ତି ।"

କବି ଜୀବନ କଥା ଚିନ୍ତା କରିଛନ୍ତି ଓ କବିତାରେ ମଧ୍ୟ ପ୍ରକାଶ କରିଛନ୍ତି । କବି 'ପାଣ୍ଡୁଲିପି'ରେ ଯେଉଁ ଆଧୁନିକତାର ଛଟା ଆଣିଛନ୍ତି, ତାହା 'ସ୍ୱଗତ'ରେ ଗାଢ଼ ଭାବରେ ଆଙ୍କି ହୋଇଉଠିଛି । ଅନେକ କବିତା ତାଙ୍କର ଦୁର୍ବୋଧ୍ୟ ମଧ୍ୟ ହୋଇଉଠିଛି ।

ଆଲୋଚକ ତାରିଣୀଚରଣଙ୍କ ମତରେ 'ସ୍ୱଗତ'ରେ ବିବିଧ କାଳ ସମ୍ବଳିତ ବିବିଧ ପ୍ରୟୋଗ ଓ ପରୀକ୍ଷଣ ଅଛି । ଅଭିବ୍ୟକ୍ତିର ପ୍ରାଚୁର୍ଯ୍ୟ ଏବଂ ପରିପୂର୍ଣ୍ଣତା ନାହିଁ । ତେବେ ଏହି ପରୀକ୍ଷଣ ହୁଏତ ଦିନେ ମହାନ୍ ଆବିଷ୍କରଣ ଆଣିପାରେ ।

**କବିତା-୧୯୬୨**

୧୯୬୨ ମସିହା ଡିସେମ୍ବର ମାସରେ କବିତା-୧୯୬୨ ପ୍ରକାଶ ପାଇଲା । ଏଥିରେ ମଧ୍ୟ କବି ନାନ୍ଦୀମୁଖରେ ନୂତନ କବିତାର ଭୂମିକା ଶୁଣେଇଛନ୍ତି । ନୂତନ କବିତାଗୁଡ଼ିକରୁ ଦୁର୍ବୋଧ୍ୟତା ନେଇ ଯେଉଁ ଝଡ଼ ଆରମ୍ଭ ହୋଇଥିଲା, ତାହାକୁ ଉପଶମ କରାଇବାର ଉଦ୍ଦେଶ୍ୟ କବିଙ୍କର ଥିବା ଜଣାଯାଏ । କବି ସେଥିରେ କହିଛନ୍ତି –

''ଏହି ପୁସ୍ତକରେ ମୋର ୫୫ଟି ଅଧୁନାତମ କବିତା ସଙ୍ଗେ ନୂତନ କବିତାର ପୃଷ୍ଠଭୂମି ବିକାଶ ଉପରେ ଏକ ଦୀର୍ଘ ସନ୍ଦର୍ଭ ଯୋଗ କରାଯାଇଛି । ××× ଓଡ଼ିଶାର ଚାରିଆଡୁ ଯେପରି ନୂତନ କବିତା ସମ୍ବନ୍ଧରେ ନାନା ପ୍ରଶ୍ନବାଣ ଲେଖକ ଉପରେ ବର୍ଷିତ ହେବାକୁ ଲାଗିଛି, ସେଥିରେ ଆଉ ବେଶି ଦିନ ଏ ବିଷୟରେ ନୀରବ ହୋଇ ବସି ରହିବା ସମ୍ଭବ ନୁହେଁ । ମୋର ଆଶା, ବିଦ୍‌ଗଧ କାବ୍ୟରସିକମାନେ ଏଥିରୁ କିଛି ନା କିଛି ଫାଇଦା ଉଠାଇବେ । ନୂତନ କବିତା ସମ୍ପର୍କରେ କବିଙ୍କର ଏ ଅଙ୍ଗୀକାର ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ନୂତନ କବିତାର ମୂଳଭିତ୍ତିକୁ ସୁଦୃଢ଼ କରିଅଛି ।

**କବିତା-୧୯୬୯**

କବିତା ୧୯୬୯ରେ କବି ତାଙ୍କ କବିତାଗୁଡ଼ିକୁ 'ଦୃଷ୍ଟିପଟ' ଓ ସାମ୍ପ୍ରତିକ 'ଚେତନା' ଶିରୋନାମରେ ବିଭକ୍ତ କରିଛନ୍ତି । କବି ଯେ ଯାହା ଲେଖିବେ କବିତା ହେବ, ତାହା ନୁହେଁ । ମାତ୍ର ସମସ୍ତ କବିତାକୁ ନିର୍ଦ୍ୱନ୍ଦ୍ୱରେ ପାଠକ ସମ୍ମୁଖକୁ ଆଣିଛନ୍ତି, ତେଣୁ ଆମେ କବିଙ୍କ ଭଲ କବିତା ସହିତ କେତେକ ଅକବିତାକୁ ମଧ୍ୟ ଏହି ପର୍ଯ୍ୟାୟରେ ଦେଖୁ । କବି ମଧ୍ୟ ତାହା ସ୍ୱୀକାର କରିଛନ୍ତି – ''ଗତ ସାତ ବର୍ଷ ଧରି ମୋ ଲେଖନୀ ଯେ ବହୁ କବିତା ଅକବିତା ପ୍ରସବ କରିବାରେ କାର୍ପଣ୍ୟ କରେ ନାହିଁ, ତା'ର ଦୃଷ୍ଟାନ୍ତ ୧୯୬୩ ମସିହାରୁ ୧୯୬୯ ଶେଷ ଅବଧି ରଚିତ ଓ ପ୍ରକାଶିତ କବିତାମାନଙ୍କରେ ଏଇ ପୃଥୁଳ ସଙ୍କଳନଟିରୁ × ×× ମିଳିପାରିବ ?''

**ଏସିଆର ସ୍ୱପ୍ନ**

ଏହାର ପ୍ରକାଶ କାଳ ୧୯୭୦ ମସିହା । ଏହା ସମଗ୍ର ବିଶ୍ୱରେ ଶାନ୍ତିପାଇଁ ବ୍ୟାକୁଳ ହୋଇଉଠିଥିବା ଲକ୍ଷ୍ୟ କରାଯାଏ । ବିପ୍ଳବର ଲକ୍ଷ୍ୟ ଶାନ୍ତି ପ୍ରତିଷ୍ଠା । ମାତ୍ର ଶାନ୍ତି ବଦଳରେ ଯୁଦ୍ଧର ଘନଘଟା ଦେଖାଯିବା ବାସ୍ତବିକ ଦୁଃଖର ବିଷୟ ବୋଲି କବି ମନେ କରିଛନ୍ତି । କବି ତେଣୁ ଚାହିଁଛନ୍ତି ଶାନ୍ତି । 'ଏସିଆର ସ୍ୱପ୍ନ'ରେ ଆମେ କବିଙ୍କୁ ଭିନ୍ନ ସତ୍ତାରେ ଉପଲବ୍ଧି କରିଥାଉ ।

'ଏସିଆର ସ୍ୱପ୍ନ' ହୋଇଛି କବିଙ୍କର ସ୍ୱପ୍ନ । ମାତ୍ର ଶାନ୍ତି ନ ଥିବା ହେତୁ କବି ଖେଦ ପ୍ରକାଶ କରିଛନ୍ତି 'ଏସିଆର ସ୍ୱପ୍ନ'କବିତାରେ –

''କମାଣ ବି ଡାକ ଛାଡ଼େ
ଶାନ୍ତି ଶାନ୍ତି ବୋଲି
ବୋମା ସବୁ ଶାନ୍ତି ନାମେ
ପଡ଼ନ୍ତି ଉଛୁଳି ।
ଶାନ୍ତି ପାଇଁ ହୁଏ ସଭା
କନଫରେନ୍‌ସ ଯେତେ
ଜେନିଭାଠୁ ପ୍ୟାରୀଯାଏ
ଯୁଦ୍ଧ ବଢ଼େ ସେତେ ।
ଶାନ୍ତି ପାଇଁ ନିକସନ୍ ତ
ଭୁଲିଗଲେଣି ନିଦ
ଶାନ୍ତି ପାଇଁ ଭିଏତ୍‌ନାମ
ହୋଇଛି ଉନ୍‌ମାଦ ।''

ସମଗ୍ର 'ଏସିଆର ସ୍ୱପ୍ନ'ରେ ସାଧାରଣ ମଣିଷର ସ୍ୱପ୍ନ ଓ ଶାନ୍ତିର କଥାହିଁ ବର୍ଣ୍ଣିତ ।

**କବିତା-୧୯୯୦**

'ଚିର ପ୍ରଦୀପ୍ତ' ଗୋଟିଏ କ୍ଷୁଦ୍ର କବିତାଗୁଚ୍ଛ । ଏହା ୧୯୬୮ ମସିହାରେ ପ୍ରକାଶ ପାଇଥିଲା । ଏହା ଏବେ ଦୁଷ୍ପ୍ରାପ୍ୟ । କିନ୍ତୁ ସେହି କବିତାଗୁଡ଼ିକର ପୁନଃପ୍ରକାଶ ଘଟିଛି କବିତା-୧୯୯୦ରେ । ଆଲୋଚକଙ୍କ ଭାଷାରେ, ଏହି କବିତାଗୁଡ଼ିକରେ କବିଙ୍କ ମଗ୍ନ ଚେତନା କେବଳ ବୈପ୍ଳବିକ ପୃଷ୍ଠଭୂମିରେ ତୀବ୍ର ହୋଇଉଠି ନାହିଁ; ଅଧିକନ୍ତୁ ଅତି ପ୍ରଚ୍ଛନ୍ନ ଭାବରେ ଶାନ୍ତିପାଇଁ ଆର୍ତ୍ତନାଦ କରିଛି ।

ଆଲୋଚକଙ୍କ ଭାଷାରେ – ''ଏହିପରି ୧୯୩୧ ମସିହାରୁ ମୃତ୍ୟୁ ପର୍ଯ୍ୟନ୍ତ ସଚ୍ଚିଦାନନ୍ଦ ଅଜସ୍ର କବିତା ରଚନା କରି କବିତା ସାହିତ୍ୟରେ ଇତିହାସ ସୃଷ୍ଟି କରିଛନ୍ତି । ସାମସମୟିକ ପରିସ୍ଥିତିରେ କବିତା ଯେଉଁ ଚେତନାରେ ହଜିଛି, କବି ସେ ଚେତନାକୁ ଆଦରି ନେଇଛନ୍ତି । ଆଦ୍ୟ ଜୀବନରେ ମାର୍କ୍‌ସଙ୍କର ପ୍ରେରଣାରେ ଦୀକ୍ଷିତ ହୋଇ ଭଗବାନ୍‌ଙ୍କୁ ଅସ୍ୱୀକାର କରିଛନ୍ତି । ପୁଣି ପରବର୍ତ୍ତୀକାଳରେ ଆଧୁନିକ ଚେତନାରେ ପୁଣି ଈଶ୍ୱରବୋଧରେ ଆସକ୍ତ ହୋଇପଡ଼ିଛନ୍ତି । ତେଣୁ ସାମସମୟିକ କବିତାର ଅନ୍ତଃସ୍ୱରହିଁ ରାଉତରାୟ କବିତାର ଅନ୍ତଃସ୍ୱର ।

ମୋଟ ଉପରେ କହିବାକୁ ଗଲେ, କବି ସଚ୍ଚିଦାନନ୍ଦଙ୍କ କବିତାର ଧାରାହିଁ ହେଉଛି ଓଡ଼ିଶାର କବିତାର ଧାରା ।

**କାବ୍ୟଗୁରୁ**

କବି ମାତ୍ରକେ ଏକ ସ୍ୱତନ୍ତ୍ର କାବ୍ୟଭଙ୍ଗୀର ଅଧିକାରୀ ହୋଇଥାନ୍ତି । କବି ସଚ୍ଚିଦାନନ୍ଦ ସେହିଭଳି ଏକ ନୂତନ କାବ୍ୟଭଙ୍ଗୀ ଓଡ଼ିଆ କବିତା କ୍ଷେତ୍ରରେ ପ୍ରଥମ କରି ସୃଷ୍ଟି କରିଛନ୍ତି – ଯାହାକି କ୍ରମେ ପରବର୍ତ୍ତୀ କବିମାନଙ୍କୁ ଅନୁପ୍ରେରଣା ଯୋଗାଇଛି । ଗୁରୁପ୍ରସାଦ, ସୀତାକାନ୍ତ, ରମାକାନ୍ତ, ସୌଭାଗ୍ୟ ଓ ଦୀପକ ପ୍ରଭୃତି କବିଗଣ ଏହି

ପରମ୍ପରା ଗ୍ରହଣ କରିଛନ୍ତି । ସେମାନେ ଅବଶ୍ୟ କେବଳ ସଚ୍ଚିଦାନନ୍ଦଙ୍କୁ ଅନୁକରଣ କରି ନାହାନ୍ତି, ମାତ୍ର ତାଙ୍କ ଚଲାବାଟରେ ଚାଲିଛନ୍ତି । କେବଳ ସେତିକି ନୁହେଁ, ସେମାନେ ସଚ୍ଚିଦାନନ୍ଦଙ୍କ କାବ୍ୟରୁ ପ୍ରେରଣାପାଇ ନିଜପାଇଁ ଗୋଟିଏ ଗୋଟିଏ ପଥ ପ୍ରସ୍ତୁତ କରିଚାଲିଛନ୍ତି । ସେହି ଦୃଷ୍ଟିରୁ ସଚ୍ଚିଦାନନ୍ଦ ଆଧୁନିକ ଓଡ଼ିଆ କବିମାନଙ୍କ ମଧ୍ୟରେ କାବ୍ୟଗୁରୁ ଆସନ ଅଧିକାର କରନ୍ତି ।

## ଉପନ୍ୟାସ

### ଚିତ୍ରଗ୍ରୀବ

୧୯୩୬ ମସିହାରେ ରଚିତ 'ଚିତ୍ରଗ୍ରୀବ' ଏକ ଅଭିନବ ଗଦ୍ୟରଚନା । ଏହାର ଆଖ୍ୟାନ ଭାଗ ଦୁର୍ବଳ, ଉପନ୍ୟାସ-ସୁଲଭ ବିଧିବଦ୍ଧ କଥାବସ୍ତୁ ଓ ଚରିତ୍ର ଚିତ୍ରଣ ଏଥିରେ ନାହିଁ । କଲିକତା ଚାଟାର୍ଜୀ ଷ୍ଟ୍ରିଟ ମେସ୍‌ରେ ରହୁଥିବା ସୌରୀନ୍ଦ୍ର ମହାନ୍ତି, ମୃଗାଙ୍କ ପଟ୍ଟନାୟକ, ଗଗନ ରାୟ ଓ ଗଣେଶ ଭୂୟାଁ ନାମକ ଚାରି ଜଣେ ବ୍ୟକ୍ତିଙ୍କର ଚତୁରଙ୍ଗ ସଂଘ ଗଠନ ଓ ଅନ୍ତରଙ୍ଗ ଆଳାପ-ଆଲୋଚନା ଏହାର ପ୍ରଧାନ ଉପଜୀବ୍ୟ ।

ପ୍ରଶ୍ନ ଉଠେ, 'ଚିତ୍ରଗ୍ରୀବ' କି ପ୍ରକାର ଉପନ୍ୟାସ ? ସାଧାରଣ ପ୍ରଚଳିତ ସଂଜ୍ଞା ସ୍ୱରୂପ – ପ୍ରକୃତି ଅନୁଯାୟୀ ଏହାକୁ ଠିକ୍ ଉପନ୍ୟାସ କୁହାଯାଇ ନ ପାରେ । ଏଥିରେ ପ୍ରବନ୍ଧର ଗାମ୍ଭୀର୍ଯ୍ୟ ରହିଛି । ଗବେଷଣା ପ୍ରବନ୍ଧ ଭଳି ପାଦଟୀକା ବାରମ୍ବାର ସ୍ଥାନିତ ହୋଇଛି । ପୁଣି ଏଥିରୁ ରମ୍ୟରଚନାର ସ୍ୱାଦ ମଧ୍ୟ ମିଳିଥାଏ । ତେଣୁ ଉପନ୍ୟାସ କ୍ଷେତ୍ରରେ ଏହା ଏକ ନୂତନ ପରିଭାଷା । ଏହାକୁ ଅଣ-ଉପନ୍ୟାସ ବା ଆଣ୍ଟିନଭେଲ କୁହାଯାଇପାରେ ବୋଲି ଆଲୋଚକ ଜୟନ୍ତ ମହାପାତ୍ର କହିଛନ୍ତି ।

୧୯୩୬ ମସିହାରେ ସେତେବେଳକାର 'ନବଭାରତ'ରେ 'ଚିତ୍ରଗ୍ରୀବ'ର ସମାଲୋଚନା ପ୍ରକାଶ ପାଇଥିଲା –

'ଶ୍ରୀ ସଚ୍ଚି ରାଉତରାୟଙ୍କ ଲିଖିତ 'ଚିତ୍ରଗ୍ରୀବ'ଟି ବଡ଼ ନୂତନ ଧରଣର ଲେଖା । ବାସ୍ତବିକ ଏପରି ଲିଖନ ଶୈଳୀ ଆଜିଯାଏ କୌଣସି ଓଡ଼ିଆ ଲେଖକ ଆୟତ୍ତ କଲା ପରି ଜଣାଯାଏ ନାହିଁ । ଲେଖକ ଅନେକ ପଢ଼ିଛନ୍ତି ବୋଲି ତାଙ୍କ ଲେଖାରେ ପରିଷ୍କାର ଦେଖାଇ ଦେଇଛନ୍ତି × × × ସଚ୍ଚିଦାନନ୍ଦଙ୍କ ଲେଖାର ଭବିଷ୍ୟତ୍ ଭଲ ଓ ଏଭଳି ଲେଖା ଓଡ଼ିଶାରେ କ୍ରମେ ଆଦର ପାଇବ ନିଶ୍ଚୟ !''

### ଗଳ୍ପ ସଂଗ୍ରହ .

'ଚିତ୍ରଗ୍ରୀବ'ରେ ଅଭିନବ ଉପନ୍ୟାସ ରଚନାଶୈଳୀ ପ୍ରବର୍ତ୍ତନ କରିଥିବା ପରି ସଚ୍ଚିଦାନନ୍ଦ ନିଜର ଗଳ୍ପ ସୃଷ୍ଟିରେ ମଧ୍ୟ କିଛି ପରୀକ୍ଷା-ନିରୀକ୍ଷା କରିଛନ୍ତି । ତାଙ୍କ ପୂର୍ବରୁ ଅବଶ୍ୟ ଓଡ଼ିଆ ସାହିତ୍ୟରେ ସାମାଜିକ ବାସ୍ତବତା ଭିତ୍ତିରେ କଥାସାହିତ୍ୟ ସୃଷ୍ଟି ହୋଇଥିଲା । ଫକୀରମୋହନ, କୁନ୍ତଳାକୁମାରୀ ପ୍ରଭୃତିଙ୍କ ଗଳ୍ପ ଉପନ୍ୟାସରେ ତାହାର ଉଦାହରଣ ମିଳେ । କିନ୍ତୁ ସମାଜବାଦୀ ବାସ୍ତବତା ସେମାନଙ୍କ ସାହିତ୍ୟରେ ଅନୁସୃତ ହୋଇ ନ ଥିଲା କହିଲେ ଚଳେ । ୧୯୧୭ ମସିହରେ ସୋଭିଏତ୍ ଇଉନିୟନ

ଜନ୍ମ ନେଲା । ପରେ ବୁର୍ଜୋୟା କଳାସାହିତ୍ୟଠାରୁ ଭିନ୍ନ ସମାଜବାଦୀ ବାସ୍ତବତା ଭିତ୍ତିରେ ସାହିତ୍ୟ ସୃଷ୍ଟି ହେଲା । ସଚ୍ଚିଦାନନ୍ଦ ତାଙ୍କ ଗଳ୍ପ ସୃଷ୍ଟିରେ ଏହି ବ୍ୟାଖ୍ୟାତ୍ମକ ବାସ୍ତବତା ସହିତ ସମାଜବାଦୀ ବାସ୍ତବତାର ଆଭିମୁଖ୍ୟ ଗ୍ରହଣ କଲେ ।

ସଚ୍ଚିଦାନନ୍ଦଙ୍କ ପାଞ୍ଚ ଗୋଟି ଗଳ୍ପ ସଂଗ୍ରହ ଅଛି । ସେଗୁଡ଼ିକ ହେଲା, ମଶାଣିର ଫୁଲ (୧୯୪୫), ମାଟିର ତାଜ (୧୯୪୭), ଛାଇ (୧୯୪୯), ମାଙ୍କଡ଼ ଓ ଅନ୍ୟାନ୍ୟ ଗଳ୍ପ (୧୯୮୩) ଓ ନୂତନ ଗଳ୍ପ (୧୯୯୦) ।

ବ୍ୟାଖ୍ୟାତ୍ମକ ବାସ୍ତବତାଭିତ୍ତିକ ଗଳ୍ପ ହେଉଛି 'ବିସର୍ଜନ', 'ରିକ୍‌ସାବାଲା', 'ଆଙ୍ଗୁଠି', 'ଅନ୍ଧାରୁଆ' ପ୍ରଭୃତି । ଏଥିରେ ଶୋଷଣ, ପୀଡ଼ନର ଚିତ୍ର ମିଳେ । ତା'ର କାରଣସ୍ୱରୂପ ଅନ୍ଧବିଶ୍ୱାସ, ଧର୍ମଭୟ, ଜାତିଭେଦ, ପୁରୋହିତ ପ୍ରଥା, ଶ୍ରେଣୀବୈଷମ୍ୟ, ସାମନ୍ତବାଦୀ ମନୋବୃତ୍ତି ପ୍ରଭୃତି ଉପସ୍ଥାପିତ ହୋଇଛି । ଅଳ୍ପ କେତୋଟି ଗଳ୍ପ, ଯଥା – 'ତୃଣ', 'ଗଳ୍ପ ନୁହେଁ', 'ରାଜା-ରାଣୀ ଓ କୁକୁର' ସମାଜବାଦୀ ବାସ୍ତବତା ଭିତ୍ତିରେ ରଚିତ । ତୃଣ ସାମାନ୍ୟ ଓ ତୁଚ୍ଛ ହୋଇପାରେ ; କିନ୍ତୁ ଗଳ୍ପ ମଧ୍ୟରେ ପ୍ରଦର୍ଶିତ ହୋଇଥିବା ପ୍ରକାରେ ତାହା ଯୁଦ୍ଧଶିବିର ଏବଂ ତହିଁରେ ଥିବା ଶକ୍ତିଶାଳୀ ଅସ୍ତ୍ରଶସ୍ତ୍ର ଓ ସେନାବାହିନୀକୁ ମଧ୍ୟ ଧ୍ୱଂସ କରିଦେଇପାରେ । ସେହିପରି 'ରାଜାରାଣୀ ଓ କୁକୁର' ଗଳ୍ପରେ ରାଜା ପ୍ରଜାର ଶ୍ରେଣୀସଂଘର୍ଷର ଚିତ୍ର ପରିସ୍ଫୁଟ । ସେହି ସଂଘର୍ଷରେ ପ୍ରଜାମଣ୍ଡଳର ବିଜୟ ସୁନିଶ୍ଚିତ । 'ଗଳ୍ପ ନୁହେଁ' ଏକ ଭିନ୍ନସ୍ୱାଦର ଗଳ୍ପ । ଅମିତାଭ ଚରିତ୍ରର ବ୍ୟକ୍ତିତ୍ୱରେ କବି ଓ କର୍ମୀର ସମ୍ପର୍କ ପ୍ରଦର୍ଶନ କରିଛନ୍ତି । କବି ଭାବରେ ଅମିତାଭ ପ୍ରେମପ୍ରବଣ, କିନ୍ତୁ କର୍ମୀଭାବେ ସେହିପରି ବିଦ୍ରୋହୀ ଓ ବସ୍ତୁବାଦୀ । ମୀରା ସହ ବିବାହ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରି ସେ କଲିକତାରୁ କଟକ ପଳାଇ ଆସିଛି । କବି ଓ କର୍ମୀର ଦ୍ୱନ୍ଦ୍ୱରେ କର୍ମୀରହିଁ ଜୟ ହୋଇଛି ।

ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ରଚିତ ହୋଇଥିବା ଗଳ୍ପଗୁଡ଼ିକ ହେଲା 'ମଶାଣିର ଫୁଲ', 'ଅନ୍ଧାରୁଆ, 'ମଲା କଇଁ', 'ମାଟିର ତାଜ' ଇତ୍ୟାଦି ।

କବି କିଶୋର ଜୀବନ ପଲ୍ଲୀ ପରିବେଶରେ ଅତିବାହିତ କରିଥିଲେ । ସେହି ପଲ୍ଲୀ-ପରିବେଶର ସ୍ନିଗ୍ଧ-ମଧୁର ସ୍ମୃତି 'ପଲ୍ଲିଶ୍ରୀ' କାବ୍ୟ ସଂକଳନରେ ପ୍ରକାଶ ପାଇଥିଲା । ତାଙ୍କ ରଚିତ ବିଭିନ୍ନ ଗଳ୍ପରେ ତାହାରି ସ୍ପଷ୍ଟ ମୁଦ୍ରାଙ୍କ ପରିଲକ୍ଷିତ ହୁଏ । ସେଗୁଡ଼ିକ ହେଉଛି 'ମଲା କଇଁ', 'ମାଙ୍କଡ଼', 'ଗୋଧି', 'ପଦ୍ମବୀଜ' ପ୍ରଭୃତି ।

**ପ୍ରବନ୍ଧ ଓ ସମାଲୋଚନା**

କବି ସଚ୍ଚିଦାନନ୍ଦ ମଧ୍ୟ ବହୁ ପ୍ରବନ୍ଧ ରଚନା କରିଛନ୍ତି । 'ପ୍ରେମ ଓ ପଣ୍ୟ' ଦୀପକ ସଂଘ, କଲିକତା ଦ୍ୱାରା ୧୯୩୫ ମସିହାରେ ପ୍ରକାଶିତ ହୋଇଥିଲା । 'ସାହିତ୍ୟ ବିଚାର ଓ ମୂଲ୍ୟବୋଧ' ୧୯୭୨ ମସିହାରେ ପ୍ରକାଶ ପାଇଥିଲା । ତା'ର ଦୁଇ ବର୍ଷ ପରେ ଅର୍ଥାତ୍ ୧୯୭୪ରେ ପ୍ରକାଶ ପାଇଲା 'ସାହିତ୍ୟର କେତେ ଦିଗ' ।

**ଆତ୍ମଜୀବନୀ**

ଲେଖକଙ୍କ ଆତ୍ମଜୀବନୀ 'ଉତ୍ତର କକ୍ଷ' ଦୁଇ ଭାଗରେ ବିଭକ୍ତ । ଦ୍ୱିତୀୟାର୍ଦ୍ଧକୁ ଉତ୍ତରାର୍ଦ୍ଧ ବୋଲି କବି ନାମିତ କରିଛନ୍ତି । ତାଙ୍କ ଆତ୍ମଜୀବନୀ କେବଳ ତାଙ୍କର

ନୁହେଁ, ତାଙ୍କ ସମୟର ଏକ ଆତ୍ମଲିପି ବୋଲି କବି କହିଛନ୍ତି । ବିଂଶ ଶତାବ୍ଦୀର ଘଟଣାମାନ – ଯାହା ସମ୍ବନ୍ଧରେ ଲେଖକଙ୍କର କିଛି ଅନୁଭୂତି ଥିଲା କିମ୍ବା ଯାହାର ପ୍ରଭାବ ତାଙ୍କ ଉପରେ ଓ ତାଙ୍କ ସାହିତ୍ୟ ଉପରେ ପଡ଼ିଥିଲା – ସେଥିରେ ସ୍ଥାନ ପାଇଛି । ସେହି ଦୃଷ୍ଟିରୁ ତାଙ୍କ ଆତ୍ମଜୀବନୀ କେବଳ ଶତାବ୍ଦୀର ବା ଦେଶର ନୁହେଁ ସମଗ୍ର ବିଶ୍ୱର ପରିଧିକୁ ସ୍ପର୍ଶ କରିଛି ବୋଲି କବି ଦାବି କରନ୍ତି ।

**ମାତା ଓ ପିତାଙ୍କ ପରଲୋକ**

ସଚ୍ଚିଦାନନ୍ଦଙ୍କ ମାମା (ମାତା)ଙ୍କ ୧୯୪୦ ମସିହା ବୈଶାଖ ଶୁକ୍ଳ ଦ୍ୱାଦଶୀ ଦିନ ବାଙ୍କୀ ନରଣପୁରଠାରେ ମୃତ୍ୟୁ ହେଲା । ମାମାଙ୍କର ବଡ଼ବାପାପୁଅ ଭାଇ ଆର୍ତ୍ତବଲ୍ଲଭ ସବ୍‌ରେଜିଷ୍ଟ୍ରର ଚାକିରି କରୁଥିଲେ । ସେ ଅବସର ଗ୍ରହଣପରେ ନିଜ ଗାଁ ନରଣପୁରରେ ରହୁଥିଲେ । ମାମା ତାଙ୍କ ଶୁଦ୍ଧିକ୍ରିୟାରେ ଯୋଗ ଦେବାପାଇଁ ନରଣପୁର ଯାଇଥିଲେ । ସେଠାରେ ଝାଡ଼ାବାନ୍ତି ରୋଗରେ ଆକ୍ରାନ୍ତ ହେଲେ । ସେତେବେଳେ ସଚ୍ଚିଦାନନ୍ଦ ରହୁଥାନ୍ତି କଟକର ରାଣୀହାଟଠାରେ ଥିବା 'ଆରତି' ଅଫିସରେ । ସେ ଏ ଖବର ପାଇ କଟକ ମେଡ଼ିକାଲ ସ୍କୁଲ୍‌ର ଜଣେ ଉଚ୍ଚଶ୍ରେଣୀର ଛାତ୍ର ଓ ଜଗଦୀଶ କମ୍ପାଉଣ୍ଡରଙ୍କୁ ନେଇ ଖୋରଧା ଗଲେ । ସେଠୁ ଟ୍ୟାକ୍ସି ଭଡ଼ା କରି ବାଙ୍କୀ ଗଲେ । ସେଠାର ଡାକ୍ତରଖାନାରୁ କିଛି ଔଷଧପତ୍ର ସଂଗ୍ରହ କରି ନରଣପୁର ଗଲେ । ମାତ୍ର ଗାଁ ମୁଣ୍ଡରେ ପହଞ୍ଚିବା ବେଳକୁ ମାତାଙ୍କ ମୃତ୍ୟୁ ଖବର ପାଇଲେ । ଖଇଫୁଟା ଖରାତାତି । ଟ୍ୟାକ୍ସିରେ ଶ୍ମଶାନ ଯାଏ ଗଲେ । ମାମା ଚିତା ଉପରେ ଶୋଇଥାନ୍ତି । ମାମାଙ୍କୁ ଦେଖି ସଚ୍ଚିଦାନନ୍ଦ କାନ୍ଦିଉଠିଲେ । ମୁଖାଗ୍ନି ଦେଇ ଏକମୁହାଁ ହୋଇ ଗାଡ଼ିକୁ ଫେରିଲେ । ସେଠାରୁ ଗ୍ରାମ ଗୁରୁଜଙ୍ଗକୁ ଆସିଲେ । ସେଠାରେ ୧୪ ଦିନ ରହି କ୍ରିୟାକର୍ମ ଇତ୍ୟାଦି କଲେ ।

ମାମାଙ୍କ ଚିତାଭସ୍ମ ଓ ଅସ୍ଥି ନରଣପୁରରୁ ଆଣି ଗାଁ ମୁଣ୍ଡ ପଶ୍ଚିମପଟ ଟାଙ୍ଗିରେ ସଚ୍ଚିଦାନନ୍ଦ ଗୋଟିଏ ସମାଧି ନିର୍ମାଣ କଲେ । ଗାଁରେ ଥିଲା ବେଳେ ପ୍ରାୟ ପ୍ରତିଦିନ ଉପରବେଳା ସେଠାକୁ ଯାଇ ସମାଧି ପାଖେ ବସି ରହୁଥିଲେ । ସୁଦୂର ଅତୀତର ବହୁ କଥା ମନେ ପଡ଼ିଯାଇଥିଲା ।

କବିଙ୍କ ବ୍ୟଥା ଫୁଟିଉଠିଛି – ''ମାମା ଥିଲା ଏକ ସର୍ବଂସହା ନାରୀମୂର୍ତ୍ତି । ଦୁଃଖରେ ତା'ର ଜୀବନ ଗଢ଼ା ହୋଇଥିଲା, ଦୁଃଖରେ ହିଁ ଲୀନ ହୋଇଗଲା ।''

ବିବାହ ପରେ ସଚ୍ଚିବାବୁ ପତ୍ନୀଙ୍କ ସହିତ ଗୋଲାପଲ୍ଲୀ ଯାଇଥିଲେ । ସେଠାରେ ପିତାଙ୍କ ଅସୁସ୍ଥତା ବିଷୟରେ ନନ୍ଦଦାଦାଙ୍କଠାରୁ ଟେଲିଗ୍ରାମ ପାଇଲେ । ସାଙ୍ଗେ ସାଙ୍ଗେ ଗ୍ରାମକୁ ଆସିଲେ । ମାତ୍ର ଆସିବା ପୂର୍ବଦିନ ପିତାଙ୍କର ଶବଦାହ ହୋଇଯାଇଥିଲା । ତେଣୁ ସେ ପିତାଙ୍କର ଶେଷ ଦର୍ଶନ ପାଇପାରି ନ ଥିଲେ । ଚିର ଦିନ ଏଥିପାଇଁ ତାଙ୍କ ଜୀବନରେ ଦୁଃଖ ରହିଗଲା ବୋଲି ସଚ୍ଚିଦାନନ୍ଦ ତାଙ୍କ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି ।

ସଚ୍ଚିଦାନନ୍ଦ ବଡ଼ବାପାଙ୍କର ପୋଷ୍ୟପୁତ୍ର ହୋଇଯାଇଥିଲେ । ତେଣୁ ବଡ଼ବାପାଙ୍କର ଫାଲ୍ଗୁନ ଶୁକ୍ଳ ତିଥିରେ ଶ୍ରାଦ୍ଧ ଦେଇ ଆସୁଥିଲେ । ମାମାର ଶ୍ରାଦ୍ଧ ମଧ୍ୟ ବୈଶାଖ ଶୁକ୍ଳ ଦ୍ୱାଦଶୀ ତିଥିରେ ଦେଉଥିଲେ ।

**ପତ୍ନୀଙ୍କ ଦେହାନ୍ତ**

୧୯୯୯ ମସିହା ଅକ୍ଟୋବର ମାସ ୮ ତାରିଖ ଅପରାହ୍ଣରେ ପତ୍ନୀ ଭୂଦେବୀଙ୍କର ହଠାତ୍ ଦେହାନ୍ତ ହେଲା । ଦୀର୍ଘ ୫୫ ବର୍ଷ ବୈବାହିକ ଜୀବନଯାପନ କରିବାପରେ ପ୍ରାଣାଧିକା ପତ୍ନୀଙ୍କ ପ୍ରୟାଣ ଥିଲା କବିଙ୍କ ଜୀବନରେ ସବୁଠାରୁ ବଡ଼ ଆଘାତ । ସ୍ୱରଚିତ କବିତା 'ବିୟୋଗ'ରେ କବି ଜୀବନର ଗଭୀର ବ୍ୟଥା ପରିସ୍ଫୁଟ ।

''କେହି ନାହିଁ, କିଛି ନାହିଁ, ସବୁ ଶୂନ୍‌ଶାନ୍
ଶତାବ୍ଦୀ ହୋଇନି ଶେଷ
ତୁମ୍ଭେ କିଆଁ ତରତର ହୋଇ
ଚାଲିଗଲ ସମସ୍ତଙ୍କୁ ଛାଡ଼ି

× × ×

ସବୁ ପକ୍ଷୀ ଫେରୁଛନ୍ତି ଘରେ
ତୁମ୍ଭେ କିଆଁ ଯାତ୍ରାକଲ ଅଜଣା ସୁଦୂରେ
ସବୁକଥା ପଛରେ ପକାଇ
ଅବଶିଷ୍ଟ ଦୂରତ୍ୱ ସେପାରେ ।''

**ଦେହାବସାନ**

ସଚ୍ଚିଦାନନ୍ଦଙ୍କର ମୃତ୍ୟୁ ହେଲା ୨୦୦୪ ମସିହା ଅଗଷ୍ଟ ମାସ ୨୧ ତାରିଖରେ । ଜରା ତାଙ୍କୁ ଗ୍ରାସ କରିଥିଲା । ଶେଷ ପାଞ୍ଚ ଛଅ ବର୍ଷ ହେଲା ସେ ଦୃଷ୍ଟି ଶକ୍ତି ହରାଇଥିଲେ । ତେବେ ଜଣେ ଦୁଇ ଜଣ ସହାୟକଙ୍କ ମାଧ୍ୟମରେ ଭାବରାଜି ବ୍ୟକ୍ତ କରିଚାଲିଥିଲେ । ନିଷ୍ଠାର ସେ ଥିଲେ ଯେପରି ମୂର୍ତ୍ତିମନ୍ତ ପ୍ରତୀକ । ସଭାସମିତିକୁ ମଧ୍ୟ ଆସିବାରେ ହେଳା କରୁ ନ ଥିଲେ । ତେବେ ଯେପରି ଅବସ୍ଥାରେ ଆସୁଥିଲେ, ତାହା ଥିଲା ଅତୀବ ବେଦନାପୂର୍ଣ୍ଣ । ଏ ବିଷୟରେ କେହି ତାଙ୍କୁ ପଚାରିଲେ ସେ କହୁଥିଲେ – ''ଘରେ ବସି କ'ଣ କରିବି ?''

ପୂର୍ବରୁ ପତ୍ନୀଙ୍କ ଦେହାନ୍ତ ହୋଇସାରିଥିଲା । ସେ ଏକବାରେକେ ନିଃସଙ୍ଗ ହୋଇଗଲେ । ନିଃସଙ୍ଗତା ତ କବି ଜୀବନର ନିତ୍ୟସଙ୍ଗୀ । ମୃତ୍ୟୁ ହିଁ ତାଙ୍କୁ ଶେଷରେ ସେଥିରୁ ମୁକ୍ତି ଦେଲା ।

ସଚ୍ଚିବାବୁଙ୍କର ନିଜ ବାସଭବନଠାରୁ ମହାଯାତ୍ରା ଆରମ୍ଭ ହେଲା ସରକାରୀ ତତ୍ତ୍ୱାବଧାନରେ । ସତୀଚଉରାଠାରେ ତାଙ୍କର ଶବ ଦାହ କରାଗଲା । କବିଙ୍କର ସ୍ୱପ୍ନ ଥିଲା ତାଙ୍କ ଜନ୍ମମାଟି ଖୋର୍ଦ୍ଧାର ଗୁରୁଜଙ୍ଗଠାରେ ଶେଷକୃତ୍ୟ ସମାପନ ହେବ । କିନ୍ତୁ ବିଧିର କ୍ରୂର ନିର୍ଦ୍ଦେଶରେ ତାହା ସାକାର ହୋଇ ନ ଥିଲା ।

ଓଡ଼ିଆ ସାହିତ୍ୟର ବିଶିଷ୍ଟ ସମାଲୋଚକ ପଠାଣି ପଟ୍ଟନାୟକ ଶୋକବାର୍ତ୍ତାରେ ଲେଖିଥିଲେ –

''... ହେ ପ୍ରଣମ୍ୟ କବି !

କେଉଁ ଉପାୟରେ ଆପଣଙ୍କର ସ୍ତୁତିଚାରଣ କରିବି ? ଆପଣ ତ ଥିଲେ କବିମାନଙ୍କର କବି (Poet's Poet) !...''

ଚେତନାଧର୍ମୀ ମାସିକ ସାହିତ୍ୟ ପତ୍ରିକା 'ଜନସୁଧା' ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିଥିଲା ଏଇ ଭାବରେ –

''ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ରାଉତରାୟ ଓଡ଼ିଆ ସାହିତ୍ୟର ପ୍ରବାଦପୁରୁଷ । ଯୁଗନ୍ଧିର ସ୍ରଷ୍ଟା । ମୁଖ୍ୟତଃ କବି । ଓଡ଼ିଆ କବିତାରେ ସତୁରିବର୍ଷବ୍ୟାପୀ ଅଗ୍ରସୁରୀ ଓ ନାନା ନବଚେତନାର ନାନ୍ଦୀକର । କଥା ସ୍ରଷ୍ଟା ଭାବରେ ସ୍ୱକୀୟତାର ଓ ପ୍ରାବନ୍ଧିକଭାବେ ପ୍ରଜ୍ଞାର ସ୍ୱାକ୍ଷର ରଖିଯାଇଛନ୍ତି । ଓଡ଼ିଶାର ସାରସ୍ୱତ ଜଗତର ସେ ଥିଲେ ଅଭିଭାବକ । କବିଗୁରୁ ସମ୍ବୋଧନ ଯଥାର୍ଥ ହୋଇପାରିବ ।''

ମୂଲ୍ୟାୟନ

ସଚ୍ଚିଦାନନ୍ଦଙ୍କ ପ୍ରତିଭା ସୂର୍ଯ୍ୟତୁଲ୍ୟ ଦ୍ୟୁତିମାନ୍ । ତାହାର ଆକଳନ କୌଣସି ଆଲୋଚକ ପକ୍ଷେ ସହଜସାଧ କର୍ମ ନୁହେଁ । ଏକ କଥାରେ କହିଲେ, ପରମ୍ପରା ବିରୋଧରେ ସଚେତନ ବିଦ୍ରୋହ,ଭଗବାନ୍ ଓ ଧର୍ମରେ ଅନାସ୍ଥା, ପ୍ରତିଷ୍ଠିତ ମୂଲ୍ୟବୋଧରେ ସଂଶୟ, ନଗରକୈନ୍ଦ୍ରିକ ସଭ୍ୟତାର ପ୍ରଭାବ, ଆନ୍ତର୍ଜାତିକ ଭାବଧାରା ସହ ସଂଯୋଗ ସ୍ଥାପନ, ଗାନ୍ଧୀ, ଫ୍ରୟେଡ୍, ସାମ୍ୟବାଦ, ମନସ୍ତତ୍ତ୍ୱ ସମ୍ପର୍କରେ ସଚେତନତା, କାମ୍ୟୁ, ହୁଇଟ୍‌ମ୍ୟାନ, ମାୟାକୋଭସ୍କି ଆଦି ଧାରା ସହ ଘନିଷ୍ଠତା, ପ୍ରେମରେ ଦେହଜ ବାସନାକୁ ସ୍ୱୀକୃତି, ବିଜ୍ଞାନର ସୁଫଳ ଓ କୁଫଳ ସମ୍ପର୍କରେ ସଚେତନତା, ଶବ୍ଦପ୍ରୟୋଗରେ ମିତବ୍ୟୟିତା, ବାକ୍ ସଂକ୍ଷେପଣ, ଛନ୍ଦରେ ସ୍ୱାଚ୍ଛନ୍ଦ୍ୟ ଓ ଆଧୁନିକତା, ନୂତନ ଶବ୍ଦର ଗଠନ, ଶବ୍ଦର ସାମାଜିକୀକରଣ, ବିଶ୍ୱସାହିତ୍ୟ – ସଂସ୍କୃତି, ଭାରତୀୟ ପୁରାଣ, ଇତିହାସ ସହ ସଂଯୋଗ ସ୍ଥାପନ, ବାକ୍‌ରୀତି ସହ କାବ୍ୟିକ ରୀତିର ମିଳନ, ଛନ୍ଦରେ ଅନ୍ତିମରେ ପ୍ରତୀକ, ଚିତ୍ରକଳ୍ପର ପ୍ରୟୋଗ ଆଦି ଅଜସ୍ର ଉପାଦାନ ସଚ୍ଚିଦାନନ୍ଦଙ୍କ କବିତାରେ ପରିଲକ୍ଷିତ ହୁଏ । ସଚ୍ଚିଦାନନ୍ଦ ସବୁ ଦୃଷ୍ଟିରୁ ଓଡ଼ିଆ ଆଧୁନିକତାବାଦର ଅଗ୍ରଗାମୀ ପ୍ରଭାବଶାଳୀ ବ୍ୟକ୍ତି । ପରମ୍ପରା ସହିତ ଆଧୁନିକତାର, ଆଧୁନିକତା ସହିତ ଆଧୁନିକତାବାଦର ସେ ମହା ସମନ୍ୱୟ ଆଣିଛନ୍ତି । ପୁଣି ଆନ୍ତର୍ଜାତିକ ଆଧୁନିକତାବାଦର ତ୍ରିଧାରା ଓଡ଼ିଶା ମାଟିରେ ମହାସଙ୍ଗମ ଘଟାଇଛନ୍ତି ।

ଆଲୋଚକ ଶୈଳଜ ରବିଙ୍କ ଭାଷାରେ – ''ଦେଶ କାଳର ହିଡ଼ବାଡ଼ ଡେଇଁ କାଳିଦାସର ବର୍ଣ୍ଣନା ଆଉ ଅଷ୍ଟ୍ରେଲିଆର ମେଲବୋର୍ଣ୍ଣ ଭିତରେ ଏକାୟନ କରିପାରେ, ଉଭୟଙ୍କୁ ମିଶାଇ ନିଜପାଇଁ ନିବିଡ଼ ନୀଡ଼ଟିଏ ଗଢ଼ି ଦେଇପାରେ କେବଳ ସଚି ରାଉତରାୟଙ୍କ ଭଳି ଏକ ଦୁର୍ଦ୍ଧର୍ଷ ଗତିଶୀଳ କବି ବ୍ୟକ୍ତିତ୍ୱ ।'' ସେଇ କେବଳ ଘୋଷଣା କରିପାରେ – ''ଆଧୁନିକର ଲକ୍ଷ୍ୟ ଆଧୁନିକତାର ।''

❑❑❑



# ନିର୍ଭୀକ ସାହିତ୍ୟିକ
# ଗୋଦାବରୀଶ ମହାପାତ୍ର
## [୧୮୯୮-୧୯୬୫]

ଗୋଦାବରୀଶ ମହାପାତ୍ର ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକ ନିଷ୍ଠାପର କୃତୀ ସାଧକ । ତାଙ୍କର ପ୍ରତିଭା ଥିଲା ଅସାଧାରଣ ଓ ତାଙ୍କର ସାହିତ୍ୟିକ ରୀତି ଓ ଶୈଳୀ ମଧ୍ୟ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଓ ସ୍ୱକୀୟ । ସେ ଥିଲେ ଏକାଧାରରେ କବି, ସାହିତ୍ୟିକ, ସମାଲୋଚକ, ଔପନ୍ୟାସିକ, ଗାଳ୍ପିକ, ସାମ୍ବାଦିକ ଓ ସମାଜସେବକ । ପ୍ରତ୍ୟେକ କ୍ଷେତ୍ରରେ ତାଙ୍କର ସ୍ୱାତନ୍ତ୍ର୍ୟ ଓ ଅନବଦ୍ୟ ସର୍ଜନା ସର୍ବବାଦିସମ୍ମତ । ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ଓ ପୂର୍ଣ୍ଣାଙ୍ଗ ଉତ୍କଳପାଇଁ ତାଙ୍କର ଅବଦାନ କୌଣସି ଗୁଣରେ ମଧ୍ୟ କମ୍ ନୁହେଁ । ପୁଣି ରାଜନୈତିକ ଓ ସାମାଜିକ ପରିବେଶକୁ ଶୁଦ୍ଧ ଓ ସଂସ୍କୃତ କରିବାପାଇଁ ଯେଉଁ ନିଆଁଖୁଣ୍ଟା ସ୍ରୋତ ଝରାଇଛନ୍ତି ତାହା ଅନତିକ୍ରମ୍ୟ ହୋଇ ରହିଛି । ତାଙ୍କ ସାହିତ୍ୟ ସୃଷ୍ଟି ଯେପରି ତୀକ୍ଷ୍ଣ ବ୍ୟଙ୍ଗରେ ଶାଣିତ, ସେହିପରି ମାନବିକ ସମ୍ବେଦନ ଏବଂ ଆଦର୍ଶରେ ଉଜ୍ଜ୍ୱଳ ଓ ପ୍ରାଣବନ୍ତ ।

### ଜନ୍ମ

୧୮୯୮ ମସିହା ଅକ୍ଟୋବର ମାସରେ ଅବିଭକ୍ତ ପୁରୀ ଜିଲ୍ଲା ବାଣପୁର ଥାନା କୁମାରାଙ୍ଗ ଗ୍ରାମରେ ଗୋଦାବରୀଶ ମହାପାତ୍ର ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଥିଲା ଦୟାନିଧି ମହାପାତ୍ର । ତାଙ୍କ ପ୍ରଥମ ପତ୍ନୀଙ୍କ ବିୟୋଗ ହେବାରୁ

ସେ ଦ୍ୱିତୀୟବାର ବିବାହ କରିଥିଲେ । ଦୟାନିଧି ମହାପାତ୍ରଙ୍କ ଔରସରୁ ଓ ଦ୍ୱିତୀୟ ପତ୍ନୀଙ୍କ ଗର୍ଭରୁ ଭୂମିଷ୍ଠ ହୋଇଥିଲେ ପଦ୍ମନାଭ ଓ ଗୋଦାବରୀଶ । ଗୋଦାବରୀଶ ଦ୍ୱିତୀୟ ସ୍ତ୍ରୀଙ୍କର ଦ୍ୱିତୀୟ ପୁତ୍ର ଥିଲେ ।

**ବାଲ୍ୟକାଳ**

ଗୋଦାବରୀଶଙ୍କର ଶୈଶବରୁ ପିତୃବିୟୋଗ ଘଟିଲା । ତାଙ୍କର ବୋଉ ଜୀବିତ ଥିଲେ ସତ୍ୟ, ମାତ୍ର ଲାଳନ ପାଳନର ଭାର ନେଇଥିଲେ ବୃଦ୍ଧା ଜେଜେମାଆ । ସେ ଗୋଦାବରୀଶଙ୍କ ସମେତ ଅନ୍ୟ ନାତିମାନଙ୍କୁ କାହାଣୀ ଶୁଣାଉଥିଲେ । ସେମାନଙ୍କୁ ସାଙ୍ଗରେ ବୁଲାଇ ନେଉଥିଲେ । ଜେଜେମାଆଙ୍କର ସ୍ନେହରଜ୍ଜୁରେ ଗୋଦାବରୀଶ ବାନ୍ଧି ହୋଇପଡ଼ିଥିଲେ ।

ଗୋଦାବରୀଶ ପିଲାଦିନେ ହାତରେ ରୁପାଖଡୁ ଓ ଅଣ୍ଟାରେ ଅଣ୍ଟାସୂତା ଲଗାଇଥିଲେ ।

**ଶିକ୍ଷା**

ଛ'-ସାତ ବର୍ଷ ହୋଇଥିଲାବେଳେ ଗୋଦାବରୀଶ ଅବଧାନଙ୍କ ପାଖେ ଶିକ୍ଷା ଲାଭ କଲେ । ଅବଧାନଙ୍କୁ ଭଲ ଶୁଭୁ ନ ଥିଲା । ଲୋକେ ତାଙ୍କୁ କାଲା ଅବଧାନ କହୁଥିଲେ । ତାଙ୍କର ଚାହାଳିର ନିର୍ଦ୍ଦିଷ୍ଟ ସ୍ଥାନ ନ ଥିଲା । ଯେଉଁଦିନ ଯାହା ପିଣ୍ଡା ଖାଲି ଥାଏ, ସେହି ଦିନ ତାହା ପିଣ୍ଡାରେ ଚାହାଳି ବସୁଥିଲା । ଅବଧାନେ ପାଳି କରି ଗାଁର ପିଲାଙ୍କ ଘରେ ଖାଉଥିଲେ । କିଛି ଦିନ ପରେ ଆଉ ଜଣେ ଶିକ୍ଷକ ଗ୍ରାମକୁ ଆସିଲେ । ତାଙ୍କ ନାମ ଥିଲା ଭିକାରି ଚରଣ ଦାସ । ସେ ପାଠ ପଢ଼ାଇବା ସାଙ୍ଗକୁ ପୁରାଣ ପଢ଼ିବା, ଚାଷ କାମ ପ୍ରଭୃତି କରୁଥିଲେ । ସେ ଗୋଦାବରୀଶଙ୍କୁ ଖୁବ୍ ଭଲ ପାଉଥିଲେ । ତାଙ୍କରି ଆଶୀର୍ବାଦ ଗୋଦାବରୀଶଙ୍କୁ ମଣିଷ କରିବାରେ ସାହାଯ୍ୟ କରିଥିଲା ।

ବହୁଦିନ ପରେ କୁମାରାଙ୍ଗ ଶାସନରେ ପ୍ରାଥମିକ ବିଦ୍ୟାଳୟ ଖୋଲିଲା । ଘର ତିଆରି ହୋଇ ନ ଥିବାରୁ ମନ୍ଦିର ମଣ୍ଡପରେ ବିଦ୍ୟାଳୟଟି ଚାଲିଲା । ଗୋଦାବରୀଶ ସେହି ପ୍ରାଥମିକ ବିଦ୍ୟାଳୟରେ ପାଠ ଆରମ୍ଭ କଲେ । କିନ୍ତୁ ପାଠ ପଢ଼ିବା ନାଁ ପଡ଼ିଲେ ତାଙ୍କୁ ଡର ମାଡୁଥିଲା । ସ୍କୁଲ ବେଳ ହେଲେ ସେ ଝାଡ଼ାଯିବା ବାହାନାରେ ବାହାରକୁ ପଳାଇ ଯାଉଥିଲେ । କେତେବେଳେ କାହାଘରେ ଲୁଚି ରହୁଥିଲେ । ତାଙ୍କୁ ଖୋଜି ଆଣି ଭାଇନା ଚାହାଳିରେ ଛାଡ଼ି ଯାଉଥିଲେ । ବେଳେ ବେଳେ ସେ ଡିଆଁଟାଏ ମାରି ଦେଉଥିଲେ ଯେ ତାଙ୍କ ପତ୍ତା ମିଳୁ ନ ଥିଲା । ସାଙ୍ଗ ପିଲାମାନେ ତାଙ୍କୁ ତେଣୁ 'ହରିଣ ଗୋଦାବରୀଶ' ବୋଲି ଡାକୁଥିଲେ ।

ଗୋଦାବରୀଶ ମଧ୍ୟ ପିଲାଦିନୁ ପଦକୁ ପଦ ମିଳାଇ କବିତା ଲେଖିବାରେ ଆନନ୍ଦ ପାଉଥିଲେ । ଲେଖାଗୁଡ଼ିଏ ହେଲେ ତାକୁ ଚିରି ପକାଉଥିଲେ । ଏହି କବିତା

ଲେଖାପାଇଁ ଶିକ୍ଷକ ତଥା ଭାଇନାଙ୍କ ଠାରୁ ଗାଳି ବି ଶୁଣୁଥିଲେ । ସ୍କୁଲ୍‌ର ଗୌରହରି ମାଷ୍ଟ୍ରେ ଗୋଦାବରୀଶ ଆସି ନ ଥିବା ଦେଖିଲେ କହୁଥିଲେ – ''ଗୋଦାବରୀ ଘରେ ବସି ଗୀତ ବାନ୍ଧୁଥିବ । ଯାଅ ତାକୁ ଧରିଆଣ ।''

ଏହା ପ୍ରାୟ ନିତ୍ୟନୈମିତ୍ତିକ ଘଟଣାରେ ପରିଣତ ହୋଇଗଲା । ଗୋଦାବରୀଶ ମଧ୍ୟ ଭାଇନାଙ୍କ ସହିତ ବିଲ-ବଗିଚାକୁ ଯାଉଥିଲେ । ଶୀତ ରାତିରେ ଭଅଁରା ପାଖରେ ନିଆଁକାଳି ଗପସପ କରୁଥିଲେ ।

ଗୋଦାବରୀଶ ସାହିତ୍ୟରେ ପ୍ରବୀଣ ଥିଲେ । ପିଲାଦିନୁ ସେ ପୁରାଣ ପଢ଼ିବାକୁ ଭଲ ପାଉଥିଲେ । ଜେଜେମାଆ ମଧ୍ୟ ତାଙ୍କୁ ପୁରାଣ ପଢ଼ିବାକୁ ଲଗାଉଥିଲେ । ସେ ସୁନ୍ଦର ଭାବରେ ପୁରାଣ ପଢୁଥିଲେ । ତାଙ୍କ ଜେଜେମା' କାହିଁକି, ସାଇପଡ଼ିଶା ଲୋକେ ଆଗ୍ରହର ସହିତ ଶୁଣୁଥିଲେ । ଗ୍ରାମରେ ଅନ୍ୟ ଯେଉଁଠାରେ ପୁରାଣ ପଢ଼ା ହେଉଥିଲା ବା ଚର୍ଚ୍ଚା ହେଉଥିଲା, ସେଠାରେ ସେ ପହଞ୍ଚି ଯାଉଥିଲେ ।

ପ୍ରତି ବର୍ଷ ଗାଁରେ ପାଲା, ଦଣ୍ଡ ଯାତ୍ରା, ଦାସକାଠିଆ, ରାମଲୀଳା ପ୍ରଭୃତି ହେଉଥିଲା । ଗୋଦାବରୀଶ ପାଲା ଦେଖିବାକୁ ଭଲ ପାଉଥିଲେ । ସେ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଅପଲକ ନୟନରେ ବସି ଦେଖୁଥିଲେ । ପୁରାଣରେ ତାଙ୍କର ଜ୍ଞାନ ତ ଥିଲା, ବେଳେ ବେଳେ ପାଲାଗାୟକଙ୍କୁ ପ୍ରଶ୍ନ ପଚାରି ଅଡୁଆରେ ପକାଇ ଦେଉଥିଲେ । ସେହିପରି ଦାସକାଠିଆ ବା ରାମଲୀଳା ଦେଖିବାରେ ତାଙ୍କର ଝୁଙ୍କ ଥିଲା । କେହି ନ ଯାଉଣୁ ସେ ସେଠାରେ ହାଜର ହୋଇଯାଉଥିଲେ ।

ଲୀଳା, ଯାତ୍ରା ପ୍ରଭୃତିର ପ୍ରଭାବ ଗାଁ ପିଲାଙ୍କ ଉପରେ ପଡୁଥିଲା । ସେମାନେ ସଂଳାପ ଗୀତଗୁଡ଼ିକ ମନେ ରଖି ବୋଲୁଥିଲେ । ଅବସର ସମୟରେ ଗୀତ ବୋଲି ଅଭିନୟ କରୁଥିଲେ । ଥରେ ଗାଁର ପିଲାମାନେ ମିଶି ଗୋଟିଏ ନାଟକ ଅଭିନୟ କଲେ । ନାଟକର ନାମ ଥିଲା 'ଦୂତାଙ୍ଗଦ' । ଏହି ନାଟକରେ ଅସୁରୁଣୀ ଭୂମିକାରେ ଅଭିନୟ କରିବାକୁ କେହି ରାଜି ହେଲେ ନାହିଁ । ଶେଷରେ ଗୋଦାବରୀଶ ଅସୁରୁଣୀ ଭୂମିକାରେ ଅଭିନୟ କଲେ । ମାଙ୍କଡ଼ ପରି ଖିଙ୍କାରି ହୋଇ ଅସୁରୁଣୀ ବେଶରେ ନାଚିବାରେ ସମସ୍ତେ ମୁଗ୍ଧ ହେଲେ । କେତେ ଦିନ ପର୍ଯ୍ୟନ୍ତ ପିଲାଏ ତାଙ୍କୁ 'ନାଚୁଆ ଗୋଦାବରୀ' ବୋଲି ଡାକିଲେ ।

ଗାଁକୁ ସାପୁଆକେଳା, ଜାନୁଘଣ୍ଟ, ମୁଣ୍ଡପୋତା କେଳା, ଚକୁଳିଆ ପଣ୍ଡା ଓ ଯୋଗୀ ପ୍ରଭୃତି ଆସୁଥିଲେ । ଯୋଗୀଟିଏ କେନ୍ଦରା ବଜାଉଥିବା ଦେଖିଲେ ଗୋଦାବରୀଶ ଯଥେଷ୍ଟ ଆନନ୍ଦ ପାଉଥିଲେ । ତାଙ୍କୁ ଘରକୁ ଡାକିଆଣି ଦୁଆରେ ବସାଇ ତା' ଠାରୁ ଗୀତ ଶୁଣୁଥିଲେ ।

ସେଇ ପିଲାଦିନୁ ଗୋଦାବରୀଶଙ୍କ ଠାରେ କବିପ୍ରତିଭାର ସୂଚନା ମିଳିଥିଲା । ଚାଟଶାଳୀକୁ ଯିବାପୂର୍ବରୁ ସେ ଗୋପୀଭାଷା, ଗୁଣସାଗର, କେଶବ କୋଇଲି,

ନଟ୍ଟ ଚୋରି, ଅଙ୍ଗଦପଡ଼ି, କପଟପାଶା ପ୍ରଭୃତିରୁ କିଛି ଅଂଶ ମୁଖସ୍ଥ କରିଥିଲେ । ସେଗୁଡ଼ିକ ଛାତ୍ରମାନଙ୍କ ଆଗେ ଗାଇ ସେମାନଙ୍କୁ ଆଶ୍ଚର୍ଯ୍ୟ କରି ପକାଉଥିଲେ ।

### ଉପନୟନ କର୍ମ

ନଅ ବର୍ଷ ହୋଇଥିଲାବେଳେ ଗୋଦାବରୀଶଙ୍କ ଉପନୟନ କର୍ମ ହେଲା । ତାଙ୍କ କଣ୍ଢଭାଇନା ଏହି ବ୍ରତଘର କଲେ । ବିଧି ଅନୁସାରେ ଭୋଜିଭାତରେ ତାହା ଶେଷ ହେଲା ।

### ବାଣପୁର ମାଇନର ସ୍କୁଲ୍

୧୯୧୩ ମସିହା ଆଡ଼କୁ ବାଣପୁର ଗୋଟିଏ ବଡ଼ ଗାଁ ଥିଲା କହିଲେ ଚଳେ । ସେଠାରେ କେବଳ ଗୋଟିଏ ଭର୍ଣ୍ଣାକୁଲାର ସ୍କୁଲ୍ ଥିଲା । ସେଠାରେ ଇଂରାଜୀ ପଢ଼ା ହେଉ ନ ଥିଲା । ଯେଉଁ ସ୍କୁଲରେ ଇଂରାଜୀ ପଢ଼ାଗଲା, ତାକୁ ମଧ ଇଂରାଜୀ ସ୍କୁଲ୍ କୁହାଯାଉଥିଲା । ଏହାକୁ ମାଇନର ସ୍କୁଲ୍ ବି କହୁଥିଲେ । ପଣ୍ଡିତ ଗୋଦାବରୀଶ ମିଶ୍ର, ଲିଙ୍ଗରାଜ ପଟ୍ଟଯୋଶୀ, ଦୟାନିଧି ମିଶ୍ର, ଦୀନବନ୍ଧୁ ନରେନ୍ଦ୍ର ପ୍ରଭୃତିଙ୍କ ଉଦ୍ୟମରେ ବାଣପୁର ପ୍ରାଇମେରୀ ସ୍କୁଲ୍‌କୁ ମାଇନର ସ୍କୁଲ୍‌ରେ ପରିଣତ କରାଗଲା । ଜିଲ୍ଲାବୋର୍ଡ଼ ଏହାର ପରିଚାଳନା ଦାୟିତ୍ୱ ଗ୍ରହଣ କଲା । ଭୁବନେଶ୍ୱରର ରଘୁନାଥ ମହାପାତ୍ରଙ୍କୁ ଏହି ସ୍କୁଲର ପ୍ରଧାନ ଶିକ୍ଷକ ଭାବେ ଗୋଦାବରୀଶ ମିଶ୍ର ନିଯୁକ୍ତି ଦେଲେ । ସେ ସ୍କୁଲରେ ବହୁବିଧ ଉନ୍ନତିମୂଳକ କାର୍ଯ୍ୟ କଲେ । ସେଥି ମଧ୍ୟରେ ପାଠାଗାର ପ୍ରତିଷ୍ଠା ଅନ୍ୟତମ ଥିଲା । ତାଙ୍କ ତତ୍ତ୍ୱାବଧାନରେ ପିଲାମାନଙ୍କ ସହଯୋଗରେ ବହିପତ୍ର ସଂଗ୍ରହ କରାଗଲା । ବହୁ ବଦାନ୍ୟ ବ୍ୟକ୍ତି ବହି ସବୁ ଦାନ କଲେ । ଜଣେ ଶିକ୍ଷକ ମଧ ପାଠାଗାର ଦାୟିତ୍ୱରେ ରହିଲେ । ପିଲାମାନେ ସେଠାରୁ ବହି ନେଇ ପଢୁଥିଲେ ଓ ପଢ଼ିବା ପରେ ଫେରାଇ ଦେଉଥିଲେ ।

ବାଣପୁର ମାଇନର ସ୍କୁଲର ପାଠାଗାରଟି ବାଳକ ଗୋଦାବରୀଶଙ୍କ ପ୍ରତିଭା ବିକାଶପାଇଁ ସହାୟକ ହେଲା । ସେ ମଧ ଗୁଣୀ ଓ ଜ୍ଞାନୀ ଶିକ୍ଷକଙ୍କର ସଂସ୍ପର୍ଶରେ ଆସିଲେ । ଭ୍ରମଣପାଇଁ ସୁବିଧା ଓ ସୁଯୋଗ ମିଳିଲା । ସେ କବିତା ରଚନାରେ ମନ ଦେଲେ ।

ବାଣପୁର ମାଇନର ସ୍କୁଲରେ ଗୋଟିଏ ଛାତ୍ରସମିତି ଗଢ଼ା ହେଲା । ବର୍ଷ ଶେଷରେ ଛାତ୍ର ସମିତିର ଅଧିବେଶନ ହେଉଥିଲା । ଅଧିବେଶନକୁ ରାଜ୍ୟର ପ୍ରତିଷ୍ଠିତ ବ୍ୟକ୍ତିମାନେ ନିମନ୍ତ୍ରିତ ହୋଇଆସୁଥିଲେ । ବିଭିନ୍ନ ବିଷୟରେ ପାରଦର୍ଶିତା ଲାଭ କରିଥିବା ଛାତ୍ରମାନଙ୍କୁ ପୁରସ୍କୃତ କରାଯାଉଥିଲା । ଯେଉଁ ସାହିତ୍ୟପ୍ରେମୀ ଛାତ୍ରମାନେ ଏହି ପ୍ରତିଯୋଗିତାରେ ଅଂଶ ଗ୍ରହଣ କରିଥିଲେ ସେମାନଙ୍କ ମଧ୍ୟରେ ଥିଲେ ଗୋଦାବରୀଶ ଅନ୍ୟତମ । ତାଙ୍କର ପ୍ରଥମ ବିଦ୍ୱଜ୍ଜନ ଦୃଷ୍ଟି ଆକର୍ଷଣକାରୀ କବିତା 'ବାଣପୁର' ପୁରସ୍କୃତ ହୋଇଥିଲା । 'ମୁକୁର' ପତ୍ରିକାର ସମ୍ପାଦକ ସ୍ୱନାମଧନ୍ୟ ବ୍ରଜସୁନ୍ଦର ଦାସ ଏହି ବାର୍ଷିକ ଉତ୍ସବରେ ସଭାପତି ହୋଇଥିଲେ ଓ ତରୁଣ ଗୋଦାବରୀଶଙ୍କ କବିପ୍ରତିଭାରେ

ଅତିଶୟ ପ୍ରୀତ ହୋଇ 'ବାଣପୁର' କବିତାକୁ ୧୯୧୮ ମସିହାରେ 'ମୁକୁର' ପ୍ରେସ୍‌ରେ ପୁସ୍ତକାକାରରେ ଛପାଇଦେଲେ ।

ଷଷ୍ଠ ଶ୍ରେଣୀ ଛାତ୍ର ଗୋଦାବରୀଶଙ୍କ 'ବାଣପୁର' ଗୋଟିଏ ଦୀର୍ଘ କବିତା ଥିଲା । ତା'ର କେତୋଟି ପଦ –

''ନିସର୍ଗ ମାଧୁରୀ ଲଳିତ ପ୍ରକୃତି
ସୃଷ୍ଟି ଆଦି ଦିନୁ ବିଶ୍ୱେ ଯାର ସ୍ଥିତି ।
× × ×
ନବ ଦମ୍ପତିର ନବ ପ୍ରେମୋଚ୍ଛ୍ୱାସ
ମହର୍ଷି ସଞ୍ଚିତ ଜ୍ଞାନର ପ୍ରକାଶ
× × ×
ଆହା ବାଣପୁର ମୋ ପ୍ରିୟ ଜନନୀ
ତୋ ରୂପ ଛଟା କି ବର୍ଣ୍ଣିବି ପୁଣି
ଯହିଁ ଚାହେଁ ଶତ ଶୋଭାର ଭଣ୍ଡାର
ବିଲ, ବନ, ପଦା, ଶଇଳ, କେଦାର
ଗୋଟିଏ ଗୋଟିକି ବଳି ଶୋଭାବନ
କାନନୁ ଭୂଧର, ଭୂଧରୁ ଗଗନ ।
× × ×

ମାଇନର ସ୍କୁଲର ଛାତ୍ର ଥିଲାବେଳେ ଗୋଦାବରୀଶ ଅଗଣିତ କବିତା ରଚନା କରିଥିଲେ । କବିତା ରଚନା ଥିଲା ତାଙ୍କର ଦୈନନ୍ଦିନ ଅଭ୍ୟାସ । 'ବାଣପୁର' ରଚନା କାଳରେ ସେ 'ଉଷା', 'ନିର୍ଝର', 'ପ୍ରଦୋଷ', 'ଶିଶିର', 'ପୁଷ୍ପାଞ୍ଜଳି' ପ୍ରଭୃତି କବିତାମାନ ଲେଖିଥିଲେ ।

ଗୋଦାବରୀଶ ଓ ଅନ୍ୟ ଛାତ୍ରମାନଙ୍କ ଉଦ୍ୟମରେ ଗାଁ ଓ ଆଖପାଖ ଗାଁରୁ ବହିପତ୍ର ସଂଗ୍ରହ କରାଯାଇ ପାଠାଗାର ନିର୍ମାଣ କରାଯିବା ଆଗରୁ ବର୍ଣ୍ଣିତ । ଗାଁରେ ପୁରାଣ ପଢ଼ା, ସାହିତ୍ୟ ଚର୍ଚ୍ଚା ପ୍ରଭୃତି କାର୍ଯ୍ୟକ୍ରମ ମଧ୍ୟ ହାତକୁ ନିଆଗଲା । ବର୍ତ୍ତମାନ ମଧ୍ୟ ସେହି ଗାଁରେ ଥିବା 'କୁମାର ପାଠାଗାର' ଓଡ଼ିଶାର ଯେକୌଣସି ଗାଁର ପାଠାଗାର ଠାରୁ ଯେ ଉନ୍ନତ, ଏହା ସମସ୍ତେ ସ୍ୱୀକାର କରନ୍ତି ।

### ବିବାହ

ସପ୍ତମ ଶ୍ରେଣୀରେ ପଢୁଥିଲାବେଳେ ଗୋଦାବରୀଶଙ୍କର ବିବାହ ହେଲା ବାଣପୁର ନିକଟବର୍ତ୍ତୀ ଅଚ୍ୟୁତରାଜପୁରର ଗଣେଶ୍ୱର ମିଶ୍ରଙ୍କ ଭଗ୍ନୀ ଉମାଙ୍କ ସହିତ । ସେତେବେଳେ ଗୋଦାବରୀଶଙ୍କ ବୟସ ପନ୍ଦର ବା ଷୋଳ ହୋଇଥିବା ଅନୁମାନ କରାଯାଏ । ସେତେବେଳେ ପିଲାକନ୍ୟା ବିବାହ ବ୍ୟବସ୍ଥା ଥିଲା ।

ବ୍ରାହ୍ମଣ ଘରର ବିବାହ ଦିନରେ ହୁଏ । ଖୁବ୍ ପଟୁଆରରେ କୁମାରାଙ୍ଗ ଶାସନରୁ ବରଯାତ୍ରୀ ଅଚ୍ୟୁତରାଜପୁର ଆସିଲେ । ସବା ଆଗେ ଭଣ୍ଡାରି ବେତ ପେଟରା ଧରି ଆସିଥିଲେ । ସୁନ୍ଦର ଧଳାରଙ୍ଗର ବ୍ରହ୍ମପୁରୀ ପାଟ ପିନ୍ଧି ହାତରେ ସୁନାମୁଦି ଲଗାଇ କିଶୋର ଗୋଦାବରୀଶ ବରବେଶରେ ବସିଥିବା ଦୃଶ୍ୟ ଯେ ଦେଖିଲେ, ସେ ମୁଗ୍ଧ ହୋଇପଡ଼ିଲେ । ସାଙ୍ଗରେ ପୁରୋହିତ ଥିଲେ ଗୋପାଳପୁର ଶାସନର ଗୋବିନ୍ଦଚନ୍ଦ୍ର ଷଡ଼ଙ୍ଗୀ । ତାଙ୍କ ବୈଦିକ ମନ୍ତ୍ର ଉଚ୍ଚାରଣରେ ବିବାହସ୍ଥଳୀଟି ପ୍ରକମ୍ପିତ ହୋଇଉଠିଥିଲା । ବିଭାଘର ପରେ ଫୁଲଶଯ୍ୟାର ଆୟୋଜନ ହେଲା । ବ୍ରାହ୍ମଣମାନଙ୍କର ଶ୍ଳୋକାନ୍ତ ପ୍ରତିଯୋଗିତା ହୋଇଥିଲା । ନବମ ଶ୍ରେଣୀରେ ପଢୁଥିଲାବେଳେ ଗୋଦାବରୀଶଙ୍କର ଦୂର୍ବାକ୍ଷତ ଘର ହୋଇଥିଲା ।

**ମାଇନର ପାସ୍**

୧୯୧୫ ମସିହାରେ ଗୋଦାବରୀଶ ମାଇନର ପାସ୍ କଲେ । ସେ ସମୟରେ ମାଇନର ପାସ୍ ବ୍ୟକ୍ତିକୁ ଉଚ୍ଚଶିକ୍ଷିତ ବୋଲି ଲୋକେ କହୁଥିଲେ । ମାଇନର ପାସ୍ କରିବା ପରେ ମଧ୍ୟ ଚାକିରି ମିଳିଯାଉଥିଲା । ସେତେବେଳେ ଯେଉଁମାନେ ମାଇନର ପାସ୍ କରୁଥିଲେ, ସେମାନେ ଟ୍ରେନିଂ ପାଇ ପ୍ରାଥମିକ କିମ୍ବା ମାଇନର ସ୍କୁଲରେ ଶିକ୍ଷକତା କରୁଥିଲେ । ଗୋଦାବରୀଶଙ୍କ ସହପାଠୀ ମଧ୍ୟରୁ କେତେଜଣ ମଧ୍ୟ ଚାକିରି କଲେ । ଗୋଦାବରୀଶଙ୍କ ବନ୍ଧୁମାନେ ଟ୍ରେନିଂ ଯାଇ ଶିକ୍ଷକତା କରିବାକୁ ତାଙ୍କୁ ପ୍ରବର୍ତ୍ତାଇଲେ । ମାତ୍ର ଗୋଦାବରୀଶଙ୍କର ଟ୍ରେନିଂ ଯିବାରେ ଆଗ୍ରହ ନ ଥିଲା । ସ୍ୱଳ୍ପବେତନଭୋଗୀ ଶିକ୍ଷକ ହେବାକୁ ସେ ପସନ୍ଦ କରି ନ ଥିଲେ । ସେ ଉଚ୍ଚ ଶିକ୍ଷାପାଇଁ ଅନ୍ୟ ସ୍କୁଲକୁ ଯିବାକୁ ଚାହିଁଲେ । ସେତେବେଳେ ପାଖ ଆଖରେ ଉଚ୍ଚ ଇଂରାଜୀ ସ୍କୁଲ ନ ଥିଲା । ପୁରୀ ଜିଲ୍ଲା ସ୍କୁଲ, ଖୋର୍ଦ୍ଧା ସ୍କୁଲ୍ ପରି ଅଳ୍ପ କେତୋଟି ହାଇସ୍କୁଲ ଥିଲା । ତାଙ୍କ ପରିବାରର କିନ୍ତୁ ବାହାରେ ପଢ଼ାଇବାପାଇଁ ସମ୍ବଳ ନ ଥିଲା । ତଥାପି ଗୋଦାବରୀଶ ତାଙ୍କ ମନ କଥା କଣ୍ଢଭାଇନାଙ୍କୁ ଜଣାଇଲେ । କଣ୍ଢଭାଇନା ତାଙ୍କୁ ଖୁବ୍ ଭଲ ପାଉଥିଲେ । ସ୍କୁଲରୁ ଫେରିବା ଡେରି ହେଲେ ସେ ବାଟକୁ ଯାଇ ଅପେକ୍ଷା କରୁଥିଲେ । ଯେଉଁଦିନ ଗୋଦବରୀଶ 'ବାଣପୁର' କବିତା ଲେଖି ପୁରସ୍କୃତ ହେଲେ, ସେଦିନ କଣ୍ଢଭାଇନା ସ୍କୁଲକୁ ଯାଇଥିଲେ । ତାଙ୍କ ଛାତି ଆନନ୍ଦରେ କୁଣ୍ଢେମୋଟ ହୋଇଯାଇଥିଲା । ସେ କହିଥିଲେ –

''ଆମ୍ଭେ ଦୁହେଁ ପଢ଼ି ପାରିଲୁ ନାହିଁ । ସାନଭାଇଟା ପଢୁଥାଉ ।''

ସେଇ କଣ୍ଢଭାଇନା ଗୋଦାବରୀଶଙ୍କ କଥା ଶୁଣିଲେ । ଭାରି ଖୁସି ହେଲେ । ନନାଙ୍କ କଥା ମନେ ପଡ଼ିଲା । ନନା ଯଦି ଥାଆନ୍ତେ, ଏତେ ସୁନ୍ଦର ପଢ଼ି ନାଁ କରୁଥିବା ପିଲାଟିକୁ କ'ଣ ପଢ଼ାଇ ନ ଥାନ୍ତେ ! ବୋଉ ବି ଆଜି ନାହାନ୍ତି । ସମସ୍ତେ ତାଙ୍କ ହାତରେ ଗୋଦାବରୀଶଙ୍କୁ ଛାଡ଼ି ଯାଇଛନ୍ତି । ସେ ନିଶ୍ଚୟ ସେ ଦାୟିତ୍ୱ ତୁଲାଇବେ ।

ଗୋଦାବରୀଶଙ୍କୁ କହିଲେ ଯେ ସେ ଯେତେ ବାଟ ପର୍ଯ୍ୟନ୍ତ ପଢ଼ିବେ, ସେ ପଢ଼ାଇବେ । ନିଅଣ୍ଟ ହେଲେ ଜମିବାଡ଼ି ବିକି ପଢ଼ାଇବେ । କେଉଁଠି ପଢ଼ିବେ ତାହା ଶୀଘ୍ର ସ୍ଥିର କରିବାକୁ କହିଲେ ।

**ସତ୍ୟବାଦୀ ବନବିଦ୍ୟାଳୟ**

୧୯୧୦ ମସିହା ବେଳକୁ ସତ୍ୟବାଦୀର ବକୁଳବନର ସବୁରିଅନା କୁଞ୍ଜ ଭିତରେ ବନବିଦ୍ୟାଳୟଟି ପ୍ରତିଷ୍ଠା ହୋଇସାରିଥାଏ । ପଣ୍ଡିତ ଗୋପବନ୍ଧୁଙ୍କ ଉଦ୍ୟମ ଫଳରେ ସେହି ବିଦ୍ୟାଳୟଟି ରବୀନ୍ଦ୍ରନାଥଙ୍କ ବିଶ୍ୱଭାରତୀ ବା ପୁନାର ଫର୍ଗୁସନ କଲେଜ ଆଦର୍ଶରେ ଗଢ଼ା ହୋଇଥାଏ । ପଣ୍ଡିତ ନୀଳକଣ୍ଠ, ଗୋଦାବରୀଶ ମିଶ୍ର, ଆଚାର୍ଯ୍ୟ ହରିହର, ପଣ୍ଡିତ ବାସୁଦେବ ମହାପାତ୍ର ପ୍ରଭୃତି ସେଠାରେ ଶିକ୍ଷାଦାନ କରୁଥାନ୍ତି । ବିଶେଷତଃ, ବାଣପୁରର ଉଦୟମାନ ପଣ୍ଡିତ ଗୋଦାବରୀଶ ମିଶ୍ର ସେଠାରେ ଶିକ୍ଷକତା କରୁଥିଲେ । ସେହି ସ୍କୁଲରେ ଗୋଦାବରୀଶ ପଢ଼ିବାପାଇଁ ଆଗ୍ରହୀ ହେଲେ ।

ଥରେ ପଣ୍ଡିତ ଗୋଦାବରୀଶ ବାଣପୁର ଆସିଥାନ୍ତି । ସେ ଖବର ପାଇ ବାଳକ ଗୋଦାବରୀଶ କଣ୍ଢଭାଇନାଙ୍କ ସହିତ ମିଶି ପଣ୍ଡିତ ଗୋଦାବରୀଶଙ୍କ ଘରକୁ ଗଲେ । କଣ୍ଢଭାଇନା ନିଜ ଭାଇର ପାଠପଢ଼ା କଥା କହିଲେ । ତାଙ୍କର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନୁହେଁ ବୋଲି ଜଣାଇଲେ । ଗୋଦାବରୀଶ ବାଳକ ଗୋଦାବରୀଶଙ୍କ ଶିକ୍ଷାଦୀକ୍ଷା କଥା ଆଗରୁ ଜାଣିଥିଲେ । ଯେଉଁଦିନ ସ୍କୁଲରେ 'ବାଣପୁର' କବିତାପାଇଁ ପୁରସ୍କୃତ ହେଲେ, ସେଦିନ ଗୋଦାବରୀଶ ସେଠାରେ ଉପସ୍ଥିତ ଥିଲେ । ତେଣୁ ସେ କଣ୍ଢଭାଇନାଙ୍କୁ ଆଶ୍ୱାସନା ଦେଇ କହିଲେ ଯେ ଅର୍ଥାଭାବ ଗୋଦାବରୀଶଙ୍କ ଉଚ୍ଚ ଶିକ୍ଷାର ପ୍ରତିବନ୍ଧକ ହେବ ନାହିଁ । ସେ ସତ୍ୟବାଦୀରେ ପଢ଼ିଲେ ମଣିଷ ପରି ମଣିଷଟିଏ ହୋଇ ବାହାରିବ । ସେ ସେଠାରେ ତା'ର ଭଲ, ମନ୍ଦ, ଅଭାବ, ଅସୁବିଧା ବୁଝିବେ କହି ବାଳକ ଗୋଦାବରୀଶଙ୍କୁ ସତ୍ୟବାଦୀ ପଠାଇ ଦେବାକୁ ନିର୍ଦ୍ଦେଶ ଦେଲେ ।

୧୯୧୬ ମସିହାରେ ଗୋଦାବରୀଶ ମାସିକ ଚଳିବା ଖର୍ଚ୍ଚ କଣ୍ଢଭାଇନାଙ୍କ ଠାରୁ ନେଇ ଚାଲି ଚାଲି ବାଲୁଗାଁ ଷ୍ଟେସନକୁ ଗଲେ । ସାଙ୍ଗରେ ଥାଆନ୍ତି ଭାଇନା । ରେଲ୍ ଗାଡ଼ିରେ ବସି ସାକ୍ଷୀଗୋପାଳ ଗଲେ । ସେ ସତ୍ୟବାଦୀ ବନବିଦ୍ୟାଳୟରେ ଅଷ୍ଟମ ଶ୍ରେଣୀରେ ନାମ ଲେଖାଇଲେ ।

ଗୋଦାବରୀଶ ସତ୍ୟବାଦୀ ବନବିଦ୍ୟାଳୟରେ କେତେବର୍ଷ ରହିଲେ । ସେଠାରେ ସେ ସତ୍ୟବାଦୀ ଯୁଗର ଚିନ୍ତାଧାରାଦ୍ୱାରା ପ୍ରଭାବିତ ହେଲେ । ସତ୍ୟବାଦୀର ଶିକ୍ଷକମାନଙ୍କ ସହିତ ତାଙ୍କର ସମ୍ପର୍କ ନିବିଡ଼ ହେଲା । ପ୍ରତିଭାବାନ୍ କିଶୋର ଗୋଦାବରୀଶଙ୍କର ପ୍ରତିଭା କଳିକା ପ୍ରସ୍ଫୁଟିତ ହୋଇ ତା'ର ସୁରଭି ବିତରଣ କରିବାରେ ଲାଗିଲା ।

ଛାତ୍ର ଗୋଦାବରୀଶଙ୍କର ମଧ ମାନ୍ୟଗଣ୍ୟ, ପ୍ରତିଭାବାନ୍ ଜନନାୟକମାନଙ୍କ ସହିତ ପରିଚୟ ହେଲା । ଥରେ ପଣ୍ଡିତ ଗୋପବନ୍ଧୁ ତାଙ୍କୁ ଡାକି କହିଲେ – ''ଗୋଦାବରୀଶ ! ତୁମ୍ଭଠାରେ ଯେଉଁ ଗୁଣ ଟିକେ ଭଗବାନ୍ ଦେଇଛନ୍ତି, ତା'ର ବିକାଶ କରିପାରିଲେ ଦେଶର ଓ ଜାତିର ମଙ୍ଗଳ ହେବ ।'' ଗୋଦାବରୀଶ ସେହି ସମୟରେ ଗୋପବନ୍ଧୁଙ୍କର କଥା ବୁଝିପାରି ନ ଥିଲେ । ପରେ ସେ ତାହା ବୁଝିଲେ ଏବଂ ତାହା ତାଙ୍କ ପ୍ରତି ଗୋପବନ୍ଧୁଙ୍କର ଆଶୀର୍ବାଦ ଥିଲା ବୋଲି ଧରିନେଲେ ।

କବି ବୈକୁଣ୍ଠନାଥ ସତ୍ୟବାଦୀରେ ଗୋଦାବରୀଶଙ୍କ ସଙ୍ଗେ ପଢୁଥିଲେ । ସେ କହନ୍ତି – ''ସେତିକିବେଳେ ମହାପାତ୍ରଙ୍କ କବିପ୍ରତିଭାର ସ୍ଫୁଲିଙ୍ଗ ଦେଖିବାକୁ ପାଇଥିଲି ଏବଂ ଅନେକେ ମନେ କରୁଥିଲେ ଯେ ସେ ଜଣେ ଓଡ଼ିଆ ସାହିତ୍ୟର ବିଖ୍ୟାତ ଲେଖକ ହୋଇ ଓଡ଼ିଆ ସାହିତ୍ୟକୁ ପ୍ରଭାବିତ କରିବେ ।''

ସତ୍ୟବାଦୀରୁ 'ସତ୍ୟବାଦୀ' ବୋଲି ଗୋଟିଏ ମାସିକ ପତ୍ରିକା ପ୍ରକାଶ ପାଉଥିଲା । ସେହି ପତ୍ରିକାର ସମ୍ପାଦନା ଦାୟିତ୍ୱରେ ଥିଲେ ପଣ୍ଡିତ ଗୋପବନ୍ଧୁ । ଏହାର ଦୁଇଟି ବିଭାଗ ଥିଲା । ଗୋଟିଏ ବିଭାଗ ସାଧାରଣ ଲୋକମାନଙ୍କପାଇଁ ଓ ଅନ୍ୟ ବିଭାଗଟି ଥିଲା କେବଳ ଛାତ୍ରମାନଙ୍କପାଇଁ । ଛାତ୍ରମାନଙ୍କର ଉତ୍କୃଷ୍ଟ ବିବେଚିତ ଗଳ୍ପ, ପ୍ରବନ୍ଧ ପ୍ରଭୃତି ଏଥିରେ ସ୍ଥାନ ପାଉଥିଲା । ଛାତ୍ର ଗୋଦାବରୀଶଙ୍କର ଲେଖାସବୁ ନିୟମିତ ଭାବରେ ସେଥିରେ ବାହାରିଥିଲା । ତାଙ୍କର ଲେଖା ପ୍ରଥମେ ଯେଉଁଦିନ 'ସତ୍ୟବାଦୀ' ପତ୍ରିକାରେ ପ୍ରକାଶ ପାଇଲା, ସେଦିନ ତାଙ୍କର ଛାତି କୁଣ୍ଢେମୋଟ ହୋଇଯାଇଥିଲା । ଛାତ୍ରମାନଙ୍କ ମଧ୍ୟରେ ସେ ମଧ ପରିଚିତ ହୋଇଗଲେ । ସେମାନେ କହୁଥିବାର ଶୁଣାଯାଇଥିଲା –

''ଏଇ ଗୋଦାବରୀଶ ! ଏ ଜଣେ ବଡ଼ କବି ଓ ସାହିତ୍ୟିକ ହେବ ।''

'ସତ୍ୟବାଦୀ' ପତ୍ରିକା ବ୍ୟତୀତ ସତ୍ୟବାଦୀରୁ 'ବାଣୀ' ନାମକ ଆଉ ଗୋଟିଏ ପତ୍ରିକା ବାହାରୁଥିଲା । ଏହି ପତ୍ରିକାରେ କେବଳ ଛାତ୍ରମାନଙ୍କ ଲେଖା ପ୍ରକାଶ ପାଉଥିଲା । ଛାତ୍ର ଗୋଦାବରୀଶ ସେଥିରେ ନିୟମିତ ଭାବେ ଲେଖୁଥିଲେ । ବାଣପୁରରେ ତାଙ୍କର ଯେଉଁ ଲେଖିବା ଗୁଣଟି ଥିଲା, ତାହାର ପୂର୍ଣ୍ଣ ବିକାଶ ହେଲା ସତ୍ୟବାଦୀରେ । ତାଙ୍କର ଲେଖାମାନ ଓଡ଼ିଶାର ବିଭିନ୍ନ ପତ୍ର-ପତ୍ରିକାରେ ମଧ ପ୍ରକାଶ ପାଇଲା ।

ଗୋଦାବରୀଶ ତାଙ୍କର ସମସ୍ତ ପ୍ରକାଶିତ କବିତାଗୁଡ଼ିକୁ ଏକାଠି କରି ଗୋଟିଏ ପୁସ୍ତକ ଆକାରରେ ପ୍ରକାଶ କରିବାକୁ ଚାହିଁଲେ । ସେ କବିତାଗୁଡ଼ିକର ପାଣ୍ଡୁଲିପିଟି ଧରି କଟକ ଯାଇ ଟ୍ରେନିଂ ସ୍କୁଲରେ ପହଞ୍ଚିଲେ । ସେଠାରେ ତାଙ୍କର ପ୍ରିୟବନ୍ଧୁ ଜଗନ୍ନାଥ ମହାପାତ୍ରଙ୍କୁ ଭେଟିଲେ । ସେ ସେଠାରେ ଟ୍ରେନିଙ୍ଗ ନେଉଥାନ୍ତି । ଉଭୟେ ପୁସ୍ତକର ଅଭିମତପାଇଁ ରେଭେନ୍ସା କଲେଜର ଦର୍ଶନ ବିଭାଗର ଅଧ୍ୟାପକ ରତ୍ନାକର ପତିଙ୍କ

ପାଖକୁ ଗଲେ । ସେ ପଣ୍ଡିତ ଗୋପବନ୍ଧୁଙ୍କ ଜାମାତା ଥିଲେ । ସେ ମଧ୍ୟ ଉଚ୍ଚକୋଟୀର ପ୍ରାବନ୍ଧିକ ଓ ସାହିତ୍ୟିକ ଥିଲେ । ସେ ଗୋଦାବରୀଶଙ୍କ କବିତାଗୁଡ଼ିକ ପଢ଼ି ନିମ୍ନୋକ୍ତ ମନ୍ତବ୍ୟ ଦେଲେ –

''ମୁଁ ଶ୍ରୀମାନ୍ ଗୋଦାବରୀଶଙ୍କ 'ପ୍ରଭାତ କୁସୁମ' ପଢ଼ିଅଛି । ସ୍ଥାନେ ସ୍ଥାନେ କେତେକ ଦୋଷ ପରିଦୃଷ୍ଟ ହେଲେ ହେଁ ପୁସ୍ତିକାଟି କେତେକ କବିତ୍ୱର ଆଭାଷ ଦେଉଅଛି । × × × ଲେଖକଙ୍କ ଛାତ୍ରାବସ୍ଥାରୁ ସାହିତ୍ୟାନୁରାଗ ଦେଖି ମୁଁ ବଡ଼ ଆନନ୍ଦିତ ହେଉଅଛି । 'ପ୍ରଭାତ କୁସୁମ'ର କେତେଗୁଡ଼ିଏ ସୁନ୍ଦର ଭାବ ପାଇଁ ତାହା ଉତ୍କଳର ସାହିତ୍ୟ ପୁସ୍ତକମାନଙ୍କ ମଧ୍ୟରେ ଗୋଟିଏ ଉତ୍କୃଷ୍ଟ ସ୍ଥାନ ପାଇବ ବୋଲି ଆଶା କରେ ।''

ଟ୍ରେନିଂ ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ ଚନ୍ଦ୍ରମୋହନ ମହାରଣା । ସେ ଜଣେ ପ୍ରଖ୍ୟାତ ସାହିତ୍ୟିକ ଥିଲେ । ସେ କବିତାଗୁଡ଼ିକ ପଢ଼ି ମତ ଦେଲେ – ''ଶ୍ରୀମାନ୍ ଗୋଦାବରୀଶ ମହାପାତ୍ରଙ୍କ ରଚିତ 'ପ୍ରଭାତ କୁସୁମ' କବିତା ପୁସ୍ତକ ଖଣ୍ଡିକ ପାଠ କରି ମୁଁ ଅତିଶୟ ପ୍ରୀତ ହେଲି । କବିତାଗୁଡ଼ିକର ଭାଷା ଅତିଶୟ ସୁନ୍ଦର ଏବଂ ଭାବ ସାଧାରଣତଃ ଉତ୍କୃଷ୍ଟ । ଅଧ୍ୟବସାୟୀ ହେଲେ ଏହି ବାଳକ ସମୟରେ କବି ସମାଜର ଉଚ୍ଚାସନ ପ୍ରାପ୍ତ ହୋଇପାରିବ ।''

**ଅସହଯୋଗ ଆନ୍ଦୋଳନ**

ଗୋଦାବରୀଶ ଯେତେବେଳେ ସତ୍ୟବାଦୀ ସ୍କୁଲରେ ଉପର ଶ୍ରେଣୀରେ ପଢୁଥାନ୍ତି, ଦେଶରେ ସ୍ୱାଧୀନତା ଆନ୍ଦୋଳନ ଆରମ୍ଭ ହେଲା । ୧୯୧୯ ମସିହା ଆଡ଼କୁ ପଞ୍ଜାବରେ ଜାଲିଆନ୍‌ୱାଲାବାଗ୍ ହତ୍ୟାକାଣ୍ଡ ହେଲା । ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଅସହଯୋଗ ଆନ୍ଦୋଳନର ସୂତ୍ରପାତ ହେଲା । ଲାଲା ଲଜପତ୍ ରାୟ, ବାଲ ଗଙ୍ଗାଧର ତିଲକ, ଗୋପାଳକୃଷ୍ଣ ଗୋଖଲେ, ମହାତ୍ମା ଗାନ୍ଧୀ, ଜବାହରଲାଲ ନେହରୁ ପ୍ରଭୃତି ଏହି ସ୍ୱାଧୀନତା ଆନ୍ଦୋଳନର ନେତୃତ୍ୱ ନେଇଥିଲେ । ଓଡ଼ିଶାରେ ଏହି ଆନ୍ଦୋଳନର ନେତୃତ୍ୱ ନେଲେ ପଣ୍ଡିତ ଗୋପବନ୍ଧୁ । ଅବଶ୍ୟ ସେସମୟରେ ଓଡ଼ିଶାକୁ ସ୍ୱତନ୍ତ୍ର ରାଜ୍ୟରେ ପରିଣତ କରିବାପାଇଁ ମଧୁସୂଦନଙ୍କ ନେତୃତ୍ୱରେ ଜୋର୍ ଆନ୍ଦୋଳନ ଚାଲିଥାଏ । ଗୋପବନ୍ଧୁ କିନ୍ତୁ ସର୍ବଭାରତୀୟ ଆନ୍ଦୋଳନରେ ଓଡ଼ିଶାକୁ ସାମିଲ କରିଦେଲେ ।

ସତ୍ୟବାଦୀର ଶିକ୍ଷକମାନେ ଗୋପବନ୍ଧୁଙ୍କ ଆହ୍ୱାନରେ ଭାରତର ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଲେ । କେତେକ ଛାତ୍ର ମଧ୍ୟ ଆନ୍ଦୋଳନରେ ଅଂଶଗ୍ରହଣ କଲେ । ସ୍କୁଲ୍‌ଟି ସରକାରଙ୍କ ବିଷଦୃଷ୍ଟିରେ ପଡ଼ିଲା । ଫଳରେ ସତ୍ୟବାଦୀ ସ୍କୁଲ୍‌ଟି ଭାଙ୍ଗିଗଲା । ଛାତ୍ରାବାସଟି ପୂରାପୂରି ବନ୍ଦ ହୋଇଗଲା । ଫଳରେ ଛାତ୍ରମାନେ ନିଜ ନିଜ ଗାଁକୁ ପଳାଇଲେ । ଗୋଦାବରୀଶ କିନ୍ତୁ ଗ୍ରାମକୁ ଯାଇ ନ ଥିଲେ ।

ପଣ୍ଡିତ ଗୋପବନ୍ଧୁଙ୍କ ଆହ୍ୱାନରେ ସେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଲେ । ଗାଁ ଗାଁ ବୁଲି ଜନସାଧାରଣଙ୍କୁ ଆନ୍ଦୋଳନରେ ଯୋଗ ଦେବାକୁ ଆହ୍ୱାନ ଦେଲେ । ଅନ୍ୟାନ୍ୟ କର୍ମୀମାନଙ୍କ ସହିତ ମିଶି ସେ ସଭାସମିତିମାନ କଲେ । ବହୁ ଆଖିଦୃଶିଆ କାମ କରି ସେ କେବଳ ଜଣେ ସମାଜ-ସେବକ ନୁହନ୍ତି, ଜଣେ ଲୋକପ୍ରିୟ ନେତା ହିସାବରେ ନିଜକୁ ପ୍ରତିଷ୍ଠା କରାଇଲେ । ଘୋର ଆର୍ଥିକ ସଙ୍କଟ ମଧ୍ୟରେ ଅବିଚଳିତ ରହି ସେ ଦେଶସେବାରେ ବ୍ରତୀ ହେଲେ । ଗୁରୁ ପଣ୍ଡିତ ଗୋଦାବରୀଶଙ୍କ ଭଳି ସେ ମଧ୍ୟ ଖ୍ୟାତି ଲାଭ କଲେ ।

**ସତ୍ୟବାଦୀ ଜାତୀୟ ବିଦ୍ୟାଳୟ**

ପଣ୍ଡିତ ଗୋପବନ୍ଧୁଙ୍କ ଉଦ୍ୟମରେ ସତ୍ୟବାଦୀଠାରେ ପୁଣି ଜାତୀୟ ବିଦ୍ୟାଳୟ ଖୋଲାଗଲା । ଗୋଦାବରୀଶ ପୁଣି ଆସି ଜାତୀୟ ବିଦ୍ୟାଳୟରେ ଅଧ୍ୟୟନ କଲେ । ଜାତୀୟ ପଦ୍ଧତିରେ ପରୀକ୍ଷା ମଧ୍ୟ ହେଲା । ଗୋଦାବରୀଶ ସେହି ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ସରକାର କିନ୍ତୁ ଏହି ପରୀକ୍ଷାକୁ ସ୍ୱୀକୃତି ଦେଲେ ନାହିଁ । ଜାତୀୟ ବିଦ୍ୟାଳୟରେ ଆଉ ଉଚ୍ଚ ଶ୍ରେଣୀ ନ ଥିଲା । ଫଳରେ ଗୋଦାବରୀଶ ଆଉ ପଢ଼ିବାର ସୁଯୋଗ ପାଇଲେ ନାହିଁ । ତାଙ୍କର ଶିକ୍ଷା ଶେଷ ହେଲା ।

**ବାଣପୁର ଜାତୀୟ ବିଦ୍ୟାଳୟରେ ଶିକ୍ଷକତା**

ପଣ୍ଡିତ ଗୋଦାବରୀଶ ବାଣପୁରକୁ ଜାତୀୟ ଆନ୍ଦୋଳନର କର୍ମଭୂମି କରିବାରୁ ବାଣପୁର ମାଇନର ସ୍କୁଲ୍‌ଟି ଛାଏଁ ବନ୍ଦ ହୋଇଗଲା । ଫଳରେ ବାଣପୁର ଛାତ୍ରମାନଙ୍କର ଶିକ୍ଷା ଦିଗରେ ଘୋର ଅସୁବିଧା ହେଲା । ଓଲସିଂ ବା ଖୋର୍ଦ୍ଧା ଯାଇ ପିଲାମାନଙ୍କ ପକ୍ଷରେ ପଢ଼ିବା ସମ୍ଭବ ନ ଥିଲା । ଏହି ଅସୁବିଧା ଦୂର କରିବାପାଇଁ ପଣ୍ଡିତ ଗୋଦାବରୀଶ ବାଣପୁରରେ ଗୋଟିଏ ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠା କରିବାକୁ ସ୍ଥିର କଲେ । ପ୍ରଥମେ ଘର ଭଡ଼ା ନିଆଯାଇ ଜାତୀୟ ବିଦ୍ୟାଳୟ ଆରମ୍ଭ ହେଲା । ବାଣପୁର ପୂର୍ବତନ ମାଇନର ସ୍କୁଲର ପ୍ରଧାନଶିକ୍ଷକ ରଘୁନାଥ ମହାପାତ୍ର ଏହାର ପ୍ରଧାନ ଶିକ୍ଷକ ହେଲେ । ମାଇନର ସ୍କୁଲର ଆଉ ଜଣେ ଶିକ୍ଷକ, ଯଥା – ସହଦେବ ଦାସ ମଧ୍ୟ ଶିକ୍ଷକ ଭାବେ ଯୋଗ ଦେଲେ । ପଣ୍ଡିତ ଗୋଦାବରୀଶଙ୍କ ପଟ୍ଟଶିଷ୍ୟ ଗୋଦାବରୀଶ ମହାପାତ୍ର ମଧ୍ୟ ଶିକ୍ଷକଭାବେ ଯୋଗ ଦେଲେ । ନିର୍ଦ୍ଧାରିତ ପାଠ୍ୟପୁସ୍ତକ ବ୍ୟତୀତ ସୂତାକଟା, ଲୁଗାବୁଣା, ବଢ଼େଇ କାମ, ବଗିଚା କାମ ଏଠାରେ ଶିକ୍ଷା ଦିଆଗଲା । ଦୁଇଟି ତନ୍ତ ମଧ୍ୟ ବସାଗଲା । ଗାଁ ଗାଁ ବୁଲି ମୁଠି ଭିକ୍ଷା ଆଦାୟ ହେଲା । ସେହି ମୁଠି ଭିକ୍ଷାରେ ହିଁ ସ୍କୁଲଟି ଚାଲିଲା । ଗୋଦାବରୀଶଙ୍କୁ ଲୁଗା ବୁଣିବା ଜଣା ନ ଥିଲା । ଅନ୍ୟମାନେ ମିଶି ଏ କାମକୁ ସୁନ୍ଦର ଭାବରେ ଚଳାଇଲେ । ପରେ ଜାତୀୟ ବିଦ୍ୟାଳୟଟି ଭଡ଼ା ଘରୁ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ଘରକୁ ଉଠିଆସିଲା । ଗୋଦାବରୀଶଙ୍କ ତତ୍ତ୍ୱାବଧାନରେ ଚାଲିଥିବା ହସ୍ତତନ୍ତର ଲୁଗା ଓ ଗାମୁଛା ମଧ୍ୟ ବେଶ୍ ଲୋକପ୍ରିୟ ହେଲା ।

ବାଣପୁର ଜାତୀୟ ବିଦ୍ୟାଳୟରେ ଶିକ୍ଷକତା କରିବାର ସୁଯୋଗ ପାଇ ଗୋଦାବରୀଶ ଆନନ୍ଦ ଅନୁଭବ କରିଥିଲେ । ଆର୍ଥିକ ସ୍ୱଚ୍ଛଳତା ପ୍ରାପ୍ତି ଅବଶ୍ୟ ତାଙ୍କ ଜୀବନର ଲକ୍ଷ୍ୟ ନ ଥିଲା । ତେବେ ଆର୍ଥିକ ଅଭାବ ଓ ଅନଟନ ତାଙ୍କର ସଦାସର୍ବଦା ଲାଗି ରହୁଥିଲା । ପରିବାରର ଗୁଜୁରାଣ ମେଣ୍ଟାଇବାପାଇଁ ନାନା ଉପାୟ ତାଙ୍କୁ ଚିନ୍ତା କରିବାକୁ ପଡୁଥିଲା । ଅଶ୍ୱିନୀକୁମାର ଦତ୍ତଙ୍କର 'ଭକ୍ତିଯୋଗ' ବହି ଖଣ୍ଡିକ ସେ ଓଡ଼ିଆରେ ଅନୁବାଦ କରିଥିଲେ । ସେ ଖଣ୍ଡିକ ସେ ପ୍ରକାଶକଙ୍କଠୁ କିଛି ପାଇ ସ୍ୱତ୍ୱ ସହ ଦେଇଥିଲେ । ବ୍ରହ୍ମପୁରରୁ ସେ ବହିଖଣ୍ଡିକ ପ୍ରକାଶ ପାଇଥିଲା ।

ସେତେବେଳକୁ କଟକରୁ 'ମାତୃଭୂମି' ପ୍ରକାଶ ପାଉଥାଏ । ତା'ର ସମ୍ପାଦକ ଥିଲେ ବାଳକୃଷ୍ଣ କର । ଗୋଦାବରୀଶ ନିୟମିତ ଭାବେ ଲେଖା ବାଳକୃଷ୍ଣବାବୁଙ୍କ ପାଖକୁ ପଠାଉଥିଲେ । ବାଳକୃଷ୍ଣବାବୁ ମଧ୍ୟ ଗୋଦାବରୀଶଙ୍କ ଲେଖାକୁ ପସନ୍ଦ କରୁଥିଲେ । କେତେ ଲେଖା ସେଥିରେ ପ୍ରକାଶ ପାଇଲା ପରେ ସେ ଦିନେ ଗୋଦାବରୀଶଙ୍କୁ ଡକାଇଲେ । ତାଙ୍କ ଲେଖାପାଇଁ ପ୍ରଶଂସା କଲେ ଓ କହିଲେ –''ଗୋଦାବରୀଶ ! ତୁମେ ଦିନେ ବଡ଼ ମଣିଷ ହେବ ।''

ବାଳକୃଷ୍ଣବାବୁଙ୍କ ସମ୍ପାଦନାରେ 'ଆନନ୍ଦ ଲହରୀ ଉପନ୍ୟାସ ମାଳା' କଟକରୁ ପ୍ରକାଶ ପାଇଲା । ଓଡ଼ିଆ ସାହିତ୍ୟରେ ଉପନ୍ୟାସ ସଂଖ୍ୟା ବଢ଼ାଇବାକୁ ବାଳକୃଷ୍ଣବାବୁଙ୍କର ଏହି ଉଦ୍ୟମ ଥିଲା । ବହୁ ଲେଖକ ସେମାନଙ୍କର ଉପନ୍ୟାସ ଏଥିରେ ପ୍ରକାଶ କରିବାର ସୁଯୋଗ ପାଇଲେ । ଗୋଦାବରୀଶଙ୍କର 'ରକ୍ତପାତ' ଓ 'ପ୍ରେମ ପଥେ' ଉପନ୍ୟାସ ମଧ୍ୟ ଏଥିରେ ପ୍ରକାଶ ହେଲା ।

ବ୍ରହ୍ମପୁରରୁ 'ପ୍ରଦୀପ' ନାମକ ପତ୍ରିକା ପ୍ରକାଶ ପାଉଥାଏ । ଗୋଦାବରୀଶ ମଝିରେ ମଝିରେ ସେ ପତ୍ରିକାକୁ ଲେଖାମାନ ପଠାଉଥିଲେ ।

କଟକରୁ ବ୍ରଜସୁନ୍ଦର ଦାସଙ୍କ ସମ୍ପାଦନାରେ 'ମୁକୁର' ପ୍ରକାଶିତ ହେଲା । ଗୋଦାବରୀଶଙ୍କୁ କବିରୂପେ ପରିଚିତ କରାଇବାରେ ବ୍ରଜସୁନ୍ଦର ଦାସ ପ୍ରଥମ ବ୍ୟକ୍ତି ଥିଲେ । ଗୋଦାବରୀଶଙ୍କ ଲେଖାମାନ ସେ ମଧ୍ୟ ପ୍ରକାଶ କରୁଥିଲେ ।

କିନ୍ତୁ ବାଣପୁର ଜାତୀୟ ବିଦ୍ୟାଳୟଟି ବହୁଦିନ ତିଷ୍ଠିପାରିଲା ନାହିଁ । ସତ୍ୟବାଦୀ ଜାତୀୟ ବିଦ୍ୟାଳୟ ପରି ଏହାର ଅବସ୍ଥା ହେଲା । ସ୍ଥାନୀୟ ଲୋକଙ୍କର ଆଗ୍ରହ କ୍ରମେ କମିଗଲା । ସରକାରୀ କର୍ମକର୍ତ୍ତାମାନେ ଜାତୀୟ ବିଦ୍ୟାଳୟରେ ଅଧ୍ୟୟନ କରିବାକୁ ଛାଡ଼ିଥିବା ଅଭିଭାବକମାନଙ୍କୁ ଭୟ ପ୍ରଦର୍ଶନ କଲେ । ସେ ସ୍କୁଲ୍‌ରୁ ଉତ୍ତୀର୍ଣ୍ଣ ଛାତ୍ରମାନଙ୍କର ଭବିଷ୍ୟତ୍ ନାହିଁ ବୋଲି ବୁଝାଇଲେ । ଫଳରେ ଛାତ୍ର ସଂଖ୍ୟା କମିବାକୁ ଲାଗିଲା । ଶିକ୍ଷକମାନେ ପେଟ ପୋଷିବାପାଇଁ ଅନ୍ୟାନ୍ୟ ପନ୍ଥା ଧରିବାକୁ ବାଧ୍ୟ ହେଲେ । ଶେଷରେ ଜାତୀୟ ବିଦ୍ୟାଳୟଟି ବନ୍ଦ ହୋଇଗଲା । ଗୋଦାବରୀଶଙ୍କର ଶିକ୍ଷକ ହୋଇ ଜାତିର ସେବା କରିବା ସଙ୍ଗେ ସଙ୍ଗେ ସାହିତ୍ୟ ସାଧନା କରିବାର ଆଶା ଥିଲା । କିନ୍ତୁ ତାହା ହୋଇପାରିଲା ନାହିଁ । ଭବିଷ୍ୟତ୍ ତାଙ୍କୁ ଚିନ୍ତିତ କଲା ।

## ହିତୈଷିଣୀରେ ସମ୍ପାଦନା

ବାଣପୁର ଜାତୀୟ ବିଦ୍ୟାଳୟ ଭାଙ୍ଗିବା ପରେ ଗୋଦାବରୀଶ ବ୍ରହ୍ମପୁର ଗଲେ । ସେଠାରେ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କୁ ସାକ୍ଷାତ୍ କଲେ । ପାରଳା ମହାରାଜା ପତ୍ରପତ୍ରିକାରୁ ଗୋଦାବରୀଶଙ୍କ ନାମ ଜାଣିଥିଲେ; ମାତ୍ର ସେ ତାଙ୍କୁ ଦେଖି ନ ଥିଲେ । ତାଙ୍କର 'ହିତୈଷିଣୀ' ପତ୍ରିକା ବ୍ରହ୍ମପୁରରୁ ବାହାରୁଥାଏ । ତାହାର ସମ୍ପାଦକ ଥିଲେ ସତ୍ୟନାରାୟଣ ରାଜଗୁରୁ । ପତ୍ରିକା ସମ୍ପାଦନାରେ ସାହାଯ୍ୟ କରିବାପାଇଁ ସେ ଜଣେ ସାହିତ୍ୟିକଙ୍କୁ ଖୋଜୁଥିଲେ । ମହାରାଜା ତାଙ୍କର ଅଭିପ୍ରାୟ ଗୋଦାବରୀଶଙ୍କୁ ଜଣାଇଲେ । ଗୋଦାବରୀଶ ମଧ ସେହିପରି କାର୍ଯ୍ୟ ଚାହୁଁଥିଲେ । ସେ ନିଜର ସମ୍ମତି ଦେଲେ । ସତ୍ୟନାରାୟଣ ରାଜଗୁରୁ ପୂର୍ବପରି ସମ୍ପାଦକ ରହିଲେ । ଗୋଦାବରୀଶ ପତ୍ରିକାଟିକୁ ସର୍ବାଙ୍ଗ ସୁନ୍ଦର କରିବାପାଇଁ ଲାଗିପଡ଼ିଲେ । ସମ୍ପାଦନା ଶୈଳୀ ଓ ଉଚ୍ଚ ଲେଖାମାନ ପ୍ରକାଶ ଯୋଗୁଁ ପତ୍ରିକାଟି ଗୋଟିଏ ଉନ୍ନତ ପତ୍ରିକାରେ ପରିଣତ ହେଲା ।

ପାରଳାଖେମୁଣ୍ଡିକୁ ଓଡ଼ିଶା ସହିତ ମିଶାଇବା ଦିଗରେ ପାରଳା ମହାରାଜା ପ୍ରବଳ ଉଦ୍ୟମ କରୁଥିଲେ । ଏପରିକି ତାଙ୍କର ଦାବିକୁ ଉପସ୍ଥାପିତ କରିବାପାଇଁ ନିଜ ଖର୍ଚ୍ଚରେ ସେ ବିଲାତ ଯାଇଥିଲେ । ତାଙ୍କ ଉଦ୍ୟମରୁ ପାରଳାଖେମୁଣ୍ଡି ମଧ ଓଡ଼ିଶା ସହିତ ମିଶିଲା । ତାଙ୍କ ପୃଷ୍ଠପୋଷକତାରେ ଓଡ଼ିଆ ସାହିତ୍ୟ ଯଥେଷ୍ଟ ପରିମାଣରେ ଋଦ୍ଧିମନ୍ତ ହେଲା । ଗୋଦାବରୀଶଙ୍କ ଅବଦାନ ସେଥିପାଇଁ କମ୍ ନ ଥିଲା । ଗୋଦାବରୀଶଙ୍କର ମହାରାଜାଙ୍କ ସହିତ ଘନିଷ୍ଠ ବନ୍ଧୁତା ଥିଲା ।

ଗୋଦାବରୀଶ ପ୍ରାୟ ଏକ ବର୍ଷ 'ହିତୈଷିଣୀ' ପତ୍ରିକା ସମ୍ପାଦନା କ୍ଷେତ୍ରରେ କାର୍ଯ୍ୟ କଲାପରେ କେତେକ କାରଣରୁ ତାକୁ ଛାଡ଼ି ବ୍ରହ୍ମପୁରରୁ ବାହାରୁଥିବା 'ଆଶା' ପତ୍ରିକାରେ ଯୋଗ ଦେଲେ ।

## ଆଶା

'ଆଶା' ପତ୍ରିକାର ସମ୍ପାଦକ ଥିଲେ ଶଶିଭୂଷଣ କର । ଏହା ପ୍ରଥମେ ସାପ୍ତାହିକ ଥିଲା । ମାତ୍ର ସେ ଏହାକୁ ଦୈନିକ ପତ୍ରିକାରେ ପରିଣତ କଲେ । ଏହା ଓଡ଼ିଶାର ପ୍ରଥମ ଦୈନିକ ପତ୍ରିକା । 'ଶଶିଭୂଷଣ ଜଣେ ଉଚ୍ଚମନା ନିର୍ଭୀକ ବ୍ୟକ୍ତି ଥିଲେ । ଗୋଦାବରୀଶ ବି ସ୍ୱାଧୀନଚେତା ଓ ସ୍ପଷ୍ଟବାଦୀ ଥିଲେ । କାହାର ଭୁଲ ଦେଖିଲେ ସେ ତାହା ବ୍ୟକ୍ତ କରିବାକୁ ପଛାଉ ନ ଥିଲେ । ଫଳରେ କୌଣସି କୌଣସି ଘଟଣାରେ ଉଭୟଙ୍କ ମଧରେ ମନାନ୍ତର ହେଉଥିଲା । କ୍ରମେ ଏହା ମତାନ୍ତରରେ ପରିଣତ ହେଲା । ଦୁଇ ସ୍ୱାଧୀନଚେତା ବ୍ୟକ୍ତି ଏକ ଅନୁଷ୍ଠାନରେ କାମ କରିବା ସମ୍ଭବ ନୁହେଁ ବୋଲି ଗୋଦାବରୀଶ ଉପଲବ୍ଧି କଲେ । ସେ 'ଆଶା' ପତ୍ରିକା ଛାଡ଼ି ଗାଁକୁ ଚାଲିଗଲେ ।

## ପୁରୀବାସୀ ପତ୍ରିକା

ପୁରୀରୁ 'ପୁରୀବାସୀ' ନାମକ ସାପ୍ତାହିକ ପତ୍ରିକା ପ୍ରକାଶ ପାଉଥାଏ । ଏହାର ସମ୍ପାଦକ ଥାଆନ୍ତି ମହାମହୋପାଧ୍ୟାୟ ସଦାଶିବ କାବ୍ୟକଣ୍ଠ । ପତ୍ରିକାଟିକୁ ସେ ନିୟମିତ କରିବାକୁ ଚାହୁଁଥିଲେ । ମାତ୍ର ନାନା କାର୍ଯ୍ୟରେ ବ୍ୟସ୍ତ ରହିବା ଯୋଗୁଁ ତାହା ସମ୍ଭବ ହେଉ ନ ଥିଲା । ଗୋଦାବରୀଶ 'ଆଶା' ପ୍ରେସ ଛାଡ଼ିବା କଥା କାହାରିଠୁ ଶୁଣିପାରି ସେ ସ୍ୱତନ୍ତ୍ର ଲୋକ ଗୋଦାବରୀଶଙ୍କ ପାଖକୁ ପଠାଇଲେ । ଗୋଦାବରୀଶ ଗ୍ରାମରୁ ଆସି ତାଙ୍କୁ ସାକ୍ଷାତ୍ କଲେ । ପତ୍ରିକାଟି ଚଳାଇବା ଦାୟିତ୍ୱ ନେବାକୁ ଗୋଦାବରୀଶଙ୍କୁ ସେ ଅନୁରୋଧ କଲେ । ଅନ୍ୟାନ୍ୟ କାମ ନ ଥିବାରୁ ଗୋଦାବରୀଶ ଏହି ଦାୟିତ୍ୱ ଗ୍ରହଣ କଲେ ।

ପ୍ରାୟ ଛଅ ମାସ କାଳ ଗୋଦାବରୀଶ ସେହି ପତ୍ରିକାକୁ ଚଳାଇଲେ । କିନ୍ତୁ ପୂର୍ବ ଭଳି ଅବସ୍ଥା ସୃଷ୍ଟି ହେଲା । ସଦାଶିବ କାବ୍ୟକଣ୍ଠ ଅତି ଜ୍ଞାନୀ ଓ ପଣ୍ଡିତ ଥିଲେ । ତେବେ ସେ ଯାହା ବୁଝିଥାନ୍ତି, ତାକୁ ପରିବର୍ତ୍ତନ କରିବା କଷ୍ଟସାଧ୍ୟ ଥିଲା । ଗୋଦାବରୀଶ ମଧ୍ୟ ନିଜ କଥା ଓ କାର୍ଯ୍ୟରେ ଅଟଳ ଥିଲେ । ଫଳରେ ସଦାଶିବ କାବ୍ୟକଣ୍ଠଙ୍କ ସହିତ ମିଶି ପତ୍ରିକା ଚଳାଇବା ସମ୍ଭବ ହେଲା ନାହିଁ । ସେ ତାହାକୁ ଛାଡ଼ି ପୁରୀରୁ ବାହାରୁଥିବା ଆଉ ଏକ ପତ୍ରିକା 'ଶକ୍ତି'ରେ ଯୋଗଦେଲେ ।

## ଶକ୍ତି

'ପୁରୀବାସୀ' ପତ୍ରିକା ସମ୍ପାଦନା କଲାବେଳେ ଗୋଦାବରୀଶ 'ଶକ୍ତି' ପତ୍ରିକାପାଇଁ ଲେଖାମାନ ପଠାଉଥିଲେ । ଗୋଦାବରୀଶ ସେଥିରେ ଦୁଇ ଚାରି ମାସ କାମ କଲାପରେ ତାକୁ ମଧ୍ୟ ଛାଡ଼ିଲେ ।

'ଦେଶ ହିତୈଷିଣୀ', 'ଆଶା', 'ପୁରୀବାସୀ' ଓ 'ଶକ୍ତି' ପ୍ରଭୃତି ପତ୍ରିକାରେ କାର୍ଯ୍ୟ କରି ଗୋଦାବରୀଶ ବିପୁଳ ଅଭିଜ୍ଞତା ଅର୍ଜନ କରିଥିଲେ । ସେ ଜଣେ ସାମ୍ବାଦିକ ହେବାପାଇଁ ସ୍ଥିର କଲେ । ଦେଶର ଶାସକମାନଙ୍କର ଦୁର୍ନୀତି ଲୋକଲୋଚନକୁ ଆଣି ଏକ ସୁସ୍ଥ ସମାଜ ଗଢ଼ିବା ସଙ୍ଗେ ସଙ୍ଗେ ଦେଶର କଲ୍ୟାଣ ସାଧନ କରିବା ତାଙ୍କ ଜୀବନର ଲକ୍ଷ୍ୟ ହେଲା ।

## ବନ୍ୟାଞ୍ଚଳରେ ରିଲିଫ ବଣ୍ଟନ

ପଣ୍ଡିତ ଗୋଦାବରୀଶଙ୍କ ନେତୃତ୍ୱରେ ଗୋଦାବରୀଶ ୧୯୨୬-୨୭ ମସିହାରେ ପୁରୀ ଜିଲ୍ଲାର ପ୍ରଳୟଙ୍କରୀ ବନ୍ୟାରେ କର୍ମୀରୂପେ ରିଲିଫ୍ ବଣ୍ଟନ କାର୍ଯ୍ୟରେ ଲାଗିଥିଲେ । ଏହି ବନ୍ୟା ବିପନ୍ନଙ୍କ ସାହାଯ୍ୟପାଇଁ କାମ କଲାବେଳେ ସେ ଓଡ଼ିଶାର ଅନ୍ୟତମ କର୍ମୀ ଯଦୁମଣି ମଙ୍ଗରାଜଙ୍କ ବନ୍ଧୁତା ଅର୍ଜନ କରିଥିଲେ । ଓଡ଼ିଶାର ବନ୍ୟା ଓ ଦୁର୍ଭିକ୍ଷ ବେଳେ ପଣ୍ଡିତ ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱ ପ୍ରକଟିତ ହୋଇଥିବାର ସେ ଲକ୍ଷ୍ୟ କରିଥିଲେ । ସେଥିରୁ ସେ ଓଡ଼ିଆ ଜାତୀୟତାର ସୂକ୍ଷ୍ମ ଅନୁଭୂତି ଆହରଣ କରିଥିଲେ । ତାହାର ପଟ୍ଟଭୂମିରେ ସେ ରଚନା କରିଥିଲେ ଉପନ୍ୟାସ 'ଏବେ ମଧ୍ୟ ବଞ୍ଚିଛି' ।

## ସହଯୋଗ ସମିତି ଗଠନ

ପଣ୍ଡିତ ଗୋଦାବରୀଶ ମିଶ୍ର ବାଣପୁର ଅଞ୍ଚଳର ଆର୍ଥନୀତିକ ବିକାଶ ଘଟାଇବା ନିମନ୍ତେ ଏକ ସହଯୋଗ ସମିତି ଗଠନ କଲେ । ସେ ନିଜେ ଏହାର ସଭାପତି ହେଲେ । ପ୍ରଥମ ସଭ୍ୟ ଭାବେ ସେ ଗୋଦାବରୀଶଙ୍କୁ ବାଛିଲେ । ଏହି ସହଯୋଗ ସମିତିଟି ଖୋର୍ଦ୍ଧାର କେନ୍ଦ୍ର ସହଯୋଗ ସମିତିଠାରୁ ସାହାଯ୍ୟ ପାଇଲା । ଏହାର ନାମ ହେଲା 'ବାଣପୁର ସହଯୋଗ ସମିତି' ।

ପ୍ରଥମେ ବାଣପୁରରେ ଏକ ଦିଆସିଲି କାରଖାନା ବସାଗଲା । ଏଥିପାଇଁ ଯନ୍ତ୍ରପାତି ଆସିଲା । ଆଖପାଖ ଜଙ୍ଗଲରୁ ଦେବଦାରୁ ଓ ପାଳଧୁଆ କାଠ ସଂଗ୍ରହ କରି ତାହାକୁ କଳ ସାହାଯ୍ୟରେ କାଟି ସେଥିରେ ରଞ୍ଜକ ଯୋଗ କରାଗଲା । ଏହି ଦିଆସିଲି କାରଖାନାରେ ବହୁ ଲୋକ କାମ କଲେ । ଉତ୍ପାଦିତ ଦ୍ରବ୍ୟ ସ୍ଥାନୀୟ ଅଭାବ ପୂରଣ କଲା । ବାହାରକୁ ମଧ୍ୟ ବିକ୍ରିପାଇଁ ପଠାଗଲା । ଏହି ଦିଆସିଲି କାରଖାନାଟି ସମଗ୍ର ବାଣପୁର ଅଞ୍ଚଳରେ ଚାଞ୍ଚଲ୍ୟ ସୃଷ୍ଟି କଲା । ଦଳ ଦଳ ହୋଇ ଲୋକେ ଏହାକୁ ଦେଖିବାକୁ ଆସିଲେ ।

ସହଯୋଗ ସମିତି ମଧ୍ୟ ସୂତାକଟା ଓ ଲୁଗା ବୁଣା କାମ ହାତକୁ ନେଲା । ବହୁ ଲୋକ ସୂତା କାଟିବାରେ ନିଯୁକ୍ତ ହେଲେ । ଅନ୍ୟ କେତେକ ଲୁଗା ବୁଣିଲେ । ବିଶେଷତଃ ତନ୍ତୀ ଜାତିର ଲୋକେ ଏହାଦ୍ୱାରା ଉପକୃତ ହେଲେ । ଗୋଦାବରୀଶ ସତ୍ୟବାଦୀ ଜାତୀୟ ବିଦ୍ୟାଳୟରେ ଲୁଗାବୁଣା ଶିଖିଥିଲେ । ଏଥିପାଇଁ ସ୍ୱତନ୍ତ୍ର ତାଲିମ ମଧ୍ୟ ପାଇଥିଲେ । ଫଳରେ ସୂତାକଟା ଓ ଲୁଗାବୁଣା ଭଲ ଚାଲିଲା । ଲୋକେ ବି ଏଠାରେ ଲୁଗା କିଣିବାକୁ ପସନ୍ଦ କଲେ ।

ସମବାୟ ସମିତି ପକ୍ଷରୁ କୋଠ ଚାଷ ପ୍ରବର୍ତ୍ତନ କରାଗଲା । ଏହା ଫଳରେ ଚାଷ କାର୍ଯ୍ୟ ଭଲ ଭାବରେ ହେଲା । ଅଧିକ ଉତ୍ପାଦନ ହେଲା । ମିଳିମିଶି କାମ କଲେ କିପରି ଅଧିକ ଲାଭ ହୋଇପାରେ, ତା'ର ପ୍ରମାଣ ମିଳିଲା ।

ପଣ୍ଡିତ ଗୋଦାବରୀଶଙ୍କ ପରାମର୍ଶ ଓ ପ୍ରେରଣା ଏବଂ ଗୋଦାବରୀଶଙ୍କ କର୍ମପ୍ରବଣତା ଯୋଗୁଁ ଏହି ସହଯୋଗ ସମିତି ଯେ ଉନ୍ନତି ପଥରେ ଧାବମାନ ହେଲା, ଏଥିରେ ସନ୍ଦେହ ନାହିଁ ।

ମାତ୍ର ବାଣପୁର ସହଯୋଗ ସମିତି କାଳକ୍ରମେ ଆର୍ଥିକ କ୍ଷତିର ସମ୍ମୁଖୀନ ହେଲା । ଯେଉଁମାନଙ୍କ ବ୍ୟବସାୟରେ ବାଧା ସୃଷ୍ଟି ହେଲା, ସେମାନେ ସହଯୋଗ ସମିତି ବିରୋଧରେ ଗଲେ । ବ୍ରିଟିଶ ସରକାର ମଧ୍ୟ ଜାତୀୟତାବାଦୀ ନେତାମାନଙ୍କୁ ହଇରାଣ ହରକତ କରିବାକୁ ଉଦ୍ୟମ କରୁଥିଲେ । ପଣ୍ଡିତ ଗୋଦାବରୀଶ ତଥା ସହଯୋଗ ସମିତି ନାମରେ ମିଥ୍ୟା ମୋକଦ୍ଦମା ରୁଜୁ କରାଗଲା । ଶେଷରେ ପଣ୍ଡିତ ଗୋଦାବରୀଶଙ୍କୁ ଜେଲଦଣ୍ଡ ଭୋଗିବାକୁ ପଡ଼ିଲା । ସହଯୋଗ ସମିତିଟି ମଧ୍ୟ ଭାଙ୍ଗିଗଲା । ଏ ଘଟଣାରେ ଗୋଦାବରୀଶ ମାନସିକ ସ୍ତରରେ ଭାଙ୍ଗିପଡ଼ିବା ସ୍ୱାଭାବିକ ।

### ବାଣପୁରରେ ହାଇସ୍କୁଲ ପ୍ରତିଷ୍ଠା

ବାଣପୁରରେ ମାଇନର ସ୍କୁଲଟି ପୂର୍ବରୁ ବନ୍ଦ ହୋଇଯାଇଥିଲା । ଏହାପରେ ବାଣପୁରରେ ସତ୍ୟବାଦୀ ଜାତୀୟ ବନବିଦ୍ୟାଳୟ ଢାଞ୍ଚାରେ ଏକ ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠା କରାଗଲା । ତାହା ମଧ୍ୟ ଚାଲିଲା ନାହିଁ । ବିଦ୍ୟାଳୟଟି ନାଁକୁ ମାତ୍ର ରହିଥିଲା । ଗୋଦାବରୀଶ ସେଠାରେ ତାଙ୍କର କର୍ମଜୀବନ ଆରମ୍ଭ କରିଥିଲେ । ସେ ଆଶା ହରାଇ ନ ଥିଲେ । ସେହି ସ୍ଫୁଲିଙ୍ଗଟି ଦିନେ ଜଳିବ ଓ ତା'ର ଆଲୋକରେ ଚାରିଆଡ଼ ଆଲୋକିତ ହେବ – ଏ ବିଶ୍ୱାସ ତାଙ୍କର ଥିଲା ।

୧୯୩୦ ମସିହା ଆଡ଼କୁ ପଣ୍ଡିତ ଗୋଦାବରୀଶ ପୁଣି ବାଣପୁରରେ ଗୋଟିଏ ହାଇସ୍କୁଲ ପ୍ରତିଷ୍ଠା କରିବାକୁ ଉଦ୍ୟମ କଲେ । ଶିଷ୍ୟ ଗୋଦାବରୀଶ ପୁଣି ଏଥିରେ ଆଗୁଆ ହୋଇ ବାହାରିଲେ । ସ୍କୁଲଟି କେଉଁଠାରେ ହେବ ସେ ବିଷୟରେ ଆଲୋଚନା ହେଲା । କେତେକ ବାଣପୁର ମାଇନର ସ୍କୁଲ ଥିବା ସ୍ଥାନରେ ହାଇସ୍କୁଲ ପ୍ରତିଷ୍ଠା କରିବାକୁ ମତ ଦେଲେ । ମାତ୍ର ପଣ୍ଡିତ ଗୋଦାବରୀଶଙ୍କର ଦୂରଦୃଷ୍ଟି ଥିଲା । ସେ ବଜାରଠାରୁ ଦୂରରେ ବାଲୁକେଶ୍ୱର ମନ୍ଦିର ପାଖରେ ସ୍କୁଲ ପ୍ରତିଷ୍ଠା କରିବାକୁ ମତ ଦେଲେ । ଭବିଷ୍ୟତ୍‌ରେ ସ୍କୁଲର ସମ୍ପ୍ରସାରଣପାଇଁ ଯଥେଷ୍ଟ ଜାଗା ମିଳିବ ବୋଲି ସେ ଦର୍ଶାଇଲେ । ବିଦ୍ୟାଳୟଟି କେବଳ ବିଦ୍ୟାଳୟରେ ସୀମିତ ନ ରହି କଲେଜ ହେବ ଏବଂ ଭବିଷ୍ୟତ୍‌ରେ ଏକ ବିଦ୍ୟାନଗରୀରେ ପରିଣତ ହେବ– ଏହାହିଁ ତାଙ୍କର ସ୍ୱପ୍ନ ଥିଲା ।

ବାଣପୁରରେ ୧୯୩୦ ମସିହାରେ ହାଇସ୍କୁଲ ପ୍ରତିଷ୍ଠା ହେଲା । ପଣ୍ଡିତ ଗୋଦାବରୀଶ ସେହି ସେହି ଉଚ୍ଚ ବିଦ୍ୟାଳୟ ପରିଚାଳନା କମିଟିର ପ୍ରଥମ ସେକ୍ରେଟେରୀ ହେଲେ । ପ୍ରଥମେ ପ୍ରଥମେ ଯୋଗ୍ୟ ଶିକ୍ଷକ ମିଳିବାରେ ଅଭାବ ହେବାରୁ ଗୋଦାବରୀଶ ନିଜେ ଶିକ୍ଷକ ହେଲେ । ସେ ସେଥିରେ ଏକାଧିକ ବିଷୟ ପଢ଼ାଉଥିଲେ । ଏହି ସମୟରେ ବାଣପୁରରୁ 'ବନଫୁଲ' ସାହିତ୍ୟ ପତ୍ରିକା ତାଙ୍କ ସମ୍ପାଦନାରେ ପ୍ରକାଶ ପାଇଥିଲା ।

### ବିଚ୍ଛିନ୍ନାଞ୍ଚଳରେ କାର୍ଯ୍ୟ

ସେତେବେଳ ପର୍ଯ୍ୟନ୍ତ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ଭାବେ ଗଠିତ ହୋଇ ନ ଥାଏ । ୧୯୩୧ ମସିହାରେ ପଣ୍ଡିତ ଗୋଦାବରୀଶଙ୍କ ନେତୃତ୍ୱରେ ଗୋଦାବରୀଶ ଓଡ଼ିଶାର ଅନ୍ୟତମ ବିଚ୍ଛିନ୍ନାଞ୍ଚଳ ମେଦିନୀପୁରରେ ଓଡ଼ିଶାର ଭାଷା, ସାହିତ୍ୟ ଓ ସାଂସ୍କୃତିକ ପ୍ରଚାର କାର୍ଯ୍ୟରେ ଲିପ୍ତ ଥିଲେ । ସେ ସେତେବେଳେ ମେଦିନୀପୁରର କୌଣସି ପଲ୍ଲୀରେ 'ଉଠ କଙ୍କାଳ' କବିତାଟି ରଚନା କରିଥିଲେ ।

### ନିଆଁଖୁଣ୍ଟାର ଜନ୍ମ

୧୯୩୭-୩୮ ମସିହା କାଳକୁ ଓଡ଼ିଶାବାସୀଙ୍କର ଚିରବାଞ୍ଛିତ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠିତ ହୋଇସାରିଥିଲା । ୧୯୩୬ ମସିହାରେ ମଧ୍ୟ ଓଡ଼ିଶାରେ ପ୍ରଥମ

ନିର୍ବାଚନ ହୋଇ କଂଗ୍ରେସ ଶାସନ ପ୍ରତିଷ୍ଠିତ ହୋଇଥିଲା । ଭାରତର ବିଭିନ୍ନ ପ୍ରଦେଶରେ ମଧ୍ୟ କଂଗ୍ରେସ ଶାସନ ପ୍ରତିଷ୍ଠିତ ହୋଇଥିଲା । ନିକଟ ଭବିଷ୍ୟତ୍‌ରେ ଭାରତବର୍ଷ ଯେ ପୂର୍ଣ୍ଣ ସ୍ୱାଧୀନତା ପାଇବ, ସେଥିରେ ଗୋଦାବରୀଶ ଆଶାନ୍ୱିତ ହେଲେ । ମାତ୍ର ସ୍ୱାଧୀନତା ଯେପରି ସ୍ୱେଚ୍ଛାଚାରିତାରେ ପରିଣତ ନ ହୁଏ, ଆତ୍ମନିୟନ୍ତ୍ରଣ ଅଧିକାର ସହିତ ଆତ୍ମସଂଯମ ଯେପରି ରହେ, ସେହି ଚିନ୍ତା ଗୋଦାବରୀଶ ମନ୍‌ରେ ଜାଗ୍ରତ ହେଲା ।

ଓଡ଼ିଆ ଜାତିର ସ୍ୱାର୍ଥରକ୍ଷା ଉଦ୍ଦେଶ୍ୟରେ ଗୋଦାବରୀଶ ଶେଷରେ ଏକ ପତ୍ରିକା ପ୍ରକାଶ କରିବାକୁ ଚିନ୍ତା କଲେ । ଓଡ଼ିଶା ପ୍ରଦେଶ ଗଠିତ ହେବା ପରେ ଦକ୍ଷିଣ ଆଡୁ ଓଡ଼ିଆର ସ୍ୱାର୍ଥହାନି ଆଶଙ୍କା ପ୍ରବଳ ହୋଇଉଠିଥିଲା । ତେଣୁ ଜାତି ହିସାବରେ ଯଦି ଓଡ଼ିଆ ବଞ୍ଚି ରହିବ, ତେବେ ତାହାର ଦକ୍ଷିଣ ଦ୍ୱାରକୁ ଏକ ସୁଦୃଢ଼ ସାଂସ୍କୃତିକ ଘାଟି ରୂପେ ଗଠନ କରିବାର ଆବଶ୍ୟକତା ସେ ଉପଲବ୍‌ଧି କଲେ । ତେଣୁ ବ୍ରହ୍ମପୁରରୁ ସେ 'ନିଆଁଖୁଣ୍ଟା' ପ୍ରକାଶ କରିବାକୁ ସ୍ଥିର କଲେ ।

'ନିଆଁଖୁଣ୍ଟା' ନାଁଟି ଗୋଦାବରୀଶ ରୀତିଯୁଗର ଶ୍ରେଷ୍ଠ କବି ଉତ୍କଳଘଣ୍ଟ ଯଦୁମଣି ମଙ୍ଗରାଜଙ୍କ ପଙ୍‌କ୍ତିରୁ ପାଇଥିବା ଅନୁମାନ କରାଯାଏ । ସେହି ବିଖ୍ୟାତ ପଙ୍‌କ୍ତିଟି ଏପରି ଥିଲା –

''କୁଞ୍ଜବନେ ଜଗନ୍ନାଥ ନ ହେବ ଗୋସାଇଁ
ରଥ ବୋଲି ଭଣ୍ଡିଦେବେ ଶଗଡ଼େ ବସାଇ ।
ଭୋଗ ବୋଲି ଖଞ୍ଜିଦେବେ କଡ଼ିକିଆ ମୁଆଁ,
ଧୂପ ବୋଲି ଗେଞ୍ଜିଦେବେ ନିଆଁଖୁଣ୍ଟା ଧୂଆଁ ।''

'ନିଆଁଖୁଣ୍ଟା' ହେଲା ଏକ ନୂତନ ଧରଣର ପତ୍ରିକା । ଏହା ହେଲା ଗୋଦାବରୀଶଙ୍କ ବ୍ୟଙ୍ଗବିଦ୍ରୂପର ପ୍ରଧାନ ମାଧ୍ୟମ । ଏହା ପ୍ରଥମେ ଦୁର୍ଗାମାଧବ ମିଶ୍ରଙ୍କ ସମ୍ପାଦନାରେ ବ୍ରହ୍ମପୁରରୁ ପ୍ରକାଶ ପାଇଲା । ପ୍ରଥମେ କ୍ଷୁଦ୍ର ଆକାରରେ ଏକ ପଇସା ମୂଲ୍ୟରେ ଏହା ବିକ୍ରୟ କରାଗଲା । ବେଳେ ବେଳେ ମାଗଣା ମଧ୍ୟ ବଣ୍ଟା ହେଲା । ତେବେ ପତ୍ରିକାରେ ଗୋଦାବରୀଶଙ୍କ ଲେଖନୀର ଶକ୍ତିଶାଳିତା ଯଥାଯଥ ଭାବେ ପରିସ୍ଫୁଟ ହେଲା । ଅଚିରେ ମଧ୍ୟ ଏହା ଲୋକପ୍ରିୟତା ଅର୍ଜନ କଲା ।

ଗୋଦାବରୀଶ 'ନିଆଁଖୁଣ୍ଟା'ପାଇଁ ଯେଉଁ କଷ୍ଟ ସ୍ୱୀକାର କରିଛନ୍ତି, ତାହା କଳ୍ପନା କରିହେବ ନାହିଁ । ଗୋଦାବରୀଶ ନିଜେ ସମ୍ବାଦ ସଂଗ୍ରହ କରି, ତାକୁ ନାନା ଭାବରେ କବିତା, ଗଳ୍ପ, ରମ୍ୟରଚନା, ସାଧାରଣ ବ୍ୟଙ୍ଗାତ୍ମକ ଆଲୋଚନା ଆକାରରେ ଲେଖି 'ବ୍ରହ୍ମପୁରର ଶାରଦା ପ୍ରେସକୁ ଦେଉଥିଲେ । ଏପରିକି ନିଜେ ଘର ଘର ବୁଲି ନିଆଁଖୁଣ୍ଟା ବିକ୍ରି କରୁଥିଲେ । ବେଳେ ବେଳେ କାଗଜ ଅଭାବ, ଅନେକ ସମୟରେ ଛାପା ଖର୍ଚ୍ଚ

ଠିକ୍ ସମୟରେ ଦେଇପାରୁ ନ ଥିଲେ । ତାଙ୍କୁ ସଦାସର୍ବଦା ଆର୍ଥିକ ସଙ୍କଟର ସମ୍ମୁଖୀନ ହେବାକୁ ପଡୁଥିଲା । ତାଙ୍କର ବନ୍ଧୁମାନେ ଅବଶ୍ୟ ବେଳେ ବେଳେ ଆର୍ଥିକ ସହାୟତା ଦେଉଥିଲେ । ମାତ୍ର ତାହା ଥିଲା ନଗଣ୍ୟ । ଅନେକ ବନ୍ଧୁ ମୁହଁ ଆଡ଼େଇ ବାଟ କାଟି ଚାଲିଯାଉଥିଲେ । କିନ୍ତୁ ଗୋଦାବରୀଶ କାହାରି ସାହାଯ୍ୟ, ସହଯୋଗ, ଅନୁଗ୍ରହ ବା ମୁହଁମୋଡ଼ାକୁ ଭ୍ରୂକ୍ଷେପ ନ କରି ଏହି ବନ୍ଧୁର ପଥରେ ଅସାଧାରଣ କର୍ତ୍ତବ୍ୟନିଷ୍ଠା ଓ ଅଟଳ ପ୍ରତିଜ୍ଞା ନେଇ ଆଗେଇଗଲେ । ଏହିଠାରୁ ତାଙ୍କର ତେଜୋବାନ୍ ବିକାଶଶୀଳ ପ୍ରତିଭା ପ୍ରଜ୍ୱଳିତ ଓ ପ୍ରଖର ପର୍ଯ୍ୟାୟରେ ଉପନୀତ ହେଲା ।

ପ୍ରଖ୍ୟାତ ପ୍ରଫେସର ବିପିନବିହାରୀ ରାୟ ଥରେ ଗୋଦାବରୀଶଙ୍କୁ କଥା ପ୍ରସଙ୍ଗରେ ପ୍ରଶ୍ନ କରିଥିଲେ – ଆପଣ କବି ଓ ଗାଳ୍ପିକ ସ୍ଥାନରେ ପ୍ରତିଷ୍ଠା ଲାଭ କରି ସେହି କ୍ଷେତ୍ରରେ ନିବିଷ୍ଟ ରହି ସେ କାର୍ଯ୍ୟ କରିଥିଲେ, ଦ୍ୱନ୍ଦ୍ୱମୂଳକ 'ନିଆଁଖୁଣ୍ଟା' ସମ୍ପର୍କରେ ନ ଆସିଥିଲେ, ଜୀବନରେ ଯଶସ୍ୱୀ ହୋଇଥାନ୍ତେ ଓ ଶାନ୍ତି ଲାଭ କରିଥାନ୍ତେ । କେଉଁ କାରଣରୁ ସେ ନିଆଁଖୁଣ୍ଟା ପ୍ରତି ଆକୃଷ୍ଟ ହେଲେ ବୋଲି ପଚାରିବାରେ ମହାପାତ୍ରେ ତାଙ୍କୁ ଉତ୍ତରରେ ଯାହା କହିଥିଲେ ତାହା ପ୍ରଫେସର ରାୟ ନିଆଁଖୁଣ୍ଟା ସ୍ମରଣିକା ସଂଖ୍ୟାରେ ଲିପିବଦ୍ଧ କରିଛନ୍ତି । ଗୋଦାବରୀଶ ନିଜେ ମଧ୍ୟ 'ନିଆଁଖୁଣ୍ଟା'ର ଦୀର୍ଘ ୨୫ ବର୍ଷର କାର୍ଯ୍ୟକଳାପ ଉପରେ ଯାହା ଲେଖିଛନ୍ତି, ତାହା ବିଶେଷ ପ୍ରଣିଧାନଯୋଗ୍ୟ । ତାଙ୍କ ଭାଷାରେ – ''ପଚିଶ ବର୍ଷର ଇତିହାସ 'ନିଆଁଖୁଣ୍ଟା'ର ଏକ ଦାରୁଣ ସଂଗ୍ରାମର ଇତିହାସ । ସବୁବେଳେ ଏ ଜାତିର ଜନତାର ସେବାପାଇଁ, ଓଡ଼ିଶାର ସ୍ୱାର୍ଥରକ୍ଷାପାଇଁ, ଭାରତର ସମ୍ମାନ ବୃଦ୍ଧିପାଇଁ 'ନିଆଁଖୁଣ୍ଟା' ଦଳମତ ନିର୍ବିଶେଷରେ ପଦପଦବୀରେ ଥିବା ସମସ୍ତ ବ୍ୟକ୍ତିଙ୍କର କଠୋର ସମାଲୋଚନା କରି ଜାତୀୟ ସ୍ୱାର୍ଥକୁ ପଦେ ପଦେ ଜଗିବସିଛି । 'ନିଆଁଖୁଣ୍ଟା'ର ନୀତି ଏ ଜାତିର ସଭ୍ୟତା ଓ ସଂସ୍କୃତିର ନୀତି । 'ନିଆଁଖୁଣ୍ଟା' ତା'ର ଗତିପଥରେ ଚାଲିଛି ଓ ଚାଲିବ ।''

ସାହିତ୍ୟ ବିଚାରରେ 'ନିଆଁଖୁଣ୍ଟା'ର ମୂଲ୍ୟ କଳନା କରିହେବ ନାହିଁ । ୧୯୩୩ ମସିହାରୁ ଗୋଦାବରୀଶଙ୍କର ସମସ୍ତ କବିତା, ଗଳ୍ପ, ରମ୍ୟରଚନା, ଏକାଙ୍କିକା ଏଥିରେ ହିଁ ପ୍ରକାଶିତ ହୋଇଛି । ଅନ୍ୟାନ୍ୟ ପତ୍ରପତ୍ରିକାରେ ଯାହା ପ୍ରକାଶ ପାଇଛି ତାହା ଖୁବ୍ ଅଳ୍ପ । ଏହି ସମୟର ରଚିତ ଗଳ୍ପ ମଧ୍ୟରୁ ଅଳ୍ପ କେତେକ 'ମୁଁ ଦିନେ ମନ୍ତ୍ରୀ ଥିଲି', ସଙ୍କଳନରେ ପ୍ରକାଶିତ । ଏ ସମୟର ବହୁ ଗଳ୍ପ ଓ କବିତା ଏଯାବତ୍ ପ୍ରକାଶ ପାଇ ନାହିଁ ।

୧୯୩୮ ମସିହାରୁ ଗୋଦାବରୀଶଙ୍କ ରଚନା ଶୈଳୀରେ ହାସ୍ୟରସିକତା ଓ ବ୍ୟଙ୍ଗାତ୍ମକ ଆଭାର ପରିସ୍ଫୁଟ ହୋଇ କେବଳ ଓଡ଼ିଆରେ କାହିଁକି ସମଗ୍ର ଭାରତୀୟ ସାହିତ୍ୟ କ୍ଷେତ୍ରରେ ଏକ ସ୍ୱତନ୍ତ୍ର ଜଗତର ସଙ୍କେତ ବହନ କରିଅଛି ।

# ସାହିତ୍ୟକୃତି

## କବିତା

ଆଦ୍ୟ ଜୀବନରେ ପଣ୍ଡିତ ଗୋପବନ୍ଧୁ, ପଣ୍ଡିତ ଗୋଦାବରୀଶଙ୍କ ଜୀବନାଦର୍ଶ ଓ ପ୍ରଦର୍ଶିତ ମାର୍ଗର ଗୋଦାବରୀଶ ଥିଲେ ଏକାନ୍ତ ଅନୁଗାମୀ । ମାନବିକତାର ଜୟଗାନ କରିବା ତାଙ୍କ ସାହିତ୍ୟର ମୂଳ ଲକ୍ଷ୍ୟ ଥିଲା । ଜାତୀୟତାବାଦର ଉଗ୍ର କଳ୍ପନା-ପ୍ରୀତି ତାଙ୍କର ଯୌବନକାଳୀନ ରଚନାରେ ବିଶେଷଭାବେ ପରିସ୍ଫୁଟ ହୋଇଥିଲା । ଏହି କାରଣରୁ ଗୋଦାବରୀଶ ସବୁଜ ଯୁଗର (୧୯୨୧-୩୫) ପୂର୍ବବର୍ତ୍ତୀ ସାହିତ୍ୟ ସାଧକ ହେଲେ ମଧ ସବୁଜ କବିମାନଙ୍କ ପରି ପ୍ରସିଦ୍ଧି ଲାଭ କରିପାରି ନ ଥିଲେ । ଓଡ଼ିଆ ସାହିତ୍ୟରେ ସେ ସମୟ ଥିଲା ରୋମାଣ୍ଟିକ୍ ଭାବପ୍ରବଣତାର, ପଳାୟନପନ୍ଥୀ ମନୋଭାବର ବିକାଶ କାଳ । କିନ୍ତୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭର ବହୁ ପୂର୍ବରୁ ଏହି ପଳାୟନପନ୍ଥୀ ସାହିତ୍ୟ ସାଧକମାନେ ଓଡ଼ିଆ ସାହିତ୍ୟ ମଞ୍ଚରୁ ବିଦାୟ ନେଇଥିଲେ । ସାମ୍ୟବାଦର ଜୟଧ୍ୱଜା ସେହି ସ୍ଥାନରେ ଉଡ୍‌ଡୟନ ହୋଇଥିଲା । କିନ୍ତୁ ଗୋଦବରୀଶ ପୂର୍ବ ପରି ସମାଜ, ରାଜନୀତି ଓ ମନୁଷ୍ୟ ଜୀବନର କଠୋର ବାସ୍ତବ ଦିଗକୁ ନେଇ ସାହିତ୍ୟ ସାଧନାରେ ବ୍ରତୀ ଥିଲେ । ଲୋକ ସାଧାରଣଙ୍କ ଜୀବନଧାରାକୁ ଚିତ୍ରଣ କରିବାରେ ସେ ନିଷ୍ଠାପର ଭାବେ ଲାଗି ପଡ଼ିଥିଲେ ।

## କାବ୍ୟ-କବିତା

କବି ମାଇନର ସ୍କୁଲରେ ପଢୁଥିବା ସମୟରେ ୧୯୦୪ ମସିହାରେ ତାଙ୍କ ସାହିତ୍ୟର ଆଦ୍ୟ ଓଁକାର 'ବାଣପୁର' କବିତା ରଚନା କରିବା ପୂର୍ବରୁ ବର୍ଣ୍ଣିତ । ତାଙ୍କ ରଚିତ 'ପ୍ରଭାତ କୁସୁମ' ୧୯୨୦ ମସିହାରେ ସ୍ୱନାମଧନ୍ୟ ସମ୍ପାଦକ ବ୍ରଜସୁନ୍ଦର ଦାସଙ୍କଦ୍ୱାରା ପ୍ରକାଶ ପାଇଥିଲା । ଏଥିରେ ସ୍ଥାନ ପାଇଥିବା କବିତାଗୁଡ଼ିକ ହେଲା 'ଉଷା', 'ନିର୍ଝର', 'ପ୍ରଦୋଷ', 'ଶିଶିର', 'ନୀତିମାଲ୍ୟ' ଓ 'ପୁଷ୍ପାଞ୍ଜଳି' । ଏଗୁଡ଼ିକ ୧୯୧୪ ବେଳକୁ ରଚିତ ହୋଇସାରିଥିଲା । ସତ୍ୟବାଦୀ ବନବିଦ୍ୟାଳୟରେ ଅଧ୍ୟୟନ କରୁଥିବାବେଳେ ସେ ରଚନା କଲେ 'କବିର ଗାନ' ! ଏହା ୧୯୧୬ ମସିହାରେ ପଣ୍ଡିତ ଗୋପବନ୍ଧୁଙ୍କ ସମ୍ପାଦନାରେ ବିଦ୍ୟାଳୟର ମୁଖପତ୍ର 'ସତ୍ୟବାଦୀ'ରେ ପ୍ରକାଶ ପାଇଥିଲା । ଏହାର ଗୋଟିଏ ପଙ୍‌କ୍ତି –

''ପ୍ରଦୋଷ ତିମିରେ କି ଆଣେ
କୁମୁଦୀ ନୀରବେ ଫେଇଲା ନୟନ ହସି
ମାଧବୀ ମଣ୍ଡପେ
କି ସବୁ ସୋହାଗେ
ଗାଇଲା ମଧୁପ ଫୁଲେ ରହସି ।''

ସତ୍ୟବାଦୀରେ ଅଧ୍ୟୟନ କରୁଥିବା ସମୟରେ ରଚିତ ପ୍ରାୟ ଶତକଡ଼ା ନବେ ଭାଗ କବିତା 'ଯେ ଫୁଲ ଫୁଟିଥିଲା' କବିତା ସଙ୍କଳନରେ ସ୍ଥାନିତ ହୋଇଥିଲା । ସେଇ ୧୯୧୬ ମସିହାରେ ଗୋଦାବରୀଶ 'ଉତ୍ତରାୟଣ' ଓ 'ଗଣେଶ ଗୀତିକା' ରଚନା କରିଥିଲେ ।

୧୯୧୯-୨୦ ମସିହା ଆଡ଼କୁ ସ୍ୱଦେଶୀ ଆନ୍ଦୋଳନ ଆରମ୍ଭ ହେଲା । ଗୋଦାବରୀଶ ମଧ୍ୟ ତାହାଦ୍ୱାରା ଅନୁପ୍ରାଣିତ ହୋଇ ବହୁ କବିତା ରଚନା କଲେ । 'ପଥିକ ମୁଁ ସ୍ୱରାଜ୍ୟ ଦୁଆରେ' ସେହିଭଳି ଏକ କବିତା । ୧୯୨୦ ମସିହାରେ 'ଆତ୍ମବଳି' ଶୀର୍ଷକ ଏକ ଗାଥାକବିତା ମଧ୍ୟ ସେ ରଚନା କରିଥିଲେ ।

ସତ୍ୟବାଦୀରେ 'ବାଣୀ' ନାମକ ଏକ ପତ୍ରିକା ପ୍ରକାଶ ପାଉଥିଲା । ସେଥିରେ ଗୋଦାବରୀଶଙ୍କ ବହୁ ଗଳ୍ପ ଓ କବିତା ପ୍ରକାଶ ପାଇଥିଲା । ସେଥିମଧ୍ୟରୁ କେତେକ ହେଲା 'ବୀରବାଳା', 'ସଂଯୁକ୍ତା', 'ବିଦାୟ ବେଳେ', 'ବର୍ଷ ଶେଷ' ଓ 'ଅବକାଶ ଶେଷ' ।

**ଉଠ କଙ୍କାଳ**

'ଉଠ କଙ୍କାଳ' କବିଙ୍କ ଏକ କବିତା ସଙ୍କଳନ । ଏଥିରେ ବୟାଳିଶଟି କବିତା ସ୍ଥାନ ପାଇଛି । ସବୁଠାରୁ ଉଲ୍ଲେଖଯୋଗ୍ୟ କବିତା ହେଉଛି 'ଉଠ କଙ୍କାଳ' । ୧୯୩୧ ମସିହାରେ କବି ମେଦିନୀପୁରରେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ପ୍ରଚାରପାଇଁ ଯାଇଥିଲାବେଳେ ଏହାକୁ ରଚନା କରିଥିବା ପୂର୍ବରୁ ବର୍ଣ୍ଣିତ । ଏହା ଜାତିକୁ ଉଠାଇବାପାଇଁ ଅଗ୍ନିବର୍ଷୀ ଭାଷାରେ ରଚିତ ହୋଇଥିଲା । ତାହାକୁ ବଙ୍ଗଳାର 'ବର୍ତ୍ତମାନ ସମାଜର ଇତିବୃତ୍ତ' ଗ୍ରନ୍ଥର ଲେଖକ ଭାଗବତ ଚନ୍ଦ୍ର ଦାସ ଉଚ୍ଚ ପ୍ରଶଂସା କରିଥିଲେ । ଏହି କବିତାଟି ମେଦିନୀପୁରରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ଏହାପରେ 'ସହକାର' ମାସିକ ପତ୍ରିକାରେ ଏହି କବିତା 'ଶ୍ମଶାନ ପୂଜାରୀର ଆହ୍ୱାନ' ଶୀର୍ଷକରେ ପ୍ରକାଶ ପାଇଥିଲା । ଏହି କବିତାରେ କବି ପୁରାତନର ଜୀର୍ଣ୍ଣ ଆବରଣ ଫିଙ୍ଗିଦେଇ ଏକ ତେଜୀୟାନ୍ ନୂତନର ସ୍ୱାଗତ ଗୀତି ଗାଇଛନ୍ତି । ବିଂଶଶତାବ୍ଦୀର ଓଡ଼ିଶାରେ ଅତୀତର ଶ୍ମଶାନ ଭୂମିରୁ ନୂତନର ପବିତ୍ରତା ଜନ୍ମ ନେବ ବୋଲି ଗୋଦାବରୀଶ ଘୋଷଣା କରିଛନ୍ତି । ଏହି ଲକ୍ଷ୍ୟରେ ସେ କଙ୍କାଳର ଜାଗରଣ ମନ୍ତ୍ର ଗାନ କରିଛନ୍ତି । ଏ ଜାଗରଣର ଆହ୍ୱାନ ତାଙ୍କର ସମସ୍ତ ସୃଷ୍ଟିକୁ ପରିବୃତ୍ତ କରି ରଖିଛି । ଏ ଜାଗରଣ ମନ୍ତ୍ରର ପ୍ରତ୍ୟେକ ଜଡ଼ପିଣ୍ଡରେ ପ୍ରାଣ ସଞ୍ଚାର କରିବାର ସାମର୍ଥ୍ୟ ରହିଛି । ମଶାଣି ଭୂଇଁରୁ କଙ୍କାଳ ଉଠିବା, ଜାଗ୍ରତ ହେବାର ଇଙ୍ଗିତ ଦେଇଛି । ପୀଡ଼ିତ, ନିଷ୍ପେଷିତ, ଅବହେଳିତ ଜୀବନକୁ ଗୌରବ ଦାନ କରିଛି । ଓଡ଼ିଶାର ଚତୁଃସୀମାରେ ଏ ଡାକର ଗୁରୁଗମ୍ଭୀର ଧ୍ୱନି ଶୁଣିବାକୁ ମିଳେ ଉକ୍ତ କବିତାରେ –

''ମେଘାସନ ତଳ ମନ୍ଦ୍ର ନିନାଦ ଡାକେ
ଫୁଲଝରର ବୁକେ
ରାଇବଣିଆର ରଣ ସଙ୍ଗୀତ
ଗଞ୍ଜାମ ପଥେ ଡାକେ
ସିଂହଭୂମ କହେ ମରଣ ଦୁଆରେ
ବିଶାଖାପାଟଣା ଚାହିଁ
ସନ୍ତାନ ମୁଖେ ଶମଶାନ ବୁକେ
ପ୍ରାଣ ସଙ୍କେତ ନାହିଁ ।'' (ଉଠ କଙ୍କାଳ)

ଜାତୀୟ ଭାବ ମଣିଷର ମାନସିକ ବୃତ୍ତିକୁ ଜାଗ୍ରତ କରିଥାଏ । ଗୋଟିଏ ସୁପ୍ତ ଜାତିର ଚୈତନ୍ୟକୁ ଜାଗ୍ରତ ଓ ଉଦ୍‌ବୁଦ୍ଧ କରିବାପାଇଁ ଗୋଦାବରୀଶ ଅଗ୍ନିବୀଣାର ବାଦକ ହୋଇଛନ୍ତି । ଅନଳର ପ୍ରଜ୍ୱଳିତ ଶିଖାର ସେ ଆବାହନ କରିଛନ୍ତି 'ବାରବାଟୀ ବକ୍ଷେ' କବିତାରେ –

''ଜଳ ଜଳ ଜଳ ଜଳରେ ଅନଳ
ଉଠୁ ଆଗ୍ନେୟ ଗିରି ତଳୁ
ଶତ ବରଷର କୋଟି କଙ୍କାଳ
ରୁଦ୍ଧ ବାସନା ଫିଟିପଡୁ ।
ଉଜ୍ଜ୍ୱଳ ରୁଧିର ବୀର ବାରିଧିର
ପ୍ରାଣ ମନ୍ଦିର ଚହଲାଇ
ମରଣ ଶଙ୍ଖ ଶବ୍ଦ ନିଶଙ୍କ
ବାଜୁ ଚଞ୍ଚଳ ବେଳ ନାହିଁ ।''

ମୂକ ମୌନକୁ ମୁଖର କରିବା, ଜଡ଼ପିଣ୍ଡରେ ପ୍ରାଣ ସଞ୍ଚାର କରିବା, ପଙ୍ଗୁ ଗିରି ଲଙ୍ଘନର ସାମର୍ଥ୍ୟ ପ୍ରଦାନ କରିବା ଓ ଜାତିକୁ ଆତ୍ମସଚେତନ କରିବାହିଁ ଗୋଦାବରୀଶଙ୍କ ଜୀବନର ଲକ୍ଷ୍ୟ ହୋଇଛି ।

ଊନବିଂଶ ଶତାବ୍ଦୀରେ ପୃଥିବୀରେ ରୁଷର ଲିଓ ଟଲଷ୍ଟୟ ଥିଲେ ବୈପ୍ଳବିକ ଜାଗରଣ ମନ୍ତ୍ରର ଉଦ୍‌ଗାତା । ସେ ଏହା ଗାଇଛନ୍ତି 'The Resurrection' ନାମକ ଉପନ୍ୟାସରେ । ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଗୋଦାବରୀଶ ସେହିପରି ମାନବାତ୍ମାର ପୁନର୍ଜାଗରଣ ମନ୍ତ୍ର ଗାଇଛନ୍ତି 'ଉଠ କଙ୍କାଳ' କବିତାରେ । ଏହି ଦୃଷ୍ଟିରୁ ରୁଷର ଲିଓ ଟଲଷ୍ଟୟ ଓ ଓଡ଼ିଶାର ଗୋଦାବରୀଶ ଏକ ଓ ଅଭିନ୍ନ ବୋଲି ମନେ ହୁଅନ୍ତି ବୋଲି ଆଲୋଚକ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ ମତ ଦେଇଛନ୍ତି । ପୁଣି ଆଉ ପାଦେ ଆଗେଇଯାଇ ସେ କହିଛନ୍ତି – ''ବିଂଶ ଶତାବ୍ଦୀର ଓଡ଼ିଶାରେ କବି ଗୋଦାବରୀଶଙ୍କ ଆବଶ୍ୟକତା ଆମେ ଏଇଠି ଅନୁଭବ କରିଥାଉ ।''

୧୯୩୫ ମସିହାରେ କବିଙ୍କ 'ରୂପରେଖା' କବିତା ସଙ୍କଳନଟି ପ୍ରକାଶ ପାଇଲା । ଏଥିରେ ଥିବା କବିତାଗୁଡ଼ିକରେ କବିଙ୍କ ଗଭୀର ଅନୁଭୂତିର ପରିପ୍ରକାଶ ହୋଇଛି । 'ପ୍ରୟାଣେ' କବିତାଟି ବାଣପୁର ସ୍କୁଲର ଜଣେ କର୍ମୀଙ୍କ ମୃତ୍ୟୁରେ ରଚିତ ହୋଇଥିଲା । ବ୍ରାହ୍ମଣୀ ନଦୀ କୂଳରେ ଅବସ୍ଥିତ ମଧୁପୁର ସ୍କୁଲକୁ ଯିବାବେଳର ଦୃଶ୍ୟ ଉପରେ କବିତା ହେଉଛି 'ଯାତ୍ରାପଥେ' । 'ପଲ୍ଲୀ ପଥେ' କବିତାରେ ବାଣପୁର ନିକଟବର୍ତ୍ତୀ ଭାଲେରୀ ପର୍ବତ ଓ ଚିଲିକା ମଧ୍ୟସ୍ଥ ଭୂଭାଗର ଅପୂର୍ବ ଶୋଭା ବର୍ଣ୍ଣନା କରିଛନ୍ତି ।

### ହେ ମୋର କଲମ

୧୯୫୫ ମସିହାରେ ପ୍ରକାଶ ପାଇଥିବା 'ହେ ମୋର କଲମ' ସଙ୍କଳନରେ ତେଇଶ ଗୋଟି କବିତା ସ୍ଥାନ ପାଇଛି । କଲମର କୃତିତ୍ୱ ସୁନ୍ଦରଭାବେ କବି ବର୍ଣ୍ଣନା କରିଛନ୍ତି, ଯଥା –

''ତୁମେ ତ ଭୁଲିନ ଛଳଣାରେ କେବେ,
ଅଳୀକ ଗୁଣ୍ଡାମିରେ
ପେଷଣ, ଶୋଷଣ, ଦୂଷଣ ଦେଇଚ
ଆଡ଼େଇ ଏକଇ ଗାରେ ।''

ଗାନ୍ଧିଜୀଙ୍କ ଉପରେ ଗୋଟିଏ କବିତା – 'ସାବରମତୀର ମହାମାନବର ଚରଣ ତଳେ' । ତା'ର ଏକ ପଙ୍‌କ୍ତି –

''ସାବରମତୀର ତଟ ତରୁତଳ କୁଟୀର ପାଶେ
ହେ ଦୀନବନ୍ଧୁ ଚରଖାଚକ୍ର ଧରି ଏ ଦେଶେ
କଟି ତଟେ ଦୀନ କୌପୀନ
ବହି ହୋଇଲା ଉଭା
ଧାଇଁଲେ ଆବାଳ-ବୃଦ୍ଧ-ବନିତା
ତରୁଣୀ ଯୁବା ।''

'ମୁକୁଟର ପରାଜୟ', 'ଆଉ ଥରେ ଯେବେ ଉତ୍କଳମଣି ଆସିବେ', 'ବନ୍ୟାଞ୍ଚଳର ନିମନ୍ତ୍ରଣ', 'କଣ୍ଟ୍ରୋଲ', 'ପଶୁ ଓ ମଣିଷ', 'ଛେଳିର ନିବେଦନ', 'ମନ୍ତ୍ରୀ କହିଲେ' ପ୍ରଭୃତି ବହୁ କବିତା ଏଥିରେ ସ୍ଥାନିତ ।

### କଣ୍ଟା ଓ ଫୁଲ

୧୯୫୮ ମସିହାରେ କବିଙ୍କ 'କଣ୍ଟା ଓ ଫୁଲ' କବିତା ସଙ୍କଳନ ପ୍ରକାଶ ପାଇଲା । ଏଥିରେ ଏକାନବେଟି କବିତା ସ୍ଥାନ ପାଇଛି । ସେଥିମଧ୍ୟରୁ କେତେକ ହେଲା, 'ଭଗବାନ୍‌ଙ୍କ ମୃତ୍ୟୁ', 'ଚଟି', 'ଟଙ୍କା', 'ଶାଗୁଣା', 'ପେଚା', 'ବୁଲା କୁକୁର', 'ଟୋପି', 'ପର୍ବତ', ବାଉଁଶ କିଳା', 'ପାନିଆଁ ଗୋ', 'ବେକାର', 'ଅସନ୍ତୋଷ',

'ସାଇକେଲ', 'ରିକ୍ସାବାଲା', 'ଚପରାସୀ', 'ଚତୁର୍ଥ ଶ୍ରେଣୀ', 'ଚାଉଳ', 'ଟେଲିଫୋନ', 'କାଚ ଓ ହାତ' ପ୍ରଭୃତି । ଏସବୁ କବିତା ଲେଖିବା ଉଦ୍ଦେଶ୍ୟରେ ଲେଖାଯାଇ ନ ଥିଲା । ଜୀବନର ଗତିପଥରେ ସାମାଜିକ ଓ ରାଜନୀତିକ ସମସ୍ୟାର ବହୁ ବୈଚିତ୍ର୍ୟପୂର୍ଣ୍ଣ ଘଟଣା କବିଙ୍କ ଆଖିରେ ପଡ଼ିଛି । ସେଥିରୁ କେତେକ ହାସ-ପରିହାସ ଭରା, କେତେ ଅଶ୍ଳୀଳ ଅଭିଯୋଗରେ ପୂର୍ଣ୍ଣ, ଆଉ କେବେ ଜାତିର ଚାରିତ୍ରିକ ସ୍ଖଳନଜନିତ କ୍ଳେଶ କାଳିମାରେ ପରିପୂର୍ଣ୍ଣ – କବିଙ୍କ ଆଗରେ ପ୍ରତିଭାତ ହୋଇଛି ।

ସମାଜରେ ସମତା ସାଧନ ଲାଗି କବି ବ୍ୟାକୁଳ ଅନ୍ତରରେ ପର୍ବତକୁ ନମସ୍କାର କରି ଜଣାଇଛନ୍ତି –

''ସମସ୍ତଙ୍କୁ ସମଦୃଷ୍ଟି ଦେଇଅଛ ବୋଲି
ତୁମକୁ କହୁଚି କବି ଆଜି କରଯୋଡ଼ି
ଥରେ କଥା କହି କର ସନ୍ଦେହ ମୋଚନ
ମର୍ତ୍ତ୍ୟରେ ହୋଇବ କେବେ
ସ୍ୱର୍ଗ ବିରଚନ ?''

ସମାଜରେ ଅଶାନ୍ତି ଅସନ୍ତୋଷ ଲାଗିରହିଛି । କବି ସେଥିରୁ ନିଜକୁ ଦୂରେଇ ରଖି ନ ଥିଲେ । ଆଜିର ସମାଜରେ ରହିଥିବା ଅଭାବବୋଧକୁ ଅନୁଭବ କରିଥିଲେ । ସେ 'ଅସନ୍ତୋଷ' କବିତାରେ କହିଛନ୍ତି –

''ହେ ମୋର ଦେଶର ବେକାର ଯୁବକ ଦଳ
ହେ ମୋର ଜାତିର ତ୍ୟକ୍ତ ଅନଳ କଣା
ଭାଗ୍ୟ ଆଦରି ବସିବାକୁ ନାହିଁ ବେଳ
ରାସ୍ତା ଦେଖାଅ, ଜାତିଟା ଯେ ବାଟବଣା ।''
ଅସନ୍ତୋଷରେ ଧରି ମରଣର ଗଳା
ମଶାଣି ପଦାରେ ହାଡ଼କୁ ଉଠାଇ କହ
ମରିବାକୁ ତୁମ ବେଳ ହୋଇ ନାହିଁ ପରା
କିଏ ସେ କହିଲା ଜୀବନଟା ଦୁର୍ବିଷହ ।''

**ବଙ୍କା ଓ ସିଧା**

୧୯୬୪ ମସିହାରେ କବିଙ୍କର 'ବଙ୍କା ଓ ସିଧା' କବିତା ସଙ୍କଳନ ପ୍ରକାଶିତ ହେଲା । ଏଥିରେ ସର୍ବମୋଟ ଏକ ଶହ ଚବିଶ ଗୋଟି କବିତା ଅଛି । ସେଗୁଡ଼ିକରେ ସମୟର ଆହ୍ୱାନରେ ଜାତୀୟ ସମସ୍ୟା ଓ ସାମାଜିକ ସମସ୍ୟାର ବହୁବିଧ ରୂପ ଅଙ୍କିତ ହୋଇଅଛି ।

''ବ୍ୟକ୍ତିଗତ ଜୀବନର ଅନୁଭୂତି, ଆବେଗ ଓ ଉଦ୍ବେଳ ଜାତୀୟ ଜୀବନର ସାମୂହିକତାରେ ଜର୍ଜରିତ ହୋଇପଡୁଥିବା ବେଳେ କେତେ ଘାତ, ପ୍ରତିଘାତ,

କେତେ ନିଷ୍ଠୁର ପ୍ରତିକ୍ରିୟା, କେତେ ହାସ-ପରିହାସପୂର୍ଣ୍ଣ ଘଟଣା ଏ ଲେଖକର ଚିତ୍ତକୁ ଆଲୋଡ଼ିତ କରିଛି, ତହିଁର ବର୍ଣ୍ଣାଢ଼୍ୟ-ଆଲେଖ୍ୟ ଏଥିରେ ପରିବେଷଣ କରିବାକୁ ଚେଷ୍ଟା କରିଛନ୍ତି ମାତ୍ର ! ସ୍ୱାଧୀନ ଭାରତରେ ଉତ୍କଳୀୟ ଜନତାକୁ ଜାତୀୟ ପ୍ରଗତିରେ କେତେବେଳେ ବଙ୍କା ଓ କେତେବେଳେ ସିଧା ପଥରେ ଆଗେଇଯିବାପାଇଁ ଓ ଅତୀତ ପରମ୍ପରାର ଆଧାରରେ ଏ ଜାତିକୁ ଉଦ୍‌ବୁଦ୍ଧ କରିବାରେ, ଚେତାବନୀ ଶୁଣାଇବାରେ ଓ ବଙ୍କିମ ପଥର ବିକଟତାକୁ ଋଜୁପଥର ସରଳତା ଆଡ଼କୁ ଜାତିର ଚିନ୍ତାଧାରାକୁ ନିୟନ୍ତ୍ରିତ କରିବାରେ ଏସବୁ କବିତା ଜନମତକୁ କେତେଦୂର ପ୍ରଭାବିତ ଓ ପଲ୍ଲବିତ କରିପାରିବ, ତହିଁର ଯଥାଯଥ ବିଚାରରେହିଁ 'ବଙ୍କା ଓ ସିଧା' ଗ୍ରନ୍ଥର ଯଥାର୍ଥ ମୂଲ୍ୟାଙ୍କନ ହେବ ବୋଲି ବିଶ୍ୱାସ ।''

ଖୋରଧା କଚିରି ହତାରେ ଥିବା ବିରାଟ ବରଗଛଟି କଟାଯାଇ ସେହି ଜାଗାରେ ନୂଆ ଘର ତୋଳାଯାଇଛି । ସେଇ ଗଛ କିନ୍ତୁ ପାଇକମାନଙ୍କ ଗୌରବ ଓ ଓଡ଼ିଆ ଜାତିର ପରାକ୍ରମର ମୂକସାକ୍ଷୀ ବୋଲି କବି ମନେ କରି ଖେଦ ପ୍ରକାଶ କରିଛନ୍ତି । 'କଚିରି ବରଗଛ' କବିତାରେ –

''କାଠ ପାଇଁ କାଠୁରିଆ
ଏ ଗଛଟା ଜାଣେ କେତେ କଥା
ଅତୀତର ଅନ୍ଧାରରେ
ଏ ଜାତିର ବିଜୟ ବାରତା ।
× × ×
କାଟିଦେଇ ଗଛଟାକୁ
କେ କହିବ ସେ ଦିନର କଥା ?
× × ×
ପତନ ଓ ଅଭ୍ୟୁତ୍‌ଥାନ
ଦେଖିଥିଲା ଏ ବିରାଟ ତରୁ
ଚନ୍ଦନ ହୋଇଛି ମାଟି,
ଚନ୍ଦନ ନେଉଛି ମୁଁ ତରୁ ।''

**ହାଣ୍ଡିଶାଳର ବିପ୍ଳବ**

କବିଙ୍କର ଆଉ ଏକ ସୃଷ୍ଟି 'ହାଣ୍ଡିଶାଳର ବିପ୍ଳବ' କବିତା ସଙ୍କଳନ । ଏଥିରେ ଏକୋଇଶଟି କବିତା ସ୍ଥାନ ପାଇଛି । ଏଥିରେ ନିଚୋଳ ହାସ୍ୟରସ ପରିବେଷିତ ହୋଇଛି । କିନ୍ତୁ ତା' ମଧ୍ୟରେ ବିଦ୍ରୂପାତ୍ମକ କଟାକ୍ଷ ବେଶ୍ ଉପଲବ୍ଧି କରିହୁଏ । ଆଧୁନିକ ନାରୀର ସିନେମା ଦେଖା ଘଟଣାଟିକୁ ଉଦାହରଣସ୍ୱରୂପ ନିଆଯାଇପାରେ, ଯଥା –

''କହିଲେ, କି ସିନେମାକୁ ଯିବ ନାହିଁ ତୁମେ ?
ରିକ୍‌ସା ଆସି ଦ୍ୱାରେ ଏବେ, ବେଗେ କଥା ଶୁଣେ
ଯିବ ତୁମ୍ଭେ ଏକାକିନୀ – ପଚାରିଲେ ଚାହିଁ,
କ୍ଷଣେ ହସି କହିଲେ ସେ – ଭୟ ଲାଗେ ନାହିଁ
ତୁଲେ ମୋର ଯିବେ ତୁମ୍ଭ ବନ୍ଧୁ ସନାତନ
ପିଲାଟା କାନ୍ଦିଲେ ଘରେ ନେବଟି ଯତନ ।''

ଏହିପରି ଅନେକ ବ୍ୟଙ୍ଗାତ୍ମକ କବିତାରେ ଭରପୂର ହୋଇଛି 'ହାଣ୍ଡିଶାଳର ବିପ୍ଳବ' କବିତା ସଙ୍କଳନ । 'ବୋହୂମାନଙ୍କ ସତ୍ୟାଗ୍ରହ', 'ଆମରି ଗାଁ ବୋହୂ', 'ରୋଷେଇ ସଙ୍କଟ', 'ପ୍ରଣୟ ସ୍ୱାଧୀନତା', 'ମର୍କଟ ଅପମାନ', 'ଆଧୁନିକ ଗୋପୀଭାଷା' ପ୍ରଭୃତି ଏହି ଧରଣର କବିତା ଏଥିରେ ସନ୍ନିବେଶିତ ।

### ପାହାଡ଼ ତଳର ଘାସ

'ପାହାଡ଼ ତଳର ଘାସ' କବିଙ୍କର ଆଉ ଏକ କବିତା ସଙ୍କଳନ । ଏଥିରେ ଛବିଶଟି କବିତା ସ୍ଥାନ ପାଇଛି । ଲେଖକ ଏହି କବିତା ସଙ୍କଳନ ମୁଖବନ୍ଧରେ କହିଛନ୍ତି –

''ବହୁ ଦିନରୁ ବିଚ୍ଛିନ୍ନ ହୋଇପଡ଼ିଥିବା କେତେଗୁଡ଼ିଏ କବିତାକୁ ଏଥିରେ ଏକାଠି କରାଯାଇଛି । ଦୀର୍ଘ ପଚିଶ ତିରିଶ ବର୍ଷ ଭିତରେ ନାନା ଘଟଣାଚକ୍ରରେ ସେଗୁଡ଼ିକ ଲେଖା ହୋଇଥିଲା । ଏଥିରେ 'ଦେଶପାଇଁ ଥିଲା ବାକି', 'ଦଧୀଚି ଜୀବନ', 'ବହିଯାଏ ନୀର', 'ଚିନ୍ତା ପ୍ରଧାନ', 'ପଲ୍ଲୀ ସନ୍ଧ୍ୟା', 'ଗଉଡ଼ ଚିନ୍ତା', 'ଗ୍ରାମଦେବତା', 'ପୃଥ୍ୱୀରାଜଙ୍କ ପତ୍ର', 'ଚିଲିକା ବିହାର', 'ଉତ୍କଳ ମାଆର ସନ୍ତାନ ଆମେ' ପ୍ରଭୃତି କବିତା ସ୍ଥାନ ପାଇଛି । ଏହି କବିତାଗୁଡ଼ିକରେ ସ୍ନେହ, ପ୍ରେମ ଓ ପ୍ରୀତିର ମହାସାଗର ହିଁ ଉଦ୍‌ବେଳିତ ହୋଇଛି ବୋଲି ଆଲୋଚକ ମତ ଦେଇଛନ୍ତି ।

## ଗଳ୍ପ

ଗୋଦାବରୀଶ ମହାପାତ୍ରଙ୍କ କୀର୍ତ୍ତି କେବଳ କବିତାରେ ନୁହେଁ, କ୍ଷୁଦ୍ର ଗଳ୍ପରେ ମଧ୍ୟ ପ୍ରତିଷ୍ଠିତ । ସେ ତାଙ୍କର ଜୀବନକାଳ ମଧ୍ୟରେ ଥିଲେ ଅପ୍ରତିଦ୍ୱନ୍ଦ୍ୱୀ କ୍ଷୁଦ୍ର ଗଳ୍ପ ଲେଖକ । ସେ ଅସଂଖ୍ୟ ଉଚ୍ଚକୋଟୀର ଗଳ୍ପ ରଚନା କରିଯାଇଛନ୍ତି । ତାଙ୍କର କ୍ଷୁଦ୍ରଗଳ୍ପର ଜନପ୍ରିୟତା ଓ ସଂଖ୍ୟା ପ୍ରତି ଦୃଷ୍ଟି ଦେଲେ ଏହା ସହଜରେ ଉପଲବ୍ଧି କରିହୁଏ ।

ସତ୍ୟବାଦୀ ବନବିଦ୍ୟାଳୟରେ ଅଧ୍ୟୟନ କରୁଥିବାବେଳେ ଗୋଦାବରୀଶଙ୍କ ପ୍ରଥମ କ୍ଷୁଦ୍ର ଗଳ୍ପ 'ପରିମଳ' ୧୯୧୯ ମସିହାରେ 'ବୀଣା' ପତ୍ରିକାରେ ପ୍ରକାଶ ପାଇଥିଲା । ୧୯୨୦ ମସିହାରେ 'ଭାଇ' ସେହି 'ବାଣୀ' ପତ୍ରିକାରେ ପ୍ରକାଶ ପାଇଲା । ବନ୍ଧୁ ପ୍ରତି ଥିବା ବନ୍ଧୁର ପ୍ରବଞ୍ଚନା ଏ ଗଳ୍ପର ବିଷୟବସ୍ତୁ । ୧୯୨୩ ମସିହାରେ 'ମୁକୁର' ପତ୍ରିକାରେ ସେ ପ୍ରକାଶ କଲେ ତାଙ୍କର ତୃତୀୟ କ୍ଷୁଦ୍ର ଗଳ୍ପ 'ମେଲା ଡିହ' । ଗୋଦାବରୀଶଙ୍କ ଗଳ୍ପ ପ୍ରତିଭାର ଏହା ଥିଲା ପ୍ରଥମ ସାର୍ଥକ କ୍ଷୁଦ୍ରଗଳ୍ପ ।

ସେହି 'ମୁକୁର' ପତ୍ରିକାରେ ଧାରାବାହିକ ଭାବେ ପ୍ରକାଶ ପାଇଲା 'ପ୍ରାୟଶ୍ଚିତ୍ତ', 'ବିଧବାର ନିଶ୍ୱାସ', 'ପଣ୍ଡିତଙ୍କ ସିଦ୍ଧିଲାଭ', 'ଦୁଃଖିନୀ ଦୁଆରେ ଭିକାରି', 'ମୁଁ ଚୋର ନୁହେଁ', 'ଭଗ୍ନ ହୃଦୟ', 'ଦୁଇଟି ଟଙ୍କା', 'ଶ୍ରାଦ୍ଧ ବ୍ୟବସ୍ଥା', 'ପତିତାର ପୁଅ' ପ୍ରଭୃତି । ଏଗୁଡ଼ିକରେ ପଲ୍ଲୀ ଜୀବନର ବାସ୍ତବ ଚିତ୍ର ରୂପାୟିତ ହୋଇଛି । ସେହି ସମୟରେ ମଧ୍ୟ 'ମାଟିର ମାୟା', 'ତୀର୍ଥଯାତ୍ରୀ', 'ଗରିବର ଭଗବାନ୍', 'ଗରିବର ସଂସାର', 'ଅସୁନ୍ଦର ଶ୍ରୀ', 'ହଠାତ୍ ଭାର୍ଯ୍ୟାଲାଭ', 'ପ୍ରେମର ପ୍ରତିହିଂସା' ପ୍ରଭୃତି ଗଳ୍ପ ଲିଖିତ ହୋଇଥିଲା ।

୧୯୨୪ ମସିହା ଆଡ଼କୁ ଗୋଦାବରୀଶଙ୍କ ଆର୍ଥିକ ଅବସ୍ଥା ଶୋଚନୀୟ ହୋଇପଡ଼ିଥିଲା । ଗୁରୁ ପଣ୍ଡିତ ଗୋଦାବରୀଶ ମିଶ୍ର ଅନୁଭବ କଲେ ଯେ ମହାପାତ୍ରଙ୍କ ଲେଖନୀରେ ଗଳ୍ପଗୁଡ଼ିକ ପୁଷ୍କଳ ହୋଇପାରିବ ଓ ଏହାହିଁ ତାଙ୍କ ଜୀବନଧାରଣର ପନ୍ଥା ହେବ । ସେ ତେଣୁ ନିଜେ ଲେଖିଥିବା କେତେଗୁଡ଼ିଏ କାହାଣୀକୁ ଗୋଦାବରୀଶଙ୍କୁ ଦେଲେ ଓ ସେଗୁଡ଼ିକୁ ଆବଶ୍ୟକସ୍ଥଳେ ପରିବର୍ତ୍ତନ କରି ନିଜ ନାମରେ ଛପାଇ କିଛି ଅର୍ଥ ଉପାର୍ଜନ କରିବାକୁ ପରାମର୍ଶ ଦେଲେ । ସେଗୁଡ଼ିକ ଗୋଦାବରୀଶଙ୍କ ନାମରେ 'କଥା ଓ କାହାଣୀ' ନାମରେ ପ୍ରକାଶିତ ହେଲା ।

୧୯୨୬-୨୭ ମସିହା ଆଡ଼କୁ କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲାରେ ପ୍ରଳୟଙ୍କର ବନ୍ୟା ହେଲା । ପଣ୍ଡିତ ଗୋପବନ୍ଧୁଙ୍କ ସହିତ ଗୋଦାବରୀଶ ବନ୍ୟା ପ୍ରପୀଡ଼ିତଙ୍କପାଇଁ ସାହାଯ୍ୟାର୍ଥେ ବିଭିନ୍ନ ଅଞ୍ଚଳରେ ବୁଲିଲେ । ବନ୍ୟାଞ୍ଚଳର କରୁଣ ଦୃଶ୍ୟ ତାଙ୍କ ହୃଦୟକୁ ବିଗଳିତ କଲା । ସେହି ସମୟରେ ସେ ରଚନା କଲେ ଅନବଦ୍ୟ ଗଳ୍ପ 'ଏବେ ମଧ୍ୟ ବଞ୍ଚିଛି' । ଏହାପରେ 'ବିଖ୍ୟାତ କଟକରୁ ଅଖ୍ୟାତ ପଲ୍ଲୀ', 'ଶେଷ ଦିବସ', 'ମାଗୁଣିର ଶଗଡ଼', 'ପଟ୍ଟନାୟକେ ପଇସାଟିଏ' ଗଳ୍ପଗୁଡ଼ିକ 'ସହକାର'ରେ ପ୍ରକାଶ ପାଇଲା । ଏସବୁ ଗଳ୍ପ 'ଏବେ ମଧ୍ୟ ବଞ୍ଚିଛି' ଗଳ୍ପ ସଙ୍କଳନରେ ସ୍ଥାନ ପାଇଛି ।

**ଏବେ ମଧ୍ୟ ବଞ୍ଚିଛି**

'ଏବେ ମଧ୍ୟ ବଞ୍ଚିଛି' ଗଳ୍ପ ସଙ୍କଳନରେ ସ୍ଥାନ ପାଇଥିବା ପ୍ରତ୍ୟେକ ଗଳ୍ପ ଏକାନ୍ତ ସାର୍ଥକ ଓ ରସୋତ୍ତୀର୍ଣ୍ଣ । ତେବେ ଏଥିମଧ୍ୟରୁ ତିନୋଟି ଗଳ୍ପ 'ଏବେ ମଧ୍ୟ ବଞ୍ଚିଛି', 'ମାଗୁଣିର ଶଗଡ଼' ଓ 'ବ୍ରତଭିକ୍ଷା' ଆଲୋଚନା କରାଯାଇପାରେ ।

'ଏବେ ମଧ୍ୟ ବଞ୍ଚିଛି' ଗଳ୍ପରେ ୧୯୨୬ ମସିହା ଦୁର୍ଭିକ୍ଷର ଚିତ୍ର ଅଙ୍କିତ । ସିରେଇ ଗାଁର ଦୁର୍ଭିକ୍ଷ ସାହାଯ୍ୟ କେନ୍ଦ୍ରକୁ ଗଳ୍ପର ନାୟକ ବେଣୁଧର ଯାଇଛି । ବିରାଟ ସଂସାର ଭିତରେ ସେ ନିତାନ୍ତ ଅସହାୟ, ଦରିଦ୍ର । ଘରେ ତା'ର ପାଞ୍ଚ ପ୍ରାଣୀ କୁଟୁମ୍ବ । ପାଞ୍ଚ ଦିନ ହେଲା ଘରେ ଚୁଲି ଜଳି ନାହିଁ । ସେତେବେଳେ ଗାଁଟା ଯାକର ଲୋକ ସିରେଇ ଗାଁର ସାହାଯ୍ୟ କେନ୍ଦ୍ରକୁ ଯାଆନ୍ତି, ବେଣୁଧର କିନ୍ତୁ ପିଣ୍ଡାରେ ଢୁନିହୋଇ ଠିଆ ହୋଇ ରହେ । ଭିକ ମାଗିବାଟା ସୁନ୍ଦର ହେବ ନାହିଁ ବୋଲି ଭାବେ । ଅନେକ ଦିନ

ସେ ସାହାଯ୍ୟ କେନ୍ଦ୍ରକୁ ଯାଇ ଫେରିଆସିଲା । କିନ୍ତୁ ଘରେ ଖୁଦ କଣିକାଟିଏ ଯେତେବେଳେ ରହିଲା ନାହିଁ, ବେଣୁଧର ବାଧ୍ୟ ହୋଇ ଯାଇଛି । ସାହାଯ୍ୟ କେନ୍ଦ୍ରର ଅଳ୍ପ ଦୂରରେ ସେ ଥକା ହୋଇ ବସିରହିଛି । କ୍ରମେ ସନ୍ଧ୍ୟା .ହୋଇଆସିଛି । ଲୋକଗହଳି ଭାଙ୍ଗି ଯାଇଛି । ଉତ୍କଳମଣି ଗୋପବନ୍ଧୁ ଯେତେବେଳେ ସାହାଯ୍ୟ କେନ୍ଦ୍ରରୁ ଯିବାପାଇଁ ବାହାରିଛନ୍ତି, ତାକୁ ଆଣ୍ଠୁରେ ମୁଣ୍ଡରଖି ବସିଥିବା ଦେଖିଛନ୍ତି । ତା' ପାଖକୁ ଯାଇ ପଚାରିଛନ୍ତି, 'ଚାଉଳ ନେଇଛ ବାବୁ' ? ସେ 'ନା' କହିଛି । ନେବୁ କି ବୋଲି ସେ ପଚାରିଛନ୍ତି, ବେଣୁଧର ଉତ୍ତର ଦେଇଛି – ''ନା, ମୁଁ ନେବାକୁ ଆସି ନାହିଁ, ଆଉ କେବେ ...''

ଉତ୍କଳମଣିଙ୍କ ମୁଖରୁ ଅତର୍କିତ ଭାବେ ବାହାରି ପଡ଼ିଛି – ''ଏ ଜାତି ଏବେ ମଧ୍ୟ ବଞ୍ଚିଛି ।'' ଏହି ଗଳ୍ପଟି ଏହି ସଂକଳନର ଏକ ସାର୍ଥକ ଗଳ୍ପ ଭାବେ ଗଣ୍ୟ ।

**ମାଗୁଣିର ଶଗଡ଼**

'ମାଗୁଣିର ଶଗଡ଼' ଗାଳ୍ପିକଙ୍କର ଏକ ହୃଦୟସ୍ପର୍ଶୀ ସୃଷ୍ଟି ।

ଖଲିକୋଟଗଡ଼ର ଶଗଡ଼ିଆ ମାଗୁଣି । ଷ୍ଟେସନରୁ ଗଡ଼କୁ ପ୍ରତ୍ୟହ ଲୋକ ନବା ଆଣିବା କରି ତା'ର ଗୁଜୁରାଣ ମେଣ୍ଟାଉଥିଲା । ଯେଉଁଦିନ ଖଲିକୋଟ ଗଡ଼ରେ ଦୈତ୍ୟ ଦାନବ ପରି ମୋଟର ବସ୍ ଚାଲିଲା, ମାଗୁଣିର ମନରେ ଛନକା ପଶିଲା । ସେ କାନ୍ଦିପାରି ନ ଥିଲା ସତ, ମାତ୍ର କାନ୍ଦ କାନ୍ଦ ହୋଇ ଭାବିଥିଲା – ''ଏତେ ଲୋକ ତ ସଭାରେ ବସି ଶୁଣୁଥିଲେ । ସେମାନେ କ'ଣ ମୋ ଦୁଃଖ ବୁଝିବେ ନାହିଁ । କର୍ମୀ ନ ବୁଝିଲେ ଯିବି ଗାନ୍ଧୀଙ୍କ ପାଖକୁ । ଦରିଦ୍ରର ବନ୍ଧୁ ସେ, ଗରିବର ବନ୍ଧୁ ସେ । ସେ କ'ଣ କହିବେ ମାଗୁଣି ମରିଯାଉ, ଆଉ ଏ ସିଂହେ ବଞ୍ଚନ୍ତୁ ।''

ମାଗୁଣି ସତରେ ମରିଗଲା । ସିଂହେ ରହିଲେ । ଆଉ ବଡ଼ରୁ ବଡ଼ ହେଲେ । ଯେଉଁଦିନ ସିଂହେ ମଟର ବସ୍ ପକାଇଲେ, ସେହିଦିନୁ ମାଗୁଣିର ଶଗଡ଼ ଅଚଳ ହୋଇ ପଡ଼ିଲା । ମାଗୁଣିର ହାତ ଆଉ ପାଟିକୁ ଗଲା ନାହିଁ । ଦିନେ ଖଲିକୋଟର ଦୁଇ ଲକ୍ଷ ଲୋକ ଦୁଃଖରେ କହିବାର ଶୁଣାଗଲା – ''ଆହା ! ମାଗୁଣି ଚାଲିଗଲା !''

ଅନେକଙ୍କ ମତରେ ଏଇଟି ଗୋଦାବରୀଶଙ୍କ ଶ୍ରେଷ୍ଠ ଗଳ୍ପ ।

**ବ୍ରତଭିକ୍ଷା**

'ବ୍ରତଭିକ୍ଷା' ଆଉ ଏକ ସୁନ୍ଦର ଗଳ୍ପ । ଶ୍ରୀରାମଚନ୍ଦ୍ରପୁର ଗାଁରେ ଦିନେ ଏକ ସଙ୍ଗେ ଦୁଇଟା ଘଟଣା ଘଟିଲା । ଗୋଟିଏ ହେଲା ଗୋପୀନାଥଙ୍କ ପୁଅର ବ୍ରତ ଉତ୍ସବ, ଆରଟି ହେଲା ଗୋପୀନାଥଙ୍କ ବୃଦ୍ଧା ଆତ୍ମୀୟାଙ୍କ ମୃତ୍ୟୁ ଶବ ଯାତ୍ରା ।

ଗୋପୀନାଥ ଶୈଶବରେ ପିତୃମାତୃହୀନ ଥିଲେ । ଜଣେ ବୃଦ୍ଧା ଆତ୍ମୀୟା ତାଙ୍କୁ କୋଳକୁ ନେଇ ପାଳି ପୋଷି ଶେଷରେ ଗୃହସଂସାର କରାଇଦେଇଥିଲେ ।

ଭାଗ୍ୟଚକ୍ରରେ ପଡ଼ି ଗୋପୀନାଥ ନିଃସ୍ୱ ହୋଇପଡ଼ିଲେ ଓ ପିଲାଙ୍କ ମୁହଁରେ ତୋରାଣି ଦେବାପାଇଁ ବୃଦ୍ଧାଙ୍କଠାରୁ ପଚାଶ ଟଙ୍କା କରଜ ଆଣିଥିଲେ ଦୁଇ ମାଣ ଚାଷଜମି ବନ୍ଧକ ଦେଇ । ସେଇ ବନ୍ଧକ ତମସୁକ ଫେରିପାଇବାପାଇଁ ଗୋପୀନାଥ ବହୁବାର ଅନୁରୋଧ କରିଛନ୍ତି, କାନ୍ଦିଛନ୍ତି ବି । ମାତ୍ର ବୃଦ୍ଧାଙ୍କ ପୁତ୍ର ସୋମନାଥ ଆପତ୍ତି କରିବାରୁ ତାହା ହୋଇପାରି ନାହିଁ । ଫଳରେ ଗୋପୀନାଥ ବୃଦ୍ଧାଙ୍କଠାରୁ ଦୂରେଇ ଯାଇଛନ୍ତି । ଏପରିକି କଥାବାର୍ତ୍ତା ମଧ୍ୟ ବନ୍ଦ ହୋଇଯାଇଛି ।

ଗୋପୀନାଥଙ୍କ ପୁଅର ବ୍ରତଘର ହେଲା । ବେଦୀରେ ସେ ବସିଥାନ୍ତି । ସେଇ ବୃଦ୍ଧା ଆତ୍ମୀୟାଙ୍କ ମୃତ୍ୟୁ ଖବର ଗୋପୀନାଥ ପାଇଛନ୍ତି । ପାଗଳଙ୍କ ପରି ବେଦୀରୁ ସିଧା ସିଧା ଯାଇ ସୋମନାଥଙ୍କ ଘରକୁ ଯାଇଛନ୍ତି । ବୃଦ୍ଧାଙ୍କ ଶବ ପାଖେ ମୁଣ୍ଡ ବାଡ଼େଇ କାନ୍ଦିଛନ୍ତି । କୋକେଇରେ ଶବ ମଶାଣିକୁ ଗଲା, ଗୋପୀନାଥ ଘରକୁ ଫେରନ୍ତି । ଆସି ଦେଖନ୍ତି ଯେ ବୃଦ୍ଧା ସେଇ ବନ୍ଧକ ତମସୁକଟି ଜଣକ ହାତରେ ବ୍ରତ ବେଦୀରେ ଦେବାପାଇଁ ପଠାଇଛନ୍ତି ।

ଗଳ୍ପଟିରେ ସଂସ୍କୃତିର ସଙ୍କେତ ସ୍ପଷ୍ଟ । ନାନା ଅଭାବ ଅଭିଯୋଗ ମଧ୍ୟରେ ମଧ୍ୟ ଜାତିର ପ୍ରାଣଧାରା ଶୁଷ୍କ ହୋଇପଡ଼ି ନାହିଁ । ଏହା ମଧ୍ୟ ଗୋଦାବରୀଶଙ୍କର ଏକ ଉତ୍କୃଷ୍ଟ ଗଳ୍ପ ।

**ପଲ୍ଲୀଛାୟା**

୧୯୪୨ ମସିହାରେ 'ପଲ୍ଲୀଛାୟା' ନାମକ ଗଳ୍ପ ସଙ୍କଳନ ଗୋପବନ୍ଧୁ ସାହିତ୍ୟ ମନ୍ଦିର ପକ୍ଷରୁ ପ୍ରକାଶ ପାଇଲା । ଏହାର ଗଳ୍ପଗୁଡ଼ିକ ଗ୍ରାମ୍ୟ ଜୀବନର ବିଚିତ୍ର ବର୍ଣ୍ଣ-ବୈଭବରେ ପରିପୂର୍ଣ୍ଣ । ସେଥିରେ ପ୍ରାକୃତିକ ନୈସର୍ଗିକ ଶୋଭାର ବର୍ଣ୍ଣନା ସହିତ ମିଳେ ଦୁଃଖ, ଯନ୍ତ୍ରଣା ଆଉ କାରୁଣ୍ୟର ଚିତ୍ର । ମୁଖ୍ୟତଃ ମଣିଷ ଜୀବନର ବ୍ୟଥା, ଦୁଃଖ, ଦୁର୍ଦ୍ଦିନକୁ ନେଇ 'ପଲ୍ଲୀ ଛାୟା' ରଚିତ । ଏଥିରେ ନଅ ଗୋଟି ଗଳ୍ପ ସ୍ଥାନ ପାଇଛି । ସେଗୁଡ଼ିକ ହେଲା 'ଭାଇ', 'ଦୁଇଟି ଟଙ୍କା', 'ପଣ୍ଡିତଙ୍କ ସିଦ୍ଧିଲାଭ' 'ପତିତାର ପୁଅ', 'ଭିକାରିର ସାଥୀ', 'ପନ୍ଦର ବର୍ଷ ତଳର କଥା', 'କ୍ଷୁଧାତୁର', 'ବ୍ରାହ୍ମଣ' ଓ 'ଭଗ୍ନ ହୃଦୟ' । ପ୍ରତ୍ୟେକଟି ଗଳ୍ପ ଗ୍ରାମ୍ୟ ଜୀବନକୁ ନେଇ ରଚିତ ।

**ମୁଁ ଦିନେ ମନ୍ତ୍ରୀ ଥିଲି**

'ମୁଁ ଦିନେ ମନ୍ତ୍ରୀ ଥିଲି' ଗଳ୍ପ ସଂକଳନରେ ଦଶ ଗୋଟି ଗଳ୍ପ ସ୍ଥାନିତ ହୋଇଛି । ସେଗୁଡ଼ିକ ହେଲା 'ଶଗଡ଼ ଗୁଳି', 'ବ୍ୟାକରଣ ପ୍ରଥମ', 'ପତିଦେବତାର ଶାସ୍ତି', 'ଟେରା', 'ମଣିଷରୁ ଛେଳି', 'ପାତ୍ରଙ୍କ ସ୍ମରଣଶକ୍ତି', 'ପ୍ରଦର୍ଶନୀର ଆଳୁ', 'ଭଗୀଦାସଙ୍କ ଗାଡ଼ି', 'ସେ ଦିନର ପ୍ରତିଧ୍ୱନି' ପ୍ରଭୃତି । ଏଥି ମଧ୍ୟରୁ ନଅ ଗୋଟି ଗଳ୍ପ 'ନିଆଁଖୁଣ୍ଟା'ରେ ପ୍ରକାଶିତ ହୋଇ ପାଠକଙ୍କଦ୍ୱାରା ଆଦର ଲାଭ କରିଥିଲା । ତତ୍କାଳୀନ ସମସ୍ୟା ଜର୍ଜରିତ ଘଟଣ-ଅଘଟଣକୁ ନେଇ ଏଗୁଡ଼ିକ ରଚିତ ହୋଇଥିଲା ।

**ଗଳ୍ପ ନୁହେଁ**

'ଗଳ୍ପ ନୁହେଁ' ସଙ୍କଳନରେ 'ମୋର ସ୍ୱର୍ଗ ଯାତ୍ରା', 'ମରିବାକୁ ବେଳ ନାହିଁ', 'ଡମ ପକେଟ ରହସ୍ୟ', 'ପୁରୁଷ କାହାକୁ କହନ୍ତି', 'ତୁମେ କେବେ ଅପେକ୍ଷା କର', 'ଦେଶର ଗତି କେଉଁ ଆଡ଼କୁ', 'ଆଶ୍ରମ ପ୍ରେସ', 'ନାରୀ ଜାଗରଣ', 'ଓଡ଼ିଶାରେ ଚାକିରି ଶସ୍ତା' ପ୍ରଭୃତି ଗଳ୍ପଗୁଡ଼ିକ ସ୍ଥାନ ପାଇଛି । ଗୋଦାବରୀଶ ଗଳ୍ପର ପଟ୍ଟଭୂମି ଅଗନାଅଗନି ବନସ୍ତ ନୁହେଁ । ପରୀରାଇଜର ରାଜକୁମାର ବା ରାଜକୁମାରୀ ନୁହନ୍ତି । ଗୋଦାବରୀଶ ଅନୁଭବ କରିଥିଲେ ଯେ ତାଙ୍କ ଲିଖିତ ଗଳ୍ପ ସମାଜର ଦୋଷ-ଦୁର୍ବଳତା ଜନମାନସରେ ପ୍ରତିଫଳିତ ହୋଇ ତା'ର ସାରବତ୍ତାରୁ ଯଦି ସମାଜ, ଦେଶ ଓ ଜାତିର ମଙ୍ଗଳ ହୁଏ, ତେବେ ତାଙ୍କର ଉଦ୍ଦେଶ୍ୟ ପୂର୍ଣ୍ଣ ହେବ । ଲେଖକ କହିଛନ୍ତି – ''ପ୍ରତିଦିନର ପ୍ରତି ମୁହୂର୍ତ୍ତରେ ବାଟଘାଟରେ ସମାଜ ଓ ରାଜନୀତିର ଆଡୁଆଳରେ ମାନବ ଭିତରେ ପ୍ରେମ, ପ୍ରୀତି, ସୋହାଗ ଭିତରେ ଜୀବନର ସୁଖ ଦୁଃଖ ସଂଘର୍ଷରେ, ହାସ୍ୟ ରହସ୍ୟରେ – ସବୁ ସ୍ଥାନରେ ମୁଁ ବରାବର କ୍ଷୁଦ୍ରଗଳ୍ପର ଉପାଦାନ ଦେଖେ ।''

**ନୀଳ ମାଷ୍ଟରାଣୀ**

'ନୀଳମାଷ୍ଟରାଣୀ' ଗଳ୍ପସଂକଳନରେ ସର୍ବମୋଟ ତିରିଶ ଗୋଟି ଗଳ୍ପ ଅଛି । ଏଗୁଡ଼ିକ ୧୯୫୫ ମସିହାରୁ ୧୯୫୮ ମସିହା ମଧ୍ୟରେ ରଚିତ ହୋଇଥିଲା । ଏଥିରେ ସ୍ଥାନିତ ଗଳ୍ପଗୁଡ଼ିକ ହେଲା, 'ନୀଳ ମାଷ୍ଟରାଣୀ', 'ଗୋଟିଏ ଚାମୁଚ', 'ସତର ବର୍ଷ ତଳେ,' 'ବନ ପରିଡ଼ା', 'ସ୍ୱୟଂସେବିକା', 'ଧୂର୍ତ୍ତ ପଣ୍ଡିତ', 'ସଇତାନର ଭୋଟ', 'ଜାଲ ଟଙ୍କା', 'ଫଗୁଦାସଙ୍କ କୋଠି ତଳେ', 'ମୁଁ ଜଣେ କିରାଣି', 'ନିର୍ଧୁମୁକ୍ତ', 'ଜୀବନର ସ୍ୱପ୍ନ', 'ଶବସଂସ୍କାର', 'ଉନ୍ମୋଚନ', 'ପାଗଳ କବିରାଜ', 'ଦୁଇ ଭାଇ', 'ଦଣ୍ଡିଆ ବୋଉର କଞ୍ଚମାଳ', 'ଦୁଇ ଶାଗୁଣା' ପ୍ରଭୃତି ।

ଗୋଦାବରୀଶ ଥିଲେ ଜଣେ ମାନବବାଦୀ ସମ୍ବେଦନଶୀଳ ସ୍ରଷ୍ଟା । ସମାଜ ଜୀବନରୁ ଆବିଳତା ଦୂର କରି ଶୁଦ୍ଧ ନିର୍ମଳ ଜୀବନ ଗଢ଼ିବା, ସମାଜରେ ସୁସ୍ଥ ପରିବେଶ ସୃଷ୍ଟି କରିବା ତାଙ୍କର ଲକ୍ଷ୍ୟ ଥିଲା । ଭାଙ୍ଗିଯାଇଥିବା ମାନସିକତାକୁ ସଜାଡ଼ି ଦେବା ଉଦ୍ଦେଶ୍ୟରେ ସେହି ଗଳ୍ପଗୁଡ଼ିକ ଯେ ରଚିତ ହୋଇଥିଲା, ଏହା ଅତି ସ୍ପଷ୍ଟ । ତାଙ୍କ ଗଳ୍ପରେ ଥିବା ଭାଷାର ଉତ୍ତାପ ପାଠକ ତଥା ଯେକୌଣସି ବ୍ୟକ୍ତିବିଶେଷଙ୍କୁ ଉଜ୍ଜୀବିତ କରିଥାଏ ।

**ଶ୍ରୁତି ସଞ୍ଚୟନ**

କଟକ ମେଡ଼ିକାଲରେ ଚିକିତ୍ସିତ ହେଉଥିବା ସମୟରେ ୧୯୬୫ ମସିହାରେ 'ଶ୍ରୁତି ସଞ୍ଚୟନ' ସଙ୍କଳନ ପ୍ରକାଶ ପାଇଥିଲା । ଗୋଦାବରୀଶ ଏହାର ମୁଖବନ୍ଧରେ କହିଛନ୍ତି – ''ବେଦବେଦାନ୍ତ କଥା ଶୁଣିଥିବା ପଣ୍ଡିତମାନେ ହଠାତ୍ ଧରିନେଇପାରନ୍ତି ଯେ ଶ୍ରୁତି ବା ବେଦରୁ କେତେଅଂଶ ଓଡ଼ିଆରେ ହିଁ ଅନୁବାଦ କରି ଏହି ସଙ୍କଳନଟି ରଚନା

କରିଛି । × × × କିନ୍ତୁ ମୋର ବାରବୁଲା ଜୀବନ ଭିତରେ ଯେଉଁଠି ଯେତେ କଥା ଶୁଣିଥିଲି ତା' ଭିତରୁ କେତେକ ବଛା ବଛା ଘଟଣାକୁ ଏଥିରେ ରୂପ ଦେଇଛି ମାତ୍ର !''

'ଶ୍ରୁତି ସଞ୍ଚୟନ'ରେ ସ୍ଥାନିତ ଗଳ୍ପଗୁଡ଼ିକ ହେଲା 'ହରି ସୁଆରର ଗାନ୍ଧୀ ଟୋପି', 'ରଙ୍ଗ ତୁ ଯାଆନାରେ', 'ପ୍ରେମର ଫସଲ', 'ସିଧା ସଳଖେ ଭୁବନେଶ୍ୱର', 'ଭୀମସେନ', 'ମାଗୀର ସ୍ମୃତି', 'ଘନ ଦରଜିର ଜମି', 'ଲୋକ ସମ୍ପର୍କ', 'ପ୍ରେମ ଓ ପୋଷାକ', 'ବିଶିରଥେ', 'ଲୋକେ ବୋଲିବେ କ'ଣ', 'ପେଟର ବିଦ୍ରୋହ', 'ବନ୍ଦୀ', 'ଆଖିର ସେ ପାଖେ', 'ଚୋର କିଏ ?', 'ଶୋକସଭା' ପ୍ରଭୃତି ।

ପ୍ରତ୍ୟେକ ଗଳ୍ପ ତାଙ୍କର ଅଭୁଲା ଜୀବନର ଛବି । କେଉଁଠି ମନ ତାଙ୍କର ବିହ୍ୱଳିତ ହୋଇଉଠିଛି ତ କେଉଁଠି ତାଙ୍କ ପ୍ରାଣରେ ତୀବ୍ର ଆଲୋଡ଼ନ ସୃଷ୍ଟି କରିଛି । କୋଉ କୋଉ ଘଟଣା ତାଙ୍କ ମନରେ ବିଦ୍ରୋହ ବହ୍ନି ଢାଳି ଦେଇଛି । କେତେକ ଘଟଣାରେ କବି ଏକାବେଳକେ ବିବ୍ରତ ହୋଇପଡ଼ିଛନ୍ତି । ଆଉ କେତେକ ଘଟଣା କବିଙ୍କୁ ବ୍ୟକ୍ତିବିଶେଷଙ୍କ ପ୍ରତି ସମ୍ବେଦନଶୀଳ କରିପକାଇଛି । ଫଳରେ ତାଙ୍କ ଗଳ୍ପଗୁଡ଼ିକ ହୋଇପଡ଼ିଛି ସ୍ୱାଭାବିକ, ମନୋରମ, ଚଳମାନ ଜୀବନର ବାସ୍ତବ ପ୍ରତିଛବି ।

ଆଲୋଚକ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟଙ୍କ ଭାଷାରେ – ''ଏହି ଦୃଷ୍ଟିରୁ ବିଚାର କଲେ ବାସ୍ତବରେ ଗୋଦାବରୀଶଙ୍କ ଗଳ୍ପ ସୃଷ୍ଟି ଭାରତୀୟ ଗଳ୍ପ ସାହିତ୍ୟରେ ଏକ ବିସ୍ମୟ ବୋଲିବାକୁ ହେବ ।''

## ଉପନ୍ୟାସ

ଜୀବନର ପ୍ରାରମ୍ଭରୁ ଗୋଦାବରୀଶ ମହାପାତ୍ର ସମୁଜ୍ଜ୍ୱଳ ପ୍ରତିଭାଧର କବି ଭାବରେ ପ୍ରତିଭାତ ହୋଇଥିଲେ । ଓଡ଼ିଆ କଥାସାହିତ୍ୟରେ ସେ ଜଣେ ପ୍ରବୀଣ କଥାଶିଳ୍ପୀର ଗୌରବ ଲାଭ କରିଛନ୍ତି । ପୁଣି ଗାଳ୍ପିକ ଭାବରେ ଓଡ଼ିଶାର ପାଣି ପବନରେ ତାଙ୍କର ସ୍ରଷ୍ଟାମାନସ ଯେପରି ବିଚରଣ କରିଛି, ତହିଁରେ ପ୍ରତ୍ୟେକ ଓଡ଼ିଆ ସତେଯେପରି ଜୀବନ୍ୟାସ ଲାଭ କରିଛି । ଗଳ୍ପ ଲେଖକ ଭାବରେ ବହୁ ଗଳ୍ପ ସେ ସୃଷ୍ଟି କରିଛନ୍ତି । ସେ ମାତ୍ର ଛଅ ଖଣ୍ଡି ଉପନ୍ୟାସ ସୃଷ୍ଟି କରି ଔପନ୍ୟାସିକ ଭାବେ ପାଠକମାନଙ୍କ ନିକଟରେ ନିଜକୁ ପରିଚିତ କରାଇଛନ୍ତି ।

### ରାଜଦ୍ରୋହୀ

ଗୋଦାବରୀଶଙ୍କ ଉପନ୍ୟାସ ସୃଷ୍ଟିର ସମୟ ୧୯୨୫ରୁ ୧୯୩୮ ମସିହା ମଧ୍ୟରେ । ୧୯୨୫ ମସିହାରେ ସେ ରଚନା କରିଥିଲେ ଉପନ୍ୟାସ – 'ରାଜଦ୍ରୋହୀ' । ଏହା ଏକ ଐତିହାସିକ ଉପନ୍ୟାସ । ଏଥିରେ ଓଡ଼ିଶା ଇତିହାସର ଏକ ଅନ୍ଧକାରମୟ ଯୁଗର ଚିତ୍ର ପ୍ରଦାନ କରାଯାଇଛି ।

ସୂର୍ଯ୍ୟବଂଶ ଓ ଭୋଇବଂଶର ରାଜତ୍ୱ କାଳରେ ଓଡ଼ିଶାର ବିସ୍ତୃତ ଉପକୂଳ ଅଞ୍ଚଳରେ ବିଦେଶୀ ବେପାରୀମାନେ ନାନା ଉପଦ୍ରବ କରୁଥିଲେ । ବନ୍ଦରମାନଙ୍କରେ

ଲୁଣ୍ଠନ କରୁଥିଲେ । ଏମାନେ ମଣିଷ ବେପାର ବା ଦାସ ବ୍ୟବସାୟ କରୁଥିଲେ । ପିଲା ଚୋରମାନେ ପିଲା ଚୋରି କରି ତାଙ୍କ ଅଙ୍ଗପ୍ରତ୍ୟଙ୍ଗକୁ କାଟି ଗାଁ ଗାଁ ବୁଲି ଖେଳ ଦେଖାଉଥିଲେ । ସୁନ୍ଦର ପିଲାଙ୍କୁ ଅସୁନ୍ଦର କରିଦେଉଥିଲେ । ଚେପ୍‌ଟା ମୁହଁକୁ ଲମ୍ବା କରିପାରୁଥିଲେ । ଦାନ୍ତ ଭାଙ୍ଗି ପାକୁଆ କରିଦେଉଥିଲେ ।

ଏକଦା ଦାସ ବ୍ୟବସାୟୀମାନେ କୁହୁଡ଼ିଗଡ଼ର ନିର୍ବାସିତ ରାଜା ବୀରବର ଦୁର୍ଜୟମାନ୍‌ଙ୍କ ପୁତ୍ରକୁ କୁହୁଡ଼ି ଜଙ୍ଗଲରୁ ଧରିନେଇ ଜାହାଜରେ ଯାଉଥିଲେ । ଜାହାଜଟି ଗଭୀର ଜଳରେ ବୁଡ଼ିବାକୁ ଲାଗିଲା । ସେମାନେ ରାଜକୁମାରଙ୍କୁ ଚିଲିକା କୂଳରେ ଫିଙ୍ଗିଦେଲେ । ସେତେବେଳକୁ ରାଜକୁମାରଙ୍କୁ ସେମାନେ ବିକୃତ କରିସାରିଥିଲେ । ବିକୃତରୂପୀ ରାଜକୁମାର କେତେ ନଈ ନାଳ, ବିଲ ପାରିହୋଇ ସାଧୁ ଭଗତ ଦାସଙ୍କ ଆଶ୍ରମରେ ପହଞ୍ଚି ଶରଣ ଭିକ୍ଷା କରନ୍ତି । ତାଙ୍କ ସାଙ୍ଗରେ ବାଳିକାଟିଏ ମଧ୍ୟ ଥିଲା । ଭଗତ ଦାସ ସେମାନଙ୍କୁ ପାଇ ଆନନ୍ଦିତ ହେଲେ ଓ ସେମାନଙ୍କୁ ଧରି ଏକ ନାଚ ଦଳ ଗଢ଼ିଲେ । ସାଧୁ ଭଗତ ଦାସଙ୍କ ଦଳରେ ଥାଆନ୍ତି ବୁଲାରାମ ଯେ କି ପଚିଶ ବର୍ଷର ଯୁବକ, କିନ୍ତୁ ବେପାରୀମାନଙ୍କଦ୍ୱାରା ମୁଖ ବିକୃତ ହୋଇଥାଏ । ଗାଁ ଗାଁ ନାଚ ଦଳରେ ବୁଲୁଥିବାବେଳେ ବୁଲାରାମଙ୍କୁ କୁହୁଡ଼ିଗଡ଼ର ରାଜାରୂପେ ସିଂହାସନରେ ବସାଇବାପାଇଁ ଖୋର୍ଦ୍ଧା ଗଜପତିଙ୍କ ଲୋକେ ସମ୍ମାନର ସହ ନେଇଯାଇଛନ୍ତି ।

ଉପନ୍ୟାସଟି ଐତିହାସିକ ଉପାଦାନରେ ଗଢ଼ା ହୋଇଥିଲେ ମଧ୍ୟ ଏଥିରେ ଇତିହାସ ଅପେକ୍ଷା କଳ୍ପନାହିଁ ଅଧିକତର ମଞ୍ଜୁଳ ଆକାରରେ ଚିତ୍ରିତ ହୋଇଛି ।

**ପ୍ରେମପଥେ**

'ପ୍ରେମପଥେ' ଏକ ସାମାଜିକ ଉପନ୍ୟାସ । ଏହା ୧୯୩୦ ମସିହାରେ ରଚିତ ହୋଇଥିଲା । ଏହାର ଘଟଣାଟି ସତ୍ୟମୂଳକ ବୋଲି ଲେଖକ କହିଛନ୍ତି ।

ବିବାହ ଯେକୌଣସି ସମାଜରେ ଏକ ପବିତ୍ର ଅନୁଷ୍ଠାନ । ଏଥିରେ ଏକ ପବିତ୍ରତା ବା ଶୁଚିତା ନିହିତ ଥାଏ – ଯାହା କି ସମାଜ ଜୀବନକୁ ନିଷ୍କଳୁଷ ତଥା ମାର୍ଜିତ କରିଥାଏ । କିନ୍ତୁ ସେଥିରେ କୌଣସି ପ୍ରକାରେ ବିଚ୍ୟୁତି ବା ବିକଳତା ଦେଖାଦେଲେ ତାହା ସମାଜକୁ ନଷ୍ଟଭ୍ରଷ୍ଟ କରିପକାଏ । ଲେଖକ ସେହିଭଳି ଜଣେ ଶିକ୍ଷିତ ଯୁବକଙ୍କର ବୈବାହିକ ଜୀବନ ଚିତ୍ରଣ କରିଛନ୍ତି ।

ସ୍କୁଲ ଛାତ୍ର ହରିଚରଣ । ବିବାହର ନିର୍ବନ୍ଧ ପରେ ସେ ମଫସଲ ଝିଅ କନକ ସହିତ ଭବିଷ୍ୟତ୍‌ର କେତେ ସୁନେଲି ସ୍ୱପ୍ନ ଦେଖିଛି । କିନ୍ତୁ ଏ ସ୍ୱପ୍ନ ବେଶି ଦିନ ରହିନି । ହରିଚରଣ ସ୍କୁଲ ଶିକ୍ଷା ପରେ କଲେଜରେ ପାଠ ପଢ଼ିଛି । ଗୋଟିକ ପରେ ଗୋଟିଏ ପାହାଚ ଉତ୍ତୀର୍ଣ୍ଣ ହେବା ସଙ୍ଗେ ମଫସଲର ସରଳ ନିରୀହ ସ୍ନେହମୟୀ କନକ ମୂର୍ତ୍ତିଟି ମାନସପଟରୁ ଧୀରେ ଧୀରେ ଲିଭିଯାଇଛି । ତା' ମନରେ ଆଙ୍କି ହୋଇଛି ସହପାଠିନୀ ଶିକ୍ଷିତା ଚଞ୍ଚଳାର ମୂର୍ତ୍ତି । ଶେଷରେ କନକ ସହିତ ବିବାହପାଇଁ ତା'ର ପୂର୍ବ ନିର୍ବନ୍ଧ ଭାଙ୍ଗି ଦେଇଛି । ହରିଚରଣ ଚଞ୍ଚଳାକୁ ବିବାହ କରିଛି ।

ଏ ବିବାହର ଫଳ ହୋଇଛି ବିଷମ । ସାମାଜିକ ସ୍ତରରେ ହରିଚରଣର ପିତାମାତା ଓ ଆତ୍ମୀୟସ୍ୱଜନ ଏଥିରେ ଲଜ୍ଜିତ ଓ ଅପମାନିତ ହୋଇଛନ୍ତି । ମଫସଲର ରୂପବତୀ ଗୁଣବତୀ କନ୍ୟା କନକ ମଧ ସମାଜ ଚକ୍ଷୁରେ ନିଗୃହୀତା ଓ ଲାଞ୍ଛିତା ହୋଇ ହରିଚରଣର ସ୍ମୃତିରେ ଜୀବନ ଅତିବାହିତ କରିଛି । ହରିଚରଣ ମଧ କନକକୁ ପୁଣି ପାଇବାକୁ ଚାହିଁଛି । ଏଣେ ଚଞ୍ଚଳାକୁ ପୂରା ଦାମ୍ପତ୍ୟ ଜୀବନର ମୂଲ୍ୟ ଦେବାରେ ଅସମର୍ଥ ହୋଇଛି । ହରିଚରଣ ଆତ୍ମପୀଡ଼ନରେ ଜର୍ଜରିତ ହୋଇଛି ।

ଏହି ଉପନ୍ୟାସରେ ରହିଛି ଲେଖକଙ୍କ ପାଶ୍ଚାତ୍ୟ ଶିକ୍ଷା ପ୍ରତି ତୀର୍ଯ୍ୟକ୍ ଦୃଷ୍ଟିଭଙ୍ଗୀ । ଲେଖକ କହିଛନ୍ତି – ''ନିତାନ୍ତ ପରିତାପର ବିଷୟ ଯେ ନାରୀଶକ୍ତିକୁ ବାହାରକୁ ଯଥାର୍ଥ ଫୁଟାଇବାପାଇଁ ତଥାକଥିତ ସଭ୍ୟତାଭିମାନୀ ଯୁବକଗଣ ଚେଷ୍ଟା ନ କରି ପ୍ରାଚ୍ୟ-ପାଶ୍ଚାତ୍ୟ ଭାବର ବିକଟ ସଂଘର୍ଷରେ ନିଜକୁ, ଜାତିକୁ , ଦେଶକୁ ନିଷ୍ପେଷିତ କରି ଏକ ଅଦ୍ଭୁତ ଜୀବ ଭାବେ ତିଆରି ହେଉଛନ୍ତି ।''

କନକପାଇଁ ଲେଖକଙ୍କ ଦରଦ ଫୁଟିଉଠିଛି – ''ଏ ସଂସାରରେ ଅକାଳରେ କେତେ କ'ଣ ମଉଳି ଯାଉଛି ତା'ର କ'ଣ ସୀମା ଅଛି ? ଝଡ଼ବର୍ଷାରେ କେତେ ଦରଫୁଟା କଢ଼ି ଝଡ଼ିପଡୁଛି, ଝାଞ୍ଜି ପବନରେ କେତେ ଫୁଟିଲାଫୁଲ ଶୁଖି ଯାଉଛି । ଖରାଟିଏ ନ ପାଇ କେତେ ପଦ୍ମ ଆଦୌ ଫୁଟୁ ନାହିଁ ।''

ଗୋଦାବରୀଶଙ୍କ ଏହି ଧାରାର ଉପନ୍ୟାସ ଓଡ଼ିଆ ସାହିତ୍ୟରେ ଥିଲା ପ୍ରଥମ ।

ଗଠନ ଶିଳ୍ପ ଦୃଷ୍ଟିରୁ 'ପ୍ରେମପଥେ' ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ଅଦ୍ୱିତୀୟ । ଲେଖକ ଏଥିରେ ଉପନ୍ୟାସର ସାଧାରଣ ବର୍ଣ୍ଣନାତ୍ମକ ଶୈଳୀ ବ୍ୟବହାର କରି ନାହାନ୍ତି । କେବଳ ଚିଠି ପତ୍ର ମାଧମରେ ଉପନ୍ୟାସ ରଚନା ପ୍ରଣାଳୀକୁ ଗ୍ରହଣ କରିଛନ୍ତି । ଯୁବକ ହରିଚରଣ ଚିଠି ଲେଖିଛି ତା'ର ପ୍ରିୟ ବନ୍ଧୁ ରମେଶକୁ । ସେହିପରି ଯୁବତୀ କନକ ଚିଠି ଦେଇଛି ତା'ର ଅନ୍ତରଙ୍ଗ ଭଉଣୀ ନିକଟକୁ । ଚିଠି ପରେ ଚିଠି, ତା'ପରେ ପୁଣି ଚିଠି – ଏ ଉପନ୍ୟାସରେ ଚିଠି ଛଡ଼ା ଆଉ କିଛି ନାହିଁ ! ମାତ୍ର ତା'ରି ମଧରେ ଉପନ୍ୟାସର କଥାବସ୍ତୁଟି ଉଦ୍ଦାମ ବେଗରେ ଅବିରାମ ଭାବରେ ଗତି କରିଅଛି । କେବଳ ଚିଠିପତ୍ର ମାଧମରେ ଔପନ୍ୟାସିକ ଘଟଣାବଳୀକୁ ଉପସ୍ଥାପନ କରିବା ମଧ କମ୍ ସାହିତ୍ୟିକ ପ୍ରତିଭାର ଅପେକ୍ଷା କରେ ନାହିଁ । ଗୋଦାବରୀଶ ପ୍ରଥମଥରପାଇଁ ଏ ଶୈଳୀ ଗ୍ରହଣ କରିଛନ୍ତି । ତେଣୁ ସମଗ୍ର ଉପନ୍ୟାସ ରାଜ୍ୟରେ 'ପ୍ରେମପଥେ'ର ସ୍ଥାନ ଯେ ସ୍ୱତନ୍ତ୍ର, ଏହା ନିଃସନ୍ଦେହରେ କୁହାଯାଇପାରେ ।

**ବନ୍ଦୀର ମାୟା**

'ବନ୍ଦୀର ମାୟା' ଉପନ୍ୟାସରେ ଲେଖକ ମରହଟ୍ଟାମାନଙ୍କର ଅତ୍ୟାଚାର ଚିତ୍ର ଅଙ୍କନ କରିଛନ୍ତି । ଏହା ସହିତ ଯୁବକ-ଯୁବତୀଙ୍କ ମଧରେ ଯୌବନୋଚ୍ଛଳ ପ୍ରେମ ଯୋଡ଼ି ଦେଇଛନ୍ତି ।

ସୁଜନ ଶତ୍ରୁସଲ ଯୌବନରେ ବହୁବାର ମରହଟ୍ଟା ସେନା ସହିତ ଲଢ଼ି ବିଜୟଶ୍ରୀ ଲାଭ କରିଥିଲେ । ବୃଦ୍ଧାବସ୍ଥାରେ ସେ ବିରିପଡ଼ିଆରେ କର୍ମରତ ହେଲେ । ତାଙ୍କ ଝିଅ ଫୁଲ । ଫୁଲ ପରି ତା'ର ଥିଲା ହୃଦୟ !

ମରହଟ୍ଟାମାନଙ୍କ ଓଡ଼ିଶା ଆକ୍ରମଣ ବେଳେ ସୁଜନଙ୍କ ପୁତ୍ର ଅଭିମନ୍ୟୁ ଡାକରାପାଇ ଯୁଦ୍ଧ ଭୂଇଁକୁ ଯାଇଛି । ଓଡ଼ିଶା ଗଜପତିଙ୍କ ଆଦେଶକ୍ରମେ ମରହଟ୍ଟା ବନ୍ଦୀମାନଙ୍କୁ କାରାରୁଦ୍ଧ କରିବାପାଇଁ ସୁଜନ ଶତ୍ରୁସଲଙ୍କ ତତ୍ତ୍ୱାବଧାନରେ ଏକ ବନ୍ଦିଶାଳା ନିର୍ମିତ ହୋଇଛି । ଶହ ଶହ ବନ୍ଦୀଙ୍କୁ ଆଣି ସେଠାରେ ରଖାଯାଇଛି । ଫୁଲ କିନ୍ତୁ ବନ୍ଦୀମାନଙ୍କୁ ପୋଷିବାର ଘୋର ବିରୋଧ କରିଛି । ବନ୍ଦୀକୁ କିନ୍ତୁ ଆଶ୍ରୟ ଦେବା ଅନ୍ୟାୟ ନୁହେଁ ବୋଲି ଶତ୍ରୁସଲ ଝିଅକୁ ବୁଝାଇ ଦେଇଛନ୍ତି । ବନ୍ଦୀମାନଙ୍କୁ ଦୁଗ୍ଧ ଯୋଗାଇବା ଦାୟିତ୍ୱ ଫୁଲ ଉପରେ ପଡ଼ିଛି ।

ଯୁଦ୍ଧଭୂମିରେ ଖଣ୍ଡାୟତ ବୀର ଅଭିମନ୍ୟୁ ଶତ୍ରୁସଲ ନିହତ ହୋଇଛି । ତା'ର ମୃତ୍ୟୁ ଖବର ପିତାଙ୍କ ପାଖେ ପହଞ୍ଚିଛି । ସୁଜନଙ୍କ ହୃଦୟରେ ମର୍ମନ୍ତୁଦ ଯନ୍ତ୍ରଣା ଜାତ ହୋଇଛି । ତାଙ୍କ ମନରେ ମରହଟ୍ଟା ବିଦ୍ୱେଷ ବୃଦ୍ଧି ପାଇଛି । ଫୁଲର ମଧ୍ୟ ବନ୍ଦୀମାନଙ୍କ ପ୍ରତି ଘୃଣାର ସୀମା ନ ଥିଲା । ସେ ଘୃଣାରେ କେଉଁ ବନ୍ଦୀଙ୍କୁ ମୁଣ୍ଡ ଟେକି ଚାହିଁପାରୁ ନ ଥିଲା ।

କାଳକ୍ରମେ ଫୁଲର ବନ୍ଦୀଙ୍କ ପ୍ରତି ଘୃଣାଭାବ ଚାଲିଯାଉଛି । ତାହା ସ୍ଥାନରେ ସେମାନଙ୍କ ପ୍ରତି ସମ୍ବେଦନଶୀଳତା ଓ ମମତା ଜାଗ୍ରତ ହୋଇଛି ।

କେତେ ଦିନ ପରେ ବନ୍ଦିଶାଳାକୁ ଆସିଛନ୍ତି ଦେବନାଥ ନାମଧେୟ ମରହଟ୍ଟା ଯୁବକ । ସେ କ୍ରମେ ଫୁଲର ହୃଦୟ ରାଜ୍ୟ ଅଧିକାର କରିନେଇଛନ୍ତି । ଦୁହିଁଙ୍କ ମଧ୍ୟରେ ଘନିଷ୍ଠତା ହୋଇଛି । ତାହା ମଧ୍ୟ ପ୍ରେମରେ ପରିଣତ ହୋଇଛି ।

ଏଥିମଧ୍ୟରେ ମରହଟ୍ଟା ସୁବେଦାର ଓ ଉତ୍କଳ ଗଜପତିଙ୍କ ମଧ୍ୟରେ ସନ୍ଧି ହେବା ଫଳରେ ବନ୍ଦୀମାନଙ୍କୁ ମୁକ୍ତ କରାଯାଇଛି । ଦେବନାଥ ମୁକ୍ତିରେ ଆନନ୍ଦିତ ହେବା ପରିବର୍ତ୍ତେ ଶୋକରେ ଅଧୀର ହୋଇପଡ଼ିଛନ୍ତି । ବିଦାୟ ନେବାକୁ ଫୁଲ ପାଖକୁ ଯାଇଛନ୍ତି ଗଭୀର ନିଶାର୍ଦ୍ଧରେ । ସେମାନଙ୍କ ନିଭୃତ କଥୋପକଥନ କିନ୍ତୁ ସୁଜନ ଶୁଣିପାରିଛନ୍ତି । ସେ ସେଠାକୁ ସିଂହ ଭଳି ଲମ୍ଫ ଦେଇ ଫୁଲକୁ ସେ ସ୍ଥାନ ଛାଡ଼ିବାକୁ ଆଦେଶ ଦେଇଛନ୍ତି । ସେହି ରାତ୍ରିରେ ଦେବନାଥ ଓ ଫୁଲ ଲକ୍ଷ୍ୟହୀନ ଭାବେ ବାହାରି ପଡ଼ିଛନ୍ତି । ଶେଷରେ ପ୍ରେମିକ ଓ ପ୍ରେମିକା ମହାନଦୀର ଅତଳ ବକ୍ଷରେ ସଲିଳ ସମାଧି ନେଇଛନ୍ତି । ଘୋଷଣା କରିଯାଇଛନ୍ତି ଯେ ଜାତି ନିକଟରେ ବ୍ୟକ୍ତିବିଶେଷଙ୍କ ସ୍ନେହ, ପ୍ରୀତି ଆଉ ସୋହାଗ ନିତାନ୍ତ ତୁଚ୍ଛ ।

ଆଲୋଚକଙ୍କ ଭାଷାରେ – ''ଉପନ୍ୟାସଟିରେ ବର୍ଣ୍ଣିତ ଘଟଣା ଯେପରି କରୁଣ ହୋଇଛି, ତତୋଽଧିକ ଦେଶ ଓ ଜାତି ପ୍ରତି ଆତ୍ମତ୍ୟାଗରେ ହୋଇଛି ମହନୀୟ ।''

## ବିଦ୍ରୋହୀ

୧୯୩୮ ମସିହାରେ ଗୋଦାବରୀଶଙ୍କ ଦ୍ୱିତୀୟ ସାମାଜିକ ଉପନ୍ୟାସ 'ବିଦ୍ରୋହୀ' ପ୍ରକାଶ ପାଇଲା । 'ପ୍ରେମପଥେ' ଉପନ୍ୟାସରେ ଫୁଲ ସମାଜର ଅନ୍ୟାୟକୁ ମଥା ପୋତି ମାନିନେଇଛି । ନୀରବରେ ଅଶ୍ରୁ ବିସର୍ଜନ କରିଛି । କିନ୍ତୁ 'ବିଦ୍ରୋହୀ' ଉପନ୍ୟାସରେ ନାୟିକା ଗୌରୀ ହୋଇଛି ବିପ୍ଳବିନୀ । ସମାଜର ପ୍ରଚଳିତ ରକ୍ଷଣଶୀଳ ବ୍ୟବସ୍ଥା ବିରୋଧରେ ସେ ବିଦ୍ରୋହ କରିଛି ।

ଶାରଦା ଆଇନର ପୃଷ୍ଠଭୂମିରେ ଗୋଦାବରୀଶ ଏହି ଉପନ୍ୟାସ ରଚନା କରିଛନ୍ତି । ବିଧବା ବିବାହ ଲାଗି ସମାଜର ପ୍ରତିରୋଧ ବିରୋଧରେ ସେ ଆଗେଇ ଆସିଛନ୍ତି ।

ଉପନ୍ୟାସରେ ପିତା ରାଧାନାଥ କିଶୋରୀ କନ୍ୟା ଗୌରୀକୁ ବିପତ୍ନୀକ ବୃଦ୍ଧ ସହିତ ବିବାହ ଦେଇଛନ୍ତି । ଗୌରୀ ଯୌବନରେ ପଦାର୍ପଣ କରିବା ପୂର୍ବରୁ ହୋଇଛି ବିଧବା । ଗୌରୀ ସାମାଜିକ ଲାଞ୍ଛନା ଓ ନିର୍ଯାତନାର ଶିକାର ହୋଇଛି । ତା'ର ମା' ମର୍ମାହତ ହୋଇ ପ୍ରାଣତ୍ୟାଗ କରିଛନ୍ତି । ଗୌରୀର ବୃଦ୍ଧପିତା ରାଧାନାଥ ପୁନର୍ବାର ବିବାହ କରନ୍ତି ଯୁବତୀ ରମାକୁ । ଦୁଇ ସମବୟସୀ ଗୌରୀ ଓ ରମାଙ୍କ ପ୍ରାଣ ବିଦ୍ରୋହ କରିଛି । ପଡ଼ିଶା ଘରର ଯୁବକ ବ୍ରଜ ସମାଜରୁ ଅସ୍ପୃଶ୍ୟତା ନିବାରଣ ଆନ୍ଦୋଳନପାଇଁ ବାହାରିବାମାତ୍ରେ ଗୌରୀ ତାଙ୍କ ସାଙ୍ଗେ ଯୋଗ ଦେଇଛି । ରମା ମଧ୍ୟ ରାଧାନାଥଙ୍କ ଆଗରେ ମଥାରୁ ସିନ୍ଦୂର ପୋଛି ହାତରୁ କାଚ କାଢ଼ି ସମାଜ ବିରୋଧରେ ଯୁଦ୍ଧ ଘୋଷଣା କରିଛି ।

ମାନବିକତାର ଜୟଗାନ କରୁଥିବା 'ବିଦ୍ରୋହୀ' ଉପନ୍ୟାସଟି ଲେଖକଙ୍କ ପକ୍ଷରେ କିଛି କମ୍ ସଫଳତା ନୁହେଁ ।

## ରକ୍ତପାତ

ଗୁରୁ ପଣ୍ଡିତ ଗୋଦାବରୀଶ 'ଘଟାନ୍ତର', 'ଅଭାଗିନୀ' ଭଳି ଉପନ୍ୟାସ ପାଶ୍ଚାତ୍ୟ ଔପନ୍ୟାସିକଙ୍କ ଅନୁସରଣରେ ରଚନା କରିଥିଲେ । ୧୯୩୦ ମସିହାରେ ଗୋଦାବରୀଶ ମଧ୍ୟ ଇଂରେଜୀ ଔପନ୍ୟାସିକ ମେରି କରୋଲିଙ୍କ 'Vendetta' ଅନୁସରଣରେ ଏକ ଉପନ୍ୟାସ – 'ରକ୍ତପାତ' ଲେଖିଲେ । ମୂଳ ଉପନ୍ୟାସର କଥାବସ୍ତୁକୁ ସେ ଓଡ଼ିଶାର ପରିବେଶ ମଧ୍ୟରେ ପକାଇ ରଚନା କରିବାରେ ସାଫଲ୍ୟମଣ୍ଡିତ ହୋଇଛନ୍ତି ।

୧୯୩୬ ମସିହାରେ ରଚିତ 'ବୀର ଯୁବକ' ଅର୍ଦ୍ଧ ସାମାଜିକ ଓ ଅର୍ଦ୍ଧ ଡିଟେକ୍‌ଟିଭ ଉପନ୍ୟାସ ।

## ଶିଶୁ ସାହିତ୍ୟ

ଶିଶୁ ଉପଯୋଗୀ ରଚନା ସୃଷ୍ଟି କରିବାରେ ଗୋଦାବରୀଶ ମଧ ଅସାଧାରଣ ସଫଳତା ଲାଭ କରିଛନ୍ତି । ସେ ଶିଶୁ ମନର ଚିତ୍ର ଅଙ୍କନ କରିବାରେ ସିଦ୍ଧହସ୍ତ ଥିଲେ । ବହୁ କବିତା ଓ ଗଳ୍ପରେ ସେ ଶିଶୁ ଜୀବନର ଆକାଙ୍‌କ୍ଷା ଓ କାମନାକୁ ବିଷୟବସ୍ତୁ ରୂପେ ଗ୍ରହଣ କରିଛନ୍ତି । ଜୀବନରେ ବହୁ ଦୁଃଖ, ଯନ୍ତ୍ରଣା ଓ ଦୁଃଶ୍ଚିନ୍ତାରୁ ସାମୟିକ ଭାବରେ ନିଜକୁ ମୁକ୍ତ କରିବାପାଇଁ ସେ ଶିଶୁ ସାହିତ୍ୟ ସୃଷ୍ଟିରେ ମନ ଦେଇଥିଲେ ।

ଶିଶୁର ଖେଳିବାରେ ଅତି ଶ୍ରଦ୍ଧା । ସେ ସ୍ୱଭାବତଃ ଖେଳପ୍ରିୟ । 'ଲୁଚକାଳି ଖେଳ' ଭିତରେ କବି ଗୋଦାବରୀଶ ଶିଶୁ ମନର ଏହି ଖେଳ ପ୍ରୀତିର ପରିଚୟ ଦେଇଛନ୍ତି, ଯଥା–

''କୁନା ଓ ମୀନା ଭାଇ ଭଉଣୀ
  ମୀନା ଭଉଣୀ ବଡ଼
ମୀନା କହିଲା – ଲୁଚିବି ମୁହିଁ
  କୁନା କହିଲା ଭଲ ।
ମୀନା କହିଲା – ପାଇଲେ ଖୋଜି
  ମିଠେଇ ଦେବି ଆଜି
କୁନା କହିଲା – ଯାହା ତୁ ଦେବୁ
  ସେଥିକି ମୁହିଁ ରାଜି ।''

'ଭୋକିଲା ପୁଷି' ଗୋଟିଏ ସୁନ୍ଦର ଶିଶୁକବିତା । ତା'ର କେତୋଟି ପଙ୍‌କ୍ତି –

''ଶିକାରେ ଥିଲା ଠେକିରେ ଦୁଧ
  ବିରାଡ଼ି କହେ ଡାକି –
ହଇରେ ଠେକି ମୋ ପାଇଁକି
  ଦୁଧ କି ନାହିଁ ବାକି ?
ମୁଇଁ ତ କେବେ ପିଏନି ପାଣି
  ଜାଣିଚୁ ଠେକି ଭାଇ
ଲାଗିଲେ ଶୋଷ ମାଗଇ ଖାଲି
  ମିଆଉଁ ମିଆଉଁ କହି ।

× × ×

କହିଲା ଠେକି – ପୁଷିଲୋ ପୁଷି
  ଗୁହାଳେ ଯାଇ କହ
ଗାଈ ଦେଇନି କିଆଁ ତା' ଦୁଧ
  ଘଣ୍ଟା ବାଜିଲା ନଅ ।''

ବୟସ ବଢ଼ିବା ସଙ୍ଗେ ସଙ୍ଗେ ଶିଶୁର ମନ ଖେଳନା କଣ୍ଢେଇରେ ଆବଦ୍ଧ ରହେ ନାହିଁ । ସେ ସାଙ୍ଗସାଥି ମେଳରେ ଯା'ଏ ପାଠଶାଳାକୁ । କବି ଗୋଦାବରୀଶ ତାହାକୁ ବର୍ଣ୍ଣନା କରିଛନ୍ତି –

ଶରତ ଗଲା, ଆଇଲା ଶୀତ
ବରଷା ଆଉ ନାହିଁ
କାନ୍ଦୁ ନାହିଁ ଆଉ ତ କୁନି
ତା' ବୋଉ ପାଖେ ଥାଇ
ପତର ଗଲା ଗଛରୁ ଝଡ଼ି
ଫୁଟିବ ଫୁଲ ହୋଇଲେ କଢ଼ି
କୁନି ହାତରେ ସିଲଟ ଖଡ଼ି
ଯାଏ ପଢ଼ିବା ପାଇଁ ।''

ପାଠଶାଳାରେ ଶିକ୍ଷକ ପାଠପଢ଼ା ସାଙ୍ଗକୁ କେତେ ଉପଦେଶ ଦିଅନ୍ତି । କେତେ ନୀତି ବାକ୍ୟ ଶୁଣାନ୍ତି । କେହି କେହି ପିଲା ତାହାକୁ ଅକ୍ଷରେ ଅକ୍ଷରେ ପାଳନ କରିଥାନ୍ତି । କେହି କେହି କରନ୍ତି ନାହିଁ । ଫଳରେ ବାପା, ମା' ଓ ଶ୍ରେଣୀଶିକ୍ଷକ ହଇରାଣ ହରକତ ହୁଅନ୍ତି । 'ଜୀବରେ ଦୟା' ସେହିଭଳି ଏକ କବିତା –

''ଗାଈ ଚାହିଁଥିଲା ଧୀରେ ଧୀରେ ଗଲା
ହରିଆ ତହିଁ
ଚିରି ଖଣ୍ଡେ ବହି କହିଲା ଗାଈ ତୁ
ଖାଇବୁ ନାହିଁ ?
ଚାଖଣ୍ଡେ ଲମ୍ବର ଜିଭଟା ବଢ଼ାଇ
ଦିଅନ୍ତେ ଗାଈ
ଖଣ୍ଡ ଖଣ୍ଡ କରି ଦେଲା ସେ ଗାଈକୁ
ବହିଟା ଖୋଇ ।

× × ×

ଗାଈ ଚାଲିଗଲା ଗାଈର ବାଟରେ
ହରିଆ ଫେରେ,
ପିଲାଏ କହିଲେ ପଢ଼ିବାକୁ ବହି
ଆଣିନୁ କି ରେ ?
ହରିଆ କହିଲା ଜୀବେର ଦୟା ଆଜି
କରିଛି ଭାଇ,
'ଶିଶୁ କଥାମାଳା' ବହିଟା ଦେଇଚି
ଗାଈକୁ ଖୋଇ ।

ପିଲାଏ ହସିଲେ ତାଳି ମାରି ମାରି
କହିଲେ – ଓଲା
ଅବଧାନେ ଶୁଣି କହିଲେ – ନୁହେଁ ସେ
ପଢ଼ିବା ପିଲା ।''

ଗୋଦାବରୀଶ ଶିଶୁ ଉପଯୋଗୀ ବହୁ ରୂପକଥା ଲେଖିଛନ୍ତି । ସେହିଭଳି କବିତା 'ମହୀର ସାଇକଲ' । ମହୀ ବୋଲି ପିଲାଟିଏ ଅଜାଙ୍କୁ କହିଲା ତା' ପାଇଁ ଗୋଟିଏ ତିନିଚକିଆ ସାଇକଲ ଆଣିଦେବାପାଇଁ । ଅଜା କିଣିଦେବେ କହି କହି ଆଣି ନ ଥିଲେ । ତା'ପର ଦିନ ଅଜା ଖାଇସାରି ମସିଣାଟିଏ ପକାଇ ଶୋଇଥିଲେ । ମହୀର ପାଟିରେ ଅଜାଙ୍କ ନିଦ ଭାଙ୍ଗିଗଲା । ସେ ଦେଖିଲେ ମହୀ ଦୁଇ ଗୋଡ଼ ସନ୍ଧିରେ ଦୁଇଟି ତାଳପତ୍ରର ପଙ୍ଖାକୁ ନାଡ଼ପଟୁ ଧରି ସାଇକଲ କରୁଚି । ଆଉ ପାଟିରେ ଘଣ୍ଟିର ଆବାଜ କରି ସାଇକଲକୁ ବାଟଛାଡ଼ି ଦେବାପାଇଁ ଅଜାଙ୍କୁ କହୁଚି । ଆଉ କହୁଚି –

''ତମ ମହୀ ସାଇକଲ ଚଳାଉଚି । ବାଟ ଛାଡ଼ ।'' ଏଥିରେ ଶିଶୁ ମନରେ ରୂପକଥା ସୃଷ୍ଟି କରିଛନ୍ତି କବି । ସେହିପରି 'ମଣ୍ଡାପିଠା କଥା', 'ଗୁଣ୍ଡୁଚି ମୂଷା କଥା', 'ପୁଷିର ନାଁ ଦିଆ', ତିନୋଟି ବୋକା କଥା' ପ୍ରଭୃତି ବିଭିନ୍ନ ରୂପ କଥା ଗୋଦାବରୀଶ ଗଦ୍ୟରେ ଓ ପଦ୍ୟରେ ରଚନା କରିଛନ୍ତି । ଏଥିରେ ତାଙ୍କର ମୌଳିକତା ସୁସ୍ପଷ୍ଟ ।

ଶିଶୁମାନଙ୍କୁ ଜାତିର ଗୌରବ ଓ ଐତିହ୍ୟ ପ୍ରତି ଆକର୍ଷଣ କରିବାକୁ କେତୋଟି କବିତା ରଚନା କରିଛନ୍ତି । ତା'ର ଉଦାହରଣ –

''ମହାନଦୀର ଜାକର ପାଣି
ବରଗଡ଼ରେ ମାଢ଼େ
ଗଛରେ ଫଳେ ଫଳ
ତୁମର ଆମର ହୋଇଲେ ସାଥି
ଆଉ କି ଡର ମାଢ଼େ
ବଢ଼ିବ ସିନା ବଳ ।

× × ×

କେନ୍ଦୁଝରର ପାହାଡ଼ ତଳେ
ରହିଛି ସୁନାଖଣି
ଖୋଳିବ ପିଲେ କିଏ
ଆମ ଓଡ଼ିଶା ମାଟିରେ ଅଛି
ଅଷ୍ଟ ରତ୍ନମଣି ।
ଆମେ ତାହାରି ପୁଏ ।''

ଗୋଦାବରୀଶ ମଧ୍ୟ ମାସିକ ଶିଶୁ ସାହିତ୍ୟ ପତ୍ରିକା 'ଝୁଅାଁ ଝୁଇଁ' ପ୍ରକାଶ କରିଥିଲେ । ୧୯୫୬ରୁ ସେ ଏହାର ସମ୍ପାଦନା କରିଥିଲେ । ଦେଶର ଭବିଷ୍ୟତ୍ ଲାଗି ବ୍ୟକ୍ତି ଗଢ଼ିବାପାଇଁ କବି ଶିଶୁ ସାହିତ୍ୟ ସୃଷ୍ଟି କରିଥିଲେ ଓ ସେଥିରେ ସଫଳତା ପ୍ରାପ୍ତ ହୋଇଥିଲେ ।

**ଲାଳିକା**

ଲାଳିକା ଗୋଦାବରୀଶଙ୍କ ହାସ୍ୟ, ବ୍ୟଙ୍ଗ ଓ ବିଦ୍ରୂପର ପ୍ରଧାନ ଅସ୍ତ୍ର ହୋଇଥିବା ଜଣାଯାଏ । ଏହା ଏକ ଉଚ୍ଚାଙ୍ଗ ସାହିତ୍ୟ ଶିଳ୍ପ । ପୂର୍ବବର୍ତ୍ତୀ କୌଣସି କବିଙ୍କ ବହୁ ପ୍ରଚାରିତ ରଚନାକୁ ବିକୃତ କରି ତାହାର ଅନୁସରଣରେ ରଚିତ କବିତାକୁ ଲାଳିକା କୁହାଯାଏ । ମୂଳ ରଚନାର ପ୍ରସିଦ୍ଧି ହେତୁ ପାଠକ ଲାଳିକାକାରଙ୍କ କବିତାର ରସ ସହଜରେ ଗ୍ରହଣ କରିଥାଏ ।

ଗୋଦାବରୀଶ ସାମସମୟିକ ସମାଜ ଓ ରାଜନୀତିର ଘଟଣାବଳୀକୁ ବ୍ୟଙ୍ଗ ଉଦ୍ଦେଶ୍ୟରେ ଲାଳିକା ରଚନା କରିଥିଲେ । ସମାଲୋଚିତ ବ୍ୟକ୍ତି ବା ଘଟଣା ପ୍ରତି ପାଠକମାନଙ୍କର ଦୃଷ୍ଟି ଏହାଦ୍ୱାରା ସହଜରେ ଆକର୍ଷିତ ହୋଇଥାଏ । ଓଡ଼ିଆ ସାହିତ୍ୟରେ ଅବଶ୍ୟ ପୂର୍ବରୁ କେତେକ ଲାଳିକା ରଚିତ ହୋଇଥିଲା । ସେହି ଲାଳିକାମାନଙ୍କ ମଧ୍ୟରେ ଗୋଦାବରୀଶଙ୍କ ଲାଳିକା ସର୍ବାଧିକ । କେବଳ ସଂଖ୍ୟା ଦୃଷ୍ଟିରୁ ନୁହେଁ, ଗୁଣ ଓ ସ୍ୱରୂପଗତ ବୈଶିଷ୍ଟ୍ୟ ଦୃଷ୍ଟିରୁ ଗୋଦାବରୀଶଙ୍କ ଲାଳିକାଗୁଡ଼ିକ ସର୍ବୋତ୍ତମ ବୋଲି କୁହାଯାଇପାରେ ।

ଗୋଟିଏ ଉଦାହରଣ – ଆଜିର ଭେଜାଲ ଯୁଗରେ ଖାଣ୍ଟି ସୋରିଷତେଲ ପ୍ରାୟ ଲୁଚିଗଲାଣି, ତେଣୁ ଖୋଲା ବଜାରରୁ ଖାଣ୍ଟି ନାଁରେ ନକଲି ଆଣିବାକୁ ସାଧାରଣ ଲୋକେ ବାଧ୍ୟ । ମାତ୍ର କେତେ ବର୍ଷ ତଳେ ଜେଲଖାନାରେ ଖାଣ୍ଟି ସୋରିଷତେଲ ମିଳୁଥିବାରୁ କବି ଜେଲଖାନାରେ ରହିବାକୁ ପସନ୍ଦ କରି ଭକ୍ତକବି ମଧୁସୂଦନଙ୍କ 'ନିର୍ବାସିତ ବିଳାପ' କବିତାର ଗୋଟିଏ ପଙ୍କ୍ତିକୁ 'ବରଂ ନିବାସ ଭଲ'କୁ ରୂପାନ୍ତରିତ କରିଛନ୍ତି –

''ବରଂ ନିବାସ ଭଲ କାରାଗାରରେ
ଖାଣ୍ଟି ସୋରିଷ ତେଲ ଯେଉଁଠି ମିଳେ
ଖୋଲା ବଜାରେ କିନ୍ତୁ ହୋଇ ସ୍ୱାଧୀନ
ନିପଟ ବୋକା ଛଡ଼ା ନ ହେବ ଆନ ।''

ଭକ୍ତଚରଣଙ୍କ ବିଖ୍ୟାତ 'ମନବୋଧ ଚଉତିଶା'ର ଲାଳିକା 'ଖୋରଧା ବୋଧ ଚଉତିଶା' ନାମରେ ଲେଖିଛନ୍ତି, ଯଥା –

''କହଇ ମନ ଆରେ ମୋ ବୋଲ କର
କିଛୁତେ ଖୋରଧାକୁ ଦେଖିବା ଚାଲରେ ।
କେ କେତେ କହୁଥାନ୍ତୁ, ନ କରି ଶଙ୍କା
କର ପ୍ରସାରି ଖାଲି ପ୍ୟାକେଟ ପକାରେ ।

× × ×

ଖଣ୍ଡ ମଣ୍ଡଳେ ଆଜି ଶୁଭୁଛି ସ୍ୱର
ଖାଇଲେ ମନବୋଧ ହୋଇବ ତୋରରେ ।''

ଉପେନ୍ଦ୍ର ଭଞ୍ଜଙ୍କ 'ବିଭୂଷଣ ପୁଷ୍ପେ ଯା କାନ୍ତି ଜାଣ' ଛାନ୍ଦର ଲାଳିକା –

''ବିଦୁଷଗଣ ମନ ଦେଇ ଶୁଣ,
ବିଭୂଷଣେ ମଦ ଅଫିମ ଆଣ
ବାରଣ' ଶିରେ ପଦ ଦେଇ ଆସୁ,
ବରଣ କରି ସଭା ମନ ତୋଷୁ
ବିକ୍ରମୀ ରାଜେନ୍ଦ୍ର ସିଂହ ଯେ
ବୋଳି ଦେଲା ପ୍ରାୟ ଗୋଳା ଚନ୍ଦନକୁ
ବିଚାରେ ବିଧାନ ସଭ୍ୟ ଯେ ।''

କେତେକ ଲୋକଗୀତ ବା ଢଗଢମାଳିର ଗୋଦାବରୀଶ ଲାଳିକା କରିଛନ୍ତି, ଯଥା –

''କେଉଟ ଧରେ ମାଛ, ଖାଏ କଙ୍କଡ଼ା ।''
ଓଡ଼ିଆ ବୁଣେ ଧାନ, ଖାଏ ଗହମ ।''

କିମ୍ବା –

''ଗପ ଯେବେ ଶୁଣି ବସିବୁ, ପାଖେ ଥିବ ଅଜା ।
ପଖାଳ ଯେବେ ଖାଇ ବସିବୁ ପାଖେ ଥିବ ଭଜା ।''

ଅଥବା –

''ଦୁଇ ମାଇପର ଘଇତା
ତବତ ଖାଇବୁ କି ପଖାଳ ଖାଇବୁ
ବେଳ ଥାଉ ଥାଉ କହିଥା ।''
''ଦୁଇ ଓ୍ୱାଇଫ୍‌ର ଘଇତା
ସେକା ଖାଇବୁ କି ପରଟା ଖାଇବୁ
ବେଳ ଥାଉ ଥାଉ କହିଥା ।''

## ବ୍ୟଙ୍ଗ-ବିଦ୍ରୂପାତ୍ମକ ରଚନା

ବ୍ୟଙ୍ଗ-ବିଦ୍ରୂପାତ୍ମକ ଶୈଳୀ ହିଁ ଗୋଦାବରୀଶଙ୍କ ପ୍ରଧାନ ଆଦର୍ଶ । ଶୁଦ୍ଧ ହାସ୍ୟରସ୍ୟ ଅପେକ୍ଷା ବ୍ୟଙ୍ଗ, ବିଦ୍ରୂପ, ବକ୍ରୋକ୍ତି ଓ ରସିକତାରେ ତାଙ୍କ ଲେଖନୀର ଶକ୍ତିଶାଳିତା ଅଧିକ ପ୍ରକଟିତ ହୋଇଥାଏ । କବି ଦୀର୍ଘକାଳ ଧରି ଓଡ଼ିଶାର ରାଜନୀତି ଓ ସମାଜ ଜୀବନ ସହିତ ଘନିଷ୍ଠ ସମ୍ପର୍କରେ ଆସିଥିଲେ । ନାନା ଲୋକଙ୍କ ଚରିତ୍ରର କାଳିମାମୟ ଦିଗ, ବୁଦ୍ଧିହୀନ ଲୋକର ନିର୍ବୋଧତା, ନୀତିହୀନର ଅନୈତିକତା, କ୍ଷମତାବିଳାସୀ ନେତାର ମତାନ୍ଧତା, ସ୍ୱାର୍ଥସାଧନ ପ୍ରବୃତ୍ତି, ପ୍ରିୟାପ୍ରୀତି ତୋଷଣ ପ୍ରଭୃତିକୁ ସେ ଅତି ନିକଟରୁ ଦେଖିବାକୁ ପାଇଥିଲେ । ଚଳନ୍ତି ଲୋକ ଜୀବନର ବହୁ ଘଟଣାରେ କଳୁଷତା, ଆବିଳତା, ପଙ୍କିଳତା ମଧ୍ୟ ସେ ଲକ୍ଷ୍ୟ କରିଥିଲେ । ସୁତରାଂ ଏସବୁ ବହୁ ଘଟଣା, ବହୁ ନେତା, ବହୁ ବ୍ୟକ୍ତି ହିଁ ତାଙ୍କ ବ୍ୟଙ୍ଗବିଦ୍ରୂପାତ୍ମକ ରଚନାର ପ୍ରଧାନ ଉପଜୀବ୍ୟ ହୋଇଛନ୍ତି । ଅବଶ୍ୟ ଗୋଦାବରୀଶ ଏହି ବ୍ୟଙ୍ଗବିଦ୍ରୂପାତ୍ମକ ଶୈଳୀର ପ୍ରବର୍ତ୍ତକ ନୁହନ୍ତି, ତାଙ୍କର କେତେକ ପୂର୍ବସୂରୀ, ଯଥା – ରାଧାନାଥ, ଫକୀରମୋହନ, ଗୋପାଳ ପ୍ରହରାଜ, ପଣ୍ଡିତ ନୀଳକଣ୍ଠ ଓ ପଣ୍ଡିତ ଗୋଦାବରୀଶ ପ୍ରଭୃତି ଏହି ପରମ୍ପରା ସୃଷ୍ଟି କରିସାରିଥିଲେ । ମାତ୍ର ସେହି ପରମ୍ପରାକୁ ଉତ୍ତୋଳିତ କରି କଳାକୁ ଉନ୍ନତ ଓ ସାର୍ବଜନୀନ ସ୍ତରରେ ଅବସ୍ଥାପିତ କରିବାରେ ହିଁ ଗୋଦାବରୀଶଙ୍କ ମହତ୍ତ୍ୱ । ଆଲୋଚକଙ୍କ ଭାଷାରେ ଯାହା ଆବଦ୍ଧ ପୁଷ୍କରିଣୀ ଥିଲା, ସେଇଠି ସେ କଳନାଦିନୀ ସ୍ରୋତସ୍ୱତୀ ସୃଷ୍ଟି କରିଛନ୍ତି ।

ପ୍ରଶ୍ନ ଉଠେ, ଗୋଦାବରୀଶଙ୍କ ରଚନାରେ ବ୍ୟକ୍ତିଗତ ଜୀବନର ଈର୍ଷା, କ୍ରୋଧ, ବା ଘୃଣା ଥିଲା କି ? ଗୋଦାବରୀଶଙ୍କ ବ୍ୟକ୍ତିଗତ ଜୀବନ କଳଙ୍କ କାଳିମାମୟ ନ ଥିଲା । ସେ ତାଙ୍କର ବ୍ୟକ୍ତିଗତ ଜୀବନକୁ ଯେପରି ଜାତୀୟ ଜୀବନର ସମୁଜ୍ଜ୍ୱଳ ସ୍ତରକୁ ଉତ୍ତୋଳିତ କରିଥିଲେ, ତାହା ଜନଜୀବନରେ କ୍ୱଚିତ୍ ପରିଦୃଷ୍ଟ ହୁଏ । ସୁତରାଂ ତାଙ୍କ ବ୍ୟକ୍ତି-ଜୀବନରେ ଈର୍ଷା, କ୍ରୋଧ ବା ଘୃଣା ଏ ଜାତିର ଈର୍ଷା, କ୍ରୋଧ ବା ଘୃଣାର ରୂପ ଗ୍ରହଣ କରିଅଛି । କୌଣସିଠାରେ କିନ୍ତୁ ସେ ଅଭଦ୍ରତା ବା ନୀଚତାର ବଶବର୍ତ୍ତୀ ହୋଇ ନାହାନ୍ତି । ଅବଶ୍ୟ ଓଡ଼ିଶାର ପ୍ରଖ୍ୟାତ କବି ଓ ସାହିତ୍ୟିକ ଡଃ ମାୟାଧର ମାନସିଂହ ତାଙ୍କୁ ଆକ୍ଷେପ କରିବାକୁ ପଛାଇ ନାହାନ୍ତି । ସେ ଲେଖିଛନ୍ତି –

"ଏହା ସତ୍ୟ ଯେ ସେ (ଗୋଦାବରୀଶ) ବହୁ କ୍ଷେତ୍ରରେ ଅଭଦ୍ରତା ବା ନୀଚତା (Vulgarities) ର ଆନୁଗତ୍ୟ ସ୍ୱୀକାର କରିଛନ୍ତି, ମାତ୍ର ଜଣେ ପ୍ରଥମଶ୍ରେଣୀର ହାସ୍ୟରସିକ ଓ ବ୍ୟଙ୍ଗ-ବିଦ୍ରୂପ ଶିଳ୍ପୀ ରୂପେ ତାଙ୍କର କ୍ଷମତା ଅବିସମ୍ବାଦିତ ।"

ଆଲୋଚକ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟଙ୍କ ମତରେ ତାଙ୍କ (ମାୟାଧର ମାନସିଂହ) ବ୍ୟଙ୍ଗର ଦ୍ୱିତୀୟାଂଶଟି ଯେପରି ସତ୍ୟ, ପ୍ରଥମାଂଶଟି ସେହି ପରିମାଣରେ ଠିକ୍ ତାହାର ବିପରୀତ ବୋଲି ମନେ ହୁଏ । କବି ସମାଜ ଓ ରାଜନୀତିର ବହୁ ଅନ୍ୟାୟ,

ଅନୀତି, ଶଠତା, ଭଣ୍ଡାମି, ବ୍ୟଭିଚାରକୁ ଗଭୀର ଭାବରେ ମନ୍ଥନ କରିଛନ୍ତି । ପଦସ୍ଥ ବ୍ୟକ୍ତିର ସାମାନ୍ୟ ସ୍ଖଳନ – ଯେଉଁଠି ଜାତୀୟ ଜୀବନରେ ଘୋର ବିଭ୍ରାଟର କାରଣ ବୋଲି ସେ ବିବେଚନା କରିଛନ୍ତି – ସେଇଠି ସେ ଦେଇଛନ୍ତି, ବଜ୍ରର ଅମୋଘ ପ୍ରହାର । ଓଡ଼ିଶାର ଅନ୍ୟତମ ସାହିତ୍ୟିକ କପିଳେଶ୍ୱର ଦାସଙ୍କ ମନ୍ତବ୍ୟ ମଧ୍ୟ ଉଲ୍ଲେଖଯୋଗ୍ୟ –

''... ସବୁରି ଉପରେ ତାଙ୍କର (ଗୋଦାବରୀଶ) ନିର୍ଭୀକ ତାତ୍ତ୍ୱିକ × × ସତ୍ୟସନ୍ଧାନମୂଳକ ସମାଲୋଚନା ଅତୁଳନୀୟ, ଅପ୍ରତିଦ୍ୱନ୍ଦ୍ୱୀ ଥିଲା । ସାନରୁ ବଡ଼ ପର୍ଯ୍ୟନ୍ତ ତାହା ସମସ୍ତଙ୍କୁ 'ନିଆଁଖୁଣ୍ଟା' ଗେଞ୍ଜି ଦେଉଥିଲା, କିନ୍ତୁ ତହିଁରେ ବ୍ୟକ୍ତିଗତ ଦୁରଭିସନ୍ଧି, ଆକ୍ରୋଶ ବା ହୀନ ମନୋବୃତ୍ତି ନ ଥିଲା । ନ୍ୟସ୍ତସ୍ୱାର୍ଥ, ଦୁର୍ନୀତି, କୁଟିଳତା, ଦେଶ ଓ ଜାତି ନାମରେ ନିଜକୁ ବଢ଼ାଇବା, ଅସତ୍ ଅଭିପ୍ରାୟ, ବିଡ଼ାଳ ବୈରାଗ୍ୟ, ତ୍ୟାଗବାହିରେ ଭୋଗର ପ୍ରବଳ ଲିପ୍‌ସା – ଏସବୁକୁ ଚିରି, ମାୟା ଆବରଣକୁ ଉନ୍ମୋଚନ କରି, ଟିକି ନିଖି ବିଦାରି ଯେଉଁ ଭଳି 'ନିଆଁଖୁଣ୍ଟା' ପଦାରେ ପକାଇ ଦେଉଥିଲା, ସମାଲୋଚନା ସାହିତ୍ୟ ଇତିହାସରେ ତାହା ବିରଳ ।''

ସର୍ବୋପରି, ଗୋଦାବରୀଶଙ୍କ ଜୀବନର ମୂଳମନ୍ତ୍ର ଥିଲା ଓଡ଼ିଶା ଦେଶ – ଓଡ଼ିଆ ଜାତି । ଦେଶ, ଜାତିର ଐତିହାସିକ ବିଭବ ହିଁ ଥିଲା ତାଙ୍କର ପ୍ରାଣସୂର୍ଯ୍ୟ । ଦେଶ, ଜାତିର ଦୁର୍ବଳତା ହିଁ ଥିଲା ତାଙ୍କର ଅନୁଶୋଚନା । ଦେଶ, ଜାତିର ପୁନରୁତ୍ଥାନ ହିଁ ଥିଲା ତାଙ୍କର ଆଦର୍ଶ । ସେଥିଲାଗି ସେ ଜୀବନବ୍ୟାପୀ ଲେଖନୀ ଚାଳନା କରିଥିଲେ । ସେଥିପାଇଁ ଆଜୀବନ ଲଢ଼ି ବି ଥିଲେ । କ୍ଷତବିକ୍ଷତ ବି ହୋଇଥିଲେ ।

'ମାତୃଭୂମି' ପତ୍ରିକାର ମନ୍ତବ୍ୟ ତେଣୁ ଯଥାର୍ଥ ମନେହୁଏ – 'ବ୍ୟଙ୍ଗ ଓ ଶ୍ଳେଷଯୁକ୍ତ ସାହିତ୍ୟ ସୃଷ୍ଟି କରିବାରେ ଉତ୍କଳରେ କେବଳ ନୁହେଁ ଭାରତରେ ଏବଂ ପୃଥିବୀରେ ସେ ନିଜର ଆସନ ପ୍ରତିଷ୍ଠିତ କରିଯାଇଛନ୍ତି ।''

**ଦେହାନ୍ତ**

ଜୀବନର ଶେଷ ଭାଗରେ ଗୋଦାବରୀଶ ଦୁରାରୋଗ୍ୟ କର୍କଟ ରୋଗରେ ପୀଡ଼ିତ ହୋଇ ବହୁକାଳ ମୃତ୍ୟୁ ସଙ୍ଗେ ଲଢ଼ାଇ କରି ୧୯୬୫ ମସିହା ନଭେମ୍ବର ମାସ ୨୫ ତାରିଖରେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ସେତେବେଳେ ତାଙ୍କୁ ୬୭ ବର୍ଷ ବୟସ ହୋଇଥିଲା ।

ଗୋଦାବରୀଶଙ୍କ ମୃତ୍ୟୁ ପରେ ଓଡ଼ିଶାର ଚତୁର୍ଦ୍ଦିଗରୁ ଶୁଣାଯାଇଥିଲା – ''ଏ ଲେଖା ଆଉ ହେବ ନାହିଁ ।''

ଅଧ୍ୟାପକ ରାଜକିଶୋର ରାୟ ଶୋକବାର୍ତ୍ତାରେ ଲେଖିଥିଲେ – "ତାଙ୍କ ଲେଖାକୁ କେହି ଅନୁକରଣ କରିପାରିବେ ନାହିଁ, ମାର୍ଜିତ କରିପାରିବେ ନାହିଁ, ଅର୍ଥାତ୍ ତା'ର ଊର୍ଦ୍ଧ୍ୱକୁ ଆଉ କିଛି ନାହିଁ ।"

ଅଧ୍ୟାପକ ଗୋଲକ ବିହାରୀ ଧଳଙ୍କ ଭାଷାରେ – "ସେ ଲୋକର ଦ୍ୱିତୀୟ ସଂସ୍କରଣ ସମ୍ଭବ ହୁଏ ନାହିଁ । ଯେ ଅଛି ଭଲ, ସେହି କେବଳ ତା'ର ନିଜର ତୁଳନା ହୋଇ ରହେ । ପୂଜ୍ୟ ଗୋଦାବରୀଶବାବୁ ଏହିଭଳି ଜଣେ କବି ଓ ଲେଖକ ।"

## ମୂଲ୍ୟାୟନ

ଗୋଦାବରୀଶ ମହାପାତ୍ର ହେଉଛନ୍ତି ବିଂଶ ଶତାବ୍ଦୀର ଏକ ବିସ୍ମୟ । ତାଙ୍କ ଲେଖାବଳୀରେ ଏକ ଅନମନୀୟ, ପ୍ରଚଣ୍ଡ ଓ ତେଜୀୟାନ୍ ପ୍ରତିଭାର ସ୍ୱାକ୍ଷର ଅଙ୍କିତ ହୋଇଛି । ଏହି ପ୍ରତିଭା ବି ପଚାଶ ବର୍ଷରୁ ଊର୍ଦ୍ଧ୍ୱ କାଳ ତାଙ୍କଠାରେ ଆଶ୍ରୟ ଗ୍ରହଣ କରିଥିଲା । ଭାରତୀୟ ସାହିତ୍ୟ କ୍ଷେତ୍ରରେ ବିଶ୍ୱକବି ରବୀନ୍ଦ୍ରନାଥଙ୍କୁ ଛାଡ଼ିଦେଲେ ଏତେ ଦୀର୍ଘକାଳ ଧରି ପ୍ରତିଭାର ବିମଳ ବିଳାସ ଅନ୍ୟ କୁତ୍ରାପି ପରିଦୃଷ୍ଟ ହୁଏ ନାହିଁ । ଗୋଦାବରୀଶ ଦରିଦ୍ର ପରିବାରରେ ଜନ୍ମଗ୍ରହଣ କରିଥିଲେ । ଦାରିଦ୍ର୍ୟର କଶାଘାତ ଭିତରେ ଗୋଟିଏ କ୍ଷୁଦ୍ର କଳିକାରୂପେ ବିକାଶ ଲାଭ କରିଥିଲେ । କେବଳ କଲମକୁ ସମ୍ବଳ କରି ସ୍ୱାଧୀନ ଭାବରେ କବିତା ଅର୍ଚ୍ଚନା କରିବାର ଉନ୍ନତ ଓ ସଭ୍ୟ-ସମାଜ-ପ୍ରଯୁକ୍ତ ପରମ୍ପରା ସେ ଏ ଦେଶରେ ଫିଟାଇଥିଲେ । ଓଡ଼ିଶାର ଅନ୍ଧକାରଗ୍ରସ୍ତ ଗାଁ-ଗହଳିରୁ ବାହାରି ଜୀବନବ୍ୟାପୀ ଅଭାବ ଅନଟନ, ଦାରିଦ୍ର୍ୟ ବିରୋଧରେ ଲଢ଼ି, ନିଜର ଶିକ୍ଷା ବଳରେ ନୁହେଁ – କୁଳାଚାର ଓ ଜନ୍ମଗତ ସଂସ୍କାର ବଳରେ – ନିଜର ଆତ୍ମସମ୍ମାନ ଓ ମୌଳିକତାକୁ ବଜାୟ ରଖି ଆତ୍ମସାଧନା ଓ କଠୋର ଅଧ୍ୟବସାୟ ବଳରେ, ନିର୍ଭୀକ ସାହସୀ ଓ ଅକୁତୋଭୟ ହୋଇ, ଆବଶ୍ୟକବେଳେ ନିଜ ଶରୀରକୁ କ୍ଷତବିକ୍ଷତ କରି; ପ୍ରତିଭାଧର କବି ଗୋଦାବରୀଶ ମହାପାତ୍ର ନିଜକୁ ଓଡ଼ିଶାର ଜନସାଧାରଣଙ୍କ ମଧ୍ୟରେ ଯେପରି ପ୍ରତିଷ୍ଠିତ କରିଯାଇଛନ୍ତି, ତାହାର ପଟାନ୍ତର ନାହିଁ ।

ପ୍ରତିଭାର ଅଭିଶପ୍ତ ଭୂମି ଓଡ଼ିଶାରେ ଗୋଦାବରୀଶ ଜନ୍ମିଥିଲେ । ଯଦି କୌଣସି ସଭ୍ୟ ଓ ଉନ୍ନତ ଦେଶରେ ସେ ଜନ୍ମଗ୍ରହଣ କରିଥାନ୍ତେ ତେବେ ତାଙ୍କ ପ୍ରତିଭା ବିଶ୍ୱ-ବିଶ୍ରୁତ ହୋଇପାରିଥାନ୍ତା, ଏଥିରେ ସନ୍ଦେହ ନାହିଁ ।

❑❑❑



## ଛାନ୍ଦସିକ କବି

# ରାଧାମୋହନ ଗଡ଼ନାୟକ

## [୧୯୧୧-୨୦୦୦]

ରାଧାମୋହନ ଗଡ଼ନାୟକ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଓ ମହତ୍ତ୍ୱପୂର୍ଣ୍ଣ ସ୍ଥାନର ଅଧିକାରୀ । କବିବର ରାଧାନାଥ ରାୟ ଉନବିଂଶ ଶତକର ଉତ୍ତର ଭାଗରେ ଯେଉଁ ଆଧୁନିକ ଓଡ଼ିଆ-କାବ୍ୟ ସାହିତ୍ୟ ସୌଧର ନିର୍ମାଣ କାର୍ଯ୍ୟ ଆରମ୍ଭ କରିଥିଲେ, ବିଂଶ ଶତକରେ ଦୀର୍ଘ ପଚାଶ ବର୍ଷ ଧରି କବି ରାଧାମୋହନ ଗଡ଼ନାୟକ ସେହି ସୌଧର ଏକ ବିଶେଷ ଅଂଶକୁ ସମ୍ପୂର୍ଣ୍ଣ କରିବାରେ ସମର୍ଥ ହୋଇଛନ୍ତି, ଏହା ନିର୍ବିବାଦରେ କୁହାଯାଇପାରେ ।

**ଜନ୍ମ ଓ ଶିକ୍ଷା**

ରାଧାମୋହନ ଗଡ଼ନାୟକ ଢେଙ୍କାନାଳ ଜିଲ୍ଲା (ବର୍ତ୍ତମାନର ଅନୁଗୁଳ)ର କଲଣ୍ଡାପାଳ ଗ୍ରାମରେ ୧୯୧୧ ମସିହା ଅଗଷ୍ଟ ମାସ ୨୫ ତାରିଖରେ ଜନ୍ମଗ୍ରହଣ କରିଥିଲେ । ସେ ପିତାଙ୍କର ଚତୁର୍ଥ ସନ୍ତାନ ଥିଲେ । ତାଙ୍କ ପିତାଙ୍କ ନାମ ମହାଦେବ ଗଡ଼ନାୟକ ଓ ମାତାଙ୍କ ନାମ ଥିଲା ଗୋଲକମଣି । ପିତା ମହାଦେବ ଗ୍ରାମର ମୁଖିଆ ବା ସର୍ବରାକାର ଥିଲେ । ତାଙ୍କ ପୂର୍ବପୁରୁଷମାନଙ୍କର କୌଳିକ ବୃତ୍ତି ଥିଲା ଯୁଦ୍ଧ କରିବା । ସେମାନଙ୍କ ମଧ୍ୟରୁ କେହି ଢେଙ୍କାନାଳ ରାଜା ଜଗଦେବଙ୍କଠାରୁ କଲଣ୍ଡାପାଳ ଗ୍ରାମଟି ପାଇଥିଲେ ଓ ଯୁଦ୍ଧରେ ବୀରତ୍ୱ ପ୍ରଦର୍ଶନ କରିବା ହେତୁ ଗ୍ରାମଟିକୁ ନିଷ୍କର

ଭୂମି ହିସାବରେ ଭୋଗଦଖଲ କରିଆସୁଥିଲେ । କାଳକ୍ରମେ ରାଜଶାସନ ପରିବର୍ତ୍ତେ ଢେଙ୍କାନାଳରେ ଇଂରେଜମାନଙ୍କ ଶାସନ ପ୍ରବର୍ତ୍ତିତ ହେଲା । କ୍ଷତ୍ରିୟମାନଙ୍କର କୌଳିକ ବୃତ୍ତି ମଧ୍ୟ ଲୋପ ପାଇଲା । କବିଙ୍କ ବାଲ୍ୟକାଳ ଆଡ଼କୁ ପୂର୍ବପୁରୁଷମାନଙ୍କର ପୂର୍ବ ଗୌରବ ବା ବୀରତ୍ୱ ଇତିହାସର ବିଷୟବସ୍ତୁ ହୋଇସାରିଥିଲା ।

**ପୃଷ୍ଠଭୂମି**

ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକର ପ୍ରାରମ୍ଭ ବର୍ଷରେ ରାଧାମୋହନଙ୍କ ଆବିର୍ଭାବ ଘଟିଥିଲା । ଏହାର କିଞ୍ଚିତ୍ ପୂର୍ବରୁ ଓ ପରେ ବହୁ ଯୁଗାନ୍ତକାରୀ ଘଟଣାମାନ ଘଟିଯାଇଥିଲା । ସର୍ବ-ଭାରତୀୟ ସ୍ତରରେ ଭାରତୀୟ ଜାତୀୟ କଂଗ୍ରେସର ନେତୃତ୍ୱରେ ଭାରତର ସ୍ୱାଧୀନତା ଆନ୍ଦୋଳନ ଆରମ୍ଭ ହୋଇଯାଇଥିଲା । ଓଡ଼ିଶାରେ ମଧ୍ୟ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ନିମନ୍ତେ ଆନ୍ଦୋଳନ ହେଉଥିଲା । ଏସବୁ ଜାତୀୟ ତଥା ପ୍ରାନ୍ତୀୟ ଘଟଣାବଳୀ ରାଧାମୋହନଙ୍କୁ ଯେ ଗଭୀରଭାବେ ପ୍ରଭାବିତ କରିଥିଲା, ଏଥିରେ ସନ୍ଦେହ ନାହିଁ ।

ରାଧାମୋହନଙ୍କ ବାଲ୍ୟଜୀବନ ପ୍ରକୃତି କୋଳରେ ହିଁ କଟିଥିଲା । ଗାଁ ଚାରିପାଖର ଅନୁପମ ଶୋଭା ସୌନ୍ଦର୍ଯ୍ୟ ତାଙ୍କୁ ଆକର୍ଷିତ ଓ ମୋହିତ କରୁଥିଲା । କଲଣ୍ଡାପାଳର ଉତ୍ତରପାର୍ଶ୍ୱରେ ଲିଙ୍ଗରା ନଦୀ ବହି ଯାଉଥିଲା । ତାହା ପ୍ରତି ରାଧାମୋହନଙ୍କ ବିଶେଷ ଆକର୍ଷଣ ଥିଲା । ଗ୍ରାମର ପୂର୍ବ ପଟରେ ଥିବା ଆମ୍ବତୋଟା, ଜଳାଶୟ, ବ୍ରାହ୍ମଣୀ ଦେବୀଙ୍କ ଆସ୍ଥାନ ପ୍ରଭୃତି କବି ହୃଦୟରେ ଅପୂର୍ବ ପ୍ରକୃତି ପ୍ରେମ ସୃଷ୍ଟି କରିଥିଲା । ଜାଗ୍ରତ କରିଥିଲା ଅଫୁରନ୍ତ କବି କଳ୍ପନା ।

ରାଧାମୋହନଙ୍କ ବାଲ୍ୟକାଳ ଗ୍ରାମରେହିଁ କଟିଥିଲା । ଢେଙ୍କାନାଳରେ ରାଜଶାସନ ଚାଲିଥିଲା । ତେଣୁ ଶିକ୍ଷାର ବ୍ୟବସ୍ଥା ସେପରି ଉନ୍ନତ ନ ଥିଲା । ନିଜ ଗ୍ରାମରେ କୌଣସି ବିଦ୍ୟାଳୟ ନ ଥିଲା । ରାଧାମୋହନଙ୍କ ବିଦ୍ୟାରମ୍ଭ ହେଲା କଲଣ୍ଡାପାଳ ଗ୍ରାମ ନିକଟସ୍ଥ ଲିଙ୍ଗରା ନଦୀର ଉତ୍ତର ଦିଗରେ ଥିବା ଅରାପୁଟ ନିମ୍ନ ପ୍ରାଥମିକ ବିଦ୍ୟାଳୟରେ। ଏଠାର ଶିକ୍ଷା ସମାପ୍ତ କରି ରାଧାମୋହନ ୧୯୧୯ ମସିହାରେ ଗଡ଼ସନ୍ତୀ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ନାମ ଲେଖାଇଲେ । ସେ ମେଧାବୀ ଛାତ୍ର ଥିଲେ । ଦୁଇ ବର୍ଷ ପରେ ସେ ୧୯୨୧ ମସିହାରେ ସମଗ୍ର ଅନୁଗୁଳ ସବ୍‌ଡିଭିଜନରେ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ପ୍ରଥମ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହେଲେ । ଏହାପରେ ସେ ଅନୁଗୁଳ ମଧ୍ୟ-ଇଂରାଜୀ ବିଦ୍ୟାଳୟରେ ନାମ ଲେଖାଇଲେ ।

ଅନୁଗୁଳ ମଧ୍ୟ-ଇଂରାଜୀ ବିଦ୍ୟାଳୟରେ ଛାତ୍ର ଥିବାବେଳେ ରାଧାମୋହନଙ୍କର 'ସହକାର' ସାହିତ୍ୟ ପତ୍ରିକାର ପ୍ରତିଷ୍ଠାତା ସମ୍ପାଦକ ଲକ୍ଷ୍ମୀନାରାୟଣ ସାହୁଙ୍କ ସଙ୍ଗେ ଘଟଣାକ୍ରମେ ବିଦ୍ୟାଳୟର ଛାତ୍ରାବାସରେ ଦେଖାହେଲା । ସେ ସେହି ବିଦ୍ୟାଳୟର ପ୍ରଧାନ ଶିକ୍ଷକଙ୍କର ଅତିଥିଭାବେ ଆସିଥିଲେ । ସେ ଛାତ୍ରାବାସର ଅନ୍ତେବାସୀଙ୍କ ସହ

କଥାବାର୍ତ୍ତା ହେଲାବେଳେ ରାଧାମୋହନଙ୍କ ପ୍ରତିଭାର ସନ୍ଧାନ ପାଇଲେ । ତାଙ୍କର ପାଣ୍ଡୁଲିପିଗୁଡ଼ିକ ପଢ଼ି ଆନନ୍ଦ ପ୍ରକାଶ କଲେ । ରାଧାମୋହନଙ୍କ କେତୋଟି କବିତା ମଧ୍ୟ 'ସହକାର' ପତ୍ରିକାରେ ପ୍ରକାଶ କରାଇଲେ । ରାଧାମୋହନ ଏହାପରେ କବିତା ରଚନା ପ୍ରତି ଅଧିକ ଆଗ୍ରହୀ ହେଲେ ।

ରାଧାମୋହନଙ୍କର ସେହି ସମୟରେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଚନ୍ଦ୍ରଶେଖର ମିଶ୍ରଙ୍କ ସହିତ ସାକ୍ଷାତ୍ ହେଲା । ସେ ଅନୁଗୁଳ ଠାରେ ସ୍ୱାସ୍ଥ୍ୟଗତ କାରଣରୁ ଅବସ୍ଥାନ କରୁଥିଲେ । ସେ ରାଧାମୋହନଙ୍କୁ ଦେଶପ୍ରେମ, ଦେଶସେବା ମନ୍ତ୍ରରେ ଦୀକ୍ଷିତ କଲେ ।

ତରୁଣ ରାଧାମୋହନ କବିତା ରଚନା ଓ ଦେଶପ୍ରେମ ପ୍ରତି ଆକୃଷ୍ଟ ହୋଇ ଅଧିକ ସମୟ ବିନିଯୋଗ କରିବାରୁ ପରୀକ୍ଷାରେ ଭଲ କରିପାରିଲେ ନାହିଁ । ସେ ୧୯୨୯ ମସିହାରେ ଅନୁଗୁଳ ଉଚ୍ଚ ଇଂରାଜୀ ବିଦ୍ୟାଳୟ ପରିତ୍ୟାଗ କରି ଦେବଗଡ଼ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ନାମ ଲେଖାଇଲେ । ସେ କେତେ ମାସ ମାତ୍ର ସେଠାରେ ଅଧ୍ୟୟନ କରିଥିଲେ । ପୂର୍ବରୁ ସେ ପ୍ରାୟ ୧୯୨୮ ମସିହା ସମୟରୁ ବିଭିନ୍ନ ସଙ୍ଗଠନରେ ଯୋଗ ଦେଇଥାନ୍ତି । ଶେଷରେ ୧୯୨୯ ମସିହାରେ ମହାତ୍ମା ଗାନ୍ଧୀଙ୍କ ଦୁର୍ବାର ଆହ୍ୱାନରେ ଆନୁଷ୍ଠାନିକ ଶିକ୍ଷାକୁ ସମ୍ପୂର୍ଣ୍ଣ ଭାବେ ଜଳାଞ୍ଜଳି ଦେଇ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଲେ । ତାଙ୍କର ଛାତ୍ର ଜୀବନ ଶେଷ ହେଲା ।

**ବିବାହ**

ରାଧାମୋହନଙ୍କର ୧୯୩୦ ମସିହାରେ ନିଜ ଗ୍ରାମ ନିବାସୀ ହୃଷୀକେଶ ରାଉତଙ୍କ କନ୍ୟା ଚକୋରୀ ଦେବୀଙ୍କ ସହ ବିବାହ ହେଲା । ବିବାହ ପରେ ସେ ନିଜ ଗୃହରେ ଅବସ୍ଥାନ କରି ସାହିତ୍ୟ ସାଧନରେ ମଗ୍ନ ହେଲେ । ଏଥି ସହିତ କଂଗ୍ରେସର ବିଭିନ୍ନ କାର୍ଯ୍ୟକ୍ରମରେ ସେ ସକ୍ରିୟ ଅଂଶ ଗ୍ରହଣ କଲେ । ଏହି ସମୟରେ ସେ ବିଭିନ୍ନ ସ୍ଥାନ ଗସ୍ତ କରି ଜନଚେତନା ଜାଗ୍ରତ କରିବାରେ ଲାଗିପଡ଼ିଥିଲେ ।

**ପୁନଶ୍ଚ ପରୀକ୍ଷା**

ବିଭିନ୍ନ ଆନ୍ଦୋଳନାତ୍ମକ କାର୍ଯ୍ୟରେ ଲିପ୍ତ ଥିଲେ ମଧ୍ୟ ରାଧାମୋହନ ଶିକ୍ଷା ପ୍ରତି ଉଦାସୀନ ନ ଥିଲେ । ୧୯୩୪ ମସିହାରେ ସେ ଘରୋଇଭାବେ ମାଟ୍ରିକ୍ୟୁଲେସନ ପରୀକ୍ଷା ଦେଲେ । ମାତ୍ର ସେଥିପାଇଁ ତାଙ୍କର ଆବଶ୍ୟକୀୟ ପ୍ରସ୍ତୁତି ନ ଥିଲା । ସେ ପରୀକ୍ଷାରେ ଅକୃତକାର୍ଯ୍ୟ ହେଲେ । ଜୀବନ ଜଞ୍ଜାଳ ମଧ୍ୟ ଅଧିକ ହେବାରୁ ସେ ଚାକିରି ଅନ୍ୱେଷଣରେ ରହିଲେ । ପ୍ରଥମେ ସେ ଅନୁଗୁଳ ରେକର୍ଡ ଅଫିସରେ କପିଷ୍ଟର (ନକଲଦାର) ଭାବେ କାମ କଲେ । ରାଧାମୋହନ କିନ୍ତୁ ସ୍ୱାଧୀନଚେତା ଥିଲେ । ତାଙ୍କର ସ୍ୱାଧୀନ ମନ ଏଥିରେ ସନ୍ତୁଷ୍ଟ ହେଲା ନାହିଁ । ସେ ବିରକ୍ତିରେ ଉକ୍ତ କାର୍ଯ୍ୟ ପରିତ୍ୟାଗ କଲେ ।

୧୯୩୮ ମସିହା ବେଳକୁ ତାଳଚେର ପ୍ରଜାମେଳି ତୀବ୍ର ଆକାର ଧାରଣ କରିଥାଏ । ୧୯୩୯ ମସିହାରେ ରାଧାମୋହନ ଢେଙ୍କାନାଳ ପ୍ରଜା ଆନ୍ଦୋଳନରେ ପ୍ରତ୍ୟକ୍ଷଭାବେ ଯୋଗ ଦେଲେ ।

ସେତେବେଳକୁ ଓଡ଼ିଶାର ଗଡ଼ଜାତମାନଙ୍କରେ ବିଶେଷତଃ ଢେଙ୍କାନାଳରେ ଏକପ୍ରକାର ଅନ୍ଧାରିଶାସନ ଚାଲିଥିଲା । ଏକଛତ୍ରବାଦୀ ରାଜାଙ୍କର ଶୋଷଣ ଓ ନିର୍ଯାତନରେ ପ୍ରଜାଗଣଙ୍କର ଅବସ୍ଥା ଶୋଚନୀୟ ହୋଇପଡ଼ିଥିଲା । କ୍ରମେ ଏହା ଅସହ୍ୟ ହୋଇପଡ଼ିବାରୁ ଗଣ ଆନ୍ଦୋଳନର ସୂତ୍ରପାତ ହେଲା ।

ଢେଙ୍କାନାଳ ନିକଟବର୍ତ୍ତୀ ତାଳଚେର ଗଡ଼ଜାତରେ ଏହି ଆନ୍ଦୋଳନ ଭୀଷଣ ରୂପ ଧାରଣ କଲା । ସେଠାରେ ନିରୀହ ଜନସାଧାରଣଙ୍କ ଉପରେ ଗୁଳି ଚାଳନା ହେଲା । ବହୁ ଲୋକ ମୃତ୍ୟୁ ମୁଖରେ ପଡ଼ିଲେ । ବହୁ ଲୋକଙ୍କୁ କାରାଦଣ୍ଡ ଦିଆଗଲା । କାରାଗାରରେ ବନ୍ଦୀମାନଙ୍କ ଉପରେ ଅମାନୁଷିକ ଅତ୍ୟାଚାର କରାଯାଉଥିଲା । ତାକୁ ସହ୍ୟ କରିବା ଶକ୍ତି ଲୋକମାନଙ୍କର ନ ଥିଲା । ରାଜ-ଅତ୍ୟାଚାରରୁ ନିଷ୍କୃତି ଲାଭ କରିବା ନିମନ୍ତେ ବହୁସଂଖ୍ୟାରେ ଲୋକେ ନିଜର ସ୍ତ୍ରୀ ଓ ପିଲାପିଲି ଧରି ଅନୁଗୁଳକୁ ପଳାଇ ଆସିଲେ । ପ୍ରାୟ ଷାଠିଏ ହଜାର ଲୋକ ନିଜ ଗାଁ ଗଣ୍ଡା ଛାଡ଼ି ତାଳଚେରରେ ଅତି ଦୟନୀୟ ଭାବରେ ପଡ଼ିରହିଲେ । ବିଶେଷତଃ, କୋଶଳା, କମ୍ପଶାଳା, ପାଣିଓଲା, ସନ୍ତରାବନ୍ଧ, ବୁଢ଼ାପଙ୍କ ଓ ପାଣିତରା ପ୍ରଭୃତି ଗ୍ରାମରୁ ପଳାଇଆସି ଅନୁଗୁଳରେ ଛୋଟ ଛୋଟ କୁଡ଼ିଆ ଘର ନିର୍ମାଣ କରି ସେମାନେ ବାସ କରିବାକୁ ଲାଗିଲେ । ଏହା ହଜ୍‌ରାତ୍ କ୍ୟାମ୍ପ ନାମରେ ବିଦିତ । ତତ୍କାଳୀନ ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ପକ୍ଷରୁ ସେହି ବାସ୍ତୁହରା ଲୋକଙ୍କୁ ସମସ୍ତ ପ୍ରକାର ସାହାଯ୍ୟ ଯୋଗାଇ ଦିଆଗଲା ।

ଏହି ଗଣ-ଆନ୍ଦୋଳନର ନେତୃତ୍ୱ ନେଇଥିଲେ ଢେଙ୍କାନାଳର ପ୍ରଖ୍ୟାତ ନେତା ପବିତ୍ରମୋହନ ପ୍ରଧାନ ଓ ସାରଙ୍ଗଧର ଦାସ । ସେମାନଙ୍କ ସହ ରାଧାମୋହନ ମଧ୍ୟ ରହି ଏହି କ୍ୟାମ୍ପଗୁଡ଼ିକର ପରିଚାଳନା କରୁଥିଲେ । ରାଧାମୋହନଙ୍କ ରଚିତ ଉନ୍ମାଦନାପୂର୍ଣ୍ଣ ସଙ୍ଗୀତମାନ ଏହି କ୍ୟାମ୍ପମାନଙ୍କରେ ଗାନ କରାଯାଉଥିଲା । ସେଗୁଡ଼ିକ ମଧ୍ୟ ଶରଣାର୍ଥୀମାନଙ୍କ ମନରେ ଅଭୂତପୂର୍ବ ଉତ୍ସାହ ଓ ଉନ୍ମାଦନା ସୃଷ୍ଟି କରୁଥିଲା । ସେହି ସଙ୍ଗୀତର ଗୋଟିଏ ପଦ –

''ରାଇଜ ଛାଡ଼ି ଯେ ପଳାଇ ଆସିଚୁ ଆମେ
ଭୀରୁ ବୋଲି ଭାବୁଥିବ ତୁମେ ମାନେ
ନୋହୁ ଆମେ ପ୍ରାଣରଙ୍କ
ଆମେରେ ଏଇଠି ବଜାଇବୁ ଆଜ
ମଣିଷର ଜୟ ଶଙ୍ଖ ।''

## ବାରିପଦା ରହଣି

ରାଧାମୋହନଙ୍କୁ ଘର ଚଳାଇବାକୁ ପୁଣି ଚାକିରି କରିବାକୁ ପଡ଼ିଲା । ସେ ବାରିପଦା ଗଲେ । ପୁଲିସ୍ ସୁପରିଣ୍ଟେଣ୍ଡେଣ୍ଟ ରାମଚନ୍ଦ୍ର ଦାସଙ୍କ ପିଲାଙ୍କୁ ଘରୋଇ ଶିକ୍ଷକ ଭାବେ ପଢ଼ାଇଲେ । ଜ୍ଞାନ ଆହରଣ ଓ କବିତା ରଚନାପାଇଁ ବାରିପଦା ରହଣି ଅତ୍ୟନ୍ତ ଅନୁକୂଳ ହେଲା । ସେଠାରେ ଥିଲାବେଳେ ପ୍ରତ୍ନତାତ୍ତ୍ୱିକ, ଗବେଷକ ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟଙ୍କ ବ୍ୟକ୍ତିଗତ ପାଠାଗାରରେ ଥିବା ହିନ୍ଦୀ, ଇଂରାଜୀ, ସଂସ୍କୃତ, ବଙ୍ଗଳା ଓ ଓଡ଼ିଆର ବହୁ ଗ୍ରନ୍ଥ ଅଧ୍ୟୟନ କରିବାର ସୁଯୋଗ ପାଇଲେ । ଏହା ରାଧାମୋହନଙ୍କୁ ମଧ୍ୟ ବିଶେଷ ଆନନ୍ଦ ଦେଲା । ମାତ୍ର ସେଠାରେ ସେ ବେଶି ଦିନ ରହିପାରି ନ ଥିଲେ । ପ୍ରାୟ ଏକ ବର୍ଷ ଗୃହଶିକ୍ଷକ ଭାବେ କାର୍ଯ୍ୟ କଲାପରେ ସେ ତାହାକୁ ଛାଡ଼ି ଗୃହକୁ ଫେରିଆସିଲେ । ବାରିପଦାର ମାଦକତାଭରା ସ୍ମୃତି ସାକ୍ଷୀ ହେଉଛି ତାଙ୍କର 'ବାରିପଦା' କବିତା ।

''ରସ-ରାସ କଳା-କୁଞ୍ଜ ଭୂମି ତୁ
ସୁନ୍ଦରୀ ନର୍ମଦା
ବାରିପଦା, ବାରିପଦା ।
ପ୍ରବାସୀ କବିର ଅନ୍ତର ତଳେ ସଞ୍ଚିତ ତୁହି ସଦା
ବାରିପଦା, ବାରିପଦା ...।'' ଇତ୍ୟାଦି

ବାରିପଦାରୁ ଆସିଲାପରେ ରାଧାମୋହନ କଂଗ୍ରେସ କାମରେ ପୁଣି ଲାଗିଲେ । ଏହି ସମୟରେ କଂଗ୍ରେସର ତୁଙ୍ଗନେତା ଥିଲେ ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ ଓ ସାରଙ୍ଗଧର ଦାସ ପ୍ରଭୃତି । ସେ ସେମାନଙ୍କ ସହ ମିଶି କାର୍ଯ୍ୟ କଲେ ।

## ଚାକିରି

୧୯୪୬ ମସିହାରେ ରାଧାମୋହନ ଭାରତ ଇଣ୍ଡଷ୍ଟ୍ରିଆଲ ବ୍ୟାଙ୍କ ଅନୁଗୁଳ ଶାଖାର ବ୍ରାଞ୍ଚ ମ୍ୟାନେଜରଭାବେ ଦାୟିତ୍ୱ ଗ୍ରହଣ କଲେ । ଏହା ସହିତ ଅନୁଗୁଳଠାରେ ଯୋଗାଣ ବିଭାଗର ବେସରକାରୀ ସମ୍ପାଦକ (Non-official Secretary) ପଦବୀ ମଧ୍ୟ ଗ୍ରହଣ କଲେ । ମାତ୍ର ଅଧିକ ଦିନ ସେ ପଦବୀରେ ରହିବା ମଧ୍ୟ ତାଙ୍କ ଅଦୃଷ୍ଟରେ ନ ଥିଲା ।

ସବୁ ସରକାରୀ ଓ ବେସରକାରୀ ଚାକିରି ମଧ୍ୟରେ ରାଧାମୋହନ ମାଟ୍ରିକ୍ୟୁଲେସନ ପରୀକ୍ଷା ଦେବାକୁ ଚିନ୍ତା କରୁଥିଲେ । ଉଚ୍ଚ ଶିକ୍ଷା ଲାଭ ନିମନ୍ତେ ତାଙ୍କ ପ୍ରାଣ ଉଚ୍ଚାଟ ହେଉଥିଲା । ଫଳରେ ସେ ପରୀକ୍ଷା ଦେବାପାଇଁ ପ୍ରସ୍ତୁତି ଚଳାଇଲେ ଓ ଘରୋଇଭାବେ ପରୀକ୍ଷା ଦେଲେ । ଏଥର ସେ ସଫଳତା ଲାଭ କଲେ; ମାଟ୍ରିକ୍ୟୁଲେସନ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲେ । ଉଚ୍ଚଶିକ୍ଷାପାଇଁ ଥିବା ପ୍ରତିବନ୍ଧକ ତାଙ୍କର ଦୂର ହୋଇଗଲା ଓ ସେ ଖ୍ରୀଷ୍ଟ କଲେଜରେ ଆଇ.ଏ.ଶ୍ରେଣୀରେ ନାମ ଲେଖାଇଲେ ।

ରାଧାମୋହନ ଆଇ. ଏ. ଶ୍ରେଣୀରେ ନାମ ଲେଖାଇ କଲେଜ ଶିକ୍ଷା ଜୀବନ ଆରମ୍ଭ କଲାବେଳକୁ ତାଙ୍କ ରଚିତ 'କାବ୍ୟନାୟିକା' ଆଇ. ଏ. ଶ୍ରେଣୀରେ ପାଠ୍ୟପୁସ୍ତକ ଭାବେ ଚଳୁଥିଲା । ଫଳରେ ରାଧାମୋହନ ଶିକ୍ଷକ ତଥା ଛାତ୍ରମାନଙ୍କ ମଧ୍ୟରେ ବେଶ୍ ପରିଚିତ ହୋଇଥିଲେ । ୧୯୪୭ ମସିହାରେ ସେ କଲେଜର ଛାତ୍ରସଂସଦର ସଭାପତି ଭାବେ ନିର୍ବାଚିତ ହେଲେ ।

ଖ୍ରୀଷ୍ଟ କଲେଜରେ ପଢୁଥିବାବେଳେ ରାଧାମୋହନ କଟକର ମଙ୍ଗଳାବାଗରେ ଗୋଟିଏ ଘରଭଡ଼ା ନେଇ ସପରିବାର ରହୁଥିଲେ । କ୍ରମେ ତାଙ୍କ ରଚିତ 'କାଳିଦାସ', 'ବିପ୍ଳବୀ ରାଧାନାଥ' ଓ 'କାବ୍ୟନାୟିକା' ଇତ୍ୟାଦି ପୁସ୍ତକ ପ୍ରକାଶ ପାଇଲା । ସେ ସାହିତ୍ୟିକ ମହଲରେ ଆଦର ଲାଭ କଲେ । ତାଙ୍କ କଟକ ବସାରେ ବହୁ ଲେଖକ ତଥା ସାହିତ୍ୟିକମାନଙ୍କର ସମାବେଶ ହେଲା । ସେମାନଙ୍କ ସଙ୍ଗେ ତାଙ୍କର ଆଳାପ-ଆଲୋଚନା ହେଉଥିଲା । ଫଳରେ କଲେଜ ଶିକ୍ଷା ବାଧାପ୍ରାପ୍ତ ହେଲା । ରାଧାମୋହନ ତଥାପି ୧୯୪୯ ମସିହାରେ ଆଇ.ଏ. ପରୀକ୍ଷା ଦେଲେ । ମାତ୍ର କେତୋଟି ବିଷୟରେ ନିଶ୍ଚିତଭାବେ ଅକୃତକାର୍ଯ୍ୟ ହେବେ ବୋଲି ଧାରଣା ହେବାରୁ ସେ ଅନ୍ୟ ବିଷୟମାନଙ୍କରେ ପରୀକ୍ଷା ଦେଲେ ନାହିଁ । ଫଳରେ ଆଇ.ଏ. ପରୀକ୍ଷାରେ ପାସ୍ କରିପାରିଲେ ନାହିଁ । ତାଙ୍କ ଆନୁଷ୍ଠାନିକ ଶିକ୍ଷା ମଧ୍ୟ ଏଇଠି ସମାପ୍ତ ହେଲା ।

ରାଧାମୋହନ ଏହାପରେ ନିଜ ଗ୍ରାମକୁ ଫେରିଆସି ପାରିବାରିକ କୃଷିକାର୍ଯ୍ୟରେ ମନ ଦେଲେ । ଏଥି ସଙ୍ଗେ ସାରସ୍ୱତ ସାଧନରେ ମଧ୍ୟ ନିଜକୁ ନିୟୋଜିତ କଲେ ।

୧୯୫୫ ମସିହାରେ ରାଧାମୋହନ ଏକ ମାସିକ ପତ୍ରିକାର ସମ୍ପାଦନା ଦାୟିତ୍ୱ ଗ୍ରହଣ କଲେ । ସେଥିରେ ଓଡ଼ିଶାର ତରୁଣ ଓ ପ୍ରବୀଣ ଲେଖକମାନଙ୍କର ଲେଖା ପ୍ରକାଶ ପାଇଲା । ମାତ୍ର ୩-୪ଟି ସଂଖ୍ୟା ସର୍ବମୋଟରେ ପ୍ରକାଶ ପାଇବାପରେ ତାହା ବନ୍ଦ ହୋଇଗଲା ।

୧୯୫୬ ମସିହାରେ ରାଧାମୋହନଙ୍କୁ ଅଦୃଷ୍ଟ ପୁଣି ଚାକିରି କ୍ଷେତ୍ରକୁ ଟାଣିନେଲା । ସେହି ବର୍ଷ ରାଧାମୋହନ ଶିକ୍ଷାବିଭାଗରେ ପ୍ରଡକ୍ସନ୍ ଅଫିସରଭାବେ ଯୋଗ ଦେଲେ । ଡକ୍ଟର ମାୟାଧର ମାନସିଂହ ସମ୍ବଲପୁର ମହାବିଦ୍ୟାଳୟର ଅଧ୍ୟକ୍ଷ ଥିଲେ । ସେ ସେଥିରୁ ଆସି ପ୍ରୌଢ଼ ଶିକ୍ଷା ଅଫିସର ଭାବେ ଯୋଗ ଦେଲେ । ନବସାକ୍ଷରଙ୍କପାଇଁ ନୂତନ ସାହିତ୍ୟ ସୃଷ୍ଟି କରିବାପାଇଁ ସେ ଉଦ୍ୟମ କଲେ । ସେମାନଙ୍କପାଇଁ ପୁସ୍ତକମାନ ରଚିତ ହେଲା ଓ ଉତ୍ତମ ପୁସ୍ତକଗୁଡ଼ିକ କ୍ରୟ କରାଗଲା । ପୁସ୍ତକଗୁଡ଼ିକ କ୍ରୟ କରିବାପାଇଁ ଏକ କମିଟି ଗଢ଼ାଗଲା । ସେହି କମିଟି ବହୁ ପୁସ୍ତକ ନିର୍ବାଚନ କଲେ । ସେଥିମଧ୍ୟରେ ରାଧାମୋହନଙ୍କ ବହୁଳଭାବେ ପଠିତ ଓ ବହୁ ପ୍ରଶଂସିତ କବିତା ପୁସ୍ତକ 'ଉତ୍କଳିକା' ସ୍ଥାନ ପାଇଥିଲା । 'ଉତ୍କଳିକା' ବହୁ ବର୍ଷ ଧରି ଓଡ଼ିଶାର ବିଦ୍ୟାଳୟମାନଙ୍କରେ ପାଠ୍ୟପୁସ୍ତକ ରୂପେ ଚଳୁଥିଲା । ପୁସ୍ତକଟିର

ନଅଟି ସଂସ୍କରଣ ମଧ୍ୟ ହୋଇସାରିଥିଲା । କମିଟି ସେହି ପୁସ୍ତକର ପୃଷ୍ଠା ଦୃଷ୍ଟିରୁ ଚୟନ ସମୟରେ ତା'ର କାଞ୍ଚନିକ ମୂଲ୍ୟ ଦୁଇ ଟଙ୍କା କଲେ; ସେହି ପୁସ୍ତକରେ କିନ୍ତୁ ଅଧିକ ପୃଷ୍ଠା ଓ ଚିତ୍ର ଥିବା କାରଣ ଦର୍ଶାଇ 'ଉତ୍କଳିକା'ର ଦାମ ଅଢ଼େଇଟଙ୍କା ରଖିବାକୁ ପ୍ରକାଶକ ଆବେଦନ କଲେ । ଦୁଇ ଟଙ୍କା ରଖିଲେ ପ୍ରକାଶକଙ୍କୁ ବିପୁଳ କ୍ଷତି ସହିବାକୁ ପଡ଼ିବ ବୋଲି ଆବେଦନପତ୍ରରେ ଜଣାଇଲେ । ସାମାଜିକ ଶିକ୍ଷା ଅଫିସର୍ ଭାବେ ଡଃ ମାନସିଂହ ଏ ବିଷୟରେ ବସ୍ତୁ ଦୃଷ୍ଟିରୁ ବିଚାର କରି ପ୍ରକାଶକଙ୍କ ଆପତ୍ତି ଯଥାର୍ଥ ବୋଲି ମନେ କଲେ । ଫଳରେ 'ଉତ୍କଳିକା' ଖଣ୍ଡ ପ୍ରତି ଅଢ଼େଇ ଟଙ୍କା ଦରରେ ସାମାଜିକ ଶିକ୍ଷାବିଭାଗଦ୍ୱାରା କ୍ରୟ କରାଗଲା । ମାତ୍ର ଏହି ବର୍ଦ୍ଧିତ ମୂଲ୍ୟ ଉଚ୍ଚ ଶିକ୍ଷାବିଭାଗର ନିର୍ଦ୍ଦେଶକଙ୍କ ଅନୁମୋଦନ ଲାଭ କଲା ନାହିଁ ।

ଡଃ ମାୟାଧର ମାନସିଂହ ଓ ରାଧାମୋହନଙ୍କ ବିରୋଧରେ ଦୁର୍ନୀତି ଅଭିଯୋଗ ହେଲା । ଏହି ଅଭିଯୋଗ ପ୍ରଥମେ 'ସମାଜ' ପତ୍ରିକାରେ ପ୍ରକାଶ ପାଇଲା । ଡଃ ମାନସିଂହ ମଧ୍ୟ ସଙ୍ଗେ ସଙ୍ଗେ ସ୍ପଷ୍ଟୀକରଣ ଦେଇ ତା'ର ପ୍ରକାଶ ପାଇଁ 'ସମାଜ' ପତ୍ରିକାକୁ ପଠାଇଲେ । ମାତ୍ର ତାହା ସେଥିରେ ପ୍ରକାଶିତ ହେଲା ନାହିଁ । ତେଣୁ ଡଃ ମାନସିଂହ ବାଧ୍ୟ ହୋଇ ତାଙ୍କ ସ୍ପଷ୍ଟୀକରଣକୁ ଅନ୍ୟ ଏକ ଦୈନିକ 'ପ୍ରଜାତନ୍ତ୍ର'କୁ ପଠାଇଲେ । ତାହା 'ପ୍ରଜାତନ୍ତ୍ର'ରେ ୧୯୫୭ ମସିହା ଜୁଲାଇ ମାସ ୩ ତାରିଖରେ ପ୍ରକାଶ ପାଇଲା । ମାତ୍ର ଡଃ ମାନସିଂହ ସରକାରଙ୍କ କୋପରୁ ରକ୍ଷା ପାଇଲେ ନାହିଁ । ଦଣ୍ଡସ୍ୱରୂପ ଡଃ ମାୟାଧର ମାନସିଂହଙ୍କୁ ଏକ କଲେଜକୁ ଇଂରାଜୀ ଅଧ୍ୟାପକ ଭାବେ ବଦଳି କରାଗଲା । ସେ ଓଡ଼ିଶାର ଏକ ପ୍ରଖ୍ୟାତ ପ୍ରଥମ ଶ୍ରେଣୀର କଲେଜ – ସମ୍ବଲପୁର ଗଙ୍ଗାଧର ମେହେର କଲେଜରେ ଆଠ ବର୍ଷ କାଳ ଅଧ୍ୟକ୍ଷ ଭାବେ କାର୍ଯ୍ୟ କରିଥିଲେ । ମାତ୍ର ତାଙ୍କଠାରୁ କନିଷ୍ଠ ଜଣେ ଅଧ୍ୟକ୍ଷଙ୍କ ତଳେ କାମ କରିବାକୁ ଆଦେଶ ମିଳିଲା । ଏହାଛଡ଼ା ଅନ୍ୟାନ୍ୟ ଅସୁବିଧା ତାଙ୍କୁ ଭୋଗ କରିବାକୁ ପଡ଼ିଲା ।

ଡଃ ମାନସିଂହ ରାଧାମୋହନଙ୍କ ଉପରିସ୍ଥ କର୍ମଚାରୀ ଥିଲେ । ସେ ତାଙ୍କ କାର୍ଯ୍ୟରେ ସନ୍ତୁଷ୍ଟ ଥିବା ଶିକ୍ଷାବିଭାଗର ନିର୍ଦ୍ଦେଶକଙ୍କୁ ଜଣାଇଥିଲେ । ମାତ୍ର ତାଙ୍କର ପରାମର୍ଶ ବିଚାରକୁ ନିଆଗଲା ନାହିଁ । ରାଧାମୋହନଙ୍କଠାରୁ ମାମୁଲି କୈଫିୟତ ମଧ୍ୟ ତଲବ କରାଗଲା ନାହିଁ । ତାଙ୍କ ବିଷୟରେ କୌଣସି ଅନୁସନ୍ଧାନ ମଧ୍ୟ କରାଯାଇ ନ ଥିଲା । ଚାକିରିରୁ ସଙ୍ଗେ ସଙ୍ଗେ ତାଙ୍କୁ ବହିଷ୍କାର କରାଗଲା । ସାମାଜିକ ଶିକ୍ଷାବିଭାଗ ଗ୍ରାମ୍ୟ ପାଠାଗାରମାନଙ୍କପାଇଁ କିଣି ନେଇଥିବା 'ଉତ୍କଳିକା'ର ବର୍ଦ୍ଧିତ ମୂଲ୍ୟ ମଧ୍ୟ ଫେରାଇ ନିଆଗଲା ।

ଏଭଳି ଦୁଃଖଦ ଘଟଣାରେ ରାଧାମୋହନ ବ୍ୟଥିତ ହୋଇପଡ଼ିବା ସ୍ୱାଭାବିକ । ସେ ତାଙ୍କର ପ୍ରତିକ୍ରିୟା ପ୍ରକାଶ କଲେ ଦୁଇଟି କବିତାରେ – 'କଳଙ୍କିତ ମୁହିଁ କଳାକାର' ଓ 'ବନ୍ଦନା ଲାଗି ଜଳୁଛି ଦୀପାଳି' । ଏ ଦୁଇ କବିତା ସେତେବେଳେ ଓଡ଼ିଶାର ପ୍ରଖ୍ୟାତ ପତ୍ରିକା 'ଝଙ୍କାର'ରେ ପ୍ରକାଶିତ ହୋଇଥିଲା । ତା'ର ଗୋଟିଏ ପାଦ –

''କଳା ସୃଷ୍ଟିର ଉପଯୋଗ କରି
ବରିନେଲି ମୋର କଳାର କାଳ,
ଆହତ ବୁକୁରେ ଫେରିଲି ମୋ ପଥେ
କାଳିମା ଘେନି ମୋ ପୁରସ୍କାର ।''
ଚମତ୍କାର
ଘଟଣା ଭିତରେ କିଏ ସେ ପଶୁଚି
ରଚନା ହେଉଛି ଦୁର୍ନିବାର ।''

ରାଧାମୋହନଙ୍କ ଚାକିରି ଜୀବନ କିନ୍ତୁ ଏତିକିରେ ଶେଷ ହୋଇଯାଇ ନ ଥିଲା । ସେହି ଶିକ୍ଷାବିଭାଗ ପକ୍ଷରୁ ସେ ଭାରତ ସରକାରଙ୍କ ଅଂଶବିଶେଷ ଭାବେ ପରେ ନିଯୁକ୍ତି ପାଇଲେ ।

ଭାରତୀୟ ମୁକ୍ତି ସଂଗ୍ରାମରେ ଅଂଶଗ୍ରହଣ କରି ପ୍ରାଣବଳି ଦେଇଥିବା ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ସ୍ମରଣୀୟ କରିବା ନିମନ୍ତେ ଭାରତ ସରକାର ସ୍ୱାଧୀନତା ସଂଗ୍ରାମୀମାନଙ୍କର ଏକ ପରିଚୟ ଗ୍ରନ୍ଥ (Who's Who of Indian martyrs) ପ୍ରକାଶ କରିବାକୁ ସ୍ଥିର କଲେ । ଏ କାର୍ଯ୍ୟ ସମ୍ପାଦନ ନିମନ୍ତେ ଓଡ଼ିଶା ସରକାରଙ୍କ ଶିକ୍ଷା ଓ ସାଂସ୍କୃତିକ ବ୍ୟାପାର ବିଭାଗକୁ ଦାୟିତ୍ୱ ଦିଆଗଲା । ଉତ୍କଳର ଏହି ପରିଚୟ ଗ୍ରନ୍ଥ ସଙ୍କଳନ ନିମନ୍ତେ ରାଧାମୋହନଙ୍କୁ ନିଯୁକ୍ତି ଦିଆଗଲା । ରାଧାମୋହନ ଜଣେ ସ୍ୱାଧୀନତା ସଂଗ୍ରାମୀ ହୋଇଥିବାରୁ ଏହି କାର୍ଯ୍ୟ ଦାୟିତ୍ୱ ନେବାକୁ ସମ୍ମତ ହେଲେ । ସୌଭାଗ୍ୟକୁ ସେ ପୂର୍ବ ପରିଚିତ ନେତା, ସ୍ୱାଧୀନତା ସଂଗ୍ରାମୀ ତଥା ତତ୍କାଳୀନ ଓଡ଼ିଶାର ଶିକ୍ଷାମନ୍ତ୍ରୀ ପବିତ୍ରମୋହନ ପ୍ରଧାନଙ୍କର ଅକୁଣ୍ଠ ସମର୍ଥନ ପାଇଲେ । ସେ ପବିତ୍ରବାବୁଙ୍କ ସହ ରାଜ୍ୟ ସାରା ବୁଲି ସ୍ୱାଧୀନତା ସଂଗ୍ରାମୀମାନଙ୍କ ବିଷୟରେ ବହୁ ତଥ୍ୟ ସଂଗ୍ରହ କଲେ । ସେହି ପରିଚୟ ପୁସ୍ତକ (Compilation of Who's is Who) ମଧ୍ୟ କ୍ରମେ ପ୍ରକାଶିତ ହେଲା ।

ଓଡ଼ିଶା ସାହିତ୍ୟ ଏକାଡେମୀର 'କୋଣାର୍କ' ନାମକ ଏକ ତ୍ରୈମାସିକ ପତ୍ରିକା ପ୍ରକାଶ ପାଉଥିଲା । ମାତ୍ର ଗୋଟିଏ ମାସିକ ସାହିତ୍ୟ ପତ୍ରିକା ପ୍ରକାଶପାଇଁ ଏକାଡେମୀ ସ୍ଥିର କଲା । ଏହି ପତ୍ରିକାର ନାମ 'ନୂତନ ଭୂମିକା' ରହିବାର ମଧ୍ୟ ନିଷ୍ପତ୍ତି ହେଲା । ରାଧାମୋହନ ଏହାର ସମ୍ପାଦକଭାବେ ନିର୍ବାଚିତ ହେଲେ । ତେଣୁ ରାଧାମୋହନ ସ୍ୱାଧୀନତା ସଂଗ୍ରାମୀମାନଙ୍କ Who's Who, ସଙ୍କଳନ ଦାୟିତ୍ୱ ଛାଡ଼ି ଓଡ଼ିଶା ସାହିତ୍ୟ ଏକାଡେମୀରେ ଯୋଗ ଦେଲେ । ଏହା ୧୯୬୩ ମସିହାର ଘଟଣା । 'ନୂତନ ଭୂମିକା'ର ନାମ ପରିବର୍ତ୍ତନ କରାଯାଇ 'ସାହିତ୍ୟ ପତ୍ରିକା' ରଖାଗଲା ।

ସର୍ବଶ୍ରୀ କାଳିନ୍ଦୀଚରଣ ପାଣିଗ୍ରାହୀ, ନିତ୍ୟାନନ୍ଦ ମହାପାତ୍ର ଓ ରାଧାମୋହନ ଗଡ଼ନାୟକଙ୍କୁ ନେଇ ଏକ ସମ୍ପାଦନା ମଣ୍ଡଳୀ ବି ଗଢ଼ାଗଲା । ମାତ୍ର ତହିଁରେ ରାଜନୀତି ଅନୁପ୍ରବେଶ କରିବାରୁ ପତ୍ରିକା ପ୍ରକାଶ ପାଇପାରିଲା ନାହିଁ ।

୧୯୬୫ ମସିହାରେ ରାଧାମୋହନ ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟ୍ ସଭ୍ୟ ଭାବେ ନିର୍ବାଚିତ ହେଲେ । ଏହାର କିଛି ଦିନ ପରେ ୧୯୬୬ ଏପ୍ରିଲ ମାସରେ ଓଡ଼ିଶାର ବିଶିଷ୍ଟ ସାହିତ୍ୟ ସଙ୍ଗଠନ 'ଉତ୍କଳ ସାହିତ୍ୟ ସମାଜ'ର ସଭାପତି ଭାବେ ନିର୍ବାଚିତ ହେଲେ । ଏହାଛଡ଼ା ସେ ଓଡ଼ିଶା ସାହିତ୍ୟ ଏକାଡେମୀର ସଭ୍ୟ ଓ ଓଡ଼ିଆ ଏନ୍‌ସାଇକ୍ଲୋପେଡ଼ିଆ ସବ୍ କମିଟିର ସଭାପତି ଥିଲେ ।

**କବିତା**

ମାତ୍ର ଆଠ ବର୍ଷ ବୟସରେ ରାଧାମୋହନ ରଚନା କରିଥିଲେ ପ୍ରଥମ କବିତା – 'ତାରା' । ସମ୍ଭବତଃ ରାତ୍ରିର ଅନ୍ଧକାରରେ ଏକ ଉଜ୍ଜ୍ୱଳ, ସୁନ୍ଦର ଓ ଝଲମଲ କରୁଥିବା ତାରା ତାଙ୍କୁ ମୁଗ୍ଧ କରିଥିଲା । ମାତ୍ର ସେ କବିତା ଏବେ ମିଳୁ ନାହିଁ । କବିଙ୍କ କଥା ଅନୁସାରେ ସେହି ଲେଖିବାର ମୂଳରେ କୌଣସି ହେତୁ ବା କାରଣ ନ ଥିଲା । ଆକାଶ, ପ୍ରଭାତ, ସନ୍ଧ୍ୟା, ଜ୍ୟୋତ୍ସ୍ନା, ବିଲ, ବଣ ପ୍ରଭୃତି ଯେମିତି ତାଙ୍କୁ ସୁନ୍ଦର ଦିଶୁଥିଲା, ତାରା ମଧ୍ୟ ସେହିପରି ତାଙ୍କୁ ସୁନ୍ଦର ଦିଶୁଥିଲା । ତାହା ତାଙ୍କ ପାଇଁ ସୌନ୍ଦର୍ଯ୍ୟବୋଧ ଓ ଆନନ୍ଦବୋଧର ଏକ ପ୍ରତୀକ ମାତ୍ର ଥିଲା । ନିମ୍ନ ପ୍ରାଥମିକ ଶିକ୍ଷା ଶେଷ କରି ରାଧାମୋହନ ଉଚ୍ଚ ପ୍ରାଥମିକ ଶିକ୍ଷା ଆରମ୍ଭ କଲେ । ସେହି ସମୟରୁହିଁ ସେ କବିତା ରଚନା ପ୍ରତି ଆକୃଷ୍ଟ ହେଲେ । ମଧ୍ୟ-ଇଂରାଜୀ ବିଦ୍ୟାଳୟରେ ଅଧ୍ୟୟନ କଲାବେଳେ ତାଙ୍କ ସୃଜନ ପ୍ରତିଭା ତାଙ୍କର ସହପାଠୀ ଓ ଶିକ୍ଷକ ମହଲରେ ଅଛପା ରହି ନ ଥିଲା । ସ୍କୁଲର ତତ୍କାଳୀନ ପ୍ରଧାନ ଶିକ୍ଷକ ଅକ୍ଷୟ କୁମାର ବନ୍ଦୋପାଧ୍ୟାୟ ଓ ବାମନଚରଣ ମହାନ୍ତି ରାଧାମୋହନଙ୍କୁ ପାଖକୁ ଡାକି ତାଙ୍କ କବିତାଗୁଡ଼ିକ ପଢ଼ି ତାଙ୍କୁ ବିଶେଷ ଉତ୍ସାହ ପ୍ରଦାନ କରିଥିଲେ ।

ପୁଣି 'ସହକାର' ସାହିତ୍ୟ ପତ୍ରିକାର ପ୍ରତିଷ୍ଠାତା ସମ୍ପାଦକ ଲକ୍ଷ୍ମୀନାରାୟଣ ସାହୁଙ୍କ ସହ ରାଧାମୋହନଙ୍କର ଘଟଣାକ୍ରମେ ଅନୁଗୁଳ ଉଚ୍ଚ ଇଂରାଜୀ ବିଦ୍ୟାଳୟର ଛାତ୍ରାବାସରେ ସାକ୍ଷାତ୍ ହେଲା । ସେ ରାଧାମୋହନଙ୍କ ପାଣ୍ଡୁଲିପି ପାଠ କରି ତାଙ୍କ ଅନ୍ତର୍ନିହିତ ପ୍ରତିଭାର ପରିଚୟ ପାଇଲେ ଓ 'ସହକାର'ରେ ପ୍ରକାଶପାଇଁ ଲେଖା ପଠାଇଲେ ତାଙ୍କୁ ପ୍ରକାଶ କରିବାର ପ୍ରତିଶ୍ରୁତି ମଧ୍ୟ ଦେଲେ । ରାଧାମୋହନଙ୍କୁ ଏହା ଗଭୀରଭାବେ ଅଭିଭୂତ କରିପକାଇଲା । ତାଙ୍କର ମନୋଭାବକୁ ସେ ଏକ କବିତାରେ ପ୍ରକାଶ କରିଥିଲେ –

''ମୋହର କବିତା ପଢ଼ି କହିଥିଲେ
ଆନନ୍ଦ ତୁମର
ତୁମର କବିତା ବେଶ୍ ସରସ ସୁନ୍ଦର
ତୁମେ ଦିନେ ମୋ ଦେଶରେ ହେବ ବଡ଼ କବି,
ମୁଁ ଦେଖି ପାରୁଛି ଆଜି ଆସନ୍ତାର ଛବି ।
× × ×
ତୁମର ଉତ୍ସାହ ବାଣୀ
ଦେଇଅଛି ମୋତେ ଉଦ୍‌ବୋଧନ
କବିତା ପ୍ରକାଶ ଠାରୁ ବେଶି ତୃପ୍ତି
ପାଇଛି ମୋ ମନ ।''

ରାଧାମୋହନ 'ସହକାର'ରେ ପ୍ରକାଶପାଇଁ ଇଂରେଜ କବି ସାର୍ ୱାଲଟର୍ ସ୍କଟ୍‌ଙ୍କ କବିତା 'Patriotism'ର ଓଡ଼ିଆ ଅନୁବାଦ କଲେ ଓ ତା'ର ପ୍ରକାଶପାଇଁ ଲକ୍ଷ୍ମୀନାରାୟଣବାବୁଙ୍କ ପାଖକୁ ପଠାଇଲେ । ତାହା ଅବଶ୍ୟ ପ୍ରକାଶ ପାଇଲା; ମାତ୍ର ତାହା 'ଶ୍ରୀଧର ଦାସ'ଙ୍କ ନାମରେ ପତ୍ରିକାରେ ବାହାରିଥିଲା । ରାଧାମୋହନ ଏଥିରେ ବ୍ୟଥିତ ହୋଇ ସମ୍ପାଦକଙ୍କ ପାଖକୁ ପତ୍ର ଲେଖିଲେ । ସେ ତାଙ୍କର ମନୋଭାବ ମଧ୍ୟ କବିତା ମାଧ୍ୟମରେ ଜଣାଇଲେ –

''ବିସ୍ମିତ ହତାଶ ହେଲି ଦେଖିଲି ଯେ କାଳେ
ମୋ କବିତା ବାହାରିଛି ଅନ୍ୟର ନାଆଁରେ
ପୁଣି ପତ୍ର ଦେଲି
ସଙ୍ଗେ ସଙ୍ଗେ ପାଇଲି ଉତ୍ତର
ଧୈର୍ଯ୍ୟ ଧର କବି ଧୈର୍ଯ୍ୟ ଧର
ଭୁଲ ହୋଇଅଛି, ନିଶ୍ଚୟ ଆହତ ତମେ ...''
× × ×

ସମ୍ପାଦକ ତାଙ୍କ ପାଖକୁ ପତ୍ରରେ ପୁଣି ଲେଖିଲେ –

''...କରିଯାଅ ସୃଷ୍ଟି କମନୀୟ
କହୁଅଛି
କହୁଅଛି ଆଜି ଆଉ ଥରେ
ଲେଖିଯାଅ ଲେଖିଯାଅ
ଛାପା ପୁଣି ହେବ ତାହାପରେ ।''

କେବଳ 'ସହକାର' ନୁହେଁ, ଅନ୍ୟାନ୍ୟ ସାମସମୟିକ ପତ୍ରିକାରେ ସେହି ଏକା ତ୍ରୁଟି ଭିନ୍ନ ଭିନ୍ନ ସମୟରେ ହୋଇଥିଲା । ସମ୍ବଲପୁରରୁ ପ୍ରକାଶିତ 'ନବଯୁଗ' ପତ୍ରିକାରେ କବିଙ୍କ ରଚିତ 'ରାଜଜେମା' କବିତା କବିଙ୍କ ନାଆଁରେ ନ ହୋଇ ଶ୍ରୀ-ଭାବେ ବାହାରିଥିଲା । ସେହିପରି 'ଅମୃତ ପତ୍ରିକା'ରେ ରାଧାମୋହନଙ୍କ ଆଉ ଏକ

କବିତା 'ସେ ତ ଏକା ମୋ ପଥ ସଙ୍ଗାଳି' ଭୁଲ କ୍ରମେ 'ରାଧାମୋହନ ପଟ୍ଟନାୟକ'ଙ୍କ ନାମରେ ପ୍ରକାଶ ପାଇଥିଲା । ଏହା ରାଧାମୋହନଙ୍କୁ ଅତୀବ ଦୁଃଖ ଦେଇଥିଲା । ରାଧାମୋହନ କିନ୍ତୁ ଏଥିରେ ଭାଙ୍ଗି ପଡ଼ି ନ ଥିଲେ କି କବିତା ରଚନାରୁ ବିରତ ରହି ନ ଥିଲେ । ପରେ ପରେ କବିଙ୍କ ରଚିତ ବିଭିନ୍ନ କବିତା 'ସହକାର'ରେ ପ୍ରକାଶ ପାଇଲା । ୧୯୨୯-୧୯୩୦ ମସିହା ଆଡ଼କୁ ତାଙ୍କ କବିତାଗୁଡ଼ିକ ବିଭିନ୍ନ ପତ୍ରପତ୍ରିକା, ଯଥା – 'ସହକାର', 'ମୁକୁର' ଓ 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ ହେଲା ।

**ବନରାଜିନୀଳା**

'ବନରାଜିନୀଳା'ରେ ସନ୍ନିବେଶିତ ଗୀତିକବିତାରୁ କବିଙ୍କ ଉନ୍ନତ କାବ୍ୟ ଜୀବନର ସୂଚନା ମିଳେ । କବି ତାଙ୍କର ପ୍ରାଥମିକ ସୃଷ୍ଟି ସମ୍ପର୍କରେ କହିଛନ୍ତି – 'ବନରାଜିନୀଳା'ର କବିତାଗୁଡ଼ିକରେ ମୋର ସେସମୟର ମନର ଆଲେଖ୍ୟ ମୋତେ ମୋହାବିଷ୍ଟ କରୁଛି ... ଏହାର କବିତାଗୁଡ଼ିକରେ ଯୁକ୍ତିର ତାଡ଼ନା ନାହିଁ, ବୌଦ୍ଧିକତାର ବିଳାସ ନାହିଁ; ଅଥଚ ହୃଦୟବୃତ୍ତିର ପ୍ରକାଶ ରହିଛି, ଯାହା ଫଳରେ ଏହା ପାଠକର ଅତି ଆପଣାର ହୋଇପାରିଛି ।''

କିଶୋର କବିଙ୍କ ପ୍ରାଣରେ ପଲ୍ଲୀ ପ୍ରକୃତି, ଦେଶାତ୍ମବୋଧ ଓ ଭାଗବତ ଭାବଧାରା ଯେଉଁ ପ୍ରଭାବପାତ କରିଛି, ସେଥିରେ ସେ ପ୍ରଭାବିତ ହୋଇ କବିତା ସୃଷ୍ଟି କରିଛନ୍ତି । ପ୍ରାକୃତିକ ଦୃଶ୍ୟ ପରିପୂର୍ଣ୍ଣ କବିଙ୍କ ଗ୍ରାମ କଳଣ୍ଡାପାଳ ଓ ତା'ର ସନ୍ନିକଟ ଅବବାହିକାରେ ପ୍ରବାହିତ ହେଉଥିବା ଲିଙ୍ଗରା ନଦୀ କବିଙ୍କୁ କବିତା ସୃଷ୍ଟି କରିବାପାଇଁ ଖୋରାକ ଯୋଗାଇଛି । କଳଣ୍ଡାପାଳର ସୁନ୍ଦର ପ୍ରାକୃତିକ ପରିବେଶ ଭିତରେ ଲିଙ୍ଗରାର ମୁକ୍ତ ଛାତି, ଗ୍ରାମର ଆମ୍ରବନ, ବକୁଳର ସୁରଭି ସମ୍ଭାର ମଧୁମାଳତୀର ଲଟା, ମଲ୍ଲୀ ଫୁଲର ହାସ୍ୟ ପ୍ରଭୃତି କବି ମାନସରେ ଅପୂର୍ବ ଭାବ ସଞ୍ଚାର କରିଥିଲା । ସେ ଏଥିରେ ବିମୋହିତ ହୋଇପଡ଼ିଥିଲେ –

''ଗାଁ ଆର ଉତ୍ତର ପାଖେ
ଚାଲିଅଛି ବାଙ୍କେ ବାଙ୍କେ
ଚକ୍ରବାକିନୀ ଏ ତନୁ ଲିଙ୍ଗରା ନଈ
ବାଲି ସଇକତ ତଳେ ଲୁଚିଯାଏ ନିଦାଘରେ
ବରଷାରେ ମାତି ଉଠେ ପ୍ରତାପ ବହି ।''

ଅନୁକୂଳର ପ୍ରାକୃତିକ ପରିବେଶ କବିଙ୍କୁ ଅଭିଭୂତ କରିଥିଲା । ନୂଆଗଡ଼ର ସୁନାଶଗଡ଼ ପାହାଡ଼ ଉପରେ ବସି ରାଧାମୋହନ ଭାବାବିଷ୍ଟ ହୋଇପଡ଼ିଥିବା ବର୍ଣ୍ଣିତ –

''ପୁରୁଣା ଗଡ଼ର ପରବତ ଶିଖେ
ହସି ଉଠୁଅଛି ଅସ୍ତ ରବି
ବାରୁଣୀ ଆକାଶେ କନକ ଆଭାଷେ
ଝଳି ଉଠୁଅଛି ରମ୍ୟ ଛବି ।''

ଆଧ୍ୟାତ୍ମିକତା ଉପରେ ରଚିତ ବହୁ କବିତା 'ବନରାଜିନୀଳା' ସଂକଳନରେ ସ୍ଥାନ ପାଇଛି । ସେହି କବିତାଗୁଡ଼ିକରେ ରାଧାମୋହନ ଅପୂର୍ବ କଳାକୃତି ପ୍ରଦର୍ଶନ କରିଛନ୍ତି । ଅଧିକାଂଶ କବିତାରେ କବି ଈଶ୍ୱରଙ୍କ କରୁଣାମୟ ଓ ସତ୍ୟ, ଶିବ, ସୁନ୍ଦର, ସ୍ୱରୂପର ବନ୍ଦନା କରିଛନ୍ତି, ଯଥା –

''ମୋ ଲାଗି ଆକାଶ ଚାନ୍ଦୁଆ ତୁମେ
ଉପରେ ଦେଇଛ ଟାଣି
ସବୁଜ ଘାସର କଅଁଳ ଗାଲିଚା
ବିଛାଇ ଦେଇଛ ଆଣି ।
ସଞ୍ଜ ସକାଳ ରଞ୍ଜିଦେଇଛ
ରଙ୍ଗ ତୂଳୀଟି ଧରି
ତୁମ୍ଭେ ମୋତେ ସଖେ
କେତେ ଭଲ ପାଅ
ପାରୁ ନାହିଁ ମୁହିଁ କଳି ।''

'ଆନନ୍ଦେ ଗାଏ ମୁଁ ତାହାରି ଗୀତ' କବିତାରେ କବି ଈଶ୍ୱରଙ୍କୁ ସର୍ବଶକ୍ତିମାନ୍ ବୋଲି କହିଛନ୍ତି । 'ତୁ ଏକା ମୋ ପଥ ସଙ୍ଗାଳି' କବିତାରେ କବି ଈଶ୍ୱରଙ୍କଠାରେ ପୂର୍ଣ୍ଣ ଆତ୍ମସମର୍ପଣ କରିଛନ୍ତି –

''ହାତ ଠାରି ତୁମ୍ଭେ ଦେଖାଉଛ ବୋଲି
ମୁଁ ସିନା ଚାଲିଛି ଆପଣା ପଥେ
ତୁମ୍ଭେ ଏକା ମୋର ଆଶରା ଭରସା
କିବା ଆଉ ମୋର ଗତି ମରତେ ?
× × ×
ଏତେ କର ବୋଲି ମୋହ ଲାଗି ତୁମେ
ନିଜ ପାଇଁ ମୁଁ ତ ନୁହଇ ଭାଳି
ତୁମେ ଏକା ମୋର ଆଶରା ଭରସା
ତୁମେ ଏକା ମୋ ପଥ ସଙ୍ଗାଳି ।''

'ପ୍ରଭୁ ହେ ମୋତେ ଶକ୍ତି ଦିଅ' କବିତାଟି କିଶୋରମାନଙ୍କପାଇଁ ଉଦ୍ଦିଷ୍ଟ । କବିଙ୍କ ଲେଖନୀ ମୁନରୁ ଝରିପଡ଼ିଛି –

''ସକାଳୁ ଉଠି ସୂର୍ଯ୍ୟ ପରି
ଲାଗିବି ନିତି ଧୈର୍ଯ୍ୟ ଧରି
ଚନ୍ଦ୍ର ସମ ସୁଧାର ହେବି
ଜଗତେ ସବୁଠାଇଁ
ପ୍ରଭୁ ହେ ମୋତେ ଶକ୍ତି ଦିଅ
ମୋ ମନ ଅନୁଯାୟୀ ।''

'ବନରାଜିନୀଳା' ର ପ୍ରଥମ ପ୍ରକାଶ କାଳ ୧୯୬୮ ମସିହା ।

## ବିପ୍ଳବୀ ରାଧାନାଥ

'ବିପ୍ଳବୀ ରାଧାନାଥ' ୧୯୪୪ ମସିହାରେ ରଚିତ୍ ହୋଇଥିଲା । ସମ୍ପ୍ରତି କବିବର ରାଧାନାଥଙ୍କର ବିଶେଷ ପ୍ରଶଂସା କରାଯାଉଥିଲେ ମଧ୍ୟ ସ୍ୱାଧୀନତା ପ୍ରାପ୍ତି ପୂର୍ବରୁ ରାଧାନାଥଙ୍କୁ ତୀବ୍ର ସମାଲୋଚନାର ଶିକାର ହେବାକୁ ପଡ଼ିଥିଲା । କବି କହିଛନ୍ତି ଯେ ରାଧାନାଥ ଓଡ଼ିଶାର ବନଗିରି, ନଦୀ, ହ୍ରଦ ଓ ମାଟିକୁ ତାଙ୍କର କାବ୍ୟରେ ଗଭୀର ସ୍ନେହ ଓ ଶ୍ରଦ୍ଧା ଦେଖାଇଥିଲେ ମଧ୍ୟ ଓଡ଼ିଶାର ମଣିଷକୁ କୁତ୍ସିତ ଓ କଳଙ୍କିତ କରି ଆଙ୍କିଥିବା ଅଭିଯୋଗ ହେଉଥିଲା । କବିଙ୍କର ମଧ୍ୟ ସେହି ଅଭିଯୋଗ ଥିଲା । ମାତ୍ର ୧୯୩୮ ମସିହାରେ ଓଡ଼ିଶାର ଗଡ଼ଜାତ ଆନ୍ଦୋଳନ ବେଳେ ରାଧାନାଥଙ୍କ ପ୍ରତି କବିଙ୍କ ମନର ବିକ୍ଷୋଭ ଶ୍ରଦ୍ଧାରେ ପରିଣତ ହେଲା । ରାଧାନାଥଙ୍କ କାବ୍ୟକବିତାରେ ନଗ୍ନ ସତ୍ୟ ଓ ବିପ୍ଳବର ଇଙ୍ଗିତ ଆତ୍ମପ୍ରକାଶ କରିଛି ବୋଲି ବୋଧ ହେଲା । ରାଧାନାଥଙ୍କୁ ସେ ବିପ୍ଳବୀ କବି ଭାବେ ଅଭିହିତ କଲେ ।

କବିବର ରାଧାନାଥ କେତେକ କାବ୍ୟରେ ଯେଉଁ ନିଷିଦ୍ଧ ପ୍ରଣୟର ଚିତ୍ର ଆଙ୍କିଛନ୍ତି, ତାହା ପ୍ରତି ସମାଲୋଚକମାନଙ୍କ କଟୁ ସମାଲୋଚନାକୁ ରାଧାମୋହନ ଖଣ୍ଡନ କରିଛନ୍ତି ତାଙ୍କର ଦୀର୍ଘ କବିତା 'ବିପ୍ଳବୀ ରାଧାନାଥ' କବିତାରେ । ତାହାର ଗୋଟିଏ ପଙ୍‌କ୍ତି –

''ଭଦ୍ର ବିଚାରେ ଯେଉଁ ସମାଚାର
ଲୁଚାଇ ଦେବାର କଥା
ଦୁନିଆର ଆଗେ କହିଅଛ ତୁମେ
ଖୁଆଇ ସରମ ମଥା ।
ଏତେ ବଡ଼ ପାପ ଲୁଚାଇ ପାରିବ
ଶକ୍ତି ଅଛି କା'ର
ପାପ ପରେ ପୁଣି ମାନବର ଏଯେ
ଆଉ ଏକ ପାପାଚାର ।
× × ×
ଘୋର ଶାପ ଯାହା ଲୁଚାଇ ନ ପାରି
କରି ଦେଇଅଛି ଖୋଲି
ମୂର୍ଖ ନ ବୁଝି ତାହା
ତୁମର କୃତିର କଳଙ୍କ ବୋଲି ପ୍ରଚାର କରିଛି ଆହା।''

କବି ରାଧାନାଥଙ୍କୁ ନିର୍ଭୀକ, ସତ୍ୟସନ୍ଧ ଓ ସଂଗ୍ରାମୀ ବୀର ବୋଲି ଚିତ୍ରିତ କରିଛନ୍ତି ।

**କାବ୍ୟନାୟିକା**

'କାବ୍ୟନାୟିକା' ୧୯୪୫ ମସିହାରେ ପ୍ରକାଶ ପାଇଥିଲା । ଏଥିରେ ତିନୋଟି ବିଭାଗ ରହିଛି । ସେଗୁଡ଼ିକ ହେଲା – 'ଜୈତ୍ରୀ', 'ପ୍ରାକ୍ତନୀ' ଓ 'ଅର୍ଘ୍ୟ' । ଜୈତ୍ରୀରେ ରାଧାମୋହନ ମାନବ ଓ ମାନବିକତାର ଜୈତ୍ରୀ ଗାନ କରିଛନ୍ତି । କାବ୍ୟନାୟିକାର ପ୍ରଥମ କବିତା 'କବି ହେବାପାଇଁ ବାସନା'ରେ କବିଙ୍କର ଉଦ୍ଦେଶ୍ୟ ଓ ଲକ୍ଷ୍ୟ ସ୍ପଷ୍ଟ ।

''ସବୁରି ଲହୁରେ ସବୁରି ଲହୁ
ଅନ୍ତରେ ଆଣି କରଇ ମହୁ
ସେଇ ତକ ମୋର ବୁକୁର ତାତି
କବି ହେବାପାଇଁ ବାସନା ମୋର
ଦିବସ ରାତିରେ ଦିବସ ରାତି ।''

କବି ଗତାନୁଗତିକ ପଥର ଯାତ୍ରୀ ହେବାକୁ ଚାହିଁ ନାହାନ୍ତି, କାରଣ ସେ ପଥ ସରଳ । ସେଥିରେ ବାଧା ନାହିଁ କି ବନ୍ଧନ ନାହିଁ । କିନ୍ତୁ କବି ଅପଥଗାମୀ ହେବାକୁ ଚାହିଁଛନ୍ତି, ଯଥା –

''ଅପଥେ ମୁଁ ଯିବି ଅପଥେ ମୁଁ ଯିବି
କର ପଛେ ମତେ ତିରସ୍କାର
ନେପଥ୍ୟେ ଅଛି ଯେତେ ଯାହା ସବୁ
କରିବି ମୁଁ ତା'ର ଆବିଷ୍କାର।''

କବି ଦାରିଦ୍ର୍ୟକୁ ଭ୍ରୂକ୍ଷେପ କରି ନାହାନ୍ତି । ତାଙ୍କ ତୂଳିକା ସ୍ପର୍ଶରେ ଦାରିଦ୍ର୍ୟ ଗାରିମାମୟ ହୋଇଉଠିଛି –

''ହେ ଦାରିଦ୍ର୍ୟ, ଶିରେ ମୋର କଣ୍ଟକ ମୁକୁଟ
ଶରୀରେ କଣ୍ଟକ-ବର୍ମ ଦେଉଛ ଅତୁଟ ।
ଯିଶୁଖ୍ରୀଷ୍ଟ ସମ ମୁହଁ ରକ୍ତାକ୍ତ ବିଗ୍ରହେ
ଅଭିଯାନ କରିନେବି ପରମ ଆଗ୍ରହେ ।''

କାବ୍ୟନାୟିକାର 'ପ୍ରାକ୍ତନୀ' ଭାଗରେ ଯେଉଁ ଚରିତ୍ରମାନଙ୍କୁ ଉପସ୍ଥାପିତ କରିଛନ୍ତି, ସେମାନେ ସମସ୍ତେ କ୍ଷୁଦ୍ରରୁ ବୃହତ୍ ହେବାର ପ୍ରୟାସୀ । 'ପିଙ୍ଗଳାର ଅଭିସାର'ରେ ପିଙ୍ଗଳା କହିଛି –

''କ୍ଷୁଣ୍ଣ ଏ ମୋର ଯଉବନ ଧନ ପୂର୍ଣ୍ଣ ଏ ମୋର ରୂପ
ପୀରତି ଅନଳେ ଜାଳି ପ୍ରିୟ ଲାଗି କରିବି ଆରତି ଧୂପ ।''

ସେହିଭଳି 'ପ୍ରତିଶୋଧ' କବିତାରେ ଦ୍ରୌପଦୀ ପ୍ରତିଶୋଧପରାୟଣା ନ ହୋଇ କୋମଳହୃଦୟା ହୋଇପଡ଼ିଛନ୍ତି ।

''ରକ୍ତରେ ମୁଁ ଯେ ବେଣୀ ସଂହାର କରାଇଥିଲି
ଭୁଲି ଯାଇ ନାହିଁ ନାରୀ ହୃଦୟର ଉଦାର ଶିରୀ ।
ଘାତକର ବଧେ ଚିତ୍ତ ମୋହର ନୁହଇ ଭାଜି
ତୃପ୍ତି ଲଭେ କି ଜନନୀ ପାଷାଣ ସାଜି ।''

'ଲଳିତା' କବିତାରେ ରାଧାଙ୍କ ପ୍ରେମପାଇଁ ଲଳିତାଙ୍କ ତ୍ୟାଗର ମହିମା ଫୁଟାଇଛନ୍ତି ।

''ଆପଣାର ସେ କ୍ଷୁଣ୍ଣ, ଅପରେ କରୁଛ ପୂର୍ଣ୍ଣ
ପ୍ରେମିକା ନୁହେଁ ତ ଦୂତିକା, ପ୍ରେମିକାର ତମେ ଗୁରୁ ଯେ ।''

'କାବ୍ୟନାୟିକାର'ର ତୃତୀୟ ଭାଗ 'ଅର୍ଘ୍ୟ'ରେ ଭଗବତ୍ ଚେତନା ଏକ ସ୍ୱତନ୍ତ୍ର ବଳୟ ସୃଷ୍ଟି କରିଛି । କବି ବିନା ସର୍ତ୍ତରେ ସାଂସାରିକ ଦୁଃଖ ଓ ଜଞ୍ଜାଳରୁ ମୁକ୍ତିଲାଭପାଇଁ ଭଗବାନ୍‌ଙ୍କ ନିକଟରେ ଆତ୍ମସମର୍ପଣ କରିଦେଇଛନ୍ତି –

''ଶତ ଭୟ ଶତ ବିଭୀଷିକା କୋଳେ
ଚଳାଅ ମୋ ହୃଦ ବିଜୟ-ବିଭୋଳେ
ଅନ୍ତିମେ ପ୍ରିୟ ମଙ୍ଗଳ ଦିଅ
ଦିଅ ମାନବର ମାନ ।''

ଜୀବନରେ ନରକର ଯନ୍ତ୍ରଣା ମିଳିଛି । ସେଥିପାଇଁ କବି ଏ ଧରାତଳେ ସ୍ୱର୍ଗସୁଖର କାମନା ବିଡ଼ମ୍ବନା ବୋଲି ମନେ କରନ୍ତି । ଏଭଳି ବିଷମ ସମୟରେ ବିଷମ ପଥ ଅତିକ୍ରମ କରିବାପାଇଁ ଭଗବାନ୍‌ଙ୍କୁ ସାରଥି ବୋଲି ମନେ କରିଛନ୍ତି ଓ ତାଙ୍କୁ ଆହ୍ୱାନ କରି କହି ଉଠିଛନ୍ତି –

''ସାରଥି, ହେ ମୋର ସାରଥି ହେ ମୋର,
ଚଳାଅ ରଥ
ଦେଖୁ ନାହିଁ ଏ ଯେ ବିଷମ ସମୟ
ବିଷମ ପଥ ।''

'କାବ୍ୟନାୟିକା'ରେ ବହୁ ପ୍ରେମ କବିତା ମଧ୍ୟ ଦେଖିବାକୁ ମିଳେ । 'ସରସୀ ପଥେ' କବିତାରେ କବି ଏକ ରୂପହୀନା ତରୁଣୀର ସ୍ୱଚ୍ଛ ଓ ବିମୁଗ୍ଧ ପ୍ରେମର ଆଲେଖ୍ୟ ପ୍ରଦାନ କରିଛନ୍ତି । ତରୁଣୀଟି ଅପରୂପା ସୁନ୍ଦରୀ ନ ଥିଲା । କୌଣସି କବି ତା'ର ସୌନ୍ଦର୍ଯ୍ୟର ପ୍ରଶଂସାରେ କବିତା ରଚନା କରିବାକୁ ପ୍ରେରଣା ପାଇ ନ ଥିଲେ । କିନ୍ତୁ ତା'ର ଏମିତି ଅନ୍ତର୍ଶକ୍ତି ଥିଲା ଯାହାର 'ଅକଳନ ମୂଲ' ଥିଲା, ଯଥା –

''ପଲ୍ଲୀ ସରସୀ-ପଥେ ଭେଟିଥିଲି ବିଜନେ
ଜୀବନର ମଧୁମାସେ ସେ ନୂତନ ବୟସୀ
ଲଜ୍ଜିତ କରି ତେବେ ତା'ର ବେଶ ବସନେ
ଉନ୍ମୁଖ ଯଉବନ ଉଠୁଥିଲା ବିକଶି ।''

ତରୁଣୀଟି କବିଙ୍କୁ ଏକ ଅଭିନବ ଓ ଅବାସ୍ତବ ଅନୁରୋଧ ଜଣାଇଛି –

"ରୂପହୀନା ମୁଁ ଯେ ଗାଅ ଗୀତଟିଏ ମୋ ଲାଗି ।"

ନାୟକ ଉତ୍ତର ଦେଇଛି –

"କବି ନୁହେଁ, ଜାଣେ ନାହିଁ କବିତା,
କେସନେ ଯାଚନା ତବ ରଖିବି ଗୋ ସୁନ୍ଦରୀ ?"

ସୁନ୍ଦରୀ ମନ୍ଦ ମନ୍ଦ ହସି କହେ –

"ସୁନ୍ଦର, ହୁଅ ତେବେ ମୋ ସକାଶେ ।"

ନାୟକଟି ସେହି ମୁହୂର୍ତ୍ତରେ କବି ପାଲଟିଯାଏ । 'କାବ୍ୟନାୟିକା'ରେ ଆଉ ଏକ ପ୍ରେମ କବିତା, 'ସେ ମୋର ସ୍ନେହଲତା' । ଏଥିରେ ନାୟକ ନାୟିକାଙ୍କର ପରସ୍ପର ପ୍ରତି ପ୍ରେମ ଭାବନା ନାହିଁ । ତେବେ ନାୟକ ତରଫରୁ ନାୟିକା ପ୍ରତି ଆକର୍ଷଣ ଓ ପ୍ରେମ ନିବେଦନ ପ୍ରକାଶ ପାଇଛି । ଏହାକୁ ଏକପକ୍ଷୀୟ ପ୍ରେମ କୁହାଯାଇପାରେ । କବି ମଧ ତାହାକୁ ସ୍ୱୀକାର କରିଛନ୍ତି –

"ସେ ପଛେ ତିଳେ ନ ଘେନୁ ମୋର ମରମତଳ କଥା
ସେ ପଥେ ତିଳେ ନ ବୁଝୁ ଅବା ବୁକୁର ବ୍ୟାକୁଳତା
କେଜାଣି କିଆଁ ତାହାରି ଲାଗି
ଚିତ୍ତ ମୋର ରହିଛି ଜାଗି
ପରାଣ ମୋର କହଇ ସଦା ସେଇ ମୋ ସ୍ନେହଲତା ।"

ଜ୍ୟେଷ୍ଠ ପୂର୍ଣ୍ଣିମା ଦିନ ବାସରରାତ୍ରିରେ ପରିଣୀତା ପତ୍ନୀଙ୍କୁ ଦେଖିଲାପରେ କବିଙ୍କ ମନୋଭାବନା ଏହିପରି ହୋଇଛି –

"କିଏ ତୁମେ ସୁନ୍ଦରି ! କିଏ ତୁମେ ଶୋଭନେ ?
ଅମିୟ ଲଗନେ ଆଜି ଆସିଛ ମୋ ଭବନେ
ନୟନେ ବିକଚ ଲାଜ
ବଦନେ ଓଢ଼ଣା ସାଜ
ସିନ୍ଦୂର ଲଲାମେ ଗୋ ଅଲକ୍ତ ଚରଣେ ।
କିଏ ତୁମେ ସୁନ୍ଦରି ! କିଏ ତୁମେ ଶୋଭନେ ?"

ପୁଣି ସେଇ ବାସରରାତ୍ରିରେ ମଧୁର ମିଳନପାଇଁ କବି କହିଛନ୍ତି –

"ତୋଳ ଅବଗୁଣ୍ଠନ, ତୋଳ ନତ ବଦନ
ଆଉ କିଏ ଅଛି ଏଥି ନିଭୃତ ସଦନ
ନମିତ ନୟନ ଟେକି
ଆଗୋ ପ୍ରିୟା ନିଅ ଦେଖି
ଜୀବନର ଗତିପଥ କେତେ ମନମୋହନ
ତୋଳ ଅବଗୁଣ୍ଠନ, ତୋଳ ନତ ବଦନ ।"

ପୁଣି –

ଜ୍ୟେଷ୍ଠର ଆଜି ଶୁଭ ପୂର୍ଣ୍ଣିମା ନିଶି ଗୋ
ଅଭିନବ ବନ୍ଧନେ ଯାଅ ଆଜି ମିଶି ଗୋ
ଅଙ୍ଗ ମିଳାଇ ମୋର ଅଙ୍ଗେ
ହୃଦୟ ଏ ହୃଦୟର ସଙ୍ଗେ
ଭରି ଉଠୁ ଯଉବନ, ଭରି ଉଠୁ ଦିଶି ଗୋ
ଜ୍ୟେଷ୍ଠର ଆଜି ଶୁଭ ପୂର୍ଣ୍ଣିମା ନିଶି ଗୋ ।''

ଆଲୋଚକଙ୍କ ଭାଷାରେ, ''ସାବଲୀଳ ଭାଷା ଓ ଛନ୍ଦ, ଲଳିତ ମଧୁର ଭାବ, ଦାମ୍ପତ୍ୟ ମିଳନର ପଟ୍ଟଭୂମିରେ ପ୍ରଥମ ପ୍ରେମର ରସାନୁଭୂତି, ରୋମାଣ୍ଟିକ ସୁନେଲୀ ଅତୀତର ବର୍ଣ୍ଣନା ଓ ରାକା ରଜନୀର ପ୍ରୀତିଭରା ପରିବେଶର ଚିତ୍ରଣ ××× କବିତାଟିକୁ ଲୋଭନୀୟ ଓ କମନୀୟ କରି ତୋଳିଛି ।''

କବିଙ୍କ ହୃଦୟରେ 'ମାଟିର ମଣିଷ' ପାଇଁ ଦରଦ ସୃଷ୍ଟି ହୋଇଛି । ଏକ ପୁରାତନ କୃଷିକାରୀ ସଭ୍ୟତା ଯେ ଧ୍ୱଂସ ପାଇଯିବ, ସେ କଥା କବିଙ୍କ ପକ୍ଷରେ ଅସହ୍ୟ ହୋଇଛି । ମାଟିର ମଣିଷ ଆଜି କୃଷକର ପବିତ୍ର ଜୀବନପଥକୁ ଛାଡ଼ି ଯନ୍ତ୍ରସଭ୍ୟତା ଭିତରକୁ ଆଗେଇ ଯାଉଛି । ଯନ୍ତ୍ରସଭ୍ୟତାର ପ୍ରତିଘାତରେ ମଣିଷ ଜୀବନର କରୁଣ ପରିଣତି ପ୍ରତି କବି ସଚେତନ ହୋଇପଡ଼ିଛନ୍ତି । ଏହା ବିରୋଧରେ ସେ ଚେତାବନୀ ଦେଇଛନ୍ତି –

''ଯନ୍ତ୍ର ତଳେ ତ ପରାଣ ନାହିଁରେ
ମରଣର ତହିଁ ଘର
ଦିନରାତି ତହୁଁ ଚିତାର କୁହେଳି
ହେଉଅଛି ଉଚ୍ଛଳ
ଆଗାମୀ ଯୁଗର ଦ୍ରଷ୍ଟା ମୁଁ ଆଜି
ଡାକୁଅଛି ଏଇ କୂଳେ
ପତଙ୍ଗ ପରି ଝାସ ଦେ ନାହିଁ,
ଦେ ନାହିଁ ତା'ର ମୂଳେ ।''

ପାଶ୍ଚାତ୍ୟ ସଭ୍ୟତା ପ୍ରଭାବରୁ ମୁକ୍ତି ଲଭି ପ୍ରାଚ୍ୟ ସଭ୍ୟତା ଭିତରେ ବୁଡ଼ି ରହି ଗାଁ ମାଟିରେ ଝରିଯିବାପାଇଁ କବି ନିର୍ଦ୍ଦେଶ ଦେଇଛନ୍ତି –

''ମାଟିର ଅଙ୍କେ ଜନମ ଲଭିଚୁ
ଝରରେ ତାହାରି ପରେ
ମାଟିର ବକ୍ଷେ ଜନ୍ମ ଲଭିବୁ
ନବ ଜନ୍ମାନ୍ତରେ
ଫେରିଆ ପୂରବ ପଥେ
ଅକାରଣେ ଆଉ ଧୂଆଁହିଁ ନାହିଁ ଯନ୍ତ୍ର
ଧୂଆଁର ସାଥେ ।''

ଆଧୁନିକ ଓଡ଼ିଆ କବିତାର ଇତିହାସରେ କବି ଗଡ଼ନାୟକଙ୍କର ଏ ସ୍ୱର ଓ ସ୍ୱାକ୍ଷର ସ୍ୱତନ୍ତ୍ର ଓ ଅତୁଳନୀୟ । 'ମାଟିର ମଣିଷ' ରାଧାମୋହନଙ୍କ ଅନ୍ୟତମ ଶ୍ରେଷ୍ଠ କବିତା ।

**ଦୁଇଟି ତାହାର ଡେଣା**

୧୯୫୪ ମସିହାରେ ପ୍ରକାଶିତ 'ଦୁଇଟି ତାହାର ଡେଣା' ସଙ୍କଳନରେ ରାଧାମୋହନ ଅଧିକ ବାସ୍ତବବାଦୀ ହୋଇପଡ଼ିଥିବା ମନେ ହୁଏ । ସଙ୍କଳନର ପ୍ରାରମ୍ଭରେ 'ପଦେ ଅଧେ'ରେ ସେ କହିଛନ୍ତି – ''ମନୁଷ୍ୟର ଦୁଇ ଭୋକ, ଦୁଇଟି ଖାଦ୍ୟ, ଗୋଟିଏ ଦେହ ରକ୍ଷାପାଇଁ ଆଉ ଗୋଟିଏ ଦେହପାଇଁ । ଏ ଦୁଇଟି ପରେ ମଣିଷର ଜୀବନ ସ୍ୱପ୍ନ । ତେଣୁ ମୁଖ୍ୟତଃ ଏ ଦୁଇଟିର ଭିତ୍ତିଭୂମି ଉପରେ 'ଦୁଇଟି ତାହାର ଡେଣା'ର କବିତାଗୁଡ଼ିକ ରଚିତ । ଏହି ପୃଥିବୀ ଉପରେ ଅନନ୍ତକାଳ ତା'ର ଦୁଇ ପକ୍ଷ ବିସ୍ତାର କରି ବସିଛି । ଗୋଟିଏ ହେଲା ମାର୍କ୍‌ସ ଓ ଅନ୍ୟଟି ଫ୍ରୟେଡ୍ । ମାର୍କ୍‌ସବାଦର କିଞ୍ଚିତ୍ ସୂଚନା ଦେଇ କବି ଶ୍ରେଣୀହୀନ ମଣିଷ ସମାଜ ଗଠନ କରିବାକୁ ଆହ୍ୱାନ ଦେଇଛନ୍ତି, ଯଥା –

''ଶ୍ରେଣୀହୀନ ହେଉ ମଣିଷ ସମାଜ
ସାମ୍ୟର ଧାରା କାମ୍ୟ ଯେ ଆଜି
ସାରା ଦୁନିଆର ତଳେ ।''

ସିଗ୍‌ମଣ୍ଡ ଫ୍ରୟେଡ୍‌ଙ୍କ ଅଶ୍ଳୀଳ ମନସ୍ତାତ୍ତ୍ୱିକ ମନ୍ତବ୍ୟକୁ କବି ଗ୍ରହଣ କରି ମଣିଷର ଅବଚେତନ ସ୍ତରର ଉଦ୍‌ଘାଟନ କରି ତା'ର ଅସଲ ରୂପକୁ ସର୍ବସମକ୍ଷରେ ଉପସ୍ଥାପିତ କରିଛନ୍ତି । କିନ୍ତୁ କବି କେବେ କଳ୍ପନାବିଳାସୀ ହୋଇ ନାହାନ୍ତି । ସେ କଠୋର ବାସ୍ତବତାକୁ କେଉଁଠି ଏଡ଼ାଇ ଯାଇ ନାହାନ୍ତି । କବିଙ୍କର ଉକ୍ତି –

''ସର୍ବହରା ମୁଁ କବି ସପନର ସୁଏ ଅବଗାହେନା ।''

'ଅମୃତ ଲୁଣ୍ଠନ' କବିତାରେ କବି ବିପ୍ଳବପାଇଁ ଆହ୍ୱାନ ଦେଇଛନ୍ତି ।

ମଣିଷ ହେଉଛି ଅମୃତର ସନ୍ତାନ । ତା'ର ଜୀବନର ସ୍ୱାଦ ଉପଭୋଗ କରିବାର ଅଧିକାର ଅଛି । ତେଣୁ ସେହି ଅଧିକାରରୁ ବଞ୍ଚିତ କରୁଥିବା ସମାଜର ପୁଞ୍ଜିପତି ଗୋଷ୍ଠୀ ବିରୋଧରେ ସେ ଯୁଦ୍ଧଘୋଷଣା କରିଛନ୍ତି । ସେମାନଙ୍କଠାରୁ ବଞ୍ଚିତ ଜନତା ତା'ର ଅଂଶ ଛଡ଼ାଇ ନେବାପାଇଁ ଆହ୍ୱାନ ଦେଇଛନ୍ତି । କବିଙ୍କ ଉକ୍ତି –

''ସବୁ ବାଧା ସବୁ ଅନ୍ତରାୟ
ସଂଗ୍ରାମରେ ହଟାଇ ଦୂରେ
ବିଜୟର ନେତ ଆମେ ଉଡ଼ାଇବା
ରଙ୍ଗମହଲ ମିନାରର ଚୂଳେ ।
ଟାଳିଦେବା ସର୍ବ ଭୋଗୀ ଏହି କଳା ରାତି
ଧରିତ୍ରୀରେ ଜଣାଇବା ଗଣର ଐଶ୍ୱର୍ଯ୍ୟ
ଜନତାର ଅରୁଣ ପ୍ରଭାତୀ ।''

ଏହି ସଙ୍କଳନର 'ନାରୀର ତ୍ରିବେଣୀ' କବିତାରେ ନାରୀ ଜୀବନର ତିନି ଗୋଟି ଅବସ୍ଥାକୁ ରାଧାମୋହନ ବର୍ଣ୍ଣନା କରିଛନ୍ତି । କବିତାର ପ୍ରଥମ ପ୍ରଭାଗରେ ନାରୀର ପ୍ରଥମ ଯୌବନପ୍ରାପ୍ତି ଅବସ୍ଥାକୁ ବର୍ଣ୍ଣନା କରିଛନ୍ତି । ନାରୀ ନିଜେ ପ୍ରକାଶ କରିଛି –

''ମଳୟର ପ୍ରଥମ ନିଃଶ୍ୱାସରେ
ମୁଁ ଆଜି ପୁଷ୍ପିତା
ଜୀବନର ଏକ ଅପୂର୍ବ ଉଲ୍ଲାସରେ
ମୁଁ ଆଜି ରୋମାଞ୍ଚିତା ।''

× × ×

କବିତାର ଦ୍ୱିତୀୟ ପ୍ରଭାଗରେ ନାରୀର ପତ୍ନୀ ରୂପ ପ୍ରକଟିତ । କବି ନାରୀ ଓ ପୁରୁଷର ମିଳନର ମଧୁର ଓ ଭାବୋଦ୍ଦୀପକ ଚିତ୍ର ଦେଇଛନ୍ତି, ଯଥା –

''ମୁଁ ଆଜି ଏକ ନୁହେଁ – ମିଥୁନ
ମିଥୁନ ହୋଇଛି ପୁଣି ଏକ
ନାରୀ ମୁହିଁ ପୁରୁଷର ସାଥୀରେ
ଏଇ ମୋର ଆଉ ଏକ ନୂଆ ରୂପରେଖ ।''

କବିତାର ଅନ୍ତିମ ପ୍ରଭାଗରେ ନାରୀ 'ଜାୟା' ବା 'ଜନନୀ' ରୂପେ ପ୍ରତିଭାତ ।

''ମୋର ହୃଦୟର ପୁଷ୍ପ
ଆଜି ଫଳ ହୋଇଛି

× × ×

ମୋ ସୃଷ୍ଟିରେ ମୁଗ୍ଧ ।''

କେତେକ କବିତା, ଯଥା – 'ମେଘ କନ୍ୟାର ମାନଭଞ୍ଜନ', 'ସିଗିରେଟ', 'ନାରୀ ଓ ପୁରୁଷ' ପ୍ରଭୃତିରେ ବ୍ୟକ୍ତିଗତ ପ୍ରେମ ଓ ପ୍ରଣୟର ଚିତ୍ର କବି ଦେଇଛନ୍ତି । ତେବେ ତାହା ସେତେ ଉଗ୍ର ବା ଆବରଣରହିତ ନୁହେଁ । କବି କାମଚଞ୍ଚଳ ମଣିଷ ମନର ଉଦ୍ଦାମତାକୁ ଶାଳୀନତାର ଆବରଣ ଭିତରେ ରୁଚିପୂର୍ଣ୍ଣ ଭାବେ ପ୍ରକାଶ କରିଛନ୍ତି । 'କାମସୂତ୍ର' କବିତାରେ କବି ବିଶିଷ୍ଟ ବିଦ୍ୱାନ୍ ବାତ୍ସାୟନଙ୍କ ଅସାମାନ୍ୟ ପ୍ରତିଭାର ପରିଚୟ ଦେବା ସଙ୍ଗେ ସଙ୍ଗେ ମାନବ ଜୀବନର ସଫଳ ଉପଭୋଗ ବା ପରିତୃପ୍ତିପାଇଁ 'କାମସୂତ୍ର' ଗ୍ରନ୍ଥର ଯଥାର୍ଥ ଉପଯୋଗିତା ରହିଛି ବୋଲି କହିଛନ୍ତି ।

'ଦୁଇଟି ତାହାର ଡେଣା'ରେ ସଙ୍କଳିତ କବିତାଗୁଡ଼ିକ ସମଧର୍ମୀ ଅଟନ୍ତି । କବି ସେଗୁଡ଼ିକ ଏକତ୍ର ଗ୍ରଥିତ କରି ଉନ୍ନତ କାବ୍ୟମାନସର ପରିଚୟ ଦେଇଛନ୍ତି ।

**ମୌସୁମୀ**

୧୯୫୧ ମସିହାରେ ରଚିତ ମୌସୁମୀ ଓ ୧୯୬୦ ମସିହାରେ ରଚିତ 'ଧୂସର ଭୂମିକା'ରେ ଥିବା କବିତାଗୁଡ଼ିକରେ କବି ଅଧିକ ବୈପ୍ଳବିକ ଭୂମିକା ଗ୍ରହଣ କରିଛନ୍ତି ।

ମୌସୁମୀ ଆଗମନରେ ଗ୍ରୀଷ୍ମ ଧରାପୃଷ୍ଠରୁ ପ୍ରାୟ ବିଦାୟ ନିଏ । ଶୁଷ୍କ ପ୍ରାଣରେ ଭାବ-ତରଙ୍ଗ ସୃଷ୍ଟି ହୁଏ । ମାନବର କଲ୍ୟାଣ ସାଧନ ଉଦ୍ଦେଶ୍ୟରେ ମୌସୁମୀର କର୍ମତତ୍ପରତା ପ୍ରକାଶ ପାଏ । ମୌସୁମୀ ମୁଖରେ କବି କହିଛନ୍ତି –

"ସାଗର ବକ୍ଷୁ ବୋହି ଆଣି ଅଛି ସଲିଳଧାରା
ଦୂର ଦୂରାନ୍ତୁ ଆଣିଚି ବାରିଦମାଳା
ପୀଡ଼ିତ ପ୍ରାଣର ମଙ୍ଗଳ ଲାଗି ଜୀବନ ଦେଇ
ଦୁର୍ଦ୍ଦିନ ମୁହିଁ
ସୃଷ୍ଟିର ତଳେ
ଆଣୁଚି ନେଇ ।"

ପୁଣି–

"ଧାଇଁ ଆସିଅଛି ମୌସୁମୀ ମୁହିଁ ଧରଣୀ ଭାଗେ
ନମ୍ର ନୁହଇ, କମ୍ର ନୁହଇ, ନୁହଇ ଧୀର
ଉଗ୍ର ମୁଁ ଆଜି, ବ୍ୟଗ୍ର ମୁଁ ଆଜି ଅଗ୍ରସର ।"

ଏ ଉଗ୍ରତା ଓ ବ୍ୟଗ୍ରତା ସୃଷ୍ଟିର ଧ୍ୱଂସପାଇଁ ନୁହେଁ, ସୃଷ୍ଟିର ରକ୍ଷା ଲାଗି । ପ୍ରକୃତି, ପ୍ରଣୟ ଓ ବିପ୍ଳବ – ଚେତନାର ସମନ୍ୱିତ ପରିପ୍ରକାଶ ଏହି କବିତାରେ ହୋଇଛି ।

ଆଲୋଚକ ଡଃ ନିଶାମଣି ସ୍ୱାଇଁଙ୍କ ମତରେ'ମୌସୁମୀ' ସଙ୍କଳନଟିର ପ୍ରଥମ କବିତା କବି ଗଡ଼ନାୟକଙ୍କ ସ୍ରଷ୍ଟାମାନସର ସର୍ବଶ୍ରେଷ୍ଠ ସୃଷ୍ଟି ବୋଲି କୁହାଯାଇପାରେ ।

'ମୌସୁମୀ' ସଙ୍କଳନରେ ବହୁ ଦେଶାତ୍ମବୋଧ ବହନ କରୁଥିବା କବିତାମାନ ଅଛି । ସେଗୁଡ଼ିକ ମଧ୍ୟରେ 'ଉଦ୍ଦାମ ସିଂ', 'ନେତାଜୀ ସୁଭାଷ', 'ମୁକ୍ତ ଭାରତ ଆଜି' ପ୍ରଭୃତି କବିତା ସ୍ଥାନ ପାଇଛି । କେତୋଟି ଜାତୀୟତାବାଦୀ କବିତା ପଢ଼ିଲେ ପାଠକର ରକ୍ତ ତାତିଉଠେ । ସହିଦ 'ଉଦ୍ଦାମ ସିଂ' ସେହିଭଳି ଏକ କବିତା ।

ଉଦ୍ଦାମ ସିଂହ ପଞ୍ଜାବର ବୀର ସହିଦ । ଜାଲିଆନ୍‌ୱାଲାବାଗ ଗଣହତ୍ୟାର ବହୁକାଳ ପରେ ଉକ୍ତ ଗୁଳିକାଣ୍ଡ ଘଟାଇଥିବା ଜେନେରାଲ ଡାୟାରଙ୍କୁ ହତ୍ୟା କରିବାକୁ ଶପଥ ନେଇ ସୁଦୂର ଲଣ୍ଡନ ଯାଇଛନ୍ତି । ସେଠାରେ ସୁଯୋଗ ଉଣ୍ଡି ଡାୟାରଙ୍କୁ ଗୁଳି କରି ହତ୍ୟା କରନ୍ତି । ସେଇ ହତ୍ୟା ଅପରାଧରେ ଲଣ୍ଡନଠାରେ ହିଁ ତାଙ୍କୁ ଫାଶୀଦଣ୍ଡ ଭୋଗ କରିବାକୁ ପଡ଼ିଛି । ଫାଶୀକାଠରେ ଠିଆ ହୋଇ କାହିଁକି ସେ ଡାୟାରଙ୍କୁ ହତ୍ୟା କଲେ – ତାହାକୁ କବି ଅପୂର୍ବ ଭାବରେ ବର୍ଣ୍ଣନା କରିଛନ୍ତି, ଯଥା –

କବିତାର ଆରମ୍ଭରେ ଉଦ୍ଦାମ ସିଂ କହିଛନ୍ତି –

"ଜନ୍ମଦାତ୍ରୀ ମୋର ଭାରତଭୂଇଁର ବହୁ ଦୂରେ ସାଥୀ ବହୁ ଦୂରେ
ବନ୍ଦୀ ମୁଁ ଆଜି ଉଦ୍ଦାମ ସିଂ ଏଇ ଲଣ୍ଡନ କାରାଗାରେ
ସମ୍ମୁଖେ ମୋର ଫାଶୀକାଠ
ଶିଖ ସନ୍ତାନ ଶୁଣାଉଛି ମୁହିଁ ଜନ୍ମମାଟିର ଜୟପାଠ ।"

ପୁଣି ସେ କହିଛନ୍ତି –

''ଜାଗିଥିଲା ଯେଉଁ ବହ୍ନିର ଲୀଳା ପଞ୍ଚନଦୀର ମାଟି ପରେ
ନୟନରେ ତାହା ଦେଖି ନ ଥିଲି ମୁଁ ଶୁଣିଥିଲି ଖାଲି ଶ୍ରବଣରେ
ପରଥମ କରି ଶୁଣିଲି ଯେ ଦିନ ହୋଇଗଲି ମୁହିଁ ସତେ ଜଡ଼ ।
× × ×
ଉନ୍ମାଦିନୀ ସମ ଛୁଟିଗଲି ମୁହିଁ ଜାଲିଆନ୍‌ୱାଲାବାଗ ଅଞ୍ଚଳେ
ଉତ୍କଟ ଏକ ଉଦ୍‌ବେଗ ମୁହିଁ ଅନୁଭବ କଲି ଅନ୍ତରେ
× × ×
ଉନ୍ମାଦ ପରି ଶୋଇଲି ମାଟିରେ ତା'ର ତଳେ ଯେଉଁ ଲାଭା ଥିଲା,
ବହ୍ନି ତାପରେ ଭରିଦେଲା ମୋର ସ୍ପନ୍ଦିତ ଶିରା ଉପଶିରା ।''
× × ×
ଶପଥ କଲି ମୁଁ ଥରି ଥରି
ଫେରିବି ନାହିଁ ମୁଁ ଏହା ତ ମୋହର ରହିଥାଉ ଏହା ଏହିପରି
କାହିଁରେ ହୋଇବ ମନବୋଧ
ବିଦ୍ୟୁତ୍ ସମ ଚିତ୍ତେ ସ୍ଫୁରିଲା ପ୍ରତିଶୋଧ ଖାଲି ପ୍ରତିଶୋଧ ।''

ବହୁଦିନ ପରେ ସୁଯୋଗ ଉଣ୍ଡି ଡାୟାର ଛାତି ଉପରେ ଗୁଳି ଚଳାଇଛନ୍ତି । କବିଙ୍କ ଭାଷାରେ –

''ବହୁଦିନ ପରେ ସେଇ କଥା ଶୁଣି ଜଳି ଜଳି ମୁହିଁ ଛାତି ତଳେ
ଉଦ୍ଧାମ ମୁହିଁ ଗୁଳି ବସାଇଛି ସେହି ଡାୟାର ଛାତିପରେ
ଏଥିପାଇଁ ଆଜି କିଏ ଦାୟୀ
ଅତ୍ୟାଚାରୀ କି ହତ୍ୟା କରି ମୁହିଁ ହୋଇଅଛି ଖୁଣୀ, ଆତତାୟୀ ।''

ଆଲୋଚକ ନିଶାମଣି ସ୍ୱାଇଁଙ୍କ ଭାଷାରେ – ''ଦେଶାତ୍ମବୋଧକ କବିତାମାନଙ୍କ ମଧ୍ୟରେ ଉଦ୍ଧାମ ସିଂ କବିତାର ସ୍ଥାନ ନିର୍ଦ୍ଦିଷ୍ଟ ଓ ସ୍ୱତନ୍ତ୍ର । ବାସ୍ତବରେ ଏହା ×× × ଏକ କବିତା ନୁହେଁ – ଏହା ଏକ ଯୁଦ୍ଧକାଳୀନ ବୀର ବାଦ୍ୟ – ଯାହାର ଶ୍ରବଣ ମାତ୍ରକେ ×× × ହୃଦୟରେ ଏକ ଭିନ୍ନ ଶିହରଣ ସୃଷ୍ଟି ହୋଇଯାଏ । ଶୌର୍ଯ୍ୟ, ସାହସ ଓ ଆତ୍ମବଳିଦାନର ଅନ୍ୟ ନାମହିଁ ଉଦ୍ଧାମ ସିଂ ।''

ସେହିପରି 'ସେନାନୀ ସୁଭାଷ' କବିତାରେ ରାଧାମୋହନ ଇଂରେଜମାନଙ୍କ କବଳରୁ ଭାରତକୁ ମୁକ୍ତ କରିବାପାଇଁ ଆଜାଦ ହିନ୍ଦ ଫୌଜ ଗଢ଼ିଥିବା ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କ ସ୍ଲୋଗାନ 'ଦିଲ୍ଲୀ ଚଲୋ' ଓ 'ଜୟହିନ୍ଦ୍'କୁ କବିତା ମାଧ୍ୟମରେ ପ୍ରକାଶ କରିଛନ୍ତି । ସୁଭାଷଙ୍କ ବୀରତ୍ୱ ଓ ତ୍ୟାଗକୁ ଅପରୂପ ଭାଷା ଓ ଛନ୍ଦରେ ରୂପ ଦେଇଛନ୍ତି ।

## କୈଶୋରିକା

କୈଶୋରିକାର ରଚନା କାଳ ହେଉଛି ୧୯୫୩ ମସିହା । ଏହାର 'ଶରତ ନଈ କୂଳେ' କବିତାରେ ପ୍ରକୃତି ଚିତ୍ରଣ ଅତି ସୁନ୍ଦର ହୋଇଛି । କବି କେବଳ ପ୍ରକୃତି ବର୍ଣ୍ଣନା କରି ନାହାନ୍ତି, ସେହି ପରିବେଶରେ କବିଙ୍କ ସଂପୃକ୍ତି ଥିବା ବର୍ଣ୍ଣନା ଅଧିକ ଜୀବନ୍ତ ହୋଇଛି, ଯଥା –

''ପାଖରେ ଏଇ ନଈ ପଠା
କାଉଁଶିବନ ଦିଶୁଚି ତହିଁ
ସତେ କି ଧଳା ଜଟା
ତାହାରି ପାଖେ ଚକୋର ବୁଲେ
ଉଷତ ହୋଇ ଚକୁଆ ବୁଲେ
ଭଦଳିଆଟି
ଚକର କାଟି ଦେଖାଏ ରୂପ ଛଟା ।''

ପୁଣି –

''ନଈର ଆରପାରେ
ଦିଶୁଚି ଗାଈ ବାଛୁରୀ ପଲ
ସବୁଜ ପଡ଼ିଆରେ
ଗୋପାଳ ପୁଅ ସେଇଠି କାହିଁ
ବଂଇଁଶୀ ସୁରେ ଦେଉଛି ଗାଇ
ମୂର୍ଚ୍ଛନାଟି
ଉଠୁଚି ମାତି
ସତେ କି ତାଳେ ତାଳେ ।''
ନଈର ଏଇ କୂଳେ ।
ଶେଫାଳି ଫୁଲ ଆକୁଳ କରି
ଫୁଟିଛି ଯାଇ ଦୂରେ
ମଧୁର ତା'ର ମହକ ରାଶି
ପବନ ସାଥେ ଆସୁଛି ଭାସି
ଆବେଶ ଭୋଳ
ଚିତ୍ତ ମୋର
ତାହାରି ସାଥେ ଘୂରେ ।''

ଏହି ସଙ୍କଳନ ଅନ୍ତର୍ଗତ 'ସୂର୍ଯ୍ୟୋଦୟ' ମଧ୍ୟ ଅନ୍ୟ ଏକ ସୁନ୍ଦର କବିତା । କୋଣାର୍କ ନିକଟସ୍ଥ ଚନ୍ଦ୍ରଭାଗା ନଦୀର ସିକତା ବେଳାରେ କବି ରାତି ନ ପାହୁଣୁ ଆସି ସୂର୍ଯ୍ୟୋଦୟ ଦେଖିବା ଆଶାରେ ଅପେକ୍ଷା କରି ବସିଥିଲେ । ସେହି ସୂର୍ଯ୍ୟୋଦୟ ଦର୍ଶନ କଲାପରେ ତାଙ୍କର ଭାବନା ଏହିପରି –

"ଆକୁଳେ ନାଚେ ଲହରୀ ଦାମ
ଲୁଟିବ ତୁମ୍ଭ କିରଣମାଳା
ପାଗଳେ ଛୁଟେ ଶିଶିର ବାଆ
ଲଭିବ ତୁମ କିରଣ ଧାରା ।
ଚାହିଁଛି ଏହି ସିକତା ବେଳା
ଦେଖିବ ଧରା ସ୍ୱର୍ଗ ମେଳା
ଆସୁନ କିଆଁ ଅରୁଣ ?
କନକ କର ବହ୍ନି ରସେ
ବିଶ୍ୱ କିଆଁ ଭରୁନ ?"

ମାସକୁ ଆଧାର କରି କବି କେତୋଟି କବିତା ଲେଖିଛନ୍ତି । ସେଥିମଧ୍ୟରୁ 'ବୈଶାଖ ମୁଁ' ଏକ ସୁନ୍ଦର କବିତା ।

"ବୈଶାଖ ମୁଁ ବୈଶାଖ ମୁଁ
ବର୍ଷର ମୁଁ ପହିଲି ମାସ
ଆକାଶ ତଳେ ପୃଥିବୀ ପରେ
ଜାଳଇ ମୋର ନିଆଁର ଝାସ ।"

ପୌଷ ମାସରେ ଧାନକଟା ଆଦି ହୁଏ । ଲକ୍ଷ୍ମୀପୂଜା ମଧ୍ୟ ପଲ୍ଲୀ ଜୀବନର ଏକ ବିଶିଷ୍ଟ ପର୍ବ । ପୌଷ ମାସ ସୁଖର ପରଶ ଖେଳାଇଦିଏ, ଯଥା –

"ସୁଖର ପରଶ ଖେଳାଇ ଭବନେ ଭବନେ
ସୁଖର ପଉଷ ଆସିଛି ଭାରତ ଭୁବନେ
ତୁମ ପାଦ ଲାଗି ଶୀତ କୁହୁଡ଼ିର କୁଆରେ
ପଦ୍ମ ଫୁଟିଛି ପଲ୍ଲୀ ଦୁଆରେ ଦୁଆରେ ।"

× × ×

ଖଳାରେ ଖଳାରେ କଳେଇ ଗଦା ସୁଷମା
ସକଳେ ନୟନେ ଦିଶୁଛି ଅତୁଳା ଅସୀମା ।"

'କୈଶୋରିକା' ଅନ୍ତର୍ଗତ 'ନବଉତ୍କଳ' ଏକ ଦେଶାତ୍ମବୋଧକ କବିତା । କବିତାର ପ୍ରଥମ ପଦରେ ହିଁ ଉତ୍କଳକୁ ଭାରତବର୍ଷର ଏକ ବିଶିଷ୍ଟ ଅଙ୍ଗ ରୂପେ କବି ବର୍ଣ୍ଣନା କରିଛନ୍ତି, ଯଥା –

"ନବ ଜାତକ ମୋ ନବ ଉତ୍କଳ
ନିଖିଳ ଭାରତେ ତୋଳିଛି ମଥା
କୋଟି ଅନ୍ତରେ ଉଛୁଳଇ ଆଜି
ନବ ଭାଷା ନବ ପ୍ରଫୁଲ୍ଲତା ।"

କବିଙ୍କ ବର୍ଣ୍ଣନାରେ ଉତ୍କଳର ବୃହତ୍ତମ ନଦୀ ମହାନଦୀ ଉଲ୍ଲାସର ସହ କହିଛି ଯେ ରାଜ୍ୟବାସୀଙ୍କ ସମୂହ କଲ୍ୟାଣପାଇଁ ସେ ବକ୍ଷରେ ହୀରାକୁଦ ବନ୍ଧ ନିର୍ମାଣ କରିଛି ।

''ସ୍ଫୀତ ବକ୍ଷରେ ମହାନଦୀ କହେ
କାରା ବରିଥିଲେ ଆମରି ଗାନ୍ଧୀ
ମୋହରି ଦେଶର ମଙ୍ଗଳ ଲାଗି
ବନ୍ଧ ମୁଁ ବୁକେ ନେଇଚି ବାନ୍ଧି ।''

ସେହିପରି ବ୍ରାହ୍ମଣୀ ନଦୀ ଋଷିକୁଲ୍ୟା ନଦୀକୁ କହୁଛି ଯେ ''ଆମ୍ଭେ ଜଳଦାନ କରି ଆମର ଜନ୍ମମାଟିକୁ ଫୁଲ, ଫଳ, ଶସ୍ୟ, ତୃଣ ଇତ୍ୟାଦିରେ ପରିପୂର୍ଣ୍ଣ କରିଦେବା ।'' କୋରାପୁଟର ବନ ଭିତରେ ଡୁଡୁମା ନାଚି ନାଚି କହିଛି ଯେ ତା'ର ଅରଣ୍ୟରୋଦନ ଶେଷ ହୋଇଛି । କାରଣ ଜଳପ୍ରପାତ ଯୋଜନାରେ ବିଦ୍ୟୁତ୍‌ଶକ୍ତି ସୃଷ୍ଟି ହେଲେ ସେ ଦେଶର ସେବା କରିପାରିବ ।

ସେହିଭଳି କଟକର ବାରବାଟୀ ଗଡ଼, ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିର ଓ ପୁରୀର ବଡ଼ଦେଉଳ ମଧ୍ୟ ଜାତିର ଉନ୍ନତି ନିମନ୍ତେ ସହାୟକ ହେବେ ବୋଲି ଉତ୍କଳପ୍ରାଣ କବି ସୁନ୍ଦରଭାବେ ବର୍ଣ୍ଣନା କରିଛନ୍ତି ।

ଆଲୋଚକଙ୍କ ମତରେ 'ନବଭାରତ' କବିତା ବାସ୍ତବରେ ନୂତନ ଆଶା ଓ ନବୀନ ଉତ୍ସାହ ସୃଷ୍ଟିର ଏକ ଅଲିଭା ଜ୍ୟୋତିରେଖା ।

### ଧୂସର ଭୂମିକା

'ଧୂସର ଭୂମିକା' ୧୯୬୦ ମସିହାରେ ରଚିତ । ଏଥିରେ ସ୍ୱାଧୀନତୋତ୍ତର ଭାରତର ଆଶା-ଆକାଂକ୍ଷା, ସ୍ୱପ୍ନ-ସମ୍ଭାବନା କିଭଳି ଧୂଳିସାତ୍ ହୋଇଛି, ସେ ବିଷୟରେ ରାଧାମୋହନ ସୂଚନା ଦେଇଛନ୍ତି । କବି 'ଧୂସର ଭୂମିକା'ର ମୁଖବନ୍ଧରେ କହିଛନ୍ତି – ''ସାମ୍ପ୍ରତିକ ପୃଥିବୀ ଦୁଃଖ, ବ୍ୟଥା, ବାଦ-ବିସମ୍ବାଦ, ଭେଦାଭେଦ ଓ ନାନା ସମସ୍ୟାରେ ଭରା । ଜୀବନ ସହଜରେ ଶୁଷ୍କ ଓ ବିବର୍ଣ୍ଣ ହୋଇଯାଇଛି । ତଥାପି ଆଶାବାଦୀ ମଣିଷ ଦେଖୁଛି ତା'ର ସ୍ୱପ୍ନ–ଶ୍ୟାମଳ ସମାରୋହର ସ୍ୱପ୍ନ । 'ଧୂସର ଭୂମିକା'ରେ ଯାର ଛାୟାଲୋକ ଯତ୍‌କିଞ୍ଚିତ୍ ଅଛି ବୋଧହୁଏ ।''

ପରାଧୀନ ଭାରତ ସ୍ୱାଧୀନ ହେଲା, ମାତ୍ର ସ୍ୱାଧୀନ ଭାରତର ପ୍ରଥମ ସକାଳପାଇଁ ବିପୁଳ ପ୍ରସ୍ତୁତି ସମାରୋହ ବିଫଳତାରେ ପର୍ଯ୍ୟବସିତ ହୋଇଛି । କବି ସେହି ଦୁରବସ୍ଥା ଲକ୍ଷ୍ୟ କରି ବିବ୍ରତ ହୋଇପଡ଼ିଛନ୍ତି –

''ଆଖିର ଲୋତକେ ଛାତିର ରକତେ
ଉର୍ବର କଲା ଯେ ଦେଶତଳ
ସେ ଭୂଇଁରେ ଆଜି ଯେଉଁ ବୀଜ ପୋତ
ଦେଖାଯାଉ ନାହିଁ ଗୋଟିଏ ଫଳ ।''

ସେହିପରି 'ଜାନୁଆରୀ ୨୬' କବିତାରେ କବି ଜନସାଧାରଣଙ୍କ ଦୁଃଖ-ଦୁର୍ଦ୍ଦଶାକୁ ଲକ୍ଷ୍ୟ କରି ସ୍ୱପ୍ନଭଙ୍ଗ ଓ ମୋହଭଙ୍ଗର ଚିତ୍ର ଅତି କଳାତ୍ମକ ଭାବେ ପ୍ରଦାନ କରିଛନ୍ତି, ଯଥା –

''କହରେ ଚଟୁଳ ସୁନାର ମିରିଗ
ଛଇଳ ମାରୀଚ ଆଜି
ଦେଖାଉଛ ଆମ ଭୋକିଲା ଆଖିରେ
ସ୍ୱପ୍ନର ଏ କି ବାଜି ?
ଘରେ ରହି ଆମେ ରାମ ଭଳି ଆଜି
କରୁଅଛୁ ବନବାସ
ରାମରାଜ୍ୟର କଳ୍ପନା କାହିଁ ?
ଶାସନର ଏ ତ ଫାଶ ।''

ସ୍ୱାଧୀନତା ବହୁ ପରେ ବି ଦେଶର, ସମାଜର ଦୁର୍ଗତି ଦୂର ହୋଇନି । ଆର୍ଥନୀତିକ ବ୍ୟବସ୍ଥାରେ ମୌଳିକ ତ୍ରୁଟି ରହିଯିବା ଫଳରେ ଦେଶର ସ୍ୱାଧୀନ ସନ୍ତାନ ଅନ୍ନ ମୁଠାଏ ବିନା ଉପବାସରେ ମୃତ୍ୟୁବରଣ କରିଛି । ଲଜ୍ଜା ନିବାରଣପାଇଁ ବସ୍ତ୍ର ଖଣ୍ଡିଏ ମଧ୍ୟ ମିଳୁ ନାହିଁ । କବିଙ୍କର ଖେଦୋକ୍ତି –

''ସ୍ୱାଧୀନ ଆମର ଦେଶର ଦଶା
କାହା ଆଳୟରେ ମଳୟ ଲୋଟୁଛି
କାହା କପାଳରେ ପ୍ରଳୟ ବସା
ବେପାରୀ ଦଲାଲ କଣ୍ଟ୍ରାକ୍ଟର
କଳ ମାଲିକର କମ୍ରପୁରେ
ଭାଗ୍ୟଦାତ୍ରୀ ଲକ୍ଷ୍ମୀ ନିଜେ,
କଳାରେ କଳାରେ ଏ ଲାଗେ
ଷୋହଳ କଳାରେ ବିଜେ ।''

କବି ତେବେ ଆଶାବାଦୀ । ଜୀବନର ସମସ୍ତ ବିଫଳତାକୁ ପ୍ରତ୍ୟକ୍ଷ କଲେ ହେଁ ସେ ସେଥିରେ ହତୋତ୍ସାହ ହୋଇ ନାହାନ୍ତି । ସେ ଏକ ସୁନ୍ଦର ଭାବୀ-ସମୟର କଳ୍ପନା କରିଛନ୍ତି । କବି ପୃଥିବୀମାତାଙ୍କୁ 'ହେ ପୃଥ୍ୱୀ' ସମ୍ବୋଧନ କରି ପୁନରାୟ ଏହି ଅଭାବ-ଅନଟନ-ଭରା ପୃଥିବୀରେ କାମଧେନୁ ସାଜିବାକୁ ଅନୁରୋଧ କରିଛନ୍ତି ।

''ଅୟି ପୃଥ୍ୱୀ ଆଉ ଥରେ କାମଧେନୁ ହୁଅ ଆଜି ତୁମେ
ବୁଭୁକ୍ଷାର ଦହନେ କି ହରାଇବୁ ପ୍ରାଣ
ଆମେ ସବୁ ମନୁର ସନ୍ତାନ
ତୁମର ଏ ସ୍ନେହାଞ୍ଚିତ ଭାଗେ
ଅୟି ପୃଥ୍ୱୀ
ଆଉ ଥରେ କାମଧେନୁ ହୁଅ ଆଜି ତୁମେ ।''

ସେ ଯୁଗ ଆଉ ନାହିଁ । ସେ ପ୍ରଜାବତ୍ସଳ ରାଜା ପୃଥୁ ନାହାନ୍ତି କି ସେ ଉଦାରଚେତା ପୃଥିବୀମାତା ନାହାନ୍ତି । ଆଜିର ଏ ବିଜ୍ଞାନ ଯୁଗରେ ମଣିଷ ବଳୀୟାନ୍ । ସେ ଆଉ ପ୍ରକୃତିର ଉପାସକ ନୁହେଁ । ସେ ପ୍ରକୃତିର ଛାତି ଉପରେ ବିଜୟର ବୈଜୟନ୍ତୀ ଉଡ଼ାଇବାରେ ବ୍ୟସ୍ତ । ଦିନକୁ ଦିନ ପୃଥିବୀ ହୋଇଯାଉଛି ରୁକ୍ଷ ଓ ବୀଭତ୍ସ । ଅଭାବ ଅନଟନରେ ଆଜି ସମସ୍ତେ ସନ୍ତୁଳିତ । ଏହାକୁ କବି ଲକ୍ଷ୍ୟ କରିଛନ୍ତି ଓ ପ୍ରକାଶ କରିଛନ୍ତି –

''ପ୍ରକୃତିର ଛାତି ପରେ ବିଜ୍ଞାନର ଉଗ୍ର ଅଭିଯାନ
ବିଜୟର ଧ୍ୱଜା ଟେକି
ମେଲିଅଛି ମତ୍ତ ଅଭିଯାନ
ମନୁର ସନ୍ତାନ ଏଇ ଆଜିର ଦାୟାଦ
ଯୁକ୍ତିକରେ ମାଗୁ ନାହିଁ ସ୍ୱର୍ଗ ଆଶୀର୍ବାଦ
ମାଗୁ ନାହିଁ ଚନ୍ଦ୍ର ଜ୍ୟୋତ୍ସ୍ନା
ମାଗୁ ନାହିଁ ଇନ୍ଦ୍ର ମେଘ-ବାରି
ମୁକ୍ତ ସମୀରଣ ପଦେ
ଆବେଦନ ଦେଉ ନାହିଁ ଢାଳି ।''

କବି ବିଶ୍ୱବାସୀଙ୍କ ଚରମ ଦୁର୍ଦ୍ଦଶା ଓ ଅଧୋଗତି ଦେଖି ଦୁଃଖରେ ମ୍ରିୟମାଣ ହୋଇପଡ଼ିଛନ୍ତି । ନୂତନ ଦିଗ୍‌ଦର୍ଶନ ଦେଉଥିବା ସାଧକମାନଙ୍କ ପ୍ରତି ସେ ନିଜର ସମ୍ମାନ ଜଣାଇଛନ୍ତି । 'ଅରବିନ୍ଦ' କବିତାରେ ମହାନ୍ ସାଧକ ଓ ଯୋଗୀ ଅରବିନ୍ଦଙ୍କ ପ୍ରତି ନିଜର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିଛନ୍ତି –

''ଜୀବନର ପଙ୍କମୟ ସୀମାହୀନ ଏଇ ପୃଥ୍ୱୀଲୋକେ
ଅରବିନ୍ଦ ଅଧ୍ୟାତ୍ମର ଉଦ୍ଭାସିତ ସଂବିତ୍–ଆଲୋକେ
ବିକଶିତ କରିଦେଇ ଆପଣାର ଆତ୍ମା ଅନାବିଳ
ଅମର୍ତ୍ତ୍ୟ, ସୌରଭ ପୁଞ୍ଜେ ଭରୁଅଛ ଅନନ୍ତ ଅଖିଳ ।''

**ସୂର୍ଯ୍ୟ ଓ ଅନ୍ଧକାର**

୧୯୬୮ ମସିହାରେ ପ୍ରକାଶ ପାଇଥିବା 'ସୂର୍ଯ୍ୟ ଓ ଅନ୍ଧକାର' ସଙ୍କଳନରେ ଚବିଶ ଗୋଟି କବିତା ସ୍ଥାନ ପାଇଅଛି । ଆକାରରେ ବଡ଼ ନ ହେଲେ ବି କବିଙ୍କ ବହୁମୁଖୀ ପ୍ରତିଭାର ପ୍ରତିନିଧିତ୍ୱ କଲାଭଳି କେତୋଟି କବିତା ଏଥିରେ ସନ୍ନିବେଶିତ ।

କବି ଏହି ସଙ୍କଳନରେ ଏକ ନୂତନ ଦର୍ଶନର ଅବତାରଣା କରିଛନ୍ତି । ସୂର୍ଯ୍ୟ ତା'ର ଆଲୋକରେ ସୃଷ୍ଟିର ରହସ୍ୟକୁ ଉନ୍ମୋଚନ କରେ ବୋଲି ଯେଉଁ ବିଶ୍ୱାସ ରହିଛି, କବି ତାହାକୁ ଖଣ୍ଡନ କରିଛନ୍ତି । ବରଂ ସୂର୍ଯ୍ୟ ଏ ସୃଷ୍ଟିର ହୃଦୟକୁ ବେଶି ଅବରୁଦ୍ଧ କରେ । ସୃଷ୍ଟିର ତଥ୍ୟକୁ ଗୋପନ ରଖି ସଘନ ସଂଶୟ ସୃଷ୍ଟି କରେ । ଅପରପକ୍ଷେ ଅନ୍ଧକାର ସୃଷ୍ଟିକୁ ଆବୃତ ନ କରି ପ୍ରଚ୍ଛନ୍ନ ରଖି ବେଶି ଅନାବୃତ ଏବଂ ନଗ୍ନ କରିଦିଏ । ପ୍ରତ୍ୟେକଟିକୁ ବାସ୍ତବ ସ୍ୱରୂପରେ ଉପସ୍ଥାପିତ କରେ । କବିଙ୍କ ଭାଷାରେ –

''ସୂର୍ଯ୍ୟ ବରଂ ସୃଷ୍ଟିର ହୃଦୟ
ବେଶୀ ଅବରୁଦ୍ଧ କରେ
ବେଶୀ ଗୋପନୀୟ କରେ
ସୃଷ୍ଟି କରେ ସଘନ ସଂଶୟ
× × ×
ଅନ୍ଧକାର ବରଂ ଏ ସୃଷ୍ଟିକୁ
ଘଟାଟୋପେ ତା'ର
ବେଶୀ ଅନାବୃତ କରେ
ବେଶୀ ନଗ୍ନ କରେ ।''

ଟିକିଏ ତଳେଇ କରି ଚିନ୍ତା କଲେ ଏହା ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ସୂର୍ଯ୍ୟାଲୋକରେ ବା ଖୋଲାଖୋଲି ଭାବେ ଦୁନିଆରେ ଯାହା କିଛି ହୁଏ ବା ଘଟେ, ତାହା ବାସ୍ତବ ନୁହେଁ । ଅପରପକ୍ଷରେ ଅନ୍ଧକାର ଭିତରେ ବା ଲୁଚାଛପା ଭାବରେ ଯାହାସବୁ ଘଟେ, ତାହାହିଁ ସତ୍ୟ, ତାହାହିଁ ଯଥାର୍ଥ ସ୍ୱରୂପର ପ୍ରକାଶକ । ଉଦାହରଣସ୍ୱରୂପ, ଉଜ୍ଜ୍ୱଳ ଦିବାଲୋକରେ ଯିଏ ନିଶାସେବନ ବିରୋଧରେ ଭାଷଣ ଦିଏ, ରାତ୍ରିର ଅନ୍ଧକାରରେ ସେ ହିଁ ନିଜ କଥାର ବିରୁଦ୍ଧାଚରଣ କରିଥାଏ । ସୃଷ୍ଟିରେ ଏହାର ଉଦାହରଣର ଅଭାବ ନାହିଁ । ଏ କବିତା ଭିତରେ କବିଙ୍କ ହୃଦୟର ଭିନ୍ନ ଏକ ଦିଗ ପ୍ରକଟିତ ହୋଇଛି ।

'ଗୋଟିଏ ସାପର ଆତ୍ମକଥା' କବିତାରେ କବିଙ୍କର ଏହି ନିଷ୍ଠୁର ସତ୍ୟର ଉଦ୍‌ଘାଟନ କରାଯାଇଛି । ସର୍ପ ଦୁର୍ଜନ, ଦୁର୍ମୁଖ, ଭୟଙ୍କର । ସେ ବିଷ ଉଦ୍‌ଗିରଣ କରେ । କିନ୍ତୁ ସେହି ଦୁର୍ଜନ, ଦୁର୍ମୁଖ ସର୍ପର ଭୟଙ୍କରତା କେଉଁଥିପାଇଁ, ତାହା କେହି ବୁଝିବାକୁ କେବେ ଚେଷ୍ଟା କରି ନାହିଁ । ଏ ସୃଷ୍ଟି ଭିତରେ ପ୍ରତ୍ୟେକ ନିଜ ନିଜର ସ୍ୱାଧିକାର ଓ ସ୍ୱତ୍ୱ ସାବ୍ୟସ୍ତ କରିନେବାବେଳେ ସର୍ପ ବିଡ଼ମ୍ବିତ ହୋଇଛି । ସେଥିପାଇଁ ସେ କହିଛି –

''ସୃଷ୍ଟି ଭିତରେ ମୁଁ ଏକ ସୃଷ୍ଟି
ଏକ ଭୀମକାନ୍ତ ସୃଷ୍ଟି
ସୃଷ୍ଟି ଭିତରେ ପ୍ରତ୍ୟେକର
ସ୍ୱାଧିକାର ଅଛି,
ସ୍ୱତ୍ୱ ଅଛି,
ମୋର ବି ଅଛି
ମାତ୍ର ମୁଁ ପାଇଛି କ'ଣ ?
ପାଉଛି କ'ଣ ?
× × ×

ଫୁଲ ଫୁଟାଇ ମୁଁ ପାଉନି ଫଳ
ଛାତିର ରକ୍ତ ଦେଇ
ମୁଁ ପାଉନି ପ୍ରତିଦାନର ଅନୁରକ୍ତି
ପବନ ଆହାର କରି
ମୁଁ ବଞ୍ଚୁଛି
ସାପ ହେବିନି ତ
ହେବି କ'ଣ?

ସାପକୁ ଉପଲକ୍ଷ୍ୟ ଦେଇ କବିତାଟି ରଚିତ ହୋଇଛି ବୋଲି ଆଲୋଚକ ମତ ଦେଇଛନ୍ତି । କବି ଜୀବନରେ ଯେଉଁ ଲାଞ୍ଛନା ବା କର୍କଶତା ପାଇଛନ୍ତି ତାହାକୁ ସେ ପ୍ରକାଶ କରିଛନ୍ତି, ଯଥା –

''ପ୍ରଣୟ ଦେଇ ମୁଁ ପାଉଚି ପ୍ରବଞ୍ଚନା
ସେବା ଦେଇ ମୁଁ ପାଉଚି ଅବହେଳା
କଳା ଦେଇ ମୁଁ ପାଉଚି କଳଙ୍କ ।''

'ସୂର୍ଯ୍ୟ ଓ ଅନ୍ଧକାର' ଗ୍ରନ୍ଥରେ ସ୍ଥାନ ପାଇଥିବା 'ଆଜି ଏଇ ରୁପାର ଜୟନ୍ତୀ' ଓ 'ତୁମ ଲାଗି ଅଗଷ୍ଟ ପନ୍ଦର–୧୯୭୨' କବିତା ଦୁଇଟିରେ ଏହି ବିଦ୍ରୋହର ସ୍ୱର ଅତି ତୀବ୍ର ହୋଇଉଠିଛି । 'ଆଜି ଏ ରୁପାର ଜୟନ୍ତୀ' ଏକ ଦୀର୍ଘ କବିତା ଓ ୧୯୭୨ ସାଲରେ ଭୁବନେଶ୍ୱରଠାରେ ଅଗଷ୍ଟ ପନ୍ଦର ଗୌପ୍ୟ ଜୟନ୍ତୀ ଉତ୍ସବରେ ପଠିତ ହୋଇଥିଲା । ଏଥିରେ କବି ସ୍ୱାଧୀନ ଦେଶର ଦୁଃଖଦ ପରିସ୍ଥିତିକୁ ଲକ୍ଷ୍ୟ କରି ତୀବ୍ର ବେଦନା ଓ ବିରକ୍ତି ପ୍ରକାଶ କରିଛନ୍ତି । ମନ୍ତ୍ରୀ ପଦରେ ଅଧିଷ୍ଠିତ ହୋଇ ବ୍ୟକ୍ତି କ୍ଷମତାରେ ଅନ୍ଧ ହୋଇପଡୁଛନ୍ତି । ଅତୀତର ମୁକ୍ତି ସଂଗ୍ରାମର ନେତାମାନେ କିପରି ନିର୍ବାଚନ-ସର୍ବସ୍ୱ ହୋଇପଡୁଛନ୍ତି ତାହା ପ୍ରକାଶ କରିଛନ୍ତି –

''ମୁକ୍ତି ଜାଗରେ ଆମରି ଆଗରେ
ତ୍ୟାଗରେ ଯେ ଥିଲା ଆମର ନେତା
ଶାସନରେ ବସି ଆସନରେ ବସି
ଭୋଗରେ ସେ ଆଜି ଭ୍ରଷ୍ଟନେତା
ମନ୍ତ୍ରୀ ପଦରେ ଶକ୍ତି ମନରେ
ଥାତି ହେବାପାଇଁ ବିକଳ ମନ
ବିସ୍ମିତ ହୋଇ ଦେଖୁଅଛୁ ଆମେ
ଶାସନଟା ଖାଲି ନିର୍ବାଚନ ।''

ଯେଉଁଠି ପୁଣି କଳାବର୍ଜାରର ବେପାରୀମାନେ ଗଣତନ୍ତ୍ରର ସୂତ୍ରଧର, ଦେଶର ଉନ୍ନତିକଳ୍ପେ ଉଦ୍ଦିଷ୍ଟ ଅର୍ଥ ଟାଉଟର ଅଗ୍ନିଗ୍ରାସରେ ପଡୁଛି, ସେଠି ତମ୍ୱାପଟାର ଆବଶ୍ୟକତା ଅଛି କେଉଁଠି ? କବି ତେଣୁ ବିପ୍ଲବବାଣୀ ଶୁଣାଇଛନ୍ତି –

''ହାତ ବଢ଼ାଇଲା ବେଳକୁ ତଥାପି
ପଛକୁ ଘୁଞ୍ଚି ଆସୁଛି ମନ
କି ହେବ ଆମର ସ୍ମୃତି ସନ୍ତକ
କି ହେବ ତୁମର ଦାନ ଓ ଧନ ।''

ପୁଣି ଆଜିର ପରିସ୍ଥିତିରେ କଲ୍ୟାଣ ନିମିତ୍ତ ଉଦ୍ଦିଷ୍ଟ ଧନ କିପରି ବାଟମାରଣା ହୋଇଯାଉଛି ଏବଂ ଜନତା କିପରି ଅସୁମାରି ଦୁଃଖ-ଦୁର୍ଦ୍ଦଶା ମଧ୍ୟରେ ଗତି କରୁଛନ୍ତି, କବି ତାହା ନିର୍ଭୀକ ଭାବରେ ପ୍ରକାଶ କରିଛନ୍ତି –

''ରାସ୍ତା ନାଆଁରେ, ବନ୍ଧ ନାଆଁରେ
କେତେ କି ନାଁରେ ଅର୍ଥ ଆସେ
ଆହୁତି ପରାଏ ବେଶୀ ଭାଗ ଯାଏ
ଶଠ-ଟାଉଟର ଅଗ୍ନି ଗ୍ରାସେ ।
ପଙ୍ଗପାଳର ଅତ୍ୟାଚାରରେ
ସୁନାର ଫସଲ ହେଉଛି ଶେଷ
ଅକାଳେ ମରୁଚି ଚାଷୀ ମଜଦୁର
ଦଗ୍ଧ ହେଉଛି ଆମ ଏ ଦେଶ ।''

'ତୁମ୍ଭ ଲାଗି ଅଗଷ୍ଟ ପନ୍ଦର–୧୯୭୨'ରେ ପୂର୍ବ କବିତା ପରି ଦେଶର ଦୁଃଖ ଓ ଦୁର୍ଦ୍ଦଶା ବର୍ଣ୍ଣିତ । ସ୍ୱାଧୀନତା ଦିବସକୁ କବି ପ୍ରଶ୍ନ କରିଛନ୍ତି –

''ଅନ୍ନ ନାହିଁ ବସ୍ତ୍ର ନାହିଁ
ଲକ୍ଷ ଲକ୍ଷ ଆହତ କଙ୍କାଳ
ଗ୍ରାମେ ଗ୍ରାମେ
ପଥେ ପଥେ
ତୋଳୁଅଛି କରୁଣ ଚିତ୍କାର
ତା'ର ସାଥେ ଦଳ, ବଳ, ଦଳନର
ବିଚିତ୍ର କନ୍ଦଳ
କି କବିତା ଲେଖିବି ମୁଁ
ତୁମ ଲାଗି ଅଗଷ୍ଟ ପନ୍ଦର ।''

ସମାଲୋଚକ ଡଃ ନିତ୍ୟାନନ୍ଦ ଶତପଥୀଙ୍କ ମତରେ, ''ସୂର୍ଯ୍ୟ ଓ ଅନ୍ଧକାର ତେଣୁ ତାଙ୍କ ପରିବର୍ତ୍ତିତ କାବ୍ୟମାନସର ମାନଚିତ୍ର ଗ୍ରହଣ କରି କବିଙ୍କୁ ସାମାଜିକ ବ୍ୟଞ୍ଜନାର ଏକ ବିସ୍ଫୋରଣମୁଖୀ ବାରୁଦସ୍ତୂପ ଉପରେ ଠିଆ କରିଦେଇଛି । ସେ ସମସ୍ତ ସାମାଜିକ ଅସଙ୍ଗତି, ବିରୋଧାଭାସ ଓ ନଗ୍ନତା ବିରୋଧରେ ବୌଦ୍ଧିକତାର ଶରବର୍ଷଣ କରିଛନ୍ତି ।''

**ଅବାଚୀର ତାରା**

୧୯୮୨ ମସିହାରେ ରଚିତ । କବି ଏଥିରେ କେତୋଟି ଗାଥାକବିତା ଓ କଥାକବିତାର ସଂଯୋଜନା କରିଛନ୍ତି । 'ଦାରୁଦେବତା' ଗୋଟିଏ କଥାକବିତା । ଏଥିରେ ମନ୍ଦ ସମୀରଣର ବର୍ଣ୍ଣନା କରାଯାଇଛି –

''ନାରୀକେଳ ତରୁ-ଶାଖା-ବୀଥିପରେ
ଖେଳିଲା, ଜଳିଲା, ଅତୁଳ ଆଦରେ
ଝାଉଁ ବନେ ଯାଇ ତରବର
ମରମର ଲୋକ ଉଚ୍ଛ୍ୱାସ ଧରି
ଛନ୍ଦ ସୃଜିଲା ମର-ମର ।''

ଏହି ସଙ୍କଳନସ୍ଥ 'ତାମାଦୋରା' ଏକ ଗାଥାକବିତା । ୧୮୩୦ ମସିହାରେ କୋଇଆ ଜାତିର ତାମାଦୋରା କିପରି ବଣପାହାଡ଼ଘେରା ମାଲକାନଗିରିରେ ଇଂରେଜମାନଙ୍କ ବିରୋଧରେ ବିଦ୍ରୋହ କରି ନିହତ ହୋଇଥିଲେ, ତାହା ଅତି ସୁନ୍ଦରଭାବେ କବି ବର୍ଣ୍ଣନା କରିଛନ୍ତି ।

କବିତା 'ସ୍ତବ୍ଧ ଆଜି ମୋର ଦୃଷ୍ଟି'ରେ କବିହୃଦୟର ଏକ ସ୍ୱତନ୍ତ୍ର ଭାବଧାରା ପ୍ରକାଶ ପାଇଛି । ବିଶ୍ୱର ରୂପ, ରସ, ଗନ୍ଧ ଓ ସ୍ପର୍ଶ ପାଇବାପାଇଁ ଆଗେଇ ଯାଉଥିବା କବି ମାଟିର ମୋହ-ମମତାକୁ ଭୁଲିପାରି ନାହାନ୍ତି । ଛୋଟିଆ ଗାଁଟିଏ । ଚାଳ ଘର । ଛୋଟିଆ ନଈର ସଜଳ ମନକଥା, ଶ୍ୟାମଳ ତରୁଲତିକା, ବିହଙ୍ଗର କୋଳାହଳକୁ ପଶ୍ଚାତ୍ ଦୃଷ୍ଟିରେ ଚାହିଁଦେବାବେଳେ କବି ସ୍ତବ୍ଧ ହୋଇପଡ଼ିଛନ୍ତି, ତାଙ୍କ ପ୍ରାଣରେ ଅତି ପ୍ରିୟ ହୋଇଉଠିଛି ଛୋଟିଆ ଗାଁଟି । କବିଙ୍କ ଲେଖନୀରୁ ଝରିପଡ଼ିଛି –

''ଛୋଟିଆ ମୋର ଗାଆଁ
ମହାନ୍ ପୃଥିବୀର ବିଶାଳ ବୁକୁପରେ
କେତିକି ପ୍ରିୟ ଆହା ।''

**ଗାଥାକବିତା**

ସଫଳ ଗାଥାକବିତାର ସ୍ରଷ୍ଟା ଗୋଦାବରୀଶ ମିଶ୍ରଙ୍କ ପରେ ଗାଥା ସାହିତ୍ୟର ବିଶିଷ୍ଟ ଦିଗପାଳ ହେଉଛନ୍ତି ରାଧାମୋହନ ଗଡ଼ନାୟକ । ତାଙ୍କର ଗାଥାକବିତାଗୁଡ଼ିକ ପୂର୍ଣ୍ଣତଃ ସାହିତ୍ୟିକ ବିଭାରେ ସମୁଜ୍ଜ୍ୱଳ । ସ୍ଥାନ ଓ କାଳର ସଂକ୍ଷିପ୍ତ ବର୍ଣ୍ଣନା ଦେଇ ରାଧାମୋହନ ସେଗୁଡ଼ିକ ଇଙ୍ଗିତାତ୍ମକ ଭାବରେ ପରିବେଷଣ କରିଛନ୍ତି । ସେ ଏ କ୍ଷେତ୍ରରେ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ପଦାଙ୍କ ଓ ଭାବାଦର୍ଶ ଅନୁସରଣ କରିଥିବା କେହି କେହି ଆଲୋଚକ ମତ ଦେଇଥାନ୍ତି । ତାଙ୍କ ମତରେ ରାଧାମୋହନ ରବୀନ୍ଦ୍ରଙ୍କ ପ୍ରଭାବକୁ ଅତିକ୍ରମ କରି ନିଜ ସୃଷ୍ଟି ମଧ୍ୟରେ ସ୍ୱକୀୟ ସୃଜନଶୀଳତା ଓ ମୌଳିକ କଳ୍ପନାବିଳାସର ପରିଚୟ ବହୁ କ୍ଷେତ୍ରରେ ଦେଇଛନ୍ତି ।

ରାଧାମୋହନଙ୍କ ଗାଥାକବିତା ସୃଷ୍ଟିର ପ୍ରଥମ ପ୍ରୟାସ ହେଉଛି 'ବନରାଜିନୀଳା' ସଙ୍କଳନସ୍ଥ 'ଦିଲୀପ ଓ ନନ୍ଦିନୀ' ଗାଥାକବିତା । ପରବର୍ତ୍ତୀ ପ୍ରୟାସ 'କାବ୍ୟନାୟିକା'ରେ କରାଯାଇଥିବା ଲକ୍ଷ୍ୟ କରାଯାଏ । ପୁରାଣ ପୃଷ୍ଠାର ବହୁ ଉପେକ୍ଷିତ ଚରିତ୍ର, ଯଥା – ବିଦେହ ଛାଡ଼ି ସନ୍ୟାସ ନେଇଥିବା ପିଙ୍ଗଳା, କୋମଳହୃଦୟା ଦ୍ରୌପଦୀ, ଅପରର ପ୍ରେମପାଇଁ ତ୍ୟାଗ କରିଥିବା ଲଳିତା, ଯୌବନର ଆରାଧନା କରିଥିବା ଯଯାତି ବା ବିରହସନ୍ତପ୍ତା ଗୋପବାଳା ପ୍ରଭୃତି କବିତା ମାଧମରେ ଗୋଟିଏ ପ୍ରକାରର ଉଦ୍ଦାମ ଶକ୍ତି ଗ୍ରହଣ କରିଛନ୍ତି – ଯାହାକି ସେମାନଙ୍କୁ ଐତିହାସିକ ଓ କାଳ୍ପନିକ ବିଶ୍ୱଜଗତଠାରୁ ସ୍ୱତନ୍ତ୍ର କରି ପ୍ରତିଷ୍ଠିତ କରେ । ସେହି ସବୁ ଗାଥାକବିତାର ଆବେଦନ ଯେ ସର୍ବଜନ ହୃଦୟସ୍ପର୍ଶୀ ହୋଇପାରିଛି, ତାହା ସମସ୍ତେ ସ୍ୱୀକାର କରନ୍ତି ।

'କାବ୍ୟନାୟିକା'ର ପରବର୍ତ୍ତୀ ସୃଷ୍ଟି ହେଉଛି 'ଉତ୍କଳିକା' ।

**ଉତ୍କଳିକା**

ଉତ୍କଳଭିତ୍ତିକ କାହାଣୀକୁ ନେଇ 'ଉତ୍କଳିକା' ରଚିତ । ରାଧାମୋହନ ଏହି ସଙ୍କଳନର 'ପଦେ ଅଧେ' ପର୍ଯ୍ୟାୟରେ ଲେଖିଛନ୍ତି – ''ମୁଁ ଏଥିରେ ଯେଉଁ କଥାବସ୍ତୁର ବ୍ୟବହାର କରିଅଛି, ତହିଁରେ ଐତିହାସିକ ସତ୍ୟ ଅଛି । × × × ଉତ୍କଳର ପୁରପଲ୍ଲୀ, ଲୋକମୁଖରେ ଏଇ ଧରଣର କେତେ ଯେ କଥା ଓ ଲେଖା ବିକ୍ଷିପ୍ତ ରହିଛି ତାହାର ଇୟତ୍ତା ନାହିଁ । ସେସବୁର ସନ୍ଧାନ, ଉଦ୍ଧାର ଆଜିର ପ୍ରତ୍ୟେକଙ୍କର ଲକ୍ଷ୍ୟ । ତାହାହେଲେ ଆଜି ଏ ଜାତି ଆଗରେ ଠିଆ ହୁଅନ୍ତା ଏକ ଅଭିନବ ଉତ୍କଳ ।''

ବସ୍ତୁତଃ ଉତ୍କଳର ଗୌରବ ଉପରେ ରଚିତ 'ଉତ୍କଳିକା'ହିଁ ଏକ ଗାଥାକାବ୍ୟ ।

'ଉତ୍କଳିକା'ର ପ୍ରଥମ କବିତାଟି ହେଉଛି 'ବିଶ୍ୱଜୀବନ ପଥେ' । ଏହା ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ଜୀବନର ଏକ ଦୁଃଖଦ ଓ ଅଶ୍ରୁଳ ଘଟଣାକୁ ନେଇ ରଚିତ । ଏହା ୧୯୦୪ ମସିହାର ଘଟଣା – ଯାହାକି ଷୋଡ଼ଶ ବାର୍ଷିକ 'ସମାଜ'ର ଗୋପବନ୍ଧୁ ଶ୍ରାଦ୍ଧ ସଂଖ୍ୟାର 'ଦୁଇ ଦିନର କଥା'ରୁ ଗ୍ରହଣ କରାଯାଇଛି ।

ଘଟଣାଟି ହେଲା, ଗୋପବନ୍ଧୁଙ୍କ ଏକମାତ୍ର ପୁତ୍ର ରୋଗରେ ଶଯ୍ୟାଶାୟୀ ଥିଲା । ସେଦିନ ବର୍ଷା-ବିପ୍ଳାତ ଲାଗିରହିଥିବାବେଳେ ଗୋପବନ୍ଧୁ ରୋଗଶଯ୍ୟା ନିକଟରେ ଜଗି ରହିଥିଲେ । ଏ ସମୟରେ କୁଶଭଦ୍ରା ନଦୀରେ ଦେଖାଦେଇଥିବା କରାଳ ବନ୍ୟାର ସମ୍ବାଦ ଗୋପବନ୍ଧୁ ପାଇଲେ । ମୃତ୍ୟୁର ଉପକଣ୍ଠରେ ଉପନୀତ ପୁତ୍ରକୁ ଛାଡ଼ି ଗୋପବନ୍ଧୁ ବନ୍ୟା ପ୍ରପୀଡ଼ିତ ଲୋକଙ୍କର ସେବା କରିବାକୁ ଆଗେଇ ଯାଇଛନ୍ତି । ପାଞ୍ଚ ଦିନ ପରେ ବନ୍ୟାଞ୍ଚଳରୁ ଫେରି ପୁତ୍ରର ମୃତ୍ୟୁ ସମ୍ବାଦ ପାଇଛନ୍ତି । ଗୋପବନ୍ଧୁ ପୁତ୍ରହରା ବିଧୁରା ପତ୍ନୀଙ୍କୁ କହିଛନ୍ତି –

''ଲୁହ ପୋଛି ଏବେ ଦେଖିନିଅ ସଖୀ ଅଭିନବ ଏହି ଲାଭ
ଗୋଟିଏ ପୁତ୍ର ଦେଇ
ହୃଦେ ମୋର ଶତପୁତ୍ର ମୁଁ କୁଢ଼ାଇ ଆଣିଛି ଏଇ ।''

ଉତ୍କଳମଣି ଗୋପବନ୍ଧୁଙ୍କ ମହନୀୟତା ପ୍ରଦର୍ଶନପାଇଁ ଏହା ଉଦ୍ଦିଷ୍ଟ ।

ଆଉ ଏକ କବିତା 'ବୀରାରାଣୀ ଶୁକଦେଇ' ।

ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ 'ନାରୀ ଦର୍ପଣ' ଓ 'ବାଙ୍କୀ ଇତିହାସ'ରୁ ବିଷୟବସ୍ତୁ ଗ୍ରହଣ କରି 'ବୀରାରାଣୀ ଶୁକଦେଇ' ଗାଥାକବିତାଟି କବି ରଚନା କରିଛନ୍ତି ।

କବିତାଟିରେ ଖୋର୍ଦ୍ଧା ଓ ବାଙ୍କୀ ରାଜ୍ୟର ଯୁଦ୍ଧ ବର୍ଣ୍ଣିତ । ଯୁଦ୍ଧରେ ବାଙ୍କୀ ରାଜା ମୃତ୍ୟୁବରଣ କରନ୍ତି । ବାଙ୍କୀରାଣୀ ଶୁକଦେଇ ଖୋର୍ଦ୍ଧା ରାଜାଙ୍କ ବିରୋଧରେ ଯୁଦ୍ଧଯାତ୍ରା କରିଛନ୍ତି । ଯୁଦ୍ଧରେ ଖୋର୍ଦ୍ଧା ରାଜାଙ୍କ ପରାଜୟ ହୋଇଛି । ସେ ମଧ୍ୟ ରାଣୀଙ୍କଦ୍ୱାରା ବନ୍ଦୀ ହୋଇଛନ୍ତି । ରାଜାଙ୍କୁ ହତ୍ୟା କରିବାକୁ ବାଙ୍କୀପାଇକମାନେ ପରାମର୍ଶ ଦେଇଛନ୍ତି । ମାତ୍ର ବୀରାରାଣୀ ଶୁକଦେଇ ଜଣେ ନାରୀ । ନାରୀ ହୃଦୟର ବେଦନା ସେ ବୁଝିଛନ୍ତି । ଯେଉଁ ବୈଧବ୍ୟ ଯନ୍ତ୍ରଣା ସେ ଭୋଗ କରୁଛନ୍ତି, ଖୋର୍ଦ୍ଧା ରାଜାଙ୍କୁ ହତ୍ୟା କଲେ ସେହି ବୈଧବ୍ୟ ଯନ୍ତ୍ରଣା ଖୋର୍ଦ୍ଧା ରାଣୀ ଭୋଗ କରିବେ ବୋଲି ଉପଲବ୍ଧି କରିଛନ୍ତି । ସେ ରାଜାଙ୍କୁ କୌଣସି ଦଣ୍ଡ ନ ଦେଇ କ୍ଷମାପ୍ରଦାନ କରି ନିଜର ଉଦାରତା ତଥା ମହାନୁଭବତାର ଯେଉଁ ପରିଚୟ ଦେଇଛନ୍ତି, ତା'ର ଦୃଷ୍ଟାନ୍ତ ଉତ୍କଳ କାହିଁକି ପୃଥିବୀ ଇତିହାସରେ ବିରଳ ।

'ପ୍ରଭାବତୀର ଅଭିଯାନ' ଆଉ ଏକ ଗାଥାକବିତା । ଏଥିରେ ରଣପୁରର ନବବିବାହିତା ରାଜବଧୂ କର୍ତ୍ତବ୍ୟର ଆହ୍ୱାନରେ ଉତ୍କଳ ଯୁବରାଜ ବେଶ ଧରି ଶତ୍ରୁପକ୍ଷର ମୁକାବିଲା କରିଛନ୍ତି । ଶତ୍ରୁ ପରାଜିତ ହୋଇଛି । ପ୍ରଭାବତୀ ଉଚ୍ଚକଣ୍ଠରେ ଘୋଷଣା କରିଛନ୍ତି –

''ନାରୀ ମୁଁ କି ଖାଲି ଫୁଲ ସୁକୁମାରୀ,
ଫୁଲ ବାଣ ଖାଲି ହାଣେ
ତୁମରି ପରାୟେ ଧନୁ ଧରି କରେ
ତୀର ମୁଁ ତ ମାରି ଜାଣେ ।''

'ଉତ୍କଳିକା'ରେ ସ୍ଥାନ ପାଇଥିବା 'ବାଇମୁଣ୍ଡି' ମଧ୍ୟ ଏକ ସାଧାରଣ ମଣିଷର ଜୟଗାନ । ପ୍ରବାଦ ଅଛି ଯେ ବାଇମୁଣ୍ଡି କଟକ ସହରକୁ ବନ୍ୟା ଦାଉରୁ ରକ୍ଷା କରିବାପାଇଁ ଉତ୍କଳର ରାଜା ମର୍କତକେଶରୀଙ୍କ ନିକଟରେ ନିବେଦନ କରିଥିଲେ । ତାହା କବିଙ୍କ ଭାଷାରେ ରୂପ ପାଇଛି –

''ଦିନ ତ ମୋହର ବେଶୀ ନାହିଁ ଆଉ ଏଇ ଯେ ସରିବ ଆସି
ଭାବୁଛି କେମିତି କଟକ ରହିବ ରହିବେ କଟକବାସୀ ।
× × ×
ବରଷ ବରଷ ବଳି ପଡୁଚି ତ ବନ୍ୟାର ମହାଦାଉ
ଏ ବିଡ଼ାନାସୀ କଟକ ସହର କେମିତି ରହିବ ଆଉ ?''

ବାଇମୁଣ୍ଡିର ଏ ନିବେଦନ ରାଜାଙ୍କୁ ଅଭିଭୂତ କରିଛି ଓ କାଠଯୋଡ଼ି ପଥରବନ୍ଧ ନିର୍ମାଣ କରିବାର ପ୍ରତିଶ୍ରୁତି ପ୍ରଦାନ କରିଛନ୍ତି, ଯଥା –

''ଏକା ଏକା ଆସି ଜଣାଇଚ ତୁମେ
ରାଜ୍ୟର ହିତ ପାଇଁ
ବାକ୍ୟ ଦେଉଛି ତମର କଥା ତ
ଅନ୍ୟଥା ହେବ ନାହିଁ ।''

କାଠଯୋଡ଼ି ତୀରରେ ପଥରବନ୍ଧ ନିର୍ମିତ ହୋଇଛି । କବି ରାଜା ମର୍କତ କେଶରୀଙ୍କ ସମେତ ସମସ୍ତଙ୍କୁ ସାଧୁବାଦ ଜଣାଇଥିଲେ ମଧ୍ୟ 'ବାଇମୁଣ୍ଡି'ଙ୍କୁ ଏଥିରେ ପ୍ରଥମ ସ୍ଥାନ ଦେଇଛନ୍ତି ।

''ଆହେ ମରକତ ଓଡ଼ିଶା ରାଜନ
ଆହେ ନାମହୀନ ମଜଦୁର ଗଣ
ସଭିଏ ବନ୍ଦନୀୟ
ପ୍ରଥମେ କିନ୍ତୁ ହେ ବାଇମୁଣ୍ଡି
କବିର ଅର୍ଘ୍ୟ ନିଅ ।''

**ସ୍ମରଣିକା**

'ଉତ୍କଳିକା' ପରି 'ସ୍ମରଣିକା'ରେ କବି ସାଧାରଣ କଥାକୁ ଗାଥାକବିତା ରୂପଦେଇ ସଂଯୋଜନା କରିଛନ୍ତି । 'ସ୍ମୃତିର ଫଳକ' କବିତାରେ କବି ୧୯୧୩ ମସିହାରେ କାଠଯୋଡ଼ିରେ ବୁଡ଼ି ଯାଉଥିବା ଜଣେ ବାଳକକୁ ଉଦ୍ଧାର କରି ନିଜେ କାଠଯୋଡ଼ି ସ୍ରୋତରେ ଭାସିଯାଇ ପ୍ରାଣ ବିସର୍ଜନ କରିଥିବା 'ହେମନ୍ତ କୁମାର'ଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିଛନ୍ତି ।

''ସେଇ ଜୀବନର ଲାଗି
ଶତ ପ୍ରାଣୁ ଗଲା ଯେ ଲୋତକ
ସେ ଲୋତକେ ଜାଗିଅଛି
ଆଜି ଏ ସ୍ମୃତିର ଫଳକ ।''

'ସୈନିକ ନାରୀ' କବିତାରେ କବି ଜଣେ ମହିଳା ସୈନିକଙ୍କ ସ୍ମୃତିରେ ଭକ୍ତି ନୈବେଦ୍ୟ ଅର୍ପଣ କରିଛନ୍ତି । ଉକ୍ତ ମହିଳା ସୈନିକ ସିପାହି ବିଦ୍ରୋହ ସମୟରେ ଇଂରେଜମାନଙ୍କ ବିରୋଧରେ ଅସି ଚାଳନା କରି ବନ୍ଦୀ ହୋଇଥିଲେ । ଶେଷରେ ଅମ୍ବାଲା ଜିଲ୍ଲାର କାରାଗାରରେ ଜୀବନ ଶେଷ କରିଥିଲେ ।

'କୌମୁଦୀର ଅବଦାନ' କବିତାରେ ଜନୈକା ବାଳିକା କୌମୁଦୀ ଗାନ୍ଧିଜୀଙ୍କ ଆହ୍ୱାନରେ ଉଦ୍‌ବୁଦ୍ଧ ହୋଇ ସମସ୍ତ ଅଳଙ୍କାର ହରିଜନ କଲ୍ୟାଣ ନିମନ୍ତେ ବାପୁଜୀଙ୍କୁ କିପରି ଦାନ କରିଥିଲା, ତାହା କବି ଅତ୍ୟନ୍ତ କଳାତ୍ମକ ଭାବେ ବର୍ଣ୍ଣନା କରିଛନ୍ତି ।

ଆଉ ଏକ ସୁନ୍ଦର କବିତା 'କୋଟନିସ୍ ଫେରି ନାହିଁ' । ଚୀନ, ଜାପାନ ଯୁଦ୍ଧ ସମୟରେ ଯୁଦ୍ଧଭୂମିରେ ଆହତ ସୈନ୍ୟଙ୍କର ସେବା କରୁ କରୁ ପ୍ରାଣଦାନ କରିଥିବା ଭାରତୀୟ ଡାକ୍ତର ଦ୍ୱାରିକାନାଥ କୋଟ୍‌ନିସ୍‌ଙ୍କ ପ୍ରତି କବି ଭକ୍ତିଅର୍ଘ୍ୟ ବାଢ଼ିଛନ୍ତି, ଯଥା -

''ଭାରତୀୟ ନୁହେଁ ଚାଇନାର ନୁହେଁ
ଆଜି ସେ ତ ସାରା ଭୁବନର
ଅଭ୍ରବିହୀନ ଦୀପ୍ତ ତାରକା
ନିଖିଳ ହୃଦୟ ଚରାଚର ।''

**ପଶୁପକ୍ଷୀର କାବ୍ୟ**

ରାଧାମୋହନ ମଧ୍ୟ ଗାଥାକବିତା ସୃଷ୍ଟି ନିମନ୍ତେ ମାନବେତର ପଶୁପକ୍ଷୀମାନଙ୍କ ରାଜ୍ୟରେ ଗଳ୍ପର ସନ୍ଧାନ କରିଛନ୍ତି । ସେମାନଙ୍କୁ ବ୍ୟବହାର କରିଚନ୍ତି ଏହି କାବ୍ୟରେ । ସିଂହ, ବ୍ୟାଘ୍ର, ଶ୍ୱାନ, ଅଶ୍ୱ, ହସ୍ତୀ, ଗାଭୀ, କପୋତ, ହଂସ, ଶୁକ ଓ ବଳାକା ପ୍ରଭୃତିଙ୍କୁ ଅବଲମ୍ବନ କରି ରାଧାମୋହନ ଏକ ବିଚିତ୍ର ଓ ବର୍ଣ୍ଣାଢ଼୍ୟ କାବ୍ୟ-ଦୀପାଳି ଓଡ଼ିଆ ସାହିତ୍ୟରେ ସୃଷ୍ଟି କରିଛନ୍ତି ।

ରାମାୟଣର ଏକ ଘଟଣାକୁ ନେଇ 'ଜଟାୟୁ' କବିତା ରଚିତ । ସେ ଦଶରଥଙ୍କ ମିତ୍ର । ଲଙ୍କାପତି ରାକ୍ଷସରାଜ ରାବଣ ହସ୍ତରୁ ସୀତାଙ୍କୁ ଉଦ୍ଧାର କରିବାକୁ ଯାଇ ଜଟାୟୁ ସଂଗ୍ରାମ କରିଛି ଓ ରାବଣଦ୍ୱାରା ପକ୍ଷଛିନ୍ନ ହୋଇ ଭୂମିରେ ପଡ଼ିଛି । ରାମଙ୍କୁ ସେ ସମ୍ବାଦ ଦେବାପରେ ପ୍ରାଣତ୍ୟାଗ କରିଛି । ଜଟାୟୁର ମୃତ୍ୟୁରେ ପକ୍ଷୀସମୂହ ଓ ରାମ ଲକ୍ଷ୍ମଣ ଏକ ହୋଇ ଅଶ୍ରୁ ବିସର୍ଜନ କରିଛନ୍ତି । ପଶୁ ଓ ମାନବକୁ ଏକତ୍ର କରାଇ କବି ଏକ ନୂତନ ପରମ୍ପରା ସୃଷ୍ଟି କରିଛନ୍ତି ।

'ଶକୁନ୍ତର ଦାନ' ଆଉ ଏକ ସୁନ୍ଦର କବିତା । ମହାଭାରତରେ ଶକୁନ୍ତ ମାତୃତ୍ୟକ୍ତା ଓ ସହାୟହୀନା ଶକୁନ୍ତଳାଙ୍କୁ ପକ୍ଷଛାୟା ଦେଇ ରକ୍ଷା କରିଅଛି ଓ କଣ୍ୱଙ୍କୁ ଉପହାର ଦେଇଛି । କଣ୍ୱ ମଧ୍ୟ ଶିଶୁଟିକୁ ବକ୍ଷରେ ଟୋକି ଧରି ପକ୍ଷୀକୁ ଅଭିନନ୍ଦନ ଜଣାଇଛନ୍ତି -

''ତ୍ୟକ୍ତ ଏହି ସଦ୍ୟଜାତା
ଇଆର ତୁହି ଜୀବନଦାତା
ଶକୁନ୍ତରେ ଏ ତୋର ଦାନ
ବିଶ୍ୱ ଧରାଧାମେ
ଏ ଶିଶୁ ଆଣି, ଶକୁନ୍ତଳା
ହେଲାରେ ତୋହ ନାମେ ।''

ପୁଣି ଶକୁନ୍ତକୁ ପୁଣ୍ୟଶ୍ଳୋକ ପଦବୀ ଦେଇଛନ୍ତି –

''ମାଂସଭୁକ୍ ଗୃଧ୍ର ଆରେ
ସୁକୃତର ବଳେ
ପୁଣ୍ୟଶ୍ଳୋକ ହେଲୁରେ ଆଜି
ବିଶ୍ୱ ଧରା ତଳେ ।''

'କପୋତ ଦମ୍ପତି' କବିତାର କଥାବସ୍ତୁ କବି ଶ୍ରୀମଦ୍ଭାଗବତରୁ ଗ୍ରହଣ କରିଛନ୍ତି । କପୋତକପୋତୀ ଚରାଭୂଇଁରୁ ଫେରିଆସି ଦେଖନ୍ତି ଯେ ତାଙ୍କ ପୁତ୍ର କନ୍ୟା ଜାଲ ନିବଦ୍ଧ । ଉଭୟେ ସନ୍ତାନ ସ୍ନେହରେ ନିଷାଦର ଜାଲକୁ ଡେଇଁ ପଡ଼ିଛନ୍ତି । ପକ୍ଷୀ ଜୀବନର ଅପୂର୍ବ ବାତ୍ସଲ୍ୟ ପ୍ରେମ ଓ ତ୍ୟାଗ ଏଥିରେ ପ୍ରଦର୍ଶିତ ହୋଇଛି ।

କବିଙ୍କ ଭାଷାରେ –

''ଗୋଟାଇ ବିକ୍ଷିପ୍ତ ଜାଲ
ହର୍ଷେ ଘେନି ପକ୍ଷୀ ଭାର
ଗୃହ ପଥେ ଫେରିଲା ନିଷାଦ,
ମାନବ ଜନମ ପାଇ
ଲୁବ୍ଧକ ଜାଣିଲା ନାହିଁ
ଅତୁଳ ସେ ମୃତ୍ୟୁର ଆସ୍ୱାଦ ।''

'ଚନ୍ଦ୍ର ଦେହେ ଶଶାର ଛବି' କବିତାର କଥାବସ୍ତୁ, କବି ବୌଦ୍ଧଜାତକର 'ଶଶଜାତକ' ଗଳ୍ପରୁ ଆଣିଛନ୍ତି । ଏଥିରେ ଅତିଥି ସେବାପାଇଁ ଶଶକର ଆତ୍ମବଳି ବର୍ଣ୍ଣିତ ।

ସ୍ୱର୍ଗର ଅମରନାଥ ସେଥିପାଇଁ ଶଶକକୁ ବଧେଇ ଜଣାଇଛନ୍ତି –

''ନୁହଁରେ ମୁହିଁ ବୁଭୁକ୍ଷିତ
କ୍ଳାନ୍ତ ପଥଚାରୀ
ସ୍ୱର୍ଗର ମୁଁ ଅମର ନାଥ
ଛଦ୍ମବେଶଧାରୀ ।
ଅବୋଧ ପଶୁ ଜନ୍ମ ପାଇ
ମହାନ୍ ତୁହି ଶଶା
ଅତିଥି ଲାଗି ଜୀବନ ଦେଲୁ
ମହୀରେ ମହାଯଶା ।''

'ଚିତ୍ରଗ୍ରୀବ' କବିତାଟି 'ପଞ୍ଚତନ୍ତ୍ର' ଓ 'ହିତୋପଦେଶ'ର ଗଳ୍ପ ଅବଲମ୍ବନରେ ରଚିତ । କପୋତକୁଳ ନାୟକ ଚିତ୍ରଗ୍ରୀବ ସ୍ୱଜାତି ଓ ସ୍ୱଜନ ହିତପାଇଁ ଜୀବନଦାନ କରିବାକୁ ବ୍ୟାକୁଳ ହୋଇଛି । ତାକୁ କବି ରୂପାୟିତ କରିଛନ୍ତି –

''ଆସ ଏ ସକଳେ ଉଦ୍ଧାର କର, ମୁକ୍ତ କର
ପଛକୁ ରହିଲେ ଗଲେ ଯିବ ପ୍ରାଣ
ଜାତି ପାଇଁ ମୋର ହେବ ଅବଦାନ
କି ଲାଗି ହେବି ମୁଁ ଜୀବନରଙ୍କ ସ୍ୱାର୍ଥପର ।''

କପୋତକୁଳର ବନ୍ଧୁପ୍ରୀତି ଅନ୍ୟତମ ଉଲ୍ଲେଖଯୋଗ୍ୟ ବିଷୟ ।

'ରଣ ସିଂ' ଗାଥାକବିତାରେ କବି ଯୁଦ୍ଧଭୂମିରେ ଯୁଦ୍ଧରତ ହସ୍ତୀର ବୀରତ୍ୱ, ପ୍ରଭୁଭକ୍ତି ଓ ଦେଶପ୍ରୀତି ବର୍ଣ୍ଣନା କରିଛନ୍ତି । ରଣକ୍ଷେତ୍ରରେ ରଣ ସିଂ ପ୍ରିୟ ନିଷାଦୀର ମୃତ୍ୟୁରେ ବିଚଳିତ ହୋଇ ନାହିଁ । ମଥାନତ ନ କରି ଶତ୍ରୁପକ୍ଷର ତୀକ୍ଷ୍ଣ ଶରାଘାତକୁ ଭ୍ରୂକ୍ଷେପ ନ କରି ଅକୁତୋଭୟ ଭାବରେ ଛିଡ଼ା ହୋଇଛି ।

''ଜାତିର ପତାକା ତୋଳିବି ଉର୍ଦ୍ଧ୍ୱେ
କରିବି ନାହିଁ ନତ
ଜାତିର ମନୋରଥ
ଆଜି ଏ ଯୁଦ୍ଧେ ।''

ଶେଷରେ ରଣସେନା ବିଜୟୀ ହୋଇ ଶିବିରକୁ ଫେରିଛନ୍ତି ; ମାତ୍ର ସେମାନେ ଶୋକାଭିଭୂତ ରଣ ସିଂକୁ ଯୁଦ୍ଧକ୍ଷେତ୍ରରୁ ଆଣିପାରି ନାହାନ୍ତି । ରଣ ସିଂର ପରିଚିତ ନିଷାଦୀ ସୁତକୁ ଯୁଦ୍ଧ କ୍ଷେତ୍ରକୁ ଆଣିବାରୁ ସେ ଅବଶ୍ୟ ଶିବିରକୁ ଫେରିଚି; ମାତ୍ର ପରଦିନ ପ୍ରତ୍ୟୁଷରେ ଯୁଦ୍ଧକ୍ଷେତ୍ରକୁ ଯାଇ ନିଜର ସାଥୀ ଓ ସାରଥିର ସନ୍ଧାନ କରିଛି ।

''ଯେଉଁଠି ମୋର ରଥ,
ସାରଥି ସୁତ,
ସେଇଠି ନିର୍ଭୀକ
ମୁଁ ଏକ ସୈନିକ
ମରଣ-ତୃପ୍ତ ।''

ଆଲୋଚକଙ୍କ ଭାଷାରେ ରଣ ସିଂର ଦେଶପ୍ରୀତି ଓ ସାରଥି-ପ୍ରୀତି 'ରଣ ସିଂ'କୁ ମାନବିକ ଗୁଣ ବିମଣ୍ଡିତ କରିଛି ।

'ବଉଳା ଓ ମହାବଳ' କବିତା କବି ପଞ୍ଚସଖା ଯୁଗର କବି ବଳରାମ ଦାସଙ୍କ 'ବଉଳା ଗାଈ ଗୀତ'ରୁ ଗ୍ରହଣ କରିଛନ୍ତି ।

ଅତୀତର ଏହି ସୁନ୍ଦର କାହାଣୀଟିକୁ କବି ଗାଥାକବିତାର ପରିସୀମା ମଧ୍ୟରେ ବର୍ଣ୍ଣନା କରିଛନ୍ତି । ପଶୁ ହେଲେ ବି ବଉଳା ଗାଈର ବାତ୍ସଲ୍ୟ ମମତା ଓ ସତ୍ୟନିଷ୍ଠା ସହିତ ମହାବଳ ବ୍ୟାଘ୍ର ହୃଦୟର ଉଦାରତା ମଧ୍ୟ ଅଙ୍କିତ ହୋଇଅଛି ।

ହିଂସ୍ର ବ୍ୟାଘ୍ର ମୁଖରେ କବି କୁହାଇଛନ୍ତି –

"ଧନ୍ୟ ବଉଳା ଧନ୍ୟ ତୋ ପିଲା
ଧରଣୀ ତଳେ
ଛିଡିଲୁ ମତେ ଲୋ ଛିଡିଲୁ ଆଜି ତୁ
ସତ୍ୟ ବଳେ ।
ହିଂସାର ପ୍ରାଣ ଭୋକେ ଯାଉ ଆଜି
ଦୁଃଖ ନାହିଁ;
ପୁଣ୍ୟ ଜୀବନ ରହୁ ଆଜି ତୋର
ସତ୍ୟ ପାଇଁ ।"

ପ୍ରଚଳିତ ଲୋକକାହାଣୀର ବଉଳା ଗାଈର ସତ୍ୟନିଷ୍ଠା ଓ ବାଘର କ୍ଷମାପ୍ରଦାନକୁ କବି କାବ୍ୟଶ୍ରୀ ବିମଣ୍ଡିତ କରିଛନ୍ତି ।

'ବଳାକା' ଗାଥାକବିତା ଆଉ ଏକ ଅନୁପମ ସୃଷ୍ଟି । ଏହାର ବିଷୟବସ୍ତୁ କବି Edith Hamilton ଙ୍କ ପୁରାଣ ଗ୍ରନ୍ଥରୁ ଗ୍ରହଣ କରିଛନ୍ତି । ଏଥିରେ ବଳାକା ଦଳର ଭୂମିକାକୁ ନେଇ ଏହି ଗାଥାକବିତାଟି ରଚନା କରିଛନ୍ତି ।

ଖ୍ରୀ.ପୂ. ୫୫୦ରେ ଗ୍ରୀସ୍ କବି ଆଇବିକସ୍ ଦସ୍ୟୁମାନଙ୍କ କବଳରେ ପଡ଼ି ମୃତ୍ୟୁବରଣ କରନ୍ତି । ମୃତ୍ୟୁ ପୂର୍ବରୁ ସେ ଗଗନଚାରୀ ବଳାକାମାନଙ୍କ ହାତରେ ନଗରର ଲୋକମାନଙ୍କ ପାଖକୁ ବାର୍ତ୍ତା ପଠାଇଛନ୍ତି । ନଗରର ଲୋକେ ନବ ନାଟ୍ୟ ଉପଭୋଗ କରୁଥିଲାବେଳେ ବଳାକା ଦଳ ସେଠାରେ ପହଞ୍ଚି ଅସ୍ୱାଭାବିକ ପରିସ୍ଥିତି ସୃଷ୍ଟି କରନ୍ତି । ଶେଷରେ ଦସ୍ୟୁ ଦଳ ନଗ୍ରବାସୀଙ୍କଦ୍ୱାରା ଧୃତ ହୁଅନ୍ତି । ମୃତ ଆଇବିକସ୍‌ଙ୍କ ସନ୍ଧାନ ମିଳେ । ଲୋକେ କବିଙ୍କୁ ଶେଷ ସମ୍ମାନ ଜଣାଉଥିବାବେଳେ ବଳାକାମାନଙ୍କର ପୁନରାଗମନ ହୋଇଛି । ସେମାନେ ମଧ୍ୟ କବିଙ୍କୁ ସମ୍ବର୍ଦ୍ଧନା ଦେଇଛନ୍ତି ।"

ଗ୍ରୀକ୍ ପୁରାଣ ବର୍ଣ୍ଣିତ କିମ୍ବଦନ୍ତିକୁ କବି ମଧୁର ଓ ମନୋଜ୍ଞ ଭାବେ ରୂପ ଦେବାରେ ସମର୍ଥ ହୋଇଛନ୍ତି ।

ରାଧାମୋହନ ଇଂରାଜୀ ଐତିହାସିକ Toddଙ୍କ ରାଜସ୍ଥାନର ଗଳ୍ପ ଗ୍ରନ୍ଥରୁ ବିଷୟବସ୍ତୁ ନେଇ ସୃଷ୍ଟି କରିଛନ୍ତି 'ଚୈତକ' କବିତା । ହଳଦୀଘାଟ ଯୁଦ୍ଧ ଚାଲିଥିଲାବେଳେ ରାଣା ପ୍ରତାପ ସିଂହଙ୍କ ପ୍ରଭୁଭକ୍ତ ଅଶ୍ୱ ଚୈତକ ଯୁଦ୍ଧକ୍ଷେତ୍ରରୁ ତା'ର ଶ୍ରାନ୍ତ କ୍ଳାନ୍ତ ପ୍ରଭୁଙ୍କୁ ନେଇଆସି ଏକ ନିର୍ଜନ ନଦୀ କୂଳରେ ଛାଡ଼ିଦେଲାପରେ ଅତ୍ୟଧିକ ପରିଶ୍ରମ ହେତୁ ପ୍ରାଣତ୍ୟାଗ କରିଛି ।

'ପଶୁରାଜ' କବିତାଟି 'ଆନ୍ଦ୍ରୋକ୍ଲିସ୍ ଓ ସିଂହ' କାହାଣୀ ଉପରେ ରଚିତ । ଏଥିରେ କବି ଧନକୁବେରର ନିର୍ମମତା ସହିତ ପଶୁରାଜ ସିଂହର ଉପକାରୀ ଜନପ୍ରତି କୃତଜ୍ଞତାର ମାର୍ମିକ ଚିତ୍ର ପ୍ରଦାନ କରିଛନ୍ତି । ଧନକୁବେର ମଧ୍ୟ ସିଂହର

ମମତା-ସ୍ନିଗ୍ଧ ପ୍ରାଣର ପରିଚୟ ପାଇଛନ୍ତି । ସେ କ୍ରୀତଦାସ ଆଣ୍ଡ୍ରୋକ୍ଲିସ୍‌କୁ ବନ୍ଧନରୁ ମୁକ୍ତ କରିଛନ୍ତି ଓ କହିଛନ୍ତି –

''ପଶୁରାଜ ନୁହେଁ ସିଂହ ତୋର
ମଣିଷ ନୁହଁଇ ପଶୁରାଜ ମୁଁ
ଦୁନିଆର ତଳେ ଘୃଣ୍ୟ ଘୋର
କ୍ଷମାକର ମୋତେ ଆଣ୍ଡ୍ରୋକ୍ଲିସ୍
ଦୁନିଆର ତଳେ ଘୃଣ୍ୟ ମୁହିଁ
ମୁକ୍ତ ତୋହର ସିଂହ ସାଥି
ମୁକ୍ତ ଏବେରେ ମୁକ୍ତ ତୁହି ।''

କବି 'ପଶୁପକ୍ଷୀ କାବ୍ୟ'ରେ ପଶୁପକ୍ଷୀଙ୍କ ଚରିତ୍ରରେ ମାନବ-ସୁଲଭ ଗୁଣ, ଯଥା – ସ୍ନେହ, ମମତା, ଆଶା, ବିଶ୍ୱାସ ଓ ତ୍ୟାଗର ମହନୀୟ ସନ୍ଧାନ ପାଇଛନ୍ତି । ଅତୀତର ସେହି ମହନୀୟ ଗୁଣଗୁଡ଼ିକୁ କାବ୍ୟରୂପ ପ୍ରଦାନ କରି ସ୍ୱକୀୟ ଅସାମାନ୍ୟ ପ୍ରତିଭାର ପରିଚୟ ଦେଇଛନ୍ତି ।

**ଶାମୁକାର ସ୍ୱପ୍ନ**

କବି ମୁଖବନ୍ଧରେ ଲେଖିଛନ୍ତି – ''ପୃଥିବୀର ନେପଥ୍ୟରେ ବହୁତ ଆତ୍ମା ନିଭୃତରେ ନୀରବରେ ଜୀବନ ସୌରଭ ଦେଉଛନ୍ତି – ଜୀବନ ସଙ୍ଗୀତ ଗାଉଛନ୍ତି, କିନ୍ତୁ ଜଗତରେ ତାଙ୍କ ଦାନର ପ୍ରତିଦାନ ଯୁଗ ଯୁଗ ଧରି ମିଳି ନାହିଁ, ମିଳୁ ନାହିଁ । ତଥାପି ସେଇ ଅବିନଶ୍ୱର ଅବିସ୍ମରଣୀୟ ଆତ୍ମାର ଅଭିଯାନ ଚାଲିଛି । ସେଇ ଅସ୍ୱୀକୃତ ଅଥଚ କ୍ରାନ୍ତିଶୀଳ ଜୀବନର କେତେଗୁଡ଼ିଏ ସ୍ୱପ୍ନ 'ଶାମୁକାର ସ୍ୱପ୍ନ'ରେ ସନ୍ନିବିଷ୍ଟ ।'' ପ୍ରଥମ ଗାଥାକବିତାଟି ହେଲା 'ଶ୍ରୀୟା ଚଣ୍ଡାଲୁଣୀ' । ଏଥିରେ ସମାଜର ପତିତ, ଦଳିତ ଶ୍ରେଣୀର ବ୍ୟକ୍ତି ଚଣ୍ଡାଲୁଣୀ ଶ୍ରୀୟାର ଅନନ୍ୟ ଭକ୍ତି କିପରି ତାକୁ ବନ୍ଦନୀୟା କରିଛି, ତାହା କବି ସାବଲୀଳ ଭାବରେ ବର୍ଣ୍ଣନା କରିଛନ୍ତି । କବି ମଧ୍ୟ ଆଶା କରନ୍ତି ଯେ ବଡ଼ଦେଉଳରେ ଭେଦଭାବ ରହିବ ନାହିଁ । ଆବ୍ରାହ୍ମଣ ଚଣ୍ଡାଳ ସମସ୍ତେ ଏକପ୍ରାଣ ହେବେ । ଚଣ୍ଡାଳ ହାତରୁ ବ୍ରାହ୍ମଣ ମହାପ୍ରସାଦ ପାଇବେ ।

ଦ୍ୱିତୀୟ କବିତାଟି ହେଲା 'ବାଲ୍ମୀକି' । ଏ ମହାଭାରତର ମହର୍ଷି ବାଲ୍ମୀକି ନୁହନ୍ତି, ସେ ଜଣେ ବାଲ୍ମୀକି ନାମଧାରୀ ମୋଚି । ନଗର ଉପାନ୍ତରେ ସେ ଏକ ଜୀର୍ଣ୍ଣ କୁଟୀରରେ ମୋଚି କାମ କରି ଜୀବିକା ନିର୍ବାହ କରୁଥିଲେ । ସେ ତେଣୁ ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞକୁ ନିମନ୍ତ୍ରିତ ହୋଇପାରି ନାହାନ୍ତି । ଯୁଦ୍ଧ ଆରମ୍ଭରେ ଭୀମ ଯେତେ ଜୋର୍‌ରେ ଶୁଭ ଶଙ୍ଖ ବଜାଇଲେ ମଧ୍ୟ ତାହା ବାଜି ନାହିଁ । ଶ୍ରୀକୃଷ୍ଣଙ୍କ ନିର୍ଦ୍ଦେଶରେ ମୋଚି ବାଲ୍ମୀକି ନିମନ୍ତ୍ରିତ ହୋଇ ଆସିଲାପରେ ଶଙ୍ଖ ବାଜିଛି । ବିପୁଳ ରାଜକ୍ଷମତା, ଅହଙ୍କାର ସାମାନ୍ୟ ମୋଚି ପାଖରେ ହାର ମାନିଛି ।

ଆଉ ଏକ ଅବହେଳିତ ଚରିତ୍ର ହେଉଛି ଶବରୀ ଶ୍ରମଣା । ଶୁକ୍ଳକେଶୀ ଶ୍ରମଣା ରାମଲକ୍ଷ୍ମଣଙ୍କ ଭଳି ଅତିଥିମାନଙ୍କୁ ବଣ ଫଳମୂଳ ଦେଇ ଚର୍ଚ୍ଚା କରିଛି । ସେହି ପୁରାଣର କଥାକୁ ଅତି ମଞ୍ଜୁଳଭାବେ ରୂପ ଦେଇଛନ୍ତି ରାଧାମୋହନ । ଅରଣ୍ୟବାସୀ ଗୁହକ ଶବରର ନମ୍ର ବ୍ୟବହାର ଓ ବନ୍ଧୁପ୍ରୀତିର କମନୀୟ ଚିତ୍ର ଆଙ୍କିଛନ୍ତି । ସେହିପରି ରଇ ଦାସ ମୋଚି ହେଲେ ମଧ୍ୟ ଭକ୍ତ ରାମାନନ୍ଦଙ୍କ ଶିଷ୍ୟ ହୋଇପାରିଛି । କବି ଆଉ ଏକ ନୀଚ ଜାତୀୟା ଅଚ୍ଛବ ତରୁଣୀର ମହନୀୟତା 'ଆନନ୍ଦ ଓ ପ୍ରକୃତି' ଗାଥାକବିତାରେ ଚିତ୍ରଣ କରିଛନ୍ତି । ବୌଦ୍ଧ ସନ୍ନ୍ୟାସୀ ଆନନ୍ଦ ଏକଦା ଧର୍ମପ୍ରଚାର କରିବାପାଇଁ ଯାଇ ତୃଷାର୍ତ୍ତ ହୋଇପଡ଼ିଛନ୍ତି । ନୀଚକୁଳସମ୍ଭୂତା ଅସ୍ପୃଶ୍ୟା ମାତଙ୍ଗବାଳା ହାତରୁ ଜଳପାନ କରି ନିଜର ତୃଷା ନିବାରଣ କରିଛନ୍ତି । ଏଥିରେ ଅଚ୍ଛବ ତରୁଣୀକୁ ମହିମାନ୍ୱିତ କରିବା ସଙ୍ଗେ ସଙ୍ଗେ ମଣିଷ ଗଢ଼ା ଜାତିଭେଦ ପ୍ରଥାକୁ ବିଦ୍ରୂପ କରିଛନ୍ତି । ଆଉ ଏକ ନୀଚ ଜାତୀୟ ଚର୍ମକାରର ଭକ୍ତିମତ୍ତାକୁ ମଧ୍ୟ କବି ପ୍ରାଧାନ୍ୟ ଦେଇଛନ୍ତି । ଭକ୍ତ ନାନକ ନିମନ୍ତ୍ରଣ ରକ୍ଷା କରି ଏକ ଚର୍ମକାର ବନ୍ଧୁ ଘରେ ଭୋଜନ କରିଛନ୍ତି । ପିତୃବ୍ୟ ଏଥିରେ କ୍ଷୁବ୍ଧ ହୋଇ ନାନକଙ୍କୁ ଡକାଇ ଆଣିଛନ୍ତି । ନାନକ ପିତୃବ୍ୟଙ୍କ ପୁରି ଓ ଚର୍ମକାରର ଦରପୋଡ଼ା ରୁଟିକୁ ହାତମୁଠାରେ ଧରିଛନ୍ତି । ପୁରିରୁ ରକ୍ତ ଓ ଦରପୋଡ଼ା ରୁଟିରୁ ଦୁଗ୍ଧ ସ୍ରବଣ ହୋଇଛି । ସମସ୍ତେ ଏହା ଦେଖି ବିସ୍ମୟାଭିଭୂତ ହୋଇପଡ଼ିଛନ୍ତି । ଦୃପ୍ତ କ୍ଷମତା ଏବଂ ଧନାଡ଼ମ୍ବରର ପରାଜୟ ହୋଇଛି ଦରିଦ୍ର ଭକ୍ତବନ୍ଧୁଙ୍କ ଭକ୍ତି ଆଗରେ ।

ବସ୍ତୁତଃ ଅପାଙ୍‌କ୍ତେୟ ଅଦରକାରୀ ଶାମୁକା ମୁକ୍ତା ବାହାର କଲାଭଳି ନିମ୍ନବର୍ଗର ବ୍ୟକ୍ତିମାନଙ୍କ ଚରିତ୍ରର ଔଜ୍ଜ୍ୱଲ୍ୟକୁ କବି କାବ୍ୟରୂପ ପ୍ରଦାନ କରି ସ୍ୱକୀୟ ପ୍ରତିଭାର ପରିଚୟ ଦେଇଛନ୍ତି ।

**ଦୀପଶିଖା**

'ଦୀପଶିଖା' କବିତା ସଙ୍କଳନର ପ୍ରଥମ କବିତା 'ପୁଣ୍ୟ ଭାରତବର୍ଷ' । ଏହା ଏକ ଉତ୍କୃଷ୍ଟ ଦେଶାତ୍ମବୋଧକ କବିତା । ଏଥିରେ କବି ଭାରତର ଉତ୍କର୍ଷ ପ୍ରତିପାଦିତ କରିଛନ୍ତି । ପ୍ରଥମ ଭାଗ ପ୍ରଥମ ପଦରେ କବି କହିଛନ୍ତି –

''ଦ୍ୟୁଲୋକେ ଭରଇ ଦୀପ୍ତ ମୟୂଖ
ଭୂଲୋକେ ଶାନ୍ତି ହର୍ଷ
ବିଶ୍ୱଜଗତ ତୀର୍ଥ ସେ ମୋର
ପୁଣ୍ୟ ଭାରତବର୍ଷ ।''

କବି ଭାରତବର୍ଷର କେତେକ ବରପୁତ୍ରମାନଙ୍କର ଜୀବନର ସାଧନା ଓ ଆଦର୍ଶ ବର୍ଣ୍ଣନା କରିଛନ୍ତି । ସେହିଭଳି ଏକ ବରପୁତ୍ର ହେଉଛନ୍ତି ଗୌତମ ବୁଦ୍ଧ । ତାଙ୍କର ସାଧନା ବର୍ଣ୍ଣନା କରିଛନ୍ତି –

''ରାଜନନ୍ଦନ ଆଖି ଆଗେ ଦେଖି
ଜଗତ ଭରା ବେଦନା
ଘର ସଂସାର ବନ୍ଧନ କାଟି
ବରିନେଲା ନବ ସାଧନା
× × ×
ଜଗତର ପ୍ରାଣେ ପ୍ରାଣେ ଭରି ଦେଲା
ମହା ଜୀବନର ସ୍ପର୍ଶ
ବିଶ୍ୱଜଗତେ – ତୀର୍ଥ ସେ ମୋର
ପୁଣ୍ୟ ଭାରତବର୍ଷ ।''

ସେହିଭଳି ମଗଧ ନରପତି ସମ୍ରାଟ୍ ଅଶୋକ କିପରି ଯୁଦ୍ଧରେ ବିଜୟ ଲାଭ କଲେ ମଧ୍ୟ ହିଂସା ପରିହାର କରି ଧର୍ମ ବିଜୟରେ ଲିପ୍ତ ହୋଇ କେବଳ ଭାରତ ନୁହେଁ ସମଗ୍ର ବିଶ୍ୱପାଇଁ ଆଦର୍ଶ ସୃଷ୍ଟି କରିଗଲେ, ତାହା ଅତି ମାର୍ମିକ ଭାବରେ କବି ଉପସ୍ଥାପିତ କରିଛନ୍ତି, ଯଥା –

''ଅନାବିଳ ଭାବେ ବରି ନେଇଗଲା
ମହାଭିକ୍ଷୁର ଧର୍ମ
ଚୈତ୍ର, ବିହାର, ଶୈଳ ପାଷାଣେ
ଲେଖି ଦେଇଗଲା ମର୍ମ
ରାଜ କିରୀଟର ଉର୍ଦ୍ଧ୍ୱେ ବୁଝିଲା
ହୃଦୟର ଉତ୍କର୍ଷ
ବିଶ୍ୱଜଗତ ତୀର୍ଥ ସେ ମୋର
ପୁଣ୍ୟ ଭାରତବର୍ଷ ।''

'ଦୀପଶିଖା' ସଙ୍କଳନର ଆଉ ଏକ ସୁନ୍ଦର କବିତା 'ବାପୁଜୀ' । ଏଥିରେ ବାପୁଜୀଙ୍କୁ କବି ମହାଭାରତର ଶ୍ରୀକୃଷ୍ଣ, ଅହିଂସାର ମୂର୍ତ୍ତି ଗୌତମ ବୁଦ୍ଧ ଏବଂ ପ୍ରେମ ଓ କରୁଣାର ମୂର୍ତ୍ତି ଯୀଶୁଖ୍ରୀଷ୍ଟଙ୍କ ସଙ୍ଗେ ତୁଳନା କରିଛନ୍ତି, ଯଥା –

''କୃଷ୍ଣ ଆମର, ବୁଦ୍ଧ ଆମର
ଖ୍ରୀଷ୍ଟ ଆମର ବାପୁଜୀ ତୁମେ
ମୃତ୍ୟୁ ବିଜୟୀ ଜୀବନ ତୁମର
ଅଜର ଅମର ମର୍ତ୍ତ୍ୟେ ତୁମେ ।''

ଗାନ୍ଧିଜୀ ଯେପରି ମୃତ୍ୟୁବରଣ କଲେ, ତାହା କବିଙ୍କ ହୃଦୟରେ ବିସ୍ମୟ ସୃଷ୍ଟି କରିଛି । ସେ ଆଖିର ଲୁହରେ ପ୍ରଶ୍ନ କରିଛନ୍ତି –

''ଏ ଦେଶ ମଣିଷ କିପରି ଭଲା
ତୁମରି ଦାନ ଯେ ପାରିଲା ଭୁଲି
କିପରି ଭଲା ସେ ହନ୍ତାରକ
ତୁମରି ଛାତିକି ମାରିଲା ଗୁଳି ?''

ଓଡ଼ିଶାର ଆଦିକବି ସାରଳା ଦାସଙ୍କୁ ମଧ କବି ନିଜର ଶ୍ରଦ୍ଧାଞ୍ଜଳି ଅର୍ପଣ କରିଛନ୍ତି । ମହାଭାରତର ବିଭିନ୍ନ ଅଧାୟରେ ଓଡ଼ିଶାର ବିଭିନ୍ନ ସ୍ଥାନ ତଥା ବ୍ୟକ୍ତିବିଶେଷଙ୍କୁ ସ୍ଥାନିତ କରି ଉତ୍କଳୀୟତାର ପରିଚୟ ଦେଇଛନ୍ତି । କବି ଉପସଂହାରରେ ନିଜର ଅର୍ଘ୍ୟ ବାଢ଼ିଛନ୍ତି –

''ଅମର କରିଛ ଅତୁଳ ଚରିତ
ସ୍ୱଦେଶ ପ୍ରେମିକ ଜାତୀୟକବି
ଜଗତେ ତୁମର ଅମର ଆୟୁଷ
ଯାବତ ଚନ୍ଦ୍ର ଯାବତ ରବି ।''

ଓଡ଼ିଆ ସାହିତ୍ୟ ଜଗତର ଅମରକବି ଭାଗବତକାର ଜଗନ୍ନାଥ ଦାସଙ୍କ କୃତିତ୍ୱକୁ ଯଥାର୍ଥ ଭାବେ ରାଧାମୋହନ ଉପସ୍ଥାପିତ କରିଛନ୍ତି । ସୂର୍ଯ୍ୟ କିରଣକୁ ଆପଣା ଶରୀରରେ ଗ୍ରହଣ କରି ପ୍ରତିଫଳନଦ୍ୱାରା ଜ୍ୟୋସ୍ନା ସୃଷ୍ଟି କରୁଥିବା ଚନ୍ଦ୍ରଙ୍କ ସହ ତାଙ୍କୁ ତୁଳନା କରିଛନ୍ତି । କବିଙ୍କ ଭାଷାରେ –

''ସୂର୍ଯ୍ୟ କିରଣେ ଆଲୋକିତ ହୋଇ
ରମ୍ୟ ହେ ସୁଧାକର
ଢାଳି ଦେଇଅଛ ସ୍ନିଗ୍ଧ ମଧୁର
କୌମୁଦୀ ମନୋହର ।''

ଜଗନ୍ନାଥ ଦାସ ବିରଚିତ ଭାଗବତର ସାହିତ୍ୟିକ, ସାମାଜିକ ତଥା ଆଧାତ୍ମିକ ଗୁରୁତ୍ୱର ଯଥାର୍ଥ ମୂଲ୍ୟାୟନ ମଧ କବି କରିଛନ୍ତି –

''ତୁମ୍ଭ ପଦ କବି ଏ କାନରେ ପଶି
ସେ କାନେ ପଳାଏ ନାହିଁ
ଚିତ୍ତ କମଳେ ଗୁଞ୍ଜରୁ ଥାଏ
ନିତ୍ୟ କାଳର ପାଇଁ ।

× × ×

ଜୀବନ ଦୁଆର ପ୍ରାନ୍ତେ ଯାହାର
ଦେଖାଦିଏ ଆସି କାଳ
କାଳ ଜୟୀ ଆଣେ ତୁମ ଭାଗବତ
ବୋଲାହୁଏ ବାରମ୍ବାର ।''

ଜଗନ୍ନାଥ ଦାସଙ୍କ କବିତ୍ୱର ସାର୍ଥକତା ପ୍ରତିପାଦନ ଓଡ଼ିଆ ସାହିତ୍ୟରେ ଅପୂର୍ବ ମନେ ହୁଏ ।

## ଅନୁବାଦ

ଅନୁବାଦ ସହଜସାଧ୍ୟ କଳା ନୁହେଁ । ଅନୁବାଦ କଲାବେଳେ ଅନୁବାଦକ ନିଜ ମୂଳ ସୃଷ୍ଟିକୁ ଅନୁଧ୍ୟାନ କରି ତାହାକୁ ଏକ ଭିନ୍ନ ଭାଷାରେ ପୁଣି ସୃଷ୍ଟି କରିଥାନ୍ତି । ଏ ମୂଳ ରଚନାଟିକୁ ଅନ୍ୟ ଭାଷା ପାଠକ ଗୋଷ୍ଠୀଙ୍କୁ ଅବଗତ କରାଇବା ଏହାର ପ୍ରଧାନ ଲକ୍ଷ୍ୟ । ଅନୁବାଦକୁ ଭାଷାନ୍ତର କୁହାଗଲେ ମଧ୍ୟ ଏହାକୁ ପୁନଃସୃଜନ ଭାବେ ଅଭିହିତ କରିବା ସମୀଚୀନ ହେବ ବୋଲି ଆଲୋଚକ ଲିଙ୍ଗରାଜ ରଥ ମତ ଦେଇଛନ୍ତି ।

ରାଧାମୋହନ କବି ଜୀବନର ଆଦ୍ୟଭାଗରୁ ହିଁ ଅନୁବାଦ କାର୍ଯ୍ୟରେ ହାତ ଦେଇଛନ୍ତି । ତାଙ୍କ କିଶୋର ବୟସର ରଚନାଗୁଡ଼ିକୁ 'ବନରାଜିନୀଳା' ସଙ୍କଳନର 'ଛାୟା' ଶୀର୍ଷକ ପ୍ରଭାଗରେ ଦେଖିବାକୁ ମିଳେ । ବହୁ ସୁନ୍ଦର ଇଂରାଜୀ କବିତାର ଅନୁବାଦ ଏଥିରେ ଅଛି । ପ୍ରଥମ କବିତା 'ସ୍ୱଦେଶ ପ୍ରେମ' । ଏହା ସାର୍ ୱାଲ୍‌ଟର ସ୍କଟ୍‌ଙ୍କ 'ପାଟ୍ରିଓଟିଜିମ୍'ର ଅନୁବାଦ । ଏହି କବିତାଟିରେ ରାଧାମୋହନ କବିତାଟିର ଭାବସମ୍ପଦକୁ ରକ୍ଷା କରିବାକୁ ଚେଷ୍ଟା କରିଛନ୍ତି । ସେଥିରେ ସେ ମଧ୍ୟ କିଛିଟା ସଫଳତା ଲାଭ କରିଛନ୍ତି । ସେହିପରି 'ଶେଷ ଗୋଲାପ' କବିତାଟି ଥମାସ୍ ମୁରଙ୍କର 'ଦି'ଲାଷ୍ଟ ରୋଜ୍' କବିତାର ଅନୁବାଦ । ରବର୍ଟ ସାଉଦିଙ୍କ 'ଦି ଟ୍ରାଭେଲର୍ସ ରିଟର୍ଣ୍ଣ'ର ଅନୁବାଦ ହେଉଛି 'ପଥିକ ବାହୁଡ଼ା' । 'ରାଜଜେମା' ହେଉଛି ଥୋମାସ୍ କ୍ୟାମ୍ପବେଲ୍‌ଙ୍କର 'ଲର୍ଡ୍ ଇଲିନ୍‌ସ ଡଟର୍'ର କଳାତ୍ମକ ଅନୁବାଦ । ସେହିପରି ଲର୍ଡ ଟେନିସନ୍‌ଙ୍କର 'ଏ ଫେୟାରୱେଲ'ର ଅନୁବାଦ 'ମେଲାଣି' ରଖିଛନ୍ତି । ଉଇଲିୟମ କାଉପରଙ୍କର 'ଦି ଗୋଲ୍ଡଫିନ୍ଚ'ର ଅନୁବାଦପାଇଁ ଏ ଦେଶର ଏକ ପକ୍ଷୀର ନାମ ଚୟନ କରିଛନ୍ତି । ତାହାହେଲା 'ହଳଦୀ ବସନ୍ତର ମୁକ୍ତି' । ମିସେସ୍ ହେମାନ୍ସଙ୍କର 'ଟୁ ଏ ୱାଟର ଫାଉଲ'ର ଅନୂଦିତ ନାମ ହେଉଛି 'କୌଣସି ଜଳଚର ପକ୍ଷୀ ପ୍ରତି' । ୱାଲ୍ଟର ସ୍କଟଙ୍କର 'ଦି ମେଡ୍ ଅଫ ନିଦେପାଥ'ର ସୁନ୍ଦର ଅନୁବାଦ କରିଛନ୍ତି, 'ରାଜକୁମାରୀ' । ବିଶିଷ୍ଟ ଆମେରିକୀୟ କବି ଏଚ୍. ଡବ୍ଲ୍ୟୁ. ଲଙ୍ଗଫେଲୋଙ୍କର ପ୍ରସିଦ୍ଧ କବିତା 'ଏ ପାମ୍ ଅଫ ଲାଇଫ୍'ଟି 'ଜୀବନ ସଙ୍ଗୀତ' ଶିରୋନାମରେ ଅନୁବାଦ ହୋଇଛି ।

ଅନୁବାଦର ତିନୋଟି ପଦ୍ଧତି ଅଛି । ଗୋଟିଏ ହେଲା ଆକ୍ଷରିକ ଅନୁବାଦ ବା ଭାଷାନୁବାଦ । ଦ୍ୱିତୀୟଟି ହେଲା ଭାବାନୁବାଦ ବା ମର୍ମାନୁବାଦ । ତୃତୀୟଟି ହେଲା ଛାୟାନୁବାଦ ବା ବିଷୟାନୁବାଦ । ରାଧାମୋହନ ତାଙ୍କ ଆଦ୍ୟ ଅନୁବାଦ କବିତାଗୁଡ଼ିକରେ ଏହି ତିନୋଟି ପଦ୍ଧତିର ସୁସମନ୍ୱିତ ସମ୍ମିଶ୍ରଣ ଘଟାଇ ତାହାକୁ କଳାତ୍ମକ କରିଦେଇଛନ୍ତି । ସେଗୁଡ଼ିକ ପାଠକ ସମ୍ମୁଖରେ ଯଥାର୍ଥ ଅନୁବାଦ ପରି ପ୍ରତୀୟମାନ ହୁଏ ।

ତା'ର କେତେକ ଉଦାହରଣ –

ଟେନିସନ୍‌ଙ୍କ 'ଭିକ୍ଷୁବାଳା' କବିତାର କବିଙ୍କ ଅନୁବାଦ ଏହିପରି –

''ନଗ୍ନ ପାଦେ ଆସି ପ୍ରାସାଦ ଦୁଆରେ
ଉଭାହେଲା ଏକ ବାଳିକା
ବାହୁଯୁଗେ ତା'ର ଉର ଢାଙ୍କି ଅଛି,
ଭିକ୍ଷା ଅଟେ ତା'ର ଜୀବିକା
ବାଳାର ଅପରୂପ ରୂପ ମୋହନ
ବର୍ଣ୍ଣିବାକୁ କ୍ଷମ ନୋହିବାକୁ କ୍ଷାନ୍ତ
ହୋଇଯିବ କବି ମନ ।''

ପୁଣି –

''ଏତେ ଚାରୁମୁଖ, ଏତେ ଅପାସୋରା ସୁଷମା ଶିରୀ
ନ ଥିଲା କାହିଁ ସେ ରାଇଜ ସାରା
ରାଜପଥେ ଜଣାଇଲେ ରାଜା ହୃଦର ଭାବ
ରାଣୀ ହେବେ ମୋର ଭିକ୍ଷୁବାଳା ।''

ଉଇଲିୟମ ଓ୍ୱାର୍ଡ଼ସଓ୍ୱାର୍ଥଙ୍କ 'ଟୁ ଦି କୁକୋ' କବିତାକୁ ରାଧାମୋହନ 'କୋକିଳ ପ୍ରତି' ଶିରୋନାମ' ଦେଇ ଅନୁବାଦ କରିଛନ୍ତି । ସେହି କବିତାର ଗୋଟିଏ ପଦ –

''ପ୍ରଫୁଲ୍ଲ ଆରେ ପିକ ନବ ଅତିଥି
ପୁଲକିତ ମୁଁ ଶୁଣି ତୋହର ଗୀତି
ବିହଙ୍ଗ ନୋହୁ ଆରେ ବସନ୍ତ ଚର
ଭ୍ରମଣଶୀଳ ତୁହି ଏକଇ ସ୍ୱର ।''

ଏଠାରେ ମୂଳ ଇଂରାଜୀ କବିତାକୁ ପାଠ କରି ଅନୁବାଦକୁ ପାଠ କଲେ ଜଣାଯାଏ ମୂଳ କବିତାର ଭାଷା ଓ ଭାବ କେବଳ ନୁହେଁ; ଛନ୍ଦ ମଧ୍ୟ ଅକ୍ଷୁଣ୍ଣ ରହିଛି । 'ଆଇ ହିଅର ଦି ଆଣ୍ଡ ରିଜଏସ'ର ଅନୁବାଦ କରିଛନ୍ତି ।

'ପୁଲକିତ ମୁଁ ଶୁଣି ତୋହର ଗୀତି ।''

ଏହାକୁ ସଫଳ ଅନୁବାଦ କୁହାଯାଇପାରେ ।

କବି ଓ୍ୱାର୍ଡ଼ସଓ୍ୱାର୍ଥଙ୍କରେ ଆଉ ଏକ କବିତା 'ଦି ସଲିଟାରୀ ରିପର୍' । ରାଧାମୋହନ ସେହି କବିତାଟିକୁ ଦେଖି 'ଏକାକିନୀ କେଦାର କୋଳେ' ଶିରୋନାମରେ ଅନୁବାଦ କରିଛନ୍ତି । ଏହି ଅନୁବାଦରେ ମଧ୍ୟ ତାଙ୍କର କାବ୍ୟିକ ପ୍ରତିଭା ସୁସ୍ପଷ୍ଟ । ତା'ର ଉଦାହରଣ –

"ଦେଖ ଏକାକିନୀ କେଦାର କୋଳେ
ଯୁବତୀ ସେ ମାଳ ଅଞ୍ଚଳର
ଶସ୍ୟ ବାଉଛି, ଗାଉଛି ଗୀତ
ରହିଯାଅ ଅବା ସଧୀରେ ଚଳ ।"

'ହାଇଲାଣ୍ଡ'ର କବି ଅନୁବାଦ କରିଛନ୍ତି 'ମାଳ ଅଞ୍ଚଳ' । 'ଲାସ୍'ର ଅନୁବାଦ କରିଛନ୍ତି 'ଯୁବତୀ' । 'ବାଉଛି', 'ଗାଉଛି' ପ୍ରଭୃତି ଶବ୍ଦ କବିତାରେ ଲାଳିତ୍ୟ ସୃଷ୍ଟି କରୁଛି ।

କବିତାଟିର ଶେଷ ପଦରେ ମଧ୍ଧ ରାଧାମୋହନ ଅସାଧାରଣ ଦକ୍ଷତା ଦେଖାଇଛନ୍ତି । ତାହାର ଉଦାହରଣ –

"ନୀରବେ ମୌନେ ଶୁଣିଲି ଗୀତ
ଉଠିଲି ଯେବେ ମୁଁ ଶଇଳପଥେ
ପରେ ପରେ ତାହା ଶୁଭିଲା ନାହିଁ
ଝଙ୍କୃତ ହେଲା ମରମ ଗତେ ।"

ଆମେରିକାର ଜଣେ ବିଶିଷ୍ଟ କବି ହେଉଛନ୍ତି 'ଏଚ୍. ଡବ୍ଲ୍ୟୁ. ଲଙ୍ଗ୍‌ଫେଲୋ' । ତାଙ୍କର ପ୍ରସିଦ୍ଧ କବିତା 'ଏ ପାମ୍ ଅଫ ଲାଇଫ'କୁ 'ଜୀବନ ସଙ୍ଗୀତ' ଶିରୋନାମରେ କବି ଅନୁବାଦ କରିଛନ୍ତି । ଏଥିରେ କବି ଆକ୍ଷରିକ ଅନୁବାଦ ଓ ଭାବାନୁବାଦର ମଧୁର ସମନ୍ୱୟ ଘଟାଇ ଅନୁବାଦଟିକୁ କଳାତ୍ମକ କରିଛନ୍ତି ।

'ଜୀବନ ସଙ୍ଗୀତ'ର କେତୋଟି ପଦ –

"ବିଷାଦ ବଚନ କହ ନାହିଁ ଯେତେ
ଜୀବନ ଅସାର ସ୍ୱପ୍ନମାୟା
ନିଦ୍ରାଳୁ ପ୍ରାଣ ମୃତ ଏ ଜଗତେ
ବସ୍ତୁ ଦିଶେ ଯା ନୁହଇ ତାହା ।
ଜୀବନ ସତ୍ୟ, ବାସ୍ତବ ପୁଣି
ଶମଶାନେ ତା'ର ମୃତ୍ୟୁ ନାହିଁ
ଧୂଳି ତୁ, ମିଶିବୁ ଧୂଳିର ସହିତ
କୁହାଯାଇ ନାହିଁ ଆତ୍ମାପାଇଁ ?"

'ଜୀବନ ଅସାର, ସ୍ୱପ୍ନମାୟା' ଅନୁବାଦ ଶବ୍ଦ ରାଧାମୋହନଙ୍କ ଅପୂର୍ବ ଭାଷାଜ୍ଞାନ ତଥା ଅର୍ଥବୋଧର ପରିଚୟ । ଆଲୋଚକଙ୍କ ଭାଷାରେ, କବି ତରାଜୁରେ ତଉଲି ନିଶ୍ଚିତ ହେଲା ପରେ ଏପରି ସବୁ ଶବ୍ଦ ବ୍ୟବହାର କରିଛନ୍ତି ।

ଏହି କବିତାରେ ଆଉ ଏକ ପଦ –

''ଧରାର ବିଶାଳ ରଣପ୍ରାଙ୍ଗଣେ
ଜୀବନର ଏହି ଶିବିର ବାସେ
ଚାଳିତ ପାଳିତ ପଶୁପରି ନୁହେଁ
ବୀର ହୁଅ ତୁମେ ବିଜୟ ଆଶେ ।''

'ଭାଇଭୋକ'(Vivouac)ର ଓଡ଼ିଆ ଅନୁବାଦ 'ଶିବିର' – ତାଙ୍କର ଅସାଧାରଣ ଜ୍ଞାନର ପରିଚୟ ଦିଏ ।

ସେହିପରି ଅନ୍ୟ ଏକ ଅନୁବାଦ କବିତା 'କୌଣସି ଜଳଚର ପକ୍ଷୀ'ରେ କବିଙ୍କ କ୍ଷମତା ସହଜରେ ଉପଲବ୍ଧି କରିହୁଏ ।

''ଅସ୍ତଗତ ରବି ଶେଷ କିରଣେ
ବାରୁଣୀ ହସଇ ହେମ କିରଣେ,
ଶିଶିର ପଡ଼ଇ ଏବେରେ ପକ୍ଷୀ,
ଉଡ଼ିଯାଉ କାହିଁ ଦିଗନ୍ତେ ଲକ୍ଷି ?''

**ସୋରାବ ଓ ରୁସ୍ତମ**

ଆଉ ଏକ କ୍ଷୁଦ୍ର ଅଥଚ ଲୋକପ୍ରିୟ ଇଂରାଜୀ କାବ୍ୟର ଓଡ଼ିଆ ଅନୁବାଦ କରିଛନ୍ତି ରାଧାମୋହନ । ତାହା ହେଲା ଇଂରାଜୀ କବି ମାଥ୍ୟୁ ଆରନୋଲ୍ଡଙ୍କ 'ସୋରାବ ଓ ରୁସ୍ତମ' । ଏହା ୧୯୨୪ ମସିହାରେ ରଚିତ ହୋଇଥିଲା । ରାଧାମୋହନ ମୁଖବନ୍ଧରେ ଲେଖିଛନ୍ତି – ''୧୯୩୨ ମସିହାରେ ମୋର ଅନୁଜ ପ୍ରତିମ ଶ୍ରୀମାନ୍ ଈଶ୍ୱରଚନ୍ଦ୍ର ମଦାନ୍ତି ଏହି ଅନୁବାଦ କରିବାକୁ ମୋତେ ଅନୁରୋଧ କଲେ । ତେଣୁ ଯଶପ୍ରାର୍ଥୀ ନ ହୋଇ 'ସୋରାବ ଓ ରୁସ୍ତମ'ର ଅନୁବାଦ କରୁ କରୁ ଶେଷରେ ଇଂରାଜୀ ଭାଷାରେ ଲିଖିତ କାବ୍ୟଟି ଓଡ଼ିଆ ପଦ୍ୟରେ ପରିଣତ ହୋଇଅଛି । ମୋର ଏହି ଯତିପାତ ବିଶିଷ୍ଟ ଛାତ୍ର ଜୀବନର ଲେଖାଟି କେତେକ ସାହିତ୍ୟପ୍ରେମୀ ବନ୍ଧୁ ଛପାଇବାପାଇଁ ଅନୁରୋଧ କରିବାର କୋଡ଼ିଏ ବର୍ଷ ପରେ ମୁଦ୍ରିତ ହେଲା ।''

ଏହି ପୁସ୍ତକର ପ୍ରକାଶ ସମୟ ହେଉଛି ୧୯୬୮ ମସିହା ।

କବି ରାଧାମୋହନ ମାଥ୍ୟୁ ଆରନୋଲ୍ଡଙ୍କୁ ଅନୁସରଣ କରି ଅମିତ୍ରାକ୍ଷର ଛନ୍ଦରେ ଏହାକୁ ଅନୁବାଦ କରିଛନ୍ତି । ସମ୍ଭବତଃ ସେ ଅନୁବାଦ କଳା ଉପରେ ଅଧିକ ଗୁରୁତ୍ୱ ପ୍ରଦାନ କରିଥିଲେ । ଇଂରାଜୀ କାବ୍ୟଟିର ପ୍ରଥମ ଚାରି ଧାଡ଼ିର ଅନୁବାଦ ରାଧାମୋହନ ଏହିପରି କରିଛନ୍ତି –

''ପ୍ରଭାତର ଆଦ୍ୟ ପାଣ୍ଡୁରଶ୍ମି ପୁଣି ଭରିଲା ପୂର୍ବାଶା
ଅକସସ୍ ନଦୀର ଗର୍ଭୁ କୁହେଳିକା ଉଠିଲା ଉଚ୍ଛୁସି
ତାତାରୀୟ ତମ୍ବୁରାଶି ତା'ର ତୀରେ ନୀରବ ନିସ୍ତବ୍ଧ–
ସେହିପରି ସର୍ବେ ତହିଁ ରହିଛନ୍ତି ନିଦ୍ରା ନିମଗନ ।''

କାବ୍ୟର ଶେଷ ଭାଗରେ ସୋରାବ ରକ୍ତରଞ୍ଜିତ ବାଲୁକା ଉପରେ ଶୋଇଥିବା ଘଟଣାକୁ ରାଧାମୋହନ ଏହିପରି ଅନୁବାଦ କରିଛନ୍ତି –

''ରୁଧିରାକ୍ତ ବାଲୁକାରେ ମରଣରେ ଶୋଇଲା ସୋରାବ
ମହାନ୍ ରୁସ୍ତମ୍ ତହୁଁ ପ୍ରାବରଣତାର
ମୃତ୍ୟୁପରେ ଟାଣିଦେଲା, ବସିଗଲା ମୃତ ପୁତ୍ର ପାଶେ
ମୁଗୁନି ପ୍ରସ୍ତ ସ୍ତମ୍ଭ ଉର୍ଦ୍ଧ୍ୱପଥେ ଟୋଳିଥିଲା ମଥା
ଜାମ୍‌ସେଦ୍‌ଙ୍କ ସୌଧ ଯେଉଁପରି ରହି ଦମ୍ଭଭରେ
ପାର୍ସିପଲିସର କ୍ରୋଡ଼େ, ଏବେ ତାହା ଲମ୍ବ ଭାବେ ରହି
ଭଗ୍ନ ପାହାଚର ସ୍ତୂପେ ପଡ଼ିଅଛି ଶଇଳ ପାର୍ଶ୍ୱେ
ବାଲୁକାରେ ସେହିପରି ଶୋଇଚି ରୁସ୍ତମ୍ ।''

କାବ୍ୟର ଶେଷ ପାଞ୍ଚ ଧାଡ଼ି ମଧ୍ୟ ଅତି କଳାତ୍ମକ ହୋଇଛି, ଯଥା –

''ବ୍ୟର୍ଥ ବକ୍ରଗାମୀ ଏକ ଯାଯାବର ନଦୀ, ଯେପର୍ଯ୍ୟନ୍ତ
ଶୁଣି ନାହିଁ ଆକାଙ୍‌କ୍ଷିତ, ତରଙ୍ଗର ଘାତ ପ୍ରତିଘାତ
ଦେଖି ନାହିଁ ସମ୍ମୁଖରେ ଉନ୍ମୁକ୍ତ ସେ ସଲିଳ–ଆବାସ
ସୁବିସ୍ତାର ଶାନ୍ତ ଦୀପ୍ତ ଯାର ନିମ୍ନ କୁଜ୍‌ଝଟିକାରୁ ଉଠି
ସଦ୍ୟସ୍ନାତ ତାରାପୁଞ୍ଜ ଉଜ୍ଜ୍ୱଳର ଆରଲ୍ ସାଗର ।''

## ମେଘଦୂତ

ରାଧାମୋହନ ମଧ୍ୟ କେତେକ ସଂସ୍କୃତ କାବ୍ୟର ଅନୁବାଦ କରି ନିଜ କୁଶଳତାର ପରିଚୟ ଦେଇଛନ୍ତି । କବି କାଳିଦାସଙ୍କ ଅମର କୃତି ହେଉଛି 'ମେଘଦୂତ' । ଏହା କେବଳ ବିଭିନ୍ନ ଆଧୁନିକ ଭାରତୀୟ ଭାଷାରେ ନୁହେଁ, ବିଶ୍ୱର ବିଭିନ୍ନ ଭାଷାରେ ଏହା ଅନୁବାଦିତ ହୋଇଛି । ଇଂରାଜୀରେ ଅନୁବାଦ କରିଛନ୍ତି ହୋରେସ୍ ହେମ୍ୟାନ୍ ଉଲସନ୍ । ଶିରୋନାମ – 'ଦି କ୍ଲାଉଡ୍ ମେସେଞ୍ଜର' । ଜର୍ମାନୀରେ ମ୍ୟାକ୍ସମୁଲାର ଏହାର ଅନୁବାଦ କରିଛନ୍ତି । ଓଡ଼ିଆ ଭାଷାରେ ମଧ୍ୟ ଚାରି ପାଞ୍ଚୋଟି ଅନୁବାଦ ପ୍ରକାଶିତ ହୋଇଛି । ସେଗୁଡ଼ିକ ମଧ୍ୟରେ କବିବର ରାଧାନାଥଙ୍କ ଅନୁବାଦ ସର୍ବପ୍ରଥମ ଓ ସର୍ବଶ୍ରେଷ୍ଠ ବୋଲି ସମସ୍ତେ ସ୍ୱୀକାର କରନ୍ତି ।

ରାଧାମୋହନ ରାଧାନାଥଙ୍କ ଅନୁବାଦକୁ ଉଚ୍ଚ ସ୍ଥାନ ପ୍ରଦାନ କରିଥିଲେହେଁ ରାଧାନାଥଙ୍କ ଅନୁବାଦରେ କେତେକ ତ୍ରୁଟି ଦେଖାଇବାକୁ ପଶ୍ଚାତ୍‌ପଦ ହୋଇ ନାହାନ୍ତି । ତାଙ୍କର ନିଜ ଭାଷାରେ –

''ତେବେ ପ୍ରଶ୍ନ ହୋଇପାରେ କବି ରାଧାନାଥଙ୍କ ଅନୁବାଦ ଥାଉଁ ଥାଉଁ ମୋର ଏ ଉଦ୍ୟମର ପ୍ରୟୋଜନୀୟତା କେଉଁଠି ? ବଡ଼ ସଲଖ ଓ ସକୁଣ୍ଠ ଭାବରେ ମୋତେ ଉତ୍ତର ଦେବାକୁ ପଡୁଛି ।

"କବି ରାଧାନାଥ ସ୍ୱକୀୟ କାବ୍ୟସୃଷ୍ଟିରେ ଯେଉଁପରି ସିଦ୍ଧି ପାଇଛନ୍ତି, 'ମେଘଦୂତର' ଅନୁବାଦରେ ମଧ୍ୟ ସେ କମ୍ ସାଫଲ୍ୟ ଲାଭ କରି ନାହାନ୍ତି । ମାତ୍ର ଅନୁବାଦରେ ମୂଳ କବିଙ୍କ ଭାବକୁ ସ୍ଥାନେ ସ୍ଥାନେ ଛାଡ଼ି ଦେଇ ସ୍ୱାତନ୍ତ୍ର୍ୟ ରକ୍ଷା କରିଛନ୍ତି । କେଉଁଠି କେଉଁଠି ମଧ୍ୟ ମୂଳଭାବକୁ ଓଲଟା କରିଦେଇଛନ୍ତି । କେଉଁଠାରେ ବା ଅଯଥା ଦୀର୍ଘ କରିଦେଇଛନ୍ତି ।"

ରାଧାମୋହନ ୧୯୩୧ ମସିହାରେ 'ମେଘଦୂତ' ଅନୁବାଦ ଆରମ୍ଭ କରିଥିବା ଜଣାଯାଏ । ଏହି ବର୍ଷର ଜ୍ୟେଷ୍ଠ ପୂର୍ଣ୍ଣିମା ଦିନ କବି ତାଙ୍କ ବାସରରାତ୍ରି ଅତିବାହିତ କରିଥିଲେ ଓ ଏହାର ପରଦିନ ଅର୍ଥାତ୍ ୧୯୩୧ ମସିହା ଆଷାଢ଼ ମାସର ପ୍ରଥମ ଦିନରେ ହିଁ 'ମେଘଦୂତ' କାବ୍ୟର ଅନୁବାଦ ଆରମ୍ଭ କଲେ ।

'ମେଘଦୂତ' କାବ୍ୟର ପ୍ରଥମ ଶ୍ଳୋକଟିକୁ ରାଧାମୋହନ ଏହିପରି ଅନୁବାଦ କରିଛନ୍ତି –

"ଲକ୍ଷ୍ୟହରା ସେ
ଯକ୍ଷ ଯୁବକ
ବରଷକ ଲାଗି ପ୍ରଭୁର ଶାପେ
ଗତ ଗୌରବ
ବୈଭବ
ସ୍ନିଗ୍ଧ ବଧୂର ବିରହ ତାପେ ।
ବାସକଲା ଆସି ବେଦନାଭରେ
ରାମଗିରି ବନ-ଆଶ୍ରମରେ–
ଜନକସୁତାର ସ୍ନାହାନେ ଯହିଁ
ପୁଣ୍ୟଜଳ
ନ ମେରୁ ତରୁର ଛାୟାରେ ସଦା
ସ୍ନିଗ୍ଧ ତଳ ।"

'ମେଘଦୂତ'ର ଦ୍ୱିତୀୟ ଭାଗରେ ନାରୀର ରୂପ ବର୍ଣ୍ଣିତ । ଯକ୍ଷପତ୍ନୀର ରୂପ କାଳିଦାସ ଅତି ସୁନ୍ଦର ଭାବେ ବର୍ଣ୍ଣନା କରିଛନ୍ତି । କିନ୍ତୁ ରାଧାମୋହନଙ୍କ ଅନୁବାଦରେ ତାହା ଆହୁରି ସୁନ୍ଦର ଓ ମଞ୍ଜୁଳଭାବେ ପ୍ରକାଶ ପାଇଛି । ତା'ର ଉଦାହରଣ –

'ତନ୍ୱୀ ତରୁଣୀ' କରକ-ଦଶନୀ
ପକ୍ୱ ଅରୁଣ ବିମ୍ବାଧରୀ
ଛନ ଛନ ଛନ ଚାହାଣି ଢାଳଇ
ଚକିତ ଚପଳ ହରିଣୀ ପରି
ପୃଥୁଳ ଆୟତ ଶ୍ରୋଣୀର ଭାରେ
ମନ୍ଦେ-ଅଳସ ଛନ୍ଦେ ଚାଲେ

ପୁଣି –

‘ଗଭୀର ତାହାର ନାଭିର କୂପ
କ୍ଷୀଣ କଟି ତା’ର ଚମତ୍କାର’ ଇତ୍ୟାଦି ।

‘ମେଘଦୂତ’ର ଶେଷ ଶ୍ଳୋକର ଅନୁବାଦ ମଧ୍ୟ କଳାତ୍ମକ ହୋଇପାରିଛି । ତାହା ପାଠ କଲେ ସ୍ପଷ୍ଟ ଉପଲବ୍ଧି କରିହୁଏ । ‘ମେଘ’କୁ ଦୂତ କରି ବିଦାୟ ଦେଲାବେଳେ ବିରହୀ ଯକ୍ଷର ମିନତି ଅତି କରୁଣ ହୋଇଉଠିଛି ।

‘‘ଅନୁଚିତ ଆଜି ହେଲେ ହେଁ ମୋର ଏ ପ୍ରାର୍ଥନା
ବନ୍ଧୁ ବିଚାରେ ସେନେହ ଭରି
ବିଧୁର–ବିଚାରେ କରୁଣା କରି
ବିରହମାନାର ଅନ୍ତରେ ଦିଅ ସାନ୍ତ୍ୱନା ।
ତା’ପରେ ଜଳଦ ମନର ସୁଖେ
ଘେନି ବର୍ଷାର
ଶିରୀ ସମ୍ଭାର
ବିହର ବିପୁଳ ଧରାର ବୁକେ ।
ଜଳଧର ଆହେ ତଡ଼ିତ ବଧୂର
ବିରହ ଲବ
ମିଳନ-ମଧୁର ଜୀବନରେ କେବେ
ନ ହେଉ ତବ ।’’

**କୁମାର ସମ୍ଭବ**

ରାଧାମୋହନ ମହାନ୍ କବି କାଳିଦାସଙ୍କର ପ୍ରଶଂସକ ଥିଲେ । ତେଣୁ ସେ ମହାକବିଙ୍କ ପ୍ରଥମ କାବ୍ୟ ‘କୁମାର ସମ୍ଭବ’କୁ ଉପେକ୍ଷା କରିପାରି ନାହାନ୍ତି । ତେବେ କାବ୍ୟଟିର ସମ୍ପୂର୍ଣ୍ଣ ଅନୁବାଦ ନ କରି କାବ୍ୟଟିର ଅବଲମ୍ବନରେ ଏକ ନୃତ୍ୟ ନାଟିକା ରଚନା କରିଛନ୍ତି । ଏହାର ନାମ ମଧ୍ୟ ସେ ରଖିଛନ୍ତି ‘କୁମାର ସମ୍ଭବ’ ।

ଏହି କାବ୍ୟର ୭ଟି ସର୍ଗ ବୋଲି ରାଧାମୋହନଙ୍କ ମତ । ସେହି ସର୍ଗମାନଙ୍କରୁ ‘କୁମାର ସମ୍ଭବ’ ନୃତ୍ୟ ନାଟିକା ପରିକଳ୍ପନା କରିଛନ୍ତି ୧୭ଟି ଦୃଶ୍ୟରେ ।

‘କୁମାର ସମ୍ଭବ’ ପ୍ରଥମ ସର୍ଗର ଚଉବନ ଶ୍ଳୋକଟି ନାଟିକାର ପ୍ରଥମ ଦୃଶ୍ୟ ରୂପେ ଗ୍ରହଣ କରାଯାଇଛି । ମହାନ୍ ଯୋଗୀ ମହାଦେବ ତପସ୍ୟା କରିବାପାଇଁ ଗଙ୍ଗାନଦୀର ପ୍ରବାହଦ୍ୱାରା ସିକ୍ତ, ଦେବଦାରୁ ବୃକ୍ଷଦ୍ୱାରା ପରିବେଷ୍ଟିତ, ମୃଗନାଭି କସ୍ତୁରୀଦ୍ୱାରା ସୁବାସିତ, କିନ୍ନରୀମାନଙ୍କ ସଙ୍ଗୀତଦ୍ୱାରା ମୁଖରିତ ହିମାଳୟର କୌଣସି ଶିଖର ପ୍ରଦେଶରେ ନିବାସ କରିଛନ୍ତି ।

କବି ଏହାର କବିତାରୂପ ଦେଇଛନ୍ତି –

''ତୁଷାର ଶୈଳ ଉରସେ
ଦେବଦାରୁ ବୀଥି ପୁଲକିତ ଯହିଁ
ଗଙ୍ଗା ଶୀକର ପରଶେ,
କସ୍ତୁରୀ-ମୃଗ-ନାଭି ପରିମଳ
ସମୀରଣ ଯହିଁ କରେ ଉତ୍ଥଳ,
କିନ୍ନର-ସ୍ୱର-ଝଙ୍କାର ଉଠେ ସରସେ ;
ତପ ଆଚରଣେ ଶିବ ଆସ୍ଥାନ
ବିରଚିଲେ ତହିଁ ହରଷେ
ତୁଷାର ଶୈଳ ଉରସେ ।''

ରାଧାମୋହନ ଏଥିରେ ନିଜର ଛନ୍ଦ ଯୋଜନା ଓ ଭାଷା ବିନ୍ୟାସର ଅପୂର୍ବ ଦକ୍ଷତା ଦେଖାଇଛନ୍ତି ।

ମହାସତୀ ପାର୍ବତୀ ସ୍ୱସମ୍ମୁଖରେ ମଦନ ଭସ୍ମ ହେବା ଦେଖି ନିନ୍ଦା କରିବାରେ ଲାଗିଛନ୍ତି, ଯଥା –

''ମଦନ ଦହନ-ସମ୍ମୁଖେ ଦେଖି
ଶିବ ଲାଭ ଆଶା ଛାଡ଼ି
ମରମେ ମରମେ ନିନ୍ଦିଲେ ଉମା
ଆପଣାର ରୂପଶିରୀ,
ସାର୍ଥକ ସେହି ରୂପର ରେଖା
ପ୍ରିୟତମ – ମନେ ଆଙ୍କଇ ଯାହା
ପ୍ରୀତିର ଦୀପ୍ତ କନକ ରେଖା ।''

କାବ୍ୟ ନାଟିକାର ଆଉ ଏକ ପର୍ଯ୍ୟାୟରେ ପାର୍ବତୀଙ୍କ ସମ୍ମୁଖରେ ଛଦ୍ମରୂପୀ ଶିବ ତାପସ ବେଶ ଧରି ଉପସ୍ଥିତ ହୋଇ ଶିବନିନ୍ଦା ଆରମ୍ଭ କରିଦେଇଛନ୍ତି । ପାର୍ବତୀଙ୍କ ପକ୍ଷେ ତାହା ଅସହ୍ୟ ହୋଇଉଠିଛି । ପାର୍ବତୀ ତାହାକୁ ନ ଶୁଣି ଆଗେଇ ଯାଇଛନ୍ତି । ସମ୍ମୁଖ ଭାଗରେ ସସ୍ମିତ ମୁଖରେ ଉଭା ଶଙ୍କରଙ୍କୁ ଦେଖି ତଟସ୍ଥ ହୋଇପଡ଼ିଛନ୍ତି । ଆଗକୁ ଯାଇପାରି ନାହାନ୍ତି ବା ସେଠାରେ ରହିପାରି ନାହାନ୍ତି । କାଳିଦାସଙ୍କ ସେହି ଶ୍ଳୋକକୁ କବି ଏହିଭଳି ଭାବେ ଅନୁବାଦ କରିଛନ୍ତି –

''ପଥେ ପର୍ବତ ଦେଖିଲେ ଯଥା
ଯାଇପାରେ ନାହିଁ, ରହିପାରେ ନାହିଁ
ପ୍ରବାହିନୀ ନଦୀ ଯାତ୍ରାରତା
ଆଗକୁ ଯିବାକୁ ଟୋଳିଥିଲେ ପାଦ
ଗିରିଜା ହଠାତ୍
ବେପଥୁ ମତି
ଘର୍ମବତୀ
ଯାଇ ପାରିଲେନି ରହି ପାରିଲେନି
ରୁଦ୍ଧ ଗତି ।''

ରାଧାମୋହନ ଏହାକୁ ସରଳ ଭାଷାରେ ବର୍ଣ୍ଣନା କରିଛନ୍ତି । ଏଠାରେ ଭାଷାକୁ ଛାଡ଼ି ଭାବ ଉପରେ ହିଁ ଗୁରୁତ୍ୱ ପ୍ରଦାନ କରିଛନ୍ତି ।

ଆଲୋଚକ ଡଃ ନିଶାମଣି ସ୍ୱାଇଁଙ୍କ ଭାଷାରେ – 'କୁମାର ସମ୍ଭବ' ଅନୁବାଦ ନିଶ୍ଚିତଭାବେ ଓଡ଼ିଆ ଅନୁବାଦ ସାହିତ୍ୟରେ ଏକ ମୂଲ୍ୟବାନ୍ ବିଭବ ହୋଇ ରହିବ – ଏଥିରେ ସନ୍ଦେହ ନାହିଁ ।

ଆଲୋଚକ ସୁରେନ୍ଦ୍ର ମହାନ୍ତିଙ୍କ ଭାଷାରେ – ''ବିଧିବଦ୍ଧ ଶିକ୍ଷା ନ ଥାଇ ସୁଦ୍ଧା ସଂସ୍କୃତ ସାହିତ୍ୟରେ ସେ ଯେପରି ଭାବରେ ଅବଗାହୀ, ସେହିପରି ମଧ୍ୟ ଭାବଗ୍ରାହୀ । ରାଧାମୋହନ ସଂସ୍କୃତରୁ ଅନୁବାଦ କରି ତାଙ୍କ ଅନୁବାଦ କୁଶଳତାର ପରିଚୟ ଦେଇଛନ୍ତି ।''

## ଶ୍ରୀଗୀତଗୋବିନ୍ଦ

ରାଧାମୋହନ ମଧ୍ୟ ଜୟଦେବ ରଚିତ 'ଶ୍ରୀଗୀତଗୋବିନ୍ଦ'ର ଓଡ଼ିଆ ଅନୁବାଦ କାର୍ଯ୍ୟରେ ହାତ ଦେଇଥିଲେ । ତାହା ଏ ପର୍ଯ୍ୟନ୍ତ ଅପ୍ରକାଶିତ । କିନ୍ତୁ ରାଧାମୋହନ ସାହିତ୍ୟ ଏକାଡେମୀର ଉପସଭାପତି ତଥା ଏକାଡେମୀର ତ୍ରୈମାସିକ ମୁଖପତ୍ର 'କୋଣାର୍କ'ର ସମ୍ପାଦକ ଥିଲାବେଳେ କେତୋଟି ଶ୍ଳୋକର ଅନୁବାଦ କରିଥିଲେ ଓ ତାହା ସେଥିରେ ପ୍ରକାଶ ପାଇଥିଲା । 'ଗୀତଗୋବିନ୍ଦ'ର ଗୀତ 'ଲଳିତ ଲବଙ୍ଗଲତା'ର ଅନୁବାଦ ଏହିପରି କରିଛନ୍ତି –

''ଲଳିତ ଲବଙ୍ଗ ଲତିକାର ଅଙ୍ଗ
ଚୁମ୍ବି ମଳୟ ବହେ ମନ୍ଦେ
ମଞ୍ଜୁଳ କୁଞ୍ଜେ ମଧୁକର ଗୁଞ୍ଜେ
ପିକ ଗାଏ କୁହୁ କୁହୁ ଛନ୍ଦେ ।
ବିରହୀ ଜନର କାଳ ବସନ୍ତ କାଳେ ଗୋ
ସଖୀଗଣ ସଙ୍ଗେ ହସି ନାନା ରଙ୍ଗେ
ନୃତ୍ୟ ରଚଇ ବନମାଳେ ଗୋ ।''

ରାଧାମୋହନ ବହୁ ସଂସ୍କୃତ ଶବ୍ଦ ମଧ୍ୟରୁ ଉପଯୁକ୍ତ ଶବ୍ଦ ଚୟନ କରି ନିଜ ଅନୁବାଦରେ ବ୍ୟବହାର କରିଛନ୍ତି । ପୁଣି କେତେକ ଶବ୍ଦର ଅତି ସୁନ୍ଦର ଓଡ଼ିଆ ପ୍ରତିଶବ୍ଦ ମଧ୍ୟ ବ୍ୟବହାର କରିଛନ୍ତି । ମୂଳରଚନାରେ ଜୟଦେବ 'ପରିଶୀଳନ' ଶବ୍ଦ ପ୍ରୟୋଗ କରିଛନ୍ତି । ଏହାର ଶାବ୍ଦିକ ଅର୍ଥ ହେଲା 'ସମ୍ପର୍କ' । କବି 'ପରିଶୀଳନ' ଶବ୍ଦକୁ 'ସମ୍ପର୍କ' ବା 'ସ୍ପର୍ଶ' ଭାବେ ଅନୁବାଦ ନ କରି ସେହି ଭାବଧାରା ବହନ କରୁଥିବା 'ଚୁମ୍ବି' ଶବ୍ଦ ପ୍ରୟୋଗ କରି ଅନୁବାଦଟିକୁ ଲାଳିତ୍ୟମୟ କରିଦେଇଛନ୍ତି । 'ଲଳିତ ଲବଙ୍ଗଲତା ପରିଶୀଳନ କୋମଳ ମଳୟ ସମୀରେ' ପାଠ କଲେ ଯେଉଁ ଭାବ ଜାତ ହୁଏ 'ଲଳିତ ଲବଙ୍ଗ ଲତିକାର ଅଙ୍ଗ ଚୁମ୍ବି ମଳୟ ବହେ ମନ୍ଦେ' ତା'ଠାରୁ ଅଧିକ ଭାବ ସୃଷ୍ଟି କରିଥାଏ ।

ଅନୁବାଦରେ ଅଧିକ ଲାଳିତ୍ୟ ଓ ମାଧୁର୍ଯ୍ୟ ରାଧାମୋହନଙ୍କର ଅନ୍ୟ ଏକ ପ୍ରକାଶିତ କବିତା 'ରତି ସୁଖ ସାରେ ଗତମଭିସାରେ ମଦନମନୋହର ବେଶମ୍'ରେ ମଧ୍ୟ ଦେଖାଯାଏ ।

କବିଙ୍କର ଅନୁବାଦ –

''ରତି ସୁଖ ରସାଣିତ ଅଭିସାରେ ଗଲାଣି ତ
ମନ୍ମଥ ବେଶେ ତୋର ମୋହନ
ଉଛୁର କରୁଛୁ କିଆଁ ପରାଣର ଆଗୋ ପ୍ରିୟା
ଯାଆ ଏବେ ଯାଆ ତୁହି ବହନ
ଯମୁନା ନଦୀର ତୀରେ
ପବନ ବହଇ ଧୀରେ
ବନେ ବସିଅଛି ନବନାଗର
ଘନ ପରିବର୍ତ୍ତନ
ସ୍ତନ ପରିମର୍ଦ୍ଦନ
ଚଞ୍ଚଳ ଯାର କରଯୁଗଳ ।''

ଆଲୋଚକ ଡଃ ଲିଙ୍ଗରାଜ ରଥଙ୍କ ମନ୍ତବ୍ୟ – 'ଶ୍ରୀଗୀତଗୋବିନ୍ଦ' ଅନୁବାଦରେ କବି ଗଡ଼ନାୟକଙ୍କ କୃତିତ୍ୱ ସମ୍ପର୍କରେ ଏହା କୁହାଯାଇପାରେ ଯେ ଯଦି ଶ୍ରୀ ଜୟଦେବ ସଂସ୍କୃତ ଭାଷାରେ ''ଶ୍ରୀଗୀତଗୋବିନ୍ଦ' ରଚନା ନ କରି, ବିଂଶ ଶତାବ୍ଦୀରେ ଓଡ଼ିଆ ଭାଷାରେ ଏହାକୁ ରଚନା କରିବାକୁ ବ୍ରତୀ ହୋଇଥାଆନ୍ତେ, ତେବେ ବୋଧହୁଏ ସେ କବି ଗଡ଼ନାୟକଙ୍କ 'ଗୀତଗୋବିନ୍ଦ'ର ଅନୁବାଦକୁ ହିଁ ରଚନା କରିଥାଆନ୍ତେ ।''

ରାଧାମୋହନଙ୍କ ଅନୁବାଦରେ ଭାବାନୁବାଦ, ଶବ୍ଦାନୁବାଦ ତଥା ଛାୟାନୁବାଦର ସୁନ୍ଦର ଓ ସମନ୍ୱିତ ସମ୍ମିଶ୍ରଣ ହୋଇଥିବା ମନେ ହୁଏ । ରାଧାମୋହନ ହିଁ ହେଉଛନ୍ତି ସାର୍ଥକ ଅନୁବାଦକ । ମୂଳ ରଚନା ପ୍ରତି ପ୍ରଗାଢ଼ ବିଶ୍ୱସ୍ତତା ହିଁ ତାଙ୍କର ବୈଶିଷ୍ଟ୍ୟ ।

## ପ୍ରବନ୍ଧ

ରାଧାମୋହନ ମଧ୍ୟ ବହୁ ପ୍ରବନ୍ଧ ରଚନା କରିଛନ୍ତି । ସେଗୁଡ଼ିକ ମୁଖ୍ୟତଃ ସମାଲୋଚନାମୂଳକ ଓ ସମ୍ପାଦକୀୟ ରଚନା । ସମାଲୋଚନାମୂଳକ ପ୍ରବନ୍ଧଗୁଡ଼ିକ ହେଲା ସାହିତ୍ୟ ସମାଲୋଚନାମୂଳକ, ଇତିହାସ ବିଷୟକ ଓ ଗବେଷଣାତ୍ମକ ପ୍ରବନ୍ଧ । 'ଓଡ଼ିଆ କବିତା କ୍ଷେତ୍ରରେ ଅନ୍ନଦାଶଙ୍କର' ଶୀର୍ଷକ ପ୍ରବନ୍ଧ ହେଉଛି ସାହିତ୍ୟ ସମାଲୋଚନାମୂଳକ ପ୍ରବନ୍ଧ । ଏହା 'କୋଣାର୍କ'ର ୬୦ ତମ ସଂଖ୍ୟା ୧୯୮୨ ମସିହାରେ ପ୍ରକାଶ ପାଇଥିଲା । ସେହି ପ୍ରବନ୍ଧଟିରେ ଅନ୍ନଦାଶଙ୍କରଙ୍କ ଜନ୍ମ, ବିଦ୍ୟାଧ୍ୟୟନ, ସାହିତ୍ୟ ସୃଜନର ଭିତ୍ତିଭୂମି, ଆଇ. ସି. ଏସ୍. ଚାକିରି ତଥା ବିବାହ ଆଦି ଅନେକ ବିଷୟ ଉପଯୁକ୍ତ ତଥ୍ୟ ସହ ବର୍ଣ୍ଣନା କରାଯାଇଛି । ଅନ୍ନଦାଶଙ୍କର ତଥା ସବୁଜ ଦଳର ବନ୍ଧୁମାନଙ୍କର ରେଭେନ୍‌ସା କଲେଜରେ ଅଧ୍ୟୟନ, ନନ୍‌ସେନ୍‌ସ କ୍ଲବ ଗଠନ, 'ଅବକାଶ' ପତ୍ରିକା ସମ୍ପାଦନା ଇତ୍ୟାଦି ବିଷୟ ଏଥିରେ ସ୍ଥାନ ପାଇଛି । ପ୍ରାବନ୍ଧିକ ଉଲ୍ଲେଖ କରିଛନ୍ତି ଯେ 'ସହକାର' ସମ୍ପାଦକ ଲକ୍ଷ୍ମୀନାରାୟଣ ସାହୁ ଓ 'ଉତ୍କଳ ସାହିତ୍ୟ'ର ସମ୍ପାଦକ ବିଶ୍ୱନାଥ କର ନିଜ ନିଜ ପତ୍ରିକାରେ ଅନ୍ନଦାଶଙ୍କରଙ୍କ ଲେଖାମାନ ପ୍ରକାଶ କରୁଥିଲେ । ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଅନ୍ନଦାଶଙ୍କରଙ୍କ ଆୟୁଷ ମାତ୍ର ଥିଲା ପାଞ୍ଚ ଛଅ ବର୍ଷ । ୧୯୨୨ରୁ ୧୯୨୮ ପର୍ଯ୍ୟନ୍ତ ସମୟ ଭିତରେ ସେ ୧୫ଟି କବିତା, କେତୋଟି ଆଲୋଚନା, କେତୋଟି ପ୍ରବନ୍ଧ, କେତୋଟି ଚିଠି ଓ 'ବାସନ୍ତୀ' ଉପନ୍ୟାସର କେତୋଟି ପରିଚ୍ଛେଦ ରଚନା କରିଥିବା କଥା ରାଧାମୋହନ ଉଲ୍ଲେଖ କରିଛନ୍ତି ।

ଅନ୍ନଦାଶଙ୍କରଙ୍କ ମର୍ମସ୍ପର୍ଶୀ କବିତା 'ଯୌବନ ଥରେ ଗଲେ ଆଉ ଆସେନା'ର ଆଲୋଚନା ପ୍ରସଙ୍ଗରେ ରାଧାମୋହନ କହିଛନ୍ତି –

''ମାନବ ଜୀବନରେ 'ଯୌବନ' ବସନ୍ତ ଋତୁ ପରି ମନେ ହୁଏ । ସେହି ସମୟରେ ଜୀବନରେ ଥାଏ ସ୍ୱପ୍ନ ଓ କ୍ରାନ୍ତି । ଜୀବନରେ ଦିଓଟି ବିଭାଗର ଉଦ୍ଭବ ଓ ଉନ୍ମେଷ । × × ଗୋଟିଏ ଅଭିଯାନ ହେଲେ ଆରଟି ଅଭିସାର । ଅନ୍ନଦାଶଙ୍କରଙ୍କର କବିତା ଉଭୟ ଭୂମିକାରୁ ଭୂମିଷ୍ଠ ।''

ଏହାପରେ ପ୍ରାବନ୍ଧିକ ଅନ୍ନଦାଶଙ୍କରଙ୍କ କବିତାର ସ୍ୱରୂପ ପ୍ରକଟିତ କରିଛନ୍ତି । ତାଙ୍କ ମତରେ ଅନ୍ନଦାଶଙ୍କରଙ୍କ କବିତାଟି ବିଖ୍ୟାତ ଇଂରାଜୀ କବି କାଉପରଙ୍କର 'The Shortness of Human Life' ଛାୟାରେ ଲିଖିତ । ତେବେ କବି ଅନ୍ନଦାଙ୍କ ଦେଶପ୍ରେମ ଓ ଅଧ୍ୟବସାୟପାଇଁ ସ୍ୱାଗତ ଜଣାଇଛନ୍ତି । ସେହିପରି ଅନ୍ନଦାଶଙ୍କରଙ୍କ କବିତା 'ପରୀ ମହଲ'ର ବିଶଦ ଆଲୋଚନା କରି ପ୍ରାବନ୍ଧିକ ରାଧାମୋହନ ତାହା ଉପରେ ବଙ୍ଗଳା କବି ସତ୍ୟେନ୍ଦ୍ରନାଥ ଦତ୍ତଙ୍କ ପ୍ରଭାବ ପଡ଼ିଥିବା ଦର୍ଶାଇଛନ୍ତି । ମାତ୍ର ତାହା ସ୍ୱାଭାବିକ ବୋଲି ମତ ବ୍ୟକ୍ତ କରିଛନ୍ତି । ରାଧାମୋହନ ପ୍ରବନ୍ଧଟିର ଶେଷରେ କହିଛନ୍ତି –

''ଓଡ଼ିଆ କବିତା କ୍ଷେତ୍ରରେ ଅନ୍ନଦାଶଙ୍କରଙ୍କର ଯେଉଁ ୧୪ଟି କବିତା ଅଛି, ସେଗୁଡ଼ିକ ଭାବ ଓ ଭାଷାରେ ସାର୍ଥକ ଓ ମନୋଜ୍ଞ ।''

ଦ୍ୱିତୀୟ ପ୍ରବନ୍ଧଟି ଐତିହାସିକ । ଏହା 'ସ୍ୱତନ୍ତ୍ର ଓଡ଼ିଶା ଓ ଗୋପବନ୍ଧୁ' ଶୀର୍ଷକରେ 'କୋଣାର୍କ' ପତ୍ରିକାରେ ୧୯୯୬ ମସିହା ଅପ୍ରେଲ ସଂଖ୍ୟାରେ ପ୍ରକାଶ ପାଇଥିଲା । ଦୀର୍ଘ ସତର ପୃଷ୍ଠାର ଏହି ପ୍ରବନ୍ଧଟିରେ ରାଧାମୋହନ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଦିଗରେ ପ୍ରମୁଖ ଭୂମିକା ଗ୍ରହଣ କରିଥିବା ଅନୁଷ୍ଠାନ 'ଉତ୍କଳ ସମ୍ମିଳନୀ'ର ଜନ୍ମବୃତ୍ତାନ୍ତଠାରୁ ଆରମ୍ଭ କରି ଉତ୍କଳମଣି ଗୋପବନ୍ଧୁଙ୍କର ରାଜନୈତିକ ଆବିର୍ଭାବ ଓ ତାଙ୍କ ଜୀବନର ସମସ୍ତ ବିଶିଷ୍ଟ ଘଟଣାବଳୀ ବର୍ଣ୍ଣନା କରିଛନ୍ତି ।

ପଣ୍ଡିତ ଗୋପବନ୍ଧୁ ଉତ୍କଳ ସମ୍ମିଳନୀର ନେତୃତ୍ୱ ନେଲା ପରେ ଉତ୍କଳ ସମ୍ମିଳନୀର କାର୍ଯ୍ୟ ଅର୍ଥାତ୍ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ମିଶ୍ରଣ ପ୍ରସ୍ତାବକୁ ଗୌଣ କରି କିପରି କଂଗ୍ରେସର କାର୍ଯ୍ୟକୁ ମୁଖ୍ୟ ସ୍ଥାନ ଦେଲେ, ତାହା ନିର୍ଭୀକ ଭାବରେ ଉପସ୍ଥାପିତ କରିଛନ୍ତି । ଅପରପକ୍ଷରେ ଉତ୍କଳ ଗୌରବ ମଧୁସୂଦନ ଦାସ – ଯେ କି ଉତ୍କଳ ସମ୍ମିଳନୀର ଜନ୍ମଦାତା — ଉତ୍କଳ ସମ୍ମିଳନୀପାଇଁ କିପରି କଂଗ୍ରେସ ଛାଡ଼ି ଦେଇଥିଲେ, ତାହା ଦର୍ଶାଇଛନ୍ତି ।

ପରିଶେଷରେ ଉଭୟ ଉତ୍କଳଗୌରବ ଓ ଉତ୍କଳମଣି କିପରି ନିଜ ନିଜର ଜୀବଦ୍ଦଶାରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଦେଖିବାରୁ ବଞ୍ଚିତ ହୋଇଥିଲେ – ତାହା ବର୍ଣ୍ଣନା କରିଛନ୍ତି । ଏଥିରେ ଥିବା ବିଷାଦର ସ୍ୱର ସ୍ପଷ୍ଟ ବାରି ହୁଏ ।

''ଜଣେ ଉତ୍କଳ ଗୌରବ ଆଉ ଜଣେ ଉତ୍କଳମଣି । × × × ସ୍ୱତନ୍ତ୍ର ଓଡ଼ିଶାର ସ୍ୱପ୍ନ ନେଇ ସେମାନେ ଲଢୁଥିଲେ । ମାତ୍ର ସ୍ୱତନ୍ତ୍ର ଓଡ଼ିଶା ଜୀବନରେ ଦେଖି ପାରିଲେ ନାହିଁ ।''

ତୃତୀୟ ପ୍ରବନ୍ଧଟି ଗବେଷଣାମୂଳକ – 'ଓଡ଼ିଆ ସାହିତ୍ୟକୁ ବାମଣ୍ଡାର ଦାନ'। ଏହି ଆଲୋଚନାଭିତ୍ତିକ ପ୍ରବନ୍ଧଟି 'କୋଣାର୍କ'ରେ ୧୯୮୬ ମସିହାରେ ପ୍ରକାଶ ପାଇଥିଲା ।

ପ୍ରବନ୍ଧର ଆରମ୍ଭରେ ରାଧାମୋହନ ପ୍ରବନ୍ଧଟିର ନାମକରଣର ଯଥାର୍ଥତା ଉପରେ ପ୍ରଶ୍ନ କରିଛନ୍ତି । 'ଆଧୁନିକ ଓଡ଼ିଆ ସାହିତ୍ୟକୁ ବାମଣ୍ଡାର ଦାନ' ପରିବର୍ତ୍ତେ 'ଓଡ଼ିଆ ସାହିତ୍ୟକୁ ବାମଣ୍ଡାର ଦାନ' ନାମକରଣ ସମୀଚୀନ ହୋଇଥାନ୍ତା ବୋଲି ମତ ଦେଇଛନ୍ତି ।

ପୁସ୍ତକର ଲେଖକ ହେଉଛନ୍ତି ଡକ୍ଟର ରାମଚନ୍ଦ୍ର ବ୍ରହ୍ମା । ଏହି ତଥାକଥିତ ଗବେଷଣାମୂଳକ ପୁସ୍ତକ ସମ୍ପର୍କରେ ଅତି ପ୍ରଶଂସା କରିଥିବା ସାହିତ୍ୟିକମାନଙ୍କର ମତାମତ କିପରି ଉପରଠାଉରିଆ ଓ ଅନ୍ତଃସାରବିହୀନ, ତାହା ଅତି ସ୍ପଷ୍ଟ ଭାବେ ରାଧାମୋହନ ବ୍ୟକ୍ତ କରିଛନ୍ତି ।

ପୁସ୍ତକଟିରେ ପରିବେଷିତ ତଥ୍ୟମାନ ଅମୂଳକ ଓ ଅସତ୍ୟ ବୋଲି ରାଧାମୋହନ ପ୍ରତିପାଦିତ କରିଛନ୍ତି । ସେ କେତୋଟି ଉଦାହରଣ ମଧ୍ୟ ଦେଇଛନ୍ତି । ଉକ୍ତ ପୁସ୍ତକରେ ରାମଚନ୍ଦ୍ର ବ୍ରହ୍ମା ଲେଖିଛନ୍ତି ଯେ କବିବର ରାଧାନାଥ ବାମଣ୍ଡା ରାଜସଭାରୁ ରାୟବାହାଦୁର ଉପାଧି ଲାଭ କରିଥିଲେ । ମାତ୍ର ବାମଣ୍ଡା ଦରବାର ନୁହେଁ, ଭାରତ ସରକାର ୧୮୯୭ ମସିହାରେ ରାଧାନାଥ ରାୟଙ୍କୁ ଯୋଗ୍ୟ ମନେ କରି ରାୟବାହାଦୁର ଉପାଧି ପ୍ରଦାନ କରିଥିଲେ । ଉତ୍କଳର ସାରସ୍ୱତ କ୍ଷେତ୍ରରେ ପ୍ରତିଷ୍ଠା ଅର୍ଜନ କରିଥିବା ନୀଳମଣି ବିଦ୍ୟାରତ୍ନଙ୍କ ନାମ ଉଜ୍ଜ୍ୱଳ ନୀଳମଣି ବିଦ୍ୟାରତ୍ନ ବୋଲି ବାରମ୍ବାର ଲେଖିଥିବାରୁ ରାଧାମୋହନ କ୍ଷୋଭ ପ୍ରକାଶ କରିଛନ୍ତି । ସେହିଭଳି ଦେବଗଡ଼ର ଜଳପ୍ରପାତର ନାମ ପ୍ରଧାନପାଟ ହୋଇଥିବାସ୍ଥଳେ ଅଧ୍ୟାପକ ବ୍ରହ୍ମା ପୁସ୍ତକରେ 'ପ୍ରଧାନ ପ୍ରପାତ' କିପରି ଉଲ୍ଲେଖ କଲେ, ସେଥିପାଇଁ ବିସ୍ମୟ ପ୍ରକାଶ କରିଛନ୍ତି । ରାଧାମୋହନଙ୍କ ମନ୍ତବ୍ୟ –

''ଅଧ୍ୟାପକଙ୍କ ପକ୍ଷରେ ଟିକିଏ ସାବଧାନ ହେବା ସ୍ପୃହଣୀୟ ନୁହେଁ କି ?''

ରାଧାମୋହନ ଓଡ଼ିଶା ସାହିତ୍ୟ ଏକାଡେମୀର ଉପସଭାପତି ଭାବେ ସଂଭ୍ରାନ୍ତ ସାହିତ୍ୟ ପତ୍ରିକା 'କୋଣାର୍କ'ର ସମ୍ପାଦକଭାବେ ଦୀର୍ଘକାଳ କାର୍ଯ୍ୟ କରିଥିଲେ । ଏଥିରେ ବିଭିନ୍ନ ସମୟରେ ବିଭିନ୍ନ ବିଷୟ ଉପରେ ପ୍ରବନ୍ଧ ରଚନା କରିଥିଲେ । ସେଗୁଡ଼ିକରେ ତାଙ୍କର ପ୍ରଜ୍ଞା, ମନନଶୀଳତା ଓ ବିଚାରଧାରାରେ ସ୍ୱଚ୍ଛତା ପ୍ରଭୃତି ସ୍ପଷ୍ଟ ଉପଲବ୍ଧି କରିହୁଏ । ସମ୍ପାଦକୀୟ ରଚନା କ୍ଷେତ୍ରରେ ରାଧାମୋହନଙ୍କ ଶୈଳୀ ଉଚ୍ଚକୋଟୀର ଓ ଅନନ୍ୟସାଧାରଣ ହୋଇପାରିଛି ।

ଗଡ଼ନାୟକଙ୍କ ଗଦ୍ୟ ସୃଷ୍ଟି ଏଯାବତ୍ ସାହିତ୍ୟପ୍ରେମୀମାନଙ୍କ ଦୃଷ୍ଟି ଆକର୍ଷଣ କରିପାରି ନାହିଁ । ଏହାର କାରଣ ଅନ୍ୱେଷଣ କରିବାକୁ ପଡ଼େ ନାହିଁ । କାବ୍ୟ କବିତା ରଚନା କ୍ଷେତ୍ରରେ ତାଙ୍କର ପ୍ରତିଷ୍ଠାର ତୁଙ୍ଗିମା ହିଁ ତାଙ୍କର ଅପେକ୍ଷାକୃତ ଅଳ୍ପ ଗଦ୍ୟସୃଷ୍ଟିକୁ ଯେ ଖର୍ବକାୟ କରିଦେଇଛି, ଏହା ନିଃସନ୍ଦେହରେ କୁହାଯାଇପାରେ ।

**ସମ୍ମାନ ଲାଭ**

କବି ଗଡ଼ନାୟକ ତାଙ୍କ ପ୍ରତିଭାପାଇଁ ଭାରତ ସରକାରଙ୍କଠାରୁ ପଦ୍ମଶ୍ରୀ, ଓଡ଼ିଶା ସାହିତ୍ୟ ଏକାଡେମୀର ପ୍ରଥମ ଅତିବଡ଼ୀ ପୁରସ୍କାର, ଉତ୍କଳ ବିଶ୍ୱବିଦ୍ୟାଳୟରୁ ସମ୍ମାନଜନକ ବିଦ୍ୟାବାରିଧି ଉପାଧି, ଉତ୍କଳ ସାହିତ୍ୟ ସମାଜ ଦ୍ୱାରା 'ଉତ୍କଳ ରତ୍ନ' ଉପାଧି, ସଂସ୍କୃତି ବିଭାଗ ଦ୍ୱାରା 'ଉତ୍କଳ ସ୍ୱାଭିମାନ' ପୁରସ୍କାର ଆଦି ସଂଖ୍ୟାଧିକ ପୁରସ୍କାର ଲାଭ କରିଛନ୍ତି ।

## ଦେହାବସାନ

ରାଧାମୋହନ ଆଠଟି ସନ୍ତାନର ଜନକ । ମାତ୍ର ପୁତ୍ର କନ୍ୟା ହୋଇ ଆଠଟିରୁ ଛଅ ଜଣଙ୍କୁ ହରାଇଥିଲେ । ଜୀବିତ ଏକମାତ୍ର ପୁତ୍ର ଦୀପକ ଓ କନ୍ୟା ଭାନୁଜା । ଉଭୟେ ବିବାହିତ ଓ ସମାଜରେ ପ୍ରତିଷ୍ଠିତ । କବିଙ୍କର ୨୦୦୦ ମସିହାରେ ପରଲୋକ ହୋଇଥିଲା ।

## ମୂଲ୍ୟାୟନ

ରାଧାମୋହନ ପଞ୍ଚବିଂଶ ଶତାବ୍ଦୀ ଓଡ଼ିଆ ସାହିତ୍ୟର ଅନ୍ୟତମ ଖ୍ୟାତନାମା କବି । ତାଙ୍କ କାବ୍ୟ ଜଗତର ସ୍ୱତନ୍ତ୍ର ଆକର୍ଷଣ ଅଛି – ଅସ୍ତ ଗୋଧୂଳିର ରୂପରେଖ ପରି ତାହା ଶାନ୍ତ ଓ ସୁନ୍ଦର । ଜୀବନର ବିରୋଧ, ଦ୍ୱନ୍ଦ୍ୱ, ସଂଘର୍ଷ, ସମସ୍ୟା ପ୍ରଭୃତି ତାଙ୍କ କାବ୍ୟ ପରିଧିକୁ ସ୍ପର୍ଶ କରିଥିଲେ ମଧ୍ୟ ତାହାକୁ ଆକ୍ରାନ୍ତ କରିପାରି ନାହିଁ । ବାସ୍ତବତାଠାରୁ ଦୂରରେ ରହି ସେ ଅନ୍ତର୍ନିହିତ ରୂପସଜ୍ଜା ଭିତରେ ଅଧିକର ଆନନ୍ଦ ଓ ମୁକ୍ତି ଖୋଜି ପାଇଛନ୍ତି । କୌଣସି ନିର୍ଦ୍ଦିଷ୍ଟ ଗୋଷ୍ଠୀ, ଯୁଗ ବା ଆଭିମୁଖ୍ୟର ଅନ୍ତର୍ଭୁକ୍ତ ନ ହୋଇ ମଧ୍ୟ କବି ଗଡ଼ନାୟକ ଓଡ଼ିଆ କାବ୍ୟ ଯୁଗର ଅନନ୍ୟ ସ୍ରଷ୍ଟା ହୋଇପାରିଛନ୍ତି ।

କବି ମଧ୍ୟ 'ଗାଥା କବିତା' ସୃଷ୍ଟିର ଏକ ଉନ୍ନତ ପଥ ଖୋଜି ପାଇଛନ୍ତି । ବହୁ ସୂତ୍ରରୁ ବହୁ ବିଷୟ ସେ ଆହରଣ କରିଛନ୍ତି, ମାତ୍ର କିମ୍ବଦନ୍ତୀର ପରଶମଣିର ସ୍ପର୍ଶରେ ସବୁ କିଛି ସୁବର୍ଣ୍ଣରେ ପରିଣତ ହୋଇଗଲା ପରି କବି ଗଡ଼ନାୟକଙ୍କ ଯାଦୁକରୀ କଳାକୁଶଳତାରେ ଆହୃତ ବିଷୟରାଜି ମୌଳିକ ସୃଷ୍ଟିର ଅପୂର୍ବ ଦ୍ୟୁତିରେ ଉଦ୍ଭାସିତ ହୋଇପଡ଼ିଛନ୍ତି । ସେ ଓଡ଼ିଆ ସାହିତ୍ୟର ଶ୍ରେଷ୍ଠତମ ଗାଥା କବି ଭାବେ ସ୍ୱୀକୃତି ଲାଭ କରିଛନ୍ତି ।

ରାଧାମୋହନଙ୍କ କାବ୍ୟ ପ୍ରତିଭାର ଅନ୍ୟ ଏକ ଦିଗ ହେଉଛି ଅନୁବାଦ ସାହିତ୍ୟ ସୃଷ୍ଟି । ପ୍ରତିଭାର ଆଦ୍ୟ ଉନ୍ମେଷ କାଳରେ କବିଙ୍କ ଅନୁବାଦ ପ୍ରତି ଯେଉଁ ମୋହ ହୃଦୟରେ ସୃଷ୍ଟି ହୋଇଥିଲା, ତାହା ପରବର୍ତ୍ତୀ ସମୟରେ ପ୍ରତିଭାର ବିକାଶ କାଳରେ ଏକ ସାମଗ୍ରିକ ରୂପ ବିଭବ ନେଇ ଆତ୍ମପ୍ରକାଶ ଲାଭ କରିଥିଲା । ସେ ଏ କ୍ଷେତ୍ରରେ ବିପୁଳ ସଫଳତା ଲାଭ କରିଛନ୍ତି ଓ ସେ ଏହା ଦୃଢ଼ତାର ସହ ବ୍ୟକ୍ତ କରିଛନ୍ତି । ସେ ଯାହାହେଉ, ସେ ଓଡ଼ିଆ ଅନୁବାଦ ସାହିତ୍ୟର ଗନ୍ତାଘରକୁ ସମୃଦ୍ଧ ଓ ପରିପୂର୍ଣ୍ଣ କରିଛନ୍ତି, ଏହା ନିଶ୍ଚିତ ଭାବେ କୁହାଯାଇପାରେ ।

କବି ଗଡ଼ନାୟକ ମଧ୍ୟ ଶବ୍ଦର ଯାଦୁକର, ତାଙ୍କର ଭାଷା ସରଳ ଅଥଚ କାବ୍ୟିକ । ଭାଷାରେ ବିଶେଷଣ ତଥା ଯୁକ୍ତବର୍ଣ୍ଣର ବ୍ୟାପକ ବ୍ୟବହାର ଥିଲେ ମଧ୍ୟ ଏହା ଅତ୍ୟନ୍ତ ଲଳିତ, ମଧୁର ଓ ଶ୍ରୁତିରୋଚକ ହୋଇଥାଏ । ବିଭିନ୍ନ ଭାଷାରୁ ଉପଯୁକ୍ତ ଶବ୍ଦ ଆହରଣ କରି ଉପଯୁକ୍ତ ସ୍ଥାନରେ ବ୍ୟବହାର କରି ସେ ନିଜର କଳାନୈପୁଣ୍ୟ ଦେଖାଇଛନ୍ତି । ଫଳରେ ତାଙ୍କର କବିତା ଜୟଦେବ ଓ ଦୀନକୃଷ୍ଣ ଭଳି ମାଧୁର୍ଯ୍ୟମୟ ଓ ଅତ୍ୟନ୍ତ ଲୋକପ୍ରିୟ ହୋଇପାରିଛି ।

ଆଉ ଛନ୍ଦ ଦୃଷ୍ଟିରୁ ବିଚାର କଲେ ଏହା ସର୍ବବାଦିସମ୍ମତ ଯେ ରାଧାମୋହନ ସାବଲୀଳ ଛନ୍ଦର ଶ୍ରେଷ୍ଠ ଉଦ୍‌ଗାତା । କବିତାର ସୌଧରେ 'ଛନ୍ଦ'ର ଯେଉଁ ସୂକ୍ଷ୍ମ କାରୁକାର୍ଯ୍ୟ ସେ ଖଞ୍ଜି ଦେଇଛନ୍ତି, ତାହା ହୋଇଉଠିଛି ଅନନ୍ୟ ସାଧାରଣ । ତାଙ୍କ ଛନ୍ଦରେ ସଙ୍ଗୀତ ରହିଛି, ଶକ୍ତିମତ୍ତା ରହିଛି, ଜୀବନ ରହିଛି । ଏହି ତିନୋଟିର ସମନ୍ୱୟରେ ତାଙ୍କ କବିତାର ସ୍ରୋତ ମିଶି ମିଶି, ନାଚି ନାଚି ଯେପରି ବହିଚାଲିଛି...

ଏତେ ବୈଶିଷ୍ଟ୍ୟ ଥିଲେ ମଧ୍ୟ କେହି କେହି ତାଙ୍କୁ ସମାଲୋଚନା କରିବାକୁ ପଶ୍ଚାତ୍‌ପଦ ହୋଇ ନାହାନ୍ତି । ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କବିତାର ଆଧୁନିକତାଠାରୁ କବି ଗଡ଼ନାୟକଙ୍କ ଦୂରତାର ସେମାନେ ସନ୍ଧାନ ପାଇଛନ୍ତି । ତାଙ୍କ ଗାଥା କବିତାର କିଛି ପ୍ରଗତିଶୀଳ ମାନବବାଦୀ ଉଚ୍ଚାରଣ ଭିତରେ ତାଙ୍କ ଆଧୁନିକତା ସୀମିତ ବୋଲି ମନ୍ତବ୍ୟ ଦେଇଛନ୍ତି । ଭାଷା ଦୃଷ୍ଟିରୁ ବିଚାର କଲେ ମଧ୍ୟ ତାଙ୍କ ଭାଷା ଗଣମାନସ ତଥା ଲୋକମାନସ ସହିତ ବିଶେଷ ଯୋଗାଯୋଗ ସ୍ଥାପନ କରିପାରି ନାହିଁ ବୋଲି ସେମାନଙ୍କ ମତ । ପୁଣି ସେମାନଙ୍କ ଦୃଷ୍ଟିରୁ ଶତାବ୍ଦୀର କାବ୍ୟଚେତନା ତାଙ୍କ ପ୍ରତିଭାର ପରିପୂର୍ଣ୍ଣ ଆଶୀର୍ବାଦ ପାଇପାରି ନାହିଁ । ଅର୍ଥାତ୍, ରାଧାମୋହନ ସର୍ବାଙ୍ଗରେ ଜଣେ ଶତାବ୍ଦୀର କବି ହୋଇପାରି ନାହାନ୍ତି । ମାତ୍ର ଏହା କେତେ ପରିମାଣରେ ଠିକ୍, ତାହାହିଁ ବିଚାର କରିବାର କଥା ।

ଆଲୋଚକ ଚିନ୍ତାମଣି ବେହେରା ଗଡ଼ନାୟକ କାବ୍ୟବିଭାର ଜୟଗାନ କରି କହିଛନ୍ତି – ''ଓଡ଼ିଆ କାବ୍ୟ ସାହିତ୍ୟରେ ସବୁଜ ଧାରାର ଅନ୍ନଦା, ବୈକୁଣ୍ଠ, କାଳିନ୍ଦୀ ପ୍ରଭୃତି ବିଶିଷ୍ଟ କଥାଶିଳ୍ପୀଙ୍କୁ ବାଦ୍ ଦେଇ ଯେଉଁ କେତେଜଣ ଓଡ଼ିଆ କାବ୍ୟକ୍ଷେତ୍ରରେ ନୂତନ ଆଭିମୁଖ୍ୟ ଧରି ଆତ୍ମପ୍ରକାଶ କରିଛନ୍ତି, ସେମାନଙ୍କ ମଧ୍ୟରେ କବି ମାୟାଧର ମାନସିଂହ, ରାଧାମୋହନ ଗଡ଼ନାୟକ ବିଶିଷ୍ଟ ଗୌରବର ଅଧିକାରୀ ।''

ଆଧୁନିକତାର ଶ୍ରେଷ୍ଠ ପ୍ରବକ୍ତା ସଚ୍ଚିଦାନନ୍ଦ ରାଉତରାୟ ମଧ୍ୟ କବିଙ୍କୁ ଅଭିନନ୍ଦନ ଜଣାଇଛନ୍ତି । 'କବି ରାଧାମୋହନ ଗଡ଼ନାୟକ : ଏକ ବିହଙ୍ଗଦୃଷ୍ଟି' ଶୀର୍ଷକ ଲେଖାରେ – ''କବି ଗଡ଼ନାୟକ ଓଡ଼ିଆ କାବ୍ୟ ଜଗତକୁ ନାନା ପ୍ରକାରେ ଋଦ୍ଧିମନ୍ତ କରିଛନ୍ତି । ଗତ କେତେ ଦଶକର ଓଡ଼ିଆ କବିତାରୁ ତାଙ୍କର ମଙ୍ଗଳ ହାତର ମୁଦ୍ରାଙ୍କ କେହି ଇଚ୍ଛା କଲେ ମଧ୍ୟ ଲିଭାଇ ଦେଇପାରିବ ନାହିଁ । × × × ରୋମାଣ୍ଟିକ ଓ ନିଓକ୍ଲାସିକ୍‌ର ମିଶ୍ରିତ ଧାରାଟିକୁ କବି ଗଡ଼ନାୟକ ହିଁ ବେଶ୍ ମଜବୁତ୍ କରିଛନ୍ତି ଆଧୁନିକ ପର୍ବର ପୋଷାକୀ ରିହର୍ସାଲ ଯୁଗରେ, ନିଜର ଅନନ୍ୟତାର ସମ୍ପୂର୍ଣ୍ଣ ମୋହର ଦେଇ । ତେଣୁ ଏ ଶତକର ଚତୁର୍ଥ ଦଶକଟି ତାଙ୍କ ପ୍ରତିଧ୍ୱନିରେ ମୁଖର ହୋଇ ରହିବ ।''

ଆଲୋଚିକା ଡଃ ମନୋରମା ବିଶ୍ୱାଳଙ୍କ ଭାଷାରେ – ''ତାଙ୍କ (ରାଧାମୋହନ ଗଡ଼ନାୟକ) କବିତାର ଢଳ ଢଳ ହେମ ଖଇର ତନୁ କନିଅର ଫୁଲର ବାସ୍ନା ଓଡ଼ିଶାର ଶହ ଶହ ପ୍ରାଣକୁ ଆନ୍ଦୋଳିତ କରିବ, ଏଥିରେ ସନ୍ଦେହ ନାହିଁ ।''

❑❑❑



## ନବଯୁଗର ମାନ୍ତ୍ରିକ

# ଅନନ୍ତ ପଟ୍ଟନାୟକ

## [୧୯୧୨-୧୯୮୭]

କବି ଅନନ୍ତ ପଟ୍ଟନାୟକ ଏକ ଅବିସ୍ମରଣୀୟ ପ୍ରତିଭା । ଆଧୁନିକ ଓଡ଼ିଆ କବିତାକୁ ପ୍ରଗତିଶୀଳ ଚିନ୍ତା ଓ ଚେତନାରେ ଶାଣିତ କରି ତା'ର ଆଙ୍ଗିକରେ ଯେପରି ନୂତନତ୍ୱର ସଞ୍ଚାର ଘଟାଇଛନ୍ତି, ତାହା ତାଙ୍କୁ ସମକାଳର କବିମାନଙ୍କଠାରୁ ସ୍ୱତନ୍ତ୍ର ଭାବରେ ଉପସ୍ଥାପିତ କରିଅଛି । ଏହି କ୍ରାନ୍ତିକାରୀ କବିଙ୍କର ସମାଜଚେତନାରେ ରହିଛି ସମ୍ବେଦନଶୀଳତା, ପ୍ରାଣପ୍ରାଚୁର୍ଯ୍ୟ ଓ ସାଧାରଣ ମଣିଷ ସହ ଏକ ଅନ୍ତରଙ୍ଗ ମମତାବୋଧ ।

### ଜନ୍ମବୃତ୍ତାନ୍ତ

ଅନନ୍ତ ପଟ୍ଟନାୟକ ଅବିଭକ୍ତ ପୁରୀ ଜିଲ୍ଲାର (ଏବେର ଖୋର୍ଦ୍ଧା ଜିଲ୍ଲା) ବାଲିପାଟଣା ଥାନାର ଚଣାହଟ୍ଟା (ଚଣାହାଟ) ଗ୍ରାମରେ ୧୯୧୨ ମସିହା ଜୁନ୍ ମାସ ୧୦ ତାରିଖ ଦିନ ଭୂମିଷ୍ଠ ହୋଇଥିଲେ । ପିତା ହେଉଛନ୍ତି ଜୟକୃଷ୍ଣ ପଟ୍ଟନାୟକ । ସେ କୋଣାର୍କ ନିକଟବର୍ତ୍ତୀ ଶିରୀପୁର ଗ୍ରାମର ବିଶିଷ୍ଟ ବ୍ୟକ୍ତି ବାଞ୍ଛାନିଧି ମହାନ୍ତିଙ୍କର ଭଉଣୀ ମହାଦେଈଙ୍କୁ ବିବାହ କରିଥିଲେ । ଜୟକୃଷ୍ଣ ପାରଳାଖେମୁଣ୍ଡି ମହାରାଜାଙ୍କର ତେଲାଙ୍ଗରେ ଥିବା ଇଷ୍ଟେଟରେ ମ୍ୟାନେଜରଭାବେ ନିଯୁକ୍ତ ହୋଇଥିଲେ ।

ଦୀର୍ଘକାଳ ଧରି ଜୟକୃଷ୍ଣ ଆନ୍ତ୍ରିକ ରୋଗରେ ପୀଡ଼ିତ ଥିଲେ । ଶେଷରେ ତାଙ୍କର ମୃତ୍ୟୁ ହେଲା । ପତ୍ନୀ ମହାଦେଈ ସହମରଣ ଲାଭ କରିବା ଉଦ୍ଦେଶ୍ୟରେ ପୂର୍ବରୁ ଅଫିମ ଆଣି ନିଜ ପାଖରେ ଲୁଚାଇ ରଖିଥିଲେ । ପତି ପତ୍ନୀଙ୍କର ଚିତାଗ୍ନି ଏକାଠି ଜଳିଥିଲା । ସେତେବେଳକୁ ଅନନ୍ତଙ୍କ ବୟସ ଥିଲା ମାତ୍ର ସାଢ଼େ ଚାରି ବର୍ଷ ।

**ବାଲ୍ୟକାଳ**

ବାପା-ମା'-ଛେଉଣ୍ଡ ବାବାଜି (ଅନନ୍ତଙ୍କ ଡାକ ନାମ) ଓ ବାଇ (କନିଷ୍ଠ ଭ୍ରାତା ଗୁରୁଚରଣଙ୍କ ଡାକ ନାମ) ପ୍ରଥମେ ସେମାନଙ୍କ ଜେଜେମା ସୁଲୋଚନା ଦେବୀ ଓ ପରେ ପିଉସୀ ବସନ୍ତକୁମାରୀ ଦେଈ ଓ ପିଉସା ସତ୍ୟବାଦୀ ଦାସଙ୍କଦ୍ୱାରା ଲାଳିତପାଳିତ ହେଲେ । ଦାଦି କୃଷ୍ଣମୋହନ ମହାନ୍ତି ମଧ୍ୟ ସେଥିରେ ସହାୟତା କରୁଥିଲେ । ସତ୍ୟବାଦୀଙ୍କୁ ପୁରୀର ମୋକ୍ତାର ଆର୍ତ୍ତବନ୍ଧୁ ମହାନ୍ତି ପୁଅ କରିନେଇଥିବାରୁ ସେ ପୁରୀରେ ରହୁଥିଲେ । ଅନନ୍ତ ପିଉସୀ ବସନ୍ତକୁମାରୀଙ୍କୁ 'ବୋଉ' ବୋଲି ଡାକୁଥିଲେ । ପିଉସୀ ଓ ପିଉସା ମଧ୍ୟ ନିଃସନ୍ତାନ ଥିଲେ । ତେଣୁ ସେମାନେ ସମସ୍ତ ସ୍ନେହ ବାବାଜି ଓ ବାଇଙ୍କ ଉପରେ ଅଜାଡ଼ି ଦେଇଥିଲେ ।

ଅନନ୍ତ ପିଲାଦିନେ ମାମୁ ଘରକୁ ଯାଉଥିଲେ । ସମସ୍ତେ ତାଙ୍କୁ ଗେଲ କରୁଥିଲେ । ଏତେ ଲୋକ ସେଠି କାଖେଇବାକୁ ଥିଲେ ଯେ, ଅନନ୍ତ ଆଉ ତଳେ ବସୁ ନ ଥିଲେ ବୋଲି ସର୍ବୋଦୟ ନେତ୍ରୀ ମା' ରମାଦେବୀ ତାଙ୍କ ରଚିତ ପୁସ୍ତକ 'ଜୀବନପଥେ'ରେ ଉଲ୍ଲେଖ କରିଛନ୍ତି ।

ଅନନ୍ତ ପିଲାଦିନରୁ ସବୁ ହରାଇ, ଦୁଃଖ, କଷ୍ଟ ଓ ଯାତନାର ଦାବାନଳ ମଧ୍ୟରୁ ସଂସାରକୁ ଆସିବାର କଥା ଉଲ୍ଲେଖ କରିଛନ୍ତି 'ଆସିଚି ମୁଁ ଆସିଚି' କବିତାରେ –

''ଆସିଚି ମୁଁ ଆସିଚି
ଦୁଃଖର ଦୁର୍ଭେଦ୍ୟ ପ୍ରାଚୀର ଭାଙ୍ଗି
ମୁଁ ଆସିଛି ।
ରକ୍ତର ଦୁସ୍ତର ପାରାବାର ଲଘି
ମୁଁ ଆସିଛି ।...''

**ଶିକ୍ଷାଲାଭ**

ଅନନ୍ତ ନଅ ବର୍ଷ ହୋଇଥିବାବେଳେ ପୁରୀର ପଥୁରିଆ ସାହିରେ ପିଉସା ପିଉସୀଙ୍କ ପାଖେ ରହୁଥିଲେ । ସେ ସେଠାରେ ରହି ପୁରୀ ପ୍ରାକ୍ଟିସିଂ ଗୁରୁ ଟ୍ରେନିଂ ସ୍କୁଲରେ ପାଠ ପଢୁଥିଲେ । ପରବର୍ତ୍ତୀ ସମୟରେ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ସାପ୍ତାହିକ 'ସମାଜ' ପୁରୀରେ ଛପା ହୋଇ ପ୍ରକାଶ ପାଇଲା । 'ସମାଜ' ଅଫିସ ସେଇ ପଥୁରିଆ ସାହିରେ ତାଙ୍କ ଘର ପାଖାପାଖି ଥିଲା । ବାଳକ ଅନନ୍ତଙ୍କର

ସେଠାରେ ଦେଖା ହେଉଥିଲା ଉତ୍କଳମଣି ଗୋପବନ୍ଧୁ, ଉତ୍କଳଗୌରବ ମଧୁସୂଦନ, ବ୍ୟାସକବି ଫକୀରମୋହନ, ଇତିହାସ ପ୍ରଣେତା ଜଗବନ୍ଧୁ ସିଂହ, ଆଚାର୍ଯ୍ୟ ନୀଳକଣ୍ଠ, ଗୋଦାବରୀଶ, କୃପାସିନ୍ଧୁ ପ୍ରଭୃତିଙ୍କ ସହିତ । ସେମାନଙ୍କ ଆଚରଣ ଓ ବକ୍ତୃତା ବାଳକ ଅନନ୍ତଙ୍କ ଉପରେ ଗଭୀର ପ୍ରଭାବ ପକାଇବା ସ୍ୱାଭାବିକ ।

ପୁରୀର ଗୁରୁ ଟ୍ରେନିଂ ସ୍କୁଲରୁ ପ୍ରାଥମିକ ଶିକ୍ଷା ଶେଷ କରି ଅନନ୍ତ ପୁରୀ ଜିଲ୍ଲା ସ୍କୁଲରେ ଷଷ୍ଠ ଶ୍ରେଣୀରେ ନାମ ଲେଖାଇଲେ । ସେହି ସ୍କୁଲର ଛାତ୍ରଥିବା ବେଳେ ସେ ସତ୍ୟବାଦୀ ବନବିଦ୍ୟାଳୟର ପଞ୍ଚସଖା, ଯଥା – ଆଚାର୍ଯ୍ୟ ହରିହର, ଗୋଦାବରୀଶ, ନୀଳକଣ୍ଠ ପ୍ରଭୃତିଙ୍କ ସାନ୍ନିଧ ଲାଭ କଲେ । ସେମାନଙ୍କ ବ୍ୟକ୍ତିତ୍ୱ ଓ ଆଦର୍ଶ କିଶୋର ଅନନ୍ତଙ୍କୁ ଗଭୀର ଭାବରେ ପ୍ରଭାବିତ କଲା । ସେମାନଙ୍କଠାରୁ ଦେଖି ଅନନ୍ତ ମଧ ଖଦଡ଼ ପରିଧାନ କଲେ । ସେ ମଧ ଜୀବନର ଶେଷ ପର୍ଯ୍ୟନ୍ତ ପ୍ରାୟ ଖଦଡ଼ ପିନ୍ଧୁଥିଲେ ।

ପୁରୀ ଜିଲ୍ଲା ସ୍କୁଲରେ ପଢୁଥିଲାବେଳେ ଅନନ୍ତଙ୍କର ପରିଚୟ ହୋଇଥିଲା କିଶୋର ଭଗବତୀଚରଣଙ୍କ ସହିତ । ଭଗବତୀ ତାଙ୍କ ଠାରୁ ଚାରି ବର୍ଷ ବଡ଼ ଥିଲେ । ଅନନ୍ତ ପୁରୀ ଜିଲ୍ଲା ସ୍କୁଲରେ ଷଷ୍ଠ ଶ୍ରେଣୀରେ ପଢ଼ିଲାବେଳକୁ ଭଗବତୀ ସେହି ସ୍କୁଲର ଦଶମ ଶ୍ରେଣୀର ଛାତ୍ର ଥିଲେ । ଭଗବତୀଙ୍କ ପିତା ସ୍ୱପ୍ନେଶ୍ୱର ପାଣିଗ୍ରାହୀ ପୁରୀରେ ଓକିଲାତି କରୁଥିଲେ । ରାମଚଣ୍ଡୀ ସାହିରେ ତାଙ୍କର ଘର ଥିଲା । ଚାରି ପାଞ୍ଚ ବର୍ଷ ବଡ଼ ହୋଇଥିଲେ ବି ଦୁହିଁଙ୍କ ମଧରେ ବନ୍ଧୁତା ହୋଇଥିଲା । ଭଗବତୀଙ୍କର ସହପାଠୀ ଥିଲେ ପ୍ରାଣନାଥ ପଟ୍ଟନାୟକ । ଏମାନେ ସ୍ୱପ୍ନେଶ୍ୱର ପାଣିଗ୍ରାହୀଙ୍କ ଘରେ ପତ୍ରପତ୍ରିକା ପଢ଼ିବାପାଇଁ ଏକାଠି ହେଉଥିଲେ । ବେଳେ ବେଳେ ପଥୁରିଆ ସାହିରେ ଥିବା 'ସମାଜ' ଅଫିସକୁ ଯାଉଥିଲେ । କେବେ କେବେ ସେମାନେ କଂଗ୍ରେସ ଅଫିସକୁ ଯାଇ ନେତାମାନଙ୍କୁ ଭେଟୁଥିଲେ ।

ପୁରୀକୁ ରଥଯାତ୍ରା ବେଳେ ବା ଅନ୍ୟାନ୍ୟ ପର୍ବପର୍ବାଣିରେ ବହୁ ଯାତ୍ରୀ ଆସୁଥିଲେ । ସେମାନେ ହଇଜା ବା ବସନ୍ତ ପ୍ରଭୃତି ରୋଗରେ ଆକ୍ରାନ୍ତ ହୋଇ ପଡୁଥିଲେ । ସେମାନଙ୍କର ସେବା କରିବା ବା ସେମାନଙ୍କୁ ସହାୟତା ଯୋଗାଇ ଦେବାପାଇଁ 'ପୁରୀ ସେବା ସମିତି' ଗଠିତ ହୋଇଥିଲା । ସେହି ସେବା ସମିତିର ନେତୃତ୍ୱ ନେଉଥିଲେ ମୁରାରି ତ୍ରିପାଠୀ । ଡାକ ନାମ ତାଙ୍କର ଥିଲା ମୁରାରି ତିଆଡ଼ୀ । ପ୍ରାୟ ସମସ୍ତେ ତାଙ୍କୁ ମୁରାରି ଭାଇନା ବୋଲି ଡାକୁଥିଲେ । ସେହି ସେବା ସମିତିର କାର୍ଯ୍ୟ ମଧ ଥିଲା ଗାଁ ଗଣ୍ଡାରେ ବଢ଼ି ପ୍ରଭୃତି ହେଲେ ବନ୍ୟା ପ୍ରପୀଡ଼ିତଙ୍କୁ ଚୁଡ଼ା ଚାଉଳ ବାଣ୍ଟିବା । କିଶୋର ଅନନ୍ତ ସେହି ପୁରୀ ସେବା ସମିତିରେ ଯୋଗ ଦେଲେ । ହଇଜା ରୋଗୀ ପ୍ରଭୃତିଙ୍କର ସେବା କରିବା ବା ବନ୍ୟାବିପତ୍ପାତବେଳେ ଚୁଡ଼ା ଚାଉଳ ବାଣ୍ଟିବା ପ୍ରଭୃତି କାର୍ଯ୍ୟରେ ସେ ନିଜକୁ ନିୟୋଜିତ କରୁଥିଲେ ।

ପୁରୀ ଜିଲ୍ଲା ସ୍କୁଲରେ ପଢ଼ିଲାବେଳେ ଅନନ୍ତଙ୍କର ଗୋକୁଳମୋହନ ରାୟ ଚୂଡ଼ାମଣିଙ୍କ ସହିତ ପରିଚୟ ହେଲା । ସେ ଆଙ୍ଗ୍ଲୋ-ବେଙ୍ଗଲୀ ସ୍କୁଲରୁ ଆସି ପୁରୀ ଜିଲ୍ଲା ସ୍କୁଲରେ ନାମ ଲେଖାଇ ଥାଆନ୍ତି । ଅନନ୍ତ ଓ ଗୋକୁଳମୋହନ ପ୍ରଭୃତି ସେବା କାର୍ଯ୍ୟ ଚଳାଇଲେ । ପିଲାମାନେ ମଧ୍ୟ ମିଶି ଗୋଟିଏ ପାଠାଗାର ଆରମ୍ଭ କଲେ । ସେଠାରେ ବହି ପଢ଼ାପଢ଼ିରେ ସମୟ କଟାଉଥାନ୍ତି । ରବିବାର ଦିନ ଭଜନ କୀର୍ତ୍ତନ ବି କରୁଥାନ୍ତି । କ୍ଷିତିଶବାବୁ ବୋଲି ଜଣେ ସନ୍ନ୍ୟାସୀ ମଧ୍ୟ ସେଠାରେ ଥିଲେ । ସେ ନିଜ ଦେଶକୁ ଭଲପାଇବା କଥା ଅନେକ ସମୟରେ କହୁଥିଲେ । ପୁରୀ ଜିଲ୍ଲା ସ୍କୁଲର ସେତେବେଳେ ପ୍ରଧାନ ଶିକ୍ଷକ ଥିଲେ ଆନନ୍ଦଚନ୍ଦ୍ର ପତି । ପରେ ସେ ରାୟବାହାଦୁର ଉପାଧି ପାଇଥିଲେ । ସେ ପିଲାଙ୍କର ସେବା ସମିତି ଗଠନ, ପୁସ୍ତକ ଅଧ୍ୟୟନ, ପୁଣି କୁସ୍ତି କସରତ କରିବା ପ୍ରଭୃତି ସରକାରଙ୍କୁ ଜଣାଇ ଦେଇଥିଲେ । ଫଳରେ ସରକାରଙ୍କ କୋପଦୃଷ୍ଟି ପଡ଼ିଲା । ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ପତି ଓ ଇନ୍‌ସପେକ୍ଟର ପିଲାଙ୍କୁ ସେ ଅନୁଷ୍ଠାନ ପରିତ୍ୟାଗ କରିବାକୁ ବାଧ୍ୟ କଲେ । ଧମକଦେଇ ସେମାନଙ୍କଠୁଁ ଲେଖାଇ ମଧ୍ୟ ନେଲେ ।

ଷୋଳ ବର୍ଷ ହୋଇଥିଲାବେଳେ ଅନନ୍ତ ନବମ ଶ୍ରେଣୀର ଛାତ୍ର ଥିଲେ । ଯେତେବେଳେ ପିଉସା ସତ୍ୟବାଦୀ ଦାସ ପୁରୀରୁ ବଦଳି ହେଲେ କଟକକୁ, ଅନନ୍ତଙ୍କ ପୁରୀ ଛାତ୍ର ଜୀବନ ଶେଷ ହେଲା । ସେ ରେଭେନ୍‌ସା କଲିଜିଏଟ୍ ସ୍କୁଲରେ ନବମ ଶ୍ରେଣୀରେ ପଢ଼ିଲେ । ସେହି ସ୍କୁଲରେ ତାଙ୍କର ସହପାଠୀ ଥିଲେ ବିଶ୍ୱନାଥ ପଶାଏତ, ବୈଦ୍ୟନାଥ ରଥ, ପରମାନନ୍ଦ ମହାନ୍ତି ପ୍ରମୁଖ ।

ଅନନ୍ତ ସେତେବେଳକୁ କବିତା ଲେଖିବା ଆରମ୍ଭ କରିଥାଆନ୍ତି । ସେ କବିତାଟିଏ ଲେଖି 'ଉତ୍କଳ ସାହିତ୍ୟ'ର ପ୍ରବୀଣ ସମ୍ପାଦକ ବିଶ୍ୱନାଥ କରଙ୍କୁ ଦେଲେ । ତାହା 'ଉତ୍କଳ ସାହିତ୍ୟ'ରେ ପ୍ରକାଶ ପାଇଲା ।

ରେଭେନ୍‌ସା କଲିଜିଏଟ୍ ସ୍କୁଲରେ ସେତେବେଳକୁ କୌଣସି ପତ୍ରିକା ପ୍ରକାଶ ପାଉ ନ ଥିଲା । ଶିକ୍ଷକମାନଙ୍କୁ କହି ଅନନ୍ତ କଲିଜିଏଟ୍ ସ୍କୁଲର ମୁଖପତ୍ର 'ଛାତ୍ରବନ୍ଧୁ' ହାତଲେଖାଟିଏ ପ୍ରକାଶ କରାଇଲେ । ସେ 'ଛାତ୍ରବନ୍ଧୁ'ର ପ୍ରଥମ ଛାତ୍ର ସମ୍ପାଦକ ହେବାର ଗୌରବ ଅର୍ଜନ କଲେ ।

୧୯୨୯ ମସିହା ଶେଷ ଆଡ଼କୁ ମାଟ୍ରିକ୍ୟୁଲେସନ ଟେଷ୍ଟ ପରୀକ୍ଷା ସ୍କୁଲରେ ହେଲା । ଇଂରାଜୀ ପ୍ରବନ୍ଧ ପଡ଼ିଥିଲା 'ଛାତ୍ରମାନଙ୍କର ଦାୟିତ୍ୱ ଓ କର୍ତ୍ତବ୍ୟ' (Students duties and responsibilities) । ଅନନ୍ତଙ୍କର ସେତେବେଳକୁ ସ୍ୱାଧୀନତା ଆନ୍ଦୋଳନ ବିଷୟରେ ଧାରଣା ବଦ୍ଧମୂଳ ହୋଇସାରିଥାଏ । ସେ ଉତ୍ତର ଖାତାରେ ଯାହା ଲେଖିଲେ, ତାହା ସମସ୍ତଙ୍କୁ ସ୍ତବ୍ଧ କରିଦେଲା । ଇଂରାଜୀରେ

ସେ ଲେଖିଥିଲେ – "In the war of independence which is going on, we the students should participate."

ଇଂରାଜୀ ପ୍ରବନ୍ଧରେ ଅନନ୍ତଙ୍କର ଏହା ଥିଲା ନିର୍ଭୀକ ଉତ୍ତର । ପ୍ରତ୍ୟକ୍ଷଭାବେ ସରକାରଙ୍କୁ ଏଭଳି ଆକ୍ରମଣ କରିବା ଓ ଇଂରେଜ ସରକାରଙ୍କ ବିରୋଧରେ ହେଉଥିବା ଆନ୍ଦୋଳନରେ ଛାତ୍ରମାନଙ୍କୁ ଡାକରାଦେବା ଯେ ସେ ସମୟରେ କେତେ ଗର୍ହିତ କାର୍ଯ୍ୟ ଥିଲା, ତାହା ଏବେ ଅନୁମାନ କରିବା ସମ୍ଭବ ନୁହେଁ । ପ୍ରଧାନ ଶିକ୍ଷକ ପ୍ରାୟ ସିଦ୍ଧାନ୍ତ ନେଇଥିଲେ ଅନନ୍ତଙ୍କୁ ସ୍କୁଲରୁ ବହିଷ୍କାର କରିବାକୁ । ଏପରିକି ମାଟ୍ରିକ୍ୟୁଲେସନ ପରୀକ୍ଷାରେ ବସିବାକୁ ଅନୁମତି ନ ଦେବାକୁ ପ୍ରଧାନ ଶିକ୍ଷକ ଚାହିଁଥିଲେ । ମାତ୍ର ସେ ସମୟରେ ଟ୍ରେନିଙ୍ଗ ସ୍କୁଲ (ବର୍ତ୍ତମାନର ରାଧାନାଥ ଟ୍ରେନିଙ୍ଗ କଲେଜ)ର ଅଧ୍ୟକ୍ଷ ଥିଲେ ଆଣ୍ଡରସନ୍ ସାହେବ । ସେ କଲିଜିଏଟ୍ ସ୍କୁଲର ମୁଖ୍ୟ ତତ୍ତ୍ୱାବଧାରକ ମଧ୍ୟ ଥିଲେ । ତାଙ୍କର ଉଦାରତା ଯୋଗୁଁ ପ୍ରଧାନ ଶିକ୍ଷକ ଅନନ୍ତଙ୍କ ବିରୋଧରେ କୌଣସି କାର୍ଯ୍ୟାନୁଷ୍ଠାନ କରିପାରି ନ ଥିଲେ ।

୧୯୩୦ ମସିହାରେ ଅନନ୍ତ ଅଠର ବର୍ଷ ବୟସରେ ମାଟ୍ରିକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ।

ମାଟ୍ରିକ୍ୟୁଲେସନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲାପରେ ଅନନ୍ତ ରେଭେନ୍‌ସା କଲେଜରେ ପଢ଼ିବାପାଇଁ ସ୍ୱାଭାବିକଭାବେ ଆଗ୍ରହୀ ହେଲେ । ସେଥିପାଇଁ କଲେଜରେ ଦରଖାସ୍ତ ବି ପକାଇଲେ । ତାଙ୍କର ନାଁ ଲେଖା ସ୍ୱାଭାବିକଭାବେ ହୋଇଯିବା କଥା । ମାତ୍ର ରେଭେନ୍‌ସା କଲେଜର ଅଧ୍ୟକ୍ଷ ଥିଲେ ଏଚ୍.ଲାମ୍ବାର୍ଡ । ସେ କଡ଼ାମିଜାଜର ଶାସକ ଥିଲେ । କଲିଜିଏଟ ସ୍କୁଲରେ ପଢୁଥିଲାବେଳେ ଅନନ୍ତଙ୍କର ଲେଖାଲେଖି ତଥା ନେତୃତ୍ୱନେବା ସମ୍ପର୍କରେ ସେ ଯେଉଁ ରିପୋର୍ଟ ପାଇଥିଲେ, ତାହା ଭିତ୍ତିରେ ସେ କଲେଜରେ ନାମ ଲେଖାଇବାକୁ ଅନୁମତି ଦେଲେ ନାହିଁ । ଆଲୋଚକ ଅବନୀ ବରାଳଙ୍କ ଭାଷାରେ – 'ଜେଲଦଣ୍ଡ ନ ଭୋଗିଲେ ବି ଶିକ୍ଷାଦଣ୍ଡ ଭୋଗିଲେ' !

### ରାଜନୈତିକ ପରିସ୍ଥିତି

୧୯୩୦ ମସିହା ଜାନୁଆରୀ ମାସ ଆଡ଼କୁ ଭାରତରେ ସ୍ୱାଧୀନତା ଆନ୍ଦୋଳନ ଚାଲିଥାଏ । ହିମାଳୟ ଠାରୁ କୁମାରିକା ପର୍ଯ୍ୟନ୍ତ ସହସ୍ର ସହସ୍ର ସ୍ଥାନରେ ଲକ୍ଷ ଲକ୍ଷ ଜନତା ସ୍ୱରାଜ ହାସଲ କରିବାପାଇଁ ଶପଥ ନେଲେ । ସେହି ବର୍ଷ ମାର୍ଚ୍ଚ ମାସରେ ମହାତ୍ମା ଗାନ୍ଧୀ ଲବଣ ସତ୍ୟାଗ୍ରହପାଇଁ ଡାକରା ଦେଲେ । ନିଜେ ସେହି ମାର୍ଚ୍ଚ ମାସ ୧୨ ତାରିଖରେ ଐତିହାସିକ ଦାଣ୍ଡୀଯାତ୍ରା ଆରମ୍ଭ କଲେ । ଶହ ଶହ ଲବଣ ସତ୍ୟାଗ୍ରହୀ ବ୍ରିଟିଶ ପୋଲିସର ଲାଠି, ଗୁଳିକୁ ଖାତିର ନ କରି ସେଥିରେ ଯୋଗ ଦେଲେ ।

ଓଡ଼ିଶାରେ ବାଲେଶ୍ୱରର ଇଞ୍ଚୁଡ଼ିଠାରେ ଗୋପବନ୍ଧୁ ଚୌଧୁରୀଙ୍କ ନେତୃତ୍ୱରେ ଲବଣ ସତ୍ୟାଗ୍ରହ ହେବାର ସ୍ଥିର ହେଲା । ଲୁଣମରା ଆନ୍ଦୋଳନ ଘୋଷଣା କରିବାପାଇଁ କଟକର ସ୍ୱରାଜ ଆଶ୍ରମରେ ମାର୍ଚ୍ଚ ମାସ ୨୩ ତାରିଖରେ ଏକ ସଭା ହେଲା । ଅନନ୍ତ ସେହି ସଭାରେ ଯୋଗ ଦେଇଥିଲେ ।

୧୯୩୦ ମସିହା ଅପ୍ରେଲ ମାସ ୬ ତାରିଖରେ ଗାନ୍ଧିଜୀ ଦାଣ୍ଡୀରେ ଲୁଣମରା ଆନ୍ଦୋଳନ ଆରମ୍ଭ କଲେ । ସେହିଦିନ ମଧ୍ୟ ଓଡ଼ିଶାର ଇଞ୍ଚୁଡ଼ିଠାରେ ଗୋପବନ୍ଧୁ ଚୌଧୁରୀ ଲୁଣ ମାରିଲେ ।

ପୁରୀ ଜିଲ୍ଲାରେ ମଧ୍ୟ ଲବଣ ସତ୍ୟାଗ୍ରହ ଚାଲିଲା । ପଣ୍ଡିତ ନୀଳକଣ୍ଠ ଦାସ ସେହି ଆନ୍ଦୋଳନର ନେତୃତ୍ୱ ନେଇ ଗିରଫ ହେଲେ । ଅନନ୍ତ କଟକରେ ରେଭେନ୍‌ସା କଲେଜରେ ନାମ ଲେଖାଇ ନ ପାରି ଗ୍ରାମରେ ଥାଆନ୍ତି । ସେ ଗାଁ ଚଣାହଟ୍ଟାରୁ ପୁରୀ ଅଭିମୁଖେ ଯାତ୍ରା କଲେ । ପୁରୀ ରାମଚଣ୍ଡୀ ସାହିରେ ସତ୍ୟାଗ୍ରହ କେନ୍ଦ୍ର ଖୋଲାଯାଇଥାଏ । ସେହି ହେଲା ଅନନ୍ତଙ୍କ କର୍ମକ୍ଷେତ୍ର । ପୁରୀ ଜିଲ୍ଲାରେ ସତ୍ୟାଗ୍ରହୀମାନେ ଲୁଣ ମାରୁଥିବାବେଳେ ଅନନ୍ତଙ୍କ ରଚିତ ଗୀତ ବୋଲୁଥିଲେ –

''ଲୁଣ ନୁହେଁ ସେ ତ ରକତର ଛିଟା
ବକ୍‌ସି, ରାଜଗୁରୁ ମାଉଁସ ଚିକିଟା

× × ×

ଆମେ ଦରିଆରୁ ମାରିବୁ ଲୁଣ
ଚୋରା ବେପାରୀଙ୍କ ଭାଙ୍ଗିବ ଟାଣ ।''

ମଦ, ଗଞ୍ଜେଇ ଓ ଅଫିମ ଦୋକାନ ଆଗରେ ଓ ବିଦେଶୀ ଲୁଗାଦୋକାନମାନଙ୍କ ଆଗରେ ପିକେଟିଂ କରିବା କାର୍ଯ୍ୟକ୍ରମ ମଧ୍ୟ ଚାଲିଥାଏ । ଦିନବେଳେ ଦଳ ଦଳ ହୋଇ ଅଳ୍ପ ବୟସର ପିଲାଏ ପିକେଟିଂରେ ଭାଗ ନେଉଥାନ୍ତି । ଅନନ୍ତ ରାମଚଣ୍ଡୀ ସାହିରେ ଥିବା ଅଫିସରେ ରହିବା ସଙ୍ଗେ ସଙ୍ଗେ ମଦ ଗଞ୍ଜେଇ ଦୋକାନ, ବା ବିଦେଶୀ ଲୁଗାଦୋକାନ ଆଗରେ ହେଉଥିବା ପିକେଟିଂରେ ଯୋଗ ଦେଉଥିଲେ । ଧରା ବି ପଡୁଥିଲେ । କୋର୍ଟରେ ହାକିମଙ୍କ ସମ୍ମୁଖରେ ସତ୍ୟାଗ୍ରହୀମାନଙ୍କୁ ବେତମାଡ଼ ହେଉଥିଲା । ସେହି ଦାରୁଣ କଷ୍ଟ ପାଉଥିଲାବେଳେ ସତ୍ୟାଗ୍ରହୀମାନ ଅନନ୍ତଙ୍କ ରଚିତ ସଙ୍ଗୀତ ବୋଲୁଥାନ୍ତି । ଏହା ସେମାନଙ୍କୁ ଯେ ସାହସ ଦେଉଥାଏ, ଏହା କହିବା ବାହୁଲ୍ୟ ମାତ୍ର !

୧୯୩୨ ମସିହା ମାର୍ଚ୍ଚ ମାସ ୩୧ ତାରିଖରେ ଗାନ୍ଧୀ-ଇରଉଇନ ଚୁକ୍ତି ସ୍ୱାକ୍ଷରିତ ହେବା ଫଳରେ ସତ୍ୟାଗ୍ରହ ସ୍ଥଗିତ ରହିଲା । ବନ୍ଦୀମାନେ ଜେଲରୁ ମୁକ୍ତ ହେଲେ । ଗାନ୍ଧିଜୀ ଦ୍ୱିତୀୟ ଗୋଲଟେବୁଲ ବୈଠକରେ ଯୋଗ ଦେବାକୁ ବିଲାତ ଗଲେ । ସମସ୍ତ ଦମନମୂଳକ ଆଇନ ପ୍ରତ୍ୟାହୃତ ହେଲା । ଫଳରେ ଅନନ୍ତଙ୍କୁ ରେଭେନ୍‌ସା କଲେଜରେ ନାମ ଲେଖାଇବାକୁ ଅନୁମତି ମିଳିଲା ।

**କଲେଜ ଜୀବନ**

୧୯୩୧ ମସିହାରେ ଅନନ୍ତ ଓ ତାଙ୍କର ସାଥୀମାନେ, ଯଥା – ବୈଦ୍ୟନାଥ ରଥ, ବିଶ୍ୱନାଥ ପଶାୟତ, ଅଶୋକ ରାୟ ପ୍ରଭୃତି ରେଭେନ୍‌ସା କଲେଜରେ ନାମ ଲେଖାଇଲେ । ବୈଦ୍ୟନାଥ ରଥ ଆଇ. ଏସ୍‌ସି., ବିଶ୍ୱନାଥ ପଶାୟତ ଏକାଉଣ୍ଟାସି ଓ ଅଶୋକ ରାୟ କଳା ବିଭାଗରେ ଅଧ୍ୟୟନ କଲେ । ଅନନ୍ତ ମଧ୍ୟ କଳା ବିଭାଗରେ ନାମ ଲେଖାଇଲେ । ସେମାନଙ୍କର ଅନ୍ୟ ଜଣେ ବନ୍ଧୁ ହେଲେ ପରମାନନ୍ଦ ମହାନ୍ତି । ଏମାନେ ସବୁ ମିଶି ଗୋଟିଏ ବନ୍ଧୁଗୋଷ୍ଠୀ ଗଢ଼ିଲେ । ସେମାନେ କଂଗ୍ରେସୀ ଛାତ୍ରଦଳ ଭାବରେ ପରିଚିତ ହେଲେ ।

ବନ୍ଧୁମାନଙ୍କ ମଧ୍ୟରେ ରାଜନୈତିକ ମତବାଦ ଓ କାର୍ଯ୍ୟକଳାପ ଘେନି ସବୁବେଳେ ଆଲୋଚନା ଚାଲିଥାଏ । ଦେଶରେ ମଧ୍ୟ ଯୁଗାନ୍ତକାରୀ ଘଟଣାମାନ ଘଟିଯାଉଥିଲା । ଲବଣ ସତ୍ୟାଗ୍ରହ, ତା' ପରେ ପରେ ଗୋଲଟେବୁଲ ବୈଠକ, ଗାନ୍ଧୀ-ଇରଉଇନ ଚୁକ୍ତି ପ୍ରଭୃତି ଘଟଣା ସେମାନଙ୍କ ମନରେ ଆଲୋଡ଼ନ ସୃଷ୍ଟି କରୁଥିଲା । ପୁଣି ବଙ୍ଗଳାର ସଂଗ୍ରାମୀମାନଙ୍କର କାର୍ଯ୍ୟକଳାପ ତାଙ୍କ କାନରେ ପଡୁଥିଲା । ବଙ୍ଗଳାରୁ ପ୍ରକାଶ ପାଉଥିବା 'ଯୁଗାନ୍ତର' ପତ୍ରିକା ସନ୍ତ୍ରାସବାଦୀ ଦଳର କାର୍ଯ୍ୟପନ୍ଥା ଅବଗତ କରାଉଥାଏ । ଅନନ୍ତଙ୍କର ମନ ମଧ୍ୟ ସେ ଆଡ଼କୁ ଢଳିଲା । 'ଏଭଳି କିଛି ଚମକପ୍ରଦ କାର୍ଯ୍ୟ କରିବାକୁ ହେବ – ଯାହାକି ଜାତିର ଚୈତନ୍ୟକୁ ଚହଲାଇ ଦେବ – ସେହି ଭାବଧାରା ତାଙ୍କ ମନରେ ଦେଖାଦେଲା ।

କଲେଜରେ ଛାତ୍ର ଥିଲାବେଳେ ଅନନ୍ତ ନିଜ ଗାଁ ଚଣାହାଟରେ ୧୯୩୧ ମସିହା ଶେଷ ଭାଗରେ କଂଗ୍ରେସ ସମ୍ମିଳନୀର ଆୟୋଜନ କଲେ । ସେ ସମ୍ମିଳନୀରେ ପୂଜ୍ୟା ରମାଦେବୀ, ସରଳାଦେବୀ, ଭାଗୀରଥି ମହାପାତ୍ର, ରାଜକୃଷ୍ଣ ବୋଷ ପ୍ରଭୃତି ଯୋଗ ଦେଇଥିଲେ । ପ୍ରତିନିଧିମାନଙ୍କର ରହିବା, ଖାଦ୍ୟପେୟଠାରୁ ଆରମ୍ଭ କରି ସେମାନଙ୍କୁ ସ୍ୱାଗତ ଜଣାଇବା ପ୍ରଭୃତି ଦାୟିତ୍ୱ ଅନନ୍ତ ଗ୍ରହଣ କରିଥିଲେ । ଅନନ୍ତ ତାଙ୍କ ଭାଷଣରେ ସାମ୍ରାଜ୍ୟବାଦୀ ବ୍ରିଟିଶ ପୋଲିସର ଅତ୍ୟାଚାର, ଜେଲ୍, ଲାଠି, ଗୁଳିଚାଳନା ଇତ୍ୟାଦିର ବର୍ଣ୍ଣନା କରିଥିଲେ ।

ଅନନ୍ତ ମଧ୍ୟ କଲେଜରେ ପାଠପଢ଼ିବା ସାଙ୍ଗକୁ ଜର୍ଜ ବର୍ଣ୍ଣାଡ୍ ଶ, ହାରଲଡ୍ ଲାସ୍କି, ସିଂକେୟାର ଲିଓ୍ୱସ ଓ ଏଚ୍. ଜି. ୱେଲସଙ୍କ ଲିଖିତ ପୁସ୍ତକମାନ ଅଧ୍ୟୟନ କଲେ । ସାମ୍ୟବାଦ ଉପରେ ଲେଖାମାନ ପଢ଼ିଲେ । ଫଳରେ ଗାନ୍ଧିଜୀଙ୍କ ରାଜନୈତିକ ମତବାଦ, ଆଦର୍ଶ ପ୍ରଭୃତି ଅନନ୍ତଙ୍କ ମନରେ ସଂଶୟ ସୃଷ୍ଟି କଲା ।

ଏହି ସମୟରେ ଅନନ୍ତ ବୈଦ୍ୟନାଥ, ଅଶୋକ, ବିଶ୍ୱନାଥ ପ୍ରଭୃତିଙ୍କର ଭଗବତୀଚରଣ ପାଣିଗ୍ରାହୀଙ୍କ ସଙ୍ଗେ ବନ୍ଧୁତା ହେଲା । ସେହି ସମୟରେ ବଙ୍ଗଳାରୁ

ପୁରୀକୁ ଆସୁଥିବା ସଂଗ୍ରାମୀମାନଙ୍କ ସଂସ୍ପର୍ଶରେ ସେମାନେ ମଧ ଆସିଲେ । କ୍ରମେ ଅନନ୍ତ ଓ ତାଙ୍କ ବନ୍ଧୁମାନେ ଗୋଟିଏ ଗୋଷ୍ଠୀ ଗଠନ କଲେ । କିଛି ଚମକ୍‌ପ୍ରଦ କାମ କରିବାକୁ ସେମାନେ ଅସ୍ତ୍ରଶସ୍ତ୍ର ବିଶେଷତଃ ପିସ୍ତଲ ସଂଗ୍ରହ କାର୍ଯ୍ୟରେ ଲାଗିପଡ଼ିଲେ । ଲୋକମାନଙ୍କୁ ବିପ୍ଳବ ଆଡ଼କୁ ଆକର୍ଷିତ କରିବାପାଇଁ ଲିଥୋ କରାଯାଇ ପ୍ରାଚୀର ପତ୍ରମାନ ବଣ୍ଟା ହେଲା । କହିବା ବାହୁଲ୍ୟ ଯେ ସେହି ପ୍ରାଚୀରପତ୍ରରେ ମୁଖ୍ୟତଃ ଲେଖୁଥିଲେ ଭଗବତୀଚରଣ ଓ ଅନନ୍ତ ।

କଂଗ୍ରେସ ଯୁବ ମହଲରେ ବାମପନ୍ଥୀ ବିଚାରଧାରାର ପୁରୋଭାଗରେ ଥିଲେ ନବକୃଷ୍ଣ ଚୌଧୁରୀ ଓ ତାଙ୍କ ସହଧର୍ମିଣୀ ମାଳତୀ ଚୌଧୁରୀ ।

ଅନନ୍ତ ଅବଶ୍ୟ ସମାଜବାଦ, ମାର୍କ୍‌ସବାଦ, ରୁଷ ବିପ୍ଳବ ପ୍ରଭୃତି ବିଷୟ ସମ୍ବାଦପତ୍ରମାନଙ୍କରୁ ବା ବିଭିନ୍ନ ନେତାମାନଙ୍କର ଭାଷଣରୁ ଶୁଣୁଥାନ୍ତି । ମାତ୍ର ସେପର୍ଯ୍ୟନ୍ତ ମୂଳ ଲେଖାଗୁଡ଼ିକ ସହିତ ପରିଚିତ ହୋଇ ନ ଥିଲେ । ଏଥିପାଇଁ ଶ୍ରୀରାମଚନ୍ଦ୍ର ଭବନର ସାମନା ପିଣ୍ଡାରେ ଗୋଟିଏ ପାଠାଗାର ଖୋଲାଗଲା । ପ୍ରତ୍ୟହ ଅପରାହ୍ନ ଚାରିଟାବେଳେ ଅଶୋକ ପ୍ରଭୃତି ଆସି ପତ୍ରପତ୍ରିକା ପଢ଼ିଲେ । ସେସବୁ ପତ୍ରପତ୍ରିକା ଭୁବନାନନ୍ଦ ଦାସଙ୍କ ଘରୁ ଅଣାଯାଉଥିଲା । ଦିନେ ବଙ୍ଗଳାରେ ଅନୁବାଦିତ କମ୍ୟୁନିଷ୍ଟ ମ୍ୟାନିଫ୍ୟାଷ୍ଟୋ ତାଙ୍କ ହାତରେ ପଡ଼ିଲା । ଅନ୍ୟ କମ୍ୟୁନିଷ୍ଟ ଦଲିଲ, ଯଥା – 'ମସ୍କୋ ଡାଏଲଗ', ବୁଖାରିନ୍‌ଙ୍କ 'ଐତିହାସିକ ବସ୍ତୁବାଦ', 'ଷ୍ଟାଲିନଙ୍କ ରଚନାବଳୀ' ଆଉ 'ମିରଟ ଷଡ଼୍‌ଯନ୍ତ୍ର ମାମଲା' ପ୍ରଭୃତିକୁ ଭଗବତୀ ଓ ଅନ୍ୟ ବନ୍ଧୁମାନେ ପଢ଼ିଲେ । କମ୍ୟୁନିଷ୍ଟ ଭାବାଦର୍ଶ ଓ କର୍ମପନ୍ଥା ବିଷୟରେ ସେମାନଙ୍କ ମଧ୍ୟରେ ଆଲୋଚନା ହେଉଥିଲା ।

### ପ୍ରଥମ ଗିରଫ

ଏହି ସମୟରେ ଦିଲ୍ଲୀରେ ଏକ ବେଆଇନ କଂଗ୍ରେସ ଅଧିବେଶନର ଡାକରା ଆସିଲା । ଭାଗୀରଥି ମହାପାତ୍ରଙ୍କ ନେତୃତ୍ୱରେ ଅନନ୍ତ ଓ ଆଉ କେତେ ଜଣ ବନ୍ଧୁ ଦିଲ୍ଲୀ ଗଲେ । ହାଓ୍ୱାଡ଼ା ଷ୍ଟେସନରେ ଅନନ୍ତଙ୍କୁ ଗିରଫ କରି ଆଲିପୁର ଜେଲକୁ ପଠାଇ ଦିଆଗଲା । କେତେ ଦିନ ପରେ ଅବଶ୍ୟ ତାଙ୍କୁ ଛାଡ଼ି ଦିଆଗଲା । ସେ ଦିଲ୍ଲୀ ନ ଯାଇ କଲିକତାରୁ ଫେରିଆସିଲେ । ସେତେବେଳକୁ ତାଙ୍କୁ ରେଭେନ୍‌ସା କଲେଜରୁ ମଧ ବହିଷ୍କାର କରାଯାଇଥାଏ । ଅନନ୍ତ ଦୁଇ ଜଣ ପ୍ରବୀଣ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଓ ପ୍ରାଣକୃଷ୍ଣ ପରିଜାଙ୍କୁ ଭେଟିଲେ । ସେମାନଙ୍କ ସୁପାରିସ ଫଳରେ ପୁଣିଥରେ ରେଭେନ୍‌ସା କଲେଜରେ ଛାତ୍ର ହେବାର ସୁଯୋଗ ପାଇଲେ ।

୧୯୩୨ ମସିହାରେ କାଶୀ ବିଦ୍ୟାପୀଠର ଅଧ୍ୟକ୍ଷ ଆଚାର୍ଯ୍ୟ ନରେନ୍ଦ୍ରଦେବ ଶ୍ୱାସରୋଗରେ ପୀଡ଼ିତ ହୋଇ ଗ୍ରୀଷ୍ମ ଋତୁରେ ପୁରୀ ଆସିଥିଲେ । ପୁରୀରେ ଅବସ୍ଥାନ

କରୁଥିବାବେଳେ ଅନନ୍ତ, ଭଗବତୀ, ବୈଦ୍ୟନାଥ, ଗୋକୁଳି ପ୍ରଭୃତି ତାଙ୍କଠାରୁ ସମାଜବାଦ ସମ୍ପର୍କରେ ଶିକ୍ଷାଲାଭ କଲେ । ସାମସମୟିକ ପୃଥିବୀର ରାଜନୈତିକ, ଅର୍ଥନୈତିକ ଘଟଣାବଳୀର ବିଶ୍ଳେଷଣ ଓ ତାଙ୍କର ନୂତନ ଦିଗ୍‌ଦର୍ଶନରେ ଅନନ୍ତ ଚମକୃତ ହେଲେ ବୋଲି ସ୍ୱୀକାର କରିଛନ୍ତି ।

୧୯୩୪ ମସିହାରେ ଓଡ଼ିଶାରେ କଂଗ୍ରେସ ସମାଜବାଦୀ ଦଳ ଗଠନପାଇଁ କଟକରେ ଏକ ସମ୍ମିଳନୀ ହେଲା । ସେଠାରେ ସମାଜବାଦୀ ବା ସାମ୍ୟବାଦୀ କର୍ମ ସଂଘ ଗଢ଼ାଗଲା । ବସ୍ତୁତଃ ଏହାହିଁ ଥିଲା କଂଗ୍ରେସ ସୋସାଲିଷ୍ଟ ପାର୍ଟିର ଆରମ୍ଭ । ସେହିବର୍ଷ ମାର୍ଚ୍ଚ ମାସରେ ପ୍ରଥମ ସମାଜବାଦୀ ଆଦର୍ଶଭିତ୍ତିକ ପତ୍ରିକା 'ସାରଥି' ପ୍ରକାଶ ପାଇଲା । ଅନନ୍ତ 'ସାରଥି'ର ମୁଖ୍ୟ କାରପଟଦାର ହେଲେ । ସେ ପୁସ୍ତକ ପରିଚୟ, ବହିପତ୍ର ସମ୍ପର୍କରେ ଆଲୋଚନାମାନ ଲେଖୁଥିଲେ । ୧୯୩୩ ମସିହା ଜୁନ୍ ମାସରେ ପଣ୍ଡିତ ନୀଳକଣ୍ଠ ଦାସଙ୍କ ସମ୍ପାଦକତାରେ 'ନବଭାରତ' ପ୍ରକାଶ ପାଇଲା । ଲକ୍ଷ୍ମୀନାରାୟଣ ସାହୁ ଓ ପରେ ବାଳକୃଷ୍ଣ କରଙ୍କ ସମ୍ପାଦନାରେ 'ସହକାର' ମଧ୍ୟ ପ୍ରକାଶ ପାଇଲା । ସେଥିରେ ନିଜ ନାମରେ ଓ ଛଦ୍ମନାମରେ ଅନନ୍ତଙ୍କର ବହୁ କବିତା, ଲେଖା, ଆଲୋଚନାମାନ ପ୍ରକାଶ ପାଇଲା ।

## ଛାତ୍ରସଂଘ ଗଠନ

୧୯୩୫ ମସିହାରେ ଅନନ୍ତ ରେଭେନ୍‌ସା କଲେଜରୁ ବି. ଏ. ପାସ୍ କଲେ । ଛାତ୍ରମାନଙ୍କ ମଧ୍ୟରେ ସଙ୍ଗଠନ ଦୃଢ଼ କରିବାପାଇଁ ସେ ଆଇନ କଲେଜରେ ନାମ ଲେଖାଇଲେ ।

ଓଡ଼ିଶାରେ ସର୍ବଭାରତୀୟ ଛାତ୍ର ଅନୁଷ୍ଠାନର ଏକ ଶାଖା ଗଠନ କରିବାପାଇଁ ଛାତ୍ରମାନଙ୍କ ମଧ୍ୟରେ ଉଦ୍ୟମ ହେଲା । ଏହାର ଉଦ୍ୟୋକ୍ତା ଥିଲେ ଅନନ୍ତ ପଟ୍ଟନାୟକ, ବିଶ୍ୱନାଥ ପଶାଏତ ଓ ବୈଦ୍ୟନାଥ ରଥ ପ୍ରଭୃତି ଛାତ୍ରନେତା । କ୍ରମେ ଛାତ୍ର ସଂଘର ସଭ୍ୟ ଓ ସମର୍ଥକଙ୍କ ସଂଖ୍ୟା ବିଶେଷ ଭାବରେ ବୃଦ୍ଧି ପାଇବାକୁ ଲାଗିଲା । ଛାତ୍ରମାନଙ୍କୁ ନେତୃତ୍ୱ ଦେବାକୁ ବହୁ ନେତା ମଧ୍ୟ ବାହାରିଲେ । ଏହି ଛାତ୍ରସଂଘ ଜନ୍ମ ନେଇଥିଲା କଟକ ଟାଉନ୍‌ହଲ୍ ପଡ଼ିଆରେ । ତାହା କ୍ରମେ ୧୯୩୭ ମସିହାରେ ଭାରତର ମୂଳ ସଙ୍ଗଠନର ଶାଖାରୂପେ ପରିଚିତ ହେଲା ।

## ନବଯୁଗ ସାହିତ୍ୟ ସଂସଦ ଗଠନ

ଏହାପରେ ଭଗବତୀ, ଅନନ୍ତ ପ୍ରଭୃତି କଂଗ୍ରେସ ସମାଜବାଦୀ ଦଳପାଇଁ 'ନବଯୁଗ ସାହିତ୍ୟ ସଂସଦ' ଗଢ଼ିବା ଉଦ୍ୟମ କଲେ । ଏହି ନବଯୁଗ ସାହିତ୍ୟ ସଂସଦର ପ୍ରଥମ ଅଧିବେଶନ କଟକର ରାମଚନ୍ଦ୍ର ଭବନରେ ୬ ଦିନ ପର୍ଯ୍ୟନ୍ତ ଚାଲିଲା । ଏହାର ଉଦ୍‌ଘାଟନୀ ଅଧିବେଶନରେ ସଭାପତି ଆସନ ଅଳଙ୍କୃତ

କରିଥିଲେ ବିଶିଷ୍ଟ ସାହିତ୍ୟିକ କାଳିନ୍ଦୀଚରଣ ପାଣିଗ୍ରାହୀ । ସେହି ଉତ୍ସବ ଉପଲକ୍ଷେ ଅନନ୍ତ ରଚନା କରିଥିଲେ ପ୍ରାରମ୍ଭିକ ସଙ୍ଗୀତ । ଏହା ଥିଲା ଏହିପରି –

''ନବୀନ ଯୁଗର ତରୁଣ ଜାଗରେ
ଜାଗ ବନ୍ଧନ ହରା
ବକ୍ଷ ଶୋଣିତେ ଲକ୍ଷ ଜୀବନେ
ଖେଳାଅ ଆଲୋକ ଧାରା ।
ଛିନ୍ନ କରରେ ବନ୍ଧନ ରାଜି
କ୍ରନ୍ଦନ ହେଉ ଶେଷ
ଲୁପ୍ତ ହେଉରେ ଜାତି, ଉପଜାତି, ଖଣ୍ଡିତ ଶତଦେଶ
ମହାମାନବର ଶଙ୍ଖ ଶବଦେ ଶମୁରେ ଦୁଃଖ ଜ୍ୱାଳା
ଜାଗ ବନ୍ଧନ ହରା ।''

ସମସ୍ତ ବାଧା ବନ୍ଧନ, ପ୍ରତିବନ୍ଧନକୁ ଦୃପ୍ତ ପଦାଘାତରେ ଚୂର୍ଣ୍ଣବିଚୂର୍ଣ୍ଣ କରି ଜାତି, ଉପଜାତିର ବିଭ୍ରାନ୍ତି ଦୂର କରି, ଏକ ହୋଇ ମଣିଷର ରକ୍ତରେ ରଞ୍ଜିତ, ଆଲୋକର ଧାରା ଧରି ଅଗ୍ରସର ହେବାପାଇଁ ଏହା ଥିଲା ଏକ ଆହ୍ୱାନ ।

ଏହି କବିତାଟି ସେତେବେଳକାର ଓଡ଼ିଆ ସାହିତ୍ୟର କେବଳ ଏକ ମାଇଲଖୁଣ୍ଟ ନ ଥିଲା, ପରବର୍ତ୍ତୀ ପିଢ଼ିର ଅଗଣିତ ତରୁଣଙ୍କପାଇଁ ଥିଲା ମୁକ୍ତିସଙ୍ଗୀତ...!

ନବଯୁଗ ସାହିତ୍ୟ ସଂସଦର ଅଧିବେଶନରେ ସାହିତ୍ୟ, ଇତିହାସ, ବିଜ୍ଞାନ, ଦର୍ଶନ, ରାଜନୀତି, ସମାଜବିଜ୍ଞାନ ଆଦି ସମାଜର ବିଭିନ୍ନ ବିଭାଗରେ ଦେଶବ୍ୟାପୀ ଦେଖା ଦେଉଥିବା ନୂତନ ଭାବତରଙ୍ଗ ସ୍ପଷ୍ଟତର ଭାବରେ ଆଲୋଚିତ ହୋଇଥିଲା । ସମ୍ମିଳନୀରେ ଅଂଶଗ୍ରହଣ କରିଥିବା ସମସ୍ତ ଆଲୋଚକ ବୈଜ୍ଞାନିକ ସମାଜବାଦ ଇସ୍ତାହାର ଘୋଷଣା କରିଥିଲେ ।

ସାହିତ୍ୟର ଆଦର୍ଶ ସମ୍ପର୍କରେ ରାମପ୍ରସାଦ ସିଂହ ଲେଖିଥିଲେ – ''ମାନବକୁ ତାହାର ବର୍ତ୍ତମାନ ଅବସ୍ଥାରୁ ମୁକ୍ତି ପାଇବାକୁ ହେଲେ ଏକ ସ୍ୱାଧୀନ ସାହିତ୍ୟ ସର୍ବାଦୌ ଆବଶ୍ୟକ । ଏ ସାହିତ୍ୟର ଧର୍ମ ସହିତ କୌଣସି ସମ୍ବନ୍ଧ ନ ଥିବ । ମନୁଷ୍ୟ ଭାବରେ ମନୁଷ୍ୟର ସମସ୍ୟାକୁ ଧରି ଏହା ଅଗ୍ରସର ହେବ । ଏହିପରି ଏକ ସାହିତ୍ୟ ରୁଷିଆରେ ବର୍ତ୍ତମାନ ସୃଷ୍ଟି ହୋଇଛି । ଓଡ଼ିଆ ସାହିତ୍ୟକୁ ସେହି ଆଦର୍ଶ ଧରିବାକୁ ହେବ ।''

ନବଯୁଗ ସାହିତ୍ୟ ସଂସଦର ଛଅ ଦିନ ବ୍ୟାପୀ ଉତ୍ସବରେ ଭଗବତୀ, ଗୁରୁଚରଣ, ମଦନ ଦାସ, କେଦାରନାଥ ମହାପାତ୍ର ପ୍ରଭୃତି ବହୁ ବରେଣ୍ୟ ବ୍ୟକ୍ତି

ଆଲୋଚନାରେ ଭାଗ ନେଇଥିଲେ । କହିବା ବାହୁଲ୍ୟ ଯେ ଅନନ୍ତ, ବିଶ୍ୱନାଥ ଓ ବୈଦ୍ୟନାଥ ଏହାର ନିୟୋଜକ ଥିଲେ ।

**'ଆଧୁନିକ' ପତ୍ରିକା**

'ନବଯୁଗ ସାହିତ୍ୟ ସଂସଦ' ପ୍ରତିଷ୍ଠା ସଙ୍ଗେ ସଙ୍ଗେ ଅନନ୍ତ ଓ ତାଙ୍କ ସାଥୀମାନେ ନିଜସ୍ୱ ଏକ ସାହିତ୍ୟ ପତ୍ରିକା ପ୍ରକାଶପାଇଁ ସ୍ଥିର କଲେ । ଭଗବତୀ ଚରଣ ହେଲେ ଏହାର ସମ୍ପାଦକ ଓ ଅନନ୍ତ ହେଲେ ପରିଚାଳନା ସମ୍ପାଦକ । ପତ୍ରିକା ନାମ 'ଆଧୁନିକ' ରଖିବାର ନିଷ୍ପତ୍ତି ହେଲା । ପ୍ରକାଶକ ହେଲେ ଉଦୟନାଥ ପଟ୍ଟନାୟକ ।

୧୯୩୭ ମସିହା ମେ ପହିଲା ଅର୍ଥାତ୍ ମଇ ଦିବସରେ 'ଆଧୁନିକ' ପ୍ରକାଶ ପାଇଲା । ଲେଖା ସଂଗ୍ରହ କରିବା, ପ୍ରେସ୍‌ରେ ଛପାକାର୍ଯ୍ୟ, ପ୍ରୁଫ ସଂଶୋଧନ, ଓ ପ୍ରସାର ପ୍ରଭୃତିର ଦାୟିତ୍ୱ ଗ୍ରହଣ କଲେ ଅନନ୍ତ । ସେହି ପତ୍ରିକାର ବିଜ୍ଞାପନ 'ନବଭାରତ'ର ତୃତୀୟ ବର୍ଷ ଷଷ୍ଠ ଓ ସପ୍ତମ ସଂଖ୍ୟାରେ ପ୍ରକାଶ ପାଇଥିଲା । ତାହା ଥିଲା ଏହିପରି –

''ଓଡ଼ିଶାର ପତ୍ରିକା ରାଜ୍ୟରେ ଯୁଗାନ୍ତର
ନବଯୁଗର ବାର୍ତ୍ତା ବହନ କରି ଆସୁଛି 'ଆଧୁନିକ' ।''

ସଂଚାର କରିବ – 'ଆଧୁନିକ' ହୃଦୟରେ ଅଭିନବ ଜାଗରଣ
ଧ୍ୱଂସ କରିବ – ଆମ ସାହିତ୍ୟର ଘୃଣ୍ୟ ଆବର୍ଜନା
ସୃଷ୍ଟି କରିବ – ଉଚ୍ଚ ଚିନ୍ତାର ଯୁଗୋପଯୋଗୀ ଲେଖା ସନ୍ଦର୍ଭ
ପ୍ରଚାର ହେବ – ଦେଶବିଦେଶର ସଜୀବ ଚିତ୍ର
ଶୁଣାଇବ – ବାସ୍ତବ କଥା କବିତାର ମଧୁର ମଦିର ମଳୟ ଶିଞ୍ଜନୀ ।''

ପ୍ରଥମ ସଂଖ୍ୟାରେ 'ନିଜ କଥା'ରେ ଅନନ୍ତ ଲେଖିଥିଲେ –

'ଆଧୁନିକ' କେବଳ ସାହିତ୍ୟପାଇଁ ସାହିତ୍ୟ ହେବାକୁ ଯାଉ ନାହିଁ । ଓଡ଼ିଆରେ ଏହି ପୃଥିବୀବ୍ୟାପୀ ଆନ୍ଦୋଳନ ବିଷୟରେ ଚେତନା ଆଣିବା ଏହାର ଲକ୍ଷ୍ୟ .... ।''

ପୁଣି ସେ ଲେଖିଥିଲେ – 'ଆଧୁନିକ' ଏପରି ଲେଖାକୁ ପୋଷକତା କରିବ, ଯାହା ମାନବର ମନକୁ କର୍ମତତ୍ପର ହେବାପାଇଁ ଚଞ୍ଚଳ କରିବ । ପ୍ରବନ୍ଧ ହେଉ, କବିତା ହେଉ, ଗଳ୍ପ, ଉପନ୍ୟାସ, ନାଟକ ହେଉ – ଯାହା ମାନବର କର୍ମକ୍ଷେତ୍ରକୁ ପ୍ରଭାବିତ କରିବ, ଯାହା କର୍ମର ଉଦ୍ଦୀପନା ମାନବ ମନରେ ଆଣିଦେବ – ସେହିପରି ଲେଖା ବସ୍ତୁତଃ 'ଆଧୁନିକ'ରେ ପ୍ରକାଶ ପାଇବ ।

ଆରାମ ଚୌକିରେ ବସି ପଢ଼ିବାଯୋଗ୍ୟ ସୂକ୍ଷ୍ମ ସୌଖୀନ ସାହିତ୍ୟପାଇଁ 'ଆଧୁନିକ'ରେ ସ୍ଥାନ ପ୍ରଶସ୍ତ ନୁହେଁ ।''

ଆଧୁନିକର ପ୍ରଥମ ସଂଖ୍ୟାରୁ ଶେଷ ସଂଖ୍ୟା ପର୍ଯ୍ୟନ୍ତ ପ୍ରତ୍ୟେକରେ ଅନନ୍ତ ନିଜ ନାମରେ ଓ 'ଅତନୁ', 'ବୋଧିସତ୍ତ୍ୱ' 'ପ୍ରାୟଦ୍‌ଶଶୀ', 'କୁମାରୀ ଯଶୋଧାରା' ଆଦି ଛଦ୍ମ ନାମରେ ଗଳ୍ପ, ପ୍ରବନ୍ଧ, ଅନୁବାଦ ଗଳ୍ପ, କବିତା ପ୍ରଭୃତି ଲେଖିଛନ୍ତି । ପୁସ୍ତକମାନଙ୍କର ସମୀକ୍ଷା କରିଛନ୍ତି । କ୍ରମେ ରାଜନୈତିକ ଘଟଣାବଳୀର ବିଶ୍ଳେଷଣ କରିଛନ୍ତି ।

'ଆଧୁନିକ ପତ୍ରିକା'ର ୧୯୩୬ ମସିହା ସେପ୍ଟେମ୍ବର ମାସରେ ପ୍ରକାଶିତ ପଞ୍ଚମ ସଂଖ୍ୟାରେ ଅନନ୍ତ 'ସାହିତ୍ୟରେ ଶ୍ରେଣୀ ପରଦା' ଶୀର୍ଷକ ଏକ ନିବନ୍ଧ ଲେଖିଥିଲେ । ସେଥିରେ ଶ୍ରେଣୀ ସଂଗ୍ରାମକୁ ତ୍ୱରାନ୍ୱିତ କରିବାରେ ସାହିତ୍ୟର ମୌଳିକ କର୍ତ୍ତବ୍ୟ ଅଛି ବୋଲି କହିଥିଲେ ।

ସାହିତ୍ୟରେ ଶ୍ରେଣୀବିଭାଗ ଥିବା ଉଲ୍ଲେଖ କରି କହିଛନ୍ତି ଯେ ପୃଥିବୀରେ ଆଜି ସାହିତ୍ୟରେ ଦୁଇଟି ଲେଖକ ଶ୍ରେଣୀର ଆବିର୍ଭାବ ହୋଇଛି । ଗୋଟିଏ ଶ୍ରେଣୀ ହେଲା ପ୍ରତିକ୍ରିୟା ସଂସ୍ଥା ଓ ପୁଞ୍ଜିବାଦର ସପକ୍ଷ ଗୋଷ୍ଠୀ, ଅନ୍ୟଟି ହେଲା କୋଟି କୋଟି ନିର୍ଯାତିତଙ୍କ ମୁକ୍ତି ସଂଗ୍ରାମକୁ ସମର୍ଥନ କରୁଥିବା ଗୋଷ୍ଠୀ । ଏହି ଶ୍ରେଣୀ ସଂଗ୍ରାମର ଶେଷରେ ଧନତାନ୍ତ୍ରିକ ସାହିତ୍ୟର ଲୋପ ହେବ ଓ ଅବିମିଶ୍ର ସାହିତ୍ୟ ସୌନ୍ଦର୍ଯ୍ୟର ସୃଷ୍ଟି ହେବ ବୋଲି ସେ ଘୋଷଣା କରିଛନ୍ତି ।

'ଆଧୁନିକ'ର ଜୀବନକାଳ ଥିଲା ଖୁବ୍ ସ୍ୱଳ୍ପ । ମାତ୍ର ଛଅଟି ମାସ । ମାତ୍ର ସେହି ସ୍ୱଳ୍ପ ସମୟ ମଧ୍ୟରେ 'ଆଧୁନିକ' ଓଡ଼ିଆ ସାହିତ୍ୟିକ ଓ ସମାଜରେ ଯେଉଁ ବୈପ୍ଳବିକ ପରିବର୍ତ୍ତନ ଆଣିଲା, ତାହା ଥିଲା ବାସ୍ତବିକ ଚମକପ୍ରଦ । ତାହା ଯେ ଓଡ଼ିଶାର ଅଧିକାଂଶ ସାହିତ୍ୟିକମାନଙ୍କୁ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ପ୍ରଭାବିତ କରିଛି, ଏହା ପ୍ରାୟ ସମସ୍ତେ ସ୍ୱୀକାର କରନ୍ତି ।

କବି ଅନନ୍ତ ପଟ୍ଟନାୟକଙ୍କ ଜୀବନୀ ରଚୟିତା ବିଶିଷ୍ଟ ସାହିତ୍ୟିକ ଅଧ୍ୟାପକ ଅବନୀ ବରାଳଙ୍କ ଭାଷାରେ – ''ଭାରତବର୍ଷରେ ଅନ୍ୟ କୌଣସି ରାଜ୍ୟରେ କୌଣସି ସାହିତ୍ୟ ପତ୍ରିକା ସ୍ୱଳ୍ପ ଜୀବନ କାଳ ଭିତରେ ପରିବର୍ତ୍ତନ ଆନୟନ ଓ ପ୍ରସିଦ୍ଧିର ଶୀର୍ଷକୁ ଉଠିଥିବାର ଦେଖାଯାଏ ନାହିଁ ।''

ଏ ସଂକ୍ରାନ୍ତରେ ଓଡ଼ିଶାର ବିଶିଷ୍ଟ ଔପନ୍ୟାସିକ ଗୋପୀନାଥ ମହାନ୍ତିଙ୍କ ମନ୍ତବ୍ୟ ଉଲ୍ଲେଖଯୋଗ୍ୟ – ''ସେତେବେଳେ ଲେଖକମାନଙ୍କ ଭିତରେ, ସେମାନେ ଦୁଇ ଭାଗରେ ବିଭକ୍ତ । ଗୋଟିଏ ସେଇ ପୁରୁଣାପନ୍ଥୀ ଯେଉଁମାନେ ଆକାଶ ସୌନ୍ଦର୍ଯ୍ୟ ଦେଖୁଛନ୍ତି, ଫୁଲର ବାସ୍ନା ଶୁଙ୍ଘୁଛନ୍ତି, ଚାନ୍ଦିନୀ ରାତି ଉପଭୋଗ କରୁଛନ୍ତି ଇତ୍ୟାଦି ... ଇତ୍ୟାଦି ... ଆଉ ଗୋଟିଏ ପାଖରେ କବି ଅନନ୍ତ, କାଳକ୍ରମରେ ସଚି ରାଉତରାୟ ଆଉ କବି ମନମୋହନ ମିଶ୍ର । ଇଏ ଗୋଟାଏ ନୂଆ ଚେତନା ।

ଓଡ଼ିଆ ସାହିତ୍ୟରେ 'ଆଧୁନିକ' ଯୁଗ ଯେଉଁ ନୂଆ ବାଣୀ ଦେଲା, ଯେଉଁ ନୂଆ ସ୍ପଷ୍ଟ ନିର୍ଦ୍ଦେଶ ଦେଲା, ଆଉ ତା' ଉତ୍ତାରୁ ସମଗ୍ର ଓଡ଼ିଆ ସାହିତ୍ୟ ବଦଳିଗଲା । ସମ୍ପୂର୍ଣ୍ଣ ନୂଆ ଧାରା ଆସିଲା । ମତେ ଲାଗୁ ନାହିଁ ଯେ ଓଡ଼ିଆ ସାହିତ୍ୟର ଇତିହାସରେ ଏପରି କେବେ ଘଟିଛି, ତା' ପୂର୍ବରୁ ନୁହେଁ, ତା' ପରେ ନୁହେଁ ।''

## ଗୁପ୍ତ ପୁଲିସ ରିପୋର୍ଟ

ଅନନ୍ତ, ଭଗବତୀ ପ୍ରଭୃତି କମ୍ୟୁନିଷ୍ଟ ଗୋଷ୍ଠୀଙ୍କର କାର୍ଯ୍ୟକଳାପ ଉପରେ ପୁଲିସ ତୀକ୍ଷ୍ଣ ଦୃଷ୍ଟି ରଖିଥିଲେ ଓ ତା'ର ଟିକିନିଖି ରିପୋର୍ଟ ସରକାରଙ୍କୁ ଦେଇଆସୁଥିଲେ । ସେତେବେଳେ କଟକ ଜିଲ୍ଲାର ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ଥିଲେ ବି. ବାନାର୍ଜୀ । ସେ ପ୍ରଥମେ ରିପୋର୍ଟ ଦେଇଥିଲେ ଯେ ୧୯୩୫ ମସିହା ନଭେମ୍ବର ମାସରେ ଆଠ ଜଣଙ୍କୁ ନେଇ କଟକରେ 'ନବଯୁଗ ସାହିତ୍ୟ ସଂସଦ' ଗଠିତ ହୋଇଛି । ଏହି କ୍ଷୁଦ୍ର ସଙ୍ଗଠନର ମୁଖ୍ୟ କାର୍ପଟଦାର ହେଉଛନ୍ତି ରେଭେନ୍‌ସା କଲେଜର ଛାତ୍ର ଅନନ୍ତ ଚରଣ ପଟ୍ଟନାୟକ । ତାଙ୍କର ବୟସ ହେଉଛି ୨୭ । ତାଙ୍କର ଉଦ୍ଦେଶ୍ୟ ହେଲା ସହକର୍ମୀମାନଙ୍କ ମଧ୍ୟରେ ପ୍ରଗତିଶୀଳ, ବୈପ୍ଳବିକ, ଚରମପନ୍ଥୀ ଚିନ୍ତାଧାରା ପ୍ରଚାର କରିବା ।

ଏସ୍.ପି. ପୁଣି ରିପୋର୍ଟରେ ଉଲ୍ଲେଖ କରିଥିଲେ ଯେ ପ୍ରଗତିଶୀଳ ସାହିତ୍ୟର ପ୍ରଚାର, ପ୍ରସାର ଏହାର ଉଦ୍ଦେଶ୍ୟ ବୋଲି କୁହାଯାଉଥିଲେ ମଧ୍ୟ, ଭାରତରେ ଏବଂ ଅନ୍ୟତ୍ର ବୈପ୍ଳବିକ ରାଜନୈତିକ ତତ୍ତ୍ୱ ପ୍ରଚାର-ପ୍ରସାରପାଇଁ ଜଣାଶୁଣା କମ୍ୟୁନିଷ୍ଟମାନଙ୍କର ଏହା ଏକ 'କୁମତଲବି' ମାଧମ ମାତ୍ର ଥିଲା ...

୧୯୩୮ ମସିହାରେ ଗୋପନୀୟ ପୁଲିସ ରିପୋର୍ଟରେ ଲେଖାଥିଲା – ''୧୯୩୭ ପ୍ରାକ୍ କାଳରେ ଏହା ସ୍ପଷ୍ଟ ଭାବରେ ଦୃଷ୍ଟିଗୋଚର ହେଲା ଯେ ଯେଉଁ ଛୋଟ ଚାରାଟି ରୋପଣ କରାଯାଇଥିଲା, ତାହା ଫୁଲ ଫଳ ଧରିଲାଣି । ଅନନ୍ତ ପଟ୍ଟନାୟକ ଓ ଭଗବତୀଚରଣ ପାଣିଗ୍ରାହୀଙ୍କ ଅନୁଗତ ତଥା ସେନାପତି × × × ସଂଖ୍ୟା ଦ୍ରୁତ ଗତିରେ ବୃଦ୍ଧି ପାଇବା ସାଙ୍ଗକୁ ସେମାନଙ୍କ ପ୍ରଭାବ ନିଖିଳ ଉତ୍କଳ ଛାତ୍ର ସମ୍ମିଳନୀ ପର୍ଯ୍ୟନ୍ତ ପହଞ୍ଚି ସାରିଲାଣି ।''

ଏହା ପୂର୍ବରୁ ୧୯୩୬ ମସିହା ଜୁନ୍ ମାସ ୭ ତାରିଖରେ 'ନବଯୁଗ ସାହିତ୍ୟ ସଂସଦ'ର ବାର୍ଷିକ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ପୁଲିସ ରିପୋର୍ଟ ଅନୁଯାୟୀ ଏହି ସମ୍ମିଳନୀରେ ଅଭ୍ୟର୍ଥନା ସମିତିର ଅଧ୍ୟକ୍ଷ ଭାବରେ ଅନନ୍ତ ପଟ୍ଟନାୟକ ଭାଷଣ ଦେଇଥିଲେ । ତାଙ୍କ ଭାଷଣ ମଧ୍ୟ ଛପା ହୋଇ ବଣ୍ଟା ଯାଇଥିଲା । ଏହାର ବିଷୟବସ୍ତୁ ଅତ୍ୟନ୍ତ ଆପତ୍ତିଜନକ ଏବଂ ଉତ୍ତେଜକ ଲେଖାରେ ପରିପୂର୍ଣ୍ଣ ଥିଲା । ଏହାର ପ୍ରଭାବ କୋମଳମତି ଯୁବକମାନଙ୍କ ଉପରେ ନିଶ୍ଚୟ ପଡ଼ିବ ହିଁ ପଡ଼ିବ ବୋଲି ପୁଲିସ ରିପୋର୍ଟରେ ଦର୍ଶାଯାଇଥିଲା ।

୧୯୩୭ ମସିହା ଅଗଷ୍ଟ ମାସ ୨୨ ତାରିଖରେ କଟକରେ ଅନନ୍ତ ପଟ୍ଟନାୟକଙ୍କଦ୍ୱାରା ଏକ ସଭାର ଆୟୋଜନ ହୋଇଥିଲା । ସେଥିରେ ଆଣ୍ଡାମାନର ରାଜନୈତିକ ବନ୍ଦୀମାନଙ୍କ ଉପରେ ହେଉଥିବା ନିର୍ଯାତନାର ପ୍ରତିବାଦ କରାଯାଇଥିଲା । ଅଗଷ୍ଟ ମାସ ୧୪ ତାରିଖରେ ପୁଲିସର ଲାଠିମାଡ଼ର ପ୍ରତିବାଦରେ ଏକ ସଭାରେ ବହୁ ଆପତ୍ତିଜନକ ବିଷୟବସ୍ତୁ ଥିବା ପୁଲିସ ରିପୋର୍ଟରେ ଉଲ୍ଲେଖ ଥିଲା । ସେପ୍ଟେମ୍ବର ମାସ ୧୮ ତାରିଖରେ ଛାତ୍ରସଂଘର ଏକ ସମାବେଶରେ ଛାତ୍ରସଂଘର ସର୍ବନିମ୍ନ ଦାବି ସନନ୍ଦ ଅନନ୍ତ ପଟ୍ଟନାୟକ ମଧ୍ୟ ପାଠ କରିଥିବା କଥା ପୁଲିସ ଉପରିସ୍ଥ କର୍ମକର୍ତ୍ତାଙ୍କୁ ଜଣାଇଥିଲା ।

୧୯୩୮ ମସିହା ଜାନୁଆରୀ ମାସ ପହିଲା ଦିନ ମାନ୍ଦ୍ରାଜଠାରେ ହୋଇଥିବା ଅଖିଳ ଭାରତ ଛାତ୍ର ସଂଘର ସମାବେଶରେ ଅନନ୍ତ ପଟ୍ଟନାୟକ ଓ ବୈଦ୍ୟନାଥ ରଥ ଓଡ଼ିଶାର ପ୍ରତିନିଧିତ୍ୱ କରିଥିଲେ । ଉଭୟ ପ୍ରତିନିଧି ମଧ୍ୟ ଛାତ୍ରସଂଘର ଜାତୀୟ କାର୍ଯ୍ୟକାରୀ କମିଟିରେ ଅନ୍ତର୍ଭୁକ୍ତ ହୋଇଥିଲେ । କେବଳ ସେତିକି ନୁହେଁ, ସର୍ବଭାରତୀୟ ଛଅ ଜଣ ଯୁଗ୍ମ ସମ୍ପାଦକଙ୍କ ମଧ୍ୟରେ ଅନନ୍ତ ପଟ୍ଟନାୟକ ଅନ୍ୟତମ ଯୁଗ୍ମ ସମ୍ପାଦକଭାବେ ନିର୍ବାଚିତ ହୋଇଥିବା ମଧ୍ୟ ପୁଲିସ ରିପୋର୍ଟ ଦେଇଥିଲା ।

### କମ୍ୟୁନିଷ୍ଟ ଆନ୍ଦୋଳନର ଭଗୀରଥ

ବ୍ରିଟିଶ ପୁଲିସ ରିପୋର୍ଟ ଅନୁଯାୟୀ ଓଡ଼ିଶାରେ ବାମପନ୍ଥୀ ଚିନ୍ତା ଓ ଚେତନାର ଆଦ୍ୟ ପ୍ରବକ୍ତା ହେଉଛନ୍ତି ଅନନ୍ତ ପଟ୍ଟନାୟକ । ଅବଶ୍ୟ କମ୍ୟୁନିଷ୍ଟ ପାର୍ଟି ଗଢ଼ା ହେଲା ପରେ ଭଗବତୀଚରଣ ପାଣିଗ୍ରାହୀ ହେଲେ ପ୍ରଥମ ସାଧାରଣ ସମ୍ପାଦକ । ସେ ଥିଲେ ଅନନ୍ତଙ୍କ ସହକର୍ମୀ ତଥା ସହଯୋଗୀ । କମ୍ୟୁନିଷ୍ଟ ପାର୍ଟିର ପ୍ରକୃତ ଜନକ ହେଉଛନ୍ତି ଶ୍ରୀଯୁକ୍ତ ପଟ୍ଟନାୟକ । ସେ ହିଁ କମ୍ୟୁନିଷ୍ଟ ଆନ୍ଦୋଳନର ଭଗୀରଥ ।

### କୃଷକ ସଙ୍ଗଠନ

୧୯୩୬ ମସିହା ମାର୍ଚ୍ଚ ମାସ ୩୦ ତାରିଖରେ ଓଡ଼ିଶାର କୃଷକମାନଙ୍କର ସମ୍ମିଳନୀ କଟକ ଟାଉନ ହଲ୍‌ରେ ଅନୁଷ୍ଠିତ ହେଲା । ସର୍ବଭାରତୀୟ କୃଷକ ନେତା ମୋହନଲାଲ ଗୌତମ ଏହି ସମ୍ମିଳନୀରେ ଯୋଗ ଦେବାପାଇଁ ଓଡ଼ିଶା ଆସିଥିଲେ ଓ ସମ୍ମିଳନୀରେ ସଭାପତିତ୍ୱ କରିଥିଲେ । କୃଷକ ସମ୍ମିଳନୀର ଉଦ୍‌ଘାଟନୀ ଅଧିବେଶନରେ ଅନନ୍ତଙ୍କ ରଚିତ 'ଚିରି ଅନ୍ଧାର ରାତି' ଗୀତଟି ମାଳତୀ ଚୌଧୁରୀ ଗାନ କରିଥିଲେ । ଏହା ମଧ୍ୟ କୃଷକ ଆନ୍ଦୋଳନର ଜାତୀୟ ସଙ୍ଗୀତରେ ପରିଣତ ହୋଇଥିଲା ।

### ଢେଙ୍କାନାଳ ପ୍ରଜା ଆନ୍ଦୋଳନ

ଢେଙ୍କାନାଳରେ ରାଜୁଡ଼ା ଶାସନର ଅତ୍ୟାଚାର ଓ ଶୋଷଣ ସମସ୍ତ ଗଡ଼ଜାତ ରାଜ୍ୟକୁ ବଳିଯାଇଥିଲା । ରାଜୁଡ଼ା ଶାସନ ବିରୋଧରେ ଯେଉଁ ଆନ୍ଦୋଳନ ଚାଲିଲା,

ତା'ର ପୁରୋଭାଗରେ ଥିଲେ ସାରଙ୍ଗଧର ଦାସ, ହରମୋହନ ପଟ୍ଟନାୟକ, ବୈଷ୍ଣବ ପଟ୍ଟନାୟକ, ଲକ୍ଷ୍ମୀଧର ସାହୁ ପ୍ରଭୃତି । ଢେଙ୍କାନାଳ ବାହାରୁ ଯେଉଁମାନେ ଏହି ଆନ୍ଦୋଳନରେ ସାମିଲ ହେଲେ, ସେମାନେ ହେଲେ ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ଭଗବତୀଚରଣ ପାଣିଗ୍ରାହୀ ଓ ଛାତ୍ର ସଂଘର ନେତାଭାବେ ଅନନ୍ତ ପଟ୍ଟନାୟକ, ବୈଦ୍ୟନାଥ ରଥ, ବିଶ୍ୱନାଥ ପଶାୟତ, ସଚ୍ଚି ରାଉତରା ପ୍ରଭୃତି ।

ଢେଙ୍କାନାଳ ପ୍ରଜାମଣ୍ଡଳର ଜନଯୁଦ୍ଧକୁ ତୀବ୍ରତର କରିବାପାଇଁ ଅନନ୍ତଙ୍କ ଉଦ୍ୟମରେ ପ୍ରକାଶ ପାଇଥିଲା 'ରଣଭେରୀ' । ପ୍ରଥମେ ଏହା ସାଇକ୍ଲୋଷ୍ଟାଇଲ ହୋଇ ଓ ପରେ ଛପା ହୋଇ ପ୍ରକାଶ ପାଇଲା । ଏହା ପ୍ରଜାମାନଙ୍କ ମଧ୍ୟରେ ବଣ୍ଟା ଯାଉଥିଲା । ଏହା ବିଦ୍ରୋହର ସ୍ଫୁଲିଙ୍ଗ ସଦୃଶ କାର୍ଯ୍ୟ କରୁଥିଲା । ଏଥିରେ ଅନନ୍ତ ସକ୍ରିୟ ଅଂଶ ଗ୍ରହଣ କରିଥିଲେ ।

ସେପ୍ଟେମ୍ବର ପହିଲାରେ ଜେନାପୁର ଠାରେ ପ୍ରାଦେଶିକ କୃଷକ ସମ୍ମିଳନୀ ପକ୍ଷରୁ ବିଶାଳ କୃଷକ ସମାବେଶ ହେଲା । ଜେନାପୁରରେ ପ୍ରାୟ ପଚାଶ ହଜାର ଚାଷୀ ମୂଲିଆ ଏହି ସମାବେଶରେ ଯୋଗ ଦେଇଥିଲେ । ଏହି ଉପଲକ୍ଷେ ଅନନ୍ତଙ୍କ ଉଦ୍ୟମରେ କୃଷକ ପତ୍ରିକା ପ୍ରକାଶ ପାଇଥିଲା । ସେହି ସମାବେଶରେ ତିନି ପଇସିକିଆ 'କୃଷକ' ପତ୍ରିକା ବିଶେଷାଙ୍କ ହଜାର ହଜାର ସଂଖ୍ୟାରେ ବିକ୍ରୟ ହେଲା । ଜେନାପୁରର ଏ ବିଶାଳ ସମାବେଶ ହିଁ ଢେଙ୍କାନାଳବାସୀଙ୍କୁ ଅପୂର୍ବ ଉତ୍ସାହ ଓ ଉଦ୍ଦୀପନା ଯୋଗାଇଥିଲା ।

ଢେଙ୍କାନାଳ ଶାସନ ପକ୍ଷରୁ ଦମନମୂଳକ କାର୍ଯ୍ୟାନୁଷ୍ଠାନ ହେଲା । ପ୍ରଜାମଣ୍ଡଳକୁ ବେଆଇନ ଘୋଷଣା କରାଗଲା । ସଭାପତି ହରମୋହନ ପଟ୍ଟନାୟକଙ୍କୁ ଗିରଫ କରାଗଲା । ଅନ୍ୟ ନେତାମାନେ ଆତ୍ମଗୋପନ କଲେ । ଏହାପରେ ସଶସ୍ତ୍ର ପୁଲିସବାହିନୀ ଭୁବନ ଗାଁକୁ ଘେରାଉ କଲେ ଓ ରାତିଅଧିଆ ପୁଲିସ ଆକ୍ରମଣରେ ବହୁ ଲୋକ କ୍ଷତବିକ୍ଷତ ହେଲେ । ଏହାପରେ ପୁଲିସ ଗିରଫ ବ୍ୟକ୍ତିମାନଙ୍କୁ ଧରି ନୀଳକଣ୍ଠପୁର ନଦୀଘାଟରେ ପହଞ୍ଚିଲେ । ସରକାରୀ ଡଙ୍ଗାକୁ ପ୍ରଜାମଣ୍ଡଳର କର୍ମୀମାନେ ପାଣିରେ ବୁଡ଼ାଇ ଦେଇଥାନ୍ତି । ଗାଁର ଘାଟିଆ ଡଙ୍ଗାକୁ ଘାଟ ଠାରୁ ଦୂରରେ ରଖିଥାଏ । ସଶସ୍ତ୍ର ପୋଲିସ ବାହିନୀ ଡଙ୍ଗା ଆଣିବାକୁ ଆଦେଶ ଦେଲେ । ପ୍ରଜାମଣ୍ଡଳର ଜଗୁଆଳମାନଙ୍କ ମଧ୍ୟରୁ ବାର ବରଷର ବାଜିରାଉତ ଜବାବ ଦେଲା – ''ପ୍ରଜାମଣ୍ଡଳର ହୁକୁମ ଅଛି – 'ଡଙ୍ଗା ନେବୁ ନାହିଁ' ।''

ପୋଲସି ପକ୍ଷରୁ ଆଖିବୁଜା ଗୁଳି ଚାଲିଲା । ବାଜିରାଉତ, ହୁରୁଷୀ, ଗୁରି, ନଟ, ରଘୁ ସେଇଠି ଟଳି ପଡ଼ିଲେ ।

ଛଅଟି ଶଗଡ଼ରେ ଗୁଳି ମାଡ଼ରେ ସହିଦ ହୋଇଥିବା ବ୍ୟକ୍ତିଙ୍କୁ କଟକ ନିଆଗଲା । ଶଗଡ଼ିଆମାନେ ହେଲେ ଅନନ୍ତ ପଟ୍ଟନାୟକ, ସଚ୍ଚି ରାଉତରା, ଗୋବିନ୍ଦ ମହାନ୍ତି, ବିଶ୍ୱନାଥ ପଶାୟତ, ରବି ଘୋଷ ଓ ମୋତିଲାଲ ତ୍ରିପାଠୀ । ଶବ ନେଇ ଯାଉଥିବା ପଟୁଆର କଟକ ସହର ପରିକ୍ରମା କରିବାପରେ ଖାନ୍‌ନଗର ଶ୍ମଶାନରେ ପହଞ୍ଚିଲା । ବିରାଟ ଚିତା ପ୍ରସ୍ତୁତ ହେଲା । ଅନନ୍ତ, ସଚ୍ଚି, ଗୋବିନ୍ଦ, ବିଶ୍ୱନାଥ, ରବି ଓ ମୋତିଲାଲ ଜଣକ ପରେ ଜଣେ ସହିଦଙ୍କ ମୁହଁରେ ନିଆଁ ଦେଲେ । ଶବଗୁଡ଼ିକ ଦାହ ବେଳେ ଅନନ୍ତ ଦୂରରେ ଥାଇ ଦୁଇ ବଣ୍ଡିଲ ବିଡ଼ି ଟାଣୁଥିଲେ ।

ସଚ୍ଚି ରାଉତରା ଏହାକୁ ଲକ୍ଷ୍ୟ କରି ଲେଖିଲେ –

''ନୁହେଁ ବନ୍ଧୁ ନୁହେଁ ଏହି ଚିତା
ଏ ଦେଶ ତିମିର ତଳେ ଏ ଅଲିଭା ମୁକତି ସଳିତା ।''

କାଳିନ୍ଦୀଚରଣଙ୍କ ଲେଖନୀରୁ ଝରିଆସିଲା –

''ଆସ ଲକ୍ଷ୍ମଣ, ଆସ ନଟ, ରଘୁ, ଗୁରି
ହୁରୁଷୀ ପ୍ରଧାନ, ବଜାରେ ମରଣ ଭେରୀ
ବେଳ ଏହି ବେଳ ଏହି
ବାର ବରଷର ବାଜିରାଉତ ସେ
ମରି ନାହିଁ ମରି ନାହିଁ.... ।''

ଅନନ୍ତ ଲେଖିଲେ –

''କି କଥା କହିବ, ଆଣିବୁ ନି ତାହା ଭାଇର ଆଦେଶ ନାହିଁ
ଆରେ ବଜାତ୍ ଆରେ ବଦମାସ୍ ଟୋକା ।
ମଣିଛ କି ଆମେ ଅନ୍ଧ ନିକମା ବୋକା ?

**କାରାଦଣ୍ଡ**

ପ୍ରଜାମଣ୍ଡଳ ଆନ୍ଦୋଳନ ତୀବ୍ର ହୋଇଥିଲା । ପ୍ରଜାମଣ୍ଡଳ ନେତାମାନଙ୍କ ନିର୍ଦ୍ଦେଶ ଅନୁଯାୟୀ ଢେଙ୍କାନାଳ ଓ ଆଖପାଖ ଅଞ୍ଚଳର ହଜାର ହଜାର ସଂଖ୍ୟାରେ ଚାଷୀ ମୂଲିଆ ଘରଦ୍ୱାର ଛାଡ଼ି ପଳାଇ ଆସିଥିଲେ । ସେମାନଙ୍କୁ ଢେଙ୍କାନାଳ ରାଜ୍ୟ ସୀମାରେ କ୍ୟାମ୍ପ କରାଯାଇ ରଖାଯାଇଥିଲା । ସେହି ଦୁଇ କ୍ୟାମ୍ପ ହେଲା ବୁଢ଼ାପଙ୍କ ଓ କଲାଣ୍ଡୋ । କଲାଣ୍ଡୋ କ୍ୟାମ୍ପ ଦାୟିତ୍ୱରେ ଥିଲେ ଅନନ୍ତ ଓ ବୈଦ୍ୟନାଥ । ସେହି କ୍ୟାମ୍ପରେ ଅନନ୍ତଙ୍କର ଗୀତ ବୋଲାଯାଉଥିଲା । ତାହା ଥିଲା –

''ମୁଲକଯାକର ମାଲିକ ଚାଷୀ
ମଜୁରିଆ କୁଲି ହୋ ଉପବାସୀ–
ତୋଳିଧର ତୋର ପତାକା ଆସି,
ତୋହରି ରକତେ ଲାଲ୍
ଚାଲରେ ଚାଲରେ ଚାଲ୍ ।''

ଅନନ୍ତ କ୍ୟାମ୍ପ ଦାୟିତ୍ୱରେ ଥିଲେ । ତେଣୁ ଢେଙ୍କାନାଳ ରାଜାଙ୍କ କୋପଦୃଷ୍ଟିରେ ପଡ଼ିବା ସ୍ୱାଭାବିକ । ତାଙ୍କୁ ଗିରଫ କରିବାକୁ ଢେଙ୍କାନାଳ ପୁଲିସ ବ୍ୟଗ୍ର ହୋଇ ଉଠିଲା ।

ଦିନେ ଅନନ୍ତ ଓ ବନ୍ଧୁ ବୈଦ୍ୟନାଥ ମିଶି ଢେଙ୍କାନାଳକୁ ଲାଗିଥିବା ମୋଗଲବନ୍ଦୀ ଅଞ୍ଚଳରେ ସଭା କଲେ । ସଭା ଶେଷ କରି କଲାଣ୍ଡୋ ଶିବିରକୁ ଫେରି ସେଠାରେ କିଛି ସମୟ ବିଶ୍ରାମ କରି ସାଇକଲରେ କଟକ ଯିବାକୁ ବାହାରିଲେ । ସନ୍ଧ୍ୟା ହୋଇଆସୁଥାଏ । ଅନନ୍ତ ଓ ବୈଦ୍ୟନାଥ ବ୍ରାହ୍ମଣୀ ନଈ ବାଲିରେ ସାଇକଲକୁ ଧରି ଚାଲିଲେ ।

ନଈହୁଡ଼ାରୁ ଉଠି କବାଟବନ୍ଧ ଗାଁ ସୀମାରେ ପହଞ୍ଚିଲେ । କବାଟ ବନ୍ଧ ଗ୍ରାମଟି ଢେଙ୍କାନାଳ ଗଡ଼ଜାତ ଅନ୍ତର୍ଭୁକ୍ତ ଥିଲା । ସେହି ଗ୍ରାମ ଦେଇ ଗଲେ କିଛି ବାଟ କମିଯିବ ଭାବି ଦୁହେଁ ସେହି ଗ୍ରାମ ଦେଇ କଟକ ଯିବାକୁ ସ୍ଥିର କଲେ । ରାତି ହୋଇ ଆସୁଥାଏ । ନିଛାଟିଆ ରାସ୍ତା । କେହି ଜାଣିବେ ନାହିଁ ଭାବି ସେଇବାଟେ ସାଇକଲରେ ଗଲେ । ଆଗରେ ବୈଦ୍ୟନାଥ, ପଛରେ ଅନନ୍ତ ଯାଉଥାନ୍ତି । କିଛି ବାଟ ଗଲାପରେ ଅନନ୍ତଙ୍କ ସାଇକଲ ଶବ୍ଦ ଆଉ ଶୁଭିଲା ନାହିଁ । ପଛକୁ ଚାହିଁ ବୈଦ୍ୟନାଥ 'କ'ଣ ହେଲା କିରେ' ବୋଲି ପଚାରିଲେ । କିଛି ଉତ୍ତର ନ ପାଇ ଧରାପଡ଼ିଛନ୍ତି ଭାବି ଜୋର୍‌ରେ ସାଇକଲ ଚଳାଇଲେ ।

ବୈଦ୍ୟନାଥ ଆଗରେ ଯାଉଥିଲାବେଳେ ଶଗଡ଼ଗୁଳାଗାଁର ବୁଦାରେ ରାଜାଙ୍କ ଲୋକେ ଜଗି ରହିଥିଲେ । ବୁଦାମୂଳୁ ଅନନ୍ତଙ୍କ ଉପରେ ଝାମ୍ପଦେଲେ ଓ ତାଙ୍କୁ ମାଡ଼ିବସିଲେ । ତା'ପରେ ଚାଲିଲା ବିଧା ଗୋଇଠା ।

ବୈଦ୍ୟନାଥ ଜେନାପୁର ରେଳଷ୍ଟେସନରେ ମୁଖ୍ୟମନ୍ତ୍ରୀ ବିଶ୍ୱନାଥ ଦାସଙ୍କୁ ଅନନ୍ତ ଗିରଫ ହୋଇଥିବା କଥା ଜଣାଇ ତୁରନ୍ତ କାର୍ଯ୍ୟାନୁଷ୍ଠାନ କରିବାକୁ କହିଲେ । ମୁଖ୍ୟମନ୍ତ୍ରୀ ମଧ୍ୟ ପୁଲିସ ବିଭାଗକୁ ଅନନ୍ତଙ୍କୁ ଶୀଘ୍ର ଖଲାସ କରିବାକୁ ନିର୍ଦ୍ଦେଶ ଦେଲେ । କିନ୍ତୁ ରାଜାଙ୍କ ପୁଲିସ ଅନନ୍ତଙ୍କୁ ରାତାରାତି ନେଇ ପିଙ୍ଗୁଆ ଥାନାରେ ରଖିଲେ । ପରେ ଢେଙ୍କାନାଳ ଜେଲ୍‌ର ଗୋଟିଏ ସ୍ୱତନ୍ତ୍ର କୋଠରିରେ ତାଙ୍କୁ ରଖାଗଲା ।

ଅନନ୍ତଙ୍କ ନାଁରେ ଢେଙ୍କାନାଳ କଚେରିରେ ମକଦ୍ଦମା ରୁଜୁ କରାଗଲା । ତାଙ୍କ ପଛକୁ ରବି ଘୋଷଙ୍କୁ ଗିରଫ କରାଯାଇ ସେଇ ଜେଲ୍‌ରେ ରଖାଯାଇଥିଲା ।

ପ୍ରଜାମଣ୍ଡଳ ତରଫରୁ କଟକର ପ୍ରସିଦ୍ଧ ଓକିଲ ରାଜକିଶୋର ଦାସ, ଦୀନବନ୍ଧୁ ସାହୁ ପ୍ରଭୃତି ଲଢ଼ିଲେ ।

ଅନନ୍ତ, ରବି ଘୋଷ, ଲକ୍ଷ୍ମୀଧର ସାହୁଙ୍କୁ ଢେଙ୍କାନାଳ ଜେଲ୍‌ରୁ ନେଇ ମଢ଼ି (ଏବେର କାମାକ୍ଷାନଗର) ଜେଲ୍‌ରେ ରଖାଗଲା । ତାଙ୍କର ବିଚାର କରାଯାଇ ଦୁଇ ବର୍ଷ ଜେଲ୍‌ଦଣ୍ଡ ଦିଆଗଲା ।

ମଡ଼ି ଜେଲ୍‌ରେ ଅନନ୍ତଙ୍କୁ ଶାରୀରିକ ନିର୍ଯାତନା ଦିଆଯାଇଥିଲା । ଜଣେ ଶିଖ ପୁଲିସ ଅଫିସର ଅନନ୍ତଙ୍କୁ ପ୍ରହାର କରି ରକ୍ତାକ୍ତ କରିଦେଇଥିଲେ । ଆଖି ଓ କପାଳରେ ମାଡ଼ ବାଜି ଆଖିଟି ଆଘାତପ୍ରାପ୍ତ ହେଲା । ପରବର୍ତ୍ତୀକାଳରେ ଅନନ୍ତ ନିଜର ଗୋଟିଏ ଚକ୍ଷୁର ଦୃଷ୍ଟିଶକ୍ତି ହରାଇଲେ । ପ୍ରହାରବେଳେ ଅନନ୍ତଙ୍କର ଚିତ୍କାର ସହବନ୍ଦୀମାନଙ୍କୁ ବିହ୍ୱଳିତ କରିପକାଇଥିଲା ।

ପ୍ରଜାମଣ୍ଡଳ ଆନ୍ଦୋଳନ ବେଳେ ଅନନ୍ତ ବହୁ ବିପ୍ଳବାତ୍ମକ କବିତା ରଚନା କରିଥିଲେ । ତାଙ୍କର ଚାରୋଟି, ସଚ୍ଚି ରାଉତରାୟଙ୍କ ଚାରୋଟି – ଏହିଭଳି ଆଠଟି କବିତାକୁ ନେଇ 'ରକ୍ତଶିଖା' ନାମକ ପୁସ୍ତକ କଟକର ହରନାଥ ପ୍ରେସରୁ ପ୍ରକାଶ ପାଇଥିଲା । ପ୍ରକାଶକ ଥିଲେ ଅନୁଜ – ଗୁରୁଚରଣ ପଟ୍ଟନାୟକ । ବହିଟି ସାମ୍ରାଜ୍ୟବାଦୀ ବିରୋଧୀ ହୋଇଥିବାରୁ ବ୍ରିଟିଶ ସରକାର ତାକୁ ବେଆଇନ ଘୋଷଣା କରିଥିଲେ । ପ୍ରେସ୍‌ର ମାଲିକଙ୍କୁ ମଧ୍ୟ ଅର୍ଥଦଣ୍ଡରେ ଦଣ୍ଡିତ କରାଯାଇଥିଲା ।

ସାରାଦେଶରେ ଯେତେବେଳେ ରାଜନୀତିକ ପରିସ୍ଥିତି ସୁଧୁରିଲା, ଅନନ୍ତ ଜେଲରୁ ମୁକ୍ତ ହେଲେ ।

## ପୁଣି ଗିରଫ

୧୯୩୪ ମସିହା ମଧ୍ୟଭାଗ ଆଡ଼କୁ ଭାରତବର୍ଷରେ କମ୍ୟୁନିଷ୍ଟ ପାର୍ଟିକୁ ବେଆଇନ ଘୋଷଣା କରାଗଲା । ତଥାପି ଓଡ଼ିଶାରେ କମ୍ୟୁନିଷ୍ଟ ପାର୍ଟିର ଏକ ଶାଖା ଖୋଲାଯାଇଥିଲା । କମ୍ୟୁନିଷ୍ଟମାନେ ଷଡ଼୍‌ଯନ୍ତ୍ର କରି ଦେଶର ସୁରକ୍ଷା ବିପନ୍ନ କରୁଛନ୍ତି ବୋଲି ଅଭିଯୋଗ ଆଣି ସରକାର କମ୍ୟୁନିଷ୍ଟ ନେତାମାନଙ୍କୁ ଗିରଫ କଲେ । ୧୯୪୦ ମସିହା ଜୁନ ମାସ ୧୧ ତାରିଖରେ ଭଗବତୀଚରଣ ପାଣିଗ୍ରାହୀ, ଅନନ୍ତ ପଟ୍ଟନାୟକ, ବୈଦ୍ୟନାଥ ରଥ, ଶରତ ପଟ୍ଟନାୟକ, ଦୁର୍ଗାଚରଣ ମହାନ୍ତି ପ୍ରଭୃତିଙ୍କୁ ଅଚାନକ ଗିରଫ କରାଗଲା । ଏହି ଗିରଫଦାରୀରେ ଓଡ଼ିଶା ସାରା ଚହଳ ପଡ଼ିଗଲା । ଏହି ଷଡ଼୍‌ଯନ୍ତ୍ର ମକଦ୍ଦମାରେ ରାମକୃଷ୍ଣ ପତିଙ୍କ ଉଦ୍ୟମରେ ଏକ ଡିଫେନ୍‌ସ କମିଟି ଗଢ଼ାଯାଇଥିଲା । ହରେକୃଷ୍ଣ ମହତାବ ଏହାର ଚେୟାରମ୍ୟାନ୍ ଥିଲେ । ମକଦ୍ଦମାର ବିଚାର ଛଅ ସାତ ମାସ ଧରି ଚାଲିଲା । ୧୯୪୦ ମସିହା ଡିସେମ୍ବର ମାସ ୩ ତାରିଖରେ ମାଜିଷ୍ଟ୍ରେଟ ରାୟ ଦେଲେ । ଭଗବତୀ, ଅନନ୍ତ, ଗୁରୁଚରଣ, ବୈଦ୍ୟନାଥ ପ୍ରଭୃତି ଦୋଷୀ ସାବ୍ୟସ୍ତ ହେଲେ । ଅନନ୍ତଙ୍କୁ ନଅ ମାସ କାରାଦଣ୍ଡ ଓ ଅର୍ଥଦଣ୍ଡ ଦିଆଗଲା ।

ପ୍ରଥମେ ବନ୍ଦୀମାନଙ୍କୁ କଟକ ଜେଲ୍‌ରେ ରଖାଗଲା । ପରେ ତାଙ୍କୁ ଅନୁଗୁଳ ଜେଲକୁ ପଠାଯାଇଥିଲା । ଅନନ୍ତ ସେଠାରେ ବନ୍ଦୀ ଜୀବନ କଟାଇଥିଲେ । ପ୍ରାୟ ପ୍ରତ୍ୟେକ ଦିନ ସେ କବିତା ଲେଖୁଥିଲେ । ୧୯୪୨ ଅଗଷ୍ଟ ମାସ ସୁଦ୍ଧା ଭାରତୀୟ କମ୍ୟୁନିଷ୍ଟ ପାର୍ଟି ଉପରୁ ଲାଗୁ ହୋଇଥିବା ନିଷେଧାଦେଶ ଉଠିଯିବା ଫଳରେ ଅନନ୍ତ ଜେଲରୁ ଖଲାସ ହେଲେ ।

## ବିବାହ

ଅନନ୍ତଙ୍କ ବିବାହ ପ୍ରଖ୍ୟାତ ପ୍ରଧାନ ଶିକ୍ଷକ ଓ ପରବର୍ତ୍ତୀକାଳରେ ରାଷ୍ଟ୍ରପତି ପୁରସ୍କାରପ୍ରାପ୍ତ ଦିବ୍ୟସିଂହ ପଟ୍ଟନାୟକଙ୍କ କନ୍ୟା ନୀରଦପ୍ରଭାଙ୍କ ସହିତ ଅନୁଷ୍ଠିତ ହେଲା ୧୯୪୫ ମସିହା ଫେବୃଆରୀ ମାସ ୨ ତାରିଖରେ । ସେତେବେଳକୁ ଅନନ୍ତଙ୍କୁ ୩୩ ବର୍ଷ ବୟସ ହୋଇଥିଲା ।

ଅନୁଜ ଗୁରୁଚରଣ ପଟ୍ଟନାୟକ – ଯେକି ପରବର୍ତ୍ତୀ କାଳରେ କମ୍ୟୁନିଷ୍ଟ ପାର୍ଟିର ସମ୍ପାଦକ ହେଲେ – ଆନନ୍ଦରେ ଆତ୍ମହରା ହୋଇଉଠିଥିଲେ । ତାଙ୍କ କଲମରୁ ଝରିଲା କବିତା –

''ଆଲୋ ଆଲୋ ନୂଆବୋଉ ଏତେ ତୋର ବଡ଼େଇ
ଦୁନିଆର ଭାଇକୁ ତୁ ନେବୁ ଆଜି ଛଡ଼େଇ ?
ବଣ ହାତୀ ସମ ଯେହୁ ଅଙ୍କୁଶ ମାନିନି,
ଗତି ତା'ର ରୋକିବନି ? ସତେ ତୋର ରାଗିଣୀ ?''

ବିବାହ ପରେ ଅନନ୍ତ ନବବଧୂଙ୍କ ସହିତ ଆସି ଗାଁରେ ରହିଲେ । ଗାଁ ଭୂଇଁରେ ଗ୍ରାମର ପିଲା ଓ ଗ୍ରାମବାସୀଙ୍କ ସହ ୧୯୪୭ ଅଗଷ୍ଟ ୧୫ ତାରିଖରେ ସ୍ୱାଧୀନତା ଦିବସ ପାଳନ କରିଥିଲେ ।

## ହାଇସ୍କୁଲ ସ୍ଥାପନ

ଚଣାହଟ୍ଟାରେ ସେତେବେଳଯାଏଁ ହାଇସ୍କୁଲ ନ ଥିଲା । ଅନନ୍ତଙ୍କ ଉଦ୍ୟମରେ ଗ୍ରାମର ମାଇନର ସ୍କୁଲଟି ହାଇସ୍କୁଲରେ ପରିଣତ ହେଲା । ନିଜେ ମଧ୍ୟ ହାଇସ୍କୁଲରେ ପ୍ରଧାନଶିକ୍ଷକ ଭାବେ କାର୍ଯ୍ୟ କଲେ । ପତ୍ନୀ ନୀରଦପ୍ରଭା ବିଜ୍ଞାନ ଛାତ୍ରୀ ଥିଲେ । ସେ ବିଜ୍ଞାନ ଓ ଗଣିତ ଶିକ୍ଷୟିତ୍ରୀ ହେଲେ । ଚଣାହଟ୍ଟାର ସେହି ସମୟକୁ ଆଲୋଚିକା ମନୋରମା ମହାପାତ୍ର 'ଅଜ୍ଞାତ' ବୋଲି ଅଭିହିତ କରିଛନ୍ତି ।

## 'ସମାଜ'ରେ ଯୋଗଦାନ

ଶିକ୍ଷକତାରେ ଅନନ୍ତଙ୍କ ମନ କିନ୍ତୁ ମାନିଲା ନାହିଁ । ହାଇସ୍କୁଲ ସ୍ଥାପନା ପରେ ସେ କଟକ ଆସିଲେ । ଅନ୍ତରଙ୍ଗ ବନ୍ଧୁ ଉଦୟନାଥ ଷଡ଼ଙ୍ଗୀ ତଥା ରାଧାନାଥ ରଥଙ୍କ ଅନୁରୋଧରେ 'ସମାଜ'ରେ ସାମ୍ବାଦିକଭାବେ ଯୋଗ ଦେଲେ । ସେ 'ସମାଜ'ର ବାର୍ତ୍ତା ବିଭାଗର ଦାୟିତ୍ୱ ଗ୍ରହଣ କଲେ । ତାହା ସଙ୍ଗେ 'ସତ୍ୟବାଦୀ' ପାକ୍ଷିକ ସାହିତ୍ୟ ପତ୍ରିକାର ସହ-ସମ୍ପାଦକ ହେଲେ ।

## ନିର୍ବାଚନରେ ଅଂଶଗ୍ରହଣ

୧୯୫୨ ମସିହାରେ ଓଡ଼ିଶାରେ ସାଧାରଣ ନିର୍ବାଚନ ହେଲା । ଚାହୁଁ ନ ଥିଲେ ମଧ୍ୟ କମ୍ୟୁନିଷ୍ଟ ପାର୍ଟି ଅନନ୍ତଙ୍କୁ ବାଲିପାଟଣା ନିର୍ବାଚନ ମଣ୍ଡଳୀପାଇଁ ପ୍ରାର୍ଥୀ

ହେବାପାଇଁ ଚୟନ କଲା । ସେତେବେଳର ବାଲିପାଟଣା ଓ ବାଲିଅନ୍ତା ଦ୍ୱୈତ ନିର୍ବାଚନମଣ୍ଡଳୀ ଭିତରେ ଭୁବନେଶ୍ୱର, ଜଟଣୀ, ଚନ୍ଦକା ପ୍ରଭୃତି ଥିଲା । ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ଥିଲେ ବାଲକାଟିର ସତ୍ୟପ୍ରିୟ ମହାନ୍ତି । ଅନନ୍ତଙ୍କର ଗାଡ଼ି, ମଟରସାଇକେଲ ପ୍ରଭୃତି ଯାନବାହନ ନ ଥିଲା । ମାଇକ୍ରୋଫୋନଟିଏ ମଧ୍ୟ ନ ଥିଲା । ସୁତରାଂ ସେ ପରାଜିତ ହେଲେ । ପରାଜିତ ହେଲେ ମଧ୍ୟ ତାଙ୍କ ମନରେ ଦୁଃଖ ନ ଥିଲା ।

## ଆନ୍ତର୍ଜାତିକ ଲେଖକ ସମ୍ମିଳନରେ ଯୋଗଦାନ

୧୯୫୮ ମସିହାରେ ସୋଭିଏତ୍ ୟୁନିୟନ୍‌ର ତାସକେଣ୍ଟଠାରେ ଆଫ୍ରୋ-ଏସିଆ ଲେଖକ ସମ୍ମିଳନୀ ହେଲା । ସେଥିରେ ଭାରତବର୍ଷର ଅଧିକାଂଶ ରାଜ୍ୟର ପ୍ରମୁଖ କବି-ସାହିତ୍ୟିକ (ବିଶେଷତଃ ଯେଉଁମାନେ ଶାନ୍ତି ସଂହତି ଆନ୍ଦୋଳନ ସହିତ ସମ୍ପୃକ୍ତ ଥିଲେ) ମାନଙ୍କୁ ଆମନ୍ତ୍ରଣ କରାଯାଇଥିଲା । ଓଡ଼ିଶାରୁ କବି ଅନନ୍ତ ପଟ୍ଟନାୟକ ଓ ଝଙ୍କାରର ପରିଚାଳନା ସମ୍ପାଦକ ସତ୍ୟାନନ୍ଦ ଚମ୍ପତିରାୟ ଆମନ୍ତ୍ରିତ ହୋଇ ସେଥିରେ ଯୋଗ ଦେଇଥିଲେ । ଏହି ଲେଖକ ସମ୍ମିଳନୀ ଉପଲକ୍ଷେ ଅନନ୍ତ ତାଙ୍କର କେତେକ କବିତାର ଇଂରାଜୀ ଅନୁବାଦ ତଥା 'କୌମୁଦୀ ଓ ମଦନ' ଶୀର୍ଷକ ଏକ କ୍ଷୁଦ୍ର କାବ୍ୟଗ୍ରନ୍ଥ ପ୍ରକାଶ କରାଇ ଥିଲେ । କବି ଅନନ୍ତ ପଟ୍ଟନାୟକ ଭାରତୀୟ ସାହିତ୍ୟ ଆଲୋଚନାରେ ପ୍ରମୁଖ ଭାଗ ନେଇଥିଲେ ।

ତାସକେଣ୍ଟ, ସମରକନ୍ଦ, ଆବରବାଇଜାନ ପ୍ରଭୃତି କବି ବୁଲାବୁଲି କରିଥିଲେ । ପରବର୍ତ୍ତୀକାଳରେ ମସ୍କୋ ମଧ୍ୟ ଯାଇଥିଲେ ଓ ଚାରି ଦିନ ମସ୍କୋରେ ରହି ପାଠାଗାର, ମ୍ୟୁଜିୟମ୍, ଟଲଷ୍ଟୟଙ୍କ ବାସଭବନ ପ୍ରଭୃତି ଦର୍ଶନୀୟ ସ୍ଥାନ ବୁଲି ଦେଖିଥିଲେ । ମସ୍କୋରୁ ପୁନଶ୍ଚ ତାସକେଣ୍ଟ ଆସି କାବୁଲ ଦେଇ ଭାରତ ଫେରିଲେ ।

ଏହା ଥିଲା କବିଙ୍କର ପ୍ରଥମ ବିଦେଶ ଯାତ୍ରା ।

## ସୋଭିଏତ୍ ତଥ୍ୟ ବିଭାଗରେ ଯୋଗଦାନ

ସ୍ୱାଧୀନତା ପରେ ରୁଷ ସରକାରଙ୍କ ପକ୍ଷରୁ 'ସୋଭିଏତ୍ ଲ୍ୟାଣ୍ଡ' ଦିଲ୍ଲୀରୁ ପ୍ରକାଶ ପାଇଲା । ଏଥି ସଙ୍ଗେ ସଙ୍ଗେ ବଙ୍ଗଳା, ଆସାମୀ, ହିନ୍ଦୀ, ଓଡ଼ିଆ, ମରାଠୀ, ଗୁଜରାଟୀ, ତେଲୁଗୁ ଆଦି ଭାଷାରେ 'ସୋଭିଏତ୍ ଦେଶ' ନାମରେ ବାହାରିଲା । ଭାରତର ବିଭିନ୍ନ ରାଜ୍ୟର ପ୍ରଖ୍ୟାତ ବାମପନ୍ଥୀ ସାହିତ୍ୟିକ, କବି, ସୋଭିଏତ ୟୁନିୟନର ତଥ୍ୟ ବିଭାଗରେ କାର୍ଯ୍ୟ କରୁଥିଲେ । ୧୯୬୨ ମସିହାରେ ଅନନ୍ତ ପଟ୍ଟନାୟକ ମଧ୍ୟ କଲିକତାରେ ସୋଭିଏତ୍ ତଥ୍ୟ ବିଭାଗରେ ଅନୁବାଦକଭାବେ ଯୋଗ ଦେଲେ । ସେ ସମ୍ବାଦ ବୁଲେଟିନ ପ୍ରକାଶନର ଦାୟିତ୍ୱରେ ରହିଲେ ।

ଅନନ୍ତ ନିଜର କାର୍ଯ୍ୟକାଳ ଭିତରେ ପୃଷ୍ଠା ପରେ ପୃଷ୍ଠା ଅନୁବାଦ କଲେ, କିନ୍ତୁ ଅନୁବାଦ ଯନ୍ତ୍ର ହୋଇ ଚାକିରି କରିବାର ମନୋଭାବକୁ ସେ ମାନି ନେଇ ପାରି ନ ଥିଲେ । ତାଙ୍କ ମନରେ ଗ୍ଲାନି ଜାତ ହେଲା । ଯୋଗ ଦେବାର ଦଶ ଏଗାର ମାସ ପରେ ୧୯୬୨ ମସିହାରେ ସୋଭିଏତ୍ ତଥ୍ୟ ବିଭାଗରୁ ଇସ୍ତଫା ଦେଇ ସେ କଟକ ଫେରିଆସିଲେ ।

**ସାହିତ୍ୟ ସୃଷ୍ଟି**

ସ୍ୱାଧୀନତା ପରଠାରୁ ପ୍ରାୟ ଚାଳିଶ ବର୍ଷ କାଳ ଧରି ଅନନ୍ତ ପଟ୍ଟନାୟକ ରାଜନୈତିକ କ୍ରିୟାକଳାପ ତଥା ରାଜନୈତିକ ସଙ୍ଗଠନରୁ ନିଜକୁ ଦୂରେଇ ରଖିଥିଲେ ଓ ସାହିତ୍ୟ ସୃଷ୍ଟିରେ ମନୋନିବେଶ କରିଥିଲେ । ଅନନ୍ତଙ୍କ ପ୍ରତିଭାର ବିଚ୍ଛୁରିତ ଦିଗନ୍ତକୁ ଲକ୍ଷ୍ୟ କଲେ ଜଣାଯାଏ ଯେ ସାହିତ୍ୟର ବିଭିନ୍ନ ଆଙ୍ଗିକ ନେଇ ଜଣେ ସମର୍ଥ ଶିଳ୍ପୀ ଭାବରେ ନିଜକୁ ପ୍ରତିଷ୍ଠା କରିଛନ୍ତି । କବିତା ବ୍ୟତୀତ ସେ ଗଳ୍ପ, ନାଟକ, ପ୍ରବନ୍ଧ ଓ ଶିଶୁ ସାହିତ୍ୟ ଆଦି ରଚନା କରିଛନ୍ତି । ପ୍ରତିଟି ବିଭାଗରେ ପ୍ରତିଭାତ ହୋଇଛି ତାଙ୍କର ନିଜସ୍ୱ ଶୈଳୀର ମୁଦ୍ରାଙ୍କ, ନିଜ ବ୍ୟକ୍ତିତ୍ୱର ଛାପ ।

**କବିତା**

ତୃତୀୟ ଦଶକରେ କଟକରେ 'ନବଯୁଗ ସାହିତ୍ୟ ସଂସଦ' ଗଢ଼ା ହୋଇଥିବା ପୂର୍ବରୁ ବର୍ଣ୍ଣିତ । ଏହାର ପ୍ରଥମ ସମ୍ପାଦକ ହେଲେ ଅନନ୍ତ ପଟ୍ଟନାୟକ । ଏହି ଅନୁଷ୍ଠାନର ଆଦ୍ୟ ଉତ୍ସବରେ ଅନନ୍ତ ଉଦ୍‌ବୋଧନ ସଙ୍ଗୀତ ଗାନ କରିଥିଲେ ।

**ଆଧୁନିକ**

ନବଯୁଗ ସାହିତ୍ୟ ସଂସଦର ବୌଦ୍ଧିକ ଆୟୁଧ ହେଲା 'ଆଧୁନିକ' । ଏହା ୧୯୩୬ ମସିହା ମେ ମାସରେ ପ୍ରକାଶ ପାଇଥିବା ପୂର୍ବରୁ ବର୍ଣ୍ଣିତ । ସେତେବେଳେ ବହୁ ପତ୍ରିକା ପ୍ରକାଶ ପାଉଥିଲେ ହେଁ ବୈପ୍ଳବିକ ଆଭିମୁଖ୍ୟ ଗ୍ରହଣ କରି ସେମାନେ ଆତ୍ମପ୍ରକାଶ କରୁ ନ ଥିଲେ । ଏହି ପତ୍ରିକାରେ ଅନନ୍ତଙ୍କର ପ୍ରକାଶ ପାଇଥିଲା 'କୃଷକର ଜାଗୃତି' । ତା'ର ଗୋଟିଏ ପଦ –

''ଜୀବନ ଧରି ହେ ଢାଳିଲୁ ରକ୍ତ
ତୋଳିଲୁ ସଉଧମାଳା
ଆମରି ଲାଗିରେ ଶାସନ ଶକ୍ତ
ଆମେଇ ସର୍ବହରା ।

× × ×

ପଉଷ ପ୍ରଭାତେ କାଟିଲୁ ଶସ୍ୟ
ହସିଲେ ନିଖିଳବାସୀ
ଅତ୍ୟାଚାରୀର କରାଳ କବଳ
ନେଲାରେ ସକଳ ଗ୍ରାସୀ ।''

ଏପରି ପ୍ରଭାବଶାଳୀ ଗଣକବିତା ଏଥିପୂର୍ବରୁ ଓଡ଼ିଆ ସାହିତ୍ୟରେ ଲିଖିତ ହୋଇ ନ ଥିବା ଜଣାଯାଏ ।

ଅକ୍ଟୋବର ବିପ୍ଳବର ମହାନ୍ ବାର୍ତ୍ତା କବି ପ୍ରାଣକୁ ଉଦ୍‌ବେଳିତ କଲା । କବି ନିଜ ଦେଶର ନିର୍ଦ୍ଦିଷ୍ଟ ଚଉହଦି ମଧ୍ୟରେ ଆବଦ୍ଧ ରହିପାରିଲେ ନାହିଁ । କୃଷକ, ଶ୍ରମିକ, ମୂଲିଆମାନଙ୍କପାଇଁ ତାଙ୍କ ପ୍ରାଣ କାନ୍ଦିଲା । ଯେଉଁମାନଙ୍କ ଶ୍ରମରେ ସମାଜ ପରିପୁଷ୍ଟ ଆଉ ସମୃଦ୍ଧ, ସେମାନଙ୍କୁ ସୁବିଧାବାଦୀ ଗୋଷ୍ଠୀ ଦଳିଦେବା ବିରୋଧରେ ଉଦାତ୍ତ ବାଣୀ ଶୁଣାଇଲେ –

'' ଆମେ ମୂଲିଆର ଜାତି ଜାଗିବୁ
ମରୁଛୁ ତ ନିତି ଭୋକ ଉପାସରେ
ଥରେ ହେଲେ ଶିର ଟେକିବୁ ।
ଆମ ହାଡ ମାଂସେ ଯେ ଗଢ଼ିଲେ କୋଠା
ଆମ ଲୁହ ଶୋଷି ଯେ ହେଲେ ମୋଟା
ସେହି ଜମିଦାର ସାହୁକାରକୁଳ ଆଣ୍ଟପଣ
ସବୁ ସାରିବୁ ।''

ସେପର୍ଯ୍ୟନ୍ତ ଚାଷୀ ମୂଲିଆର କଥାକୁ ଏଭଳି ବଜ୍ରଗମ୍ଭୀର ଭାଷାରେ କେହି ଉଦ୍‌ଘୋଷଣା କରି ନ ଥିଲେ । ସମସ୍ତଙ୍କ କାନରେ ବାଜିଉଠିଲା ଏକ ନୂଆ ରାଗିଣୀ ... ନୂଆ ଯୁଗର ବାର୍ତ୍ତା ।

**ରକ୍ତଶିଖା**

୧୯୩୯ ମସିହାରେ ନବଯୁଗ ଗ୍ରନ୍ଥମାଳାର ପ୍ରଥମ ପ୍ରକାଶନ ଭାବରେ ଆତ୍ମପ୍ରକାଶ କରେ କବିତା ସଙ୍କଳନ 'ରକ୍ତଶିଖା' । ସେଥିରେ କବି ସଚ୍ଚି ରାଉତରାୟ ଚାରୋଟି ଓ ଅନନ୍ତ ଆଉ ଚାରୋଟି ବିପ୍ଳବୀ ସଙ୍ଗୀତ ଲେଖିଥିଲେ । ଅନନ୍ତଙ୍କ ସଙ୍ଗୀତ ହେଲା 'ମୁକ୍ତି ସଙ୍ଗୀତ', 'ଆଗେ ଚାଲ', 'ସର୍ବହରା' ଓ 'ଆମେ ମୂଲିଆର ଜାତି ଜାଗିବୁ' ।

'ମୁକ୍ତି ସଙ୍ଗୀତ' କବିତାଟି ସର୍ବହରାର ଆନ୍ତର୍ଜାତୀୟତା ଉପରେ ଆଧାରିତ । ଏଥିରେ ଦୁନିଆର ସକଳ ଶ୍ରମିକ, ଚାଷୀ ଓ ମଜୁରିଆଙ୍କୁ ଏକଜୁଟ ହେବାକୁ କବି ଆହ୍ୱାନ ଦେଇଛନ୍ତି । କବି ସର୍ବହରାମାନଙ୍କୁ ଆହ୍ୱାନ କରି ଗାଇଛନ୍ତି –

''ସନ୍ତକ ତୋର ହାତୁଡ଼ି ଦାଆ
ସମ୍ମୁଖେ ତୋର ଖୋଲିଛି ରାହା
ମନେରଖ ତୁହି ତୋହରି ସାହା
ଉଠାଅ ତୋର ଜୟକାର

× × ×

ତୋଳରେ ତୋ ହତିଆର ।''

'ଆଗେ ଚାଲ' କବିତାରେ ଶ୍ରେଣୀ ପାର୍ଥକ୍ୟକୁ ଦୂରେଇଦେବା ନିମନ୍ତେ ସଂଗ୍ରାମ ଚଳେଇ ରଖିବାପାଇଁ କବି ଶୁଣାଇଛନ୍ତି –

''ଧନିକଙ୍କଠାରୁ ଗୋଇଠା ଖାଇ
ରହନା ଆଉ ସ୍ଥିର
କମାଣ ପାଖେ ପତାଅ ଛାତି
ନିର୍ଭୀକ ହୁଅ ବୀର
ପ୍ରତି ନିମିଷେ ମରୁଛୁ ତୁ ତ
ତୋଳରେ ତୋର ଶିର
ପ୍ରତିକ୍ରିୟାର ତଣ୍ଟିଚିପି ଖେଳାଅ ପ୍ରାଣଧାର ।''

'ସର୍ବହରା' କବିତାରେ କବି ବିଷମ ସମାଜ ବ୍ୟବସ୍ଥା ଓ ସାମ୍ରାଜ୍ୟବାଦୀ ଇଂରେଜ ସରକାରଙ୍କୁ ଲକ୍ଷ୍ୟକରି ଗାଇଛନ୍ତି –

''ଆମ ଆଗେ ଲୋକେ ଉଡ଼ନ୍ତି ଆକାଶେ
ଚଢ଼ନ୍ତି ମଟର ଖେଳନ୍ତି ବତାସେ
କେଉଁ ଦୋଷେ ଆମେ ମରିବୁ ଉପାସେ
ପୋକ ମାଛି ପରି ସଢ଼ିବୁ ?''

ବସ୍ତୁତଃ 'ରକ୍ତଶିଖା' ସଙ୍କଳନରେ ସ୍ଥାନିତ ଅନନ୍ତଙ୍କ କବିତାଗୁଡ଼ିକରେ ଶୁଣିବାକୁ ମିଳେ ବିପ୍ଳବର ମାନ୍ତ୍ରିକ ତଥା ଅଙ୍ଗୀକାରବଦ୍ଧ ଏକ କବିର ଆବାହନୀ ସଙ୍ଗୀତର ଝଙ୍କାର । ଏହି କବିତାଗୁଡ଼ିକରେ 'ହାତୁଡ଼ି ଦାଆ', 'ହତିଆର' ପ୍ରଭୃତି ଶବ୍ଦ ପ୍ରୟୋଗ କବିଙ୍କର 'ବିଦ୍ରୋହୀ' ଭାବନାକୁ ଶାଣିତ କରିବାରେ ସହାୟକ ହୋଇଛି । ବିପ୍ଳବୀ ଏଥିରେ ଗଣମୁକ୍ତିର ଗୀତିକାର ସାଜିଛନ୍ତି ।

## ତର୍ପଣ କରେ ଆଜି

୧୯୪୯ ମସିହାରେ କବିତା ସଙ୍କଳନ 'ତର୍ପଣ କରେ ଆଜି' ପ୍ରକାଶ ପାଇଲା । ଗାନ୍ଧିଜୀଙ୍କ ହତ୍ୟାକାଣ୍ଡ ପୃଷ୍ଠଭୂମିରେ ଏହାର କବିତାଗୁଡ଼ିକ ରଚିତ । ବାପୁଜୀଙ୍କ ହତ୍ୟାକାଣ୍ଡରେ କବି ମର୍ମାହତ ହୋଇ ପ୍ରକାଶ କରିଛନ୍ତି –

''ପିତୃ ଶୋଣିତେ ଅନ୍ଧ ନୟନମାଜି
ତର୍ପଣ କରେ ଆଜି
ପିତୃଘାତୀ ଏ ଆତ୍ମଘାତୀରୁ ଜାତ
ଗଭୀର କୃଷ୍ଣ ଜୀବନ – ଯମୁନା ତୁଠେ
ହତାଶ ପ୍ରାଣର ମତ୍ତ ବତାସୀ ଉଠେ
ଚିତ୍ତେ ଥରଇ ପ୍ରଳୟ ଦୁଃଖୁ ତାତି ।''

ବାପୁଜୀଙ୍କ ନିଧନରେ କବି ହୃଦୟ ଶୋକାକୁଳ ହୋଇଉଠିଛି –

''କାହାପାଶେ କହ ଦମ୍ଭେ
ହୋଇବୁ ଛିଡ଼ା
ଢାଳିବୁ ଲୋତକ, ଖୋଲିବୁ ପାପର ବିଡ଼ା
ସକଳ ସ୍ନେହରୁ ବଞ୍ଚିତ ମନ ତାତି
ସବୁ ଅଳିଝଳି ସତେକି ଆମର ଶେଷ
ସକଳ ସୋହାଗ ହୃଦୟର ଦେଶ
ହତ୍ୟା ବିପାକେ ପଡ଼ି
ଉଷ୍ମଭାବେ ଜୀବନେ ସ୍ୱପ୍ନ କଡ଼ି ?''

'ଜାଗ ଜାଗ ଦେଶବାସୀ' କବିତାରେ ଗାନ୍ଧିଜୀଙ୍କ ଚିନ୍ତାଧାରା ଓ ଦର୍ଶନରେ ଉଦ୍‌ବୁଦ୍ଧ ହେବାପାଇଁ କବି ଜନସାଧାରଣଙ୍କୁ ଆହ୍ୱାନ କରିଛନ୍ତି ।

**ଶାନ୍ତି ଶିଖା**

୧୯୫୨ ମସିହାରେ 'ଶାନ୍ତି ଶିଖା' କବିତା ସଙ୍କଳନ ରଚିତ । ଏଥିରେ ଷୋହଳ ଗୋଟି କବିତା ସ୍ଥାନ ପାଇଛି । ଏହାର କେତୋଟି କବିତା 'ଆସିଛି ମୁଁ ଆସିଛି', 'ଶାନ୍ତି କପୋତ' ଯଥାକ୍ରମେ 'ଝଙ୍କାର' ଓ 'ନୂଆ ଦୁନିଆରେ' ପୂର୍ବରୁ ପ୍ରକାଶ ପାଇଥିଲା ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ସାରା ବିଶ୍ୱରେ ଆତଙ୍କ ଖେଳିଯାଇଥିଲା । ଭାରତ ମାଟିରେ ମଧ୍ୟ ଏହି ବିଶ୍ୱ ଯୁଦ୍ଧର ରଣଦୁନ୍ଦୁଭି ଶୁଣାଯାଇଥିଲା । ଓଡ଼ିଶାର ଉପକୂଳ ଆଡ଼କୁ ଜର୍ମାନ ରଣତରୀ ମୁହାଁଇଥିଲେ । ଇଂରେଜ ସରକାର ଓଡ଼ିଶାର ରାଜଧାନୀ କଟକରୁ ସମ୍ବଲପୁରକୁ ସ୍ଥାନାନ୍ତରିତ କରିଥିଲେ । ଅନନ୍ତ ଏହି ଆତଙ୍କ ଓ ସଙ୍କଟକୁ ଲକ୍ଷ୍ୟ କରିଥିଲେ । ଯୁଦ୍ଧର ଭୟାବହତା ମଧ୍ୟରେ କବି ଶାନ୍ତି ସାଧନାର ଯେଉଁ ମହାମନ୍ତ୍ର ପାଠ କରିଥିଲେ, ତାହା 'ଶାନ୍ତି ଶିଖା' ସଙ୍କଳନ କବିତାଗୁଡ଼ିକରେ ଧ୍ୱନିତ ହୋଇଛି ।

''ଶାନ୍ତି କପୋତ ଅବା
ଯାଆରେ ଉଡ଼ି ଯାଆରେ
ମରଣର ସୁଅ ଠେଲି
ଜୀବନର ରାହାରେ ଯାଆରେ
କେତେ ଗୁଳି ଗୋଳା ଝଡ଼େ
ହେମାଳିଆ ବତାସେ
କେତେ କଳାଗୋରା କେତେ
ହଳଦିଆ ଆକାଶେ ।''

'ଆହେ ମହାଗଣକ' କବିତାରେ କବି ଯୁଦ୍ଧଖୋରମାନଙ୍କୁ ଚେତାବନୀ ଦେଇଛନ୍ତି –

''ଆହେ ମହାଗଣକ, ଗଡ଼ିଯାଏ, ଗଡ଼ିଗଲା
ତୁମ୍ଭ ଖଡ଼ି ଗୋଟାଳି, ହତିଆରୀ ମସୁଧାର
ତୁମ୍ଭ ଖଡ଼ି ଗୋଟାକ, ଆସେ ହସ ଟମକ
ଝଡ଼ିଯାଏ, ଝଡ଼ିଯିବେ, ଝଡ଼ି ପୋକ ପରି ତୁମ
ଗୁଳିଗୋଳା ଫୁଟାଳି ।''

ପୁଣି – ''ଶାନ୍ତି ଆମ ତରୁଣ ସାଧନାରେ ସୃଜନର ବିଳାସ
ବୃଦ୍ଧ ମନେ ତାରୁଣ୍ୟର ଦ୍ୟୋତନା
ଶାନ୍ତି ଆମ ଶ୍ୱେତମଲ୍ଲୀ ଶୋଣିତାଶା ପଲାସ
ସୀମାହୀନ ଜୀବନର ନବ ନବ ଚେତନା ।''

'ଶାନ୍ତିଶିଖା' ପୁସ୍ତିକା ଆକାରରେ ସାହିତ୍ୟ ଜଗତରେ ଚହଳ ପକାଇ ଦେଇଥିଲା ।

ଆଲୋଚକ କୃଷ୍ଣପ୍ରସାଦ ପଟ୍ଟନାୟକ ଲେଖିଥିଲେ – ''ପ୍ରଗତିଶୀଳ ଆଧୁନିକ କବିତାରେ ଅନନ୍ତ ପଟ୍ଟନାୟକଙ୍କ 'ଶାନ୍ତି ଶିଖା' ଏକ ଯୁଗାନ୍ତର ଆଣିଦେଇଛି । ଯେଉଁମାନେ ଆଧୁନିକ କବିତାର ଭବିଷ୍ୟତ୍ ସମ୍ପର୍କରେ ସନ୍ଦିହାନ, ଯେଉଁମାନେ ପ୍ରଗତିଶୀଳ କବିତାର ଚିରନ୍ତନ ମୂଲ୍ୟ ସ୍ୱୀକାର କରିବାକୁ କୁଣ୍ଠିତ, ସେମାନଙ୍କପାଇଁ 'ଶାନ୍ତି ଶିଖା' ଏକ ଚାଲେଞ୍ଜ୍ । 'ଶାନ୍ତି ଶିଖା'ର କାବ୍ୟଧାରା ସମାଜ ଚେତନାରେ ସମୃଦ୍ଧ । ରାଜନୈତିକ ଚେତନାରେ ଶାଣିତ । ଏହା ଓଡ଼ିଆ କବିତାର ସମ୍ଭାବନାମୟ ଭବିଷ୍ୟତ୍‌ର ଏକ ନିର୍ଭର ପ୍ରତିଶ୍ରୁତି ।''

**କିଞ୍ଚିତ୍**

୧୯୫୯ ମସିହାରେ ପ୍ରକାଶ ପାଏ ଅନନ୍ତ ପଟ୍ଟନାୟକଙ୍କ 'କିଞ୍ଚିତ୍' ସଙ୍କଳନ । ଏଥିରେ ୨୫ ଗୋଟି କବିତା ସ୍ଥାନିତ ହୋଇଛି । ଏଥିରେ ଗଭୀର ସମାଜ ଚେତନା, ପ୍ରଗତିଶୀଳତା ସଙ୍ଗେ ସଙ୍ଗେ ଗଭୀର ଜୀବନବାଦ, ଗଭୀର ଆବେଗ, ଅନୁଭୂତିର ପରିଚୟ ମିଳେ ।

'ମୁଠିଏ ବୋଲି ହସ' ସେହିଭଳି ଏକ କବିତା । ଏଥିରେ କବିଙ୍କ ଆତ୍ମା କିପରି ସତେଜ, ସରଳ ଓ ସାବଲୀଳ – ତାହା ପ୍ରକାଶ ପାଇଛି ।

''ମୁଠିଏ ବୋଲି ହସ ଆଣିଚି ମୁଁ ମୁଠିଏ
ପଉଷର ପହଡ଼ ତୁମର ଭାକୁ
ଆରେ ଭାକୁ

× × ×

କବିତାର କବର ଖୋଲି
କୋକିଳର କୋଇଲି କାଟି
କୁହୁକ କୋହରେ ମୁଠିଏ ବୋଲି ହସ ଆଣିଚି
ମୁଁ ମୁଠିଏ .... ।''

କବିଙ୍କର କେତୋଟି କବିତାରେ ପଲ୍ଲୀପ୍ରାଣତା ପ୍ରକାଶ ପାଇଛି । 'ଅସରା ଶ୍ରାବଣରେ' ଭାଷାର ବିକାଶରେ, ଭାବର ବିନ୍ୟାସରେ ଯେଉଁ ନୂତନ ଶୈଳୀ ଆଣିଛନ୍ତି, ତାହା ଓଡ଼ିଆ କବିତା ରାଜ୍ୟରେ ଏକ ନୂତନ ପରମ୍ପରା ସୃଷ୍ଟି କରିଛି କହିଲେ ଚଳେ । ତା'ର ଉଦାହରଣ –

''ତୁମକୁ କାହିଁ କେବେ ଦେଖିଛି ନାହିଁ ମନେ
କି ଯାନିଯାତ ଅବା ମେଲଣ ମଉଛବେ
କା ସୁର-ଲୀଳା କା'ପୁର ଲଳନାଗୋ,
ଝରିଛି ଝରି ଧୂଳିର ସଉରଭେ ।''

ସେହିପରି 'ତୃଷ୍ଣା' କବିତାରେ ପ୍ରେମର ମାର୍ମିକ ବେଦନା ପ୍ରକାଶ ପାଇଛି – ଯାହା ପ୍ରେମକୁ ମହତରୁ ମହତ୍ତର, ଉଚ୍ଚରୁ ଉଚ୍ଚତର, ନିବିଡ଼ରୁ ନିବିଡ଼ତର କରିଛି । କବି ଲେଖିଛନ୍ତି –

''ଦେହ ମନ ଦୁହେଁ ଦୁହେଁରେ ଜଡ଼ିତ
ଏକ ଆନେ ତେଜି ଥାଏନା,
ଖାଲି କଳପନା ମନର ଆମୋଦେ
ହୃଦୟ ପୁଲକ ପାଏନା ।
ଦେହ ଗଲେ ସଖୀ ଯାଏ କଳପନା
ତୁଟେ ଲୋ ସକଳ ପ୍ରେମ ଆଳପନା,
ଏ ଜୀବନ ପରେ ଜୀବନ ନାହିଁଗୋ
ସପନ ପରିତେ ହଜନି
ଗଭୀର ହେଉଛି ରଜନୀ ।''

'ସ୍ୱପ୍ନ ଦେଖୁଛି' କବିତାରେ କବି ଏକ ଶୋଷଣମୁକ୍ତ ସମାଜର ସ୍ୱପ୍ନ ଦେଖିଛନ୍ତି । ସେହି ସମାଜରେ ଆତ୍ମପ୍ରକାଶ କରିବ ନୂତନ ଜୀବନ ରୀତି । ସେଠି ହିଂସା-ଦ୍ୱେଷର

ସ୍ଥାନ ନ ଥିବ । କୁଟୀରଠାରୁ ସହରତଳି ପର୍ଯ୍ୟନ୍ତ ସବୁଠି ଆତ୍ମପ୍ରକାଶ କରିବ ନୂତନ ଜୀବନର ବନ୍ଦନା । କବି ଗାଇଛନ୍ତି –

''ସ୍ୱପ୍ନ ଦେଖୁଛି – ସହର ପଲ୍ଲୀ କୋଳେ
ଜଳିଲା ମଣିଷ ମୃତ୍ୟୁ ବିଜୟୀ ପରି
ତରୁଣୀ ଅନାଏ ସୃଜନ ଆବେଶ ଭୋଳେ
ଫଗୁଣ ଅୟନେ ହାସ୍ୟ ପଡୁଛି ଝରି ।
ସ୍ୱପ୍ନ ଦେଖୁଛି ହିଂସାର ପରଶ ନାହିଁ
ଜାଣେନା ଜାତି ମୋ ମାଲିକ ମୂଲିଆ କଥା ।
ଦସ୍ୟୁ ବଣିକ ରାଜୁତି ପାଇବି ନାହିଁ
ସମାନ ସକଳେ ଉଚ୍ଚ ମଣିଷ ମଥା ।

'ଏଇ ଶରତର ସକାଳ ଉଖାରି ଦେଲି' କବିତାରେ କବି ପ୍ରକାଶ କରିଛନ୍ତି –

''ଏଇ ଶରତର ଆକାଶ ଉଖାରି ଦେଲି
ଉଖାରି ଦେଲିରେ ଜଡ଼ ସୂର୍ଯ୍ୟର ପ୍ରାଣ
ସଂଜ୍ଞାର କୋଳେ ଖେଳିବ କି ଦେବଯାନୀ
ଧରଣୀରେ ରଚି ପ୍ରୀତି କ୍ରାନ୍ତିର ଗାନ ।''

'ଚଇତି ଚିଠି' ଆଉ ଏକ ସୁନ୍ଦର କବିତା । ଏଥିରେ ମଧ୍ୟ କବି ପ୍ରେମର ଜୟଗାନ କରିଛନ୍ତି, ଯଥା –

''ଏ କି ନୂଆ ଲେଖିଛି ପ୍ରିୟତମା
ପୂର୍ଣ୍ଣଚ୍ଛେଦ ଖୋଜେ, ଖୋଜେ ମୁଁ ତହିଁ କମା
ପାଇନି ବେତନ ଯେ ଅଶିଣୁ ଅଛି ବାକି
ଉପାସେ ଶୁଖି ଶୁଖି ବୁଜିଲା ନିରିମାଖି
ଲେଖିଚି ଚିଠି ପଢ଼େ, ସାରଳା ଭାରତ କି,
ଗାଇବି କେଉଁ ରାଗେ ଜଳାଇ ଝକମକି ।
ଏ ଝୋଲାମରା ଦେହେ ଝୁଲୁଛି ସିନା ଡୋଳା
ଭୁଷୁଡ଼ା ରସ-କୂପ ହୁଏ କି ଆଉ ଖୋଳା ?''

ଆଲୋଚକଙ୍କ ମତରେ, ''କିଞ୍ଚିତ୍'ର ନାମକରଣ ତାଙ୍କ ସୃଷ୍ଟ କବିତା ସମ୍ମିଳନରେ ତଥା ଓଡ଼ିଆ କବିତାରାଜ୍ୟରେ ଏକ ନୂତନ ଆଙ୍ଗିକ ଓ ଆତ୍ମିକର ବାର୍ତ୍ତାବହ ... ।''

**ଅଲୋଡ଼ା ଲୋଡ଼ା**

ପାଞ୍ଚ ବର୍ଷ ପରେ ଆଉ ଏକ କବିତା ସଙ୍କଳନ 'ଅଲୋଡ଼ା ଲୋଡ଼ା' ୧୯୬୪ ମସିହାରେ ପ୍ରକାଶ ପାଇଥିଲା ।

'ଅଲୋଡ଼ା ଲୋଡ଼ା' ସଙ୍କଳନରେ 'ନିଜ ବନ୍ଦନା ପଢ଼େ', 'ଚାଲିଲି ମୁଁ ଚାଲିଲି', 'ବୃଦ୍ଧ ତୁମର ଦିବସ ଯାଇଛି ଚାଲି', 'ଧୂଳିର ଫୁଲ ମହକ' କବିତାମାନ ଅଛି ।

'ନିଜ ବନ୍ଦନା ପଢ଼େ' କବିତାରେ କବି ନିଜର ବନ୍ଦନା ପଢ଼ିଛନ୍ତି । ତା'ରି ଭିତରେ ରୂପାୟିତ ହୋଇଛି ସାମ୍ୟ, ମୈତ୍ରୀର ଝଙ୍କାର –

''ମୁଁ କି ଢାଳୁ ନାହିଁ କୁସୁମ ଅର୍ଘ୍ୟ
ଦଗ୍ଧ ନୟନ ପଥେ
ମୁଁ କି ଢାଳୁ ନାହିଁ ସୂର୍ଯ୍ୟ-ରୋଶନି
ହିମ କୋଣାର୍କ ରଥେ
ମୁଁ କି ଢାଳୁ ନାହିଁ ମୈତ୍ରୀ ମିନାର
ମମତା ସେତୁରେ
ଅଶ୍ରୁ-ଝରଣେ ତାନ
ମୁଁ କି ଢାଳୁ ନାହିଁ ଗହମ ହସରେ
ବିସ୍ମୃତ ଏସରାଜ ?''

'ବୃଦ୍ଧ ତୁମର ଦିବସ ଯାଇଛି ଚାଲି' କବିତାରେ କବି ପ୍ରଥାବଦ୍ଧତାକୁ କଠୋର ଭାବରେ ସମାଲୋଚନା କରିଛନ୍ତି । ଏଠାରେ ବୃଦ୍ଧ ହେଉଛି ପୁରୁଣାକାଳିଆ ସଂସ୍କୃତି ଓ ମୂଲ୍ୟବୋଧର ପ୍ରତୀକ । ସେମାନଙ୍କଠାରୁ ତାରୁଣ୍ୟର ଝଙ୍କାର ଓ ଉଲ୍ଲାସ ଆଶା କରିବା ବୃଥା –

''ସମାଜପତି ହେ ଧର୍ମର ବାନା ଟେକି
ନର ଦେବତାର ମସ୍ତକ ପଢ଼େ ଚାପ
ଶତ ସଂହିତା ପୁରାଣ ତନ୍ତ୍ର ଲେଖି
ନିଜ ଭୋଗ ଲାଗି ମନ୍ଦିରେ ଦେବ ଥାପ ।''

ଶିଳ୍ପୀର ଆତ୍ମା ସଙ୍ଗଠନରେ, ସଂଗ୍ରାମରେ । ଧୂଳିଧୂସର ରାସ୍ତାରେ ସେ ଘୂରିବୁଲେ ସିନା, କିନ୍ତୁ ସେ ଯେ ଧୂଳିର ଫୁଲ–ମହକ । ସବୁ ନିନ୍ଦା ଗାଳି ସହି ସେ କଅଁଳ ଶିଶୁ ମୁହଁରେ ନୂଆ କାହାଣୀ କହେ, ନିହାଣରେ ଗୀତ ରଚନା କରେ–

''ଧୂଳିର ଫୁଲ ମହକ ସେତ
କାହୁଁରେ ଆସି ଯାଏରେ କାହିଁ ?
× × ×
ପଟୁଆରରେ ସେ ଆଟୋପେ କେବେ
ଆସିନି ମହାଗରବେ ଧାଇଁ
ଶିଳ୍ପୀ ସେ ଯେ ଉହାଡ଼େ ବସି
ନିହାଣେ ଗୀତ ରଚଇ ଥାଇ ।''

ବିପ୍ଳବର ସ୍ୱର ଉଦାତ୍ତ ହୋଇଛି 'ଚାଲିଲି ମୁଁ ଚାଲିଲି' କବିତାରେ । ଏଠି ଆକାଶକୁ ମାଟିର ବକ୍ଷକୁ ଆଣିବା ଦରକାର ନାହିଁ । ଆକାଶ କୋଳରେ ଧରିବ ମାଟିକୁ । ମାଟି ହିଁ ଚିରନ୍ତନ । ମାଟିର ସ୍ୱାକ୍ଷରରେ ହିଁ ବିପ୍ଳବର ସ୍ୱାକ୍ଷର । ଏହା ରୂପାୟିତ ହୋଇଛି 'ଚାଲିଲି ମୁଁ ଚାଲିଲି' କବିତାରେ ।

''ଚାଲିଲି ମୁଁ ଚାଲିଲି
ଶବର ସଂସାର ପରେ ଶସ୍ୟର ସାଗର ସୃଜି
ଚାଲିଲି ମୁଁ ଚାଲିଲି
× × ×
ଥନର ବୃନ୍ତରେ ନିରକ୍ତ ଶିଶୁର ନିଶ୍ୱାସ ନଚାଇ
ନିଃସ୍ୱର ଶୋଷର ଲହୁର କଲ୍ୟାଣ ଆଣି
ଚାଲିଲି ମୁଁ ଚାଲିଲି
× × ×
ନଭର ଗର୍ଭରେ ରୋଇ ଭୂମିର ଭ୍ରୂଣ
ଚାଲିଲି ମୁଁ ଚାଲିଲି ।''

**ଛାଇର ଛିଟା**

'ଛାଇର ଛିଟା' କବିତା ସଙ୍କଳନ ୧୯୬୬ ମସିହାରେ ପ୍ରକାଶ ପାଇଥିଲା । ଏଥିରେ ପଇଁଚାଳିଶ ଗୋଟି କବିତା ସଙ୍କଳିତ ହୋଇଛି । ଏଥିରେ 'ମୁଁ ଏଇ ଜହ୍ନିଲି' ଭଳି ସାମ୍ୟବାଦୀ ଚିନ୍ତାଧାରାର କବିତା ଦେଖିବାକୁ ମିଳେ ।

ତା'ର ଉଦାହରଣ–

ମୁଁ ଏଇ ଜହ୍ନିଲି ଆରେ ।
ନୀଳାଚଳ ରକ୍ତାଚଳ ଆଜି ।
ମୁଁ ଏଇ ଜହ୍ନିଲି ଆରେ ।
ବ୍ୟର୍ଥତାରେ କଣ୍ଟକିତ, ସ୍ୱର୍ଣ୍ଣଫେଣି କୁସୁମେ କୁସୁମେ
ସ୍ନେହାସିକ୍ତ ସାୟାହ୍ନର ଦିଗନ୍ତ ଉଷୁମେ
କେତେ ଚୂର୍ଣ୍ଣ ଦିବସର ବାଲିବନ୍ତ କୂଳେ
ଯୁଗାବଧାର କୂଳେ
ମୁଁ ଏଇ ଜହ୍ନିଲି ଆରେ ।।

ଏତଦ୍‌ବ୍ୟତୀତ ଆଧୁନିକ ଜୀବନ ସୃଷ୍ଟି ସମ୍ବଳିତ ବହୁ କବିତା ଏଥିରେ ଅଛି । ସେଗୁଡ଼ିକ ହେଲା 'ଇତିହାସର ବୈଠକଖାନାରେ', 'ହାସପାତାଳରେ', 'କବିତାର କଡ଼ଦେଇ ପାର୍ଟିରେ' ପ୍ରଭୃତି ।

'ଇତିହାସର ବୈଠକଖାନା' କବିତାର ଗୋଟିଏ ପଙ୍‌କ୍ତି -

"ଅପ୍ରତ୍ୟାଶିତ ସାକ୍ଷାତ୍‌ରେ
ବୈଦେଶିକ କିନ୍ନରୀର କାଫେରେ କେଉଁଟି
ଅପରାଜିତାର ଆକର୍ଷଣ ଭଳି
ଦୃଷ୍ଟି ନେପଥ୍ୟରେ -
ନିର୍ବାକ୍ ସ୍ଥିତି ଟିକିଏ ମୁଁ
ସବାକ୍ ଖୁଞ୍ଚା ଟିକିଏ ମୁଁ
ବାସ୍ ଏତିକି ।"

'ନାଇଁ ତା'ର ନାଆଁ ନାଇଁ' କବିତାରେ କବିଙ୍କ ବନ୍ଦୀ ଜୀବନରେ ବ୍ୟର୍ଥତା, ଗ୍ଲାନି, ହତାଶା ରୂପ ପାଇଛି -

"× × ତୁମେ ତାକୁ ଦେଖି ନାହଁ
- ହୁଏତ ଦେଖିଛ
(ଦେଖିଥିଲେ ମାନିବାଟା ସଙ୍ଗତ ହେବନି ?)
ନ ଥିଲା ସେ ସଖା ତୁମ, ନ ଥିଲା ଦୋସର
ଥିଲା ସେ ରୁଆଏ ଲୁଣ
(ମଧୁର କାରିକ )
(ଜାଣେ, ସେ ଜଣାଇଁ ନାହିଁ
ଏଡ଼ିକି ଭୀରୁଟା !)
ଆଦରି ଥିଲା ସେ ତାକୁ,
ରକ୍ତ ଦେଇ କପାଳର
ଶ୍ରୀଚଙ୍ଗ ଚଟାଣେ !)

**ଅବାନ୍ତର**

'ଅବାନ୍ତର' ସଙ୍କଳନ ୧୯୭୮ ମସିହାରେ ପ୍ରକାଶ ପାଇଥିଲା । ଏଥିରେ ଥିବା କବିତାଗୁଡ଼ିକ ବହୁ ପରିମାଣରେ ବୌଦ୍ଧିକ ହୋଇଥିବା ଲକ୍ଷ୍ୟ କରାଯାଏ । ସେଥିରେ ସ୍ଥାନ ପାଇଛି ୨୨ଗୋଟି କବିତା । କବିତାଗୁଡ଼ିକରୁ କବିଙ୍କ ବ୍ୟାପକ ଜୀବନବୋଧ ଓ ସତ୍ୟନିଷ୍ଠତାର ପରିଚୟ ମିଳେ । 'ଜୀବନ' ସେହିଭଳି ଏକ କବିତା । ଜୀବନର ବନ୍ଦନାଗୀତ କବି ଏଥିରେ ଗାଇଛନ୍ତି -

"ଜୀବନ, ଜୀବନ ଚାହୁଁ ଆମେ
କଠିନ ଆଉ କୋମଳ
କୋମଳ ଆଉ କଠିନ
କେଜାଣି କେତେ ଫୁଲହାଗ୍ନିର ପଲ୍ଲବରେ
ଚଗଲାମିର ଚୁମାଭଳି କିଶୋରୀର
କିଶୋରୀର ଓଠରେ
ଜୀବନ ।"

'ଆମେ କ'ଣ ସ୍ଲୋଗାନ ଖାଲି ସ୍ଲୋଗାନ' କବିତାରେ ସେହି ସ୍ୱର ଝଙ୍କୃତ ହୋଇଛି, ଯଥା –

"ଆମେ କ'ଣ ସ୍ଲୋଗାନ, ଖାଲି ସ୍ଲୋଗାନ
ଆଖିର ଆଖି ଆଉ ଓଠର ?
ଆସ ଟିକେ ବସିବା,
ନିଶ୍ୱାସରେ ନିଶ୍ୱାସ ମିଶାଇ
ଝଡ଼ଟା ସୃଜନ କରି
ଅତୃପ୍ତ ସଞ୍ଜରେ ଏକ
ସଚେତ ବିସ୍ମୃତିର ବିଲୋଳ !
ଆସ ଟିକେ ବସିବା ।"

'ସେ ମେଞ୍ଚୁ ପ୍ରଭାରେ' ଭଳି ସାମ୍ୟବାଦୀ କବିତା ମଧ୍ୟ ଏଥିରେ ଅଛି । ଏଥିରେ କବିଙ୍କ କଣ୍ଠସ୍ୱର ଶାଣିତ ହୋଇପଡ଼ିଛି, ଯଥା –

"ତଫାତ୍ ହୁଅରେ ହତ୍ୟାକାରୀ
ତଫାତ୍ ହୁଅରେ ଅତ୍ୟାଚାରୀ
ତଫାତ୍ ହୁଅରେ ଚୋରା ଶୋଷକର ବାର୍ତ୍ତାଧାରୀ
ସେଇ ତ ଆମର/ଶାନ୍ତି ସମର
ଅକ୍ଟୋବର ସାମ୍ୟ ଅମର ।"

୧୯୮୧ ମସିହାରେ 'ଅବାନ୍ତର' ପୁସ୍ତକପାଇଁ କବି ଓଡ଼ିଶା ସାହିତ୍ୟ ଏକାଡେମୀଦ୍ୱାରା ପୁରସ୍କୃତ ହେଲେ ।

**ଅରଣ୍ଡୁ ରଣ୍ଡୁ**

'ଅରଣ୍ଡୁ ରଣ୍ଡୁ' ଆଉ ଏକ କବିତା ସଙ୍କଳନ । ସେଥିର ଗୋଟିଏ କବିତା 'ଆମେ ତ ଧରିଛୁ କ୍ରିୟା' ପଣ୍ଡିତ ଜବାହରଲାଲ ନେହରୁଙ୍କ ତିରୋଧାନରେ ରଚିତ ହୋଇଥିଲା । ଏହା ମଧ୍ୟ 'ଉତ୍କଳ ସାହିତ୍ୟ ସମାଜ'ର ସ୍ମରଣିକାରେ ପ୍ରକାଶ ପାଇଥିଲା ।

## ସୂତ୍ରଟିଏ ସୁକୃତି

୧୯୮୬ ମସିହାରେ ପ୍ରକାଶ ପାଏ ତାଙ୍କର ଶେଷ କବିତା ସଙ୍କଳନ 'ସୂତ୍ରଟିଏ ସୁକୃତି' । ଏହାର ମୁଖବନ୍ଧରେ କବି ଲେଖିଥିଲେ –

''ମୁଖ୍ୟତଃ ଟିକିଏ ଉଚ୍ଚ ଶ୍ରେଣୀର ପିଲାଏ ଏଗୁଡ଼ା ପଢ଼ି ନିଜର କିଶୋରସୁଲଭ ବୌଦ୍ଧିକ ଓ ମାର୍ମିକ ଅନୁଭୂତି ଆଣିପାରିଲେ ଲେଖକ ନିଜକୁ କେତେକାଂଶରେ କୃତାର୍ଥ ମନେ କରିବ ।'' 'ନୂତନ ଯୁଗର ଶିକ୍ଷାକୁଳ' କବିତାରେ କବି ଗାଇଛନ୍ତି –

''ଆମେ ସମାଜର ନୂଆ ନିଶ୍ୱାସ
ନୂଆ ଶପଥର ରୀତି
ଆମେଇ କରିବୁ ଶୂନ୍ୟ ଉଦାସ ପ୍ରାଣରେ ପ୍ରାଣରେ
ଭରା ଯଉବନ ଗୀତି
ଆମେଇ ଆଣିବୁ
ରବିକର ତହୁଁ
ମହାଶକ୍ତିର ବାଣୀ
ଆମେଇ ଆଣିବୁ
ଧରଣୀ ଗର୍ଭୁ ଅତଳ ସାଗରୁ
ନୂତନ ରତ୍ନ ଟାଣି ।''

## ଅନୁବାଦ କବିତା

ଅନନ୍ତ ପଟ୍ଟନାୟକ ମଧ୍ୟ ଗୋଟିଏ ଇଂରାଜୀ କବିତା 'Sigh' ର ଅନୁବାଦ କରିଛନ୍ତି । ତା'ର ନାମ ରଖିଛନ୍ତି 'ଆଃ ଶ୍ୱାସଟିଏ ଆଃ' ।

ଏତଦ୍‌ବ୍ୟତୀତ କବିଙ୍କ ଅପ୍ରକାଶିତ କବିତା ଓ ଡାଏରୀରେ ଥିବା କବିତାଗୁଡ଼ିକ ସଙ୍କଳିତ ହୋଇ 'ଅନନ୍ତ ପଟ୍ଟନାୟକ ରଚନା ସମଗ୍ର'ର ଦ୍ୱିତୀୟ ଭାଗରେ ପ୍ରକାଶିତ ହୋଇଛି ।

# କ୍ଷୁଦ୍ର ଗଳ୍ପ

ଅନନ୍ତ ପଟ୍ଟନାୟକ ମଧ୍ୟ ଗଳ୍ପ ରଚନାରେ ମନୋନିବେଶ କରିଛନ୍ତି । ଗଳ୍ପଗୁଡ଼ିକରେ ଶାସକ ବିରୋଧୀ ସ୍ୱର ଉଚ୍ଚାରଣ କରିବା ସଙ୍ଗେ ସଙ୍ଗେ ମଣିଷର ଅବଚେତନ ମନର ସ୍ୱରୂପକୁ ସେ ଗଭୀରଭାବେ ବିଶ୍ଳେଷଣ କରିଛନ୍ତି ।

୧୯୪୬ ମସିହାରେ ଲେଖକଙ୍କ ଗଳ୍ପ 'ସ୍ୱପ୍ନ ଓ ବାସ୍ତବ' ପ୍ରକାଶ ପାଇଥିଲା । ଏଥିରେ ଜଣେ ଧନିକ ଓ ବିପ୍ଳବୀ କମ୍ୟୁନିଷ୍ଟ ମଧ୍ୟରେ ଥିବା ଆଦର୍ଶଗତ ବ୍ୟବଧାନକୁ

ସ୍ପଷ୍ଟ କରିଦିଆଯାଇଛି । ଗଳ୍ପର ନାୟକ ପ୍ରବୀର – ଯେ କି ଜଣେ ସାମ୍ବାଦିକ ଓ କମ୍ୟୁନିଷ୍ଟ । ପ୍ରବୀର ବନ୍ଧୁମାନଙ୍କ ସହିତ ଆଲୋଚନା କଲାବେଳେ ଜର୍ମାନୀରେ ଦେଖାଦେଇଥିବା ନାଜି ଆନ୍ଦୋଳନ, ଇହୁଦୀମାନଙ୍କ ଉପରେ ଅତ୍ୟାଚାରୀ, ୟୁରୋପୀୟ ଅର୍ଥନୀତି ଉପରେ ତା'ର ପ୍ରଭାବ ପ୍ରଭୃତି ଚର୍ଚ୍ଚା କରିଛି । ଏଥିରୁ ତା'ର ଫାସୀବାଦ ବିରୋଧୀ ଦୃଷ୍ଟିକୋଣ ଜଣାପଡ଼େ । ତେବେ ବନ୍ଧୁ ଚିରଞ୍ଜୀବୀ ଓ ଅନସୂୟାଙ୍କ କଥୋପକଥନରେ କାମଲାଳସାର ଚିତ୍ର ପ୍ରଦାନ କରିଛନ୍ତି ।

୧୯୫୦ ମସିହାର ପରବର୍ତ୍ତୀକାଳରେ ଅନନ୍ତ 'ଫେରିଯା' ଗଳ୍ପରେ ଜଣେ ବିପ୍ଳବୀର ରୂପାନ୍ତରକୁ ଉପସ୍ଥାପନା କରିଛନ୍ତି । ଗଳ୍ପଟିର ନାୟକ ଏକଦା ପୁଞ୍ଜିବାଦ ଓ ବିଦେଶୀ ଶୋଷଣ ବିରୋଧରେ ସଂଗ୍ରାମ କରିଥିଲା । କିନ୍ତୁ ପରବର୍ତ୍ତୀକାଳରେ ତା'ର ରୂପାନ୍ତର ଘଟିଛି । ସେ ଲକ୍ସ ଓ ସନ୍‌ଲାଇଟର ବିଜ୍ଞାପନପାଇଁ ବୁଲିଛି । ଏହି କାର୍ଯ୍ୟ କରୁଥିଲାବେଳେ ଜଣେ ବୃଦ୍ଧା ସହିତ ସାକ୍ଷାତ୍ ହୋଇଛି । ବୃଦ୍ଧା ଜଣକ ଅତୀତର ସ୍ମୃତିଚାରଣ କରିଛନ୍ତି । ସେ ମଧ୍ୟ ବହୁତ ଦିନ ତଳେ ସାଇତି ରଖିଥିବା ହଳଦିଆ ଘଡ଼ି ଓ କେରାଏ ସୂତା ଗଳ୍ପର ନାୟକଙ୍କୁ ବଢ଼ାଇ ଦେଇଛନ୍ତି। ସେ ଘଡ଼ିରେ ଲେଖାଥିଲା, 'ଲୁଣ ନୁହେଁ ଯେ ରକ୍ତର ଛିଟା' । ବୃଦ୍ଧା ପୁଣି କହିଛନ୍ତି –

''ତୁ କ'ଣ ଭୁଲିଗଲୁ କିରେ ?''

**ଚଢ଼ା ଉତରା**

ଗାଳ୍ପିକଙ୍କର 'ଚଢ଼ା ଉତରା' ଗଳ୍ପ ସଂକଳନଟି ୧୯୬୭ ମସିହାରେ ପ୍ରକାଶ ପାଇଥିଲା । ଏଥିରେ 'ମର୍ଡରର', 'ଫେରିଆ', 'ଚଢ଼ା ଉତରା', 'ସଂଗ୍ରାମ', 'ଗପ ନୁହେଁ ଆଦୌ', 'ବିଡ଼ମ୍ବନା', 'ଏ ମନ ପାଞ୍ଚେ ନାହିଁ ଯାହା', 'ଯେତେ କୋଡୁ ବାଗୁଡୁ ଗୁଡୁ' ପ୍ରଭୃତି ଆଠୋଟି ଗଳ୍ପ ସ୍ଥାନିତ ହୋଇଛି । ଏହି ଗଳ୍ପଗୁଡ଼ିକରେ ସାମ୍ୟବାଦୀ ଭାବାଦର୍ଶକୁ ଗାଳ୍ପିକ ରୂପ ଦେଇଛନ୍ତି । ତେବେ ଦୁଇ ବିରୋଧୀ ସତ୍ତାର ସଙ୍ଗଠନକୁ ସେ ସୁନ୍ଦର ଭାବରେ ଫୁଟାଇଛନ୍ତି । ଗଳ୍ପର ନାୟକ ଅଜିତ୍ ବିପ୍ଳବୀ ସଙ୍ଗଠନର ନେତା । ସେ ଥାନା ପୋଡ଼ି, ଜେଲ ପାଚିରି ଭାଙ୍ଗିବା ପ୍ରଭୃତି ଯୋଗୁଁ ଜେଲ୍‌କୁ ଆସିଛି । ଅନ୍ୟ ଏକ ଚରିତ୍ର ନଟ ମହାନ୍ତିଙ୍କୁ ହତ୍ୟା କରି ଜେଲକୁ ଆସିଛି । ସେ ଜେଲ୍‌ରେ ମର୍ଡରରଭାବେ ପରିଚିତ ହୋଇଛି । ମର୍ଡରର ହେଲେ ମଧ୍ୟ ସେ ଅଜିତ୍‌କୁ ସାହାଯ୍ୟ କରିଛି । କିନ୍ତୁ ଅଜିତ୍ ଜେଲ୍‌ରୁ ଖଲାସ ହେଲାପରେ ପ୍ରେମିକା ରୁବିକୁ କହିଛି ଯେ ସେମାନଙ୍କୁ ପଇସା କମେଇବାକୁ ପଡ଼ିବ । କିନ୍ତୁ ରୁବି ତା'ର ପ୍ରତିବାଦ କରିଛି । ସବୁଦିନପାଇଁ ସେ ଅଜିତ୍‌କୁ ଛାଡ଼ି ଚାଲିଯାଇଛି । ଗାଳ୍ପିକ ଅଜିତ୍‌ର ବିପ୍ଳବୀ ସତ୍ତାସହ ଧନଶାଳୀ ବ୍ୟକ୍ତିସତ୍ତାର ଦ୍ୱନ୍ଦ୍ୱ ଓ ବିରୋଧକୁ ଉପସ୍ଥାପିତ କରିଛନ୍ତି ।

'ଚଢ଼ା ଉତରା' ଗଳ୍ପରେ ମିଲିଟାରୀ ବାରାକ୍ସ ମଧ୍ୟରେ ସିପାହି ନୟନ ଝିଅ କଥା ଭାବୁଥିଲା । ତା' ସାଙ୍ଗ ମଦନ ବିପ୍ଳବୀ ସଙ୍ଗଠନର ନେତା ଶୁଣିଛି ଯେ କିପରି

ମିଲିଟାରୀ ପୁଲିସମାନେ ସର୍ଜେଣ୍ଟର ହୁକୁମ ମାନି ମାର୍ଚ୍ଚ କରିଚାଲିଥିଲେ ଆଉ ଆନ୍ଦୋଳନକାରୀଙ୍କୁ ଲାଠି ଓ ଗୁଳି ସାହାଯ୍ୟରେ ଜବତ କରିଥିଲେ । ପୁଣି ସେହି ଗାଁର ଜଣେ ନାରୀକୁ ସମୂହଭାବେ ଧର୍ଷଣ କରିଥିଲେ ଓ ତା'ର ସାନ ଝିଅଟାକୁ ସେଇ ନାରୀ କୋଳରୁ ଟାଣିଆଣି ଫିଙ୍ଗି ଦେଇଥିଲେ । ଗାଁର ନାମ ସୁଜନପୁର ବୋଲି ଯେତେବେଳେ ସିପାହିଟି ଶୁଣିଛି, ସେ ଆତଙ୍କରେ ଶିହରିଉଠିଛି । ଏହାପରେ ମାନସିକ ଯନ୍ତ୍ରଣାର ଶିକାର ହୋଇ ନିଜ ଝିଅ ସୁନି ବୋଲି ଭାବୁଥିବା ବସ୍ତିର ଗୋଟିଏ ଝିଅକୁ ଗୁଳି କରି ହତ୍ୟା କରିଛି । ତା'ର କାରଣ ଯେ ସେହି ଝିଅଟି ଓ ତା'ର ମାଆ ସାଙ୍ଗ ସିପାହିମାନଙ୍କର ଶିକାର ହେବ । ତେଣୁ ସେ ତାହା କରିବାକୁ ଦେବ ନାହିଁ । ସର୍ଜେଣ୍ଟ ମେଜର ହାବିଲଦାର ନୟନର 'ପିଠି ଥାପୁଡ଼େଇ କହିଛନ୍ତି' 'ସାବାସ୍' ।

'ଅସହଯୋଗ କରୁଥିବା ବସ୍ତିବାସିନ୍ଦାଙ୍କୁ ଏହା ଉପଯୁକ୍ତ ଶିକ୍ଷା' ।

ସଙ୍କଳନର ଅନ୍ୟ ଏକ ଗଳ୍ପ ହେଉଛି 'ଗପ ନୁହେଁ ଆଦୌ' । ଏହା ସତ୍ୟ ଘଟଣା ଉପରେ ରଚିତ ହୋଇଥିବା ଅନୁମାନ କରାଯାଏ ।

ସ୍ୱାଧୀନତା ଆନ୍ଦୋଳନରେ ଗାଁର ଧଡ଼ି ଯୋଗ ଦେଇଛି । ସେ ଜମିଦାର ପିଲା । ସେହି ଗାଁର ଦରିଦ୍ର ଗଣେଶ ମଧ୍ୟ ସେଥିରେ ଯୋଗ ଦେଇଛି । ସେ କଂଗ୍ରେସର ଫୌଜପୁର ଅଧିବେଶନରେ ଯୋଗ ଦେବାକୁ ଯାଇଛି । ସେଠାରେ ସେ ଅଟୁଆ ହୋଇଥିବା କଂଗ୍ରେସ ପତାକାକୁ ନିର୍ଭୀକ ଚିତ୍ତରେ ସଜାଡ଼ି ଦେଇଛି । ସେ ସେଠାରେ ଥିଲାବେଳେ ଧଡ଼ିର ମା' ଜମିଦାର କ୍ଷେତ୍ରମଣି ଗଣେଶ ପାଖକୁ ପତ୍ର ଦେଇଛନ୍ତି । ଖଜଣା ନ ଦେବାରୁ ଘରବାଡ଼ି ନିଲାମ କରିନେଇଛନ୍ତି ବୋଲି ଜଣାଇଛନ୍ତି । ମାତ୍ର ଦୟାପରବଶ ହୋଇ ବଞ୍ଚିଥିବା ପର୍ଯ୍ୟନ୍ତ ତାକୁ ସେ ଘରେ ରହିବାକୁ ଅନୁମତି ଦେଇଛନ୍ତି । କିନ୍ତୁ ତା'ର ମୃତ୍ୟୁପରେ ତା'ର ସ୍ତ୍ରୀ କିମ୍ବା ତା'ର ବଂଶଧର କେହି ସେଥିରେ ବସବାସ କରି ଭୋଗଦଖଲ କରିପାରିବେ ନାହିଁ ବୋଲି ଜଣାଇ ଦେଇଛନ୍ତି । ଗଣେଶ ଏ ପତ୍ର ପାଇ ପ୍ରାଚୀ ନଦୀର ଗଣ୍ଡକୁ ଡେଇଁ ଆତ୍ମହତ୍ୟା କରିଛି । ମୃତ୍ୟୁର କାରଣ ଉଦ୍‌ଘାଟନ କରିଛି ଗଣେଶର ସ୍ତ୍ରୀ ।

**ଫଲ୍‌ଗୁ ଧାରା**

'ଫଲ୍‌ଗୁ ଧାରା' ଗଳ୍ପ ସଙ୍କଳନରେ ସାତ ଗୋଟି ଗଳ୍ପ ସ୍ଥାନ ପାଇଛି । ସେଗୁଡ଼ିକ ହେଲା 'ଫଲ୍‌ଗୁ ଧାରା', 'ଛାୟାହୀନ କାୟା', 'ତାରକସି ଫୁଲ', 'ପ୍ଲାଟ୍‌ଫର୍ମ', 'ଯାତ୍ରା', 'ଜହ୍ନରାତି' ଓ 'ଶୁଭା' । 'ଫଲ୍‌ଗୁ ଧାରା' ଗଳ୍ପଟି ନବଯୁଗ ସାହିତ୍ୟ ସଂସଦର ମୁଖପତ୍ର 'ଆଧୁନିକ'ରେ ୧୯୩୬ ମସିହାରେ ପ୍ରଥମେ ପ୍ରକାଶଲାଭ କରିଥିଲା । ଏସବୁ ଗଳ୍ପଗୁଡ଼ିକ ବାସ୍ତବବାଦୀ ପଟ୍ଟଭୂମି ଉପରେ ରଚିତ ।

'ଫଲ୍‌ଗୁ ଧାରା' ଗଳ୍ପରେ ଗାଳ୍ପିକ କହିଛନ୍ତି ନୂଆ ଘର କରିବାକୁ ଗଲାବେଳେ ପୁରୁଣାପାଇଁ ମନ ଟାଣେ । ତଥାପି ନୂଆ ଘର ତୋଳିବାକୁ ପଡ଼େ ଆଉ କିଛି ଦିନ ପରେ ସେ କଥା ଭୁଲି ହୋଇଯାଏ । ଦାରିଦ୍ର୍ୟର କଶାଘାତରେ ଗୋଟିଏ ବାୟାଣୀ କୋଳରେ ମଲା ଶିଶୁଟିଏ ଦେଖିଛନ୍ତି ଗାଳ୍ପିକ । ସେ ନିଜକୁ ହତ୍ୟାକାରୀ ମନେ କରିଛନ୍ତି । 'କାୟାହୀନ ଛାୟା'ରେ ଗାଳ୍ପିକଙ୍କର ଗଭୀର ମର୍ମବେଦନା ପ୍ରକାଶ ପାଇଛି । 'ପ୍ଲାଟଫର୍ମ' ଗଳ୍ପରେ ଗାଳ୍ପିକ ଗୋଟିଏ ଅଭାବୀ ମଣିଷର ଚିତ୍ର ଉପସ୍ଥାପନ କରିଛନ୍ତି – ଯେ କି ପ୍ଲାଟଫର୍ମକୁ ନିଜର ବାସସ୍ଥାନରୂପେ ବାଛି ନେଇଛି । 'ତାରକସି ଫୁଲ' ଗଳ୍ପରେ ଲେଖକ ପୁଞ୍ଜିର ଫିସାଦ ଓ କୌଶଳକୁ ପଦାରେ ପକାଇ ଦେଇଛନ୍ତି । ଅନ୍ୟାନ୍ୟ ଗଳ୍ପ, ଯଥା – 'ଜହ୍ନରାତି', 'ଶୁଭ ଯାତ୍ରା' ପ୍ରଭୃତି ବାସ୍ତବଧର୍ମୀ ହୋଇଛି ।

ପ୍ରବନ୍ଧ

ଅନନ୍ତ ପଟ୍ଟନାୟକ ମଧ୍ୟ ଉଚ୍ଚ ଧରଣର ପ୍ରାବନ୍ଧିକ ଥିଲେ । ୧୯୩୦ ମସିହାଠାରୁ ୧୯୮୦ ମସିହା ପର୍ଯ୍ୟନ୍ତ ଅର୍ଥାତ୍ ଦୀର୍ଘ ଅର୍ଦ୍ଧଶତାବ୍ଦୀ କାଳ ସେ ବିଭିନ୍ନ ସମୟରେ ରାଜନୈତିକ ଘଟଣାବଳୀକୁ ନେଇ ପ୍ରବନ୍ଧମାନ ଲେଖିଛନ୍ତି । 'ଆଧୁନିକ' ପତ୍ରିକାରେ ତାଙ୍କର ଦୁଇଟି ପ୍ରବନ୍ଧ ପ୍ରକାଶିତ ହୋଇଥିଲା । ତାହାହେଲା, 'ସାହିତ୍ୟରେ ଶ୍ରେଣୀପରଦା' ଓ 'ମାକ୍ସିମ୍ ଗର୍କି' । ସମାଜ ବ୍ୟବସ୍ଥାରେ ବିବର୍ତ୍ତନ ଅନୁଯାୟୀ ଯୁଗୀୟ ମୂଲ୍ୟବୋଧ ରୂପାୟନରେ ପାର୍ଥକ୍ୟ ଥିବା ସେ ଦର୍ଶାଇଛନ୍ତି । ରାଜା, ପୁରୋହିତ ସମ୍ପ୍ରଦାୟର ସ୍ୱାର୍ଥ କିପରି ସାମନ୍ତବାଦୀ ଅଧ୍ୟୁଷିତ ସମାଜର ସାହିତ୍ୟରେ ପରିଲକ୍ଷିତ, ସେ ସମ୍ପର୍କରେ ପ୍ରାବନ୍ଧିକ ଆଲୋଚନା କରିଛନ୍ତି । ସେହିପରି ପୁଞ୍ଜିବାଦୀ ସମାଜ ବ୍ୟବସ୍ଥାରେ ସାହିତ୍ୟ କିପରି ପୁଞ୍ଜିବାଦର ବଚସ୍କର ହୋଇଛି, ତା'ର ଚିତ୍ର ଦେଇଛନ୍ତି । ଶ୍ରେଣୀ ସମ୍ପର୍କ କିପରି ସମାଜ ବୁକୁରେ ଚିରଦିନପାଇଁ ଲାଗିରହିଛି ଓ ତା'ର ଅବସାନ କିପରି ଜରୁରି, ତା'ର ବିସ୍ତୃତ ଆଲୋଚନା କରିଛନ୍ତି ଏହି ପ୍ରବନ୍ଧରେ । ମ୍ୟାକ୍ସିମ୍ ଗର୍କିଙ୍କର ପ୍ରବନ୍ଧରେ ପ୍ରାବନ୍ଧିକ ଗର୍କିଙ୍କର ଜୀବନୀ ଓ ସାହିତ୍ୟକୃତିଗୁଡ଼ିକର ଆଲୋଚନା କରିଛନ୍ତି ।

କମ୍ୟୁନିଷ୍ଟ ମୁଖପତ୍ର 'ନୂଆ ଦୁନିଆ' ଓ 'ଭଗବତୀ ସଞ୍ଚୟନ'ରେ ଅନନ୍ତ ପଟ୍ଟନାୟକଙ୍କର ଦୁଇ ଗୋଟି ପ୍ରବନ୍ଧ ପ୍ରକାଶ ପାଇଥିଲା । ସେ ଦୁଇଟି ହେଲା, 'ସାହିତ୍ୟର ଧାରା କ'ଣ' ଓ 'ସ୍ମୃତିରୁ ଖିଏ' । 'ସ୍ମୃତିରୁ ଖିଏ' ପ୍ରବନ୍ଧରେ ଓଡ଼ିଶାର ବାମପନ୍ଥୀ ଆନ୍ଦୋଳନର କର୍ଣ୍ଣଧାର ଭଗବତୀଚରଣ ପାଣିଗ୍ରାହୀଙ୍କ ସ୍ମୃତିଚାରଣ କରିଛନ୍ତି । ସେ ଯଥାର୍ଥରେ କହିଛନ୍ତି – ''ଭଗବତୀଙ୍କ ଅକାଳ ମୃତ୍ୟୁପରେ ମନେହୁଏ ତାଙ୍କର ପ୍ରକୃତ ମହତ୍ତ୍ୱ ଉପଲବ୍ଧି କରିଥିଲେ ତାଙ୍କର ପରିବାରର ଓ ରାଜନୀତି କ୍ଷେତ୍ରର ବହିର୍ଭୂତ ବନ୍ଧୁଗଣ ।''

'ସାହିତ୍ୟର ଧାରା କ'ଣ', ପ୍ରବନ୍ଧରେ ପୁରାତନ ସାହିତ୍ୟ ଓ ପ୍ରଗତିଶୀଳ ସାହିତ୍ୟ ମଧ୍ୟରେ ଥିବା ପାର୍ଥକ୍ୟକୁ ଅନନ୍ତ ପଟ୍ଟନାୟକ ସ୍ପଷ୍ଟ କରିଦେଇଛନ୍ତି । ସେ କହିଛନ୍ତି ଯେ ପୁରାତନ ସାହିତ୍ୟ ହିଂସୁକ, ପ୍ରଗତିଶୀଳ ସାହିତ୍ୟ ନିର୍ଭୀକ । ପୁରାତନ ସାହିତ୍ୟ ମରଣୋନ୍ମୁଖୀ; କିନ୍ତୁ ନିପୀଡ଼ିତ ଜନସାଧାରଣଙ୍କ ଆଶା-ଆକାଂକ୍ଷା ଓ ନୂତନ ଜୀବନର ଲକ୍ଷ୍ୟକୁ ରୂପାୟିତ କରି ପ୍ରଗତିଶୀଳ ସାହିତ୍ୟ ମେଘମହ୍ଲାର କଣ୍ଠରେ ଗାନ କରୁଛି ।

ଆଲୋଚକ ବିଜୟ କୁମାର ଶତପଥୀଙ୍କ ମତରେ ଅନନ୍ତ ପଟ୍ଟନାୟକଙ୍କ ପ୍ରବନ୍ଧ ସଂଖ୍ୟାରେ ସ୍ୱଳ୍ପ ହେଲେ ହେଁ, ସେଗୁଡ଼ିକ ତାଙ୍କ ବିଦ୍‌ବତ୍ତାର ସ୍ୱାକ୍ଷର ବହନ କରେ ।

**ସମ୍ବାଦ ସାହିତ୍ୟ**

ଅନନ୍ତ ପଟ୍ଟନାୟକ 'ସମାଜ'ରେ ସମ୍ବାଦ ବିଭାଗର ସହକାରୀ ସମ୍ପାଦକଭାବେ କାର୍ଯ୍ୟ କରିଥିବା ପୂର୍ବରୁ ବର୍ଣ୍ଣିତ । ସେହି ସମୟରେ ପ୍ରଥମେ 'ଝିଟିପିଟି କହେ' ଶିରୋନାମରେ 'ଅଣାକାର' ଛଦ୍ମ ନାମରେ ସାମ୍ପ୍ରତିକ ଘଟଣାବଳୀ ଉପରେ ଲେଖା ଆରମ୍ଭ କରିଥିଲେ । ଅନ୍ୟ ଏକ ପତ୍ରିକା 'ପ୍ରଜାତନ୍ତ୍ର'ରେ 'ଶ୍ରୀ ସଞ୍ଜୟ' ଛଦ୍ମନାମରେ ଧାରାବାହିକ ଭାବରେ ଲେଖୁଥିଲେ । × × 'ସତ୍ୟବାଦୀ' ପତ୍ରିକାର ପାକ୍ଷିକ 'ନୂତନପ୍ରସ୍ଥ' ସେ ସମୟରେ ଶୁଚିମନ୍ତ ଓ ରୁଚିମୟ ସାହିତ୍ୟ ଆଲୋଚନା ପାକ୍ଷିକ ଭାବରେ ସର୍ବଜନାଦୃତ ହୋଇଥିଲା । ବହୁ ସମ୍ବାଦଧର୍ମୀ ସାହିତ୍ୟ ରଚନା ସେଥିରେ ପ୍ରକାଶ ପାଇଥିଲା । ତତ୍କାଳୀନ 'ସମାଜ'ରେ ପ୍ରକାଶ ପାଇଥିବା କେତୋଟି ପ୍ରକ୍ଷିପ୍ତ ଅଂଶ 'ଅନନ୍ତ ପଟ୍ଟନାୟକଙ୍କ ରଚନା ସମଗ୍ର'ର ଚତୁର୍ଥ ଭାଗରେ ସଙ୍କଳିତ ହୋଇଛି । ମାତ୍ର ତାହା ସମସ୍ତ ନୁହେଁ ବୋଲି ଆଲୋଚକ ଅବନୀ ବରାଳ ମତ ଦେଇଛନ୍ତି ।

## ନାଟକ

ଅନନ୍ତବାବୁ ଜଣେ ନାଟ୍ୟକାର ମଧ୍ୟ ଥିଲେ । ୧୯୪୦ ମସିହାରେ ଅନୁଗୁଳ ଜେଲରେ ନାଟକ ରଚନା କରିଥିଲେ – 'ରାବଣ' । ଏହି ନାଟକରେ ପୌରାଣିକ ରାବଣ ଘଟଣା ଓ ଚରିତ୍ର ଉପଲକ୍ଷ୍ୟ ମାତ୍ର । ନାଟ୍ୟକାର ଲଙ୍କାପୁରୀରେ ସଂଘଟିତ ଏକ ରାଷ୍ଟ୍ର ବିପ୍ଳବର ସୂଚନା ଦେଇଛନ୍ତି । ବିଭୀଷଣ, ତ୍ରିଜଟା ପ୍ରଭୃତିଙ୍କର ରାବଣରାଜ ବିରୋଧରେ ଅସନ୍ତୋଷକୁ ଗଣଶକ୍ତିର ଅସନ୍ତୋଷ ସହିତ ତୁଳନା କରିଛନ୍ତି । ବାନର ବାହିନୀ ସହିତ ରାମ ଓ ଲକ୍ଷ୍ମଣ ରାବଣ ବିରୋଧରେ ଯୁଦ୍ଧ ଘୋଷଣା କରିଛନ୍ତି । ରାବଣର ପତନ ହୋଇଛି । ପ୍ରତ୍ୟେକ ଚରିତ୍ରକୁ ଆଧୁନିକ ଅବବୋଧରେ ମଣ୍ଡିତ କରି ଖୁବ୍ ଯୁକ୍ତିନିଷ୍ଠଭାବେ ଉପସ୍ଥାପନ କରିଛନ୍ତି ନାଟ୍ୟକାର । ନାଟକ ବର୍ଣ୍ଣିତ ସମସ୍ୟା ଚିରନ୍ତନ ମାନବ ଜାତିର ସମସ୍ୟା ଭାବରେ ପ୍ରତିପନ୍ନ ହୋଇଛି ।

'ରାବଣ' ସାଂସ୍କୃତିକ ଅପରହସ୍ୟ କାରଣର ପ୍ରଥମ ଦସ୍ତାବିଜ୍ ବୋଲି ଡଃ ରମେଶ ପ୍ରସାଦ ପାଣିଗ୍ରାହୀ ମତ ଦେଇଛନ୍ତି ।

୧୯୪୦ ମସିହାରେ ରଚିତ 'ରାବଣ' ନାଟକଟି ପ୍ରାୟ ୫୩ ବର୍ଷ ପରେ ୧୯୯୩ ମସିହାରେ ଆକାଶବାଣୀ କଟକ କେନ୍ଦ୍ରରୁ ପ୍ରଚାରିତ ହୋଇଥିଲା । ସେତେବେଳକୁ ନାଟ୍ୟକାର ଇହଧାମରେ ନ ଥିଲେ ।

## ଚିରି ଅନ୍ଧାର ରାତି

ଭାରତୀୟ ଗଣନାଟ୍ୟ ସଂଘ (IPTA) ର ଯୁଗ୍ମ ସାଧାରଣ ସମ୍ପାଦକ ଗୋପାଳ ଘୋଷ, ଅଶୋକ ରାଓ, ଅଧ୍ୟାପକ ଅବନୀ ବରାଳ ପ୍ରଭୃତି ଅନନ୍ତ ପଟ୍ଟନାୟକଙ୍କ ସାନଭାଇ ଗୁରୁଚରଣଙ୍କୁ ସାଙ୍ଗରେ ଧରି ଚଣାହାଟ ଗଲେ ଓ ଅନନ୍ତଙ୍କୁ ଏକରକମ ଜୋର୍ ଜବରଦସ୍ତ କରି କଟକ ଆଣିଲେ । ଗୋପାଳ ଘୋଷ ଓ ଜନତା ରଙ୍ଗମଞ୍ଚର ନିର୍ଦ୍ଦେଶକ ଚିତ୍ତରଞ୍ଜନ ଶତପଥୀ ପ୍ରଭୃତିଙ୍କ ସଙ୍ଗେ ଅନନ୍ତଙ୍କ ଆଲୋଚନା ହେଲା । ଶେଷରେ ଅନନ୍ତ ନାଟ୍ୟ ରଚନାରେ ମନ ଦେଲେ ଓ ପ୍ରାୟ ଦୁଇ ତିନି ମାସ ପରେ ନାଟକ ଲେଖା ଶେଷ କଲେ । ଅଧ୍ୟାପକ ବରାଳ ନାଟକର ନାମକରଣ କଲେ, 'ଚିରି ଅନ୍ଧାର ରାତି' । ଅନନ୍ତଙ୍କ ମନକୁ ମଧ୍ୟ ନାଁଟା ପାଇଲା ।

'ଚିରି ଅନ୍ଧାର ରାତି'ରେ ତହସିଲଦାରମାନଙ୍କ ଅତ୍ୟାଚାର ଓ ସେମାନଙ୍କ ବିରୋଧରେ ଚାଷୀର ସଂଗ୍ରାମ ବର୍ଣ୍ଣିତ ।

ନାଟକର ଶେଷରେ ଏକ ରକ୍ତାକ୍ତ ସଂଘର୍ଷର ଚିତ୍ର ଦିଆଯାଇଥିଲା । ଗୁଳି ଚାଳନା ଓ ଖେତରେ ଟ୍ରାକ୍ଟର ମାଡ଼ି ଚାଲିବା ଆଦି ଦେଖାଇ ଦିଆଯାଇଥିଲା । ରକ୍ତାକ୍ତ ଓ ଆହତ ହେଲେ ମଧ୍ୟ ଚାଷୀମାନେ ଶେଷ ନିଶ୍ୱାସ ପର୍ଯ୍ୟନ୍ତ ସଂଗ୍ରାମ କରିବାକୁ ପ୍ରତିଜ୍ଞାବଦ୍ଧ ଥିଲେ ।

'ଚିରି ଅନ୍ଧାର ରାତି' କିନ୍ତୁ ମଞ୍ଚସ୍ଥ ହୋଇପାରି ନ ଥିଲା ।

ଏ ଘଟଣା ପରେ ପରେ ସରକାରଙ୍କ ପକ୍ଷରୁ ଗୋଟିଏ ଏକାଙ୍କିକା ରଚନା କରିବାପାଇଁ ବରାଦ ମିଳିଲା । ଅନନ୍ତ ମଧ୍ୟ ରଚନା କଲେ – 'ପଞ୍ଚଶୀଳ' । ପ୍ରଧାନମନ୍ତ୍ରୀ ନେହରୁଙ୍କ 'ପଞ୍ଚଶୀଳ' ନୀତି ଉପରେ ଏହା ଆଧାରିତ ଥିଲା । ମାତ୍ର ତାହାକୁ ମଞ୍ଚସ୍ଥ କରିବାପାଇଁ ପୋଲିସ ଅନୁମତି ଦେଇ ନ ଥିଲା ।

ଅନନ୍ତବାବୁ ବିରକ୍ତିରେ କହିଥିଲେ – ''ପଞ୍ଚଶୀଳା ନୁହେଁ ତ – ଏଇଟା ପଞ୍ଚକୀଳା ।''

ଦୁର୍ଭାଗ୍ୟବଶତଃ 'ପଞ୍ଚଶୀଳ' କ୍ଷୁଦ୍ର ନାଟକର ପାଣ୍ଡୁଲିପି ଏ ପର୍ଯ୍ୟନ୍ତ ମିଳି ନାହିଁ ।

## 'ସପ୍ତଶଯ୍ୟା ' ଚଳଚ୍ଚିତ୍ର ନିର୍ମାଣ

ଢେଙ୍କାନାଳ ରାଜ-ଅତ୍ୟାଚାର ପଟ୍ଟଭୂମିରେ ଏକ ଚଳଚ୍ଚିତ୍ର ନିର୍ମାଣ କରିବାକୁ ରାଜପରିବାରର କେହି ଜଣେ ସଦସ୍ୟ ଆଗଭର ହେଲେ । ସପ୍ତଶଯ୍ୟାର ମନୋରମ ଦୃଶ୍ୟକୁ ଏଥିରେ ବାନ୍ଧି ରଖିବାକୁ ତାଙ୍କର ମଧ୍ୟ ଲକ୍ଷ୍ୟ ଥିଲା । ଏହାର କାହାଣୀ ସ୍କ୍ରିପ୍ଟ ପ୍ରଭୃତି ଲେଖିବାପାଇଁ ଅନନ୍ତଙ୍କୁ ଅନୁରୋଧ କରାଗଲା । ଅନନ୍ତବାବୁ ସାଦରେ ଏହାକୁ ଗ୍ରହଣ କରିଥିଲେ । ପ୍ରାୟ ୪୦-୫୦ ଥର ଏଥି ନିମନ୍ତେ କଲିକତା ଯାଇ କାହାଣୀ ସ୍କ୍ରିପ୍ଟ ଲେଖିଥିଲେ, ରେକର୍ଡିଙ୍ଗ୍ କରାଇବା, ସୁଟିଙ୍ଗରେ ଭାଗନେବା ଓ ସଂଳାପ ଲେଖିବା ପ୍ରଭୃତି କାର୍ଯ୍ୟ ମଧ୍ୟ ସମ୍ପାଦନ କରିଥିଲେ ।

ଅନନ୍ତବାବୁ ଯେ ପ୍ରଗତିଶୀଳ ନାଟ୍ୟ ଆନ୍ଦୋଳନର ପୁରୋଭାଗରେ ଥିଲେ, ଏଥିରେ ଦ୍ୱିମତ ନାହିଁ ।

## ଅନୁବାଦ ଗ୍ରନ୍ଥ

ସଂଗ୍ରାମ ଜୀବନ ସାଙ୍ଗକୁ ଅନନ୍ତବାବୁ କବିତା ରଚନା, ଅନୁବାଦ କରିବା ପ୍ରଭୃତି କାର୍ଯ୍ୟରେ ଲିପ୍ତ ଥିଲେ । ସେ ବିଶ୍ୱର ସାମ୍ୟବାଦୀ ଲେଖାମାନଙ୍କୁ ଅନୁବାଦ କରିବା ସଙ୍ଗେ ସଙ୍ଗେ ସେଗୁଡ଼ିକୁ ଚଟି ଚଟି ବହି ଆକାରରେ ପ୍ରକାଶ କରୁଥିଲେ । ସେଥିପାଇଁ ସେ ଇଂରେଜମାନଙ୍କ କୋପ ଦୃଷ୍ଟିରେ ପଡ଼ିଥିଲେ । କମ୍ୟୁନିଷ୍ଟ ଷଡ଼୍ଯନ୍ତ୍ର ମକଦ୍ଦମାରେ ସେ ଯେଉଁ କାରଣରୁ ଗିରଫ ହେଲେ, ସେଥିଭିତରୁ ଗୋଟିଏ ଥିଲା ସାମ୍ୟବାଦ ଶୀର୍ଷକ ଲେଖାମାନଙ୍କର ପ୍ରଚାର କରିବା ।

ପରବର୍ତ୍ତୀ ପର୍ଯ୍ୟାୟରେ ଅନନ୍ତ ବିଶ୍ୱ ସାହିତ୍ୟର ବହୁ ଶ୍ରେଷ୍ଠ ଉପନ୍ୟାସ, କାବ୍ୟକବିତାର ଅନୁବାଦ କରିଛନ୍ତି । ସେଗୁଡ଼ିକ ହେଲା ମାକ୍ସିମ୍ ଗର୍କିଙ୍କର 'ମଦର' । ଅନୁବାଦରେ ସେ 'ମା' ନାମ ରଖିଛନ୍ତି । ସେହି ଗର୍କିଙ୍କ ଆତ୍ମଜୀବନୀର ଦ୍ୱିତୀୟାର୍ଦ୍ଧ 'My Apprenticeship' ର ଓଡ଼ିଆ ଅନୁବାଦ କରିଛନ୍ତି 'ଶିକ୍ଷାନବିସ' ନାମରେ । ମିଖାଇଲ, ସୋଲୋ କୋଭଙ୍କର ଉପନ୍ୟାସ 'Fate of a Man' କୁ ଓଡ଼ିଆରେ ଅନୁବାଦ କରିଛନ୍ତି । ତା'ର ନାମ ରଖିଛନ୍ତି 'ଭାଗ୍ୟରୁ ଖିଏ' ।

ଭାରତୀୟ ସଂସ୍କୃତ ସାହିତ୍ୟର ଜଣେ ବିଶିଷ୍ଟ ନାଟ୍ୟକାର ହେଉଛନ୍ତି ଶୂଦ୍ରକ । ତାଙ୍କର ପ୍ରସିଦ୍ଧ ନାଟକ ହେଉଛି 'ମୃଚ୍ଛକଟିକ' । ଅନନ୍ତ ଏହାର ଓଡ଼ିଆ ଅନୁବାଦ କରିଛନ୍ତି । ଏଥିରେ ରାଜପୁତ୍ର, ରାଜକନ୍ୟା ବା ଦେବକନ୍ୟାମାନଙ୍କର ପ୍ରଣୟ କାହାଣୀ ନାହିଁ । ଗଣିକା ବସନ୍ତସେନା ଓ ଚାରୁଦତ୍ତର ପ୍ରଣୟ କାହାଣୀକୁ ନେଇ 'ମୃଚ୍ଛକଟିକ' ନାଟକଟି ରଚିତ । ଏଥିରେ ଅନନ୍ତ ସାଧାରଣ ନରନାରୀଙ୍କ ପ୍ରଣୟ କାହାଣୀର ରୂପକାର ସାଜିଛନ୍ତି ।

କବିତା କ୍ଷେତ୍ରରେ ସେ ଓଡ଼ିଆରେ ଅନୁବାଦ କରିଛନ୍ତି ୱାଲ୍ଟ ହୁଇଟ୍‌ମାନଙ୍କର କବିତା ସଙ୍କଳନ, 'Leaves of Grass'।

ଅନୁପମ ସୋଭିଏତ୍ ଶିଶୁ ସାହିତ୍ୟ 'ଲାଲ ଟୁକୁ ଟୁକୁ ସୂରୁଯଟିଏ', 'ଗପୁଡ଼ି ମାଈଁଲୋ ଗପୁଡ଼ି ମାଈଁ', 'କଷରା ଘୋଡ଼ା', 'ସତ ହେଲା ମଣିଷର ସ୍ୱପ୍ନ' ମଧ୍ୟ ତାଙ୍କ ଅନୁବାଦ ସାହିତ୍ୟ ଅନ୍ତର୍ଗତ ।

**ଶିଶୁ ସାହିତ୍ୟ ସମ୍ପାଦନା**

ଅନନ୍ତ ପଟ୍ଟନାୟକ ଓଡ଼ିଶାରେ ରାଷ୍ଟ୍ରାୟତ୍ତ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥାର ସଦସ୍ୟ ଥିଲେ । ୧୯୬୨ ମସିହାରୁ ସେ ଧାରାବାହିକ ଭାବରେ କମିଟିର ବୈଠକରେ ଯୋଗ ଦେଉଥିଲେ । ପ୍ରଣୟନରେ ମଧ୍ୟ ଭାଗ ନେଉଥିଲେ । ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନକୁ ରାଷ୍ଟ୍ରାୟତ୍ତରୁ ପୁଣି ମୁକ୍ତ କରିବା ବିରୋଧରେ ସେ ଥିଲେ ।

ସ୍ୱତନ୍ତ୍ର ଓ ଜନକଂଗ୍ରେସ ମିଳିତ ସରକାର ଶାସନକୁ ଆସିବାପରେ ବନମାଳୀ ପଟ୍ଟନାୟକ ଶିକ୍ଷାମନ୍ତ୍ରୀ ହେଲେ । ସେ ଅନନ୍ତଙ୍କୁ ଅଗ୍ରଜ ଭଳି ମାନ୍ୟ କରୁଥିଲେ । ତାଙ୍କ ଅନୁରୋଧରେ ଅନନ୍ତ ପଟ୍ଟନାୟକ ପାଠ୍ୟପୁସ୍ତକ ପ୍ରକାଶନ ଓ ପ୍ରଣୟନ ତଥା ଶିଶୁ ସାହିତ୍ୟ ସମିତିର ସମ୍ପାଦକ ଦାୟିତ୍ୱ ଗ୍ରହଣ କଲେ ।

'ଶିଶୁ ଲେଖା' କମିଟିରେ କେହି ଜଣେ ତାଙ୍କୁ ଲଘୁ ପରିହାସ କରି କହିଲେ – ''ଅନନ୍ତବାବୁ, ପିଲାମାନଙ୍କୁ କମ୍ୟୁନିଷ୍ଟ କରିଦେବା ଭଳି ଲେଖା ଯେପରି 'ଶିଶୁଲେଖା'ରେ ଛପା ନ ଯାଏ ... ।''

ସେତିକିରେ ଅନନ୍ତବାବୁ ଜ୍ୱଳନ୍ତ ଆଗ୍ନେୟଗିରି ପରି ବିସ୍ଫୋରିତ ହୋଇଗଲେ ବୋଲି ଆଲୋଚକ ଅବନୀ ବରାଳ ଉଲ୍ଲେଖ କରିଛନ୍ତି ।

ଶିଶୁମାନଙ୍କ ତୁଣ୍ଡରେ ଅନନ୍ତବାବୁ ବୋଲାଇଛନ୍ତି –

''ବେଲୁନ୍‌ଟିଏ ଦେଲୋ ମାଆ
ବେଲୁନ୍‌ଟିଏ ଦେ ।
ଦୁଃଖଗୋଳା ହସରୁ ପଛେ
ନେ ଲୋ ଟିକେ ନେ ।''

ତାଙ୍କର ବହୁ ଲେଖା ପିଲାମାନେ ପଢ଼ି ବଡ଼ ହୋଇଛନ୍ତି । ମାତ୍ର ତାଙ୍କ ଅଗଣନ ଶିଶୁ କବିତାମାନଙ୍କର ସଙ୍କଳନ ଏଯାବତ୍ ଯେ ହୋଇପାରି ନାହିଁ ଏହାହିଁ ଦୁଃଖର ବିଷୟ ବୋଲି ମନେ ହୁଏ ।

**ଶେଷ ଜୀବନ**

ଦୀର୍ଘ ୪୦ ବର୍ଷରୁ ଊର୍ଦ୍ଧ୍ୱକାଳ ଶ୍ରୀଯୁକ୍ତ ପଟ୍ଟନାୟକ ସକ୍ରିୟ ରାଜନୈତିକ କାର୍ଯ୍ୟକଳାପରୁ ନିଜକୁ ମୁକ୍ତ ରଖି କେବଳ ସାହିତ୍ୟ ସୃଷ୍ଟିରେ ମନୋନିବେଶ କରିଥିଲେ । ତଥାପି ବିଶ୍ୱଶାନ୍ତି ଆନ୍ଦୋଳନ, ଭାରତ ସୋଭିଏତ୍ ମୈତ୍ରୀ ଆନ୍ଦୋଳନ, ଦକ୍ଷିଣ-ଆଫ୍ରିକା ବର୍ଣ୍ଣବିଦ୍ୱେଷୀ ଆନ୍ଦୋଳନ, ବାଙ୍ଗଲାଦେଶ ମୁକ୍ତି ଆନ୍ଦୋଳନ ପ୍ରଭୃତିରେ ସେ ସଂଶ୍ଳିଷ୍ଟ ଥିଲେ । ମୃତ୍ୟୁର ଅଳ୍ପକାଳ ପୂର୍ବରୁ ସେ ନବଯୁଗ ସାହିତ୍ୟ ସଂସଦର ପୁନଃ ପ୍ରତିଷ୍ଠା, ଓଡ଼ିଶା ଗଣନାଟ୍ୟ ସଙ୍ଗଠନର ପୁନଃବିନ୍ୟାସ ଲାଗି ଆବେଦନ କରି ଖୁବ୍ ଉତ୍ସାହରେ ଲାଗିପଡ଼ିଥିଲେ ମଧ୍ୟ ।

୧୯୮୭ ମସିହା ଜୁନ୍ ମାସ ୨୫ ତାରିଖରେ ଅନନ୍ତ ପଟ୍ଟନାୟକଙ୍କର ଜୀବନ ଦୀପ ଲିଭିଗଲା । କଟକର ସତୀଚଉରା ଶ୍ମଶାନରେ ତାଙ୍କର ଚିତା ଜଳିଲା । ସାଥିମାନଙ୍କ କଣ୍ଠରୁ ଉଚ୍ଚାରିତ ହେଉଥିଲା –

''ସାଥୀ ଅନନ୍ତ ପଟ୍ଟନାୟକ ଲାଲ ସଲାମ
ବିପ୍ଳବୀ ଅନନ୍ତ ପଟ୍ଟନାୟକ ଅମର ରହେ ।''

ବିଶିଷ୍ଟ କବି ରାଧାମୋହନ ଗଡ଼ନାୟକ 'ଆଖିର ଆଜି ଏ ଲୁହଧାରା' କବିତାରେ ଗାଇଥିଲେ –

''ବିଦାୟ ବିଦାୟ, ବନ୍ଧୁ, ହେ ମୋର
ବିଦାୟ ମାଗୁଛି ଶେଷକାଳେ
ବିଦାୟ ଏ ମୋର ସିକ୍ତ ସଜଳ
ଆଖିର ଆଜି ଏ ଲୁହଧାରେ ।''

ଆଉ ଜଣେ କାଳଜୟୀ 'କବି କାଳିନ୍ଦୀଚରଣ ପାଣିଗ୍ରାହୀ ଶୋକବାର୍ତ୍ତାରେ ଲେଖିଲେ – ''ଶ୍ରୀ ଅନନ୍ତ ପଟ୍ଟନାୟକ ଆଜି ନାହାନ୍ତି, ମଣିଷ ସମାଜରେ ଅନନ୍ତ ପଟ୍ଟନାୟକଙ୍କ ନାମଟି କିନ୍ତୁ ସବୁଦିନପାଇଁ ଲେଖାହୋଇ ରହିଲା ।''

**ମୂଲ୍ୟାୟନ**

ଓଡ଼ିଶାରେ ପ୍ରଗତିବାଦୀ ସାହିତ୍ୟ ଆନ୍ଦୋଳନର ପ୍ରମୁଖ ରୂପକାର ଭାବରେ ଅନନ୍ତ ପଟ୍ଟନାୟକ ସୁବିଦିତ । ସେ ବିଂଶଶତାବ୍ଦୀର ପ୍ରଥମ ତିନି ଦଶନ୍ଧି ପରେ ଓଡ଼ିଆ ସାହିତ୍ୟକୁ ନବୀନ ଭାବଧାରାରେ ମଣ୍ଡିତ କରି ଗଣଚେତନାର ଦରବାରରେ ନିଜକୁ ପ୍ରତିଷ୍ଠିତ କରିଛନ୍ତି । ଗଣମୁକ୍ତିର ଗୀତିକା ଲେଖି ଅନନ୍ତ ସୁସ୍ଥ, ସୁନ୍ଦର ଓ ଶୋଷଣହୀନ ସମାଜ ବ୍ୟବସ୍ଥାର ସ୍ୱପ୍ନ ଦେଖିଛନ୍ତି ।

କାବ୍ୟ ଭାବନାରେ ମାର୍କ୍ସବାଦୀ ଚିନ୍ତା ଓ ଚେତନାର ପରିପ୍ରକାଶ ଘଟିଲେ ହେଁ କବି ନିଜକୁ ମାର୍କ୍ସବାଦର ବଳୟ ମଧ୍ୟରେ ବନ୍ଦୀ ରଖିବାକୁ ଚାହିଁ ନାହାନ୍ତି । ବାମପନ୍ଥୀ ଚିନ୍ତାଧାରା ବା ଶ୍ରେଣୀହୀନ ସମାଜ ପ୍ରତିଷ୍ଠାପାଇଁ ସଂଗ୍ରାମୀ ସ୍ୱପ୍ନ ତାଙ୍କ

ଉନ୍ନତ କାବ୍ୟାଦର୍ଶର ଏକ ଅଂଶବିଶେଷ ବା ଅଙ୍ଗବିଶେଷ ହୋଇପାରେ, କିନ୍ତୁ ତାହା ତାଙ୍କର ବୃହତ୍ତର ଜୀବନାଦର୍ଶର ସର୍ବାଂଶ ବା ସର୍ବାବୟବ ନୁହେଁ । ତାଙ୍କ ସମଗ୍ର କବିତା ହୋଇଉଠିଛି ନିଚ୍ଛକ ଜୀବନଧର୍ମୀ । ତେଣୁ ଯେକୌଣସି ମହାନ୍ ଶିଳ୍ପୀ ଭଳି ସେ ଥିଲେ ଜୀବନର ଶିଳ୍ପୀ ... ମାନବାତ୍ମାର ଦରଦୀ ବନ୍ଧୁ ଓ ମନୁଷ୍ୟର ଅଶ୍ରୁ ଓ ବ୍ୟଥାର ସର୍ବକାଳୀନ ଲିପିକାର ।

ପୁଣି ମାନବର ବ୍ୟଥା ଓ ବିଦ୍ରୋହକୁ ଶକ୍ତ ରୂପ ଦେଇପାରୁଥିବା ଏହି ଶକ୍ତିଶାଳୀ କବିର କାବ୍ୟଚିନ୍ତା ସାଧାରଣ ଦୃଷ୍ଟିରେ ଅସ୍ପଷ୍ଟ ବା ଅବୋଧ୍ୟ ... ଏପରିକି ଦୁର୍ବୋଧ ବୋଲି ମନେ ହୁଏ । ମାତ୍ର ତାଙ୍କର ସମଗ୍ର କାବ୍ୟ ପ୍ରତିମାଟି ଶବ୍ଦ, ଅର୍ଥ ଓ ଧ୍ୱନିର ସମନ୍ୱୟରେ ଏପରି ପ୍ରାଣବନ୍ତ ଓ ରସଘନ ହୋଇଉଠେ ଯେ ତାହା ପାଠକର ରସପିପାସା ଜାଗ୍ରତ କରିବା ସଙ୍ଗେ ସଙ୍ଗେ ତାକୁ ସମ୍ପୂର୍ଣ୍ଣଭାବେ କବଳିତ କରିପକାଏ ।

ଆଉ ଅନନ୍ତ ପଟ୍ଟନାୟକ ଥିଲେ ଶବ୍ଦର ଅପୂର୍ବ ଯାଦୁକର । ସେ କେବଳ କାବ୍ୟିକ ଅଭିଧାନର ଉପବନରେ ବନ୍ଦୀ ନ ଥିଲେ । କବିଙ୍କ ପ୍ରିୟ ବନ୍ଧୁ ତଥା ମାର୍କ୍ସବାଦୀ ଚିନ୍ତାଧାରାର ପ୍ରାବନ୍ଧିକ କୃଷ୍ଣପ୍ରସାଦ ପଟ୍ଟନାୟକଙ୍କ ଭାଷାରେ, ''ସମୟର ବାଲୁକାଶଯ୍ୟାରେ ହଜିଯାଇଥିବା ଅଗଣନ ମଣିଷର କଣ୍ଠସ୍ୱରରୁ ସମାଧି ଲଭିଥିବା ହୃଦୟରୁ ଯୁଗ ଯୁଗ ଧରି ବନ୍ଦ ହୋଇ ପଡ଼ିଥିବା ... ଅକୁହା ଭାଷାରୁ ଓ ମଣିଷର ପାଂଶୁଳ ବିବର୍ଣ୍ଣ ମୁଖମଣ୍ଡଳରୁ ସେ ସଂଗ୍ରହ କରନ୍ତି ... ତୋଳି ଆଣନ୍ତି ଶବ୍ଦ, ତାକୁ ରୂପ ଦିଅନ୍ତି କବିତାରେ ।''

ଶ୍ରୀ ପଟ୍ଟନାୟକଙ୍କ ସଂଗ୍ରାମୀ ବ୍ୟକ୍ତିତ୍ୱ ବ୍ୟତୀତ ସେ ଜଣେ ଗାଳ୍ପିକ, ସାର୍ଥକ ଅନୁବାଦକ ଓ ଶିଶୁ ସାହିତ୍ୟର ସ୍ରଷ୍ଟାଭାବେ ଆମ ପାଖେ ପରିଚିତ ।

ଶେଷରେ ଏତିକି କୁହାଯାଇପାରେ ଯେ ଅନନ୍ତଙ୍କ କାବ୍ୟଭାବନାର ଜୟଯାତ୍ରା ମଁଧରେ ଲୁକ୍କାୟିତ ମାନବର ଅନ୍ତହୀନ ଶୋଭାଯାତ୍ରା । ତାଙ୍କର ଆଦ୍ୟ ଜୀବନର ମାର୍କ୍ସବାଦୀ ଆଭିମୁଖ୍ୟ କ୍ରମେ ରୂପାନ୍ତରିତ ହୋଇଛି ଗଭୀର ଜୀବନବୋଧ ଆଡ଼କୁ । ସେ ପ୍ରଳୟର ଆବାହକ, କିନ୍ତୁ ପାଳଟିଛନ୍ତି ଅମ୍ଳାନ ସକାଳର ପୂଜାରୀ ।

❑❑❑



## କବିଚନ୍ଦ୍ର
# କାଳୀଚରଣ ପଟ୍ଟନାୟକ
[୧୮୯୮ – ୧୯୭୮]

ଓଡ଼ିଆ ନାଟ୍ୟ, ସଙ୍ଗୀତ ଓ ସାହିତ୍ୟ କ୍ଷେତ୍ରରେ କାଳୀଚରଣ ହେଉଛନ୍ତି ଏକ ପ୍ରଚଣ୍ଡ ପ୍ରତିଭା । ସେ ଥିଲେ ଏକାଧାରରେ ଜଣେ କବି, ନାଟ୍ୟକାର, ମଞ୍ଚକାର, ଗୀତିକାର, ସଙ୍ଗୀତଶିଳ୍ପୀ ଓ ନୃତ୍ୟ ବିଶାରଦ । ରୀତି ଯୁଗ ପରେ ଓଡ଼ିଆ ସାହିତ୍ୟରେ ଲଳିତ ସଙ୍ଗୀତ ରଚନାର ଯେଉଁ ପରମ୍ପରା ଲୋପ ପାଇଆସୁଥିଲା, କାଳୀଚରଣ ତାହାର ପୁନରୁଜ୍ଜୀବିତ କରିଥିଲେ । ଆଧୁନିକ ଓଡ଼ିଆ ଗୀତିକବିତା ରଚନା କ୍ଷେତ୍ରରେ ତାଙ୍କର ପାରଦର୍ଶିତା ଥିଲା । ସାହିତ୍ୟର ପ୍ରତ୍ୟେକ ବିଭାଗରେ ସେ ଲେଖନୀ ଚାଳନା କରିଥିଲେ । କବିତା ବ୍ୟତୀତ ନାଟକ, ନୃତ୍ୟନାଟିକା, ଏକାଙ୍କିକା, ଗଳ୍ପ, ଉପନ୍ୟାସ – ଏପରିକି ଉଚ୍ଚକୋଟୀର ପ୍ରବନ୍ଧମାନ ରଚନା କରି ସେ ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ସମୃଦ୍ଧ କରିଛନ୍ତି ।

କାଳୀଚରଣ ଥିଲେ ଆଧୁନିକ ଓଡ଼ିଆ ନାଟକର ପ୍ରାଣ-ପ୍ରତିଷ୍ଠାତା । ବସ୍ତୁତଃ ରାଜ୍ୟରେ ତାଙ୍କର ପରିଚୟ ଜଣେ ନାଟ୍ୟକାର, କଳାକାର ଭାବେ ଥିଲା । ନାଟକ ହିଁ ଥିଲା କାଳୀଚରଣଙ୍କର ସର୍ବଶ୍ରେଷ୍ଠ ମାଧ୍ୟମ । ନାଟକ ଓ ରଙ୍ଗମଞ୍ଚକୁ ସେ ଯେଉଁ ଦିଗ୍‌ଦର୍ଶନ ଦେଇଛନ୍ତି ସେଥିପାଇଁ ସେ ଯୁଗ ପ୍ରବର୍ତ୍ତକ ଭାବେ ଗଣ୍ୟ ହୁଅନ୍ତି ।

ଓଡ଼ିଶା ନୃତ୍ୟ ଓ ସଙ୍ଗୀତରେ ଶାସ୍ତ୍ରୀୟତା ପ୍ରତିଷ୍ଠାପାଇଁ ତାଙ୍କର ମହନୀୟ ପ୍ରଚେଷ୍ଟା ବାସ୍ତବିକ ଅବିସ୍ମରଣୀୟ । ନୃତ୍ୟ, ନାଟକ ଓ ସଙ୍ଗୀତ କ୍ଷେତ୍ରରେ ତାଙ୍କର ପାରଦର୍ଶିତା ଓ କୃତିତ୍ୱପାଇଁ ସେ ବହୁ ଅନୁଷ୍ଠାନମାନଙ୍କଦ୍ୱାରା ସମ୍ମାନିତ ଓ ପୁରସ୍କୃତ । କହିବାକୁ ଗଲେ ଓଡ଼ିଶାର କଳାଜଗତ ଓ ଓଡ଼ିଆ ସଂସ୍କୃତି ତାଙ୍କଠାରୁ ଗଭୀର ଭାବରେ ଋଣୀ ।

## ଜନ୍ମ ଓ ଶିକ୍ଷା

କାଳୀଚରଣ ୧୮୯୮ ମସିହା ଡିସେମ୍ବର ମାସ ୨୩ ତାରିଖରେ ବଡ଼ାମ୍ବାଗଡ଼ରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ଜେଜେବାପା ନିମାଇଁ ଚରଣ ପଟ୍ଟନାୟକ ବାଙ୍କୀର ବାସିନ୍ଦା ଥିଲେ । କିନ୍ତୁ ବଡ଼ାମ୍ବା ରାଜାଙ୍କ ଅଧୀନରେ ବଡ଼ ଚାକିରି କରିବାକୁ ଯାଇ ସେଇଠି ଘର ଓ ଜମିବାଡ଼ି କରି ରହିଲେ । ତାଙ୍କର ଦୁଇ ପୁଅ ଥିଲେ – ଦୁର୍ଗାଚରଣ ଆଉ ମନମୋହନ । ଦୁର୍ଗାଚରଣଙ୍କର ପୁତ୍ର ହେଲେ କାଳୀଚରଣ । ମାତାଙ୍କ ନାମ ଥିଲା ରାଧାମାଳୀ ।

କାଳୀଚରଣଙ୍କର ପିତା ଥିଲେ କାଳୀପୂଜକ । ମହାଷ୍ଟମୀ ରାତିରେ ଚଣ୍ଡୀପାଠ ପରେ କଉମାଛ ବଳି ଦିଅନ୍ତି । ସେହି ବଳି ପଡ଼ିଲାବେଳେ କାଳୀଚରଣଙ୍କର ଦେଢ଼ ବର୍ଷର ବଡ଼ଭାଇ ଦେବୀଙ୍କ ଆଗରେ ପଡ଼ିଗଲା । ପାହାନ୍ତା ପହରକୁ ରକ୍ତବାନ୍ତି କରି ତା'ର ମୃତ୍ୟୁ ହେଲା । ପିତା ଅଭିମାନରେ ଦେବୀଙ୍କୁ ଗୃହରୁ ବିସର୍ଜନ କରିଦେବାକୁ ସ୍ଥିର କଲେ । କିନ୍ତୁ ରାତିରେ ତା'ର ପର ବର୍ଷ ଗୋଟିଏ ପୁଅ ଦେବେ ବୋଲି ଦେବୀ ସ୍ୱପ୍ନରେ କହିଲେ । ସତକୁ ସତ ତା'ର ବର୍ଷକ ପରେ ପୁତ୍ରଟିଏ ଜାତ ହେଲା । କାଳୀଙ୍କ କୃପାରୁ ଜନ୍ମ ହୋଇଥିବାରୁ ତା'ର ନାମ ରଖାଗଲା କାଳୀଚରଣ ।

## ଦେବୀ କୃପା

ଦେବୀଙ୍କର କୃପା ଏତିକିରେ ଶେଷ ହୋଇ ନ ଥିଲା । ଜନ୍ମବେଳୁ କାଳୀଚରଣଙ୍କର ଆଖିରୁ ପୂଜ ବାହାରୁଥିଲା । କେତେ ଚିକିତ୍ସା କଲେ ମଧ୍ୟ ଭଲ ହେଲା ନାହିଁ । ଠାକୁରାଣୀଙ୍କୁ ଆଉ ପୂଜା ନ କରି ବିସର୍ଜନ କରିଦେବାକୁ ପିତା ବିଚାରନ୍ତେ ପୁଣି ସ୍ୱପ୍ନାଦେଶ ହେଲା ଯେ ପାଷାଣଭେଦୀ ପତ୍ର ଓ ନିରୋଳା ସୋରିଷତେଲ ମିଶାଇ ଆଖିରେ ଲଗାଇଲେ ପୂର୍ଣ୍ଣ ଆରୋଗ୍ୟ ଲାଭ ହେବ । ସ୍ୱପ୍ନରେ ଦେବୀ ପାଷାଣଭେଦୀ ଗୁଳ୍ମର ସନ୍ଧାନ ମଧ୍ୟ ଦେଲେ । ଦାନ୍ତଘଷା ପିଣ୍ଡି ଉପରେ ସେ ଗଛ ବାହାରିଥିବାର ଦୁର୍ଗାଚରଣ ଦେଖିଲେ । ଆଦେଶମତେ ସୋରିଷତେଲରେ କନା ବୁଡ଼ାଇ ଦିଆଯିବାରେ ଦିନ ଚାରି ଛଅଟାରେ ଆଖିରୁ ପୂଜ ବୋହିବା ବନ୍ଦ ହେଲା ।

ପାଷାଣଭେଦୀ ଗଛର ସେହି ଶୁଖିଲା ପତ୍ରକୁ ବାପା ଗୋଟିଏ ତେଉଁରିଆରେ ଭର୍ତ୍ତି କରି ଯତ୍ନରେ କାଳୀଚରଣଙ୍କ ଦେହରେ ପିନ୍ଧାଇ ଦେଇଥିଲେ ।

**ବାଲ୍ୟ ଜୀବନ**

କାଳୀଚରଣଙ୍କର ପିଲାଦିନ ବଡ଼ାମ୍ବା ରାଜବାଟୀରେ କଟିଥିଲା । ସେ ତାଙ୍କର ଆତ୍ମଜୀବନୀ 'କୁମ୍ଭାର ଚକ'ରେ ଲେଖିଛନ୍ତି ଯେ ବଡ଼ାମ୍ବାଗଡ଼ରେ ଚନ୍ଦନ ଯାତ ଖୁବ୍ ଜାକଜମକରେ ହେଉଥିଲା । ଗୀତ, ନାଚ, ଯାତ୍ରା, ପାଲା, ସୁଆଙ୍ଗ ପ୍ରଭୃତି ଏକୋଇଶ ଦିନ କାଳ ଚାଲୁଥିଲା । ରାତି ୯ଟାରୁ ଫୁକିଆ ତାରା ଉଇଁଲା ପର୍ଯ୍ୟନ୍ତ ଗଡ଼ ଦାଣ୍ଡରେ ତାହା ହେଉଥିଲା । ଏହି ପରିବେଶରେ କାଳୀଚରଣଙ୍କର ସଙ୍ଗୀତ ପ୍ରତି ଶ୍ରଦ୍ଧା ଜାତ ହେବା ସ୍ୱାଭାବିକ । ତାଙ୍କ ବୋଉ ରାଧାମାଳୀ ମଧ୍ୟ ଭଲ ଛାନ୍ଦ, ଚୌପଦୀ ପ୍ରଭୃତି ବୋଲି ପାରୁଥିଲେ । ସେ ପୁଅକୁ କୋଳରେ ବସାଇ 'ମଥୁରା ମଙ୍ଗଳ', 'ବିଶି ରାମାୟଣ', 'ବିଦଗ୍ଧ ଚିନ୍ତାମଣି', 'ବୈଦେହୀଶ ବିଳାସ'ରୁ ଗୋଟିଏ ଗୋଟିଏ ଛାନ୍ଦ ଶିଖାଉଥିଲେ । କାଳୀଚରଣ ଗୀତ ବୋଲିପାରିଲେ । ସେଥିପାଇଁ ତାଙ୍କ ସାଙ୍ଗସାଥୀମାନେ ତାଙ୍କୁ ଭାରି ଆଦର କରୁଥିଲେ ।

ବଡ଼ାମ୍ବାର ସେତେବେଳେ ରାଜା ଥିଲେ ବିଶ୍ୱମ୍ଭର ମଙ୍ଗରାଜ ମହାପାତ୍ର । ସେ ଥରେ ଗୋଟିଏ ଦୁଦୁରାଫୁଲିଆ ଗ୍ରାମଫୋନ୍ ଅଣାଇଲେ । ଖଣ୍ଡିକେତେ ଓଡ଼ିଆ ଓ ବଙ୍ଗଳା ରେକର୍ଡ ମଧ୍ୟ ତା' ସାଙ୍ଗେ ଆଣିଥାନ୍ତି । ରାଜା ନିଜେ କଣ୍ଟା ଲଗାଉଥାନ୍ତି । କଳବାଜାରୁ ଗୀତ ବାହାରୁଥାଏ । ଶୁଣିବାକୁ ଗଦା ହୋଇପଡୁଥିଲେ ଲୋକେ । ଶୁଣି ଶୁଣି କାଳୀଚରଣ ଗୋଟିଏ ଓଡ଼ିଆ ଗୀତ ବି ଶିଖିଲେ । ଦିନେ ରାଜାଙ୍କ ଆଗରେ ସେ ଗୀତଟି ଗାଇଲେ । ରାଜା କେବଳ ପ୍ରଶଂସା ଯେ କଲେ ତାହା ନୁହେଁ, ପାଞ୍ଚୋଟି ଟଙ୍କା ପୁରସ୍କାର ଦେଲେ । ସେ ଗୀତର ପ୍ରଥମ ଧାଡ଼ିଟି ହେଲା – 'ଆସୁଅଛି ବ୍ରଜବାସୀ ଧୀରେ ଧୀରେ ଚାଲି ଚାଲି' ।

ରାଜା ମଧ୍ୟ ଦିନେ ବୈଠକଖାନାରେ କାଳୀଚରଣଙ୍କୁ ପାଖରେ ବସାଇ ଗୀତ ଗାଇବାକୁ କହିଲେ । ରାତିରେ ବୋଉ ସବୁକଥା ଶୁଣି ଭାରି ଖୁସି ହେଲେ । ଆଉ ଗୀତ ଶିଖିବାକୁ କହିଲେ । କାଳୀଚରଣ ମଧ୍ୟ ନୂଆ ନୂଆ ଗୀତ ଶିଖିଲେ ଓ ରାଜାଙ୍କ ଆଗରେ ଗାଇ ପୁରସ୍କୃତ ହେଲେ ।

ସେହିଦିନୁ କାଳୀଚରଣଙ୍କର ପାଠପଢ଼ା ସଙ୍ଗେ ଗୀତ ଶିକ୍ଷା ବି ହେଲା । ଗଡ଼ରେ ଗୋଟିଏ ମୁଣ୍ଡିଆ ଥିଲା । ତା'ର ନାଁ ହେଉଛି କହ୍ନେଇ ମଣ୍ଡପ । ସେଠାକୁ ସେ ସାଙ୍ଗମାନଙ୍କ ସଙ୍ଗେ ଯାଉଥିଲେ । ସେମାନଙ୍କ ମଧ୍ୟରୁ କେତେକଙ୍କ ନାଁ କାଳୀଚରଣଙ୍କ ମନେ ଥିଲା, ଯଥା – ମୋହନ ଜେନା, ସୁଦର୍ଶନ ରାଉତ, ନାରଣ ରଥ ପ୍ରଭୃତି । ସେଠାରେ ବଣଭୋଜି ବି ବେଳେ ବେଳେ ହେଉଥିଲା । ଗୀତ ଗାଇବାକୁ ସେଠାରେ ସାଙ୍ଗମାନେ ଲଗାଉଥିଲେ ।

ବଡ଼ାମ୍ବାଗଡ଼ରେ ଥିବା ଗୋଟିଏ ଭର୍ଣ୍ଣାକୁଲାର ସ୍କୁଲରେ କାଳୀଚରଣଙ୍କ ପାଠପଢ଼ା ଆରମ୍ଭ ହେଲା । ବେଲପଡ଼ା ଗ୍ରାମର କୃପାସିନ୍ଧୁ ପଟ୍ଟନାୟକ ସେଠାରେ

ଶିକ୍ଷକ ଥିଲେ । ସେ ଛାତ୍ରବତ୍ସଳ ଥିଲେ । ସେ କାଳୀଚରଣଙ୍କୁ 'କଳା କଳେବର' ଛାନ୍ଦ ଶିଖାଇଲେ । ଛାନ୍ଦ ଶୁଣିବାକୁ ସେ ଭଲ ପାଉଥିଲେ । ଛାନ୍ଦ ଶୁଣିବାପରେ ସେ କାଳୀଚରଣଙ୍କୁ ଘରେ ଛାଡ଼ିଦେଇଆସୁଥିଲେ ।

ବଡ଼ାମ୍ବାଗଡ଼ରେ ଘୋଡ଼ାନାଟ, ଦଣ୍ଡନାଟ ପ୍ରଭୃତି ହେଉଥିଲା । ଚଢ଼େଇଆ - ଚଢ଼େଇଆଣୀ, ବୀଣାକର, ଭାଲୁନାଟ ଆଦି ଦଣ୍ଡନାଟର ଅଙ୍ଗ ଥିଲା । ସେସବୁକୁ କାଳୀଚରଣ ଦେଖୁଥିଲେ ଓ ଆନନ୍ଦରେ କୁରୁଳି ଉଠୁଥିଲେ । ଯେଉଁଦିନ ରାଜାଙ୍କ ନଅରକୁ ଯାଉ ନ ଥିଲେ, ସେଦିନ ବାଡ଼ିପଟ ଅଗଣାରେ ଆଖଡ଼ା ହେଉଥିଲା । ନଟ-ନଟୀଙ୍କର ଅଭାବ ନ ଥିଲା ; ସାଇପଡ଼ିଶାରୁ ପୁଅ ଝିଅମାନେ ଜୁଟି ଯାଉଥିଲେ । ଗୀତ ତିଆରି କରିବାକୁ କାଳୀଚରଣଙ୍କୁ ପଡୁଥିଲା । ସେହି ନାଚ ଗୀତ ତାଙ୍କ ଜୀବନରେ ଘୋର ପ୍ରଭାବ ପକାଇଥିବା କଥା କାଳୀଚରଣ ତାଙ୍କ ଆତ୍ମଜୀବନୀରେ ବର୍ଣ୍ଣନା କରିଛନ୍ତି ।

ବଡ଼ାମ୍ବା ରାଜବାଟୀରେ ରାମନବମୀ ମଧ୍ୟ ଧୁମଧାମରେ ପାଳିତ ହେଉଥିଲା । ରାମନବମୀ ଯାତ୍ରାର 'ଗୀତ, ବାଜା, ନାଚ ଓ ଅଭିନୟ କାଳୀଚରଣଙ୍କ ମନ ଉପରେ ବିଶେଷ ପ୍ରଭାବ ପକାଇଥିଲା । ତା'ରି ଭିତରେ ଓଡ଼ିଶାର ସଂସ୍କୃତି ରହିଥିଲା ବୋଲି କାଳୀଚରଣ ମତ ଦେଇଛନ୍ତି । ସେ ଯାହାହେଉ, ରାମନବମୀର ଯାତ୍ରା ଯେ ତାଙ୍କର କଳାକାର ଜୀବନକୁ ଗଢ଼ିଥିଲା, ଏହା ସେ ସ୍ୱୀକାର କରିଛନ୍ତି ।

ଏହାପରେ କାଳୀଚରଣ ବଡ଼ାମ୍ବା ମିଡିଲ ଭର୍ଣ୍ଣାକୁଲାର ସ୍କୁଲରେ ପଢ଼ିଲେ । ସେହି ସ୍କୁଲର ପ୍ରଥମ ହେଡ୍‌ପଣ୍ଡିତ ଥିଲେ ଘନଶ୍ୟାମ ଦାସ । ପରେ ବଡ଼ାମ୍ବାଗଡ଼ର ଗୋପୀନାଥ ମିଶ୍ରେ ହେଡ୍‌ପଣ୍ଡିତ ହେଲେ । ସେ ଜଣେ ଆଦର୍ଶ ସ୍ଥାନୀୟ ଶିକ୍ଷକ ଥିଲେ । ତାଙ୍କ ସମୟରେ ଛୋଟ ଲାଟ ଏଣ୍ଡୁ ଫ୍ରେଜର ଗଡ଼ଜାତ ପରିଦର୍ଶନରେ କଲିକତାରୁ ଆସିଲେ । ବଡ଼ାମ୍ବା ପରିଦର୍ଶନ ତାଙ୍କ କାର୍ଯ୍ୟକ୍ରମ ଅନ୍ତର୍ଗତ ଥିଲା । ସେଥିପାଇଁ ସ୍କୁଲ ପିଲାଙ୍କୁ ଗୀତ ଶିଖିବାକୁ ହେଲା । କାଳୀଚରଣଙ୍କୁ ଗୀତ ଗାଇବାକୁ କୁହାଗଲା । ସ୍କୁଲ ଛୁଟି ପରେ ଖାଲି କଣ୍ଠରେ ରଗଡ଼ା କରୁଥାନ୍ତି । ମାତ୍ର ସାହେବ ବଡ଼ାମ୍ବାକୁ ନ ଆସିବାରୁ ତାଙ୍କର ସବୁ ସରାଗ ଭାଙ୍ଗିଗଲା ।

### ଢେଙ୍କାନାଳ ବଦଳି

କେତେକାଳ ପରେ କାଳୀଚରଣଙ୍କ ପିତା ନରସିଂହପୁରରୁ ଢେଙ୍କାନାଳ ବଦଳି ହେଲେ । ବୋଉଙ୍କ ସାଙ୍ଗେ କାଳୀଚରଣ ଢେଙ୍କାନାଳ ଗଲେ । ସେଠାରେ ଦିବ୍ୟସିଂହବାବୁଙ୍କ ଘର ଭଡ଼ା ନେଇ ରହିଲେ ।

ଢେଙ୍କାନାଳର ରାଜା ଥିଲେ ସୁରପ୍ରତାପ ମନୀନ୍ଦ୍ର ବାହାଦୁର । କୁଳଦାବାବୁ କଲିକତାରୁ କୃଷ୍ଣଚରିତ କଥା କହିବାକୁ ଢେଙ୍କାନାଳ ଆସିଥାଆନ୍ତି । ସେ ଅବଶ୍ୟ ବଙ୍ଗଳାରେ ବୟାନ କରୁଥିଲେ । ବାପାଙ୍କ ସଙ୍ଗେ ଧୁମ୍ ଲଗେଇ କାଳୀଚରଣ

ରାଜବାଟୀକୁ ଗଲେ । ସେ ବଙ୍ଗଳା ବୁଝିପାରୁଥିଲେ । ଏଣୁ କୃଷ୍ଣଚରିତ ତାଙ୍କ ଜୀବନରେ ଏକ ଅଲିଭା ଛାପ ପକାଇଲା – ଯାହା ଫଳରେ ସେ ପରବର୍ତ୍ତୀ କାଳରେ ବୈଷ୍ଣବ ଗ୍ରନ୍ଥ ପଢ଼ିବାରେ ଆଗ୍ରହୀ ହେଲେ ।

ଢେଙ୍କାନାଳ ସ୍କୁଲର ପୁରସ୍କାର ବିତରଣୀ ଉତ୍ସବରେ ସେ ଗୀତ ଗାଇଥିଲେ ।

ଢେଙ୍କାନାଳରେ କିଛି ଦିନ ରହିଲାପରେ କାଳୀଚରଣ ପୂର୍ବପୁରୁଷୀ ଘର ବାଙ୍କୀକୁ ଆସି ଚର୍ଚ୍ଚିକା ମାଇନର ସ୍କୁଲରେ ଚତୁର୍ଥ ଶ୍ରେଣୀରେ ପଢ଼ିଲେ । ବାଙ୍କୀ ଚର୍ଚ୍ଚିକା ସ୍କୁଲରେ ପଢୁଥିଲାବେଳେ ବାଙ୍କୀର ଅମଲାମାନେ ରାମଶଙ୍କର ରାୟଙ୍କ କାଞ୍ଚିକାବେରୀ ନାଟକ ମଞ୍ଚସ୍ଥ କଲେ । ଏହି ନାଟକ କାଳୀଚରଣ ଦେଖିଲାପରେ ବାରିପଟ ଖଳାବାଡ଼ିରେ ଏକ ମଞ୍ଚ ତିଆରି କଲେ ଓ ଅଭିନୟ କଲେ ।

ସେଇ ଚର୍ଚ୍ଚିକା ସ୍କୁଲରେ ମାଇନର ପଢ଼ିଲାବେଳେ କାଳୀଚରଣ ଗୀତ ଲେଖିବା ଆରମ୍ଭ କଲେ । ସେତେବେଳେ ପ୍ରଧାନ ଶିକ୍ଷକ ଥିଲେ ରଘୁନାଥ ରାୟ । କାଳୀଚରଣ ଗୀତ ଲେଖି ସଂଶୋଧନ କରିବାକୁ ରଘୁବାବୁଙ୍କୁ ଦେଉଥିଲେ । ରଘୁବାବୁ ତାଙ୍କୁ ଆହୁରି କବିତା ଲେଖିବାପାଇଁ ଉତ୍ସାହିତ କରୁଥିଲେ । ପୁଅଠୁ ବଳି ଆଦର ବି କରୁଥିଲେ ।

କାଳୀଚରଣଙ୍କ ସ୍ୱାସ୍ଥ୍ୟ ସେମିତି ଭଲ ନ ଥିଲା । ଖେଳି ବି ଆସୁ ନ ଥିଲା । ତେଣୁ ସ୍କୁଲ ଛୁଟି ହେବା ପରେ ସେ ଲେଖିବାରେ ଲାଗି ପଡୁଥିଲେ । କେବେ କେବେ ଗାଁ ଖମାରଙ୍ଗର ବୁଢ଼ା ବାଳକୃଷ୍ଣ ମହାନ୍ତିଙ୍କ ବଂଶୀ ବଜାଇବା ଆରମ୍ଭ କରିଦେଉଥିଲେ ।

ଥରେ ହେଡ୍‌ମାଷ୍ଟର ରଘୁବାବୁଙ୍କ ସହିତ କାଳୀଚରଣ ବାଙ୍କୀର ମହାପର୍ବତକୁ ବୁଲି ଯାଇଥିଲେ । ସାଙ୍ଗରେ ଆଉ କେତେ ପିଲା ଥିଲେ । ମହାପର୍ବତ ବୁଲି ଆସିବାପରେ 'ମହାପର୍ବତ' ନାମକ ଖଣ୍ଡିଏ ଖଣ୍ଡ-କାବ୍ୟ ରଚନା କଲେ । ତାହାକୁ ସେ ବାଙ୍କୀର ସବ୍-ରେଜିଷ୍ଟ୍ରାର ଆସରଫ ଅଲ୍ଲୀ ଖାଁଙ୍କୁ ଦେଖାଇଲେ । ସେ ସାହିତ୍ୟପ୍ରେମୀ ଥିଲେ । ଆନନ୍ଦରେ କାଳୀଚରଣଙ୍କୁ କୁଣ୍ଢାଇ ପକାଇଲେ । ଯାହାକୁ ଦେଖିଲେ ତା' ଆଗେ ପ୍ରଶଂସା କରୁଥିଲେ –

''ପିଲାଟିର ଲେଖା ଦେଖି ତାଜ୍ଜୁବ ହେଲି ହୋ ।''

ବାଙ୍କୀରେ ଥିଲାବେଳେ ଆଉ ଏକ ରୋମାଞ୍ଚକର ଘଟଣା କାଳୀଚରଣ ନିଜ ଆତ୍ମଜୀବନୀରେ ବର୍ଣ୍ଣନା କରିଛନ୍ତି । ତାହା ହେଲା ମାଆ ଚର୍ଚ୍ଚିକାଙ୍କ ଅନୁଗ୍ରହ ।

କାଳୀଚରଣ ପ୍ରତି ଗୁରୁବାର ଦିନ ଠାକୁରାଣୀଙ୍କ ଦର୍ଶନପାଇଁ ଦେଉଳକୁ ଯାଉଥିଲେ । ମୁଣ୍ଡିଆ ମାରିବାବେଳେ ଠାକୁରାଣୀଙ୍କୁ କିଛି ନ ମାଗିବାପାଇଁ ବୋଉ କହିଥାନ୍ତି । ସେ ତାହା କରୁଥିଲେ । ମୁଣ୍ଡିଆ ମାରି ଦେଉଳରୁ ଫେରିଆସୁଥିଲେ ।

ଥରେ ସେ ଗୋଟିଏ ଗୀତ ଲେଖି ବୋଉଙ୍କ ଆଗେ ଗାଇଲେ । ସେ ଗୀତଟି ଥିଲା ଏହିପରି –

''ଦେବୀ ଗୋ, ପରମାନନ୍ଦଦାୟିନୀ
ପଦ୍ମ-ଗନ୍ଧ ପ୍ରସୂନ ମାଳିନୀ
ମା ଶ୍ମଶାନ ବିଳାସିନୀ
କର ଦୟା ଦୀନେ – ସିଂହବାହିନୀ
ହର-ହୃଦୟ ପଦଚାରିଣୀ ।''

ବୋଉ କହିଲେ –

''ବାପା ! ମୁଁ ସିନା ତୋର ଜୀଅନ୍ତା ମାଆ, ସବୁଦିନିଆ ମାଆ ନୁହେଁ । ଦିନେ ମୁଁ ମରିବି । ଯା ସବୁଦିନିଆ ମାଆଙ୍କୁ ଗୀତ ଶୁଣାଇ ଆସିବୁ । ସେ ପସନ୍ଦ କଲେ ହେଲା ।''

ବୋଉ ଏହା କହି ଅଗଣାରେ ଥିବା ଗୋଲାପ ଗଛରୁ ବଡ଼ ଫୁଲଟିଏ ତୋଳି ମାଆଙ୍କୁ ଦେବାକୁ କହିଲେ । କାଳୀଚରଣ ବୋଉଙ୍କ କଥା ମାନିଲେ । ଶୂନ୍ୟବାହିନୀ ମଣ୍ଡପରେ ଠିଆ ହୋଇ ଆଖି ବୁଜି ଗୀତଟି ଗାଇଲେ । ମାଆଙ୍କୁ ମୁଣ୍ଡିଆ ମାରି ଘରକୁ ଫେରିଲେ ।

ବୋଉ ପଚାରିଲେ – ''ମାଆ କଅଣ କହିଲେ ?''

କାଳୀଚରଣ ହସି ହସି ଉତ୍ତର ଦେଲେ –

''ମାଆ କଅଣ ମଣିଷ ଯେ – କଥା କହନ୍ତେ ?''

ଏତିକିବେଳେ ପୂଜକ ଖଡ଼ି ମହାପାତ୍ର ଗୋଟିଏ କଦଳିପତ୍ର ପୁଡ଼ା ଆଣି ବୋଉଙ୍କୁ ଦେଇ କହିଲେ –

''ସାଆନ୍ତାଣୀ, ସାନସାଆନ୍ତ ମାଆଙ୍କ ପାଖେ ଭେଟିବାକୁ ଗୋଲାପ ଫୁଲଟିଏ ମତେ ଦେଲେ, ସେଇଠୁ ମୁଣ୍ଡିଆ ମାରି ତଳମଣ୍ଡପକୁ ଆସି ଗୀତ ଗାଇଲେ । ମୁଁ ଫୁଲଟିକୁ ମାଆଙ୍କ ମଥାରେ ଚଢ଼ାଇଦେଲି, ଭୋଗ କଲି । ଭୋଗ ପରେ ଫୁଲଟି ମା'ଙ୍କ ମଥାରୁ ଖସିଲା ....।''

ବୋଉ ପରେ ଆଖି ଛଳ ଛଳ କରି କହିଲେ –

''ବାପରେ, ମାଆ ଅନୁଗ୍ରହ କରିଛନ୍ତି – ତୁ ଲେଖ ।''

**ନାଟକ ସରାଗ**

ଗୀତ ଲେଖିବା ଛଡ଼ା କାଳୀଚରଣଙ୍କର ଆଉ ଗୋଟିଏ ଦିଗରେ ସରାଗ ବଢ଼ିଲା । ତାହାହେଲା ନାଟକ । ବାଙ୍କୀରେ ନାଟକ ଅଭିନୟ ପ୍ରଭୃତି ଦେଖିବା ପରେ ତାଙ୍କର ମନ ସେ ଆଡ଼କୁ ଢଳିଲା ।

ବଡ଼ାମ୍ବାର ଜଣେ ବିଶିଷ୍ଟ ବ୍ୟକ୍ତି ଥିଲେ ସୁମନ୍ତ ପଟ୍ଟନାୟକ । ଓଡ଼ିଆ ସାହିତ୍ୟ ଉପରେ ତାଙ୍କର ବେଶ୍ ଦକ୍ଷତା ଥିଲା । ଦୈବଯୋଗକୁ ସେ ବାଙ୍କୀ ଘରେ ବର୍ଷେ ଦି'ବର୍ଷ ରହିଥିଲେ । ତାଙ୍କଠାରୁ ସେ ଛାନ୍ଦ ବୁଝୁଥିଲେ । କାଳୀଚରଣ ଦିନେ 'ବାବାଜି' ନାଟକ ମଞ୍ଚସ୍ଥ କରାଇବା ଉଦ୍ଦେଶ୍ୟରେ ତାଙ୍କୁ ଦେଖାଇଲେ । ନାଟକର ଗୋଟାଏ ଅଂଶ ଏଥିପାଇଁ ସେ ବାଛିଦେଲେ । କାଳୀଚରଣ ବାବାଜି ପାର୍ଟ ନେଲେ । ତାହା ଅବଶ୍ୟ ସାହିପଡ଼ିଶାର କାହାରି ମନକୁ ପାଇଲାନି । ସାମାଜିକ ହୋଇଥିବାରୁ ତାକୁ ଫୁଟାଇବା ସହଜସାଧ ନୁହେଁ ବୋଲି ହେଡମାଷ୍ଟ୍ରେ ତାଙ୍କୁ କହିଲେ ।

ପଣାସଂକ୍ରାନ୍ତି ଦିନ ବାଙ୍କୀରେ ପଣାଯାତ୍ରା ହେଉଥିଲା । ବହୁ ଲୋକ ଜମୁଥିଲେ । ଯାତ୍ରା ଦଳ ମଧ୍ଯ ତାକୁ ଦେଖିବାକୁ ଯାଉଥିଲେ । ସେହି ଯାତ୍ରାମାନଙ୍କର ଗୀତ, ବାଜା, ବେଶ, ପଟୁକା ପ୍ରଭୃତି ତାଙ୍କ ମନ ଉପରେ ଗଭୀର ପ୍ରଭାବ ପକାଇଲା । ସେ ମଧ୍ଯ ଲୀଳା ବା ଯାତ୍ରା ଲେଖିବାକୁ ଆଗ୍ରହୀ ହେଲେ । 'କଳଙ୍କ-ଭଞ୍ଜନ ଲୀଳା' ମଧ୍ଯ ରଚନା କରି ହେଡ୍‌ମାଷ୍ଟ୍ରେଙ୍କୁ ଦେଖାଇଲେ । ସେ କିନ୍ତୁ ଲୀଳାଦଳପାଇଁ ଗୀତ ଲେଖିବାକୁ ପସନ୍ଦ କଲେ ନାହିଁ ।

କାଳୀଚରଣଙ୍କର ଜଣେ ଭାଇନା ଥିଲେ । ତାଙ୍କ ଗ୍ରାମ ଥିଲା ସୁବର୍ଣ୍ଣପୁର । ତାଙ୍କ ଗାଁରେ ଥିଏଟର କରିବାକୁ ସେ କାଳୀଚରଣଙ୍କୁ ଡକାଇ ପଠାଇଲେ । ଅଂଶୁପା ହ୍ରଦ ବୁଲି ଦେଖିବା ବି ଲୋଭ ହେଲା । ବାପା ଓ ବୋଉଙ୍କର କିଛି ଆପତ୍ତି ନ ଥିଲା । କାଳୀଚରଣ ସୁବର୍ଣ୍ଣପୁର ଗଲେ । ସେଠି 'ସାବିତ୍ରୀ' ନାଟକ ଅଭିନୀତ ହେଲା । ନିଜେ କାଳୀଚରଣ ପାର୍ଟ ନେଇଥିଲେ । ତା'ପରେ ନାଚି ବି ଥିଲେ । ଏସବୁପାଇଁ ଯେତିକି ସେଦିନ ପ୍ରଶଂସା ପାଇଲେ, ନାଟକ ବାସି ଦିନ କେତେ ଜଣ ବୁଢ଼ାବୁଢ଼ୀ ଆସି ନାଟକରେ ନାଚିବାକୁ ପସନ୍ଦ କରି ନ ଥିଲେ । ସେମାନଙ୍କ ମନ୍ତବ୍ୟ ହେଲା –

''ଅତି ଅଲାଜୁକ ନ ହେଲେ ପରା କେହି ନାଚନ୍ତି ନାହିଁ । ଦୁର୍ଗାଚରଣବାବୁ ଏତେ ଯୋଗ୍ୟ ଲୋକ ହୋଇ ପିଲାଟାକୁ 'ଛତରା' କରିଦେଇଛନ୍ତି ।''

ଏକଥା ଶୁଣି କାଳୀଚରଣଙ୍କ ମନ ଖରାପ ହୋଇପଡ଼ିଥିବା ସ୍ୱାଭାବିକ ।

କାଳୀଚରଣ ବୈଷ୍ଣବ ଭାଇନା ଓ ଅନ୍ତର୍ଯାମୀଙ୍କ ସହ ସାଙ୍ଗ ହୋଇ ଅଂଶୁପା ହ୍ରଦ ଦେଖିବାକୁ ଗଲେ । କାଠୁଆରେ ବସି, ହ୍ରଦରେ ବୁଲି, ନାଆ ଖେଳ ଆଉ ଗୀତ ଗାଇ ପାହାଡ଼ କାନ୍ଥି ଚମକାଇଦେଲେ । ତା'ର ପ୍ରତିଧ୍ୱନିକୁ କାନେଇବାରେ ଯେଉଁ ଆନନ୍ଦ ପାଇଲେ, ତାହା ତାଙ୍କ ଜୀବନରେ ଅଭୁଲା ହୋଇ ରହିଯାଇଛି ବୋଲି କାଳୀଚରଣ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି ।

ସୁବର୍ଣ୍ଣପୁରରେ 'ଉଷା' ନାଟକ ଅଭିନୀତ ହେଲା । କାଳୀଚରଣ ଶିଖେଇବାର ଗୁରୁ ଭାବେ ବଛା ହେଲେ । ନିର୍ଦ୍ଦିଷ୍ଟ ଦିନରେ 'ଉଷା' ନାଟକ ଅଭିନୀତ ହେଲା । କାଳୀଚରଣ 'ଉଷା' ପାର୍ଟ ନେଇଥିଲେ । ଆଉ ନାଚି ବି ଥିଲେ । ନାଟକଟି ଲୋକଙ୍କର ଖୁବ୍ ପସନ୍ଦ ହେଲା ।

୧୯୧୧ ମସିହା ଡିସେମ୍ବର ମାସରେ ଚର୍ଚ୍ଚିକା ସ୍କୁଲରେ 'Our Day' ଉତ୍ସବ ଧୁମ୍‌ଧାମ୍‌ରେ ପାଳିତ ହେଲା । କାଳୀଚରଣ ଡେପୁଟି କଲେକ୍ଟରଙ୍କ ଆଗରେ ଗୀତଟିଏ ଗାଇଥିଲେ । 'ତାଙ୍କ ବରାଦମତେ ଆଉ ଗୋଟିଏ ଗୀତ ମଧ ସଭାରେ ଗାଇଲେ ।

ବାଙ୍କୀର ଜଣାଶୁଣା ବ୍ୟକ୍ତି ଥିଲେ ଗୋବିନ୍ଦ ରଥ । ସେ ପ୍ରଖ୍ୟାତ କବି ଥିଲେ । ତାଙ୍କୁ ବାଙ୍କୀ ଲୋକେ ଭକ୍ତି କରୁଥିଲେ । କାଳୀଚରଣ ତାଙ୍କୁ ନାଟକ ଦେଖିବାପାଇଁ ଅନୁରୋଧ କରନ୍ତେ, ସେ ରାଜି ହେଲେ । ସେ ନାଟକ ଦେଖି ପ୍ରଶଂସା କଲେ । ତାଙ୍କ ନିର୍ଦ୍ଦେଶିତ ନାଟକ ରଥ ମହାଶୟଙ୍କୁ ଦେଖାଇ ସେ ନିଜକୁ ଭାଗ୍ୟବାନ୍ ମନେ କରିଥିଲେ ।

ବାଙ୍କୀରେ ପଢୁଥିଲାବେଳେ ମହାନଦୀ ପାର ହୋଇ ଛୁଟିଦିନମାନଙ୍କରେ କାଳୀଚରଣ ବଡ଼ାମ୍ବା ଓ ତିଗିରିଆ ଆଡ଼କୁ ଯାଉଥିଲେ । ତିଗିରିଆରେ ସମ୍ପର୍କୀୟ ଭାଇ ଜଣେ ଥିଲେ । ତାଙ୍କର ନାମ ଥିଲା ରାମକୃଷ୍ଣ । ସେ ତିଗିରିଆ ରଜାଙ୍କର ଦିଆନ ଥିଲେ । ତିଗିରିଆରେ ଚମ୍ପକ ଦ୍ୱାଦଶୀ ଗୋଟିଏ ବଡ଼ ପର୍ବ ପାଳିତ ହେଉଥିଲା । ଏହି ଦ୍ୱାଦଶୀ ଦିନ ସଙ୍ଗୀତ ପିଲା ଦଳ ଆସୁଥିଲେ ଓ ରାମକୃଷ୍ଣଙ୍କ ଚଉପାଢ଼ୀରେ ନାଚ ଗୀତ ଆଦି ହେଉଥିଲା । ରାଜା କାଳୀଚରଣଙ୍କ ଗୀତ ଗାଇବା ଶୁଣି ତାଙ୍କୁ ଡକାଇଲେ ଓ ଜଣାଣଟିଏ ଗାଇବାକୁ କହିଲେ । କାଳୀଚରଣ 'ରାଧାକାନ୍ତ, ରାଧାମୋହନ, ଗୋବିନ୍ଦ' ଜଣାଣଟି ଗାଇଲେ । ରାଜା ତନ୍ମୟ ହୋଇ ଶୁଣିଲେ । ଖୁସି ହୋଇ ରୁପା ଥାଳିରେ ରଙ୍ଗପାଟ ଯୋଡ଼ ଓ ନଗଦ ଦଶ ଟଙ୍କା ଦେଲେ । ତା' ପର ଦିନ ସ୍କୁଲ ଖୋଲୁଥିବାରୁ କାଳୀଚରଣ ବାଙ୍କୀ ଫେରିଲେ । ଏହାପରେ ସେ ଖୋରଧା ହାଇସ୍କୁଲରେ ପଢ଼ିବାକୁ ଗଲେ ।

### ଖୋରଧା ରହଣି

କାଳୀଚରଣଙ୍କୁ ସେତେବେଳେ ମାତ୍ର ଚଉଦ ବର୍ଷ ବୟସ । ତାଙ୍କ ଦାଦା ସବ୍‌ଡିଭିଜନାଲ କଚେରିରେ ହେଡ୍ କିରାଣି ଥାଆନ୍ତି । ବରୁଣାଇ ସାହିରେ କୃଷ୍ଣ ମହାଜନଙ୍କ ବାହାର ଘର ଭଡ଼ା ନେଇ ରହୁଥିଲେ । ତାଙ୍କରି ପାଖରେ ରହିବାର ବ୍ୟବସ୍ଥା ହେଲା । ଅଷ୍ଟମ ଶ୍ରେଣୀରେ ତାଙ୍କ ନାମ ଲେଖାଗଲା । ୧୯୧୪-୧୫ ମସିହାରେ ଖୋରଧା ହାଇସ୍କୁଲରୁ ଗୋଟିଏ ପତ୍ରିକା ବାହାରିଲା । ପତ୍ରିକାର ନାମ ଥିଲା 'ଉଦ୍ୟମ' । କାଳୀଚରଣଙ୍କ ଗୋଟିଏ ଛୋଟ କବିତା ଏଥିରେ ସ୍ଥାନ

ପାଇଥିଲା । ତାହା ତାଙ୍କର ପ୍ରଥମ ଛପା କବିତା । ବୋଉଙ୍କ ପାଖକୁ ଖଣ୍ଡିଏ ପତ୍ରିକା ପଠାଇଥିଲେ । ବୋଉ ଆଶୀର୍ବାଦ କରି ଚିଠି ଦେଇଥିଲେ । ଆନନ୍ଦରେ କାଳୀଚରଣଙ୍କ ବୁକୁ ଫୁଲି ଉଠିଥିଲା । ପଢ଼ା ସାଙ୍ଗମାନେ ତାଙ୍କୁ ବଧାଇ ଦେଇଥିଲେ ।

ସ୍କୁଲ ଛୁଟି ପରେ ସାଙ୍ଗସାଥି ଖେଳପଡ଼ିଆରେ ହାଜର ହେଉଥିଲେ । ମାତ୍ର କାଳୀଚରଣଙ୍କର ଖେଳ ଆଡ଼କୁ ମନ ଆଦୌ ଢଳୁ ନ ଥିଲା । ସେ ଜଣେ ଦି'ଜଣ ସାଙ୍ଗଙ୍କୁ ଧରି ନବିନାବାଗ ଅଧିକାଂଶ ଦିନ ଯାଉଥିଲେ । ସ୍ଥାନଟି ନିର୍ଜନିଆ – ତାଙ୍କୁ ଭାରି ଭଲ ଲାଗୁଥିଲା । ପାଖ ହାତୀପୋଖରୀର ଅଳ୍ପ ଉଚ୍ଚ କାନ୍ଥି ଉପରେ ବସି ଲେଖାଲେଖି କରୁଥିଲେ । ସେଇଠି ତାଙ୍କର ଦିନେ ଦେଖା ହେଲା ସଙ୍ଗୀତଜ୍ଞ ବାସୁଦେବ ମହାପାତ୍ରଙ୍କ ସହିତ । ସେ ତାଙ୍କୁ ଗୀତ ଶିଖାଇଲେ । ନବିନାବାଗର ହାତୀପୋଖରୀର ପଥର ପାଚେରି ହେଲା ତାଙ୍କର ସଙ୍ଗୀତ ଶିକ୍ଷା ପୀଠ ।

କାଳୀଚରଣ ହାଇସ୍କୁଲ ପୁରସ୍କାର ବିତରଣୀ ଉତ୍ସବରେ ନାଟକର ଗୋଟିଏ ଦୃଶ୍ୟରେ ଅଂଶ ଗ୍ରହଣ କରି ସମସ୍ତଙ୍କ ପ୍ରଶଂସାର ପାତ୍ର ହୋଇଥିଲେ ।

ଖୋରଧାର ତହସିଲଦାର ଥିଲେ ବୈଦ୍ୟନାଥ ମିଶ୍ର । ସେ ସଙ୍ଗୀତପ୍ରେମୀ ଥିଲେ । ବାସୁଦେବ ମହାପାତ୍ରଙ୍କ ସଙ୍ଗେ ତାଙ୍କର ଚିହ୍ନା-ପରିଚୟ ଥିଲା । ବାସୁଦେବ ଦିନେ ତାଙ୍କ କୋଠିକୁ କାଳୀଚରଣଙ୍କୁ ନେଲେ ଓ ତାଙ୍କୁ ଗୀତ ଶୁଣାଇଲେ । ସେ ଭାରି ଖୁସି ହେଲେ । ବେହେଲା ବଜାଇ ସେ ଜାଣିଥିଲେ । କାଳୀଚରଣଙ୍କୁ ବେହେଲା ଶିଖିବାକୁ ଉପଦେଶ ଦେଲେ ।

ତାଙ୍କରି ବସାରେ କାଳୀଚରଣଙ୍କର ଖୋରଧା ନିକଟ ଗୁରୁଜଙ୍ଗର ଗୋବିନ୍ଦ ନନ୍ଦଙ୍କ ସଙ୍ଗେ ଦେଖାହେଲା । ତାଙ୍କ ଭାଇ ହରି ନନ୍ଦ ଗୋଟିଏ ଯାତ୍ରା ଦଳ ଗଢ଼ିଥିଲେ । କେବେ କେବେ ହରି ନନ୍ଦଙ୍କ ଦାଣ୍ଡରେ ଯାତ୍ରା ହେଉଥିଲା ।

କାଳୀଚରଣ ଗୀତ ଲେଖୁଥିଲେ । ଓଡ଼ିଶୀ ଗୀତ ଶୁଣି, ଶିଖି ଓ ରାଜରାଜୁଡ଼ିଆଙ୍କ ସମ୍ପର୍କରେ ଆସି ସେ ଯେଉଁ ଗୀତ ଲେଖୁଥିଲେ, ସେଗୁଡ଼ିକ ଥିଲା ଆଦି ରସାତ୍ମକ । ସେଗୁଡ଼ିକ ସେ ସ୍କୁଲର ପଣ୍ଡିତ କୃପାସିନ୍ଧୁ ହୋତାଙ୍କୁ ସଂଶୋଧନ କରିବାକୁ ଦେଉଥିଲେ । ସେଭଳି ରଚନା ଛାଡ଼ି ଜଣାଣ, ଭଜନ ପ୍ରଭୃତି ଲେଖିବା ଦିଗରେ ମନ ଦେବାକୁ ପଣ୍ଡିତ ମହାଶୟ ତାଙ୍କୁ ଉପଦେଶ ଦେଲେ । କାଳୀଚରଣ ସେଇଦିନୁ ଗୀତର ମୋଡ଼ ବଦଳେଇ ଦେଲେ । ଭଜନ, ଜଣାଣ ପ୍ରଭୃତି ଲେଖିବା ଆରମ୍ଭ କଲେ ।

କାଳୀଚରଣ ମଧ୍ୟ ଖୋରଧାରେ ଥିଏଟର ଆୟୋଜନ ପ୍ରଥମଥରପାଇଁ କଲେ । ତା' ଆଗରୁ ମଞ୍ଚ ଅଭିନୟ ଖୋରଧାରେ ହୋଇ ନ ଥାଏ । କେତେ ଲୋକଙ୍କୁ ମେଳାଇ ସେ ଥିଏଟରର ଆୟୋଜନ କଲେ ।

କାଳୀଚରଣଙ୍କ ଖୋରଧାରେ ଚାରି ବର୍ଷ କଟିଲା । ମାଟ୍ରିକ ଟେଷ୍ଟ ପରୀକ୍ଷାରେ ଭଲ ନମ୍ବର ରଖି ପାସ୍ କଲେ । ଟେଷ୍ଟ ପରୀକ୍ଷା ପରେ ଖୋରଧା ଛାଡ଼ି ଘରକୁ ଫେରିଲେ । ମାଟ୍ରିକ ପରୀକ୍ଷା ଦେବାକୁ କଟକ ଗଲେ । ପ୍ରଥମ ଶ୍ରେଣୀରେ ପାସ୍ କଲେ ।

କଲେଜରେ ପଢ଼ିବାକୁ କାଳୀଚରଣ କଟକ ଆସିଲେ । ବୋର୍ଡିଙ୍ଗ୍‌ରେ ରହି ପାଠ ପଢ଼ିବାକୁ ବୋଉ ପସନ୍ଦ କଲେ ନାହିଁ । ବସାଟିଏ ନେଲେ ଓ ରେଭେନ୍‌ସା କଲେଜରେ ନାମ ଲେଖାଇଲେ । ଗୋପାଳ ଚନ୍ଦ୍ର ପ୍ରହରାଜ ତାଙ୍କର ହେଲେ ଲୋକାଲ ଗାର୍ଡ଼ିଆନ୍ ।

କଟକରେ ଥିଲାବେଳେ ଗୀତ ଲେଖା, ଗପ ଲେଖା ପ୍ରଭୃତି ଚାଲିଲା । ସେ କଟକର ନାମଜାଦା ଗୀତ ଶିଖା ଓସ୍ତାଦ୍ ଖାନୁ ମିଆଁଙ୍କୁ ଭେଟିଲେ । ଖାନୁ ମିଆଁ ତାଙ୍କୁ ଗୀତ ଶିଖାଇବାକୁ ରାଜି ହେଲେ । ସେ ବୋଉଙ୍କଠାରୁ ପଚିଶଟି ଟଙ୍କା ଆଣି ହାର୍ମୋନିୟମଟିଏ କିଣିଲେ । କ୍ଲାସ୍ ପରେ ସଙ୍ଗୀତ ଓ ସାହିତ୍ୟ ଚର୍ଚ୍ଚାରେ ଦିନ କଟିଲା ।

୧୯୧୭ ମସିହାରେ ତାଙ୍କର ପ୍ରଥମ ଶିଶୁକବିତା 'କଳାହାଣ୍ଡିଆ ମେଘ' ପ୍ରକାଶ ପାଇଲା । ଭକ୍ତକବି ମଧୁସୂଦନ ରାଓଙ୍କ ପୁଅ ଶ୍ରୀକଣ୍ଠଙ୍କ ଠାରୁ ରବି ଠାକୁରଙ୍କ ଗୀତଗୁଡ଼ିକ ଶୁଣି ସେ ୨୦-୨୩ଟି ଗୀତ ଥିବା 'ବରଣ ଡାଲା' ନାମକ ପୁସ୍ତକ ରଚନା କଲେ । ଦତ୍ତ ପ୍ରେସ୍‌ରେ ତାହାକୁ ମଧ୍ୟ ଛପାଇଲେ । ସେ କେତୋଟି ଗୀତ ଦେଶପ୍ରେମୀ ଯଦୁମଣି ମଙ୍ଗରାଜଙ୍କୁ ଶୁଣାଇଲେ । ରାଜାସାହେବଙ୍କୁ ବହି ଖଣ୍ଡେ ଉପହାର ଦେଲେ । ସେ ଆଉ ଖଣ୍ଡିଏ ବହି ମଧୁବାବୁଙ୍କୁ ଦେବାକୁ କହିଲେ । ମଧୁବାବୁଙ୍କୁ ମଧ୍ୟ କାଳୀଚରଣ ଖଣ୍ଡେ ବହି ଉପହାର ଦେଲେ । ସେଥିପାଇଁ ରାଜାସାହେବ ତାଙ୍କୁ ଗୋଟିଏ ପାଟଯୋଡ଼ ଓ ପଚିଶଟି ଟଙ୍କା ପୁରସ୍କାର ଦେଇଥିଲେ । ମଧୁବାବୁ ମଧ୍ୟ ଏଥିପାଇଁ ଶହେ ଟଙ୍କା ତାଙ୍କ ପାଖକୁ ପଠାଇଥିଲେ ।

କାଳୀଚରଣ ମଧ୍ୟ ପଣ୍ଡିତପ୍ରବର ରାୟବାହାଦୁର ଯୋଗେଶବାବୁଙ୍କୁ 'ବରଣ ଡାଲା'ର କେତୋଟି ଗୀତ ଶୁଣାଇଲେ । ଯୋଗେଶବାବୁ ତାଙ୍କୁ ଆଶୀର୍ବାଦ କଲେ ଓ ବଙ୍ଗୀୟ କବି ରଜନୀ ସେନ, ରବୀନ୍ଦ୍ର ଠାକୁରଙ୍କ ଗୀତ ପଢ଼ିବାକୁ ଉପଦେଶ ଦେଲେ ।

କଟକରେ ସେତେବେଳେ ଥିଏଟର ଦଳ ମଝିରେ ମଝିରେ ନାଟକ ଦେଖାଉଥାଆନ୍ତି । କିନ୍ତୁ ତାହା ଓଡ଼ିଆ ନାଟକ ନୁହେଁ, ବଙ୍ଗଳା ନାଟକ ଥିଲା । କେତେକ ବ୍ୟକ୍ତିଙ୍କ ଉଦ୍ୟମରେ ରାୟବାହାଦୁର ଭିକାରିଚରଣ ପଟ୍ଟନାୟକଙ୍କ 'ନନ୍ଦିକେଶ୍ୱରୀ' ନାଟକ ମଞ୍ଚସ୍ଥ କରାଇଲେ । କାଳୀଚରଣ ସେଥିରେ ନନ୍ଦିକା ପାର୍ଟ ନେଇଥିଲେ । କେନ୍ଦ୍ରାପଡ଼ାରେ ନନ୍ଦିକେଶ୍ୱରୀ ନାଟକ ଅଭିନୀତ ହେଲା । ସେଠି ବି ସେ ନନ୍ଦିକା ପାର୍ଟ ନେଇଥିଲେ ।

କାଳୀଚରଣ ତୃତୀୟ ବାର୍ଷିକ ଶ୍ରେଣୀରେ ଅଧ୍ୟୟନ କରୁଥାନ୍ତି । ପରୀକ୍ଷା ନିକଟ ହୋଇଆସୁଥାଏ । ମଉସା ଗୋପାଳ ପ୍ରହରାଜ ପିତାଙ୍କ ଅସୁସ୍ଥ ଥିବା କଥା ଜଣାଇଲେ । କାଳବିଳମ୍ବ ନ କରି ଚାଲି ଚାଲି ଗ୍ରାମକୁ କାଳୀଚରଣ ଗଲେ । ବାପାଙ୍କୁ କଟକ ନିଆଗଲା । ସେଠାରେ ଚିକିତ୍ସା ଚାଲିଲା । କିନ୍ତୁ କିଛି ଫଳ ହେଲା ନାହିଁ । ୧୯୧୯ ଡିସେମ୍ବର ମାସ ୨୩ ତାରିଖ ଗୁରୁବାର ଦିନ ପିତାଙ୍କ ମୃତ୍ୟୁ ହେଲା । ବୋଉଙ୍କ ସଞ୍ଚିତ ଅର୍ଥରେ ବାପାଙ୍କ ଶୁଦ୍ଧିକ୍ରିୟା ସମ୍ପନ୍ନ ହେଲା ।

କାଳୀଚରଣଙ୍କର ପୋଥିରେ ଡୋର ବନ୍ଧା ହେଲା । ଭବିଷ୍ୟତ୍ ଚିନ୍ତାରେ ସେ ଘାରି ହେଲେ । ସେ ତାଙ୍କ ଆତ୍ମଜୀବନୀରେ ଏହା ଉଲ୍ଲେଖ କରିଛନ୍ତି –

'ବୟସ ବଢୁଥିଲେ ବି ଏତେ କାଳ ମୁଁ ଥିଲି ପିଲା, ଆଉ କ'ଣ ସେ ପିଲାଦିନ ଅଛି ? ଏବେ ମୋତେ ଚଳିବାକୁ ହେବ ଆଉ ଚଳାଇବାକୁ ପଡ଼ିବ । ମୁଣ୍ଡରେ ମୋର ପଥର ବୋଝ । ପିଲାଦିନ ପୋଡ଼ିଗଲାଣି ।'

କାଳୀଚରଣଙ୍କ ମନଟା ଭାରି ବିକଳ ହେଲା । ଶେଷରେ ବାପାଙ୍କ ନିଜ ଭାଇ ମହନଦାଦାଙ୍କ ପାଖକୁ ବଡ଼ାମ୍ବା ଯିବାକୁ ସ୍ଥିର କଲେ । ରାଜାଙ୍କୁ ଭେଟି ଦୁଃଖ କହିବାକୁ ମଧ୍ୟ ପାଞ୍ଚିଲେ ।

କାଳୀଚରଣ ବଡ଼ାମ୍ବାରେ ମାସେ ଖଣ୍ଡେ ରହିଲେ । କେତେଜଣ ପିଲାଦିନର ସାଥୀ ଥିଲେ । ଯୋଗୀ ଜେଜେ ବି ବଞ୍ଚିଥିଲେ । ନଅରପାଖ ନାଥନନା କାଳୀଚରଣଙ୍କର ଜଣେ ବଡ଼ ସାଥୀ ଥିଲେ । ସେମାନଙ୍କ ସାଙ୍ଗେ ଦିନ କଟୁଥାଏ । ନଅରକୁ ମଧ୍ୟ ନିତି ସଞ୍ଜରେ ଯାଉଥିଲେ । ରାତି ୧୦।୧୧ଟା ଯାଏଁ ରାଜବାଟୀଠାରେ ରାଜାଙ୍କ ପାଖରେ କିମ୍ବା ରାଣୀଙ୍କ ପାଖରେ କଟୁଥିଲା । ହେଲେ କାହାକୁ କିଛି ସେ କହିପାରୁ ନ ଥିଲେ । ନିଜକୁ ଅତି ନିଃସ୍ୱ, ନିଃସହାୟ ମନେ କରୁଥିଲେ । ଭବିଷ୍ୟତ୍ ଚିନ୍ତା ତାଙ୍କୁ ଅସ୍ଥିର କରିପକାଉଥିଲା ।

ଦିନେ ସାହସ ବାନ୍ଧି କାଳୀଚରଣ ଦାଦାଙ୍କୁ ଚାକିରି କଥା ପଚାରିଲେ । ସେ କିନ୍ତୁ ଥତମତ ହୋଇ କହିଲେ –

''ଦେଖାଯିବ, ଚାକିରି ବାକିରି କଅଣ କରିବୁ ।''

କିନ୍ତୁ କି ଚାକିରି ସେ କରିବେ ? କିଏ କରାଇଦେବେ ? କାହାକୁ କହିବେ ? ସେ କଥା ଦିନେ ହେଲେ କେହି କହୁ ନ ଥିଲେ କି ପଚାରୁ ନ ଥିଲେ ।

ଏମିତି କେତେ ଦିନ କଟିଗଲା । କ୍ରମେ କାଳୀଚରଣ ହତାଶ ହୋଇପଡ଼ିଲେ । ଏକୁଟିଆ ହେଲେ ଆଖିରୁ ଲୁହ ବହୁଥିଲା । ବୋଉଙ୍କ କଥା ମନେପଡ଼ି ଆହୁରି ବ୍ୟସ୍ତ ହୋଇପଡୁଥିଲେ । ରାତିରେ କାନ୍ଦୁ କାନ୍ଦୁ କେତେବେଳେ ନିଦ ଲାଗିଯାଉଥିଲା ।

## ଚାକିରି ଜୀବନ

କାଳୀଚରଣ ଥରେ ରାତିରେ ଡଙ୍ଗାରେ ଯାଉଥିବା ସ୍ୱପ୍ନ ଦେଖିଲେ । ସେ ତେଣୁ ଜଳପଥରେ ସମ୍ବଲପୁର ଯାଇ ପିତାଙ୍କ ପୂର୍ବ ପରିଚିତ ପଲିଟିକାଲ ଏଜେଣ୍ଟ କବ୍‌ଡେନ୍ ରାମସେଙ୍କୁ ଚାକିରି ବିଷୟରେ ଭେଟିବାକୁ ସ୍ଥିର କଲେ । ସେ ତାଙ୍କୁ ସାହାଯ୍ୟ କରିପାରନ୍ତି – ଏହି ଆଶା ତାଙ୍କର ଥିଲା । ସେ ବାଡ଼ାମ୍ବା ରାଜାଙ୍କଠାରୁ ପଚାଶଟି ଟଙ୍କା ନେଇ ବଡ଼ାମ୍ବାର ମୋହନ ସୁବୁଦ୍ଧିଙ୍କ ଗୁଡ଼ ଡଙ୍ଗାରେ ଯିବାକୁ ଯୋଗାଡ଼ କଲେ । ଆଠ ଦିନରେ ସେ ସମ୍ବଲପୁରରେ ପହଞ୍ଚି କବ୍‌ଡେନ୍ ରାମସେଙ୍କୁ ଦେଖା କଲେ । ସେ ମଧ୍ୟ ସାହାଯ୍ୟ କରିବେ ବୋଲି ଆଶ୍ୱାସନା ଦେଲେ ଓ ଚଳିବାପାଇଁ ୫୦ ଟଙ୍କା ଦେଲେ । ତାଙ୍କୁ ବାଙ୍କୀ ଠିକଣାଟି ଦେଇ ପୁଣି ମୁଣ୍ଡିଆ ମାରି ତାଙ୍କଠାରୁ ବିଦାୟ ନେଲେ ।

ଡଙ୍ଗାରେ କାଳୀଚରଣ ପୁଣି ବଡ଼ାମ୍ବା ଫେରିଲେ । ଆଉ ଦିନେ ପୁଣି ରାତିରେ ଶୋଇଥିଲେ ; ପାହାନ୍ତାରେ ସ୍ୱପ୍ନ ଦେଖିଲେ ଯେ ସେ ଜଗନ୍ନାଥଙ୍କୁ ଦର୍ଶନ କରୁଛନ୍ତି । ସେ କଣ୍ଟିଲୋ ଯାଇ ନୀଳମାଧବଙ୍କୁ ଦର୍ଶନ କରିବାର ଅଭିପ୍ରାୟ ବଡ଼ାମ୍ବା ରାଜାଙ୍କୁ ଜଣାଇଲେ । ରାଜା ମଧ୍ୟ କଣ୍ଟିଲୋ ନୀଳମାଧବଙ୍କୁ ଦର୍ଶନ କରିବା ନିମନ୍ତେ ହାତୀର ବରାଦ କରିଦେଲେ ।

କଣ୍ଟିଲୋରେ କାଳୀଚରଣ ନୀଳମାଧବଙ୍କୁ ଦର୍ଶନ କଲେ । ଖଣ୍ଡପଡ଼ା ରାଜା ମଧ୍ୟ କଣ୍ଟିଲୋ ନୀଳମାଧବଙ୍କ ଦର୍ଶନପାଇଁ ଆସିଥିଲେ । କାଳୀଚରଣ ରାଜାଙ୍କୁ ଭେଟିବାକୁ ମନ କଲେ । ଗୋଟିଏ ଚଉପଦି (ଗୀତ) ଲେଖି ରାଜାଙ୍କୁ ଭେଟି ଦେଲେ । ରାଜା ରାମଚନ୍ଦ୍ର ଭ୍ରମରବର ଗୀତ ରଚନାରେ ଖୁସି ହେଲେ । କାଳୀଚରଣ ମଧ୍ୟ ରାଜାଙ୍କ ଆଗରେ ଗାଇଲେ । ଅତ୍ୟନ୍ତ ପ୍ରୀତ ହୋଇ ରାଜା କାଳୀଚରଣଙ୍କୁ ଆଉ ବଡ଼ାମ୍ବା ଫେରିବାକୁ ଦେଲେ ନାହିଁ । କଣ୍ଟିଲୋରେ ଦିନକ ରହଣି ପରେ ରାଜାଙ୍କ ଗହଣରେ କାଳୀଚରଣ ଖଣ୍ଡପଡ଼ା ଗଲେ ।

## ପ୍ରଥମ ନିଯୁକ୍ତି

କାଳୀଚରଣ ଖଣ୍ଡପଡ଼ାଗଡ଼ରେ ସ୍କୁଲ ବିଭାଗ ସବ୍-ଇନ୍‌ସପେକ୍ଟର ଭାବେ ନିଯୁକ୍ତ ହେଲେ । ଗାଁ ଗଣ୍ଡା ବୁଲି ଚାହାଳି ସ୍କୁଲ ଦେଖିବା ତାଙ୍କ କାମ ହେଲା । କିନ୍ତୁ ରାଜା ତାହା ଚାହୁଁ ନ ଥିଲେ । ପ୍ରତିଦିନ ତାଙ୍କ ଦରବାରିଆ ହେବାପାଇଁ ରାଜା ଚାହୁଁଥିଲେ । ଗୀତ ଲେଖିବା, ତାକୁ ଗାଇ ରାଜାଙ୍କୁ ଶୁଣାଇବା ପ୍ରକୃତ କାମ ହେଲା । ଖାଲି ଚାକିରି ରଖିବାପାଇଁ ହାତୀରେ ବସି ଚାହାଳି ଦେଖିବା କାମ ତାଙ୍କୁ ଦିଆଗଲା ।

ଚାକିରି ଜୀବନ ଆନନ୍ଦମୟ ହେଲା । ସଞ୍ଜ ଗଡ଼ିଗଲେ ହାତୀ ଆଗରେ ବାଉଁଶହୁଳା ଜଳାଇ ଗସ୍ତରେ କାଳୀଚରଣ ଦଳବଳ ନେଇ ବାହାରୁଥିଲେ । ଇନ୍‌ସପେକ୍ଟିଙ୍ଗ ପଣ୍ଡିତେ ସଙ୍ଗୀତପ୍ରେମୀ ଥିଲେ । ସେ ଭଲ ବେହେଲା ବଜାଇ ଗୀତ ଗାଉଥିଲେ । ହାତୀ ମାହୁନ୍ତ ସହଦେବ ଜୟସିଂହ ଖଞ୍ଜଣୀ ବଜାଇବାବାଲା ଥିଲା ।

ଚପରାସୀ ହାତୀ ଉପରେ କାଳୀଚରଣଙ୍କ ପଛରେ ବସୁଥିଲା । ତାହା ହାତରେ ଥାଏ ଗିନି । ଗସ୍ତବେଳେ ଚାଲୁଥିଲା ଗୀତବାଜା ।

ଗସ୍ତ ସମୟରେ ବେଳେ ବେଳେ ବାଘମାମୁ ସାଙ୍ଗେ ଭେଟ ହୋଇଯାଉଥିଲା । ବାକି ମିରିଗ, ଶିଗାଳ, ଖରିଆ ପ୍ରଭୃତିଙ୍କୁ ସେମାନେ ବାରମ୍ବାର ଭେଟୁଥିଲେ । ଖଣ୍ଡପଡ଼ା ସ୍ମୃତି ଅପାସୋରା ସ୍ମୃତି ହୋଇ ରହିଛି ବୋଲି କାଳୀଚରଣ ତାଙ୍କ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି ।

କାଳୀଚରଣ ଖଣ୍ଡପଡ଼ାରେ ଥିବାବେଳେ ରାଜାଙ୍କ ଭଣଜା ଗୋବିନ୍ଦଚନ୍ଦ୍ର ଶୂରଦେଓ ତାଙ୍କ ରାସଦଳ ସହ ଖଣ୍ଡପଡ଼ା ଆସିବାକୁ ପତ୍ର ଦେଲେ । ରାଜା କାଳୀଚରଣଙ୍କୁ ଏ ବିଷୟରେ ପଚାରନ୍ତେ ସେ ଗୋବିନ୍ଦଚନ୍ଦ୍ରଙ୍କ ଗୁଣ ଗାନ କରି ତାଙ୍କୁ ଆସିବାପାଇଁ ଅନୁମତି ଦେବାକୁ ଅନୁରୋଧ କଲେ । ରାଜା ମଧ୍ୟ ରାଜି ହେଲେ । ତାଙ୍କ ରହଣିରେ ଟିକିଏ ସୁଦ୍ଧା ଅବହେଳା ନ କରିବାକୁ ରାଜା ନିର୍ଦ୍ଦେଶ ଦେଲେ ।

ଗୋବିନ୍ଦଚନ୍ଦ୍ର ଶୂରଦେଓ ସଦଳବଳେ ଖଣ୍ଡପଡ଼ା ଆସିଲେ । ଉଆସ ମେଲାରେ ରଙ୍ଗମଞ୍ଚ ବନ୍ଧା ହେଲା । ଅଭିନୟ ଚାଲିଲା । ଶୂରଦେଓ ସାତ ଆଠ ଦିନ ରହିଗଲେ । କାଳୀଚରଣ ମଧ୍ୟ ଅତୀତ ଜୀବନକୁ ଫେରିଗଲେ । ତାଙ୍କ ନାଟ୍ୟକାର ଜୀବନର କୁହୁଳା ନିଆଁ ଦୁଲୁକି ଉଠିଲା । ଶୂରଦେଓ ଫେରିଗଲେ । ଆଖି ଦିଇଟାକୁ ଯେତେ ରୋକିଲେ ବି କାଳୀଚରଣଙ୍କ ଆଖିରୁ ଦି' ଧାର ଲୁହ ଗଡ଼ିଆସିଲା । ଶୂରଦେଓ ତ କାନ୍ଦି କାନ୍ଦି ତାଙ୍କଠୁଁ ବିଦାୟ ନେଲେ ।

**ରାସଦଳ ଗଢ଼ା**

କାଳୀଚରଣ ଖଣ୍ଡପଡ଼ାରୁ ଦଳେ ବାଳକ ଯୋଗାଡ଼ କରି ରାସଦଳ ଗଢ଼ିବାରେ ଲାଗିଗଲେ । ବ୍ରାହ୍ମଣସାହିର ଗୋପୀବ୍ରହ୍ମା ତାଙ୍କ ସାଙ୍ଗେ ଯୋଗ ଦେଲେ । ନାଟକ ମଧ୍ୟ ଲେଖାହେଲା – 'କଳିଙ୍ଗ ଭଞ୍ଜନ' । କାଳୀଚରଣ ନିଜେ ଅଭିନୟ, ନାଚ, ଗୀତ ଶିଖାଇଲେ । କିଛି ଦିନ ରଗଡ଼ା ରଗଡ଼ି ପରେ ଦଳଟି ବାଗେଇ ଆସିଲା । ରାଜାଙ୍କ ଆଗରେ ପ୍ରଥମେ ଅଭିନୟ ଦେଖାହେଲା । ଖଣ୍ଡପଡ଼ା ଅବସ୍ଥାନ କାଳରେ ତାଙ୍କ କବିତାରେ ମୁଗ୍ଧ ହୋଇ ଯାବତୀୟ ଖର୍ଚ୍ଚ ରାଜା ନିଜେ ବହନ କରୁଥିଲେ । ରାଜାଙ୍କୁ ତତ୍‌କାଳୀନ ରୀତି ଅନୁଯାୟୀ କବି ବହୁ ସଙ୍ଗୀତ ଉପହାର ଦେଇ ଶତାଧିକ ଟଙ୍କା ଓ ପାଟମଠା ଇତ୍ୟାଦି ପୁରସ୍କୃତ ହୋଇଥିଲେ । ସେହି ସଙ୍ଗୀତମାନଙ୍କ ମଧ୍ୟରୁ ଗୋଟିଏ ସଙ୍ଗୀତର ଗୋଟିଏ ପଦ –

''ସୁଧା ସିନ୍ଧୁରେ ! କାହିଁ ଲୁଚାଇଲୁ ଧନ ପୂର୍ଣ୍ଣ ମୁଖଇନ୍ଦୁ

× × ×

ରତିପ୍ରାନ୍ତେ ଶ୍ରାନ୍ତେ ଯେତେବେଳେ ଗଣ୍ଡ ଯୁଗ ତିନ୍ତିଥାଇ ଝାଳେ
ଚିତ୍ରିଦିଏ ଗଳା ଚିବୁକେ ହେଲେ ରାମ କାମ ମାନହାରି ଗଜମୋତିବିନ୍ଦୁ ।''

ଦୁଇ ବର୍ଷ ପରେ ରାଜାଙ୍କ ମୃତ୍ୟୁ ହେବାରୁ କବିଙ୍କୁ ମନ ଦୁଃଖରେ ଖଣ୍ଡପଡ଼ା ଛାଡ଼ିବାକୁ ପଡ଼ିଲା ।

ଖଣ୍ଡପଡ଼ା ତ୍ୟାଗ କଲାପରେ ଗଞ୍ଜାମରେ କାଳୀଚରଣଙ୍କୁ ସ୍କୁଲ୍ ପରିଦର୍ଶକ ହିସାବରେ ନିଯୁକ୍ତି ମିଳିଲା । ବେତନ ଥିଲା ମାସିକ ଏକ ଶହ ଟଙ୍କା । ଗଞ୍ଜାମର ଜଳବାୟୁ ତାଙ୍କ ସ୍ୱାସ୍ଥ୍ୟର ପ୍ରତିକୂଳ ହେବାରୁ ସେ ଗଞ୍ଜାମରୁ କଟକ ଫେରିଆସିଲେ ।

**ଉତ୍କଳ ଦୀପିକା**

ସେତେବେଳକୁ 'ଉତ୍କଳ ଦୀପିକା'ର ସମ୍ପାଦକ ରାୟବାହାଦୁର ସୁଦାମଚରଣ ନାୟକଙ୍କର କାଳ ହୋଇଯାଇଥାଏ । କାଳୀଚରଣଙ୍କୁ ସେହି ପତ୍ରିକାର ସମ୍ପାଦକ ଓ ପ୍ରକାଶକ ଭାବେ ନିଯୁକ୍ତି ମିଳିଲା । ଅବଶ୍ୟ ତାଙ୍କ ସମ୍ପାଦନାଗତ ନୈପୁଣ୍ୟ ପ୍ରତି ସେସମୟର ବୁଦ୍ଧିଜୀବୀମାନେ ସନ୍ଦେହ ପ୍ରକାଶ କରିଥିଲେ । କିନ୍ତୁ ସେ ସମସ୍ତଙ୍କର ପ୍ରଶଂସାର ପାତ୍ର ହେଲେ । ଉତ୍କଳ-ଗୌରବ ମଧୁସୂଦନ ନିଜେ କାଳୀଚରଣଙ୍କୁ ଆଶୀର୍ବାଦ କରିଥିଲେ । ତାଙ୍କର ଦକ୍ଷତା ଓ ନୈପୁଣ୍ୟ ଯୋଗୁଁ 'ମୁକୁର'ର ସମ୍ପାଦକ ବ୍ରଜସୁନ୍ଦର ଦାସ ମଧ ତାଙ୍କୁ 'ମୁକୁର'ର ସହ-ସମ୍ପାଦକ ଭାବେ ନିଯୁକ୍ତ କଲେ । ସେତେବେଳେ ତାଙ୍କର ବେତନ ଥିଲା ମାତ୍ର ଚାଳିଶ ଟଙ୍କା ।

**ରାସ ନିଶା**

କାଳୀଚରଣଙ୍କୁ ପୁଣି ରାସ ନିଶା ଘାରିଲା । ପ୍ରିଣ୍ଟିଂ କମ୍ପାନୀର କେତେକ କର୍ମଚାରୀଙ୍କୁ ଧରି ରାସ ଦଳ ଗଢ଼ିଲେ । ଗୋବିନ୍ଦଚନ୍ଦ୍ର ଶୂରଦେଓ ସେତେବେଳେ କଟକରେ ରହୁଥାନ୍ତି । ତାଙ୍କ ଘର ପାଖେ କାଳୀଚରଣ ରହିଲେ । ପୁଣି ଅଭିନୟ ଚାଲିଲା । ଏହାପରେ ପ୍ରିଣ୍ଟିଂ କମ୍ପାନୀରୁ ମାସେ ଛୁଟି ନେଇ ଖୋରଧା ରୋଡ୍ ବାଟ ଦେଇ ପ୍ରଥମେ ବୋଲଗଡ଼ ଓ ତା'ପରେ ଇଟାମାଟି ଗଲେ । ମାତ୍ର ସେଠାରେ ଟିକେଟ ବିକ୍ରି ଆଶାନୁରୂପ ହେଲା ନାହିଁ । ଇଟାମାଟିରେ ବିଶିଷ୍ଟ ମାରୱାଡ଼ି ବ୍ୟବସାୟୀ ଘନଶ୍ୟାମ ରାମଙ୍କଠାରୁ ମଧ ସେପରି ସାହାଯ୍ୟ ବା ସହାନୁଭୂତି ପାଇଲେ ନାହିଁ । ସୁନାବୋତାମ ବିକି ଚଳିବାକୁ ପଡ଼ିଲା । ଇଟାମାଟିରୁ ଗଲେ ନୂଆଗଡ଼ । ମାତ୍ର ଆଉ ଆଗକୁ ଯିବାକୁ ଶକ୍ତି ନ ଥିଲା । ସେ କଟକ ଫେରିଲେ । ରାସ ଦଳରେ ଯୋଗ ଦେଇଥିବା ଲୋକେ ରାସ ଦଳ ଛାଡ଼ିଲେ । ଦଳ ମଧ ଭାଙ୍ଗିଗଲା ।

କାଳୀଚରଣ ରାସ କରିବାକୁ ଏକ ମାସ ଛୁଟି ନେଇଥିଲେ । ମାତ୍ର ରହୁ ରହୁ ଚାରି ମାସ ହୋଇଗଲା । ଆଉ ପ୍ରିଣ୍ଟିଂ କମ୍ପାନୀ ଯିବାକୁ ତାଙ୍କର ଇଚ୍ଛା ହେଲା ନାହିଁ । ପୁରୀରେ ବଳଭଦ୍ର ହକୁରୀ ଗୋଟିଏ ଥିଏଟର ଦଳ ଗଢ଼ିବାକୁ ଯାଉଛନ୍ତି ବୋଲି ଶୁଣି ପୁରୀ ଗଲେ । ଦଶ ଦିନ ସେଠାରେ ରହିବା ପରେ ସେ ହକୁରୀଙ୍କ ଅନୁଷ୍ଠାନ ଛାଡ଼ିଦେଲେ । ଜଗନ୍ନାଥ ପ୍ରେସର ସ୍ୱତ୍ୱାଧିକାରୀ ଶ୍ରୀଧର ଖୁଣ୍ଟିଆଙ୍କ ସଙ୍ଗେ

ତାଙ୍କର ଦେଖା ହେଲା । ସେ କାଳୀଚରଣଙ୍କୁ ଜଗନ୍ନାଥ ପ୍ରେସ ଅଡିଟ୍ କରିବାକୁ ଅନୁରୋଧ କଲେ । କିଛି ଦିନ ରହିବା ପରେ କାଳୀଚରଣ ଗଞ୍ଜାମର ସୁରଙ୍ଗୀ ଗଲେ । ସୁରଙ୍ଗୀ ରାଜା ଇଚ୍ଛାପୁରରେ ରହୁଥିଲେ । ଇଚ୍ଛାପୁରରେ ରାଜଦର୍ଶନ ହେଲା । ସେଠାରେ ରାଜାଙ୍କୁ ସ୍ୱରଚିତ ଗୀତ କେତେଗୋଟି ଗାଇ ଶୁଣାଇଲେ । ରାଜାଙ୍କ ଅନୁଗ୍ରହ ମଧ୍ୟ ଲାଭ କଲେ । ରାଣୀଙ୍କୁ ମଧ୍ୟ ଭାଗବତ ଶୁଣାଇଲେ ଘର ଝରକାର ବାହାର ପଟେ ବସି । କିନ୍ତୁ ରାଜାଙ୍କ ପାଖ ଲୋକ ଚୁଗୁଲି କଲେ । ତାଙ୍କୁ ରାଜଦ୍ୱାର ମନା ହେଲା । ସେ ଛୁଟି ମାଗି ଫେରିବାକୁ ବସିଲେ । କିନ୍ତୁ ଯୁବରାଜ ତାଙ୍କୁ ଛୁଟି ଦେଲେ ନାହିଁ । ଯୁବରାଜଙ୍କ ଅକାଳ ମୃତ୍ୟୁ ପର୍ଯ୍ୟନ୍ତ ସେ ସେଠାରେ ରହିଥିଲେ ।

ଘରେ କିଛି ଦିନ ରହିଲାପରେ କାଳୀଚରଣ ବାରିପଦା ଗଲେ । ପୂର୍ବ ପରିଚିତ ବଂଶୀଭାଇଙ୍କ ଘରେ ରହିଲେ । ସେଠି ମହାରାଜା ପୂର୍ଣ୍ଣଚନ୍ଦ୍ର ଭଞ୍ଜଦେଓଙ୍କୁ ଦର୍ଶନପାଇଁ ଚେଷ୍ଟା କଲେ । ମହାରାଜାଙ୍କ ପ୍ରାଇଭେଟ ସେକ୍ରେଟେରୀ ଜଣେ ବଙ୍ଗୀୟ ଭଦ୍ରବ୍ୟକ୍ତି ଥିଲେ । ସେ କିନ୍ତୁ କୌଣସି ବାହାନାରେ ଦେଖା କରାଇଦେଲେ ନାହିଁ । ଦିନେ ରାତିରେ ରାଜବାଟୀକୁ ପିଠି କରି କାଳୀଚରଣ ବଂଶୀ ବଜାଇଲେ । ଜଣେ କେହି ସେଠାରେ ପହଞ୍ଚି ନାଁ, ଗାଁ ଓ ବଇଁଶୀ ବଜାଉଥିବା କାରଣ ପ୍ରଭୃତି ପଚାରି ରାଜାଙ୍କ କୋଠିକୁ ଯିବାକୁ କହିଲେ । କାଳୀଚରଣ କୋଠିକୁ ଯାଇ ରାଜାଙ୍କ ଆଦେଶମତେ ବଂଶୀ ବଜାଇଲେ । ତା' ପରଦିନ ମହାରାଜାଙ୍କୁ ଅଫିସରେ ଭେଟିବାକୁ ଆଦେଶ ହେଲା ।

ତା' ପରଦିନ କାଳୀଚରଣ ମହାରାଜାଙ୍କୁ ଦର୍ଶନ କଲେ । ସେ ତାଙ୍କର ବାରିପଦା ଆସିବା, ରହିବା ଓ ପ୍ରାଇଭେଟ ସେକ୍ରେଟେରୀଙ୍କ ବ୍ୟବହାର ପ୍ରଭୃତି ରାଜାଙ୍କୁ ଜଣାଇଲେ । ଏହାପରେ ନିତି ଦିନ ଦେଖା, ଗୀତ ବାଜା ଓ ସାହିତ୍ୟ ଆଲୋଚନା ଚାଲିଲା । ଛୋଟରାୟ ସାହେବଙ୍କୁ ସଙ୍ଗେ ମଧ୍ୟ ପରିଚୟ ହେଲା । କ୍ରମେ ତାଙ୍କ ସ୍ନେହର ପାତ୍ର ସେ ହୋଇପଡ଼ିଲେ ।

କାଳୀଚରଣ ଛୋଟରାୟଙ୍କୁ କହି ଏକ ଥିଏଟର ପାର୍ଟି ଗଢ଼ିଲେ । ପିଲା ଯୋଗାଡ଼ କରି ଦଳ ଗଢ଼ିଲେ । କାଳୀଚରଣ ସେମାନଙ୍କୁ ଶିଖେଇବା ଭାର ନେଲେ । ନିରୋଳା ଓଡ଼ିଶୀ ଢଙ୍ଗରେ ଶିକ୍ଷା ଦିଆଗଲା । ବାରିପଦା ତ ଛଉ ନାଚ ପାଇଁ ପ୍ରସିଦ୍ଧ ଥିଲା । ବାରିପଦାରେ ବାଗୁଲିକୋଠାରେ ଛଉ ଆଖଡ଼ା ଆରମ୍ଭ ହେଲା । କାଳୀଚରଣ ସେଥିରେ ଭାଗ ନେଲେ । ତାଙ୍କ ନାଟକାଭିନୟ ଶିକ୍ଷା ମଧ୍ୟରେ ଛଉ ଭଙ୍ଗୀ ପୂରାଇଲେ । 'ମିଳନ ମାଧୁରୀ' ନାଟକର ଶେଷରେ ସେହି ଗୀତ ନୃତ୍ୟ ବେଶ୍ ଆଦୃତ ହେଲା । ରାଜବାଟୀର ଦ୍ୱିତୀୟ ଅଗଣାରେ ପେଣ୍ଡାଲ ବନ୍ଧା ହୋଇ ଏହି ନାଟକ ଅଭିନୀତ ହେଲା କେତେକ ରାତ୍ରି । ସବୁରି ତୁଣ୍ଡରେ ନାଟକ ପ୍ରଶଂସିତ ହେଲା ।

## ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ନାଟକ ଦଳ

୧୯୨୧-୨୨ ମସିହା ଆଡ଼କୁ ଲକ୍ଷ୍ମୀକାନ୍ତ ମହାପାତ୍ର ନାଟକ ଦଳ ସହ ବାରିପଦା ଆସିଲେ । ଲକ୍ଷ୍ମୀକାନ୍ତ କାଳୀଚରଣଙ୍କ ବସାରେ ରହିଲେ । ଲକ୍ଷ୍ମୀକାନ୍ତ ସୁନ୍ଦର ଗୀତ ବୋଲି ପାରୁଥିଲେ । କେତେ ଦିନ ରହିବାପରେ ସେ ବାରିପଦାରୁ ବିଦାୟ ନେଲେ ।

## ବିବାହ

୧୯୨୩ ମସିହରେ କାଳୀଚରଣଙ୍କର ବିବାହ ଖୋରଧା ନିକଟ ଗୁରୁଜଙ୍ଗ ଗ୍ରାମ ନିବାସୀ ଶ୍ରୀ ରାଧାନାଥ ମହାନ୍ତିଙ୍କ କନ୍ୟା ସୁଗାତ୍ରୀଙ୍କ ସହିତ ହେଲା । ପନ୍ଦର ଦିନ ପରେ କାଳୀଚରଣ ପୁଣି ବାରିପଦା ଫେରିଗଲେ ।

ବାରିପଦାକୁ ଗୟାର ଓସ୍ତାଦ ବନଓ୍ୱାରୀ ମିଶ୍ର ଆସିଲେ । କାଳୀଚରଣ ସେମାନଙ୍କୁ ରାଜାଙ୍କ ସହିତ ସାକ୍ଷାତ୍ କରାଇଲେ । ମହାରାଜା ଓ ଛୋଟରାୟ ମଧ୍ୟ ଗାୟକ କଳାକାରମାନଙ୍କୁ ବେଶ୍ ସମ୍ମାନ ଦେଲେ । ତାଙ୍କଠାରୁ କାଳୀଚରଣ ଛଅ ସାତ ମାସ ଗୀତ ଶିଖିଲେ ।

## 'ହାଇଫେସନ' ଗ୍ରନ୍ଥ ରଚନା

କାଳୀଚରଣ କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ବ୍ୟଙ୍ଗକବିତା ଶୁଣିଥିଲେ । କେଜାଣି କାହିଁକି କାଳୀଚରଣ ସେ ଆଡ଼କୁ ଢଳିଲେ ଓ କେତେଗୁଡ଼ିଏ ବ୍ୟଙ୍ଗକବିତା ଲେଖିଲେ । ସେଥିରେ ସେତେବେଳକାର ଦେଶପାତ୍ରର ସମାଲୋଚନା କରାଯାଇଥିଲା । ସେ ବହିଟିର ନାମକରଣ କରିଥିଲେ – 'ହାଇଫେସନ' । କାଳୀଚରଣ ସେହି କ୍ଷୁଦ୍ର ପୁସ୍ତକଟିକୁ ବାରିପଦାର ମହାରାଜାଙ୍କୁ ଭେଟି ଦେଲେ । ଦି' ଚାରିଟା ଖଣ୍ଡ କବିତା ମଧ୍ୟ ଶୁଣାଇଲେ । ରାଜା ତାଙ୍କୁ ଆଦର କଲେ । ମାତ୍ର କେତୋଟି କବିତାର ପଂକ୍ତିର କଦର୍ଥ ହେଲା । ରାଜା ମଧ୍ୟ କୁଚକ୍ରୀମାନଙ୍କର କଥା ବିଶ୍ୱାସ କଲେ । ଯେତେ ବୁଝାଇଲେ ମଧ୍ୟ କିଛି ଫଳ ହେଲା ନାହିଁ । ମହାରାଜା ଶେଷରେ କାଳୀଚରଣଙ୍କୁ ରାଜ୍ୟରୁ ବାହାର କରିଦେଲେ ।

କାଳୀଚରଣଙ୍କର ବାରିପଦାରେ ଥିଲାବେଳେ ଫୁଲ ବୋଲି ଗୋଟିଏ ଝିଅ ସହିତ ପ୍ରେମ ସମ୍ପର୍କ ଥିଲା । ସେ ସେଠାରେ କାଳୀଚରଣଙ୍କୁ ରୋଷାଇ କରି ଦେଉଥିଲା । ପାଖରେ ମଧ୍ୟ ଖାଉଥିଲା । ରାଜବାଟୀକୁ କାଳୀଚରଣ ଗଲାବେଳେ ପାନଦେବା ବାହାନାରେ ସେ କାଳୀଚରଣଙ୍କ ପାଖକୁ ଯାଉଥିଲା । କିନ୍ତୁ ଚିତାଲାଗି ଅମାବାସ୍ୟା ଦିନ ଘରୁ ପିଠା ନେଇ ଫୁଲ ତାଙ୍କ ପାଖକୁ ଯାଉଥିଲାବେଳେ ନଈରେ ପାଣି ଆସିଲା । ସେଇ ସୁଅରେ ଫୁଲ ଭାସିଗଲା । କାଳୀଚରଣଙ୍କର ବାରିପଦାରେ ରହିବାର ମୋହ ଆଉ ରହିଲା ନାହିଁ । ଫୁଲ ବିନା ବସାରେ ରହିବା ଯମଯନ୍ତ୍ରଣା ପରି ଲାଗିଲା । ସେ ଛୁଟି ନେଇ ଘରକୁ ଫେରିଲେ ।

## ପୁରୀ ଯାତ୍ରା

ଘରକୁ ଆସିବାର ଦୁଇ ଦିନ ପରେ ପଣ୍ଡିତ ଗୋପବନ୍ଧୁ ଦାସଙ୍କଠାରୁ ଡକରା ପାଇ କାଳୀଚରଣ କଟକ ଗଲେ ଓ ସେଠାରେ ଦାସେଆପଣଙ୍କୁ ଭେଟିଲେ । ଅଚ୍ଛୁତମାନଙ୍କୁ ପୁରୀ ଶ୍ରୀମନ୍ଦିରରେ ପ୍ରବେଶ କରାଇବାପାଇଁ ମହାତ୍ମା ଗାନ୍ଧୀ ପୁରୀ ଆସିବାର କାର୍ଯ୍ୟକ୍ରମ ଥାଏ । ଗୋପବନ୍ଧୁ କାଳୀଚରଣଙ୍କୁ ରାଜାଙ୍କୁ ଅଚ୍ଛୁତମାନଙ୍କ ମନ୍ଦିର ପ୍ରବେଶ ଦିଗରେ ରାଜି କରାଇବାକୁ କହିଲେ । କାଳୀଚରଣ ମଧ୍ୟ ପୁରୀ ଯାଇ ରାଜାଙ୍କୁ ଭେଟିଲେ । ରାଜା ଶୁଣି ଖୁସି ହେଲେ । ସେ ମାତବରିଆ ସେବକମାନଙ୍କୁ ଡାକି ସବୁ କଥା କହିଲେ । ସେମାନେ କିନ୍ତୁ ପୂରା ରାଜି ହେଲେ ନାହିଁ ।

କାଳୀଚରଣ ପୁରୀରେ ରହିଲେ । ପ୍ରତି ସନ୍ଧ୍ୟାରେ ନଅରକୁ ଯାଉଥାନ୍ତି । ସେଠାରେ ସଙ୍ଗୀତ ଚର୍ଚ୍ଚା ହେଉଥିଲା । ଗୀତ ବି ବୋଲା ହେଉଥିଲା । ପୁରୀରେ ତାଙ୍କ ପାଖରେ ବୋଉ, ସ୍ତ୍ରୀ ସୁଗାତ୍ରୀ ଓ ଦାଦାଙ୍କ ଝିଅ ପୁନା ବି ରହୁଥିଲେ ।

## କବିଚନ୍ଦ୍ର ଉପାଧି

୧୯୨୬ ମସିହା କଥା । ସୁନିଆଁ ଦିନ ମହାରାଜା ଶ୍ରୀ ରାମଚନ୍ଦ୍ରଦେବ କାଳୀଚରଣଙ୍କୁ ‘କବିଚନ୍ଦ୍ର’ ଉପାଧି ଦେଇ ମୁଣ୍ଡରେ ଶାଢ଼ି ବାନ୍ଧିଲେ । ଘରେ ବାହାରେ ସମସ୍ତେ ତାଙ୍କୁ ଆଦର ସମ୍ବର୍ଦ୍ଧନା କଲେ । କାଳୀଚରଣ କୋର୍ଟ ପୋଏଟ୍ ଓ ମ୍ୟୁଜିସିୟାନ୍ ଭାବେ ନିଯୁକ୍ତ ହେଲେ । ୫.୧୧.୧୯୨୬ ତାରିଖରେ ଶ୍ରୀଜଗନ୍ନାଥ ସେବାର ବାଦକ ଓ ଚାମର ସେବାର ନିୟୋଗ ମଧ୍ୟ ପାଇଲେ ।

ପୁରୀରେ ଥିଲାବେଳେ କାଳୀଚରଣ କେନ୍ଦ୍ରାପଡ଼ାରୁ କେତେକ ପିଲାଙ୍କୁ ଆଣି ଗୋଟିଏ ରାସ ଦଳ ଗଢ଼ିଲେ ।

## ଘୋର ଅପମାନ

ରାଜାଙ୍କର ଦିୱାନ ଥିଲେ ବାବୁ ରାଜକିଶୋର । ଦିନେ ଜରୁରୀ ଥିବା ଦର୍ଶାଇ ନଅରକୁ ଯାଇ ଗୋଟିଏ ଚିଠିରେ ରଜାଙ୍କ ଦସ୍ତଖତ କରାଇ ଆଣିବାକୁ କହିଲେ । ରାଜାସାହେବ ଚାରି ଛଅଟା ବିଲାତି କୁକୁରଙ୍କ ସହିତ ପେଣ୍ଡୁ ଗଡ଼ାଇ ଖେଳୁଥାନ୍ତି । କାଳୀଚରଣ ଆସିବା ଅଭିପ୍ରାୟ ଜଣାଇଲେ । ମାତ୍ର ରାଜା ପଦେ କଥା କହିବା ଦୂରେ ଥାଉ ତାଙ୍କ ଆଡ଼କୁ ଚାହିଁଲେ ନାହିଁ । କାଳୀଚରଣ ପନ୍ଦର କୋଡ଼ିଏ ମିନିଟ ଅପେକ୍ଷା କଲେ । ପରେ ତୁରନ୍ତ ସ୍ୱାକ୍ଷର କରିଦେବାକୁ ଅନୁରୋଧ କଲେ । ଏହାପରେ ଗଜପତି ଯାହା କହିଲେ ସେଥିରେ କାଳୀଚରଣ ଚକିତ ହୋଇପଡ଼ିଲେ –

‘‘ୟାଙ୍କ ଦାମ୍ ତମଠୁଁ ବେଶୀ ।’’

କାଳୀଚରଣଙ୍କୁ ଚଉଦିଗ ଅନ୍ଧାର ଦିଶିଲା । ଦେହ ଗରମ ହୋଇଗଲା । ତଥାପି ନୀରବ ରହିଲେ । ରାଜା ପୁଣି ପଚାରିଲେ –

'କଅଣ ମିଛ କଥା ।''

କାଳୀଚରଣ ଉତ୍ତର ଦେଲେ -

'ନାଇଁ ଆଜ୍ଞା ! ମିଛ ନୁହେଁ, ଛାମୁଙ୍କ କଥା ବିଲକୁଲ୍ ଠିକ୍ । ... ମୋର ବାପ, ଗୋସେଇଁବାପ, ବୋଉ ଯାହାଙ୍କ ଗୋଡ଼ ତଳେ ମୁଣ୍ଡିଆ ମାରନ୍ତି, ତାଙ୍କ ଉପରେ ଯେ ଚଢୁଛନ୍ତି ତାଙ୍କ ଦାମ ନିଶ୍ଚୟ ମୋ ଠୁଁ ବେଶୀ ।''

ରାଜାଙ୍କର ବୋଧେ ଚେତା ଆସିଲା । ରଙ୍ଗ ଆଖି ଢିମା ଢିମା କରି କହିଲେ -

''ବଡ଼ ପ୍ରଗଲ୍‌ଭ ତୁମେ ।''

ତା'ପରେ କାଗଜଟା ମାଗି ଦସ୍ତଖତ କରିଦେଲେ । ବାଟରେ ଆସିଲାବେଳେ କାଳୀଚରଣଙ୍କ ମନ ଜଳି ଯାଉଥାଏ ।

''ଆତ୍ମମର୍ଯ୍ୟାଦା ହରାଇବା ଠାରୁ ଆତ୍ମହତ୍ୟା କଅଣ ଭଲ ନୁହେଁ ?''

ଏହାପରେ ଅବଶ୍ୟ ରାଜାଙ୍କ ସହିତ କାଳୀଚରଣଙ୍କ ଭେଟ ହୋଇଛି । ତେବେ ବାଧରେ । ସାନ୍ଧ୍ୟବୈଠକରେ ଯୋଗଦେବାପାଇଁ ପାଦ ତାଙ୍କର ପଛଘୁଞ୍ଚା ଦେଉଥାଏ । ତାଙ୍କୁ କୁକୁର ସହିତ ତୁଳନାଟା ମନେପଡ଼ି ଯାଉଥାଏ । ବୁକୁ ଭିତରଟା ଥରି ଉଠୁଥାଏ ।

ଏହାପରେ ଛୁଟି ନେଇ କାଳୀଚରଣ କଲିକତା ଗଲେ । ସେଠାର 'ହିଜ୍ ମାଷ୍ଟରସ୍ ଭଏସ୍' କମ୍ପାନୀରେ ଚାରି ଗୋଟି ଗୀତ ରେକର୍ଡିଂ କରାଇଲେ । ଗୋଟିଏ ପ୍ରେସ ବି କିଣି ପୁରୀ ଫେରିଲେ । ପୁରୀ ବଡ଼ଦାଣ୍ଡରେ ଗୋଟିଏ ଭଡ଼ାଘରେ ଛାପାଖାନା ବସିଲା । ନାମ ହେଲା 'ସଙ୍ଗୀତପ୍ରଭା' ପ୍ରେସ । 'ସଙ୍ଗୀତପ୍ରଭା' ନାମକ ଏକ ମାସିକ ପତ୍ରିକା ମଧ୍ୟ ପ୍ରକାଶ ପାଇଲା । ନଅର କଚିରିକୁ କାଳୀଚରଣ ଆଉ ଗଲେ ନାହିଁ । ରାଜା ଦୁଇ ଚାରି ଥର ଡକାଇଲେ । ରାଣୀଙ୍କ ଠାରୁ ମଧ ଖବର ପାଇଲେ । ଇତିମଧ୍ୟରେ ରେକର୍ଡ ତକ କଲିକତାରୁ ଆସି ଯାଇଥାଏ । ଗୋଟିଏ ରେକର୍ଡ ରାଜାଙ୍କୁ ଭେଟି ଦେଲେ । ଗ୍ରାମଫୋନ୍ ଭିତରୁ ତାଙ୍କ ଗୀତ ବାହାରିଲା ।

''ଚାକିରି ଝକ୍‌ମାରି
ଏ ଜନମେ ନାହିଁ କରି ।
ଖାମିଦ ହସିଲେ ହସି - ଖୁସିରେ ଖୁସି
ଗଧକୁ କହିଲେ ଘୋଡ଼ା - ଦିନଯାଏ ହାଁଜୀ ମାରି ।''

ରାଜାଙ୍କ ଅନୁରୋଧରେ ଗୀତଟିକୁ ଗାଇ ମଧ ଶୁଣାଇଲେ । ଗୀତ ଶେଷରେ ରାଜାଙ୍କ ଶ୍ରୀମୁଖ ଶୁଖିଗଲା । କାଳୀଚରଣଙ୍କର ମନ୍ତବ୍ୟ -

''ରୋଷରେ କି ଅବଶୋଷରେ କେଜାଣି !''

ଆଉ ରହିବା ଭଲ ନୁହେଁ ବିଚାର କରି ବିଦାୟ ନେଇ କାଳୀଚରଣ ଫେରିଲେ । ସିଂହଦ୍ୱାରରୁ ଫେରି ଚାହିଁଲେ – ଚାକିରିର ଶେଷ ଦେଖାପାଇଁ । ମନଟା ଟିକିଏ କେମିତି ଗୋଳେଇଘାଣ୍ଟି ହେଲା । କାଳୀଚରଣ ଆଉ ନଅର ଦୁଆର ମାଡ଼ି ନାହାନ୍ତି ।

**କଳା ଜୀବନ**

ପୁରୀରେ ପ୍ରେସ ଚାଲିଥାଏ । କିନ୍ତୁ କାଳୀଚରଣ ସେଥିରୁ ଆନନ୍ଦ ପାଉ ନ ଥିଲେ । ଗୋଟିଏ ରାସ ଦଳ ଗଢ଼ିବାକୁ ମନ ପୁଣି ଉଚ୍ଚାଟ ହେଲା । ଗଢ଼ିଲେ ମଧ । 'ଶ୍ରୀରାଧା' ଓ 'ବାଂଶରୀ ବିଳାପ' ନାମକ ଦୁଇ ଖଣ୍ଡ ରାସ ବହି ପ୍ରସ୍ତୁତ କଲେ । ପୁରୀ ଏମାର ମଠର ମହନ୍ତ ମହାରାଜଙ୍କ ଅନୁରୋଧରେ ତାଙ୍କ ଠାକୁରଙ୍କ ଆଗେ ଅଭିନୟ ହେଲା । ଲୋକେ ମୁଗ୍ଧ ହେଲେ । ଏ ରାସ ମୋହନ ଗୋସ୍ୱାମୀଙ୍କ ରାସଠାରୁ ପୃଥକ୍ ଥିଲା । ବିଭିନ୍ନ ରାଗ-ରାଗିଣୀର ଗୀତ ସେ ଏଥିରେ ଖଞ୍ଜିଥିଲେ । ବେଶି ବଚନିକା ମଧ ରଖିଥିଲେ । ପୁରୀ ସହରବାସୀ ଏହାର ପ୍ରଶଂସା କଲେ । ପୁରୀ ରାଜବାଟୀରେ ମଧ ରାସ ଅଭିନୀତ ହେଲା । ରାସ ଆଦୃତ ହେବାରୁ ଜଗନ୍ନାଥ କ୍ଲବ୍‌ରେ ଟିକେଟ ବିକ୍ରିର ବ୍ୟବସ୍ଥା ହେଲା । ଥରେ କିନ୍ତୁ ପ୍ରହସନ ମାଧମରେ ମହନ୍ତ, ମାତା, ମ୍ୟୁନିସିପାଲିଟି ପ୍ରଭୃତିଙ୍କୁ ସମାଲୋଚନା କରିବାରୁ କାଳୀଚରଣ କ୍ରୋଧର ଶିକାର ହେଲେ ।

ଏଥିମଧରେ ନରସିଂହପୁର ରାଜାଙ୍କ ବାହାଘରକୁ ଯିବାକୁ କାଳୀଚରଣ ନିମନ୍ତ୍ରଣ ପାଇଲେ । ଆଠଗଡ଼, ମାଣିଆବନ୍ଧ, ବଡ଼ାମ୍ବା ପ୍ରଭୃତି ଦେଇ ନରସିଂହପୁରରେ ସେ ପହଞ୍ଚିଲେ । ସେଠାରେ ଦୁଇ ରାତି ଅଭିନୟ ଦେଖାଇ ବଡ଼ାମ୍ବା ଆସିଲେ । ଏହାପରେ ତିଗିରିଆ ରାଜବାଟୀରେ ଦୁଇ ଦିନ ଅଭିନୟ ହେଲା । ତିଗିରିଆରୁ କାଳୀଚରଣ କଟକ ଫେରିଲେ ।

କଟକରୁ କାଳୀଚରଣ କେନ୍ଦ୍ରାପଡ଼ା ଗଲେ । ସେଠାରେ ମାସେ କାଳ ରହିଲେ । ଟିକେଟ ମଧ ବେଶ୍ ବିକ୍ରି ହେଲା । ଏହାପରେ ସେ ବାଲେଶ୍ୱର ଗଲେ । ବାଗ୍ ବୃନ୍ଦାବନ ପଡ଼ିଆରେ ତମ୍ବୁ ପକାଇ ଅଭିନୟ ପ୍ରଦର୍ଶନ କଲେ । ବର୍ଷା ତୋଫାନରେ ତମ୍ବୁ ଚିରିଯିବାରୁ ଅଭିନୟ ବନ୍ଦ କରି ପୁରୀ ଫେରିଲେ ।

ରାମଚଣ୍ଡୀ ସାହିସ୍ଥିତ ଜଗନ୍ନାଥ କ୍ଲବ୍‌ରେ 'ମୃଚ୍ଛକଟିକ' ସଂସ୍କୃତ ନାଟକ ଅଭିନୀତ ହେଲା । ଓଡ଼ିଶାରେ ଏହା ପ୍ରଥମ ସଂସ୍କୃତ ନାଟକ ମଞ୍ଚସ୍ଥ ହେବାର ଗୌରବ ଅର୍ଜନ କଲା । ପୁରୀରେ 'ସଙ୍ଗୀତପ୍ରଭା' ପ୍ରକାଶ ପାଉଥାଏ । ବ୍ରହ୍ମପୁରର 'ଆଶା' ପତ୍ରିକାର ସମ୍ପାଦକ ଏହି ପତ୍ରିକାକୁ ବିଜ୍ଞାପନ ଦେଉଥିଲେ । ଗୋଟିଏ ବର୍ଷ ଚାଲିବାପରେ ପତ୍ରିକାଟି ବନ୍ଦ ହୋଇଗଲା ।

ପୁରୀରେ ସଙ୍ଗୀତଜ୍ଞ ରଘୁନାଥ ଗୋସ୍ୱାମୀଙ୍କ ପୁତ୍ର ଗୋପାଳ ଗୋସାଇଁ ଦିନେ କାଳୀଚରଣଙ୍କୁ ବସାକୁ ଡାକିଲେ । ପୁରୀ ସୁଆରସାହିର ବାବାଜି ମହାପାତ୍ର ମଧ୍ୟ ସେଠାରେ ଉପସ୍ଥିତ ଥିଲେ । ସେମାନେ ଓ କାଳୀଚରଣ ମିଶି ପୁଣି ଗୋଟିଏ ରାସ ଦଳ ଗଢ଼ିବାପାଇଁ ସ୍ଥିର କଲେ । ଗୋପାଳ ଗୋସାଇଁ ଓ ବାବାଜି ମହାପାତ୍ର ସବୁ ଖର୍ଚ୍ଚ ତୁଲାଇବା ଭାର ନେଲେ । କାଳୀଚରଣ ବହି ଲେଖିବା ଓ ପିଲାଙ୍କୁ ଶିଖାଇବା ଦାୟିତ୍ୱ ଗ୍ରହଣ କଲେ । ନାମ ଦିଆଗଲା – 'ଶ୍ରୀ ରାଧାରମଣ ରାସୋତ୍ସବ' ।

ଜଗନ୍ନାଥ କ୍ଲବରେ ପ୍ରଥମେ ରାସ ଅଭିନୟ ହେଲା । ପ୍ରଥମ ବହି ଥିଲା 'ବନ ବିହାର' । କାଳୀଚରଣ ଓଡ଼ିଶୀ, ହିନ୍ଦୁସ୍ଥାନୀ, କର୍ଣ୍ଣାଟକୀ, ଗଜଲ ଓ ଠୁମୁରୀ ସ୍ୱରରେ ଗୀତ ସଂଯୋଗ କଲେ । ତାହାଛଡ଼ା ବଚନିକା ଓ ସଂଳାପ ଅଂଶ ଅଧିକ ରହିଲା । ଲୋକେ ଏହାକୁ ପସନ୍ଦ କଲେ ।

କେତେ ରାତି ଅଭିନୟ ପରେ ଦଳ ବାହାରକୁ ଗଲା । ଖୋରଧା, ଅନୁଗୁଳ, ସମ୍ବଲପୁର ପ୍ରଭୃତି । ସମ୍ବଲପୁରରେ ନୀଳମଣି ସେନାପତି ଆଇ.ସି.ଏସ୍. ଡେପୁଟି କମିସନର ଥାଆନ୍ତି । ପ୍ରାୟ ତିନି ମାସ ସମ୍ବଲପୁରରେ ରାସ ଅଭିନୀତ ହେଲା । ଆୟ ମଧ୍ୟ ଭଲ ହେଲା ।

ସମ୍ବଲପୁରରୁ ବରଗଡ଼, ବୋଡ଼ାସମ୍ବର ପ୍ରଭୃତି ସ୍ଥାନମାନଙ୍କରେ ରାସ ହେଲା । ଏହାପରେ ବଲାଙ୍ଗୀରରୁ ଡାକରା ପାଇ କାଳୀଚରଣ ବଲାଙ୍ଗୀର ଗଲେ । ବାହାରେ ଯଥେଷ୍ଟ ଖ୍ୟାତି ଅର୍ଜନ କଲାପରେ କାଳୀଚରଣ ପୁରୀ ଫେରିଲେ । ଗୋପାଳ ଗୋସାଇଁ ଓ ବାସୁ ମହାପାତ୍ରେ ବହୁ ଟଙ୍କା ରୋଜଗାର ହୋଇଥିବା ମନେ କଲେ । ମାତ୍ର ବାସ୍ତବରେ ମାତ୍ର ଦୁଇ ଶହ ଟଙ୍କା ବଳିଥିଲା । ଶେଷରେ ପୁଲିସ ପର୍ଯ୍ୟନ୍ତ କଥା ଗଲା । କାଳୀଚରଣଙ୍କର ଜିତାପଟ ହେଲା । ତେବେ 'ରାଧାରମଣ ରାସୋତ୍ସବ' ଦଳଟି ଭାଙ୍ଗିଗଲା ।

ଏହାପରେ କାଳୀଚରଣ କଟକ ଗଲେ ଓ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କୁ ଭେଟିଲେ । ସେ ସାକ୍ଷୀଗୋପାଳ ମନ୍ଦିର ଟ୍ରଷ୍ଟ ବୋର୍ଡର ମୁଖ୍ୟ ଥିଲେ । ତାଙ୍କ ଉଦ୍ୟମରେ 'ସାକ୍ଷୀଗୋପାଳ ନାଟ୍ୟ ସଂଘ' ଗଢ଼ାଗଲା । ଏହା ପ୍ରାୟ ୧୯୨୯ ମସିହାର କଥା ।

ସାକ୍ଷୀଗୋପାଳରେ ନାଟକ ଅଭିନୀତ ହେଲା । ମନ୍ଦିର ଆଗରେ ଷ୍ଟେଜ ବନ୍ଧା ହେଲା । ଉପରେ ନଡ଼ିଆ ଚାଞ୍ଚ ଛପର ହେଲା । ପହିଲି ରାତି 'ବନବିହାର' ରାସ ଅଭିନୀତ ହେଲା । ପଣ୍ଡିତ ଲିଙ୍ଗରାଜ ମିଶ୍ର ସେଦିନ ଅତିଥି ହୋଇଥିଲେ । ପରେ ପରେ 'କୌତୁକ ଚିନ୍ତାମଣି' ଓ 'ବିଦ୍ୟାବଳୀ' ନାଟକ ଅଭିନୀତ ହେଲା । ଅଭିନୟ ମଧ୍ୟ ସର୍ବତ୍ର ପ୍ରଶଂସିତ ହେଲା । ସମସ୍ତ ଖର୍ଚ୍ଚ ମନ୍ଦିର ଆୟରୁ ବହନ କରାଯାଇଥିଲା ।

କାଳୀଚରଣ ଆଠମଲ୍ଲିକରୁ ଡକରା ପାଇ ଦଳ ନେଇ ଆଠମଲ୍ଲିକ ଗଲେ । ଆଠମଲ୍ଲିକରେ ଚାରି ରାତି ଅଭିନୟ ଦେଖାଇଲେ । ଏହାପରେ କାଳୀଚରଣ ଅନୁଗୁଳକୁ ଆସିଲେ । ସେଠାରେ ପଢ଼ାସାଥୀ ହୃଦୟବଲ୍ଲଭ ଦେ ପୁଲିସ ଟ୍ରେନିଂ କଲେଜର ଅଧ୍ୟକ୍ଷ ଥାଆନ୍ତି । ସେଠାରେ ୧୫ରୁ ୨୦ ରାତି ଅଭିନୟ ପ୍ରଦର୍ଶନ କଲେ । ଏହାପରେ ଗଲେ ସମ୍ବଲପୁର । ସେଠି ଗୋଟାଏ ଅପ୍ରୀତିକର ଘଟଣା ଘଟିଲା । ଅଦିଆ ଗରାଖମାନେ ଗୋଳମାଳ କଲେ । ଗାଳିଗୁଲଜ କଲେ । ମଞ୍ଚ ଉପରେ ଟେକାପଥର ଗଦା ହୋଇଗଲା । ପୁଲିସ ସାହାଯ୍ୟ ମିଳିଲା । ଏହାପରେ ସେଠାରେ ଗୋଳମାଳ ହୋଇ ନ ଥିଲା । ସମ୍ବଲପୁରରୁ କାଳୀଚରଣ ଗଲେ ବରଗଡ଼ । ସେଠାର ଜଣାଶୁଣା ବ୍ୟକ୍ତି କୃତାର୍ଥ ଆଚାର୍ଯ୍ୟଙ୍କ ସଙ୍ଗେ ତାଙ୍କର ବନ୍ଧୁତା ହେଲା । କିଛି ଦିନ ଅଭିନୟ କଲା ପରେ କାଳୀଚରଣ ବୋଡ଼ାସମ୍ବର ଗଲେ । ସେଠାରୁ ସମ୍ବଲପୁର ଓ ଅନୁଗୁଳ ଦେଇ କଟକ ଫେରିଲେ ।

କଟକରେ କାଳୀଚରଣ ଜାଉଁଳିଆପଟିରେ ବସା କରି ରହିଲେ । କେତେ ରାତି ଅଭିନୟ ଦେଖାଇଲାପରେ ଶ୍ରୀରାମଚନ୍ଦ୍ର ଭବନରେ ଅଭିନୟ ପ୍ରଦର୍ଶିତ ହେଲା । କଟକବାସୀ ମଧ୍ୟ ଭୂରି ଭୂରି ପ୍ରଶଂସା କଲେ । ଶ୍ରୀରାମଚନ୍ଦ୍ର ଭବନରେ ସ୍ଥାନର ଅଭାବ ପଡ଼ିବାରୁ କାଳୀଚରଣ ବାଙ୍କାବଜାରର ସୁଶୀଳ ପାଲିତ ପଡ଼ିଆରେ ପାଲଟାଣି ପେଣ୍ଡାଲ ବାନ୍ଧି ନାଟକ ଦେଖାଇଲେ । ଏହିଠାରେ ପ୍ରଥମେ ଚମ୍ପୂ ନାଟକ ଅଭିନୟ ହେଲା । ଏହାକୁ ଉଦ୍‌ଘାଟନ କରିଥିଲେ ରାୟବାହାଦୁର ରାଜକିଶୋର ଦାସ । ଦର୍ଶକମାନେ ଭାବତନ୍ମୟ ହୋଇପଡ଼ିଥିଲେ ବୋଲି କାଳୀଚରଣ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି ।

ଏହାପରେ କାଳୀଚରଣ ଯାଜପୁର ଗଲେ । ସେଠାରେ ବି ତାଙ୍କ ଦଳ ଭାରି ଆଦର ପାଇଲା । ସେଠାରୁ ଫେରି କାଳୀଚରଣ ଦଳ ନେଇ ଭଦ୍ରକ ଗଲେ । ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ଆମ୍ବବଗିଚା ଭିତରେ ଗୋଟିଏ ଚାଳଘରେ ବସା କଲେ । ପ୍ରଥମ ରାତିର ନାଟରେ ଉଦ୍‌ଘାଟନ କଲେ ସବ୍‌ଡିଭିଜିନାଲ ମାଜିଷ୍ଟ୍ରେଟ୍ ଦୁର୍ଗାଚରଣ ଦାସ । ମୁଖ୍ୟ ଅତିଥି ଥିଲେ ଲକ୍ଷ୍ମୀକାନ୍ତ । ପ୍ରାୟ ଦୁଇ ମାସ କାଳୀଚରଣ ଭଦ୍ରକରେ ରହିଲେ । ସେଠାରୁ ନିମନ୍ତ୍ରଣ ପାଇ ଗଲେ ସୁକିନ୍ଦା । ସେଠାରେ ତିନି ରାତି ନାଟକ ଦେଖାଇଲେ । ଏହାପରେ କାଳୀଚରଣ ଗଲେ ଯାଜପୁର ରୋଡ୍ । ସେଠାରେ ଦଶ ବାର ଦିନ ରହିଲେ । ସେଠାରେ ଥିଲାବେଳେ ଗୀତଗୋବିନ୍ଦର ଓଡ଼ିଆ ଅନୁବାଦ କଲେ । ଏହା ଶେଷ ହେଲା ୧୯୩୩ ମସିହା ମେ ମାସ ୧୧ ତାରିଖରେ ।

କାଳୀଚରଣ ଯାଜପୁର ରୋଡ୍‌ରୁ ଡକରା ପାଇ କେନ୍ଦୁଝର ଗଲେ । କେନ୍ଦୁଝର ରାଜାସାହେବ ନାଟକ ପ୍ରିୟ ଥିଲେ । ସେଠାରେ ଚାରି ରାତି ଅଭିନୟ ଦେଖାଇ ସିଂହଭୂମ ସୀମା ଚମ୍ପୁଆ ଯାଇ ସେଠାରେ ସୁଖ୍ୟାତିର ସହ ପାଞ୍ଚ ରାତି ଅଭିନୟ

ଦେଖାଇ ଆନନ୍ଦପୁର ଫେରିଲେ । ସେଠାରେ କେତେ ରାତି ଅଭିନୟ ଦେଖାଇ କଟକ ଆସିଲେ ।

କଟକରେ ପ୍ରଥମେ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ବାହାର ଘରେ ରହିଲେ । ଘର ଆଗେ ପକ୍କା ପେଣ୍ଡାଲ ଗଢ଼ା ହେଲା । ପଡ଼ିଆରେ ଲୋକେ ବସୁଥିଲେ । ବହୁଦିନ ଧରି ନାଟକ ଅଭିନୀତ ହେଲା । ପ୍ରଥମେ ପ୍ରଥମେ ନାଟକ ଅଭିନୟ ଶନିବାର ଓ ରବିବାର ଦିନ ହେଉଥିଲା । ତାହା ପୁଣି ଦୁଇଟି ନାଟକ ଥିଲା । ପରୀକ୍ଷାମୂଳକ ଭାବେ କାଳୀଚରଣ ନାଟକକୁ ଚାରି ପାଞ୍ଚ ଦିନ ଚଳାଇଲେ । ବେଶ୍ ଚାଲିଲା ମଧ୍ୟ ।

ସତ୍ୟବାଦୀର କେଶବ ମହାପାତ୍ର ଦିନେ କାଳୀଚରଣଙ୍କୁ ସାକ୍ଷୀଗୋପାଳଙ୍କ ବିଷୟରେ ଏକ କିମ୍ବଦନ୍ତୀ ଶୁଣାଇଲେ ଓ ତାହା ଉପରେ ନାଟକଟିଏ ଲେଖିବାକୁ ଅନୁରୋଧ କଲେ । କାଳୀଚରଣ ଦିଅଁଙ୍କୁ ଫୁଲ ଚଢ଼ାଇ ମନେ ମନେ ଅନୁମତି ଭିକ୍ଷା କଲେ । ଫୁଲ ମଧ୍ୟ ଖସିଲା । ଲେଖିବାକୁ ହୁକୁମ ପାଇଲେ ବୋଲି ମନେ କରି କାଳୀଚରଣ 'ଲକ୍ଷ୍ମୀ' ନାଟକ ଲେଖିଲେ । ତାହା ମଧ୍ୟ ଅଭିନୀତ ହେଲା – ଭାଷାକୋଷ ଗଳିର ପ୍ରହରାଜଙ୍କ ବାହାରପଟ ପଡ଼ିଆ ଭିତରେ । ତାହାକୁ ଦେଖି ଲୋକେ ପ୍ରଶଂସା କଲେ । ଆଠଗଡ଼ ରାଜାଙ୍କ ନିମନ୍ତ୍ରଣ ପାଇ କାଳୀଚରଣ ଆଠଗଡ଼ ଗଲେ । କଟକ ଫେରିଆସିଲା ପରେ ଶ୍ରୀରାମଚନ୍ଦ୍ର ଭବନରେ ପୁଣି ନାଟକ ଅଭିନୀତ ହେଲା । ୧୯୩୭ ମସିହାରେ କାଳୀଚରଣ ନାଟକରେ ଝିଅମାନଙ୍କୁ ପାର୍ଟ ଦେଲେ । ପ୍ରଥମେ କାଳୀଚରଣ ହିଁ ନାଟ୍ୟଦଳରେ ଝିଅମାନଙ୍କୁ ନେଇ ନାଟକ କଲେ ।

କଟକରେ କେତେକାଳ ଅଭିନୟ ଚାଲିଲା । ପରେ ଦଳ ନେଇ କାଳୀଚରଣ ବ୍ରହ୍ମପୁର ଗଲେ । ଓଡ଼ିଆ ପେଣ୍ଡାଲ ନାମରେ ଗୋଟିଏ ମଞ୍ଚ ସେଠାରେ ଥିଲା । ସେଠି ସେ ଅଭିନୟ ଦେଖାଇଲେ । ଥରେ 'ନବୀନ' କାଗଜ ସମ୍ପାଦକ ମଦ୍ଭୁରୀ ଯୁବରାଜ ତାଙ୍କ ସାଙ୍ଗସାଥିଙ୍କୁ ନେଇ ବିନା ଟିକେଟରେ ପ୍ରବେଶ କରିବାକୁ ଉଦ୍ୟମ କଲେ । କିନ୍ତୁ ଜଗୁଆଳି ତାଙ୍କୁ ଭିତରକୁ ଛାଡ଼ିଲା ନାହିଁ । ମଦ୍ଭୁରୀ ଯୁବରାଜ ଅବଶ୍ୟ ଫେରିଗଲେ; ମାତ୍ର କାଳୀଚରଣଙ୍କ ନାଁରେ ଅପପ୍ରଚାର ଚଳାଇଲେ । ପେଣ୍ଡାଲ ଉପରେ ତା' ପର ଦିନ ଟେକାପଥର ବି ପଡ଼ିଲା । କାଳୀଚରଣ ବି 'ପଇସିକିଆ ଯୁବରାଜ' ନାମକ ପ୍ରହସନ ଲେଖି ବାଣ୍ଟିଲେ । ଶେଷରେ ମିଳାମିଶା ହେଲା ।

ସୁରଙ୍ଗୀ ରାଜାସାହେବଙ୍କ ଡାକରାପାଇ କାଳୀଚରଣ ଇଚ୍ଛାପୁର ଗଲେ । ଦୁଇ ରାତି ସେଠାରେ ଅଭିନୟ ପ୍ରଦର୍ଶନ ହେଲା । ଏହାପରେ ସେ ଚିକିଟି ଗଲେ । ଚିକିଟି ରାଜବାଟୀରେ ଗୋଟିଏ ପ୍ରଶସ୍ତ ହଲ୍‌ରେ ମଞ୍ଚ ବନ୍ଧାଯାଇ ଅଭିନୟ ପ୍ରଦର୍ଶିତ ହେଲା । ଏଠାରୁ ଦଳ ନେଇ କାଳୀଚରଣ ଧରାକୋଟ ଗଲେ । ଧରାକୋଟ ରହଣି ଭିତରେ ସେ ଓଡ଼ିଶୀ ସଙ୍ଗୀତ ସମ୍ବନ୍ଧୀୟ ଏକ ପୋଥିପତ୍ର ପାଇଲେ । ଗଞ୍ଜାମରୁ କାଳୀଚରଣ କଟକ ଫେରିଲେ । କଟକ ଫେରିଲାବେଳେ କାଳୀଚରଣ ଛତ୍ରପୁରରେ

କେତେ ରାତି ଅଭିନୟ ଦେଖାଇଲେ । ଖଲିକୋଟରେ ଜଗନ୍ନାଥ ଦେଉଳ ପଛପଟେ ପେଣ୍ଡାଲ ବନ୍ଧାହୋଇ ମଧ୍ୟ ଅଭିନୟ ଦେଖାଗଲା ।

କଟକରେ ବାଙ୍କାବଜାରରେ ମେଲଣ ପଡ଼ିଆରେ ପୁଣି ନାଟକ ଅଭିନୀତ ହେଲା । ପାଟଣା ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ 'ମାନିନୀ' ନାଟକ ଦେଖିଲେ ଓ ଦଳକୁ ପୁରସ୍କୃତ କଲେ । କାଳୀଚରଣ ଏହାପରେ ବାଙ୍କୀ ଯାଇ ନାଟକ ଦେଖାଇଲେ । ବାଙ୍କୀରୁ ଆସି ଝାଉଁଳିଆପଟିରେ କାଳୀଚରଣ ବସା ନେଇ ରହିଲେ । ଜୈନ ମନ୍ଦିରରେ ପେଣ୍ଡାଲ ବାନ୍ଧି ଅଭିନୟ ଦେଖାଇବାର ବ୍ୟବସ୍ଥା ହେଲା । କାଳୀଚରଣ 'ଗୀତଗୋବିନ୍ଦ'ର ଓଡ଼ିଆ ଅନୁବାଦ କରି ତାକୁ ନାଟ୍ୟରୂପ ଦେବା ପରେ ପାଞ୍ଚ ରାତି ଅଭିନୀତ ହେଲା ।

### ସାମାଜିକ ନାଟକ

ଏହାପରେ କାଳୀଚରଣ ସାମାଜିକ ନାଟକ ଲେଖିବାରେ ମନ ଦେଲେ । ବାଙ୍କାବଜାରରେ 'ପ୍ରତିଶୋଧ' ନାଟକ ମଧ୍ୟ ମଞ୍ଚସ୍ଥ ହେଲା । 'ଆଖିର ଦେଖା' ଆଉ ଏକ ନାଟକ ମଧ୍ୟ ମଞ୍ଚସ୍ଥ ହେଲା । ଏହାପରେ 'ଆହୁତି' ନାମକ ଏକ ସାମାଜିକ ନାଟକ ଲେଖା ହେଲା ଓ ମଞ୍ଚସ୍ଥ ହେଲା ।

### ଓଡ଼ିଶା ଥିଏଟର୍ସ

୧୯୩୯ ମସିହାର ଶେଷ ଭାଗକୁ ହେଲା 'ଓଡ଼ିଶା ଥିଏଟର୍ସ'ର ଶୁଭାରମ୍ଭ । ଓଡ଼ିଆ ସାହିତ୍ୟ ତଥା ରଙ୍ଗମଞ୍ଚ ଇତିହାସରେ ଉନ୍ମୋଚିତ ହେଲା ଏକ ଅଭିନବ ପୃଷ୍ଠା । ନିଛକ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ମୌଳିକତା ରକ୍ଷା କରି କିପରି ନାଟକ ରଚନା କରାଯିବ, ସେଥିପାଇଁ ତାଙ୍କର ସୃଜନେଚ୍ଛୁ ମନ ଭିତରେ ଆଶା ଓ ଆବେଗ ଭରିଉଠିଲା ।

ସେତେବେଳେ କଟକରେ ସ୍ଥାୟୀ ରଙ୍ଗମଞ୍ଚ ନ ଥାଏ । ଶ୍ରୀରାମଚନ୍ଦ୍ର ଭବନର ବାମ ଦିଗରେ ସାହିତ୍ୟ ସମାଜପାଇଁ ତୋଳା ହୋଇଥିବା ଗୋଟିଏ ଚାଳ ଘରେ ଓଡ଼ିଶା ଥିଏଟର୍ସର ନାଟକଗୁଡ଼ିକ ଅଭିନୀତ ହେଲା । ପ୍ରଥମ ସାମାଜିକ ନାଟକ ଥିଲା 'ଗାର୍ଲ ସ୍କୁଲ' ।

### ଗାର୍ଲ ସ୍କୁଲ

ଏହାର ବିଷୟବସ୍ତୁ ସତ୍ୟ ଘଟଣା ଉପରେ ଆଧାରିତ । ଦୁଇ ଜଣ କଲେଜପଢ଼ୁଆ ଯୁବକ – ସାଗର ଓ ରସିକ – ଦୁଇ ଜଣ ସ୍କୁଲ ଛାତ୍ରୀ – ବେଳା ଆଉ ରେଣୁର ପ୍ରଣୟ କାହାଣୀକୁ ନେଇ ନାଟକଟି ଗଢ଼ିଉଠିଛି । ଏଥିରେ ଦେହବାଦର ନିନ୍ଦା କରାଯାଇଛି ଓ ପାରମ୍ପରିକ ଆଦର୍ଶର ଜୟଗାନ କରାଯାଇଛି । ସତ୍ୟ ଘଟଣାଟି ବିୟୋଗାନ୍ତକ

ହୋଇଥିଲାବେଳେ ନାଟକରେ ନାୟକ ଓ ନାୟିକାଙ୍କର ମିଳନ ହୋଇଛି । ନାଟକଟି ବିଶେଷ ଜନପ୍ରିୟତା ହାସଲ କରିଥିଲା । ବିଶେଷତଃ, ସାମାଜିକ ନାଟକ ପ୍ରତି ଜନତାର ଆଦର ଆଶାନୁରୂପ ନ ଥିଲା । ଏକ ବ୍ୟବସାୟୀ ରଙ୍ଗମଞ୍ଚରେ ନାୟକ ନାୟିକା ଭୂମିକାରେ ସ୍ତ୍ରୀ ପୁରୁଷ ଓହ୍ଲାଇବା ଏହି ନାଟକରେ ହୋଇଥିଲା ସମ୍ଭବପର ।

ବାଙ୍କାବଜାରରେ ଏହି ନାଟକ ଶତାଧିକ ରାତ୍ରି ଅଭିନୀତ ହେଲା । ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି 'ଗାର୍ଲ ସ୍କୁଲ' ନାଟକଟି ଦେଖି ଏକ ହଜାର ଟଙ୍କା ପୁରସ୍କାର ଦେଇଥିଲେ । ଉଦ୍‌ଘାଟକ ତତ୍କାଳୀନ ଶିକ୍ଷାମନ୍ତ୍ରୀ ଗୋଦାବରୀଶ ମିଶ୍ର ନାଟକଟି ଦେଖି ଉଚ୍ଛ୍ୱସିତ ପ୍ରଶଂସା କରିଥିଲେ ।

### ଚୁମ୍ବନ

'ଚୁମ୍ବନ' ନାଟ୍ୟକାରଙ୍କର ଏକ ବହୁଚର୍ଚ୍ଚିତ ନାଟକ । ନାଟକର ନାମକରଣ ପ୍ରାକ୍ ସ୍ୱାଧୀନତା ଯୁଗରେ ରକ୍ଷଣଶୀଳ ସମାଜରେ ଘୋର ସମାଲୋଚିତ ହୋଇଥିଲା । ଆଚାର୍ଯ୍ୟ ନୀଳକଣ୍ଠ 'ନବଭାରତ' ପତ୍ରିକାରେ ଏହା ବିରୋଧରେ ବିଷୋଦ୍‌ଗାର କରିଥିଲେ । ମାତ୍ର ପରେ ନାଟକଟି ଦେଖି ନାଟ୍ୟକାରଙ୍କ ପାଖେ ନିଜର ତ୍ରୁଟି ସ୍ୱୀକାର କରିଥିଲେ ।

ଦୁଇଟି କିଶୋର କିଶୋରୀଙ୍କ ବାଲ୍ୟପ୍ରେମ, ଅଭିଭାବକମାନଙ୍କର ମତ ପାର୍ଥକ୍ୟରୁ ସେମାନଙ୍କର ବିଚ୍ଛେଦ ଓ ମିଳନ – ଏହା ହେଉଛି 'ଚୁମ୍ବନ'ର କଥାବସ୍ତୁ ।

ନାଟକରେ କରୁଣ ରସର ଧାରା ବହିଯାଇଛି । ସଦାନନ୍ଦର ରାଧାକୃଷ୍ଣ ପ୍ରେମ ସଙ୍ଗୀତଗାନ ଏହାର ବିଶେଷ ଆକର୍ଷଣ । ଘଟଣାବଳୀର ବିନ୍ୟାସ, ଚରିତ୍ର ଚିତ୍ରଣର ସାବଲୀଳତା, ସଂଳାପ ଯୋଜନାର ଜୀବନଧର୍ମିତା, ନାଟ୍ୟଦ୍ୱନ୍ଦ୍ୱ ପ୍ରଭୃତି ନାଟ୍ୟକାରଙ୍କ ପ୍ରତିଭାର ପରିଚୟ ଦେଇଛି । ଏଥିସହିତ ସୁଶ୍ରାବ୍ୟ ସଙ୍ଗୀତ, ଆକର୍ଷଣୀୟ ମଞ୍ଚସଜ୍ଜା, ନାଟ୍ୟୋତ୍କଣ୍ଠା, କଳାତ୍ମକ ଅଭିନୟ ପ୍ରଭୃତି ସଫଳତା ଦେଇଥିଲା ।

### ପରିବର୍ତ୍ତନ

'ପରିବର୍ତ୍ତନ' ନାଟକ ରଚନା କାଳ ହେଉଛି ୧୯୪୩ । ଚୁମ୍ବନ ନାଟକ ପରେ ଏହା ଅଭିନୀତ ହୋଇଥିଲା ।

ନାଟକର ନାୟକ ଗୋପାଳର ଜୀବନର ପରିବର୍ତ୍ତନ ଏଥିରେ ବର୍ଣ୍ଣିତ । ପ୍ରଥମ ପର୍ଯ୍ୟାୟରେ ଭିକାରି ଗୋପାଳିଆରୁ ଗୋପାଳବାବୁ, ଦ୍ୱିତୀୟ ପର୍ଯ୍ୟାୟରେ ଗୃହସ୍ଥରୁ ମଦ୍ୟପ ଓ ଶେଷ ଅବସ୍ଥାନରେ ପୁଣି ଗୃହସ୍ଥ ଜୀବନକୁ ଫେରିବା ଏଥିରେ ବର୍ଣ୍ଣିତ । ଏହା ମଧ୍ୟ ସଫଳତା ଲାଭ କରିଥିଲା ।

## କମଳା

'କମଳା' ମୁଖ୍ୟତଃ ଏକ ପ୍ରଚାରଧର୍ମୀ ନାଟକ । ଏଥିରେ କୃଷିଭିତ୍ତିକ ସମାଜ ଗଠନର ଆହ୍ୱାନ ଦିଆଯାଇଛି ।

ଅତ୍ୟାଚାରୀ ମହାଜନ ବିରୋଧରେ ଯୁବଗୋଷ୍ଠୀର ବିଦ୍ରୋହ, ଟାଉଟର ଗୋବର୍ଦ୍ଧନ ପରିଶ୍ରମୀ ଚାଷୀ ନନ୍ଦ ପ୍ରଭୃତିଙ୍କର ଚରିତ୍ର ଚିତ୍ରଣ ସୁନ୍ଦର ହୋଇଛି । ପଲ୍ଲୀ ଜୀବନର ଏକ ଉତ୍କୃଷ୍ଟ ରୂପାୟନ ଭାବେ 'କମଳା'କୁ ଗ୍ରହଣ କରାଯାଇପାରେ ।

## ଜୟଦେବ

୧୯୪୩ ମସିହାରେ କ୍ୟାପିଟେଲ ସିନେମା ହଲ୍‌ରେ ବଙ୍ଗଳା ଛବି ଜୟଦେବ ଦେଖି କାଳୀଚରଣଙ୍କ ମନ ବିଦ୍ରୋହ କରିଉଠିଲା । ସେହି ସିନେମା ହଲ୍‌ରେ ଜୟଦେବ ନାଟକ ଲେଖିବାର ଶପଥ ନେଲେ । ସେ ତଥ୍ୟ ସଂଗ୍ରହ କରି ଲେଖନୀ ଚଳାଇଲେ ।

୧୯୪୩ ମସିହା ମେ ମାସ ୧ ତାରିଖରେ 'ଜୟଦେବ' ନାଟକ ମଞ୍ଚସ୍ଥ ହେଲା । କବିଚନ୍ଦ୍ର ଜୟଦେବଙ୍କୁ ଓଡ଼ିଆର ବୋଲି ଚିହ୍ନାଇଥିବାରୁ ପ୍ରଶଂସାର ପାତ୍ର ହେଲେ । କେବଳ କଟକରେ ନୁହେଁ, ସାରା ଓଡ଼ିଶାରେ 'ଜୟଦେବ' ନାଟକର ଭୂରି ଭୂରି ପ୍ରଶଂସା ହେଲା । ତେବେ ଉତ୍କଳବାସୀ-ବଙ୍ଗାଳୀ ତାଙ୍କର ଭଗାରି ହୋଇଉଠିଲେ । ତାଙ୍କ ପାଖକୁ ବେନାମୀ ଚିଠି ପଠାଇ ଧମକ ମଧ୍ୟ ଦେଲେ ।

ଜୟଦେବ ନାଟକଟି ସଫଳତାପ୍ରାପ୍ତ ହେଲା । ଏହି ନାଟକର ସୁଲଳିତ ସଙ୍ଗୀତ ତଥା ମନୋରମ ନୃତ୍ୟ ବେଶ୍ ପ୍ରଭାବଶାଳୀ ହୋଇଥିଲା । ନାଟକ ଉପରେ 'ନବଭାରତ' ମନ୍ତବ୍ୟ ଦେଇଥିଲା –

''ଜୟଦେବ ନାଟକରେ ଖାଲି ଯେ ଜୟଦେବଙ୍କୁ ଓଡ଼ିଆ ବୋଲି ପରିଚୟ କରାଯାଇଛି ତାହା ନୁହେଁ, ନାଟକର ଭାଷା, ଭାବ, ଭଙ୍ଗୀ – ସମସ୍ତ ଏକାବେଳକେ ଓଡ଼ିଆତ୍ୱରେ ପରିପୂର୍ଣ୍ଣ । ଏହି ନାଟକଟି ପ୍ରତ୍ୟେକ ଓଡ଼ିଆର ଗର୍ବର ବିଷୟ ହୋଇ ରହିବ ।''

'ଜୟଦେବ' ନାଟକ ମଧ୍ୟ ପୁରୀ ଜଗନ୍ନାଥ କ୍ଲବରେ ଅଭିନୀତ ହେଲା । ଗଜପତି ମହାରାଜା ଶ୍ରୀରାମଚନ୍ଦ୍ରଦେବ ରାଜବାଟୀରେ ଗୋଟିଏ ରାତ୍ରି ଅଭିନୟ କରାଇଲେ । ସମସ୍ତେ ନାଟକର ପ୍ରଶଂସା କଲେ । ରାଜା ମଧ୍ୟ ସନ୍ତୋଷ ହୋଇ ଶ୍ରୀଜଗନ୍ନାଥଙ୍କ ଚାମରସେବା ଓ ଅନ୍ତେ ବୈଷ୍ଣବାଗ୍ନି ପ୍ରାପ୍ତିର ସନନ୍ଦ ଦେଲେ । କାଳୀଚରଣ ନିଜକୁ ଏଥିପାଇଁ ମହାଭାଗ୍ୟବାନ୍ ମନେ କଲେ ।

ଭାତ

୧୯୪୪-୪୫ ମସିହା ବେଳକୁ ଓଡ଼ିଶାରେ ଦୁର୍ଭିକ୍ଷ ନ ହେଲେ ବି ବଡ଼ ନିଅଣ୍ଟିଆ ଅବସ୍ଥା ଦେଖାଦେଇଥିଲା । ସରକାର ଓ ଜମିଦାରମାନଙ୍କର ପ୍ରଜାମାନଙ୍କ ପ୍ରତି ହୃଦୟହୀନ ବ୍ୟବହାର ନାଟ୍ୟକାରଙ୍କୁ 'ଭାତ' ଲେଖିବାପାଇଁ ପ୍ରେରଣା ଦେଲା । ବିଶେଷତଃ, ଥିଲାବାଲାମାନେ କୂଟଚକ୍ରାନ୍ତ ବଳରେ ଗରିବକୁ ଆହୁରି ଗରିବ କରୁଥିବାର ଦୃଷ୍ଟାନ୍ତ ତାଙ୍କ ଆଖିରେ ପଡ଼ିଲା । ସେ ରଚନା କଲେ ନାଟକ 'ଭାତ' ।

ନାଟକ ମଞ୍ଚସ୍ଥ ନ କରାଇଦେବାପାଇଁ ବହୁ ଚକ୍ରାନ୍ତ ଚାଲିଲା । ଏହି ନାଟକଟି ରାଜନୀତିକ ଓ ସରକାର ବିରୋଧୀ ବୋଲି ପ୍ରଚାର ହେଲା । ବେନାମୀ ଚିଠି ବି ପଠାଗଲା ଗଭର୍ଣ୍ଣରଙ୍କ ପାଖକୁ । ତେବେ ମଞ୍ଚସ୍ଥ ହେବା ଆଗରୁ ସରକାରୀ ଲୋକେ ଆସି ରିହର୍ସେଲ ଦେଖି ଅନୁମତି ଦେବାର କଥା ହେଲା । ଗୋଟିଏ ଗୀତର ୪ଟି ପଦକୁ ଉଡ଼ାଇ ଦିଆଯିବାପରେ ଅନୁମତି ମିଳିଲା । ନାଟକ ମଞ୍ଚସ୍ଥ ହେଲା । ଜନଗହଳି ପ୍ରବଳ ହେଲା । ଦୂରଦୂରାନ୍ତରୁ ଲୋକେ ବଳଦଗାଡ଼ିରେ ଆସି ନାଟକ ଦେଖିଲେ । କାଳୀଚରଣଙ୍କୁ ଓଡ଼ିଶା ଥିଏଟର୍ସ ରଙ୍ଗମଞ୍ଚରେ ସମ୍ବର୍ଦ୍ଧିତ କରାଗଲା । ନାଟ୍ୟକାରଙ୍କୁ ମଶାଲ ଓ ଲେଖନୀ ଇତ୍ୟାଦି ନାନା ଉପହାର ମଧ୍ୟ ପ୍ରଦାନ କରାଗଲା ।

ଏହାର କଥାବସ୍ତୁ ପ୍ରଣୟଭିତ୍ତିକ । ଜମିଦାର ପୁତ୍ର ସହିତ ଦରିଦ୍ର ପ୍ରଜାର କନ୍ୟାର ପ୍ରଣୟ ହୁଏ । ଜମିଦାରଙ୍କ କ୍ରୋଧରେ ଭୟଭୀତା ହୋଇ ନାୟିକା ରମା ଆତ୍ମଗୋପନ କରିଛି । ଶେଷରେ ଜମିଦାରଙ୍କ ପୁତ୍ର ଜୟୀର ରମା ସହିତ ମିଳନ ହୋଇଛି । ଜମିଦାରଙ୍କର ହୃଦୟ ପରିବର୍ତ୍ତନରେ ହିଁ ସବୁ ସମସ୍ୟାର ସମାଧାନ ହୋଇଛି ।

ନାଟକରେ ପଲ୍ଲୀ ଜୀବନର ବର୍ଣ୍ଣନା ଅତି ଚିତ୍ତାକର୍ଷକ ହୋଇଛି । କେତେକ ସମାଲୋଚକଙ୍କ ମତରେ ନନ୍ଦକିଶୋର ପଦ୍ୟରେ ଯେଉଁ ପଲ୍ଲୀପ୍ରାଣତାର ପରିଚୟ ଦେଇଛନ୍ତି, ନାଟକରେ କାଳୀଚରଣଙ୍କ କୃତିତ୍ୱ ସେହି ଧରଣର ହୋଇଛି । ଦରିଦ୍ର ମୂଲିଆର ଜୀବନଧାରା ସୁନ୍ଦରଭାବେ ପରିବେଷିତ ହୋଇଛି । 'ଭାତ'ରେ ସଙ୍ଗୀତ ଯୋଜନା ମଧ୍ୟ ପ୍ରୀତିପ୍ରଦ ହୋଇଛି । କେତୋଟି ସଙ୍ଗୀତ, ଯଥା – 'ଭାତ ଲାଗି କାନ୍ଦନାରେ', 'ଫୁଟିଲୁ ଯେବେ ଫୁଲ', 'ରବି ଉଇଁଲା ଆସି', 'କାଳ ବଇତମ ହେଲା'ରେ ପ୍ରଭୃତି ପ୍ରାୟ ସମସ୍ତ ସଙ୍ଗୀତ ମନଛୁଆଁ ହୋଇଥିଲା । ନାଟ୍ୟକାର ମଧ୍ୟ ଏଥିରେ ଦେଶମାତୃକାର ବନ୍ଦନା ଗାନ କରିବାକୁ ସୁଯୋଗ ପାଇଛନ୍ତି । 'ଭାତ' ନାଟକ ସେ କାଳରେ ଉଚ୍ଚ ପ୍ରଶଂସିତ ହୋଇଥିଲା ।

'ଭାତ' ନାଟକଟି କ୍ରମାଗତଭାବେ ଏକଶତ ରଜନୀ ଚାଲିଥିଲା । ତାହା ଥିଲା ଓଡ଼ିଶାରେ ଏକ ରେକର୍ଡ । ଡଃ ମାୟାଧର ମାନସିଂହଙ୍କର ମନ୍ତବ୍ୟ –

''ବସ୍ତୁତଃ କାଳୀବାବୁଙ୍କ ନାଟକ ଶାସ୍ତ୍ରୀୟ ନାଟକୀୟ ଶିଳ୍ପପାଇଁ ଯେତେ ମୂଲ୍ୟବାନ୍ ନୁହନ୍ତି, ସେତେ ସେଗୁଡ଼ିକ ଜନପ୍ରିୟ – ସେଥିରେ ଥିବା ସାଙ୍ଗୀତିକ ଉପାଦାନ ଯୋଗୁଁ ।''

**ଚକ୍ରୀ**

ବଙ୍ଗଳାର 'ପାର୍ଥସାରଥି' ନାଟକ ଅବଲମ୍ବନରେ କାଳୀଚରଣ ରଚନା କଲେ 'ଚକ୍ରୀ' । ବଙ୍ଗଳା ନାଟକ ଭଳି କବିଚନ୍ଦ୍ର ଏହି ନାଟକରେ ଅମିତ୍ରଛନ୍ଦ ବ୍ୟବହାର କରିଛନ୍ତି । ତେବେ 'ଚକ୍ରୀ' ନାଟକପାଇଁ କାଳୀଚରଣ ଯେଉଁ ସଙ୍ଗୀତ ଯୋଜନା କରିଛନ୍ତି, ବଙ୍ଗଳା ନାଟକରେ ତାହାର ଚିହ୍ନ ନାହିଁ । ଏହା ଦର୍ଶକର ମନୋରଞ୍ଜନ ଉଦ୍ଦେଶ୍ୟରେ ରଚିତ ହୋଇଥିଲା ଓ ସେଥିରେ ନାଟ୍ୟକାର ସଫଳତାପ୍ରାପ୍ତ ହୋଇଥିଲେ ।

**ବନମାଳା**

ନାୟକ ଓ ନାୟିକାଙ୍କ ନାମର ଆଦ୍ୟାଂଶକୁ ନେଇ ନାଟକର ନାମକରଣ ହୋଇଛି ବନମାଳା ।

ପିତୃମାତୃହୀନ ଯୁବକ ବନବିହାରୀଙ୍କ ସହିତ ଜମିଦାର ଜଗଦୀଶବାବୁଙ୍କର କନ୍ୟା ମାଳାର ବିବାହ ସ୍ଥିର ହୋଇଛି । ମାତ୍ର ଜଗଦୀଶବାବୁଙ୍କ ନାଏବ ରାମଚରଣ ବନବିହାରୀଙ୍କୁ ଏକ ଚରିତ୍ରହୀନ, ମଦ୍ୟପ, ଲମ୍ପଟ ବୋଲି ଉପସ୍ଥାପିତ କରିବାକୁ ଚକ୍ରାନ୍ତ କରିଛି । ଫଳରେ ଜଗଦୀଶବାବୁଙ୍କର ଏ ବିବାହରେ ଆଗ୍ରହ କମିଯାଏ । ରାମଚରଣ ବନବିହାରୀଙ୍କ ସହିତ ନିଜ କନ୍ୟା ଶାରଦା ସହିତ ବିବାହ କରିବାକୁ ଉଦ୍ୟମ ଚଳାଇଛି । କିନ୍ତୁ ଈଶ୍ୱରଙ୍କ ଦରବାରରେ ଏହା ଧରାପଡ଼ି ଯାଇଛି । ରାମଚରଣଙ୍କର ଏହି ଆୟୋଜନ ପଣ୍ଡ ହୋଇଛି । ବନବିହାରୀଙ୍କର ନିର୍ଦ୍ଦୋଷତା ପ୍ରମାଣିତ ହୋଇଛି । ଏହାପରେ ବନବିହାରୀଙ୍କ ମାଳା ସହିତ ମିଳନ ହୋଇଛି ।

ନାଟକର କୌଣସି ନୂତନତ୍ୱ ନାହିଁ । ଏହା କବିଚନ୍ଦ୍ରଙ୍କ ପ୍ରତିଭାର ନିଦର୍ଶନ ନୁହେଁ ବୋଲି ଆଲୋଚକ ମତ ଦେଇଛନ୍ତି ।

**ଅତିବଡ଼ୀ ଜଗନ୍ନାଥ ଦାସ**

କାଳୀଚରଣ ଭକ୍ତକବି ଦିବାକର ଦାଶଙ୍କ 'ଜଗନ୍ନାଥ ଚରିତାମୃତ' ପଢ଼ି ଅତିବଡ଼ୀ ଜଗନ୍ନାଥ ଦାସ ନାଟକ ରଚନା କଲେ । ଏଥିରେ ଚୈତନ୍ୟଦେବଙ୍କର ଜଗନ୍ନାଥ ଦାସ ପ୍ରୀତି, ଗୌଡ଼ୀୟ ବୈଷ୍ଣବମାନଙ୍କର ଦଳତ୍ୟାଗ ପ୍ରଭୃତି ବର୍ଣ୍ଣିତ । ପ୍ରତିକୂଳ ପରିସ୍ଥିତିରେ ଜଗନ୍ନାଥ ଦାସ ଭାଗବତ ରଚନା କରି ଖ୍ୟାତି ଲାଭ କରିବା ମଧ୍ୟ ନାଟକରେ ସ୍ଥାନ ପାଇଛି । ପୁରୀ ଶ୍ରୀକ୍ଷେତ୍ରର ପଣ୍ଡିତ ମଣ୍ଡଳୀ ଯେଉଁଭଳି ଅତିବଡ଼ୀଙ୍କ ବିରୋଧରେ ସ୍ୱର ଉତ୍ତୋଳନ କଲେ, ସେଥିରୁ କେବଳ ଈଶ୍ୱରାନୁଗ୍ରହ ବଳରେ ଜଗନ୍ନାଥ ଦାସ ମୁକ୍ତି ଲାଭ କରିଥିବା ନାଟକରେ ବର୍ଣ୍ଣିତ ।

ନାଟକରେ ବୌଦ୍ଧ ବ୍ରାହ୍ମଣ କଳହ, ବ୍ରାହ୍ମଣମାନଙ୍କର ବିଜୟ ପ୍ରଭୃତି ସ୍ଥାନିତ । ଏହା ବେଶ୍ ନାଟକୀୟ ହୋଇଛି । ଦୁଇ ଜଣ ପୁରୀ ପଣ୍ଡିତଙ୍କ ଜରିଆରେ ହାସ୍ୟରସ ସୃଷ୍ଟି କରାଯାଇଛି । ଏହା ବ୍ୟତୀତ ଓଡ଼ିଶାର ନୌବାଣିଜ୍ୟ, ବୋଇତ ନିର୍ମାଣ ପ୍ରଣାଳୀ ପ୍ରଭୃତି ବହୁ ଐତିହାସିକ ବିଷୟ ସ୍ଥାନ ପାଇଛି । ଅଭିନୟ ଆରମ୍ଭ ପୂର୍ବରୁ ଦର୍ଶକମାନଙ୍କ ଜାତୀୟତାବୋଧ ସୃଷ୍ଟିପାଇଁ ଅଗ୍ରକଥନର ସଂଯୋଗ ମଧ୍ୟ ହୋଇଛି ।

**ହା-ଅନ୍ନ**

କାଳୀଚରଣ ସୁପରିଚିତ ଔପନ୍ୟାସିକ କାହ୍ନୁଚରଣ ମହାନ୍ତିଙ୍କ 'ହା-ଅନ୍ନ' ଉପନ୍ୟାସର ନାଟ୍ୟରୂପ ଦେଇଥିଲେ । ଏହା ମଧ୍ୟ ୧୯୪୫ ମସିହାରେ ମଞ୍ଚସ୍ଥ ହୋଇଥିଲା ।

**ବେକାର**

ନାଟ୍ୟକାର ମନୋରଞ୍ଜନ ମାଧ୍ୟମରେ ପରିସ୍ଥିତିକୁ ଉପସ୍ଥାପିତ କରି ଭବିଷ୍ୟତ୍ ପ୍ରତି ଦୃଷ୍ଟି ଆକର୍ଷଣ କରିବାକୁ 'ବେକାର' ନାଟକ ଲେଖିଥିଲେ ।

ନାଟକର ନାୟକ ଜଗମୋହନ । ସେ ବିଲାତଫେରନ୍ତା ହୋଇ ମଧ୍ୟ ଚାକିରି ଛାଡ଼ି ଦେଶସେବାକୁ ବ୍ରତ କରିଛନ୍ତି । ଏ ଦିଗରେ ପ୍ରେରଣା ଯୋଗାଇଛି ଏକ ଯୁବତୀ ସ୍ୱେଚ୍ଛାସେବୀ – ଛାୟା । କୃଷି ଆଉ ଶିଳ୍ପର ବିକାଶ ମାଧ୍ୟମରେ ବେକାର ସମସ୍ୟା ସମାଧାନ ଦିଗରେ ସୂଚନା ଏଥିରେ ଦିଆଯାଇଛି । କିନ୍ତୁ ନାଟକରେ ବହୁ ଦୁର୍ବଳତା ରହିଛି । ମୂଳ ଚରିତ୍ରଗୁଡ଼ିକ ବାସ୍ତବତା ଅପେକ୍ଷା ଆଦର୍ଶବାଦୀ । ସଙ୍ଗୀତ ପ୍ରୟୋଗ ଅବଶ୍ୟ ଏହି ନାଟକକୁ କିଛିଟା ଗ୍ରହଣୀୟ କରିଛି ।

ଦେଶବାସୀଙ୍କ ଆଗରେ ନାଟ୍ୟକାର ତାଙ୍କ ଦୁଃଖ ଜଣାଇଛନ୍ତି, ଯଥା –

''କହ, କିଏ ଦେବେ ତୋତେ ଆହାର ?<br>
ମାଆକୋଳ ଛଡ଼ା ଛେଉଣ୍ଡ ଛୁଆରେ<br>
ତୁ ପରା ଦୁନିଆ ବାହାର ।''

ଆଲୋଚକଙ୍କ ମତରେ 'ସଂଳାପ', ସଙ୍ଗୀତ ଆଉ ହାସ୍ୟରସ – ଏଇ ତ୍ରିବେଣୀ ସଙ୍ଗମ ହିଁ ଦର୍ଶକମାନଙ୍କର ସମସ୍ତ କ୍ଳାନ୍ତି ଦୂର କରିଦେଇଥିଲା ।

**ହରଣଚାଳ**

ଏହା ୧୯୪୬ ମସିହାରେ ରଚିତ ହୋଇଥିଲା । ଏକ ପ୍ରେମ କାହାଣୀ ଏହାର ବିଷୟବସ୍ତୁ । ପିତୃମାତୃହୀନ ଯୁବକ ରମେଶ ସହିତ କାହ୍ନୁବାବୁଙ୍କ କନ୍ୟା ବାସନ୍ତୀର ପ୍ରେମ ସମ୍ପର୍କ ବାଲ୍ୟକାଳରୁ ଥିଲା । କାହ୍ନୁବାବୁ ମଧ୍ୟ ବାସନ୍ତୀକୁ ରମେଶ ସହିତ ବିବାହ ଦେବାପାଇଁ ରାଜି ଥିଲେ । ମାତ୍ର ଜମିଦାର ଶ୍ୟାମସୁନ୍ଦର ବାସନ୍ତୀକୁ ବିବାହ କରିବାପାଇଁ ଚକ୍ରାନ୍ତ କରନ୍ତି । ରମେଶ ଚାକିରିପାଇଁ କଲିକତା ଯାଇଛି । କାହ୍ନୁବାବୁ

ମଧ୍ୟ କଲିକତା ଯାଇ ରମେଶର ଚରିତ୍ରହୀନତା ସମ୍ପର୍କରେ ନିଃସନ୍ଦେହ ହୋଇ ଫେରିଆସିଛନ୍ତି । ବାସନ୍ତୀ ଘର ଛାଡ଼ି କଲିକତା ଯାଏ ଓ ଉତ୍ସବ ହାତରେ ପଡ଼େ । ବାସନ୍ତୀକୁ ଉଦ୍ଧାର କଲାପରେ ରମେଶ ତାକୁ ବିବାହ ବି କରେ ।

ଏହା କବିଚନ୍ଦ୍ରଙ୍କ ପ୍ରତିଭାର ନିଦର୍ଶନ ନୁହେଁ ।

**ଅଭିଯାନ**

ନାଟ୍ୟକାର କାଳୀଚରଣ ରାମଶଙ୍କରଙ୍କର 'କାଞ୍ଚିକାବେରୀ', ଭିଖାରିବାବୁଙ୍କ 'ରାଜା ପୁରୁଷୋତ୍ତମ' ଓ ଗୋଦାବରୀଶ ମିଶ୍ରଙ୍କ 'ପୁରୁଷୋତ୍ତମଦେବ' ପଢ଼ିଥିଲେ । ସେହି କଥାବସ୍ତୁକୁ ନେଇ ସେ 'ଅଭିଯାନ' ନାଟକ ରଚନା କଲେ ।

ନାଟକ ଆରମ୍ଭ ହୋଇଛି ପ୍ରଥମବାର କାଞ୍ଚି ଅଭିଯାନର ବିଫଳତାଠାରୁ । ଗଜପତିଙ୍କର ଦ୍ୱିତୀୟବାର କାଞ୍ଚି ଅଭିଯାନ, କାଞ୍ଚି ଜୟ, ଚଣ୍ଡାଳ ହାତରେ ପଦ୍ମାବତୀଙ୍କୁ ଦେବା ସିଦ୍ଧାନ୍ତ ଓ ମନ୍ତ୍ରୀଙ୍କ କୌଶଳରେ ପଦ୍ମାବତୀଙ୍କ ସହିତ ତାଙ୍କର ପରିଣୟ ଏଥିରେ ବର୍ଣ୍ଣିତ ।

ଅଭିଯାନ ନାଟକ ୧୭.୭.୪୬ ତାରିଖରେ ମଞ୍ଚସ୍ଥ ହେଲା । ଓଡ଼ିଶାର ତଦାନୀନ୍ତନ ଗଭର୍ଣ୍ଣର ଶ୍ରୀଯୁକ୍ତ ଦ୍ୱିବେଦୀ, ଡଃ ମହତାବ, ପ୍ରଧାନମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଓ ନିତ୍ୟାନନ୍ଦ କାନୁନ୍‌ଗୋ ପ୍ରଭୃତି ଉପସ୍ଥିତ ଥିଲେ । ମଞ୍ଚରେ ନାଟକର ଅଦ୍ୟକଥନ ଏହିଭଳି ଥିଲା –

''ପାଞ୍ଚଶ ବରଷ କଥା
ଏଇ କଙ୍କାଳର ଥିଲା ସେତେବେଳେ
ରକତ ମାଉଁସ ମଥା ।
ପାସୋରା କଥାକୁ ଦେବାକୁ ଚେତାଇ
ରକତେ ସେ ତେଜ ଦେବାକୁ ମତାଇ
ଭାଇ ଆଗେ ଆଜି ବାଢ଼ି ମୁଁ ବସିଲି
ଏଇ ଅଭିଯାନ କଥା ।''

'ଅଭିଯାନ'ର ସଙ୍ଗୀତ ପ୍ରାଣସ୍ପର୍ଶୀ ହୋଇଥିଲା । 'ଭାତ' ପରେ ଏହା ହେଉଛି କବିଚନ୍ଦ୍ରଙ୍କ ଦ୍ୱିତୀୟ ନାଟକ ଯାହାର ସଙ୍ଗୀତ କେବଳ ମାତ୍ର ମଞ୍ଚ ମଧ୍ୟରେ ସୀମିତ ନ ଥିଲା । କେତୋଟି ସଙ୍ଗୀତ, ଯଥା – 'କାବେରୀ ସେପାରି ବାଲି' ଅତ୍ୟନ୍ତ ମନଛୁଆଁ ହୋଇଥିଲା ।

'ଅଭିଯାନ' ନାଟକର ସଫଳତା ସମସ୍ତେ ସ୍ୱୀକାର କରିଥିଲେ । ପତ୍ରପତ୍ରିକାମାନେ ଲେଖିଥିଲେ –

''କାଳୀବାବୁ ଏ ଜାତିକୁ 'ଭାତ' ଯୋଗାଇ ବଳିଷ୍ଠ କରି ସ୍ୱାଧୀନତାର ଅଭିଯାନ ଲାଗି ପ୍ରସ୍ତୁତ କରାନ୍ତୁ ।''

**ରକ୍ତମାଟି**

'ରକ୍ତମାଟି' ୧୯୪୭ ମସିହାରେ ରଚିତ ହୋଇଥିଲା । ପୁଞ୍ଜିପତି ସହିତ ଶ୍ରମିକର ସଂଘର୍ଷର ଚିତ୍ର ଏଥିରେ ଉପସ୍ଥାପିତ ହୋଇଛି । ମୁନାଫାଖୋର ପୁଞ୍ଜିପତିର ଦୁର୍ନୀତି, ଦୁରାଚାର ଓ ଜଣେ ପାଠୁଆ ଯୁବକର ସେବା ଓ ତ୍ୟାଗ ଉପରେ ନାଟକଟି ଗଢ଼ିଉଠିଛି ।

ଶେଠ ଗଙ୍ଗା ଦାସ ଗୁମାସ୍ତା ସାହାଯ୍ୟରେ ଯେଉଁଭଳି ରାମ ପଧାନର ଭିଟାମାଟି ଛଡ଼ାଇ ନେଇଛନ୍ତି ଓ ଅନ୍ୟ ଦରିଦ୍ର, ଅସହାୟମାନଙ୍କୁ ଶୋଷଣ କରିଚାଲିଛନ୍ତି, ରକ୍ତମାଟି ତା'ର ପ୍ରାମାଣିକ ଦଲିଲ୍ ।

ସର୍ବହରାର ସମସ୍ତ ଚାଲିଗଲାପରେ ସମାଜସେବୀ ନାୟକ ନିରୁଦ୍ଦେଶ ଯାତ୍ରାରେ ବାହାରିବା ପୂର୍ବରୁ କହିଯାଇଛି ତାହାର ଯାତ୍ରା ହେବ 'ଆଲୋକର ସନ୍ଧାନ'ରେ ।

ନାଟକଟି ସେତେବେଳେ ସମାଲୋଚକମାନଙ୍କଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଥିଲା । ପଣ୍ଡିତ ରାହୁଲ ସାଂକୃତାୟନ ନାଟକ ଦେଖି ମନ୍ତବ୍ୟ ଦେଇଥିଲେ –

''ନାଟ୍ୟଭାଷା, ସଙ୍ଗୀତ, ସବୁ ଦୃଷ୍ଟିରୁ ନାଟକଟି ମୋତେ ଭଲ ଲାଗିଛି । ଯଶସ୍ୱୀ ନାଟ୍ୟକାର ଏବଂ ଅଭିନେତାମାନେ ଉତ୍କଳ ନାଟ୍ୟମଞ୍ଚକୁ ଏତେ ଉଚ୍ଚ ସ୍ଥାନରେ ବସାଇ ଏ ଜାତିର କୃତଜ୍ଞତାଭାଜନ ହୋଇଛନ୍ତି ....।'' × × ×

କାଳୀଚରଣଙ୍କ ସଙ୍ଗୀତ ଏଥିରେ ଅଗ୍ନିବର୍ଷୀ ହୋଇଛି । ତା'ର ଉଦାହରଣ –

''ଆଲୋକ ପଥର ଯାତ୍ରୀ
ଚାଲରେ, ଚାଲରେ–
ଦଳି ଚାଲ ଚିର ତମସା ଘନ ରାତ୍ରି ।
ଆସୁ ଝଡ଼ ଝଞ୍ଜା ବିଜୁଳି ଚମକ
ସିନ୍ଧୁ ଗରଜୁ ପ୍ରଳୟ ଧମକ
ହୁଂକାରି ଉଠୁ ଶତ୍ରୁ ଟମକ
ଅଟଳ ଜୀବନ ତନ୍ତ୍ରୀ ।
ଶତ ବିଭୀଷିକା ଭେଦି
ଆମେ ଗଢ଼ିବୁରେ ବାରବାଟୀ
ବଜ୍ର ବରଷା ଘେନି ପଡେ ମାଥେ
ଆକାଶ ପଡୁରେ ଫାଟି
ଯାଉରେ ଜୀବନ, ଆସୁରେ ମରଣ, ଥାଉ ଏ ରକ୍ତମାଟି
ସତ୍ୟର ଆମେ ସନ୍ତ୍ରୀ ।

ଭଞ୍ଜପ୍ରେମୀ ବିଚ୍ଛନ୍ଦଚରଣ ପଟ୍ଟନାୟକ ମଧ୍ୟ ଅନୁରୂପ ମନ୍ତବ୍ୟ ଦେଇଥିଲେ –

''ଏ ନାଟକଟି ନାଟ୍ୟକଳାର ସୂକ୍ଷ୍ମକୋଟୀକୁ ସ୍ପର୍ଶ କରିଅଛି ।''

'ରକ୍ତମାଟି' ନାଟକରେ ନାଟ୍ୟକାର ଓଡ଼ିଶୀ ନୃତ୍ୟ ମଞ୍ଚରେ ପରିବେଷଣ କରିଥିଲେ । ପୂର୍ବଭଳି ପ୍ରଶଂସା ମଧ୍ୟ ମିଳିଥିଲା ।

**ଦଶଭୁଜା**

'ଚକ୍ରୀ' ପରେ ନାଟ୍ୟକାରଙ୍କର ଦ୍ୱିତୀୟ ପୌରାଣିକ ନାଟକ ହେଉଛି 'ଦଶଭୁଜା' । ସମ୍ଭବତଃ 'ଚକ୍ରୀ' ନାଟକର ଲୋକପ୍ରିୟତା ତାଙ୍କୁ ଆଉ ଏକ ପୌରାଣିକ ନାଟକ ଲେଖିବାପାଇଁ ପ୍ରେରଣା ଯୋଗାଇଲା ।

ଦାନବ-ଦଳିନୀ ଦୁର୍ଗାଙ୍କର ମହିଷାସୁର ନିଧନ ହେଉଛି ନାଟକର ବିଷୟବସ୍ତୁ । କଥାବସ୍ତୁ ପୁରାଣର ଏକ ବିଷୟ ହୋଇଥିଲେ ମଧ୍ୟ ଅମିତ୍ରାକ୍ଷର ଛନ୍ଦରେ ଲିଖିତ ନାଟକଟି କଳାତ୍ମକ ହୋଇପାରିଥିଲା । କଳାତ୍ମକ ନୃତ୍ୟ ତଥା ସୁଲଳିତ ସଙ୍ଗୀତ ଯୋଗୁଁ ଓଡ଼ିଆ ଦର୍ଶକମାନେ ଏହାକୁ ଆଦରରେ ଗ୍ରହଣ କରିଥିଲେ ।

**ଯୁଗେ ଯୁଗେ ଉତ୍କଳ**

ଏହା ୧୯୪୭ ମସିହାରେ ରଚିତ ହୋଇଥିଲା । ଏଥିରେ ଉତ୍କଳ ଇତିହାସର ଗୌରବମୟ ଅଧ୍ୟାୟଗୁଡ଼ିକ ଦୃଶ୍ୟାକାରରେ ପରିବେଷଣ କରାଯାଇଛି । ଏହାର ମଞ୍ଚାଭିନୟ ମଧ୍ୟ ସେତେବେଳେ ବେଶ୍ ପ୍ରଶଂସିତ ହୋଇଥିଲା ।

**ଫଟାଭୂଇଁ**

ଭାରତ ୧୯୪୭ ମସିହା ଅଗଷ୍ଟ ମାସ ୧୫ ତାରିଖରେ ସ୍ୱାଧୀନତା ପାଇଲା । କାଳୀଚରଣ ଏହି ଘଟଣା ଉପରେ ଏକ ନାଟକ ଲେଖିବାପାଇଁ ଚିନ୍ତା କରୁଥିଲେ । ପୁଣି ସ୍ୱାଧୀନତା ପାଇବାପରେ ଦେଶ ବିଭାଜନ ହେଲା । ତେଣୁ ନୂଆ ନାଟକର ନାମ 'ଫଟାଭୂଇଁ' ରଖିବାକୁ ସେ ସ୍ଥିର କଲେ । ୧୯୪୭ ମସିହା ଡିସେମ୍ବର ମାସରେ ଏହା ପ୍ରଥମେ ମଞ୍ଚସ୍ଥ ହେଲା ।

ନାଟକରେ କୌଣସି ଅଙ୍କ ବିଭାଗ ନାହିଁ । ଏଥିରେ କେବଳ କେତେକ ଛାୟାଦୃଶ୍ୟ, କାୟାଦୃଶ୍ୟ, ଦୃଶ୍ୟାନ୍ତର ମାଧ୍ୟମରେ ଘଟଣାଗୁଡ଼ିକ ପରିବେଷିତ ହୋଇଛି । ଏଭଳି ଛାୟାଦୃଶ୍ୟ ଓ କାୟାଦୃଶ୍ୟ ପ୍ରଦର୍ଶନ କରିବା ଦୂରେ ଥାଉ, ଏଭଳି କଳ୍ପନା ମଧ୍ୟ କେହି କରି ନ ଥିଲେ ବୋଲି ନାଟ୍ୟକାର ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି ।

୧୯୪୮ ମସିହା ଜାନୁଆରୀ ମାସ ୩୦ ତାରିଖରେ ମହାତ୍ମାଗାନ୍ଧୀ ଆତତାୟୀର ଗୁଳିରେ ମୃତ୍ୟୁବରଣ କଲେ । ନାଟ୍ୟକାର 'ଫଟାଭୂଇଁ' ନାଟକରେ ଜାତିର ପିତା ଗାନ୍ଧିଜୀଙ୍କର ଏହି ମହାଯାତ୍ରା ପ୍ରସଙ୍ଗକୁ ମଧ୍ୟ ବର୍ଣ୍ଣନା କରିଛନ୍ତି । 'ଯୁଗପୁରୁଷ' ନାମକ ଚରିତ୍ର ଘଟଣାଗୁଡ଼ିକର ଯୋଗସୂତ୍ର ରକ୍ଷା ନିମନ୍ତେ କଳ୍ପିତ ।

ନାଟକଟି ସଙ୍ଗୀତରେ ଲେଖା ଯାଇଥିଲା । ନାଟ୍ୟକାରଙ୍କ ଭାଷାରେ –

''ନାଟକଟିକୁ ତେଣୁ କବିତା ସଙ୍ଗୀତରେ ଲେଖିବାକୁ ମନସ୍ଥ କଲି । ଅଳ୍ପ ଅଳ୍ପ ଗଦ୍ୟ ଭାଷାରେ ବଚନିକା ଖଞ୍ଜି ବାକି ସାରା ନାଟକ ଅମିତ୍ର ଛନ୍ଦରେ ରଚନା କଲି ।''

ଡଃ ହରେକୃଷ୍ଣ ମହତାବଙ୍କର ମନ୍ତବ୍ୟ –

''× × × ଭାରତର ଦୀର୍ଘ ଦେଢ଼ ଶହ ବର୍ଷର ଇତିହାସକୁ ସେ ଯେପରି ଭାବରେ ନାଟକୋପଯୋଗୀ କରି ଥୋଇଛନ୍ତି, ତାହା ତାଙ୍କ ପରି ଶିଳ୍ପୀ ବ୍ୟତୀତ ଅନ୍ୟ କେହି ସହଜରେ କରିପାରିବେ ନାହିଁ । 'ଯୁଗପୁରୁଷ' କଳ୍ପନାଟି ବିଚିତ୍ର । ତାଙ୍କରି ଯୋଗୁଁ ନାଟକଟି ରୋମାଞ୍ଚକର ହୋଇଛି ।''

'ଫଟାଭୂଇଁ' 'ଯୁଗେ ଯୁଗେ' ଉତ୍କଳର ଏକ ସମାନ୍ତରାଳ ରଚନା । ପାର୍ଥକ୍ୟ କେବଳ 'ଯୁଗେ ଯୁଗେ'ରେ ଉତ୍କଳ ଇତିହାସରୁ ଘଟଣା ସଂଗୃହୀତ ହୋଇଥିବା ବେଳେ, 'ଫଟାଭୂଇଁ'ରେ ଭାରତର ଇତିହାସ ହୋଇଛି ନାଟ୍ୟକାରଙ୍କର ଅବଲମ୍ବନ ।

'ଫଟାଭୂଇଁ' ବିପୁଳ ମଞ୍ଚ ସଫଳତା ଲାଭ କରିଥିଲା । ଓଡ଼ିଶା ଥିଏଟର୍ସ ଶହେ ଦୁଇ ରାତି ସଫଳତାର ସହିତ ଏହି ନାଟକକୁ ମଞ୍ଚସ୍ଥ କରାଇଥିଲେ । କବିଚନ୍ଦ୍ରଙ୍କ ମତରେ 'ଫଟାଭୂଇଁ' ହେଉଛି ଓଡ଼ିଶା ଥିଏଟର୍ସର କଟକରେ ସର୍ବଶ୍ରେଷ୍ଠ ନାଟକ ପ୍ରଦର୍ଶନୀ ।

**ରକ୍ତମନ୍ଦାର**

୧୯୫୨ ମସିହାରେ ରଚିତ 'ରକ୍ତମନ୍ଦାର' ଏକ କିମ୍ବଦନ୍ତୀମୂଳକ ନାଟକ । ବାଙ୍କୀ ଓ ଖୋରଧାର ସୀମା ବିବାଦରେ ବାଙ୍କୀ ରାଜାଙ୍କର ମୃତ୍ୟୁ ହୁଏ । ରାଣୀ ଶୁକଦେଈଙ୍କ ନେତୃତ୍ୱରେ ଖୋରଧା ରାଜାଙ୍କ ସଙ୍ଗେ ଲଢ଼ାଇ ହୁଏ ଓ ରାଜା ପରାସ୍ତ ହୁଅନ୍ତି । ଶତ୍ରୁ ସୈନ୍ୟଙ୍କ ମୁଣ୍ଡକୁ କାଟି ଖୋରଧା ସୀମାରେ ଥିବା କୁଶୁପଲାର ମୁହାଣ ନାମକ ସ୍ଥାନରେ ମନ୍ଦିର ନିର୍ମାଣ କରିଛନ୍ତି ବାଙ୍କୀ ସୈନ୍ୟ ।

ନାଟକରେ ପ୍ରତ୍ୟେକ ଚରିତ୍ର ଚିତ୍ରଣ ସୁନ୍ଦର ହେଲେହେଁ ରାଣୀ ଶୁକଦେଈ ହେଉଛନ୍ତି ଏକ ଅବିସ୍ମରଣୀୟ ସୃଷ୍ଟି । ଆଲୋଚକଙ୍କ ଭାଷାରେ –

''ବ୍ୟକ୍ତିତ୍ୱର ଔଜ୍ଜ୍ୱଲ୍ୟରେ, ବୀରତ୍ୱର ମହିମାରେ, ନେତୃତ୍ୱର ଦୀପ୍ତିରେ, ବାତ୍ସଲ୍ୟର ଗାରିମାରେ, ମମତାର ଔଦାର୍ଯ୍ୟରେ ରସାଣିତ ଏହି ଚରିତ୍ର ମଧ୍ୟରେ କ୍ଷମାର ଯେଉଁ ତୁଙ୍ଗ ରୂପ ଦେଖିବାକୁ ମିଳେ, ତାହା ଓଡ଼ିଆ ନାଟକର ଚରିତ୍ରପଞ୍ଜିରେ ଖୁବ୍ ସୁଲଭ ନୁହେଁ ।''

ପୁଣି ତାଙ୍କ ମତରେ ଅନ୍ୟ ଏକ ଖଳନାୟକ ଉତ୍ତରରାୟ ବିଖ୍ୟାତ ନାଟ୍ୟକାର ସେକ୍ସପିଅରଙ୍କର ଇୟାଗୋ ଚରିତ୍ରର ସମକକ୍ଷ ବୋଲି କୁହାଯାଇପାରେ ।

ନାଟକର ଅନ୍ୟ ଆକର୍ଷଣମାନ ମଧ୍ୟ ଅଛି । ହଟକେଶ୍ୱର ଯାତ୍ରାର କେଳା କେଲୁଣୀ, ଶାଶୂ ବୋହୂ କଳି ପ୍ରଭୃତି ଅତି ବାସ୍ତବ ହୋଇଛି । ସଙ୍ଗୀତପ୍ରବଣା ଭୈରବୀ ମଧ୍ୟ ନିୟତିର ଭୂମିକା ତୁଲାଇଛନ୍ତି । ସଙ୍ଗୀତ ଯୋଜନା ମଧ୍ୟ ଅତି ଚିତ୍ତାକର୍ଷକ ହୋଇଛି ।

'ରକ୍ତମନ୍ଦାର' ହେଉଛି ନାଟ୍ୟକାରଙ୍କର ସର୍ବଶ୍ରେଷ୍ଠ ନିର୍ଯ୍ୟାସ ।

**ସନ୍ଧାନ**

ନାଟ୍ୟକାର ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚପାଇଁ 'ସନ୍ଧାନ' ନାଟକ ରଚନା କରିଥିଲେ ଓ ୧୯୫୩ ମସିହା ଫେବୃଆରୀ ମାସ ୧୦ ତାରିଖରେ ଏହା ମଞ୍ଚସ୍ଥ କରାଇଥିଲେ ।

ଆଦର୍ଶବାଦୀ ଶିକ୍ଷିତ ପ୍ରିୟନାଥ ମଧୁବାବୁଙ୍କ କନ୍ୟା ମଣିକୁ ଭଲ ପାଆନ୍ତି । ମଧୁବାବୁ ପ୍ରିୟନାଥଙ୍କ ଘରକୁ ପ୍ରସ୍ତାବ ନେଇ ଯାଆନ୍ତି । ବିବାହ ସ୍ଥିର ମଧ୍ୟ ହୁଏ । ମଧୁବାବୁ ଓ ଶ୍ୟାମବାବୁଙ୍କ ଚକ୍ରାନ୍ତରେ ପ୍ରିୟନାଥ ପ୍ରମାଣିତ ହୁଅନ୍ତି ଚରିତ୍ରହୀନ ବୋଲି । ଦୁଃଖରେ ପ୍ରିୟନାଥ ଘର ଛାଡ଼ନ୍ତି । ମଧୁବାବୁଙ୍କ ମୃତ୍ୟୁପରେ ମଣି ପୁରୀ ଚାଲିଯାଏ ଓ ସେଇଠି ସମସ୍ତଙ୍କର ମିଳନ ହୁଏ ।

ନାଟକଟିରେ କୌଣସି ନୂତନତା ନାହିଁ । ଆଲୋଚକଙ୍କ ମତରେ ଏହା କାଳୀଚରଣଙ୍କ ଅବକ୍ଷୟୀ ପ୍ରତିଭାର ମ୍ଳାନ ସ୍ମାରକୀ ।

**ସାରଳା ଦାସ**

ସାରଳା ଦାସଙ୍କ କବିତ୍ୱ ଓ ଗଜପତିଙ୍କଦ୍ୱାରା ତାହା ସ୍ୱୀକୃତି ପାଇବା ଏହି ନାଟକର ବିଷୟବସ୍ତୁ । ସଂସ୍କୃତ ପ୍ରାଧାନ୍ୟ ସମାଜରେ ପ୍ରାକୃତ ଭାଷାରେ ରଚନା କରିବା ଯୋଗୁଁ ସାରଳା ଦାସ ଯେଉଁ ନିନ୍ଦା ଓ ଅପମାନର ଶରବ୍ୟ ହୋଇଥିଲେ ଓ ପଣ୍ଡିତମାନଙ୍କ ଅତ୍ୟାଚାରରେ ଯେଉଁ ଦୁର୍ଦ୍ଦଶାର ସମ୍ମୁଖୀନ ହୋଇଥିଲେ, ତାହାହିଁ ନାଟକରେ ସ୍ଥାନ ପାଇଛି ।

ନାଟକରେ ବ୍ୟବହୃତ ସଙ୍ଗୀତଗୁଡ଼ିକ କବିଚନ୍ଦ୍ରଙ୍କର ନିଜସ୍ୱ ନୁହେଁ; ତାହା 'ଗୀତଗୋବିନ୍ଦ'ର । ସୌଖୀନ ମଞ୍ଚପାଇଁ ନାଟକଟି ଲେଖା ହୋଇଥିବାରୁ ଏପରି ବ୍ୟବସ୍ଥା ହୋଇଥିବା ଜଣାଯାଏ । ଏହା ମଧ୍ୟ କବିଚନ୍ଦ୍ରଙ୍କ ପ୍ରତିଭାର ସ୍ୱାକ୍ଷର ନୁହେଁ ।

**ମାଳତୀ**

ନରସିଂହପୁର ଇତିହାସର ଏକ ଗୌରବୋଜ୍ଜ୍ୱଳ ଅଧ୍ୟାୟ ଅବଲମ୍ବନରେ ଏହା ରଚିତ । ପଣ୍ଡିତ ଚକ୍ରଧର ମହାପାତ୍ର ଏଥିପାଇଁ ପ୍ରେରଣା ଯୋଗାଇଦେଇଥିବା ଜଣାଯାଏ ।

ବର୍ଗୀମାନଙ୍କର ଆକ୍ରମଣରେ ନରସିଂହପୁର ନରେଶ ମନ୍ଦରଧର ରାଜ୍ୟ ହରାଇଛନ୍ତି । ମରହଟ୍ଟା ସର୍ଦ୍ଦାର ଶାଖୀରାମ୍‌ର ପତନ ଫଳରେ ମନ୍ଦରଧର ନିଜ ହୃତ ରାଜ୍ୟ ଫେରିପାଇଛନ୍ତି ।

ନାୟିକାର ନାମ ଅନୁସାରେ ନାଟକର ନାମକରଣ ହୋଇଛି । କିମ୍ବଦନ୍ତୀ ରୂପ ଦେବାରେ କାଳୀଚରଣ ଯେ ସିଦ୍ଧହସ୍ତ, ଏହା ସେ ଏହି ନାଟକରେ ପୁଣି ପ୍ରମାଣିତ କରିଛନ୍ତି ।

**ହୀରାଖଣ୍ଡ**

'ହୀରାଖଣ୍ଡ' ନାଟକର ପ୍ରକାଶ କାଳ ହେଉଛି ୧୯୬୮ ମସିହା । ଏହା କୌଣସି ବ୍ୟାବସାୟିକ ରଙ୍ଗମଞ୍ଚରେ ଅଭିନୀତ ହୋଇ ନାହିଁ । ସ୍ୱାଧୀନତା ପର ଘଟଣା । ହୀରାକୁଦ ବନ୍ଧ ବିରୋଧରେ ପଶ୍ଚିମ ଓଡ଼ିଶାରେ ଯେଉଁ ରାଜନୈତିକ ଆନ୍ଦୋଳନ ଦେଖାଦେଇଥିଲା, ତାହାର ଅସାରତା ପ୍ରତିପାଦନ କରି ଯୋଜନା ସପକ୍ଷରେ ବଳିଷ୍ଠ ଜନମତ ସୃଷ୍ଟି କରିବା ଏହାର ଲକ୍ଷ୍ୟ ହୋଇଥିବା ଜଣାଯାଏ । ଏହାକୁ ତେଣୁ ପ୍ରଚାରଧର୍ମୀ ନାଟକ କୁହାଯାଇପାରେ ।

**ପଥର ଘର**

'ପଥର ଘର' ନାଟକ ୧୯୪୯ ମସିହାରେ ରଚିତ ହୋଇଥିଲେ ମଧ୍ୟ ୧୯୬୮ ମସିହାରେ ପ୍ରକାଶ ପାଇଥିଲା । ଏହା ହେଉଛି କବିଚନ୍ଦ୍ରଙ୍କର ଶେଷ ପ୍ରକାଶିତ ନାଟକ ।

'ପଥର ଘର' ଏକ ଐତିହାସିକ ନାଟକ । କଟକ ବାରବାଟୀ ଦୁର୍ଗର ପୃଷ୍ଠଭୂମିରେ ରାଜା ମର୍କତକେଶରୀଙ୍କ ଠାରୁ ଆରମ୍ଭ କରି ସ୍ୱାଧୀନତା ଲାଭ ପର୍ଯ୍ୟନ୍ତ ଅର୍ଥାତ୍ ଏକ ହଜାର ବର୍ଷର ଇତିହାସ ଏଥିରେ ବର୍ଣ୍ଣିତ । ଜାତୀୟତା ଉଜ୍ଜୀବିତ କରିବା ଏହାର ମୂଳ ଲକ୍ଷ୍ୟ । ଏହାଛଡ଼ା ଓଡ଼ିଶାର ଶିଳ୍ପ, ବାଣିଜ୍ୟ, ଐତିହ୍ୟ, ସଂସ୍କୃତି, କଳା, ଆଧ୍ୟାତ୍ମିକତା ପ୍ରଭୃତି ଉତ୍କଳୀୟମାନଙ୍କ ଆଗରେ ବାଢ଼ିବା ଏହାର ଲକ୍ଷ୍ୟ ହୋଇଥିବାରୁ ନାଟକଧର୍ମୀ ନ ହୋଇପାରିବା ସ୍ୱାଭାବିକ ।

କବିଚନ୍ଦ୍ରଙ୍କର ସ୍ୱୀକାରୋକ୍ତି –

''ସ୍ୱାଧୀନତା ଆନ୍ଦୋଳନରେ ପ୍ରତ୍ୟକ୍ଷ ସିପାହି ନ ହେଲେ ମଧ୍ୟ ମୁଁ ମନ ମଧ୍ୟରେ ସ୍ୱାଧୀନତାର ପୂଜା କରେ । ତା'ଛଡ଼ା ମୁଁ ଏଇ ଚିନ୍ତାଟିକୁ ପ୍ରଚାର କରିବାକୁ ଚାହେଁ ।''

'ଯୁଗେ ଯୁଗେ ଉତ୍କଳ', 'ଫଟାଭୂଇଁ' ଓ ଶେଷରେ 'ପଥର ଘର' – ଏହି ତିନୋଟି ନାଟକରେ ତାହାହିଁ କରାଯାଇଛି ।

## ଚଳଚ୍ଚିତ୍ର ନିର୍ମାଣ – ଜନ୍ମମାଟି

କାଳୀଚରଣ ମଧ୍ୟ ଚଳଚ୍ଚିତ୍ର ନିର୍ମାଣ ଦିଗରେ ମନ ଦେଇଥିଲେ । ଓଡ଼ିଶା ସରକାରଙ୍କ ଲୋକସମ୍ପର୍କ ବିଭାଗର ମୁଖ୍ୟ ଚିନ୍ତାମଣି ମିଶ୍ର ମଧ୍ୟ ସରକାରଙ୍କ ପକ୍ଷରୁ ଚଳଚ୍ଚିତ୍ର ନିର୍ମାଣ ଲାଗି ବ୍ୟବସ୍ଥା କଲେ ଓ ଏ ଭାର କାଳୀଚରଣଙ୍କୁ ଦେଲେ । କାଳୀଚରଣ ଲେଖାଲେଖି କଲେ । ସରକାରଙ୍କଦ୍ୱାରା ତାହା ମଧ୍ୟ ମନୋନୀତ ହେଲା । କଟକରେ ଚଳଚ୍ଚିତ୍ର ସୁଟିଂ ୨୮.୨.୧୯୪୬ ତାରିଖରେ ହେଲା । କେତେକ ଚିତ୍ର ସାକ୍ଷୀଗୋପାଳରେ ଗ୍ରହଣ କରାଗଲା । କଲିକତାରେ ଆରୋରା ଫିଲ୍ମ କମ୍ପାନୀ ଏହା ଶେଷ କଲେ । କଟକ ପ୍ରଭାତ ସିନେମାରେ ଛବି ପ୍ରଦର୍ଶିତ ହେଲା । ଏହା କାଳୀଚରଣ ଓ ଓଡ଼ିଶା ସରକାରଙ୍କ ପବ୍ଲିସିଟି ବିଭାଗର ପ୍ରଥମ ଛବି ଥିଲା । କାଳୀଚରଣ ମଧ୍ୟ 'ଲଳିତା' ଚଳଚ୍ଚିତ୍ରର ସଂଳାପ ଓ ସଙ୍ଗୀତ ଲେଖିଲେ । ୧୯୫୬ ମସିହାରେ 'ନାରୀ' ନାମକ ଚଳଚ୍ଚିତ୍ରପାଇଁ କଥା ଓ ଗୀତ ଲେଖିଲେ ଏବଂ ନିର୍ଦ୍ଦେଶନାରେ ଭାଗ ନେଲେ । ଛବିଟି ରାଷ୍ଟ୍ରପତି ପୁରସ୍କାରପ୍ରାପ୍ତ ହେଲା ।

## ମଞ୍ଚଜୀବନର ପରିସମାପ୍ତି

ବାଙ୍କାବଜାରରେ ଓଡ଼ିଶା ଥିଏଟର୍ସ ଏକ ଚାଳଘରେ ବହୁ ଘାତ-ପ୍ରତିଘାତ ସତ୍ତ୍ୱେ ୧୯୪୯ ମସିହା ପର୍ଯ୍ୟନ୍ତ ଅଭିନୟ ପ୍ରଦର୍ଶନ କଲା । ୧୯୪୯ରେ ଦଳ କଟକରୁ ବାହାରକୁ ଗଲା । କଲିକତା, ଟାଟାନଗର ପ୍ରଭୃତି ସ୍ଥାନରେ ଅଭିନୟ ପ୍ରଦର୍ଶିତ ହେଲା । ମାତ୍ର କଟକକୁ ଆଉ ବାହୁଡ଼ି ଆସି ନ ଥିଲେ । କାଳୀଚରଣଙ୍କ ମଞ୍ଚଜୀବନର ପରିସମାପ୍ତି ଘଟିଲା ।

## ପାଠ୍ୟପୁସ୍ତକ ରଚନା

୧୯୧୭ ମସିହାରେ କାଳୀଚରଣ ଗୋଟିଏ ଶିଶୁକବିତା 'କଳାହାଣ୍ଡିଆ ମେଘ' ରଚନା କରିଥିଲେ । ଆଉ କେତେ ଖଣ୍ଡ ଶିଶୁକବିତା ପୁସ୍ତକ ମଧ୍ୟ ଲେଖିଥିଲେ । ଛାତ୍ରବନ୍ଧୁ ପୁସ୍ତକାଳୟର କାଶୀନାଥ ମିଶ୍ରଙ୍କ ଅନୁରୋଧରେ କାଳୀଚରଣ ଶିଶୁମାନଙ୍କ ଉପଯୋଗୀ ପୁସ୍ତକ ରଚନା ଦିଗରେ ବ୍ରତୀ ହେଲେ । ସେଗୁଡ଼ିକ ହେଲା 'ପହିଲି ପାଠ', 'ଆମ ପାଠ' ଇତ୍ୟାଦି । ଏଗୁଡ଼ିକ ଶିକ୍ଷାବିଭାଗର ମଞ୍ଜୁରି ପାଇଲା । ଏହାପରେ ଅପର ପ୍ରାଇମେରୀ ଶ୍ରେଣୀପାଇଁ 'ସରସ ସାହିତ୍ୟ' ଲେଖିଲେ । ଏହା ମଧ୍ୟ ପାଠ୍ୟପୁସ୍ତକ ରୂପେ ଅନୁମୋଦିତ ହେଲା । ପରେ ପରେ 'ପିଲାଙ୍କ ପାଠ' ଓ 'ଚନ୍ଦ୍ରିକା' ନାମକ କବିତା ପୁସ୍ତକ ଉପର ଶ୍ରେଣୀ ପିଲାଙ୍କପାଇଁ ଲେଖିଲେ । ଏହା ମଧ୍ୟ ଶିକ୍ଷାବିଭାଗର ଅନୁମୋଦନ ଲାଭ କଲା । କ୍ରମେ ଉତ୍କଳ ବୁକ୍ ଏଜେନ୍ସି ଓ ଷ୍ଟୁଡେଣ୍ଟସ୍ ଷ୍ଟୋର ପ୍ରଭୃତି କାଳୀଚରଣଙ୍କର ଶିଶୁ ସାହିତ୍ୟମାନ ପ୍ରକାଶ କଲେ ।

### ସ୍ୱରଲେଖା ରେକର୍ଡିଙ୍ଗ୍ କମ୍ପାନୀ ଗଠନ

୧୯୫୧ ମସିହାରେ କାଳୀଚରଣ ଓଡ଼ିଶାରେ ଗୋଟାଏ ରେକର୍ଡିଙ୍ଗ୍ କମ୍ପାନୀ ଆରମ୍ଭ କରିବାକୁ ସ୍ଥିର କଲେ । ହିନ୍ଦୁସ୍ଥାନ କମ୍ପାନୀ ରେକର୍ଡିଙ୍ଗ୍ ଷ୍ଟୁଡ଼ିଓରେ ରେକର୍ଡ ଗ୍ରହଣ କରିବାର ବ୍ୟବସ୍ଥା ହେଲା ଓ ୧୯୫୪ ମସିହା ମାର୍ଚ୍ଚ ମାସ ୯ ତାରିଖରେ ହିନ୍ଦୁସ୍ଥାନ ରେକର୍ଡିଙ୍ଗ୍ କମ୍ପାନୀ ସହିତ ଏକ ଚୁକ୍ତିପତ୍ର ସମ୍ପାଦିତ ହେଲା ।

ସ୍ୱରଲେଖା ପ୍ରଥମ ଦୁଇ ଖଣ୍ଡ ରେକର୍ଡ କଲା । ତାହା ହେଲା –

(କ) ମେଘକୁ ସୁନ୍ଦର ଜହ୍ନ (ଖ) କଳା କାଇଁଚ ମାଳି

(ଗ) ମାନ ରଖ ଗିରିଧାରୀ (ଘ) ଜଗବନ୍ଧୁ ହେ, ପ୍ରଭୁ ଯଦୁନନ୍ଦନ

୧୯୫୮-୬୦ ମଧ୍ୟରେ କେତୋଟି ଛୋଟ ନାଟିକା, ଭଜନ, ଓଡ଼ିଶୀ ଓ ଲଘୁ ସଙ୍ଗୀତର ରେକର୍ଡିଙ୍ଗ୍ ମଧ୍ୟ ହେଲା ।

### ଜିପ୍ ଦୁର୍ଘଟଣା

କାଳଚରଣ ଥରେ କଟକ ଶେଖବଜାରର ମାଧବ ନନ୍ଦଙ୍କ ସହିତ ଭୁବନେଶ୍ୱର ଆଦିବାସୀ ପଡ଼ିଆରେ ଗୋଟିଏ ସମ୍ମିଳନୀରେ ଯୋଗ ଦେବାକୁ ଜିପ୍‌ରେ ଯାଉଥିଲେ । ଭୁବନେଶ୍ୱରର ଗୋଟିଏ ଛକରେ ସେତେବେଳକାର ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କର ଗୋଟିଏ କାର୍ ଆସି ଜିପ୍ ଗାଡ଼ିକୁ ଧକ୍କା ଦେଲା । ଜିପ୍‌ରୁ ପ୍ରାୟ ୨୦, ୨୬ ଫୁଟ ଦୂରରେ ଥିବା ଗୋଟିଏ ଜାଗାରେ କାଳୀଚରଣ ଛିଟ୍‌କି ପଡ଼ିଲେ । ସଙ୍ଗେ ସଙ୍ଗେ ତାଙ୍କୁ ଆମ୍ବୁଲାନ୍‌ସ ଗାଡ଼ିରେ କଟକ ହସ୍‌ପିଟାଲ ନିଆଗଲା । କନିକା କଟେଜ୍‌ରେ ତାଙ୍କୁ ପ୍ରାୟ ତିନି ମାସ ରହିବାକୁ ପଡ଼ିଲା । ଟିକିଏ ଚାଲିବାକୁ ପ୍ରାୟ ଛଅ ମାସ ବିତିଗଲା ।

### କଟକ ରେଡ଼ିଓ ସମ୍ପର୍କ

କାଳୀବାବୁ କଲିକତା ରେଡ଼ିଓରେ କଣ୍ଠଶିଳ୍ପୀ ଭାବେ ମଝିରେ ମଝିରେ ଗୀତ ଗାଉଥିଲେ । କଟକର କେତେକ ଶିଳ୍ପୀଙ୍କୁ ନେଇ ବେଳେ ବେଳେ ସେଠାରେ ପ୍ରୋଗ୍ରାମ କରୁଥିଲେ । କଟକରେ ମଧୁପୁର କୋଠିରେ ରେଡ଼ିଓ ଷ୍ଟେସନ ହେବା ପରେ କାଳୀବାବୁ ତାହା ସହିତ ସମ୍ପୃକ୍ତ ହେଲେ । ଶୁଭ ଅନୁକୂଳ ଦିନ କାଳୀବାବୁ ଭାଷଣ ଦେଇଥିଲେ । ରେଡ଼ିଓ ଗାୟକ ଗାୟିକା ନିର୍ବାଚନରେ ବିଚାରକମାନେ ନିଯୁକ୍ତ ହୋଇଥିଲେ । ବହୁ ବର୍ଷ ପର୍ଯ୍ୟନ୍ତ ସେ କଟକ ଆକାଶବାଣୀର ଉପଦେଷ୍ଟାଭାବେ କାର୍ଯ୍ୟ କରିଥିଲେ ।

### ଓଡ଼ିଶୀ ନୃତ୍ୟର ସ୍ୱତନ୍ତ୍ରତା ପ୍ରତିପାଦନ

୧୯୫୫ ମସିହାରେ ଓଡ଼ିଶାରେ 'ନୃତ୍ୟ ସଙ୍ଗୀତ ନାଟ୍ୟକଳା ପରିଷଦ' ଗଠିତ ହେଲା । କାଳୀଚରଣଙ୍କୁ ଏହାର ସଭ୍ୟ ଭାବେ ମନୋନୀତ କରାଗଲା ।

କାଳୀଚରଣ ଆବାଲ୍ୟରୁ ଓଡ଼ିଶୀ ଗୀତପ୍ରେମୀ ଥିଲେ । ନଅ ଦଶ ବର୍ଷ ବୟସ ହୋଇଥିଲାବେଳେ ଚର୍ଚ୍ଚିକା ମାଳୀ ସାହିର ସୁଲଭ ରଣା ନାମକ ଜଣେ ମାଳୀ ତାଙ୍କୁ ସଙ୍ଗୀତ ଶିଖାଇଥିଲେ । କାଳୀଚରଣ ଖୋରଧାରେ ମାଟ୍ରିକ ପଢ଼ିଲାବେଳେ ଗୁରୁଜଙ୍ଗର ଗୋବିନ୍ଦ ନନ୍ଦଙ୍କଠାରୁ ଓଡ଼ିଶୀ ସଙ୍ଗୀତ ଶିଖିଥିଲେ । ଓଡ଼ିଶୀ ଗୀତ ଲେଖି ତାଙ୍କୁ ଦେଉଥିଲେ । ପୁରୀରେ ଥିଲାବେଳେ ସୋମନାଥ ମହାପାତ୍ରଙ୍କ ଦଳ ସହିତ ସମ୍ପର୍କ ସ୍ଥାପିତ ହେଲା ପରେ ଓଡ଼ିଶୀ ଗୀତ ଲେଖି ଦେଉଥିଲେ । କାଳୀଚରଣ ମଧ ତାଙ୍କ ଥିଏଟର ଦଳରେ ଓଡ଼ିଶୀ ନାଚ ପୂରାଇଥିଲେ । ଓଡ଼ିଶୀ ସଙ୍ଗୀତ ବିଷୟରେ ସେ ପୋଥିମାନ ନାନା ସ୍ଥାନରୁ ସଂଗ୍ରହ କରୁଥିଲେ । ସେଥିରୁ ଓଡ଼ିଶୀ ସଙ୍ଗୀତର ଓ ସ୍ୱତନ୍ତ୍ରତାର ପ୍ରମାଣ ପାଇଥିଲେ ।

ଓଡ଼ିଶୀ ନୃତ୍ୟର ସ୍ୱତନ୍ତ୍ରତା ପ୍ରତିପାଦନପାଇଁ କାଳୀବାବୁ ଉଦ୍ୟମ କଲେ । ସେ 'ନୃତ୍ୟ ସଙ୍ଗୀତ ନାଟ୍ୟକଳା ପରିଷଦ' ବୈଠକରେ ଏ ବିଷୟଟି ପକାଇଲେ । ନୃତ୍ୟ, ସଙ୍ଗୀତ, ତଥା ନାଟ୍ୟକଳା ଉନ୍ନତିକଳ୍ପେ କିଛି ନ ହେଉଥିବାରୁ ସେ ଖେଦ ପ୍ରକାଶ କଲେ । ଫଳରେ ଏକ ପ୍ରସ୍ତାବ ଗୃହୀତ ହେଲା ।

ଓଡ଼ିଶୀ ସଙ୍ଗୀତର ସ୍ୱତନ୍ତ୍ରତା ବିରୋଧରେ ୧୯୫୫ ମସିହା ମେ ମାସ ୨୧ ତାରିଖ 'ସମାଜ'ରେ କୃଷ୍ଣଚରଣ ପଣ୍ଡାଙ୍କର ଏକ ଲେଖା ପ୍ରକାଶ ପାଇଲା । ସିଂହାରୀ ଶ୍ୟାମସୁନ୍ଦର କର ଓ କାଳୀବାବୁ ଏହାର ପ୍ରତିବାଦ କଲେ ।

ପରିଷଦ ପକ୍ଷରୁ ଦିଲ୍ଲୀରେ ଗୋଟିଏ ନାଟକାଭିନୟ ପ୍ରସ୍ତାବ ହେଲା । କାଳୀବାବୁ 'ଯୁଗେ ଯୁଗେ ଉତ୍କଳ' ନାମକ ଏକ ନାଟକ ଲେଖିଲେ । ବାରବାଟୀ କିଲା ପଡ଼ିଆରେ ଏହା ମଞ୍ଚସ୍ଥ ହେଲା । ତାହା ମଧ ଉଚ୍ଚ ପ୍ରଶଂସିତ ହେଲା । ମାତ୍ର ସେ ଲେଖା ତାଙ୍କର ନୁହେଁ ବୋଲି ପରିଷଦର କର୍ମଚାରୀ ପଣ୍ଡାବାବୁ ପ୍ରଚାର କଲେ । ଏପରିକି ଓଡ଼ିଶୀ ନୃତ୍ୟ ବହିରେ ତାଙ୍କ ନାମ ନ ରଖିବାକୁ ଚକ୍ରାନ୍ତ ହେଲା । ସେ ପ୍ରଚେଷ୍ଟା ଥିଲା ବିମଳ ଘୋଷଙ୍କର ।

ଏହାପରେ ଦିଲ୍ଲୀରେ ଗୋଟିଏ ନୃତ୍ୟନାଟିକା ଦେଖାଇବାକୁ ସ୍ଥିର ହେଲା । କାଳୀବାବୁ 'ସାକ୍ଷୀଗୋପଳ' ନୃତ୍ୟନାଟିକା ଲେଖିଲେ । ଏହା ଥିଲା ଓଡ଼ିଶାର ପ୍ରଥମ ନୃତ୍ୟନାଟିକା । ଏଥିରେ ଗୀତ ଓ ନୃତ୍ୟ ସମ୍ପୂର୍ଣ୍ଣ ଓଡ଼ିଶୀ ରୀତିରେ ଲିଖିତ ଓ ପରିବେଷିତ ହୋଇଥିଲା । ଦିଲ୍ଲୀରେ ଏହା ବିଶେଷ ପ୍ରଶଂସା ପାଇଲା ।

୧୯୫୭ ମସିହାରେ ପରିଷଦ ଦ୍ୱାରା ଓଡ଼ିଶୀ ସଙ୍ଗୀତ ସେମିନାରର ଆୟୋଜନ ହେଲା । ଏଥିରେ କାଳୀବାବୁ ବିଶେଷ ଭୂମିକା ଗ୍ରହଣ କଲେ । ସେ ଏଥିପାଇଁ 'ଓଡ଼ିଶୀ ସଙ୍ଗୀତର ରୂପରେଖ' ନାମକ ଗୋଟିଏ ପୁସ୍ତକ ମଧ ଲେଖିଲେ । ଓଡ଼ିଶୀ ସଙ୍ଗୀତର ବିଶିଷ୍ଟତା ଓ ମୌଳିକତା ପ୍ରମାଣ କରିବା ତା'ର ଲକ୍ଷ୍ୟ ଥିଲା । ପରିଷଦ ଏହି ପୁସ୍ତକ ଛପାଇବା ଖର୍ଚ୍ଚ ବହନ କଲା ।

ଓଡ଼ିଶୀ ସଙ୍ଗୀତ ସେମିନାର ଓଡ଼ିଶାରେ ପ୍ରଥମ ଥିଲା । ଏଥିରେ ଗଞ୍ଜାମର କେତେକ ସଙ୍ଗୀତପ୍ରେମୀ ପ୍ରବନ୍ଧମାନ ପାଠ କରିଥିଲେ । ସ୍ୱର୍ଗତ ଲିଙ୍ଗରାଜ ପାଣିଗ୍ରାହୀ ମହୋଦୟ ଅବଶ୍ୟ ଓଡ଼ିଶୀ ସଙ୍ଗୀତର ସ୍ୱତନ୍ତ୍ରତା ସମ୍ବନ୍ଧେ ଭିନ୍ନ ମତ ପ୍ରକାଶ କରିଥିଲେ; କିନ୍ତୁ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଓଡ଼ିଶୀ ସଙ୍ଗୀତର ମୌଳିକତା ରହିଛି ବୋଲି ମତ ପ୍ରକାଶ କଲେ । ଓଡ଼ିଶୀ ଛାନ୍ଦ, ଚଉତିଶା ଓ ପୁରାତନ କବି ବନମାଳୀ, କବିସୂର୍ଯ୍ୟ ପ୍ରଭୃତିଙ୍କ ରଚିତ ଗୀତ ରସାନୁସାରୀ ଥିବା ଦର୍ଶାଇ କାଳୀଚରଣ ଓଡ଼ିଶୀ ସଙ୍ଗୀତର ସ୍ୱତନ୍ତ୍ରତା ପ୍ରତିପାଦନ କରାଇଲେ । ଏହି ସେମିନାରରେ ଭାରତ ସୁନ୍ଦରୀ ଇନ୍ଦ୍ରାଣୀ ରହେମାନ୍ ଯୋଗ ଦେଇଥିଲେ । ସେ ଓ ତାଙ୍କ ଠାରୁ ତାଲିମପ୍ରାପ୍ତ କେତେଜଣ ଛାତ୍ରୀ ସଭାରେ ଓଡ଼ିଶୀ ନୃତ୍ୟ ପ୍ରଦର୍ଶନ କରିଥିଲେ । ଶ୍ରୀମତୀ ରହେମାନ ଓଡ଼ିଶୀ ନୃତ୍ୟ ପ୍ରତି ଆକୃଷ୍ଟ ହେଲେ ଓ ଶିକ୍ଷା ନିମନ୍ତେ କାଳୀବାବୁଙ୍କୁ ଅନୁରୋଧ କଲେ । କାଳୀବାବୁ ମଧ୍ୟ ତାଙ୍କୁ ଓଡ଼ିଶୀନୃତ୍ୟ ଶିକ୍ଷା ଦେବାର ବ୍ୟବସ୍ଥା କଲେ । ପରେ ଦେବପ୍ରସାଦ ଦାସ ତାଙ୍କୁ ଓଡ଼ିଶୀ ନୃତ୍ୟ ଶିକ୍ଷା ଦେଲେ ।

'ଓଡ଼ିଶୀ ନୃତ୍ୟ ସଙ୍ଗୀତ ନାଟ୍ୟକଳା ପରିଷଦ' ପରେ ଓଡ଼ିଶା ସଙ୍ଗୀତ ଏକାଡେମୀ ରୂପେ ନାମିତ ହେଲା ।

୧୯୫୫ ମସିହା କାଳୀବାବୁଙ୍କ ଲିଖିତ ଓ ସମ୍ପୂର୍ଣ୍ଣ ଓଡ଼ିଶୀ ଶୈଳୀରେ 'ସାକ୍ଷୀଗୋପାଳ' ନାଟକଟି ଦିଲ୍ଲୀରେ ପରିବେଷିତ ହୋଇ ବିଶେଷ ପ୍ରଶଂସା ଲାଭ କଲା ।

୧୯୫୬ ମସିହା ଅପ୍ରେଲ ମାସ ୨୯ ତାରିଖରେ ଦିଲ୍ଲୀ ଆକାଶବାଣୀରେ କାଳୀବାବୁ ଓଡ଼ିଆ କବିତା 'ମରଣ ବରଣ କର' ପାଠ କଲେ । ତା'ପରଦିନ ଦିଲ୍ଲୀ ସାପ୍ରୁ ହାଉସ ସଭାରେ ସେ ଉକ୍ତ କବିତାଟି ପାଠ କଲେ । ଆଲାହାବାଦ ଆକାଶବାଣୀର ଶ୍ରୀ ଭାରତରତ୍ନ ତାଙ୍କ କବିତାର ସୁନ୍ଦର ହିନ୍ଦୀ ଅନୁବାଦ କରି ସେହି ସଭାରେ ପଢ଼ିଲେ । କାଳୀବାବୁଙ୍କ କବିତାଟି ଉଚ୍ଚ ପ୍ରଶଂସିତ ହେଲା ।

୧୯୫୭ ମସିହା ଡିସେମ୍ବର ମାସରେ ମାନ୍ଦ୍ରାଜରେ 'Indian Institute of Fine Arts' ସଂସ୍ଥା ଦ୍ୱାରା ଏକ ସଙ୍ଗୀତ ସମାରୋହ ହେଲା । କଟକର କଳାବିକାଶ କେନ୍ଦ୍ର ଓ କାଳୀବାବୁ ମଧ୍ୟ ଏଥିରେ ଯୋଗ ଦେବାପାଇଁ ଡାକରା ପାଇଲେ । କାଳୀବାବୁ ଓଡ଼ିଶୀ ସଙ୍ଗୀତ ସମ୍ବନ୍ଧରେ ଏକ ପ୍ରବନ୍ଧ ଲେଖିଲେ । ସେ ଓଡ଼ିଶୀ ସଙ୍ଗୀତର ସ୍ୱାତନ୍ତ୍ର୍ୟ ଓ ବିଶେଷତ୍ୱ ସମ୍ବନ୍ଧରେ ଦୁଇଟି ପ୍ରବନ୍ଧ ପାଠ କଲେ – ଗୋଟିଏ ନୃତ୍ୟ ଓ ଅନ୍ୟଟି ସଙ୍ଗୀତ ସମ୍ବନ୍ଧରେ । ପ୍ରବନ୍ଧ ପାଠ ପରେ ମାନ୍ଦ୍ରାଜର ବହୁ ସଙ୍ଗୀତପ୍ରେମୀ ଓଡ଼ିଶୀ ସଙ୍ଗୀତ ବିଷୟରେ ବହୁ ପ୍ରଶ୍ନ କଲେ ଓ କର୍ଣ୍ଣାଟକୀ ସଙ୍ଗୀତଠାରୁ ଓଡ଼ିଶୀ ସଙ୍ଗୀତର ବି ପାର୍ଥକ୍ୟ ଅଛି ତାହା ପ୍ରତିପାଦିତ କରିବାକୁ

କହିଲେ । କାଳୀବାବୁ ଓଡ଼ିଶୀ ସଙ୍ଗୀତର ସ୍ୱାତନ୍ତ୍ର୍ୟ ବିଷୟରେ ବୁଝାଇଲେ । ଏହାପରେ ଓଡ଼ିଶୀ ଗୀତ ଓ ନୃତ୍ୟର କ୍ରିୟାତ୍ମକ ପ୍ରଦର୍ଶନୀ ହେଲା । ପ୍ରଖ୍ୟାତ ସଙ୍ଗୀତଜ୍ଞ ବାଳକୃଷ୍ଣ ଦାସ ପ୍ରଥମେ 'ସାବେରୀ' ରାଗରୁ ଗୀତଟିଏ ଗାଇଲେ । ଏହାପରେ 'କଲ୍ୟାଣ' ରାଗର ଗୀତ ମଧ୍ୟ ଗାଇଲେ । କାଳୀବାବୁ ଗୀତର ବ୍ୟାଖ୍ୟାନ କଲେ । ସେଠାରେ ଓଡ଼ିଶୀ ଗୀତର ଭୂୟସୀ ପ୍ରଶଂସା କରାଗଲା । ଏହାପରେ ଓଡ଼ିଶୀ ନୃତ୍ୟ ପ୍ରଦର୍ଶନ ହେଲା । କୁମାରୀ ସଂଯୁକ୍ତା ମିଶ୍ର ସ୍ୱତନ୍ତ୍ର ଓଡ଼ିଶୀ ଢଙ୍ଗର ବେଶ ପିନ୍ଧି ଓଡ଼ିଶୀ ନୃତ୍ୟ ପରିବେଷଣ କଲେ । ଉପସ୍ଥିତ ଦର୍ଶକ ମଣ୍ଡଳୀ ଓଡ଼ିଶୀ ନୃତ୍ୟର ଉଚ୍ଛ୍ୱସିତ ପ୍ରଶଂସା କଲେ । ଏହି କଳା ଅବହେଳିତ ହୋଇପଡ଼ିଥିବାରୁ ଓ ଆନ୍ତର୍ଜାତିକ ସ୍ତରରେ ପ୍ରତିଷ୍ଠା ଲାଭ କରିପାରୁ ନ ଥିବାରୁ ସମସ୍ତେ ଦୁଃଖ ପ୍ରକାଶ କରିଥିଲେ ।

ମାନ୍ଦ୍ରାଜରେ ମଧ୍ୟ ଓଡ଼ିଶୀ ନୃତ୍ୟ ପରିବେଷଣ କରାଗଲା । ମାନ୍ଦ୍ରାଜରୁ ହିନ୍ଦୁ ପତ୍ରିକା ମଧ୍ୟ ଉଚ୍ଚ ପ୍ରଶଂସା କରିଥିଲା ।

**ଦିଲ୍ଲୀ ନୃତ୍ୟ ସମାରୋହ**

୧୯୫୮ ମସିହା ମାର୍ଚ୍ଚ ମାସ ୩୧ରୁ ଅପ୍ରେଲ ମାସ ୬ ତାରିଖ ପର୍ଯ୍ୟନ୍ତ ଦିଲ୍ଲୀରେ ନୃତ୍ୟ ସମାରୋହ ହେବାର ସ୍ଥିର ହେଲା । କାଳୀବାବୁ ସମ୍ପାଦିକା ନିର୍ମଳା ଯୋଶୀଙ୍କଠାରୁ ଜାନୁଆରୀ ମାସ ୭ ତାରିଖରେ ଗୋଟିଏ ପତ୍ର ପାଇଲେ । ସେହି ନୃତ୍ୟ ସମାରୋହରେ ଓଡ଼ିଶୀ ନୃତ୍ୟର ତାତ୍ତ୍ୱିକ ଅନୁଶୀଳନର ଆଲୋଚନାପାଇଁ ଏକ ସନ୍ଦର୍ଭ ଲେଖି ଏକ ନୃତ୍ୟଦଳ ନେଇ ଦିଲ୍ଲୀକୁ ଯିବାକୁ କୁହାଯାଇଥିଲା ।

କାଳୀବାବୁ କଳାବିକାଶ କେନ୍ଦ୍ରର ପ୍ରତିଷ୍ଠାତା ବାବୁଲାଲ ଯୋଷୀଙ୍କ ସହଯୋଗ ଲୋଡ଼ିଲେ । ସେ ଆନନ୍ଦରେ ସମ୍ମତି ଦେଲେ ନ୍ୟାସନାଲ ମ୍ୟୁଜିକ ଆସୋସିଏସନ୍‌ର ସାଧାରଣ ସମ୍ପାଦକ ଶ୍ରୀ ବିଭୂତିଭୂଷଣ ତ୍ରିପାଠୀ ଏସବୁର ବ୍ୟବସ୍ଥା କରିବେ ବୋଲି କହିଲେ । 'ରାଧିକା' ନାମକ ଏକ ନୃତ୍ୟନାଟିକା ମଧ୍ୟ ଲେଖାଗଲା ।

ନୃତ୍ୟ ପ୍ରଦର୍ଶନପାଇଁ କାଳୀବାବୁ ଓଡ଼ିଶୀ ନୃତ୍ୟଶିଳ୍ପୀ ଇନ୍ଦ୍ରାଣୀ ରହେମାନ ଓ ନୃତ୍ୟଗୁରୁ ଦେବପ୍ରସାଦ ଦାସଙ୍କୁ ନେଇ ଦିଲ୍ଲୀ ଅଭିମୁଖେ ଯାତ୍ରା କଲେ । ଦିଲ୍ଲୀରେ ଡଃ ନୃସିଂହ ସାମନ୍ତସିଂହାରଙ୍କ ଘରେ ଅତିଥି ହେଲେ ।

କାଳୀବାବୁ ସଙ୍ଗୀତ ନାଟକ ଏକାଡେମୀର ସମ୍ପାଦିକା ଶ୍ରୀମତୀ ନିର୍ମଳା ଯୋଷୀଙ୍କୁ ଭେଟିଲେ । ମାତ୍ର ପ୍ରଥମେ ତାଙ୍କୁ ସନ୍ଦର୍ଭ ପାଠ କରିବାପାଇଁ ବା ନୃତ୍ୟ ପ୍ରଦର୍ଶନ ନ କରାଇଦେବା ଉଦ୍ୟମ ହେଲା । ଶେଷକୁ ନାଟକ ଏକାଡେମୀ କାର୍ଯ୍ୟନିର୍ବାହିକା ସମିତିର ଏକ ଜରୁରୀ ବୈଠକ ବସିଲା ଓ କାଳୀବାବୁଙ୍କୁ ସନ୍ଦର୍ଭ ପାଠ କରିବାକୁ ଅନୁମତି ମିଳିଲା । କାଳୀବାବୁ ଗୋଟିଏ ବାଳିକାକୁ ନିଖୁଣ ଓଡ଼ିଶୀ ବେଶରେ ସଜ୍ଜିତ କରି ପାର୍ଲିଆମେଣ୍ଟ ଭବନଠାରୁ ବିଜୟଚୌକ ଦେଇ

ବିଜ୍ଞାନ ଭବନ ଆସିଲେ । ସେହି ବାଳିକାଟିର ଓଡ଼ିଶୀ ନୃତ୍ୟ ପ୍ରଦର୍ଶନ ଉଚ୍ଚ ପ୍ରଶଂସିତ ହେଲା । କାଳୀବାବୁ ମଧ୍ୟ ତିନି ଘଣ୍ଟା ୩୫ ମିନିଟ ଧରି ଓଡ଼ିଶୀ ନୃତ୍ୟ ଉପରେ ସନ୍ଦର୍ଭ ପଢ଼ିଲେ । ଇନ୍ଦ୍ରାଣୀ ରହେମାନ ମଧ୍ୟ ନୃତ୍ୟ ପରିବେଷଣ କଲେ – ଷ୍ଟେଜ୍ ଉପରେ କାଳୀବାବୁଙ୍କୁ ଗୁରୁ ପ୍ରଣାମ ଦେଇ । ସମାରୋହ ପରେ ଓଡ଼ିଶୀ ଶାସ୍ତ୍ରୀୟ ନୃତ୍ୟ ରୂପେ ବିବେଚିତ ହେଲା । ସେମିନାରରେ ଉପସ୍ଥିତ ଭାରତର ବିଭିନ୍ନ ପ୍ରଦେଶରୁ ଆସିଥିବା ନୃତ୍ୟସଙ୍ଗୀତ ବିଶାରଦମାନେ ଏକମୁଖରେ ଓଡ଼ିଶୀ ସଙ୍ଗୀତ ଭାରତନାଟ୍ୟମ୍, କଥାକଳୀ, ମଣିପୁରୀ, କୁଚୁପୁଡ଼ୀ ନୃତ୍ୟ ଭଳି ଶାସ୍ତ୍ରୀୟ ବୋଲି ମତ ଦେଲେ । ଦିଲ୍ଲୀର ସବୁ ସମ୍ବାଦପତ୍ରରେ ମଧ୍ୟ ଏହା ପ୍ରକାଶ ପାଇଲା ।

ମାତ୍ର ତା'ର ତିନି ଦିନ ପରେ ଅର୍ଥାତ୍ ୭.୪.୫୮ ତାରିଖରେ କେନ୍ଦ୍ରମନ୍ତ୍ରୀ ଶ୍ରୀଯୁକ୍ତ ନିତ୍ୟାନନ୍ଦ କାନୁନ୍‌ଗୋ ପ୍ରଭୃତି ଓଡ଼ିଶୀ ନୃତ୍ୟକୁ ଶାସ୍ତ୍ରୀୟତାର ମାନ୍ୟ ଦେବା, ନ ଦେବା ବିଷୟ ବିଚାର କରି ସ୍ଥିର କରିବା ଲାଗି ପୁଣି ଏକ ଆଲୋଚନା ବୈଠକ ଡକାଇଲେ । ବୈଠକରେ ଶ୍ରୀମତୀ ମୃଦୁଲା ସରାଭାଇ, ଶ୍ରୀ ମୋହନ ଖୋକର ଓ ଶ୍ରୀ ଅନୀଲ ଦେ ପ୍ରଭୃତି ନୃତ୍ୟ ସଙ୍ଗୀତ ବିଶାରଦମାନେ ଓଡ଼ିଶୀ ନୃତ୍ୟକୁ ଶାସ୍ତ୍ରୀୟ ମାନ୍ୟତା ଦେବାକୁ ଦାବି କଲେ । ଅନ୍ୟ ପକ୍ଷରେ ଶ୍ରୀ ନିତ୍ୟାନନ୍ଦ କାନୁନଗୋ ପ୍ରଭୃତି ଓଡ଼ିଶୀ ନୃତ୍ୟକୁ ବର୍ତ୍ତମାନ ଲାଗି ପାରମ୍ପରିକ (Traditional) ନୃତ୍ୟ ରୂପେ ଗ୍ରହଣ କରିବାକୁ ଓ ଶାସ୍ତ୍ରୀୟ ନୃତ୍ୟ ରୂପେ ବିଚାର ଲାଗି ଗୋଟିଏ ବିଶେଷଜ୍ଞ କମିଟି ଗଠନ କରାଯାଉ ବୋଲି ମତ ଦେଲେ । ଏହି ବୈଠକ ପ୍ରାୟ ଦେଢ଼ଘଣ୍ଟା ପର୍ଯ୍ୟନ୍ତ ଚାଲିଲା । ଶେଷରେ ସମସ୍ତେ ଓଡ଼ିଶୀ ନୃତ୍ୟର ଶାସ୍ତ୍ରୀୟତା ଘେନି ବିଚାର କରିବା ମନ୍ତବ୍ୟର ନିନ୍ଦା କଲେ ।

ଦିଲ୍ଲୀର ପ୍ରଖ୍ୟାତ ଇଂରାଜୀ ସମ୍ବାଦପତ୍ର 'ଦି ଷ୍ଟେଟ୍‌ସମ୍ୟାନ୍' ମଧ୍ୟ ଏପରି ଏକ କମିଟି ଗଠନର ଆବଶ୍ୟକତା ଅଛି କି ବୋଲି ପ୍ରଶ୍ନ କରିଥିଲେ ।

ଶେଷରେ ଦିଲ୍ଲୀ ସଙ୍ଗୀତ ନାଟକ ଏକାଡେମୀ ସମ୍ବାଦପତ୍ର ମାଧ୍ୟମରେ ଘୋଷଣା କଲେ ଯେ ଏ ପର୍ଯ୍ୟନ୍ତ ଓଡ଼ିଶୀ ନୃତ୍ୟକୁ ଶାସ୍ତ୍ରୀୟତା ମାନ୍ୟତା ଦିଆଯାଇ ନାହିଁ । × × ଏଥିପାଇଁ ଏକ ବିଶେଷଜ୍ଞ କମିଟି ଗଠନ କରାଯିବ । ସେମାନେ ଯେଉଁ ମତ ଦେବେ ସେହି ଅନୁସାରେ ପରେ ନିର୍ଦ୍ଧାରଣ କରାଯିବ ।

କାଳୀବାବୁ ଦୁଃଖରେ ମ୍ରିୟମାଣ ହେଲେ ମଧ୍ୟ ଧୈର୍ଯ୍ୟ ହରାଇ ନ ଥିଲେ । ତାଙ୍କର ଦୃଢ଼ ଧାରଣା ଥିଲା ଯେ କୁହୁଡ଼ି କ୍ଷଣିକପାଇଁ ସୂର୍ଯ୍ୟଙ୍କୁ ଘୋଡ଼ାଇ ଦେଇପାରେ ; ମାତ୍ର ସବୁକାଳ କେଭେ ନୁହେଁ । 'ଓଡ଼ିଶୀ ନୃତ୍ୟ' ଶାସ୍ତ୍ର ଉପରେ ପ୍ରତିଷ୍ଠିତ ଏବଂ ତାହାର ଯେଉଁ କଳା ବିଭବ ଅଛି, ତାହା ଓଡ଼ିଶୀ ନୃତ୍ୟକୁ ନିଶ୍ଚୟ ଶାସ୍ତ୍ରୀୟ ମାନ୍ୟତା ଅଚିରେ ପ୍ରଦାନ କରିବ – ଏ ବିଶ୍ୱାସ ତାଙ୍କର ଥିଲା ।

୧୯୫୯ ମସିହାରେ ଦିଲ୍ଲୀରେ ବଜେଟ ଆଲୋଚନା ବେଳେ ବୈଜ୍ଞାନିକ ଗବେଷଣା ଓ ସାଂସ୍କୃତିକ ମନ୍ତ୍ରଣାଳୟର ଖର୍ଚ୍ଚ ଦାବି ଉପରେ କଳାହାଣ୍ଡି ମହାରାଜା, କମ୍ୟୁନିଷ୍ଟ ସଭ୍ୟ ଚିନ୍ତାମଣି ପାଣିଗ୍ରାହୀ ପ୍ରଭୃତି ଭାଗ ନେଲେ । କଳାହାଣ୍ଡି ମହାରାଜା କହିଥିଲେ ଯେ ଓଡ଼ିଶୀ ଗୋଟିଏ ଶାସ୍ତ୍ରୀୟ ନୃତ୍ୟ । ଏହା ଓଡ଼ିଶାର ମନ୍ଦିରମାନଙ୍କରେ ଦେବଦାସୀମାନଙ୍କଦ୍ୱାରା ପରିବେଷଣ କରାଯାଇଥାଏ । ଏହା ମଧ୍ୟ କୋଣାର୍କର ସୂର୍ଯ୍ୟମନ୍ଦିର, ଭୁବନେଶ୍ୱରର ରାଜରାଣୀ ମନ୍ଦିରଗାତ୍ରରେ ବିଭିନ୍ନ ଅପ୍‌ସରା ମୂର୍ତ୍ତିରେ ପ୍ରତିଫଳିତ ହୋଇଅଛି । ଅବିଳମ୍ବେ ଓଡ଼ିଶୀ ନୃତ୍ୟକୁ ଶାସ୍ତ୍ରୀୟ ମାନ୍ୟତା ଦେବାକୁ ସେ ଦାବି କରିଥିଲେ । ଓଡ଼ିଶୀ ନୃତ୍ୟକୁ ଶାସ୍ତ୍ରୀୟ ମର୍ଯ୍ୟାଦା ଦେବାପାଇଁ ଦୁଇ ବର୍ଷ ହେଲା ଏକ କମିଟି ଗଠନ କରାଯାଇଥିଲେ ମଧ୍ୟ କୌଣସି ସୁଫଳ ମିଳି ନ ଥିବା କଥା ଦର୍ଶାଇଥିଲେ । କେନ୍ଦ୍ରମନ୍ତ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋଙ୍କୁ ସେ ଘୋର ସମାଲୋଚନା କରି କହିଲେ ଯେ ଚେହେରାରେ ସେ କଳାପୂର୍ଣ୍ଣ ହୋଇଥିଲେ ମଧ୍ୟ ଓଡ଼ିଶୀ ନୃତ୍ୟର ଧାର ଧାରନ୍ତି ନାହିଁ । ସେ ନୃତ୍ୟ ସମ୍ବନ୍ଧରେ କିଛି କେବେ ଅଧ୍ୟୟନ କରି ନାହାନ୍ତି । ସେ ସମ୍ବନ୍ଧରେ ତାଙ୍କର କୌଣସି ଜ୍ଞାନ ମଧ୍ୟ ନାହିଁ । ଶ୍ରୀ ନୃସିଂହଚରଣ ସାମନ୍ତସିଂହାର ଏକାଡେମୀର ଏତାଦୃଶ କାର୍ଯ୍ୟ ଦୁର୍ଭାଗ୍ୟଜନକ ବୋଲି ମତ ଦେଇଥିଲେ । ଶେଷରେ ଓଡ଼ିଶୀ ନୃତ୍ୟ ଶାସ୍ତ୍ରୀୟ ନୃତ୍ୟରୂପେ ଗୃହୀତ ହେଲା । କାଳୀବାବୁଙ୍କ ଆନନ୍ଦର ସୀମା ରହିଲା ନାହିଁ । ସେ କହିଥିଲେ – 'କଳାହାଣ୍ଡିର ମହରାଜା', ଶ୍ରୀ ଚିନ୍ତାମଣି ପାଣିଗ୍ରାହୀ ଓ ଶ୍ରଦ୍ଧାକର ସୂପକାର ପ୍ରଭୃତି ଓଡ଼ିଶୀ ନୃତ୍ୟକୁ ଯଥାଯୋଗ୍ୟ ସମ୍ମାନ ଲାଭ ଲାଗି ଯେଉଁ ଉଦ୍ୟମ ଓ ପ୍ରଚେଷ୍ଟା କରିଛନ୍ତି, ତାହା ଓଡ଼ିଆ ଜାତି ପାସୋରି ପାରିବ ନାହିଁ ।

### ଉତ୍କଳ ନାଟ୍ୟ ସଂଘ

ଦିଲ୍ଲୀର 'ଥିଏଟର ସେଣ୍ଟର ଇଣ୍ଡିଆ'ର ସଭାନେତ୍ରୀ ଥିଲେ କମଳା ଦେବୀ ଚଟ୍ଟୋପାଧ୍ୟାୟ । ସେ ଓଡ଼ିଶାରେ ଏହାର ଗୋଟିଏ ଶାଖା ଉନ୍ମୋଚନ କରିବାପାଇଁ କଟକ ଆସିଲେ । ୧୯୫୪ ମସିହା ଡିସେମ୍ବର ମାସ ୩ ତାରିଖରେ କାଳୀବାବୁଙ୍କ ବସାରେ କମିଟି ବସିଲା । ଆଲୋଚନା ପରେ 'ଥିଏଟର ସେଣ୍ଟର ଇଣ୍ଡିଆ'ର ଗୋଟାଏ ଶାଖା ଓଡ଼ିଶାରେ ଖୋଲିବାପାଇଁ ସ୍ଥିର ହେଲା । କାଳୀବାବୁ 'ଥିଏଟର ସେଣ୍ଟର' ନାମ ବଦଳାଇ 'ଉତ୍କଳ ନାଟ୍ୟସଂଘ' ନାମ ରଖିବାକୁ ପରାମର୍ଶ ଦେଲେ । କାଳୀଚରଣଙ୍କ ପ୍ରସ୍ତାବ ଗୃହୀତ ହେଲା । ଗୋଟିଏ ଶାଖା ଓଡ଼ିଶାରେ ଗଢ଼ାଗଲା । କାଳୀବାବୁ ତାହାର ସଭାପତି ହେଲେ । ଶ୍ରୀ ବସନ୍ତ କୁମାର ମହାନ୍ତି ଏହାର ସମ୍ପାଦକ ଭାବେ କାର୍ଯ୍ୟ କଲେ । ଶ୍ରୀ ଧୀରେନ୍ଦ୍ର ବିଶ୍ୱାଳ ପ୍ରଭୃତି କେତେଜଣ ଏହାର ସଭ୍ୟ ରହିଲେ । ଓଡ଼ିଶାରେ ଆଉ କେତେକ ସ୍ଥାନରେ ମଧ୍ୟ ଶାଖାମାନ ଖୋଲାଗଲା ।

ଦିଲ୍ଲୀରେ 'ଥିଏଟର ସେଣ୍ଟର ଇଣ୍ଡିଆ'ର ଗୋଟିଏ ସମ୍ମିଳନୀ ହେଲା । କାଳୀବାବୁ ଓ ବସନ୍ତବାବୁ ଦିଲ୍ଲୀ ଗଲେ ଓ ଆଡ୍‌ଭୋକେଟ ମଧୁ ମହାନ୍ତିଙ୍କ ଘରେ ରହିଲେ । ୧୮ ତାରିଖରେ 'ଥିଏଟର ସେଣ୍ଟର ଇଣ୍ଡିଆ'ର ସଭା ହେଲା । କାଳୀବାବୁ ଏହାର ଭାଇସ୍ ପ୍ରେସିଡେଣ୍ଟ ଭାବେ ମନୋନୀତ ହେଲେ । ତାଙ୍କ ପ୍ରସ୍ତାବ ଅନୁସାରେ 'ଥିଏଟର ସେଣ୍ଟର ଇଣ୍ଡିଆ' ନାମ 'ଭାରତୀୟ ନାଟ୍ୟ ସଂଘ' ରଖାଗଲା ।

୧୯୫୯ ମସିହା ଫେବୃଆରୀ ମାସ ୧୨ ତାରିଖରେ ଭାରତୀୟ ନାଟ୍ୟ ସଂଘ ପକ୍ଷରୁ ଶ୍ରୀ ଇନ୍ଦର ରାଜଦାନ ଓଡ଼ିଶାର ପୁରୁଣା ପୋଷାକପତ୍ର ଓ ଯନ୍ତ୍ରପାତି ସମ୍ବନ୍ଧରେ ତଥ୍ୟ ସଂଗ୍ରହ କରିବାକୁ କଟକ ଆସିଲେ । କାଳୀବାବୁ ସେମାନଙ୍କୁ ଓଡ଼ିଶାର କେତେକ ସ୍ଥାନ ବୁଲାଇଲେ । ସେ ରାଜଦାନଙ୍କୁ ବାଲୁଗାଁ ବାଟେ ବ୍ରହ୍ମପୁର, ନରେନ୍ଦ୍ରପୁର, ଆସିକା, ଧରାକୋଟ, ହିଞ୍ଜଳିକାଟୁ କବିସୂର୍ଯ୍ୟନଗର, ରମ୍ଭା ପ୍ରଭୃତି ସ୍ଥାନ ବୁଲାଇ ସେଠାର କଳାକାର ଓ କଳାନୁଷ୍ଠାନମାନ ଦେଖାଇଲେ । ସେମାନେ ବିଭିନ୍ନ ପୋଷାକପତ୍ର ଓ ଯନ୍ତ୍ରାଦିର ତଥ୍ୟ ସଂଗ୍ରହ କଲେ । ହିଞ୍ଜଳିକାଟୁଠାରେ ରାଧାପ୍ରେମ ଲୀଳା ଦେଖିବା ବ୍ୟବସ୍ଥା କାଳୀବାବୁ କରିଥିଲେ । ଆସିକାରେ 'ପ୍ରହ୍ଲାଦ' ନାଟକ ପ୍ରଦର୍ଶନର ବ୍ୟବସ୍ଥା ମଧ୍ୟ ହୋଇଥିଲା । କବିସୂର୍ଯ୍ୟନଗରରେ ଓଡ଼ିଶୀ ଯନ୍ତ୍ର ଓ ନୃତ୍ୟର ତାତ୍ପର୍ଯ୍ୟ ଅଧକ୍ଷ ତାରିଣୀ ପାତ୍ର ବୁଝାଇଥିଲେ । ରମ୍ଭାରେ ସେମାନେ ନୂତନ ଯନ୍ତ୍ରବାଦନ ଦେଖି ଅଭିଭୂତ ହୋଇପଡ଼ିଥିଲେ । ସେମାନେ ଭାରତରେ କେଉଁଠି ସେପରି ଦେଖି ନ ଥିବା ପ୍ରକାଶ କରିଥିଲେ । କାଳୀବାବୁ ମଧ୍ୟ ଇଂରାଜୀରେ ସେଗୁଡ଼ିକ ଉପରେ ଏକ ପ୍ରବନ୍ଧ ରଚନା କରି ଶ୍ରୀମତୀ ଚଟ୍ଟୋପାଧ୍ୟାୟଙ୍କ ପାଖକୁ ପଠାଇଥିଲେ ।

ସେହି ବର୍ଷ ଜୁନ୍ ମାସରେ ଉତ୍କଳ ନାଟ୍ୟସଂଘ ପକ୍ଷରୁ ଗୋଟିଏ ଏକାଙ୍କିକା ପ୍ରତିଯୋଗିତା କରାଗଲା । ଚାରି ଦିନ ବ୍ୟାପୀ ନୃତ୍ୟ, ଏକାଙ୍କିକା ଓ ବକ୍ତୃତା ଖୁବ୍ ପ୍ରଶଂସିତ ହେଲା । କାଳୀବାବୁ ଓଡ଼ିଶାର ପ୍ରଧାନମନ୍ତ୍ରୀ ଡଃ ମହତାବଙ୍କୁ ଭେଟି ଉତ୍କଳ ନାଟ୍ୟସଂଘ ପକ୍ଷରୁ ଭୁବନେଶ୍ୱରରେ ଗୋଟିଏ ଭେରାଇଟି ଶୋ'ର ବ୍ୟବସ୍ଥା କରିବାକୁ ଅନୁରୋଧ କଲେ । ଡଃ ମହତାବ ତାଙ୍କ ପ୍ରସ୍ତାବ କାର୍ଯ୍ୟକାରୀ କରାଇଲେ । ଭାରତୀୟ ନାଟ୍ୟସଂଘ ପକ୍ଷରୁ ଚିଠି ପାଇ ଦିଲ୍ଲୀରେ ବ୍ୟାଲେ ନୃତ୍ୟପାଇଁ କାଳୀବାବୁ ଭାଣିଜୀ ସମ୍ପର୍କୀୟା ଟୁଷୀ ପ୍ରଭୃତିଙ୍କୁ ଧରି ଦିଲ୍ଲୀ ଗଲେ । ସେଠାରେ ସେମାନେ ବ୍ୟାଲେରେ ଭାଗ ନେଲେ ।

ଉତ୍କଳ ନାଟ୍ୟସଂଘର ଖ୍ୟାତିରେ କେତେକ ଲୋକ ଈର୍ଷାପର ହୋଇ ତାଙ୍କ ତତ୍ତ୍ୱାବଧାନରୁ ନାଟ୍ୟସଂଘକୁ ହସ୍ତାନ୍ତରିତ କରିବାପାଇଁ ଷଡ଼୍‌ଯନ୍ତ୍ର ଚଳାଇଲେ । କାଳୀବାବୁ ମଧ୍ୟ ଶ୍ରମସାଧନ ଓ ବ୍ୟୟରୁ ଦୂରେଇ ଯିବାକୁ ସ୍ଥିର କରି ଉତ୍କଳ ନାଟ୍ୟ ସଂଘସହ ସବୁ ସମ୍ପର୍କ ତୁଟାଇଦେଲେ ।

କାଳୀବାବୁ ତାଙ୍କ ପ୍ରତିକ୍ରିୟା ଉଲ୍ଲେଖ କରିଛନ୍ତି –

"ମୁଁ ଏ ଅନୁଷ୍ଠାନ ଆରମ୍ଭ କରିଥିଲି – ଶ୍ରୀମତୀ କମଳାଦେବୀଙ୍କ ଅନୁରୋଧରେ, ନାଆଁ ରଖିଥିଲି ଉତ୍କଳ ନାଟ୍ୟ ସଂଘ । ରୋପିଲା ଗଛ ମଉଳି ଯିବାର ଦେଖିଲେ ବାଧେ । ମୋତେ ବି କଷ୍ଟ ହେଲା ।"

## ଓଡ଼ିଶୀ ସଙ୍ଗୀତ

ଓଡ଼ିଶୀ ସଙ୍ଗୀତ (ଗୀତ–ବାଦ୍ୟ)ର ମଧ୍ୟ ସ୍ୱତନ୍ତ୍ରତା ଅଛି ବୋଲି କାଳୀବାବୁ ମତପୋଷଣ କରୁଥିଲେ । ଏ ସମ୍ବନ୍ଧରେ କେତେ ଲେଖା ପ୍ରକାଶିତ ହେବାରୁ ନୀଳମାଧବ ପାଣିଗ୍ରାହୀ ନାମକ ଜଣେ ବ୍ୟକ୍ତି ଏହାର ପ୍ରତିବାଦ କରି ଲେଖା ପ୍ରକାଶ କଲେ । ବହୁ ବନ୍ଧୁଙ୍କ ଅନୁରୋଧରେ ୧୯୬୦ ମସିହା ଜୁଲାଇ ମାସ ୨୮ ତାରିଖରେ ସେ ଲେଖାର ଏକ ପ୍ରତିବାଦ କାଳୀବାବୁ 'ଝଙ୍କାର'ରେ ପ୍ରକାଶ କଲେ ।

୧୯୬୦ ମସିହାରେ 'ପିପୁଲସ୍ ୱେଲଫେୟାର' କମିଟି ତରଫରୁ ବ୍ରହ୍ମପୁରରେ ଆୟୋଜିତ ଏକ ସଭାରେ କାଳୀବାବୁ ପ୍ରଧାନ ବକ୍ତା ଭାବେ ଯୋଗ ଦେଲେ । ସେଠାରେ ଅନନ୍ତ ମିଶ୍ର ଓ ସତ୍ୟନାରାୟଣ ରାଜଗୁରୁ ପ୍ରଭୃତି ଓଡ଼ିଶୀ ସଙ୍ଗୀତର ବିଶେଷତ୍ୱ ପ୍ରତିଷ୍ଠା ନିମନ୍ତେ କାଳୀବାବୁ ଦେଇଥିବା ମତର ବିରୋଧ କଲେ । କିନ୍ତୁ ସେହି ସଭାରେ ଉପସ୍ଥିତ ମଣିବର୍ଦ୍ଧନ କାଳୀବାବୁଙ୍କ ମତକୁ ସମର୍ଥନ କଲେ । ପୁଣି ୧୯୬୦ମସିହା ସେପ୍ଟେମ୍ବର ମାସ ୧୦ ତାରିଖରେ ଭୁବନେଶ୍ୱର ସଙ୍ଗୀତ ନାଟକ ଏକାଡେମୀର ଏକ ବୈଠକରେ ସର୍ବଶ୍ରୀ ଅନନ୍ତ ପାତ୍ର, ଅନନ୍ତ ମିଶ୍ର ପ୍ରଭୃତି କାଳୀବାବୁଙ୍କ ମତର ଘୋର ବିରୋଧ କଲେ । ଏପରିକି ତାଙ୍କର କୁତ୍ସାରଟନା କରିବାକୁ ପଛାଇଲେ ନାହିଁ । 'ଓଡ଼ିଶୀ ସଙ୍ଗୀତ' ନାମର ବିଲୋପପାଇଁ ତାହା କର୍ଣ୍ଣାଟକୀ ସଙ୍ଗୀତ ଧାରାରେ ପରିଚାଳିତ ବୋଲି ପ୍ରଚାର କରିବାକୁ କେତେକ ସଙ୍ଗୀତଜ୍ଞଙ୍କ ପ୍ରଚେଷ୍ଟା ଏବେବି ଲାଗିରହିଛି ବୋଲି କାଳୀବାବୁ ତାଙ୍କ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି । ସେ ଏଥିପାଇଁ ଖେଦ ମଧ୍ୟ ପ୍ରକାଶ କରି କହିଛନ୍ତି –

"ଆମରି ଲୋକଙ୍କଦ୍ୱାରା ଆମରି ସଙ୍ଗୀତ ଆମରି ଘରେ ଅପମାନିତ ହେଉଛି ।"

## ଚିତ୍ରରେ ଅଭିନୟ

କ୍ୟାପିଟେଲ୍ ସିନେମା ସ୍ୱତ୍ୱାଧିକାରୀ ନରେନ୍ ମିତ୍ରଙ୍କ ସହିତ କାଳୀବାବୁଙ୍କ ବହୁ ଦିନୁ ବନ୍ଧୁତା ଥିଲା । ସେ ଏକ ଚଳଚ୍ଚିତ୍ର ନିର୍ମାଣପାଇଁ କାଳୀବାବୁଙ୍କୁ ପ୍ରସ୍ତାବ ଦେଲେ । କଥାବସ୍ତୁ ମଧ୍ୟ ତାଙ୍କୁ ଦେଖାଇଲେ । ସେ କାଳୀବାବୁଙ୍କ ସହଯୋଗ ଲୋଡ଼ିଲେ । କାଳୀବାବୁ ମଧ୍ୟ ରାଜି ହେଲେ । ଉଭୟେ ଚଣ୍ଡୀମନ୍ଦିରକୁ ଯାଇ

ପୂଜାର୍ଚ୍ଚନା କଲେ । 'ଚଣ୍ଡୀ ପ୍ରଡକ୍‌ସନ୍' ନାମ ମଧ୍ୟ ସ୍ଥିର ହେଲା । 'ନାରୀ' ଚିତ୍ର ଗ୍ରହଣପାଇଁ ଉଦ୍ୟମ ହେଲା । ଉଭୟେ ସୁଟିଂପାଇଁ କଲିକତା ଗଲେ । ନରେନ୍‌ବାବୁଙ୍କ ବାଧ୍ୟବାଧକତାରେ କାଳୀବାବୁ କୀର୍ତ୍ତନ ଗୀତଟିଏ ପ୍ଲେ ବ୍ୟାକ୍‌ରେ ଗାଇଲେ । ଚିତ୍ରରେ ମଧ୍ୟ 'ଉଦାସୀ ବାବା' ଚରିତ୍ରରେ ଅଭିନୟ କଲେ । ସେତେବେଳକୁ ତାଙ୍କୁ ୬୩ ବର୍ଷ ହୋଇଥାଏ । 'ନାରୀ' ଚିତ୍ର ମଧ୍ୟ ରାଷ୍ଟ୍ରପତି ପୁରସ୍କାର ପାଇଲା । ୧୯୬୪ ମସିହାରେ କାଳୀବାବୁ ଦିଲ୍ଲୀ ବିଜ୍ଞାନ ଭବନରେ ରାଷ୍ଟ୍ରପତିଙ୍କଠାରୁ ଉପାୟନ ଗ୍ରହଣ କଲେ ।

## ଗୀତଗୋବିନ୍ଦ ସମାରୋହ

୧୯୬୭ ମସିହା ମାର୍ଚ୍ଚ ମାସ ୧୮, ୧୯ ଓ ୨୦ତାରିଖରେ ଦିଲ୍ଲୀ ସଙ୍ଗୀତ ନାଟକ ଏକାଡେମୀର ବୈଠକ ବସିଲା । ୧୮ ତାରିଖରୁ କାର୍ଯ୍ୟକ୍ରମ ଆରମ୍ଭ ହେଲା । ଆଲୋଚ୍ୟ ବିଷୟ ଥିଲା 'ଭାରତୀୟ ସଙ୍ଗୀତକୁ ଗୀତଗୋବିନ୍ଦର ଦାନ ଓ ଏହାର ସାଙ୍ଗୀତିକ ଗଠନ' । କୁମାରୀ କୁଙ୍କୁମ ଦାସ 'ଗୀତଗୋବିନ୍ଦ'ର 'ଲଳିତ ଲବଙ୍ଗଲତା' ଗୀତକୁ ଓଡ଼ିଶୀ ଶୈଳୀରେ ନୃତ୍ୟରେ ପରିବେଷଣ କଲେ । ଦ୍ୱିତୀୟ ଦିନ କାଳୀବାବୁଙ୍କ ସଭାପତିତ୍ୱରେ ବୈଠକ ବସିଲା । ଆଲୋଚ୍ୟ ବିଷୟ ଥିଲା 'ଭାରତୀୟ ନୃତ୍ୟରେ ଗୀତଗୋବିନ୍ଦର ସ୍ଥାନ' । କାଳୀବାବୁ ଇଂରାଜୀରେ ଏକ ପ୍ରବନ୍ଧ 'Gita Govinda in Odishi Dance' ପାଠ କଲେ । ଗୀତଗୋବିନ୍ଦ ପୁସ୍ତକ ତଥା କୁଙ୍କୁମ ଦାସଙ୍କ ଓଡ଼ିଶୀ ନୃତ୍ୟକୁ ଦର୍ଶକ ମଣ୍ଡଳୀ ଉଚ୍ଛ୍ୱସିତ ପ୍ରଶଂସା କରିଥିଲେ ।

## ସମ୍ମାନ

୧୯୬୯ ମସିହା ଫେବୃୟାରୀ ମାସ ୨୨ ତାରିଖରେ କାଳୀବାବୁଙ୍କୁ ସଙ୍ଗୀତ, ନୃତ୍ୟ ଓ ନାଟକର ରତ୍ନସଦସ୍ୟ (Fellow) ଭାବେ ମନୋନୀତ କରାଗଲା । ତାଙ୍କୁ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କ ସ୍ୱାକ୍ଷର ଥିବା ତାମ୍ରଫଳକ ପ୍ରଦତ୍ତ ହେଲା । ଏହି ତାମ୍ରଫଳକଟି ଭାରତର ସେତେବେଳର ଉପରାଷ୍ଟ୍ରପତି ଡଃ ଭି.ଭି.ଗିରି ପ୍ରଦାନ କରିଥିଲେ ।

ସେହି ମାସ ୨୬ ତାରିଖରେ ରାଷ୍ଟ୍ରପତି ଭବନରେ କାଳୀବାବୁଙ୍କୁ ସମ୍ବର୍ଦ୍ଧିତ କରାଗଲା ।

## ସମ୍ମାନ ପ୍ରତ୍ୟାଖ୍ୟାନ

କବିଚନ୍ଦ୍ର କାଳୀଚରଣଙ୍କୁ ୧୯୭୪ ମସିହା ସ୍ୱାଧୀନତା ଦିବସରେ ପଦ୍ମଶ୍ରୀ ଉପାଧି ଦିଆଯିବାକୁ ଜଣାଇ ଦିଆଗଲା । କିନ୍ତୁ କବିଚନ୍ଦ୍ର ତାହାକୁ ପ୍ରତ୍ୟାଖ୍ୟାନ କରି ଭାରତ ସରକାରଙ୍କୁ ଜଣାଇଲେ । ପତ୍ରରେ ସେ ଲେଖିଥିଲେ ଯେ ୧୯୨୬ ମସିହାରେ ପୁରୀର ଗଜପତି ମହାରାଜା ତାଙ୍କୁ କବିଚନ୍ଦ୍ର, ୧୯୩୮ରେ ଉତ୍କଳ ସାହିତ୍ୟ ସମାଜ ତାଙ୍କୁ ନାଟ୍ୟାଚାର୍ଯ୍ୟ ଓ ୧୯୬୮ ମସିହାରେ କେନ୍ଦ୍ର ସଙ୍ଗୀତ ନାଟକ ଏକାଡେମୀଦ୍ୱାରା ରତ୍ନସଦସ୍ୟ ଉପାଧିରେ ଭୂଷିତ ହୋଇ ଦେଶବାସୀଙ୍କଠାରୁ

ଆଦର ପାଇଆସୁଛନ୍ତି । ଏବେ ୭୫ ବର୍ଷ ବୟସବେଳେ ଭାରତ ସରକାର ତାଙ୍କୁ ପଦ୍ମଶ୍ରୀ ଉପାଧିରେ ଭୂଷିତ କରିବା ଅନାବଶ୍ୟକ । ସେ ଏହାକୁ ଗ୍ରହଣ କରିବାକୁ ଅସମର୍ଥ ବୋଲି ଜଣାଇ କ୍ଷମା ଭିକ୍ଷା କରିଥିଲେ ।

ଏହାର ଦୁଇ ବର୍ଷ ପୂର୍ବେ ସମ୍ବଲପୁର ବିଶ୍ୱବିଦ୍ୟାଳୟ କାଳୀବାବୁଙ୍କୁ ଡକ୍ଟରେଟ୍ ଉପାଧିରେ ସମ୍ମାନିତ କରିଥିଲା । କାଳୀବାବୁ ତାହାକୁ ଆନନ୍ଦରେ ଗ୍ରହଣ କରିଥିଲେ । ସେ ଆତ୍ମଜୀବନୀରେ ଏ ସଂକ୍ରାନ୍ତରେ ଲେଖିଛନ୍ତି –

''....ମୋର ବୟସ, ପରିସ୍ଥିତି, ପରିବେଶ ଇତ୍ୟାଦି ବିଚାରରେ ପଦ୍ମଶ୍ରୀ ଉପାଧିକୁ ଦୂରଫିଙ୍ଗା କରିଛି ଆଉ ମୋ ଭାଇ ଘରର ଆଦର ପରଷା ଶାଗ ପଖାଳକୁ ଆଦରି ନେଇଛି ।

**ଜୟନ୍ତୀ ପାଳନ**

ନାରୀନେତ୍ରୀ ସରଳା ଦେବୀ ପ୍ରଥମେ ୧୯୫୬ ମସିହା ଜାନୁଆରୀ ମାସ ୧୧ ତାରିଖରେ କାଳୀବାବୁଙ୍କ ଜୟନ୍ତୀ ସଭାର ଆୟୋଜନ କରିଥିଲେ । ସେଥିରେ ସ୍ୱର୍ଗତ ଚିନ୍ତାମଣି ଆଚାର୍ଯ୍ୟ ସଭାପତିତ୍ୱ କରିଥିଲେ । ଡଃ ହରେକୃଷ୍ଣ ମହତାବ ସେତେବେଳକୁ ବମ୍ବେର ରାଜ୍ୟପାଳ ଥିଲେ । ସେ ସରଳାଦେବୀଙ୍କ ପାଖକୁ ଶୁଭେଚ୍ଛା ସହ ଗୋଟିଏ ରୁପା ପାନଡବା ପଠାଇଥିଲେ । ଜୟନ୍ତୀ ଉତ୍ସବରେ ପାନ ଡବାଟି ତାଙ୍କୁ ଉପହାର ଦିଆଯାଇଥିଲା । ଏହାପରେ ୧୯୬୮-୬୯ ମସିହାରୁ ଡଃ ମହତାବଙ୍କ ପୌରୋହିତ୍ୟରେ ସାମ୍ବାଦିକ ନଗେନ ବେଉରିଆ, ରାମହରି ମିଶ୍ର, ବସନ୍ତ ଦାସ ପ୍ରଭୃତି ତାଙ୍କ ଜନ୍ମ ଜୟନ୍ତୀ କଟକରେ ପାଳନ କରିଆସୁଥିଲେ । ଏହାଛଡ଼ା କଟକ ବାହାରେ ମଧ୍ୟ ବିଭିନ୍ନ ସ୍ଥାନରେ ଏହି ଜୟନ୍ତୀ ପାଳିତ ହେଉଥିଲା ।

**ଅନ୍ୟାନ୍ୟ ରଚନା**

ନାଟକ, ନାଟିକା, ନୃତ୍ୟନାଟିକା ପ୍ରଭୃତି ବ୍ୟତୀତ କାଳୀବାବୁ କେତେକ ଏକାଙ୍କିକା ରଚନା କରିଛନ୍ତି । ସେଗୁଡ଼ିକ ହେଲା 'ସପ୍ତପର୍ଣ୍ଣୀ', (ସାତ ଗୋଟି ଏକାଙ୍କିକାର ସମାବେଶ) 'ଜୀବିତ ତର୍ପଣ', 'ଯୁଗପୁରୁଷ', ଯୁଗ ଯୋଗୀ' ଓ 'ଦୋଷ କେଉଁଠି' । ତାଙ୍କ ରଚିତ ଗଳ୍ପ ସଂକଳନ ହେଉଛି 'ବନଫୁଲ' ।

୧୯୭୭ ମସିହାରେ କବିଚନ୍ଦ୍ର ତାଙ୍କ ଆତ୍ମଜୀବନୀ 'କୁମ୍ଭାରଚକ' ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀଦ୍ୱାରା ପୁରସ୍କୃତ ହେଲେ ।

୧୯୭୮ ମସିହାରେ କବିଚନ୍ଦ୍ରଙ୍କର ଦେହାବସାନ ହେଲା ।

**ମୂଲ୍ୟାୟନ**

କବିଚନ୍ଦ୍ରଙ୍କ ପ୍ରତିଭାର ମୂଲ୍ୟାୟନ କରିବାକୁ ଯାଇ ଆଉ ଜଣେ ପ୍ରଖ୍ୟାତ ନାଟ୍ୟକାର କାର୍ତ୍ତିକ ଘୋଷ କହିଛନ୍ତି ଯେ କାଳୀଚରଣଙ୍କର ରଚନା ଉପରେ ତାଙ୍କର

ସୁଲଳିତ ଭାଷାକୁହିଁ ପ୍ରଶଂସା କରିବାକୁ ହୁଏ । ଜାତୀୟତାବୋଧ ତାଙ୍କର ବହୁ ନାଟକରେ ପରିସ୍ଫୁଟ । କିନ୍ତୁ ଶସ୍ତା ପ୍ରେମ ଦୃଶ୍ୟ ସେ ପରିହାର କରିପାରି ନାହାନ୍ତି । କହିବାକୁ ଗଲେ ବହୁ ନାଟକକୁ ଆଦିରସାସିକ୍ତ କରିଛନ୍ତି । ଆଦର୍ଶକୁ ସେ ସମ୍ମାନ ଦେଇଛନ୍ତି । ସାମାଜିକ ନାଟକ ରଚନାରେ ତାଙ୍କର ମୌଳିକତା ରହିଛି; ମାତ୍ର ଐତିହାସିକ ଓ ପୌରାଣିକ ନାଟକ ରଚନାର ଧାରା ଉନ୍ନତ ସ୍ତରକୁ ଉଠି ପାରିନି । ମାତ୍ର ଏହା କେତେଦୂର ସତ୍ୟ ତାହାହିଁ ବିଚାର୍ଯ୍ୟ । 'ଚକ୍ରୀ' ପୌରାଣିକ ନାଟକ ପରେ କାଳୀଚରଣ ଲେଖିଲେ 'ଦଶଭୁଜା' । ଏଥିରେ ଦୃଶ୍ୟ ଯୋଜନାର କଳାତ୍ମକତା ଦେଇ ନିଜର ସ୍ୱକୀୟତା ପ୍ରତିଷ୍ଠା କରିଛନ୍ତି । ପୌରାଣିକ ନାଟକ ରଚନାର ଧାରା ଏକଦା କବିଚନ୍ଦ୍ରଙ୍କଦ୍ୱାରା ପ୍ରସ୍ତୁତ ହୋଇଥିଲା, ତାହା ଏପର୍ଯ୍ୟନ୍ତ ମଧ୍ୟ କୌଣସି ନାଟ୍ୟକାର ଅତିକ୍ରମ କରିପାରି ନାହାନ୍ତି । ସେହିପରି 'ଅଭିଯାନ' ଐତିହାସିକ ନାଟକ ରଚନା ଦିଗରେ ସେ ନିଜର ସ୍ୱକୀୟତା ଦେଖାଇଛନ୍ତି । ନାଟକକୁ ଇତିହାସସମ୍ମତ କରିବାପାଇଁ 'ପ୍ରାଚୀନ ଉତ୍କଳ', 'ନନ୍ଦପୁର ଇତିହାସ' ପ୍ରଭୃତି ଅଧ୍ୟୟନ କରିଛନ୍ତି । ଆଉ ସାମାଜିକ ନାଟକରେ କବିଚନ୍ଦ୍ର ଆଣିଛନ୍ତି ଏକ ସୁସ୍ପଷ୍ଟ ଧାରା । ଆଧୁନିକ ଓଡ଼ିଆ ନାଟକର ଅସ୍ପଷ୍ଟ ଧାରାକୁ ସେ ସ୍ପଷ୍ଟ କରିଛନ୍ତି । ନାଟ୍ୟଭାଷା ଯେଉଁ ଅନୁଭୂତିବିହୀନ ଥିଲା ଆଉ ଥିଲା କ୍ଲିଷ୍ଟ କଳ୍ପନାର ଲୀଳାଭୂମି, ସେ ତାକୁ ଜୀବନ ସହିତ ପାଦ ମିଳାଇ ଚାଲିବା ଶିଖାଇଛନ୍ତି । ଯେଉଁ ମଞ୍ଚ କେବଳ ପ୍ରଚାରଧର୍ମୀ ଥିଲା, ସେ ତାକୁ କଳାତ୍ମକତାରେ ଗୌରବମଣ୍ଡିତ କରିଛନ୍ତି ।

ଶେଷରେ ଏତିକି କୁହାଯାଇପାରେ ଯେ କବିଚନ୍ଦ୍ରଙ୍କର ଥିଲା ନାଟକପାଇଁ ଏକ ସମର୍ପିତ ଜୀବନ । ତାଙ୍କର ଅତନ୍ଦ୍ର ଉଦ୍ୟମ ଯୋଗୁଁହିଁ ଶିଶୁ ଓଡ଼ିଆ ନାଟକ ବଳିଷ୍ଠ ଓ ଦୀପ୍ତିବନ୍ତ ହୋଇଛି । ନାଟକକୁ ସର୍ବାଙ୍ଗ ସୁନ୍ଦର କରି ଉପସ୍ଥାପିତ କରିବାପାଇଁ ଏକ ସୃଜନଶୀଳ ମଣିଷର ବିପୁଳ ଅବଦାନ ବିସ୍ମୃତ ହୋଇ ପାରେନା । ତେଣୁ ଆଲୋଚକ ହେମନ୍ତ ଦାସଙ୍କ ମତରେ –

''କବିଚନ୍ଦ୍ର ଥିଲେ, ଅଛନ୍ତି ଓ ରହିବେ ।''

❑❑❑



## କବିମଣ୍ଡଳ
# କୃଷ୍ଣପ୍ରସାଦ ବସୁ
[୧୮୯୪-୧୯୬୮]

କୃଷ୍ଣପ୍ରସାଦ ବସୁ ଥିଲେ ଅନନ୍ୟ ସାରସ୍ୱତ ପ୍ରତିଭାର ଅଧିକାରୀ । ଓଡ଼ିଶା ଓ ଓଡ଼ିଶା ବାହାରେ ସେ ସାଧାରଣତଃ କବି ଭାବରେ ପରିଚିତ ଥିଲେ ମଧ୍ୟ, ତାଙ୍କ ପ୍ରତିଭା ବା ସାଧନା କେବଳ କାବ୍ୟକବିତା ମଧ୍ୟରେ ସୀମିତ ନ ଥିଲା । ସେ ଥିଲେ ବହୁମୁଖୀ ପ୍ରତିଭାର ଅଧିକାରୀ । ସେ ଥିଲେ ଏକାଧାରରେ କବି, ନାଟ୍ୟକାର, ସଙ୍ଗୀତଜ୍ଞ, ଗାୟକ, ଅଭିନେତା, ଯନ୍ତ୍ରଶିଳ୍ପୀ, ଯାତ୍ରା ଓ ଅପେରାଦିର ସଙ୍ଗଠକ, ପରିଚାଳକ, ନିର୍ଦ୍ଦେଶକ ଓ ଗୁରୁ । ଜନମନ ହରଣ କରିବାର ଅପୂର୍ବ କଳା ତାଙ୍କୁ ବେଶ୍ ଜଣାଥିଲା । ତାଙ୍କର ଅଗଣିତ ଗୀତ, ନାଟକ ଓ ଗୀତାଭିନୟ ପୁରପଲ୍ଲୀର ଗାୟକମାନଙ୍କର ପରମ ସହାୟକ ହେଉଥିଲା । ପ୍ରାଚୀନ କାବ୍ୟ ଓ ପୁରାଣମାନଙ୍କରୁ ଶିକ୍ଷଣୀୟ ତଥା ଆଦର୍ଶପୂର୍ଣ୍ଣ ଉପାଖ୍ୟାନମାନଙ୍କର ଅବଲମ୍ବନରେ ସେ ଯେଉଁ ନାଟକମାନ ରଚନା କରିଅଛନ୍ତି, ତାହା ନାଟ୍ୟ ଅନୁରାଗୀମାନଙ୍କଠାରୁ ଆରମ୍ଭ କରି ସାଧାରଣ ପାଠକ ପର୍ଯ୍ୟନ୍ତ ସମସ୍ତଙ୍କର ଉପଭୋଗ୍ୟ ସାହିତ୍ୟ ସମ୍ପଦରେ ପରିଣତ ହୋଇଅଛି । ଓଡ଼ିଶାର କଳା-ସଙ୍ଗୀତ-ସାହିତ୍ୟକୁ ତାଙ୍କର ଦାନ ଯେପରି ଗୁଣ ଓ ପରିମାଣ ଦୃଷ୍ଟିରୁ ବିପୁଳ, ସେହିପରି ଅତୁଳନୀୟ ମଧ୍ୟ ହୋଇ ରହିଅଛି ।

କୃଷ୍ଣପ୍ରସାଦ ଯାଜପୁର ସହରର କୁଆଁସରପୁର ଗ୍ରାମରେ ୧୮୯୪ ମସିହା ଅକ୍ଟୋବର ମାସ ୨୧ ତାରିଖରେ ଏକ ସମ୍ଭ୍ରାନ୍ତ ବଙ୍ଗୀୟ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଗୋବିନ୍ଦ ପ୍ରସାଦ ଓ ମାତାଙ୍କ ନାମ ବିଷ୍ଣୁପ୍ରିୟା । କୃଷ୍ଣପ୍ରସାଦଙ୍କ ପୂର୍ବପୁରୁଷ ପଶ୍ଚିମ ବଙ୍ଗଳାର ବର୍ଦ୍ଧମାନ ଜିଲ୍ଲା ଅନ୍ତର୍ଗତ ମାହିନଗରର ପ୍ରସିଦ୍ଧ ଦକ୍ଷିଣ ରାଢ଼ୀ ବଂଶର ଲୋକ ଥିଲେ । ନସୁଆ ଜିଲ୍ଲାର କୁଳିନ ଗ୍ରାମ ଥିଲା ତାଙ୍କ ଆଦି ବାସସ୍ଥାନ । କୁଳିନ ଗ୍ରାମର ବସୁ ପରିବାରର ଲୋକେ ଜଗନ୍ନାଥଙ୍କପାଇଁ ଦଉଡ଼ି ଆଣୁଥିଲେ । ସେମାନେ ଯାଜପୁର ବାଟ ଦେଇ ପୁରୀ ଯାଉଥିଲେ । ଯାଜପୁରର ସ୍ୱାସ୍ଥ୍ୟକର ପରିବେଶପାଇଁ ବସୁ ପରିବାରର କେହି ପୂର୍ବପୁରୁଷ ଏଠାରେ ବସତି ସ୍ଥାପନ କରିଥିବାର ଜଣାଯାଏ ।

କବିଙ୍କ ପିତା ଗୋବିନ୍ଦ ପ୍ରସାଦ ଜମିଦାର ଓ ବହୁ ସମ୍ପତ୍ତିର ଅଧିକାରୀ ଥିଲେ । ସେ ଓଡ଼ିଶା ପ୍ରସିଦ୍ଧ ବିରଜା ହାଟର ପରିଚାଳକ ଓ ସ୍ୱତ୍ୱାଧିକାରୀ ଥିଲେ । ସେହି ସୂତ୍ରରେ ସେ ବିପୁଳ ଅର୍ଥ ପାଉଥିଲେ । କବିଙ୍କର ମାତା ଅତୀବ ଧର୍ମପରାୟଣା ଥିଲେ ।

**ଶିକ୍ଷାରମ୍ଭ**

କୃଷ୍ଣପ୍ରସାଦଙ୍କର ଗ୍ରାମ୍ୟ ଚାଟଶାଳୀରେ ଶିକ୍ଷା ଆରମ୍ଭ ହେଲା । ତାଙ୍କର ବାଲ୍ୟଗୁରୁ ଥିଲେ ଭଗବାନ୍ ଦାଶ । ସେତେବେଳେ କୃଷ୍ଣପ୍ରସାଦ ନାଲି ପାଟର ଓଡା ପିନ୍ଧୁଥିଲେ । ହାତରେ ଦୁଇପଟ ସୁନାବଳା, ହାତ ଉପରେ ସୁନାର ପଦକ ମାଳା ଓ କଟିରେ ରୁପାର ବେଙ୍ଗପାଟିଆ ଝୁମୁକା ଶୋଭା ପାଉଥିଲା ।

ଘରୋଇଭାବେ ଅଧ୍ୟୟନ କରି କୃଷ୍ଣପ୍ରସାଦ ଯାଜପୁର ଉଚ୍ଚ ବିଦ୍ୟାଳୟରେ ନବମଶ୍ରେଣୀରେ ନାମ ଲେଖାଇଲେ । ସେ ସେତେବେଳେ ଭାରି ଦୁଷ୍ଟ ଥିଲେ । ଗଣିତ ଶିକ୍ଷକ ଥିଲେ ନୀଳରତନ ବାନାର୍ଜୀ । ସେ ସିଗାରେଟପ୍ରିୟ ଥିଲେ । କୃଷ୍ଣପ୍ରସାଦ ତାଙ୍କଠାରୁ ଦେଖି ସିଗାରେଟ ଟାଣିବା ଆରମ୍ଭ କରିଦେଲେ । ଆଉ କେତେଜଣ ପିଲାଙ୍କୁ ସାଙ୍ଗରେ ନେଇ ସେ ସ୍ମୋକିଙ୍ଗ୍ କ୍ଲବ (ସିଗାରେଟ ଟାଣିବା କ୍ଲବ)ଟିଏ ଗଠନ କରିଦେଲେ । ସେ ନିଜେ ଏହାର ସମ୍ପାଦକ ହେଲେ । ଏକଥା ଜଣାପଡ଼ିବାପରେ ଶିକ୍ଷକଙ୍କଦ୍ୱାରା କଠିନ ଦଣ୍ଡ ପାଇଲେ । ଏହାପରେ ଅବଶ୍ୟ ସେ ସିଗାରେଟ ଟାଣିବା ଛାଡ଼ିଦେଲେ ।

କୃଷ୍ଣପ୍ରସାଦ ମେଧାବୀ ଛାତ୍ର ଥିଲେ । ସେ ତେଣୁ ଅଚିରେ ଶିକ୍ଷକଙ୍କର ଦୃଷ୍ଟି ଆକର୍ଷଣ କଲେ । ପୁଣି ତାଙ୍କର ସୌମ୍ୟ ଚେହେରା, ଲଳିତ କଣ୍ଠ ତାଙ୍କୁ ସମସ୍ତଙ୍କର ପ୍ରିୟ କରିଦେଲା । କୃଷ୍ଣପ୍ରସାଦଙ୍କ ପିତା ଗୋବିନ୍ଦ ପ୍ରସାଦ ମଧ୍ୟ ସଙ୍ଗୀତପ୍ରେମୀ ଥିଲେ । ସେ ତବଲା, ପଖୋଉଜ, ମୃଦଙ୍ଗ ଆଦି ସୁନ୍ଦର ଭାବେ ବଜାଇ ପାରୁଥିଲେ । ସେ ମଧ୍ୟ ଅତିଥିପରାୟଣ ଥିଲେ । ବିରଜା କ୍ଷେତ୍ରକୁ ଆସୁଥିବା ସାଧୁସନ୍ଥମାନଙ୍କପାଇଁ

ସେ 'ହରିଘର' ନାମକ ଗୃହ ନିର୍ମାଣ କରାଇଥିଲେ । ସେଠାରେ ସାଧୁସନ୍ଥମାନେ ଏକାଧିକ ଦିନ ରହି ଭଜନ କୀର୍ତ୍ତନ ପ୍ରଭୃତି କରୁଥିଲେ। ଗୋବିନ୍ଦପ୍ରସାଦଙ୍କ ମଧ୍ୟ ଏକ ଲୀଳା ଦଳ ଥିଲା । ଲୀଳାପାଇଁ ପ୍ରାଚୀନ କବିଙ୍କ ଚୌପଦୀ, ଚଉତିଶା, ଛାନ୍ଦ, ଜଣାଣ ଆଦି ଭକ୍ତି ସଙ୍ଗୀତର ଚର୍ଚ୍ଚା ହେଉଥିଲା । ସେସମୟର ପ୍ରସିଦ୍ଧ କୀର୍ତ୍ତନ ଗାୟକ ହରିଦାସ ବାବାଜି ବହୁ ସମୟରେ ଆସି ଏହି ହରିଘରେ ରହୁଥିଲେ । ଫଳରେ କୃଷ୍ଣପ୍ରସାଦ ଓ ବାଲ୍ୟକାଳରୁ ସଙ୍ଗୀତ ପ୍ରତି ଅନୁରାଗୀ ହୋଇପଡ଼ିଲେ ।

ଓଡ଼ିଶାର ସେତେବେଳେ ଜନପ୍ରିୟ ନାଟ୍ୟକାର ଥିଲେ ଜଗନ୍ନାଥ ପାଣି । ତାଙ୍କ ଘର ଭଦ୍ରକ ଥିଲା । ମାତ୍ର ଭଦ୍ରକଟି ମୁସଲମାନବହୁଳ ଅଞ୍ଚଳ ହୋଇଥିବାରୁ ସେ ବହୁ ସମୟ ଯାଜପୁରରେ ଅବସ୍ଥାନ କରୁଥିଲେ । ଗୋବିନ୍ଦ ପ୍ରସାଦଙ୍କ ହରିଘରେ ସେ ପ୍ରାୟତଃ ରହୁଥିଲେ । କୃଷ୍ଣପ୍ରସାଦ ତାଙ୍କର ପାଦଧୂଳି ନେବାର ସୌଭାଗ୍ୟ ଲାଭ କରିଥିଲେ ।

ଯାଜପୁର ଉଚ୍ଚ ବିଦ୍ୟାଳୟରେ ଅଧ୍ୟୟନ କଲା ସମୟରେ ଭକ୍ତକବି ମଧୁସୂଦନ ଯାଜପୁର ଉଚ୍ଚ ବିଦ୍ୟାଳୟ ପରିଦର୍ଶନ କରିଥିଲେ । ସେତେବେଳେ ସେ କୃଷ୍ଣପ୍ରସାଦ ଲଳିତ କଣ୍ଠରୁ ସ୍ୱରଚିତ 'ଅଖିଳ ବ୍ରହ୍ମାଣ୍ଡପତି' ଗୀତ ଶୁଣି ମୁଗ୍ଧ ହୋଇପଡ଼ିଲେ । ଭକ୍ତକବି କୃଷ୍ଣପ୍ରସାଦଙ୍କ ଶିର ସ୍ପର୍ଶ କରି କହିଉଠିଲେ – "nice-noble. may god bless you" ।

କୃଷ୍ଣପ୍ରସାଦ ପ୍ରତ୍ୟେକ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ୧୯୧୨ ମସିହାରେ ପ୍ରଥମ ଶ୍ରେଣୀରେ ଏଣ୍ଟ୍ରାନ୍ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ।

**ଉଚ୍ଚ ଶିକ୍ଷା**

ଉଚ୍ଚ ଶିକ୍ଷାପାଇଁ ପିତା ଗୋବିନ୍ଦପ୍ରସାଦ କୃଷ୍ଣପ୍ରସାଦଙ୍କ ନାମ କଟକର ରେଭେନ୍ସା କଲେଜରେ ଲେଖାଇଲେ । ସେ ଆଇ.ଏସ୍‌ସି. ଶ୍ରେଣୀର ଛାତ୍ର ଥିଲେ । ସେ କଲେଜର ପୂର୍ବ ଛାତ୍ରାବାସରେ ରହୁଥିଲେ । ସେତେବେଳେ କାନ୍ତକବି ଲକ୍ଷ୍ମୀକାନ୍ତ ସେହି କଲେଜର ଛାତ୍ର ଥିଲେ । ସେ ଅବଶ୍ୟ ଉପର ଶ୍ରେଣୀରେ ପଢୁଥିଲେ । କୃଷ୍ଣପ୍ରସାଦ ତଳ ଶ୍ରେଣୀରେ ପଢୁଥିଲେ । ମାତ୍ର ଲକ୍ଷ୍ମୀକାନ୍ତଙ୍କ ସହିତ ତାଙ୍କର ବନ୍ଧୁତା ସ୍ଥାପିତ ହେଲା । ସେହି ବନ୍ଧୁତା କାଳକ୍ରମେ ଏତେ ନିବିଡ଼ ହୋଇଉଠିଲା ଯେ ଦୁହେଁ ଦୁହିଁଙ୍କି ଥରେ ନ ଦେଖିଲେ ଚଳୁ ନ ଥିଲା । ଅନ୍ୟ ଯେଉଁମାନଙ୍କ ସଙ୍ଗେ ସେ ବନ୍ଧୁତା ସୂତ୍ରରେ ଆବଦ୍ଧ ହେଲେ, ସେମାନେ ହେଲେ ଚିନ୍ତାମଣି ଆଚାର୍ଯ୍ୟ, ପ୍ରାଣକୃଷ୍ଣ ପରିଜା, ଲକ୍ଷ୍ମୀନାରାୟଣ ସାହୁ, ଆର୍ତ୍ତବଲ୍ଲଭ ମହାନ୍ତି, ବାଙ୍କନିଧି ପଟ୍ଟନାୟକ, ବାଞ୍ଛାନିଧି ମହାନ୍ତି, ବନବିହାରୀ ପଟ୍ଟନାୟକ, ଗୋବିନ୍ଦ ଶୂରଦେଓ ପ୍ରଭୃତି ।

କଲେଜ ହଷ୍ଟେଲରେ କୃଷ୍ଣପ୍ରସାଦ ରହୁଥିଲେ । ସେଠିକି ମଧ୍ୟ ଆସୁଥିଲେ ଲକ୍ଷ୍ମୀକାନ୍ତ ଓ ଶୂରଦେଓ । ପ୍ରତି ସନ୍ଧ୍ୟାରେ ବନ୍ଧୁମାନଙ୍କର ମିଳନ ହେଉଥିଲା

କିଲିଟାରୀ ଅଫିସ୍ ନିକଟ କ୍ଷୁଦ୍ର ବୁରୁଜ ଉପରେ । କୃଷ୍ଣପ୍ରସାଦ ବଙ୍ଗୀୟ କବି ରଜନୀକାନ୍ତଙ୍କର 'କବେ ତ୍ରିଷିତ ଏ ମରୁ ରାତିଆ ଯାଇବ ତୋମାରି ରସାଲ ନନ୍ଦନେ' ଶୁଣାଉଥିଲେ ।

କହିବା ବାହୁଲ୍ୟ, ଏହି କଲେଜ ଜୀବନ ତାଙ୍କ ପ୍ରତିଭାର ବିକାଶରେ ଯଥେଷ୍ଟ ଉପାଦାନ ଯୋଗାଇଥିଲା ।

କୃଷ୍ଣପ୍ରସାଦ ମଧ୍ୟ କଲେଜର ଛାତ୍ରବତ୍ସଳ ଅଧ୍ୟାପକ ସତୀଶଚନ୍ଦ୍ର ରାୟଙ୍କ ସ୍ନେହ ଦୃଷ୍ଟିରେ ପଡ଼ିଲେ । ସେ କୃଷ୍ଣପ୍ରସାଦଙ୍କ ପ୍ରତିଭାରେ ମୁଗ୍ଧ ହୋଇପଡ଼ିଥିଲେ । ସେ ତାଙ୍କୁ ବିଭିନ୍ନ ବାଦ୍ୟଯନ୍ତ୍ର ବ୍ୟବହାର ଶିଖାଇଥିଲେ । ଫଳରେ ସଙ୍ଗୀତ ପ୍ରତି କୃଷ୍ଣପ୍ରସାଦଙ୍କ ଅନୁରାଗ ପ୍ରବଳ ହେଲା ।

କୃଷ୍ଣପ୍ରସାଦ ଆଇ.ଏସ୍‌ସି. ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲେ । ସେ ଏହାପରେ ଉଚ୍ଚଶିକ୍ଷାପାଇଁ କଲିକତା ଗଲେ । ସେଠାର ସେଣ୍ଟ ଜେଭିୟାର୍ସ କଲେଜରେ ରସାୟନବିଦ୍ୟାରେ ସମ୍ମାନ ନେଇ ବି.ଏସ୍‌ସି. ପଢ଼ିଲେ ।

ଜେଭିୟାର୍ସରେ ପଢ଼ିଲାବେଳେ କଲିକତାରେ ଇଂରେଜମାନଙ୍କ ବିରୋଧରେ ଆନ୍ଦୋଳନର ସୂତ୍ରପାତ ହେଲା । ବିଶେଷତଃ ବଙ୍ଗଭଙ୍ଗ ପରେ ଏହି ଆନ୍ଦୋଳନ ତୀବ୍ର ହୋଇଉଠିଲା । ଅରବିନ୍ଦଙ୍କ ନେତୃତ୍ୱରେ ଏହି ଆନ୍ଦୋଳନ ହିଂସ୍ର ରୂପ ଧାରଣ କରିଥିଲା । କୃଷ୍ଣପ୍ରସାଦ ସେତେବେଳେ ତରୁଣ ଛାତ୍ର ଥିଲେ । ସେ ଏହି ଆନ୍ଦୋଳନରେ ଯୋଗ ଦେଲେ । ସେ 'ବନ୍ଦେ ମାତରମ୍' ଦଳର ଅନ୍ୟତମ ବିପ୍ଳବୀ କର୍ମୀ ଥିଲେ । ସେ ତେଣୁ ପୁଲିସ ନଜରରେ ପଡ଼ିଲେ । କୃଷ୍ଣପ୍ରସାଦ ନିଜେ ଲେଖିଛନ୍ତି –

''ଦୈବକୁ ହଷ୍ଟେଲ ମଧ୍ୟରେ ପ୍ରଭୁଙ୍କ ବରାଦରେ ମୁଁ ଜଣେ 'ବନ୍ଦେ ମାତରମ୍' ଦଳର ବିପ୍ଳବୀ ରାଜଦ୍ରୋହୀ ତାଙ୍କୁ ବୋଲି ପୁଲିସର କୃପା କଟାକ୍ଷ ମୋ ଉପରେ ପଡ଼ିଲା ।'' ପୁଲିସ କୃଷ୍ଣପ୍ରସାଦଙ୍କ ପିଛା ଧରିଲା । ଗଲା ଅଇଲା ଶୋଇଲା ବସିଲା ସବୁଠି ପୁଲିସ ତାଙ୍କ ପଛରେ ଘୂରି ବୁଲିଲା ।

**ଗିରଫ**

କୃଷ୍ଣପ୍ରସାଦ ପୁଲିସ ନଜର ଏଡ଼ାଇବାପାଇଁ ଆର୍ମହର୍ଷ୍ଟ ଷ୍ଟ୍ରିଟ୍ ମେସ୍‌ରେ ରହିଲେ । ପୁଲିସ କିନ୍ତୁ ଏହାର ସୁରାକ ପାଇ ରାତିଅଧିଆ ମେସ୍‌କୁ ଚଢ଼ାଉ କଲେ ଓ ଅନ୍ୟମାନଙ୍କ ସହିତ କୃଷ୍ଣପ୍ରସାଦଙ୍କୁ ଗିରଫ କଲେ । ସନ୍ତ୍ରାସବାଦୀ କାର୍ଯ୍ୟକଳାପରେ ସେ ସମ୍ପୃକ୍ତ ଥିବା ପୁଲିସ ଅଭିଯୋଗ କଲା । ତାଙ୍କୁ ଅସହ୍ୟ ନିର୍ଯାତନା ମଧ୍ୟ ଦିଆଗଲା । ଦୁଇ ମାସ କାଳ ଜେଲ ହାଜତରେ ତାଙ୍କୁ ରହିବାକୁ ପଡ଼ିଲା ।

ଜେଲରୁ କୃଷ୍ଣପ୍ରସାଦ ମୁକ୍ତ ହେଲେ ସହପାଠୀ ଶ୍ରୀମଜୀ ମ୍ୟାଡାନଙ୍କ ଚେଷ୍ଟାରୁ । ମାତ୍ର ପୁଲିସର ତାଙ୍କ ଉପରେ ସତର୍କ ଦୃଷ୍ଟି ରହିଲା । କଲିକତା ଛାଡ଼ିବାପାଇଁ

ତାଙ୍କୁ ମଧ୍ୟ ଆଦେଶ ମିଳିଲା । ବି.ଏସ୍‌ସି. ପରୀକ୍ଷା ଦେବା ତାଙ୍କ ପକ୍ଷେ ସମ୍ଭବ ହେଲା ନାହିଁ । ପାଠପଢ଼ା ତାଙ୍କର ବନ୍ଦ ହେଲା । ସେ କଲିକତାରେ ଆତ୍ମଗୋପନ କରିବାରେ ଲାଗିପଡ଼ିଲେ । ଏହି ସମୟରେ ସେ କଲିକତାର କୋଲାଘାଟ ଘଣା କଳରେ କାମ କରିଛନ୍ତି । ହାଟକଟା ଗଳି ଧୋବା ଦୋକାନରେ ମଧ୍ୟ ତାଙ୍କୁ ରହିବାକୁ ପଡ଼ିଛି । ପିତାଙ୍କ ଭୟରେ ସେ ଓଡ଼ିଶା ଆସିବାକୁ ସାହସ କରିପାରି ନ ଥିଲେ ।

ବନ୍ଧୁ ଶ୍ରୀମଜୀ କଲିକତାରେ କରୋନେଥିଆନ ଥିଏଟର ଚଳାଉଥିଲେ । ବନ୍ଧୁଙ୍କ ପରାମର୍ଶରେ ସେ ସେହି ଥିଏଟରେ ଦଳରେ ଛଦ୍ମବେଶରେ କିଛି କାଳ କଟାଇଲେ । ସେତେବେଳେ ସେ ଗୁଜୁରାଟୀ ଭାବେ ଥାଆନ୍ତି । ଗୁଜୁରାଟୀ ପୋଷାକ ମଧ୍ୟ ପିନ୍ଧୁଥାନ୍ତି । ବେଶି କଥା କହୁ ନ ଥାନ୍ତି । ପ୍ରଥମେ ସେ ଥିଏଟରର ପ୍ଲାକାର୍ଡ଼ ରକ୍ଷକ ଓ ପରେ ଜମାଦାରଭାବେ କାର୍ଯ୍ୟ କଲେ । ଜମାଦାର ଥିଲାବେଳେ ତାଙ୍କର ନାମ ଥିଲା ଦାମୋଦର ମିଶରଜୀ । ତାଙ୍କର ଅଭିଜ୍ଞତା ଦେଖି ଶ୍ରୀମଜୀ ତାଙ୍କୁ ଆଲୋକସଜ୍ଜା କାମ ଦେଲେ । ଏହାପରେ କୃଷ୍ଣପ୍ରସାଦ ଯନ୍ତ୍ରଶିଳ୍ପୀ ଭାବେ କାର୍ଯ୍ୟ କଲେ । ଶେଷରେ ଅଭିନୟ କରିବାକୁ ସୁଯୋଗ ପାଇଲେ । କରୋନେଥିଆନ ଥିଏଟରରେ କିଛି କାଳ ଅଭିନୟ କଲା ପରେ ସେ ପ୍ରଖ୍ୟାତ ଷ୍ଟାର ଥିଏଟରରେ ଅଭିନୟ କଲେ ।

**ଯାତ୍ରା**

ଅଭିନେତା ଭାବେ ଯୋଗ ଦେଲାପରେ ସେ ଅଭିନୟରେ ତାଲିମ ନେଲେ । ପ୍ରଖ୍ୟାତ ଅଭିନେତା ଅମର ଦତ୍ତ, ରସରାସ ଅମୃତଲାଲ ବସୁ, ଈଶ୍ୱରପ୍ରସାଦ ପ୍ରଭୃତି ତାଙ୍କୁ ଏଥିରେ ତାଲିମ ଦେଲେ । କ୍ରମେ ସେ ଅଭିନୟରେ ନିପୁଣ ହୋଇଉଠିଲେ । ଥିଏଟରରେ ଅଭିନୟ ସଙ୍ଗେ ସଙ୍ଗେ ସେ ଲୋକନାଟକ ବା ଯାତ୍ରା ପ୍ରତି ଆସକ୍ତ ହେଲେ । ତାଙ୍କର ଆସକ୍ତି ଏତେ ଦୂର ବଢ଼ିଗଲା ଯେ ସେ ଥିଏଟର ଛାଡ଼ି ଯାତ୍ରାରେ ଅଭିନେତା ଭାବରେ ଯୋଗ ଦେଲେ । ସେଥିରେ ମଧ୍ୟ ସ୍ୱଦେଶୀ ଭାବନା ପ୍ରଚାର ବେଶି ହୋଇପାରିବ ବୋଲି ସେ ଉପଲବ୍ଧି କଲେ । ସେ ମଧ୍ୟ ସେତେବେଳେ ଜନପ୍ରିୟ ଯାତ୍ରା ଦଳର ପରିଚାଳକ ମତିଲାଲ ରାୟ ଓ ରାଜକୃଷ୍ଣ ରାୟଙ୍କ ଅପେରା ଦଳରେ ଯୋଗ ଦେଲେ । ମଞ୍ଚ ପରିଚାଳନା ଓ ଅପେରା ପରିଚାଳନା କ୍ଷେତ୍ରରେ ପ୍ରତ୍ୟକ୍ଷ ଅଭିଜ୍ଞତା ହାସଲ କଲେ ।

କୃଷ୍ଣପ୍ରସାଦ ସେତେବେଳଯାଏଁ ଆତ୍ମଗୋପନ କରି ରହିଥାନ୍ତି । କିନ୍ତୁ ଆଉ ଅଧିକ କାଳ ସେ ଏପରିଭାବେ ରହିବାକୁ ଚାହିଁଲେ ନାହିଁ । ଓଡ଼ିଶା ଫେରିଆସି ମୁକୁନ୍ଦ ଦାସ ଓ ମତିଲାଲ ରାୟଙ୍କ ଭଳି ଯାତ୍ରା ଦଳ ଗଢ଼ିବାକୁ ଚାହିଁଲେ । ଯାତ୍ରା ମାଧ୍ୟମରେ ଓଡ଼ିଶା ଆନ୍ଦୋଳନକୁ ତେଜୀୟାନ୍ କରିବା ମଧ୍ୟ ତାଙ୍କର ଲକ୍ଷ୍ୟ ହେଲା । ସୁତରାଂ, କାଳବିଳମ୍ବ ନ କରି ସେ ୧୯୧୬ ମସିହାର ଶେଷ ଆଡ଼କୁ ଓଡ଼ିଶା ଫେରିଆସିଲେ ।

ଓଡ଼ିଶାକୁ ଫେରି କୃଷ୍ଣପ୍ରସାଦ ଓଡ଼ିଆ ଯାତ୍ରାର ଆଧୁନିକୀକରଣପାଇଁ ଲାଗି ପଡ଼ିଲେ । ସେ ଏଥିପାଇଁ ବହୁଆଡ଼େ ଯାତ୍ରା କରିଛନ୍ତି । ବସ୍ତାରୁ ବଲାଙ୍ଗୀର, ବ୍ରହ୍ମପୁରରୁ ବାଲେଶ୍ୱର – ପ୍ରତ୍ୟେକ ଅଞ୍ଚଳକୁ ଯାଇଛନ୍ତି । ଲୋକଙ୍କ ମଧ୍ୟରେ ଜାତୀୟତାର ଭାବ ଉଦ୍ରେକ କରିବାପାଇଁ ସେ ବାଛିନେଲେ ଏହି ବନ୍ଧୁର ପଥ । ସେ ଲେଖିଛନ୍ତି –

''ଆମର ନିଜକୁ ବେମାଲୁମ, କିନ୍ତୁ ଆମେ ହୋଇଗଲୁ ଗୋଟିଏ ବିପ୍ଳବୀ ଡକାଏତ ଦଳର ବିଶିଷ୍ଟ ସଭ୍ୟ । ବ୍ରିଟିଶ ଶାସନର ତୀକ୍ଷ୍ଣ ମୁନିଆ ଦୃଷ୍ଟିରେ ଆମେ ନିପଟ ମଫସଲିଆ କଲିକତାର ଛାତ୍ର ହଠାତ୍ ହୋଇଗଲୁ ଗୋଟାଏ ଗୋଟାଏ ବିପ୍ଳବୀ । ... ଆମର ବାପା ମା'ଙ୍କୁ ହେଲା ଗୋପନତାଗିଦ୍ । କାରଣ ଅକାରଣେ କାଳେ ଅକାଳେ ଟଣା ହେଲୁ ଥାନାକୁ । ଫଳରେ ପଢ଼ାପଢ଼ିରେ ହୋଇଗଲା ଇତିଶ୍ରୀ । ଭାଗାବଣ୍ଡ ଭଳି ଗାଁରେ ଘୂରି ବୁଲିଲୁ ।

କିନ୍ତୁ ବିନା ଦୋଷରେ ଲାଞ୍ଛନା ଭୋଗିଥିବାରୁ କୃଷ୍ଣପ୍ରସାଦଙ୍କ ମନରେ ପ୍ରତିହିଂସାର ନିଆଁ ଜଳିଉଠିଲା । ସେ ଗୋଟିଏ ଯାତ୍ରା ଦଳ ଗଢ଼ି ତା'ରି ମାଧ୍ୟମରେ ବିପ୍ଳବର ବାଣୀ ପ୍ରଚାର କରିବାକୁ ଲାଗିପଡ଼ିଲେ । ବଙ୍ଗଳାର ମୈମନସିଂର ଖ୍ୟାତନାମା କବି ମୁକୁନ୍ଦ ଦାସ ହେଲେ ତାଙ୍କର ଆଦର୍ଶ । ସେ ଯାତ୍ରା ମାଧ୍ୟମରେ ଜାଗରଣର ମନ୍ତ୍ର ପ୍ରଚାର କରିବାର ସଂକଳ୍ପ ନେଲେ ।

ଓଡ଼ିଆରେ ବିପ୍ଳବାତ୍ମକ ଯାତ୍ରା ପୁସ୍ତକର ଅଭାବ ସେତେବେଳେ ଥିଲା । ତେଣୁ କୃଷ୍ଣପ୍ରସାଦ ନିଜେ ଯାତ୍ରା ଲେଖିବାକୁ ସ୍ଥିର କଲେ । ତାଙ୍କୁ ଉତ୍ସାହ ପ୍ରଦାନ କଲେ ବାଞ୍ଛାନିଧି ମହାନ୍ତି । ସେମାନଙ୍କ ମଧ୍ୟରେ ବୁଝାମଣା ହୋଇଥିଲା ଯେ ଯଦି ସ୍ୱଦେଶୀ ଯାତ୍ରାପାଇଁ କୃଷ୍ଣପ୍ରସାଦଙ୍କୁ ଜେଲ ଯିବାକୁ ପଡ଼େ, ତେବେ ଦଳର ନାମ ପରିବର୍ତ୍ତନ ନ କରି ବାଞ୍ଛାନିଧି ହେବେ ପରିଚାଳକ । ଫଳରେ ଦଳଟି ଚଳାଯାଇପାରିବ । ଯାଜପୁରରେ ଗଠିତ ହେଲା 'ବିରଜା ଅପେରା' । ଓଡ଼ିଆ ଯାତ୍ରାରେ ସଂସ୍କାର ଆଣିବା ଏହାର ମୁଖ୍ୟ ଉଦ୍ଦେଶ୍ୟ ହେଲା ।

**ବିରଜା ଅପେରା**

କୃଷ୍ଣପ୍ରସାଦ ଗଠନ କଲେ ଯାଜପୁରର ଅଧିଷ୍ଠାତ୍ରୀ ଦେବୀ ବିରଜାଙ୍କ ନାମାନୁସାରେ ଏହି ଅପେରା ଦଳ । ସେ ନିୟମିତ ଭାବେ କଳାକାରମାନଙ୍କୁ ଯନ୍ତ୍ରସଙ୍ଗୀତ, କଣ୍ଠସଙ୍ଗୀତ, ନୃତ୍ୟ, ଅଭିନୟ ଆଦି ଶିକ୍ଷା ଦେବାକୁ ଲାଗିଲେ । ଅଭିନୟପାଇଁ ରଚନା କଲେ 'ହରି', 'ଅନ୍ୱେଷଣ', 'ଶକୁନ୍ତଳା', 'ସୀତା ବନବାସ' ପ୍ରଭୃତି । ସେତେବେଳେ ଗୋପାଳ ଦାଶ ଓ ବୈଷ୍ଣବ ପାଣିଙ୍କର ଯାତ୍ରା ଦଳ ଥିଲା । ଭଦ୍ରକରେ କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ରାସ ଦଳ ବି ଥିଲା । ମାତ୍ର ଅଭିନୟ ପରିପାଟୀ, ସଙ୍ଗୀତ ସଂଯୋଜନା, ଯନ୍ତ୍ରସଙ୍ଗୀତ, ପରିବେଷଣ ଶୈଳୀ, ପୋଷାକ ପରିଛଦ ପ୍ରଭୃତିରେ 'ବିରଜା ଯାତ୍ରା' ଦଳର ସମକକ୍ଷ ଦଳ ଓଡ଼ିଶାରେ ନ ଥିଲେ ।

ପ୍ରତି ରାତ୍ରିରେ ଯାତ୍ରା ଆରମ୍ଭରେ କବିମଞ୍ଜୁଳ ନିଜେ ମଞ୍ଚ ଉପରକୁ ଆସି ଜାତୀୟ ସଙ୍ଗୀତ ଗାନ କରୁଥିଲେ । କହିବା ବାହୁଲ୍ୟ ଯେ ଏଗୁଡ଼ିକ ବ୍ରିଟିଶ ଶାସନ ବିରୋଧୀ ଥିଲା । ଏହା ଥିଲା ତାଙ୍କ ପ୍ରତିଷ୍ଠିତ ଯାତ୍ରାଦଳର ବୈଶିଷ୍ଟ୍ୟ ମଧ୍ୟ ।

ବ୍ରିଟିଶ ବିରୋଧୀ ମନୋଭାବ ସୃଷ୍ଟି କରିବାକୁ ଚେଷ୍ଟା କରୁଥିବା କଥା ସରକାର ଧୀରେ ଧୀରେ ଜାଣିବାକୁ ପାଇଲେ । କୃଷ୍ଣପ୍ରସାଦଙ୍କୁ ସେଥିରୁ ନିବର୍ତ୍ତାଇବାପାଇଁ ସରକାରଙ୍କ ପକ୍ଷରୁ ଉଦ୍ୟମ ହେଲା । ତାଙ୍କୁ ମଧ୍ୟ ସବ୍‌ଇନ୍ସପେକ୍ଟର ପଦ ଯଚା ହେଲା । ପିତା ଗୋବିନ୍ଦପ୍ରସାଦ ମଧ୍ୟ ଚାହୁଁଥିଲେ ଯେ ପୁଅ ସରକାରୀ ଚାକିରି ଗ୍ରହଣ କରି ନିଜ ଜୀବନରେ ପ୍ରତିଷ୍ଠିତ ହେଉ । କିନ୍ତୁ ବ୍ରିଟିଶ ସରକାରଙ୍କ ଗୋଲାମ ହେବେ ନାହିଁ ବୋଲି କୃଷ୍ଣପ୍ରସାଦ ସ୍ପଷ୍ଟ ମତ ପ୍ରକାଶ କଲେ । ଫଳରେ ପିତା ଓ ପୁତ୍ରଙ୍କ ମଧ୍ୟରେ ମତାନ୍ତର ଓ ମନାନ୍ତର ଦେଖାଦେଲା । ସେହି ମନାନ୍ତର ଏତେ ଦୂର ଗଲା ଯେ କୃଷ୍ଣପ୍ରସାଦଙ୍କ ପକ୍ଷେ ଘରେ ରହିବା ସମ୍ଭବ ହେଲା ନାହିଁ ।

ବିରଜା ଅପେରା ଓଡ଼ିଶାରେ ଜନପ୍ରିୟ ହୋଇଉଠିଥିଲେ ମଧ୍ୟ ସେ ସେସବୁକୁ ଛାଡ଼ି କୃଷ୍ଣପ୍ରସାଦ ଏଣେ ତେଣେ ବୁଲି ଶେଷରେ କଲିକତା ଗଲେ । ସେଠାରେ ଭଦ୍ରକ ନିକଟସ୍ଥ ଏଡ଼ତାଳ ନିବାସୀ ଭୂୟାଁ ଭାସ୍କରଚନ୍ଦ୍ର ମହାପାତ୍ରଙ୍କ ଜାହାଜରେ ମାଲପତ୍ରର ଲୋଡିଙ୍ଗ ଅନ୍‌ଲୋଡିଙ୍ଗ୍ କାର୍ଯ୍ୟ ତଦାରଖ କରି ଜୀବନଯାପନ କରିବାକୁ ଲାଗିଲେ । ଥରେ ଭାସ୍କରଚନ୍ଦ୍ରଙ୍କ ପୁତ୍ରର ଜନ୍ମଦିନରେ ଏଡ଼ତାଳଠାରେ ମନୋରଞ୍ଜନ କାର୍ଯ୍ୟକ୍ରମ ଭାର କୃଷ୍ଣପ୍ରସାଦଙ୍କ ଉପରେ ପଡ଼ିଲା । ସେଇ ଉପଲକ୍ଷେ କୃଷ୍ଣପ୍ରସାଦ ଏକ ନାଟକ ଅଭିନୟର ଆୟୋଜନ କଲେ । ନାଟକକୁ ସମସ୍ତେ ପ୍ରଶଂସା କଲେ । ଭୂୟାଁବାବୁ ବି ମୁଗ୍ଧ ହୋଇପଡ଼ିଲେ । ସେ କୃଷ୍ଣପ୍ରସାଦଙ୍କୁ ଏକ ସ୍ଥାୟୀ ନାଟ୍ୟ ଦଳ ଗଢ଼ିବାପାଇଁ ପରାମର୍ଶ ଦେଲେ । ଦଳ ଗଠନ କରିବାରେ ତ କୃଷ୍ଣପ୍ରସାଦଙ୍କ ବହୁଳ ଅଭିଜ୍ଞତା ଥିଲା ; ସେ ନାଟ୍ୟଦଳଟିଏ ସହଜରେ ଗଢ଼ିଦେଲେ । ଭାସ୍କରଚନ୍ଦ୍ର ଭୂୟାଁଙ୍କ କୁଳଦେବତା ନାମ ଅନୁସାରେ ଏହି ଦଳର ନାମ 'ଶ୍ୟାମସୁନ୍ଦର ଥିଏଟର' ରଖାଗଲା ।

'ଶ୍ୟାମସୁନ୍ଦର ଥିଏଟର୍' ଅପେରା ହେଲେହେଁ ଭୂୟାଁବଂଶର ଆଭିଜାତ୍ୟ ହେତୁ ଏହାକୁ ଥିଏଟର କୁହାଯାଇଥିଲା । କୃଷ୍ଣପ୍ରସାଦ ନିଜର ପୂର୍ବରଚିତ 'କୃଷ୍ଣଚରିତ', 'ଗୟାସୁର ବଧ', 'ଯଯାତିକେଶରୀ' ପ୍ରଭୃତି ନାଟକ ପରିବେଷଣ କଲେ । ଏ ଦଳର ବିଶିଷ୍ଟ କଳାକାରମାନେ ହେଲେ ମଧୁସୂଦନ ପଲାଇ, ବଂଶୀଧର ପୁହାଣ, ପୁରୁଷୋତ୍ତମ ମାହାଳିକ ଇତ୍ୟାଦି ।

'ଶ୍ୟାମସୁନ୍ଦର ଥିଏଟର' ମଧ୍ୟ ଖୁବ୍ ଲୋକପ୍ରିୟ ହୋଇଉଠିଲା । ଏହି ଯାତ୍ରା ଦଳ ଗଠନ କରି କୃଷ୍ଣପ୍ରସାଦ ସମଗ୍ର ବାଲେଶ୍ୱର ଜିଲ୍ଲାରେ ଖ୍ୟାତି ଅର୍ଜନ କରିବାକୁ ଲାଗିଲେ । ବାଲେଶ୍ୱରରେ ସେତେବେଳେ ବଙ୍ଗଳା ଯାତ୍ରା ପ୍ରଦର୍ଶିତ ହେଉଥିଲା । ଲୋକଙ୍କର ବଙ୍ଗଳା ଯାତ୍ରା ଉପଭୋଗ କରିବା ଏକ ନିଶାରେ

ପରିଣତ ହୋଇଯାଇଥିଲା । କୃଷ୍ଣପ୍ରସାଦଙ୍କ ଉଦ୍ୟମ ଫଳରେ ଲୋକଙ୍କର ରୁଚିରେ ପରିବର୍ତ୍ତନ ହେଲା । ସେ ଅଞ୍ଚଳର ବହୁ ଲୋକ ମଧ୍ୟ ଓଡ଼ିଆ ଯାତ୍ରାର ପ୍ରସାରରେ ସହାୟତା ପ୍ରଦାନ କଲେ । ସୋରର ମାଧବଚନ୍ଦ୍ର ପାତ୍ର ତାଙ୍କୁ ବସ୍ତା ଅଞ୍ଚଳରେ ଯାତ୍ରା କରିବାପାଇଁ ସମସ୍ତ ସହାୟତା ଦେଲେ । କୃଷ୍ଣପ୍ରସାଦ ମଧ୍ୟ ଦକ୍ଷିଣ ଓଡ଼ିଶାର କବିସୂର୍ଯ୍ୟ ବଳଦେବ ରଥଙ୍କ ଚମ୍ପୂ ଓ ଗୋପାଳକୃଷ୍ଣଙ୍କ ପଦ୍ୟାବଳୀ ପରିବେଷଣ କରିବାକୁ ଲାଗିଲେ । ଫଳରେ ବଙ୍ଗଳା ଯାତ୍ରାର ଅଗ୍ରଗତି ବନ୍ଦ ହେଲା ।

**ଏଡ଼ତାଳ**

ଏଡ଼ତାଳରେ କିନ୍ତୁ କୃଷ୍ଣପ୍ରସାଦ ବହୁକାଳ ରହିପାରି ନ ଥିଲେ । କୃଷ୍ଣପ୍ରସାଦ ଥିଲେ ସ୍ୱାଧୀନଚେତା ; କିନ୍ତୁ ଭାସ୍କରଚନ୍ଦ୍ର ଭୂୟାଁ ଥିଲେ ଇଂରେଜ ଶାସକମାନଙ୍କର ପରମ ବନ୍ଧୁ । କୃଷ୍ଣପ୍ରସାଦ ପୂର୍ବ ଭଳି ଶ୍ୟାମସୁନ୍ଦର ଥିଏଟରରେ ଦେଶପ୍ରେମମୂଳକ ସଙ୍ଗୀତ ପରିବେଷଣ କରୁଥାନ୍ତି । ମାତ୍ର ଭାସ୍କରଚନ୍ଦ୍ରଙ୍କୁ ଏହା ଅସହ୍ୟ ହେଲା । ସେ ଏପରି ଦେଶପ୍ରେମମୂଳକ ସଙ୍ଗୀତ ଦେବାକୁ ମନା କଲେ । କୃଷ୍ଣପ୍ରସାଦଙ୍କ ସ୍ୱାଧୀନତା ଉପରେ ଏହା ଆକ୍ରମଣ ସଦୃଶ ଥିଲା । ଫଳରେ ସେ ଏଡ଼ତାଳ ଛାଡ଼ିବାକୁ ବାଧ୍ୟ ହେଲେ । କୃଷ୍ଣପ୍ରସାଦ ଏହା 'ଡଗର'ରେ ଉଲ୍ଲେଖ କରିଛନ୍ତି –

''କିନ୍ତୁ ସେଠାରେ ବଡ଼ଲୋକ ଜମିଦାରଙ୍କ ଦଳରେ ମୋର ପୂର୍ଣ୍ଣ ସ୍ୱାତନ୍ତ୍ର୍ୟ ଲୋପ ହେଲା । ସ୍ୱଦେଶୀ ପ୍ରଚାରର ଢେଉ ଲିଭିଗଲା, ଅବଶ୍ୟ ଅଳ୍ପ ଲାଞ୍ଛନା ପାଇ ନ ଥିଲି ତାଙ୍କ ଠାରୁ ।''

ଏଡ଼ତାଳରେ ରହିବା ଭିତରେ ସେ ଯାତ୍ରା ନାଟକର ସଙ୍ଗୀତଗୁଡ଼ିକୁ 'ଫୁଲ ହାର' ନାମରେ ଏକ ଗୀତିକବିତା ସଙ୍କଳନ ପ୍ରକାଶ କରିଥିଲେ ।

**ନାଟ୍ୟମନ୍ଦିର**

ଶ୍ୟାମସୁନ୍ଦର ଥିଏଟର ଛାଡ଼ିବାପରେ କୃଷ୍ଣପ୍ରସାଦ ପୁଣି ଯାଜପୁରକୁ ଫେରିଆସିଲେ । ପୁଣି ବିରଜା ଅପେରାକୁ ସଙ୍ଗଠିତ କରିବାରେ ପୂର୍ଣ୍ଣ ପ୍ରାଣରେ ଲାଗିପଡ଼ିଲେ । କେତେ ବର୍ଷ ପରେ ପୁଣି ଏ ଦଳ ଭାଙ୍ଗିଗଲା । ପୁଣି କଳାକାରମାନଙ୍କପାଇଁ ଗ୍ରାସାଚ୍ଛାଦନ ତାଙ୍କ ଆଗେ ଏକ ସମସ୍ୟା ହେଲା । ତାଙ୍କର ଦକ୍ଷିଣୀ ସଙ୍ଗୀତ ପଦ୍ଧତିରେ ସେମିତି ଜ୍ଞାନ ନ ଥିଲା । ସେ ସେହି ପଦ୍ଧତିରେ ଜ୍ଞାନ ଲାଭ କରିବାକୁ ବହୁଦିନୁ ଚାହୁଁଥିଲେ । ତେଣୁ ଦକ୍ଷିଣୀ ସଙ୍ଗୀତ ପଦ୍ଧତି ବିଷୟରେ ଜାଣିବାପାଇଁ ସେ ଗଞ୍ଜାମ ଗଲେ । ତିନି ଚାରି ଜଣ ମେଧାବୀ ଛାତ୍ର ମଧ୍ୟ ତାଙ୍କ ସଙ୍ଗେ ଥିଲେ । ସେ ସେଠାରେ ତେଲେଙ୍ଗା ସଙ୍ଗୀତର ପଦ୍ଧତି ଓ ଗୀତ ଆୟତ୍ତ କଲେ । ସେହି ସ୍ୱରରେ କେତେ ଗୀତ ମଧ୍ୟ ରଚନା କଲେ ।

ଗଞ୍ଜାମରେ ସେତେବେଳେ ବିଚ୍ଛିନ୍ନାଞ୍ଚଳ ଏକତ୍ରୀକରଣପାଇଁ ଆନ୍ଦୋଳନ ଚାଲିଥାଏ । ବ୍ରହ୍ମପୁରରେ ମଧ୍ୟ ପ୍ରକାଶ ପାଉଥାଏ ଶଶିଭୂଷଣ ରଥଙ୍କ ସମ୍ପାଦନାରେ

'ଦୈନିକ ଆଶା' ପତ୍ରିକା । କୃଷ୍ଣପ୍ରସାଦଙ୍କର ଶଶିଭୂଷଣ ରଥଙ୍କ ସହିତ ଘନିଷ୍ଠ ବନ୍ଧୁତା ହେଲା । ବ୍ରହ୍ମପୁରରେ ଥାଆନ୍ତି ସାରଥି ସାହୁ । ସେ ଆସ୍କା ଚିନି କଳର ପ୍ରଧାନ ମ୍ୟାନେଜର ଥିଲେ । ସେ ମଧ୍ୟ ବ୍ରହ୍ମପୁରରେ ଏକ ନାଟ୍ୟଦଳ ଗଢ଼ିଥିଲେ । ତାହା 'ବ୍ରହ୍ମପୁର ନାଟ୍ୟ ମନ୍ଦିର' ନାମରେ ପରିଚିତ ଥିଲା । କୃଷ୍ଣପ୍ରସାଦଙ୍କ ସହିତ ତାଙ୍କର ପରିଚୟ ହେଲା । କୃଷ୍ଣପ୍ରସାଦ ମଧ୍ୟ କେତେ ଜଣ ଅଭିନେତାଙ୍କୁ ନେଇ ସେହି ଦଳରେ ଅଭିନୟ କଲେ । ସେ ଦଳର ମ୍ୟାନେଜର ମଧ୍ୟ ହେଲେ । ଏହି ଦଳ କ୍ରମେ ଖ୍ୟାତିଲାଭ କଲା । ପାରଳାଖେମୁଣ୍ଡି, ଜଟଣୀ, ଧରାକୋଟ ଓ ପୁରୀ ପ୍ରଭୃତି ସ୍ଥାନରେ ଏହି ଯାତ୍ରାଦଳ ନାଟ୍ୟ ପରିବେଷଣ କଲା । ଏହି ଦଳରେ ଯେଉଁ ଅଭିନେତାମାନେ ଖ୍ୟାତି ଅର୍ଜନ କଲେ, ସେମାନେ ହେଲେ କାର୍ତ୍ତିକ କୁମାର ଘୋଷ, ରାମଚନ୍ଦ୍ର ମାଣିଆ ପ୍ରଭୃତି । ମାତ୍ର କୃଷ୍ଣପ୍ରସାଦ ସେଠାରେ ମଧ୍ୟ ବହୁକାଳ ରହିପାରିଲେ ନାହିଁ । ସେ ଯାଜପୁରକୁ ବାରମ୍ବାର ଯାଉଥିଲେ । ଫଳରେ ଦଳରେ ବହୁ ଅସୁବିଧା ଦେଖାଦେଲା । ଶେଷରେ ଆର୍ଟ ଥିଏଟରରେ ଯତୀନ୍ଦ୍ରବାବୁ ନୂଆ ମ୍ୟାନେଜର ଭାବେ ନିଯୁକ୍ତ ହେଲେ । କୃଷ୍ଣପ୍ରସାଦ ଏଥିରେ ଦଳ ସହିତ ଅସହଯୋଗ କଲେ । ଖୋର୍ଦ୍ଧାକୁ ଅଭିନୟପାଇଁ ଆସିଥିବାବେଳେ କୃଷ୍ଣପ୍ରସାଦ ଓ ଦଳ ମଧ୍ୟରେ କଳହ ତୀବ୍ର ହେଲା । କୃଷ୍ଣପ୍ରସାଦ ଦଳ ଛାଡ଼ି ପୁଣି ଯାଜପୁର ଫେରିଗଲେ ।

### ଗ୍ରାମଫୋନ କମ୍ପାନୀରେ ନିଯୁକ୍ତି

କୃଷ୍ଣପ୍ରସାଦ ସଙ୍ଗୀତରେ ପ୍ରବୀଣ ଥିଲେ । କଣ୍ଠ ଓ ଯନ୍ତ୍ର ଉଭୟ ସଙ୍ଗୀତରେ ତାଙ୍କର ବେଶ୍ ଦକ୍ଷତା ଥିଲା । ସେ ବିଭିନ୍ନ ସ୍ଥାନରେ ଥିବା ଯୋଗୁଁ ବିଭିନ୍ନ ସଙ୍ଗୀତ ପଦ୍ଧତି ଆୟତ୍ତ କରିଥିଲେ । ସେହି କାରଣରୁ କଲିକତାରେ 'His Master's Voice' ନାମକ ଏକ କମ୍ପାନୀ ତାଙ୍କୁ ତାଲିମଦାତା (ଟ୍ରେନର) ଭାବେ ନିଯୁକ୍ତ କଲେ । ଓଡ଼ିଆ ସଙ୍ଗୀତ ବିଭାଗର ସେ ହେଲେ ତାଲିମଦାତା । ଏହା ଫଳରେ ବହୁ ଓଡ଼ିଆ କଳାକାର ଲୋକଲୋଚନକୁ ଆସିଲେ । ପ୍ରତିଷ୍ଠା ଲାଭ କରିଥିବା ଶିଳ୍ପୀମାନେ ହେଲେ ୰ ନିମାଇଁ ଚରଣ ହରିଚନ୍ଦନ, ଅପନ୍ନା ପାଣିଗ୍ରାହୀ, ଗୋକୁଳାନନ୍ଦ ଶ୍ରୀଚନ୍ଦନ, ଗୋକୁଳାନନ୍ଦ ମହାନ୍ତି ପ୍ରଭୃତି । କୃଷ୍ଣପ୍ରସାଦ ମଧ୍ୟ ନିଜେ କେତେକ ରେକର୍ଡରେ ଗାଇଥିଲେ । ନିଜେ ମଧ୍ୟ ସଙ୍ଗୀତ ରଚନା କରି ସେଗୁଡ଼ିକୁ ରେକର୍ଡିଙ୍ଗ୍ କରିଥିଲେ । କୃଷ୍ଣପ୍ରସାଦଙ୍କ ରଚିତ ସଙ୍ଗୀତ 'ଏହି ଯା ଦେଖୁଚ', 'ଦୂର ଆକାଶରେ ନୀଳ ଚକ୍ରଟିଏ ଥାଇ' ନିମାଇଁ ଚରଣ ହରିଚନ୍ଦନ ଗାଇଥିଲେ । ସେଗୁଡ଼ିକ ମଧ୍ୟ ବିଶେଷ ଆଦୃତ ହୋଇଥିଲା ।

ଦୀର୍ଘ ଚାଳିଶ ବର୍ଷରୁ ଉର୍ଦ୍ଧ୍ୱ କାଳ କୃଷ୍ଣପ୍ରସାଦ ଓଡ଼ିଶାର ଗଡ଼ଜାତଠାରୁ ମୋଗଲବନ୍ଦି ଅଞ୍ଚଳରେ ନାଟକ ପରିବେଷଣ କଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ନିଷ୍ପ୍ରଦୀପ ପାଳନ କରିବାକୁ ସରକାର ଆଦେଶ ଦେବାରୁ ନାଟକ ପରିବେଷଣ

ସମ୍ଭବପର ହେଲା ନାହିଁ । 'ବିରଜା ଅପେରା' ସବୁଦିନପାଇଁ ବନ୍ଦ ହୋଇଗଲା । 'ଶ୍ୟାମସୁନ୍ଦର ଥିଏଟର' ଓ 'ନାଟ୍ୟମନ୍ଦିର' ମଧ୍ୟ ବନ୍ଦ ହୋଇଗଲା । ପାରିବାରିକ ଜଞ୍ଜାଳ ମଧ୍ୟରେ ରହି କୃଷ୍ଣପ୍ରସାଦ ଆଉ ନାଟ୍ୟଦଳ ଗଢ଼ିପାରିଲେ ନାହିଁ । କୃଷ୍ଣପ୍ରସାଦ ଶିକ୍ଷକତା ବୃତ୍ତି ଗ୍ରହଣ କରିବାକୁ ବାଧ୍ୟ ହେଲେ ।

**ଶିକ୍ଷକତା**

କୃଷ୍ଣପ୍ରସାଦଙ୍କର ଶିକ୍ଷକ ଜୀବନ ଆରମ୍ଭ ହେଲା ସୁଦୂର ବଲାଙ୍ଗୀରରେ । ବଲାଙ୍ଗୀରର ମହାରାଜା ଥିଲେ ରାଜେନ୍ଦ୍ର ନାରାୟଣ ସିଂହଦେଓ । ତାଙ୍କ ସଙ୍ଗେ କୃଷ୍ଣପ୍ରସାଦଙ୍କର ପରିଚୟ ଥିଲା । ୧୯୩୭ ମସିହାରେ 'ଉତ୍କଳ ସାହିତ୍ୟ ସମାଜ' ବାର୍ଷିକ ଅଧିବେଶନରେ ରାଜେନ୍ଦ୍ର ନାରାୟଣ ସଭାପତିତ୍ୱ କରିଥିଲେ । ସେହି ସଙ୍ଗୀତ ସମାରୋହରେ ସଭାପତିତ୍ୱ କରିଥିଲେ କୃଷ୍ଣପ୍ରସାଦ । ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ ତାଙ୍କ ପ୍ରତିଭାର ପରିଚୟ ପାଇ ତାଙ୍କୁ ବଲାଙ୍ଗୀର ଯିବାକୁ ନିମନ୍ତ୍ରଣ କରିଥିଲେ । ନାଟକ ପରିବେଷଣରେ ବ୍ୟସ୍ତ ଥିବାରୁ କୃଷ୍ଣପ୍ରସାଦଙ୍କର ବଲାଙ୍ଗୀର ଯିବା ସମ୍ଭବ ହୋଇ ନ ଥିଲା । ଯାତ୍ରା ଜଞ୍ଜାଳରୁ ମୁକ୍ତ ହେଲା ପରେ କୃଷ୍ଣପ୍ରସାଦ ବଲାଙ୍ଗୀର ଗଲେ । ସେଠାରେ ଦିଗମ୍ବର ଦାସ ନାମକ ଜଣେ ବଙ୍ଗାଳୀ ଭଦ୍ରବ୍ୟକ୍ତି ମହାରାଜାଙ୍କ ଉଇଭିଂ ସୁପରଭାଇଜର କାର୍ଯ୍ୟ କରୁଥିଲେ । ତାଙ୍କ ଗୃହରେ କୃଷ୍ଣପ୍ରସାଦ ଅବସ୍ଥାନ କଲେ ।

ବଲାଙ୍ଗୀରରେ ସେତେବେଳେ ଦୁର୍ଗାପୂଜା ଚାଲିଥାଏ । କୃଷ୍ଣପ୍ରସାଦଙ୍କ ବଲାଙ୍ଗୀରରେ ରହିବା ଖବର ପ୍ରଚାରିତ ହୋଇଗଲା । ବହୁ ସଙ୍ଗୀତଜ୍ଞ ଓ କଳାକାର ତାଙ୍କୁ ଭେଟିଲେ । ପୂଜା ଉପଲକ୍ଷେ କୋଶଳ କଳା ମଣ୍ଡଳର ସମ୍ପାଦକ ତ୍ରିବିକ୍ରମ ମିଶ୍ର ଓ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତାଙ୍କ ଉଦ୍ୟମରେ ଏକ ସଙ୍ଗୀତ ଆସରର ଆୟୋଜନ ହେଲା । ଏଥିରେ ସଭାପତି ଭାବେ ଯୋଗଦେଲେ ନିଜେ ପାଟଣାର ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ । କୃଷ୍ଣପ୍ରସାଦ ଏହି ସଙ୍ଗୀତ ଆସରର ବିଶେଷ ଆକର୍ଷଣ ଥିଲେ । ସେ ଅନ୍ୟାନ୍ୟ ସଙ୍ଗୀତ ମଧ୍ୟରେ 'ରସଗୋଲା' ନାମକ ଏକ ଗୀତଟିଏ ଗାନ କରି ସମସ୍ତଙ୍କୁ ମୁଗ୍ଧ କରିଦେଲେ । ମହାରାଜା ମଧ୍ୟ ଅତ୍ୟନ୍ତ ପ୍ରୀତ ହେଲେ । ଏହାପରେ ଶୈଳଶ୍ରୀ ପ୍ରାସାଦରେ କୃଷ୍ଣପ୍ରସାଦ ମହାରାଜାଙ୍କୁ ଭେଟିଲେ ଓ ନିଜର ଆର୍ଥିକ ଦୁରବସ୍ଥା କଥା ଜଣାଇଲେ । ମହାରାଜା କୃଷ୍ଣପ୍ରସାଦଙ୍କୁ ରାଜସଙ୍ଗୀତଜ୍ଞ (Court Musician) ଭାବେ କାର୍ଯ୍ୟ କରିବାକୁ ପ୍ରସ୍ତାବ ଦେଲେ । ଏହି ପଦବୀଟି ସମ୍ମାନଜନକ ମଧ୍ୟ ଥିଲା । ପାଟଣା ରାଜ୍ୟର ସିଭିଲ ସର୍ଜନ ଓ ଅନ୍ୟାନ୍ୟ ବଡ଼ ବଡ଼ ଅଫିସରଙ୍କ ଦରମା ଓ ଶ୍ରେଣୀ ସହିତ ସମକକ୍ଷ ଥିଲା । ମାତ୍ର ସ୍ୱାଧୀନଚେତା କୃଷ୍ଣପ୍ରସାଦ ରାଜଦରବାରରେ ଜଣେ ଅଧସ୍ତନ କର୍ମଚାରୀ ଭାବେ ଯୋଗଦେବା ସମ୍ମାନଜନକ ହେବ ନାହିଁ ମନେ କଲେ । ଫଳରେ ବଲାଙ୍ଗୀର ବିଦ୍ୟାଳୟ ସମୂହର

ସଙ୍ଗୀତ ଶିକ୍ଷକ ଭାବେ ତାଙ୍କୁ ନିଯୁକ୍ତି ମିଳିଲା । ପୃଥ୍ୱୀରାଜ ଉଚ୍ଚ ବିଦ୍ୟାଳୟ ହେଲା ତାଙ୍କର କର୍ମସ୍ଥଳୀ । କୃଷ୍ଣପ୍ରସାଦ ବି. ଏସ୍‌ସି. ପାସ୍ କରି ନ ଥିଲେ । ଫଳରେ ତାଲିମପ୍ରାପ୍ତ ବିଜ୍ଞାନ ଶିକ୍ଷକର ଦରମା ତାଙ୍କୁ ଦେବା ସମ୍ଭବ ନ ଥିଲା । ମହାରାଜା ଦୟାଶୀଳ ଥିଲେ । ସେ ବିଜ୍ଞାନ ଓ ସଙ୍ଗୀତ ପଦଟିଏ ସୃଷ୍ଟି କରି ତାଙ୍କୁ ସଙ୍ଗୀତ ଓ ବିଜ୍ଞାନ ଶିକ୍ଷକ ଭାବେ ନିଯୁକ୍ତ କଲେ ।

ଅଳ୍ପ କେତେ ଜଣ ଛାତ୍ରଙ୍କୁ ନେଇ କୃଷ୍ଣପ୍ରସାଦ ସଙ୍ଗୀତ ଶ୍ରେଣୀ ଆରମ୍ଭ କଲେ । ନିଜର ସାଙ୍ଗଠନିକ ଶକ୍ତି ବଳରେ ସଙ୍ଗୀତ ଶିକ୍ଷାକୁ ସୁଦୃଢ଼ କଲେ । ସଙ୍ଗୀତ ପ୍ରତି ଛାତ୍ରମାନଙ୍କର ଆଦର ବଢ଼ିଲା । କୃଷ୍ଣପ୍ରସାଦ ମଧ୍ୟ ସମସ୍ତଙ୍କର ସମ୍ମାନ ଲାଭ କଲେ । ଲୋକେ ତାଙ୍କୁ 'ସଙ୍ଗୀତଜ୍ଞ' ଭାବରେ ସମ୍ବୋଧନ କରୁଥିଲେ ।

କୃଷ୍ଣପ୍ରସାଦ ପ୍ରଥମେ ସଙ୍ଗୀତ ଶିକ୍ଷାରେ କେତେକ ସଂସ୍କାର ଆଣିଲେ । ଇଂଲଣ୍ଡରେ ରାଜାଙ୍କ ମଙ୍ଗଳ କାମନା କଲାପରି ବଲାଙ୍ଗୀରରେ ମଧ୍ୟ ରାଜାଙ୍କୁ ଭଗବାନ୍ ରକ୍ଷା କରନ୍ତୁ ବୋଲି ଗୀତ ବିଦ୍ୟାଳୟମାନଙ୍କରେ ଗାନ କରାଯାଉଥିଲା । କୃଷ୍ଣପ୍ରସାଦ କିନ୍ତୁ ଏହାକୁ ବନ୍ଦ କରିବାକୁ ଚାହିଁଲେ । ବଲାଙ୍ଗୀର ପାଟଣାର ପ୍ରାକୃତିକ ସୌନ୍ଦର୍ଯ୍ୟ ବର୍ଣ୍ଣନାପୂର୍ବକ ଏକ ସଙ୍ଗୀତ ନିଜେ ରଚନା କଲେ । ବିଦ୍ୟାଳୟମାନଙ୍କରେ ପିଲାଙ୍କଦ୍ୱାରା ତାହା ଗାନ କରିବାପାଇଁ ମହାରାଜାଙ୍କ ଅନୁମତି ଲୋଡ଼ିଲେ । ଉଦାରଚେତା ମହାରାଜା ମଧ୍ୟ ଏହାକୁ ପୂର୍ଣ୍ଣପ୍ରାଣରେ ସମର୍ଥନ କଲେ । ସେହିଦିନଠାରୁ ରାଜାଙ୍କ ମଙ୍ଗଳ ପରିବର୍ତ୍ତେ ଦେଶ ବନ୍ଦନା ବିଦ୍ୟାଳୟମାନଙ୍କରେ ଗାନ କରାଗଲା ।

ବଲାଙ୍ଗୀର-ପାଟଣାରେ ଥିଲାବେଳେ କୃଷ୍ଣପ୍ରସାଦ 'ରମାଇ ଦେଓ' ଓ 'ହରି ଅନ୍ୱେଷଣ' ନାଟକ ରଚନା କରିଥିଲେ । 'ରମାଇ ଦେଓ' ପାଟଣା ରାଜବଂଶ ଉପରେ ଲିଖିତ ଏକ ନାଟକ ଥିଲା । ମହାରାଜାଙ୍କ ଶ୍ରାବଣାଭିଷେକ ଓ ପୁଷ୍ୟାଭିଷେକ ଉତ୍ସବରେ ଏହି ନାଟକଟି ଅଭିନୀତ ହେଉଥିଲା । ଏହା ମଧ୍ୟ ବହୁବାର ଅଭିନୀତ ହୋଇଥିଲା ।

'ହରି ଅନ୍ୱେଷଣ' ନାଟକ ମଧ୍ୟ ମହାରାଜାଙ୍କ ଶ୍ରାବଣାଭିଷେକ ଉପଲକ୍ଷେ ଅଭିନୀତ ହୋଇଥିଲା । ଏହା ଦଶ ବର୍ଷରୁ କମ ଝିଅମାନଙ୍କୁ ନେଇ ଅଭିନୀତ ହୋଇଥିଲା । ନାଟକଟି ଏପରି ଉପଭୋଗ୍ୟ ହେଲା ଯେ ମହାରାଜା ନିଜେ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ରହି ନାଟକକୁ ଉପଭୋଗ କରିଥିଲେ ।

ବଲାଙ୍ଗୀରରେ କୃଷ୍ଣପ୍ରସାଦ ବହୁ ସଙ୍ଗୀତଜ୍ଞଙ୍କର ସାହଚର୍ଯ୍ୟ ପାଇଥିଲେ । ଭାତଖଣ୍ଡେ ଜୀଙ୍କର ଉତ୍ତରାୟଣ ପଦ୍ଧତିର ସ୍ରଷ୍ଟା ଲକ୍ଷ୍ନୌ ସଙ୍ଗୀତ ମହାବିଦ୍ୟାଳୟର ଅଧ୍ୟକ୍ଷ ରତନ ଝଙ୍କାରଙ୍କ ନିମନ୍ତ୍ରଣ ରକ୍ଷା କରି ସେ ଲକ୍ଷ୍ନୌ ଯାଇଥିଲେ ଓ ସେ ସଙ୍ଗୀତ ଅନୁଧ୍ୟାନ କରିଥିଲେ ।

ବଲାଙ୍ଗୀର ରହଣିକାଳ ମଧ୍ୟରେ ଭାରତର ଗଡ଼ଜାତ ରାଜନ୍ୟବର୍ଗଙ୍କର ଏକ ସମ୍ମିଳନୀ ହୋଇଥିଲା । ଏହି ଉପଲକ୍ଷେ ଏକ ସଙ୍ଗୀତ ଆସର ଓ ନାଟକ ଅଭିନୀତ ହୋଇଥିଲା । କେବଳ ଝିଅମାନଙ୍କୁ ନେଇ 'ଦକ୍ଷ ଯଜ୍ଞ' ଓ 'ହରି ଅନ୍ୱେଷଣ' ଗୀତିନାଟ୍ୟ ଅଭିନୀତ ହୋଇଥିଲା । କୃଷ୍ଣପ୍ରସାଦ ନିଜେ କଲିକତା ଯାଇ ଆବଶ୍ୟକୀୟ ସାମଗ୍ରୀ ଆଣିଥିଲେ । ନାଟକ ଉପଭୋଗ୍ୟ ହୋଇଥିଲା । ସଙ୍ଗୀତ ଆସର ମଧ୍ୟ ସଫଳତା ପ୍ରାପ୍ତି ହୋଇଥିଲା । ସେଥିପାଇଁ ବହୁ ଅର୍ଥ ପୁରସ୍କାରସ୍ୱରୂପ କୃଷ୍ଣପ୍ରସାଦ ପାଇଥିଲେ ।

କବିମଞ୍ଜୁଳ କୃଷ୍ଣପ୍ରସାଦ ସଙ୍ଗୀତ ଶିକ୍ଷକ ଭାବେ ଖ୍ୟାତି ଲାଭ କରିଥିଲେ । ବହୁ ଛାତ୍ର ଛାତ୍ରୀଙ୍କୁ ସେ ସଙ୍ଗୀତ ପ୍ରତି ଆକୃଷ୍ଟ କରାଇପାରିଥିଲେ । ଯେଉଁ ଛାତ୍ରମାନେ ପରବର୍ତ୍ତୀ ଜୀବନରେ ସଙ୍ଗୀତ କ୍ଷେତ୍ରରେ ଖ୍ୟାତିଲାଭ କଲେ ସେମାନେ ହେଲେ, ପୂର୍ବତନ ମନ୍ତ୍ରୀ ରାମପ୍ରସାଦ ମିଶ୍ର, ଆଡଭୋକେଟ ଶ୍ରୀଧର ମିଶ୍ର, କୋଶଳ କଳାମଣ୍ଡଳର ସମ୍ପାଦକ ତ୍ରିବିକ୍ରମ ମିଶ୍ର, ଅଧ୍ୟାପକ ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା ପ୍ରଭୃତି ।

ବଲାଙ୍ଗୀରରେ ରହିଥିଲାବେଳେ ପିତା ଗୋବିନ୍ଦ ପ୍ରସାଦ ଯାଜପୁରରେ ରୋଗଗ୍ରସ୍ତ ହୋଇପଡ଼ିଲେ । ୧୯୪୫ ମସିହା ଆଡ଼କୁ କୃଷ୍ଣପ୍ରସାଦ ଯାଜପୁରକୁ ଫେରିଆସିଲେ । ଆଉ ବଲାଙ୍ଗୀର ଯିବା ସମ୍ଭବ ହୋଇ ନ ଥିଲା ।

### ପୁନଶ୍ଚ ଶିକ୍ଷକତା

ପିତା ଗୋବିନ୍ଦ ପ୍ରସାଦଙ୍କ ମୃତ୍ୟୁପରେ କୃଷ୍ଣପ୍ରସାଦ କିଛି କାଳ ଯାଜପୁରରେ ରହିଲେ । ଏହାପରେ ସେ ଏକ ନାଟ୍ୟ ଦଳ ଗଢ଼ି ସୋରୋ ଗଲେ । ସେଠାରେ ଯାତ୍ରା କରୁଥିଲାବେଳେ ସୋରୋ ହାଇସ୍କୁଲର ପ୍ରଧାନଶିକ୍ଷକ ମାଧବଚନ୍ଦ୍ର ପାତ୍ରଙ୍କ ସହିତ ତାଙ୍କର ପରିଚୟ ହେଲା । ସେ କୃଷ୍ଣପ୍ରସାଦଙ୍କୁ ତାଙ୍କ ବିଦ୍ୟାଳୟରେ ଶିକ୍ଷକଭାବେ ନିଯୁକ୍ତି ଦେଲେ । ସେଠାରେ ଥିଲାବେଳେ ମଧ୍ୟ ସେ ଆଉ ଗୋଟିଏ ନାଟ ଦଳ ଗଢ଼ିଲେ । ତା'ର ନାମ ରଖିଥିଲେ, 'ବାସନ୍ତୀ ଥିଏଟର' ।

୧୯୪୭ ମସିହା ଆଡ଼କୁ କୃଷ୍ଣପ୍ରସାଦ ପୁଣି ଯାଜପୁର ଫେରିଆସି ଯାଜପୁର ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ବିଜ୍ଞାନ ଶିକ୍ଷକଭାବେ ଯୋଗ ଦେଲେ । ସେ ସେଠାରେ ଭୂଗୋଳ ଓ ବିଜ୍ଞାନ ପଢ଼ାଇବାରେ ଏକ ନୂତନ ପନ୍ଥା ବାହାର କଲେ । ସେ ସ୍ୱରଚିତ ଜାତୀୟ ସଙ୍ଗୀତ ପିଲାମାନଙ୍କୁ ତାଲିମ ଦେଉଥିଲେ । ସେତେବେଳେ ଶିକ୍ଷାବିଭାଗର ଇନ୍‌ସପେକ୍ଟର ଥିଲେ ଡଃ ମାୟାଧର ମାନସିଂହ । ତାଙ୍କ ସଙ୍ଗେ କୃଷ୍ଣପ୍ରସାଦଙ୍କ ବନ୍ଧୁତ୍ୱ ସ୍ଥାପିତ ହୋଇଥିଲା । ତାଙ୍କ ନିର୍ଦ୍ଦେଶରେ ଯାଜପୁରରେ ହୋଇଥିବା କେରିଏର କନ୍‌ଫରେନ୍‌ସର ସଙ୍ଗୀତ ରଚନା କରିଥିଲେ । ସେ ଯାଜପୁର ହାଇସ୍କୁଲରେ ଆଠ ବର୍ଷ ରହିଥିଲେ ।

୧୯୫୫ ମସିହା ବେଳକୁ ସେ ଶିକ୍ଷକ ଜୀବନରୁ ବିଦାୟ ନେଲେ ।

୧୯୫୫ ମସିହାରୁ ସେ ୧୯୬୮ ମସିହା ପର୍ଯ୍ୟନ୍ତ ତେର ବର୍ଷ ସେ ତାଙ୍କର ସାଧନାପୀଠ କାଳୀମନ୍ଦିର ଚଉପାଢ଼ୀରେ କଟାଇଲେ । ସେଠାରେ କେତେଖଣ୍ଡ ଖଟ, ଚେୟାର, ବେଞ୍ଚ ପଡ଼ିଥିଲା । ଖଟତଳେ ଟେବୁଲ ଉପରେ ହାରମୋନିୟମ, ତବଲା, ବେହେଲା, ମୃଦଙ୍ଗ ଓ ପଖୋଉଜ ପ୍ରଭୃତି ଥିଲା – ଯାହାକି ହୋଇଥିଲା, ତାଙ୍କର ଜୀବନସାଥୀ । ସେ ଥିଲେ ମା' କାଳୀଙ୍କର ଭକ୍ତ । ତାଙ୍କରି ପୂଜା ଅର୍ଚ୍ଚନାରେ ଦିନ କଟିଯାଉଥିଲା । କୃଷ୍ଣପ୍ରସାଦ ସେ ବୟସରେ ଆଉ ନାଟଦଳ ଗଢ଼ିବା ଅବସ୍ଥାରେ ନ ଥିଲେ । ପରିଣତ ବୟସରେ ସେ ପାଲାଗାୟକମାନଙ୍କପାଇଁ ଖଣ୍ଡକାବ୍ୟ ରଚନା କରିବା ଦିଗରେ ଲାଗିପଡ଼ିଲେ । ସେ ମଧ୍ୟ ଓଡ଼ିଶାର ବହୁ ପ୍ରତିଷ୍ଠିତ ମାସିକ ପତ୍ରିକାମାନଙ୍କପାଇଁ ଗଳ୍ପ, ପ୍ରବନ୍ଧ ଆଦି ଲେଖିବାରେ ମନୋନିବେଶ କଲେ । 'ଡଗର', 'ଚତୁରଙ୍ଗ', ଆସନ୍ତା କାଲି, 'ଝଙ୍କାର' ପ୍ରଭୃତି ପ୍ରତିଷ୍ଠିତ ପତ୍ରିକାମାନଙ୍କରେ ତାହା ପ୍ରକାଶ ପାଇଲା । ତାଙ୍କର ଅନୁଭୂତିମୂଳକ ଲେଖା 'ଆଖଡ଼ାଘରେ ବୈଠକ' ମଧ୍ୟ 'ଝଙ୍କାର'ରେ ନିୟମିତଭାବେ ପ୍ରକାଶିତ ହେଲା ।

### ସୃଷ୍ଟି ସମ୍ଭାର

ନାଟ୍ୟ ସମାଲୋଚକ ବୀରକିଶୋର ଦାସ 'ଯୁଗେ ଯୁଗେ ନାଟ୍ୟ ସାହିତ୍ୟ'ରେ· କବିମଞ୍ଜୁଳ କୃଷ୍ଣପ୍ରସାଦଙ୍କ ଲିଖିତ ନାଟକଗୁଡ଼ିକର ଏକ ତାଲିକା ଦେଇଛନ୍ତି । ତେବେ 'କୃଷ୍ଣପ୍ରସାଦ ଗ୍ରନ୍ଥାବଳୀ'ର ସମ୍ପାଦକ ୨୩ ଖଣ୍ଡ ନାଟକର ଏକ ତାଲିକା ଦେଇଛନ୍ତି । ସେଥିରେ ୧୮ଟି ନାଟକର ଆଲୋଚନା କରାଯାଇଛି । ସେଥିମଧ୍ୟରୁ ଦୁଇଟି ନାଟକ 'ମିଠା ମହୁରା' ଓ 'କାରା ମନ୍ଦିର' ପ୍ରକାଶ ପାଇଛି । ଅନ୍ୟ ୧୬ଟି ନାଟକ ଅପ୍ରକାଶିତ ।

### କାରାମନ୍ଦିର

କୃଷ୍ଣପ୍ରସାଦ ମୁଖ୍ୟତଃ ଭାଗବତର ବିଷୟବସ୍ତୁକୁ ନେଇ ଏହି ନାଟକ ରଚନା କରିଛନ୍ତି ।

ଦେବକୀଙ୍କର ବିବାହଠାରୁ କୃଷ୍ଣଙ୍କ ଜନ୍ମ ଓ ନନ୍ଦଙ୍କ ଗୃହରେ ପ୍ରବେଶ ପର୍ଯ୍ୟନ୍ତ ବିଷୟ ଏଥିରେ ବର୍ଣ୍ଣନା କରାଯାଇଛି । ଏଗୁଡ଼ିକ ମଧ୍ୟ ଭାଗବତରେ ବର୍ଣ୍ଣନା କରାଯାଇଥିବା କାହାଣୀର ଅନୁରୂପ । ତେବେ କାହାଣୀ ବିନ୍ୟାସରେ କୃଷ୍ଣପ୍ରସାଦ ନିଜର କେତେକ ମୌଳିକତା ଦେଖାଇଛନ୍ତି ।

ନାଗରାଜ ବିଷୟକ କାହାଣୀ ନାଟ୍ୟକାରଙ୍କ କଳ୍ପନାପ୍ରସୂତ । ନାଗରାଜା ଥିଲେ ଧର୍ମପରାୟଣ । ବିଷ୍ଣୁଭକ୍ତ ମଧ୍ୟ । କଂସ ଦ୍ୱାରା ପ୍ରଜାଗଣ ଅତ୍ୟାଚାରିତ ହୋଇ ନାଗ ରାଜ୍ୟରେ ଆଶ୍ରୟ ନେଇଛନ୍ତି । ଫଳରେ ନାଗରାଜ ଅନନ୍ତ କଂସର କୋପ

ଦୃଷ୍ଟିରେ ପଡ଼ିଛନ୍ତି । କଂସ ତାଙ୍କ ରାଜ୍ୟକୁ ଆକ୍ରମଣ କରି ଧ୍ୱଂସ କରିଦେଇଛି । ଅନନ୍ତ ବଣରେ ବୁଲିଛନ୍ତି । ଅତି ଚତୁରତାର ସହିତ କଂସର ନିଧନ ଉପାୟ ଖୋଜିଛନ୍ତି । ଅନନ୍ତ ଛଦ୍ମବେଶରେ ଉଗ୍ରସେନଙ୍କୁ ଭେଟିଛନ୍ତି । ଉଭୟେ କଂସର ନିଧନ ଉପାୟ ଚିନ୍ତା କରିଛନ୍ତି । କୃଷ୍ଣଙ୍କ କାରାଗାରରେ ଜନ୍ମ ହେବାମାତ୍ରେ ବସୁଦେବ କୃଷ୍ଣଙ୍କୁ ଗୋପପୁରକୁ ନେବାବେଳେ ଅନନ୍ତ ଓ ଉଗ୍ରସେନ ସହାୟକ ହୋଇଛନ୍ତି । ବର୍ଷା ସମୟରେ ଅନନ୍ତ ଫଣା ଟେକି ଚାଲିଛନ୍ତି । କୃଷ୍ଣ ନିରାପଦ୍‌ରେ ନନ୍ଦଙ୍କ ଘରେ ପହଞ୍ଚିଛନ୍ତି । ଯଥାସମୟରେ କଂସର ମୃତ୍ୟୁ ହୋଇଛି ।

ନାଟକରେ ହାସ୍ୟରସ ପରିବେଷଣ କ୍ଷେତ୍ରରେ ନୂତନତ୍ୱ ଆଣିଛନ୍ତି । ଓଡ଼ିଆ ଯାତ୍ରା ଏପରିକି ଆଦିପର୍ବର ଅନ୍ୟ ନାଟକଗୁଡ଼ିକ ଅଶ୍ଳୀଳତା ଦୋଷଯୁକ୍ତ ହୋଇଥିଲାବେଳେ କୃଷ୍ଣପ୍ରସାଦଙ୍କ ରଚିତ 'କାରା ମନ୍ଦିର' ସେଥିରୁ ମୁକ୍ତ ଅଟେ । ହାସ୍ୟରସ ପରିବେଷଣପାଇଁ ସ୍ୱତନ୍ତ୍ର ଚରିତ୍ରର ଅବତାରଣା କରାଯାଇ ନାହିଁ । ରାଜ୍ୟର ପ୍ରଜା, ଯଥା – ରତନା, ହାଡୁ, ରତନାମା, ଗୁମାସ୍ତା ଆଦି ଚରିତ୍ର ମାଧ୍ୟମରେ ହାସ୍ୟରସ ପରିବେଷିତ ହୋଇଅଛି ।

'କାରା ମନ୍ଦିର' ନାଟକରେ ୨୦ଟି ସଙ୍ଗୀତ ଅଛି । ସଙ୍ଗୀତଗୁଡ଼ିକ ପ୍ରାଚୀନ ରାଗରାଗିଣୀ ଯୁକ୍ତ ହୋଇଛି । ସଙ୍ଗୀତ ସହିତ ନୃତ୍ୟର ସମାବେଶ ହୋଇଛି । ମୋଟାମୋଟି ନାଟକଟି ମାର୍ଜିତ ଓ ଲୋକପ୍ରିୟ ହୋଇଥିଲା ।

ନାଟକଟି ସଫଳତା ମଧ୍ୟ ପ୍ରାପ୍ତ ହୋଇଥିବାର ପ୍ରକାଶ ପାଇଥିଲା ।

### କୃଷ୍ଣଚରିତ

'କୃଷ୍ଣଚରିତ' ନାଟକରେ କୃଷ୍ଣଙ୍କର ସମଗ୍ର ବ୍ରଜଲୀଳା ଓ ମଥୁରା ବିଜୟ ବର୍ଣ୍ଣିତ । ଏହା ଭାଗବତର ପାରମ୍ପରିକ ନାଟ୍ୟରୂପ ହେଲେହେଁ ଏଥିରେ ନାଟ୍ୟକାର କେତେକ କ୍ଷେତ୍ରରେ ମୌଳିକତା ଦେଖାଇଛନ୍ତି ।

ବିଷ୍ଣୁଙ୍କର କୃଷ୍ଣ ରୂପରେ ଜନ୍ମର କାରଣ କେବଳ କଂସର ନିଧନପାଇଁ ନୁହେଁ; ଏକ ନୂତନ ଧର୍ମର ସଂସ୍ଥାପନା କରିବା – ଏହା କୃଷ୍ଣପ୍ରସାଦ ନାଟକରେ ଦର୍ଶାଇଛନ୍ତି ।

ନାଟକରେ ନାଟ୍ୟକାରଙ୍କ ପାଣ୍ଡିତ୍ୟ ଓ ବହୁଶାସ୍ତ୍ରଦର୍ଶିତା ସୁସ୍ପଷ୍ଟ । ଭାଗବତରେ ଆଧ୍ୟାତ୍ମିକତା ଅବଲମ୍ବନରେ ଚରିତ୍ରଗୁଡ଼ିକ ସୃଷ୍ଟି ହୋଇଥିଲାବେଳେ ନାଟକରେ ସେହି ଚରିତ୍ରଗୁଡ଼ିକୁ ବିଭିନ୍ନ ଦୃଷ୍ଟିରୁ ଉପସ୍ଥାପିତ କରାଯାଇଛି । ପ୍ରତ୍ୟେକ ଚରିତ୍ର ସ୍ୱତନ୍ତ୍ର ଆଦର୍ଶର ପ୍ରତୀକଭାବେ ରହିଛନ୍ତି ।

ନାଟକରେ କୃଷ୍ଣ ସଚ୍ଚିଦାନନ୍ଦ ବିଗ୍ରହ, କଂସ ଭୋଗ-ଅହଙ୍କାରର ପ୍ରତୀକ । ନନ୍ଦ ସଂସାରୀଭାବେ ପ୍ରକଟିତ ହୋଇଛନ୍ତି । ବସୁଦେବ ବିବେକୀ । ବକାସୁର ନିନ୍ଦୁକ, ଚାଣୂର ଦାମ୍ଭିକ । ଅକ୍ରୂର ଅହଙ୍କାରୀ ମନ୍ତ୍ରୀ, କିନ୍ତୁ ପରମାତ୍ମା ତାଙ୍କର ବାଞ୍ଛନୀୟ ।

ରଜକ ଓ ମାଳାକାରଙ୍କର ତୀବ୍ର ଭୋଗଲାଳସା ରହିଛି । ସତ୍ୟାନନ୍ଦ ସତ୍ୟାନୁରାଗୀ । ସତ୍ୟାନନ୍ଦଙ୍କ ମାଧ୍ୟମରେ ନାଟ୍ୟକାର ନିଜର ବକ୍ତବ୍ୟ ଉପସ୍ଥାପିତ କରିଛନ୍ତି ।

କଂସର ମହିଷୀ ଅସ୍ତି ଚରିତ୍ର ମଧ ଏହିଭଳି । ସେ ପତିବ୍ରତା ଓ କୃଷ୍ଣଗତପ୍ରାଣା । ପତିଙ୍କପାଇଁ କିନ୍ତୁ କୃଷ୍ଣଙ୍କୁ ଛାଡ଼ିଛନ୍ତି । କଂସର ନିଧନ ପରେ ସେ ଆତ୍ମହତ୍ୟା କରିଛନ୍ତି । ଯଶୋଦା ପୁତ୍ର-ଗର୍ବିଣୀ ଜନନୀଟିଏ । ଦେବକୀ ସେହିପରି ଘନ ଅନ୍ଧାର ମଧ୍ୟରେ ମୁକ୍ତିର ଶୁଭ ପ୍ରଭାତପାଇଁ ଅପେକ୍ଷାରତା ନାରୀଟିଏ । ରାଧା ଦିବ୍ୟ ପ୍ରେମର ଆରାଧିକା । କୃଷ୍ଣ ରୂପରେ ତମାଳକୁ ଆଲିଙ୍ଗନ କରିଛନ୍ତି । ଭ୍ରମରକୁ ଧରି ଶ୍ୟାମ ବୋଲି ଚୁମ୍ବନ ଦେଇଛନ୍ତି । ରାଧାଙ୍କର ଏହି ପ୍ରେମ ସାଧାରଣ ପ୍ରେମ ନୁହେଁ । ଏ ପ୍ରେମ ଆତ୍ମା ପରମାତ୍ମାର, ପ୍ରକୃତି-ପୁରୁଷର । କୃଷ୍ଣପ୍ରସାଦ ରାଧାକୃଷ୍ଣଙ୍କ ପ୍ରେମ ଲୀଳାକୁ ଅଧ୍ୟାତ୍ମ ଦୃଷ୍ଟିକୋଣରୁ ବିଚାର କରିଛନ୍ତି ।

ନାଟକର ସଂଳାପ ମଧ୍ୟ ହୃଦୟସ୍ପର୍ଶୀ । କବି ଏକ ଭାବପ୍ରବଣ ମୁହୂର୍ତ୍ତରେ ସଂଳାପ ରଚନା କରିଥିବାରୁ ଏହା ଏତେ ହୃଦ୍ୟ ଓ କରୁଣ ହୋଇପାରିଛି ।

'କୃଷ୍ଣଚରିତ'ରେ ପଚିଶ ଗୋଟି ସଙ୍ଗୀତ ଅଛି । ପ୍ରାଚୀନ କବିଙ୍କର ଜନପ୍ରିୟ ସଙ୍ଗୀତ ପରିବେଷଣ କରି ନାଟ୍ୟକାର ନୂତନତ୍ୱ ଆଣିପାରିଛନ୍ତି ।

'କୃଷ୍ଣଚରିତ' ନାଟକର ଭାଷା ସରଳ ନୁହେଁ । ଏହା ଭାବାନୁସାରୀ ହୋଇଥିବାରୁ ସାଧାରଣ ଦର୍ଶକଙ୍କ ପକ୍ଷେ ବୁଝିବା ସେତେ ସହଜସାଧ୍ୟ ନୁହେଁ । ମାତ୍ର 'କୃଷ୍ଣଚରିତ' ନାଟକଟି ଅଙ୍କ ଓ ଦୃଶ୍ୟ ସମ୍ବଳିତ ଏକ ସାର୍ଥକ ଓ ପୂର୍ଣ୍ଣାଙ୍ଗ ନାଟକ । ସେ ସମୟରେ ମଧ ଏହା ଅଭୂତପୂର୍ବ ମଞ୍ଚ ସଫଳତା ଲାଭ କରିଥିଲା ।

## ହରି ଅନ୍ୱେଷଣ

'ହରି ଅନ୍ୱେଷଣ' ନାଟକଟି ବଲାଙ୍ଗୀରରେ ଥିବା ସମୟରେ ରଚିତ ହୋଇଥିଲା । ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ଶ୍ରାବଣାଭିଷେକ ଉପଲକ୍ଷେ ୧୯୪୩ ମସିହା ଅଗଷ୍ଟ ମାସ ୧୫ ତାରିଖରେ ଶୈଳଶ୍ରୀ ଦରବାର ହଲ୍‌ରେ ଏହା ଅଭିନୀତ ହୋଇଥିଲା ବୋଲି ପୂର୍ବରୁ ବର୍ଣ୍ଣିତ । ଏଥିରେ ବଲାଙ୍ଗୀରର ବାଳିକା ବିଦ୍ୟାଳୟର ଛାତ୍ରୀମାନେ କେବଳ ଅଂଶ ଗ୍ରହଣ କରିଥିଲେ । ଏହା ନାଟ୍ୟକାରଙ୍କ ଏକ ମୌଳିକ ରଚନା ।

ବିଷୟବସ୍ତୁର ପଟ୍ଟଭୂମି ବନସ୍ତ । ଗୋଟିଏ ବ୍ୟାଧ ବନ ମଧ୍ୟରେ ଗୋଟିଏ ପକ୍ଷୀକୁ ମାରିବାପାଇଁ ଏକାଗ୍ର ଚିତ୍ତରେ ନଳ ପରେ ନଳ ସଂଯୋଗ କରିଚାଲିଛି । ନିକଟରେ ଥିଲେ ମୁନି ଅଗସ୍ତି । ଅଜାଣତରେ ବ୍ୟାଧର ଗୋଡ଼ ମୁନିଙ୍କ ଉପରେ ପଡ଼ିଛି । ମୁଣ୍ଡ ଉପରେ ଅଜଗର ସାପ ଗ୍ରାସ କରିବାକୁ ଉଦ୍ୟତ । ଆଗରେ ପୁଣି ଏକ ବ୍ୟାଘ୍ର ବ୍ୟାଧକୁ ଆକ୍ରମଣ କରିବାକୁ ମାଡ଼ି ଆସୁଛି । ମାତ୍ର ବ୍ୟାଧର ସେ ଆଡ଼କୁ

ନଜର ନାହିଁ । ମୁନି ଆଶ୍ଚର୍ଯ୍ୟ ହୋଇଛନ୍ତି । ଯେଉଁ ଏକାଗ୍ରତାପାଇଁ ସେ କଠୋର ତପସ୍ୟାରତ, ତାକୁ ବ୍ୟାଧ ଆୟତ୍ତ କରିଛି । ବ୍ୟାଧର ଏକାଗ୍ର ମନର ସହାୟତାରେ ନିଜର ଅଭୀଷ୍ଟ ଦେବ ଚିନ୍ତାମଣିଙ୍କୁ କିପରି ଦର୍ଶନ କରିବେ, ସେହି କଥା ଚିନ୍ତା କରିଛନ୍ତି । ମୁନିଙ୍କ ବକ୍ଷ ଉପରେ ବ୍ୟାଧଟି ଗୋଡ଼ ରଖିଥିବାରୁ ମୁନି କ୍ରୋଧାନ୍ୱିତ ହୋଇଛନ୍ତି । ବ୍ୟାଧଟି ନିଜର ଭୁଲ ସ୍ୱୀକାର କରିଛି । କ୍ଷମାପ୍ରାର୍ଥନା କରିଛି । ବୃନ୍ଦାବନ ଯାଇ ରାଧାକୃଷ୍ଣଙ୍କୁ ଆଣିବାକୁ ମୁନି ଆଦେଶ ଦେଇଛନ୍ତି । ନ ଆଣିଲେ ବ୍ରହ୍ମାଗ୍ନିରେ ତା'ର ବଂଶ ନାଶ ହେବ ବୋଲି କହିଛନ୍ତି ।

ବ୍ୟାଧଟି ଚିନ୍ତାମଣିଙ୍କ ଅନ୍ୱେଷଣରେ ବାହାରିଛି । ଯମୁନା ତୀରେ ତୀରେ ବନରୁ ବନକୁ ବୁଲିଛି । ପ୍ରଭୁ ଅନେକ ପରୀକ୍ଷା କରିଛନ୍ତି । କ୍ଷୁଧାରେ ଦେହ ଅବସନ୍ନ ହୋଇପଡ଼ିଛି । ପରକ୍ଷଣରେ ବ୍ୟାଧଟି ଝରଣାର ଜଳ ପିଇ କ୍ଷୁଧା ନିବାରଣ କରିଛି । ନିଜ ପରିବାର ଚିନ୍ତା ତାକୁ ବ୍ୟଥିତ କରିଛି । କେତେବେଳେ ନିତ୍ୟଧାମର ରାସ ଦୃଶ୍ୟରେ ଆତ୍ମବିଭୋର ହୋଇଉଠିଛି ।

ଶେଷରେ ସମସ୍ତ ପରୀକ୍ଷାର ଅନ୍ତ ଘଟିଛି । ତା'ର ଏକାଗ୍ରତାରେ ପ୍ରଭୁ ସନ୍ତୁଷ୍ଟ ହୋଇଛନ୍ତି । ରାଧାକୃଷ୍ଣଙ୍କୁ ଦୃଢ଼ ବନ୍ଧନରେ ଆବଦ୍ଧ କରି ବ୍ୟାଧ ଆଣି ମୁନିଙ୍କୁ ଦେଇଛି । ସେତେବେଳେ ବ୍ୟାଧଟି ଦେଖିଛି ତା'ର କୁଟୀର ପ୍ରାସାଦରେ ପରିଣତ ହୋଇଛି । ପୁତ୍ର ରାଜା ହୋଇଛି । ଧନ ସମ୍ପତ୍ତିରେ ତା'ର ଘର ପୂର୍ଣ୍ଣ ହୋଇଛି । ବ୍ୟାଧକୁ କିନ୍ତୁ ସେସବୁ ଆକର୍ଷିତ କରିପାରି ନାହିଁ । ଚକ୍ଷୁ ସମ୍ମୁଖରେ ଉଦ୍‌ଭାସିତ ହୋଇଛି ଅନନ୍ତ ଦିବ୍ୟଧାମର ଆଲୋକ । କାନରେ ବାଜୁଛି ମୋହନ ବଂଶୀର ଧ୍ୱନି । ସବୁ ତୁଚ୍ଛ ମନେ କରିଛି ବ୍ୟାଧ । ସେହି ଅନନ୍ତ ପଥର ଯାତ୍ରୀ ହୋଇଛି । ପଛରେ ପଡ଼ିରହିଛି ତା'ର ନିତିଦିନିଆ ସଂସାର ।

ନାଟକଟି ଏକାଙ୍କିକା, ମୋଟେ ଆଠ ଗୋଟି ଦୃଶ୍ୟ ରହିଛି । ଭକ୍ତିରସ ନାଟକଟିର ଛତ୍ରେ ଛତ୍ରେ ଫୁଟିଉଠିଛି ।

କୃଷ୍ଣପ୍ରସାଦ ସଙ୍ଗୀତ ସଂଯୋଜନା କରିଛନ୍ତି । ସଙ୍ଗୀତଗୁଡ଼ିକ ମଧ୍ୟ ଭକ୍ତିରସାତ୍ମକ । ନିର୍ମଳ ଭକ୍ତିରେ ପ୍ରଭୁ ଭଗବାନ୍ ଭକ୍ତର ଅଧୀନ ଯେ ହୋଇପାରନ୍ତି, ତାହାହିଁ ନାଟକର ଉପଜୀବ୍ୟ ।

ନାଟକଟି ଅସାଧାରଣ ସଫଳତା ଲାଭ କରିଥିଲା । ଗଡ଼ଜାତ ରାଜନ୍ୟ ମଣ୍ଡଳୀ ତରଫରୁ ନାଟ୍ୟକାରଙ୍କୁ ଆଠ ହଜାର ଟଙ୍କା ଓ ବହୁ ମୂଲ୍ୟ ପରିଚ୍ଛଦ ପୁରସ୍କାର ଦିଆଯାଇଥିଲା । ଏହା ନାଟ୍ୟକାରଙ୍କ ଏକ ସାର୍ଥକ ସୃଷ୍ଟି ।

## ସୀତା ବନବାସ

ବାଲ୍ମୀକି ରାମାୟଣ ଅବଲମ୍ବନରେ କୃଷ୍ଣପ୍ରସାଦ ରଚନା କରିଛନ୍ତି 'ସୀତା ବନବାସ' ଗୀତାଭିନୟ । ଲଙ୍କାରୁ ପ୍ରତ୍ୟାବର୍ତ୍ତନ ପରେ ରାମଚନ୍ଦ୍ର ଓ ସୀତା ମଧୁର ଦାମ୍ପତ୍ୟ ଜୀବନ କଟାଉଥିବାବେଳେ ରଜକ ଓ ରଜକୀଙ୍କର କଥୋପକଥନରୁ ସୀତାଙ୍କ ଚରିତ୍ର ଉପରେ ସନ୍ଦେହ ପ୍ରକାଶ କରିଛନ୍ତି ରାମଚନ୍ଦ୍ର । ତାଙ୍କ ଆଦେଶ ପାଳନ କରି ଲକ୍ଷ୍ମଣ ସୀତାଙ୍କୁ ଭାଗୀରଥୀ ତଟଭୂମିରେ ପରିତ୍ୟାଗ କରିଆସିଛନ୍ତି । ସୀତାଙ୍କୁ ଦେଖି ବାଲ୍ମୀକି ମୁନି ତାଙ୍କ ଆଶ୍ରମକୁ ନେଇଛନ୍ତି । ସେଠାରେ ସୀତା ତପସ୍ୱିନୀ ଭାବେ ଜୀବନ ଯାପନ କରିଛନ୍ତି । ଲବ ଓ କୁଶଙ୍କର ଜନ୍ମ ହୋଇଛି । ସେମାନେ ବାଲ୍ମୀକିଙ୍କ ଆଶ୍ରମରେ ବଢ଼ିଛନ୍ତି ଓ ଅସ୍ତ୍ରଶସ୍ତ୍ର ଚାଳନାରେ ନିପୁଣ ହୋଇଛନ୍ତି । ରାମଚନ୍ଦ୍ର ରାଜସୂୟ ଯଜ୍ଞ ଅଯୋଧ୍ୟାରେ କରିଛନ୍ତି । ତାଙ୍କ ଅଶ୍ୱ ବିଭିନ୍ନ ସ୍ଥାନରେ ବୁଲୁଥିଲାବେଳେ ଲବ କୁଶ ତାଙ୍କୁ ଧରିନେଇଛନ୍ତି । ଅଶ୍ୱ ମୁକ୍ତିପାଇଁ ରାମ ଲକ୍ଷ୍ମଣ ଯୁଦ୍ଧ କରିଛନ୍ତି ଓ ଶେଷରେ ନିହତ ହୋଇଛନ୍ତି । ବାଲ୍ମୀକି ମୁନି ପ୍ରବେଶ କରି ତାଙ୍କୁ ଜୀବନଦାନ କରିଛନ୍ତି । ରାଜସୂୟ ଯଜ୍ଞରେ ଲବକୁଶ ମୁନିକୁମାର ଭାବରେ ପ୍ରବେଶ କରି ରାମାୟଣ ଗାନ କରିଛନ୍ତି । ରାମଙ୍କ ସହିତ ତାଙ୍କର ପରିଚୟ ହୋଇଛି । ସୀତାଙ୍କୁ ମଧ୍ୟ ଆଶ୍ରମରୁ ଅଯୋଧ୍ୟାକୁ ନିଆଯାଇଛି । ବାଲ୍ମୀକି ରାମାୟଣରେ ବର୍ଣ୍ଣିତ ଅଛି ଯେ ରାଜସୂୟ ଯଜ୍ଞରେ ରାମଚନ୍ଦ୍ର ଓ ସୀତାଙ୍କର ସାକ୍ଷାତ୍ ହୋଇଛି । ଅଗ୍ନିପରୀକ୍ଷା ପରେ ସୀତା ପାତାଳରେ ପ୍ରବେଶ କରିଛନ୍ତି । ମାତ୍ର କୃଷ୍ଣପ୍ରସାଦଙ୍କ ଗୀତାଭିନୟରେ ଅନ୍ୟ ବିଷୟ ଅବତାରଣା କରାଯାଇଛି । ଜଣେ ବ୍ରାହ୍ମଣ ଅତି ସନ୍ତର୍ପଣରେ ସମାଲୋଚନା କରୁଥିବା ଶୁଣି ସୀତା ପାତାଳରେ ପ୍ରବେଶ କରିଛନ୍ତି । ଏହା ଗୀତାଭିନୟର ମର୍ଯ୍ୟାଦାହାନି କରିଥିବା ମନେହୁଏ ।

ତେବେ ଦୁଃଖ ଯନ୍ତ୍ରଣାରେ ଦଗ୍ଧୀଭୂତ ହୋଇଥିବା ସୀତାଙ୍କ ପତିଭକ୍ତିର ଯେଉଁ ଔଜ୍ଜ୍ୱଲ୍ୟ ପରିସ୍ଫୁଟ ତାହା ଗୀତାଭିନୟକୁ ଉଚ୍ଚତମ ସୋପାନକୁ ନେଇଯାଇଛି, ଏଥିରେ ସନ୍ଦେହ ନାହିଁ । ସ୍ୱଭାବକବି ଗଙ୍ଗାଧର ମେହେରଙ୍କ ପ୍ରଭାବ ଏହା ଉପରେ ବିଶେଷ ପଡ଼ିଥିବା ଲକ୍ଷ୍ୟ କରାଯାଏ ।

## ହରିଶ୍ଚନ୍ଦ୍ର

କୃଷ୍ଣପ୍ରସାଦ କୃଷ୍ଣ ଓ ରାମଙ୍କ ଚରିତ୍ରକୁ ନେଇ ନାଟକ ରଚନା କଲା ପରେ ରଘୁବଂଶର ଅନ୍ୟତମ ପ୍ରଖ୍ୟାତ ରାଜା ହରିଶ୍ଚନ୍ଦ୍ରଙ୍କୁ ନେଇ ନାଟକ ରଚନା କରିଛନ୍ତି ।

ବଶିଷ୍ଠ ଓ ବିଶ୍ୱାମିତ୍ରଙ୍କ କଳହ ପୁରାଣର ଅତି ସୁନ୍ଦର ଆଖ୍ୟାନ । ବଶିଷ୍ଠ ବିଶ୍ୱାମିତ୍ରଙ୍କ ଯଜ୍ଞକୁ ଚଣ୍ଡାଳର ଯଜ୍ଞ ବୋଲି କହି ସେଥିରେ ଯୋଗ ଦେଇ ନାହାନ୍ତି ।

ବିଶ୍ୱାମିତ୍ର କ୍ରୋଧାନ୍ୱିତ ହୋଇ ଏକ ସ୍ୱତନ୍ତ୍ର ଜଗତ ସୃଷ୍ଟି କରିବାକୁ ଧ୍ୟାନମଗ୍ନ ହୁଅନ୍ତି । ତାଙ୍କ ଧ୍ୟାନଭଙ୍ଗପାଇଁ କାମିନୀଗଣ ଉପସ୍ଥିତ ହୁଅନ୍ତି । ସେମାନଙ୍କୁ ବିଶ୍ୱାମିତ୍ର ବନ୍ଦୀ କରିଛନ୍ତି । ସେହି କାମିନୀମାନେ କ୍ରନ୍ଦନ କଲାବେଳେ ମୃଗୟାକୁ ଯାଇଥିବା ହରିଶ୍ଚନ୍ଦ୍ର ସେଠାରେ ପହଞ୍ଚିଛନ୍ତି ଓ ସେମାନଙ୍କର ବନ୍ଧନ ମୋଚନ କରିଛନ୍ତି । ସେ ତେଣୁ ବିଶ୍ୱାମିତ୍ରଙ୍କ କୋପଦୃଷ୍ଟିରେ ପଡ଼ିଛନ୍ତି । ହରିଶ୍ଚନ୍ଦ୍ର ରାଜସିଂହାସନ ପ୍ରଦାନ କରି ବିଶ୍ୱାମିତ୍ରଙ୍କୁ ଶାନ୍ତ କରିବାକୁ ଚେଷ୍ଟା କରିଛନ୍ତି । ଅଯୋଧ୍ୟା ରାଜସିଂହାସନ ଦେଲା ପରେ ଦକ୍ଷିଣା ଦେବାପାଇଁ ନିଜର ପତ୍ନୀ ଶୈବ୍ୟା ଓ ପୁତ୍ର ରୋହିତାଶ୍ୱ ସହିତ କାଶୀ ଯାତ୍ରା କରିଛନ୍ତି । ପାଞ୍ଚ ଶହ ଟଙ୍କା ବିନିମୟରେ ଶୈବ୍ୟା ଜଣେ ଗୃହସ୍ଥର ପରିଚାରିକା ହୋଇଛନ୍ତି । ରାଜା ହରିଶ୍ଚନ୍ଦ୍ର ଶ୍ମଶାନରକ୍ଷକ ଭାବରେ ଯୋଗ ଦେଇ ଅବଶିଷ୍ଟ ପାଞ୍ଚ ଶତ ଟଙ୍କା ଆଣି ବିଶ୍ୱାମିତ୍ରଙ୍କୁ ଦକ୍ଷିଣା ଦେଇଛନ୍ତି ।

ଗୃହସ୍ଥ ବ୍ରାହ୍ମଣ ଘରେ ଶୈବ୍ୟା ସମସ୍ତ ଅତ୍ୟାଚାର ସହ୍ୟ କରିଛନ୍ତି । ସର୍ପାଘାତରେ ପୁତ୍ର ରୋହିତାଶ୍ୱର ମୃତ୍ୟୁ ହୋଇଛି । କାଶୀର ଶ୍ମଶାନକୁ ଶବଦାହପାଇଁ ଯାଇଛନ୍ତି ଶୈବ୍ୟା ଏକାକିନୀ ହୋଇ । ଶ୍ମଶାନରକ୍ଷକ ହରିଶ୍ଚନ୍ଦ୍ର ପ୍ରାଣପ୍ରିୟା ପତ୍ନୀ ଶୈବ୍ୟାଙ୍କୁ ଚିହ୍ନିପାରି ନାହାନ୍ତି । ଶବଦାହର ଦେୟ ଦେଇ ନ ପାରି ଗୃହସ୍ଥ ବ୍ରାହ୍ମଣ ଘରକୁ ଫେରିଛନ୍ତି । ବିଶ୍ୱାମିତ୍ର ମାୟା ରଚିଛନ୍ତି । ରାଜ୍ୟର ଯୁବରାଜଙ୍କୁ ଜଣେ ରାକ୍ଷସ ପ୍ରଚଣ୍ଡ ହତ୍ୟା କରିଛି । ଶୈବ୍ୟାଙ୍କ ବସନ ରକ୍ତରଞ୍ଜିତ ହୋଇଛି। ଶେଷରେ ସେ ଧରାହୋଇ ରାଜଦରବାରରେ ବିଚାରର ସମ୍ମୁଖୀନ ହୁଅନ୍ତି । ସେ ଯୁବରାଜଙ୍କ ହତ୍ୟାକାରିଣୀ ପ୍ରମାଣିତ ହେବା ପରେ ତାଙ୍କୁ ମୃତ୍ୟୁଦଣ୍ଡ ଦିଆଯାଇଛି । ଶୈବ୍ୟାଙ୍କୁ ହତ୍ୟା କରିବାପାଇଁ ଶ୍ମଶାନ ରକ୍ଷକ ହରିଶ୍ଚନ୍ଦ୍ରଙ୍କୁ ଆଦେଶ ଦିଆଯାଇଛି । ନିର୍ବିକାରଭାବେ ଘାତକର କର୍ତ୍ତବ୍ୟ ହରିଶ୍ଚନ୍ଦ୍ର ପାଳନ କରିବାକୁ ଉଦ୍ୟତ ହୋଇଛନ୍ତି । କିନ୍ତୁ ବିଶ୍ୱାମିତ୍ର ସେଠାରେ ଉପସ୍ଥିତ ହୋଇ ସମସ୍ତ ସତ୍ୟ ଉନ୍ମୋଚନ କରିଛନ୍ତି । ହରିଶ୍ଚନ୍ଦ୍ର ଓ ଶୈବ୍ୟାଙ୍କ ମିଳନ ହୋଇଛି ।

ନାଟକଟି କରୁଣ ରସାତ୍ମକ ହୋଇଛି । ଭୋଗ ଅପେକ୍ଷା ତ୍ୟାଗର ମହିମା ନାଟକର ମୁଖ୍ୟ ପ୍ରତିପାଦ୍ୟ ବିଷୟ ହୋଇଥିବା ଜଣାଯାଏ । ବିଶ୍ୱାମିତ୍ର ତପସ୍ୱୀ, ତରୁତଳବାସୀ, ଘଟଣା ଚକ୍ରରେ ସେ କିନ୍ତୁ ହୋଇଛନ୍ତି ରାଜ-ଚକ୍ରବର୍ତ୍ତୀ । ହରିଶ୍ଚନ୍ଦ୍ର ରାଜା – ଭୋଗ ଓ ବିଳାସର ପ୍ରତୀକ । କିନ୍ତୁ ହସି ହସି ଚାଲିଯାଇଛନ୍ତି ଶ୍ମଶାନକୁ । ତ୍ୟାଗ ନିକଟରେ ସନ୍ନ୍ୟାସୀର ଅହଙ୍କାର ପରାଜିତ ହୋଇଛି ।

ସାମସମୟିକ ନାଟ୍ୟକାରମାନଙ୍କ ଅନୁରୂପ ସୃଷ୍ଟି ମଧ୍ୟରେ କୃଷ୍ଣପ୍ରସାଦଙ୍କ 'ହରିଶ୍ଚନ୍ଦ୍ର' ଏକ ସଫଳ ସୃଷ୍ଟି ।

## ଗୟାସୁର ବଧ

କପିଳ ସଂହିତାରେ ଅଛି ଯେ ପୂର୍ବକାଳରେ ଗୟା ନାମକ ଏକ ପରାକ୍ରମୀ ଅସୁର ଥିଲା । ସେ ମଧ୍ୟ ମହାନ୍ ଧାର୍ମିକ ଥିଲା । ତାହାର ଧର୍ମ ଆଚରଣ ଦେଖି ଦେବତାମାନେ ଈର୍ଷାପରାୟଣ ହେଲେ । ତା'ର ନିଧନପାଇଁ ଉପାୟ ଚିନ୍ତା କରିବାକୁ ଲାଗିଲେ । ମାତ୍ର କୌଣସି ଉପାୟ ନ ପାଇ ତାହା ସହିତ ସାକ୍ଷାତ୍ କଲେ । ତାକୁ ଯଜ୍ଞରେ ପଶୁ ପରି ବଳିଦେବାପାଇଁ କହନ୍ତେ, ଗୟାସୁର ରାଜି ହୋଇଛି । ମାତ୍ର ତା'ର ଗୋଟିଏ ସର୍ତ୍ତ ଥିଲା ଯେ ତା'ର ଶିର, ନାଭି ଓ ପାଦ ଯେଉଁ ସ୍ଥାନରେ ପଡ଼ିବ ସେଗୁଡ଼ିକ ପିଣ୍ଡଦାନପାଇଁ ପ୍ରସିଦ୍ଧି ଲାଭ କରିବ । ଏହାର ନାଭି ଉତ୍କଳର ପବିତ୍ର ବୈତରଣୀ ନଦୀ ନିକଟରେ ପଡ଼ିବାରୁ ଏହା ନାଭିଗୟା ନାମରେ ବିଦିତ ହେଲା । ଯାଜପୁରର ଏହି ନାଭିକୂପରେ ପିତୃପୁରୁଷଙ୍କପାଇଁ ପିଣ୍ଡ ଦିଆଯାଏ ବୋଲି 'କପିଳ ସଂହିତା'ରେ ଉଲ୍ଲେଖ ଅଛି । ଏହି ପୌରାଣିକ କାହାଣୀକୁ ନେଇ 'ଗୟାସୁର ବଧ' ନାଟକର ପରିକଳ୍ପନା କରିଛନ୍ତି କୃଷ୍ଣପ୍ରସାଦ ।

ନାଟ୍ୟକାରଙ୍କ ନିଜ ଗ୍ରାମ ଯାଜପୁରର ବିରଜା ଦେବୀଙ୍କ କ୍ଷେତ୍ର ପରିସରରେ ନାଭିଗୟା ତୀର୍ଥ ଅବସ୍ଥିତ । ଏହି ନାଟକଟି ବିରଜା ଅପେରାର ଜନପ୍ରିୟ ନାଟକ ।

ନାଟକର ପ୍ରଥମ ଭାଗରେ ଗୟାସୁରର ପିତା ତ୍ରିପୁରାସୁରର ନିଧନ ବର୍ଣ୍ଣିତ । ନାଟକର ଦ୍ୱିତୀୟ ଭାଗରେ ଗୟାସୁର ବଧ ବର୍ଣ୍ଣନା କରାଯାଇଛି ।

ତ୍ରିପୁରାସୁରର ବଧ ପରେ ପୁତ୍ର ଗୟାସୁରକୁ କୌଶଳରେ ହତ୍ୟା କରିବାପାଇଁ ଇନ୍ଦ୍ର ଚେଷ୍ଟା କରିଛନ୍ତି । ନାରଦ କିନ୍ତୁ ଗୟାସୁରର ସହାୟକ ହୋଇଛନ୍ତି । ଗୟାସୁର ନାରାୟଣଙ୍କ ଉପାସନା କରିଛି । ନାରାୟଣ ମୁଗ୍ଧ ହୋଇ ଗୟାସୁରକୁ ଶ୍ରେଷ୍ଠ ଯୋଦ୍ଧା ହେବାକୁ ବର ଦେଇଛନ୍ତି । ପିତୃହତ୍ୟାର ପ୍ରତିଶୋଧପାଇଁ ଗୟାସୁର ସ୍ୱର୍ଗ ଆକ୍ରମଣ କରିଛି । ସେ ଅନାୟାସରେ ଇନ୍ଦ୍ରଙ୍କୁ ପରାସ୍ତ କରି ସ୍ୱର୍ଗରାଜ୍ୟ ଅଧିକାର କରିଛି । ଦେବତାମାନଙ୍କୁ ରକ୍ଷା କରିବାପାଇଁ ତଥା ଇନ୍ଦ୍ରଙ୍କୁ ପୁଣି ସ୍ୱର୍ଗରେ ରାଜପଦରେ ଅଧିଷ୍ଠିତ କରିବାପାଇଁ ନାରାୟଣ ଗୟାସୁରକୁ ତା'ର ଜୀବନ ଦେବାକୁ କହିଛନ୍ତି । ଗୟାସୁର ମଧ୍ୟ ଅକାତରରେ ଜୀବନଦାନ କରିଛି । ତା'ର ସର୍ତ୍ତ ଅନୁସାରେ ତା'ର ନାଭି ଯାଜପୁରର ବୈତରଣୀ ନଦୀ କୂଳରେ ପଡ଼ିଛି । ତାହା ନାଭିଗୟାରେ ନାମିତ ହୋଇ ମହାତୀର୍ଥରେ ପରିଣତ ହୋଇଛି ।

ନାଟକରେ ପାଞ୍ଚୋଟି ଅଙ୍କ ରହିଛି । ବିଭିନ୍ନ ରାଗର କୋଡ଼ିଏଟି ସଙ୍ଗୀତ ନାଟକରେ ଦିଆଯାଇଛି । ପ୍ରାଚୀନ ରାଗରାଗିଣୀର ପ୍ରୟୋଗ ସହିତ କେତେକ ତେଲଙ୍ଗୀ ସ୍ୱର ତାଳର ସମାବେଶ ହୋଇଛି ।

ନାଟକରେ ସଂଳାପ ଅଧିକାଂଶ ସ୍ଥଳରେ ଅମିତ୍ରାକ୍ଷର ଛନ୍ଦରେ ଦିଆଯାଇଛି । ବିଭିନ୍ନ ଚରିତ୍ରମାନଙ୍କ ମାଧ୍ୟମରେ ହାସ୍ୟରସ ଫୁଟାଇ ଦିଆଯାଇଛି । ମାର୍ଜିତ ରୁଚିର ହାସ୍ୟ ପରିବେଷଣ ଏହି ନାଟକର ବିଶେଷତ୍ୱ ବୋଲି ଜଣାଯାଏ ।

ଆଲୋଚକଙ୍କ ଭାଷାରେ –

'' 'ଗୟାସୁର ବଧ' ନାଟ୍ୟକାରଙ୍କ ପ୍ରଥମ ପର୍ଯ୍ୟାୟର ନାଟକ ଭାବରେ ବସୁ ପ୍ରତିଭାର ସ୍ୱାକ୍ଷର ବହନ କରିଛି ।''

**ବଭ୍ରୁବାହନ**

'ବଭ୍ରୁବାହନ' ନାଟକ ମହାଭାରତର ଅଶ୍ୱମେଧପର୍ବର ଏକ ଅନ୍ତର୍ଗତ କାହାଣୀ ଅବଲମ୍ବନରେ ରଚିତ । ଅର୍ଜ୍ଜୁନଙ୍କ ସହ ପୁତ୍ର ବଭ୍ରୁବାହନଙ୍କ ଯୁଦ୍ଧ, ଅର୍ଜ୍ଜୁନଙ୍କର ମୃତ୍ୟୁ ଓ ପୁନର୍ଜନ୍ମ ଲାଭ ଏଥିରେ ବର୍ଣ୍ଣିତ ।

ବଭ୍ରୁବାହନଙ୍କ ମାତା ହେଉଛନ୍ତି ଅର୍ଜ୍ଜୁନଙ୍କ ପତ୍ନୀ ଚିତ୍ରାଙ୍ଗଦା । ବଭ୍ରୁବାହନ ମାତାଙ୍କ ନିକଟରେ ପିତାଙ୍କର ପରିଚୟ ଚାହିଁଛନ୍ତି । ତାଙ୍କ ସହିତ କିପରି ଦେଖାହେବ ସେ ଉପାୟ କହିବାପାଇଁ ଅନୁରୋଧ କରିଛନ୍ତି । ଚିତ୍ରାଙ୍ଗଦାଙ୍କ ସହିତ କଥୋପକଥନ ବେଳେ ପାଣ୍ଡବଙ୍କ ଯଜ୍ଞ ଅଶ୍ୱ ବଭ୍ରୁବାହନଙ୍କ ରାଜ୍ୟରେ ପ୍ରବେଶ କରିବାର ଖବର ପହଞ୍ଚିଛି । ବଭ୍ରୁ ଯଜ୍ଞ ଅଶ୍ୱକୁ ଧରିବାରୁ ଅର୍ଜ୍ଜୁନଙ୍କ ସହ ତାଙ୍କର ସଂଗ୍ରାମ ହୋଇଛି । ମାତା ଚିତ୍ରାଙ୍ଗଦା ପିତାଙ୍କ ସହ ଯୁଦ୍ଧରୁ ନିବୃତ୍ତ ହେବାକୁ ପୁତ୍ରଙ୍କୁ ଆଦେଶ ଦେଇଛନ୍ତି । ଆଦେଶ ମୁତାବକ ବଭ୍ରୁ ବହୁ ମୂଲ୍ୟବାନ୍ ଉପଢୌକନ ନେଇ ଅର୍ଜ୍ଜୁନଙ୍କ ଶିବିରକୁ ଯାଇଛନ୍ତି । ମାତ୍ର ଅର୍ଜ୍ଜୁନ ଉପଢୌକନ ଫେରାଇ ଦେଇଛନ୍ତି । ପୁତ୍ର ବୋଲି ମଧ ସ୍ୱୀକାର କରି ନାହାନ୍ତି । ଚିତ୍ରାଙ୍ଗଦାଙ୍କୁ 'ନଟୀ' ବୋଲି କହିଛନ୍ତି ।

ବଭ୍ରୁବାହନ ଅର୍ଜ୍ଜୁନଙ୍କର ପୁଣି ଯୁଦ୍ଧ ହୋଇଛି । ଅର୍ଜ୍ଜୁନଙ୍କୁ ପୂର୍ବରୁ ଗଙ୍ଗାଦେବୀ ଅଭିଶାପ ଦେଇଥିଲେ ଯେ ପୁତ୍ର ହସ୍ତରେ ତାଙ୍କର ମୃତ୍ୟୁ ହେବ । ଅର୍ଜ୍ଜୁନଙ୍କର ଅନ୍ୟତମ ପତ୍ନୀ ଉଲୂପୀ ଗଙ୍ଗାଙ୍କୁ ତପସ୍ୟାରେ ସନ୍ତୁଷ୍ଟ କରିଥିଲେ । ଗଙ୍ଗା ମଧ ଅର୍ଜ୍ଜୁନଙ୍କୁ ନର୍କ ଭୋଗରୁ ମୁକ୍ତି ଦେଇଥିଲେ ଓ ନାଗରାଜଙ୍କ ମଣି ସାହାଯ୍ୟରେ ଜୀବନ ଫେରାଇ ଆଣି ହେବ ବୋଲି ସୂଚନା ଦେଇଥିଲେ । ଯୁଦ୍ଧରେ ପୂର୍ବ ଅଭିଶାପ ଫଳରେ ଅର୍ଜ୍ଜୁନଙ୍କର ମୃତ୍ୟୁ ହୋଇଛି । ମଣି ସାହାଯ୍ୟରେ ଅର୍ଜ୍ଜୁନଙ୍କୁ ବଞ୍ଚାଇ ଦିଆଯାଇଛି । ଶେଷରେ ପିତା ଓ ପୁତ୍ରର ମିଳନ ହୋଇଛି ।

ଏହି ନାଟକରେ ଅମିତ୍ରାକ୍ଷର ଛନ୍ଦର ପ୍ରୟୋଗ ନାଟକକୁ ସାଫଲ୍ୟମଣ୍ଡିତ କରିଛି । ସଂଳାପ ପାତ୍ରମୁଖୀ ଓ ଭାବଗର୍ଭକ ହୋଇଥିବା ଲକ୍ଷ୍ୟ କରାଯାଏ । ତେବେ ଅନେକ ସ୍ଥଳରେ ଏହା ଦୀର୍ଘ ଓ ସ୍ଥଳେ ସ୍ଥଳେ କବିତ୍ୱପୂର୍ଣ୍ଣ ହୋଇପଡ଼ିଛି ।

ତେଣୁ ରସ ଆସ୍ୱାଦନରେ ବ୍ୟାଘାତ ଘଟିଛି । ସଙ୍ଗୀତ ରଚନାରେ କୃଷ୍ଣପ୍ରସାଦ ସଫଳତା ଲାଭ କରିଛନ୍ତି । ଏହି ନାଟକରେ ପ୍ରାୟ କୋଡ଼ିଏଟି ସଙ୍ଗୀତ ଅଛି । କୃଷ୍ଣପ୍ରସାଦଙ୍କ କେତେକ ଅତି ଲୋକପ୍ରିୟ ସଙ୍ଗୀତ ଏଥିରେ ମିଳେ । ମୋଟାମୋଟି କହିବାକୁ ଗଲେ ବଭ୍ରୁବାହନ ନାଟକଟି କୃଷ୍ଣପ୍ରସାଦଙ୍କ ଏକ ସଫଳ ନାଟକ ।

### ମେଘନାଦ ବଧ

ଏହାର ରଚନା କାଳ ୧୯୪୪ ମସିହା । ପରିଣତ ବୟସରେ ରଚନା ହେତୁ ଏହା ଉଚ୍ଚକୋଟୀର ହୋଇଥିବା ଜଣାଯାଏ ।

ବୀରବାହୁର ମୃତ୍ୟୁପରେ ରାବଣ ବ୍ୟଥିତ ହୋଇଛି । ପାଟରାଣୀ ମନ୍ଦୋଦରୀଙ୍କ ପୁତ୍ର ମେଘନାଦ ରାମ-ଲକ୍ଷ୍ମଣଙ୍କ ନିଧନପାଇଁ ପ୍ରତିଜ୍ଞା କରିଛି । ପିତାମାତାଙ୍କ ଆଶୀର୍ବାଦ ମଧ୍ୟ ଏଥିପାଇଁ ସେ ପାଇଛି । ଯୁଦ୍ଧ କରିବା ପୂର୍ବରୁ ରାମଲକ୍ଷ୍ମଣଙ୍କୁ ପରାସ୍ତ କରିବାପାଇଁ ନିକୁମ୍ଭିଳାରେ ବିରାଟ ଯଜ୍ଞର ଆୟୋଜନ କରିଛି । ସଫଳ ହେଲେ ଅଗ୍ନିଦେବଙ୍କ ବରପାଇ ଇନ୍ଦ୍ରଜିତ୍ ଯେ ଅଜେୟ ହେବ, ତାହା ବିଭୀଷଣ ଜଣାଇଦେଇଛନ୍ତି । ତାଙ୍କ ମନ୍ତ୍ରଣାରେ ଲକ୍ଷ୍ମଣ ନିକୁମ୍ଭିଳା ଯଜ୍ଞଶାଳା ଛଦ୍ମବେଶରେ ପହଞ୍ଚିଛନ୍ତି ଓ ମେଘନାଦଙ୍କୁ ବଧ କରିଛନ୍ତି ।

ନାଟକରେ କୃଷ୍ଣପ୍ରସାଦ ରାମଚନ୍ଦ୍ରଙ୍କୁ ପରମବ୍ରହ୍ମ ଭାବେ ଗ୍ରହଣ କରିଛନ୍ତି । ତଥାପି ମାୟା ସୀତାଙ୍କର ହତ୍ୟା ସମ୍ବାଦରେ ସାଧାରଣ ମାନବ ଭଳି ଦୁଃଖାଭିଭୂତ ହୋଇପଡ଼ିଛନ୍ତି । 'ମେଘନାଦ ବଧ'ରେ ରାବଣ ଅହଙ୍କାରୀ ବା ଗର୍ବରେ ମଦମତ୍ତ ନୁହେଁ । ରାମଚନ୍ଦ୍ର ଓ ସୀତାଙ୍କ ମହନୀୟତା ପ୍ରକାଶ କାଳରେ ସେ ଭାବବିହ୍ୱଳ ହୋଇ ପଡ଼ିଛି । ସୀତାଙ୍କ ଚରିତ୍ରର ମହନୀୟତା ମଧ୍ୟ ଏଥିରେ ପ୍ରତିପାଦିତ ହୋଇଛି । ଶକ୍ତି ପୂଜାର ମହତ୍ତ୍ୱ ଏଥିରେ ପ୍ରକାଶ ପାଇଛି ।

ନାଟକରେ ତିନୋଟି ଅଙ୍କ ଓ ପନ୍ଦରଟି ଦୃଶ୍ୟ ରହିଛି । ପ୍ରାୟ ଦୁଇ ଘଣ୍ଟା ଅଭିନୟପାଇଁ ନାଟକଟି ଉଦ୍ଦିଷ୍ଟ । ଏହା ଗୀତିନାଟ୍ୟ ବା ଗୀତାଭିନୟ ନ ହୋଇ ଗଦ୍ୟ ସଂଳାପଯୁକ୍ତ ହୋଇଛି । ଗଦ୍ୟ ପ୍ରୟୋଗ ଫଳରେ 'ମେଘନାଦ ବଧ' ନାଟକଟି ସଫଳତା ଲାଭ କରିଛି ।

ନାଟକରେ ଯଜ୍ଞ ସ୍ଥଳୀ ନିକୁମ୍ଭିଳା ବଟର ବର୍ଣ୍ଣନାରେ ନାଟ୍ୟକାରଙ୍କ ମୌଳିକତା ଲକ୍ଷ୍ୟ କରାଯାଏ । ଯାଦୁବିଦ୍ୟାରେ ପାରଙ୍ଗମ କାଳନେମି ନିକୁମ୍ଭିଳା ଯଜ୍ଞଶାଳା ନିର୍ମାଣ କରିଛି । ପାହାଡ଼କୁ ୧୨ କୋଶ ସୁଡ଼ଙ୍ଗ ପଡ଼େ । ବାଟ ସବୁ କାଚରେ ତିଆରି ହୋଇଛି । ତହିଁରେ ତେଲ ଢଳା ଯାଇଛି । ବିଷାକ୍ତ ବାଷ୍ପ ଚାରିଆଡ଼େ ଛଡ଼ାଯାଇଛି । ଗୋଟିଏ ନୁହେଁ, ୧୨ଟି ଯଜ୍ଞମଣ୍ଡପ ନିର୍ମାଣ କରାଯାଇଛି । ସବୁଗୁଡ଼ିକ ପୁଣି ଏକ ଧରଣର । ତହିଁ ଉପରେ ୧୨ ଜଣ ମେଘନାଦ ମାୟା ବେଶରେ ଆହୁତି ଦେଉଛନ୍ତି । ଏହାର ଦୃଷ୍ଟାନ୍ତ –

''ଗିରି ଦରି ବିଦାରି ପାତାଳପୁରୀ ଘେରି
ସୁଡ଼ଙ୍ଗପଥ ନିରିମାଇ
ପ୍ରବାଳ ମରକତ କନକପୁର ମତ
ତନ୍ମଧରେ ଅନ୍ଧକାରରେ ଥାଇ ।
ଯଜ୍ଞାଗାର ଗୋଲକଧନ୍ଦା ପରକାର
ବେଷ୍ଟିତ ସହସ୍ର ପ୍ରାଚୀର
ଶାରଦା ବୃହସ୍ପତି କି ଅବା ଗଣପତି
କଳି ବୁଦ୍ଧିକୁ ଅଗୋଚର ।''

**ଧ୍ରୁବ ଚରିତ**

ଓଡ଼ିଆ ଭାଗବତକାର ଜଗନ୍ନାଥ ଦାସଙ୍କ ଶ୍ରୀମଦ୍ଭାଗବତରେ 'ଧ୍ରୁବ ଚରିତ' ବର୍ଣ୍ଣିତ । ଏହି କାହାଣୀ ଅବଲମ୍ବନରେ କୃଷ୍ଣପ୍ରସାଦ ରଚନା କରିଛନ୍ତି 'ଧ୍ରୁବ ଚରିତ' ।

କୃଷ୍ଣପ୍ରସାଦଙ୍କ କାହାଣୀ 'ଭାଗବତ' କାହାଣୀ ଅନୁରୂପ ନୁହେଁ । ଏହା ଭିନ୍ନ ରୂପରେ ଉପସ୍ଥାପିତ ହୋଇଛି । ନାଟକ ଆରମ୍ଭରେ ରାଜା ଉତ୍ତାନପାଦଙ୍କ ଦୁଇ ପତ୍ନୀ ସୁନୀତି ଓ ସୁରୁଚି ମଧ୍ୟରେ କଳହ ହୋଇଛି । ସୁନୀତିଙ୍କୁ ମାରିଦେବାପାଇଁ ସୁରୁଚି ଚକ୍ରାନ୍ତ କରିଛନ୍ତି । ଗୋବର୍ଦ୍ଧନ ନାମକ ଏକ ପରିଚାରକଙ୍କୁ ନିଯୁକ୍ତ କରିଛନ୍ତି । ଗୋବର୍ଦ୍ଧନ ସୁନୀତିଙ୍କୁ ହତ୍ୟା କରିବାକୁ ଉଦ୍ୟମ କରିଛନ୍ତି । ସୁନୀତି କିନ୍ତୁ ଆତୁର ନିବେଦନ କରିବା ଫଳରେ ରକ୍ଷା ପାଇ ବଣକୁ ପଳାୟନ କରନ୍ତି । ଶେଷରେ ଅତ୍ରି ମୁନିଙ୍କ ଆଶ୍ରମରେ ଆଶ୍ରୟ ନେଇଛନ୍ତି । ସମୟକ୍ରମେ ବର୍ଷଣମୁଖର ଏକ ରାତ୍ରିରେ ମୁନି ଆଶ୍ରମରେ ଆତିଥ୍ୟ ଗ୍ରହଣ କରନ୍ତି ରାଜା ଉତ୍ତାନପାଦ । ରାଣୀ ମୁନିକୁମାରୀ ଛଦ୍ମବେଶରେ ରାଜାଙ୍କ ସେବା କରିଛନ୍ତି । ରାଜା ଛଦ୍ମବେଶୀ ମୁନିକୁମାରୀଙ୍କ ମିଳନ ଚାହିଁଛନ୍ତି । ସୁନୀତି ମଧ କହିଛନ୍ତି –

''ଆସ ପ୍ରାଣପତି ରାତି ପ୍ରେମରସେ ପାଉ ।'' ରାଣୀ ଗର୍ଭଧାରଣ କରନ୍ତି । ଧ୍ରୁବଙ୍କର ଜନ୍ମ ହୋଇଛି । ଆଶ୍ରମରେ ବିଦ୍ୟା ଶିକ୍ଷା ପରେ ଧ୍ରୁବ ରାଜବାଟୀକୁ ଫେରିଛନ୍ତି । ଏହାପରେ କାହାଣୀ ଭାଗବତ କାହାଣୀ ପରି ହୋଇଛି । ଧ୍ରୁବ ଶେଷରେ ଅମରତ୍ୱ ଲାଭ କରିଛନ୍ତି ।

ସାଧାରଣ ମଣିଷ ସାଧନା ବଳରେ ଧ୍ରୁବପଦ ଲାଭ କରିପାରେ – ଏହା ଭାଗବତ କାହାଣୀରେ ମିଳେ ।ମାତ୍ର କୃଷ୍ଣପ୍ରସାଦ ଭିନ୍ନ ଆଦର୍ଶ ଉପସ୍ଥାପିତ କରିଛନ୍ତି । ଯୁଗେ ଯୁଗେ ଧର୍ମର ଜୟ ଓ ଅଧର୍ମର ପରାଜୟ ହୋଇଛି – ଏହି ମହାସତ୍ୟ ଏଥିରେ ଉପସ୍ଥାପିତ ହୋଇଛି । ଜୀବନକୁ ସଂଯତ ଓ ଶୃଙ୍ଖଳିତ କରିବାକୁ ନାଟ୍ୟକାର ମଧ ଏଥିରେ ଆହ୍ୱାନ କରିଛନ୍ତି ।

ନାଟକଟି ପାଞ୍ଚୋଟି ଅଙ୍କରେ ବିଭକ୍ତ । ଏଥିରେ ସମୁଦାୟ ଅଠେଇଶ ଗୋଟି ଦୃଶ୍ୟ ରହିଛି । ଏଥିରେ ସଂଯୋଜିତ ସଙ୍ଗୀତଗୁଡ଼ିକ ଭକ୍ତି ରସାତ୍ମକ ହୋଇଛି ।

ସଂଳାପରେ ବ୍ୟବହୃତ ପଦ୍ୟ ସରଳ । ଏଥିରେ ମଧ୍ୟ ଅମିତ୍ରାକ୍ଷର ଛନ୍ଦର ପ୍ରୟୋଗ ହୋଇଛି । ଚରିତ୍ର ଚିତ୍ରଣ, ସଙ୍ଗୀତ ସଂଯୋଜନା, ସଂଳାପ ଚାତୁରୀ ଓ ରସ ବ୍ୟଞ୍ଜନାରେ 'ଧ୍ରୁବ ଚରିତ' କୃଷ୍ଣପ୍ରସାଦଙ୍କ କଳାକୁଶଳତାର ପରିଚୟ ଦିଏ ।

**ଶକୁନ୍ତଳା**

ମହାଭାରତର ଶକୁନ୍ତଳା ଦୁଷ୍ମନ୍ତଙ୍କ ପ୍ରଣୟ କାହାଣୀ ଅବଲମ୍ବନରେ କୃଷ୍ଣପ୍ରସାଦ ରଚନା କରିଛନ୍ତି 'ଶକୁନ୍ତଳା' ନାଟକ । ମହାକବି କାଳିଦାସଙ୍କ ରଚିତ 'ଅଭିଜ୍ଞାନ ଶକୁନ୍ତଳମ୍' ନାଟକର ପ୍ରଭାବ ମଧ୍ୟ ଏହା ଉପରେ ସୁସ୍ପଷ୍ଟ ।

କାହାଣୀ ବିନ୍ୟାସରେ କିଛି ନୂତନତା ନାହିଁ । ଦୁଷ୍ମନ୍ତ ଓ ଶକୁନ୍ତଳାର ପ୍ରଥମ ଦେଖା କଣ୍ୱ ଆଶ୍ରମରେ ହୋଇଛି । ଉଭୟଙ୍କ ମଧ୍ୟରେ ପ୍ରଣୟ ଜାତ ହୋଇଛି । ଶେଷରେ ହୋଇଛି ମିଳନ । 'ଅଭିଜ୍ଞାନ ଶକୁନ୍ତଳମ୍' ବର୍ଣ୍ଣନା ପରି ଶକୁନ୍ତଳା ବିରହ ଜ୍ୱାଳାରେ ପଡ଼ିଛନ୍ତି । ସଖୀମାନଙ୍କ ଶୀତଳ ଚିକିତ୍ସା ଅନୁରୂପ ବର୍ଣ୍ଣନା କୃଷ୍ଣପ୍ରସାଦଙ୍କ 'ଶକୁନ୍ତଳା'ରେ ମିଳେ ।

ସମୟକ୍ରମେ ଶକୁନ୍ତଳା ପତି ଗୃହକୁ ଯାତ୍ରା କରିଛନ୍ତି । ଦୁର୍ବାସାଙ୍କ ଅଭିଶାପ ଫଳରେ ଦୁଷ୍ମନ୍ତ ପ୍ରଣୟ ବିଷୟ ଭୁଲିଯାଇଛନ୍ତି । ଫଳରେ ରାଜଦ୍ୱାରରେ ଶକୁନ୍ତଳା ପ୍ରତ୍ୟାଖ୍ୟାତ ହୁଅନ୍ତି । ମେନକାଙ୍କଦ୍ୱାରା ଶକୁନ୍ତଳା କଣ୍ୱ ମୁନିଙ୍କ ଆଶ୍ରମରେ ରହିଛନ୍ତି । ସ୍ୱର୍ଗକୁ ପ୍ରତ୍ୟାଗମନ କାଳରେ ଦୁଷ୍ମନ୍ତ ଶକୁନ୍ତଳାଙ୍କ ମିଳନ ହୋଇଛି ।

ନାଟକରେ ନାଟ୍ୟକାର ଆଦିବାସୀ ଜୀବନର ଚିତ୍ର ଦେଇଛନ୍ତି । ଶକୁନ୍ତଳାଙ୍କ ମୁଦ୍ରିକା ବିଷୟକ ସମସ୍ତ ବିଷୟ କେଉଟ ଓ କେଉଟୁଣୀ ଫାର୍ସ ମଧ୍ୟରେ ଦିଆଯାଇଛି । ଗଦ୍ୟ ସଂଳାପର ପ୍ରୟୋଗ ମଧ୍ୟ କରାଯାଇଛି । ସର୍ବୋପରି ରସ ପରିବେଷଣରେ ସ୍ୱାତନ୍ତ୍ର୍ୟ ଓ ଭାଷା ପ୍ରୟୋଗର ସାଫଲ୍ୟ ଦୃଷ୍ଟିରୁ କୃଷ୍ଣପ୍ରସାଦଙ୍କ ଶକୁନ୍ତଳା ସାମସମୟିକ ସୃଷ୍ଟି ମଧ୍ୟରେ ସ୍ୱତନ୍ତ୍ର ସ୍ଥାନ ଲାଭ କରିଛି ।

**ବିଲ୍ୱମଙ୍ଗଳ**

'ବିଲ୍ୱମଙ୍ଗଳ' ଏକ ଭକ୍ତିରସାତ୍ମକ ନାଟକ । କୃଷ୍ଣପ୍ରସାଦ ସଂସ୍କୃତ ଭାଷାର 'କୃଷ୍ଣ କର୍ଣ୍ଣାମୃତ' କାବ୍ୟ ଅବଲମ୍ବନରେ ଏହାକୁ ରଚନା କରିଛନ୍ତି ।

ବିଲ୍ୱମଙ୍ଗଳ ଥିଲେ ଏକ ସମ୍ଭ୍ରାନ୍ତ ଧନାଢ଼୍ୟ ବ୍ରାହ୍ମଣ ଯୁବକ । ଯୌବନାବସ୍ଥାରେ ତାଙ୍କର ସୁନ୍ଦରୀ ବିଦୁଷୀ ସୁଜାତାଙ୍କ ସହ ବିବାହ ହୋଇଥିଲା । ସେ କିନ୍ତୁ ପତ୍ନୀଙ୍କୁ ତ୍ୟାଗ କରି ଚିନ୍ତାମଣି ନାମକ ଏକ ବାରନାରୀର ପ୍ରେମାସକ୍ତ ହୋଇପଡ଼ନ୍ତି । ପୁତ୍ରର ସ୍ଖଳନରେ ପିତା ଦୁଃଖ ଜର୍ଜରିତ ହୃଦୟରେ ପ୍ରାଣତ୍ୟାଗ କରିଛନ୍ତି । ପିତାଙ୍କ ଶୁଦ୍ଧିକ୍ରିୟାରେ ଯୋଗ ନ ଦେଇ ବିଲ୍ୱମଙ୍ଗଳ ଚିନ୍ତାମଣିର ପ୍ରେମଫାଶରେ ନିଜକୁ ହଜାଇ ଦେଇଛନ୍ତି । ଚିନ୍ତାମଣିର ଅନୁରୋଧରେ ବିଲ୍ୱମଙ୍ଗଳ

ଗୃହକୁ ଫେରିଛନ୍ତି ; ମାତ୍ର ଚିନ୍ତାମଣିଙ୍କ ସ୍ମୃତି ତାଙ୍କୁ ଅଥୟ କରିପକାଇଛି । ଶ୍ରାଦ୍ଧ ଶେଷ ହେବା ପୂର୍ବରୁ ସେ ଫେରିଯାଇଛନ୍ତି ଚିନ୍ତାମଣି ଗୃହକୁ ।

ଚିନ୍ତାମଣି ପାଖରେ ପହଞ୍ଚିବା ପୂର୍ବରୁ ସଂଧ୍ୟା ହୋଇଛି । ଭୟଙ୍କର ବର୍ଷା ତୋଫାନ ହୋଇଛି । ବିଲ୍ୱମଙ୍ଗଳ ନଦୀ ପାଖେ ପହଞ୍ଚିଛନ୍ତି । ପାରିହେବାପାଇଁ ନଦୀରେ ନୌକା ପାଇ ନାହାନ୍ତି । ନିକଟରେ ଶ୍ମଶାନ ରହିଛି । ଚିନ୍ତାମଣିଙ୍କର କଥା ସ୍ମରଣ କରି ନଦୀ ଗର୍ଭକୁ ଲମ୍ଫ ପ୍ରଦାନ କରିଛନ୍ତି । ନଦୀ ବକ୍ଷରେ ଗୋଟାଏ କ'ଣ ଭାସି ଯାଉଥିବା ଦେଖିଛନ୍ତି । ତାକୁ ଧରି ନଦୀ ପାର ହୋଇଛନ୍ତି । ଚିନ୍ତାମଣିର ଗୃହ ନିକଟରେ ପହଞ୍ଚିଛନ୍ତି । ଗୃହର ଦ୍ୱାର କିନ୍ତୁ ବନ୍ଦ ଥିବା ଦେଖନ୍ତି । ଖୋଲିବା ପର୍ଯ୍ୟନ୍ତ ଅପେକ୍ଷା କରି ନାହାନ୍ତି । ପ୍ରାଚୀର ଉପରେ ଝୁଲୁଥିବା ଗୋଟିଏ ପଦାର୍ଥକୁ ଧରି ସେ ଗୃହ ମଧ୍ୟରେ ପ୍ରବେଶ କରନ୍ତି । ଚିନ୍ତାମଣି ନିଜ ଆଖିକୁ ବିଶ୍ୱାସ କରିପାରି ନାହାନ୍ତି । ବିଲ୍ୱମଙ୍ଗଳର ମୃତପ୍ରାୟ ଅବସ୍ଥା, ଦେହରୁ ଦୁର୍ଗନ୍ଧ ବାହାରୁଛି । ଚିନ୍ତାମଣି ସ୍ତମ୍ଭୀଭୂତ ହୋଇପଡ଼ିଛନ୍ତି । ପରେ ଜାଣିପାରିଛନ୍ତି ଯେ ଶ୍ମଶାନର ପୋଡ଼ା କାଠ ମନେ କରି ଏକ୍ ମଡ଼ା ଧରି ବିଲ୍ୱମଙ୍ଗଳ ନଦୀ ପାର ହୋଇଛନ୍ତି ଓ ଏକ ଅଜଗର ସାପର ଲାଞ୍ଜ ଧରି ପ୍ରାଚୀର ଡେଇଁ ଗୃହ ମଧ୍ୟରେ ପ୍ରବେଶ କରିଛନ୍ତି ।

ଚିନ୍ତାମଣିଙ୍କର ତୀବ୍ର ପ୍ରତିକ୍ରିୟା ସୃଷ୍ଟି ହୋଇଛି । ସେ ବିଲ୍ୱମଙ୍ଗଳକୁ ତିରସ୍କାର କରିଛନ୍ତି । ବିଲ୍ୱମଙ୍ଗଳଙ୍କ ସମ୍ବିତ୍ ଫେରିଆସିଛି । ତାଙ୍କର ଦିବ୍ୟ ଦୃଷ୍ଟି ଖୋଲି ଯାଇଛି । ସଂସାର ତାଙ୍କୁ ତୁଚ୍ଛ ଲାଗିଛି । ଚିନ୍ତାମଣିଙ୍କୁ ପରିତ୍ୟାଗ କରି ସେ ବୈରାଗୀ ହୋଇଛନ୍ତି । ସେ ରକ୍ତମାଂସ ଦେହଧାରୀ ଚିନ୍ତାମଣିଙ୍କ ପରିବର୍ତ୍ତେ ନିତ୍ୟ ଚିନ୍ତାମଣିଙ୍କ ପ୍ରତି ନିଜ ପ୍ରେମ ନିବେଦନ କରିବାକୁ ବ୍ୟାକୁଳ ହୋଇପଡ଼ନ୍ତି ।

ଯାହାହେଲେବି ବିଲ୍ୱମଙ୍ଗଳ ରକ୍ତମାଂସଧାରୀ ମଣିଷ । ଜଣେ ବଣିକର ପରମା ସୁନ୍ଦରୀ ପତ୍ନୀକୁ ଦେଖି କାମାସକ୍ତ ହୋଇପଡ଼ନ୍ତି । ବୈରାଗୀ ସାଜିଥିବା ବିଲ୍ୱମଙ୍ଗଳ ବଣିକ ଗୃହରେ ଆତିଥ୍ୟ ଗ୍ରହଣ କରିଛନ୍ତି । ବଣିକ ମଧ୍ୟ ନିଜ ପତ୍ନୀକୁ ସେହି ରାତ୍ରିକପାଇଁ ବିଲ୍ୱମଙ୍ଗଳଙ୍କ ପାଖେ ଛାଡ଼ିଦିଅନ୍ତି । ସୁବେଶ ହୋଇଥିବା ବଣିକ ପତ୍ନୀଙ୍କୁ ଦେଖି ବିଲ୍ୱମଙ୍ଗଳଙ୍କର ଭାବାନ୍ତର ଜାତ ହୋଇଛି । ସେ ଜାଣିପାରିଛନ୍ତି ଯେ ଆଖି ଦୁଇଟା ଥିବା ପର୍ଯ୍ୟନ୍ତ ସେ ସଂସାରର ପ୍ରଲୋଭନରୁ ନିଜକୁ ଦୂରେଇ ରଖି ପାରିବେ ନାହିଁ । ବଣିକ ପତ୍ନୀଙ୍କୁ ମାତୃ ସମ୍ବୋଧନ କରି ତାଙ୍କ ଆଗରେ ଚକ୍ଷୁ ଦୁଇଟି ଫୁଟାଇ ଦେଇଛନ୍ତି । ପୁଣି ନିତ୍ୟ ଚିନ୍ତାମଣିଙ୍କ ଅନ୍ୱେଷଣରେ ବାହାରି ଯାଇଛନ୍ତି ।

ଭକ୍ତ ଶିରୋମଣି ବିଲ୍ୱମଙ୍ଗଳଙ୍କ ପାଖେ ନିଜେ ଚିନ୍ତାମଣି କୃଷ୍ଣ ଛଦ୍ମବେଶରେ ପହଞ୍ଚିଛନ୍ତି । ଭକ୍ତଙ୍କୁ ବହୁ ପରୀକ୍ଷା କରିଛନ୍ତି । ଶେଷରେ ଭଗବାନ୍ ଭକ୍ତ ଆଗରେ ଉଭା ହୋଇଛନ୍ତି । ଅନ୍ଧ ବିଲ୍ୱମଙ୍ଗଳ ଚକ୍ଷୁ ଫେରିପାଇଛନ୍ତି । ନିତ୍ୟ ଚିନ୍ତାମଣି କୃଷ୍ଣଙ୍କୁ ଦର୍ଶନ କରନ୍ତି ।

ବିଲ୍ୱମଙ୍ଗଳଙ୍କ ପରିବର୍ତ୍ତନ ଦେଖି ଚିନ୍ତାମଣିଙ୍କ ହୃଦୟରେ ମଧ୍ୟ ସାତ୍ତ୍ୱିକ କୃଷ୍ଣପ୍ରେମର ଉଦୟ ହୋଇଛି । ସେ ନିଜ ସଂସାର, ସମସ୍ତ ସମ୍ପଦ ଛାଡ଼ି ରାଧାକୃଷ୍ଣଙ୍କ ପ୍ରଣୟସ୍ଥଳୀ ବୃନ୍ଦାବନରେ ପହଞ୍ଚିଛନ୍ତି । ଉନ୍ମାଦଗ୍ରସ୍ତା ଅବସ୍ଥାରେ ବୁଲୁ ବୁଲୁ ବିଲ୍ୱମଙ୍ଗଳଙ୍କ ସଙ୍ଗେ ହୋଇଛି ସାକ୍ଷାତ୍ । ଦୁହିଁଙ୍କର ମିଳନ ଅତ୍ୟନ୍ତ ହୃଦ୍ୟ ହୋଇଛି ।

ପାର୍ଥିବ ପ୍ରେମ ଅଥବା ଭୋଗଲାଳସା ଅପେକ୍ଷା ସାତ୍ତ୍ୱିକ ବା ଭଗବତ୍ ପ୍ରେମ କେତେ ଉଚ୍ଚ, ତାହା ଏଥିରେ ପ୍ରତିପାଦିତ ହୋଇଛି ।

ନାଟକରେ ମୋଟ ୧୪ଟି ସଙ୍ଗୀତ ଦିଆଯାଇଛି । ବହୁ ଜନପ୍ରିୟ ବସୁ ସଙ୍ଗୀତ ଏଥିରେ ପରିବେଷଣ କରାଯାଇଛି । ଭାବବିହ୍ୱଳ ମୁହୂର୍ତ୍ତର ଚିତ୍ର ଫୁଟାଇବାକୁ ଅମିତ୍ରାକ୍ଷର ଛନ୍ଦର ପ୍ରୟୋଗ କରାଯାଇଛି ।

''ବିଲ୍ୱମଙ୍ଗଳ ଓ ଚିନ୍ତାମଣିଙ୍କ ଅମର ପ୍ରେମକୁ ନେଇ ରଚିତ 'ବିଲ୍ୱମଙ୍ଗଳ' ନାଟକଟି କୃଷ୍ଣପ୍ରସାଦଙ୍କ ଏକ ଅନବଦ୍ୟ ସୃଷ୍ଟି ।''

**ନାରାୟଣ ବସନ୍ତ**

ନୀଳଗିରି ରାଜା କିଶୋରଚନ୍ଦ୍ର ହରିଚନ୍ଦନ ମର୍ଦ୍ଦରାଜ ବିଲାତରୁ ଫେରିବା ପରେ ତାଙ୍କୁ ସମ୍ବର୍ଦ୍ଧନା ଦେବା ଉଦ୍ଦେଶ୍ୟରେ କୃଷ୍ଣପ୍ରସାଦ ନାଟକଟି ରଚନା କରିଥିଲେ । ଏଥିପାଇଁ ମାସାଧିକ କାଳ ତାଙ୍କୁ ନୀଳଗିରିରେ ରାଜଅତିଥିରୂପେ ରହିବାକୁ ପଡ଼ିଥିଲା ।

ନାଟକରେ ନୀଳଗିରି ଓ ମୟୂରଭଞ୍ଜ ରାଜପରିବାର ମଧ୍ୟରେ ପାରମ୍ପରିକ ଶତ୍ରୁତା ଓ ଯୁଦ୍ଧ ବର୍ଣ୍ଣନା କରାଯାଇଛି । ଶେଷରେ ଗଜପତିମହାରାଜାଙ୍କ ସହାୟତାରେ ଦୀର୍ଘକାଳବ୍ୟାପୀ ଦୁଇ ରାଜବଂଶର ଶତ୍ରୁତାର ଅବସାନ ଘଟିଛି । ମୟୂରଭଞ୍ଜ ରାଜକୁମାର ନୀଳଗିରି ରାଜକନ୍ୟା କଳ୍ପଲତାଙ୍କୁ ବିବାହ କରିଛନ୍ତି । ନାରାୟଣ ବସନ୍ତ ବିବାହ କରିଛନ୍ତି ମୟୂରଭଞ୍ଜ ରାଜଜେମା କଳରା ଦେବୀଙ୍କୁ । ମୁଖ୍ୟତଃ ରାଜପ୍ରଶସ୍ତିପାଇଁ ନାଟକଟି ରଚିତ ହେଲେ ମଧ୍ୟ ବହୁସ୍ଥଳରେ ନାଟ୍ୟକାରଙ୍କର ସ୍ୱଦେଶପ୍ରାଣତାର ପରିଚୟ ମିଳେ । ଉତ୍କଳର ଅତୀତ ଗୌରବ ଉଜ୍ଜୀବିତ କରିବାପାଇଁ ସୂର୍ଯ୍ୟବଂଶୀ ରାଜା ପୁରୁଷୋତ୍ତମ ଦେବଙ୍କ କାଞ୍ଚି ଅଭିଯାନ ବର୍ଣ୍ଣନା ଏଥିରେ ଦିଆଯାଇଛି । ସେହିପରି କଳାପାହାଡ଼ ଆକ୍ରମଣ ସମୟରେ ଓଡ଼ିଶାର ପତନର ଚିତ୍ର ଏଥିରେ ମିଳେ ।

ନାଟକଟି ଐତିହାସିକ କୁହାଗଲେ ମଧ୍ୟ ଏହା ଐତିହାସିକଠାରୁ ଦୂରେଇ ଯାଇଛି । ବହୁ ସ୍ଥାନରେ ପରିବେଷଣ କରାଯାଇଥିବା ତଥ୍ୟ ପ୍ରମାଦଯୁକ୍ତ । କାଳ ସଚେତନତା ଓ ସମୟର ଐକ୍ୟ ପ୍ରତି ଆଦୌ ଦୃଷ୍ଟି ଦିଆଯାଇ ନ ଥିବା ଲକ୍ଷ୍ୟ କରାଯାଏ । ତେବେ ଐତିହାସିକ ପ୍ରମାଦ ବା ଭ୍ରମକୁ ଆଖିରେ ନ ପଡ଼ିବାପାଇଁ ଓ

ନାଟକଟିକୁ ଚମକଦାର କରିବାପାଇଁ ଆରମ୍ଭରେ ଦୁର୍ଗାସ୍ତବ, କେଳା କେଲୁଣୀ ନୃତ୍ୟ, ଗ୍ରାମ୍ୟ ପଥରେ ବାବାଜିର ଗୀତ ପ୍ରଭୃତି ସନ୍ନିବେଶିତ ହୋଇଛି ।

ନାଟକ 'ନାରାୟଣ ବସନ୍ତ' କିନ୍ତୁ ସଂଳାପ ଚାତୁରୀ, ହାସ୍ୟରସ ପରିବେଷଣ ଶୈଳୀ, ସଙ୍ଗୀତ ସଂଯୋଜନାରେ ଅଭିନବତା, ସର୍ବୋପରି ନାଟ୍ୟକାରଙ୍କ କୁଶଳୀ ହସ୍ତ ସ୍ପର୍ଶରେ ନୀଳଗିରି ଦରବାର ମଞ୍ଚରେ ଅଭୂତପୂର୍ବ ସଫଳତା ପ୍ରାପ୍ତି ହୋଇଥିଲା ।

ରମାଇ ଦେଓ

କୃଷ୍ଣପ୍ରସାଦ ପାଟଣା ରାଜ୍ୟରେ ସଙ୍ଗୀତ ଶିକ୍ଷକ ଭାବେ କାର୍ଯ୍ୟ କରିଥିଲେ । ସେଠାରେ ଥିଲାବେଳେ ସେ ପାଟଣା ରାଜବଂଶର ପ୍ରତିଷ୍ଠାତା ରମାଇ ଦେଓଙ୍କ ଉପରେ ଏକ ନାଟକ ରଚନା କରିଥିଲେ । ରମାଇ ଦେଓଙ୍କ ରୋମାଞ୍ଚକର ପାଟଣା ସିଂହାସନ ପ୍ରାପ୍ତି ଏଥିରେ ବର୍ଣ୍ଣିତ ।

ଦ୍ୱାଦଶ ଶତାବ୍ଦୀରେ ପାଟଣା ରାଜ୍ୟର ରାଜା ଥିଲେ କୃତ୍ତିବାସ ଦେଓ । ତାଙ୍କ ମୃତ୍ୟୁପରେ ତାଙ୍କ ରାଣୀ ହେମନ୍ତକୁମାରୀ ପାଟଣା ରାଜ୍ୟର ଶାସନକର୍ତ୍ତ୍ରୀ ହେଲେ । ସେ ରାଜ୍ୟଶାସନ ଅଷ୍ଟମଲ୍ଲଙ୍କ ହାତେ କରାଇଲେ । ଏହି ମଲ୍ଲମାନେ ରାଜ୍ୟର ବିଭିନ୍ନ ଅଞ୍ଚଳରୁ ଆସିଥିଲେ । ସେହି ଅଷ୍ଟମଲ୍ଲଙ୍କ ମଧ୍ୟରେ ଥିଲେ ଜଣେ ବ୍ରାହ୍ମଣ । ତାଙ୍କ ନାମ ଥିଲା ଚକ୍ରଧର ପାଣିଗ୍ରାହୀ ।

ପଡ଼ୋଶୀ ଖରିଆରର ରାଜା ଥିଲା ଚୌହାନ ବଂଶୀୟ ହଟ୍ଟହମିରା । ସେ ଯୁଦ୍ଧରେ ଯୋଗ ଦେବା କାଳରେ ମରିଯାଇଛନ୍ତି ବୋଲି ପ୍ରଚାର ହେଲା । ତାଙ୍କର ରାଣୀମାନେ ଆତ୍ମହତ୍ୟା କଲେ । ଜଣେ ଅନ୍ତଃସତ୍ତ୍ୱା ରାଣୀ ପଳାଇ ଯାଉଥିବା ବେଳେ ଏକ ସନ୍ତାନ ପ୍ରସବ କଲେ । ସେହି ପୁତ୍ରକୁ ନେଇ ଆଦିବାସୀମାନେ ଚକ୍ରଧର ପାଣିଗ୍ରାହୀଙ୍କ ପାଖରେ ରଖିଲେ । ସେ ପରେ ରମାଇ ଦେଓ ନାମରେ ପରିଚିତ ହେଲେ ।

ରମାଇ ଦେଓ କ୍ରମେ ବଡ଼ ହେଲେ । ସେ ଚକ୍ରଧର ପାଣିଗ୍ରାହୀଙ୍କ ତତ୍ତ୍ୱାବଧାନରେ ଯୁଦ୍ଧବିଦ୍ୟା ଓ ରାଜକାର୍ଯ୍ୟ ପରିଚାଳନା ଶିକ୍ଷା କଲେ । ସେ ପାଟଣା ରାଜସିଂହାସନ ପାଇବାପାଇଁ ସୁଯୋଗ ଅପେକ୍ଷାରେ ରହିଲେ ।

ଥରେ ଚକ୍ରଧର ପାଣିଗ୍ରାହୀ ଅସୁସ୍ଥ ହୋଇପଡ଼ିବାରୁ ସେ ନିଜ ପ୍ରତିନିଧିଭାବେ ରମାଇ ଦେଓଙ୍କୁ ପାଟଣାଗଡ଼କୁ ପଠାଇଲେ । ସେଦିନ ସେ ରାଜା ହେବାର ବ୍ୟବସ୍ଥା ହେଲା । ସେ ରାଜା ହେବାମାତ୍ରେ ଅଷ୍ଟମଲ୍ଲଙ୍କୁ ଆଲୋଚନା ଛଳରେ ଡାକି ହତ୍ୟା କଲେ । ଚକ୍ରଧର ପାଣିଗ୍ରାହୀଙ୍କୁ ମଧ୍ୟ ମୃତ୍ୟୁଦଣ୍ଡର ଭୟ ଦେଖାଇଲେ । ସେହିଦିନ ଠାରୁ ସେ ଓ ତାଙ୍କ ବଂଶଧରମାନେ ପାଟଣା ରାଜ୍ୟର ରାଜା ହେଲେ ।

କୃଷ୍ଣପ୍ରସାଦଙ୍କ ନାଟକ 'ରମାଇ ଦେଓ' ଅପ୍ରକାଶିତ । ଏହାର ପାଣ୍ଡୁଲିପି ମଧ୍ୟ ମିଳୁ ନାହିଁ ।

**ଯଯାତି କେଶରୀ**

ଯଯାତି କେଶରୀଙ୍କର ଉତ୍କଳ ସାମ୍ରାଜ୍ୟର ରାଜପଦ ଲାଭ ତଥା ଯାଜପୁରର ଐତିହ୍ୟ ଓ ଗୌରବ ଗାନପାଇଁ କୃଷ୍ଣପ୍ରସାଦ 'ଯଯାତି କେଶରୀ' ନାଟକ ରଚନା କରିଥିବା ଜଣାଯାଏ ।

ଯଯାତି କେଶରୀ ଉତ୍କଳରେ କେଶରୀ ବଂଶର ପ୍ରତିଷ୍ଠାତା ଥିବା ନାଟକରେ ବର୍ଣ୍ଣିତ । ତାଙ୍କର ପିତାଙ୍କ ନାମ ଥିଲା ଜନ୍ମେଜୟ । ସେ ମଗଧର ରାଜା ଥିଲେ । ତାଙ୍କ ସମୟରେ ଯଯାତି ରାଜ୍ୟରୁ ବିତାଡ଼ିତ ହୋଇ ଭଗିନୀ ବିମଳାଙ୍କ ସହ ଯାଜପୁରରେ ପହଞ୍ଚିଛନ୍ତି । ବିରଜାଙ୍କ ପୂଜା ଅର୍ଚ୍ଚନା ହେତୁ ସ୍ଥାନୀୟ ଅଧିବାସୀଙ୍କ ଶ୍ରଦ୍ଧାଭାଜନ ହୋଇଛନ୍ତି । ଉତ୍କଳର ବୃଦ୍ଧ ରାଜା ହେଉଛନ୍ତି ହିରଣ୍ୟବର୍ମ । ତାଙ୍କ କନ୍ୟା ଲଳିତା ମୃଗୟା ଉଦ୍ଦେଶ୍ୟରେ ଚୌଦ୍ୱାର ଦୁର୍ଗରୁ ବାହାରି ଯାଜପୁରର ଜଙ୍ଗଲରେ ବୁଲୁଥିବାବେଳେ ବିମଳାଙ୍କ ସହ ବନ୍ଧୁତା ହୋଇଛି । ଯଯାତି ମଧ୍ୟ ହିରଣ୍ୟବର୍ମଙ୍କର ନିକଟତର ହୋଇଛନ୍ତି । ନିଜର ପରାକ୍ରମ ବଳରେ ରାଜ୍ୟରେ ଶାନ୍ତି ସ୍ଥାପନ କରିଛନ୍ତି । ଯାଜପୁରରେ ବିରଜା ମନ୍ଦିର, ଭୁବନେଶ୍ୱରରେ ଲିଙ୍ଗରାଜ ମନ୍ଦିର ଓ ପୁରୀ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା ପ୍ରଭୃତି ନିର୍ମାଣ କରି ଉତ୍କଳରେ ସର୍ବଜନାଦୃତ ହୋଇପାରିଛନ୍ତି । ହିରଣ୍ୟବର୍ମ ମଧ୍ୟ ନିଜ କନ୍ୟା ଲଳିତାକୁ ଯଯାତିଙ୍କ ହସ୍ତେ ଅର୍ପଣ କରିଛନ୍ତି ଓ ଶେଷରେ ଉତ୍କଳ ସିଂହାସନରେ ଅଭିଷିକ୍ତ କରାଇଛନ୍ତି ।

କୃଷ୍ଣପ୍ରସାଦ 'ଯଯାତିକେଶରୀ' ନାଟକରେ ଐତିହାସିକ ତଥ୍ୟକୁ କଳ୍ପନାର ପୁଟ ଦେଇ ରଚନା କରିଛନ୍ତି ।

ଏକ ନିର୍ଜୀବ କାହାଣୀକୁ ଶିଳ୍ପ ସୌରଭରେ ବିମଣ୍ଡିତ କରିଛନ୍ତି । ନାଟକ 'ଯଯାତି କେଶରୀ' ନାଟ୍ୟକାରଙ୍କ ସାର୍ଥକ ସୃଷ୍ଟି ଭାବରେ ସ୍ୱୀକୃତ ।

**ଭୂୟାଁ ପୀଢ଼**

'ଭୂୟାଁ ପୀଢ଼' ମଧ୍ୟ ଏକ ଐତିହାସିକ ନାଟକ । କେନ୍ଦୁଝର ରାଜ୍ୟର କିଛି ତଥ୍ୟ ଓ କିମ୍ବଦନ୍ତୀ ଉପରେ ଏହା ପ୍ରତିଷ୍ଠିତ ।

ମୋଗଲ ରାଜତ୍ୱ କାଳରେ ସମଗ୍ର ବୈତରଣୀ ନଦୀ ଠାରୁ ଦାମୋଦର ନଦୀ ପର୍ଯ୍ୟନ୍ତ ଅଞ୍ଚଳରେ ଭଞ୍ଜ ବଂଶ ରାଜତ୍ୱ କରିଥିଲେ । ସେ ସମୟରେ ଭଞ୍ଜରାଜା ଥିଲେ ବୈଦ୍ୟନାଥ ଭଞ୍ଜ । ତାଙ୍କର ପତ୍ନୀ ଅତ୍ରେୟୀ ଶିଶୁପୁତ୍ର ଜିତୁ ସହ ଶ୍ରୀକ୍ଷେତ୍ରକୁ ଦେବଦର୍ଶନରେ ଯାଇଥିଲେ । ଫେରିବାବେଳେ ମୋଗଲ ଆକ୍ରମଣର ସମ୍ମୁଖୀନ

ହେଲେ । ମୋଗଲମାନେ ସେମାନଙ୍କର ସର୍ବସ୍ୱ ଲୁଣ୍ଠନ କରି ଶିଶୁ ପୁତ୍ରକୁ ପାହାଡ଼ରେ ଫିଙ୍ଗିଦେଲେ । ରାଣୀ ଅତ୍ରେୟୀ ନଦୀରେ ଝାସ ଦେବାକୁ ଯାଉଥିଲାବେଳେ ମାଧବସ୍ୱାମୀ ନାମକ ଜଣେ ସନ୍ନ୍ୟାସୀଙ୍କଦ୍ୱାରା ଉଦ୍ଧାର ପାଇଛନ୍ତି । ଶିଶୁପୁତ୍ରକୁ ମଧ ଭୂୟାଁମାନେ ପାଇ ସର୍ଦ୍ଦାର ଭାଲୁଙ୍ଗଙ୍କୁ ଦେଇଛନ୍ତି । ଜିତୁ ତାଙ୍କ ଦ୍ୱାରା ଲାଳିତ ପାଳିତ ହୁଅନ୍ତି । ଅତ୍ରେୟୀ ମଧ ମାଧବସ୍ୱାମୀଙ୍କ ଆଶ୍ରମରେ ବ୍ରହ୍ମଚାରିଣୀ ଭାବେ କାଳଯାପନ କରନ୍ତି ।

ଦୀର୍ଘ ପନ୍ଦର ବର୍ଷ ବିତିଯାଇଛି । ଜିତୁ ଭାଲୁଙ୍ଗଠାରୁ ଯୁଦ୍ଧବିଦ୍ୟା ଶିଖି ଭୂୟାଁମାନଙ୍କର ନେତୃତ୍ୱ ନିଅନ୍ତି । ଭାଲୁଙ୍ଗଙ୍କ କନ୍ୟା ମଗୁଆ ଜିତୁ ପ୍ରତି ଆକୃଷ୍ଟ ହୋଇଛନ୍ତି । କିନ୍ତୁ ଜିତୁଙ୍କର ମାଧବସ୍ୱାମୀଙ୍କ କନ୍ୟା ଅପର୍ଣ୍ଣାଙ୍କ ପ୍ରତି ଦୁର୍ବଳତା ରହିଛି ।

ସମୟକ୍ରମେ ମୋଗଲ ସୁବେଦାର ଦାଉରାନୀ ଭଞ୍ଜ ରାଜାଙ୍କୁ ଆକ୍ରମଣ କରିଛନ୍ତି । ରାଣୀ ଅତ୍ରେୟୀ ଭୂୟାଁ ସର୍ଦ୍ଦାର ଭାଲୁଙ୍ଗ ଓ ଜିତୁ କେନ୍ଦୁଝର ରାଜାଙ୍କୁ ସହାୟତା କରନ୍ତି । ମାତା ପୁତ୍ରକୁ ଓ ସ୍ୱାମୀ ସ୍ତ୍ରୀକୁ ଚିହ୍ନି ପାରିଛନ୍ତି । ଅପର୍ଣ୍ଣାଙ୍କ ସହ ଜିତୁଙ୍କର ମିଳନ ହୋଇଛି ।

ନାଟକ ଜନପ୍ରିୟତା ହାସଲ କରିଥିଲା । ନୀଳଗିରି ଦରବାରୀ ମଞ୍ଚରେ ବହୁ ରାତ୍ର ଏହି ନାଟକ ଅଭିନୀତ ହୋଇଥିଲା । କୃଷ୍ଣପ୍ରସାଦ ମଧ ବହୁ ଅର୍ଥ ଉପାର୍ଜନ କରିଥିଲେ ।

ଆଦିବାସୀ ଜୀବନର ସରଳତା, ସତ୍ୟବାଦିତା, ସ୍ୱାଧୀନତା, ପ୍ରୀତି ମମତା, ରାଜଭକ୍ତି, ବିଶ୍ୱସ୍ତତା ଆଦି ମହନୀୟ ଗୁଣାବଳୀ ନାଟକର ଛତ୍ରେ ଛତ୍ରେ ଫୁଟି ଉଠିଛି । ଆଦିବାସୀ ନୃତ୍ୟ ଓ ସଙ୍ଗୀତ ପ୍ରଭୃତିର ସଂଯୋଜନା ନାଟକକୁ ଅଧିକ ଆକର୍ଷଣୀୟ କରିଛି । ଆଦିବାସୀ ଭାଷା ପ୍ରୟୋଗରେ କୃଷ୍ଣପ୍ରସାଦଙ୍କ ଦକ୍ଷତା ମଧ ଉଲ୍ଲେଖଯୋଗ୍ୟ ।

'ଭୂୟାଁ ପୀଢ଼' ନାଟକରେ ହିନ୍ଦୁ ମୁସଲମାନ ସଂପ୍ରୀତିର ଚିତ୍ର ମିଳେ । ମୋଗଲ ସୁବେଦାର ଦାଉରାନୀଙ୍କ ରାଜପ୍ରାସାଦରେ କୃଷ୍ଣବିଗ୍ରହ ପୂଜାର ବନ୍ଦୋବସ୍ତ ହୋଇଛି । ଅବସର ବିନୋଦନପାଇଁ ଭଜନ ଓ କୀର୍ତ୍ତନର ବ୍ୟବସ୍ଥା କରାଯାଇଛି । ନିଜେ ଦାଉରାନୀ କୋଣାର୍କ ଓ ଭୁବନେଶ୍ୱର ଭଳି ହିନ୍ଦୁ ଶିଳ୍ପକଳାର ପ୍ରଶଂସା କରିଛନ୍ତି । ଭାରତୀୟ ସଭ୍ୟତା ଓ ସଂସ୍କୃତିକୁ ମୋଗଲମାନଙ୍କର ଅବଦାନ ମଧ ପର୍ଯ୍ୟାପ୍ତ ପରିମାଣରେ ବର୍ଣ୍ଣିତ ହୋଇଛି ।

ନାଟକଟି ଏପରି ଲୋକପ୍ରିୟତା ହାସଲ କଲା ଯେ ଇଂରେଜ ସରକାର ଏହାର ଅଭିନୟ ନିଷିଦ୍ଧ କରିଦେଲେ । କିନ୍ତୁ ମୟୂରଭଞ୍ଜ ସ୍ୱତନ୍ତ୍ର ରାଜ୍ୟ ହୋଇଥିବାରୁ ଓ ସେଠାରେ ଇଂରେଜ ଆଇନ ଲାଗୁ ହେଉ ନ ଥିବାରୁ, ସେଠାରେ ବାରମ୍ବାର ଅଭିନୀତ ହୋଇଥିଲା ।

ଆଦିବାସୀ ଜୀବନଚର୍ଯ୍ୟାକୁ ନେଇ ରଚିତ 'ଭୂୟାଁ ପୀଢ଼' ଏକ ସାର୍ଥକ ସୃଷ୍ଟି ।

## ମୃଚ୍ଛକଟିକ

ସଂସ୍କୃତ ସାହିତ୍ୟର ବିଶିଷ୍ଟ ନାଟ୍ୟକାର ଶୂଦ୍ରକଙ୍କ 'ମୃଚ୍ଛକଟିକ' ଅବଲମ୍ବନରେ କୃଷ୍ଣପ୍ରସାଦ ରଚନା କରିଛନ୍ତି ଓଡ଼ିଆ ଭାଷାରେ 'ମୃଚ୍ଛକଟିକ' ।

ସଂସ୍କୃତ ନାଟକ – 'ମୃଚ୍ଛକଟିକ' ଭଳି ଓଡ଼ିଆ 'ମୃଚ୍ଛକଟିକ' ନାଟକରେ ସାଧାରଣ ମଣିଷର ଜୀବନ କାହାଣୀ ବର୍ଣ୍ଣିତ । ଏଥିରେ ସମାଜର ନିମ୍ନଶ୍ରେଣୀର, ଯଥା – ଚୋର, ବେଶ୍ୟା ପ୍ରଭୃତି ଘୃଣ୍ୟ ଶ୍ରେଣୀର ବ୍ୟକ୍ତିଙ୍କ ଉପରେ ନାଟ୍ୟକାର ଦୃଷ୍ଟି ପକାଇଛନ୍ତି । ପଶା, ନିଶା, ଯୋଷାରେ ପଡ଼ି ଲୋକେ କିପରି ଧ୍ୱଂସ ହୋଇଯାଇଛନ୍ତି, ତା'ର ସ୍ପଷ୍ଟ ଚିତ୍ର ଏଥିରେ ମିଳେ । ସମାଜ ଜୀବନକୁ ଶୁଚିନିଷ୍ଠ କରିବାପାଇଁ ନାଟ୍ୟକାରଙ୍କ ଲକ୍ଷ୍ୟ ହୋଇଥିବା ଜଣାଯାଏ ।

## ମିଠା ମହୁରା

'ମିଠା ମହୁରା' ଏକ ସାମାଜିକ ନାଟକ । ଦୁଇଟି ଜମିଦାର ପରିବାରକୁ ନେଇ ନାଟକର କାହାଣୀ ଗଢ଼ିଉଠିଛି । ଦୀନୁ ମଙ୍ଗରାଜ ଥିଲେ ବୁନିଆଦି ଜମିଦାର । ଦୟା, କ୍ଷମା ଓ ପରୋପକାର ତାଙ୍କ ଜୀବନର ବ୍ରତ । ଅନ୍ୟ ପକ୍ଷରେ ରଘୁ ସାମନ୍ତରାୟ ନବ୍ୟ ଜମିଦାର । ଶୋଷଣ, ପରସ୍ତ୍ରୀହରଣ ଓ ଅନ୍ୟ ଉପରେ ଅତ୍ୟାଚାର ତାଙ୍କର ପେସା । ଦୀନୁ ମଙ୍ଗରାଜଙ୍କ ଜମିଦାରୀକୁ ଗ୍ରାସ କରିବାପାଇଁ ରଘୁ ସାମନ୍ତରାୟ କୋର୍ଟ କଚେରିକୁ ଯାଇଛନ୍ତି । ଏ କାର୍ଯ୍ୟରେ ତାଙ୍କୁ ସାହାଯ୍ୟ କରିଛନ୍ତି ତାଙ୍କର ଧୂର୍ତ୍ତ ମ୍ୟାନେଜର ହର ପଟ୍ଟନାୟକ ଓ କିଲଟର ଅଫିସର କିରାଣି ଶ୍ୟାମବାବୁ । ଏମାନଙ୍କ ଷଡ଼୍‌ଯନ୍ତ୍ରରେ ଦୀନୁ ମଙ୍ଗରାଜ ତାଙ୍କର ସର୍ବସ୍ୱ ହରାଇଛନ୍ତି । ତାଙ୍କ ସମ୍ପତ୍ତି କୋରଖ ହୋଇଛି । ପୁତ୍ର ଅଧାପକ ସରୋଜ ଜେଲ ଯାଇଛନ୍ତି । ଅନ୍ତଃସତ୍ତ୍ୱା ବୋହୂଙ୍କର ମୃତ୍ୟୁ ହୋଇଛି । ଏକ ଠକ ସାଧୁଙ୍କର ସହାୟତାରେ ନିଜର ଖୁଡ଼ୀ ଶାରଦାଦେବୀଙ୍କୁ ବୃନ୍ଦାବନକୁ ପଠାଇଦେଇ ରଘୁ ସାମନ୍ତରାୟ ତାଙ୍କ ସମ୍ପତ୍ତି ଆତ୍ମସାତ୍ କରିବାକୁ ଚେଷ୍ଟା କରିଛନ୍ତି । ମାତ୍ର ସନ୍ଥବାବା ଏହାର ପ୍ରତିରୋଧ କରିଛନ୍ତି । ସେ ଶାରଦାଦେବୀଙ୍କୁ ସାମନ୍ତରାୟଙ୍କ ହୀନ ଉଦ୍ଦେଶ୍ୟ ଜଣାଇ ଦେଇଛନ୍ତି । ଶେଷରେ ସନ୍ଥବାବାଙ୍କ ଉଦ୍ୟମରେ ଏକ ସେବାଶ୍ରମ ଗଢ଼ାଯାଇଛି । ଏଥିରେ ଦୀନୁ ମଙ୍ଗରାଜ ସାହାଯ୍ୟ କରିଛନ୍ତି । ସାମନ୍ତରାୟଙ୍କ ସମସ୍ତ ତହବିଲକୁ ଆତ୍ମସାତ୍ କରିଛି ମ୍ୟାନେଜର ହର ପଟ୍ଟନାୟକ । ସେ ସାମନ୍ତରାୟଙ୍କ ଜମିଦାର ନିଲାମ କରିନେଇଛନ୍ତି । ସାମନ୍ତରାୟ ନିଃସ୍ୱ ହୋଇପଡ଼ିଛନ୍ତି । ମାତ୍ର ଶେଷରେ ହର ପଟ୍ଟନାୟକ ଧରା ପଡ଼ିଛନ୍ତି । ସାମନ୍ତରାୟଙ୍କ ଜମିଦାରୀକୁ ରକ୍ଷା କରାଯାଇପାରିଛି । ସେ ଶାରଦା ଦେବୀଙ୍କ ନିକଟରେ ଆତ୍ମସମର୍ପଣ କରନ୍ତି । ଦୀନୁ ମଙ୍ଗରାଜଙ୍କ ନିକଟରେ ମଧ ସମସ୍ତ ଦୋଷ ସ୍ୱୀକାର କରିଛନ୍ତି ।

ଊନବିଂଶ ଶତାବ୍ଦୀର ଶେଷ ଓ ବିଂଶ ଶତାବ୍ଦୀର ପ୍ରଥମ ପାଦରେ ସମାଜ ଜୀବନର ଚିତ୍ର ଏଥିରେ ଦିଆଯାଇଛି । ଗ୍ରାମ୍ୟ ଜୀବନ ଠାରୁ ଦୂରେଇ ଯାଇ ନଗର ସଭ୍ୟତା ପ୍ରତି ଅହେତୁକ ଆଗ୍ରହ ଯୋଗୁଁ ସମାଜ କିପରି ଧ୍ୱଂସ ମୁହଁକୁ ଯାଉଛି ତା'ର ଚିତ୍ର ଅତି ସୁନ୍ଦର ଭାବେ ନାଟ୍ୟକାର ଦେଇଛନ୍ତି ।

ନାଟ୍ୟକାରଙ୍କ 'ମିଠା ମହୁରା' ପ୍ରଥମ ସାମାଜିକ ନାଟକ ହେଲେହେଁ ଏହା ଏକ ସଫଳ ନାଟକ ଭାବେ ଗଣ୍ୟ ।

**ସମାଜ ଚିତ୍ର**

ଏହା କୃଷ୍ଣପ୍ରସାଦଙ୍କ ଅନ୍ୟତମ ସାମାଜିକ ନାଟକ । ଏହା ଅସମ୍ପୂର୍ଣ୍ଣ ହେଲେ ମଧ୍ୟ ଏହା ତାଙ୍କର ନାଟ୍ୟ ପ୍ରତିଭାର ଅମ୍ଳାନ ସ୍ୱାକ୍ଷର ବହନ କରେ ।

**ସଙ୍ଗୀତ**

ଯାତ୍ରା ନାଟକର ସଫଳତା ଅନେକାଂଶରେ ସଙ୍ଗୀତ ଉପରେ ନିର୍ଭର କରିଥାଏ । ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଗଦ୍ୟ ସଂଳାପ ଆଦୌ ନ ଥିଲା । ଏହି ସଙ୍ଗୀତ ହିଁ ଥିଲା ଭାବ ପ୍ରକାଶର ସଂଳାପ । କୃଷ୍ଣପ୍ରସାଦଙ୍କର ଥିଲା ଅସାଧାରଣ କବିତ୍ୱ । ତାଙ୍କର ନାଟକରେ ସଙ୍ଗୀତଗୁଡ଼ିକ ଅପୂର୍ବ ଦୀପ୍ତିରେ ମହିମାମଣ୍ଡିତ ହୋଇ ଉଠିଥିଲା । ସେ ଯାତ୍ରାକାରମାନଙ୍କୁ ଶାସ୍ତ୍ରୀୟ ସଙ୍ଗୀତ ପଦ୍ଧତି ଅନୁସରଣ କରିବାକୁ ପରାମର୍ଶ ଦେଉଥିଲେ । ଗୀତିକାର ଭାବରେ ସେ ସେହି ସମୟରେ ଅତ୍ୟନ୍ତ ଲୋକପ୍ରିୟ ହୋଇଉଠିଥିଲେ । ଅନ୍ୟ ନାଟ୍ୟକାରମାନେ ତାଙ୍କ ନାଟକରେ ସଙ୍ଗୀତ ଲେଖିଦେବାକୁ ଅନୁରୋଧ କରୁଥିଲେ । ନାଟ୍ୟକାର କାର୍ତ୍ତିକ କୁମାର ଘୋଷ 'ମାତୃପୂଜା' ନାଟକରେ କୃଷ୍ଣପ୍ରସାଦଙ୍କ ଏକାଧିକ ସଙ୍ଗୀତକୁ ସ୍ଥାନିତ କରିଛନ୍ତି । ଏଥିରେ ଦକ୍ଷତା ଯୋଗୁଁ ଓଡ଼ିଆ ପ୍ରାଚୀନ କଥାଚିତ୍ର 'ଶ୍ରୀଜଗନ୍ନାଥ'ରେ ଏକାଧିକ ସଙ୍ଗୀତ ରଚନା କରିବାର ସେ ସୁଯୋଗ ଲାଭ କରିଥିଲେ । ସମୟ ଉପଯୋଗୀ ସ୍ୱରବିନ୍ୟାସ ଓ ଲଳିତ ଶବ୍ଦଗୁମ୍ଫନରେ ତାଙ୍କର ସଙ୍ଗୀତ ଅପୂର୍ବ ଭାବତନ୍ମୟତାରେ ଶ୍ରୋତାକୁ ଅତୀନ୍ଦ୍ରିୟ ରାଜ୍ୟକୁ ନେଇଯାଉଥିଲା ।

ସଙ୍ଗୀତ ହିଁ ଥିଲା କୃଷ୍ଣପ୍ରସାଦଙ୍କ ନାଟ୍ୟକଳାର ପ୍ରାଣଧର୍ମ । ତାଙ୍କର ନାଟକ ସମୂହରେ ଦିଆଯାଇଥିବା ସଙ୍ଗୀତଗୁଡ଼ିକ ଓଡ଼ିଆ ଗୀତିକବିତାର ଅକ୍ଷୟ ସମ୍ପଦ ରୂପେ ଆଦୃତ ହେଉଅଛି । କୃଷ୍ଣପ୍ରସାଦଙ୍କର ଯେଉଁ କେତେ ଗୋଟି ସଙ୍ଗୀତ ପୁସ୍ତକ ପ୍ରକାଶିତ ହୋଇଅଛି, ସେଗୁଡ଼ିକ ହେଲା –

(କ) ଫୁଲ ହାର (ପ୍ରଥମ ଓ ଦ୍ୱିତୀୟ) (ଖ) ପ୍ରସାଦ ଗୀତାବଳି

(ଗ) ଅଳକାନନ୍ଦା

(ଘ) ପ୍ରସାଦ ପଦ୍ୟାବଳୀ ଓ ପରିକଳ୍ପନା (ଙ) ସଙ୍ଗୀତ ଫୁଲହାର

କବି 'ସଙ୍ଗୀତ ଫୁଲହାର' ଶୀର୍ଷକ ସଙ୍ଗୀତ ସଙ୍କଳନର ପ୍ରାରମ୍ଭରେ ଲେଖିଛନ୍ତି –

''ଆଣିଛି ଏ ଫୁଲହାର ତୁମ ଲାଗି ହେ ସୁନ୍ଦର
ହେବ କି ନ ହେବ ଘେନା, ମୋର ଦୀନ ଉପହାର
ଉତ୍କଳ କାବ୍ୟ କାନନେ, ମୁହିଁ ଦୀନ ମାଳାକାର
ଉପବନେ ଭେଦିବାକୁ ନାହିଁ ମୋର ଅଧିକାର ।''

ସୁଦୀର୍ଘ ସାହିତ୍ୟ ସାଧନା ମାଧ୍ୟମରେ କୃଷ୍ଣପ୍ରସାଦ ନୂତନତାର ଉପାସନା କରିଯାଇଛନ୍ତି । ସେ ଥିଲେ ରୁଚି ଓ ସୃଷ୍ଟିରେ ଅତ୍ୟାଧୁନିକ । ତାଙ୍କ ଲିଖିତ କେତେକ ପଙ୍‌କ୍ତିରୁ କବିଙ୍କ ମନର ନୂତନତ୍ୱପ୍ରୟାସୀ ଅତ୍ୟାଧୁନିକତାର ପରିଚୟ ମିଳେ, ଯଥା –

''ଯେ ଫୁଲ ଫୁଟି ନାହିଁ କାହିଁ
ସେ ଫୁଲେ ଗୁନ୍ଥ ଗୋ ମାଳା
ସେ ଯେ ଜଳି ନାହିଁ କାହିଁ
ସେ ଦୀପ ହେଉ ଉଜାଳା ।''

(ପ୍ରସାଦ ପଦ୍ୟାବଳୀ)

କୃଷ୍ଣପ୍ରସାଦ ଦୀର୍ଘଦିନ ଧରି 'His Master's Voice' ନାମକ ଗ୍ରାମୋଫୋନ କମ୍ପାନୀଦ୍ୱାରା ଟ୍ରେନର ଭାବେ ନିଯୁକ୍ତ ହୋଇଥିବା ପୂର୍ବରୁ ବର୍ଣ୍ଣିତ । ସେ ସେଥିରେ ଦୀର୍ଘ ଦିନ ଧରି କାର୍ଯ୍ୟ କରିଥିଲେ ଓ ବହୁ ନବାଗତଙ୍କୁ ଶିଳ୍ପୀଭାବେ ପ୍ରତିଷ୍ଠିତ କରାଇଥିଲେ । କବିଙ୍କ ପ୍ରଚେଷ୍ଟାରେ ଓଡ଼ିଆ ସଙ୍ଗୀତର ବିଭିନ୍ନ ରେକର୍ଡମାନ ପ୍ରସ୍ତୁତ ଓ ପ୍ରଚାରିତ ହୋଇ ଓଡ଼ିଶାରେ ଗ୍ରାମୋଫୋନ ରେକର୍ଡର ଏକ ନୂତନ ଯୁଗର ସୃଷ୍ଟି କରିଥିଲା ।

**ଖଣ୍ଡ କାବ୍ୟ**

ଓଡ଼ିଆ ନାଟ୍ୟ ଜଗତରେ ପ୍ରତିଷ୍ଠିତ ଥିବାବେଳେ ସେସମୟର ବିଶିଷ୍ଟ ପାଲାଗାୟକ ନରିନାଥଙ୍କ ଅନୁରୋଧକ୍ରମେ ପରୀକ୍ଷାମୂଳକ ଭାବେ କୃଷ୍ଣପ୍ରସାଦ 'ବାମନାବତାର' ନାମକ ଏକ ଖଣ୍ଡକାବ୍ୟ ରଚନା କରି ନରିନାଥଙ୍କୁ ଦେଇଥିଲେ । ଗାୟକ ନରିନାଥଙ୍କ ସମ୍ପ୍ରଦାୟଦ୍ୱାରା ଓଡ଼ିଶା ଓ ଓଡ଼ିଶା ବାହାରେ ତାହା ପ୍ରଚାରିତ ହେଲା । ଖଣ୍ଡ କାବ୍ୟଟି ଆଶାତୀତ ସଫଳତା ପାଇଲା । କୃଷ୍ଣପ୍ରସାଦ ତେଣୁ ନାଟକ ଓ ସଙ୍ଗୀତ ରଚନା ସାଙ୍ଗକୁ ପାଲାଗାୟକମାନଙ୍କ ନିମନ୍ତେ ଖଣ୍ଡକାବ୍ୟମାନ ରଚନା କଲେ । ୧୯୪୩ ମସିହାରୁ ତାଙ୍କଦ୍ୱାରା ପରିଚାଳିତ ହେଉଥିବା ବିରଜା ଅପେରା ସମ୍ପୂର୍ଣ୍ଣରୂପେ ଭାଙ୍ଗିଯିବାରୁ କୃଷ୍ଣପ୍ରସାଦ ଅଧିକାଂଶ ସମୟ ପାଲାଗାୟକମାନଙ୍କପାଇଁ ଖଣ୍ଡକାବ୍ୟ ରଚନାରେ ଅଧିକାଂଶ ସମୟ ବିନିଯୋଗ କଲେ । ସେହି ଖଣ୍ଡକାବ୍ୟଗୁଡ଼ିକ

କୃଷ୍ଣପ୍ରସାଦଙ୍କ ପରିଣତ ବୟସର ରଚନା ହୋଇଥିବାରୁ ସେଗୁଡ଼ିକ ତାଙ୍କ ପ୍ରତିଭାର ଚରମ ବିକାଶ ହୋଇଉଠିବା ସ୍ୱାଭାବିକ । କୃଷ୍ଣପ୍ରସାଦ ମଧ୍ୟ ଓଡ଼ିଆ ସାହିତ୍ୟରେ ଖଣ୍ଡକାବ୍ୟ ରଚନା ଦିଗରେ ଆଦ୍ୟସୂରୀ ହେବାର ଗୌରବ ଅର୍ଜନ କଲେ ।

କୃଷ୍ଣପ୍ରସାଦଙ୍କର ପାଲା ଉପଯୋଗୀ ଓ ଜନାଦୃତ ହୋଇଥିବା ଖଣ୍ଡକାବ୍ୟଗୁଡ଼ିକ ମଧ୍ୟ ପରିମାଣ ଦୃଷ୍ଟିରୁ କମ୍ ନୁହେଁ । ସେଗୁଡ଼ିକ ହେଲା, 'ତ୍ରିବିକ୍ରମ', 'ପାଞ୍ଚାଳୀ', 'ପଦ୍ମାପହରଣ', 'ନିକୁମ୍ଭିଲା', 'ବ୍ରାହ୍ମଣ', 'ଦ୍ରାକ୍ଷାୟଣୀ', 'ପରୀକ୍ଷିତ ବ୍ରହ୍ମଶାପ', 'ପାଦୁକା', 'କିଷ୍କିନ୍ଧ୍ୟା' 'କଚ ଦେବଯାନୀ', 'ଚଣ୍ଡାଶୋକ', 'ହରିଶ୍ଚନ୍ଦ୍ର', 'ଛତ୍ରପତି ଶିବାଜୀ', 'ଦେବବ୍ରତ', 'ନିମାଇଁ ସନ୍ନ୍ୟାସ', 'ଉର୍ବଶୀ ଅଷ୍ଟବକ୍ର', 'କବି ନର୍ତ୍ତକୀ', 'ଜଡ଼ ଭରତ', 'ପ୍ରଭାସ ଯଜ୍ଞ', 'ସାବିତ୍ରୀ', 'ନଳ ଦମୟନ୍ତୀ', 'ମଧୁକୈଟଭ', 'ବସନ୍ତସେନା', 'ଜନ୍ମାଷ୍ଟମୀ', 'ପାତକୀ', 'ପୁଷ୍ପାଞ୍ଜଳି', 'କାମ୍ୟକ୍', 'ଅଛୁଆଁ ଝିଅ', 'ଗୌରଗାଥା', 'ରାଜସୂୟ ଯଜ୍ଞ', 'ବଭ୍ରୁବାହନ', 'ମାତୃପୂଜା', 'ଶଙ୍କରାଚାର୍ଯ୍ୟ', 'ଖାଣ୍ଡବ ଦହନ', 'ଗାନ୍ଧୀ ଚରିତ' ଓ 'ହିମାଦ୍ରିଜେମା' ।

ଏହି ଖଣ୍ଡ କାବ୍ୟ ମଧ୍ୟରୁ ଅଧିକାଂଶ ପ୍ରକାଶ ପାଇଅଛି । ଖଣ୍ଡକାବ୍ୟଗୁଡ଼ିକ କୃଷ୍ଣପ୍ରସାଦଙ୍କ ଅପୂର୍ବ ପ୍ରତିଭାର ଅମ୍ଳାନ ସ୍ୱାକ୍ଷର ବହନ କରେ । ଏହି ଖଣ୍ଡକାବ୍ୟଗୁଡ଼ିକ ଯେ ତାଙ୍କର ଓଡ଼ିଆ ସାହିତ୍ୟକୁ ସର୍ବଶ୍ରେଷ୍ଠ ଦାନ, ଏହା ନିଃସନ୍ଦେହରେ କୁହାଯାଇପାରେ ।

### ଅନୁବାଦ ଗ୍ରନ୍ଥ

କୃଷ୍ଣପ୍ରସାଦ ମଧ୍ୟ କେତେଗୋଟି ପ୍ରସିଦ୍ଧ ସଂସ୍କୃତ ଶ୍ଳୋକକୁ ଅନୁବାଦ କରିଛନ୍ତି । ସେଗୁଡ଼ିକ ହେଲା –

(କ) ମହିମା ସ୍ତବର ଅନୁଭୂତି (ଖ) ବାଲ୍ୟପରାଧ କ୍ଷମାଦାନ

(ଗ) ଦଣ୍ଡକସ୍ତବ

## ଗଦ୍ୟ ରଚନା

### ଆଖଡ଼ା ଘରେ ବୈଠକ

କୃଷ୍ଣପ୍ରସାଦଙ୍କ ଜୀବନ ଥିଲା ଆଖଡ଼ାଘର-ସର୍ବସ୍ୱ । ଏହିପରି ଏକ ଆଖଡ଼ା ଘରେ ସେ ବାଲ୍ୟକାଳରେ ସଙ୍ଗୀତ ଶିକ୍ଷା କରିଥିଲେ । କଲେଜରେ ପଢ଼ିବାବେଳେ ଆଖଡ଼ାଘରେ ଯୋଗ ଦେବା ଥିଲା ତାଙ୍କର ସର୍ବାଧିକ ଆକର୍ଷଣ । କଲେଜ ଛାଡ଼ିବା ପରେ ସେ ନିଜେ ଆଖଡ଼ାଘର ସୃଷ୍ଟି କରି ତା'ରି ମାଧ୍ୟମରେ ନିଜ ପ୍ରତିଭାର ବିକାଶ ଘଟାଇଥିଲେ । ଯାଜପୁରଠାରୁ ଆରମ୍ଭ କରି ବାଲେଶ୍ୱର ଜିଲ୍ଲାର ବସ୍ତା ପର୍ଯ୍ୟନ୍ତ ସେ ଜୀବନବ୍ୟାପୀ ଆଖଡ଼ାଘରମାନ ସୃଷ୍ଟି କରି ତା'ରି ମାଧ୍ୟମରେ କଳା ଓ ସଙ୍ଗୀତ ପରିବେଷଣ କରିବାକୁ ଲାଗିଲେ । ଶେଷ ଅବସ୍ଥାରେ – ଯେତେବେଳେ ଯାତ୍ରା ଅପେରା ସଙ୍ଗଠନ କରିବା ସମ୍ଭବ ହେଲା ନାହିଁ, – ସେ ସେହି ଜୀବନର ପ୍ରାଣସ୍ୱରୂପ ଆଖଡ଼ାଘରକୁ ଝୁରି ହେଉଥିଲେ । ବଲାଙ୍ଗୀରରେ ରହୁଥିବାବେଳେ

ଓଡ଼ିଶାର ବିଶିଷ୍ଟ ସାହିତ୍ୟିକ ମାୟାଧର ମାନସିଂହ ତାଙ୍କ ସମ୍ପାଦିତ 'ଚତୁରଙ୍ଗ'ପାଇଁ କବିଙ୍କୁ କିଛି ଲେଖା ଦେବାକୁ ଅନୁରୋଧ କଲେ । କୃଷ୍ଣପ୍ରସାଦ ନିଜର ସ୍ୱଭାବସୁଲଭ ଭଙ୍ଗୀରେ କହିଲେ –

''ଏ ଦରପାଠୁଆ ଆଖଡ଼ାଘରବାଲା ବା କି ଲେଖା ଲେଖିବ ?''

କବି ମାନସିଂହ ଉତ୍ତରରେ କହିଥିଲେ –

''କାହିଁକି, ଆପଣଙ୍କ ଆଖଡ଼ାଘର ବୈଠକର ବିବରଣୀମାନ ଓଡ଼ିଆ ସାହିତ୍ୟକୁ ଦିଅନ୍ତୁ ନା !''

କଥାଟା କୃଷ୍ଣପ୍ରସାଦଙ୍କ ମନକୁ ପାଇଲା । ସେ ଆଖଡ଼ାଘର ବୈଠକ ବିବରଣୀ ଦେବା ଛଳରେ ନିଜର ବିପୁଳ ଅଭିଜ୍ଞତାକୁ ସମ୍ବଳ କରି ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ୍ ସମ୍ବନ୍ଧୀୟ ନିଜର ସକଳ ସାଧନା, ଚେଷ୍ଟା, ଚିନ୍ତା, ସୁଖ ଦୁଃଖର ବିଚିତ୍ର ଅଭିଜ୍ଞତାକୁ ସେ ଗଦ୍ୟଶୈଳୀରେ ପ୍ରକାଶ କଲେ । ଲେଖାର ନାମ ଦେଲେ 'ଆଖଡ଼ା ଘରେ ବୈଠକ' ।

'ଚତୁରଙ୍ଗ'ରେ କୃଷ୍ଣପ୍ରସାଦଙ୍କ ଲେଖା ପ୍ରକାଶ ପାଇ ଓଡ଼ିଆ ସାହିତ୍ୟରେ ଏକ ଚମକ ସୃଷ୍ଟି କଲା । ସବୁଆଡୁ ପ୍ରଶଂସାପତ୍ରମାନ ମିଳିଲା ।

'ଚତୁରଙ୍ଗ' ପତ୍ରିକା କିନ୍ତୁ ବହୁକାଳ ତିଷ୍ଠିଲା ନାହିଁ । କିନ୍ତୁ କବିଙ୍କ ମନରେ 'ଆଖଡ଼ା ଘରେ ବୈଠକ'ର ଚିନ୍ତା ଚିରକାଳ ରହିଗଲା । ସେ ଲେଖିଚାଲିଲେ । ପରବର୍ତ୍ତୀକାଳରେ ଯେତେବେଳେ କଟକରୁ 'ଝଙ୍କାର' ପତ୍ରିକା ପ୍ରକାଶ ପାଇଲା ଓ ସେଥିପାଇଁ ଲେଖା ଦେବାପାଇଁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ତଥା ସ୍ୱନାମଧନ୍ୟ ସାହିତ୍ୟିକ ହରେକୃଷ୍ଣ ମହତାବ ତାଙ୍କୁ ଅନୁରୋଧ କଲେ, କୃଷ୍ଣପ୍ରସାଦ ପୂର୍ବର ସେହି 'ଆଖଡ଼ାଘର ବୈଠକ' ଶିରୋନାମରେ ନିଜର ଅଭିଜ୍ଞତା ଓ ଚିନ୍ତାଧାରାକୁ ଧାରାବାହିକ ଭାବେ ପ୍ରକାଶ କରିବାକୁ ଲାଗିଲେ ।

୧୯୬୭ ମସିହା ସେପ୍ଟେମ୍ବର ମାସର 'ଝଙ୍କାର'ରେ ପ୍ରକାଶ ପାଇଥିବା 'ଆଖଡ଼ାଘରେ ବୈଠକ' ଥିଲା କୃଷ୍ଣପ୍ରସାଦଙ୍କ ଶେଷ ଲେଖା ।

**ଉପନ୍ୟାସ**

କଲିକତାରୁ ପ୍ରକାଶ ପାଉଥିବା ଓଡ଼ିଆ ପତ୍ରିକା 'ଆସନ୍ତାକାଲି' ଓ 'ସମାବେଶ'ରେ ଧାରାବାହିକଭାବେ କୃଷ୍ଣପ୍ରସାଦଙ୍କ କ୍ଷୁଦ୍ର ଉପନ୍ୟାସ 'ଫରୁଆ ଲୁଟି' ଓ 'ମାମୁ' ପ୍ରକାଶ ପାଇଥିଲା ।

'ଅଗ୍ରଦୂତ' ମାସିକ ପତ୍ରିକାରେ କୃଷ୍ଣପ୍ରସାଦଙ୍କ ଦୁଇଟି ପ୍ରସିଦ୍ଧ 'ଧର୍ମକଥା ପିତା ଲାଗେ କାହିଁକି ' ଓ 'ନାନାନିଧି' ପ୍ରକାଶ ପାଇଥିଲା ।

## ଆତ୍ମଚରିତ

କୃଷ୍ଣପ୍ରସାଦ 'ପଥଭ୍ରଷ୍ଟର ଜୀବନକଥା' ନାମରେ ଏକ ଆତ୍ମଜୀବନୀ ଲେଖିଛନ୍ତି । ଏହା ସ୍ୱହସ୍ତଲିଖିତ । ଏଥିରେ ମଧ୍ୟ ଜନ୍ମ ସମୟରୁ ଧାରାବାହିକ ଭାବେ ଲିଖିତ ହୋଇ ନାହିଁ । ଜୀବନର କେତେକ ସ୍ମରଣୀୟ ଘଟଣାବଳୀର ସଂକ୍ଷିପ୍ତ ତଥା ଅସଂଲଗ୍ନ ବର୍ଣ୍ଣନାର ଏହା ସମାହାର ମାତ୍ର । ଏହା ମଧ୍ୟ ପ୍ରକାଶ ପାଇ ନାହିଁ ।

## ସମ୍ମାନ

ସାହିତ୍ୟିକ ଓ ସାଙ୍ଗୀତିକ ପ୍ରତିଭାର ସ୍ୱୀକୃତିସ୍ୱରୂପ, କୃଷ୍ଣପ୍ରସାଦ ବହୁ ସମ୍ମାନର ଅଧିକାରୀ ହୋଇଛନ୍ତି । ତାଙ୍କ ନାଟ୍ୟ ପ୍ରତିଭାରେ ମୁଗ୍ଧ ହୋଇ ମୟୂରଭଞ୍ଜର ମହାରାଜା ପୂର୍ଣ୍ଣଚନ୍ଦ୍ର ଭଞ୍ଜଦେଓ ତାଙ୍କୁ 'ଉତ୍କଳ ସନ୍ଦର୍ଭ' ଉପାଧିରେ ଭୂଷିତ କରିଥିଲେ । ତାଙ୍କ ସାରସ୍ୱତ ସୃଷ୍ଟିର ମୂଲ୍ୟାୟନ କରି ଆଳିର କଳାନୁରାଗୀ ରାଜା ବ୍ରଜସୁନ୍ଦରଦେବ ତାଙ୍କୁ 'କବିମଞ୍ଜୁଳ' ଉପାଧି ପ୍ରଦାନ କରିଥିଲେ । ପ୍ରଜାତନ୍ତ୍ର ପ୍ରଚାର ସମିତି ୧୯୫୬ ମସିହାର ବିଷୁବ ମିଳନ ଉତ୍ସବରେ ଓଡ଼ିଶାର ସର୍ବଶ୍ରେଷ୍ଠ ବ୍ୟଙ୍ଗ ସାହିତ୍ୟିକଭାବେ ସମ୍ମାନିତ କରିଥିଲା । ୧୯୬୫ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀ କୃଷ୍ଣପ୍ରସାଦଙ୍କୁ ଉପହାର ଓ ମାନପତ୍ର ଦେଇ ସମ୍ବର୍ଦ୍ଧିତ କରିଥିଲା । ଶ୍ରୀରାମଚନ୍ଦ୍ର ଭବନରେ ଏକ ସଭାରେ ବିଶିଷ୍ଟ ସାହିତ୍ୟିକ ଗୋପାଳଚନ୍ଦ୍ର ପ୍ରହରାଜ କହିଥିଲେ – ''ଆପଣ ନିଶ୍ଚିତ ଆଚାର୍ଯ୍ୟ ଶ୍ରେଷ୍ଠ । ଆପଣ କବିମଞ୍ଜୁଳ । ଆପଣ ଆମ ଜାତିର ଗୌରବ ।''

## ଶେଷ ଜୀବନ

କୃଷ୍ଣପ୍ରସାଦଙ୍କ ଶେଷ ଜୀବନ ଦୁଃଖମୟ ଥିଲା । ବିରଜା ହାଟ ସମ୍ପର୍କୀୟ ମାମଲା ତାଙ୍କୁ ସବୁବେଳେ ବ୍ୟଥିତ କରିପକାଉଥିଲା । ତାଙ୍କର ଦେହ ମଧ୍ୟ ଭଲ ରହୁ ନ ଥିଲା । ସେ ଥିଲେ ମୂତ୍ରକୃଚ୍ଛ୍ର ରୋଗୀ । ବୃଦ୍ଧାବସ୍ଥା ଯୋଗୁଁ ରୋଗଟା ଭୀଷଣ ଓ ଭୟାନକ ହୋଇଉଠିଥିଲା । ବେଳେ ବେଳେ ଚାଲୁ ଚାଲୁ ପଡ଼ି ଯାଉଥିଲେ । ଚେତା ବି ହଜି ଯାଉଥିଲା । ଶେଷ ସମୟ ଆଡ଼କୁ ଆଖିକୁ ବି ଭଲ ଦେଖାଗଲା ନାହିଁ । ଜୀବନର ଶେଷ ପର୍ଯ୍ୟନ୍ତ ଅର୍ଥାଭାବ ଲାଗିରହିଥିଲା ।

୧୯୬୮ ମସିହା ଆଡ଼କୁ କୃଷ୍ଣପ୍ରସାଦ ଶଯ୍ୟାଶାୟୀ ହୋଇପଡ଼ିଲେ । ତାଙ୍କର ଏକମାତ୍ର ପୁତ୍ର ବିଶେଶ୍ୱର ପଶ୍ଚିମବଙ୍ଗ ସରକାରଙ୍କ ଅଧୀନରେ ଜୁଡିସିଆଲ ଅଫିସର ଥିଲେ । ପିତାଙ୍କ ଦେହ ଭଲ ନ ଥିବା ଜାଣି ସେ ଛୁଟି ନେଇ ଯାଜପୁର ଆସିଲେ । ୧୯୬୮ ମସିହା ଅଗଷ୍ଟ ମାସ ୧୮ ତାରିଖ, ଦିନତମାମ ବର୍ଷା ଲାଗି ରହିଥିଲା । କୃଷ୍ଣପ୍ରସାଦଙ୍କ ଅବସ୍ଥା ସଙ୍କଟାପନ୍ନ ହୋଇଉଠିଲା । ଦିନ ଯାଇ ରାତି

ହେଲା । ଡାକ୍ତରମାନେ ଲାଗିରହିଥାନ୍ତି । ଚିକିତ୍ସା ବି ଚାଲିଥାଏ । ତଥାପି କିଛି ଫଳ ହେଲା ନାହିଁ । କୃଷ୍ଣପ୍ରସାଦ ସଂଜ୍ଞାହୀନ ଅବସ୍ଥାରେ ପଡ଼ିରହିଲେ । ଶେଷରେ ରାତ୍ରି ଦଶଟାରେ ସେ ଶେଷ ନିଃଶ୍ୱାସ ତ୍ୟାଗ କଲେ ।

କୃଷ୍ଣପ୍ରସାଦଙ୍କ ଶବାଧାରକୁ ତାଙ୍କ ପ୍ରିୟ କାଳୀଙ୍କ ଚଉପାଢ଼ିରେ କିଛି ସମୟ ରଖାଗଲା । ମା' କାଳୀଙ୍କର ଛଡ଼ା ଫୁଲ ଓ ପାଦଧୂଳି କବିଙ୍କ କପାଳରେ ବୋଳି ଦିଆଗଲା । ପବିତ୍ର ବୈତରଣୀ ନଦୀକୂଳସ୍ଥ ଦଶାଶ୍ୱମେଧ ଘାଟକୁ ତା'ପରେ ନିଆଗଲା । ଡଙ୍ଗାରେ ବସାଇ କବିଙ୍କ ମରଶରୀରକୁ ବୈତରଣୀ ମଧ୍ୟସ୍ଥ ବାରୁଣୀ ପଡ଼ିଆକୁ ନିଆଗଲା । ଚିତାଗ୍ନିରେ ଲେଲିହାନ ଶିଖାରେ କବିଙ୍କ ଶରୀର ପାଉଁଶରେ ପରିଣତ ହୋଇଗଲା ।

ଆଲୋଚକଙ୍କ ଭାଷାରେ –

''ଶତାବ୍ଦୀର ଏକ ଦୀପ୍ତିମାନ୍ ମାର୍ତ୍ତଣ୍ଡ ବାରୁଣୀ ଭୂମିରେ ବାରୁଣୀରେ ଅସ୍ତମିତ ହୋଇଗଲା ।''

ଓଡ଼ିଶାର ପ୍ରତିଷ୍ଠିତ ଦୈନିକ 'ସମାଜ' ସମ୍ପାଦକୀୟରେ ଲେଖିଥିଲେ –

''ଓଡ଼ିଶାର ଅନ୍ୟତମ ସାହିତ୍ୟ ସାଧକ ଖ୍ୟାତିସମ୍ପନ୍ନ ନାଟ୍ୟକାର ସଙ୍ଗୀତ ଶିଳ୍ପୀ ଓ ଅଭିନେତା ଶ୍ରୀ କୃଷ୍ଣପ୍ରସାଦ ବସୁ ଆଉ ଇହଜଗତରେ ନାହାନ୍ତି । × ×× ତାଙ୍କ ମୃତ୍ୟୁରେ ଓଡ଼ିଶାର ସାହିତ୍ୟ କ୍ଷେତ୍ରରେ ଯେଉଁ ସ୍ଥାନଟି ଶୂନ୍ୟ ହେଲା, ବହୁ ବର୍ଷ ଯାଏ ତାହା ଆଉ ପୂରଣ ହେବାର ନୁହେଁ .... ।''

ଓଡ଼ିଶାର ବିଶିଷ୍ଟ ଜନନାୟକ ଡଃ ହରେକୃଷ୍ଣ ମହତାବ 'ଇତିହାସ କେବେ ଭୁଲିବ ନାହିଁ' ଶିରୋନାମରେ ଲେଖିଥିଲେ –

ଆଜିର ଲିଖିତ ଇତିହାସରେ କୃଷ୍ଣବାବୁ ଆଉ ନାହାନ୍ତି, କିନ୍ତୁ ଜ୍ୱଳନ୍ତ ଭାବେ ଅଛନ୍ତି ଭବିଷ୍ୟତ୍‌ର ଇତିହାସରେ ....।''

କୃଷ୍ଣପ୍ରସାଦ ଥିଲେ ପ୍ରଖ୍ୟାତ ଲୋକ ନାଟ୍ୟକାର । ନାଟ୍ୟପ୍ରତିଭା ଥିଲା ତାଙ୍କର ଈଶ୍ୱରଦତ୍ତ । ଗଣସାହିତ୍ୟ ସୃଷ୍ଟିର ଅଦମ୍ୟ କାମନାକୁ ଚରିତାର୍ଥ କରିବାପାଇଁ ସେ ସୃଷ୍ଟି କରିଗଲେ ଅଗଣିତ ନାଟକ । ସେ ପୁଣି ଥିଲେ ଅପୂର୍ବ ସାରସ୍ୱତ ପ୍ରତିଭାର ଅଧିକାରୀ । ସୃଜନର ମୋହନବଂଶୀ ତାଙ୍କ ନିଭୃତ ଅନ୍ତରରେ ସତତ ନିନାଦିତ ହେଉଥିଲା । ଜୀବନର ଶେଷ ଭାଗ ପର୍ଯ୍ୟନ୍ତ ସାରସ୍ୱତ ସାଧନାରେ ନିଜକୁ ନିୟୋଜିତ ରଖିଥିଲେ । ତାଙ୍କ ଲେଖନୀର ସ୍ପର୍ଶ ଯେଉଁଠାରେ ଲାଗିଛି ତାହା ସ୍ୱର୍ଗୀୟ ସୁଷମାରେ ଉଦ୍‌ଭାସିତ ହୋଇଉଠିଛି । ଫଳରେ ଓଡ଼ିଆ ସାହିତ୍ୟ ହୋଇଛି ସମୃଦ୍ଧ । ନାଟ୍ୟକାର ଭାବେ ତାଙ୍କର ନବଜନ୍ମର ସମ୍ଭାବନାକୁ ଏଡ଼ାଇ ଦିଆଯାଇ ନ ପାରିଲେ ମଧ୍ୟ ମଞ୍ଜୁଳ କବିତ୍ୱପାଇଁ କବିମଞ୍ଜୁଳ କୃଷ୍ଣପ୍ରସାଦ ବସୁ ଚିରଞ୍ଜୀବୀ ହୋଇ ଯେ ରହିଥିବେ, ଏଥିରେ ସନ୍ଦେହ ନାହିଁ ।

□□□



## ଯୁଗସ୍ରଷ୍ଟା ସାଧକ
# ଗୋପାଳ ଛୋଟରାୟ
## [୧୯୧୬ –୨୦୦୩]

ନାଟ୍ୟକାର ଗୋପାଳ ଛୋଟରାୟ ଓଡ଼ିଆ ନାଟକ ସ୍ୱର୍ଣ୍ଣଯୁଗର ଏକ ବଳିଷ୍ଠ ପ୍ରତିନିଧି । ବିଷୟବସ୍ତୁ ନିର୍ବାଚନ, ପାତ୍ରୋଚିତ ସଂଳାପ, ସଂଯୋଜନା ଓ ଶୈଳୀରେ ଅଭିନବ ନାଟକୀୟତା ସୃଷ୍ଟିରେ ସେ ସାମସମୟିକ ନାଟ୍ୟକାରମାନଙ୍କଠାରୁ ସ୍ୱାତନ୍ତ୍ର୍ୟତା ଦାବି କରନ୍ତି । ପାରିବାରିକ ଜୀବନର ଜଟିଳତା, ସମାଜର ବାଧା, ପ୍ରଥାବଦ୍ଧ ବିଶ୍ୱାସ ଓ ପରମ୍ପରାର ବନ୍ଧନକୁ ଛିନ୍ନ କରି ଜୀବନର ମହତ୍ତ୍ୱ ଓ ସାମାଜିକ ଜୀବନର ଉତ୍କର୍ଷକୁ ସେ ଯେପରି ପ୍ରତିପାଦିତ କରିଛନ୍ତି, ତାହା ପଟାନ୍ତରହୀନ ବୋଲି କେହି କେହି ଆଲୋଚକ ମତ ଦେଇଛନ୍ତି ।

ଗୋପାଳ ଛୋଟରାୟ ବର୍ତ୍ତମାନର ଜଗତ୍‌ସିଂହପୁର ଜିଲ୍ଲା ଅନ୍ତର୍ଗତ ପୁରୁଣାଗଡ଼ ଗ୍ରାମରେ ୧୯୧୬ ମସିହା ଜାନୁଆରୀ ମାସ ୧ ତାରିଖରେ ଏକ ସମ୍ଭ୍ରାନ୍ତ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ହଳଧର ଛୋଟରାୟ ଓ ମାତାଙ୍କ ନାମ ଇନ୍ଦୁମତୀ ଦେବୀ । ମାତା ଅତୀବ ଧର୍ମପରାୟଣା ଥିଲେ । ଗୋପାଳ ଛୋଟରାୟ ମାତାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ ।

**ବାଲ୍ୟଶିକ୍ଷା**

ସାତ ବର୍ଷ ବୟସରେ ପୁରୁଣାଗଡ଼ ଗ୍ରାମର ନିମ୍ନ ପ୍ରାଥମିକ ବିଦ୍ୟାଳୟରେ ଗୋପାଳ ଶିକ୍ଷା ଆରମ୍ଭ କଲେ । ସେ ଅତ୍ୟନ୍ତ ସରଳ ଓ ଶାନ୍ତ ପ୍ରକୃତିର ଥିଲେ । ଶିକ୍ଷକମାନଙ୍କର ତେଣୁ ସେ ପ୍ରୀତିଭାଜନ ହୋଇପାରିଥିଲେ । ସେ ମଧ୍ୟ ମେଧାବୀ ଛାତ୍ର ଥିଲେ । ତୃତୀୟ ଶ୍ରେଣୀ ପରୀକ୍ଷାରେ ସେ ବୃତ୍ତି ପାଇବାପାଇଁ ଯୋଗ୍ୟ ବିବେଚିତ ହୋଇଥିଲେ । ମାତ୍ର ଭୁଲ୍‌ବଶତଃ ବୃତ୍ତି ପାଇବା ଛାତ୍ରଟିର ନାମ ଗୋପାଳ ପ୍ରସାଦ ଚାଟାର୍ଜୀ ଜଣାପଡ଼ିବାପରେ ପରିବାରର ଲୋକେ ତଥା ଗୁରୁଜୀ କ୍ଷେତ୍ରମୋହନ ରାୟ ମ୍ରିୟମାଣ ହୋଇପଡ଼ିଥିଲେ । ଚାରିଟା ଚାଷ କଲାବାଲା ଘରର ପୁଅ ହୋଇଥିବାରୁ ଗୋପାଳ ଏଥିପ୍ରତି ଭ୍ରୂକ୍ଷେପ କରି ନ ଥିଲେ । ପରିଶେଷରେ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଭାଗବତବାବୁଙ୍କ ଉଦ୍ୟମ ଫଳରେ ବୃତ୍ତି ଟଙ୍କା ତାଙ୍କୁ ମିଳିଲା । ଚତୁର୍ଥ ଶ୍ରେଣୀରେ ନାମ ଲେଖାଇଲାବେଳେ କିଛି ଅର୍ଥ ଦେବାକୁ ପଡ଼ି ନ ଥିଲା ।

ଗୋପାଳ ଜଗତ୍‌ସିଂହପୁର ମଧ୍ୟ-ଇଂରାଜୀ ବିଦ୍ୟାଳୟରେ ଅଧ୍ୟୟନ କଲେ । ଗାଁ ପୁରୁଣାଗଡ଼ ଠାରୁ ଜଗତ୍‌ସିଂହପୁର ହେଉଛି ଦେଢ଼ମାଇଲ ଦୂର । ବାଟରେ ପୁଣି ଅଳକା ନଦୀ ପାର ହେବାକୁ ପଡୁଥିଲା । ନଈ ପାରିହେଲେ ପଡ଼େ ଚାଟରା ଗାଁ । ସେ ଗାଁ ପାଖେ ହେଉଛି ତାଙ୍କ ବିଦ୍ୟାଳୟ । ଗୋପାଳଙ୍କୁ ଚାଲି ଚାଲି ଯିବାକୁ ପଡୁଥିଲା । ତେବେ ସେଥିପାଇଁ ତାଙ୍କ ମନରେ ଦୁଃଖ ନ ଥିଲା ।

ଚତୁର୍ଥ ଶ୍ରେଣୀର ଛାତ୍ର ଥିଲାବେଳେ ଗୋପାଳ ବହୁ କଂଗ୍ରେସ ନେତାଙ୍କୁ ଭେଟିବାର ସୁଯୋଗ ପାଇଥିଲେ । ନିକଟସ୍ଥ ଅଳକାଶ୍ରମରେ ଥିବା ବଡ଼ ବଡ଼ ନେତାମାନଙ୍କ ପାଖକୁ ସେ ଯାଉଥିଲେ । ସେମାନଙ୍କ ଚିନ୍ତା ଓ ଭାଷଣଦ୍ୱାରା ପ୍ରଭାବିତ ହୋଇଥିଲେ । ସେସମୟରେ ଗୋପାଳ 'ସମାଜ' ପତ୍ରିକା ମଧ୍ୟ ପଢୁଥିଲେ । ଷଷ୍ଠ ଓ ସପ୍ତମ ଶ୍ରେଣୀର ଛାତ୍ର ଥିବାବେଳେ ସେ ଭକ୍ତକବି ମଧୁସୂଦନ ରାଓ ଓ କେତେକ ପ୍ରବନ୍ଧ ଓ କବିତା ପାଠ କରିଥିଲେ । କ୍ରମେ ସେ ଓଡ଼ିଆ ସାହିତ୍ୟ ପ୍ରତି ଅନୁରାଗୀ ହୋଇପଡ଼ିଲେ । ପରୀକ୍ଷାରେ ବିଶେଷତଃ ସାହିତ୍ୟରେ ମଧ୍ୟ ଉଚ୍ଚ ନମ୍ବର ରଖି ଉତ୍ତୀର୍ଣ୍ଣ ହୋଇଥିବା ଜଣାଯାଏ ।

୧୯୩୦ ମସିହା ଜାନୁଆରୀ ମାସରେ ଗୋପାଳ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ଅଧ୍ୟୟନ କରିବାପାଇଁ କଟକ ଆସିଲେ । ଟାଉନ ଭିକ୍ଟୋରିଆ ହାଇସ୍କୁଲରେ ଅଷ୍ଟମ ଶ୍ରେଣୀରେ ତାଙ୍କ ନାମ ଲେଖାଗଲା । ସେ ସେତେବେଳେ କଟକର କାଠଯୋଡ଼ି ହଷ୍ଟେଲରେ ରହୁଥିଲେ ।

ହାଇସ୍କୁଲରେ ପଢୁଥିବାବେଳେ ସେ ବହୁ ଗଳ୍ପ, ଉପନ୍ୟାସ ପଢ଼ିବାର ସୁଯୋଗ ପାଇଲେ । ସେହି ବୟସରେ ସେ କାଳିନ୍ଦୀଚରଣ ପାଣିଗ୍ରାହୀଙ୍କ 'ମାଟିର ମଣିଷ',

ଗୋଦାବରୀଶ ମହାପାତ୍ରଙ୍କ 'ପ୍ରେମଗନ୍ଧ', 'ଜଗୁଆ ମା' ପ୍ରଭୃତି ଉପନ୍ୟାସ ପଢ଼ିଥିଲେ । ପୁଣି ବଙ୍ଗଳାର ଔପନ୍ୟାସିକ, ଯଥା– ବଙ୍କିମଚନ୍ଦ୍ର ଚାଟାର୍ଜୀ, ଶରତଚନ୍ଦ୍ର ପ୍ରଭୃତିଙ୍କ ଉପନ୍ୟାସ ପଢ଼ିଲେ । ଅଧିକ ଉପନ୍ୟାସ ପଢ଼ିବାପାଇଁ ମାସିକ ଆଠ ଅଣା ଦେଇ ବାଳକୃଷ୍ଣ କରଙ୍କ 'ଆନନ୍ଦ ଲହରୀ ମାଳା'ର ସଭ୍ୟ ହେଲେ । ୧୯୩୦ ମସିହା ଅପ୍ରେଲ ମାସ ୩ ତାରିଖରେ ସେ ବିଦ୍ୟାଳୟରୁ ଫେରିବା ବାଟରେ 'ପ୍ରବାସୀ ବାଙ୍ଗ୍‌ଲା ପରିଷଦ' ପାଠାଗାର ଦେଖି ଆଶ୍ଚର୍ଯ୍ୟ ହୋଇପଡ଼ିଲେ । ସେହି ପାଠାଗାରର ସଭ୍ୟ ମଧ୍ୟ ହେଲେ ।

ଗୋପାଳ ୧୯୩୦ ମସିହା ଲବଣ ସତ୍ୟାଗ୍ରହରେ ଯୋଗ ଦେଇଥିଲେ । ଗୋପବନ୍ଧୁ ଚୌଧୁରୀ ପ୍ରଭୃତିଙ୍କ ପ୍ରଭାବ ଯେ ତାଙ୍କ ଉପରେ ପଡ଼ିଥିଲା, ଏହା ନିଃସନ୍ଦେହ । କାଠଯୋଡ଼ି ନଦୀ କୂଳରେ ବିଦେଶୀ ବସ୍ତ୍ର ବହୁ ପରିମାଣରେ ପୋଡ଼ାଗଲା । ବିଦେଶୀ ବସ୍ତ୍ର ବର୍ଜନ ଆନ୍ଦୋଳନର ସେ ଜଣେ ନିର୍ଭୀକ କର୍ମୀ ଥିଲେ । ତାଙ୍କୁ ମଧ ସତ୍ୟାଗ୍ରହୀ ଦଳରୁ ଥାନାକୁ ନିଆଯାଇଥିଲା । ବୟସରେ ଏତେ ଛୋଟ ଥିଲେ ମଧ ସେ ପୁଲିସ ଅଫିସରଙ୍କ ଆଗରେ ନତମସ୍ତକ ହୋଇ ନ ଥିଲେ କି ନିଜ ମୁକ୍ତିପାଇଁ ଅନୁରୋଧ କରି ନ ଥିଲେ ।

୧୯୩୧ ମସିହାରେ ଗୋପାଳ ନବମ ଶ୍ରେଣୀର ଛାତ୍ର ଥାଆନ୍ତି । ସେ ସ୍କୁଲରୁ ହଷ୍ଟେଲକୁ ଭାଷାକୋଷ ଲେନ୍ ଦେଇ ଫେରୁଥିଲେ । ଭାଷାକୋଷ ଲେନ୍‌ରେ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଭାଷାକୋଷ ସଙ୍କଳନ କାର୍ଯ୍ୟ ଦେଖୁଥାନ୍ତି । ପୁସ୍ତକ ସମ୍ପର୍କୀୟ କାର୍ଯ୍ୟ ତାଙ୍କୁ ବେଶ୍ ଭଲ ଲାଗୁଥାଏ । ବହି ପଢ଼ିବାଟା ତାଙ୍କର ଗୋଟିଏ ନିଶା ହୋଇ ଉଠିଥାଏ । ସେ ନିଜେ ସ୍ୱୀକାର କରିଛନ୍ତି –

''ମୋର ପ୍ରାକ୍ କିଶୋର ବୟସରୁ ପଢ଼ିବାର ସ୍ପୃହା ବହୁତ ବେଶୀ । କିନ୍ତୁ ବହି କାହିଁ ? × × × ଲାଇବ୍ରେରୀରୁ ବଙ୍ଗଳା ବହିର ସ୍ରୋତ ଚାଲିଲା । କ୍ଲାସରେ ପଢ଼ା ହେଉଥିବାବେଳେ ସେ ଲୁଚେଇ କରି ଏସବୁ ବହି ପଢୁଥିଲେ । ମୋର ସେ ସ୍ୱଳ୍ପ ବୟସରେ ମୁଁ କାହ୍ନୁଚରଣ ଓ ଉପେନ୍ଦ୍ର କିଶୋରଙ୍କ ଲିଖନ ପ୍ରଣାଳୀରେ ମନ୍ତ୍ରମୁଗ୍ଧ ହୋଇଗଲି ।''

କଟକରେ ପଢୁଥିଲାବେଳେ ଗୋପାଳ ଉତ୍କଳଗୌରବ ମଧୁସୂଦନ ଦାସ, ରମାଦେବୀ ପ୍ରଭୃତି ବ୍ୟକ୍ତିଙ୍କ ସହ ପରିଚିତ ହେଲେ । ସେମାନଙ୍କଦ୍ୱାରା ଅନୁପ୍ରାଣିତ ହୋଇ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଲେ । ଫଳରେ ସେ ଭିକ୍ଟୋରିଆ ହାଇସ୍କୁଲରୁ ବିତାଡ଼ିତ ହେଲେ । ପରେ ଅବଶ୍ୟ ପ୍ୟାରୀମୋହନ ଏକାଡେମୀରୁ ମାଟ୍ରିକ୍ୟୁଲେସନ ପରୀକ୍ଷା ଦେଲେ । ୧୯୩୪ ମସିହାରେ ପାଟଣା ବିଶ୍ୱବିଦ୍ୟାଳୟର

ପରୀକ୍ଷାର୍ଥୀଭାବେ ସେ ପରୀକ୍ଷା ଦେଇଥିଲେ । ସେ ମଧ୍ୟ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହେଲେ । ସେହି ପରୀକ୍ଷା ଫଳ ତାଲିକାରେ ମଧ୍ୟ ତାଙ୍କ ନାମ ଗୋପାଳ ଛୋଟରାୟ ପରିବର୍ତ୍ତେ 'ପ୍ରସାଦ ଗୋପାଳ ଛୋଟରାୟ' ଦେଖିବାକୁ ମିଳିଥିଲା ।

ଗୋପାଳଙ୍କର ଉଚ୍ଚଶିକ୍ଷା ଲାଭ କରିବାକୁ ପ୍ରବଳ ଇଚ୍ଛା ଥିଲା ; ମାତ୍ର ଘରର ଆର୍ଥିକ ପରିସ୍ଥିତି ଭଲ ନ ଥିବାରୁ ସେ ଚାକିରି କରିବାକୁ ସ୍ଥିର କଲେ ।

## ଚାକିରି ଜୀବନ

୧୯୩୫ ମସିହାରେ ଗୋପାଳ କଟକ ଜିଲ୍ଲା ପରିଷଦ ଅଫିସରେ କିରାଣିଭାବେ ନିଯୁକ୍ତ ହେଲେ । ଦୀର୍ଘ ସାତ ବର୍ଷ ଅର୍ଥାତ୍ ୧୯୩୫ ମସିହାରୁ ୧୯୪୩ ମସିହା ପର୍ଯ୍ୟନ୍ତ ସେ ଚାକିରି ଜୀବନ କଟାଇଲେ । ୧୯୪୩ ମସିହାରେ ସେ ଚାକିରି ଛାଡ଼ି ସମ୍ବଲପୁର ଗଲେ । ସମ୍ବଲପୁରରେ ତାଙ୍କର କିଛି ପୈତୃକ ସମ୍ପତ୍ତି ଥିଲା । ସେହି ସମ୍ପତ୍ତିର ବୁଝାଶୁଝା ଭାର ସେ ଗ୍ରହଣ କଲେ । ସେଠାରେ ୧୯୪୯ ମସିହା ପର୍ଯ୍ୟନ୍ତ ରହିଥିଲେ ।

## ମାଇନର ସ୍କୁଲ ପ୍ରତିଷ୍ଠା

୧୯୪୯ ମସିହାରେ ଗୋପାଳ ସମ୍ବଲପୁରରୁ ଆସି କଟକରେ ରହିଲେ । ଗାଁରେ କେବଳ ଗୋଟିଏ ନିମ୍ନମାଧ୍ୟମିକ ସ୍କୁଲ ଥିଲା । ପିଲାଦିନେ ମାଇନର ଶ୍ରେଣୀରେ ପଢ଼ିବାପାଇଁ ଘରଠାରୁ ବହୁଦୂରକୁ ସ୍କୁଲ ଯାଇ ପଢ଼ିବାକୁ ପଡ଼ିଥିଲା । ସେ ସେତେବେଳେ ଯେପରି କଷ୍ଟ ଭୋଗ କରିଥିଲେ, ସେପରି କଷ୍ଟ ଆଉ କେହି ନ ପାଆନ୍ତୁ – ଏହି ଉଦ୍ଦେଶ୍ୟରେ ସେ ନିଜ ଗ୍ରାମ ପୁରୁଣାଗଡ଼ରେ ଗୋଟିଏ ମାଇନର ସ୍କୁଲ ପ୍ରତିଷ୍ଠା କରିବା କାମରେ ଲାଗିପଡ଼ିଲେ । ସ୍କୁଲ ପ୍ରତିଷ୍ଠା ମଧ୍ୟ ହେଲା । ପରେ ସେହି ମାଇନର ସ୍କୁଲଟି ହାଇସ୍କୁଲରେ ପରିଣତ ହେଲା ।

ଗୋପାଳ ଗ୍ରାମରେ କିଛି ବର୍ଷ ରହିଲେ । ଡିଷ୍ଟ୍ରିକ୍ଟ ବୋର୍ଡ଼ର ଚେୟାରମ୍ୟାନ୍ ନୀଳମଣି ପ୍ରଧାନଙ୍କ ଅନୁରୋଧକ୍ରମେ ସେ ଡିଷ୍ଟ୍ରିକ୍ଟ ବୋର୍ଡ଼ରେ କିରାଣିଭାବେ ନିଯୁକ୍ତ ହେଲେ । ୧୯୫୬ ମସିହାରେ ତାଙ୍କର ପଦୋନ୍ନତି ହେଲା । ପରେ ପରେ ତାଙ୍କୁ କଳାହାଣ୍ଡି ଓ ରାଇରଙ୍ଗପୁରକୁ ବଦଳି କରାଯିବାରୁ ସେ ଚାକିରିରୁ ଇସ୍ତଫା ଦେଲେ । ଏହାପରେ ସେ ସର୍ବଭାରତୀୟ ରେଡ଼ିଓ ଆର୍ଟିଷ୍ଟ ସମ୍ମିଳନୀରେ ଯୋଗ ଦେବାକୁ ଦିଲ୍ଲୀ ଗଲେ । ରେଡ଼ିଓ ବିଭାଗରେ କାମ କରିବାର ପ୍ରେରଣା ସେ ସେଠାରୁ ପାଇଲେ । ସେ ଶେଷରେ କଟକ ବେତାର କେନ୍ଦ୍ରରେ ସ୍କ୍ରିପ୍ଟ ରାଇଟର ଭାବରେ ଯୋଗ ଦେଲେ । ୧୯୭୫ ମସିହା ପର୍ଯ୍ୟନ୍ତ ସେ ବେତାର ନାଟକମାନ ରଚନା କରିବାକୁ ଲାଗିଲେ ।

## ନାଟ୍ୟ ପ୍ରେମ

ପିଲାଟି ଦିନରୁ ଗୋପାଳଙ୍କର ଯାତ୍ରା, ପାଲା ଓ ନାଟକ ପ୍ରତି ଆଗ୍ରହ ଥିଲା । ତାଙ୍କର ମଧ୍ୟ ଅଭିନୟ କରିବାରେ ଆଗ୍ରହ ଥିଲା । ନିଜ ଗାଁ ପୁରୁଣାଗଡ଼ର ଏକ

ବଡ଼ ଗଛ ନିକଟରେ ମଞ୍ଚ ବାନ୍ଧି ସେଥିରେ ଅଭିନୟର ବ୍ୟବସ୍ଥା କରୁଥିଲେ । ବିଭିନ୍ନ ନାଟ୍ୟକାରମାନଙ୍କ ନାଟକରେ ସେ ମଧ୍ୟ ଅଭିନୟ କରୁଥିଲେ । ଦଶମ ଶ୍ରେଣୀରେ ଅଧ୍ୟୟନ କଲାବେଳେ ସେ 'ମାମୁ ମାଇଁ ଫାର୍ସ' ଦେଖିଥିଲେ ଓ ନିଜେ ମଧ୍ୟ ସେଥିରେ ଅଭିନୟ କରିଥିଲେ । ୧୯୩୯ ମସିହାରେ ସେ ସଚ୍ଚିନ୍ ସେନଗୁପ୍ତଙ୍କ ବଙ୍ଗଳା ନାଟକମାନ ଦେଖିଲେ । ସେଥିମଧ୍ୟରୁ କେତେକରେ ସେ ନିର୍ଦ୍ଦେଶନା ଦେଲେ । ସେ ମଧ୍ୟ କେତେକ ନାଟକରେ ନାୟକ ଭୂମିକାରେ ଅଭିନୟ କରିଥିଲେ ।

ଗୋପାଳ 'ଭାରତୀୟ ଥିଏଟର୍ସ' ସହିତ ସମ୍ପର୍କ ରଖିଥିଲେ । ତାହାଦ୍ୱାରା ପରିବେଷିତ ନାଟକମାନ ସେ ଦେଖିବାକୁ ଯାଉଥିଲେ । କ୍ରମେ ସେହି ଥିଏଟର୍ସ ସହିତ ତାଙ୍କର ସମ୍ପର୍କ ନିବିଡ଼ ହୋଇଉଠିଲା । ସେ ବିଧାୟକ ଭଟାଚାର୍ଯ୍ୟଙ୍କ 'ମେଘ ମୁକ୍ତି' ଓ ଚକ୍ରଧର ସେନ୍‌ଙ୍କର 'ସିଛି ସିନ୍ଦୂର'ର ଅନୁବାଦ କଲେ । ସେ ଦୁଇଟିର ନାମ ଯଥାକ୍ରମେ 'ଭ୍ରାନ୍ତି' ଓ 'ସିନ୍ଦୂରଟୋପା' ରଖିଥିଲେ । ସେ ଦୁଇଟି ନାଟକକୁ ଅଭିନୀତ ମଧ୍ୟ କରାଇଥିଲେ ।

ଗୋପାଳ ଚାକିରି ଛାଡ଼ି ପୈତୃକ ସମ୍ପତ୍ତି ରକ୍ଷଣାବେକ୍ଷଣପାଇଁ ସମ୍ବଲପୁର ଯାଇଥିବା ପୂର୍ବରୁ ବର୍ଣ୍ଣିତ । ସେଠାରେ ଥିଲାବେଳେ ସେ ବଙ୍ଗଳା ଭାଷାରେ ଲିଖିତ କେତେକ ନାଟକ ପଢ଼ିଥିଲେ । ସେ ସମ୍ବଲପୁରର ରାଜବୋଡ଼ାସମ୍ବର ଓ ପଦ୍ମପୁରରେ କେତେକ ଦିନ କଟାଇଥିଲେ । ସେହି ସମୟରେ ସେ ଓଡ଼ିଆ ଔପନ୍ୟାସିକ କାହ୍ନୁଚରଣ ମହାନ୍ତିଙ୍କ ଉପନ୍ୟାସ 'ନିଷ୍ପତ୍ତି' ଉପନ୍ୟାସଟି ପାଇ ତାହାକୁ ଏକ ନିଶ୍ୱାସରେ ପଢ଼ି ଶେଷ କରିଦେଇଥିଲେ । ପଢ଼ା ଶେଷ କରି ସେ 'ନିଷ୍ପତ୍ତି' ଉପନ୍ୟାସକୁ ନାଟ୍ୟରୂପ ଦେବାକୁ ବସିଲେ । ନାଟକ ସମ୍ପର୍କରେ ପୂର୍ବରୁ ତାଙ୍କର ବିଶେଷ ଜ୍ଞାନ ନ ଥିଲା । ଅଭିନୟ ସମ୍ପର୍କରେ ତାଙ୍କର ବି କୌଣସି ଅଭିଜ୍ଞତା ନ ଥିଲା । କାହିଁକି ଯେ ସେହି ଉପନ୍ୟାସର ନାଟ୍ୟରୂପ ଦେବା କଥା ସେ ଚିନ୍ତା କଲେ ଓ କେତେକ ଦୃଶ୍ୟ ମଧ୍ୟ ଲେଖିଲେ, ତାହା ତାଙ୍କୁ ଜଣା ନ ଥିଲା । ସେ ଯାହାହେଉ, ସେହି ଉପନ୍ୟାସର ନାଟ୍ୟରୂପ ଦେବା ଥିଲା ତାଙ୍କର ଅଭିଳାଷ । ସେ ମଧ୍ୟ ମୌଳିକ ରଚନା ନିମନ୍ତେ ପ୍ରତିଜ୍ଞାବଦ୍ଧ ହେଲେ । ୧୯୯୫ ମସିହାରେ ପ୍ରକାଶ ପାଇଲା ଏକାଙ୍କିକା 'ସହଧର୍ମିଣୀ' । ଏହା ଗୋପାଳଙ୍କ ନାଟ୍ୟସୃଷ୍ଟିର ଆଦ୍ୟ ଓଁକାର ଥିଲା କହିଲେ ଚଳେ । 'ମୁକୁର'ର ସମ୍ପାଦକ ବ୍ରଜସୁନ୍ଦର ଦାସ ଏହି ଏକାଙ୍କିକାର କାହାଣୀ ଶୁଣି ଅଭିଭୂତ ହୋଇପଡ଼ିଥିଲେ । ସେ ନାଟ୍ୟକାରଙ୍କ ମୁଣ୍ଡ ଉପରେ ହାତ ରଖି ଗଦ୍‌ଗଦ ହେଇ କହିଲେ –

''ମୁଁ ଆଶୀର୍ବାଦ କରୁଛି ତୁ ଲେଖ, ଆହୁରି ଲେଖ ।''

ଏଇ ଥିଲା ନାଟ୍ୟକାରଙ୍କ ଜୀବନର ପ୍ରଥମ ସ୍ମରଣୀୟ ମୁହୂର୍ତ୍ତ । ବ୍ରଜସୁନ୍ଦର ଦାସଙ୍କ ବ୍ୟତୀତ ଔପନ୍ୟାସିକ ଚନ୍ଦ୍ରମଣି ଦାସ, ଜାତୀୟକବି ବୀରକିଶୋର ଦାସ ମଧ୍ୟ ତାଙ୍କୁ ଏ ଦିଗରେ ଆଗେଇବାପାଇଁ ଉତ୍ସାହିତ କଲେ ଓ ପ୍ରେରଣା ଯୋଗାଇଲେ ।

'ସହଧର୍ମିଣୀ' ଏକାଙ୍କିକାର ଅଭିନୟ ଦେଖି ପାରଳାର ଗୁଣଗ୍ରାହୀ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଦେବ ଅତ୍ୟନ୍ତ ପ୍ରୀତ ହୋଇ ୧୦୦ ଟଙ୍କା ପୁରସ୍କାର ଦେଇଥିଲେ । ଲେଖକ ଏଥିରେ ଉଦ୍‌ବୁଦ୍ଧ ହୋଇପଡ଼ିବା ସ୍ୱାଭାବିକ । ଲେଖକଙ୍କ ଭାଷାରେ –

''ଆଜି ଅର୍ଦ୍ଧଶତାଧିକ ବର୍ଷ ପରେ ମୁଁ ଏଇ କଥାଟି ଉଲ୍ଲେଖ କରୁଛି ଯେ ଯଦି ସେତେବେଳେ ମୁଁ ସମ୍ମାନନୀୟ ବ୍ରଜସୁନ୍ଦର ଦାସ ଓ ପାରଳା ମହାରାଜା ଶ୍ରୀକୃଷ୍ଣଚନ୍ଦ୍ର ଦେବଙ୍କ ଠାରୁ ଲେଖିବାପାଇଁ ଉତ୍ସାହ ପାଇ ନ ଥାନ୍ତି, ଲେଖିବା କଥା କେବେହେଲେ ଚିନ୍ତା କରିପାରି ନ ଥାନ୍ତି ।''

ଏହାପରେ ଗୋପାଳ ଛୋଟରାୟ ନାଟକ ଗୋଟିକ ପରେ ଗୋଟିଏ ସୃଷ୍ଟି କରି ଚାଲିଲେ ।

## ସୃଷ୍ଟି ସମ୍ଭାର

### ଫେରିଆ

୧୯୪୧ ମସିହାରୁ ୧୯୪୬ ପର୍ଯ୍ୟନ୍ତ ଦୀର୍ଘ ପାଞ୍ଚ ବର୍ଷ ଗୋପାଳ ଛୋଟରାୟ କୌଣସି କାରଣରୁ ନାଟକ ବା ଅନ୍ୟାନ୍ୟ ସୃଷ୍ଟି କରି ନାହାନ୍ତି । ୧୯୪୬ ମସିହାରେ ପ୍ରଥମ ପୂର୍ଣ୍ଣାଙ୍ଗ ନାଟକ 'ଫେରିଆ' ପ୍ରକାଶିତ ହେଲା । ଏହା ପ୍ରଥମେ ଅନ୍ନପୂର୍ଣ୍ଣା ଥିଏଟର (ବି ଗ୍ରୁପ)ଦ୍ୱାରା ଅଭିନୀତ ହେଲା । ଏହା ଦର୍ଶକମାନଙ୍କୁ ଆକୃଷ୍ଟ କଲା ।

ଓଡ଼ିଶାର ଏକ ପଲ୍ଲୀ ଅଞ୍ଚଳର ଯୁବକ ସୁରେଶ । ଘରେ ବିଧବା ମା' ଓ ବିବାହଯୋଗ୍ୟା ଭଉଣୀ କନକ । ଗରିବ ପରିବାର । ସୁରେଶ ବିବାହ କରି ନାହିଁ । ସେ କିନ୍ତୁ ଗାଁ ଝିଅ ଶାନ୍ତିକୁ ପ୍ରାଣ ଦେଇ ଭଲ ପାଇଛି । ସୁରେଶ ମଧ୍ୟ ମେଧାବୀ ଛାତ୍ର । ସେ କଟକରେ କଲେଜରେ ଅଧ୍ୟୟନ କରେ । ସେ କିନ୍ତୁ କାହାରି ସାହାଯ୍ୟ ଲୋଡ଼ି ନାହିଁ । ସେ ଅଳ୍ପ ଖର୍ଚ୍ଚପାଇଁ ହଷ୍ଟେଲରୁ ପଳାଇଆସି ବଲସେଭିକ ମେସ୍‌ରେ ରହିଛି ।

ସୁରେଶ ସହରର ଆଭିଜାତ୍ୟପୂର୍ଣ୍ଣ ବଦାନ୍ୟ ବ୍ୟକ୍ତି ରାୟବାହାଦୁର ପି. ଏନ୍. ମହାନ୍ତିଙ୍କ ଘରେ ଟିଉସନ କରିଛି । ତାଙ୍କର ବଡ଼ ଝିଅ ରେଖା ମହିଳା କଲେଜରେ ଅଧ୍ୟୟନରତା । ସେ ମଧ୍ୟ ବୁଦ୍ଧିମତୀ, ନିର୍ଭୀକା ଓ ସ୍ପଷ୍ଟବାଦିନୀ । ରେଖା କୌଣସି ସୂତ୍ରରୁ ଜାଣିପାରିଛି ଯେ

ସୁରେଶ ଜଣେ ଆର୍ଟିଷ୍ଟ । ସେ ସୁରେଶକୁ ଫଟୋ ଦେଇଛି ଗୋଟିଏ ଛବି ଆଙ୍କିବାପାଇଁ । ପିତା ପି. ଏନ୍. ମହାନ୍ତି ରେଖାର ବିବାହ ଠିକ୍ କରିଛନ୍ତି ବିଲାତଫେରନ୍ତା ବିଶ୍ୱମୋହନଙ୍କ ସହିତ । ସେ କିନ୍ତୁ ଦୁଃଶ୍ଚରିତ୍ର । ମୀରା ନାମକ ଜଣେ ଝିଅ ସହିତ ତା'ର ଅନୈତିକ ସମ୍ପର୍କ । ସେ କିନ୍ତୁ ରେଖା ଓ ତାଙ୍କ ପିତାଙ୍କ ଧନସମ୍ପତ୍ତି ଉପରେ ଆଖି ପକାନ୍ତି । ରେଖା ମଧ୍ୟ ପ୍ରଫେସର ଦାସଙ୍କ ଚାଲିଚଳନରେ ଖୁସି ହୋଇପାରି ନାହିଁ । ନିଜକୁ ତାଙ୍କଠାରୁ ଦୂରେଇ ରଖିଛି ।

ପ୍ରଫେସର ଦାସ ଜାଣିପାରିଛନ୍ତି ଯେ ରେଖା ସୁରେଶ ପ୍ରତି ଅନୁରକ୍ତା । ତାଙ୍କର ସନ୍ଦେହ ଦୃଢ଼ ହୋଇଛି ରେଖାର ଫଟୋ ସୁରେଶ ପାଖରେ ଦେଖି । ସେ ସେମାନଙ୍କର ସମ୍ପର୍କକୁ ଛିନ୍ନ କରିବାକୁ ଲାଗିଛନ୍ତି । ଅବୈଧ ସମ୍ପର୍କ ରଖିବା ଫଳରେ ମୀରା ଗର୍ଭବତୀ ହୋଇଛି । ପ୍ରଫେସର ଦାସ ଏହି ପରିସ୍ଥିତିର ସୁଯୋଗ ନେଇଛନ୍ତି । ପ୍ରଥମେ ମୀରାକୁ ପ୍ରତାରଣା କରିଛନ୍ତି । ତାକୁ ମଧ୍ୟ ନିଜର ଅଭୀଷ୍ଟ ସିଦ୍ଧିପାଇଁ ଅପ୍ରରୂପେ ବ୍ୟବହାର କରନ୍ତି । ମୀରା ପ୍ରଫେସର ଦାସଙ୍କ ପ୍ରରୋଚନାରେ ସଚ୍ଚରିତ୍ର ସୁରେଶ ଅସଦ୍ ବ୍ୟବହାର କରିଛି ବୋଲି ଅଧ୍ୟକ୍ଷଙ୍କ ନିକଟରେ ମିଥ୍ୟା ଅଭିଯୋଗ କରିଛି । ପ୍ରଫେସର ଦାସଙ୍କ ନିର୍ଦ୍ଦେଶରେ ଅନ୍ୟ ତିନି ଜଣ ପିଲା ମଧ୍ୟ ସୁରେଶ ବିରୋଧରେ ମିଥ୍ୟା ସାକ୍ଷ୍ୟ ଦେଇଛନ୍ତି । ସୁରେଶକୁ କଲେଜରୁ ବହିଷ୍କାର କରାଯାଇଛି ।

ରେଖାର ଜନ୍ମତିଥି ପାଳନ ଅବସରରେ ପ୍ରଫେସର ଦାସ ସୁରେଶର ଚାରିତ୍ରିକ ସ୍ଖଳନ ଓ କଲେଜରୁ ବହିଷ୍କାର ବିଷୟ ଜଣାଇଛନ୍ତି । ରେଖା ଏ ଖବର ପାଇ ଭାଙ୍ଗିପଡ଼ିଛି । ପିତା ପି. ଏନ୍. ମହାନ୍ତି ମଧ୍ୟ କ୍ରୋଧାନ୍ୱିତ ହୋଇପଡ଼ିଛନ୍ତି । ସୁରେଶକୁ ଭର୍ତ୍ସନା କରିଛନ୍ତି ଓ ଘରୁ ବାହାର କରିଦିଅନ୍ତି ।

ସତ୍ୟ କିନ୍ତୁ ଲୁଚି ରହେନା । ଯଥା ସମୟରେ ବ୍ରଜ ଓ ମୀରା ଆସି ରହସ୍ୟର ପର୍ଦ୍ଦା ଉନ୍ମୋଚନ କରିଛନ୍ତି । ସେମାନେ ପ୍ରଫେସର ଦାସଙ୍କ ଅନୈତିକ କାର୍ଯ୍ୟକଳାପକୁ ପ୍ରକାଶ କରିଛନ୍ତି । ମୀରା ମଧ୍ୟ ପ୍ରଫେସର ଦାସଙ୍କ ସହ ପ୍ରଣୟବେଳେ ଉଠାଇଥିବା ସମସ୍ତ ଫଟୋକୁ ଦେଖାଇ ଦେଇଛି । ସୁରେଶ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ବୋଲି ପ୍ରମାଣିତ ହୋଇଛି । ପି. ଏନ୍. ମହାନ୍ତି ତାଙ୍କ ଭର୍ତ୍ସନାପାଇଁ ଅନୁତାପ କରିଛନ୍ତି । ରେଖା ଆନନ୍ଦରେ ବିହ୍ୱଳ ହୋଇଉଠିଛି ।

ସୁରେଶର ମୋହଭଙ୍ଗ ହୋଇଛି । ସହର ସଭ୍ୟତାର ବୀଭତ୍ସ ରୂପ ସେ ଦେଖିପାରିଛି । ସହରୀ ମଣିଷଙ୍କ ବ୍ୟବହାରରେ ସେ ଅସ୍ତବ୍ୟସ୍ତ ହୋଇଛି । ସେ ଫେରିଯାଇଛି ତା'ର କେତେ ଆପଣାର ଧୂଳିଧୂସରିତ ଗାଁକୁ । ଫେରିଛି ତା'ର ପ୍ରାଣର ଶାନ୍ତି ପାଖକୁ । ଆଉ ଫେରିଛି ତା'ର ସରଳ ସ୍ନେହମୟ ଆତ୍ମୀୟ ସ୍ୱଜନମାନଙ୍କ ପାଖକୁ ।

'ଫେରିଆ' ନାଟକଟିରେ ସହର ଓ ଗ୍ରାମ୍ୟ ଜୀବନର ନିଚ୍ଛକ ଚିତ୍ର ଦେଖିବାକୁ ମିଳେ । ହଳାହଳବିଷପୂର୍ଣ୍ଣ ସହରଠାରୁ ସରଳ ଶାନ୍ତ ଗ୍ରାମ୍ୟ ପରିବେଶକୁ ଫେରିଆସିବାକୁ ଆଧୁନିକ ଯୁବସମାଜକୁ ନାଟ୍ୟକାର ଦିଗ୍‌ଦର୍ଶନ ଦେଇଛନ୍ତି । ନାଟକଟି ମଧ୍ୟ ମଞ୍ଚ ସଫଳତାପ୍ରାପ୍ତ ହୋଇଥିଲା ।

**ଭରସା**

୧୯୫୨ ମସିହାରେ ଏହା ରଚିତ ହୋଇଥିଲା । ଆଦର୍ଶ ଓ ବାସ୍ତବତା ମଧ୍ୟରେ ଦ୍ୱନ୍ଦ୍ୱକୁ ନେଇ ରଚିତ ଏହି ନାଟକଟି ଓଡ଼ିଆ ସାହିତ୍ୟରେ ଏକ ଅଭିନବ ସୃଷ୍ଟି ଥିଲା ।

ନାଟକର ନାୟକ ମୋହନ । ସେ ଜଣେ ଶିଳ୍ପୀ । ବମ୍ବେରୁ ଚିତ୍ରକଳାରେ ଉଚ୍ଚ ଡିଗ୍ରୀ ଲାଭ କଲା ପରେ ବି ଜୀବିକା ନିର୍ବାହପାଇଁ କୌଣସି କ୍ଷେତ୍ରରେ ନିଯୁକ୍ତି ପାଇ ନାହିଁ । ସେ ଦୁଃସ୍ଥ ଜୀବନ କଟାଇଛି । ଚିତ୍ରକର ପରିବାରର ଝିଅ ନୀଳା । ସେ ଶିକ୍ଷିତା, ମାତ୍ର ଚିତ୍ରକର ପରିବାରରେ ତା'ର ସମକକ୍ଷ ବରପାତ୍ର ମିଳି ନାହିଁ । ତା'ର ପିତା ବାଧ୍ୟହୋଇ ମଦୁଆ ଶଙ୍କରା ସହିତ ନୀଳାର ବିବାହ ଠିକ୍ କରନ୍ତି । ନୀଳା କିନ୍ତୁ ବାହାଘର ଦିନ ଚାଲିଆସିଛି ମୋହନ ପାଖକୁ । ତା'ର କରୁଣ କାହାଣୀ ମୋହନକୁ କହିଛି । ମୋହନ ମଧ୍ୟ ତାକୁ ବିବାହ କରିବାର ପ୍ରତିଶ୍ରୁତି ଦେଇଛି । ମାତ୍ର ଚଳିବେ କିପରି । ମୋହନ ଛବି ବିକି ଯାହା ରୋଜଗାର କରେ ସେଥିରେ ସେ ଦୁଃଖକଷ୍ଟରେ ଚଳିଯାଏ । ତେଣୁ ହାତରେ ପଇସା ହେଲେ ନୀଳାକୁ ବିବାହ କରିବ ବୋଲି କଥା ଦେଇଛି ।

ଘଟଣାକ୍ରମେ ଶିଳ୍ପୀ ମୋହନର କଲିକତାର ବିଶିଷ୍ଟ ଓଡ଼ିଆ ବ୍ୟକ୍ତି କୁମାରସାହେବଙ୍କ ସାଙ୍ଗେ ପରିଚୟ ହୋଇଛି । ମୋହନର ଶିଳ୍ପନୈପୁଣ୍ୟ ବିଷୟରେ ସେ ଅବଗତ ହୋଇ ଗୋଟିଏ ସୁନ୍ଦରୀ ଯୁବତୀର ଛବି ଆଙ୍କିବାକୁ କହିଛନ୍ତି । ଶିଳ୍ପୀ ମୋହନ ମଡେଲ ମାଗିଛି । ମଡେଲ ନ ହେଲେ ଛବି ଆଙ୍କି ହେବ ନାହିଁ ବୋଲି କହିଛି । ନୀଳା ତାକୁ ମଡେଲ କରି ଛବି ଆଙ୍କିବାକୁ ମୋହନକୁ ବାଧ୍ୟ କରିଛି । ମୋହନ ନୀଳାର ଏକ ଛବି ଆଙ୍କିଛି । ମାତ୍ର ଏହାକୁ କୁମାରସାହେବଙ୍କୁ ବିକ୍ରି କରିବ ନାହିଁ ବୋଲି ସ୍ଥିର କରିଛି । ସେ ଛବିକୁ ନେଇ ଗୃହତ୍ୟାଗ କରିଛି ।

ମୋହନ ଫେରିବାର କୌଣସି ଆଶା ନ ଦେଖି ନୀଳା ଗୋଟିଏ ଚାକିରି କରିବା ଉଦ୍ଦେଶ୍ୟରେ ସହରକୁ ଯାଇଛି । ସହରରେ କୁମାରସାହେବଙ୍କ ଲୋଲୁପ ଦୃଷ୍ଟି ତା' ଉପରେ ପଡ଼ିଛି । ନୀଳାକୁ ଚାକିରି ଦେବାର ଲୋଭ ମଧ୍ୟ ଦେଖାଇଛନ୍ତି । ତାଙ୍କ ପ୍ରାଇଭେଟ ସେକ୍ରେଟେରୀ ଶ୍ରୀମତୀ ଦାସଙ୍କ ସହାୟତାରେ କୁମାରସାହେବ ନୀଳାକୁ କଲିକତା ନେଇ ନିଜର ବିଳାସପୂର୍ଣ୍ଣ ଗୃହରେ ରଖନ୍ତି ।

କୁମାରସାହେବ ବିବାହିତ । ତାଙ୍କ ପତ୍ନୀ ମିର୍ଣ୍ଣା ଦେବୀ । ସ୍ୱାମୀ ପରିତ୍ୟକ୍ତା ହୋଇ ସେ ଅନ୍ୟତ୍ର ରହନ୍ତି । ମୋହନର ମିର୍ଣ୍ଣାଦେବୀଙ୍କ ସହ ପରିଚୟ ହୋଇଛି । ମିର୍ଣ୍ଣାଦେବୀ ସଚ୍ଚରିତ୍ରା ଓ ଆଦର୍ଶସ୍ଥାନୀୟା ନାରୀ । ସେ ନିଜ ପତି କୁମାର ସାହେବଙ୍କପାଇଁ ପ୍ରତୀକ୍ଷା କରି ରହିଛନ୍ତି ।

କୁମାରସାହେବ ନୀଳାକୁ ବିବାହ କରିବାକୁ ଚାହିଁଛନ୍ତି । ସେ ଆଶା କରନ୍ତି ଯେ ନୀଳା ତାଙ୍କର ଧନସମ୍ପତ୍ତି ଦେଖି ବିବାହ କରିବାକୁ ରାଜି ହେବ । ମାତ୍ର ନୀଳା କୁମାରସାହେବଙ୍କ ଧନସମ୍ପତ୍ତିକୁ ତୁଚ୍ଛ ମଣିଛି । ସେ କୁମାରସାହେବଙ୍କୁ ଭର୍ତ୍ସନା କରିଛି । ନୀଳାର ଦୃଢ଼ ମନୋଭାବ ଦେଖି କୁମାରସାହେବ ହାର୍ ମାନିଛନ୍ତି । ତାଙ୍କ ହୃଦୟରେ ମଧ୍ୟ ପରିବର୍ତ୍ତନ ଆସିଛି ।

କଲିକତାରେ ଏକ କଳା ପ୍ରଦର୍ଶନୀର ବ୍ୟବସ୍ଥା ହୋଇଛି । ସେଥିରେ ନୀଳାକୁ ମଡେଲ କରି ଆଙ୍କିଥିବା ମୋହନର ଛବିଟି ପ୍ରଥମ ପୁରସ୍କାର ପାଇଛି । ମୋହନ ଶିଳ୍ପୀ ଜୀବନ ସାର୍ଥକ ହୋଇଛି ବୋଲି ଭାବିଛି । ମୋହନ ଅନୁପସ୍ଥିତିର ସୁଯୋଗ ନେଇ କୁମାରସାହେବ ସେ ଛବିଟିକୁ ଚୋରାଇ ନିଅନ୍ତି । ସେ ଛବିଟିକୁ ନୀଳାକୁ ଦେଖାଇଛନ୍ତି । ମୋହନଠାରୁ ସେହି ଛବିଟି ପାଞ୍ଚ ହଜାର ଟଙ୍କାରେ କିଣିଛନ୍ତି ବୋଲି ନୀଳା ଆଗେ ପ୍ରକାଶ କରନ୍ତି । ନୀଳାର ମୋହନ ପ୍ରତି ଥିବା ଅନୁରାଗ କ୍ଷୁଣ୍ଣ ହୋଇଛି । ମୋହନ ମଧ୍ୟ ଛବିଟି ନେବାପାଇଁ କୁମାରସାହେବଙ୍କ ଘରକୁ ଆସିଛି । କୁମାରସାହେବ କିନ୍ତୁ ପାଞ୍ଚ ହଜାର ଚେକ୍ ମୋହନକୁ ଯାଚିଛନ୍ତି । ମୋହନ ତାହାକୁ ପ୍ରତ୍ୟାଖ୍ୟାନ କରିଛି । ନୀଳା ସେଠାରେ ମୋହନକୁ ଦେଖି କହିଛି ଯେ ସେ କୁମାରସାହେବଙ୍କୁ ବିବାହ କରିବ । ମୋହନ ପାଇଛି ପ୍ରଚଣ୍ଡ ଆଘାତ । ଏହି ସମୟରେ କୁମାରସାହେବଙ୍କ ବାଲ୍ୟବନ୍ଧୁ ଆନନ୍ଦ ସେଠାରେ ପହଞ୍ଚିଛନ୍ତି । ସେ ପ୍ରାଇଭେଟ ସେକ୍ରେଟେରୀ ଶ୍ରୀମତୀ ଦାସଙ୍କ ମୁଖା ଖୋଲିଦେଇଛନ୍ତି । କୁମାରସାହେବ ମଧ୍ୟ ନୀଳା ଓ ମୋହନର ପ୍ରକୃତ ପ୍ରେମର ପରିଚୟ ପାଇ ଅନୁତପ୍ତ ହୋଇଛନ୍ତି । ତାଙ୍କ ହୃଦୟର ପରିବର୍ତ୍ତନ ହୋଇଛି । ନୀଳା ଓ ମୋହନର ମିଳନ କରାଇଛନ୍ତି । ସ୍ୱାମୀ ପରିତ୍ୟକ୍ତା ମିର୍ଣ୍ଣାଦେବୀ ମଧ୍ୟ କୁମାରସାହେବଙ୍କୁ ଫେରିପାଇଛନ୍ତି ।

'ଭରସା' ନାଟକଟି ମଞ୍ଚ ସଫଳତା ପାଇଥିଲା । ଏହା ମଧ୍ୟ ଉଚ୍ଚ ପ୍ରଶଂସିତ ହୋଇଥିଲା । ଓଡ଼ିଶାର ବିଶିଷ୍ଟ ସମ୍ବାଦପତ୍ର 'ସମାଜ' ଲେଖିଥିଲା –

''ଜଣେ ଶିଳ୍ପୀର କଳାପ୍ରେମ ଓ ଆଦର୍ଶ ଉପରେ ନାଟକଟି ରଚିତ ହୋଇ ବହୁ ବିଭିନ୍ନ ଚରିତ୍ର ଓ ଘଟଣାରେ ପୂର୍ଣ୍ଣ ହୋଇଥିବା ହେତୁ ନାଟକ ଅଭିନୟ ଚିତ୍ତାକର୍ଷକ ହୋଇଥିଲା । ସଂଳାପଗୁଡ଼ିକ ମଧ୍ୟ ଅତି ଉଚ୍ଚ ଧରଣର ଓ ସମସ୍ୟାମୂଳକ

ଏବଂ ତାହା ଅଭିନେତାମାନଙ୍କ ଯୋଗୁଁ ବିଶେଷ ବୋଧଗମ୍ୟ ଓ ହୃଦୟଗ୍ରାହୀ ହୋଇପାରିଥିଲା ।''

ଦୈନିକ ମାତୃଭୂମି 'ଭରସା' ନାଟକ ଉପରେ ଅଭିମତ ଦେଇଥିଲା –

''ଭରସା ପ୍ରକୃତରେ କଳାକାର, ଅଭିନେତା ତଥା ଦର୍ଶକ ସମସ୍ତଙ୍କୁ ଯେଉଁ ଭରସାର ସୂଚନା ଦେଲା, ତହିଁରୁ ଏ ରଙ୍ଗମଞ୍ଚ ହାତରେ ଓଡ଼ିଶା ନାଟ୍ୟକାରର ଭବିଷ୍ୟତ୍ ଉଜ୍ଜ୍ୱଳ ବୋଲି ଆଶା ବିଡ଼ମ୍ବନା ହେବ ନାହିଁ ।''

ଛୋଟରାୟ 'ଫେରିଆ' ପରେ ଆଜି ଯେଉଁ ନୂତନ ଅର୍ଘ୍ୟଟି ସମର୍ପି ଦେଇଛନ୍ତି ଜନତା ହାତରେ ଜନତା ତା'ର ଭୂୟସୀ ପ୍ରଶଂସା କରିବ ହିଁ କରିବ ବୋଲି 'ପ୍ରଜାତନ୍ତ୍ର' ମତ ଦେଇଥିଲା ।''

**ଶଙ୍ଖା ସିନ୍ଦୂର**

'ଶଙ୍ଖା ସିନ୍ଦୂର' ନାଟକର ବିଷୟବସ୍ତୁ ସମ୍ପୂର୍ଣ୍ଣ ନୂତନ । ନାଟ୍ୟକାର ଏଥିରେ ସମାଜର ଦୋଷ-ଦୁର୍ବଳତାକୁ ଉନ୍ମୋଚନ କରିବାକୁ ଚେଷ୍ଟା କରିଛନ୍ତି । ଅହେତୁକ ସନ୍ଦେହର ଛାୟା ଗୋଟିଏ ସୁଖୀ ପରିବାରରେ କିପରି ଝଡ଼ଝଞ୍ଜା ସୃଷ୍ଟି କରିଛି, ତାହାହିଁ ଏଥିରେ ଦେଖାଇଦିଆଯାଇଛି ।

ଶରତବାବୁ ସହରରେ କିରାଣି ଚାକିରି କରନ୍ତି । ଘରେ ତାଙ୍କର ମା' ତୁଳସୀଦେବୀ ଓ ସ୍ତ୍ରୀ ବାଣୀ । ତିନି ମାସ ପରେ ଘରକୁ ଆସିଛନ୍ତି ଶରତବାବୁ । ଶରତବାବୁଙ୍କ ଶ୍ୱଶୁର ରାସବିହାରୀ ପ୍ରସ୍ତାବ ଦେଇଛନ୍ତି ଯେ ସମସ୍ତେ ଯାଇ ସହରରେ ରହିବେ । ମାତ୍ର ବୃଦ୍ଧା ତୁଳସୀଦେବୀ ଗାଁ ଛାଡ଼ିଯିବାକୁ ରାଜିହୋଇ ନାହାନ୍ତି । ଶେଷରେ ଶରତବାବୁ ପତ୍ନୀ ବାଣୀ ଓ ଶ୍ୱଶୁରଙ୍କୁ ନେଇ ସହରରେ ରହିଛନ୍ତି । ଶ୍ୱଶୁର ରାସବିହାରୀ କିନ୍ତୁ ଚାହିଁଛନ୍ତି ଯେ ସ୍ୱାଇଁ ଶରତବାବୁ ସ୍ତ୍ରୀ ବାଣୀ ହାତ ମୁଠାରେ ରହନ୍ତୁ । ସେଥିପାଇଁ ବାଣୀକୁ କୁଶିକ୍ଷା ଦେବା ହୁଏ ନିତ୍ୟନୈମିତ୍ତିକ କାମ । ରାସବିହାରୀ ମଧ୍ୟ ସ୍ୱାଇଁଙ୍କ ରୋଜଗାରରେ ସନ୍ତୁଷ୍ଟ ନୁହନ୍ତି । ସେ ଚାହାନ୍ତି ଶରତ ବିଭିନ୍ନ ଧନ୍ଦା କରି ଅଧିକରୁ ଅଧିକ ଟଙ୍କା ରୋଜଗାର କରନ୍ତୁ । ମାତ୍ର ଶରତବାବୁ ସେପରି ଧରଣର ଲୋକ ନୁହନ୍ତି । ସେ ଅଫିସରୁ ଫେରିଲେ ସାହିତ୍ୟଚର୍ଚ୍ଚା କରନ୍ତି । ଲେଖାଲେଖି ବି କରନ୍ତି । ସଭାସମିତିରେ ଯୋଗ ଦେଇ ସମୟ କଟାଇବା ତାଙ୍କର ଅଭ୍ୟାସରେ ପରିଣତ ହୋଇଛି ।

ଘଟଣାକ୍ରମେ ସହରର ମାଧବୀ ନାମକ ଏକ ଝିଅ ସଙ୍ଗେ ଶରତବାବୁଙ୍କର କଥାବାର୍ତ୍ତା ହେଉଥିବାବେଳେ ତାହା ରାସବିହାରୀଙ୍କ ଆଖିରେ ପଡ଼ିଛି । ସେ ସେମାନଙ୍କର ସମ୍ପର୍କକୁ ସନ୍ଦେହ ଚକ୍ଷୁରେ ଦେଖନ୍ତି । ଏହି ସନ୍ଦେହ ପରିବାରରେ ସୃଷ୍ଟି କରେ ଅଶାନ୍ତିର ଝଡ଼ । ବାଣୀ ଶରତବାବୁଙ୍କୁ ସନ୍ଦେହ କରିଛି । ଶରତବାବୁ ବିଭିନ୍ନ

ସଭା ସମିତିରେ ଯୋଗ ଦେଇ ବେଳେ ବେଳେ ବିଳମ୍ବରେ ଘରକୁ ଫେରନ୍ତି । ବାଣୀ ଭାବେ ଶରତବାବୁ ମାଧବୀ ଘରେ ରହି ଅନେକ ରାତିରେ ଫେରୁଛନ୍ତି । ବାଣୀର ଏହି ସନ୍ଦେହକୁ ବଢ଼େଇ ଦେଇଛି ପଡ଼ିଶା ଘରର ଲଳିତା । ସେ ଜଣେ ଆଧୁନିକା ନାରୀ । ସ୍ୱାମୀଙ୍କ ନିକଟରୁ ଦୂରରେ ରହି ଅନ୍ୟ ଝିଅମାନଙ୍କୁ ସ୍ୱାମୀଙ୍କ ବିରୋଧରେ ଉସକେଇବା ହେଉଛି ତାଙ୍କର ପେସା । ଲଳିତାର କୁମନ୍ତ୍ରଣାରେ ବାଣୀ ଶରତବାବୁଙ୍କ ପ୍ରତି ଦୁର୍ବ୍ୟବହାର କରିଛି । ଶରତବାବୁ ଓ ବାଣୀର ସମ୍ପର୍କ କ୍ରମେ ତିକ୍ତ ହୋଇଉଠିଛି । ତୁଳସୀଦେବୀ ଏ ପ୍ରକାର ପରିସ୍ଥିତିରେ ଚିନ୍ତିତ ହୋଇପଡ଼ନ୍ତି । ଶରତବାବୁଙ୍କ ସାନଭାଇ ଉତ୍ତମ ଏହି ଘଡ଼ିସନ୍ଧି ସମୟରେ ବସାରେ ଆସି ପହଞ୍ଚିଛନ୍ତି । ସେ ସମସ୍ୟାର ସମାଧାନପାଇଁ ଉଦ୍ୟମ କରିଛନ୍ତି । ଲଳିତା ମଧ୍ୟ ଶରତବାବୁଙ୍କୁ ପ୍ରେମ ନିବେଦନ କରିଛି । ବାଣୀ ମାଧବୀଙ୍କୁ ଅପମାନ ଦେଇଛି । ଶେଷରେ ଲଳିତାଙ୍କ ପ୍ରକୃତ ସ୍ୱଭାବ ଧରାପଡ଼ିଯାଇଛି । ସମସ୍ତ ସନ୍ଦେହ ଦୂର ହୋଇଛି । ବାଣୀ ନିଜର ଭୁଲ୍ ବୁଝିଛି ଓ ସେଥିପାଇଁ ଅନୁତପ୍ତା ହୋଇଛି । ରାସବିହାରୀ ମଧ୍ୟ ଜାଣିପାରିଛନ୍ତି ଯେ ମାଧବୀ ଆଉ କେହି ନୁହେଁ, ତାଙ୍କରି ଝିଅ । ବାଣୀ ଉତ୍ତମଙ୍କ ହାତରେ ମାଧବୀକୁ ସମର୍ପି ଦେଇଛି ।

ପାରିବାରିକ ବିଷୟକୁ ନେଇ ରଚିତ 'ଶଙ୍ଖା ସିନ୍ଦୂର' ଏକ ସଫଳ ସୃଷ୍ଟି । ନାଟକରେ ସହରୀ ଜୀବନର ତଥାକଥିତ ଆଭିଜାତ୍ୟବୋଧ ଅନ୍ତରାଳରେ ଥିବା ସ୍ୱେଚ୍ଛାଚାରିତା ଓ ନାରୀର ଆଦର୍ଶ ଦାମ୍ପତ୍ୟ ଜୀବନକୁ ଅତି ଜୀବନ୍ତ ଭାବରେ ନାଟ୍ୟକାର ରୂପ ଦେଇଛନ୍ତି ।

### ଅଭାଗିନୀର ସ୍ୱର୍ଗ

ସମାଜରେ ଘୃଣ୍ୟ ଯୌତୁକ ପ୍ରଥା, ନାରୀ ପ୍ରତି ନାରୀର ଈର୍ଷା ଓ ନାରୀ ପ୍ରତି ପୁରୁଷର ଅତ୍ୟାଚାରକୁ ନେଇ ରଚନା କରିଛନ୍ତି ନାଟ୍ୟକାର 'ଅଭାଗିନୀର ସ୍ୱର୍ଗ' ।

ବୃଦ୍ଧ ଶ୍ୟାମ ଚୌଧୁରୀ ଯୌତୁକ ଦେଇ ନ ପାରିବାରୁ ଏକମାତ୍ର କନ୍ୟା ଗୀତାର ବିବାହ ହୋଇପାରି ନାହିଁ । ଗୀତା କ୍ରମେ ପିତାଙ୍କର ଗଳଗ୍ରହ ହୋଇଉଠିଛି । ଅନନ୍ୟୋପାୟ ହୋଇ ଗୀତା କିଶୋର ନାମକ ଯୁବକ ସାଥିରେ ଚାଲିଯାଇଛି । କିଶୋର ସହିତ ବିବାହ କରି ସୁଖ ଶାନ୍ତିରେ ରହିବ – ଏହି ତା'ର ଲକ୍ଷ୍ୟ ଥିଲା । ମାତ୍ର କିଶୋର ଯେ ଅସତ୍ ଚରିତ୍ରର ବ୍ୟକ୍ତି ତାହା ଗୀତା ଜାଣିପାରିଛି । ସେ ପୁଲିସ୍‌ରେ ଖବର ଦେଇଛି । ପୁଲିସ ମଧ୍ୟ ଗୀତାକୁ ଆଣି ଘରେ ଛାଡ଼ିଦେଇଛି ।

ଏ ଘଟଣା ସମ୍ବାଦପତ୍ରରେ ପ୍ରକାଶ ପାଇଛି । ଫଳରେ ଚାଞ୍ଚଲ୍ୟ ସୃଷ୍ଟି ହୋଇଛି । ବୃଦ୍ଧ ପିତା ଶ୍ୟାମ ଚୌଧୁରୀ ଏଥିରେ ଭାଙ୍ଗି ପଡ଼ିଛନ୍ତି ।

ଶ୍ୟାମ ଚୌଧୁରୀଙ୍କୁ ସାନ୍ତ୍ୱନା ଦେଇଛନ୍ତି ପଡ଼ୋଶୀ ରାଜୁ । ଗୀତା ତାକୁ ଭାଇ ବୋଲି ମନେ କରେ । ଗୀତାର ବହୁ ବିବାହ ପ୍ରସ୍ତାବ ଆସିଲେ ମଧ୍ୟ ଭାଙ୍ଗିଯାଇଛି । ଏଥିରେ ଶ୍ୟାମ ଚୌଧୁରୀଙ୍କର ଚିନ୍ତା ବହୁଗୁଣରେ ବଢ଼ିଯାଇଛି । ଗୀତାର ଦୁଃଖ ସେତିକିରେ ଶେଷ ହୋଇ ନାହିଁ । ଦିନେ ଗଭୀର ରାତ୍ରିରେ ଜଣେ ଲମ୍ପଟ ଘରେ ପଶି ଗୀତାର ସତୀତ୍ୱ ଅପହରଣ କରିବାକୁ ଚେଷ୍ଟା କରିଛି, କିନ୍ତୁ ଗୀତା ଭାଗ୍ୟକ୍ରମେ ଉଦ୍ଧାର ପାଇଛି । ଏ ଘଟଣାରେ ଆହୁରି ଭାଙ୍ଗିପଡ଼ନ୍ତି ଶ୍ୟାମ ଚୌଧୁରୀ ।

ଗୀତାର ସୁରକ୍ଷା ଦାୟିତ୍ୱ ନିଅନ୍ତି ପଡ଼ୋଶୀ ରାଜୁଭାଇ । ଘରେ ତାଙ୍କର ସ୍ତ୍ରୀ ଶାନ୍ତି, ପିଉସୀ, ଚାକରାଣୀ ପ୍ରଭୃତି । ତାଙ୍କ ଗହଣରେ ଗୀତା କେତେଦିନ ଶାନ୍ତିରେ ରହିଛି । ସେ ଜୀବନର ସବୁ ଦୁଃଖ ଭୁଲିଛି । ରାଜୁ ଘର ହୋଇଛି ତା'ର ସ୍ୱର୍ଗ । କିନ୍ତୁ କ୍ରମେ ଗୀତାକୁ କେନ୍ଦ୍ର କରି ରାଜୁ ପରିବାରରେ ଅଶାନ୍ତି ଦେଖାଦେଇଛି । ରାଜୁ ଗୀତାକୁ ଭଉଣୀ ଚକ୍ଷୁରେ ଦେଖିଛି । ତାକୁ ସ୍ନେହ କରିଛି । ମାତ୍ର ସେହି ହୋଇଛି ଗୀତା ପ୍ରତି କାଳ । ସମସ୍ତେ ସେମାନଙ୍କର ସମ୍ପର୍କକୁ ସନ୍ଦେହ ଦୃଷ୍ଟିରେ ଦେଖନ୍ତି । ଘରେ ବାହାରେ ଏ ନେଇ କେତେ ଟୁପୁରୁଟାପର ଚାଲିଛି । ରାଜୁ ବି ଆଠ ବର୍ଷ ହେଲା ବିବାହ କରିଥିଲେ ମଧ୍ୟ ଏ ପର୍ଯ୍ୟନ୍ତ କୌଣସି ସନ୍ତାନର ଜନକ ହୋଇପାରି ନାହିଁ । ଗୀତାକୁ ହୁଏତ ଦ୍ୱିତୀୟ ବିବାହ କରିପାରେ – ଏଇ ସନ୍ଦେହ ପତ୍ନୀ ଶାନ୍ତି ମନରେ ଦେଖାଦେଇଛି । ଘରେ ଥିବା ବିଧବା ପିଉସୀର ମଧ୍ୟ ସନ୍ଦେହ ଜାତ ହୋଇଛି ।

ଚାକରାଣୀ ସୁନାମା ଗୀତା ନାମରେ କେତେକଥା କହିବା ଫଳରେ ପିଉସୀଙ୍କ ସନ୍ଦେହ ଦୃଢ଼ ହୋଇଛି । ସେ ଗୀତାକୁ କଳଙ୍କିନୀ ଆଖ୍ୟା ଦେଇଛନ୍ତି । ଘରେ ସେ ରହିବେ ନ ହେଲେ ଗୀତା ରହିବ – ଏକଥା ମଧ୍ୟ ସ୍ପଷ୍ଟ କରିଦେଇଛନ୍ତି ।

ଗୀତାକୁ ଅନ୍ୟତ୍ର ବିଭା କରିଦେଇ ଏହାର ସମାଧାନ କରିବାକୁ ପିଉସୀ ଓ ସୁନାମା ମଧ୍ୟରେ କଥାବାର୍ତ୍ତା ହୋଇଛି, ମାତ୍ର ସେପରି ପାତ୍ର ବା ମିଳୁଛି କେଉଁଠି ? ଏପରିକି ଅପାତ୍ରରେ ଗୀତାକୁ ବିଭା କରିଦେବାକୁ ସ୍ଥିର କରିଛନ୍ତି । ଗୀତାର ପିତା ଶ୍ୟାମ ଚୌଧୁରୀ ଅବଶ୍ୟ ରାଜି ହୋଇଛନ୍ତି; ମାତ୍ର ଅପାତ୍ରରେ ଗୀତାକୁ ବିବାହ ଦେବାପାଇଁ ରାଜୁ ରାଜି ହୋଇ ନାହିଁ । ସେ ଏହି ବିବାହ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଛି । ଗୀତା ଏହି ପରିସ୍ଥିତିରେ ଗୃହ ପରିତ୍ୟାଗ କରିବାପାଇଁ ସ୍ଥିର କରିଛି । ସୁନାମା ମଧ୍ୟ ମିଥ୍ୟାର ଆଶ୍ରୟନେଇ ରାଜୁ ଚରିତ୍ର ସ୍ଖଳନ ବିଷୟ ଗୀତାକୁ କହିଛି । ଗୀତା ଓ ସୁନାମା ଘରଛାଡ଼ି ପଳାଇଛନ୍ତି । ପିତା ଶ୍ୟାମ ଚୌଧୁରୀଙ୍କର ଦୁଃଖର ଆତିଶଯ୍ୟରେ ମୃତ୍ୟୁ ହୋଇଛି ।

ଗୀତା ମଦନର କଳା ଅନୁଷ୍ଠାନରେ ଯୋଗ ଦେଇଛି । ରାଜୁ ତାକୁ ଫେରାଇ ଆଣିବାକୁ ଚେଷ୍ଟା କରିଛି । କିନ୍ତୁ ଗୀତା ଅଭିମାନରେ ରାଜୁକୁ ଦେଖାଦେଇ ନାହିଁ ।

ରାଜୁର ଭାଇ ମନୋଜ କିନ୍ତୁ ଗୀତାକୁ ମଦନ କବଳରୁ ରକ୍ଷା କରିଛି । କିନ୍ତୁ ଗୀତା ମନୋଜକୁ ଅପମାନ ଦେଇ ଫେରାଇ ଦେଇଛି । ରାଜୁ ମଧ୍ୟ ଜାଣିପାରିଛି ଯେ ମଦନ ଗୀତାକୁ ନେଇ କଲିକତା ଯିବାକୁ ବାହାରିଛି । ସେ ମଦୁଆର ଅଭିନୟ କରି ଗୀତାକୁ ଫେରାଇ ଆଣିବାକୁ ଆଉଥରେ ଚେଷ୍ଟା କରିଛି । ଶେଷରେ ସମସ୍ତ ରହସ୍ୟର ପର୍ଦ୍ଦା ଉନ୍ମୋଚିତ ହୋଇଛି । ନାଟକଟି ଶେଷ ହୋଇଛି ଗୀତା ଓ ମନୋଜର ମିଳନରେ ।

'ଅଭାଗିନୀର ସ୍ୱର୍ଗ' ଏକ କରୁଣ ରସାତ୍ମକ ନାଟକ । ଏଥିରେ ଘଟଣା ଉତ୍କଣ୍ଠାପୂର୍ଣ୍ଣ ହୋଇଛି । ନାଟକଟି ମଧ୍ୟ ସଫଳତାପ୍ରାପ୍ତ ହୋଇଥିଲା ।

**ନଷ୍ଟ ଉର୍ବଶୀ**

'ନଷ୍ଟ ଉର୍ବଶୀ' ନାଟକଟି ଏକ ସରଳା ପଲ୍ଲୀ ବାଳିକାର ଜୀବନକୁ ନେଇ ରଚିତ । ସହରୀ ସଭ୍ୟତାରେ ପୋଷିତ ଦୁଷ୍ଟଚରିତ୍ର ଯେପରି ଭାବରେ ତା'ର ଜୀବନକୁ କ୍ଷତବିକ୍ଷତ କରିଛି, ତା'ର ମାର୍ମିକ ଚିତ୍ର 'ନଷ୍ଟ ଉର୍ବଶୀ' ନାଟକରେ ମିଳେ ।

କୁମାର ପୂର୍ଣ୍ଣିମା ରାତ୍ରିରେ ଶରଣକୂଳ ଗାଁ ଦାଣ୍ଡରେ ଝିଅମାନେ ନାଚ ଗୀତରେ ମଜ୍ଜିଥିବାବେଳେ ଦୂରରୁ କିଏ ସାଇକଲ୍‌ରେ ଆସୁଥିବା ଦେଖି ଭୂତ ଭାବି ସ୍ଥାନ ଛାଡ଼ି ପଳାଇଛନ୍ତି । ସମସ୍ତେ ଫେରିଛନ୍ତି ନିଜ ଘରକୁ । ଉର୍ବଶୀ ମଧ୍ୟ ଘରକୁ ଫେରିଛି । କିନ୍ତୁ ଘର ଦରଜା ବନ୍ଦ କରୁଥିବା ସମୟରେ ସାଇକଲରେ ଆସୁଥିବା ବ୍ୟକ୍ତିକୁ ଘର ଦୁଆରେ ଦେଖିଛି । ଘଟଣାକ୍ରମେ ସେହି ରାତ୍ରିରେ ସାଇକଲ ଆରୋହୀ ଜ୍ଞାନୀନ୍ଦ୍ର ଉର୍ବଶୀର ଘରେ ଆଶ୍ରୟ ନେଇଛି ।

ଉର୍ବଶୀର ପିତା ଶ୍ୟାମ ଚୌଧୁରୀ ଗରିବ, ଋଣଗ୍ରସ୍ତ ମଧ୍ୟ । ଦିନେ ମଦନ ନାମରେ ଜଣେ କଣ୍ଟ୍ରାକ୍ଟର ଶ୍ୟାମ ଚୌଧୁରୀଙ୍କ ଘରକୁ ଆସିଛି ଓ ଶ୍ୟାମଙ୍କୁ ଋଣମୁକ୍ତ ହେବାକୁ ଟଙ୍କା ଦେଇଛି । ଶ୍ୟାମର ମନ ମଦନ ପ୍ରତି କୃତଜ୍ଞତାରେ ଭରିଉଠିଛି । ମଦନର ଲୋଲୁପ ଦୃଷ୍ଟି ଉର୍ବଶୀ ଉପରେ ପଡ଼ିଛି । ଶ୍ୟାମ ଚୌଧୁରୀଙ୍କ ଅନୁପସ୍ଥିତିରେ ସେ ଉର୍ବଶୀକୁ ଉପଭୋଗ କରିବାକୁ ଉଦ୍ୟତ ହୋଇଛି । ଉର୍ବଶୀର ଅନୁନୟ ବିନୟକୁ ପ୍ରତ୍ୟାଖ୍ୟାନ କରିଛି । ଉର୍ବଶୀ ଚେତାଶୂନ୍ୟ ହୋଇପଡ଼ିଥିବାବେଳେ ମଦନ ତାକୁ ଉପଭୋଗ କରିଛି । ଫଳରେ ଉର୍ବଶୀ ହୋଇଛି ଅନ୍ତଃସତ୍ତ୍ୱା । ଉର୍ବଶୀ ଲୁଚି ଲୁଚି ମଦନକୁ ଭେଟିଛି ଓ ବିବାହ କରିବାକୁ ଅନୁନୟ କରିଛି । ମାତ୍ର ମଦନ ରାଜି ହୋଇ ନାହିଁ । ସେ କଟକ ପଳାଇଛି ।

ଉର୍ବଶୀ ଘର ଛାଡ଼ି କଟକ ଯାଇଛି ଓ ଜେନେରାଲ ଡାକ୍ତରଖାନାରେ ସେବିକା ଭାବେ କାମ କରିଛି । ସେଠାରେ ଦେଖା ହୋଇଛି ଜ୍ଞାନୀନ୍ଦ୍ର ସହିତ । ଦୁହେଁ ଦୁହିଁଙ୍କି ପାଇ ଆନନ୍ଦରେ ଅଭିଭୂତ ହୋଇପଡ଼ିଛନ୍ତି । ଉର୍ବଶୀ ଓ ଜ୍ଞାନୀନ୍ଦ୍ରଙ୍କ ସମ୍ପର୍କ କ୍ରମେ ନିବିଡ଼ ହୋଇଛି । ଶେଷରେ ଦୁହିଁଙ୍କ ବିବାହ ଧୁମ୍‌ଧାମ୍‌ରେ ହୋଇଛି ।

ଉର୍ବଶୀ ସରଳା ପଲ୍ଲୀ ବାଳିକା । ମଧୁଶଯ୍ୟା ରାତ୍ରିରେ ସେ ତା'ର ଅତୀତ ଜୀବନର କଳଙ୍କମୟ ଘଟଣାକୁ ଜ୍ଞାନୀନ୍ଦ୍ର ଆଗରେ ପ୍ରକାଶ କରିଛି । କିନ୍ତୁ ଜ୍ଞାନୀନ୍ଦ୍ର ଏହାକୁ କ୍ଷମା ଦେଇନି । ସେ ଘର ଛାଡ଼ି ପଳାଇଛି ବମ୍ବେ । ସେଠାରେ ଚାକିରି କରି ସୁନାମ ଅର୍ଜନ କରିଛି । ଜ୍ଞାନୀନ୍ଦ୍ରର ମଧ୍ୟ ମଦନ ସହିତ ଅକସ୍ମାତ୍ ପରିଚୟ ହୋଇଛି । ମଦନ ଜାଣିପାରିଛି ଯେ ଜ୍ଞାନୀନ୍ଦ୍ର ହେଉଛି ଉର୍ବଶୀର ସ୍ୱାମୀ । ମଦନ ଫେରିଆସିଛି କଟକ । ଉର୍ବଶୀର ଘରକୁ ପଠାଇଛି ଖଳପ୍ରକୃତିର ମଣିଅପାକୁ । ଉର୍ବଶୀ ମଣିଅପାକୁ ଦେଖି ଭୟବିହ୍ୱଳ ହୋଇଉଠିଛି । ମଣିଅପା ଓ ମଦନର ଚକ୍ରାନ୍ତରେ ଆକସ୍ମିକଭାବେ ଖବର ପହଞ୍ଚେ ଯେ ବମ୍ବେରେ ଜ୍ଞାନୀନ୍ଦ୍ରଙ୍କ ପ୍ଲେଗ୍ ରୋଗରେ ମୃତ୍ୟୁ ହୋଇଛି ।

ଉର୍ବଶୀ ମଧ୍ୟ ଏ ଖବର ପାଇଛି । ଦୁଃଖ ଓ ନୈରାଶ୍ୟରେ ଭାଙ୍ଗିପଡ଼ିଛି । ମଦନ ମଧ୍ୟ ଉର୍ବଶୀ ପାଖକୁ ଆସିଛି । ଉର୍ବଶୀ ମଦନକୁ ଦେଖି କ୍ରୋଧାନ୍ୱିତ ହୋଇଉଠିଛି । ମାତ୍ର ଘଟଣାଚକ୍ରରେ ଉର୍ବଶୀ ଓ ମଦନର ବିବାହ ହୋଇଛି । କିନ୍ତୁ ସବୁବେଳେ ଉର୍ବଶୀର ଜ୍ଞାନୀନ୍ଦ୍ରଙ୍କ କଥା ମନେ ପଡ଼ିଛି । ତା'ର ହୃଦୟ ହାହାକାର କରିଉଠିଛି । ଶେଷରେ ସେ ଘର ଛାଡ଼ି ଚାଲିଯିବାକୁ ମଦନକୁ କହିଛି । ମଦନ ମଧ୍ୟ ରାଜି ହୋଇଛି । ଅନ୍ୟତ୍ର ଚାଲିଯିବାକୁ ମଦନ ଜିନିଷପତ୍ର ବନ୍ଧାବନ୍ଧି କରୁଥିବାବେଳେ ବାହାରୁ କାହାର ଡାକ ଶୁଣି ଉର୍ବଶୀ ଦୁଆର ଖୋଲିଛି । ଜ୍ଞାନୀନ୍ଦ୍ରକୁ ଦେଖି ଅବାକ୍ ହୋଇଛି । ଜ୍ଞାନୀନ୍ଦ୍ର ପ୍ଲେଗ ରୋଗରୁ ରକ୍ଷା ପାଇବାପାଇଁ କିପରି ବମ୍ବେରୁ ଲୁଚି ପଳାଇ ଆସିଛନ୍ତି, ତାହା ବର୍ଣ୍ଣନା କରିଛନ୍ତି । ମଦନର ଚକ୍ରାନ୍ତ ଧରାପଡ଼ିଛି । ଜ୍ଞାନୀନ୍ଦ୍ରର ମୁଦି ଓ ଫଟୋ ଚୋରାଇଆଣି ତା'ର ମୃତ୍ୟୁ ହୋଇଥିବା ଖବର ପ୍ରଚାର କରିଥିବା କଥା ଜଣାପଡ଼ିଛି । ମଣିଅପା ଜେଲ୍ ଯାଇଛି । କାହାର ଗୁଳିରେ ମଦନର ମୃତ୍ୟୁ ହୋଇଛି । ଶେଷରେ ଜ୍ଞାନୀନ୍ଦ୍ର ଓ ଉର୍ବଶୀର ମିଳନ ହୋଇଛି ।

'ନଷ୍ଟ ଉର୍ବଶୀ' ନାଟକଟି କଟକ ଜନତା ରଙ୍ଗମଞ୍ଚରେ ମୁକ୍ତିଲାଭ କରିଥିଲା – ୧୯୫୫ ମସିହା ସେପ୍ଟେମ୍ବର ମାସ ୫ ତାରିଖରେ । ଏହା ମଧ୍ୟ ନାଟ୍ୟଜଗତରେ ଆଲୋଡ଼ନ ସୃଷ୍ଟି କରିଥିଲା । ଏଥିରେ ସହରୀ ସଭ୍ୟତାର ଅସଲି ରୂପ ଦେଖାଇ ଦିଆଯାଇଛି ।

**ଅର୍ଦ୍ଧାଙ୍ଗିନୀ**

'ଅର୍ଦ୍ଧାଙ୍ଗିନୀ' ଏକ ମନସ୍ତାତ୍ତ୍ୱିକ ନାଟକ । ଏଥିରେ ନାଟ୍ୟକାର ଏକ ସ୍ନେହଶୀଳା ନାରୀର ପୁଅପାଇଁ ମମତାର ଚିତ୍ର ଦର୍ଶାଇଛନ୍ତି । ଜୀବନର ଏପରି ବାସ୍ତବ ରୂପ ଏହା ପୂର୍ବରୁ ଅନ୍ୟ କୌଣସି ଓଡ଼ିଆ ନାଟକରେ ପରିବେଷିତ ହୋଇ ନ ଥିବା ଜଣାଯାଏ ।

କଟକ ସହରର ବିକାଶ ରାୟ ଉଚ୍ଚ ମଧ୍ୟବିତ୍ତ ପରିବାରର ଜଣେ ସଙ୍ଗତିସମ୍ପନ୍ନ ବ୍ୟକ୍ତି । ପତ୍ନୀ ମାୟାଦେବୀ ଅପରେସନ ପରେ ଏକ ପୁତ୍ରସନ୍ତାନ ଜନ୍ମ ଦେଇଛନ୍ତି । ସେମାନେ ଜାଣିପାରିଛନ୍ତି ଯେ ଭବିଷ୍ୟତ୍‌ରେ ସେମାନଙ୍କର ଆଉ କୌଣସି ସନ୍ତାନସନ୍ତତି ହେବେ ନାହିଁ । ତେଣୁ ପୁତ୍ର ଅଶୋକ ଉପରେ ସବୁତକ ସ୍ନେହ ଢାଳି ଦେଇଛନ୍ତି । ତେବେ ସ୍ୱାମୀଙ୍କ ଅପେକ୍ଷା ମାୟାଦେବୀଙ୍କ ପୁତ୍ର ପ୍ରତି ସ୍ନେହମମତା ଅତ୍ୟଧିକ ହୋଇପଡ଼ିଛି ।

ଅଶୋକ ତା'ର ଜନ୍ମଦିନରେ ସାଙ୍ଗମାନଙ୍କ ସହ ମଉଜ ମଜଲିସ କଲାବେଳେ ବର୍ଷାରେ ଓଦା ହୋଇଛି । ପରେ ପରେ ଜ୍ୱର ଓ ଟନ୍‌ସିଲ ରୋଗାକ୍ରାନ୍ତ ହୋଇଛି । ଡାକ୍ତର କହିଛନ୍ତି ଟନସିଲ ଅପରେସନ ହେବ । ମାୟାଦେବୀ ସ୍ନେହର ଆଧିକ୍ୟ ଯୋଗୁଁ ନିଜ ପାଖରୁ ଦୂରେଇ ଦେବାକୁ ଅନିଚ୍ଛା ପ୍ରକାଶ କରନ୍ତି । ମାତ୍ର ବିକାଶବାବୁ ଓ ଡାକ୍ତରବାବୁ ଅପରେସନପାଇଁ ନିଷ୍ପତ୍ତି ନିଅନ୍ତି । ମାୟାଦେବୀ ଶୋଇପଡ଼ିଥିଲାବେଳେ ଅଶୋକକୁ ଡାକ୍ତରଖାନାକୁ ନିଆଯାଇଛି । ମାୟାଦେବୀ ପାଗଳୀଙ୍କ ପରି ହୋଇଯାଇଛନ୍ତି ।

ଅଶୋକ ସୁସ୍ଥ ହୋଇ ଘରକୁ ଫେରିଛି । ମାୟାଦେବୀ ଉପଲବ୍ଧି କରିଛନ୍ତି ଯେ ଅଶୋକର ଅପରେସନ ନିହାତି ଆବଶ୍ୟକ ଥିଲା । ସେ ତାଙ୍କର ଭୁଲ୍ ବୁଝିପାରିଛନ୍ତି । ଅନୁତାପ ବି କରିଛନ୍ତି । ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ ଭୁଲ ବୁଝାମଣା ଦୂର ହୋଇଛି । ଦାମ୍ପତ୍ୟ ପ୍ରେମ ଫେରିଆସିଛି । ମାୟାଦେବୀ ପ୍ରକୃତ ଅର୍ଦ୍ଧାଙ୍ଗିନୀର ପରିଚୟ ଦେଇଛନ୍ତି ।

୧୯୫୬ ମସିହାରେ ଉତ୍କଳ ନୃତ୍ୟ ନାଟକ ଏକାଡେମୀଦ୍ୱାରା ଆୟୋଜିତ ନାଟକୋତ୍ସବରେ 'ଅର୍ଦ୍ଧାଙ୍ଗିନୀ' ନାଟକଟି ସର୍ବଶ୍ରେଷ୍ଠ ନାଟକ ଭାବେ ପୁରସ୍କୃତ ହୋଇଥିଲା ।

**ନୂଆବୋଉ**

ପତିପତ୍ନୀଙ୍କ ସମ୍ପର୍କକୁ ନେଇ ନାଟକ ରଚନା କଲାପରେ ଭାଇ ଭାଇ ମଧ୍ୟରେ ସ୍ନେହ-ମମତାକୁ ନେଇ ନାଟ୍ୟକାର ରଚନା କରିଛନ୍ତି 'ନୂଆବୋଉ' । ଏହା ଏକ କ୍ଷୁଦ୍ର ନାଟକ । ଏହାର ଅଙ୍କ ସଂଖ୍ୟା ମାତ୍ର ଦୁଇଟି ।

ଦୁଇ ଭାଇ ମଧ୍ୟରେ ଅନାବିଳ ସ୍ନେହ ରହିଛି । ମାତ୍ର ଭାଉଜ ରୁକ୍ମିଣୀଦେବୀଙ୍କ ଚକ୍ରାନ୍ତରେ ବଡ଼ଭାଇ ସାନଭାଇକୁ ସନ୍ଦେହ କରନ୍ତି । ଫଳରେ ଦୁହିଁଙ୍କ ମଧ୍ୟରେ କଳହ ସୃଷ୍ଟି ହୋଇଛି । ପାରିବାରିକ ଜୀବନରେ ଅଶାନ୍ତି ଦେଖାଦେଇଛି । ମାତ୍ର ଶେଷରେ ଚକ୍ରାନ୍ତ ଧରା ପଡ଼ିଯାଇଛି । ପୁଣି ଭାଇ ଭାଇ ମଧ୍ୟରେ ସ୍ନେହ ସମ୍ପର୍କ ଗଢ଼ିଉଠିଛି ।

## ପଥିକ ବନ୍ଧୁ

ଶ୍ରମିକ ଜୀବନ ସମସ୍ୟାକୁ ନେଇ 'ପଥିକ ବନ୍ଧୁ' ନାଟକ ରଚିତ । ଏହା ମଧ୍ୟ ରୋମାଞ୍ଚଧର୍ମୀ । ସମାଜରେ ଲାଞ୍ଚ, ମିଛ, ଦୁର୍ନୀତି ଓ କଳାବଜାର କେମିତି ଚାଲିଛି ଲେଖକ ତାହା ଦର୍ଶାଇଛନ୍ତି ।

ହୀରାକୁଦ ଶ୍ରମିକ ବସ୍ତିର ଏକ ହୋଟେଲର ନାମ 'ପଥିକ ବନ୍ଧୁ' । ହୋଟେଲର ମାଲିକାଣୀ ବେଙ୍ଗମା । ତା'ର ଚଉଦ ପନ୍ଦର ବର୍ଷ ବୟସର ଝିଅ ହେଉଛି କାଞ୍ଚନ । ସେ ଶ୍ରମିକ ବସ୍ତିରେ ଥିବା କିଶୋର ନାମକ ଶ୍ରମିକକୁ ଭଲ ପାଇଛି ।

ସେଇ ଶ୍ରମିକ ବସ୍ତିରେ ରହେ କାଲୁ ସର୍ଦ୍ଦାର । ସେ ଶ୍ରମିକ ଶ୍ରେଣୀର ହୋଇଥିଲେ ବି କାମ କରେନି । ବସ୍ତିରେ ସେ ନେତା ସାଜି ତା'ର ହୁକୁମ ଚଳାଏ । ହେଡ୍ କ୍ଲର୍କ ରାଇଚରଣ ସଙ୍ଗେ ମିଶି ଚୋରାରେ ଲୁହା, ସିମେଣ୍ଟ ବିକି ପ୍ରଚୁର ଅର୍ଥ ରୋଜଗାର କରେ । ତା'ର ଲୋଲୁପ ଦୃଷ୍ଟି ବେଙ୍ଗମା ଝିଅ କାଞ୍ଚନ ଉପରେ ପଡ଼ିଛି । ତାକୁ ପ୍ରଚୁର ଅର୍ଥ ଦେଇ ବଶୀଭୂତ କରିଛି । ବେଙ୍ଗମା ମଧ୍ୟ କାଞ୍ଚନକୁ କାଲୁ ସର୍ଦ୍ଦାର ସହିତ ବିବାହ ଦେବାକୁ ରାଜି ହୋଇଛି ।

ହୀରାକୁଦ କ୍ୟାମ୍ପରେ ସୁନ୍ଦର ନାମକ ଏକ ଯୁବକ ଫିଟର୍‌ଭାବେ ଯୋଗ ଦେଇଛି । ତା'ର ବଳିଷ୍ଠ ବ୍ୟକ୍ତିତ୍ୱ । ଚରିତ୍ର ବି ଖୁବ୍ ଭଲ । କଣ୍ଟ୍ରାକ୍ଟର ଜୀବନବାବୁଙ୍କ କନ୍ୟା ଲତା ତାକୁ ଭଲ ପାଇଛି । କିନ୍ତୁ ଲତାକୁ ଉପଭୋଗ କରିବାକୁ ହେଡକ୍ଲର୍କ ରାଇଚରଣବାବୁ ଚାହିଁଛନ୍ତି ଓ କୁଲି ସର୍ଦ୍ଦାର କାଲୁ ମିଆଁ ସଙ୍ଗେ ଚକ୍ରାନ୍ତ କରିଛନ୍ତି ।

କାଲୁ ସର୍ଦ୍ଦାର କାଞ୍ଚନକୁ ଅପହରଣ କରି ନେଇ ଏକ ଗୁପ୍ତ ସ୍ଥାନରେ ରଖିଛି । ରାଇଚରଣଦ୍ୱାରା ପ୍ରଚାର କରିଛି ଯେ ସୁନ୍ଦର କାଞ୍ଚନକୁ ଅପହରଣ କରିନେଇଛି ।

ଏତେ ଷଡ଼୍‌ଯନ୍ତ୍ରର ଜାଲ ଭିତରେ ରାଇଚରଣ ସହିତ ଲତାର ଆଉ କାଲୁ ସର୍ଦ୍ଦାର ସଙ୍ଗେ କାଞ୍ଚନର ବିବାହ ସ୍ଥିର ହୋଇଛି । ସି.ଆଇ.ଡି. ବସନ୍ତବାବୁ ଏହାର ସୁରାକପାଇ ସେ ବ୍ରାହ୍ମଣ ଛଦ୍ମବେଶରେ ବିବାହ ଦାୟିତ୍ୱ ନେଇଛନ୍ତି । କାଲୁ ସର୍ଦ୍ଦାରର କଳା କାରବାର ଲୋକଲୋଚନକୁ ଆଣିଛନ୍ତି । ଚୋରି ଅପରାଧରେ ତାକୁ ଜେଲ୍‌ଦଣ୍ଡ ଦିଆଯାଇଛି । ରାଇଚରଣ ମଧ୍ୟ ଗିରଫ ହୋଇଛନ୍ତି । କାଞ୍ଚନର କିଶୋର ସହିତ ଆଉ ଲତାର ସୁନ୍ଦର ସହ ମିଳନ ହୋଇଛି । ପ୍ରେମର ବିଜୟ ହୋଇଛି ।

## ପରକଲମ

'ପରକଲମ' ଏକ ରାଜନୀତିକ ସମାଲୋଚନାମୂଳକ ନାଟକ । ଚଳନ୍ତି ରାଜନୀତିରେ ବିଶେଷକରି ସ୍ୱାଧୀନତା ପରେ ରାଜନୀତିରେ ଯେଉଁ କୁଟିଳତା, ଦୁର୍ନୀତି ପ୍ରବେଶ କରିଛି ତାହା ନାଟ୍ୟକାର ବିଭିନ୍ନ ଚରିତ୍ର ମାଧ୍ୟମରେ ପ୍ରକାଶ କରିଛନ୍ତି – ବ୍ୟଙ୍ଗାତ୍ମକ ଭାବେ ।

୧୯୫୪ ମସିହା ଅଗଷ୍ଟ ମାସ ୫ ତାରିଖରେ 'ପରକଲମ' ଜନତା ରଙ୍ଗମଞ୍ଚରେ ଅଭିନୀତ ହେଲା । ଏଥିରେ ପୌରୋହିତ୍ୟ କରିଥିଲେ ଡଃ ହରେକୃଷ୍ଣ ମହତାବ ।

ନାଟକ ଆରମ୍ଭରେ ଗଣଶକ୍ତି ଓ ମିତ୍ରଶକ୍ତି ଦଳ ମଧ୍ୟରେ ନିର୍ବାଚନ ପ୍ରତିଦ୍ୱନ୍ଦ୍ୱିତା ହୋଇଛି । ଗଣଶକ୍ତି ଦଳର ଚିହ୍ନ ହୋଇଛି ଛତା । ସେହିପରି ମିତ୍ର ଶକ୍ତି ଦଳର ଚିହ୍ନ ହୋଇଛି ପରକଲମ । ପ୍ରଚାର ଜୋର ସୋର୍‌ରେ ଚାଲିଛି । ନିର୍ବାଚନରେ ଗଣଶକ୍ତି ଦଳ ହାରିଯାଇଛି ଓ ମିତ୍ରଶକ୍ତି ଦଳ ବିଜୟ ଲାଭ କରିଛି । ମିତ୍ରଶକ୍ତି ଦଳ ମନ୍ତ୍ରିମଣ୍ଡଳ ଗଠନ କରି ରାଜ୍ୟର ଶାସନ ଦାୟିତ୍ୱ ଗ୍ରହଣ କରିଛି । ଦଳର ନେତା ଆଚାର୍ଯ୍ୟ ମହାଶୟ ହୋଇଛନ୍ତି ମୁଖ୍ୟମନ୍ତ୍ରୀ । ରାଜେନ୍ଦ୍ର ଓ ଦେବାନନ୍ଦ ବିଭିନ୍ନ ବିଭାଗର ମନ୍ତ୍ରୀ ହୋଇଛନ୍ତି ।

ସମୟକ୍ରମେ ମିତ୍ରଦଳ ନେତାଙ୍କର ନୈତିକ ଅଧଃପତନ ଘଟିଛି । ସେମାନଙ୍କ ନିର୍ବାଚନ ପୂର୍ବର ପ୍ରତିଶ୍ରୁତି ସବୁ ଫମ୍ପା ଆବାଜ ହୋଇଛି । ଦେଶର କଲ୍ୟାଣକୁ ଛାଡ଼ି ସେମାନେ ସ୍ୱାର୍ଥ ସାଧନରେ ଲାଗିପଡ଼ିଛନ୍ତି । ଜନସାଧାରଣ ହୋଇଛନ୍ତି ଅବହେଳିତ । ଅବଶ୍ୟ ଜଣେ ଯୁବନେତା ରାଜେନ୍ଦ୍ର ଏସବୁର ଉର୍ଦ୍ଧ୍ୱରେ ରହିଛନ୍ତି । ସେ ଜଣେ ଆଦର୍ଶବାଦୀ ଓ କର୍ମନିଷ୍ଠ ନେତା । ମାତ୍ର ତାଙ୍କ ସ୍ୱାସ୍ଥ୍ୟରେ ଅବନତି ଦେଖାଦେଇଛି । ସେ ଚିକିତ୍ସାପାଇଁ ସୁଇଜରଲ୍ୟାଣ୍ଡ ଯିବାକୁ ସ୍ଥିର କରିଛନ୍ତି । ସରକାର ସେଥିପାଇଁ ତାଙ୍କୁ ଆର୍ଥିକ ସାହାଯ୍ୟ ଦେବାକୁ କହିଛନ୍ତି । ମାତ୍ର ସେ ତାହାକୁ ପ୍ରତ୍ୟାଖ୍ୟାନ କରନ୍ତି । ଶାସନରେ କ୍ରମେ ସ୍ୱେଚ୍ଛାଚାରିତା ବଢ଼ିବାରେ ଲାଗିଛି । ମୁଖ୍ୟମନ୍ତ୍ରୀଙ୍କୁ ଭେଟିବାକୁ ଗାଁରୁ ଆସୁଥିବା ବ୍ୟକ୍ତିଙ୍କୁ ମୁଖ୍ୟମନ୍ତ୍ରୀ ସାକ୍ଷାତ୍ ଦେଇ ନାହାନ୍ତି । ସେମାନଙ୍କୁ ଫେରାଇ ଦିଆଯାଇଛି । ମୁଖ୍ୟମନ୍ତ୍ରୀ ସେମାନଙ୍କୁ ସଫା ସଫା କହିଦେଇଛନ୍ତି ଯେ ଛୋଟ ମୋଟ କଥା ଶୁଣିବାକୁ ତାଙ୍କର ସମୟ ନାହିଁ ।

ମୁଖ୍ୟମନ୍ତ୍ରୀ ଆଚାର୍ଯ୍ୟ କ୍ରମେ କ୍ଷମତାର ଅପବ୍ୟବହାର କରିବାରେ ଲାଗିଛନ୍ତି । ବ୍ୟବସାୟୀ ଇସ୍‌ମାଇଲ ଖାଁ ଠାରୁ ଟଙ୍କା ଲାଞ୍ଚ ନେଇ ଲାଇସେନ୍‌ସ ଦେଇଛନ୍ତି । ଇସ୍‌ମାଇଲ ଖାଁ ଚଢ଼ା ଦରରେ ଚାଉଳ କିଣିନେଇ କଲିକତା ପଠାଇଛି । ଫଳରେ ଓଡ଼ିଶାରେ ଚାଉଳର ଅଭାବ ପଡ଼ିଛି । ସରକାରଙ୍କ ପ୍ରତି ଲୋକଙ୍କ ଆସ୍ଥା ତୁଟିଛି, ସେମାନେ ସରକାରଙ୍କ ବିରୋଧରେ ସ୍ୱର ଉତ୍ତୋଳନ କରିଛନ୍ତି । ଉଚ୍ଚ ଅଫିସରମାନଙ୍କୁ ମନମୁଖୀଭାବେ ବଦଳି ମଧ୍ୟ କରିଦିଆଯାଇଛି । ଏହି ପରିସ୍ଥିତିରେ ରାଜେନ୍ଦ୍ରବାବୁ ସୁଇଜରଲ୍ୟାଣ୍ଡ୍‌ରୁ ଫେରିଛନ୍ତି । ସେ ଇସ୍‌ମାଇଲ ଖାଁକୁ ଧରାଇ ଦେଇଛନ୍ତି । ମୁଖ୍ୟମନ୍ତ୍ରୀ ରାଜେନ୍ଦ୍ରଙ୍କ ସମର୍ଥକମାନଙ୍କୁ ଅର୍ଥ ବଳରେ ବଶୀଭୂତ କରିବାକୁ ଚେଷ୍ଟା କରନ୍ତି । ଏଥିପାଇଁ ଅନ୍ୟ ଜଣେ ମନ୍ତ୍ରୀ ଦେବାନନ୍ଦଙ୍କୁ ଗୁପ୍ତ ନିର୍ଦ୍ଦେଶ ଦେଇଛନ୍ତି । ମାତ୍ର ତାହା ପଦାକୁ ଆସିଛି । ମୁଖ୍ୟମନ୍ତ୍ରୀଙ୍କର ସମସ୍ତ ଚକ୍ରାନ୍ତ ଓ କାରସାଦି ଧରାପଡ଼ିଛି । ରାଜେନ୍ଦ୍ରବାବୁଙ୍କ ଉଦ୍ୟମ ଫଳରେ ସମସ୍ତ ବିଷୟ

ରାଜ୍ୟପାଳଙ୍କୁ ଅବଗତ କରାଯାଇଛି । ତାଙ୍କ ଆଦେଶରେ ଆଚାର୍ଯ୍ୟ ମୁଖ୍ୟମନ୍ତ୍ରୀ ପଦରୁ ବରଖାସ୍ତ ଓ ପରେ ଗିରଫ ହୋଇଛନ୍ତି ।

ଗତାନୁଗତିକ ନାଟକଠାରୁ ସମ୍ପୂର୍ଣ୍ଣ ଭିନ୍ନ ଓ ରାଜନୀତିକ ବିଷୟବସ୍ତୁକୁ ଆଧାର କରି ନାଟକ ଯେ ଲେଖାଯାଇପାରେ, ଗୋପାଳ ଛୋଟରାୟ ତାହା ପ୍ରମାଣିତ କରିଛନ୍ତି । ଏହାର ସଂଳାପ ସଂଯୋଜନା ଅତି ଉଚ୍ଚ ସ୍ତରର ହୋଇଛି । ଏହି ନାଟକଟି ଦିଲ୍ଲୀରେ ଭାରତୀୟ ସାମ୍ବତ୍ସରିକ ନାଟ୍ୟ ଉତ୍ସବରେ ଓଡ଼ିଶାର ପ୍ରତିନିଧିତ୍ୱ କରି ସମାଲୋଚକମାନଙ୍କଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଥିଲା । ଏହା ମଧ୍ୟ ପେସାଦାର ଥିଏଟର ଦଳ ଜରିଆରେ ମଞ୍ଚସ୍ଥ ହୋଇ ସୁନାମ ଅର୍ଜନ କରିଥିଲା । ନାଟକଟି ଉପାଦେୟ ଓ ଯୁଗୋପଯୋଗୀ ହୋଇଥିବା ସମସ୍ତେ ମତ ଦେଇଥିଲେ ।

**ଦଳବେହେରା**

ଇତିହାସର କଥାବସ୍ତୁକୁ ନେଇ ନାଟ୍ୟକାର ଗୋପାଳ ରଚନା କରିଛନ୍ତି 'ଦଳବେହେରା' ନାଟକ । ଏହି ନାଟକର ବକ୍ତବ୍ୟରେ ନାଟ୍ୟକାର କହିଛନ୍ତି ସେ 'ଦଳବେହେରା' ନାଟକର କଥାବସ୍ତୁ 'ଫିରିଙ୍ଗୀ କଳି ଭାରତ' ଶୀର୍ଷକ ଖଣ୍ଡକାବ୍ୟରୁ ଆହରଣ କରିଛନ୍ତି । ତାହାର ରଚୟିତା ହେଉଛନ୍ତି ତାପଙ୍ଗ ଯୁଦ୍ଧର ଜଣେ ପ୍ରତ୍ୟକ୍ଷଦର୍ଶୀ ବ୍ୟକ୍ତି – ମଧୁସୂଦନ ବିପ୍ର । ଏହାଛଡ଼ା ନାଟକର ନାୟକ ମାଧବ ରାଉତରାୟଙ୍କ ପ୍ରପୌତ୍ର ରାଧାଶ୍ୟାମ ରାଉତରାୟ ତଥା ତାପଙ୍ଗଗଡ଼ର ଅନ୍ୟ କେତେକ ଭଦ୍ର ବ୍ୟକ୍ତିଙ୍କ ସହ ପ୍ରତ୍ୟକ୍ଷ ଆଲୋଚନା ଓ କେତେକ ଜନଶ୍ରୁତିକୁ ଆଧାର କରି ସେ ଏହି ନାଟକ ରଚନାରେ ବ୍ରତୀ ହୋଇଛନ୍ତି ବୋଲି ଉଲ୍ଲେଖ କରିଛନ୍ତି ।

୧୮୦୩-୦୪ ମଧ୍ୟରେ ଓଡ଼ିଶା ତଥା ଖୋରଧା ଅଧିକାର କରିସାରିଲାପରେ ଶେଷ ସ୍ୱାଧୀନ ରାଜ୍ୟ ତାପଙ୍ଗ ଉପରେ କର୍ଣ୍ଣେଲ ହାର୍‌କୋର୍ଟଙ୍କ ଲୋଲୁପ ଦୃଷ୍ଟି ପଡ଼ିଛି । ମାତ୍ର ତାପଙ୍ଗ ଦଳବେହେରାଙ୍କ ଅସୀମ ବୀରତ୍ୱ ଇଂରେଜମାନଙ୍କୁ ରାଜ୍ୟରେ ପ୍ରବେଶ କରାଇ ଦେଇ ନାହିଁ ।

ଇଂରେଜ ସୈନ୍ୟମାନେ ନଅ ଦିନ ଯୁଦ୍ଧ କରିଛନ୍ତି । ମାତ୍ର ଦଳ ବେହେରାଙ୍କୁ ପଦାନତ କରିପାରି ନାହାନ୍ତି । ଶେଷରେ ଅସ୍ତ୍ରାଗାର ଦାୟିତ୍ୱରେ ଥିବା ମଧୁ ପଟ୍ଟନାୟକଙ୍କ ବିଶ୍ୱାସଘାତକତା ଯୋଗୁଁ ଇଂରେଜ ସୈନ୍ୟମାନେ ଗୁପ୍ତ ଅସ୍ତ୍ରାଗାରର ସନ୍ଧାନ ପାଇଛନ୍ତି ଓ ତାଙ୍କୁ ଧ୍ୱଂସ କରିଦେଇଛନ୍ତି । ଫଳରେ ଦଳବେହେରା ପରାସ୍ତ ହୋଇଛନ୍ତି । ମାତ୍ର ସେ ଧରାପଡ଼ି ନାହାନ୍ତି । ବଣ ଜଙ୍ଗଲରେ ଆତ୍ମଗୋପନ କରିଛନ୍ତି । ଇଂରେଜମାନେ ତାଙ୍କୁ ଧରାଇଦେଲେ ଏକ ହଜାର ଟଙ୍କାର ପୁରସ୍କାର ଘୋଷଣା କରନ୍ତି । ତଥାପି ସେ ଧରାପଡ଼ି ନାହାନ୍ତି । ମାଧବ ରାଉତରାୟଙ୍କର ସନ୍ଧାନ ନ ପାଇ ଇଂରେଜ ସରକାର ନିରାଶ ହୋଇପଡ଼ିଛନ୍ତି ।

ଘଟଣାକ୍ରମେ ଦଳବେହେରା ଜଙ୍ଗଲରେ ବୁଲୁଥିବାବେଳେ ଏକ କ୍ଷୁଧାର୍ତ୍ତ କେଉଟକୁ ଭେଟିଛନ୍ତି । କେତେ ଦିନ ହେଲା ଓପାସ ଥିବା କଥା ସେ ଜଣାଇ ତାଙ୍କର ସାହାଯ୍ୟ ଲୋଡ଼ନ୍ତି । ସେହି କେଉଟକୁ ସାହାଯ୍ୟ କରିବାପାଇଁ ମାଧବ ଦଳବେହେରା ଆପେ ଆପେ ଇଂରେଜମାନଙ୍କ ପାଖରେ ଧରା ଦିଅନ୍ତି ଓ ତାଙ୍କୁ ଧରାଇବା ନିମନ୍ତେ ଘୋଷଣା କରାଯାଇଥିବା ଏକ ହଜାର ଟଙ୍କାକୁ ସେହି କ୍ଷୁଧାର୍ତ୍ତ କେଉଟକୁ ଦେବାକୁ ଅନୁରୋଧ କରିଛନ୍ତି । ଇଂରେଜ ସରକାର ଦଳବେହେରାଙ୍କ ଏହି ଅଦ୍ଭୁତ ଅନୁରୋଧରେ ବିସ୍ମିତ ହୋଇଛନ୍ତି । ତାଙ୍କୁ ମୁକ୍ତ କରିଦିଆଯାଇଛି ।

ନାଟକରେ ନାରୀ ଚରିତ୍ର କାଜଲ ନାଟ୍ୟକାରଙ୍କ କଳ୍ପନାପ୍ରସୂତ । ଏହି ଗୋଟିଏ କାଳ୍ପନିକ ଚରିତ୍ରକୁ ଛାଡ଼ିଦେଲେ ନାଟକଟି ସତ୍ୟ ଘଟଣା ଉପରେ ପ୍ରତିଷ୍ଠିତ ହୋଇଥିବାରୁ ଦେଶାତ୍ମବୋଧ ସୃଷ୍ଟି କରେ । ଏଥିରେ ଓଡ଼ିଶାର ଅତୀତ ଗୌରବ ଓ ଦେଶପ୍ରୀତି ଅତି ଚମତ୍କାରଭାବେ ପରିସ୍ଫୁଟ ହୋଇଛି ।

**ସହଧର୍ମିଣୀ**

ବିଂଶ ଶତାବ୍ଦୀର ତୃତୀୟ ଦଶକରେ ପୃଥିବୀରେ ଦେଖାଦେଇଥିବା ନାଜିବାଦ ଓ ଫାସୀବାଦ ଅଭ୍ୟୁଦୟ ପଟ୍ଟଭୂମି ଉପରେ ରଚିତ ନାଟକ 'ସହଧର୍ମିଣୀ' ।

ଫାସୀବାଦ ଓ ନାଜିବାଦ ବିରୋଧରେ ସଂଗ୍ରାମ କରୁଥିଲେ ଇଂଲଣ୍ଡ ଓ ଆମେରିକା ଭଳି ରାଷ୍ଟ୍ରଗଣ । ସେମାନେ ମିତ୍ରଶକ୍ତିଭାବେ ପରିଚିତ ଥିଲେ । ଭାରତର ଜଣେ ଅବସରପ୍ରାପ୍ତ ମେଜର ଦାସ ମିତ୍ରଶକ୍ତି ସପକ୍ଷରେ ରହିବା ସ୍ୱାଭାବିକ । ତାଙ୍କର ଏକମାତ୍ର କନ୍ୟା ସଲୀଳା । ପିତା ସେନାବାହିନୀରେ ଥିବା ଯୋଗୁଁ ତା'ର ଦେଶପ୍ରତି ମମତା ଅଧିକ । ସେ ବିଶ୍ୱବିଦ୍ୟାଳୟର କୃତୀ ଛାତ୍ର କିଶୋରକୁ ଭଲ ପାଆନ୍ତି । କିଶୋର ମଧ୍ୟ ସଲୀଳାକୁ ଅନ୍ତର ସହ ଭଲ ପାଆନ୍ତି । କିଶୋର ନୌବାହିନୀ ସର୍ଭିସ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଛନ୍ତି । ଏଥିରେ ସଲୀଳା ଓ ତା' ପିତା ଆନନ୍ଦରେ ଆତ୍ମହରା ହୋଇଉଠିଛନ୍ତି । ଦେଶପାଇଁ ସ୍ୱାମୀ କାମ କରିବେ – ଏହା ଶୁଣି ସଲୀଳା ଆନନ୍ଦରେ ଅଭିଭୂତ ହୋଇପଡ଼ିଛି । କିଶୋର କିନ୍ତୁ ନାଭାଲ ସର୍ଭିସରେ ଯୋଗ ଦେଇ ଜୀବନକୁ ବିପଦସଙ୍କୁଳ କରିବାକୁ ଚାହିଁନି । ସେ ସଲୀଳାକୁ ବିବାହ କରି ସୁଖମୟ ଜୀବନ ଯାପନ କରିବାକୁ ମନ ବଳାଇଛି । ଘଟଣାକ୍ରମେ ସେ ସଲୀଳାକୁ ନିଜର ଇଚ୍ଛା ପ୍ରକାଶ କରିବାକୁ ଆସିଛି । କିଶୋରର ଏଇ ଆତ୍ମକୈନ୍ଦ୍ରିକ ଚିନ୍ତାଧାରାରେ ସଲୀଳା ଓ ମେଜର ଦାସ ମର୍ମାହତ ହୋଇପଡ଼ନ୍ତି । ସଲୀଳା ସେଭଳି ଦେଶସେବା ସୁଯୋଗ ଥିବା ଚାକିରିକୁ ନ ଛାଡ଼ିବାକୁ ବାଧ କରିଛି । ଶେଷରେ କିଶୋର ସଲୀଳାର ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇଛି ଓ ନୌବାହିନୀରେ ଯୋଗ ଦେଇଛି । ଅଳ୍ପ କେତୋଟି ବର୍ଷରେ ସେ

ଦକ୍ଷ ଅଫିସର ଭାବରେ ନିଜକୁ ପ୍ରତିଷ୍ଠିତ କରିପାରିଛି । ସଲୀଳାଙ୍କ ମନସ୍କାମନା ପୂର୍ଣ୍ଣ ହୋଇଛି । ଶେଷରେ କିଶୋର ଓ ସଲୀଳାଙ୍କ ବିବାହ ହୋଇଛି ।

ଦେଶପାଇଁ ଜୀବନ ବଳିଦେଇ ଦେଶର ଗୌରବ ରକ୍ଷା କରିବା ନାଟକର ହେଉଛି ଅନ୍ତଃସ୍ୱର । ନାଟ୍ୟକାର କଥାବସ୍ତୁକୁ ସୁନ୍ଦରଭାବେ ଉପସ୍ଥାପନ କରିଛନ୍ତି ।

**ସାଧନା**

୧୯୬୨ ମସିହାରେ ଭାରତ ଉପରେ ଚୀନ ଆକ୍ରମଣ ପଟ୍ଟଭୂମିରେ 'ସାଧନା' ନାଟକଟି ରଚିତ । ଏହା ଏକ ଦେଶାତ୍ମବୋଧକ ନାଟକ । ଚାଇନାର ଶଠତାପୂର୍ଣ୍ଣ ଆଚରଣ ପ୍ରତି ଭାରତୀୟ ହୃଦୟରେ ଯେଉଁ ଦେଶପ୍ରୀତିର ଭାବଧାରା ଫୁଟାଇଥିଲା, ତା'ର ପରିପ୍ରକାଶ ହେଉଛି 'ସାଧନା' ନାଟକ ।

ମେଜର ଦାସ ଭାରତର ଡିଫେନ୍‌ସ ବିଭାଗର ଜଣେ ଅବସରପ୍ରାପ୍ତ କର୍ମଚାରୀ । ଚାଇନାର ଆକ୍ରମଣରୁ ଭାରତ କିପରି ରକ୍ଷା ପାଇବ ସେ ଦିଗରେ ସେ ମାନସିକ ସ୍ତରରେ ବ୍ୟସ୍ତ । ସେଥିପାଇଁ ସେ ପରିବାରର କୌଣସି ସମସ୍ୟାରେ ମୁଣ୍ଡ ଖେଳାଇ ନାହାନ୍ତି ।

ମେଜର ଦାସଙ୍କର ଏକମାତ୍ର କନ୍ୟା ସାଧନା । ସେ ପିତାଙ୍କ ଆଦର୍ଶରେ ଅନୁପ୍ରାଣିତା । ସେ ମଧ୍ୟ ଦେଶର ସୁରକ୍ଷାପାଇଁ ସଦାସର୍ବଦା ଚିନ୍ତିତା । ମାତ୍ର ବାପ ଝିଅଙ୍କର ଏପରି ଦେଶ ନେଇ ବ୍ୟସ୍ତ ହେବା ମାଆ ମନୋରମାଙ୍କୁ ଆଦୌ ଭଲ ଲାଗି ନାହିଁ । ସେ ଚାହାନ୍ତି ଯେ ସ୍ୱାମୀ ଏସବୁ ବାଜେ କଥାରେ ମୁଣ୍ଡ ନ ଖେଳାଇ ସାଧନାର ବିବାହ ଯୋଗାଡ଼ରେ ଲାଗିବାପାଇଁ । ମାତ୍ର ମେଜର ଦାସ ମନୋରମାଙ୍କ କଥାକୁ ଆଦୌ ଶୁଣନ୍ତି ନାହିଁ ।

ସାଧନାର ବିବାହ ଠିକ୍ ହୋଇଛି କିଶୋର ସଙ୍ଗେ । କିଶୋର ମଧ୍ୟ ଡିଫେନ୍ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଛି । ସେ ବଡ଼ ସାହସୀ । ସେ ସାମରିକ ବିଭାଗରେ ଯୋଗ ଦେବାକୁ ଆଗ୍ରହୀ । କିନ୍ତୁ ତାଙ୍କ ମାଆ ତୁଳସୀଦେବୀ ପୁଅର ସାମରିକ ବିଭାଗରେ ଯୋଗ ଦେବାଟା ଚାହିଁ ନାହାନ୍ତି । ପୁଅ କିପରି ବୋହୂ ସାଧନାକୁ ନେଇ ଘରସଂସାର କରୁ, ଏହାହିଁ ତାଙ୍କର ଚିନ୍ତା । କିନ୍ତୁ ମେଜର ଦାସଙ୍କର ଉଦ୍ୟମ, ପ୍ରେରଣା ଓ ସାଧନାର ଭର୍ତ୍ସନା ଫଳରେ କିଶୋର ଡିଫେନ୍ସ ବିଭାଗରେ ଚାକିରିରେ ଯୋଗ ଦେଇଛି । ମାଆ ତୁଳସୀଦେବୀ ଦୁଃଖରେ ଅଭିଭୂତା ହୋଇପଡ଼ିଛନ୍ତି । ପୁଅପାଇଁ ସେ ସଦାସର୍ବଦା ବ୍ୟାକୁଳ ହୋଇଛନ୍ତି । ଏପରିକି ଖାଇବା ପିଇବା ମଧ୍ୟ ଛାଡ଼ି ଦେଇଛନ୍ତି । ପଡ଼ିଶା ଘରର ଝିଅ ଇନ୍ଦୁ ତାଙ୍କ ପାଖେ ପାଖେ ରହି ସବୁ ପ୍ରକାର ସାହାଯ୍ୟ କରିଛି ।

କିଶୋରର ମାମୁ ତୁଳସୀଦେବୀଙ୍କ ଅବସ୍ଥା ଶୁଣି ଦୁଃଖିତ ହୋଇଛନ୍ତି । ସେ କଟକ ଯାଇ ମେଜର ଦାସଙ୍କୁ ଭେଟିଛନ୍ତି ଓ ତୁଳସୀଦେବୀଙ୍କ ଅବସ୍ଥାପାଇଁ ଦାୟୀ କରିଛନ୍ତି ।

କିଶୋରକୁ ସାମରିକ ବିଭାଗରୁ ଫେରାଇ ଆଣିବାକୁ ମାମୁ ଏକ ଉପାୟ ଅବଲମ୍ବନ କରିଛନ୍ତି । କିଶୋର ସାମରିକ ବିଭାଗ ନ ଛାଡ଼ିଲେ ତାଙ୍କର ମାଆ ଆତ୍ମହତ୍ୟା କରିବେ - ଏଇ ମର୍ମରେ ସରକାରଙ୍କୁ ଆବେଦନ କରିଛନ୍ତି । ତୁଳସୀଦେବୀ କହିବା ମୁତାବକ ଇନ୍ଦୁର ଗୋଟିଏ ପତ୍ର କିଶୋର ପାଖରେ ପହଞ୍ଚିଛି ।

ମିଲିଟାରୀ କ୍ୟାମ୍ପରେ ଥାଆନ୍ତି କିଶୋର ଓ ତା'ର ଦୁଇ ସହକର୍ମୀ ମେନନ୍ ଓ କମଲ୍ । ଏହି ଦୁଇ ଖଣ୍ଡ ପତ୍ର ମିଳିବା ପରେ ଡିଫେନ୍ସ ବିଭାଗର କେତେକ ଗୁପ୍ତ ନଥି ଚୋରି ହୋଇଛି । ଏଥିପାଇଁ କିଶୋରକୁ ସମସ୍ତେ ସନ୍ଦେହ କରନ୍ତି । ମାତ୍ର ପ୍ରକୃତରେ ଏହି ଦୁଇ ଖଣ୍ଡ ପତ୍ରର ସୁଯୋଗ ନେଇ ସହକର୍ମୀ କମଲ୍ ଏଗୁଡ଼ିକୁ ଚୋରାଇ ନିଏ । କମଲ୍ ମଧ୍ୟ ଅଭିଯୋଗ କରିଛି ଯେ କିଶୋର ଜାଲ୍ କରି ଚାକିରିରୁ ବିଦାୟ ନେବାକୁ ଚାହେଁ । କିଶୋର କମଲ୍‌ର ଚାଲ୍ ବୁଝିପାରିଛି । ସେ କ୍ୟାମ୍ପ ପରିତ୍ୟାଗ ନ କରିବାକୁ କମଲ୍‌କୁ ଆଦେଶ ଦେଇଛି । ମାତ୍ର ରାଗରେ କମଲ୍ କିଶୋରକୁ ଗୁଳି କରିଛି । ଗୁଳି କିନ୍ତୁ କିଶୋର ଦେହରେ ନ ବାଜି ଗୋଡ଼ରେ ବାଜିଛି । କମଲ୍ ଫେରାର ହୋଇଛି ।

କିଶୋରକୁ ଗିରଫ କରାଯାଇଛି । ଗୋଡ଼ର ଚିକିତ୍ସାପାଇଁ କଲିକତା ସାମରିକ ହସ୍‌ପିଟାଲ୍‌ରେ ଭର୍ତ୍ତି କରାଯାଇଛି । ସେଠାରେ ନଜରବନ୍ଦୀଭାବେ ରହି କିଶୋର ଚିକିତ୍ସିତ ହୋଇଛି । ଏହି ଆକସ୍ମିକ ଦୁର୍ଘଟଣାରେ ଦୁଇଟି ପରିବାର ମଧ୍ୟରେ ଶୋକର ଛାୟା ଖେଳିଯାଇଛି । ସମସ୍ତେ ଯାଇଛନ୍ତି କିଶୋରକୁ ଦେଖା କରିବାପାଇଁ ।

ବନ୍ଧୁ ମେନନ୍ କିଶୋରକୁ ସମସ୍ତ ପ୍ରକାର ସାହାଯ୍ୟ ଦେଇଛି । କିଛି ଦିନ ପରେ କମଲ୍ ଠାରୁ ଗୁପ୍ତ ନଥିଗୁଡ଼ିକ ଜବତ ହୋଇଛି । କିଶୋରକୁ ଦୋଷମୁକ୍ତ କରାଯାଇଛି । ତା'ର ବୁଦ୍ଧିମାନ୍ କାର୍ଯ୍ୟପାଇଁ ପ୍ରଶଂସିତ ହୋଇଛି । ସାଧନା କିଶୋରକୁ ନିଜର ଜୀବନସାଥୀ କରିଛି ।

ଦେଶାତ୍ମବୋଧ ଜାଗରଣ କରିବା ନାଟକର ମୂଳ ଲକ୍ଷ୍ୟ ହୋଇଥିଲେହେଁ ପାରିବାରିକ କଥାବସ୍ତୁର ସଂଯୋଜନା ନାଟକକୁ ସରସ ଓ ସୁନ୍ଦର କରିଛି ।

**ଘଟକ**

'ଘଟକ' ଏକ ହାସ୍ୟରସାତ୍ମକ ନାଟକ । ନାଟକର ମୁଖବନ୍ଧରେ ନାଟ୍ୟକାର ଲେଖିଛନ୍ତି -

"ବ୍ୟବସାୟୀ ରଙ୍ଗମଞ୍ଚରେ ଏକ୍ସପେରିମେଣ୍ଟ କଥାଟା କୋକୁଆ ଭୟ ସୃଷ୍ଟି କରିଥାଏ । ଏହାକୁ ଅତିକ୍ରମ କରିପାରିଛି ଏହି ଆମୂଳଚୂଳ ହାସ୍ୟରସର ଏକ ପୂର୍ଣ୍ଣାଙ୍ଗ ନାଟକ 'ଘଟକ' ।" ଏହା ଦୁଇ ଅଙ୍କ ବିଶିଷ୍ଟ ଏକ କ୍ଷୁଦ୍ର ନାଟକ ।

ମୃଗାଙ୍କ ବେକାର ଯୁବକ । ଏମ୍.ଏ. ପାସ୍ କରିଛି । କିଛି ଗୋଟେ କରିବାର ଇଚ୍ଛା ତାହାର ଅଛି । ବାପାଙ୍କ ଠାରୁ କିଛି ଟଙ୍କା ଆଣି ସମ୍ବଲପୁରରୁ କଟକ ଆସିଛି ଓ 'ପ୍ରଜାପତି ଘଟସୂତ୍ର କାର୍ଯ୍ୟାଳୟ' ଖୋଲିଛି । ସେହି କାର୍ଯ୍ୟାଳୟରେ ଚୈତନ୍ୟ ପିଅନଭାବେ ନିଯୁକ୍ତ ହୋଇଛି । ପ୍ରଥମେ ପ୍ରଥମେ କାର୍ଯ୍ୟ ନ ଥିବାରୁ ଅଫିସ ଅଚଳ ହୋଇପଡ଼ିଛି । କିନ୍ତୁ ମିତାଦେବୀ ସେକ୍ରେଟେରୀଭାବେ ଯୋଗଦେବା ପରେ କାର୍ଯ୍ୟ ପରିସର ଦ୍ରୁତ ଗତିରେ ବୃଦ୍ଧି ପାଇଛି । ବହୁ ଯୁବକ ଯୁବତୀ, ଯଥା – ବାସୁଦେବ, ରତିକାନ୍ତ, ଛନ୍ଦା, ମାନସୀ, ଫୁଲ ପ୍ରଭୃତି ବ୍ୟକ୍ତିମାନେ ଆସି ନିଜ ନିଜର ପାତ୍ରପାତ୍ରୀପାଇଁ ଫର୍ମ୍ ଦାଖଲ କରିଛନ୍ତି ।

ମୃଗାଙ୍କ ମଧ୍ୟ ଅବିବାହିତ । ତା'ର ବାପା ମଥୁରୀ ଘଟଣାକ୍ରମେ ସମ୍ବଲପୁରରୁ କଟକ ଆସନ୍ତି ଓ ପୁଅ ମୃଗାଙ୍କ ଅଜାଣତରେ ତା' ପାଇଁ ସେକ୍ରେଟେରୀ ମିତାଙ୍କ ନିକଟରେ ପାତ୍ରୀ ଯୋଗାଡ଼ କରିଦେବାକୁ ବରାଦ ଦିଅନ୍ତି । ସେ ଜାଣନ୍ତି ନାହିଁ ଯେ ତାଙ୍କ ପୁଅ ମୃଗାଙ୍କ ସେହି ଘଟସୂତ୍ର କାର୍ଯ୍ୟାଳୟଟିର ପରିଚାଳକ ।

ଠିକ୍ ସେହିପରି ଅଫିସରେ ମିତା ନ ଥିବା ବେଳେ ତାଙ୍କ ମା' ଚନ୍ଦ୍ରାବତୀ ଅଫିସରେ ପ୍ରବେଶ କରି ନିଜର କନ୍ୟାପାଇଁ ଏକ ଯୋଗ୍ୟ ବରପାତ୍ର ଯୋଗାଡ଼ କରିଦେବାକୁ ଫିସ୍ ଦାଖଲ କରନ୍ତି । ଚନ୍ଦ୍ରାବତୀ ଜାଣନ୍ତି ନାହିଁ ଯେ ତାଙ୍କ ଝିଅ ମିତା ସେହି ଅଫିସ୍‌ରେ ଚାକିରି କରେ । ସମସ୍ତଙ୍କୁ ସାକ୍ଷାତ୍‌କାରପାଇଁ ଗୋଟିଏ ଦିନ ଧାର୍ଯ୍ୟ ହୋଇଛି । ନିର୍ଦ୍ଦିଷ୍ଟ ଦିନ ସମସ୍ତେ ଘଟସୂତ୍ର କାର୍ଯ୍ୟାଳୟରେ ପହଞ୍ଚନ୍ତି । ମୃଗାଙ୍କ, ମିତା, ଚୈତନ୍ୟ ପ୍ରଭୃତି ସେମାନଙ୍କୁ ଦେଖି ବ୍ୟତିବ୍ୟସ୍ତ ହୋଇପଡ଼ନ୍ତି । କେହି କାହାର ମନୋନୀତ ପାତ୍ର ପାତ୍ରୀ ନ ପାଇ ହଟ୍ଟଗୋଳ ଆରମ୍ଭ କରିଦେଇଛନ୍ତି । ମୃଗାଙ୍କ ଓ ମିତା ନିଜ ଅଭିଭାବକମାନଙ୍କୁ ଦେଖି ଆତ୍ମଗୋପନ କରିଛନ୍ତି । କିନ୍ତୁ ଶେଷରେ ଧରା ପଡ଼ନ୍ତି । ମୃଗାଙ୍କ ଓ ମିତାଙ୍କ ବିବାହ ପ୍ରସ୍ତାବରେ ଏକ ହାସ୍ୟକର ପରିବେଶରେ ନାଟକଟି ଶେଷ ହୋଇଛି ।

ନାଟକର କାହାଣୀ ବାସ୍ତବଧର୍ମୀ ହୋଇଛି । ରୁଚିପୂର୍ଣ୍ଣ ଅଭିନୟ ଏହାକୁ ଏକ ମର୍ଯ୍ୟାଦାବନ୍ତ ନାଟକରେ ପରିଣତ କରିଛି ।

**ଗୀତିନାଟ୍ୟ**

ଗୋପାଳ ଛୋଟରାୟଙ୍କ ନାଟକ ରଚନାର ଅନ୍ୟ ଏକ ଦିଗ ହୋଇଛି 'ଗୀତିନାଟ୍ୟର ପ୍ରବର୍ତ୍ତନ । ପୂର୍ବସୂରୀ ବୈଷ୍ଣବ ପାଣି, ବାଳକୃଷ୍ଣ ମହାନ୍ତି ପ୍ରଭୃତିଙ୍କ

ଗୀତିନାଟ୍ୟକୁ ସେ କିଞ୍ଚିତ୍ ଯୁଗୋପଯୋଗୀ କରି ବେତାର ଜରିଆରେ ପ୍ରଚାର କରାଇଲେ । ସେଗୁଡ଼ିକ ଏତେ ଲୋକପ୍ରିୟତା ହାସଲ କଲା ଯେ ଗୋପାଳ ଛୋଟରାୟ ନାଟକ ଲେଖା ବନ୍ଦ କରି ଗୀତିନାଟ୍ୟ ରଚନା କରିବାରେ ଆଗ୍ରହୀ ହେଲେ । ସେହି ସମୟରୁ ଓଡ଼ିଆ ନାଟ୍ୟ ସାହିତ୍ୟରେ ଗୀତିନାଟ୍ୟର ପୁନରୁତ୍ଥାନ ହେଲା ବୋଲି ସମସ୍ତେ ସ୍ୱୀକାର କରନ୍ତି । ବୈଷ୍ଣବ ପାଣିଙ୍କ 'ରଙ୍ଗସଭା'ର ପ୍ରଯୋଜନା ପରେ ନାଟ୍ୟକାର କବିମାନଙ୍କ ଗୀତି ନାଟକ ସଂଯୋଜନା କଲେ । ସେଗୁଡ଼ିକ ମଧ୍ୟ ସଫଳତାର ସହିତ ବେତାର ମାଧ୍ୟମରେ ପ୍ରଚାରିତ ହେଲା । ତାଙ୍କର ପ୍ରଥମ ମୌଳିକ ରଚନା ହେଲା ଗୀତିନାଟ୍ୟ 'ଗଣେଶ' । ଏଥିରେ ଗଣେଶ ଜନ୍ମବୃତ୍ତାନ୍ତ ବର୍ଣ୍ଣିତ । ଏହାର ପ୍ରଧାନ ଆକର୍ଷଣ ହେଉଛି ସାଙ୍ଗୀତିକତା । ଏହି ଗୀତିନାଟ୍ୟ ଅଶେଷ ସଫଳତା ଲାଭ କରିଥିଲା । ଓଡ଼ିଶାର ପ୍ରାୟ ପ୍ରତ୍ୟେକ ଶିକ୍ଷାନୁଷ୍ଠାନରେ ଏହା ଅଭିନୀତ ହୋଇଚି ଗଣେଶ ଚତୁର୍ଥୀ ଅବସରରେ । ଏହା ବର୍ଷ ବର୍ଷ ଧରି ବେତାର କେନ୍ଦ୍ରରୁ ପ୍ରଚାରିତ ହୋଇଆସୁଛି ।

### ମହିଷାମର୍ଦ୍ଦିନୀ

ମା' ଦୁର୍ଗାଙ୍କଦ୍ୱାରା ମହିଷାସୁରର ମୃତ୍ୟୁ ଏହାର ବିଷୟବସ୍ତୁ । ମହିଷାସୁରଦ୍ୱାରା ଦେବତାମାନେ ଉତ୍ପୀଡ଼ିତ ହୋଇଛନ୍ତି । ସେମାନେ ମହିଷାକୁ ନିହତ କରିବାପାଇଁ ମା' ଦୁର୍ଗାଙ୍କୁ ପ୍ରାର୍ଥନା କରନ୍ତି । ଅନଳ ଗର୍ଭରୁ ଜାତ ହୋଇଛନ୍ତି ମା' ଦୁର୍ଗା ।

### ସମ୍ପୂର୍ଣ୍ଣ ରାମାୟଣ

ଉପେନ୍ଦ୍ର ଭଞ୍ଜଙ୍କ 'ବୈଦେହୀଶ ବିଳାସ' ଅବଲମ୍ବନରେ ରଚନା କରିଛନ୍ତି ଶ୍ରୀଯୁକ୍ତ ଛୋଟରାୟ 'ସମ୍ପୂର୍ଣ୍ଣ ରାମାୟଣ' । ବେଦବତୀଙ୍କ ତପସ୍ୟା ଓ ଆତ୍ମବିସର୍ଜନ, ସୀତା ଜନ୍ମ, ରାମ ବିବାହ, ବନଗମନ, ସୀତାଚୋରି, ରାମ-ରାବଣ ଯୁଦ୍ଧ, ରାମଚନ୍ଦ୍ରଙ୍କର ପ୍ରତ୍ୟାବର୍ତ୍ତନ ଓ ଶେଷରେ ଅଭିଷେକରେ ଏହା ସମାପ୍ତ ହୋଇଛି । ସଙ୍ଗୀତର ସଂଯୋଜନା ଏହାକୁ ଅଧିକ କମନୀୟ କରିଛି । ବିଶେଷରେ, ଉପେନ୍ଦ୍ର ଭଞ୍ଜଙ୍କ 'ବୈଦେହୀଶ ବିଳାସ'ର ସଙ୍ଗୀତ 'ବଢ଼ାଇଦେଲେ ପୟର'ର ଠିକ୍ ପରିବେଷଣ ଗୀତିନାଟ୍ୟକୁ ଉଚ୍ଚସ୍ତରକୁ ଉନ୍ନୀତ କରିପାରିଛି ।

### ଜନ୍ମାଷ୍ଟମୀ

ଭାଗବତର ଦଶମ ସ୍କନ୍ଧ 'ଗୋପଲୀଳା'ର କୃଷ୍ଣଜନ୍ମ ପ୍ରସଙ୍ଗକୁ ନେଇ ରଚିତ । ବନ୍ଦୀ ଘରେ ଶ୍ରୀକୃଷ୍ଣଙ୍କ ଜନ୍ମ । ଶ୍ରୀକୃଷ୍ଣଙ୍କ ଗୋପର ଲୀଳା ଏଥିରେ ବର୍ଣ୍ଣିତ । ନାଟ୍ୟକାରଙ୍କ ରଚିତ ଗୀତଗୁଡ଼ିକ ଅତି ମନଛୁଆଁ ହୋଇଛି ।

**ନ ପାହୁ ରାତି**

ଗୀତିନାଟ୍ୟ 'ନ ପାହୁ ରାତି'ରେ ଗୀତ ସଂଯୋଜନା ଚମତ୍କାର ହୋଇଛି ।

**'ବୋଲେ ହୁଁଟି'**

'ଉତ୍କଳ କାହାଣୀ'ର କଥାବସ୍ତୁ ଉପରେ ଆଧାରିତ 'ବୋଲେ ହୁଁଟି' ଏକ ଗୀତଧର୍ମୀ ରଚନା । ସାଧବବୋହୂର ସରଳ ବିଶ୍ୱାସ, ରାଜାପୁଅର ଲମ୍ପଟତା, ବାଣିଜ୍ୟ ବ୍ୟବସାୟରେ କୁଶଳତା, ମାଲୁଣୀର ସଉଦା ପ୍ରଭୃତି ଏହାର ବିଷୟବସ୍ତୁ ।

**'ଘର ବର ଦେଖା'**

ଏହା ଏକ ହାସ୍ୟରସାତ୍ମକ ଗୀତିନାଟ୍ୟ । ରାଜା, ପ୍ରଜା, ଧନୀ, ଗରିବ, ଆଶା-ନିରାଶା, ପ୍ରେମ-ପ୍ରତାରଣା ପ୍ରଭୃତି ଘଟଣାର ବର୍ଣ୍ଣନା ଏହାକୁ ହୃଦ୍ୟ କରିପାରିଛି । ଏଥିରେ ଦର୍ଶକ ଜୀବନର ପ୍ରତିଛବି ଦେଖି ଆନନ୍ଦ ଉପଭୋଗ କରିଥାଏ ।

**ଶ୍ରୀମତୀ ସମାର୍ଜନୀ**

ଶ୍ରୀଯୁକ୍ତ ଛୋଟରାୟ ବ୍ୟାସକବି ଫକୀରମୋହନ ହାସ୍ୟରସାତ୍ମକ ତଥା ସଂସ୍କାରମୂଳକ 'ପେଟେଣ୍ଟ ମେଡ଼ିସିନ୍'ର ଅନୁସରଣରେ ରଚନା କରିଛନ୍ତି 'ଶ୍ରୀମତୀ ସମାର୍ଜନୀ' । ଏହା ତାଙ୍କ ଲେଖନୀର ସ୍ପର୍ଶରେ ସର୍ବଜନାଦୃତ ଗୀତିନାଟ୍ୟରେ ରୂପାନ୍ତରିତ ହୋଇଯାଇଛି । ଏହା ସାଫଲ୍ୟର ଚରମ ସୀମାରେ ସ୍ପର୍ଶ କରିଛି କହିଲେ ଚଳେ ।

ଗୀତିନାଟ୍ୟ କ୍ଷେତ୍ରରେ ସଫଳତା ବିଷୟରେ ନିଜେ ନାଟ୍ୟକାର ଶ୍ରୀଯୁକ୍ତ ଛୋଟରାୟ କହିଛନ୍ତି –

''.... ଏଠି ଏ କଥାଟି ଉଲ୍ଲେଖ ନ କରି ମୁଁ ରହିପାରୁନି ଯେ ଗଣେଶ ଗୀତିନାଟ୍ୟ ପ୍ରସାରଣ ପରେ ଶ୍ରୋତାମାନଙ୍କଠାରୁ ପ୍ରଶଂସାସୂଚକ ଏକ ଶହରୁ ଅଧିକ ପତ୍ର ବେତାର କେନ୍ଦ୍ରକୁ ଆସିଥିଲା । ସେ ପର୍ଯ୍ୟନ୍ତ କୌଣସି ଗୋଟିଏ କାର୍ଯ୍ୟକ୍ରମ ସପକ୍ଷରେ ଏତେସଂଖ୍ୟକ ପତ୍ର ବେତାର କେନ୍ଦ୍ରକୁ ଆସି ନ ଥିଲା । ଏଇ ପ୍ରଥମ ଆସିଲା ।''

**ବେତାର ନାଟକ**

ପୂର୍ଣ୍ଣାଙ୍ଗ ନାଟକ ଓ ଗୀତିନାଟ୍ୟ ବ୍ୟତୀତ ଗୋପାଳ ଛୋଟରାୟ କେତୋଟି ଛୋଟ ନାଟକ ରଚନା କରିଛନ୍ତି । ସମାଲୋଚକମାନେ ତାହାକୁ ବେତାର ନାଟକଭାବେ ଗ୍ରହଣ କରିଛନ୍ତି । ରେଡ଼ିଓରେ ଏଗୁଡ଼ିକ ପ୍ରସାରିତ ହୋଇ ବିଶେଷ ଜନପ୍ରିୟତା ଅର୍ଜନ କରିଥିଲା । ସେଗୁଡ଼ିକ ମଧ୍ୟରେ 'ବିଭ୍ରାଟ', 'ଶ୍ରୀହରିଙ୍କ ସଂସାର', 'ପୂରାପୂରି ପାରିବାରିକ', 'ଶାଖା ପ୍ରଶାଖା' ଅନ୍ୟତମ ।

'ଶ୍ରୀହରିଙ୍କ ସଂସାର' ଓ 'ପୂରାପୂରି ପାରିବାରିକ' ଶ୍ରୀଯୁକ୍ତ ଛୋଟରାୟଙ୍କ ବୃହତ୍ତମ ଧାରାବାହିକ ନାଟକ । 'ଶ୍ରୀହରିଙ୍କ ସଂସାର' ମଧ୍ୟ ପାରିବାରିକ କଥାବସ୍ତୁଭିତ୍ତିକ । ଗୋଟିଏ ଚାକିରିଜୀବୀ ମଧ୍ୟବିତ୍ତ ସାଧାରଣ ଗୃହସ୍ଥର ଜୀବନ ନିର୍ବାହର କରୁଣ ବାସ୍ତବ ଚିତ୍ର ଏଥିରେ ମିଳେ । ନାଳ-ନର୍ଦ୍ଦମାପୂର୍ଣ୍ଣ ହୋଇଥିବା କଟକ ସହରର ନଗ୍ନ ରୂପ ମଧ୍ୟ ଦେଖାଇ ଦିଆଯାଇଛି । ସମାଜର ତ୍ରୁଟିବିଚ୍ୟୁତି, ଦୁର୍ନୀତି ଓ କୁ-ସଂସ୍କାରକୁ ମଧ୍ୟ ପ୍ରକାଶ କରିଛନ୍ତି । ଏହା ୧୯୭୧ ମସିହା ଏପ୍ରିଲରୁ ୧୯୭୨ ମସିହା ସେପ୍ଟେମ୍ବର ପର୍ଯ୍ୟନ୍ତ କଟକ ବେତାର କେନ୍ଦ୍ରରୁ ଧାରାବାହିକଭାବେ ପ୍ରସାରିତ ହୋଇ ଅସମ୍ଭବ ଲୋକପ୍ରିୟତା ଅର୍ଜନ କରିଥିଲା ।

'ପୂରାପୂରି ପାରିବାରିକ' ବେତାର ନାଟକରେ ସେହିପରି କେତେଗୁଡ଼ିଏ ନିମ୍ନ ମଧ୍ୟବିତ୍ତ ପରିବାରର ଦୈନନ୍ଦିନ ଜୀବନ ଚିତ୍ରକୁ ନାଟ୍ୟକାର ପ୍ରକାଶ କରିଛନ୍ତି । ନାଟକର ଚିତ୍ର, ଚରିତ୍ର ଓ ଘଟଣା ଓଡ଼ିଶାର ସାମାଜିକ ଜୀବନରୁ ଗୃହୀତ ହୋଇଥିବାରୁ ଅତ୍ୟନ୍ତ ଜୀବନ୍ତ ଓ ପ୍ରଭାବଶାଳୀ ହୋଇପାରିଛି ।

ଶାଣିତ ଶ୍ଳେଷ ଓ ବକ୍ର କଟାକ୍ଷ ମାଧ୍ୟମରେ ସମାଜ-ସଂସ୍କାର କରିବାକୁ ଏଥିରେ ନାଟ୍ୟକାର ଯେଉଁ ଉଦ୍ୟମ କରିଛନ୍ତି ତାହା ତାଙ୍କୁ ଅଭୂତପୂର୍ବ ସାଫଲ୍ୟ ଆଣିଦେଇଛି, ଏଥିରେ ସନ୍ଦେହ ନାହିଁ ।

ଆଉ ଏକ କ୍ଷୁଦ୍ର ନାଟକ ସଙ୍କଳନ ହେଲା, 'ଶାଖାପ୍ରଶାଖା' । ଏହା ୧୯୭୨ ମସିହାରେ ପ୍ରକାଶିତ ହୋଇଥିଲା । ଏହା ନଅଟି ଏକାଙ୍କିକାର ସମାହାର । ସେଗୁଡ଼ିକ ହେଲା 'ସମୁଦ୍ର ମନ୍ଥନ', 'ଅନାଗତ', 'ସୀମା' ତସ୍ମାଚ୍ଛାଦିତ ବହ୍ନି, 'ସଂଗ୍ରାମ', 'ବାନ୍ଧବୀ', 'ଶୋଭା', 'ଛାୟା' ଓ 'ବସୁନ୍ଧରା' । ଜୀବନର ବିଚିତ୍ର ଅନୁଭୂତି, ଚିନ୍ତାଧାରା ଓ ଦର୍ଶନବୋଧରେ ଏହା ଭରପୂର । ନାଟ୍ୟକାରଙ୍କ ନିଜ ଭାଷାରେ –

''ଏହି ସମସ୍ତ ନାଟକ ଆଦର୍ଶଗତ ଦୃଷ୍ଟିରୁ, ବାସ୍ତବଧର୍ମୀ ଗୁଣାତ୍ମକ ବା କଳାତ୍ମକ ବିଚାର ଦୃଷ୍ଟିରୁ ସର୍ବକାଳୀନ ବୋଲି ଲେଖକଙ୍କର ବିଶ୍ୱାସ ।''

ଐତିହାସିକ ବେତାର ନାଟକ ସୃଷ୍ଟି ମଧ୍ୟ ନାଟ୍ୟକାର କରିଛନ୍ତି । ତାଙ୍କର ପ୍ରଥମ ଐତିହାସିକ ବେତାର ନାଟକ ହେଲା, 'ସମ୍ରାଟ୍ ନନ୍ଦିନୀ ଜାହାନ୍ନାରା' । ଅନ୍ୟାନ୍ୟ ଐତିହାସିକ ନାଟକଗୁଡ଼ିକ ହେଲା 'ଅଠର ଶହ ସତାବନ', 'ମନିବେଗମ', 'ହର୍ଷବର୍ଦ୍ଧନ', 'ନନ୍ଦକୁମାର ଫାଶୀ' । ଏଗୁଡ଼ିକର ସେ ଇତିହାସର କଥାବସ୍ତୁ ପ୍ରତି ଅନୁରକ୍ତ ଥିଲେ ମଧ୍ୟ ବହୁ ମାନବୀୟ ସମ୍ବେଦନଶୀଳତା ଐତିହାସିକ ନାଟକଗୁଡ଼ିକୁ ସାର୍ବକାଳୀନ କରିପାରିଛି ।

ଶ୍ରୀଯୁକ୍ତ ଛୋଟରାୟ ଦୀର୍ଘ ଧାରାବାହିକ ନାଟକ ରଚନାରେ ସିଦ୍ଧହସ୍ତ । ଶ୍ରୋତାମାନଙ୍କୁ ଆଗ୍ରହରେ ଘଣ୍ଟାଏ ବା ଅଧଘଣ୍ଟାଏ ନୁହେଁ, ବର୍ଷ ବର୍ଷ ଧରି ରଖିବାରେ ସେଗୁଡ଼ିକ ସମର୍ଥ ହୋଇଛି ।

ଗୋପାଳ ଛୋଟରାୟ ଓଡ଼ିଶାର ସାହିତ୍ୟଜଗତକୁ ବହୁଭାବରେ ପରିସ୍ଫୁଟ କରିଛନ୍ତି । ତାଙ୍କର ଗଳ୍ପଗୁଡ଼ିକ ପାଠକକୁ ଚିନ୍ତା କରିବାର ଯଥେଷ୍ଟ ଉପାଦାନ ଯୋଗାଇଥାଏ । ତାଙ୍କର କେତୋଟି ନାଟକ ଟେଲିଭିଜନ ମାଧ୍ୟମରେ ପ୍ରଚାରିତ ହୋଇଛି । ସେଗୁଡ଼ିକ ହେଲା, 'ଶ୍ରୀମା', 'ବଉଳ', 'ପ୍ରଜାପତିଘଟସୂତ୍ର' 'ଅଫିସ'ଇତ୍ୟାଦି । କେତେକ ନାଟକ, ଯଥା – 'ଶ୍ରୀମତୀ ସମାର୍ଜ୍ଜନୀ', 'ଘର ବର ଦେଖା' କ୍ୟାସେଟ ମାଧ୍ୟମରେ ଓଡ଼ିଶାର ଘରେ ଘରେ କେବଳ ପହଞ୍ଚିପାରି ନାହିଁ, ବରଂ ଆଦୃତ ହୋଇଛି । ଆଲୋଚକଙ୍କ ଭାଷାରେ, ''ମଞ୍ଚ ନାଟ୍ୟକାର ଭାବରେ ଶ୍ରୀଯୁକ୍ତ ଛୋଟରାୟ ଜୀବନ ଆରମ୍ଭ କରିଥିଲେ ମଧ୍ୟ ଧ୍ୱନି ନାଟ୍ୟକାର ଭାବରେ ସେ ବିଶେଷ ଗୌରବର ଅଧିକାରୀ ।

**ଶେଷ ଜୀବନ**

ଶ୍ରୀଯୁକ୍ତ ଛୋଟରାୟ ପୁତ୍ର ଦେବଦାସ ଓ କନ୍ୟା କସ୍ତୁରୀଙ୍କ ଘରେ ଶେଷ ଜୀବନ କଟାଇଥିଲେ । ନିକଟ ଅତୀତର କଥା ସେ ମନେ ପକାଇପାରୁ ନ ଥିଲେ; ମାତ୍ର ଦୂର ଅତୀତର ସ୍ମୃତି ମନେପଡୁଥିଲା । ବିଶେଷତଃ, ପରଲୋକଗତା ପ୍ରିୟତମ ପତ୍ନୀଙ୍କ ସ୍ମୃତି ଅହରହ ତାଙ୍କୁ ବ୍ୟାକୁଳିତ କରୁଥିଲା । ଶେଷରେ ସେ ନିଜର କନ୍ୟା କସ୍ତୁରୀଙ୍କ ଭୁବନେଶ୍ୱରର ଶହୀଦନଗର ବାସଭବନରେ ୨୦୦୩ ମସିହା ଜାନୁଆରୀ ୨୨ ତାରିଖରେ ଶେଷ ନିଃଶ୍ୱାସ ତ୍ୟାଗ କଲେ ।

**ମୂଲ୍ୟାୟନ**

ନାଟ୍ୟକାର ଗୋପାଳ ଛୋଟରାୟ ଓଡ଼ିଶା ନାଟ୍ୟ ଆକାଶରେ ଏକ ମହିମୋଜ୍ଜ୍ୱଳ ନକ୍ଷତ୍ର, ସ୍ୱାଧୀନତା ପୂର୍ବରୁ ନାଟକ ରଚନାରେ ମନୋନିବେଶ କରିଥିଲେ ହେଁ, ସ୍ୱାଧୀନତା ପରବର୍ତ୍ତୀ କାଳରେ ସେ ବିଶିଷ୍ଟ ନାଟ୍ୟକାର ଭାବରେ ପ୍ରତିଷ୍ଠା ଅର୍ଜନ କରିଛନ୍ତି ।

ଶ୍ରୀଯୁକ୍ତ ଛୋଟରାୟ ମୁଖ୍ୟତଃ ସାମାଜିକ ନାଟକ ଶିଳ୍ପୀ । ତାଙ୍କର ଅଗଣିତ ସୃଷ୍ଟି ମଧ୍ୟରେ ସମାଜ ଜୀବନ ବହୁ ଭାବରେ ପ୍ରକାଶ ପାଇଛି । ତାଙ୍କ ନାଟକରେ ପୁଣି ସମସ୍ୟା ଅଛି । ମାତ୍ର ତାହା ସହିତ ସମାଧାନପାଇଁ ପଥ ମଧ୍ୟ ରହିଛି । କୌଣସିଠାରେ ସେ ଚରିତ୍ରମାନଙ୍କୁ ଅବସାଦରେ ଘାରି ହେବାକୁ ଦେଇ ନାହାନ୍ତି; ବରଂ ଏକ ଉଜ୍ଜ୍ୱଳ ଭବିଷ୍ୟତ୍‌ର ସ୍ୱପ୍ନ ଦେଖାଇଛନ୍ତି ।

ଛୋଟରାୟଙ୍କ ନାଟକର ଚରିତ୍ରଗୁଡ଼ିକ ସମାଜମୁଖୀ । ମନେହୁଏ ସେମାନେ ଆମ ଚାରିପାଖରେ ବୁଲାଚଲା କରୁଛନ୍ତି । ସେହି ଚରିତ୍ରଗୁଡ଼ିକ ସମାଜର ପ୍ରତିନିଧିଭାବେ ସ୍ପଷ୍ଟ ବାରି ହୋଇଯାଆନ୍ତି ।

ନାଟକରେ ସଂଳାପ ଶୈଳୀ ଯୋଗୁଁ ଶ୍ରୀଯୁକ୍ତ ଛୋଟରାୟ ସାମସମୟିକ ନାଟ୍ୟକାରମାନଙ୍କଠାରୁ ବହୁ ଉର୍ଦ୍ଧ୍ୱକୁ ଉଠିପାରିଛନ୍ତି । ସେ ମାପିଚୁପି ଚରିତ୍ର ମୁଖରେ

ସଂଳାପ ଖଞ୍ଜି ଦେଇଥାନ୍ତି । ଯେଉଁ ଜାଗାରେ ଯେତିକି କହିବା କଥା, ତାଙ୍କ ଚରିତ୍ରମାନେ ସେତିକି କହିଥାନ୍ତି । ସ୍ୱାଭାବିକ ସଂକ୍ଷିପ୍ତ ସଂଳାପ ମାଧ୍ୟମରେ ନାଟ୍ୟକାର ବୌଦ୍ଧିକତାର ପ୍ରଲେପ ଦେଇଥାନ୍ତି । ଜଣେ ଆଲୋଚକଙ୍କ ମତରେ, ଗୋପାଳ ଛୋଟରାୟଙ୍କ ସଂଳାପ ଦର୍ଶକଙ୍କୁ ବିଶ୍ୱବିଖ୍ୟାତ ବର୍ଣ୍ଣାଡ଼ଶଙ୍କ ନାଟକ ସବୁର ସଂଳାପ ଭଳି ଆନନ୍ଦ ଦେଇଥାଏ ।

ଶ୍ରୀଯୁକ୍ତ ଛୋଟରାୟଙ୍କ ନାଟକର ଭାଷା କବିତାମୟ, ଚଳଚଞ୍ଚଳ ଓ ଉଚ୍ଚକୋଟୀର । ସେ ନାଟକରେ ଗ୍ରାମ୍ୟଭାଷା ସହିତ ପାତ୍ରୋମୁଖୀ ଆଞ୍ଚଳିକ ଭାଷା, ଢଗଢମାଳି, ଏପରିକି ଇଂରାଜୀ ଶବ୍ଦର ପ୍ରୟୋଗ କରିଛନ୍ତି । ନାଟକଗୁଡିକର ସଙ୍ଗୀତ ସେ ମଧ୍ୟ ନିଜେ ରଚନା କରିଥାନ୍ତି । ଅନ୍ୟ ପ୍ରସିଦ୍ଧ ଗୀତିକାରଙ୍କ ଗୀତ ସ୍ଥାନିତ କରିଛନ୍ତି । ସ୍ଥାନେ ସ୍ଥାନେ ତାଙ୍କ ସଙ୍ଗୀତଗୁଡ଼ିକର ଶସ୍ତା ଯାତ୍ରା ନାଟକର ପରମ୍ପରାକୁ ଅନୁସରଣ କରିଥିଲେ ମଧ୍ୟ ତାଙ୍କ ସଙ୍ଗୀତଗୁଡ଼ିକର ସାହିତ୍ୟିକ ମୂଲ୍ୟ ନ୍ୟୂନ ନୁହେଁ ବୋଲି କୁହାଯାଇପାରେ ।

ଶ୍ରୀଯୁକ୍ତ ଛୋଟରାୟଙ୍କ ନାଟକଗୁଡ଼ିକରେ ପାରମ୍ପରିକ ମଞ୍ଚ ଶୈଳୀର ପ୍ରୟୋଗ ଅଛି । ବ୍ୟାବସାୟିକ ରଙ୍ଗମଞ୍ଚକୁ ଉଦ୍ଦିଷ୍ଟ କରି ଏହିସବୁ ନାଟକ ରଚିତ ହୋଇଥିବାରୁ ମଞ୍ଚଶୈଳୀରେ ନାଟ୍ୟକାର ବିଶେଷ ପରିବର୍ତ୍ତନ ଆଣି ନାହାନ୍ତି । ୧୯୫୦ ମସିହା ପରେ ଓଡ଼ିଶାରେ ନବନାଟ୍ୟ ଆନ୍ଦୋଳନର ସୂତ୍ରପାତ ହେଲାପରେ ମଞ୍ଚଶୈଳୀରେ ବିପୁଳ ପରିବର୍ତ୍ତନ ଆସିଥିଲେହେଁ, ଶ୍ରୀଯୁକ୍ତ ଛୋଟରାୟ ସେଥିପ୍ରତି ଦୃଷ୍ଟିଦେଇ ନାହାନ୍ତି । ପାରମ୍ପରିକ ନାଟକ ଶୈଳୀ ଓ ମଞ୍ଚକୁ ନେଇ ସେ ନାଟକ ରଚନା କରିବାରେ ଲାଗିପଡ଼ିଛନ୍ତି । ସେଗୁଡ଼ିକ ମଧ୍ୟ ଅନ୍ନପୂର୍ଣ୍ଣା (ଏ), (ବି) ଓ ଜନତା ରଙ୍ଗମଞ୍ଚଗୁଡ଼ିକରେ ଶତାଧିକ ରଜନୀ ଅଭିନୀତ ହୋଇ ସଫଳତାପ୍ରାପ୍ତ ହୋଇଛି । ଶେଷରେ ଏତିକି କୁହାଯାଇପାରେ ଯେ ତାଙ୍କର ସୁନିର୍ଦ୍ଧାରିତ କଥାବସ୍ତୁ, ଉତ୍ତମ ଚରିତ୍ର, ଚିତ୍ରଣ, ଆବେଗମୟ ସଂଳାପ ତଥା ସୁନ୍ଦର ସଙ୍ଗୀତ ଓ ମଞ୍ଚ ସଂଯୋଜନା ଶ୍ରୀଯୁକ୍ତ ଛୋଟରାୟଙ୍କୁ ଏକ ଯୁଗସ୍ରଷ୍ଟା ସାଧକଭାବେ ପରିଚିତ କରାଇଛି ।

❑❑❑



# ନବନାଟ୍ୟ ଆନ୍ଦୋଳନର ବାର୍ତ୍ତାବହ
# ମନୋରଞ୍ଜନ ଦାସ
## [୧୯୨୧-୨୦୧୩]

ନାଟ୍ୟକାର ମନୋରଞ୍ଜନ ହେଉଛନ୍ତି ଓଡ଼ିଶାର ନୂତନ ନାଟ୍ୟ ଆନ୍ଦୋଳନର ସଂସ୍ଥାପକ । ମଞ୍ଚ ଓ ନାଟକରେ ପାରମ୍ପରିକ ଶୈଳୀକୁ ପରିହାର କରି ସେ ତାଙ୍କର ନାଟକଗୁଡ଼ିକୁ ଆଧୁନିକତାରେ ମଣ୍ଡିତ କରି ଓଡ଼ିଶା କାହିଁକି ସର୍ବ-ଭାରତୀୟ କ୍ଷେତ୍ରରେ ନିଜକୁ ପ୍ରତିଷ୍ଠିତ କରାଇପାରିଛନ୍ତି । ତାଙ୍କର ପୂର୍ଣ୍ଣାଙ୍ଗ ନାଟକ ପରି ଏକାଙ୍କିକାଗୁଡ଼ିକ ମଧ୍ୟ ନବଚେତନାର ବାହକ ହୋଇଅଛି । ୧୯୬୦ ମସିହାର ପରବର୍ତ୍ତୀକାଳରେ ଓଡ଼ିଆ ଏକାଙ୍କିକା ତା'ର ଗତିପଥରେ ନୂତନ ଭାବସମ୍ପଦ ଆହରଣ କରିଛି ଓ ତା'ର ଆଙ୍ଗିକ ବୈଚିତ୍ର୍ୟ ଓ ଆତ୍ମିକ ସତ୍ତାରେ ଯେଉଁ ପରିବର୍ତ୍ତନ ଘଟିଛି, ସେଥିରେ ମନୋରଞ୍ଜନଙ୍କର ଯୁଗାନ୍ତକାରୀ ଭୂମିକା ରହିଛି ବୋଲି ସମସ୍ତେ ସ୍ୱୀକାର କରନ୍ତି ।

### ଜନ୍ମ ଓ ବଂଶ ପରିଚୟ

ମନୋରଞ୍ଜନ ଦାସ ୧୯୨୧ ମସିହା ଜୁଲାଇ ମାସ ୨୫ ତାରିଖରେ କଟକ ଜିଲ୍ଲାର ଝାରକଟା ଗ୍ରାମରେ ଏକ 'ଦାରୋଗା' ଘରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତା ହେଉଛନ୍ତି ଆର୍ତ୍ତବନ୍ଧୁ ଦାସ ଓ ମାତା ସୁଲୋଚନା ଦେଈ । ପ୍ରାୟ ଦୁଇ ଶହ ବର୍ଷ ତଳେ ତାଙ୍କର ପୂର୍ବପୁରୁଷ ଗଙ୍ଗାରାମ ମୁନ୍‌ସୀ କଟକରେ ଅବସ୍ଥାପିତ

ମରହଟ୍ଟା ସୁବେଦାରଙ୍କ ଅଧୀନରେ କାମ କରୁଥିଲେ । ସୁବେଦାରଙ୍କଦ୍ୱାରା କଟକରୁ ପ୍ରେରିତ ହୋଇ ନଦୀବେଷ୍ଟିତ ବୟାଳିଶ ମୌଜା ଅଞ୍ଚଳରେ ବସବାଦ କରି ରହିଥିଲେ । ଦାରୋଗା କାମ ତୁଲାଉଥିବାରୁ ତାଙ୍କର ପରିବାରକୁ 'ଦାରୋଗା ଘର' ବୋଲି କୁହାଯାଇଥିଲା । ତାଙ୍କର ପୂର୍ବପୁରୁଷମାନେ କ୍ଷତ୍ରିୟ ଥିଲେ । ସବୁ ବର୍ଷ ଦଶହରା ଦିନ ଲେଖନୀ ଓ ଖଣ୍ଡା ପୂଜା ପାଉଥିଲା ।

## ପିଲାଦିନ

ମନୋରଞ୍ଜନ ଜନ୍ମ ହେଲାବେଳକୁ ପିତା ଆର୍ତ୍ତବନ୍ଧୁ ଦାସ କୁଜଙ୍ଗରେ ଚାକିରି କରୁଥିଲେ । ପିଲାଦିନ ତାଙ୍କର ସୁଖରେ କଟିଥିଲା । ତାଙ୍କ ବଡ଼ଭଉଣୀମାନେ ତାଙ୍କୁ କାଖଉଥିଲେ; କୋଳାଉଥିଲେ । ଅଝଟ ହେଲେ ବିଧା ଗୋଇଠା ଦେଇ ବୁଝାଉଥିଲେ, ଖୁଆଉଥିଲେ ।

ଯଥା ସମୟରେ ତାଙ୍କର ଖଡ଼ିଛୁଆଁ ଅର୍ଥାତ୍ ବିଦ୍ୟାରମ୍ଭ ହେଲା । ଚାଟଶାଳୀକୁ ସେ କେବେ ଯାଇ ନ ଥିଲେ । ଚାଟଶାଳୀର ବୁଢ଼ା ମାଷ୍ଟର ଦାଶଅଜା ଅବସର ସମୟରେ ଆସି ପଢ଼େଇବା ଆରମ୍ଭ କରିଦେଲେ ତାଙ୍କର ମେଲା ଘରେ । ସାଇ ପଡ଼ିଶାର ଆଉ କେତେକ ପିଲା ଆସି ସେ ମେଲା ଘରେ ବସି ପାଠ ପଢୁଥିଲେ ।

ନଅ ବର୍ଷ ବେଳକୁ ମନୋରଞ୍ଜନଙ୍କୁ ପଢ଼ିବାପାଇଁ କଟକ ପଠାଗଲା । କଲିଜିଏଟ୍ ସ୍କୁଲ୍‌ରେ ଚତୁର୍ଥ ଶ୍ରେଣୀରେ ତାଙ୍କର ନାମ ଲେଖାଗଲା । ଦାଦାଙ୍କ ବସାରେ ରହି ସେ ପଢ଼ିଲେ । ବାର ତେର ବର୍ଷ ହେଲା ପର୍ଯ୍ୟନ୍ତ ସେଠାରେ ସେ ରହିଥିଲେ । ଛୁଟି ଦିନମାନଙ୍କରେ ଗାଁକୁ ଆସୁଥିଲେ । ଗାଁ ତାଙ୍କୁ ଖୁବ୍ ଭଲ ଲାଗୁଥିଲା ।

କଟକ ରହଣିର ଅନୁଭୂତି ମନୋରଞ୍ଜନ ନିଜେ ଲେଖିଛନ୍ତି —

''କଟକରେ ଥିଲାବେଳେ ମୁଁ କେମିତି ଗୋଟିଏ ଅସ୍ୱସ୍ତି ଅନୁଭବ କରୁଥିଲି । ମନେ ହେଉଥିଲା ଯେ ସେଠି ମତେ ଡେଣା ବାନ୍ଧି ଛାଡ଼ି ଦିଆଯାଇଛି । ସେ ଡେଣାରେ ଖଣ୍ଡିଉଡ଼ା ଦେଇ ବି ଚଢ଼େଇଟିଏ ଯେମିତି ଆନନ୍ଦ ପାଇପାରେ, ସେମିତି ଆନନ୍ଦ ଉପଭୋଗର ସମୟ ଆସିବା ବେଳକୁ ମୋର ଜୀବନ ପରିସରର ଛୋଟ ବୃତ୍ତ ଭିତରେ ଡେଣାର ବନ୍ଧନ ଖୋଲିଗଲା ।''

କଟକରେ ମନୋରଞ୍ଜନ ଭଲ ପଢ଼ାପଢ଼ି କରୁ ନ ଥିବା ଜାଣି ବୋଉଙ୍କ ଜିଦ୍ ଫଳରେ କୁଜଙ୍ଗ ବନବିହାରୀ ଉଚ୍ଚ ଇଂରାଜୀ ସ୍କୁଲରେ ତାଙ୍କର ପଢ଼ିବା ସ୍ଥିର ହେଲା । ସେ ବାପାଙ୍କ ସଙ୍ଗେ କୁଜଙ୍ଗ ଆସିଲେ ଓ ପ୍ରଥମ ଦିନରୁହିଁ ସେ ଅସ୍ୱାଭାବିକ ଭାବେ କୁଜଙ୍ଗକୁ ଭଲ ପାଇ ବସିଲେ ।

କୁଜଙ୍ଗ ବର୍ଷ ବର୍ଷ ପାଇଁ ହେଲା ମନୋରଞ୍ଜନଙ୍କ ଜୀବନ ଅନୁଭୂତିର ଭିତ୍ତିଭୂମି । ଏଠାରେ ଶୈଶବ ପରିଣତ ହେଲା କୈଶୋରରେ । କୈଶୋର ପୁଣି ପ୍ରସାରିତ ହେଲା ଯୌବନକୁ । ଯୌବନ ପୁଣି ସ୍ପର୍ଶ କରିଥିଲା ଜୀବନର ମଧ୍ୟାହ୍ନକୁ । ସେଇ କୁଜଙ୍ଗରେ

ପାଇଥିଲେ ଜୀବନ ଓ ସମାଜର ଯଥାର୍ଥ ପରିଚୟ । କୁଜଙ୍ଗକୁ ସେ ପ୍ରାଣଭରି ଭଲ ପାଉଥିଲେ ।

କୁଜଙ୍ଗ ହାଇସ୍କୁଲର ସପ୍ତମ ଶ୍ରେଣୀରେ ମନୋରଞ୍ଜନଙ୍କ ନାମ ଲେଖା ହେଲା । ସ୍କୁଲର ହେଡ୍‌ମାଷ୍ଟର ଥିଲେ କେଶବେଶ୍ୱର ବୋଷ । ୧୯୪୦ ମସିହାରେ ମନୋରଞ୍ଜନ ଉଚ୍ଚ ଦ୍ୱିତୀୟ ଶ୍ରେଣୀରେ ମାଟ୍ରିକ୍ ପାସ୍ କଲେ । ଏହାପରେ ସେ ରେଭେନ୍‌ସା କଲେଜରେ ନାଁ ଲେଖାଇଲେ । କଲେଜରେ ପଢ଼ିଲାବେଳେ ନାଟକ ବହି ପଢ଼ିବାକୁ ତାଙ୍କର ଆଗ୍ରହ ହେଲା । ସେ ଲାଇବ୍ରେରୀରୁ ଇଂରାଜୀ ନାଟ୍ୟକାର ଜନ୍ ଗାର୍ଲ୍‌ସୱାର୍ଦ, ଆମେରିକାର ନାଟ୍ୟକାର ଇଉଗିନ୍ ଓ ନିଲ୍‌କେଲେନିୟମ୍, ନାଟ୍ୟକାର ମରିସ୍ ମେର୍ଟାଲିଙ୍କ ଲିଖିତ ନାଟକମାନ ପଢ଼ିଲେ । ଏହି ନାଟକଗୁଡ଼ିକ ପଢ଼ା ନିଶ୍ଚିତଭାବେ ତାଙ୍କୁ ନାଟକ ଲେଖିବାପାଇଁ ଅନୁପ୍ରାଣିତ କରିଥିଲା ବୋଲି ମନୋରଞ୍ଜନ ତାଙ୍କ ଆତ୍ମଜୀବନୀ 'ସ୍ମୃତିସଂଳାପ'ରେ ଉଲ୍ଲେଖ କରିଛନ୍ତି । ନାଟକ ଲେଖିବା ପ୍ରତି ଆଗ୍ରହ ମନୋରଞ୍ଜନଙ୍କର କୁଜଙ୍ଗରୁ ଆରମ୍ଭ ହୋଇଥିଲା । କୁଜଙ୍ଗ ହାଇସ୍କୁଲରେ ପଢୁଥିବା ସମୟରୁ ନାଟକ ରଚନା କରିବା ସହ ନାଟକରେ ଅଭିନୟ କରିବାରେ ଆଗ୍ରହ ହୋଇଥିଲା । ମାଟ୍ରିକ୍ ପରୀକ୍ଷା ପରେ ଫ୍ରେଣ୍ଡ୍‌ସ କ୍ଲବ୍ ନାମକ ଏକ ଅନୁଷ୍ଠାନ ଗଠନ କଲେ । ନିଜେ ନାଟ୍ୟକାର ମଞ୍ଚପ୍ରସ୍ତୁତି, ଅଭିନୟ ଓ ନିର୍ଦ୍ଦେଶନା ଷ୍ଟେଜ୍ ବାନ୍ଧିବା ପ୍ରଭୃତି ପ୍ରଯୋଜନାର ସମ୍ପୂର୍ଣ୍ଣ ଦାୟିତ୍ୱ ନେଇ ନାଟକମାନ ପ୍ରସ୍ତୁତ କରିବାରେ ଲାଗିପଡ଼ିଲେ । ଅଶ୍ୱିନୀ କୁମାରଙ୍କ ରଚିତ 'କୋଣାର୍କ' ନାଟକରେ ଧରମାର ଅଭିନୟ କରି ସେ ତାଙ୍କର ଅଭିନୟ ପ୍ରତିଭାର ପରିଚୟ ଦେଇଥିଲେ । ୧୯୪୦-୪୧ ମସିହାରେ ଅଶ୍ୱିନୀବାବୁଙ୍କ ରଚିତ ଇରାନୀ ନାଟକ କଲେଜରେ ଅଭିନୀତ ହୋଇଥିଲା । ସେଥିରେ ନାଟ୍ୟକାର ନିଜେ ଇରାନୀ ଭୂମିକାରେ ଅଭିନୟ କରି ପ୍ରଶଂସାର ପାତ୍ର ହୋଇଥିଲେ ।

ଅଭିନୟ କରିବା ସମୟରେ ମନୋରଞ୍ଜନ ନାଟକ ଲେଖିବାକୁ ଆଗ୍ରହୀ ହେଲେ । ନାଟକ ମାଧ୍ୟମରେ ସେ ନିଜକୁ ଭଲ ଭାବରେ ପ୍ରକାଶ କରିପାରିବେ ବୋଲି ମନେ କଲେ । ସେହି କଲେଜ ପଢ଼ା ସମୟରେ ନାଟକ ଲେଖିବା ଆରମ୍ଭ କରିଦେଲେ ।

ମନୋରଞ୍ଜନ ୧୯୪୧ ମସିହା ଶେଷ ଆଡ଼କୁ ଲେଖିଲେ 'ରାତ୍ରି' ନାଟକ । ତାହା ୧୯୪୨ ମସିହାରେ ଶେଷ ହେଲା । ଏହି ନାଟକ ଲେଖିଲା ପରେ ତାଙ୍କର ଇଚ୍ଛା ହେଲା ଆହୁରି ଲେଖିବାକୁ । 'ରାତ୍ରି' ନାଟକକୁ ପୁଣି ସଜାଡ଼ି ନାମକରଣ କଲେ 'ଅଭିଳାଷ' । ୧୯୪୬ ମସିହା ଅଗଷ୍ଟ ମାସ ୨୫ ତାରିଖରେ ଏହା ମଞ୍ଚସ୍ଥ ହେଲା । ସେ ମଧ୍ୟ ରଚନା କଲେ 'ବେକାର' ନାଟକ । ଏହା ଥିଲା ଯୁଦ୍ଧ ସମୟର ଲେଖା । କାଗଜ ସେତେବେଳେ ମିଳୁ ନ ଥିଲା । ସେହି ଅସୁବିଧା ଦୂର କରିବାପାଇଁ ରେଜିଷ୍ଟ୍ରି ଅଫିସର ଷ୍ଟାମ୍ପ ଭେଣ୍ଡରଠାରୁ ଦଲିଲ ଲେଖା ପାଇଁ ବ୍ୟବହୃତ ହେଉଥିବା

ପଇସିକିଆ କାଗଜ କିଣିଆଣି ଏକ ଖାତା ବନ୍ଧାଇଥିଲେ । ସେହି ଖାତାରେ ସେ ଲେଖିଲେ 'ବେକାର' ନାଟକ ।

'ବେକାର' ନାଟକରେ ନାଟକର ଚରିତ୍ରଗୁଡ଼ିକ 'ବେକାର ମୁକ୍ତି ସମିତି' ଗଠନ ଭଳି ଅଭିନବ ପରିକଳ୍ପନା କରିଥିଲେ ବୋଲି ନାଟ୍ୟକାର ତାଙ୍କ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି ।

୧୯୪୪ ମସିହା ପ୍ରଥମ ଭାଗରେ ମନୋରଞ୍ଜନଙ୍କ 'ଯୌବନ' ନାଟକ ଲେଖା ଶେଷ ହେଲା ।

## ଯୌବନ

'ଯୌବନ' ନାଟକଟି ଆଡ଼ମ୍ବର ସହକାରେ କଟକରେ ଅଭିନୀତ ହୋଇଥିଲା । ନାଟକର ବିଜ୍ଞାପନପାଇଁ ସଜ୍ଜିତ ଏକ ଖୋଲା ଟ୍ରକ୍‌ରେ ଭାରତମାତାଙ୍କ ଏକ ମୂର୍ତ୍ତି ରଖି ଆର୍ଟିଷ୍ଟମାନେ ମିଳିତ କଣ୍ଠରେ ଗାଉଥିଲେ –

''ଜାଗ ଯୁବକ ଆସିଛି ଆଜି ମୁକ୍ତିର ଆହ୍ୱାନ
ଯଉବନେ ତୋର ସାର୍ଥକ କର ରଖ ଜାତିର ମାନ ।''

କଟକର ରାସ୍ତାରେ ସେହି ଟ୍ରକ୍ ବୁଲୁଥିଲା । ହଜାର ହଜାର ସଂଖ୍ୟାରେ ପ୍ରଚାରପତ୍ର ବଣ୍ଟା ଯାଉଥିଲା । ତା'ର ଶୀର୍ଷକ ଥିଲା –

'ଅନ୍ନପୂର୍ଣ୍ଣାରେ କଲେଜ ଛାତ୍ରଙ୍କ ଯୌବନ' ।

'ଯୌବନ' ନାଟକରେ ପ୍ରେମର ଜଟିଳତା ପ୍ରାୟ ସମଗ୍ର ନାଟକକୁ ଆଚ୍ଛାଦିତ କରି ରଖିଛି । ସ୍ୱାର୍ଥପରତାର ଭୟାବହତା ମଧ୍ୟ ତୀବ୍ରତର ହୋଇଛି । କଥାବସ୍ତୁ ପ୍ରେମପୀଡ଼ିତ ଓ ବିପର୍ଯ୍ୟସ୍ତ । ଏହାର ଅନ୍ୟ ଆଭିମୁଖ୍ୟ ମଧ୍ୟ ଅଛି । ତାହାହେଲା, ଯୌବନର ଶକ୍ତି ଦେଶ, ଜାତିର ବିକାଶପାଇଁ ଉପଯୋଗ କରିବାକୁ ପଡ଼ିବ । ତାହା ସ୍ୱାମିଜୀଙ୍କ ମୁହଁରେ ନାଟ୍ୟକାର କୁହାଇଛନ୍ତି –

''... ଯୌବନର ଧର୍ମ ବିପ୍ଳବ । କିନ୍ତୁ ଯୁବକକୁ ରମଣୀର ଯୌବନପୁଷ୍ଟ ଦେହପାଇଁ ବିପ୍ଳବ ନ କରି କରିବାକୁ ପଡ଼ିବ... ଦେଶର ଜାତିର ଗୌରବପାଇଁ ।

## ଜନ୍ମମାଟି

୧୯୪୪ ମସିହାରୁ ୧୯୪୬ ମସିହା ଭିତରେ ମନୋରଞ୍ଜନ ରଚନା କଲେ 'ଜନ୍ମମାଟି' । ନିଜ ସ୍ୱୀକାରୋକ୍ତିରେ ଏହି ନାଟକରେ 'ଭାବାବେଶ'ର ଆଧିକ୍ୟ ରହିଛି । ଜନ୍ମମାଟି ପ୍ରତି ଆକର୍ଷଣ ହିଁ ଏହି ନାଟକର ଉପଜୀବ୍ୟ ହେଲେହେଁ, ଏହାକୁ ଅତିକ୍ରମ କରି ଅନ୍ୟ ଯେଉଁ ଆଭିମୁଖ୍ୟ ସ୍ପଷ୍ଟ ହୋଇଛି, ସେ ହେଲା ଦେଶ ଓ ଜାତି ବିଷୟରେ ଅନୁଚିନ୍ତା, ଯଥା –

''ଦାରିଦ୍ର୍ୟ, ଅନାହାର ଇଗଲ ପରି ଝାମ୍ପ ଦେଉଛି ଏ ଦେଶର ଲକ୍ଷ ଲକ୍ଷ ନିରାଶ୍ରୟଙ୍କୁ । ପ୍ରତିରୋଧ କରିବାର ଇଚ୍ଛା ନାହିଁ କାହାର । ଆମ ଦେଶର ଲୋକଙ୍କୁ ଭଲ ଲାଗେ ଦାରିଦ୍ର୍ୟ, ସେମାନେ ମରିବାକୁ ଚାହାନ୍ତି ପଚିସଢ଼ି... ।''

ଜନ୍ମଭୂମିର ବନ୍ଦନା ମଧ୍ୟ ଗାଇଛନ୍ତି ନାଟ୍ୟକାର –

''ସ୍ୱର୍ଗାଦପୀ ଗରୀୟସୀ ଜନନୀ ଜନ୍ମଭୂମିର ପାଦରୁ ପରାଧୀନତାର ଶୃଙ୍ଖଳ ଛିନ୍ନ କରିବାର ଚେଷ୍ଟା ବିଦ୍ରୋହ ନୁହେଁ, କର୍ତ୍ତବ୍ୟ । ଭାରତର ମାଟି, ଯା'ର ଶ୍ୟାମଳ କ୍ଷେତ, ପାଣି, ପବନ ଶସ୍ୟ ଚିରଦିନପାଇଁ ଆମକୁ ଯୋଗାଇଛି ବଞ୍ଚିବାର ଖୋରାକ, ସେ ମାଟି ମାଟି ନୁହେଁ – ମା'ଟି ।''

ଥରେ କଲେଜରେ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି 'ବୈଦେହୀଶ ବିଳାସ' ପଢ଼ାଉଥିବା ସମୟରେ ତାଙ୍କ ଓଜସ୍ୱିନୀ ଭାଷଣ ଶୁଣି ନାଟ୍ୟକାର ପ୍ରଭାବିତ ହୋଇପଡ଼ିଥିଲେ । ସେ ଏହାପରେ ଉପେନ୍ଦ୍ର ଭଞ୍ଜଙ୍କ ଜୀବନକୁ ନେଇ ନାଟକ ରଚନା କରିବାକୁ ମନ ବଳାଇଲେ । ଏହି ନାଟକ ୧୯୪୫-୪୬ ମସିହା ମଧ୍ୟରେ ରଚନା କଲେ ।

## ଉପେନ୍ଦ୍ର ଭଞ୍ଜ

ଏହାର ଦୁଇଟି ଆକର୍ଷଣ ରହିଛି । ଗୋଟିଏ ପଟେ ଘନେଶ୍ୱର ଚରିତ୍ରରେ କ୍ଷମତା, ରାଜଶକ୍ତିର ମୋହ । ଅନ୍ୟପଟେ ଉପେନ୍ଦ୍ରଙ୍କଠାରେ ଅଭିଳାଷର ଶାରୀରିକତା ନାହିଁ । ଅଛି ସୃଷ୍ଟିର ସ୍ୱପ୍ନ । ଗୋଟିଏ ଦିଗରେ ନିଷ୍ଠୁରତା, ସ୍ୱାର୍ଥପରତା ଓ କ୍ଷମତାପାଇଁ ଷଡ଼୍‌ଯନ୍ତ୍ରର କୁଣ୍ଡଳୀ, ଅନ୍ୟ ଦିଗରେ ପ୍ରେମ, ନିଃସ୍ୱାର୍ଥପରତା, ଏକାଗ୍ରତା ଓ ନିଜ ଦେଶପାଇଁ ଗର୍ବ । ଶେଷରେ କବିଙ୍କ ସୃଜନୀଶକ୍ତିରେ ଆଲୋକିତ ହୋଇଛି ରାଜ୍ୟ । ତାହା ଉତ୍କଳର ଗଜପତିଙ୍କ ତୁଣ୍ଡରେ ନାଟ୍ୟକାର କୁହାଇଛନ୍ତି –

ମହତ୍ ଆପଣ କବି ! ଜାତିର ହୃଦୟ, ଉତ୍କଳର କବି ସମ୍ରାଟ୍, ଅନୁରୋଧ ମୋର – ଆପଣଙ୍କ ପ୍ରତିଭାରେ ଗଜପତିର ସିଂହାସନ ଆଲୋକିତ ହେଉ ।''

ନାଟକଟି ୧୯୪୭ ମସିହା ଫେବୃଆରୀ ପହିଲା ଦିନ ଓଡ଼ିଶା ଥିଏଟର୍ସଦ୍ୱାରା ଅଭିନୀତ ହୋଇଥିଲା । ପୂର୍ଣ୍ଣ ପ୍ରେକ୍ଷାଳୟରେ ଏକାଦିକ୍ରମେ ବହୁ ସପ୍ତାହ ଧରି ଚାଲିଥିଲା ।

ମନୋରଞ୍ଜନ ରେଭେନ୍‌ସାରେ ଅଧ୍ୟୟନ କରୁଥିବା ସମୟରେ କଟକ ବାୟୁମଣ୍ଡଳରେ ଥିବା ଉଷ୍ମତାକୁ ଅନୁଭବ କରିଥିଲେ । ସେ ସମୟରେ ଭାରତର ସ୍ୱାଧୀନତା ସଂଗ୍ରାମ ଆନ୍ଦୋଳନ ଖୁବ୍ ଜୋର୍‌ରେ ଚାଲିଥିଲା । ମନୋରଞ୍ଜନ ବିଭିନ୍ନ ଘଟଣାର ପ୍ରତ୍ୟକ୍ଷଦର୍ଶୀ ଥିଲେ । କଟକ ଗୌରୀଶଙ୍କର ପାର୍କରେ କଂଗ୍ରେସ ମନ୍ତ୍ରିମଣ୍ଡଳର ପ୍ରଧାନମନ୍ତ୍ରୀ ବିଶ୍ୱନାଥଙ୍କ ଭାଷଣ ଓ ତା'ପରେ ଗିରଫ, ପୁଣି ସେଠାରେ ଥିବା ସରଳାଦେବୀଙ୍କ ଗିରଫ ପ୍ରଭୃତି ଘଟଣା ତାଙ୍କ ମନରେ ଗଭୀର ପ୍ରଭାବ ପକାଇଲା । ସେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର

କାର୍ଯ୍ୟକଳାପରେ ମଧ୍ୟ ପ୍ରଭାବିତ ହେଲେ । ସେ ବାମପନ୍ଥୀ ବିଚାରଧାରା ପ୍ରତି ଅତ୍ୟଧିକ ଆଗ୍ରହ ଦେଖାଇଲେ । ଛାତ୍ର ଜୀବନର ଶେଷ ଆଡ଼କୁ ସେ ସୋସାଲିଷ୍ଟ ପାର୍ଟିରେ ଯୋଗ ଦେଲେ ।

ମନୋରଞ୍ଜନ ମଧ୍ୟ ସ୍ୱାଧୀନତା ଆନ୍ଦୋଳନର ଶୋଭାଯାତ୍ରାରେ ଭାଗ ନେଉଥିଲେ । କଲେଜ ବନ୍ଧୁମାନଙ୍କ ସହିତ ଇଂରେଜଙ୍କ ବିରୋଧରେ ସଭାସମିତିରେ ଯୋଗ ଦେଉଥିଲେ ।

## କଲେଜ ଅଫିସ ପୋଡ଼ା

ସ୍ୱାଧୀନତା ଆନ୍ଦୋଳନ ଚାଲିଥିବା ସମୟରେ ରେଭେନ୍ସା କଲେଜ ଅଫିସ ପୋଡ଼ା ହୋଇଥିଲା । ପରିସର ଭିତରେ ଦଳ ଦଳ ହୋଇ ଛାତ୍ର ଆରମ୍ଭ କରିଥିଲେ ଧ୍ୱଂସର ତାଣ୍ଡବଲୀଳା । ଛାତ୍ରମାନେ ଅଫିସ ଭିତରକୁ ପଶି ଯାଇ ଭାଙ୍ଗିଥିଲେ ଟେବୁଲ ଚୌକି ଓ ସିଲିଂ ଫ୍ୟାନ୍ । ଫାଇଲଗୁଡ଼ିକ ଛିନ୍ନଛତ୍ର କରି ଫୋପାଡ଼ି ଦେଇଥିଲେ । କେହି ଜଣେ ଛାତ୍ର ଅଧ୍ୟକ୍ଷ ପ୍ରାଣକୃଷ୍ଣ ପରିଜାଙ୍କ ଅଫିସ ଚେମ୍ବରକୁ ଯାଇଥିବା ଟେଲିଫୋନ ତାରକୁ ପ୍ରହାର କରୁଥିଲା । ଏକୁଟିଆ ଥିବାରୁ ସେ ତାରକୁ ଛିଣ୍ଡାଇପାରୁ ନ ଥିଲା । ଅନାହତ ଭାବେ ମନୋରଞ୍ଜନ ସେହି ପିଲାକୁ ସାହାଯ୍ୟ କରିବାକୁ ଦୌଡ଼ିଗଲେ । ଦୁହେଁ ମିଶି ଜୋର୍‌ରେ ଆଘାତ କରିବାରୁ ତାର ଛିଣ୍ଡିଗଲା । ତା'ପରେ ଅଫିସ ଭିତରେ ସେ ପଶି ଯାଇଥିଲେ ।

## ଶିକ୍ଷକତା

୧୯୪୪ ମସିହାରେ ମନୋରଞ୍ଜନ କୁଜଙ୍ଗରେ ରହି ଚିକିତ୍ସିତ ହେଉଥିଲେ । ସେ ମଧ୍ୟ ପୁରୀ ଯାଉଥିଲେ ଡଃ କେ.ଚୌଧୁରୀଙ୍କ ନିକଟକୁ ଚିକିତ୍ସାପାଇଁ । କୁଜଙ୍ଗରେ ବସି ରହିବା ଦୁର୍ବିଷହ ହୋଇପଡୁଥିଲା । ସଦ୍ୟ ଛାଡ଼ି ଆସିଥିବା କଟକ କଥା ବାରମ୍ବାର ମନେ ପଡୁଥିଲା । ଚଟୁଆର ବୃନ୍ଦାବନ ପାତ୍ର ଦିନେ ଆସି ଘରେ ପହଞ୍ଚିଲେ । ସେ ଥିଲେ ସଚ୍ଚୋଟ କଂଗ୍ରେସ କର୍ମୀ । ତାଙ୍କ ଅନୁରୋଧରେ ଚଟୁଆ ମାଇନର ସ୍କୁଲରେ କିଛିଦିନ ଶିକ୍ଷକତା କଲେ । ବୃନ୍ଦାବନବାବୁ ଥିଲେ ସ୍କୁଲର ସେକ୍ରେଟେରୀ । କିଛି ମାସ ଚଟୁଆରେ ରହିଲେ । କିଛି ଦିନ ପରେ ସେ ନିଜକୁ ଏକାକୀ ଓ ଅସହାୟ ମନେ କଲେ । ଏହି ସମୟରେ ସରବାବୁଙ୍କଠାରୁ ଏକ ପତ୍ର ପାଇଲେ । ସେ ସେତେବେଳକୁ ମଧୁସୂଦନ ମହାନ୍ତିଙ୍କ ଅବ୍‌ଜରଭର୍ ପତ୍ରିକାରେ ଯୋଗ ଦେଇଥାନ୍ତି । ତାଙ୍କ ପତ୍ର ପାଇ ସେ ବଳଦଗାଡ଼ିରେ ଜିନିଷପତ୍ର ଲଦି କଟକ ଗଲେ । କଟକରେ ସେ 'ଅବଜରଭର'ରେ ଯୋଗ ଦେଲେ ନାହିଁ । ବି.ଏ. ପରୀକ୍ଷାପାଇଁ ପଢ଼ାପଢ଼ି ଆରମ୍ଭ କରିଦେଲେ ।

୧୯୪୫ ରୁ ୧୯୪୭ ଶେଷ ପର୍ଯ୍ୟନ୍ତ ମନୋରଞ୍ଜନ କଟକରେ ରହିଲେ । ୧୯୪୫ରେ ବି.ଏ. ପରୀକ୍ଷା ଦେଇ ଅକୃତକାର୍ଯ୍ୟ ହେଲେ । ତା' ପରବର୍ଷ ବି.ଏ. ପରୀକ୍ଷା ଦେଇ ପାସ୍ କଲେ । ଏହା ପରେ ସେକ୍ରେଟେରିଏଟ୍‌ରେ ଯୋଗ ଦେଲେ ଓ ଲ'କ୍ଲାସ୍‌ରେ ନାମ ଲେଖାଇଲେ ।

## ଅଗଷ୍ଟ ୯

ନାଟ୍ୟକାର ୧୯୪୬ ମସିହାରେ ରଚନା କଲେ ନାଟକ 'ଅଗଷ୍ଟ ୯' । ନାଟ୍ୟକାର ନିଜେ ସ୍ୱୀକାର କରିଛନ୍ତି ଯେ 'ସ୍ୱାଧୀନତା ସଂଗ୍ରାମର ପଟ୍ଟଭୂମି ଉପରେ ୧୯୪୨ ଅଗଷ୍ଟର 'ଭାରତଛାଡ଼' ଆନ୍ଦୋଳନକୁ କେନ୍ଦ୍ର କରି ଏହି ନାଟକ ରଚିତ । ଏଥିରେ ତେଣୁ ପ୍ରେମର ଧାରା, ଏପରିକି ଚାରିତ୍ରିକ ଦ୍ୱନ୍ଦ୍ୱ ପ୍ରଭୃତି ଗୌଣ ସ୍ଥାନ ଅଧିକାର କରିଛି । ନାଟକର ମୁଖ୍ୟ ଅନୁଭବ ହେଉଛି ରାଜନୀତି ଓ ରାଜନୀତିକ ପରିସ୍ଥିତିର ଅନୁଭୂତି ।

'ଅଗଷ୍ଟ ୯' ନାଟକଟି ୧୯୪୬ ଅଗଷ୍ଟ ମାସ ୧୧ ତାରିଖରେ କଟକରେ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ ଅଭିନୀତ ହେଲା । ନାଟକ ଶେଷ ବେଳକୁ ରଙ୍ଗମଞ୍ଚ ଓ ପ୍ରେକ୍ଷାଳୟ ଏକାକାର ହୋଇଯାଇଥିଲା । ଏହାର ଶେଷ ସଂଳାପଟି ଧ୍ୱନିତ ହୋଇଥିଲା ଦର୍ଶକମାନଙ୍କ ମୁଖରେ —

'Long live revolution
Long live revolution'.

## ଦିଲ୍ଲୀରେ ନିଯୁକ୍ତି

୧୯୪୮ ମସିହାରେ ନାଟ୍ୟକାର ଦିଲ୍ଲୀ ସମ୍ବାଦ ବିଭାଗରେ ସବ୍-ଏଡିଟର୍ ଭାବରେ ଯୋଗ ଦେଲେ । ସମ୍ବାଦ ବିଭାଗରେ ଓଡ଼ିଆ ବିଭାଗ ନୂଆ ହୋଇ ଖୋଲା ହୋଇଥିବାରୁ ମନୋରଞ୍ଜନଙ୍କୁ ବହୁ ପ୍ରାରମ୍ଭିକ କାର୍ଯ୍ୟ କରିବାକୁ ପଡ଼ିଲା । ୧୯୪୮ ମସିହା ଜାନୁଆରୀ ମାସ ୨୮ ତାରିଖରେ ଏକ କିଲୋୱାଟ୍ କ୍ଷମତା ବିଶିଷ୍ଟ ରେଡ଼ିଓ ଷ୍ଟେସନ୍ ଉଦ୍‌ଘାଟିତ ହେଲା । ସେଥିରେ ସେହି ଦିନଠାରୁ ଦିଲ୍ଲୀର ଓଡ଼ିଶା ସମ୍ବାଦ ରିଲେ କରାଯାଇ ପ୍ରସାରିତ ହେଲା ।

## ବିବାହ

୧୯୪୮ ମସିହା ମେ ମାସରେ ମନୋରଞ୍ଜନଙ୍କ ବିବାହ ହେଲା କଟକ ସହରର ଅନତିଦୂର ନଈକୂଳିଆ ଗାଁ ଉଭାତିର ଗୋପାଳଚରଣ ମହାନ୍ତିଙ୍କ କନ୍ୟା କୁସୁମକୁମାରୀଙ୍କ ସହିତ । ବିବାହ ପରେ କୁଜଙ୍ଗରେ କିଛିଦିନ ରହି ସେ ଦିଲ୍ଲୀ ଫେରିଗଲେ ।

## ଚାକିରିରୁ ବିଦାୟ

ନିଉଜ୍ ସର୍ଭିସ ଡିଭିଜନର ଡେପୁଟି ଡାଇରେକ୍ଟର ଥିଲେ ମି. ଭ୍ୟାନ୍‌ଟ । ସେ ମନୋରଞ୍ଜନଙ୍କୁ ଡକାଇ ଆଉଥରେ ସବ୍-ଏଡିଟ୍‌ର ପଦପାଇଁ ଲିଖିତ ପରୀକ୍ଷା ଦେବାକୁ କହିଲେ । ମନୋରଞ୍ଜନ ଆପତ୍ତି କଲେ । କଟକରେ ପରୀକ୍ଷା ଦେଇ ବଛା ହୋଇ ଆସିଛନ୍ତି । ''ଆଉ କାହିଁକି ପରୀକ୍ଷା ଦେବେ ? – ଏହା ଥିଲା ତାଙ୍କର ଉତ୍ତର । ସେ ଅବଶ୍ୟ ଦ୍ୱିତୀୟ ଥରପାଇଁ ପରୀକ୍ଷା ଦେଲେ । କିନ୍ତୁ ପକ୍ଷପାତିତା ଯୋଗୁଁ ତାଙ୍କୁ ବଛା ଗଲା ନାହିଁ । ତାଙ୍କୁ ଆଉ ପଦ ଖୋଲା ହେବା ପର୍ଯ୍ୟନ୍ତ ଅସ୍ଥାୟୀ କାଜୁଏଲ୍ କଣ୍ଟ୍ରାକ୍ଟରେ ରଖିବାକୁ କୁହାଗଲା । ସେ ଏହାକୁ ଅପମାନଜନକ ମନେ କରି ଫେରିଆସିଲେ ଓଡ଼ିଶା ।

## ଅନିଶ୍ଚିତ ଜୀବନ

ଦିଲ୍ଲୀରୁ ଫେରିଆସିଲାପରେ ତାଙ୍କୁ ଅନିଶ୍ଚିତ ଜୀବନ କଟାଇବାକୁ ପଡ଼ିଲା । ବାପା ଅବଶ୍ୟ ଚାକିରି କରୁଥିଲେ । ମାତ୍ର ତାଙ୍କ ଦରମା କମ୍ ଥିଲା ।

ଅଭାବ ଭିତରେ ମନୋରଞ୍ଜନଙ୍କୁ ସଂସାର ଚଳାଇବାକୁ ପଡୁଥିଲା । ସେ ମଧ୍ୟ ମନଲାଖି ଚାକିରିଟିଏ ପାଇଲେ ନାହିଁ । କୁଜଙ୍ଗରେ ଟୁକ୍‌ଟାକ୍ କରି ଛୋଟ ଜାଗାଟିରେ କିଛି ବ୍ୟବସାୟ କରିବାକୁ ସ୍ଥିର କଲେ । ସେତେବେଳେ ମଧ୍ୟ ବ୍ୟବସାୟ ଲାଗି କରଜ ମିଳିବା ସହଜ ନ ଥିଲା । କିମ୍ବା ବ୍ୟାଙ୍କ୍ ବ୍ୟବସ୍ଥା ପ୍ରଭୃତି କିଛି ସୁବିଧା ନ ଥିଲା । ମହମଦିଆ ବଜାର ଓ ମେହେନ୍ଦିପୀର ମଝିରେ ରହୁଥିବା କାବୁଲୀବାଲା ଦଳଟି ଅବଶ୍ୟ ଅଧିକ ସୁଧରେ କରଜ ଦେଉଥିଲେ । କିନ୍ତୁ ଏସବୁ ସୂତ୍ରରୁ କରଜ ନେଇ ଶୁଝିବାର ସାହସ ତାଙ୍କର ନ ଥିଲା । ଶ୍ୱଶୁରଙ୍କଠାରୁ କିଛି ଟଙ୍କା ସଂଗ୍ରହ କରି ଛୋଟକାଟର କଣ୍ଟ୍ରାକ୍ଟରୀ ଆରମ୍ଭ କଲେ । କିନ୍ତୁ ସେ ବି ବେଶି ଦିନ ଚାଲିଲା ନାହିଁ । ଲାଭ ବି ସେମିତି କିଛି ହେଲା ନାହିଁ । ଏହାପରେ କୁଜଙ୍ଗ ବ୍ୟବସାୟୀ ସମବାୟ ସମିତିରୁ ଦେଢ଼ହଜାର ଟଙ୍କା ନେଇ ଗୋଟିଏ ଧାନକଳ (ହଲର) ବସାଇଲେ । ସେ ଅଞ୍ଚଳରେ ଏହା ପ୍ରଥମ ଧାନକଳ ଥିଲା । କ୍ରମେ ବ୍ୟବସାୟ ଭଲ ଚାଲିଲା । ସେ ମଧ୍ୟ କୁଜଙ୍ଗ କୋଅପରେଟିଭ୍ ବ୍ୟାଙ୍କ ଟ୍ରେଡର୍ସ ସୋସାଇଟି ସହିତ ସଂପୃକ୍ତ ହୋଇପଡ଼ିଲେ । ଡେପୁଟି ରେଜିଷ୍ଟ୍ରାର ଅନନ୍ତ ପ୍ରସାଦ ପଣ୍ଡାଙ୍କ ଅନୁରୋଧ ରକ୍ଷା କରି ସେ କୋଅପରେଟିଭ୍ ବ୍ୟାଙ୍କର ଅବୈତନିକ ଉପସଭାପତି ଦାୟିତ୍ୱ କିଛି ମାସ ତୁଲାଇଲେ । କାଳକ୍ରମେ କୁଜଙ୍ଗ ନିକଟବର୍ତ୍ତୀ ଅଞ୍ଚଳରେ ଅନ୍ୟ ହଲର ବସିଯିବା ଫଳରେ ପ୍ରତିଯୋଗିତା ଫଳରେ ଆୟ କମି ଆସିଲା । ସେ ମଧ୍ୟ ସବୁବେଳେ ହଲର ପାଖରେ ରହିପାରୁ ନ ଥିଲେ । ଫଳରେ ଧାନ କଳ ବ୍ୟବସାୟ ରୁଗ୍‌ଣ ଅବସ୍ଥାକୁ ଆସିଗଲା । କୁଜଙ୍ଗରୁ ମଧୁବାବୁ ଆସି ମାଛ ବ୍ୟବସାୟ ପ୍ରସ୍ତାବ ଦେଲେ । 'ରାତିରେ ଗଲେ ହାତିଏ' ପାଇବାର ସ୍ୱପ୍ନ ତାଙ୍କ ମନରେ ଜାଗିଉଠିଲା । ସେ ମଧୁବାବୁଙ୍କ ପ୍ରସ୍ତାବରେ ରାଜି ହୋଇଗଲେ । ମାତ୍ର ସେହି ବ୍ୟବସାୟ ବହୁ କ୍ଷତିରେ ବନ୍ଦ ହୋଇଗଲା ।

ନାଟ୍ୟକାର ଦିଲ୍ଲୀରୁ ଫେରି କୁଜଙ୍ଗ ରହଣି ସମୟରେ ନାଟକ ଲେଖିବାକୁ ସୁଯୋଗ ପାଇଲେ । ଏହି ସମୟରେ ସେ ଖୋର୍ଦ୍ଧାରେ ୧୮୧୭ ମସିହାରେ ହୋଇଥିବା ପାଇକ ବିଦ୍ରୋହର ପୃଷ୍ଠଭୂମିରେ 'ବକ୍ସି ଜଗବନ୍ଧୁ' ନାଟକ ରଚନା କରିବାରେ ଲାଗିପଡ଼ିଲେ । ଏହି ନାଟକଟି ଅଭିନୀତ ହେବା ପୂର୍ବରୁ ନାଟକର ନାମ 'ବିଦ୍ରୋହୀ ଜଗବନ୍ଧୁ' ରଖିଥିଲେ । ପରେ ଏହାର ନାମ ରଖିଲେ 'ବକ୍ସି ଜଗବନ୍ଧୁ' ।

ନାଟକରେ ପାଇକମାନଙ୍କର ରଣହୁଁକାର, ବକ୍ସି ଜଗବନ୍ଧୁଙ୍କର ନେତୃତ୍ୱ, ଜୟୀ ରାଜଗୁରୁଙ୍କର ଅଦମ୍ୟ ସାହସ ଓ ତ୍ୟାଗ ଏଥିରେ ବର୍ଣ୍ଣିତ । ଓଡ଼ିଆ ଜାତି ବଞ୍ଚିଛି ବିପ୍ଳବ କରି, ହାରି କରି ନୁହେଁ ବୋଲି ନାଟ୍ୟକାର ଏଥିରେ ପ୍ରତିପାଦିତ କରିଛନ୍ତି ।

'ବକ୍ସି ଜଗବନ୍ଧୁ' ନାଟକ ୧୯୪୯ ମସିହା ଜୁନ୍ ୫ ତାରିଖରେ ଅନ୍ନପୂର୍ଣ୍ଣା ଥିଏଟରଦ୍ୱାରା ଧୁମ୍‌ଧାମ୍‌ରେ ମଞ୍ଚସ୍ଥ ହେଲା । ଅତୀତକୁ ସ୍ମରଣ କରାଇ ଦେଶାତ୍ମବୋଧ ଦର୍ଶକ ପ୍ରାଣରେ ସୃଷ୍ଟି କରିବାକୁ ନାଟ୍ୟକାର ଚାହିଁଥିଲେ । ପ୍ରଥମ ରଜନୀର ଉଚ୍ଛ୍ୱସିତ ପ୍ରଶଂସା ଓ ଅଭିନନ୍ଦନରୁ ତାହା ସଫଳ ହୋଇଛି ବୋଲି ମନୋରଞ୍ଜନ ମଧ୍ୟ ଉପଲବ୍ଧି କଲେ । ବ୍ୟାବସାୟିକ ଦୃଷ୍ଟିରୁ ନାଟକଟି ପ୍ରଥମେ ପ୍ରଥମେ ସଫଳତା ପ୍ରାପ୍ତ ହେଲା । ସମସ୍ତେ କହୁଥିଲେ 'ହାଉସ୍ ଫୁଲ୍' । ମ୍ୟାନେଜର ବାଉରିବନ୍ଧୁଙ୍କୁ ଦେଖା ହେଲେ ମୁହଁରେ ତାଙ୍କର ହସ ଫୁଟି ଉଠୁଥିଲା । କିନ୍ତୁ କିଛି ଦିନ ପରେ 'ପ୍ରଜାତନ୍ତ୍ର'ରେ ଜଣେ ସାମ୍ବାଦିକ ବନ୍ଧୁଙ୍କର ଏକ ସମୀକ୍ଷା ପ୍ରକାଶ ପାଇଲା । ସେ ଲେଖାରେ ନାଟକଟିକୁ କଠୋର ଭାବରେ ସମାଲୋଚନା କରିଥିଲେ । ଅଭିନେତାମାନଙ୍କର ଅଭିନୟ ବ୍ୟର୍ଥତା ବିଷୟରେ ମଧ୍ୟ ଲେଖିଥିଲେ । ତାଙ୍କର ମନ୍ତବ୍ୟ ଥିଲା –

'ଏହି ତିନୋଟି ସାହେବଙ୍କର ଅଭିନୟ ରୀତି ଦେଖି ମନେ ହୁଏ, ଏମାନେ ରଙ୍ଗମଞ୍ଚର ଅଭିନେତା ନୁହନ୍ତି, 'ସର୍କସ୍ ପ୍ଲେୟାର' ।

ମ୍ୟାନେଜର ବାଉରିବନ୍ଧୁ ମହାନ୍ତି ମୁଣ୍ଡରେ ହାତ ଦେଇ ବସିଲେ । ମହତାବବାବୁଙ୍କ ତଥ୍ୟ ଭିତ୍ତିରେ ମନୋରଞ୍ଜନ ନାଟକଟି ରଚନା କରିଥିଲେ । ମହତାବଙ୍କ ପରି ଜଣେ ଐତିହାସିକ, ସାହିତ୍ୟିକ ତଥା ବିଦ୍ୱାନ୍‌ଙ୍କ ପାଖକୁ ଯାଇ ମ୍ୟାନେଜର ନାଟକ ଦେଖିବାପାଇଁ ଅନୁରୋଧ କଲେ । ମହତାବ ମଧ୍ୟ ନାଟକ ଦେଖିବାପାଇଁ ଆସିଲେ । ସେ ଅଭିନୟରେ ମୁଗ୍ଧ ହୋଇଥିଲେ ଓ ନାଟକଟି ଭଲ ହୋଇଛି ବୋଲି ମତ ଦେଇଥିଲେ । ଓଡ଼ିଶାରେ ନାଟ୍ୟକଳା ଜଗତ କେତେ ବର୍ଷ ମଧ୍ୟରେ ଉନ୍ନତି ଲାଭ କରିଛି ବୋଲି ମନ୍ତବ୍ୟ ଦେଇଥିଲେ ।

'ବକ୍ସି ଜଗବନ୍ଧୁ' – ନାଟକଟି ପୁଣି ସଫଳତା ଆଡ଼କୁ ଆଗେଇଲା । ମ୍ୟାନେଜର ବାଉରୀବନ୍ଧୁ ମହାନ୍ତିଙ୍କ ମୁହଁରେ ପୁଣି ଫେରିଆସିଲା ହସର ଜୁଆର ।

କେବଳ କଟକରେ ନୁହେଁ, ଓଡ଼ିଶାର ବିଭିନ୍ନ ସ୍ଥାନରେ ନାଟକଟି ହଜାର ହଜାର ରାତ୍ରି ଅଭିନୀତ ହେଲା । ନାଟ୍ୟକାରଙ୍କ ଭାଷାରେ –

''ବଲ୍କି ଜଗବନ୍ଧୁର ଜନପ୍ରିୟତା ସବୁଦିନପାଇଁ ଅକ୍ଷୁଣ୍ଣ ହୋଇ ରହିଗଲା ।''

ଏହାପରେ ମନୋରଞ୍ଜନ ଆଉ ବ୍ୟାବସାୟିକ ମଞ୍ଚକୁ ଫେରିଆସିବାକୁ ଚାହିଁ ନ ଥିଲେ । ତାଙ୍କ ଭାଷାରେ – ''ବ୍ୟାବସାୟିକ ମଞ୍ଚ ପ୍ରତି ମୋର ସ୍ୱପ୍ନ ଭଙ୍ଗ ହୋଇଗଲା ।'' ନାଟ୍ୟକାରଙ୍କ ଗତିପଥ ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇଗଲା । ଗତାନୁଗତିକ ଗଳ୍ପ ମାଧ୍ୟମରେ ଶସ୍ତା ହାସ୍ୟରସ ସୃଷ୍ଟି କରି ଆମୋଦ ସୃଷ୍ଟି କରିବା ନାଟକର ଲକ୍ଷ୍ୟ ହେବା ଉଚିତ ନୁହେଁ ବୋଲି ତାଙ୍କର ଧାରଣା ହେଲା । ଦ୍ୱିତୀୟରେ, ସେ ଉପଲବ୍ଧି କଲେ ଯେ ବିଶ୍ୱନାଟକଠାରୁ ଓଡ଼ିଆ ନାଟକ ବିଚ୍ଛିନ୍ନ ହୋଇପଡୁଛି – ଯାହାକି ଠିକ୍ ନୁହେଁ । କେବଳ ମଞ୍ଚ ଦୃଷ୍ଟିରୁ ନୁହେଁ, ସାହିତ୍ୟ ଦୃଷ୍ଟିରୁ ସଫଳ ହେବା ଉଚିତ ବୋଲି ମଧ୍ୟ ତାଙ୍କର ହୃଦ୍‌ବୋଧ ହେଲା । ଆତ୍ମିକ ଓ ଆଙ୍ଗିକ ଦୃଷ୍ଟିରୁ ଓଡ଼ିଆ ନାଟକଗୁଡ଼ିକୁ ବିଶ୍ୱ ନାଟକର ଧାରାରେ ସାମିଲ କରିବା ଉଦ୍ଦେଶ୍ୟରେ ସେ ନାଟକ ରଚନା କରିବାକୁ ସ୍ଥିର କଲେ । ଏହି ଦୃଷ୍ଟିରୁ ସେ ଭିନ୍ନ ଧାରାର ନାଟକ 'ଆଗାମୀ' ଲେଖିବା ଆରମ୍ଭ କଲେ । ଦଶହରାର କିଛି ଦିନ ପରେ ନାଟକ ଲେଖିବା ଶେଷ ହେଲା ।

ମନୋରଞ୍ଜନ କଟକ ଆସିଲେ ଓ ନାଟକ ମଞ୍ଚସ୍ଥ ହେଲା । ଏହା ୧୯୫୦ ମସିହା ବେଳର ଘଟଣା ।

'ଆଗାମୀ'ରେ ରାଜନୀତିର ସଙ୍ଗଠନ ବର୍ତ୍ତମାନ ସମୟର । ତେଣୁ ରାଜନୀତିର କଳୁଷତା 'ଆଗାମୀ'ରେ ଲକ୍ଷ୍ୟ କରାଯାଏ । ରାଜନୀତିର ଅନୁଭୂତି ସହିତ ପୁରୁଷ ଓ ନାରୀର ସମ୍ପର୍କର ଅନୁଭୂତି ମିଶିଯାଇଛି । କିନ୍ତୁ ପରିଣତି ଏକ ହୋଇଛି – ଯାହା ସରୋଜର ଶେଷ ମନ୍ତବ୍ୟରେ ସୂଚିତ –

''ସମସ୍ତଙ୍କ ବୀଣାର ତାର ଛିଡ଼ିଯାଇଛି.... ତଥାପି ଆଗାମୀ କାଲିପାଇଁ ବଞ୍ଚିବାକୁ ପଡ଼ିବ ।''

ପ୍ରଗତିବାଦୀମାନେ ନାଟକ ତାରିଫ କରି କହିଥିଲେ – ''ଭଲ ହେଲା, ସୁନ୍ଦର ପରିଚ୍ଛନ୍ନ ନାଟକଟିଏ ।''

ମୌଳବାଦୀମାନେ ନାକଟେକି କହିଥିଲେ – ''ଗୀତ ନାହିଁ, କମେଡି ନାହିଁ, ସାଜସଜ୍ଜା ନାହିଁ, ଛ'ଅ ସାତ ଜଣ ଆର୍ଟିଷ୍ଟଙ୍କୁ ନେଇ ଏ କୁଆଡ଼େ ଗୋଟେ ନାଟକ ?''

ନାଟକଟି ଜନଶକ୍ତି ପୁସ୍ତକାଳୟଦ୍ୱାରା ଛପା ହେଲା । ପ୍ରଖ୍ୟାତ ଔପନ୍ୟାସିକ ଓ ଚିନ୍ତାଶୀଳ ବ୍ୟକ୍ତି ଗୋପୀନାଥ ମହାନ୍ତି ମତାମତ ଦେଇଥିଲେ – ''ଏକା ଲମ୍ଫରେ ଓଡ଼ିଆ ନାଟକ ମଧ୍ୟଯୁଗରୁ ଯାଇ ଆଧୁନିକ ଯୁଗରେ ପହଞ୍ଚିଲା ।''

ମନୋରଞ୍ଜନ ଏହା ପରେ ରଚନା କଲେ ନାଟକ 'ଅବରୋଧ' । ଏଥିରେ 'ଆଗାମୀ' ନାଟକର ମନସ୍ତତ୍ତ୍ୱ ବଦଳରେ ରାଜନୀତି ସ୍ଥାନ ପାଇଥିଲା । ଗଣତନ୍ତ୍ରର ମହାନ୍ ଆଦର୍ଶକୁ ରାଜନୀତିକ ଦଲାଲ ଗୋଷ୍ଠୀ ଖୋଲାଖୋଲି ଭାବେ ପଙ୍ଗୁ କରିଦେବାକୁ ଆରମ୍ଭ କରିଦେଇଥିବା ଦେଖାଇ ଦିଆଯାଇଥିଲା । ଏଥିରେ କୃଷକ ଓ କାରଖାନାର ଶ୍ରମିକ ହାତ ମିଳାଇ ସଂଗ୍ରାମର ରାଜପଥକୁ ବାହାରି ଆସିଥିବା ଦର୍ଶାଯାଇଥିଲା । 'ଅବରୋଧ' ନାଟକଟି ମଧୁସୂଦନ ନାଟ୍ୟ ପରିଷଦଦ୍ୱାରା ମଞ୍ଚସ୍ଥ ହୋଇଥିଲା । ନିତାଇବାବୁ ନାଟକର ନିର୍ଦ୍ଦେଶନା ଦେଇଥିଲେ । ଏହାର ମୁଖ୍ୟମନ୍ତ୍ରୀ ଭୂମିକାରେ ଅଭିନୟ କରିଥିଲେ ସମ୍ବଲପୁରର ମୁରାରିମୋହନ ମିଶ୍ର – ଯେ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ମୁଖ୍ୟମନ୍ତ୍ରିତ୍ୱ ସମୟରେ କ୍ୟାବିନେଟ୍ ପାହିଆର ମନ୍ତ୍ରୀ ପଦରେ ଥିଲେ । ନାଟକର ପ୍ରଥମ ଅଭିନୟ ଦର୍ଶକ ମହଲରେ ସୃଷ୍ଟି କରିଥିଲା ଗଭୀର ଆଲୋଡ଼ନ ।

କଟକର ଏକ ପତ୍ରିକା 'ଚିତ୍ରଲେଖା' ତରଫରୁ 'ଅବରୋଧ' ନାଟକର ସଫଳତାପାଇଁ ରାଣୀହାଟ ପୋଲ ନିକଟସ୍ଥ ପାରାଡାଇଜ୍ ହୋଟେଲରେ ଏକ ସମ୍ବର୍ଦ୍ଧନା ସଭା ଆୟୋଜିତ ହୋଇଥିଲା । ବିଖ୍ୟାତ ନାଟ୍ୟକାର କାଳୀଚରଣ ପଟ୍ଟନାୟକ ମନ୍ତବ୍ୟ ଦେଇଥିଲେ – ''ମୁଁ ଥରେ କହିଥିଲି ତୁମ ଭିତରେ ନିଆଁ ଅଛି । ମୁଁ ଖୁସି ଯେ ସେ ନିଆଁ ଏବେ ବାହାରି ଆସିଛି ।''

ମନୋରଞ୍ଜନ ଏହାପରେ ଏକ ଚଳଚ୍ଚିତ୍ର 'ଆମରି ଗାଁ ଝିଅ' ନିର୍ମାଣ କରିବାପାଇଁ ଉଦ୍ୟମ କଲେ । କଲିକତାରେ ସୁଟିଂ ହେଲା । ଓଡ଼ିଆ ଦର୍ଶକମାନେ କିନ୍ତୁ ଏହି ଚଳଚ୍ଚିତ୍ରକୁ ପସନ୍ଦ କରି ନ ଥିଲେ । ଚଳଚ୍ଚିତ୍ରପାଇଁ ପ୍ରାପ୍ୟ ଏକ ହଜାର ଟଙ୍କା ମଧ ମନୋରଞ୍ଜନ ପାଇ ନ ଥିଲେ ।

ପୁଣି ଓଡ଼ିଶାରେ 'କେଦାରଗୌରୀ' ଚଳଚ୍ଚିତ୍ର ନିର୍ମାଣ ହେଲା । ଏଥିପାଇଁ 'ରାଧା ପିକ୍‌ଚର୍ସ' ନାମକ ଏକ କମ୍ପାନୀ ଗଢ଼ା ହେଲା । ଗଳ୍ପ, ଚିତ୍ରନାଟ୍ୟ ଓ ନିର୍ଦ୍ଦେଶନାର ଦାୟିତ୍ୱ ମିଳିତଭାବେ ନିତାଇବାବୁ ଓ ମନୋରଞ୍ଜନଙ୍କୁ ଦିଆଗଲା । ଚିତ୍ରର ସଂଳାପ ଲେଖା ଦାୟିତ୍ୱ ମନୋରଞ୍ଜନଙ୍କ ଉପରେ ପଡ଼ିଲା । କଲିକତାରେ ଚଳଚ୍ଚିତ୍ର ପ୍ରସ୍ତୁତି ଚାଲିଲା । 'କେଦାରଗୌରୀ' ଚଳଚ୍ଚିତ୍ର ମୁକ୍ତି ଲାଭ କଲା । ସେ ଦିନ ଦର୍ଶକମାନଙ୍କୁ 'କେଦାରଗୌରୀ'ର ଗଳ୍ପ ଓ ସଙ୍ଗୀତ ସମ୍ବଳିତ ଏକ ପୁସ୍ତିକା ବଣ୍ଟା ଯାଇଥିଲା । ସେଥିରେ ପରବର୍ତ୍ତୀ ଚଳଚ୍ଚିତ୍ରର ଡାଇରେକ୍ଟର, ସଙ୍ଗୀତ ନିର୍ଦ୍ଦେଶକ କିଏ ହେବେ ତାହା ଜଣାଇ ଦିଆଯାଇଥିଲା । କିନ୍ତୁ ମନୋରଞ୍ଜନଙ୍କୁ ବାଦ୍ ଦିଆଗଲା । ଫିଲ୍ମ ଲାଇନରୁ ତାଙ୍କୁ ବାଦ୍ ଦେବାକୁ ରୀତିମତ ଷଡ଼୍ଯନ୍ତ୍ର ଯେ ହୋଇଥିଲା, ତାହା ମନୋରଞ୍ଜନ ଜାଣିପାରିଥିଲେ ।

ଏପରି 'ଗଳାକଟା ଲାଇନ୍‌ର ମାରପେଞ୍ଚ' ଭିତରେ ସେ ତିଷ୍ଠି ପାରିବେ ନାହିଁ ବୋଲି ଅନୁଭବ କଲେ ।

ମନୋରଞ୍ଜନ ଫେରିଆସିଲେ ପୁଣି କୁଜଙ୍ଗକୁ । ଦେହ ମଧ୍ୟ ଅସୁସ୍ଥ ହୋଇପଡ଼ିଥିଲା । ଭାଗବତ୍ ସେଟ୍‌ଟିଏ ଆସିଲା ବେଳେ କିଣି ଆଣିଥିଲେ । କୁଜଙ୍ଗରେ ରହୁଥିଲାବେଳେ ପ୍ରତିଦିନ ଭାଗବତ ଅଧ୍ୟାୟେ ପଢ଼ିବା ଆରମ୍ଭ କଲେ ।

କୁଜଙ୍ଗରେ କିନ୍ତୁ ମନୋରଞ୍ଜନ ବେଶିକାଳ ରହିପାରି ନ ଥିଲେ । ବିଶ୍ୱାସଘାତକତାର ଶିକାର ହୋଇ ସେ ସେହି ଦୁର୍ଜନମାନଙ୍କଠାରୁ ଦୂରରେ ରହିବାପାଇଁ କୁଜଙ୍ଗ ଛାଡ଼ି କଟକ ଆସିଲେ । ଏହା ୧୯୫୫ ମସିହାର ଘଟଣା । ସେ ଲ' ଦ୍ୱିତୀୟ ଭାଗରେ ଆସି ନାଁ ଲେଖାଇଲେ ଓ ପାସ୍ ମଧ୍ୟ କଲେ । ସେ 'କଳାକୋଟ୍' ଗଳାଇ ଓକିଲାତି ଆରମ୍ଭ କରିଦେଲେ । ପ୍ରଥମେ ସେ ପ୍ରଖ୍ୟାତ ଓକିଲ ଦୀନବନ୍ଧୁ ସାହୁଙ୍କ ସିରସ୍ତାରେ କାମ କଲେ । ଦୀନବନ୍ଧୁ ସାହୁ ଥିଲେ ବିଚକ୍ଷଣ ଫୌଜଦାରୀ ଓକିଲ । ଖୁବ୍ ଭଲ ରୋଜଗାର କରୁଥିଲେ । କିନ୍ତୁ ତାଙ୍କ ଓକିଲାତି ପେସା ଥିଲା ମୁଖ୍ୟତଃ ଉପର କୋର୍ଟରେ । ତଳ କୋର୍ଟକୁ ସେ କ୍ୱଚିତ୍ ଆସୁଥିଲେ । ଦିନେ ଓକିଲଖାନାରେ ପ୍ରଖ୍ୟାତ ଓକିଲ ବିଶ୍ୱନାଥ ପଶାୟତଙ୍କ ସଙ୍ଗେ ତାଙ୍କର ଦେଖାହେଲା । ସେ ମଧ୍ୟ କଟକବାର୍‌ର ନାମଜାଦା ଓକିଲ ଥିଲେ । ତଳ ଉପର ସବୁ କୋର୍ଟରେ ତାଙ୍କର ଖ୍ୟାତି ଥିଲା । କମ୍ୟୁନିଷ୍ଟ ମତବାଦୀ ଅବଶ୍ୟ ସେ ଥିଲେ; କିନ୍ତୁ ନିଷ୍ଠା ଓ ସଚ୍ଚୋଟତାର ସେ ଥିଲେ ପ୍ରତୀକ । ସାହିତ୍ୟ ସହିତ ତାଙ୍କର ବହୁ ଦିନୁ ସମ୍ପର୍କ ଥିଲା । 'ରୁଷ ଭ୍ରମଣ' ପ୍ରଭୃତି ବହି ଲେଖାଲେଖି କରିଥିଲେ । ତେଣୁ ସେ ମନୋରଞ୍ଜନଙ୍କ ପ୍ରତି ଆକର୍ଷିତ ହେବା ସ୍ୱାଭାବିକ । ବଡ଼ଭାଇର ଦାୟିତ୍ୱ ନେଇ ବିଶ୍ୱନାଥବାବୁ ତାଙ୍କର ଚେମ୍ବର ମନୋରଞ୍ଜନଙ୍କ ପାଇଁ ଖୋଲିଦେଲେ । ବେଶ୍ ସୁରୁଖୁରୁରେ ଓକିଲାତି ବ୍ୟବସାୟ ଚାଲିଲା । ଆୟ ବି ଭଲ ହେଲା ।

ଓକିଲଖାନାରେ ମନୋରଞ୍ଜନଙ୍କ ନାଟକ ସହିତ ଘନିଷ୍ଠ ସମ୍ପର୍କ ଥିବା ଜଣାଶୁଣା ହୋଇସାରିଥିଲା । ଓକିଲଖାନାରେ ବହୁ ବିଷୟରେ ଆଲୋଚନା ହେଉଥିଲା । ବେଳେବେଳେ ଥିଏଟର କଥା ମଧ୍ୟ ପଡୁଥିଲା । ଥରେ ଆସୋସିଏସନ୍ ପକ୍ଷରୁ ଡ୍ରାମା କରିବା ପ୍ରସ୍ତାବ ହେଲା । ବାର ଆସୋସିଏସନ୍‌ର ସମ୍ପାଦକ ମଧ୍ୟ ଥିଲେ ପଶାୟତବାବୁ । ଫଳରେ ବାର୍ ଆସୋସିଏସନ୍ ପକ୍ଷରୁ ପ୍ରଥମଥରପାଇଁ ଏକ ନାଟକ କରିବା ସ୍ଥିର ହେଲା । ମନୋରଞ୍ଜନଙ୍କ 'ଅବରୋଧ' ନାଟକଟି ମଧ୍ୟ ବଛା ଗଲା । ଏହା ମଞ୍ଚସ୍ଥ ବି ହେଲା । ଏହା ଆଇନ ବ୍ୟବସାୟୀଙ୍କ ମଧ୍ୟରେ ଗଭୀର ଆଲୋଡ଼ନ ସୃଷ୍ଟି କଲା ।

ମାଲିମକଦ୍ଦମା ପରି ବୋଝ ନିଜ ମୁଣ୍ଡରେ ମୁଣ୍ଡାଇ ଦିନ କଟାଉଥିବାବେଳେ ମନୋରଞ୍ଜନ ନାଟକ ଲେଖାଠାରୁ ଦୂରେଇଯିବା ସ୍ୱାଭାବିକ । ସେ ମନ ଭିତରେ କିନ୍ତୁ ତୀବ୍ର ଶୂନ୍ୟତା ଅନୁଭବ କରୁଥିଲେ । ଆଉ ଯେ ଲେଖିପାରିବେ ନାହିଁ ଏହି ଧାରଣା କ୍ରମେ ସ୍ପଷ୍ଟ ହୋଇଆସୁଥିଲା ।

୧୯୪୮ ମସିହା ଜାନୁଆରୀ ମାସ ୨୮ ତାରିଖରେ ଅଲ୍ ଇଣ୍ଡିଆ ରେଡ଼ିଓ ସ୍ଥାପିତ ହେବା ପୂର୍ବରୁ ବର୍ଣ୍ଣିତ । ୧୯୫୮ ମସିହା ବେଳକୁ ଓଡ଼ିଶାରେ ଆକାଶବାଣୀ ପ୍ରତିଷ୍ଠାର ଦଶ ବର୍ଷ ହୋଇଯାଇଥିଲା । ୧୯୫୭ ମସିହା ଫେବୃୟାରୀ ମାସରେ ଦାୟିତ୍ୱ ଗ୍ରହଣ କଲେ ପି. ଭି. କୃଷ୍ଣମୂର୍ତ୍ତି । ଗୋଟିଏ ସଭାରେ ତାଙ୍କ ସହିତ ମନୋରଞ୍ଜନଙ୍କ ଦେଖା ହେଲା । ଅତି ପରିଚିତ ପରି ସେ ମନୋରଞ୍ଜନଙ୍କୁ ପଚାରିଲେ – 'ଆକାଶବାଣୀକୁ ଆସୁନା କାହିଁକି ?'

କଟକ ଆକାଶବାଣୀରେ ଆଞ୍ଚଳିକ ସମ୍ବାଦ ପ୍ରସାରଣ ହେବାପାଇଁ ସ୍ଥିର ହେଲା । ପୁଣି ସବ୍-ଏଡିଟର୍ ପୋଷ୍ଟପାଇଁ ବିଜ୍ଞାପନ ଦିଆଗଲା । ମନୋରଞ୍ଜନ ଦରଖାସ୍ତ ଦେଲେ ଓ ବଛା ମଧ୍ୟ ହେଲେ । ୧୯୫୮ ମସିହା ମେ ମାସରେ ସେ କଟକ ଆକାଶବାଣୀରେ ସମ୍ବାଦ ବିଭାଗରେ ସବ୍-ଏଡିଟର୍ ଭାବେ ଯୋଗ ଦେଲେ ।

୧୯୬୧ ମସିହାରେ ମନୋରଞ୍ଜନ ଆକାଶବାଣୀର ନାଟକ ବିଭାଗକୁ ପ୍ରଯୋଜକଭାବେ ଆସିଲେ । ଏହି କର୍ମମୟ ଜୀବନ ହିଁ ତାଙ୍କୁ ଜଣେ ସଫଳ ନାଟ୍ୟକାର ହେବାର ସୁଯୋଗ ଦେଲା । ନାଟକ ବିଭାଗରେ ରହିବା ସମୟରେ ସର୍ବଭାରତୀୟ ସ୍ତରରେ ଅନେକ ବେତାର ନାଟକ ରଚନା କଲେ । ସେ ଓଡ଼ିଶାର କଳା, ସାହିତ୍ୟ ଓ ସଂସ୍କୃତିର ବିକାଶରେ ଉଲ୍ଲେଖଯୋଗ୍ୟ କାମ କଲେ । ସେଥିମଧ୍ୟରେ ଦଶହରା ସମୟରେ ମାଆ ଦୁର୍ଗାଙ୍କୁ ନୈବେଦ୍ୟସ୍ୱରୂପ ସ୍ୱତନ୍ତ୍ର ରୂପକ ପ୍ରସାରଣ, ପ୍ରସିଦ୍ଧ ରଥଯାତ୍ରାର ଧାରା ବିବରଣୀ ପ୍ରଦାନ, କୁମାର ଉତ୍ସବ ପାଳନ ପ୍ରଭୃତି ଅନ୍ତର୍ଗତ ।

୧୯୬୨ରୁ ୧୯୬୬ ମସିହା ଭିତରେ ମନୋରଞ୍ଜନଙ୍କ ଲିଖିତ ଏକାଙ୍କିକାଗୁଡ଼ିକ 'ମହାସମୁଦ୍ର' ନାମକ ଏକାଙ୍କିକା ସଂକଳନରେ ପ୍ରକାଶ ପାଇଲା । ଏହି ସମୟ ଭିତରେ ଅର୍ଥାତ୍ ୧୯୬୩ ମସିହାରେ ରଚିତ ହୋଇଥିବା ଏକାଙ୍କିକାଗୁଡ଼ିକ 'ଛୋଟ ନାଟକ' ଶିରୋନାମରେ ପ୍ରକାଶିତ ହେଲା । ୧୯୬୨ରୁ ୧୯୬୮ ମସିହା ମଧ୍ୟରେ ରଚିତ ଏକାଙ୍କିକାଗୁଡ଼ିକ 'ନାଟ୍ୟଗୁଚ୍ଛ' ଶୀର୍ଷକରେ ୧୯୮୦ ମସିହାରେ ପ୍ରକାଶ ପାଇଲା ।

୧୯୬୪ ମସିହାରେ କଟକରେ 'ସୃଜନୀ' ନାଟ୍ୟସଂସ୍ଥା ଗଠିତ ହେଲା । ଏହା ଏକ ସାମୟିକ ସୌଖୀନ ନାଟ୍ୟଗୋଷ୍ଠୀ ଅବଶ୍ୟ ନ ଥିଲା । ଏହା ନବ ନାଟ୍ୟ ଆନ୍ଦୋଳନକୁ ତ୍ୱରାନ୍ୱିତ କରିବାପାଇଁ ଗଢ଼ା ହୋଇଥିଲା । ଓଡ଼ିଆ ନାଟ୍ୟ କ୍ଷେତ୍ରରେ ଏକ ନୂତନ ଦିଗ୍‌ଦର୍ଶନ ଦେବା ଏହାର ଲକ୍ଷ୍ୟ ଥିଲା । ମନୋରଞ୍ଜନ ଏହାର ଅନ୍ୟତମ ପ୍ରତିଷ୍ଠାତା ଥିଲେ । ତାଙ୍କ ରଚିତ 'ସାଗର ମନ୍ଥନ' ଏହି ନୂତନ 'ସୃଜନୀ' ନାଟ୍ୟ ସଂସ୍ଥା ଆନୁକୂଲ୍ୟରେ ନାରୀ ସେବା ସଦନ ମଞ୍ଚରେ ପରିବେଷିତ ହେଲା ।

## ସାଗର ମନ୍ଥନ

୧୯୬୪ ମସିହାରେ ନାଟ୍ୟକାର ମନୋରଞ୍ଜନ 'ସାଗର ମନ୍ଥନ' ନାଟକ ରଚନା କଲେ । ଏହା J. B. Pristley ଙ୍କର ଇଂରାଜୀ ନାଟକ । 'An Inspector Calls' ର ଛାୟାନୁବାଦ ଅଟେ ।

ନାଟକରେ ସନ୍ଧ୍ୟା ଦାସ ବୋଲି ଝିଅଟିଏ ବିଷ ଖାଇ ମରିଯାଇଥିଲା । ତା'ର ଜୀବନରେ ବହୁ ଚରିତ୍ର କିଛି ସମୟପାଇଁ ଆସିଥିଲେ । କିନ୍ତୁ ସନ୍ଧ୍ୟାର ମୃତ୍ୟୁପାଇଁ ସମସ୍ତେ ନିଜ ନିଜର ଦାୟିତ୍ୱ ଖସାଇ ଦେଇଥିଲେ । ଏହି ଦାୟିତ୍ୱ ଏଡ଼ାଇଦେବା କଥାଟି ଥିଲା ନାଟକର କେନ୍ଦ୍ରବିନ୍ଦୁ । ସେହି କଥାଟି ନାଟକର ଗୋଟିଏ ଚରିତ୍ର ଅବଧୂତ ରାଓ ନାଟକର ଅନ୍ୟ ଏକ ଚରିତ୍ର ମିସ୍ ପଟ୍ଟନାୟକଙ୍କୁ ଲକ୍ଷ୍ୟ କରି ଚେତାବନୀ ଦେଇଥିଲେ –

''ମିସ୍ ପଟ୍ଟନାୟକ, ଗୋଟିଏ ସନ୍ଧ୍ୟା ଦାସ ମରିଯାଇଛି । କିନ୍ତୁ ଆମ ଭିତରେ ବଞ୍ଚିଛନ୍ତି ଲକ୍ଷ ଲକ୍ଷ ସନ୍ଧ୍ୟା ଦାସ, ଯେଉଁମାନଙ୍କ ଜୀବନରେ ଆଶା, ଭରସା, ଭୟ, ଭାବନା, ଦୁଃଖ, ସୁଖର ସୁଅ ଆମ ଜୀବନ ସଙ୍ଗେ ଘୂରିବୁଲୁଛି । ଜୀବନ ପ୍ରବାହର ସେହି ମହା ଗତିରେ କେହି ପୃଥକ୍ ନୁହେଁ । ଆମେ ସମସ୍ତେ ମିଶି ଏକ । ପ୍ରତ୍ୟେକ ଆମେ ପ୍ରତ୍ୟେକ ପାଇଁ ଦାୟୀ । ମନେରଖନ୍ତୁ, 'ମଣିଷ ଯଦି ଭୁଲିଯାଏ ଏହି ମହା ଶିକ୍ଷା, ତାକୁ ଏହା ଶିଖିବାକୁ ପଡ଼ିବ ନିଆଁର କୁଣ୍ଡଳି ଭିତରେ... ଆଉ ନିର୍ମମ ବେଦନାର ଆର୍ତ୍ତନାଦ ଭିତରେ.... ।''

ଅବଧୂତ ରାଓଙ୍କ ପଛପଟେ ସହସ୍ର ଅଗ୍ନିଶିଖା ଜଳି ଉଠୁଥିଲା । ରାଓ ଚାଲିଗଲା ପରେ ସେହି ଲେଲିହାନ ଅଗ୍ନିପଟଳ ଲିଭି ଯାଇଥିଲା ।

ଏହି ଅଗ୍ନିଶିଖା ଦର୍ଶକ ମନରେ ଚମକ ସୃଷ୍ଟି କରିଥିଲା । ବୌଦ୍ଧିକ ଚେତନାକୁ ସ୍ପନ୍ଦିତ କରିଥିଲା ବୋଲି ନାଟ୍ୟକାର ତାଙ୍କ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି ।

'ସାଗର ମନ୍ଥନ' ଥିଲା ଏକ ଉତ୍କଣ୍ଠାପୂର୍ଣ୍ଣ ନାଟକ । ଦୈନିକ 'ସମାଜ' ନାଟକ ଉପରେ ମତାମତ ଦେଇ ଲେଖିଥିଲା–

'ସାଗର ମନ୍ଥନ' ପରି ନାଟକ ଯଦି ବର୍ଷରେ ଗୋଟିଏ ଦୁଇଟି ଓଡ଼ିଶା ରଙ୍ଗମଞ୍ଚରେ ଅଭିନୀତ ହୁଏ, ତା'ହେଲେ ଆମ ନାଟକର ଭବିଷ୍ୟତ୍ ସମ୍ପର୍କରେ ନୈରାଶ୍ୟର ଆଉ କୌଣସି ଅବକାଶ ରହିବ ନାହିଁ ।''

× × ×

ଏହା ଓଡ଼ିଶାର ରଙ୍ଗମଞ୍ଚରେ ଏକ ଅନବଦ୍ୟ ଅବଦାନ । ଦୈନିକ 'ପ୍ରଜାତନ୍ତ୍ର' ଲେଖିଥିଲା –

'ସୃଜନୀ'ର ବିପୁଳ ସୃଜନଶକ୍ତିର ସର୍ବପ୍ରଥମ ପରିଚୟ ହେଉଛି 'ସାଗର ମନ୍ଥନ' । ପରିବେଷଣ, ମଞ୍ଚସଜ୍ଜା, ଆଲୋକ ସମ୍ପାତ ଓ ସର୍ବୋପରି

ରଚନାର ନୂତନତା ଓ ପାରମ୍ପରିକ ବ୍ୟତିକ୍ରମ ଭିତରେ ଏକ ବିଶ୍ୱବିଖ୍ୟାତ ନାଟ୍ୟକାର ପ୍ରିଷ୍ଟ୍ଲିଙ୍କର 'ଆନ୍ ଇନ୍‌ସପେକ୍ଟର କଲ୍‌ସ'ର ଭିତ୍ତି ଉପରେ 'ସାଗର ମନ୍ଥନ'ର ଜନ୍ମ ।

'ସୃଜନୀ'ର ପ୍ରଥମ ଉଦ୍ୟମ ସଫଳ ଓ ଗୌରବାନ୍ୱିତ ହୋଇଯାଇଛି ।''

ନାଟ୍ୟକାର ନିଜେ ମତ ଦେଇଥିଲେ – ''ଯେଉଁମାନେ ପ୍ରଚାର କରିଆସୁଥିଲେ ଯେ ସାଧାରଣ ଦର୍ଶକ ରଙ୍ଗମଞ୍ଚରେ କୌଣସି ଉଚ୍ଚାଙ୍ଗ ନାଟକ ଗ୍ରହଣ କରିପାରିବେ ନାହିଁ, ସେମାନଙ୍କର ଯୁକ୍ତି ମ୍ଳାନ ହୋଇଆସିଲା । .... ଗୋଟିଏ କଥାରେ ଓଡ଼ିଶାର ରଙ୍ଗମଞ୍ଚପାଇଁ ଖୋଲିଗଲା ନୂଆ ଦିଗନ୍ତ ।''

## ବନହଂସୀ

'ସୃଜନୀ'ର ଦ୍ୱିତୀୟ ନାଟକ ଥିଲା 'ପ୍ରତାପଗଡ଼ରେ ଦି' ଦିନ' । 'ସାଗର ମନ୍ଥନ' ପରେ କେଉଁ ନାଟକ ମଞ୍ଚସ୍ଥ ହେବ, ତାହା ଉପରେ ଆଲୋଚନା ଚାଲିଲା । ମନୋରଞ୍ଜନଙ୍କ ନାଟକ 'ବନହଂସୀ'କୁ ମଞ୍ଚସ୍ଥ କରିବାପାଇଁ ପ୍ରଥମେ ସର୍ବସମ୍ମତ ମତ ପ୍ରକାଶ ପାଇ ନ ଥିଲା । ଗୋଟିଏ ଅନୁବାଦ ନାଟକ ମଞ୍ଚସ୍ଥପାଇଁ କେତେକ ମତ ଦେଲେ । ମାତ୍ର ମନୋରଞ୍ଜନଙ୍କ ନିଜ ମତ ଥିଲା – ''ବିଶ୍ୱ ନାଟକ କ୍ଷେତ୍ରରେ ଯେଉଁ ପରିବର୍ତ୍ତନ ଚାଲିଛି, ସେଥିରୁ ଆମେ ବିଚ୍ଛିନ୍ନ ହୋଇପାରିବା ନାହିଁ । ଆମକୁ ଦିନେ ନା ଦିନେ ସେଥିରେ ସାମିଲ ହେବାକୁ ପଡ଼ିବ । ଦିନେ ନା ଦିନେ ଆଧୁନିକ ଚିନ୍ତାଧାରାର ନାଟକ ଆମକୁ ଲେଖିବାକୁ ହେବ । ତାହା ମଞ୍ଚସ୍ଥ କରିବାକୁ ପଡ଼ିବ । ଭବିଷ୍ୟତ୍ ଯଦି ଏହାକୁ ସତ୍ୟ ବୋଲି ପ୍ରମାଣ କରେ, ତା'ହେଲେ ସେହି ଦିନଟି କାହିଁକି ଏବେ ନ ହେବ । × × × ସମ୍ପୂର୍ଣ୍ଣ ପ୍ରସ୍ତୁତ ହୋଇ ରହିଥିବା ଓ ଆକାଶବାଣୀ ମାଧ୍ୟମରେ ପରୀକ୍ଷିତ ହୋଇ ରହିଥିବା 'ବନହଂସୀ' କାହିଁକି ସେ ସୌଭାଗ୍ୟରୁ ବଞ୍ଚିତ ହେବ ? 'ସୃଜନୀ' କାହିଁକି ସେ ଗୌରବର ଅଧିକାରୀ ନ ହେବ ?

ଶେଷରେ 'ବନହଂସୀ' ନାଟକ ମଞ୍ଚସ୍ଥ ହେବା ସ୍ଥିର ହେଲା । ୧୯୬୮ ମସିହା ଜୁନ୍ ମାସ ୨ ତାରିଖରେ ନାରୀ ସେବା ସଦନରେ ଏହା ମଞ୍ଚସ୍ଥ ହେଲା ।

ନାଟ୍ୟକାର ମୂଳ କଥାବସ୍ତୁର ସୂଚନା ଦେଇ ଲେଖିଛନ୍ତି – ''ମଣିଷ ମନ ଭିତରେ ଯାହାସବୁ ଘଟିଯାଉଛି, ସେହିପରି ଏକ ଘଟଣା ପ୍ରବାହକୁ କେନ୍ଦ୍ର କରି ମନର ସଂଘାତକୁ ରଙ୍ଗମଞ୍ଚ ମାଧ୍ୟମରେ ଦର୍ଶକ ନିକଟରେ ପହଞ୍ଚାଇଦେବା 'ବନହଂସୀ'ର ଥିଲା ମୂଳ ଲକ୍ଷ୍ୟ ।''

ନାଟକ ସଙ୍ଗଠନର ବିଶେଷତ୍ୱ ମଧ୍ୟ ସେ ସ୍ପଷ୍ଟତର କରିଦେଇଛନ୍ତି –

''ମୋ ବିଚାରରେ ମଣିଷ ମନ ଭିତରେ କାଳର ପାର୍ଥକ୍ୟ ରହିପାରୁ ନାହିଁ । ତା'ର ଚିନ୍ତାରାଜ୍ୟରେ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ୍ ସୁବିଧା ଅନୁସାରେ ଯିଏ ଯେତେବେଳେ ଆସି ପହଞ୍ଚି ଯାଉଛନ୍ତି... ମନର ଏହି ଜଟିଳ ଅଥଚ ସୂକ୍ଷ୍ମ ସ୍ଥିତିର ଚିତ୍ରଣପାଇଁ ମୁଁ 'ବନହଂସୀ'ରେ ସମୟର ସମୟହୀନତା ପରିକଳ୍ପନା କରିଛି ।''

ଗୋଟିଏ ସରଳରେଖା ଉପରେ ଆସି ପହଞ୍ଚି ଯାଇଛନ୍ତି ଅତୀତ, ବର୍ତ୍ତମାନ ଆଉ ଭବିଷ୍ୟତ୍...... ।''

'ବନହଂସୀ'ର ସମୀକ୍ଷା କରି ଲକ୍ଷ୍ନୌ 'ନ୍ୟାସନାଲ ହେରାଲ୍ଡ' ସମ୍ବାଦପତ୍ର ମଧ୍ୟ ସେହିଭଳି ମତ ଦେଇଥିଲେ –

''ନାଟକର ଅଧିକାଂଶ କାର୍ଯ୍ୟ ଡାକ୍ତରଙ୍କର ମନ ଭିତରେ ଘଟିଯାଇଛି ଓ ତାଙ୍କପାଇଁ ସମୟ ସ୍ଥିର ଅଚଞ୍ଚଳ ।''

ଦୈନିକ 'ସମାଜ', 'ପ୍ରଜାତନ୍ତ୍ର', 'ମାତୃଭୂମି' ପ୍ରଭୃତି ପତ୍ରିକାରେ ଏହା ଉଚ୍ଚ ପ୍ରଶଂସିତ ହୋଇଥିଲା । ରଚନା ଓ ଉପସ୍ଥାପନା କ୍ଷେତ୍ରରେ ସମସ୍ତ ଗତାନୁଗତିକ ଧାରାକୁ ଉପେକ୍ଷା କରି 'ବନହଂସୀ' ଯେ ଏକ ନୂତନ ବୈପ୍ଳବିକ ଧାରା ସୃଷ୍ଟି କରି ଓଡ଼ିଆ ନାଟ୍ୟକଳାର ମାନକୁ ଅନେକ ଦୂର ଯେ ଆଗେଇନେଲା, ତାହା ସମସ୍ତେ ମୁକ୍ତକଣ୍ଠରେ ସ୍ୱୀକାର କରିଥିଲେ । ପ୍ରଖ୍ୟାତ ଇଂରାଜୀ ପତ୍ରିକା 'ଅମୃତ ବଜାର ପତ୍ରିକା' ମନ୍ତବ୍ୟ ଦେଇଥିଲା –

''ହୁଏତ ଦିନେ ଏହା ପ୍ରମାଣ କରିବ ଯେ ନାଟକ ବାଟ ଭାଙ୍ଗି ଏକ ନୂଆ ମୋଡ଼ ନେଲା ।''

୧୯୭୦ ମସିହାପାଇଁ 'ବନହଂସୀ' ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାରପାଇଁ ବଛା ଯାଇଥିଲା । କିନ୍ତୁ ସେ ବର୍ଷ ତାହା ପାଇଲା ନାହିଁ । ୧୯୭୧ ମସିହାରେ ମଧ୍ୟ ପୁରସ୍କାରପାଇଁ ପ୍ରଥମ ପର୍ଯ୍ୟାୟରେ ସୁପାରିସ ହେଲା । ମାତ୍ର ଜଣେ ପରାମର୍ଶଦାତା ଜଣାଇଲେ ଯେ 'ବନହଂସୀ' ନାଟକଟି ଇବସନ୍‌ଙ୍କ ନାଟକ 'Wild Duck' ର ଅନୁବାଦ ।

## ଅମୃତସ୍ୟ ପୁତ୍ର

ଏହାପରେ ମନୋରଞ୍ଜନ ରଚନା କଲେ ଆଉ ଏକ ନାଟକ – 'ଅମୃତସ୍ୟ ପୁତ୍ର' । ଏହା ସୃଜନୀ ନାଟ୍ୟ ସଂସ୍ଥା ଦ୍ୱାରା ୧୯୭୧ ମସିହାରେ ମଞ୍ଚସ୍ଥ ହେଲା ।

ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ନାଟ୍ୟଚିନ୍ତାର ସମନ୍ୱୟରେ ଏହି ନାଟକର ବିଷୟବସ୍ତୁ ଗଢ଼ିଉଠିଛି ।

ନାଟକର ମୂଲ୍ୟାୟନ କରି 'ସମାଜ' ଲେଖିଲେ – ''ଆଜିର ସଭ୍ୟତା ବିକାରଗ୍ରସ୍ତ । ଏ ଯୁଗର ଜୀବନ ନାନା ଜଟିଳତାର ନିଗଡ଼ ବନ୍ଧନରେ ବାନ୍ଧି ହୋଇ ଛଟପଟ । ଚତୁର୍ଦ୍ଦିଗରେ ସନ୍ଦେହ, ଅବିଶ୍ୱାସ, ଭୟ ଓ ହିଂସାର ବାତାବରଣ ଓ ଗତାନୁଗତିକତା ନୈତିକତାର କାରା ପ୍ରାଚୀର । ଏସବୁ ଚୂର୍‌ମାର କରି ସୃଷ୍ଟି ଗଢ଼ିବାକୁ ହେବ । ଏହାହିଁ ଥିଲା ନାଟକର ମୂଳବାଣୀ ।''

ନାଟକଟି ବଳିଷ୍ଠ ଥିଲା । ଅଭିନୟ ଓ ଅଭିନବ ସଂଯୋଜନା ପ୍ରଥମରୁ ଶେଷଯାଏଁ ଦର୍ଶକଙ୍କୁ ଧରି ରଖେ ।

'ସମାଜ' ପୁଣି ଲେଖିଥିଲା - ''ଏ ନାଟକ କେବଳ ଉପଭୋଗପାଇଁ ନୁହେଁ, ଏହା ମନ୍ଥନପାଇଁ, ବୌଦ୍ଧିକ ଚିନ୍ତାପାଇଁ, ଜୀବନ ଜିଜ୍ଞାସାମାନଙ୍କ ଭିତ୍ତିର ସନ୍ଧାନପାଇଁ.... ଏ ଯୁଗର ନାନା କାହିଁକିର ମନ୍ତ୍ର ଖୋଜି ବାହାର କରିବାପାଇଁ । ଦର୍ଶକ ଆଗରେ ଏହା ଏକ ଚ୍ୟାଲେଞ୍ଜ୍ ।''

ଦୈନିକ 'ପ୍ରଜାତନ୍ତ୍ର' ମଧ୍ୟ ମତ ଦେଇଥିଲା- ''ଓଡ଼ିଶାର ନାଟ୍ୟ ଜଗତରେ ନୂତନତ୍ୱ ଓ ମୌଳିକତା ସୃଷ୍ଟି ହିଁ 'ସୃଜନୀ'ର ବୈଶିଷ୍ଟ୍ୟ । 'ଅମୃତସ୍ୟ ପୁତ୍ର'ର ପ୍ରଯୋଜନା ମଧ୍ୟ ଏହି ବୈଶିଷ୍ଟ୍ୟରୁ ବାଦ ପଡ଼ିନି । ଯୁଗ ଯୁଗର ଯନ୍ତ୍ରଣା ଏହାର ବାର୍ତ୍ତା । ପ୍ରଯୋଜନା ଦୃଷ୍ଟିରୁ ଏଭଳି ସଫଳ ନାଟକ କ୍ୱଚିତ୍ ଦେଖିବାକୁ ମିଳେ ।''

ନୟାଗଡ଼ କଲେଜରେ ମଧ୍ୟ ଏହି ନାଟକଟି ଅଭିନୀତ ହୋଇଥିଲା । ବରିଷ୍ଠ ଅଧ୍ୟାପକ ନିମାଇଁ ପଟ୍ଟନାୟକ ନାଟ୍ୟକାରଙ୍କୁ ନିଜର ମତାମତ ଜଣାଇ ଲେଖିଥିଲେ - ''ଅମୃତସ୍ୟ ପୁତ୍ର ମଞ୍ଚସ୍ଥ ହେଲା । ନୟାଗଡ଼ ଭଳି ଜାଗାରେ ଯେଉଁଠି କେବଳ ଗତାନୁଗତିକ ନାଟକମାନ ବର୍ଷକୁ ଅନ୍ତତଃ ଅଧ ଡଜନ ମଞ୍ଚସ୍ଥ ହୁଏ, ସେଠି ଭାରି ଜମିଲା । ଲୋକଙ୍କୁ କାହିଁକି କିଛି ଅବୁଝା ରହିଲା ନାହିଁ । ନାଟକ ଶେଷ ହେଲା ପର୍ଯ୍ୟନ୍ତ କେହି ହଲ୍ ନାହିଁ କି ଚଲ୍ ନାହିଁ । ନାଟକ ଶେଷ ହେଲା ବୋଲି ମଧ୍ୟ ଜାଣିପାରିଲେ ନାହିଁ ।''

କବିଗୁରୁ ରବୀନ୍ଦ୍ରନାଥଙ୍କ ଗୋଟିଏ ପଙ୍‌କ୍ତି ଉଦ୍ଧୃତ କରି ଅଧ୍ୟାପକ ପୁଣି ଲେଖିଥିଲେ -

ରବୀନ୍ଦ୍ରନାଥ କହିଥିଲେ - ''ଅନ୍ତରେ ଅତୃପ୍ତ ରବେ, ସାଙ୍ଗକରି ମନେ ହବେ, ଶେଷ ହୟ ହଇଲନା ଶେଷ - ।''

ସେହି ଅନୁଭୂତି ଦେଲା ।''

ନାଟ୍ୟକାର ମଧ୍ୟ ଭାଷଣରେ କହିଥିଲେ - ''ଆଧୁନିକ ନାଟକ ବିରୋଧରେ ରକ୍ଷଣଶୀଳତାର ଅପପ୍ରଚାରର ମୁଖା ଖୋଲିଦେବ ସତରେ 'ଅମୃତସ୍ୟ ପୁତ୍ରଃ' ।''

## ଅରଣ୍ୟ ଫସଲ

୧୯୬୯ ମସିହାରେ ନାଟ୍ୟକାର ରଚନା କଲେ ନାଟକ — 'ଅରଣ୍ୟ ଫସଲ', ଏହା ଫ୍ରେଣ୍ଡ୍‌ସ ଇଉନିୟନଦ୍ୱାରା ମଞ୍ଚସ୍ଥ ହୋଇଥିଲା । ଏହା ହେଉଛି ଗୋଟିଏ ସେଟ୍‌ର ନାଟକ । ଡାକବଙ୍ଗଳାର ରୁମ୍‌ଟିର ଗୋଟିଏ ସେଟ୍‌ରେ ନାଟକ ଅଭିନୀତ ହେଲା । ଚରିତ୍ରମାନଙ୍କ କଥାବାର୍ତ୍ତାରେ ଚଳପ୍ରଚଳର କୃତ୍ରିମତା କିଛି ନ ଥିଲା । ଫଳରେ 'ବାସ୍ତବ' ଓ 'ଅଭିନୟ'ର ପାର୍ଥକ୍ୟ ଦୂର ହୋଇଯାଇଥିଲା ଦର୍ଶକଙ୍କ

ମନକୁ । ସେମାନଙ୍କୁ ପ୍ରତୀତ ହେଉଥିଲା ସେମାନେ ଦେଖୁଛନ୍ତି ଯେମିତି କିଛି ବାସ୍ତବ ଘଟଣା ।

ନାଟକ ବିଷୟରେ ଦୈନିକ 'ସମାଜ' ଲେଖିଥିଲେ – ''ଅପୂର୍ବ ଓ ଚମତ୍କାର ସଂଳାପ ସମ୍ପଦରେ ସମୃଦ୍ଧ ଏ ନାଟକ ପ୍ରଥମରୁ ଶେଷଯାକେ ଦର୍ଶକର ମନକୁ ଉତ୍କଣ୍ଠାରେ ଅଭିଭୂତ କରିଥିଲା । ସଂଳାପର ବୌଦ୍ଧିକ ବ୍ୟଞ୍ଜନା ଓ ଯୁଗପତ୍ ହାସ୍ୟ କାରୁଣ୍ୟ ଉଦ୍ରେକକାରୀ ସୁନ୍ଦର କାରୁକାର୍ଯ୍ୟ ଏ ନାଟକର ବୈଶିଷ୍ଟ୍ୟ ।''

ଦୈନିକ 'ପ୍ରଜାତନ୍ତ୍ର' ପୃଷ୍ଠାରେ ବାରିଷ୍ଟର ମୁରଲୀଧର ମହାନ୍ତି 'ଅରଣ୍ୟ ଫସଲ' ସମ୍ପର୍କରେ ଏକ ଦୀର୍ଘ ରିଭ୍ୟୁ ପ୍ରକାଶ କରିଥିଲେ । ତାହା ହେଲା – ''୧୫ ତାରିଖ ମଙ୍ଗଳବାର ସନ୍ଧ୍ୟାରେ କଳାଶ୍ରୀ ରଙ୍ଗମଞ୍ଚର 'ଅରଣ୍ୟ ଫସଲ' ନାଟକର ଅଭିନୟ ଦେଖିଲି । ନାଟକର ପରିକଳ୍ପନା, ବ୍ୟଞ୍ଜନା, ରଚନା, ସଂଳାପ, ସଂଯୋଜନା, ଇଙ୍ଗିତ ଓ ଅଭିବ୍ୟକ୍ତି ଏତେ ଦୃଢ଼, ନିର୍ଦ୍ଦୋଷ, ସାର୍ଥକ, ସଫଳ ଓ ସନ୍ତୋଷଜନକ ଯେ ହଠାତ୍ ଆଶ୍ଚର୍ଯ୍ୟ ଲାଗେ ।''

''ବହୁ ବର୍ଷ ପରେ ଓଡ଼ିଶାର ପ୍ରଖ୍ୟାତ କବି ସୀତାକାନ୍ତ ମହାପାତ୍ର ନାଟକଟିକୁ ନୂତନ ଦୃଷ୍ଟିକୋଣରୁ ବିଚାର କରିଥିଲେ । ସେ କହିଥିଲେ –

''ଅରଣ୍ୟ ଫସଲ ହେଉଛି ନିରବତାର ଏକ ନାଟକ । ଅର୍ଥାତ୍ ନାଟକର ସଂଳାପଗୁଡ଼ିକ ମଝିରେ ଯେଉଁ ନିରବତା ପଶିଯାଇଛି, ତାହା ସଂଳାପ ଅପେକ୍ଷା ବେଶି କଥା କହେ । ଅଧିକ ଭାବ ପ୍ରକାଶ କରେ ।''

'ଅରଣ୍ୟ ଫସଲ' ୧୯୭୦ ମସିହାରେ ପ୍ରକାଶ ପାଇଲା । ଛପା ହେବାର ପରବର୍ଷ ଅର୍ଥାତ୍ ୧୯୭୧ ମସିହାପାଇଁ 'ଅରଣ୍ୟ ଫସଲ' କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କଲା । ଅନୁବାଦ ମାଧ୍ୟମରେ କାଳକ୍ରମେ ଏହି ଓଡ଼ିଆ ନାଟକଟି ଓଡ଼ିଶାର ସୀମା ସରହଦ ଟପି ଚାଲିଗଲା ଅନ୍ୟ ଭାରତୀୟ ଭାଷାଗୁଡ଼ିକୁ । ପ୍ରଥମେ Oxford University Press ଏବଂ ପରେ କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ଏହା ଇଂରାଜୀରେ 'The Wild Harvest' ଶିରୋନାମରେ ପ୍ରକାଶ ପାଇଲା । ଇଂରାଜୀ ଅନୁବାଦପାଇଁ ଓଡ଼ିଶାର ଇଂରାଜୀ ବିଭାଗର ସ୍ୱନାମଧନ୍ୟ ଅଧ୍ୟାପକ ବିଧୁଭୂଷଣ ଦାସ ଏକ ସଂକ୍ଷିପ୍ତ ମୁଖବନ୍ଧ ଲେଖି ନାଟକର ଏକ ଚମତ୍କାର ତର୍ଜମା କରିଥିଲେ ।

ମଞ୍ଚସ୍ଥ ହେବା ପରେ ପ୍ରଶଂସା ସଙ୍ଗେ ସଙ୍ଗେ ଏହା କଟୁ ସମାଲୋଚନାର ଶରବ୍ୟ ମଧ୍ୟ ହୋଇଥିଲା । 'ସମାଜ'ର ପୃଷ୍ଠାରେ ସବ୍-ଏଡିଟର ଲେଖିଥିଲେ –

''ଉଦ୍ଭଟ ନାଟକ – ଅରଣ୍ୟ ଫସଲ' ।

ଏହାପରେ 'ଉଦ୍ଭଟ ନାଟକ' ଉପରେ ଆଲୋଚନା ଆରମ୍ଭ ହୋଇଗଲା । କେହି କେହି ପାଶ୍ଚାତ୍ୟ ଦେଶର 'ଆବସର୍ଡ୍' ନାଟକର ଅନୁବାଦ ବୋଲି ମତ

ଦେଲେ । ଏକାର୍ଥବୋଧକ ଶବ୍ଦ ବୋଲି କେହି କେହି କହିଲେ । 'ପ୍ରଜାତନ୍ତ୍ର' କିନ୍ତୁ ଜଣେ ଦର୍ଶକଙ୍କର ମତାମତ ପ୍ରକାଶ ପାଇଲା । ସେ ଲେଖିଥିଲେ – 'ଅରଣ୍ୟ ଫସଲ' ଦେଖିଲାପରେ ଆଉ କୌଣସି ବ୍ୟାବସାୟିକ ରଙ୍ଗମଞ୍ଚରେ ନାଟକ ଦେଖିବାକୁ କେହି ଇଚ୍ଛା କରିବେ ନାହିଁ... ।''

ନବଚେତନାର ନାଟକପାଇଁ ଅଧିକରୁ ଅଧିକ ଲେଖକ ଓ ନାଟ୍ୟଶିଳ୍ପୀ ଆକୃଷ୍ଟ ହେଲେ ।

## କାଠଘୋଡ଼ା

୧୯୭୦ ମସିହାରେ ମନୋରଞ୍ଜନ ରଚନା କଲେ 'କାଠଘୋଡ଼ା' । ଏଥିରେ ମୁଖ୍ୟତଃ ଏକ ବ୍ୟକ୍ତିତ୍ୱର 'ଆବିଷ୍କାର' । ବିଶେଷକରି ବ୍ୟକ୍ତି ଭିତରେ ଥିବା 'ବିରୋଧାଭାଷ' ବିଷୟରେ ସୂଚନା ଦିଆଯାଇଛି । ମଣିଷ ମଧ୍ୟରେ ଯେଉଁ ଦୁଇଟି ବ୍ୟକ୍ତିସତ୍ତା ବିଦ୍ୟମାନ, ସେହି ବିରୋଧାଭାଷକୁ ଦୂରେଇଦେବା ସମ୍ଭବ ନୁହେଁ । 'କାଠଘୋଡ଼ା'ର ଚାରୋଟି ଚରିତ୍ରରେ ଏହି ବ୍ୟକ୍ତିତ୍ୱ ଅନ୍ୱେଷଣରେ ଚେଷ୍ଟା ଚାଲିଛି । ଏହି ନାଟକର ପ୍ରଧାନ ଆଭିମୁଖ୍ୟ ହେଉଛି ଯନ୍ତ୍ରଣାରୁ ମୁକ୍ତି ଓ ମୁକ୍ତିରେ ଯନ୍ତ୍ରଣା । ନାଟକର ବିଭିନ୍ନ ଚରିତ୍ରମାନଙ୍କ ମାଧ୍ୟମରେ ଏହା ପ୍ରତୀକାତ୍ମକ ଭାବରେ ରୂପ ପାଇଛି ।

## ଉର୍ମି

'ଉର୍ମି' ନାଟକର ମୁଖବନ୍ଧରେ ନାଟ୍ୟକାର ଲେଖିଛନ୍ତି ଯେ ଏହା ଲେଖିଲାବେଳେ ଗୋଟିଏ ଘଟଣା ତାଙ୍କ ମନକୁ ଆସିଥିଲା । ଦିଲ୍ଲୀର ଏକ ବୋର୍ଡିଂହାଉସ୍‌ରେ ସେ ରହୁଥାନ୍ତି । ଜଣେ ଭଦ୍ରଲୋକଙ୍କ ସଙ୍ଗେ ତାଙ୍କର ସାକ୍ଷାତ୍ ହେଲା । ସେହି ଭଦ୍ରଲୋକଙ୍କ ନାମ ଥିଲା ଦେବକାନ୍ତ ମାଲହୋତ୍ରା । ତାଙ୍କ ସଙ୍ଗେ କଥାବାର୍ତ୍ତା ଭିତରେ ସେ ତାଙ୍କ ଘରକଥା ବିଶେଷତଃ ଛୁଆପିଲା ଓ ସ୍ତ୍ରୀ ଶ୍ରୀମତୀ ମାଲହୋତ୍ରାଙ୍କ କଥା ପଚାରିଲେ । ହଠାତ୍ ସେହି ଭଦ୍ରଲୋକଙ୍କ ମୁହଁ ମଳିନ ପଡ଼ିଗଲା । ସେ 'ପ୍ଲିଜ୍' 'ପ୍ଲିଜ୍' କହି ଠିଆ ହୋଇପଡ଼ିଲେ ଓ ନୀରବରେ ଖଣ୍ଡେ ସିଗାରେଟ୍ ଲଗାଇଲେ ଓ ନିସ୍ତବ୍ଧରେ ଘରୁ ବାହାରିଗଲେ ।

ନାଟ୍ୟକାର ମୁଖବନ୍ଧରେ ଲେଖିଛନ୍ତି – 'ଉର୍ମି' ଲେଖିଲାବେଳେ ନାଟକର ଫ୍ରେମ୍ ଭିତରକୁ ପଶି ଆସିଥିଲେ କେତେ ଜଣା ଘଟଣା । କେତେ ପ୍ରତ୍ୟକ୍ଷ ଚରିତ୍ରର ଅଂଶବିଶେଷ... ଯାହା ଦେବକାନ୍ତ ମାଲହୋତ୍ରା ଓ ଅଳକାନନ୍ଦାଙ୍କର ପାରସ୍ପରିକ ସମ୍ପର୍କ ଓ ଚରିତ୍ର ପରି ମୋତେ ସେତେବେଳକୁ ପ୍ରଭାବିତ କରିସାରିଥିଲା । ଅନ୍ୟ କଥାରେ, କେତେଗୁଡ଼ିଏ ଖଣ୍ଡିତ... ଅସଂଲଗ୍ନ ଓ ବିକ୍ଷିପ୍ତ ଘଟଣା ଓ ପରିଚିତ ଚରିତ୍ରର ମିଳିତ ପରିପ୍ରକାଶ... ଥିଲା ଉର୍ମିର ଭିତ୍ତିଭୂମି ।''

## ଶବ୍ଦଲିପି

'ଶବ୍ଦଲିପି' ନାଟକର କେନ୍ଦ୍ରବିନ୍ଦୁ ସମ୍ପର୍କରେ ନାଟ୍ୟକାର ଲେଖିଛନ୍ତି - ''ଶହ ଶହ ହଜାର ହଜାର ବର୍ଷ ତଳେ ସେତେବେଳେ କୌଣସି ସ୍ଥିତି... ସମ୍ପର୍କ ଓ ଭାବପ୍ରକାଶ କରିବାକୁ 'ଶବ୍ଦ'ଗୁଡ଼ିକର ସୃଷ୍ଟି ହୋଇଥିଲା । କାଳକ୍ରମେ କିନ୍ତୁ ବ୍ୟକ୍ତିଗତ ବା ସାମାଜିକ ଚେତନାର ପରିବର୍ତ୍ତନ ଭିତରେ ସେଇ ପୁରୁଣା 'ଶବ୍ଦ'ଗୁଡ଼ିକ ନିଜକୁ ପ୍ରକାଶ କରିବାର ସାମର୍ଥ୍ୟ ହରାଇ ବସିଲେ... ଅଥଚ ସେଇ ଶବ୍ଦଗୁଡ଼ିକର ପୁରୁଣା ଅର୍ଥକୁ ଜାବୁଡ଼ି ଧରି ପରିବର୍ତ୍ତିତ ସମାଜର ଆଧୁନିକ ଲୋକଟି ଯନ୍ତ୍ରଣାରେ ଛଟପଟ ହେଉଥିଲା ।''

ମୋ ପରିକଳ୍ପନାରେ ସେଇ କ୍ଷତାକ୍ତ ଯନ୍ତ୍ରଣା ଥିଲା ଏଇ ନାଟକର କେନ୍ଦ୍ରବିନ୍ଦୁ ।''

'ଶବ୍ଦଲିପି' ନାଟକ ରଚିତ ହେଲା ୧୯୭୫ ମସିହାରେ । ଏହା ପ୍ରଥମେ ମଞ୍ଚସ୍ଥ ହେଲା ପୁରୀର ନାଟ୍ୟ ଅନୁଷ୍ଠାନ 'ସ୍ଥିତି-ମୈତ୍ରୀ'ଦ୍ୱାରା । ନିର୍ଦ୍ଦେଶକ ଥିଲେ ବିଶିଷ୍ଟ ନାଟ୍ୟ ନିର୍ଦ୍ଦେଶକ ରାଧାକୃଷ୍ଣ ମହାପାତ୍ର । ନାଟକଟି ସଫଳତାପ୍ରାପ୍ତ ହୋଇଥିଲା ।

'ଶବ୍ଦଲିପି' ନାଟକଟି ବିଭିନ୍ନ ଭାଷାରେ ଅନୂଦିତ ହେବାର ଗୌରବ ଅର୍ଜନ କଲା । ବିଭିନ୍ନ ଭାଷାଭାଷୀ ମଞ୍ଚରେ ଅଭିନୀତ ହେବାର ସୌଭାଗ୍ୟ ନାଟକକୁ ମିଳିଥିଲା । ଏହାର ଇଂରାଜୀ ଅନୁବାଦ ମଧ୍ୟ ପ୍ରକାଶ ପାଇଥିଲା - 'A Game of Words' ଶୀର୍ଷକରେ ।

ନାଟକଟି ବହୁ ଆଲୋଚକଙ୍କ ସଦୟ ଦୃଷ୍ଟି ଆକର୍ଷଣ କରିଥିଲା । କଲିକତାରୁ ପ୍ରକାଶିତ ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡର ପ୍ରତିନିଧି ପ୍ରଖ୍ୟାତ ସାମ୍ବାଦିକ ସୁନୀତି ଘୋଷ ଲେଖିଥିଲେ -'' 'ଶବ୍ଦଲିପି' ସମାଜର ଏକ ପ୍ରତୀକ । ଏହା ମଧ୍ୟ ଦାର୍ଶନିକ ତତ୍ତ୍ୱପୂର୍ଣ୍ଣ । ଏହି ନାଟକର ହିନ୍ଦୀ ଅନୁବାଦ ଇଣ୍ଟରନ୍ୟାସନାଲ ଥିଏଟର ମଞ୍ଚସ୍ଥ କରାଇଥିବାରୁ ବହୁ ପ୍ରଶଂସାର ଅଧିକାରୀ ।''

## କ୍ଳାନ୍ତ ପ୍ରଜାପତି

'କ୍ଳାନ୍ତ ପ୍ରଜାପତି' ରଚନା କଲାବେଳେ ମନୋରଞ୍ଜନଙ୍କର ଅତୀତର ଏକ ଘଟଣା ମନେ ପଡ଼ିଯାଇଥିଲା । କାର୍ଯ୍ୟ ଉପଲକ୍ଷେ ନାଟ୍ୟକାର ଭାରତର ଦକ୍ଷିଣରେ ଅବସ୍ଥିତ କନ୍ୟାକୁମାରୀ ଯାଇଥିଲେ । ତାଙ୍କ ସଙ୍ଗେ ହୋଟେଲରେ ରହିଥିଲେ ମଣିପୁରର ଜଣେ ଭଦ୍ର ବ୍ୟକ୍ତି । ରହଣିର ପରଦିନ ସେ ସେମାନଙ୍କ ସହିତ ସମୁଦ୍ର ତୀରସ୍ଥ ସୂର୍ଯ୍ୟୋଦୟ ଦେଖିବାକୁ ଯାଇଥିଲେ । ଫେରିବାବେଳେ ସେହି ଭଦ୍ରବ୍ୟକ୍ତିଙ୍କ ପତ୍ନୀ ତାଙ୍କୁ ଦକ୍ଷିଣାବର୍ତ୍ତ ଶଙ୍ଖଟିଏ କିଣିଦେବାକୁ କହିଲେ । ତା'ର କାରଣ ପଚାରନ୍ତେ ବନ୍ଧୁପତ୍ନୀ ଉତ୍ତର ଦେଲେ ତାଙ୍କ ଆଡ଼େ ଶଙ୍ଖ ମିଳେ ନାହିଁ । ତା'ପରେ ସେମାନେ

ଶଙ୍ଖକୁ ପବିତ୍ର ବୋଲି ମନେକରନ୍ତି । ଏହା କହି ବନ୍ଧୁପତ୍ନୀ ତାଙ୍କ ହାତକୁ ଶଙ୍ଖଟି ବଢ଼ାଇଦେଲେ ଓ ପଚାରିଲେ କିଛି ଅନୁଭବ କରିପାରୁଛନ୍ତି ବୋଲି ! ମନୋରଞ୍ଜନ ଶଙ୍ଖଟି ଧରିବାମାତ୍ରେ ରୋମାଞ୍ଚିତ ହୋଇଉଠିଲେ । ମନ ଭିତରେ ଅନୁଭବ କଲେ ପବିତ୍ରତା ।

'କ୍ଳାନ୍ତ ପ୍ରଜାପତି' ଲେଖିଲାବେଳେ ଏହି ଅନୁଭୂତି ତାଙ୍କ ମନକୁ ଆସିଥିଲା । ଶଙ୍ଖ ହୋଇଗଲା ପବିତ୍ରତାର ପ୍ରତୀକ । ତା'ରି ଧ୍ୱନି ଭିତରେ ଆଧୁନିକ ସଭ୍ୟତାରେ 'ଭାଙ୍ଗି ଯାଇଥିବା' ମୂଲ୍ୟବୋଧ ପ୍ରତିଷ୍ଠାପାଇଁ ନାଟକର ଶେଷ ଦୃଶ୍ୟରେ ଲେଖକଙ୍କର ଆହ୍ୱାନ ନାୟକ ଅନୁପମ ମାଧ୍ୟମରେ –

ରଶ୍ମି — ଏ ସବୁ କାହିଁକି ?

ଅନୁପମ — ସ୍ମୃତି.....

ରଶ୍ମି — କୋଉ ସ୍ମୃତି ?

ଅନୁପମ — ଜୀବନ ସମୁଦ୍ରର... ମହାସମୁଦ୍ରର... (ପରେ ପରେ ରାୟମୋହନର ପ୍ରଶ୍ନ)

ରାୟମୋହନ – ଏତେ ସକାଳୁ କ'ଣ ଏ ସବୁ ଅନୁପମ ?

– ସେଇ ଶଙ୍ଖଧ୍ୱନି... । ଭାଙ୍ଗି ଯାଇଥିବା ମୂଲ୍ୟବୋଧର ପ୍ରତିଷ୍ଠାପାଇଁ, ସ୍ମୃତିରେ... ଚେତନାରେ.... ସେହି ଧ୍ୱନି.... ।

କ୍ଳାନ୍ତି ଭିତରେ ଜୀବନପାଇଁ.. ଅସହାୟତା ଭିତରେ ଆଲୋକର ସନ୍ଧାନପାଇଁ ସେହି ଶଙ୍ଖନାଦ... । ଶେଷ ସଂଗ୍ରାମ... ।

ରଶ୍ମି ଅନୁପମର ଏଇ ଶଙ୍ଖଧ୍ୱନି ଓ ଆବୃତ୍ତି ଭିତରେ ଯନ୍ତ୍ରଣାରେ ଛଟପଟ ହୋଇଉଠୁଥିଲେ । ଅନୁପମ ଚାଲିଯିବା ପରେ ସେ କ୍ଳାନ୍ତ ଓ ଅବଶ ଭାବରେ ବସି ପଡ଼ିଲେ । ଶଙ୍ଖଧ୍ୱନି ସେମିତି ଦୂରକୁ ଦୂରକୁ ଘୁଞ୍ଚି ଯାଉଥିଲା ।

ରଶ୍ମି – ଆଃ ଭଗବାନ୍ ଆଃ !

## ବିତର୍କିତ ଅପରାହ୍ଣ

'ବିତର୍କିତ ଅପରାହ୍ଣ' ୧୯୮୦ ମସିହାରେ ରଚିତ ହୋଇଥିଲା । ପୂର୍ବରୁ ଏହା ୧୯୭୯ ମସିହାରେ କଟକ ଆକାଶବାଣୀର ନାଟକ ଉତ୍ସବରେ ପ୍ରଚାରିତ ହୋଇଥିଲା ।

ପ୍ରାୟ ୧୯୫୦ ମସିହାରେ କୁଜଙ୍ଗରେ ନାଟ୍ୟକାର ଥିଲାବେଳେ ସେହି ଅଞ୍ଚଳର ଜଣେ ପ୍ରାଚୀନ ସଂଭ୍ରାନ୍ତ ପରିବାରରେ ପୂଜା ପାଉଥିବା ସୁବର୍ଣ୍ଣ ପ୍ରତିମା 'କନକ ଦୁର୍ଗା'

ଚୋରି ଯାଇଥିବା ସମ୍ବାଦ ପ୍ରକାଶ ପାଇଲା । ସେହି ଦେବୀ ପୁରୁଷାନୁକ୍ରମେ ପୂଜା ପାଇ ଆସୁଥିଲେ । ମା'ଙ୍କର ଶକ୍ତି ଉପରେ ସାଧାରଣ ଜନସାଧାରଣଙ୍କ ଦୃଢ଼ ବିଶ୍ୱାସ ଥିବାରୁ ଏ ଚୋରି ଘଟଣାରେ ସେମାନେ ବିଚଳିତ ଏପରିକି ଆତଙ୍କିତ ହୋଇପଡ଼ିଥିଲେ । ଲୋକମୁଖରେ ଶୁଣାଯାଇଥିଲା ଯେ ସେ ମୂର୍ତ୍ତିଟି ଉଦ୍ଧାର ହେବାର ଆଦୌ ସମ୍ଭାବନା ନାହିଁ । ତା'ର କାରଣ, ସେହି ସମ୍ଭ୍ରାନ୍ତ ପରିବାରର ଜଣେ ଦାୟାଦ ଏକ ରାଜନୀତିକ ଦଳର ନେତା ଓ ସେ ଦଳର ପାଣ୍ଠିପାଇଁ ସେହି ମୂର୍ତ୍ତିଟି ବିକ୍ରି କରିଦେଇଛନ୍ତି । ସେହି ସମ୍ବାଦଟି ନାଟ୍ୟକାରଙ୍କ ମନରେ ଗଭୀର ପ୍ରଭାବ ପକାଇଥିଲା । ବିଭିନ୍ନ ପିଢ଼ିରେ ଥିବା ପାର୍ଥକ୍ୟ – ଯାହାକୁ କହନ୍ତି 'Generation gap' ପଟ୍ଟଭୂମିରେ ମୂଲ୍ୟବୋଧର ସଂଘର୍ଷ ଉପରେ ନାଟକକୁ ରଚନା କଲେ ବୋଲି ମନୋରଞ୍ଜନ ତାଙ୍କ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି ।

ବାହାରର କାମନାଦୀପ୍ତ ମଣିଷର ତାମସୀ ବୁଦ୍ଧି ଓ ଭିତରେ ଥିବା ସ୍ୱୟଂସିଦ୍ଧ 'ମୁଁ'ର ସାତ୍ତ୍ୱିକ ବୁଦ୍ଧି ଭିତରେ ଯେଉଁ ଅଦୃଶ୍ୟ ଦ୍ୱନ୍ଦ୍ୱ ଲାଗିରହିଛି, ତାହାକୁ ଜୀବନ୍ତ ଭାବରେ ଦର୍ଶକ ସମ୍ମୁଖରେ ପହଞ୍ଚାଇ ପାରିଛନ୍ତି ନାଟ୍ୟକାର । ମଝି ପିଢ଼ିର ଦମ୍ପତି ସୁକୁମାର ଓ ଶାଶ୍ୱତୀ ହୋଇଛନ୍ତି ନାଟକର ମାଧ୍ୟମ ।

'ବିତର୍କିତ ଅପରାହ୍ଣ' ସଙ୍ଗଠନରେ ଜୀବନର ସତ୍ୟ ବା ଜୀବନରେ ଅର୍ଥର ଅନୁସନ୍ଧାନ, ଅନ୍ୱେଷଣ ଓ ଆବିଷ୍କାରର ପ୍ରମୁଖ ଆଭିମୁଖ୍ୟ ହୋଇଥିବା ଜଣାଯାଏ ।

## ନନ୍ଦିକାକେଶରୀ

ଓଡ଼ିଶାର ଏକ ଐତିହାସିକ ଘଟଣା ବା କିମ୍ବଦନ୍ତୀକୁ ଏକ ନୂତନ ବ୍ୟାଖ୍ୟା ମାଧ୍ୟମରେ ଏକ ଆଧୁନିକ ନାଟକରେ ପରିଣତ କରିବାକୁ ନାଟ୍ୟକାର ବହୁଦିନୁ ଚାହୁଁଥିଲେ । ସେଥିପାଇଁ ସେ 'ନନ୍ଦିକେଶ୍ୱରୀ' କିମ୍ବଦନ୍ତୀକୁ ବାଛିଲେ । ଏହି ନୂତନ ବ୍ୟାଖ୍ୟା ମାଧ୍ୟମରେ କିମ୍ବଦନ୍ତୀ 'ନନ୍ଦିକେଶରୀ'କୁ ଆଧୁନିକ ନାଟକରେ ପରିଣତ କଲାପରେ ନାମ ରଖିଲେ 'ନନ୍ଦିକା-କେଶରୀ' ।

ନନ୍ଦିକାକେଶରୀ ନାଟକଟି ଅଭିନୀତ ହେଲା ୧୯୮୫ ମସିହା ଜାନୁଆରୀ ମାସରେ । ସେହି ବର୍ଷ ମଧ୍ୟ ପୁସ୍ତକଟି ପ୍ରକାଶିତ ହେଲା ।

କିମ୍ବଦନ୍ତୀ ଅନୁଯାୟୀ ନନ୍ଦିକା ଚୋଡ଼ଗଙ୍ଗଙ୍କ ପାଖେ ପ୍ରଣୟ ଭିକ୍ଷା କରି ବ୍ୟର୍ଥ ମନୋରଥ ହେବା ପରେ ହୀରାମୁଦି ଶୋଷି ଟଳିପଡ଼ିଲେ । ଚୋଡ଼ଗଙ୍ଗଙ୍କ ଆଦେଶରେ ଶିବିକାରେ ରାଜଜେମା ନନ୍ଦିକାଙ୍କୁ ଗଙ୍ଗଶିବିରରୁ ସସମ୍ମାନେ ପଠାଇ ଦିଆଗଲା ବିଡ଼ାନାସୀ ରାଜପ୍ରାସାଦକୁ । ଶିବିକାବାହକମାନେ ଡାକ ଦେଇ ଚାଲିଥିଲେ –

''ହାକୁମ ଧୋ ହୋ ହାକୁମ ଧୋ
ଧାକୁମ ଧୋ ଲୋ ହାକୁମ ଧୋ ।
ନଈ ଆର ପଟେ ଉଆସ ଦିଶେ ଲୋ ହାକୁମ ଧୋ
କାନ୍ଧ ମାଡ଼ି ବସେ ସବାରି ଦଣ୍ଡାଲୋ ଧାକୁମ ଧୋ ।''

ଏ ଡାକ ଭିତରେ ରଙ୍ଗମଞ୍ଚରୁ ଶିବିକା ବାହାରିଯାଇଛି । ମଞ୍ଚ ଭିତରକୁ ପଶି ଆସିଛନ୍ତି ସୂତ୍ରଧାର । ସେ କହିଛନ୍ତି – ''ଏ ନନ୍ଦିକା ରାଜତନୟା ନନ୍ଦିକା... ଉତ୍କଳର ସମ୍ରାଟ୍ ସୁବର୍ଣ୍ଣ କେଶରୀଙ୍କ ଦୁହିତା ନନ୍ଦିକା.... ନନ୍ଦିକା କେଶରୀ । ...ନନ୍ଦିକା ବି ହୋଇପାରେ ଯେକୌଣସି ଝିଅର ନାଁ । ଅତୀତର.... ଭବିଷ୍ୟତ୍...ବର୍ତ୍ତମାନର । ସତ୍ୟ ଓ ମାନବିକତା ଯେଉଁଠି ଅର୍ଥହୀନ, ସେଠି ଜୀବନର ଅନ୍ୟ ନାମ ମୃତ୍ୟୁ । ମୃତ୍ୟୁ ଯେଉଁଠି ନିରୁପାୟ ଖ୍ୟାତି ବା କଳଙ୍କ ସେଠି ଅର୍ଥହୀନ । ନାଁ ଯେତେବେଳେ ଜଣଙ୍କର 'ନନ୍ଦିକା' ସେତେବେଳେ ଗୋଟିଏ .... ମାତ୍ର ଗୋଟିଏ କାମ ତା'ର କରିବାକୁ ଥାଏ ।

ଅଭିନୟ ପରେ 'ସମାଜ' ଲେଖିଥିଲେ – ''ସିନ୍ଧି, ଗାହାଣ ଓ ଅନ୍ୟାନ୍ୟ ଲୋକଚରିତ୍ର ସାଙ୍ଗକୁ ଦେଶୀୟା ନାଟର ଢାଞ୍ଚାରେ ରଚିତ ଏହି ନାଟକ ଯେ ଗତାନୁଗତିକତାଠାରୁ ଭିନ୍ନ, ଏଥିରେ ଦ୍ୱିମତ ନାହିଁ । ଯାତ୍ରା, ସୁଆଙ୍ଗ, ଗୀତିନାଟ୍ୟ, ଗୀତାଭିନୟ ସନ୍ନିବେଶିତ ହୋଇଥିବା ଏହି ନାଟକରେ ଓଡ଼ିଶୀ, ଛାନ୍ଦ, ଚମ୍ପୂ ସାଙ୍ଗକୁ ଢଗଢମାଳିର ବ୍ୟବହାର ନାଟକକୁ ମୂଳରୁ ଶେଷଯାକେ ରସବନ୍ତ କରି ତୋଳୁଛି ।''

'ସମ୍ବାଦ'ରେ ଅଭିମତ ପ୍ରକାଶ ପାଇଥିଲା –

''ନାଟ୍ୟକାରଙ୍କର ଅଭିନବ ପରିକଳ୍ପନା ଏବଂ ନୂତନତ୍ୱର ତର୍ଜମା ଫଳରେ ନାଟକଟି ଏକ ଉଚ୍ଚାଙ୍ଗ କଳାସୃଷ୍ଟିରେ ପରିଣତ ହୋଇପାରିଛି ।

'ନନ୍ଦିକାକେଶରୀ'ର ଇଂରାଜୀ ଅନୁବାଦ ପ୍ରାଚୀ-ଭୁବନେଶ୍ୱରଦ୍ୱାରା ୧୯୯୯ ମସିହାରେ ହୋଇଥିଲା ।

## ଏକାଙ୍କିକା

ନାଟ୍ୟକାର ମନୋରଞ୍ଜନ ପାରମ୍ପରିକ ନାଟକ ରଚନା ସଙ୍ଗେ ସଙ୍ଗେ ଛୋଟ ନାଟକ ବା ଏକାଙ୍କିକା ରଚନା କରିଛନ୍ତି । ଦୀର୍ଘ ତିନି ଦଶନ୍ଧିରୁ ଊର୍ଦ୍ଧ୍ୱକାଳ (୧୯୬୦-୧୯୯୬) ସେ ବିଭିନ୍ନ ସ୍ୱାଦର ଏକାଙ୍କିକାମାନ ରଚନା କରିଛନ୍ତି । ଏଯାବତ୍ ତାଙ୍କର ଛଅଗୋଟି ଏକାଙ୍କିକା ସଙ୍କଳନ ପ୍ରକାଶ ପାଇଛି । ସେଗୁଡ଼ିକ ହେଲା 'ନାରୀ', 'ଛୋଟ ନାଟକ', 'ମହାସମୁଦ୍ର', 'ଅବବାହିକାର ସ୍ୱପ୍ନ', 'ନାଟ୍ୟଗୁଚ୍ଛ' ଏବଂ 'ବିଚିତ୍ର ମନର ନାଟକ' । 'ନାରୀ' ଏକାଙ୍କିକା ସଙ୍କଳନ ମଧ୍ୟରେ 'ନାରୀ', 'ସନ୍ଧାନ', 'ପ୍ରେମ ଓ ଅର୍ଥ' ଓ 'ଆଗନ୍ତୁକ'ଗୁଡ଼ିକ ନାଟ୍ୟକାରଙ୍କ ମୌଳିକ ରଚନା । 'ପ୍ରତିମା' ଏକାଙ୍କିକାଟି ଫରାସୀ ଲେଖକ ମୋପାସାଁଙ୍କର ରଚିତ ଏକ ଗଳ୍ପର ନାଟ୍ୟରୂପ ଅଟେ ।

'ନାରୀ' ଏକାଙ୍କିକାରେ ବୈଜ୍ଞାନିକ ଓ ନିର୍ଦ୍ଧନ ନିର୍ମଳ ଓ ତା'ର ବନ୍ଧୁ ସରୋଜର ଚରିତ୍ର ଅଙ୍କିତ । ସରୋଜ ଧନୀ ଓ ବିଜ୍ଞାନାଗାରର ମାଲିକ । ନିର୍ମଳ ଚରିତ୍ରର ତ୍ୟାଗ ରୂପ ପ୍ରକାଶ ପାଇଛି ଏହି ଏକାଙ୍କିକାରେ । 'ପ୍ରତିମା' ଏକାଙ୍କିକାରେ ନାରୀ ମନର ଗଭୀର ବ୍ୟଥାକୁ ଚିତ୍ରିତ କରିଛନ୍ତି ନାଟ୍ୟକାର । 'ସନ୍ଧାନ' ଏକାଙ୍କିକାରେ ତରୁଣୀ ବୌଦ୍ଧ ଭିକ୍ଷୁଣୀ ଅଞ୍ଜଳି ଓ ତରୁଣ ବୌଦ୍ଧ ଭିକ୍ଷୁ ଶାନ୍ତିମୟଙ୍କର ସଂସାର ପ୍ରତି ଆସକ୍ତି ଓ ବୌଦ୍ଧ ମଠରୁ ଫେରିବା ବର୍ଣ୍ଣିତ । ଏଥିରେ ନାଟ୍ୟକାର ଜୀବନର କଠୋର ବାସ୍ତବତାର ଚିତ୍ର ଆଙ୍କିଛନ୍ତି ।

'ଛୋଟ ନାଟକ' ସଙ୍କଳନଟି ଛୋଟ ପିଲାଙ୍କପାଇଁ ନାଟକ ନୁହେଁ । ଏହା କେତେଗୁଡ଼ିଏ ଛୋଟ ନାଟକର ସମଷ୍ଟି । ଏହା ୧୯୬୩ ମସିହାରେ ପ୍ରକାଶ ପାଇଥିଲା । ଏହି 'ଛୋଟ ନାଟକ'ରେ ସ୍ଥାନିତ ହୋଇଥିବା ନାଟକଗୁଡ଼ିକ ହେଲା – 'ଅତି ମାନବ', 'ଏକାନ୍ତ ଗୋପନୀୟ', 'ଅତିଥି', 'ଆବିଷ୍କାର', 'ଫଲ୍‌ଗୁ', 'ସେତୁ' ପ୍ରଭୃତି ।

'ଅତିମାନବ' ଏକାଙ୍କିକାରେ ନାୟକ ସୁଶାନ୍ତ ମଞ୍ଚରେ ଉପସ୍ଥିତ ନ ହୋଇ 'ଅତି ମାନବ' ସଂଜ୍ଞାରେ ଭୂଷିତ ହୋଇଛି । ଏଥିରେ ନାଟ୍ୟକାର ଦେଖାଇଛନ୍ତି ଯେ ମଣିଷ ଭାଗ୍ୟ ନିକଟରେ ନିତାନ୍ତ ଅସହାୟ... ।

'ଅତି ମାନବ'ରେ ବୃଦ୍ଧ ପିତାମାତା ବିଦେଶରୁ ଉଚ୍ଚ ଶିକ୍ଷା ପାଇ ଆସୁଥିବା କୃତୀ ସନ୍ତାନ ସୁଶାନ୍ତର ଆଗମନପାଇଁ ଅପେକ୍ଷା କରିଛନ୍ତି । କିନ୍ତୁ ପ୍ଲେନ୍ ଦୁର୍ଘଟଣାରେ ପରମାଣୁ ବିଜ୍ଞାନୀ ସୁଶାନ୍ତ ମୃତ୍ୟୁବରଣ କରିଛି । ସେ ଦୁଃଖଦ ସମ୍ବାଦ ପିତାଙ୍କ ପାଖେ ପହଞ୍ଚିଛି । ପୁତ୍ରର ମୃତ୍ୟୁରେ ବ୍ୟଥିତ ବୃଦ୍ଧ ପିତା ଘୋଷଣା କରିଛନ୍ତି –

''ନିର୍ବୋଧ ଏମାନେ । ଏମାନେ କାହୁଁ ଜାଣିବେ ମୋର ସୁଶାନ୍ତ ମରିପାରେନା । ସେ ଅତିମାନବ । ସେ ମରିପାରେନା... । ସେ ମରିପାରେନା । ସେ ଅତିମାନବ ।''

ବିଜ୍ଞାନର ଜୟଧ୍ୱଜା ଉଡ଼ାଉଥିବା ମଣିଷ କିପରି ମହାକାଳର ଭ୍ରୂକୁଞ୍ଚନରେ ଅସହାୟ ଭାବରେ ନିଃଶେଷ ହୋଇଯାଏ, 'ଅତିମାନବ' ଏକାଙ୍କିକା ତା'ର ଦୃଷ୍ଟାନ୍ତ ।

'ଏକାନ୍ତ ଗୋପନୀୟ' ଏକାଙ୍କିକାର ବିଷୟବସ୍ତୁ ମନସ୍ତତ୍ତ୍ୱମୂଳକ । ନାଟ୍ୟକାର ଏଥିରେ ମେଜର ଶର୍ମା, କ୍ୟାପ୍‌ଟେନ୍ ଦାସ ଓ ଅଧ୍ୟାପିକା ଅଞ୍ଜଳି ପ୍ରଭୃତିଙ୍କ ଚରିତ୍ର ଚିତ୍ରଣ କରିଛନ୍ତି । ଅଧ୍ୟାପିକା ଅଞ୍ଜଳିଙ୍କୁ କେନ୍ଦ୍ର କରି କ୍ୟାପ୍‌ଟେନ୍ ଦାସ ଓ ମେଜର ଶର୍ମାଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ଦେଖାଦେଇଛି । କିନ୍ତୁ ମେଜର ଶର୍ମାଙ୍କ ପତ୍ନୀ ନୀଳିମାଙ୍କ ମୃତ୍ୟୁ ପରେ ଅଞ୍ଜଳି ଅସହାୟ ଶର୍ମାଙ୍କ ଦାୟିତ୍ୱ ଗ୍ରହଣ କରିଛନ୍ତି । କିନ୍ତୁ ମେଜର ଶର୍ମା ବା ଅଞ୍ଜଳି ଉଭୟ ଆପଣାର ମନକଥା ପରସ୍ପରକୁ କହିପାରି ନାହାନ୍ତି ।

'ଅତିଥି' ଏକ ହାସ୍ୟରସାତ୍ମକ ଏକାଙ୍କିକା । ଏ ଯୁଗରେ ଅତିଥିଙ୍କର ଆଗମନରେ ଘରର ସଦସ୍ୟମାନେ କିପରି ଅସ୍ତବ୍ୟସ୍ତ ହୋଇପଡ଼ନ୍ତି, ତା'ର ଏକ ବାସ୍ତବ ଚିତ୍ର ଏହି ଏକାଙ୍କିକାରେ ଦେଇଛନ୍ତି ନାଟ୍ୟକାର ।

'ଆବିଷ୍କାର' ଏକାଙ୍କିକାରେ ବୃଦ୍ଧ ଶିବନାରାୟଣ ଆକସ୍ମିକ ଭାବରେ ଦୁର୍ଦ୍ଦଶାର ଶିକାର ହୋଇ ଡାକ୍ତର ତପନଙ୍କଦ୍ୱାରା ଚିକିତ୍ସିତ ହୁଅନ୍ତି । ସେଠାରେ ସେ ଆବିଷ୍କାର କରନ୍ତି ଯେ ଡାକ୍ତର ତପନ ହେଉଛନ୍ତି ତାଙ୍କର ସନ୍ତାନ – ଯାହାକୁ ସେ ୩୦ ବର୍ଷ ତଳେ ଛାଡ଼ିଦେଇ ଅନ୍ୟ ଝିଅ ସହ ଘର ଛାଡ଼ି ଚାଲିଯାଇଥିଲେ । ସେ ତପନର ସୀମା ସହିତ ଅବାଧ ମିଳାମିଶାକୁ ପସନ୍ଦ କରି ନାହାନ୍ତି । ତପନର ଚାରିତ୍ରିକ ସ୍ଖଳନ ଦେଖି ତାଙ୍କ ଜୀବନରେ ଘଟିଥିବା ବିପର୍ଯ୍ୟୟକୁ ସେ ମନେ ପକାଇଛନ୍ତି । ତପନର ଜୀବନରେ ସେଭଳି ବିପର୍ଯ୍ୟୟ ଘଟିବା ଆଶଙ୍କାରେ ଶିବନାରାୟଣ ପୁନା ଚାଲିଯାଇଛନ୍ତି ।

'ଫଲ୍‌ଗୁ' ଏକାଙ୍କିକାରେ ନାଟ୍ୟକାର ପ୍ରେମର ଫଲ୍‌ଗୁକୁ ରୂପାୟନ କରିଛନ୍ତି । ପୂରବୀ କ୍ୟାପ୍‌ଟେନ୍ ମହାପାତ୍ରଙ୍କ ପତ୍ନୀ । ଅତୀତରେ ସେ ସୁବ୍ରତଙ୍କୁ ଭଲ ପାଉଥିଲେ ; କିନ୍ତୁ ବିବାହ କରିପାରି ନ ଥିଲେ । ସୁବ୍ରତ ଲେଖକ ଥିଲେ । ପୂରବୀ ବିବାହ ପୂର୍ବରୁ ତାଙ୍କୁ କଲମଟିଏ ଉପହାର ଦେଇଥିଲେ । ସେହି କଲମରୁ ସେ ଲେଖିଲାବେଳେ ଅଦୃଶ୍ୟ ପ୍ରେରଣା ପାଉଥିବା କଥା ନିଜ ପତ୍ନୀ ପ୍ରୀତିଙ୍କୁ କହିଛନ୍ତି । କିନ୍ତୁ ଅତିଥି ଚର୍ଚ୍ଚାପାଇଁ ସେ କଲମଟି ବିକ୍ରି କରିଦେବାକୁ ପଡ଼ିଛି ।

'ଛୋଟ ନାଟକ' ଏକାଙ୍କିକା ସଂକଳନରେ ନୂତନ ଭାବଧାରା ଉପରେ ଗୁରୁତ୍ୱ ଦେଇଥିବା ଲକ୍ଷ୍ୟ କରାଯାଏ ।

## ମହାସମୁଦ୍ର

ସଙ୍କଳନରେ ଥିବା 'ମହାସମୁଦ୍ର' ଏକାଙ୍କିକାରେ ତିନୋଟି ଚରିତ୍ର ମଧ୍ୟରେ ନାରୀ ହେଉଛି ସୁମିତ୍ରା । ଏହି ଚରିତ୍ର ମାଧ୍ୟମରେ ନାରୀର ଅସ୍ତିତ୍ୱ ତଥା ନାରୀ ମନରେ ଥିବା ସଂଗୁପ୍ତ ଭାବନା ପ୍ରକାଶ ପାଇଛି । ନାରୀ ମନସ୍ତତ୍ତ୍ୱକୁ ସୁମିତ୍ରା ଚରିତ୍ରରେ ସୁନ୍ଦର ଭାବରେ ପ୍ରକାଶ କରିଛନ୍ତି । 'ବନ୍ୟା' ଏକାଙ୍କିକାରେ ମଧ୍ୟ ନାଟ୍ୟକାର ନାରୀର ଈର୍ଷା ଓ ତ୍ୟାଗର ଚିତ୍ର ଦେଇଛନ୍ତି । ସୁଚିତ୍ରା ସାନଭଉଣୀ ସୁନନ୍ଦାକୁ ଅଜୟଠାରୁ ଦୂରେଇ ଯିବାକୁ କହିଥିଲେ ; କିନ୍ତୁ ସେ ନିଜେ ସମସ୍ତ ବନ୍ଧନ ଭାଙ୍ଗି ଅଜୟଙ୍କ ନିକଟକୁ ଯାଇଛନ୍ତି । ଦୁଇ ଭଉଣୀଙ୍କ ମଧ୍ୟରେ ଦେଖାଦେଇଥିବା ମାନସିକ ଦ୍ୱନ୍ଦ୍ୱ ସୁନ୍ଦର ଭାବରେ ଉପସ୍ଥାପିତ ହୋଇଛି ।

୧୯୬୫ ମସିହାରେ ଭାରତ ପାକିସ୍ଥାନ ଯୁଦ୍ଧ ପୃଷ୍ଠଭୂମି ଉପରେ ରଚିତ ହୋଇଛି 'ଉଦୟପଥେ' । 'କାହାଣୀ ନୁହେଁ' ଏକାଙ୍କିକାରେ ମଧ୍ୟ ପ୍ରେମ, ଘୃଣା, ପ୍ରତିହିଂସା ଓ ଦେଶପ୍ରେମର ଚିତ୍ର ଦେଖିବାକୁ ମିଳେ ।

ରାଜନୀତିକ କ୍ଷେତ୍ରରେ ଯେଉଁ ଅବକ୍ଷୟ ଓ ଦୁର୍ନୀତି ଦେଖାଦେଇଛି, ତାହା 'ପ୍ରଶ୍ନ' ଏକାଙ୍କିକାରେ ପ୍ରକାଶ ପାଇଛି । ଦେଶର ନେତାମାନେ ଦୁର୍ନୀତି ଦୂର କରିବାକୁ ଭାଷଣରେ କହୁଥିଲେ ମଧ୍ୟ ନିଜର ସ୍ୱାର୍ଥ ହାସଲପାଇଁ ସବୁ ଭୁଲି ଯାଆନ୍ତି । ଦେଶରେ ଏବେ ମଧ୍ୟ ସାଧୁ ପ୍ରକୃତିର ବ୍ୟକ୍ତି ଅଛନ୍ତି, ସେ କଥା ନାଟ୍ୟକାର 'ପ୍ରଶ୍ନ' ମାଧ୍ୟମରେ ଜଣାଇ ଦେଇଛନ୍ତି ।

## ନାଟ୍ୟଗୁଚ୍ଛ

୧୯୬୨-୬୮ ମସିହା ଭିତରେ ମନୋରଞ୍ଜନ ରଚନା କରିଛନ୍ତି 'ନାଟ୍ୟଗୁଚ୍ଛ' ଏକାଙ୍କିକା ସଙ୍କଳନ । ଏହି ସଙ୍କଳନରେ ଥିବା ଏକାଙ୍କିକାର କାହାଣୀଗୁଡ଼ିକ ଇତିହାସ ଓ ପୁରାଣରୁ ନିଆଯାଇଛି । ଏଗୁଡ଼ିକ ମଧ୍ୟ ବିଭିନ୍ନ ସମୟରେ ଆକାଶବାଣୀରୁ ପ୍ରଚାରିତ ହୋଇଥିଲା । ଏଥିରେ ସ୍ଥାନିତ 'ରାଣୀ ଶୁକଦେଈ', 'ଶେଷଲଗ୍ନ' ଓ 'ଅଗ୍ନିବଳୟ' ଏକାଙ୍କିକାଗୁଡ଼ିକ ଐତିହାସିକ ଘଟଣାବଳୀ ଉପରେ ଲିଖିତ । 'ରାଣୀ ଶୁକଦେଈ' ଏକାଙ୍କିକାରେ ଶୁକଦେଈଙ୍କ ପରାକ୍ରମ ଓ ଉଦାରତା ବର୍ଣ୍ଣିତ । 'ଶେଷ ଲଗ୍ନ' ଏକାଙ୍କିକାରେ କଳିଙ୍ଗ ସମ୍ରାଟ୍ କପିଳେନ୍ଦ୍ରଦେବଙ୍କ ଚରିତ୍ରକୁ ଚିତ୍ରଣ କରାଯାଇଛି । ୧୮୫୭ ମସିହାରେ ଦେଶରେ ସିପାହି ବିଦ୍ରୋହରେ ହିନ୍ଦୁ ମୁସଲମାନ ମିଳିତ ହୋଇ ଯେଉଁ ଯୁଦ୍ଧ କରିଥିଲେ ତା'ର ପଟ୍ଟଭୂମିରେ ରଚିତ ହୋଇଛି 'ବହ୍ନି ବଳୟ' ଏକାଙ୍କିକା । ଇଂରେଜମାନଙ୍କ ବିରୋଧରେ ମୁସଲମାନ ଧର୍ମଗୁରୁ ମୌଲବୀ ଯେଉଁ ଅଗ୍ନିଗର୍ଭ ଭାଷଣ ଦେଇ ଦେଶବାସୀଙ୍କ ହୃଦୟକୁ ସ୍ପନ୍ଦିତ କରିଥିଲେ ତା'ର ଚିତ୍ର ଏଥିରେ ମିଳେ ।

'ଶକୁନି', 'ପାଦୁକା' ଓ 'ଶିର ଅର୍ଘ୍ୟ' ପୌରାଣିକ କାହାଣୀ ଉପରେ ଆଧାରିତ । 'ଶକୁନି' ଏକାଙ୍କିକାରେ ମହାଭାରତରେ ଶକୁନିର ଭୂମିକା ଚିତ୍ରଣ କରାଯାଇଛି । 'ପାଦୁକା'ରେ ରାମଚନ୍ଦ୍ରଙ୍କ ବନଗମନ ପରେ ଅନୁଜ ଭରତ କିପରି ତାଙ୍କର କର୍ତ୍ତବ୍ୟ ପାଳନ କରିଥିଲେ, ତାହା ବର୍ଣ୍ଣିତ ହୋଇଛି । 'ଚିର ଅର୍ଘ୍ୟ' ଏକାଙ୍କିକାରେ ଶ୍ରୀକୃଷ୍ଣ ବେଲାଳସେନର ଶିର ଭିକ୍ଷା କରିଛନ୍ତି । ଆଉ ଏକ ପୌରାଣିକ କାହାଣୀ ଉପରେ ଆଧାରିତ ଏକାଙ୍କିକା ହେଲା 'ତକ୍ଷକ' ।

'ତକ୍ଷକ' ଏକାଙ୍କିକାଟି ରାଜା ପରୀକ୍ଷିତଙ୍କ ତକ୍ଷକ ହସ୍ତରେ ମୃତ୍ୟୁ ଅବଲମ୍ବନରେ ରଚିତ । ମୃଗୟାକୁ ଯାଇ ରାଜା ପରୀକ୍ଷିତ ମୁନିଙ୍କ ଗଳାରେ ସର୍ପ ଗଳାଇଦେବାରୁ ମୁନିଙ୍କ ପୁତ୍ର ଶୃଙ୍ଗୀ କ୍ରୁଦ୍ଧ ହୋଇ ଅଭିଶାପ ଦେଇଛନ୍ତି ଯେ ସର୍ପ ଗଳାଇଥିବା ବ୍ୟକ୍ତିର ତକ୍ଷକ ଦଂଶନରେ ସାତ ଦିନ ମଧ୍ୟରେ ମୃତ୍ୟୁ ହେବ । ନାଟ୍ୟକାର ଏହାକୁ ଏକ ପ୍ରତୀକ ଭାବେ ନେଇଛନ୍ତି । ଏକାଙ୍କିକାରେ ଶୀଳା ଓ ଇଳା ଦୁଇ ଭଉଣୀ । ସେମାନଙ୍କର ସ୍ୱପ୍ନ ଓ ଇଚ୍ଛା ଥିଲା ଉପଯୁକ୍ତ ପତି ପାଇବାକୁ । ସେମାନଙ୍କ ବିବାହ ହୋଇଛି । ମାତ୍ର ଦୁହିଁଙ୍କ ବିବାହିତ ଜୀବନ ଦୁର୍ବିଷହ ହୋଇପଡ଼ିଛି । ଉଭୟେ ଆତ୍ମହତ୍ୟା କରିବାକୁ ବାଧ୍ୟ ହୋଇଛନ୍ତି । ପୁରାଣର ତକ୍ଷକ ଏଥିରେ ସ୍ଥାନ ପାଇଛି ପ୍ରତୀକ ଭାବରେ । ଅଭିଶପ୍ତ ପରୀକ୍ଷିତ ଯେତେ ଉପାୟ କଲେ ବି ତକ୍ଷକ ଦଂଶନରୁ ଉଦ୍ଧାର ପାଇ ନାହାନ୍ତି । ସେହିପରି ମଣିଷର କାମନା ଓ ବାସନା ତକ୍ଷକ ଭାବରେ ଆତ୍ମଗୋପନ କରିଥାଏ ତା' ମନ ମଧ୍ୟରେ । ଶେଷରେ ତାହା ତାକୁ ଗ୍ରାସ କରେ ।

'ତକ୍ଷକ' ମନୋରଞ୍ଜନଙ୍କ ଏକ ଉଚ୍ଚକୋଟୀର ଏକାଙ୍କିକା ।

## ଅବବାହିକାର ସ୍ୱପ୍ନ

ଏଥିରେ ଗୋଟିଏ ଏକାଙ୍କିକା ହେଉଛି 'ଅବବାହିକାର ସ୍ୱପ୍ନ' । ନଦୀ ତୀର ଉଚ୍ଚଭୂମିକୁ ଅବବାହିକା କୁହାଯାଏ । ନଦୀର ତୀରରେ ରହି ମଧ ନଦୀ ସହିତ ତା'ର ମିଳନ ହୋଇପାରେ ନାହିଁ । 'ଅବବାହିକା ସ୍ୱପ୍ନ'ର ବିଷୟବସ୍ତୁଗୁଡ଼ିକ ଅସଫଳ ପ୍ରେମ କାହାଣୀ ଉପରେ ଆଧାରିତ । ଏଥିରେ ଚରିତ୍ରଗୁଡ଼ିକ ହେଉଛନ୍ତି, ଦୀପା, ନିରୁ, ସୁକାନ୍ତ । କିନ୍ତୁ କାହା ସହିତ କାହାର ମିଳନ ହୋଇପାରି ନାହିଁ ।

'ଉପତ୍ୟକା' ଆଉ ଏକ ଏକାଙ୍କିକା । ଏହା ମଧ୍ୟ ଏକ ଅସଫଳ ପ୍ରେମ କାହାଣୀ ଉପରେ ଆଧାରିତ । ଜୀବନର ଉତ୍ତରାର୍ଦ୍ଧରେ ଶିକ୍ଷୟିତ୍ରୀ ଅପର୍ଣ୍ଣା ଅତୀତର ପ୍ରେମିକ ଜୀବନଙ୍କ ସହିତ ଦେଖାହେବାପରେ ବିବାହ କରିବାକୁ ଇଚ୍ଛା କରିଛନ୍ତି । ମାତ୍ର ନିଜକୁ ଅନୁପଯୁକ୍ତ ଭାବି ବିବାହ କରି ନାହାନ୍ତି । ଅପର୍ଣ୍ଣା ନିଜର ଅସହାୟତାକୁ ଜୀବନବାବୁଙ୍କ ଆଗରେ ପ୍ରକାଶ କରିଛନ୍ତି ।

ସଙ୍କଳନର ଅନ୍ୟତମ ଏକାଙ୍କିକା ହେଲା 'ଅପ୍ରତିହତ' । ଏହା ମଧ ଅସଫଳ ପ୍ରେମ କାହାଣୀକୁ ନେଇ ରଚିତ । ସମାଜର ବିତ୍ତଶାଳୀ ବ୍ୟକ୍ତି ହରନାରାୟଣବାବୁ । ତାଙ୍କ ମତରେ ଧନହିଁ ଜୀବନର ସବୁ । ପାଠର କୌଣସି ମୂଲ୍ୟ ନାହିଁ । ଧନ ହିଁ ସବୁଠାରୁ ଶ୍ରେଷ୍ଠ । ସେ ତାଙ୍କ ଝିଅ ସୁପ୍ରିୟାଙ୍କୁ ଏହା ବୁଝାଇଛନ୍ତି ଏବଂ ସୁପ୍ରିୟା ଓ ପ୍ରବୋଧ ପ୍ରେମରେ ବାଧା ସୃଷ୍ଟି କରିଛନ୍ତି । ସୁପ୍ରିୟାଙ୍କ ବିବାହ ଗଗନବାବୁଙ୍କ ସହିତ ହୋଇଛି । ପ୍ରବୋଧଙ୍କ ମନରେ ତୀବ୍ର ମାନସିକ ଦ୍ୱନ୍ଦ୍ୱ ସୃଷ୍ଟି ହୋଇଛି ଓ ନାଟ୍ୟକାର ଏହାକୁ ସୁନ୍ଦର ଭାବରେ ରୂପ ଦେଇଛନ୍ତି ।

'ଅବ୍ୟକ୍ତ' ଏକାଙ୍କିକାରେ ଜୀବନର ଅନିଶ୍ଚିତତା, ସଂଗ୍ରାମ ପ୍ରଭୃତି ବର୍ଣ୍ଣନା କରାଯାଇଛି । ଅମର ଓ ରୀତା ଚାକିରି ଅନ୍ୱେଷଣରେ ଯାଇଛନ୍ତି । ସେମାନଙ୍କର ଭେଟ ହୋଇଛି ଓ ଉଭୟେ ପରସ୍ପରର ନିକଟବର୍ତ୍ତୀ ହୋଇଛନ୍ତି । ଅମର ଉମାଦେବୀଙ୍କ ଫାର୍ମ ଓ ରୀତା ଜଗନ୍ନାଥ ଫାର୍ମରେ ଚାକିରି କରିଛନ୍ତି । ଜଗନ୍ନାଥ ଓ ରମାଦେବୀଙ୍କ ପାଖରେ ଧନ ଓ ଆଭିଜାତ୍ୟ ଅଛି । ହେଲେ ସେମାନେ ଗୋଟାଏ ଆବରଣ ମଧରେ ବଞ୍ଚି ରହିଛନ୍ତି । ଜଗନ୍ନାଥ ତାଙ୍କ ସ୍ତ୍ରୀଙ୍କଠାରୁ ଯାହା ପାଇପାରି ନାହାନ୍ତି, ତାହା ରୀତାଙ୍କଠାରୁ ପାଇବାକୁ ଆଶା କରିଛନ୍ତି । ମାତ୍ର ତାହା ଅବ୍ୟକ୍ତ ରହିଯାଇଛି । ଅମର ଓ ରୀତା ଜୀବନର ବହୁ ଅନିଶ୍ଚିତତା ଦେଇ ଅନ୍ତହୀନ ପ୍ରତୀକ୍ଷାରେ ଆଗେଇ ଚାଲିଛନ୍ତି ।

## ବିଚିତ୍ର ମନର ନାଟକ

'ବିଚିତ୍ର ମନର ନାଟକ' ଏକାଙ୍କିକା ସଂକଳନର 'ମହୋଦଧି' ଏକ ବିଚିତ୍ର ଏକାଙ୍କିକା । ସ୍ତ୍ରୀହନ୍ତା ସୁଶୋଭନ ପ୍ରତି ସ୍ୱାମୀହରା ସୁଚିତ୍ରା ପ୍ରତିହିଂସାପରାୟଣ ହୋଇ ନାହାନ୍ତି । ନାରୀସୁଲଭ ଗୁଣ, ଯଥା – ଦୟା କ୍ଷମା ପ୍ରଭୃତି ତାଙ୍କଠାରେ

ପ୍ରକାଶ ପାଇଛି । ପ୍ରତିହିଂସାପରାୟଣ ରୁଦ୍ରନାରାୟଣଙ୍କ କବଳରୁ ସୁଶୋଭନଙ୍କୁ ଉଦ୍ଧାର କରି ତା' ସହିତ ସୁଚିତ୍ରା ନିରୁଦ୍ଦିଷ୍ଟ ହୋଇଛନ୍ତି । ଏ ଘଟଣା ବାସ୍ତବିକ ନାରୀ ମନର ବୈଚିତ୍ର୍ୟ ସମ୍ପର୍କରେ ସୂଚନା ଦିଏ ।

## ଦେଶ ବାହାର ନାଟକ ଅନୁଧାନ

ଥିଏଟର୍ ସଂକ୍ରାନ୍ତୀୟ ଅନୁଧାନ ଓ ମତ ବିନିମୟପାଇଁ ଭାରତ ସରକାରଙ୍କ ସାଂସ୍କୃତିକ ବିନିମୟ ଯୋଜନା ଅନୁସାରେ ମନୋରଞ୍ଜନଙ୍କୁ ବୁଲ୍‌ଗାରିଆ, ପୋଲାଣ୍ଡ ଓ ପୂର୍ବତନ ସୋଭିଏତ୍ ରୁଷ ଯିବାର ସୁଯୋଗ ମିଳିଥିଲା ୧୯୮୩ ମସିହାରେ । ବୁଲ୍‌ଗାରିଆର ରାଜଧାନୀ ସୋଫିଆରେ ନାଟ୍ୟକାର ଗୋଟିଏ ଛୋଟ ଥିଏଟର୍ ହଲ 'ଥିଏଟର ୧୯୯'ରେ 'ଥିଏଟରକୁ ଭଲପାଏ' ନାଟକ ଓ ମିଲିଟାରୀ ଥିଏଟରରେ ଜର୍ଜ ବର୍ଣ୍ଣାଡ୍‌ଶ'ଙ୍କର ଏକ ନାଟକ 'ସଇତାନର ଶିଷ୍ୟ' ଦେଖିଥିଲେ । ସେଠା ନ୍ୟାସନାଲ ଥିଏଟର ମଞ୍ଚରେ ଦେଖିଥିଲେ ବ୍ରେଖଟଙ୍କର 'ଦି କକେସିଆନ୍ ଚକ ସର୍କଲ' । ସେଥିରେ ମାର୍କସୀୟ ବିଚାରର ସୂକ୍ଷ୍ମ କଳାତ୍ମକ ପ୍ରୟୋଗ ଥିଲା । ସେହି ନାଟକଟି ଦେଖି ନାଟ୍ୟକାର ବିହ୍ୱଳିତ ଓ ଆତ୍ମବିଭୋର ହୋଇଉଠିଥିଲେ ।

ନାଟ୍ୟକାର ତାଙ୍କ ପୋଲାଣ୍ଡର କ୍ରାକୋସ୍ଥିତ ଷ୍ଟାର ଥିଏଟରରେ ଜର୍ମାନ କଥାକାର ହେନେରୀ ବୋଇଙ୍କର 'ବିଦୂଷକର ସ୍ୱପ୍ନ' ଦେଖିବାର ସୁଯୋଗ ପାଇଥିଲେ । ପୋଲାଣ୍ଡର ଏକ ଐତିହାସିକ ନାଟକ 'ନଭେମ୍ବର ରାତି' ମଧ୍ୟ ତାଙ୍କ ମନ ଉପରେ ଗଭୀର ପ୍ରଭାବ ପକାଇଥିଲା । ପ୍ରାୟ ସଂଳାପ ନ ଥିବା ମୂକାଭିନୟ ପ୍ରଧାନ ଏକ ନାଟକ 'ରିପ୍ଲିକା' ପୋଲାଣ୍ଡର ୱାରସ ସଂସ୍କୃତି ଭବନ ଥିଏଟର ଷ୍ଟୁଡିଓରେ ସେ ଦେଖିଥିଲେ । ଏହି ନାଟକଟି ଗ୍ରେଟ୍‌ବ୍ରିଟେନ୍, ଫ୍ରାନ୍‌ସ, ଯୁକ୍ତରାଷ୍ଟ୍ର ଆମେରିକା, ଦୁଇ ଜର୍ମାନୀ ରାଜ୍ୟ, ହଙ୍ଗେରୀ, ହଲାଣ୍ଡ, ସୁଇଡେନ୍, ପର୍ତ୍ତୁଗାଲ, ଅଷ୍ଟ୍ରିଆ, ରୋମାନିଆ ପ୍ରଭୃତି ଦେଶମାନଙ୍କରେ ପ୍ରଦର୍ଶିତ ହୋଇ ବିଶେଷ ଖ୍ୟାତି ଅର୍ଜନ କରିଥିଲା । ଆମେରିକାର 'ଦି ନିୟୁୟର୍କ ଟାଇମ୍‌ସ' ଏହି ନାଟକ ଉପରେ ମନ୍ତବ୍ୟ ଦେଇଥିଲେ –

''ସମସ୍ତ ରାଜା, ରାଷ୍ଟ୍ରପତି ଓ ପ୍ରଧାନମନ୍ତ୍ରୀମାନେ 'ରିପ୍ଲିକା' ନାଟକ ଦେଖିବା ଦରକାର.... ।''

ରୁଷିଆର ମସ୍କୋରେ ନାଟ୍ୟକାର ଦୁଇଟି ଥିଏଟର ଦେଖିବାର ଇଚ୍ଛା ପୋଷଣ କରିଥିଲେ । ଗୋଟିଏ ହେଲା ଷ୍ଟାନିସ୍‌ଲାଭାସ୍କିଙ୍କ ମସ୍କୋ ଆର୍ଟ ଥିଏଟର ଓ ବିଖ୍ୟାତ ମାଲେ ଥିଏଟରେ । ପ୍ରଥମଟି ସେ ଦେଖିପାରି ନ ଥିଲେ । ବାର୍ଷିକ ମରାମତିପାଇଁ ତାହା ବନ୍ଦ ଥିଲା । ତେବେ ମାଲେ ଥିଏଟର ଦେଖି ନାଟ୍ୟକାର ଅଭିଭୂତ ହୋଇପଡ଼ିଥିଲେ । ଚାକଚକ୍ୟରେ ଥିଲା ଏହା ଅତୁଳନୀୟ । ସେଠାରେ ଏକ କ୍ଲାସିକାଲ ଐତିହାସିକ ନାଟକ 'ରାଜା ଇଭନ୍' (King Evan) ଦେଖିଥିଲେ ।

ଲେନିନଗ୍ରାଡର ଗର୍କୀ ଥିଏଟରରେ ଦେଖିଲେ ଆଲେକ୍‌ଜାଣ୍ଡର ଅଷ୍ଟ୍ରୋଭସ୍କିଙ୍କର ନାଟକ 'ହେଟାବାଘ ଓ ମେଣ୍ଢା' । ସେଥିରେ ନ ଥିଲା ଆଲୋକ ସମ୍ପାତ ମାଧ୍ୟମରେ ମଞ୍ଚମାୟା ସୃଷ୍ଟି କରିବାର ଉଦ୍ୟମ । ବହୁତ ସେଟିଂର ବ୍ୟବହାର ମଧ୍ୟ ଦେଖିବାକୁ ମିଳି ନ ଥିଲା । ରୁଷ ରହଣି ସମୟରେ ମଧ୍ୟ ମନୋରଞ୍ଜନ ଦେଖିଲେ ମାଇମ୍ ଥିଏଟର । ସେମାନଙ୍କର ଅପେରା ମଧ୍ୟ ଦେଖିଥିଲେ । ସେହି ଅପେରାଗୁଡ଼ିକ ଓଡ଼ିଆ ସୁଆଙ୍ଗ ଓ ଗୀତାଭିନୟ ପରି ତାଙ୍କୁ ଲାଗିଥିଲା । ଲେନିନଗ୍ରାଡର ବିଶ୍ୱବିଖ୍ୟାତ ବାଲେ ମଧ୍ୟ ଦେଖିବାର ସୁଯୋଗ ପାଇଥିଲେ । ମଣିଷ ଆକାରର 'ପପେଟ' ଥିଏଟର ମଧ୍ୟ ଦେଖିଥିଲେ ।

## ଆତ୍ମଜୀବନୀ : ସ୍ମୃତି ସଂଳାପ

ମନୋରଞ୍ଜନ ଜୀବନ ସାରା କେବଳ ନାଟକ ଲେଖିଥିଲେ । ତେବେ ତାଙ୍କର ସ୍ମୃତି କଥା (Memoir) – ଯାହାକି 'ସ୍ମୃତି ସଂଳାପ' ଶିରୋନାମରେ ପ୍ରକାଶ ପାଇଛି – ହେଉଛି ତାଙ୍କର ପ୍ରଥମ ଅଣନାଟକ ।

ପୁସ୍ତକର ବିଷୟବସ୍ତୁର ପରିସର ହେଉଛି ବ୍ୟାପକ – ପ୍ରାୟ ସତୁରି ବର୍ଷ । ବିଂଶ ଶତାବ୍ଦୀର ପ୍ରଥମ ଏକ-ଚତୁର୍ଥାଂଶରେ ଲେଖକ ଜନ୍ମଗ୍ରହଣ କରିଥିଲେ । ସେ ବ୍ରିଟିଶ ଶାସନ ଅଧୀନରେ ଦେଶର ଅବସ୍ଥା ସ୍ୱଚକ୍ଷୁରେ ଦେଖିଥିଲେ । ପରାଧୀନତାର ଶୃଙ୍ଖଳ ଛିନ୍ନ କରିବାକୁ ଯାଇ ଗାନ୍ଧିଜୀଙ୍କ ଅହିଂସା ଆନ୍ଦୋଳନକୁ ଅତି ନିକଟରେ ଦେଖିଥିଲେ । ଦେଶ ସ୍ୱାଧୀନ ହେବ । ସ୍ୱାଧୀନତାପର ଆଦ୍ୟବର୍ଷଗୁଡ଼ିକୁ ଓ ସ୍ୱାଧୀନତା ଲାଭର ପଚାଶ ବର୍ଷ ପୂରଣ ହୋଇଥିବା ସମୟ ଭିତରେ ଘଟିଥିବା ଘଟଣାବଳୀକୁ ଲକ୍ଷ୍ୟ କରିଥିଲେ । ଏଥି ସହିତ ସେ ସାହିତ୍ୟ, ସଙ୍ଗୀତ, ନୃତ୍ୟ, ଚିତ୍ରକଳା, ମଞ୍ଚକଳା ପ୍ରଭୃତି ସହିତ ସଂପୃକ୍ତ ହୋଇପଡ଼ିଥିଲେ । ସେଗୁଡ଼ିକର ପ୍ରକାଶ ଓ ପ୍ରସାରପାଇଁ ରାଜ୍ୟ ଓ କେନ୍ଦ୍ର ସାହିତ୍ୟ ଓ ସଙ୍ଗୀତ ଏକାଡେମୀମାନ, ଆକାଶବାଣୀ ଓ ଦୂରଦର୍ଶନ, ଚଳଚ୍ଚିତ୍ର ପ୍ରତିଷ୍ଠାନ, ସୌଖୀନ ନାଟ୍ୟସଂସ୍ଥା ଓ ବ୍ୟାବସାୟିକ ରଙ୍ଗମଞ୍ଚ ପ୍ରଭୃତି ସ୍ଥାପିତ ହୋଇଥିଲା । ଏହି ସବୁ ଅନୁଷ୍ଠାନ ସହିତ ମନୋରଞ୍ଜନ ଅର୍ଦ୍ଧଶତାବ୍ଦୀରୁ ଅଧିକ କାଳ ପ୍ରତ୍ୟକ୍ଷ ଓ ପରୋକ୍ଷଭାବେ ସମ୍ପର୍କ ରଖିଥିଲେ । ସେହି ସମୟ ମଧ୍ୟରେ ସେ ଯେଉଁ ଅନୁଭୂତି ଲାଭ କରିଥିଲେ, ସେଗୁଡ଼ିକ ଏହି ପୁସ୍ତକରେ ସ୍ଥାନ ପାଇଛି । ଏହାଛଡ଼ା ଲେଖକଙ୍କ ଜୀବନର ସୁଖ ଦୁଃଖ, ଆଗ୍ରହ ଅନାଗ୍ରହ, ସୃଷ୍ଟି ପ୍ରକ୍ରିୟା, ଆକର୍ଷଣ, ଅନାକର୍ଷଣ, ମତାମତ ଆଉ ଦୃଷ୍ଟିକୋଣ ପ୍ରଭୃତି ଏଥିରେ ସ୍ଥାନିତ ହୋଇଛି ।

୧୯୯୨ ମସିହାରେ ଏହି (Memoir) ର ଲେଖା ଆରମ୍ଭ ହୋଇ ୧୯୯୭ ମସିହାରେ ଶେଷ ହେଲା । ୧୯୯୯ ମସିହାରେ ଏହା ପ୍ରକାଶ ପାଇଲା ।

ଓଡ଼ିଆ ସାହିତ୍ୟରେ ଏହା ଏକ ଅନବଦ୍ୟ ସୃଷ୍ଟି ।

## ସମ୍ମାନ ଓ ସ୍ୱୀକୃତି

ମନୋରଞ୍ଜନ ଅଜସ୍ର ସମ୍ମାନର ଅଧିକାରୀ ଥିଲେ । ବହୁ ସଂସ୍ଥା ସହିତ ସେ ମଧ୍ୟ ସମ୍ପୃକ୍ତ ଥିଲେ । ୧୯୪୯ ମସିହାରେ କଟକରେ ଇଉନାଇଟେଡ୍ ଆର୍ଟିଷ୍ଟ୍ ଗ୍ରୁପ୍ ଥିଏଟରର ପ୍ରତିଷ୍ଠା ହେଲା । ନାଟ୍ୟକାର ମନୋରଞ୍ଜନ ଥିଲେ ଏହାର ଅନ୍ୟତମ ପ୍ରତିଷ୍ଠାତା । ୧୯୬୪ ମସିହାରେ ସେ 'ଛୋଟ ନାଟକ' ରଚନା ନିମନ୍ତେ ଓଡ଼ିଶା ସାହିତ୍ୟ ଏକାଡେମୀଦ୍ୱାରା ପୁରସ୍କୃତ ହେଲେ । 'ଉତ୍କଳ ସାହିତ୍ୟ ସମାଜ' ସହିତ ସେ ମଧ୍ୟ ଘନିଷ୍ଠ ଭାବେ ସଂପୃକ୍ତ ଥିଲେ । ୧୯୬୬ରୁ ୧୯୬୭ ମସିହା ପର୍ଯ୍ୟନ୍ତ ମନୋରଞ୍ଜନ ତାହାର ସମ୍ପାଦକ ଭାବେ କାର୍ଯ୍ୟ କରିଥିଲେ । ପୁଣି ୧୯୬୯ ମସିହାରୁ ୧୯୭୪ ମସିହା ପର୍ଯ୍ୟନ୍ତ ଏହି ସାହିତ୍ୟ ଅନୁଷ୍ଠାନର ଉପସଭାପତି ପଦ ଅଳଙ୍କୃତ କରିଥିଲେ । ୧୯୭୧ ମସିହାରେ ନାଟକ 'ଅରଣ୍ୟ ଫସଲ' ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ ହେବା ପୂର୍ବରୁ ବର୍ଣ୍ଣିତ । ୧୯୭୨ ମସିହାରେ ମନୋରଞ୍ଜନ ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀର କାର୍ଯ୍ୟକାରୀ ବୋର୍ଡର ସଦସ୍ୟଭାବେ ମନୋନୀତ ହେଲେ । ୧୯୭୩ରୁ ୭୭ ମସିହା ପର୍ଯ୍ୟନ୍ତ ସେ କେନ୍ଦ୍ର ସାହିତ୍ୟ ଏକାଡେମୀର ସାଧାରଣ ପରିଷଦ ଓ କାର୍ଯ୍ୟକାରୀ ବୋର୍ଡର ସଦସ୍ୟ ଥିଲେ । ୧୯୭୪ ମସିହାରୁ ୧୯୮୦ ମସିହା ପର୍ଯ୍ୟନ୍ତ ମନୋରଞ୍ଜନ ଓଡ଼ିଶା ସାହିତ୍ୟ ଏକାଡେମୀ, ଓଡ଼ିଶା ସଙ୍ଗୀତ ଏକାଡେମୀର ସମ୍ପାଦକଭାବେ କାର୍ଯ୍ୟ କଲେ । ୧୯୭୮-୭୯ ମସିହାରେ ସେ କେନ୍ଦ୍ର ସଙ୍ଗୀତ ଏକାଡେମୀର ସାଧାରଣ ପରିଷଦ ଓ କାର୍ଯ୍ୟକାରୀ ବୋର୍ଡର ସଦସ୍ୟ ହେଲେ । ୧୯୮୧ ମସିହାରେ କେନ୍ଦ୍ର ସଙ୍ଗୀତ ନାଟକ ଏକାଡେମୀ ପୁରସ୍କାର ଲାଭ କଲେ । ନାଟକ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ଅବଦାନପାଇଁ ୧୯୮୩-୮୪ ମସିହାରେ ଭାରତ ସରକାର ମନୋରଞ୍ଜନଙ୍କୁ 'ସିନିଅର ଫେଲୋସିପ୍' ପ୍ରଦାନ କଲେ । ୧୯୮୪-୮୭ ମସିହାପାଇଁ ଦେଶର ସମସ୍ତ ଆକାଶବାଣୀ ଓ ଦୂରଦର୍ଶନ କେନ୍ଦ୍ରର ନାଟକ ବିଭାଗପାଇଁ ଏମେରେଟସ୍ ପ୍ରଡ୍ୟୁସର ଭାବେ ମଧ୍ୟ ନିଯୁକ୍ତ ହେଲେ ।

ମନୋରଞ୍ଜନ ମଧ୍ୟ କେନ୍ଦ୍ର ସଙ୍ଗୀତ ନାଟକ ଏକାଡେମୀ ପକ୍ଷରୁ ୧୯୮୪ ମସିହାରେ ଭୁବନେଶ୍ୱରରେ ହୋଇଥିବା ପୂର୍ବାଞ୍ଚଳ ଥିଏଟର ଉତ୍ସବ ବିଶେଷଜ୍ଞ କମିଟିର ସଦସ୍ୟ ଥିଲେ । ପୁଣି ୧୯୮୭ ମସିହାରେ ପାଟଣାରେ ହୋଇଥିବା ପୂର୍ବାଞ୍ଚଳ ଥିଏଟର ଉତ୍ସବ ବିଶେଷଜ୍ଞ କମିଟିର ସଦସ୍ୟ ଥିଲେ ।

ସେହି ବର୍ଷ ଜାତୀୟ ସ୍ତରର ଆକାଶବାଣୀ ବେତାର ନାଟକ ପୁରସ୍କାର ୧୯୮୬ପାଇଁ ଗଠିତ ହୋଇଥିବା ଜୁରୀର ସଦସ୍ୟ ହେଲେ । ପୁଣି ୧୯୮୭ ବର୍ଷ ପାଇଁ ୧୯୮୮ ମସିହାରେ ଗଠିତ ହୋଇଥିବା ଜୁରୀର ସଦସ୍ୟ ଥିଲେ ।

୧୯୮୯ ମସିହାରେ ନାଟ୍ୟକାର 'ନନ୍ଦିକା-କେଶରୀ' ରଚନାପାଇଁ ଶାରଳା ପୁରସ୍କାରପ୍ରାପ୍ତ ହେଲେ ।

୧୯୯୧ ମସିହାରେ ମନୋରଞ୍ଜନ କଟକ କଳାବିକାଶ କେନ୍ଦ୍ରର କାର୍ଯ୍ୟକାରୀ ସଭାପତି ହେଲେ । ୧୯୯୧ ମସିହାରୁ ୧୯୯୭ ମସିହା ପର୍ଯ୍ୟନ୍ତ ସେ ସେଣ୍ଟ୍ରାଲ୍ ବୋର୍ଡ୍ ଅଫ୍ ଫିଲ୍ମ ସାର୍ଟିଫିକେଶନ (କଟକ ଶାଖା)ର ପରାମର୍ଶଦାତା ବୋର୍ଡ଼ର ସଦସ୍ୟ ଥିଲେ ।

୧୯୯୨ ମସିହାରେ ମନୋରଞ୍ଜନ ଓଡ଼ିଶା ରାଜ୍ୟପାଳଙ୍କ 'ସମ୍ମାନ ଫଳକ (Governor's Plague of Honour) ପାଇବାର ଗୌରବ ଅର୍ଜନ କଲେ ।

୧୯୯୩ ମସିହା ଫେବୃୟାରୀ ମାସରେ କଟକରେ ଦ୍ୱିତୀୟଥରପାଇଁ ହୋଇଥିବା ପୂର୍ବାଞ୍ଚଳ ନାଟକ ଉତ୍ସବ ବିଶେଷଜ୍ଞ କମିଟିର ସଦସ୍ୟ ହେଲେ । ଶେଷରେ ମନୋରଞ୍ଜନ ୧୯୯୩-୯୭ ମସିହାପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀର ସାଧାରଣ ପରିଷଦ ଓ କାର୍ଯ୍ୟକାରୀ ବୋର୍ଡ଼ର ସଦସ୍ୟଭାବେ ମନୋନୀତ ହେଲେ ।

୧୯୯୪-୯୬ ମସିହାପାଇଁ ଭାରତ ସରକାର ସଂସ୍କୃତି ବିଭାଗ ମନୋରଞ୍ଜନଙ୍କୁ ଏମିରେଟସ୍ ଫେଲୋସିପ୍ ପ୍ରଦାନ କରି ସମ୍ମାନିତ କଲେ ।

ମନୋରଞ୍ଜନ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି – ''ଏସବୁ ନିଶ୍ଚିତଭାବେ ମୋର ଅବସର ଜୀବନର ଅଳସ ମୁହୂର୍ତ୍ତପାଇଁ କିଛି ପରିମାଣରେ ଉଷ୍ମତା ଆଣି ଦେଇଥିଲା... ।''

ମନୋରଞ୍ଜନ ବାର୍ଦ୍ଧକ୍ୟଜନିତ ରୋଗରେ ପୀଡ଼ିତ ହୋଇ ଷ୍ଟେସନ ବଜାରସ୍ଥ ବାସଭବନରେ ଶଯ୍ୟାଶାୟୀ ଥିଲେ । ଶେଷରେ ୧୬.୨.୨୦୧୩ ମସିହା ବିଳମ୍ବିତ ରାତ୍ରିରେ ସେ ଶେଷ ନିଶ୍ୱାସ ତ୍ୟାଗ କଲେ । ମୃତ୍ୟୁ ବେଳକୁ ତାଙ୍କୁ ୯୨ ବର୍ଷ ବୟସ ହୋଇଥିଲା । ମୃତ୍ୟୁ ଶଯ୍ୟା ନିକଟରେ ତାଙ୍କ ପୁଅ ପୁଣ୍ୟଶ୍ଳୋକ ଓ ସମସ୍ତ ଆତ୍ମୀୟ ଉପସ୍ଥିତ ଥିଲେ । ଖାନନଗର ଶ୍ମଶାନରେ ତାଙ୍କର ଶେଷକୃତ୍ୟ ସମାପନ ହୋଇଥିଲା । ଦୈନିକ ସମାଜ ତାଙ୍କ ମୃତ୍ୟୁରେ ଶୋକ ପ୍ରକାଶ କରି ଲେଖିଥିଲା –

''ଓଡ଼ିଆ ନବନାଟ୍ୟ ଆନ୍ଦୋଳନର ପୁରୋଧା ନାଟକର ବିଚିତ୍ରମୟ ପରିବର୍ତ୍ତନର କର୍ଣ୍ଣଧାର ପଦ୍ମଶ୍ରୀ ମନୋରଞ୍ଜନ ଦାସ (୯୨) ଆଉ ନାହାନ୍ତି ।''

## ମୂଲ୍ୟାୟନ

ନାଟ୍ୟକାର ଜୀବନର ଆଦ୍ୟ ଭାଗରେ ପ୍ରଥାବଦ୍ଧ ନାଟକ ରଚନାରେ ହାତ ଦେଇ ସଫଳ ହୋଇଥିଲେ । ମାତ୍ର ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ନାଟ୍ୟ ସାହିତ୍ୟରେ

ସେ ଏକ ସ୍ୱତନ୍ତ୍ର ସରଣୀର ସନ୍ଧାନୀ ହେଲେ । ତାଙ୍କ ସମକାଳୀନ ଭାରତବର୍ଷର ଅନ୍ୟାନ୍ୟ ନାଟ୍ୟପ୍ରତିଭା, ଯଥା – ଗିରୀଶ କର୍ନାଡ଼, ଉତ୍ପଳ ଦତ୍ତ, ବାଦଲ ସରକାର, ଅରୁଣ ଶର୍ମା ପ୍ରଭୃତି ପ୍ରଥାବଦ୍ଧ ନାଟ୍ୟ ଚେତନାରୁ ଦୂରେଇ ଯାଇ ନାଟକର ଆତ୍ମିକ ଓ ଆଙ୍ଗିକ ସ୍ତରରେ ପରିବର୍ତ୍ତନ ଆଣିଲେ । ଠିକ୍ ତାହାହିଁ ଓଡ଼ିଆ ନାଟକରେ କରିଛନ୍ତି ମନୋରଞ୍ଜନ । ନାଟକଗୁଡ଼ିକୁ ସେ ପାରମ୍ପରିକ ବ୍ୟାବସାୟିକ ରଙ୍ଗମଞ୍ଚର ବନ୍ଧନରୁ ମୁକ୍ତ କରି ଏକ ନୂତନ ବୈପ୍ଲବିକ ରୂପରେଖ ଦେବାରେ ଯୁଗାନ୍ତକାରୀ ଭୂମିକା ଗ୍ରହଣ କରିଛନ୍ତି ।

ନାଟ୍ୟକାରଙ୍କର ଶକ୍ତିଶାଳୀ ପ୍ରତିଭାର ସ୍ୱାକ୍ଷର କେବଳ ତାଙ୍କର ପୂର୍ଣ୍ଣାବୟବ ନାଟକଗୁଡ଼ିକରେ ନୁହେଁ, ତାହା ପ୍ରତିଫଳିତ ହୋଇଛି ଏକାଙ୍କିକା ଓ ଛୋଟ ନାଟକମାନଙ୍କରେ । ଓଡ଼ିଆ ଏକାଙ୍କିକାର ଶିଳ୍ପରୂପ କ୍ଷେତ୍ରରେ ସେ ଯେଉଁ ବିପୁଳ ପରିବର୍ତ୍ତନ ଆଣିଛନ୍ତି ତାହା ତାଙ୍କ ରଚିତ ଏକାଙ୍କିକାଗୁଡ଼ିକର ବକ୍ତବ୍ୟ ଓ ଗଠନ ରୀତିରେ ସ୍ପଷ୍ଟ । ଆଧୁନିକ ବୁଦ୍ଧିଜୀବୀର ସମସ୍ୟା ଓ ସଙ୍କଟ, ତା'ର ଭୟ ଓ ଆଶଙ୍କାର ଚିତ୍ରପଟ, ସର୍ବୋପରି ନିଃସଙ୍ଗ ଓ ଆଧୁନିକ ମଣିଷର ଆର୍ତ୍ତନାଦ ତାଙ୍କର ଏକାଙ୍କିକାକୁ ମଣ୍ଡିତ କରିଛି । ତାଙ୍କର ଏକାଙ୍କିକାଗୁଡ଼ିକ କେବଳ ଓଡ଼ିଆ ସାହିତ୍ୟ ନୁହେଁ, ଭାରତୀୟ ନାଟ୍ୟ ସାହିତ୍ୟର ପ୍ରତିନିଧିତ୍ୱ କରନ୍ତି ବୋଲି କୁହାଯାଏ ।

ଓଡ଼ିଆ ଏକାଙ୍କିକାକୁ ଆନ୍ତର୍ଜାତିକ ଚିନ୍ତା ଓ ଚେତନାରେ ମଣ୍ଡିତ କରି ସେଥିରେ ନୂତନ ଜୀବନ ଦୃଷ୍ଟି ସଞ୍ଚାର କରିବା ହେଉଛି ମନୋରଞ୍ଜନଙ୍କ ନାଟ୍ୟ ଚେତନାର ମହତ୍ତ୍ୱ । ସେଥିପାଇଁ ମନୋରଞ୍ଜନଙ୍କୁ ଓଡ଼ିଆ ନବ ନାଟ୍ୟ ଆନ୍ଦୋଳନର ବାର୍ତ୍ତାବହ କହିବା ଯଥାର୍ଥ ବୋଲି ମନେ ହୁଏ ।

□□□



ଡକ୍ଟର ପ୍ରଫୁଲ୍ଲ କୁମାର ପଟ୍ଟନାୟକ ଖୋର୍ଦ୍ଧା ସହରରେ ୧୯୩୪ ମସିହା ଜାନୁଆରୀ ମାସ ୭ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ପିତା ଯଦୁମଣି ପଟ୍ଟନାୟକ ଖୋର୍ଦ୍ଧାର ବିଶିଷ୍ଟ ଆଇନଜୀବୀ ଥିଲେ । ଶ୍ରୀ ପଟ୍ଟନାୟକ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ଓ ଏଲ୍.ଏଲ୍.ବି. ପାସ୍ କଲାପରେ କିଛି କାଳ ଇଷ୍ଟର୍ଣ୍ଣ ଟାଇମ୍ସରେ ସହକାରୀ ସମ୍ପାଦକ ଭାବେ କାର୍ଯ୍ୟ କରିଥିଲେ । ୧୯୫୮ ମସିହାରେ ସରକାରୀ ଚାକିରିରେ ଯୋଗ ଦେଇ କାରାମଙ୍ଗଳ ଅଫିସର, ଜିଲ୍ଲା ପ୍ରୋବେସନ୍ ଅଫିସର ଭାବେ ଦଶ ବର୍ଷ କାଳ କାର୍ଯ୍ୟ କରିଥିଲେ । ସେଥିରୁ ଇସ୍ତଫା ଦେଇ ଖୋର୍ଦ୍ଧା କଲେଜରେ ୧୯୬୮ ମସିହାରେ ଅଧ୍ୟାପକ ଭାବେ ଯୋଗ ଦେଲେ । ୧୯୭୭ ମସିହାରେ ଖୋର୍ଦ୍ଧା ରାଜବଂଶ ଉପରେ ନିବନ୍ଧ ଲେଖି ଉତ୍କଳ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ ଉପାଧି ଲାଭ କଲେ । ପରବର୍ତ୍ତୀ କାଳରେ ନାମିତ ପ୍ରାଣନାଥ କଲେଜରେ ଦୀର୍ଘ ୨୬ ବର୍ଷ ଅଧ୍ୟାପନାରତ ଥିଲେ । ସେ କିଛି କାଳ ଖୋର୍ଦ୍ଧା ମହିଳା କଲେଜର ଅଧ୍ୟକ୍ଷ ଭାବେ କାର୍ଯ୍ୟ କଲାପରେ ୧୯୯୪ ମସିହାରେ ଚାକିରିରୁ ଅବସର ଗ୍ରହଣ କଲେ । ଗଡ଼ବାଣୀକିଲୋ କଲେଜରେ ମଧ୍ୟ କିଛି କାଳ ଅଧ୍ୟକ୍ଷ ଭାବେ ଥିଲେ ।

ଅବସର ଗ୍ରହଣ ପରେ 'ଯଶୋଦେହେ ଆୟୁଷ୍ମାନ୍' ନାମକ ଗ୍ରନ୍ଥ ରଚନା ଦିଗରେ ବ୍ରତୀ ଅଛନ୍ତି ।

ଯଶୋଦେହେ ଆୟୁଷ୍ମାନ୍ ଗ୍ରନ୍ଥର ଚତୁର୍ଥ ଭାଗରେ ବିଂଶ ଶତାବ୍ଦୀର ମଧ୍ୟ ଭାଗରୁ ଶେଷ ଭାଗ ଅର୍ଥାତ୍ ୧୯୫୦ ମସିହାରୁ ୨୦୦୦ ମସିହା ମଧ୍ୟରେ ଦୀପ୍ତିବନ୍ତ ହୋଇ ରହିଥିବା ଔପନ୍ୟାସିକ କାହ୍ନୁଚରଣ ମହାନ୍ତି, ଗୋପୀନାଥ ମହାନ୍ତି, ସୁରେନ୍ଦ୍ର ମହାନ୍ତି ଓ ରାଜକିଶୋର ପଟ୍ଟନାୟକ ପ୍ରଭୃତିଙ୍କ ଜୀବନଚରିତ ଲିପିବଦ୍ଧ ହେବା ସଙ୍ଗେ ସଙ୍ଗେ ସେମାନଙ୍କର କାଳଜୟୀକୃତିଗୁଡ଼ିକ ଉପରେ ଆଲୋଚନା କରାଯାଇଛି । ଗଳ୍ପ କ୍ଷେତ୍ରରେ ସେହିପରି ଅନନ୍ତ ପ୍ରସାଦ ପଣ୍ଡା, ରାଜକିଶୋର ରାୟ ବା ଅଖିଳମୋହନ ପଟ୍ଟନାୟକଙ୍କ ଭଳି ଉଚ୍ଚକୋଟୀର ଗାଳ୍ପିକମାନଙ୍କର ଜୀବନ କାହାଣୀ ରୂପାୟିତ ହୋଇଛି । ସଂକ୍ଷିପ୍ତ ପରିସର, ସୀମିତ କାଳ, ନିର୍ଦ୍ଦିଷ୍ଟ ଘଟଣା ଓ ସ୍ପଷ୍ଟ ଭାବବସ୍ତୁ ଭିତରେ ସେମାନଙ୍କ ଜୀବନୀକୁ ନିଖୁଣ ଭାବରେ ଚିତ୍ରଣ କରାଯାଇଛି । କବିତା ଜଗତରେ ସଚ୍ଚି ରାଉତରାୟ, ଅନନ୍ତ ପଟ୍ଟନାୟକ ପ୍ରଭୃତି ଓଡ଼ିଆ କବିତାକୁ ଯେଉଁ ପ୍ରଗତିଶୀଳ ଚିନ୍ତା ଓ ଚେତନାରେ ଶାଣିତ କରି ନୂତନତାର ସଞ୍ଚାର କରାଇଛନ୍ତି ତାହାର ଚମତ୍କାର ଆଲେଖ୍ୟ ବହନ କରିଛି ଏହି ଚତୁର୍ଥ ଭାଗ । ସେହିପରି ନାଟ୍ୟକାର କାଳୀଚରଣ ପଟ୍ଟନାୟକ, ଗୋପାଳ ଛୋଟରାୟ ଓ ମନୋରଞ୍ଜନ ଦାସ ପ୍ରଭୃତି ଯେପରି ନାଟ୍ୟକ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ ଆଣିଛନ୍ତି ତାହା ବିସ୍ମୟ ସୃଷ୍ଟି କରେ । ସର୍ବୋପରି ଲିପିବଦ୍ଧ ଜୀବନଚରିତ ଓ କୃତିଗୁଡ଼ିକର ବିଶ୍ଳେଷଣ ପାଠକକୁ ସେହି ମହାନ୍ ଚରିତ୍ରଙ୍କ ସହିତ ଅନ୍ତରଙ୍ଗ କରାଇବାରେ ସଫଳତା ହେଉଛି ଗ୍ରନ୍ଥର ବିଶେଷତ୍ୱ ଓ ସାତନ୍ତ୍ର୍ୟ ।

ISBN 81-7411-932-9




ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨
www.vidyapuri.com